# କୁନ୍ତଳାକୁମାରୀ ଗ୍ରନ୍ଥାବଳୀ

## — ଗଦ୍ୟସାହିତ୍ୟ —

ସଂପାଦନା
ସାବିତ୍ରୀ ଦାଶ
ଗୌରାଂଗ ଚରଣ ଦାଶ



**ନବଦିଗନ୍ତ**
ବିନୋଦବିହାରୀ, କଟକ - ୭୫୩୦୦୨

# କୁନ୍ତଳାକୁମାରୀ ଗ୍ରନ୍ଥାବଳୀ
## ଗଦ୍ୟସାହିତ୍ୟ

ସମ୍ପାଦନା :
ସାବିତ୍ରୀ ଦାଶ
ଗୌରାଂଗ ଚରଣ ଦାଶ

ପ୍ରକାଶକ :
ବିଷ୍ଣୁ ପ୍ରସାଦ ତ୍ରିପାଠୀ
ନବଦିଗନ୍ତ, ବିନୋଦବିହାରୀ, କଟକ-୨

ପ୍ରଥମ ସଂସ୍କରଣ : **ଅଗଷ୍ଟ, ୨୦୦୮**

ମୁଦ୍ରଣ :
ପଞ୍ଚସଖା ପ୍ରିଣ୍ଟର୍ସ, କଟକ

ପ୍ରଚ୍ଛଦ :
ବିଜୟ ପ୍ରଧାନ

ଡି.ଟି.ପି :
କମ୍ପ୍ୟୁପ୍ରିଣ୍ଟ, ଲିଙ୍କ୍ ରୋଡ୍, କଟକ

ମୂଲ୍ୟ : ଟ. ୩୫୦.୦୦

**KUNTALAKUMARI GRANTHAVALI**
**GADYASAHITYA**

Edited by :
***Sabitri Dash***
***Gourang Charan Dash***

Publisher :
***Nabadiganta***
*Binodbehari, Cuttack-2*

First Edition **August, 2008**

Printer :
**Panchasakha Printers, Cuttack**

Cover Design :
***Bijay Pradhan***

D.T.P. :
**Compuprint, Link Road, Cuttack**

**Price : Rs.350.00**

# ସୂଚିପତ୍ର


| କ୍ର.ନଂ. | ବିଷୟ | ପୃଷ୍ଠା |
|---|---|---|
| ୧ । | ସଙ୍କଳନ ସମ୍ପର୍କରେ | ୧ |
| ୨ । | କୁନ୍ତଳାକୁମାରୀ ସାବତ | ୧୩ |
| ୩ । | କଥାସାହିତ୍ୟ | |
| | ଭ୍ରାନ୍ତି | ୨୯ |
| | ପରଶମଣି | ୬୭ |
| | ନଅତୁଣ୍ଡୀ | ୧୧୧ |
| | କାଳୀବୋହୂ | ୧୭୧ |
| | ରଘୁ ଅରକ୍ଷିତ | ୨୦୩ |
| | ଚିତ୍ରପଟ | ୪୬୩ |
| | ମା ଓ ପୁଅ | ୫୧୫ |
| ୪ । | ପ୍ରବନ୍ଧ | ୫୫୭ |
| ୫ । | ଅଭିଭାଷଣ | ୬୧୭, |
| ୬ । | ପତ୍ରାବଳୀ | ୬୪୯ |

# ସଂକଳନ ସଂପର୍କରେ

କୁନ୍ତଳାକୁମାରୀ ସାବତଙ୍କ ଗଦ୍ୟ ସମ୍ଭାରକୁ ଆମେ ତିନିଭାଗରେ ବିଭକ୍ତ କରିପାରିବା– କଥାସାହିତ୍ୟ, ପତ୍ରସାହିତ୍ୟ ଓ ପ୍ରବନ୍ଧସାହିତ୍ୟ। ନିଜକୁ, ପ୍ରଥମେ କବିତା ମାଧ୍ୟମରେ ପ୍ରକାଶକରି ପାଠକୀୟ ସ୍ୱୀକୃତି ପାଇଥିବା ଏହି ସୃଜନଶୀଳ ପ୍ରତିଭା, ପରେ ଗଦ୍ୟକୁ ନିଜର କରିଛନ୍ତି। ମାତ୍ର ଜଣେ ପ୍ରତିଭା ଯେକୌଣସି ବାଗରେ ନିଜକୁ ପ୍ରକାଶକରୁନା କାହିଁକି, ସକଳଙ୍କୁ ସେ ଯେ ନିଜର କରିବାରେ ସମର୍ଥ, ଆଧୁନିକ ଓଡ଼ିଆ ସାହିତ୍ୟ ଇତିହାସରେ ଶ୍ରୀମତୀ ସାବତ, ତାହାର ଏକ ଉଦାହରଣ। ଏହି ଦୃଷ୍ଟିରୁ ଆମେ ତାଙ୍କୁ ଫକୀର ମୋହନଙ୍କ ଯଥାର୍ଥ ଉତ୍ତରାଧିକାରୀ କହିପାରିବା।

କୁନ୍ତଳାକୁମାରୀଙ୍କ କଥାଗ୍ରନ୍ଥର ସଂଖ୍ୟା 'ସାତ' ଗୋଟି। ଏବଂ, ଏଗୁଡ଼ିକର ଲିଖନ ଓ ପ୍ରକାଶନର ଅବଧି, ୧୯୨୨ ରୁ ୧୯୩୦ (?), ମାତ୍ର ଆଠବର୍ଷ। ଅର୍ଥାତ୍ ୧୯୨୨ ମସିହାରେ ସେ 'ଭ୍ରାନ୍ତି' ଲେଖନ୍ତି। ତାହା ୧୯୨୩ ମସିହାରେ ପ୍ରକାଶିତ ହୁଏ ଏବଂ ପରବର୍ତ୍ତୀ କାଳରେ ପ୍ରକାଶପାଏ ପରଶମଣି (୧୯୨୪), 'ନଅତୁଣ୍ଡୀ' (୧୯୨୫), କାଳୀବୋହୂ (୧୯୨୭), ରଘୁଅରକ୍ଷିତ (୧୯୨୮)। ଅନ୍ୟ ଦୁଇଟି ଅସଂପୂର୍ଣ୍ଣ ଉପନ୍ୟାସ 'ଚିତ୍ରପଟ' କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରସ୍ କର୍ତ୍ତୃପକ୍ଷ ପ୍ରକାଶିତ ଓ ମୁଦ୍ରିତ, ଏବଂ, ''ମାଆ ଓ ପୁଅ'' ଶ୍ରୀମତୀ ଭାରତୀ ପଟ୍ଟନାୟକଙ୍କ ଦ୍ୱାରା ସଂଗୃହୀତ ଓ ପ୍ରକାଶିତ। ଲେଖିକା, କୌଣସି କାରଣରୁ ଏହି ଦୁଇଟିକୁ ପୂରା କରିପାରି ନାହାନ୍ତି, କିମ୍ବା ମିଳୁନଥିବା ଅଂଶ ନଷ୍ଟ ହୋଇଯାଇଛି ତାହା ନିର୍ଦ୍ଦିଷ୍ଟଭାବେ କହିବା ସମ୍ଭବନୁହେଁ। ମାତ୍ର ଏହି ଉପନ୍ୟାସ ପଢ଼ିଲା ବେଳେ, ଏଥିରେ ସଂରଚନାଗତ ସଂହତିର ଅଭାବ ସ୍ପଷ୍ଟ ହୋଇଯାଏ। ଭାଷା ମଧ୍ୟ ସଂସ୍କୃତାୟିତ। ସେହି ନ୍ୟାୟରେ ତାଙ୍କର ପ୍ରାୟ କୋଡ଼ିଏ ବର୍ଷର ଲେଖିକାଜୀବନର ଏହା କେଉଁ ସମୟର ରଚନା, ତାହା ନିର୍ଦ୍ଦିଷ୍ଟ ଭାବରେ କହିବା ନିରାପଦ ନୁହେଁ। ପୁନଶ୍ଚ, ୧୯୨୭ରୁ ୧୯୩୮ ମସିହା ପର୍ଯ୍ୟନ୍ତ, ପ୍ରାୟ ଏଗାରବର୍ଷ ଅବଧି ମଧ୍ୟରେ, ସେ ଯେ କାହିଁକି କଥାସାହିତ୍ୟ ରଚନାରେ ହାତଦେଇ ନାହାନ୍ତି, ତାହା ବୁଝି ହୁଏ ନାହିଁ।

କୁନ୍ତଳା କୁମାରୀଙ୍କ ପ୍ରବନ୍ଧଗୁଡ଼ିକ ଦୁଇ ପ୍ରକାରର, ପ୍ରଥମତଃ, ଶରୀରବିଜ୍ଞାନ ଏବଂ ଦ୍ୱିତୀୟତଃ, ସାହିତ୍ୟକୈନ୍ଦ୍ରିକ। ଶରୀରବିଜ୍ଞାନକୈନ୍ଦ୍ରିକ ଆଲୋଚନାଗୁଡ଼ିକ, ଯଥାକ୍ରମେ ଲାଲା ନଗେନ୍ଦ୍ର କୁମାର ରାୟଙ୍କ ଦ୍ୱାରା ସଂପାଦିତ 'ନିର୍ଭୀକ'-ସାପ୍ତାହିକର ୧୯୨୬ (ଫେବୃଆରି) ମସିହାରେ ଏହାର ଅଣଚାଳିଶରୁ ବୟାଳିଶତମ ସଂଖ୍ୟା ମଧ୍ୟରେ ''ମାତୃମଙ୍ଗଳ'' ଶୀର୍ଷକରେ, ଏକ ପତ୍ର ରୂପରେ ଏବଂ ଅନ୍ୟ ଚାରିଗୋଟି ବ୍ରଜସୁନ୍ଦର ଦାସଙ୍କ ସଂପାଦିତ 'ମୁକୁର' ସାହିତ୍ୟ ପତ୍ରର ୧୯ଶ ଭାଗ, ୯ମ (୨୧୯ରୁ ୨୨୨ ପୃଷ୍ଠା), ୧୦ମ (୨୫୭ରୁ ୨୫୯ ପୃଷ୍ଠା), ଏକାଦଶ (୨୭୯ ରୁ ୨୮୮ ପୃଷ୍ଠା), ଏବଂ ଦ୍ୱାଦଶ ସଂଖ୍ୟା (୩୨୪ ରୁ ୩୨୫ ପୃଷ୍ଠା)ରେ ମାତୃମଙ୍ଗଳ ବିଭାଗରେ ସଂଯୋଜିତ। ଅନ୍ୟ ଏକ ରଚନା ''ଏନ୍ତୁଡ଼ିଶାଳର ଅନାଚାର''

(୧୯୨୨) ଉତ୍କଳ ଭାରତୀ ପଟ୍ଟନାୟକଙ୍କଦ୍ୱାରା ସଂଗୃହୀତ ଓ ପ୍ରକାଶିତ। ନିର୍ଭୀକରେ ପ୍ରକାଶିତ ଆଲୋଚନା ଓ ''ଏନ୍ତୁଡ଼ିଶାଳର ଅନାଚାର'' ଲେଖାରେ ବିଷୟଗତ ସାଦୃଶ ରହିଛି। ''ମୁକୁର''ରେ ପ୍ରକାଶିତ ଲେଖାଗୁଡ଼ିକ ନାରୀମାନଙ୍କର ପ୍ରସୂତିକାଳୀନ ସ୍ୱାସ୍ଥ୍ୟବସ୍ଥା ସଂପର୍କିତ। ଏଠାରେ ସ୍ପଷ୍ଟତଃ ଉଲ୍ଲେଖ କରାଯାଇପାରେ ଯେ, ପ୍ରସୂତିବିଜ୍ଞାନ ଓ ସମାଜବ୍ୟବସ୍ଥାରେ ଶିଶୁ ଜନ୍ମକାଳୀନ ଆଚାର ଓ ବିଚାର ସଂକ୍ରାନ୍ତରେ ସେ ଚର୍ଚ୍ଚା କରିଛନ୍ତି ଏବଂ ଆଚାର ଆଳରେ ଅପମୃତ୍ୟୁର ଶିକାର ହେଉଥିବା ମା ଓ ଶିଶୁମାନଙ୍କୁ ସୁରକ୍ଷାଦେବା ଯେ ଆମ୍ଭମାନଙ୍କର କର୍ତ୍ତବ୍ୟ, ତତ୍‌ସଂପର୍କରେ ଅନ୍ୟମାନଙ୍କୁ ସଚେତନ କରିଦେଇଛନ୍ତି। ଆଧୁନିକ ବିଜ୍ଞାନ ଓ ପରଂପରା ମଧ୍ୟରେ ସଂଘଟିତ ସଂଘର୍ଷର ଏଗୁଡ଼ିକ କଳାତ୍ମକ ବ୍ୟାଖ୍ୟା। ପ୍ରକାଶ ଥାଉକି, ୧୯୩୦ ମସିହା ଅକ୍ଟୋବର ୧ ତାରିଖରେ ବୈରାଗୀ ମିଶ୍ର କଟକରେ ''ନାରୀମଙ୍ଗଳ ସମିତି'' ପ୍ରତିଷ୍ଠା କରିଛନ୍ତି ଏବଂ ଏହି ସମିତି ନାରୀମାନଙ୍କ ଶିକ୍ଷା, ସ୍ୱାସ୍ଥ୍ୟ, ସାମାଜିକ ଓ ସାଂସ୍କୃତିକ ଅଧିକାର ସଂକ୍ରାନ୍ତରେ ଚର୍ଚ୍ଚା ସହିତ ବିଚାରର କାର୍ଯ୍ୟକାରିତା ପ୍ରତି ଅଙ୍ଗୀକାରବଦ୍ଧ ହୋଇଛି। ଶ୍ରୀ ମିଶ୍ରଙ୍କ ନାରୀମଙ୍ଗଳ ଶ୍ରୀମତୀ ସାବତ୍‌ଙ୍କ ମାତୃମଙ୍ଗଳର ପ୍ରଭାବିତ ଅଭିବ୍ୟକ୍ତି ବୋଲି କହିଲେ ଅସମୀଚୀନ ହେବ ନାହିଁ।

କୁନ୍ତଳାକୁମାରୀଙ୍କ ସାହିତ୍ୟ ବିଷୟକ ପ୍ରବନ୍ଧଗୁଡ଼ିକ (୧) ସାମ୍ୟବାଦ ଓ ଗୁଣ୍ଡାୟ (ଉତ୍କଳ ସାହିତ୍ୟ, ୧୭ଶ ଭାଗ, ୯ମ ଓ ୧୦ମ ସଂଖ୍ୟା), (୨) ଆଧୁନିକ ଧର୍ମ ସମସ୍ୟା (ଉତ୍କଳ ସାହିତ୍ୟ, ୨୭ଶ ଭାଗ ୧୦ମ ସଂଖ୍ୟା, ୧୯୨୪ ମସିହା, କଟକସ୍ଥ ବ୍ରାହ୍ମ ସମାଜର ଚତୁର୍ବିଂଶତିତମ ଉତ୍ସବରେ ପଠିତ), (୩) କେଶବ ଚନ୍ଦ୍ର ସେନ୍ (ଉତ୍କଳ ସାହିତ୍ୟ, ୩୦ତମ ଭାଗ, ୯ମ ସଂଖ୍ୟା, ୧୯୨୭, ଜାନୁଆରି ୮ ତାରିଖ ସଂଧ୍ୟାରେ କଟକ ବ୍ରାହ୍ମ ମନ୍ଦିରରେ ପଠିତ), (୪) ହିନ୍ଦୀ ସାହିତ୍ୟର କ୍ରମବିକାଶ (ସହକାର, ୧୮ଶ ଭାଗ-୧୯୩୭ ମସିହା ୧୦ମ ସଂଖ୍ୟା), (୫) ହିନ୍ଦୀ ସାହିତ୍ୟର କ୍ରମ ବିକାଶର ସମ୍ବନ୍ଧରେ ପଦେ ଅଧେ (ସହକାର, ୧୮ଶ ଭାଗ-୧୯୩୭ ମସିହା ୧୧ଶ ଓ ୧୨ଶ ସଂଖ୍ୟା) ଏବଂ ଦୁଇଗୋଟି ଅଭିଭାଷଣ, (୧୯୩୪ ମସିହା ନଭେମ୍ବର ୨୫ ତାରିଖରେ, କଲିକତାଠାରେ ଅନୁଷ୍ଠିତ ପ୍ରବାସୀ ଉତ୍କଳ ସମ୍ମିଳନୀର ୨ୟ ଅଧିବେଶନରେ ପଠିତ) ଏବଂ ବିଂଶ ଶତାବ୍ଦୀରେ ଭାରତୀୟ ନାରୀ। (ସହକାର, ୧୧ଶ ଭାଗ ୧୯୩୧ ମସିହା ଦ୍ୱାଦଶ ସଂଖ୍ୟା)ରେ ପ୍ରକାଶିତ। ''କେଶବ ଚନ୍ଦ୍ର ସେନ୍'' ଓ ''ଆଧୁନିକ ଧର୍ମ ସମସ୍ୟା'' ଆଲୋଚନା ଦୁଇଟି, ଶ୍ରୀମତୀ ସାବତ୍‌ଙ୍କ ଖ୍ରୀଷ୍ଟଧର୍ମ, ହିନ୍ଦୁଧର୍ମ, ବ୍ରାହ୍ମଧର୍ମ (୧୯୨୪) ବୌଦ୍ଧଧର୍ମ ଓ ଦୟାନନ୍ଦ ସରସ୍ୱତୀଙ୍କ ଆର୍ଯ୍ୟ ସମାଜ (୧୯୨୮)ର ବିଚାର ସହିତ ସଂପୃକ୍ତିର ମୋହମୁକ୍ତ ପରିଚର୍ଚ୍ଚା। ସେ ଯେ ଯଥାର୍ଥରେ ଜଣେ ଅଧ୍ୟାତ୍ମବାଦୀ, ଏହି ପ୍ରବନ୍ଧଗୁଡ଼ିକରେ କେବଳ ନୁହେଁ, ତାଙ୍କ କଥାଗ୍ରନ୍ଥ ଓ କବିତାଗୁଡ଼ିକରେ ମଧ୍ୟ ତାହା ପ୍ରତିଧ୍ୱନିତ। ହିନ୍ଦୀ ସାହିତ୍ୟ ସଂକ୍ରାନ୍ତ ଦୁଇଗୋଟି ଆଲୋଚନା, ଲେଖିକାଙ୍କର ଦିଲ୍ଲୀ ରହଣିକାଳୀନ ସୃଷ୍ଟି ଏବଂ ଏଥିରେ ହିନ୍ଦୀ ସାହିତ୍ୟର ବିଖ୍ୟାତ ଲେଖକମାନଙ୍କ ସଂପର୍କରେ ଓଡ଼ିଆମାନଙ୍କୁ ପରିଚୟ କରାଇଦେବା ସହିତ, ହିନ୍ଦୀପ୍ରତି ଆପଣାର ଅନୁରକ୍ତି ସଂପର୍କରେ ମଧ୍ୟ ସେ ସୂଚନା ଦେଇଛନ୍ତି। ପ୍ରବାସୀ ଉତ୍କଳ ସମ୍ମିଳନୀରେ ପ୍ରଦତ୍ତ ତାଙ୍କ ଅଭିଭାଷଣ ଓଡ଼ିଆ

ଜାତୀୟତାବାଦୀ ଆନ୍ଦୋଳନ କୈନ୍ଦ୍ରିକ ହୋଇଥିଲେ ସୁଦ୍ଧା, ଅନ୍ୟ ଅନେକଙ୍କ ପରି ସେ ବଙ୍ଗାଳୀନିନ୍ଦୁକ ହୋଇନାହାନ୍ତି। ବରଂ ବଙ୍ଗାଳୀ ଓ ଅନ୍ୟଭାଷାଭାଷୀ ଅଞ୍ଚଳର ଜନସମ୍ପ୍ରଦାୟମାନଙ୍କ ଜାତିସଂକ୍ରାନ୍ତ ବିଚାରକୁ ଓଡ଼ିଆମାନେ ଗ୍ରହଣ କରିବାର ଆବଶ୍ୟକତା ଉପରେ ଗୁରୁତ୍ୱ ଦେଇଛନ୍ତି। ''ବିଂଶ ଶତାବ୍ଦୀର ଭାରତୀୟ ନାରୀ'' ବୃନ୍ଦାବନସ୍ଥ ଗୁରୁକୁଳ ଆଶ୍ରମର ଷଡ଼ବିଂଶତି ବାର୍ଷିକ ଉତ୍ସବରେ ପ୍ରଦତ୍ତ ଏକ ଅଭିଭାଷଣର ସଂକ୍ଷିପ୍ତାୟନ। ପରବର୍ତ୍ତୀ ସଂଖ୍ୟାରେ ଏହା ପ୍ରକାଶ ପାଇବ ବୋଲି ସହକାର ପୃଷ୍ଠାରେ ସୂଚନା ରହିଥିଲେ ସୁଦ୍ଧା, ପ୍ରକାଶିତ ହୋଇନାହିଁ। ପୁରୁଷପ୍ରଧାନ ଭାରତୀୟ ସମାଜ ବ୍ୟବସ୍ଥାରେ ନାରୀ ସମସ୍ୟା ସହିତ ଶ୍ରୀମତୀ ସାବତ୍‌ଙ୍କ ସଂପୃକ୍ତି ଏବଂ ସେହି ସମସ୍ତର ସମାଧାନ ପ୍ରତି ତାଙ୍କ ମାନସିକତା ମଧ୍ୟ ଏହି ଆଲୋଚନାରେ ସୁସ୍ପଷ୍ଟ।

କୁନ୍ତଳା କୁମାରୀଙ୍କ ''ଦିଲ୍ଲୀଚିଠି'' ''ସହକାର'' ସାହିତ୍ୟ ପତ୍ରର ଦ୍ୱାଦଶଭାଗର ୧ମ, ୨ୟ, ୩ୟ, ୪ର୍ଥ, ୫ମ, ୬ଷ; ତ୍ରୟୋଦଶ ଭାଗର ୧ମ ଓ ୬ଷ ଏବଂ ସପ୍ତଦଶ ଭାଗର ୧ମ ଖଣ୍ଡ (୧୯୩୧ ରୁ ୧୯୩୬) ଅର୍ଥାତ୍ ପଞ୍ଚବର୍ଷ ମଧ୍ୟରେ ପ୍ରକାଶିତ। ଏହି ଚିଠିଗୁଡ଼ିକ ନିଜ ଜନ୍ମଭୂମି ଠାରୁ ପ୍ରାୟ ୧୪୦୦ କିଲୋମିଟର ଦୂରରେ ରହିଥିବା ଜଣେ ନାରୀର, ଭୂମିପ୍ରତି ଅନ୍ତରଙ୍ଗତାର ମର୍ମକଥା। ପ୍ରକାଶ ଥାଉକି, କୁନ୍ତଳା କୁମାରୀ, ୧୯୨୯ରେ କଟକ ଛାଡ଼ିଛନ୍ତି। ଦିଲ୍ଲୀକୁ ଆପଣାର ଘର କରିଛନ୍ତି। ଦିଲ୍ଲୀର ବହୁ ସାଂସ୍କୃତିକ ଅନୁଷ୍ଠାନ ସହିତ ନିଜକୁ ମିଶେଇ ଦେଇଛନ୍ତି। ସେହି ସ୍ଥାନର ମଣିଷମାନଙ୍କୁ ନିକଟରୁ ଦେଖିଛନ୍ତି। ହିନ୍ଦୀଭାଷା, ସାହିତ୍ୟ ଓ ସାହିତ୍ୟିକାମାନଙ୍କ ଗହଣରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ମଧ୍ୟ ଲେଖେଇ ନେଇଛନ୍ତି। ହିନ୍ଦୀ ଭାଷାରେ ନିଜକୁ ବ୍ୟକ୍ତ କରିଛନ୍ତି। ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ସୈନିକ ବି ହୋଇଛନ୍ତି। ଏବଂ, ବିଦେଶ ସହିତ ତାଙ୍କର ଏହି ସଂପୃକ୍ତି, ଭିନ୍ନ ଅବବୋଧରେ ନିଜକୁ ଦେଖିବାର ସୁଯୋଗ ସୃଷ୍ଟିକରିଛି। ତେଣୁ ଦିଲ୍ଲୀଚିଠି କୁନ୍ତଳାଙ୍କ ଉତ୍କଳଗତପ୍ରାଣର ଅଭିପ୍ରକାଶ- ଯେଉଁଠି ଭାରତ ଓ ବିଶ୍ୱକୁ ମଧ୍ୟ ଅନୁଭବ କରାଯାଇପାରିବ। ଏହି ଚିଠିକୁ ସାଧାରଣ ଚିଠି ନକହି, ଚିଠି ଶୈଳୀରେ ଲିଖିତ ଜଣେ ଓଡ଼ିଆର ଆତ୍ମସମୀକ୍ଷାମୂଳକ ଆଲୋଚନା କହିବା ଯୁକ୍ତିଯୁକ୍ତ, ଯେଉଁଥିରେ ବହୁ ଉଦାହରଣ ମାଧ୍ୟମରେ ଓଡ଼ିଆ ଜାତିକୁ ଜାଗ୍ରତକରିବାର ପ୍ରତିଶ୍ରୁତି ରହିଛି।

ଦୁଇ

ମୁଁ ପୂର୍ବରୁ ଉଲ୍ଲେଖ କରିଛି - କୁନ୍ତଳା କୁମାରୀ ସାତଗୋଟି କଥାଗ୍ରନ୍ଥ ଲେଖିଛନ୍ତି। ସେଥି ମଧ୍ୟରୁ ଦୁଇଗୋଟି ଅସଂପୂର୍ଣ୍ଣ। ମାତ୍ର ସେଗୁଡ଼ିକର ଗଠନ-ବୈଚିତ୍ର୍ୟ ଓ କଳେବରକୁ ଆଧାର କରି, ସମସ୍ତ ଯେ ଉପନ୍ୟାସ ପର୍ଯ୍ୟାୟର, ତାହା କହିବା ବିତର୍କିତ ପ୍ରସଙ୍ଗ। କ୍ରାଉନ୍ ଆକାରରେ ପ୍ରକାଶିତ ଭ୍ରାନ୍ତି, ନଅତୁଣ୍ଡୀ, ପରଶମଣି ଓ କାଳୀବୋହୂର ପୃଷ୍ଠା ସଂଖ୍ୟା, ଯଥାକ୍ରମେ ୬୫, ୯୯, ୮୮ ଓ ୫୬। ଏବଂ, ଡିମାଇ ଆକାରରେ 'ରଘୁ ଅରକ୍ଷିତ'ର ପୃଷ୍ଠା ସଂଖ୍ୟା ୩୦୪। ତେଣୁ ମାୟାଧର ମାନସିଂ ଆପଣାର ଏକ ଆଲୋଚନାରେ 'ଭ୍ରାନ୍ତି' ଏବଂ 'କାଳୀବୋହୂ'କୁ ଦୁଇଗୋଟି ଦୀର୍ଘ ଗପ ବୋଲି ଉଲ୍ଲେଖ କରଛନ୍ତି। (କୁନ୍ତଳାକୁମାରୀ, ଆରତୀ,

୧ମ ବର୍ଷ ୫ମ ସଂଖ୍ୟା, ୧୩୪୭ ସାଲ) ଅନ୍ୟ ପକ୍ଷରେ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ ମଧ୍ୟରେ ଲେଖାଯାଇଥିବା କଥାଗ୍ରନ୍ଥଗୁଡ଼ିକ ମଧ୍ୟରେ ''ରଘୁ ଅରକ୍ଷିତ'' କେବଳ ଆକାର ଦୃଷ୍ଟିରୁ ବିପୁଳ ନୁହେଁ, ଏହାର କଥାଭାଗ ଜଟିଳ, ଚରିତ୍ରମାନଙ୍କର ସଂଖ୍ୟା ଅର୍ଦ୍ଧଶତାଧିକ, ସେମାନଙ୍କର ବିଚରଣ ଭୂମି ଓଡ଼ିଶାଠାରୁ ଆରମ୍ଭକରି ଆସାମ, ବର୍ମା, କଲିକତା, ବନାରସ ପର୍ଯ୍ୟନ୍ତ ପରିବ୍ୟାପ୍ତ ଓ ସମୟସୀମା ସୁଦୀର୍ଘ। କାହାଣୀର ଉପସ୍ଥାପନା ଶୈଳୀ ମଧ୍ୟ ଅନେକକ୍ଷେତ୍ରରେ ରହସ୍ୟ-ରୋମାଞ୍ଚ ଧର୍ମୀ। ତେଣୁ ଏହାକୁ ଉପନ୍ୟାସର କୌଣସି ନିର୍ଦ୍ଦିଷ୍ଟ ଛାଞ୍ଚର ଶ୍ରେଣୀଭୁକ୍ତ କରିବା ମଧ୍ୟ ଅପବାଦମୁକ୍ତ ମନେହୁଏ ନାହିଁ।

ଏଠାରେ ପ୍ରସଙ୍ଗକ୍ରମେ ମୁକୁର ଓ ଅନ୍ୟତ୍ର, ବହିଗୁଡ଼ିକ ସଂପର୍କରେ ପ୍ରକାଶିତ କେତେକ ବିଜ୍ଞାପନ ଉଦ୍ଧାର କରାଯାଇପାରେ। କାରଣ ଏଗୁଡ଼ିକ ମୁକୁରର ସଂପାଦକ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ, ସ୍ୱୟଂ ଲେଖିକା ଅଥବା ଉପନ୍ୟାସ-ରସିକମାନଙ୍କ ଦ୍ୱାରା ମୂଲ୍ୟାୟିତ ହୋଇଥିବା ସମ୍ଭବ। ପୁନଶ୍ଚ ସମକାଳରେ ପ୍ରକାଶିତ ଉତ୍କଳସାହିତ୍ୟ, ମୁକୁର, ସହକାର, ଆଶା ଓ ନବୀନ ଆଦି ସାହିତ୍ୟ ଓ ସମ୍ବାଦପତ୍ର ସହିତ କୁନ୍ତଳାକୁମାରୀଙ୍କ ଅନ୍ତରଙ୍ଗ ସଂପର୍କ ରହିଛି। ଫକୀର ମୋହନଙ୍କ ତିରୋଧାନ ପରେ ଉପନ୍ୟାସ ରଚନାରେ ଯେଉଁ ଶୂନ୍ୟସ୍ଥାନ ଦେଖାଦେଇଛି, ତାହାକୁ ପୂରଣ କରିବାପାଇଁ ମୁକୁରର ସଂପାଦକ ବ୍ରଜସୁନ୍ଦର ଦାସ ଏବଂ ସହକାରର ସଂପାଦକ ବାଳକୃଷ୍ଣ କରଙ୍କୁ ଯଥାକ୍ରମେ ''ମୁକୁର ଉପନ୍ୟାସ ମାଳା'' (୧୯୨୪) ଓ ''ଆନନ୍ଦ ଲହରୀ ଉପନ୍ୟାସ ମାଳା'' ମାଧ୍ୟମରେ ସ୍ୱତନ୍ତ୍ର ଗ୍ରନ୍ଥମାନ ପ୍ରକାଶକରିବାଲାଗି ଅନୁପ୍ରେରିତକରିଛି। ଅତ୍ୟୁତ୍ସାହୀ ବ୍ରଜସୁନ୍ଦର ମୁକୁର ଉପନ୍ୟାସମାଳା ବ୍ୟାନରରେ ମାସକୁ ଖଣ୍ଡିଏ କରି ବର୍ଷକୁ ବାରଖଣ୍ଡ ଉପନ୍ୟାସ ପାଠକମାନଙ୍କୁ ଭେଟି ଦେବାପାଇଁ କଥାଦେଇଛନ୍ତି। ଏହି ଉପନ୍ୟାସ ମାଳାର ପ୍ରଥମ ଏବଂ ପଞ୍ଚମ ପ୍ରକାଶନ ହେଉଛି କୁନ୍ତଳାକୁମାରୀଙ୍କ ଦୁଇଗୋଟି କୃତି ''ପରଶମଣି'' ଓ ''ନଅତୁଣ୍ଡୀ''।

ଏଠାରେ ପୁନଶ୍ଚ ଉଲ୍ଲେଖ କରାଯାଇପାରେ ଯେ, କୁନ୍ତଳାଙ୍କର ସମସ୍ତ କୃତିର ବିଭିନ୍ନ ସଂସ୍କରଣ ''ମୁକୁର ପ୍ରେସ୍''ରେ ହିଁ ମୁଦ୍ରିତ ଏବଂ, ସମ୍ଭବତଃ ସ୍ୱୟଂ ଲେଖିକା ପ୍ରକାଶନର କାର୍ଯ୍ୟ ବହନକରିଛନ୍ତି। ତେଣୁ ଏଠାରେ ପାଠକୀୟ ଅବଗତି ନିମିତ୍ତ ବହିସଂକ୍ରାନ୍ତ କଳାତ୍ମକ ବିଜ୍ଞାପନଗୁଡ଼ିକୁ ଉଲ୍ଲେଖକରିବାର ଆବଶ୍ୟକତା ରହିଛି।

### ଭ୍ରାନ୍ତି

ବିଜ୍ଞାପନ -୧ ଆଧୁନିକ ରୁଚିସଂପନ୍ନ- ହିନ୍ଦୁଜଗତର ଜୀବନ୍ତ ଚିତ୍ର ଶେଫାଳୀ ଓ ଅନଙ୍ଗର ଅଭିନବ ବିବାହ କାହାଣୀ; ଗୁମାସ୍ତା, ସାନନ୍ଦ ଓ ଧୂର୍ତ୍ତମାଳତୀର ସ୍ୱାର୍ଥ ସିଦ୍ଧିପାଇଁ ଭୀଷଣ ଚକ୍ରାନ୍ତ; କାଶୀ-ତଳ-ବାହିନୀ ଗଙ୍ଗା ଓ ଇଡ଼େନଗାର୍ଡ଼ନର ଦୃଶ୍ୟ; ଶେଫାଳୀର ପରିଚର୍ଯ୍ୟା ଦୃଶ୍ୟ ଅତ୍ୟନ୍ତ ନିପୁଣତାର ସହିତ ବର୍ଣ୍ଣିତ। ଥରେ ପଢ଼ି ଦେଖନ୍ତୁ- (ମୁକୁର ୧୮ଶ ଭାଗର ବିଭିନ୍ନ ସଂଖ୍ୟା ଦ୍ରଷ୍ଟବ୍ୟ)

**ନଅଚୂଣୀ**

ବିଜ୍ଞାପନ-୨ ବହିଖଣ୍ଡିକ ପ୍ରତ୍ୟେକ ଓଡ଼ିଆବାସୀଙ୍କର ଥରେମାତ୍ର ପଢ଼ିବା ନିତାନ୍ତ ଆବଶ୍ୟକ। ପଢ଼ୁ ପଢ଼ୁ ହସି ହସି ପେଟରେ ବଥା ଆସିବ, ଏଣେ ଅପୂର୍ବ ଶିକ୍ଷା ଲାଭ କରିବେ।

କାଳୀ ବୋହୂ : ରୂପରେ କଳା, ଗୁଣରେ ଜଗତ ଉଜ୍ଜ୍ୱଳା।

ପରଶମଣି : ସଚିତ୍ର, ଅଭିନବ ଗାର୍ହସ୍ଥ୍ୟ ଉପନ୍ୟାସ।

ଭ୍ରାନ୍ତି : ଏକ ନିଃଶ୍ୱାସରେ ପଢ଼ିବା ବହି।

ହିନ୍ଦୁ ପରିବାରର ଜ୍ୱଳନ୍ତ ଚିତ୍ର।

ଉପନ୍ୟାସ ରାଜ୍ୟର କୋହିନୂର

ପ୍ରାପ୍ତିସ୍ଥାନ - ଉତ୍କଳ ସାହିତ୍ୟ ପ୍ରେସ୍

**ଶୁଭ ସମ୍ବାଦ**

ବିଜ୍ଞାପନ-୩ ଉତ୍କଳୀୟମାନଙ୍କପାଇଁ ଅଭାବନୀୟ ସୁଯୋଗ

ମନୋଯୋଗ ଦେଇ ପଢ଼ନ୍ତୁ

ଘର, ଲାଇବ୍ରେରୀ ଉପନ୍ୟାସରେ ସଜାନ୍ତୁ

ଜାତୀୟ ସାହିତ୍ୟର ସମ୍ମାନ ରଖନ୍ତୁ

ମୁକୁର ଉପନ୍ୟାସ ଗ୍ରନ୍ଥମାଳାର

ପ୍ରଥମ ଉପନ୍ୟାସ

'ପରଶମଣି'

ଶ୍ରୀମତୀ କୁନ୍ତଳାକୁମାରୀ ସାବତ ପ୍ରଣୀତ, ପ୍ରକାଶିତ ହୋଇଛି। ମୂଲ୍ୟ ୪ ଟଙ୍କା

ବିଜ୍ଞାପନ-୪ ମୁକୁର ଉପନ୍ୟାସ ମାଳାର ପ୍ରଥମ ଉପନ୍ୟାସ

ଉତ୍କଳ - କାବ୍ୟ - କୁଞ୍ଜର କୋକିଳସ୍ୱରୂପିଣୀ

ପ୍ରତିଭାମୟୀ ଗାର୍ହସ୍ଥ୍ୟ ଚିତ୍ର - କୁଶଳୀ, ଶ୍ରୀମତୀ କୁନ୍ତଳା କୁମାରୀଙ୍କର ଅମୃତମୟୀ ଲେଖନୀ ପ୍ରସୂତ

ପରଶମଣି

(ସଚିତ୍ର ଉପନ୍ୟାସ)

ନାମରେ ପରଶ ମଣି ଗୁଣରେ ପରଶମଣି

ଭାଷା, ଶିଶୁବୋଧ, ସରଳ, ସରସ, ଭାବ କରୁଣ ଓ ମର୍ମସ୍ପର୍ଶୀ

ଚରିତ୍ର ଚିତ୍ରଣ ଅତୁଳନୀୟ, ଛାପା ଓ ଛବି ସୁନ୍ଦର

ଶୀଘ୍ର ଗ୍ରାହକ ଶ୍ରେଣୀଭୁକ୍ତ ହୁଅନ୍ତୁ।

(ମୁକୁର, ୧୯ଶ ଭାଗର ବିଭିନ୍ନ ସଂଖ୍ୟାରେ ପ୍ରକାଶିତ)

ବିଜ୍ଞାପନ-୫ ନୂଆ ଉପନ୍ୟାସ ନୂଆ ଉପନ୍ୟାସ

କୁନ୍ତଳା କୁମାରୀ ସାବତ ଏଲ୍.ଏମ୍.ପି.

ପ୍ରଣୀତ

'ପରଶମଣି'

ସଚିତ୍ର ଅଭିନବ ଗାର୍ହସ୍ଥ୍ୟ ଉପନ୍ୟାସ। ମୂଲ୍ୟ ଟ.୧

ଅଞ୍ଜଳି

ଭକ୍ତିର ପବିତ୍ର ତପୋବନ

ଭାବର ସ୍ୱଚ୍ଛ ମନ୍ଦାକିନୀ ଧାରା। ମୂଲ୍ୟ ୯ ଟଙ୍କା

ଭ୍ରାନ୍ତି

ଏକ ନିଃଶ୍ୱାସରେ ପଢ଼ିବା ବହି

ଉପନ୍ୟାସ ରାଜ୍ୟର କୋହିନୂର

ଉଚ୍ଛ୍ୱାସ

ପଦ୍ୟ ସାହିତ୍ୟର ମୁକୁଟମଣି

ଭାଷା ଶିଳ୍ପର କୋଣାର୍କ ମୂଲ୍ୟ ୪ ଅଣା

ନଅ ତୁଣ୍ଡୀ : ଉପନ୍ୟାସ

କାଳୀବୋହୂ : ଉପନ୍ୟାସ

ରୂପରେ କଳା, ଗୁଣରେ ଜଗତ ଉଜ୍ଜ୍ୱଳା, ମୂଲ୍ୟ ୧ଟଙ୍କା

ପ୍ରାପ୍ତିସ୍ଥାନ : କୁନ୍ତଳା କୁମାରୀ ସାବତ

ଭାରତୀ ମନ୍ଦିର, ପୋ- କଟକ

(ମୁକୁର, ୨୦ଶ ଭାଗର ବିଭିନ୍ନ ସଂଖ୍ୟାରେ ପ୍ରକାଶିତ)

**ରଘୁ ଅରକ୍ଷିତ** ସଂପର୍କରେ ବିଜ୍ଞାପନ :

ଓଡ଼ିଆ ସାହିତ୍ୟର ବିପୁଳ ସାଧନାଲବ୍ଧ ଧନ

ରକ୍ତ ବ୍ୟୟରେ ପ୍ରସ୍ତୁତ

ବିରାଟ ଉପନ୍ୟାସ

ରଘୁ ଅରକ୍ଷିତ

ପ୍ରକାଶିତ ହୋଇଅଛି।

ଏହାର ବିଶେଷତ୍ୱ କ'ଣ,

ଏହା ଏକ କଥାରେ

କହିବାକୁ ଗଲେ ଆଜି ପର୍ଯ୍ୟନ୍ତ ଯେତେ ଓଡ଼ିଆ

ଉପନ୍ୟାସ ଲେଖା ହୋଇଅଛି, ସେମାନଙ୍କ

ମଧ୍ୟରେ ଏହା ଛତ୍ରପତି ସମ୍ରାଟ

ବୋଲିବାକୁ ତିଳେମାତ୍ର ସନ୍ଦେହ ଆସିବ

ନାହିଁ।

ବହୁ, ବହୁମୂଲ୍ୟ ଛବିରେ ବିଭୂଷିତ

ତ୍ରିରଙ୍ଗ ଛବି ଆର୍ଟ କାଗଜରେ ଛପା, ପ୍ରାୟ

ସମୃଦ୍ଧ ୩୦୦ ପୃଷ୍ଠାର ଗୋଟିଏ ବୃହତ୍ ପୁସ୍ତକ

ବଜାରରେ କିଣିବାକୁ ଦୁଇଟଙ୍କା ମାତ୍ର ଲାଗେ

ପ୍ରାପ୍ତିସ୍ଥାନ - ଓଡ଼ିଶାର ସମସ୍ତ ପୁସ୍ତକ ଦୋକାନ

(ଭ୍ରାନ୍ତିର ଦ୍ୱିତୀୟ ସଂସ୍କରଣ ୧୯୨୮ରେ ପ୍ରକାଶିତ।)

ଉପକ୍ରମ

ପାଠୁଆ ଲୋକଙ୍କୁ ପଢ଼ିବା ମନା

ଘର ପୋଡ଼ିଗଲା ପଛକୁ ଅନା

ଧୋରେ ବାଇଆ ଧୋ

ଯୋଉ କିଆରିରେ ଗହନ ଧାନ ତୁ

ସେଇ କିଆରିରେ ସୋ।

ନଅତୁଣ୍ଡୀ ତୁଚ୍ଛା ଓଡ଼ିଆଣୀ। ମଫସଲିଆଣୀ। ତା'ର କିଛି ଗୁଣଥିଲେ ଆଦର ପାଇବ, ନୋହିଲେ ଝାଡ଼ୁ ପାହାର

ହସ, ଅପାଠୁଆ ହସ

ପାଠୁଆ, ଦୋଷ ଖୋଜି ବୁଲିବସେ।

ଏହି ବିଜ୍ଞାପନଗୁଡ଼ିକୁ, କୁନ୍ତଳା କୁମାରୀଙ୍କ ସୃଜନକର୍ମର ବଜାର ତିଆରି ଉଦ୍ୟମ ବୋଲି ଏକ ଧାରଣା ଯେକୌଣସି ପାଠକ / ସମାଲୋଚକ ମନରେ ଆଣିପାରନ୍ତି। ମାତ୍ର ଏଗୁଡ଼ିକ ତାଙ୍କ ସୃଜନଶୀଳତାର ଯେ ଗୁଣସୂତ୍ର ଏକଥା ଅସ୍ୱୀକାର କରାଯାଇନପାରେ। କାରଣ

ଔପନ୍ୟାସିକା ଆପଣା ଜୀବଦ୍ଦଶାରେ କେବଳ ପାଠକୀୟ ସ୍ୱୀକୃତି ଓ ଆଦର ପାଇନଥିଲେ, ଆଜି ମଧ୍ୟ ତାଙ୍କ ସୃଷ୍ଟି ସକଳଙ୍କ ଚେତନାକୁ ଅଭିଭୂତ ଓ ଗତିଶୀଳ କରାଇଥାଏ। ସେମାନେ ସେଠି କେବଳ ନିଜକୁ ଦେଖନ୍ତି ନାହିଁ, ନିଜ ଜାତିର ସାମାଜିକ, ରାଜନୀତିକ, ସାଂସ୍କୃତିକ ଇତିହାସ ସଂସ୍ପର୍ଶରେ ଆସନ୍ତି। ଦେଶ-କାଳ-ସମ୍ଭୂତ-ପାତ୍ରମାନଙ୍କ ସହିତ ଏକାଠି ହୋଇଯାନ୍ତି ଏବଂ, ଯେଉଁ ପରିଣତିରେ ପହଞ୍ଚନ୍ତି, ତାହା ମଧ୍ୟ ସେମାନଙ୍କୁ ଏକ ଆଦର୍ଶପୁଷ୍ଟ ଆହ୍ଲାଦ ଦେଇଥାଏ।

ତାଙ୍କ ଉପନ୍ୟାସ-ବର୍ଣ୍ଣିତ ଘଟଣାଗୁଡ଼ିକ ଘଟୁଥିବା ସ୍ଥାନ- ଗାଁ, ଗାଁ ପୋଖରୀ, ଗାଁ ଦାଣ୍ଡ, ବିଲମାଳ, ଜମିଦାର ଉଆସ; କଟକ ସହର, କଲେଜ, ମହାନଦୀକୂଳ, ଆଧୁନିକ ଶୈଳୀରେ ତିଆରି ରେଲୱେ ଷ୍ଟେସନ୍; କଲିକତା, ଇଡ଼େନ୍‌ଗାର୍ଡ଼େନ, ଗଙ୍ଗାନଦୀ, ହସ୍ପିଟାଲ, ହାୱଡ଼ା ପୋଲ; ରେଙ୍ଗୁନ୍, ବ୍ରହ୍ମପୁତ୍ର, ବ୍ୟାବସାୟିକ ଦପ୍ତର; ଆସାମ, ଚା'ବଗିଚା, ବନାରସ— ଯେଉଁ ଅଞ୍ଚଳଗୁଡ଼ିକ ସହିତ କୁନ୍ତଳାକୁମାରୀଙ୍କ ଜୀବନ ସମ୍ବନ୍ଧିତ। ଏଗୁଡ଼ିକର ବର୍ଣ୍ଣନା ପାଠକଙ୍କୁ ଆଦୌ କାଳ୍ପନିକ ପରି ବୋଧହୁଏ ନାହିଁ। ଘଟଣାଗୁଡ଼ିକ ଘଟୁଥିବା ସମୟ, ଏକ ତିଆରି ହୋଇ ଆସୁଥିବା ପରଂପରା ଏବଂ ବିଦେଶୀ-ସଂସର୍ଗ-ଜନିତ ସଂଘାତର ପ୍ରତିଧ୍ୱନି। ସେଠି ବହୁ ଦେବଦେବୀଙ୍କ ସହିତ ଏକବ୍ରହ୍ମ, ଯୀଶୁ, ଆଲ୍ଲା; ବାଲ୍ୟବିବାହ, ଜାତିଭେଦ, ବାଳୁତ ବୈଧବ୍ୟ, ବହୁବିବାହ ପ୍ରଥା, ନାରୀଶିକ୍ଷା ପ୍ରତି ଅନିହା; ଆଧୁନିକ ନବଶିକ୍ଷିତମାନଙ୍କ ସରକାରୀ-ବୃତ୍ତି-ପ୍ରୀତି, ପ୍ରଜାଶୋଷଣ ମାନସିକତା, ନବ-ଅଭିଜାତବର୍ଗର ଅଭ୍ୟୁଦୟ, ଜମିଦାରମାନଙ୍କର ବିଳାସ ଓ ରୟତମାରଣ ଚକ୍ରାନ୍ତ, ସହରୀ ଜୀବନ ପ୍ରତି ଅହେତୁକ ଆସକ୍ତି, ଆସବ ଓ ବେଶ୍ୟାପ୍ରୀତି; ବ୍ରିଟିଶ୍ ପ୍ରଶାସକମାନଙ୍କର ବିଭେଦକ ଶାସନ ନୀତି; ଉପଭୋକ୍ତାବାଦୀ ସଂସ୍କୃତିର ଅଙ୍କୁରାୟନ ଏବଂ ଅନ୍ୟପକ୍ଷରେ ଏହି ସକଳ ସଂକୀର୍ଣ୍ଣ ମାନସିକତାର ବିରୋଧୀ-ଶକ୍ତିର ସ୍ୱର ମଧ୍ୟ ରହିଛି। ଅର୍ଥାତ୍ ବିଦେଶୀ କବଳରୁ ଏକ ଜାତିକୁ ମୁକ୍ତ କରିବାପାଇଁ ଜାତି, ଧର୍ମ, ବର୍ଣ୍ଣକୈନ୍ଦ୍ରିକ ସଂକୀର୍ଣ୍ଣ ବିଚାର, ଉପାସନାକୈନ୍ଦ୍ରିକ ଅନ୍ଧବିଶ୍ୱାସ, ନାରୀମାନଙ୍କ ଦୁଃଖଦ ଜୀବନଚର୍ଚ୍ଚା, ପୁରୁଷମାନଙ୍କ ସୁଖଭୋଗୀ ମାନସିକତା, କର୍ମବିମୁଖ ଜାତିର ଅସହାୟତା ଓ ପରନିର୍ଭରଶୀଳତା, ମହାଜନ ଓ ସାମନ୍ତମାନଙ୍କ ସୁଧଖୋରୀ ଓ ଶୋଷଣ ପ୍ରବୃତ୍ତି ଏବଂ ସର୍ବୋପରି ଏକ ବୈଦେଶିକୀ ଶକ୍ତିର ହାତବାରିସି ସାଜି ଆପଣ ଜାତିକୁ ପରାଧୀନକରି ରଖିବା ଅହଂରେ ମୁଷ୍ଟିମେୟ ସନ୍ତାପିତମାନଙ୍କ ସ୍ୱରୂପକୁ ମଧ୍ୟ ଅନାବୃତ କରାଯାଇଛି। ଏବଂ, ମୋହନ ଦାସ କରମଚାନ୍ଦ ଗାନ୍ଧୀ ନାମକ ଜଣେ ସାର୍ବକାଳିକ ବ୍ୟକ୍ତିତ୍ୱ, ଭାରତର ରାଜନୀତି, ଶାସନ, ଧର୍ମ ଓ ସଂସ୍କୃତି ବ୍ୟବସ୍ଥାରେ ଯେଉଁ ନବ ଜୀବନର ସଂଚାର କରିଛନ୍ତି, କୁନ୍ତଳାକୁମାରୀ ତାହା ଅନୁଭବ କରିଛନ୍ତି। ଆପଣା ଜୀବନକୁ ଗାନ୍ଧୀ-ବିଚାରର ପରୀକ୍ଷା ଭୂମି କରିଛନ୍ତି। ତାଙ୍କ ଉପନ୍ୟାସର ବହୁ ଚରିତ୍ରଙ୍କ ଜୀବନଚର୍ଯ୍ୟା ଓ ବିଚାରରେ ମଧ୍ୟ ତାହା ପ୍ରତିଧ୍ୱନିତ ହୋଇଛି।

ସେହି ନ୍ୟାୟରେ, ଆମେ ତାଙ୍କ ଉପନ୍ୟାସର ଚରିତ୍ରମାନଙ୍କୁ ଦେଶ-କାଳ-ସମ୍ଭୂତ କହିପାରିବା, ସେମାନେ ଗାଁର ଅପାଠୁଆ, ଡରକୁଳା, ପରଂପରା-ପିଷ୍ଟ, ସରଳଙ୍କଠାରୁ ଆରମ୍ଭ

ଜରି, ଧୂର୍ତ୍ତ ବ୍ୟବସାୟୀ, ସାହୁକାର, ମଠାଧୀଶ; ଚାଷୀ, ମୂଲିଆ; ବ୍ରାହ୍ମଣ, ଖଣ୍ଡାୟତ, କରଣ ଓ ଅନ୍ୟ ଅଛବ ଜାତି; ନୂଆପାଠୁଆ, ସରକାରୀ ଚାକିରି-ଜୀବୀ, ସଂଗ୍ରାମୀ, ସଂସ୍କାରକ; ସହରବାସୀ, ଶ୍ରମିକ ଓ ବିଦେଶୀ ପ୍ରଶାସକ। ମାନସିକତା ଓ ଆଚରଣରେ ମଧ୍ୟ ସେମାନଙ୍କ ମଧ୍ୟରେ କେହି କେହି ସହୃଦୟ, ବିଚାରବନ୍ତ ଓ ଅବଶିଷ୍ଟମାନେ ସୁବିଧାବାଦୀ ଓ ଶୋଷକ। ଆମେ ଫକୀରମୋହନଙ୍କ ଉପନ୍ୟାସରେ ଅବଶ୍ୟ ଏହି ଜାତୀୟ ଚରିତ୍ରମାନଙ୍କୁ ଭେଟିଥାଉ। ମାତ୍ର କୁନ୍ତଳାକୁମାରୀଙ୍କ କଥାଗ୍ରନ୍ଥଗୁଡ଼ିକରେ ଫକୀରମୋହନୋତ୍ତର ଓଡ଼ିଶା ଓ ଭାରତର ବିଭିନ୍ନ ସ୍ଥାନ ଓ ପାତ୍ରମାନଙ୍କର ପରିଚୟ ମିଳେ। ତେଣୁ ତାଙ୍କ କଥାକୃତିଗୁଡ଼ିକୁ ଆମେ ଏକ ଜାତିର ସାମାଜିକ, ରାଜନୀତିକ ଓ ସାଂସ୍କୃତିକ-ଇତିହାସ ପର୍ଯ୍ୟାୟର କହିପାରିବା। ବିଶେଷତଃ ଓଡ଼ିଆମାନଙ୍କର ଦାରିଦ୍ର୍ୟ ଓ ବ୍ରିଟିସ୍ ପ୍ରଶାସନରେ ସେମାନଙ୍କର ରାଜନୀତିକ ପରିଚୟହୀନତାର କାରଣ ବର୍ଣ୍ଣନା ପ୍ରତି ସେ ଅଧିକ ଯତ୍ନଶୀଳା ହୋଇଛନ୍ତି। ସାମନ୍ତବାଦୀ ସମାଜବ୍ୟବସ୍ଥା; ଆଧୁନିକ ଶିକ୍ଷାପ୍ରତି ଅନାଗ୍ରହ; ସ୍ଥାନୀୟ ଜମିଦାର, ସାହୁକାରମାନଙ୍କର ରୟତ ଓ ଅଭାବୀଶୋଷଣ ମନ୍ତ୍ର; ବିଦେଶୀ ପ୍ରଶାସନର ଶାସନଗତ ଉଦାସୀନତା; ଶିଳ୍ପ, ବ୍ୟବସାୟ ଓ ବାଣିଜ୍ୟପ୍ରତି ଜନସାଧାରଣ ଓ ସାମନ୍ତଗୋଷ୍ଠୀର ପରାଂମୁଖତା; ମହାଜାନୀ ପ୍ରଥା; ଉଭୟ ଉଚ୍ଚ ଓ ନିମ୍ନ ଜାତିର ମଣିଷମାନଙ୍କ ମଧ୍ୟରେ ଜାତିଗତ ପରିଚୟ ପ୍ରତିଷ୍ଠା-ଜନିତ ଦ୍ୱନ୍ଦ୍ୱ; ମଠ, ମହନ୍ତ ଓ ମନ୍ଦିର ଅଧ୍ୟୁଷିତ ଧର୍ମାଚାର ଏବଂ ସର୍ବୋପରି ଭ୍ରମଣବିମୁଖତା ଆଦିକୁ ଓଡ଼ିଆମାନଙ୍କର ଅନଗ୍ରସରତାର କାରଣ ରୂପରେ ସେ ବିବେଚନା କରିଛନ୍ତି। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ଅନ୍ୟ ବହୁ ଓଡ଼ିଆ ଜାତୀୟତାବାଦୀମାନଙ୍କ ପରି ସେ ବଙ୍ଗାଳୀ ନିନ୍ଦୁକ ହୋଇନାହାନ୍ତି। ଅଳ୍ପ ସଂଖ୍ୟକ ବଙ୍ଗାଳୀ 'ଉଡ଼େ' ପରି ଅମର୍ଯ୍ୟାଦା ସୂଚକ ଶବ୍ଦରେ 'ଓଡ଼ିଆତ୍ୱର' ଚର୍ଚ୍ଚା କରୁଥିଲା ବେଳେ, ଅଧିକ ସଂଖ୍ୟକ (ବିଶେଷତଃ ଉଠାବଂଗାଳୀ) ଯେ ଓଡ଼ିଆ ଓ ଓଡ଼ିଆମାନଙ୍କୁ ଯଥାର୍ଥତଃ ଭଲ ପାଉଥିଲେ, ସକାର୍ଣ୍ଣତାର ଊର୍ଦ୍ଧ୍ୱରେ ଥିଲେ, ତାହା ଉପନ୍ୟାସଗୁଡ଼ିକର ଆଖ୍ୟାନ ଭାଗରେ ଉଲ୍ଲେଖ କରିଛନ୍ତି ଏବଂ ଓଡ଼ିଆମାନେ ଶିକ୍ଷା, ସ୍ୱାସ୍ଥ୍ୟ, ବାଣିଜ୍ୟ, ଶିଳ୍ପ, ବ୍ୟବସାୟ, ବିଜ୍ଞାନ, ଭାଷା ଓ ସାହିତ୍ୟ ଆଦି ସକଳ କ୍ଷେତ୍ରରେ ବଙ୍ଗାଳୀମାନଙ୍କୁ ଗ୍ରହଣ କରିପାରିଲେ, ସେମାନେ ଭାଷାସୂତ୍ରରେ ଆପଣାର ସ୍ୱତନ୍ତ୍ର ପରିଚୟ ପାଇବା ଆଦୌ ଅସମ୍ଭବ ହେବନାହିଁ ବୋଲି ସ୍ପଷ୍ଟ କରିଦେଇଛନ୍ତି। ସମଗ୍ର ପୃଥିବୀରେ ସଂଘଟିତ ସକଳ ପରିବର୍ତ୍ତନକୁ ଆଖି ଓ ଅଧ୍ୟୟନ ମାଧ୍ୟମରେ ଅନୁଭବ କରିପାରୁଥିବା ଜନସମୁଦାୟ, ନିଜପାଇଁ ସ୍ଥାନ ନିରୂପଣରେ ଯେ ସମର୍ଥ, ତାହା ବାରମ୍ବାର ଉଲ୍ଲେଖ କରିଛନ୍ତି।

ଭାଷା ପ୍ରୟୋଗରେ କୁନ୍ତଳାକୁମାରୀଙ୍କୁ ଆମେ ଫକୀରମୋହନଙ୍କ ସମଗୋତ୍ରୀୟ କହିପାରିବା। ତାଙ୍କ ଚରିତ୍ରମାନେ, ବିଚରଣ କରୁଥିବା ଭୂମିର ଭାଷାରେ ପ୍ରାୟତଃ ନିଜନିଜକୁ ପ୍ରକାଶ କରିଛନ୍ତି। ଅଧିକ ସ୍ପଷ୍ଟଭାବରେ କହିଲେ, ନବଶିକ୍ଷିତ ଓ ସହରଜୀବୀମାନଙ୍କ ଭାଷା, ଗାଁର ମଣିଷମାନଙ୍କ ଭାଷାଠାରୁ ଯେ କେତେ ଅଲଗା, ତାଙ୍କ ଲେଖାରେ ତାହା ବାରିହୋଇପଡ଼େ। ପୁନଶ୍ଚ ଚରିତ୍ରମାନେ ଯେଉଁ ମାନସିକ ଅବସ୍ଥା ଓ ପରିବେଶରେ ଯେଉଁପରି

ଭାଷା ବ୍ୟବହାର କରନ୍ତି, ତାହାର ଅନୁରୂପ ଉଲ୍ଲେଖ ପ୍ରତି ମଧ ସେ ସଚେତନ ରହିଛନ୍ତି ଏବଂ କୌଣସି ଘଟଣା / ଦୃଶ୍ୟ / ପରିବେଶର ବର୍ଣ୍ଣନାକାଳରେ ଜଣେ ସୁପଠ ଓ ଆଧୁନିକପରି ଶବ୍ଦ ଗୁଂଫନ କରିଛନ୍ତି। ବିଶେଷତଃ, ଭ୍ରାନ୍ତି ଓ 'କାଳିବୋହୂ' ଉପନ୍ୟାସରେ ତାଙ୍କ ସଂସ୍କୃତାୟିତ ଓ ଶୁଦ୍ଧ-ଶବ୍ଦ-ବସାଣ-ମୋହ ସ୍ପଷ୍ଟ। ହିନ୍ଦୁସ୍ତାନୀ, ସଂସ୍କୃତ, ବଙ୍ଗଳା, ଇଂରାଜୀ, ପାର୍ଶୀ, ଓଡ଼ିଆ ଓ ବର୍ମା-ଭାଷା ସହିତ ପରିଚିତି ହିଁ ତାଙ୍କ ଉପନ୍ୟାସଗୁଡ଼ିକୁ ଏତେ ଜୀବନ୍ତ କରିପାରିଛି।

ଚରିତ୍ରମାନଙ୍କର ମାନସିକ ଅବସ୍ଥାର ଚିତ୍ରଣ, କୁନ୍ତଳାଙ୍କ ଉପନ୍ୟାସଗୁଡ଼ିକର ଅନ୍ୟତମ ବିଶେଷତ୍ୱ। ସେ ଉପନ୍ୟାସ ଲେଖିଲା ବେଳକୁ, ଇଂରେଜୀ ଗଦ୍ୟଶୈଳୀରେ, ମନକୁ ଉଖାରି ଦେଖାଇବାର ପ୍ରବଣତା ପ୍ରାଧାନ୍ୟଲାଭ କରିଛି, ଏବଂ, ଏହି ଶୈଳୀର ପ୍ରୟୋଗ, ଜେମସ୍ ଜୟସଙ୍କ ଉଇଲିସିସ୍ (୧୯୨୨) ଉପନ୍ୟାସକୁ ଗତ ଶତାବ୍ଦୀର ଶ୍ରେଷ୍ଠ କୃତିର ମାନ୍ୟତା ଦେଇଛି। ପ୍ରକାଶ ଥାଉକି, ବୈଷ୍ଣବ ଚରଣ ଦାସଙ୍କ 'ମନେ ମନେ' (୧୯୨୬) ଉପନ୍ୟାସ, ଏକ ସକାଳୀନ ସୃଷ୍ଟି, ଯାହା ସମୀକ୍ଷକମାନଙ୍କ ପରିଭାଷାରେ ଏକ ମନସ୍ତାତ୍ତ୍ୱିକ ଉପନ୍ୟାସ। କୁନ୍ତଳା, ଜେମସ ଜୟସଙ୍କୁ ପଢ଼ିଥିବା ସଂପର୍କରେ ସ୍ପଷ୍ଟତଃ କିଛି କୁହାଯାଇ ନପାରେ। ମାତ୍ର ସେ ବୈଷ୍ଣବ ଚରଣ ଦାସଙ୍କୁ ପଢ଼ିଥିବା ସମ୍ଭବ। ମନସ୍ତାତ୍ତ୍ୱିକ କାହାଣୀ ଲେଖକମାନେ ବିଶ୍ୱାସକରନ୍ତି, ବ୍ୟକ୍ତି ଜୀବନରେ ସଂଘଟିତ ପ୍ରତ୍ୟେକ ଘଟଣା ପଛରେ କାରଣ / କାରଣମାନ ଥାଏ, ଅଥବା, ଏହି ବିଚାରକୁ ଓଲଟାଇକରି କହିଲେ, କାରଣ / କାରଣମାନ ବ୍ୟକ୍ତି ଜୀବନକୁ ନିୟନ୍ତ୍ରଣ କରୁଥାଏ। କୁନ୍ତଳା, ଜଣେ ମନୋବିଜ୍ଞାନୀ ପରି, ନିଜ ଚରିତ୍ରମାନଙ୍କ ଜୀବନର କଥା କହିଲା ବେଳେ, ଘଟଣାଗୁଡ଼ିକର ସ୍ଥୂଳ ବର୍ଣ୍ଣନା ପରିବର୍ତ୍ତେ, ସେମାନଙ୍କ ଜୀବନ ଚର୍ଯ୍ୟାର ଅଦେଖା, ଅଶୁଣା ଓ ଅକୁହା ନିଦାନସବୁକୁ ଖୋଲିଦେଇଛନ୍ତି। ଫଳତଃ ପାଠକ, କଥା- ବର୍ଣ୍ଣିତ ଚରିତ୍ରମାନଙ୍କ ଭିତରେ ନିଜକୁ ଅନୁଭବ କରିଛି, ସେମାନଙ୍କ ପ୍ରତି ଦୟା, କ୍ରୋଧ, ଈର୍ଷା କି ଘୃଣା କରି ନାହିଁ। ବରଂ, ଭଲପାଇଛି। ଅର୍ଥାତ୍, ଆପେ ଚରିତ୍ର ହୋଇଯାଇଛି। କେଉଁ ସାମାଜିକ / ସାଂସ୍କୃତିକ / ଧର୍ମ-ବିଚାର ଓ ଆଚାର ଦେଶ / ଜାତି ଓ ବ୍ୟକ୍ତିପ୍ରତି ଅହିତକର, ତେଣୁ ପରିତ୍ୟଜ୍ୟ ଅଥବା ପରିବର୍ତ୍ତନ ଅଭିପ୍ରେତ, ତାହା ବିଚାରିବାର ସୁଯୋଗପାଇଛି।

ମାତ୍ର ମଜା କଥା, ଔପନ୍ୟାସିକ ଆପଣାର କଥନତା ମାଧ୍ୟମରେ ଚରିତ୍ରମାନଙ୍କୁ ଆଦର୍ଶପୁଷ୍ଟ ଓ ଅଦୃଷ୍ଟ ହାତର ଖେଳଣା କରିଦେଇଛନ୍ତି। ଫକୀର ମୋହନଙ୍କ ପରି ଅପରାଧୀ / ଦୁଷ୍ଟମାନଙ୍କୁ ନ୍ୟାୟାଳୟ, ବ୍ୟକ୍ତିବିଶେଷ ଅଥବା ଅଦୃଷ୍ଟ ହାତରେ ଦଣ୍ଡଦିଆଇ ନାହାନ୍ତି। ପ୍ରତ୍ୟେକ, ନିଜ କଲାକର୍ମକୁ ମନେପକାଇଛନ୍ତି, ଆତ୍ମ-ସମୀକ୍ଷା କରିଛନ୍ତି, ଅପରାଧବୋଧରେ ଘାରି ହୋଇଛନ୍ତି ଏବଂ ଶେଷରେ ନିଜ ନିଜକୁ ସଂଶୋଧନ କରିନେଇଛନ୍ତି। ଆମେ, ଆମ ସମାଜରେ ଦେଖୁଥିବା ମଣିମାନଙ୍କ କ୍ଷେତ୍ରରେ, ଏହା ସତ ହୋଇନପାରେ। ମାତ୍ର ଔପନ୍ୟାସିକା ତାଙ୍କ ସୃଜନ-ସଂସାରରେ, 'ଏହାହିଁ ସତ୍ୟ' ମଣିଛନ୍ତି। ଅର୍ଥାତ୍ ସଂସାରର ପ୍ରତ୍ୟେକ ଚରିତ୍ରକୁ ଶୋଧନ-ପ୍ରୟାସୀ, ସହୃଦୟ ଓ ଅଧ୍ୟାତ୍ମବାଦୀ ଜ୍ଞାନ କରିଛନ୍ତି। ଆପଣାର ଏହି ବିଚାରକୁ ପ୍ରତିଷ୍ଠା କରିବାପାଇଁ କାହାଣୀକୁ ଏକ କଳ୍ପିତ ବାସ୍ତବ ଭୂଇଁରେ ଗତିଶୀଳ କରିଛନ୍ତି ଏବଂ ପାଠକମାନେ ଏହି ଆଦର୍ଶବାଦପୁଷ୍ଟ ନାଟକୀୟ-ବାସ୍ତବତା ଭିତରେ ନିଜ ନିଜକୁ ଆବିଷ୍କାର କରି ଆନନ୍ଦିତ

ହୋଇଛନ୍ତି। ମୋର ବିଶ୍ୱାସ, କୁନ୍ତଳାକୁମାରୀଙ୍କ ଉପନ୍ୟାସଗୁଡ଼ିକ, ଆଜି ମଧ ପାଠକମାନଙ୍କୁ ଭଲ ଲାଗିବାର ଏହା ଅନ୍ୟତମ ବିଶେଷ କାରଣ।

କୁନ୍ତଳାକୁମାରୀଙ୍କ ଉପନ୍ୟାସ ସଂପର୍କରେ ଏକଥା ମଧ କୁହାଯାଇପାରେ ଯେ, ତାଙ୍କ କାହାଣୀ ପରିକଳ୍ପନା, ସ୍ଥଳ ବିଶେଷରେ ବାସ୍ତବତାଠାରୁ ଦୂରବର୍ତ୍ତୀ। ଲକ୍ଷ୍ମୀ ନାରାୟଣ ସାହୁ, ଆପଣାର ଏକ ଆଲୋଚନା (ଓଡ଼ିଆ ଭାଷାରେ ବଙ୍ଗ ଭାଷାର ପ୍ରଭାବ, ପ୍ରଦୀପ, ୪ର୍ଥ ଭାଗ / ୪ର୍ଥ ସଂଖ୍ୟା / ୧୩୨୯ ସାଲ)ରେ, କୁନ୍ତଳା ଏବଂ ସରଳା ବଙ୍ଗଳାଦ୍ୱାରା ଅନୁପ୍ରାଣିତ ବୋଲି ଉଦାହରଣ ମାଧମରେ ପ୍ରମାଣ କରିଛନ୍ତି। ପରୋକ୍ଷ ଭାବରେ, ଗୋପାଳଚନ୍ଦ୍ର ପ୍ରହରାଜ ମଧ କୁନ୍ତଳାଙ୍କ ସଂପର୍କରେ ସମମନ୍ତବ୍ୟ ଦେଇଛନ୍ତି। ସ୍ଥାନ, କାଳ ଓ ପାତ୍ର ବର୍ଣ୍ଣନାରେ ତାଙ୍କ ଶୈଳୀ ଅବଶ୍ୟ କାବ୍ୟିକ, ମାତ୍ର ତାହା ଫକୀର ମୋହନଙ୍କ ପରି ବ୍ୟଂଜନାଧର୍ମୀ ହୋଇପାରି ନାହିଁ। ଅନ୍ୟ ପକ୍ଷରେ, କୁନ୍ତଳାଙ୍କର ଗୁଣଗ୍ରାହୀ ସ୍ତାବକମାନଙ୍କର ସଂଖ୍ୟାମଧ କିଛି କମ୍ ନଥିଲା। ବିଛନ୍ଦ ଚରଣ ପଟ୍ଟନାୟକ, ଶ୍ରୀମତୀ ସରଳା ଦେବୀ, ଲାଲା ନରେନ୍ଦ୍ର କୁମାର ରାୟ ଏବଂ କୃପାସିନ୍ଧୁ ପଟ୍ଟଦେବ (ନବୀନ ପତ୍ରିକାର ସଂପାଦକ) ଥିଲେ ସେମାନଙ୍କ ମଧରେ ପ୍ରମୁଖ। ନବୀନର କେତୋଟି ସଂଖ୍ୟାରେ କୁନ୍ତଳାଙ୍କ ଫଟୋ ଓ ପରିଚୟ ପ୍ରକାଶପାଇଛି। ପ୍ରଶସ୍ତି ବି ରହିଛି। ବିଖ୍ୟାତ ହିନ୍ଦୀ-ଔପନାସିକ ଜୈନେନ୍ଦ୍ର, ତାଙ୍କ ଜୀବନକୁ ଆଧାର କରି, କଲ୍ୟାଣୀ (୧୯୩୯) ନାମକ ଉପନ୍ୟାସ ବି ଲେଖିଛନ୍ତି। ତେଣୁ, ସେ ଯେ ପ୍ରଶଂସା ଓ ପ୍ରଶସ୍ତିର ଯୋଗ୍ୟା ନଥିଲେ, ଏହା କୁହାଯାଇ ନପାରେ। ସେ ଯଥାର୍ଥତଃ ଥିଲେ ଜଣେ ସହୃଦୟା ଓ ବିପ୍ଳବଣୀ। ତାଙ୍କ ସାହିତ୍ୟ ଥିଲା, ଆପଣା ଜୀବନଚର୍ଯ୍ୟା ଓ ଆଦର୍ଶର ବିଶ୍ୱସ୍ତ ଅଭିବ୍ୟକ୍ତି। ତେଣୁ ସେ ବଂଚିରହିବେ, ଏବଂ ତାଙ୍କ କଥାଗ୍ରନ୍ଥ ଓ ପଦ୍ୟରଚନା, ଓଡ଼ିଆ ଜାତିର ଆତ୍ମକଥା ଓ ଐତିହାସିକ ସଂପଦ ରୂପରେ ମାନ୍ୟତା ପାଇବ।

ନଅତୁଣ୍ଡୀର ସମୀକ୍ଷାକରେ ନିର୍ଭୀକର ସଂପାଦକ ଲାଲା ନଗେନ୍ଦ୍ର କୁମାର ନାୟକଙ୍କ ମନ୍ତବ୍ୟ ଏହି ପ୍ରସଂଗରେ ଗୁରୁତ୍ୱପୂର୍ଣ୍ଣ : ତାଙ୍କ ଭାଷାରେ –

ଶ୍ରୀମତୀ କୁନ୍ତଳାକୁମାରୀ ସାବତଙ୍କର ନଅତୁଣ୍ଡି ନାମକ ଉପନ୍ୟାସ ଖଣ୍ଡି ସମାଲୋଚନା କରିବାକୁ ଯାଇ ଆମ୍ଭେମାନେ ଲେଖିବାକୁ ଦନ୍ୟବାଦ ଦେଉ। ଲେକାର ଧରଣଟା ଯେପରି ପ୍ରାଞ୍ଜଳ ଏବଂ ଚିତ୍ତାକର୍ଷକ ଯେ ତାହା ବହି ଖଣ୍ଡ ପଢ଼ିଲେ ଶେଷ ନ କରି ରହିହେବ ନାହିଁ। ଲେଖାର ପ୍ରତ୍ୟେକ ପଂକ୍ତି ଏପରି ଗୋଟାଏ ସରଳ ସଜୀବତାମୟ ଯେ, ତାହା ଉତ୍କଳର ପ୍ରତ୍ୟେକ ଶ୍ରେଣୀର ପାଠପାଠିକାଙ୍କୁ ସୁଖପାଠ୍ୟ ଓ ସୁବୋଧ ହେବ। କ୍ଷୁଦ୍ର ପୁସ୍ତିକାଟିରେ ଲେଖିକା ଉତ୍କଳର ଗ୍ରାମ୍ୟ ରାଜନୀତି ଓ ସମାଜନୀତି ତଥା ଧର୍ମନୀତିକୁ ଏପରି ଗୋଟାଏ ନୂଆ ରଂଗରେ ଆଙ୍କି ଆଖିଆଗରେ ଥୋଇଅଛନ୍ତି ଯେ ପଢ଼ିଲା ମାତ୍ରେ ସମସ୍ତ ଉତ୍କଳର ଦେ଼ ଆଗକାଳ ସନାତନ ସରଳ ଆଦର୍ଶଟାକୁ ବେଶ୍ ଭଲକରି ବୁଝିପାରିବେ। ଅଧୁନା ସମାଜରେ ଯେଉଁସବୁ ଆବର୍ଜନା ପଶି ଗ୍ରାମ୍ୟ ସଭ୍ୟତାକୁ କଳୁଷିତ କରିପକାଇଲାଣି ତାହାର କଦର୍ଯ୍ୟତାକୁ ଲେଖିକା ଉପନ୍ୟାସ ଛଳରେ ଅତି ନିର୍ମମ ଭାବରେ ସମାଲୋଚନା କରିଅଛନ୍ତି। ଏଥିରୁ ଏକା ଯେ ତାଙ୍କର ସାହିତ୍ୟାନୁମୋଦିତା ପ୍ରମାଣ ମିଳୁଛି ତାହା ନୁହେଁ ବରଂ ଉତ୍କଳର ସାମାଜିକ ଅବସ୍ଥାର ଏହି ପ୍ରଗାଢ଼ ଅଭିଜ୍ଞତା ଫକୀରମୋହନଙ୍କ ଛ'ମାଣ

ଆଠଗୁଣ୍ଡ ବହି ଛଡ଼ା ଆଉ କେଉଁଠି ପଢ଼ିଲା ପରି ମନେହେଉନାହିଁ। ନଅତୁଣ୍ଡି ଲେଖାର ଧାରଣାଟି ସଂଭ୍ରାନ୍ତ ସାହିତ୍ୟିକଙ୍କ ପକ୍ଷରେ ସୁରୁଚିକର ବୋଧହୋଇ ନପାରେ। କେହି କେହି ବୃଦ୍ଧ ସାହିତ୍ୟଗର୍ବୀ ଏହାକୁ ହୀନ ଦୃଷ୍ଟିରେ ଦେଖିପାରନ୍ତି। ଏ ବହି ସେ ବହିରୁ ଚୋରି କରି ଯେଉଁମାନେ ସାହିତ୍ୟିକ ପଣିଆ ଯାହିର କରନ୍ତି, ସେମାନେ କୁନ୍ତଳା କୁମାରୀଙ୍କର ଏହି ଲେଖାକୁ ନାପସନ୍ଦକରି କଟାକ୍ଷ କରିପାରନ୍ତି। କିନ୍ତୁ ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ, ଲେଖିକାଙ୍କର ଏହି ପୁସ୍ତିକା ଖଣ୍ଡି ଉତ୍କଳର ସକଳ ସାହିତ୍ୟର ଅପୂର୍ବ ରତ୍ନଟିଏ। ଦେଶର ଏହିପରି ଲେଖାର ଯେତେ ବହୁଳ ପ୍ରଚାର ହେବ, ସେହି ଅନୁପାତରେ ଜାତୀୟ ଜୀବନ ପରିମାର୍ଜିତ ହୋଇ ଓଡ଼ିଶାର କଲ୍ୟାଣ ସାଧନ କରିବ। (ନିର୍ଭୀକ- ୪୨ତମ ସଂଖ୍ୟା : ୧୯୨୬)

କବିଙ୍କ ଗଦ୍ୟରଚନା ସଂଗ୍ରହ ଓ ସଂପାଦନ, ଆମକୁ ବହୁ ଅନୁଷ୍ଠାନ ଓ ଗବେଷକ / ଗବେଷିକା / ସହୃଦୟମାନଙ୍କ ପାଖରେ ଋଣୀ କରିଛି। ଆମେ ପ୍ରଥମେ ସ୍ମରଣ କରିବି, ତାଙ୍କ ଗ୍ରନ୍ଥାବଳୀର ସମ୍ପାଦକ, କଟକ ଷ୍ଟୁଡେଣ୍ଟସ ଷ୍ଟୋରସ୍‌ର ଗୁଣୀ ପ୍ରକାଶକ ଅନନ୍ତ ମିଶ୍ରଙ୍କୁ। ମାତ୍ର ପ୍ରସ୍ତୁତ ସଂକଳନରେ ତାଙ୍କ ପ୍ରକାଶିତ ଗ୍ରନ୍ଥାବଳୀର ସାହାଯ୍ୟ ନିଆଯାଇ ନାହିଁ। କୁନ୍ତଳାକୁମାରୀଙ୍କ ଉପନ୍ୟାସଗୁଡ଼ିକର ବିଭିନ୍ନ ସଂସ୍କରଣ ଏବଂ ପତ୍ରିକାରେ ପ୍ରକାଶିତ ରଚନାଗୁଡ଼ିକୁ ଏଥିରେ ମୁଦ୍ରଣ କରାଯାଇଛି। ମା ଓ ପୁଅ ଏବଂ ''ଏକ୍ସୁଡ଼ିଶାଳର ଅନାଚାର'' ଲେଖା ଦୁଇଟି ଡକ୍ଟର ଭାରତୀ ପଟ୍ଟନାୟକ ଗବେଷଣାର ଫଳଶ୍ରୁତି। ଏହି ଗ୍ରନ୍ଥର ବିଶେଷତ୍, କେତେଗୋଟି ଚିଠିର ସଂଯୋଜନ। ଏତଦ୍ ବ୍ୟତୀତ, ଲେଖିକାଙ୍କର ବହୁଚିଠି ଚକ୍ରଧର ମହାପାତ୍ରଙ୍କର ''କୁନ୍ତଳାକୁମାରୀ ଜୀବନ ଚରିତ''ରେ ରହିଛି। ମାତ୍ର ଏହି ଗ୍ରନ୍ଥରେ ସେଗୁଡ଼ିକର ପୁନଃ ସଂଯୋଜନ ସମ୍ଭବ ନୁହେଁ। ପାଠକମାନେ ଆମ ଅସହାୟତାକୁ ସ୍ୱୀକାରକରିବେ ବୋଲି ବିଶ୍ୱାସ। ଏହି ଅବକାଶରେ ମୁଁ ଶ୍ରୀମତୀ ଭାରତୀ ପଟ୍ଟନାୟକ ଓ ଉତ୍କଳ ସାହିତ୍ୟ ସମାଜର ଗ୍ରନ୍ଥାଗାରିକା ସୁଶ୍ରୀ ଲକ୍ଷ୍ମୀପ୍ରିୟାଙ୍କ ଶ୍ରଦ୍ଧାକୁ ସମ୍ମାନ ଜଣାଉଛି। କୁନ୍ତଳାଙ୍କ ଉପନ୍ୟାସଗୁଡ଼ିକର ବିଭିନ୍ନ ସଂସ୍କରଣ ଆମେ ସଂଗ୍ରହ କରିଛୁ, ସର୍ବମଙ୍ଗଳା ପାଠାଗାର, ରଘୁନନ୍ଦନ ପାଠାଗାର, ପୁରୀ ଏବଂ ଉତ୍କଳ ସାହିତ୍ୟ ସମାଜ; କଟକରୁ। ଏହି ପାଠାଗାରଗୁଡ଼ିକର କର୍ତ୍ତୃପକ୍ଷଙ୍କ ପାଖରେ ଆମେ ଋଣସ୍ୱୀକାର କରୁଛୁ ଏବଂ ଯିଏ ଏହି ଗ୍ରନ୍ଥ ସଂପାଦନ ପାଇଁ ଦୀର୍ଘ ତିନିବର୍ଷରୁ ଅଧିକ କାଳ ଧରି ତାଗିଦା କରି ଆସିଛନ୍ତି, ସେ, ନବଦିଗନ୍ତ, କଟକର ସ୍ୱତ୍ୱାଧିକାରୀ ଶ୍ରୀ ବିଭୁ ପ୍ରସାଦ ତ୍ରିପାଠୀ। ତାଙ୍କୁ ଆମର ଅଶେଷ ଧନ୍ୟବାଦ। ବିଶ୍ୱାସ, ଆମ ଶ୍ରମକୁ ଓଡ଼ିଶାର ସହୃଦୟ ପାଠକ ସ୍ୱୀକାର କରିବେ। ମାତ୍ର ଶେଷରେ କହିରଖିବାକୁ ଉଚିତ୍ ମଣୁଛୁ ଯେ, କୁନ୍ତଳା କୁମାରୀଙ୍କ ଆଉ କେତୋଟି ଗଦ୍ୟରଚନାର ସୂଚନା ପାଇଥିଲେ ସୁଦ୍ଧା, ପତ୍ରିକାଗୁଡ଼ିକ ଉପଲବ୍ଧ ନ ହେବାଯୋଗୁଁ ସେଗୁଡ଼ିକର ଗ୍ରନ୍ଥାୟନ ସମ୍ଭବ ହେଲାନାହିଁ। ପରବର୍ତ୍ତୀ ସଂସ୍କରଣରେ ଅଭାବ ପୂରଣରେ ସମର୍ଥ ହେବୁ ବୋଲି ବିଶ୍ୱାସ ରଖିଛି।

୧୫, ଅଗଷ୍ଟ, ୨୦୦୮ ସାବିତ୍ରୀ ଦାଶ
ଆନନ୍ଦ ଆଶ୍ରମ, କୁଟାରିମୁଣ୍ଡା ଗୌରାଂଗ ଚରଣ ଦାଶ
ଶମାର, ଅନୁଗୋଳ

# କୁନ୍ତଳା କୁମାରୀ ସାବତ

## – ଏକ –

କୁନ୍ତଳା କୁମାରୀ ସାବତ ୧୯୦୦ ଖ୍ରୀଷ୍ଟାବ୍ଦ ଫେବୃଆରି ମାସ ୮ ତାରିଖରେ ବସ୍ତର ଜିଲ୍ଲା ଜଗଦଳପୁରଠାରେ ଜନ୍ମ ହୋଇଥିଲେ। ଦାନିଏଲ ସାବତ ଓ ମନିକାଙ୍କର ସେ ଥିଲେ ପ୍ରଥମ ସନ୍ତାନ। ଦାନିଏଲ ସେଠାରେ ଡାକ୍ତରୀ ଚାକିରି କରୁଥିଲେ। ମାତ୍ର ତାଙ୍କ ନିଜ ଘର ଥିଲା ଖୋର୍ଦ୍ଧାରେ। ସେଠାରେ କୁନ୍ତଳାଙ୍କ ଜେଜେବାପା, ଜେଜେମା ଓ ସଂପର୍କୀୟମାନେ ରହୁଥିଲେ। କୁନ୍ତଳା ମାତ୍ର ବର୍ଷକର ହୋଇଥିଲା ବେଳେ, ଦାନିଏଲ୍‌ଙ୍କର ବଦଳି ହୋଇଗଲା ବର୍ମାକୁ। ବାପାମାଙ୍କ ସହିତ କୁନ୍ତଳା ବର୍ମା ଗଲେ।

କୁନ୍ତଳାଙ୍କର ଶୈଶବ ଓ କୈଶୋର ବର୍ମାରେ ହିଁ ବିତିଥିଲା। ଓଡ଼ିଶାଠାରୁ ଦୂରରେ ଥିବାରୁ ଓ ବର୍ମାରେ ଓଡ଼ିଆ ସ୍କୁଲ ନଥିବାରୁ, ତାଙ୍କୁ ହିନ୍ଦୀ ଓ ଇଂରାଜୀ ପଢ଼ିବାକୁ ପଡ଼ିଲା। ଘରେ ଅବଶ୍ୟ ବାପାମାଙ୍କ ସହିତ ସେ ଓଡ଼ିଆରେ କଥାବାର୍ତ୍ତା କରୁଥିଲେ। ଦେଶରୁ ଆସୁଥିବା ଓଡ଼ିଆ ବହିଗୁଡ଼ିକ ପଢୁଥିଲେ। ମାନସିକ ବିକାଶପାଇଁ ସେତିକି ଜମାରୁ ତାଙ୍କୁ ଯଥେଷ୍ଟ ଲାଗୁନଥିଲା। ଜାଣିବାର ଓ ପଢ଼ିବାର ଇଚ୍ଛା ତାଙ୍କର ପ୍ରଖର ଥିଲା। ତେଣୁ ବର୍ମାରେ ଥିବା ବଙ୍ଗାଳୀ ଓ ହିନ୍ଦୀସ୍ଥାନୀମାନଙ୍କଠାରୁ ସେ ବଙ୍ଗଳା ଓ ହିନ୍ଦୀ ଭାଷାର ବହି ଆଣି ପଢୁଥିଲେ ଏବଂ ଆଠବର୍ଷ ବୟସ ହେଲା ବେଳକୁ ଓଡ଼ିଆ, ବଙ୍ଗଳା, ହିନ୍ଦୀ ଓ ଇଂରେଜୀ ଭାଷାକୁ ସେ ଭଲଭାବରେ ଆୟତ୍ତ କରିପାରିଥିଲେ।

ବିଦେଶରେ ଥିଲେ ମଧ୍ୟ ମଝିରେ ମଝିରେ କୁନ୍ତଳା ତାଙ୍କ ଭାଇ, ଭଉଣୀ ଓ ମାଙ୍କ ସହିତ ଜେଜେବାପା ଓ ଜେଜେମାଙ୍କୁ ଦେଖିବାପାଇଁ ଖୋର୍ଦ୍ଧା ଆସୁଥିଲେ। ଜେଜେମାଙ୍କଠାରୁ ରାମାୟଣ ଓ ମହାଭାରତ କାହାଣୀ ଶୁଣୁଥିଲେ ଏବଂ ଏହି କାହାଣୀ ତାଙ୍କୁ ବେଶ୍ ରୋମାଞ୍ଚିତ କରୁଥିଲା। ମାଙ୍କର ପତି-ଅନୁରକ୍ତି, କର୍ମଦକ୍ଷତା ଓ ଧର୍ମଧାରଣା ତାଙ୍କୁ ଉଲ୍ଲସିତ କରୁଥିଲା। ସେ ଖ୍ରୀଷ୍ଟିଅନ ଥିଲେ ମଧ୍ୟ, ହିନ୍ଦୁ ଧର୍ମନୀତି ତାଙ୍କ ଉପରେ ଗଭୀର ପ୍ରଭାବ ପକାଉଥିଲା। ଖୋର୍ଦ୍ଧାର ଖ୍ରୀଷ୍ଟିୟାନ ସାହିର ଆର ପାଖରେ ଥିବା ହିନ୍ଦୁ ସାହି ଭିତରକୁ ସେ ଯାଉଥିଲେ ଏବଂ

ନାରୀମାନଙ୍କର ଚଳଣ, ଆଚାରବିଚାର, ଚଉରାମୂଳ, ଠାକୁର ଘର ଓ ପର୍ବପର୍ବାଣୀ ତାଙ୍କୁ ଅଭିଭୂତ କରୁଥିଲା। ତେଣୁ ସେ କହୁଥିଲେ, ''ମୁଁ ଖ୍ରୀଷ୍ଟିୟାନ ଘରେ ଜନ୍ମିଛି ସତ୍ୟ, କିନ୍ତୁ ମୁଁ ଭାରତୀୟ, ଭାରତୀୟ ଜୀବନ ଚରିତ୍ରଗୁଡ଼ିକୁ ମୁଁ ଉପାଦେୟ ମନେକରିଛି।''

କିଶୋରୀ କୁନ୍ତଳାଙ୍କୁ ଓଡ଼ିଶା ଭାରି ଭଲ ଲାଗୁଥିଲା। କାରଣ ବର୍ମାରେ ସେ ଯାହା ପାଉନଥିଲେ, ତାହା ନିଜ ଗାଁ ମାଟିରେ ପାଉଥିଲେ। ବର୍ମାରେ ନିଜର କହିଲେ- କେବଳ ବାପା ଆଉ ମା। ବାପା ଇଂରେଜୀ ସାହିତ୍ୟରୁ ଗପ ଶୁଣାଉଥିଲେ, ଆଉ ମା ମନିକା ଦେବୀ ବାଇବେଲ୍ ବର୍ଣ୍ଣିତ କାହାଣୀ କହୁଥିଲେ। କିନ୍ତୁ ଖୋର୍ଦ୍ଧାରେ ଜେଜେବାପା, ଜେଜେମା ଓ ସଂପର୍କୀୟମାନଙ୍କ ଠାରୁ ରାମାୟଣ, ମହାଭାରତ, ଭଗବତ ଓ ଅନ୍ୟ କାବ୍ୟ ପୁରାଣଗୁଡ଼ିକରେ ବର୍ଣ୍ଣିତ କାହାଣୀ ଶୁଣୁଥିଲେ। ସୀତା, ସାବିତ୍ରୀ, ଶକୁନ୍ତଳା, ଦମୟନ୍ତୀ, ଦ୍ରୌପଦୀ, କୁନ୍ତୀ, ଗାନ୍ଧାରୀ ଆଦି ଚରିତ୍ରମାନଙ୍କ ସଂସ୍ପର୍ଶରେ ଆସୁଥିଲେ। ଓଡ଼ିଶା ସହିତ ଏହି ଆତ୍ମୀୟତା ତାଙ୍କୁ ଓଡ଼ିଶା ଓ ଭାରତର ସଂସ୍କୃତି ଜାଣିବାରେ ସାହାଯ୍ୟ କରିଥିଲା। ନିଜ ମାଟି ଓ ସଂସ୍କୃତି ପ୍ରତି ଏହି ଅନୁରାଗ ତାଙ୍କ ଜୀବନକୁ ଅଲଗା ଭାବରେ ତିଆରି କରିଥିଲା।

ଖୋର୍ଦ୍ଧାରେ କିଛିଦିନ କଟେଇ ସେ ପୁଣି ବର୍ମା ଚାଲିଯାଉଥିଲେ। ମାତ୍ର ଚଉଦବର୍ଷ ବୟସରେ ସେ ମାଙ୍କ ସହିତ ସବୁଦିନପାଇଁ ବର୍ମାରୁ ଚାଲି ଆସିଲେ।। ତାଙ୍କ ସହିତ ଆସିଥିଲେ ଦୁଇ ଭାଇ ଓ ଦୁଇ ଭଉଣୀ। ଏହି ଆସିବାର କାରଣ ଥିଲା ନିହାତି କରୁଣ। ବାପା ମାଉସୀଙ୍କୁ ଦ୍ୱିତୀୟ ପତ୍ନୀର ମର୍ଯ୍ୟାଦା ଦେବାରୁ ମାଙ୍କ ସହିତ ତାଙ୍କର ମତାନ୍ତର ସୃଷ୍ଟିହେଲା ଏବଂ ମତାନ୍ତର ହିଁ ରୂପାନ୍ତରିତ ହୋଇଥିଲା ମନାନ୍ତରରେ। ବାପା ଥାଇବି, ସେ ତାଙ୍କଠାରୁ ଅଲଗାହେଇ ରହିବାକୁ ଆରମ୍ଭକଲେ ଏବଂ ନିଜ ହାତରେ ନିଜ ଜୀବନ ଗଢ଼ିବାକୁ ନିଜ ପାଖରେ ପ୍ରତିଶ୍ରୁତିବଦ୍ଧ ହେଲେ।

— ଦୁଇ —

ପିଲାମାନଙ୍କ ସହିତ ଖୋର୍ଦ୍ଧା ଆସିଲା ପରେ, ମନିକା ବର୍ମାରେ ଘଟିଯାଥିବା ଘଟଣାକୁ ଜମା ଭୁଲିପାରୁ ନଥିଲେ। ଦୁଃଖକୁ ଭୁଲିବାପାଇଁ ରାତିଦିନ ଉପାସନାରେ ମଜ୍ଜିରହୁଥିଲେ। ଆଖିରୁ ଲୁହ ପୋଛୁଥିଲେ। ମାଙ୍କ ଅବସ୍ଥା ପିଲାମାନଙ୍କୁ ଅସହାୟ କରୁଥିଲା। ମାତ୍ର ପ୍ରତିକାର କରିବାର ଶକ୍ତି ସେମାନଙ୍କର ନଥିଲା। ଅବଶ୍ୟ ଦାନିଏଲ ସେମାନଙ୍କର ଭରଣ-ପୋଷଣପାଇଁ ପ୍ରତିମାସରେ ଟଙ୍କା ପଠେଉଥିଲେ, ମାତ୍ର ସ୍ୱାମୀଙ୍କର ଏ ଅନୁକମ୍ପାକୁ ମନିକା ସହଜରେ ଗ୍ରହଣ କରିପାରୁ ନଥିଲେ। ଭଉଣୀର ପୁଅଟିଏ ହେବାର ସମ୍ବାଦ ପାଇଲା ପରେ ଜୀବନର ବିପର୍ଯ୍ୟୟକୁ ସେ ସହଜରେ ଗ୍ରହଣ କରିନେଲେ। ପିଲାମାନଙ୍କୁ ମଣିଷ କରିବାର ସଂକଳ୍ପ ନେଲେ। ଦୁଇପୁଅ ସାମୁଏଲ ଓ ନିଅନିଏଲ୍ ନାଁ ଲେଖେଇଲେ ଖୋର୍ଦ୍ଧା ହାଇସ୍କୁଲରେ, କୁନ୍ତଳା ଓ ପ୍ରଫୁଲ୍ଲ କୁମାରୀ

ରେଭେନ୍ସା ଗାର୍ଲସ ହାଇସ୍କୁଲରେ ପଢ଼ିଲେ। ଦୁଇ ଭଉଣୀଙ୍କ ଦେଖାଚାହାଁ କରିବାକୁ ସାଙ୍ଗରେ ଗଲେ ଜେଜେମା।

ଖୋର୍ଦ୍ଧା ଓ କଟକରେ ରହଣି, କିଶୋରୀ କୁନ୍ତଳାର ଜୀବନରେ ବିପୁଳ ପରିବର୍ତ୍ତନ ଆଣିଲା। ସେ ହିନ୍ଦୁ ବାନ୍ଧବୀମାନଙ୍କ ସଂସ୍ପର୍ଶରେ ଆସିଲେ। ହିନ୍ଦୁମାନଙ୍କ ରୀତିନୀତି ଭିତରେ ନିଜ ଜୀବନକୁ ମିଶେଇବାକୁ ଚାହିଁଲେ। ହିନ୍ଦୁ ଦେବାଦେବୀଙ୍କ ପାଖରେ ଯୀଶୁଙ୍କୁ ଥୋଇ ସେ ଉପାସନା ସଂଗୀତ ଗାଉଥିଲେ। ପାଠପଢ଼ାରେ କେବେବି ହେଳା କରୁନଥିଲେ। ଖୁବ୍ ମେଧାବୀ ଥିଲେ। ବାର୍ଷିକ ପରୀକ୍ଷାରେ ପ୍ରଥମ ହୋଇ ବୃତ୍ତି ପାଉଥିଲେ। ପ୍ରିନ୍‌ସପାଲ୍ ଚାହୁଁଥିଲେ କୁନ୍ତଳା ଉଚ୍ଚଶିକ୍ଷାପାଇଁ ବିଲାତ ଯିବାକୁ, ହେଲେ ମାଙ୍କ ଇଚ୍ଛା ଅନୁସାରେ ସେ ସ୍କୁଲ ଶିକ୍ଷାପରେ ୧୯୧୮ରେ କଟକ ମେଡ଼ିକାଲ ସ୍କୁଲରେ ନାମ ଲେଖେଇଲେ। ସ୍କୁଲ ଜୀବନରୁ ବିଦାୟ ଅବସରରେ ସେ କବିତାଟିଏ ଲେଖିଥିଲେ। ସେ ଗୀତଟି ନିଜେ ଗାଇ ତା'ର ମୂର୍ଚ୍ଛନାରେ ଅନ୍ୟମନସ୍କ କରିଦେଇଥିଲେ ଶିକ୍ଷୟିତ୍ରୀ ଓ ସହପାଠିନୀମାନଙ୍କୁ। ଏହା ଥିଲା ତାଙ୍କ କବି ଜୀବନର ଆଦ୍ୟ ଉଦ୍‌ଗାନ ଏବଂ ହୃଦୟର ଉଚ୍ଛ୍ୱାସ। ସେ ଲେଖିଥିଲେ –

ତୁମ୍ଭରି କୃପାରେ ଲଳିତ ମଧୁର
ଲଭିଲି ଭାଷା ସଂପଦ
ଜନନୀ ଉତ୍କଳେ ମହତ କୋମଳ
ଚିହ୍ନଲି ତା ପଦ୍ମପାଦ।
ଶ୍ରୀ ପୟରେ ଦୀନା ବର ମାଗେ କନ୍ୟା
ସଫଳ ହେଉ ଜୀବନ
ମାତୃଭାଷା ପୁଷ୍ପ ତୋଳିଣ ସହର୍ଷ
ହେବି ବରେଣ୍ୟ ମହାନ୍।

(କୁ.କୁ. ଜୀବନ ଚରିତ : ଚକ୍ରଧର ମହାପାତ୍ରଙ୍କ ପ୍ରଶ୍ନରୁ ଗୃହୀତ)

ପଢ଼ିଲାବେଳେ, ସମୟ ପାଇଲେ ସେ କବିତା ଲେଖୁଥିଲେ। ମାତ୍ର କାହାକୁ ପଢ଼େଇ ଶୁଣେଇବାର ସୁଯୋଗ ପାଇନଥିଲେ।

ମେଡ଼ିକାଲ୍ ସ୍କୁଲରେ ନାଁ ଲେଖେଇବାପାଇଁ ତାଙ୍କୁ ପ୍ରାୟ ଚାଳିଶ ଜଣ ଛାତ୍ରଛାତ୍ରୀଙ୍କ ସହିତ ପ୍ରବେଶିକା ପରୀକ୍ଷା ଦେବାକୁ ପଡ଼ିଥିଲା। ସେମାନଙ୍କ ଭିତରେ ଦ୍ୱିତୀୟ ହେବାରୁ ପରୀକ୍ଷା ଫଳ ତାଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ। ଖାତାର ପୁନର୍ମୂଲ୍ୟାୟନପାଇଁ ଅଧ୍ୟକ୍ଷଙ୍କୁ ସେ ଆବେଦନ କଲେ ଏବଂ ପ୍ରଥମ ହେଲେ। କେବଳ ପ୍ରବେଶିକା ପରୀକ୍ଷା ନୁହେଁ, ପ୍ରତ୍ୟେକ ବର୍ଷର ବାର୍ଷିକ

ପରୀକ୍ଷାରେ ସେ ପ୍ରଥମ ହେଉଥିଲେ ଏବଂ ୧୯୨୧ ମସିହାରେ ଅନୁଷ୍ଠିତ ବିହାର-ଓଡ଼ିଶା ମେଡ଼ିକାଲ ବୋର୍ଡ଼ର ଶେଷ ପରୀକ୍ଷାରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ଲାଭକଲେ। ମେଡ଼ିକାଲ ପଢ଼ାର ଚାରିବର୍ଷ ମଧ୍ୟରେ ସେ ଷୋହଳଗୋଟି ରୌପ୍ୟ ଓ ସ୍ୱର୍ଣ୍ଣ ପଦକ ପାଇଥିଲେ। ଜୀବନର ଏହି ଚାରିବର୍ଷ ମଧ୍ୟରେ କୁନ୍ତଳାଙ୍କୁ ବହୁ ପରୀକ୍ଷାଦେବାକୁ ପଡ଼ିଥିଲା। ଅଭାବ ଅନଟନ ସବୁବେଳେ ଲାଗି ରହିଥିଲା। ଅଳ୍ପ ଖର୍ଚ୍ଚରେ ଚଳିବାପାଇଁ ଭେଉଣୀମାଙ୍କ ସହିତ ଦୁଇ ଭଉଣୀ ଭଡ଼ାଘରେ ରହୁଥିଲେ। ଖଣ୍ଡିଏ ଶାଢ଼ୀ ଧୋଇଶୁଖେଇ ପିନ୍ଧୁଥିଲେ। ୧୯୨୦ ମସିହା ଫେବୃଆରି ମାସରେ ତାଙ୍କ ଭାଇ ସାମୁଏଲ୍ ଚାଲିଗଲେ। ନିଜକୁ ଦୃଢ଼ ରଖିବାପାଇଁ କୁନ୍ତଳା ଭୋର ଚାରିଟାରୁ ବିଛଣା ଛାଡୁଥିଲେ। ଉପାସନାମୂଳକ କବିତା ଲେଖୁଥିଲେ, ଗୀତ ଗାଉଥିଲେ ଓ ନିଜ ପଢ଼ାପଢ଼ି ଭିତରେ ରାତି ଅଧ ପର୍ଯ୍ୟନ୍ତ ବୁଡ଼ି ରହୁଥିଲେ।

ଜୀବନର ଏହି ଅଭାବ କାଳରେ ଏକ ଅଭାବିତ ଘଟଣା ତାଙ୍କ ଭିତରେ ପୁଲକ ସୃଷ୍ଟି କରିଥିଲା। ତାଙ୍କ ଅଶ୍ରୁସଜଳ ଆଖିରେ ହସର ଚମକ ଆଣି ଦେଇଥିଲା। ସେଦିନ ଥିଲା ଏକ ବର୍ଷୁକି ସଂଧ୍ୟା। କଲେଜ ଛୁଟି ପରେ ସେ ଘରକୁ ଫେରିବାକୁ ଅପେକ୍ଷା କରିଥାନ୍ତି। ବର୍ଷାକୁ ଆଉ ଖାତିରି ନକରି, ଭିଜି ଭିଜି ସେ ଘରକୁ ପାଦ ପକେଇଲେ। କିଛି ବାଟ ଗଲାପରେ, ହଠାତ୍ ଘୋଡ଼ା ଗାଡ଼ିଟିଏ ତାଙ୍କ ପାଖରେ ଅଟକିଗଲା। ଗାଡ଼ି ଭିତରକୁ ଯିବାକୁ ତାଙ୍କୁ କେହି ଜଣେ ସ୍ନେହରେ ଡାକୁଥିଲେ। କୁନ୍ତଳା କିଛି ନଭାବି ନିରବରେ ଠିଆହେଇଗଲେ, ଗାଡ଼ିରେ ଥିବା ବ୍ୟକ୍ତିଜଣକ କୁନ୍ତଳାଙ୍କର ଆଦର୍ଶ, ପ୍ରିୟ ଶିକ୍ଷକ ଡାକ୍ତର କୈଳାଶ ଚନ୍ଦ୍ର ରାଓ। ତାଙ୍କ ହୃଦୟର ଆହ୍ୱାନକୁ ଏଡିଦେବାର ସାମର୍ଥ୍ୟ ନଥିଲା ବର୍ଷାଭିଜା ତରୁଣୀ କୁନ୍ତଳାଙ୍କର। ଗାଡ଼ି ଭିତରକୁ ତାଙ୍କ ହାତ ଧରି ଉଠିଗଲେ। ସେଇ ସନ୍ଧ୍ୟାର 'ହାତ ଧରିବା' ତାଙ୍କ ଭବିଷ୍ୟତ ଜୀବନକୁ ଅଲଗାଭାବରେ ଗଢ଼ିବାର କାରଣ ହେଲା। ଘୋଡ଼ାଗାଡ଼ି ଭିତରେ ସେହି କେତୋଟି ମୂହୁର୍ତ୍ତରେ କ'ଣ ଘଟିଗଲା କେଜାଣି, ରୋଗୀ ଶରୀର ବିଷୟରେ ପାଠ ପଢୁଥିବା କୁନ୍ତଳାଙ୍କ ମନ, ହୃଦୟ ବୀଜାଣୁ ସଂକ୍ରମିତ ହୋଇଥିଲା। ସେ ବଦଳିଗଲେ। ରୋଗୀପାଇଁ ନିଦାନ ଖୋଜୁଥିବା ନାରୀଜଣକ ମନପାଇଁ ଓଷଦ ଖୋଜିଲେ ଓ ଅକ୍ଷର ଭିତରେ ତାପକୁ ଅନୁଭବ କଲେ।

## — ତିନି —

ଡାକ୍ତରୀ ପାସ୍‌ପରେ କୁନ୍ତଳା କୈଳାସବାବୁଙ୍କ ମଧ୍ୟସ୍ଥତାରେ କିଛି ଟଙ୍କା ଋଣ ଆଣି ବସା ପରିବର୍ତ୍ତନ କଲେ। ଗଙ୍ଗା ମନ୍ଦିରରେ ଗୋଟିଏ ପୁରୁଣା କୋଠା ଭଡ଼ାନେଇ ରହିଲେ। ସେ ଚିକିତ୍ସାଳୟ ଖୋଲି ନଥିଲେ, କିନ୍ତୁ ରୋଗୀମାନଙ୍କ ଘରୁ ଡକରା ଆସିଲେ ଭେଉଣୀମାଙ୍କ ସହ ସେମାନଙ୍କୁ ଦେଖିବାକୁ ଯାଉଥିଲେ। ନିଷ୍ଠାର ସହ ରୋଗୀସେବା କରୁଥିଲେ। ଅସ୍ତ୍ରୋପଚାର

ସମୟରେ ତାଙ୍କ ହାତର ଯାଦୁକରୀ ସ୍ପର୍ଶ ରୋଗୀକୁ ଜୀବନଦାନ ଦେଉଥିଲା । ଏକୋଇଶ ବର୍ଷର ତରୁଣୀ । ସଂସାରର ଜଟିଳତା ସଂପର୍କରେ ଅଭିଜ୍ଞତା ନଥିଲା । ଦୁର୍ବଳ କାନ୍ଧରେ ତାଙ୍କର ଜେଜେବାପା, ଜେଜେମା, ଅସହାୟ ଓ ଆତ୍ମମର୍ଯ୍ୟାଦା ସଂପନ୍ନ ମା ଏବଂ ଛୋଟ ଭାଇଭଉଣୀଙ୍କ ଭାର । ବାପା, ମାଉସୀଙ୍କୁ ବିବାହ କଲା ଦିନରୁ, ସେ ଦୂର ହେଇଯାଇଥିଲେ । କ୍ରମଶଃ କୈଳାସ ରାଓଙ୍କ ସହିତ ତାଙ୍କ ସଂପର୍କ ଗାଢ଼ହେବାକୁ ଲାଗିଲା । ଘରେ କୈଳାସଙ୍କର ବାପା, ମା, ରୁଗ୍ଣା ସ୍ତ୍ରୀ ଓ କନ୍ୟା । ଗୋଟିଏ ପାଖରେ କୁନ୍ତଳାଙ୍କ ପ୍ରେମ ଓ ଅନ୍ୟ ପାଖରେ ସମାଜ ଓ ପରିବାର । ପ୍ରଥମ ଯୌବନର ଭାବପ୍ରବଣ ମୁହୂର୍ତ୍ତରେ କୁନ୍ତଳା ଯାହାଙ୍କୁ ଜୀବନର ସବୁକିଛି ଅର୍ପଣ କରିଥିଲେ, ତାଙ୍କୁ ନେଇ କେତେ ନାଇଁ କେତେ ସ୍ୱପ୍ନ ଦେଖିଥିଲେ । କୈଳାସ, କୁନ୍ତଳାଙ୍କ ପାଖକୁ ଆସୁଥିଲେ ଏବଂ ନୀତିବାକ୍ୟର ଆଢ଼ଟରେ ତାଙ୍କ ଆବେଗକୁ ଚକିତ କରୁଥିଲେ । ବିଶ୍ୱ ସାହିତ୍ୟର ଦାମୀନାମୀ ସାହିତ୍ୟିକଙ୍କ ଜୀବନର ସିଦ୍ଧି ଅନ୍ତରାଳରେ ଥିବା ପ୍ରେରଣା ଓ ଉତ୍ସର କାହାଣୀ କହୁଥିଲେ । ଆପଣାକୁ ପ୍ରେରଣା-ଉତ୍ସର ମାନ୍ୟତା ଦେଉଥିଲେ । ହେଲେ କୁନ୍ତଳାଙ୍କ ନାରୀମନ ଆଉ କିଛି ଖୋଜୁଥିଲା ।

କୈଳାସ ରାଓଙ୍କ ଆଦର୍ଶ, ଦର୍ଶନ ଓ ପ୍ରେରଣା ତାଙ୍କୁ କେତେ କେତେ କବିତା ଲେଖିବାର ପ୍ରେରଣା ଦେଇଥିଲା । ''ତାରାପ୍ରତି'' କବିତା ତାଙ୍କର ପ୍ରଥମ ପ୍ରକାଶିତ କୃତି । ଉତ୍କଳ ସାହିତ୍ୟର ୨୫ଶ ଭାଗ ୩ୟ ସଂଖ୍ୟା ଖ୍ରୀ ୧୯୨୨ରେ ଏହି କବିତା ପ୍ରକାଶ ପାଇଥିଲା । ପରେ ପରେ ପ୍ରକାଶପାଇଲା 'ଶେଫାଳୀ ପ୍ରତି', କମଳ ପ୍ରତି, ପୂଜା ପ୍ରଭୃତି କବିତା । ତାଙ୍କ କବି ଆତ୍ମା, ଭକ୍ତିପୂତ ହୃଦୟରେ କୈଳାସ ଚନ୍ଦ୍ରଙ୍କ ପାଦତଳେ ମଥାରଖି ଆବାହନ କରିଥିଲା –

କହ ସତେ ମୋର ଅଛି ଜଣେ ମିତ୍ର
ଅଦୃଶ୍ୟ ଅନନ୍ତ ପ୍ରେମରେ ବିଚିତ୍ର
ନିମିଷେ ନିମିଷେ ଯା ପରଶ ପ୍ରାଣେ
ନବନବ ଆଶା ପ୍ରେମ ଭକ୍ତି ଆଣେ ।

(ତାରା ପ୍ରତି-ଉଚ୍ଛ୍ୱାସ-କୁ. ଗ୍ରନ୍ଥାବଳୀ-ପୃ.୮୬)

କୈଳାସ ବାବୁଙ୍କୁ ପାଇବାପାଇଁ କୁନ୍ତଳା ଅହରହ ତପସ୍ୟା କରୁଥିଲେ । ମାତ୍ର ବିଜ୍ଞ ଡାକ୍ତର କୁନ୍ତଳାଙ୍କ ମଥାରେ ସିନ୍ଦୂର ଦେଇପାରୁ ନଥିଲେ । ନୈଷ୍ଠିକ ହିନ୍ଦୁ ଘରକୁ ଜଣେ ଖ୍ରୀଷ୍ଟିୟାନ ଯୁବତୀକି ଆଣିବା, ପୁଣି ଦ୍ୱିତୀୟ ଦାର ଭାବରେ, ଏହା ତାଙ୍କପାଇଁ ସହଜ ନଥିଲା । ଲୁଚି ଲୁଚି ସେ କୁନ୍ତଳାଙ୍କ ପାଖକୁ ଆସୁଥିଲେ । ନୀତିଶିକ୍ଷା ଦେଉଥିଲେ । ବ୍ୟକ୍ତି ପ୍ରେମରେ

ଭାସି ନଯାଇ, ଭଗବତ୍ ପ୍ରେମରେ ବୁଡ଼ିରହିବାପାଇଁ ଉପଦେଶ ଦେଉଥିଲେ। କିନ୍ତୁ କୁନ୍ତଳା ତାଙ୍କପାଇଁ ପୂଜାରିଣୀ ସାଜି ଲେଖିଥିଲେ –

ଆସହେ ଆସହେ ପ୍ରାଣର ଦେବତା ଆସହେ ହୃଦୟ ଭବନେ
ଚାହିଁ ବସିଅଛି ଆକୁଳ ପରାଣେ ପ୍ରେମ ପିପାସିତ ନୟନେ।
(ପ୍ରାର୍ଥନା-ଅଂଜଳି-କୁ. ଗ୍ରନ୍ଥାବଳୀ-ପୃ.୧୩)

ଜୀବନର ପ୍ରିୟତମଙ୍କପାଇଁ କବିଙ୍କର ହୃଦୟଲତାରେ ଫୁଲ ଫୁଟୁଥିଲା। ଅମଡ଼ାରେ ମାଡ଼ିଯିବାପାଇଁ ସେ ଚଞ୍ଚଳ ହୋଇଉଠୁଥିଲେ। କିନ୍ତୁ ଯୁବକୋତ୍ତୀର୍ଣ୍ଣ କୈଳାସ ଗମ୍ଭୀର ହୋଇ ଯାଉଥିଲେ। କୁନ୍ତଳାହିଁ ତାଙ୍କ ପ୍ରାପ୍ତ ରତ୍ନଟିଏ। ତାଙ୍କ ମନପରିବର୍ତ୍ତନପାଇଁ ସବୁବେଳେ ଚେଷ୍ଟା କରୁଥିଲେ। ସେଇ ରହସ୍ୟମୟ ପ୍ରେମିକଙ୍କପାଇଁ କୁନ୍ତଳାଙ୍କର ଉଚ୍ଛ୍ୱାସ, ଅର୍ଚ୍ଚନା ଓ ଅଂଜଳିର ସୃଷ୍ଟି। ଜୀବନରେ ଯିଏ ତାଙ୍କର ସ୍ୱପ୍ନ, ଯିଏ ତାଙ୍କର ବନ୍ଧୁ, ଯିଏ ପୁଣି ହୃଦୟର ମଣି – ସେ କେମିତି ତାଙ୍କୁ ଫାଙ୍କି ଦିଅନ୍ତେ? ତାଙ୍କରି ହୃଦୟରେ ସେ ଦେବତାଙ୍କୁ ଭେଟୁଥିଲେ। ତାଙ୍କୁ ନିବିଡ଼ ହୃଦୟରେ ଆବଦ୍ଧ କରୁଥିଲେ, ପ୍ରୀତିର ଅଂଜଳି ଭେଟି ଦେଉଥିଲେ, ହୃଦୟ ଦେବୀଙ୍କୁ କେତେ ମତେ ସଜାଉଥିଲେ। ଏମିତି ଏମିତି କଟି ଯାଉଥିଲା ବର୍ଷ, ମାସ, ଦିନ, ଦଣ୍ଡ। 'ଅଂଜଳି' କବିତା ଗ୍ରନ୍ଥର ପ୍ରତ୍ୟେକ କବିତାରେ ପ୍ରେମିକା ହୃଦୟର ବ୍ୟଥା ଫୁଟିଉଠୁଥିଲା। ସରଳ ହୃଦୟା ଯୁବତୀର କାତର ଓ ହୃଦୟଗ୍ରାହୀ କବିତାର ଧାଡ଼ିଗୁଡ଼ିକ କୈଳାସଙ୍କ ପ୍ରାଣକୁ ବାନ୍ଧିଦେଉଥିଲା। କୁନ୍ତଳା ହାତ ପାହାନ୍ତାରେ ସମ୍ମାନ, ପ୍ରସିଦ୍ଧି, ଅର୍ଥ ସବୁ ପାଉଥିଲେ। ହେଲେ, ମନର ମଣିଷକୁ ଛୁଇଁ ପାରୁ ନଥିଲେ। ନିଃସଙ୍ଗ ଜୀବନ ତାଙ୍କୁ ଖୁବ୍ କଷ୍ଟଦେଉଥିଲା। ଗଙ୍ଗାମନ୍ଦିର ଭଡ଼ାଘର ଅଗଣାର ଶେଫାଳୀ ଗଛ ଓ ତାର ଟିକିଟିକି ଫୁଲର ବାସ୍ନା ତାଙ୍କୁ ସରଗସୁଖ ଦେଉଥିଲା। କବିତା ଲେଖିଥିଲେ– ''ଶେଫାଳି ପ୍ରତି''। ଆଉ କବିତା ଯେଉଁଦିନ ପ୍ରକାଶିତ ହୋଇଥିଲା, ସେ ଆନନ୍ଦରେ ଅଧୀର ହୋଇ ବଜାରରୁ ପଚିଶ ଖଣ୍ଡ ଶାଢ଼ୀ କିଣି ଗରିବମାନଙ୍କୁ ବାଣ୍ଟିଥିଲେ। ଆଖିରୁ ଝରୁଥିଲା ଲୁହର ଧାର। ''ତୋ ଉଦ୍ଦେଶ୍ୟ ଫୁଲ ମୋ ପ୍ରାଣର ଏ ବ୍ୟଥା, ତୁ ନ ଶୁଣୁ, ଆଉ ଜଣେ ଶୁଣିବ ତ ମୋ କଥା''– ଏହି ''ଆଉ ଜଣେ'' କେବଳ ତାଙ୍କ ମନର ମଣିଷ। ଝରିଯିବାପାଇଁ ତାଙ୍କର ଜନ୍ମ ନୁହେଁ। ''ମୋହିବି ମୋ ପ୍ରାଣପ୍ରିୟ ଦେବତାଙ୍କୁ ଉଲ୍ଲାସେ'' ବୋଲି କହି ସେ ନିଜକୁ ମୁକ୍ତ କରିଥିଲେ। 'ଶେଫାଳୀ ପ୍ରତି' କବିତାକୁ ଓଡ଼ିଆ ସାହିତ୍ୟରେ ରଚିତ ପ୍ରେମ କବିତାଗୁଡ଼ିକ ମଧ୍ୟରେ ସ୍ୱତନ୍ତ୍ର ବୋଲି କୁହାଯାଇପାରେ।

ତପସ୍ୱିନୀ ଭାବରେ ଜୀବନ ବଞ୍ଚିବାକୁ କୈଳାସ ରାଓ କୁନ୍ତଳାଙ୍କୁ ଉପଦେଶ ଦେଉଥିଲେ। ସେ କିନ୍ତୁ ଦ୍ୱିଚାରିଣୀ ହେବେନାହିଁ, ନିଶ୍ଚୟ କୈଳାସଙ୍କୁ ବିବାହ କରିବେ, ଏଇ ବିଶ୍ୱାସ ତାଙ୍କ ଆତ୍ମାକୁ ଦୃଢ଼ ରଖିଥିଲା। ମାତ୍ର ପ୍ରଣୟର ପରିଣତି ଏବଂ ସାହିତ୍ୟର ଉତ୍କର୍ଷତାକୁ

କେନ୍ଦ୍ରକରି ତାଙ୍କ ଜୀବନରେ ଦ୍ୱନ୍ଦ୍ୱ ଲାଗିରହିଥିଲା। ରୋଗୀ ସେବାରେ ବୁଡ଼ିରହିବା ଫଳରେ ତାଙ୍କୁ ଟିକେହେଲେ ସମୟ ମିଳୁନଥିଲା। କୈଳାସ ରାଓ "ସତୀତ୍ୱକୁ" ନେଇ ଅନେକ କାହାଣୀ କହୁଥିଲେ ମଧ୍ୟ, ବେଳେବେଳେ ତାଙ୍କୁ ନିରାଶ କରିଦେଉଥିଲେ। ପ୍ରତ୍ୟେକ ନାରୀ ଭିତରେ ମା' ହେବାର ପ୍ରଗାଢ଼ ଇଚ୍ଛାଥାଏ। ମାତୃତ୍ୱ ତାଙ୍କୁ ପୂର୍ଣ୍ଣତାଦିଏ। ଚିକିତ୍ସିକା କୁନ୍ତଳା ମା' ହେବାପାଇଁ ଏତେ ବ୍ୟାକୁଳ ହୋଇପଡୁଥିଲେ ଯେ, ଶିଶୁଟିଏ ଦେଖିଲେ ନିଜକୁ ଆୟତ୍ତରେ ରଖିପାରୁନଥିଲେ। ୧୯୨୫ ମସିହାର ସେ ଥରେ ମଧୁପୁର କୋଠିକୁ ରୋଗୀ ଦେଖିବାକୁ ଯାଇଥିଲେ। ସେଇଠି ତାଙ୍କ ଆଖିରେ ପଡ଼ିଲା ଏକ ସୁକୁମାର କିଶୋର। ତାଙ୍କୁ ପୁଅକରି ଆଣିବାପାଇଁ ତାଙ୍କ ମାଙ୍କ ପାଖକୁ ବାରମ୍ବାର ଚିଠି ଲେଖିଲେ। ମାତ୍ର ସେ ପିଲା ବାପାମାନଙ୍କର ଗୋଟିଏ ପୁଅ ଥିଲା। ସେଦିନର ସେହି କିଶୋର, ପରବର୍ତ୍ତୀ କାଳରେ ତାଙ୍କ ଜୀବନଚରିତର ଲେଖକ ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ର। କୁନ୍ତଳା ସୁଖ ଖୋଜୁଖୋଜୁ ବାରମ୍ବାର ଜୀବନ ରାସ୍ତାରେ ଝୁଣ୍ଟୁଥିଲେ ଓ ରକ୍ତାକ୍ତ ହେଉଥିଲେ। ଆପଣା କାର୍ଯ୍ୟ ଓ କର୍ତ୍ତବ୍ୟ ପ୍ରତି ମଧ୍ୟ କ୍ରମଶଃ ବୀତସ୍ପୃହ ହୋଇପଡୁଥିଲେ।

୧୯୨୪ ମସିହାରେ ସେ କେଶବ ଚନ୍ଦ୍ର ସେନ୍‌ଙ୍କ ପ୍ରତିଷ୍ଠିତ 'ନବବିଧାନ' ବ୍ରାହ୍ମ ସମାଜର ସଭ୍ୟା ହେଲେ। ଧର୍ମାନ୍ତର, ସମସ୍ୟା ସମାଧାନ ପରିବର୍ତ୍ତେ ଅଧିକ ଘନୀଭୂତ ହେବାରେ ଲାଗିଲା। ଖ୍ରୀଷ୍ଟିୟାନ୍‌ମାନେ ତାଙ୍କ ଉପରେ ଖଡ୍ଗହସ୍ତ ହେଲେ। ଘର ଉପରକୁ ଢେଲା ଫିଙ୍ଗିଲେ। ତାଙ୍କ ବିରୋଧରେ ଭୟଙ୍କର ଷଡ଼ଯନ୍ତ୍ର କରୁଥିବାର ଖବର ମଧ୍ୟ ସେ ପାଇଲେ। ଆପଣାର ଜୀବନକୁ ବିପଦମୁକ୍ତ କରିବାଲାଗି ସେ ତତ୍‌କାଳୀନ ସିଭିଲିଆନ୍ ମାଜିଷ୍ଟ୍ରେଟ୍ ମିଷ୍ଟର ରେରଂଙ୍କ ମଙ୍ଗଳାବାଗ କୋଠାରେ ପହଞ୍ଚିଲେ ଏବଂ ଇଂରେଜୀରେ ଅନର୍ଗଳ ଭାବରେ ନିଜର ଅନୁଭବ କହିବାରେ ଲାଗିଲେ। ମାଜିଷ୍ଟ୍ରେଟଙ୍କ ସାନ୍ତ୍ୱନା ଏବଂ ଆଇନଗତ କାର୍ଯ୍ୟାନୁଷ୍ଠାନ ତାଙ୍କୁ ସଂକଟମୁକ୍ତ କରିଥିଲା। ମାତ୍ର କେତେକ ଖ୍ରୀଷ୍ଟିୟାନ୍ କର୍ମଚାରୀ ତାଙ୍କ ଉପରେ ଜୋରିମାନା କରିଲେ ଏବଂ ଷଡ଼ଯନ୍ତ୍ରକରି ଶ୍ରୀଯୁକ୍ତ କୈଳାସ ରାଓଙ୍କୁ କଟକରୁ ବାଲେଶ୍ୱରକୁ ବଦଳି କରିଦେଲେ। କୁନ୍ତଳା ସେତେବେଳକୁ ଓଡ଼ିଶାର ରେଡକ୍ରସ ବିଭାଗର ଲେଡ଼ି ହେଲଥ ଭିଜିଟର। କାର୍ଯ୍ୟପ୍ରତି ଆନ୍ତରିକତା ଓ ସେବା ମାନସିକତା, ତାଙ୍କ ଉପରିସ୍ଥ କର୍ମଚାରୀମାନଙ୍କୁ ଆଶ୍ଚର୍ଯ୍ୟ କରୁଥିଲା।

## – ଚାରି –

୧୯୨୬ ମସିହା ନଭେମ୍ବର ସତର ତାରିଖରେ କୁନ୍ତଳାଙ୍କ ଜୀବନରେ ଘଟିଯାଇଥିଲା ଦୁଃସ୍ୱପ୍ନ ପରି ଏକ ଅସ୍ୱାଭାବିକ ଘଟଣା। ବାଲେଶ୍ୱରରେ ପହଞ୍ଚି କୁନ୍ତଳା ଡାକ୍ତର କୈଳାସ ଚନ୍ଦ୍ର ରାଓଙ୍କ ଘରକୁ ଯାଇଥିଲେ ଏବଂ "ତୁଳସୀ ଭଉଣୀ, ତୁଳସୀ ଭଉଣୀ" ଡାକିଡାକି

ପଶିଗଲେ ତାଙ୍କ ରୋଷେଇ ଘର ଭିତରକୁ। କୁନ୍ତଳାଙ୍କର ଏ ସମ୍ବୋଧନକୁ ରାଓଙ୍କ ପତ୍ନୀ ତୁଳସୀ ଦେବୀ ଗ୍ରହଣ କରିପାରିଲେ ନାହିଁ। ଅଶ୍ରାବ୍ୟ ଶବ୍ଦରେ ଧିକ୍‌କାରିବାରେ ଲାଗିଲେ। ତୁଳସୀଙ୍କ ଏପରି ବ୍ୟବହାର କୁନ୍ତଳାଙ୍କୁ ଅଭିଭୂତ କରିଦେଇଥିଲା। କୈଳାସ ଅବଶ୍ୟ ଗୁଲ୍‌ବାଡ଼ି ଧରି ତୁଳସୀଙ୍କୁ ଶାସନ କରିବାକୁ ଆଗେଇ ଆସିଲେ। କୌଣସି ଦୁର୍ଘଟଣା ଘଟିବାକୁ ନଦେଇ କୁନ୍ତଳା କଟକ ଫେରିଆସିଥିଲେ।

ଘଟଣା ଘଟିବାର ପ୍ରାୟ ଚାରିମାସ ପରେ, ତା.୨୮.୦୩.୧୯୨୭ରେ କୁନ୍ତଳା ଚକ୍ରଧରଙ୍କ ପାଖକୁ ଚିଠିଟିଏ ଲେଖିଥିଲେ — "ଦୁଃଖର କୌଣସି କାରଣ ନାହିଁ। ସବୁ ମୋର ମୂର୍ଖତା। ସୁଖଦୁଃଖ ଏ ବେନିବାଣୀ, ତାହା ମୁଁ ଏକବର୍ଣ୍ଣେ ଜାଣି? ବେଶ୍ ଆଉ କି ଦୁଃଖ। ମୋର ଜୀବନ ମହତ୍, ମୋର ଲକ୍ଷ୍ୟ ଉଚ୍ଚ। ମୁଁ ତାହାର ଅନୁସରଣ କରିବି।" ପ୍ରେମିକଙ୍କ ପତ୍ନୀଦ୍ୱାରା ଅପମାନିତା କୁନ୍ତଳା ଆପଣା ଜୀବନର ଗୋପନୀୟତାକୁ ସ୍ୱୀକାରକରି ତୁଳସୀଙ୍କ ଠିକଣାରେ ଚିଠିଟିଏ ଲେଖିଥିଲେ। ଏ ସ୍ୱୀକାରୋକ୍ତି ସମ୍ଭବତଃ ତୁଳସୀଙ୍କ ନାରୀତ୍ୱକୁ ତରଳାଇ ଦେଇଥିଲା। ସେ ତାଙ୍କୁ ବାଲେଶ୍ୱର ଡକେଇ ନେଇଥିଲେ। ତାଙ୍କ ମଥାରେ ସିନ୍ଦୂର ପିନ୍ଧାଇଥିଲେ। ହାଣ୍ଡି ଓ ଦିଅଁ ଛୁଆଁଇଥିଲେ। ଗୋଟିଏ ଥାଳିରେ ଦୁହେଁ ଖାଇଥିଲେ। ଉଭୟଙ୍କ ଭିତରେ ଥିବା ଯୋଜନ ଯୋଜନ ବ୍ୟାପି ଦୂରତ୍ୱ ସେଇ ମୁହୂର୍ତ୍ତରେ ଲିଭିଯାଇଥିଲା।

ଖୁସି ମନରେ କଟକ ଫେରିଲା ପରେ କୁନ୍ତଳା ତାଙ୍କ ବସାଘର ବଦଳେଇ ଦେଲେ। ତେଲେଙ୍ଗା ବଜାରର ପୁରୀଘାଟ ପାଖରେ ଏକ ଦୋମହଲା ଘର ଭଡ଼ାନେଲେ। ଏଇ ଘର ଥିଲା ଓଡ଼ିଶାରେ ତାଙ୍କ ଶେଷ ବିଶ୍ରାମସ୍ଥଳ। ଘରଭଡ଼ା ସରକାର ଦେଉଥିଲେ, କାରଣ ତାହା ଥିଲା ରେଡକ୍ରସ୍ ସୋସାଇଟିର ସ୍ୱାସ୍ଥ୍ୟକେନ୍ଦ୍ର। ଦିନର କାର୍ଯ୍ୟବ୍ୟସ୍ତତା ପରେ କୋଠା ଉପରେ ଯାଇ ଘଣ୍ଟା ଘଣ୍ଟା ବସୁଥିଲେ, ଆଖିରେ ପଡୁଥିଲା ଦୂରର ଦେବୀଦ୍ୱାର, ସପ୍ତଶଯ୍ୟା, ନରାଜ, ସପ୍ତେଶ୍ୱର, ପଟିଆ, ବିଡ଼ାନାସି। ନିଜେ ସାହିତ୍ୟ ଅନୁଷ୍ଠାନଟିଏ ଗଢ଼ିଲେ। ନାଁ ଦେଲେ ''ଭାରତୀ ତପୋବନ'' (୧୯୨୭)। ଏତେ କାର୍ଯ୍ୟବ୍ୟସ୍ତତା ଭିତରେ ବୁଡ଼ି ରହୁଥିଲେ ମଧ ଅତୀତକୁ ସେ ଭୁଲି ପାରୁନଥିଲେ। ବିବାହ କରିବାପାଇଁ ବ୍ୟାକୁଳ ହେଉଥିଲେ। ଆଖି ଲୁହରେ ବିଛଣା ଭିଜୁଥିଲା; ମାତ୍ର କେହି ବୋଲି କେହି ଆସୁନଥିଲେ ତାଙ୍କ ପାଖକୁ।

୧୯୨୮ ମସିହା ମାର୍ଚ୍ଚ ମାସ ତେର ତାରିଖ। ତାଙ୍କ ଜୀବନରେ ଆଉ ଏକ ସ୍ମରଣୀୟ ଦିନ। ସୂତାହାଟରେ ଏକ ଗରିବ ଖ୍ରୀଷ୍ଟିୟାନ ପରିବାର ବିଭାଘର ଉତ୍ସବକୁ ସେ ଯାଇଥିଲେ। କେଜାଣି କାହିଁକି ମନ କହୁ ନ ଥିଲେ ବି, ଦେହରେ ସେ ଛାଇହେଇଥିଲେ ବୋଝେ ଅଳଙ୍କାର। ମାତ୍ର 'ଉତ୍ସବର ଅନ୍ୟ ଅତିଥିମାନେ ଥିଲେ ଖୁବ୍ ସାଧାରଣ। ଏ ବିଚିତ୍ର ବେଶଭୂଷାକୁ ଦେଖି ବୁଢ଼ାବୁଢ଼ୀମାନେ ପରିହାସରେ ପୋତି ପକେଇଲେ ତାଙ୍କୁ। ତାଙ୍କ ବୟସ୍କା ଦେହର

ଅଭେଲାପଣକୁ ଛିଗୁଲେଇଲେ ଏବଂ ସେ ନବବଧୂକୁ ଦାମୀ ସୁନାହାରଟିଏ ଉପହାର ଦେଇ ସେ ଫେରି ଆସିଥିଲେ ବସା ଘରକୁ। ଲାଜ ଓ ଅପମାନରେ ରାତିସାରା କାନ୍ଦୁଥିଲେ। ଜୀବନର ଭାବପ୍ରବଣ ମୁହୂର୍ତ୍ତଗୁଡ଼ିକ ତାଙ୍କୁ କେଜାଣି କାହିଁକି ମହାଭ୍ରମ ପରି ବୋଧହେଲା।

ଜୀବନ ବଞ୍ଚିବାପାଇଁ ନିର୍ଭରଯୋଗ୍ୟ ଅବଲମ୍ବନଟିଏ ଖୋଜୁଥିବା ବେଳେ ସମ୍ବାଦ ପତ୍ର 'ସମାଜ'ରେ ପ୍ରକାଶିତ ଏକ ବିଜ୍ଞାପନ, ତାଙ୍କ ମନରେ ଆଶାସଞ୍ଚାର କରିଥିଲା। ସେଥିରେ ''ବିଧର୍ମୀ, ଅରକ୍ଷଣୀୟ ଓ ଦଳିତ ନାରୀ ଜାତିର ଜନୈକ ସେବକ'' ଶ୍ରୀ କେ.ପି. ବ୍ରହ୍ମଚାରୀ ବାଚସ୍ପତି ଶାସ୍ତ୍ରୀ, ଓଡ଼ିଶା ଆସୁଛନ୍ତି ବୋଲି ସମ୍ବାଦ ପ୍ରକାଶ ପାଇଥିଲା। ବ୍ରହ୍ମଚାରୀ ମହାତ୍ମା ତାଙ୍କ ଦୁଃଖ ବିମୋଚନର ସାହାଯ୍ୟ କରିପାରିବେ ବୋଲି ସେ ଅନୁଭବକଲେ। ଚିଠି ଲେଖିବାକୁ ଚାହିଁଲେ। ମାତ୍ର ଅନ୍ୟ ଜଣେ ଅପରିଚିତ ପାଖକୁ ଚିଠି ଦେବାକୁ ତାଙ୍କ ବିବେକ ବାଧାଦେଲା। ସଂସ୍କାରକ ବୈରାଗୀ ମିଶ୍ରଙ୍କଦ୍ୱାରା ଚିଠି ଲେଖି, କିଛି ଦିନ ପରେ ଉତ୍ତର ପାଇଲେ। ମାତ୍ର ଚିଠିରେ ସନ୍ତକ ଥିଲା କୋଉ ଜଣେ ଜ୍ୱାଲାପ୍ରସାଦଙ୍କର। ଚିଠି ଦିଆ ନିଆ ଚାଲିଲା ଏବଂ ଦିନେ ରବିବାର ସକାଳେ ଖଦଡ଼ ପ୍ୟାଣ୍ଟ ଓ କୋର୍ଟ ପିନ୍ଧା ଜଣେ ଯୁବକ ପହଞ୍ଚିଗଲେ ତାଙ୍କ ଘରେ। ସେ ଓଡ଼ିଆରେ କଥା କହୁନଥିଲେ। ତାଙ୍କ ଭାଷା ଥିଲା ହିନ୍ଦୀ, ଉର୍ଦ୍ଦୁ ଓ ଇଂରାଜୀ ଭାଷାର ବିଚିତ୍ର ଖେଚୁଡ଼ି। ଅଶୁଦ୍ଧ ଭାବରେ ଓ କର୍କଶ ସ୍ୱରରେ ସେ ବେଦର ସ୍ତୋତ୍ର ମଧ ଉଚ୍ଚାରଣ କରୁଥିଲେ। ତାଙ୍କ ସାନ୍ନିଧ କୁନ୍ତଳାରୁ ''ଚାତକୀଙ୍କୁ ବର୍ଷାବିନ୍ଦୁ'' ପରି ବୋଧ ହେଲା। ବ୍ରହ୍ମଚାରୀ ତାଙ୍କପାଇଁ ହେଲେ ଶ୍ରୀକୃଷ୍ଣ, ଭଗବାନ, ତ୍ରାଣକର୍ତ୍ତା, ସବୁକିଛି। ସେ ରାଧାମନସ୍କା ହୋଇପଡ଼ିଥିଲେ ଏବଂ କବିତାରେ ଲେଖୁଥିଲେ –

ପଥ ମଝିରେ କୃଷ୍ଣ ଦେଖା ଆଉ ନଯିବି ବୃନ୍ଦାବନେ
ଏବେ ମନମୋହନ ଶ୍ୟାମଘନଭାବେ ହୃଦ ସିଂହାସନେ
ପଥ ଧୂଳି ହେବି ବୋଲି
ମଥାରେ ମୁଁ ନେବି ତୋଳି
ଲୋଟିଛି ଶ୍ରୀକୃଷ୍ଣ ବୋଲି ଧୂଳି ଶେଯେ ଅଯତନେ।

ତାଙ୍କୁ ଭାବି ଭାବି କବିତା ଲେଖି ଚାଲିଲେ। ଭଲ ପାଇବାର କବିତା। କବିତାଗୁଡ଼ିକ ପ୍ରକାଶପାଇଲେ ଅପବାଦର ଭୟ। ମାତ୍ର ସେ ଲେଖୁଥିଲେ। କେ.ପି. ବ୍ରହ୍ମଚାରୀ କଥା ଦେଇଥିଲେ, ତାଙ୍କୁ ଆର୍ଯ୍ୟ ସମାଜଭୁକ୍ତ କରି କୈଳାସ ରାଓଙ୍କ ସହିତ ବିବାହ କରିଦେବେ। କୈଳାସ ମଧ କୁନ୍ତଳାଙ୍କୁ ବିବାହ କରିବେ ବୋଲି ଇଚ୍ଛା ପ୍ରକାଶ କରିଥିଲେ।

କେ.ପି. ବ୍ରହ୍ମଚାରୀଙ୍କ ବର୍ତ୍ତମାନ କୁନ୍ତଳାଙ୍କୁ ଅନ୍ୟମନସ୍କ କରି ଦେଉଥିଲା। ଡାକ୍ତରୀ କାମରେ ତାଙ୍କର ମନ ଲାଗୁ ନଥିଲା। ଡାକ୍ତରଖାନା ବି ଯାଉନଥିଲେ। ବ୍ରହ୍ମଚାରୀଙ୍କ ସେବା

କରୁଥିଲେ ଏବଂ ତାଙ୍କୁ ପ୍ରଶଂସାକରି କୈଳାସ ରାଓ ଓ ଅନ୍ୟମାନଙ୍କ ପାଖକୁ ଚିଠି ଦେଉଥିଲେ। ବ୍ରହ୍ମଚାରୀ ଉପାଧିଧାରୀ ମଣିଷଟି ଯେ ଜଣେ ପ୍ରତାରକ, ମୂର୍ଖ ଓ ଭ୍ରଷ୍ଟ-ଏକଥା ଅନ୍ୟମାନେ ଯେତେ କହିଲେ ମଧ୍ୟ, କୁନ୍ତଳା ଜମା ବିଶ୍ୱାସ କରୁନଥିଲେ। ମା ତାଙ୍କର ଯେତେ ଚେଷ୍ଟା କଲେ ମଧ୍ୟ କୁନ୍ତଳାଙ୍କୁ ଠିକ୍‌ବାଟକୁ ଆଣି ପାରିନଥିଲେ। କଥା ହେଲା, କୁନ୍ତଳା, କୈଳାସ ରାଓ ଏବଂ ବ୍ରହ୍ମଚାରୀ, ତିନିହେଁ ଦିଲ୍ଲୀ ଯିବେ। କୁନ୍ତଳା ଧର୍ମଭାଇ ବ୍ରହ୍ମଚାରୀଙ୍କ ସହିତ କୈଳାସ ରାଓଙ୍କ ଚାକିରି ଜାଗା ଘଟଶୀଳ ଆସିଥିଲେ। ହେଲେ ବ୍ରହ୍ମଚାରୀଙ୍କ ବ୍ୟକ୍ତିତ୍ୱ ସଂପର୍କରେ ସଚେତନ କୈଳାସରାଓ ଦିଲ୍ଲୀ ଗଲେ ନାହିଁ। ଛୁଟିନେଇ ପରେ ଯିବାକୁ କଥା ଦେଲେ। ବ୍ରହ୍ମଚାରୀଙ୍କ ସହିତ ୧୯୨୮ ମସିହା ଜୁଲାଇ ମାସର ଏକ ବର୍ଷୁକୀ- ଅପରାହ୍ନରେ କୁନ୍ତଳା ଓଡ଼ିଶା ଛାଡ଼ିଲେ।

## – ପାଞ୍ଚ –

କୁନ୍ତଳା କୁମାରୀ ଦିନେ କହୁଥିଲେ – "ମୁଁ ଉତ୍କଳ କ'ଣ, ଭାରତ ଭାରତୀ ହେବି। ଦିଲ୍ଲୀ ମୋର ହେଡ୍‌କ୍ୱାଟରର୍ସ ହେବ।" ସେ ସତକୁ ସତ ଦିଲ୍ଲୀଗଲେ। ଓଡ଼ିଶାର ରେଡ୍‌କ୍ରସ ସଂସ୍ଥାରେ କରିଥିବା ଚାକିରିକୁ ଛାଡ଼ିଦେଲେ। ସଂସାର ବାନ୍ଧିବାର ଆଶା ନେଇ ଆର୍ଯ୍ୟ ସମାଜଭୁକ୍ତ (୧୯୨୮) ହେଲେ। ମାତ୍ର ଧର୍ମାନ୍ତରୀ ହେଲାପରେ ସେ ଯେ ବ୍ରହ୍ମଚାରୀଙ୍କ ଚକ୍ରାନ୍ତର ଶିକାର ହୋଇଛନ୍ତି, ଏ କଥା ଅନୁଭବ କରିଥିଲେ। ବେଦରେ ବହୁ ବିବାହକୁ ସ୍ୱୀକୃତି ଦିଆଯାଇ ନଥିବା କଥା ଜାଣିଲା ପରେ କୈଳାସ ରାଓଙ୍କୁ ବିବାହ କରିବାର ବିଶ୍ୱାସ ହରେଇଲେ ଏବଂ ଶେଷରେ ୧୯୨୮ ମସିହା ଅଗଷ୍ଟ ଆଠ ତାରିଖରେ, ବୈଦିକ ରୀତିରେ ସେ ବିବାହ କଲେ କୃଷ୍ଣ ପ୍ରସାଦ ବ୍ରହ୍ମଚାରୀ, 'ପ୍ରେମଚିନ୍ତାମଣି' କାବ୍ୟର ନାୟକ କୃଷ୍ଣଙ୍କୁ।

କୁନ୍ତଳା ଏମିତି ଏକ ଜୀବନ ବାଛିନେବେ ବୋଲି କୈଳାସ ରାଓ କଳ୍ପନା କରିନଥିଲେ। ସଂସାରୀ ଓ ବୟସ୍କ ପ୍ରେମିକ, ମାନସିକ ସନ୍ତୁଳନରେ ଘାରି ହେଉଥିଲେ। କୁନ୍ତଳାଙ୍କ ଜୀବନରୁ ସେ ଦୂରେଇ ଯାଇଥିଲେ ଆପଣା ଛାଏଁ। ମାତ୍ର ଭୁଲି ପାରୁନଥିଲେ ସରଳା କୁନ୍ତଳାଙ୍କ ଅକୃତ୍ରିମ ଓ ସମର୍ପଣୀ ଜୀବନଚର୍ଯ୍ୟାକୁ।

ବ୍ରହ୍ମଚାରୀ, ବିବେକୀ, ଜ୍ଞାନୀ, ବେଦବିଶାରଦ ବହୁଶାସ୍ତ୍ରୀ ଆଦି କେତେକେତେ ବିଶେଷଣରେ ନିଜ ପରିଚୟ ଦେଉଥିବା କେ.ପି. ବ୍ରହ୍ମଚାରୀ ସତରେ ଯେ ସେଇଆ ନଥିଲେ, ଏକଥା ଜାଣିବାକୁ କୁନ୍ତଳାଙ୍କୁ ବେଶିଦିନ ଲାଗି ନଥିଲା। ଚାରିଫୁଟ ଛ' ଇଞ୍ଚ ଉଚ୍ଚତା, ରୋଗିଣା, କୋରଡ଼ଆଖିଆ ମଣିଷ କୃଷ୍ଣ ପ୍ରସାଦ ଦାସ କେନ୍ଦ୍ରାପଡ଼ାର ନସଡ଼ିପୁରର ଯେ ଏକ ଭଣ୍ଡ, ଏକଥା ସେ ଜାଣି ପାରିଥିଲେ। ଲେଖାଲେଖିରେ ସେ ଅଧିକ ସମୟ ଦେଇପାରୁ ନଥିଲେ। ଡାକ୍ତରୀ କାମ କରୁ କରୁ ବେଳ ଅଣ୍ଟୁ ନଥିଲା। ମନ ବି ଭଲ ରହୁ ନଥିଲା। ଆୟ ଅବଶ୍ୟ ବଢ଼ିଥିଲା।

ମାତ୍ର ଟଙ୍କା ସ୍ୱାମୀଙ୍କ ହାତରୁ ଆଉ କୁଆଡ଼େ ଚାଲି ଯାଉଥିଲା। ଆର୍ଥିକ ସ୍ଥିତି, ସ୍ୱାମୀଙ୍କ ନିର୍ଯ୍ୟାତନା ତାଙ୍କ ଜୀବନର ସବୁଜ ସ୍ୱପ୍ନକୁ ଧୂସର କରିଦେଇଥିଲା। ଶାରୀରିକ ଓ ମାନସିକ ସ୍ତରରେ ସେ ଖୁବ୍ ଦୁର୍ବଳ ହୋଇ ପଡୁଥିଲେ। ମଝିରେ ମଝିରେ ବ୍ରହ୍ମଚାରୀ ଓଡ଼ିଶା ଆସି ଯେକୌଣସି ଉପାୟରେ ଜେଲ୍ ଯାଇ ଦେଶସେବକ ହେବାର ଚେଷ୍ଟା କରୁଥିଲେ। ପୁରୀର କଂଗ୍ରେସ ଅଧିବେଶନରେ ବନ୍ଦୀହୋଇ ସେ ଅବଶ୍ୟ ଜେଲ୍ ଯାଇଥିଲେ। ମାତ୍ର ଜେଲ୍ ଭିତରେ ପାଗଳଙ୍କ ପରି ପ୍ରଳାପ କରୁଥିଲେ, ମୁକୁଳିବାପାଇଁ ବାଟ ଖୋଜୁଥିଲେ।

ଦିଲ୍ଲୀରେ କୁନ୍ତଳା ଜଣେ ଅଲଗା ମଣିଷ ହୋଇଯାଇଥିଲେ। ସାହିତ୍ୟିକ ଜୀବନର ଉଷା କାଳରେ ତାଙ୍କ ବ୍ୟକ୍ତିକ ପ୍ରେମାନୁଭୂତି, ପ୍ରାକ୍-ପୌଢ଼ତ୍ୱରେ ଜାତି-ପ୍ରୀତିରେ ରୂପାନ୍ତରିତ ହୋଇଥିଲା। ତାଙ୍କ ଜାତୀୟବାଦୀ ଚେତନାର ଅନ୍ୟତମ ଉଦ୍‌ଗାନ ''ସ୍ଫୁଲିଙ୍ଗ'' (ମାର୍ଚ୍ଚ ୧୯୩୦) ପୁସ୍ତିକାକୁ ସେ ଦେଶର ତରୁଣ-ତରୁଣୀଙ୍କୁ ଉତ୍ସର୍ଗ କରିଥିଲେ। ମଣିଷ ଭାଇ, ଅଭିଶପ୍ତର ଅଭିମାନ, ନାରୀ ଶକ୍ତି ଓ ତରୁଣର ଆବାହନ ଆଦି କବିତା ତାଙ୍କ ଦେଶପ୍ରୀତିର ଗୋଟିଏ ଗୋଟିଏ ଚମତ୍କାର ଉଦାହରଣ। ଉପର୍ଯ୍ୟୁକ୍ତ କବିତାଗୁଡ଼ିକରେ ଜାତିର ମହାସ୍ରୋତରେ ବୁଦ୍ ବୁଦ୍ ପରି ଜୀବନକୁ ସମର୍ପିତ କରିଦେବାଲାଗି ସେ ଯୁବଶକ୍ତିକୁ ଆହ୍ୱାନ ଦେଇଥିଲେ। ତାଙ୍କରି ଭାଷାରେ ''ଜାଣେ ଏ ଜୀବନ ନୁହେଁ ଜଳର ବୁଦ୍‌ବୁଦ / ନିତି ନବ କର୍ତ୍ତବ୍ୟରେ ହେବି ମୁଁ ଉଦ୍‌ବୁଦ୍ଧ।''

ବାପୁଜୀଙ୍କ ଜୀବନବୋଧ ତାଙ୍କୁ ଏତେ ମାତ୍ରାରେ ପ୍ରଭାବିତ କରିଥିଲା ଯେ, ସେ ଖଦଡ଼ ପିନ୍ଧୁଥିଲେ, ଅସହାୟମାନଙ୍କର ସେବା କରୁଥିଲେ, ଉପାର୍ଜିତ ଅର୍ଥ ବି ଅସହାୟମାନଙ୍କ ଭିତରେ ବାଣ୍ଟି ଦେଉଥିଲେ। ୧୯୩୦ରେ ପ୍ରକାଶିତ ''ଆହ୍ୱାନ'' କବିତାରେ ସେ ମହାନାୟକ ବାପୁଜୀଙ୍କୁ ସେନାପତି ବୋଲି ସମ୍ବୋଧନ କରିଥିଲେ। ଦିଲ୍ଲୀରେ ରହିଲେ ମଧ୍ୟ ଓଡ଼ିଆମାନଙ୍କ ଉନ୍ନତି ତାଙ୍କର ଏକମାତ୍ର ଚିନ୍ତା ଥିଲା। ଦିଲ୍ଲୀ ଚିଠି (୧ମ, ୨ୟ, ୩ୟ, ୪ର୍ଥ, ୫ମ, ୬ଷ୍ଠ, ୭ମ ଓ ୮ମ)ରେ ସେ ଓଡ଼ିଆମାନଙ୍କପାଇଁ ଯେ କେତେ ବ୍ୟାକୁଳ ଥିଲେ, ତାହା ସ୍ପଷ୍ଟ ଭାବରେ ଜଣାପଡୁଥିଲା। ସେ ଲେଖିଥିଲେ ''ଅନ୍ୟ ଜାତିର ଯାହା ଅଛି, ତୁମରତ ତା ସବୁ ଅଛି, ବରଂ ତାହାଠୁ ବେଶି ଅଛି। ମାତ୍ର ନାହିଁ ତୁମର ଆତ୍ମ ବିଜ୍ଞାପନ କ୍ଷମତା, ତୁମେ ଦାଣ୍ଡ ହାଟରେ ଗାଇ ଜାଣନା। × × × ଏ ଜଗତରେ ମୁହଁ ଲୁଚାଇ ନୂଆ ବୋହୂ ହୋଇ କବାଟ କଣ, ହାଣ୍ଡିଶାଳ ଆବୁଡ଼ି ବସିଲେ ତୁମ ରୂପରେଖ ସେହି ଧୂଆଁ ନିଆଁରେ ଶୁଖିବ, ସଢ଼ିବ। କିଏ ତୁମକୁ ପଚାରି ଯିବ ଯେ? ତୁମ କଳା, ବିଜ୍ଞାନ ସାହିତ୍ୟ, ରାଜନୀତି, ସମାଜନୀତି, ଅତୀତ ବର୍ତ୍ତମାନ ଦୁନିଆର ଯାଏ କେତେ, ଆସେ କେତେ? (ଦିଲ୍ଲୀ ଚିଠି : ୧)

ଉତ୍କଳର ତରୁଣମାନଙ୍କର ଦୁଃଖର କାନ୍ଦଣାକୁ ସେ ସ୍ୱୀକାର କରିପାରି ନଥିଲେ। ସିଂହ ବାହିନୀର ତେଜ ନେଇ ବୀର ବିକ୍ରମରେ ଜାଗ୍ରତ ହେବାକୁ ଉଦ୍‌ବୋଧନ ଦେଇଥିଲେ। ''ଅତଏବ ଓଡ଼ିଆ ପୁଅ, ମେଦିନୀପୁରକୁ ହାତରୁ ଯିବାକୁ ଦିଅନାହିଁ। ଏଥର ଦେଶ ମିଶ୍ରଣ

ଜମିଟି ଯଦ ତୁମକୁ ମେଦିନୀପୁର ନ ଦେବେ, ତଥାପି ଆଶା ହରାଅ ନାହିଁ। ପୁଣି ନବ ବଙ୍ଗରେ ଜାଗିଉଠ (ଦିଲ୍ଲୀ ଚିଠି : ୬ ଦୃ ୪୮୯) ଓଡ଼ିଶାର ଭାଇଭଉଣୀଙ୍କୁ ସେ 'ବୀର' ନାମରେ ନାମିତ କରିଥିଲେ। ''ଏହି ବୀର ନାମ ଘେନି ବୀର ବ୍ରତରେ ବ୍ରତୀ ହୋଇ ବୀରଶ୍ରୀ ଦେଶର ବୀର ସନ୍ତାନରୂପେ ଯୁଗେ ଯୁଗେ ଜଗତରେ ନିଜ ଜାତୀୟତା ଓ ରାଷ୍ଟ୍ରିୟତାର ବିଜୟବାନା ଟେକିଧର, ଦେଶର ମହାମଙ୍ଗଳ ମିଳନର ପରମ ମୁହୂର୍ତ୍ତରେ ମୋର ଏହିଶୁଭ କାମନା (ଦିଲ୍ଲୀ ଚିଠି : ୮)

ଦିଲ୍ଲୀରେ ସାହିତ୍ୟ ପତ୍ରିକା ଓ ସାହିତ୍ୟ ପରିଷଦ ବ୍ୟତୀତ ବହୁ ସାଂସ୍କୃତିକ ଅନୁଷ୍ଠାନ ସହିତ କୁନ୍ତଳା ଜଡ଼ିତ ହୋଇପଡ଼ିଲେ। ୧୯୩୦ ମସିହା ଡିସେମ୍ବର ୨ ତାରିଖ ଦିନ ଅନୁଷ୍ଠିତ 'ଗୁରୁକୁଳ ବୃନ୍ଦାବନ'ର ଷଡ଼ବିଂଶତମ ବାର୍ଷିକ ଉତ୍ସବରେ ସେ ସଭାପତିତ୍ୱ କରିଥିଲେ ଏବଂ ''ବିଂଶ ଶତାବ୍ଦୀର ଭାରତୀୟ ନାରୀ'' ଶୀର୍ଷକ ପ୍ରବନ୍ଧ ପାଠ କରିଥିଲେ। ଆର୍ଯ୍ୟ ସମାଜର ମହିଳା ଶାଖାର ସେ ମଧ ସଭାପତି ଥିଲେ ଏବଂ ବରେଲି ସମ୍ମିଳନୀରେ ସେ ''ନାରୀ ସ୍ୱରାଜ୍ୟ'' ସଂପର୍କରେ ଏକ ଚିନ୍ତା-ଉଦ୍ରେକକାରୀ ଭାଷଣ ପ୍ରଦାନ କରିଥିଲେ। ଏହି ଭାଷଣ ମାସିକ ପତ୍ରିକା 'ଚାନ୍ଦ'ର ୧୯୩୨ ମସିହା ମଇ ମାସ ସଂଖ୍ୟାରେ ପ୍ରକାଶ ପାଇଥିଲା। ''ହିନ୍ଦୀ ସାହିତ୍ୟ ସଭାର'' ଉପ ସଭାପତି ଏବଂ ନାଟ୍ୟ ପରିଷଦର ସଭାପତି ହେବାର ସମ୍ମାନ ମଧ ସେ ପାଇଥିଲେ। କେବଳ ସାହିତ୍ୟ ନୁହେଁ, ଭାରତର ସାମାଜିକ ଓ ରାଜନୀତିକ ଆନ୍ଦୋଳନ ସହ ସେ ନିବିଡ଼ ଭାବରେ ସଂପୃକ୍ତ ହୋଇଥିଲେ। ୧୯୩୧ ମସିହାରେ କରାଚୀରେ ଅନୁଷ୍ଠିତ ଜାତୀୟ କଂଗ୍ରେସର ଅଧିବେଶନରେ ସେ ଯୋଗ ଦେଇଥିଲେ ଏବଂ ୧୯୩୨ ମସିହାରେ ଅନୁଷ୍ଠିତ "ଆର୍ଯ୍ୟ ମହିଳା ମହା ସମ୍ମିଳନୀ"ରେ ତାଙ୍କ ପ୍ରଦତ୍ତ ସଭାପତି ଅଭିଭାଷଣ ଏତେ ମାତ୍ରାରେ ସ୍ୱତନ୍ତ୍ର ଓ ବୈପ୍ଲବାତ୍ମକ ଥିଲା ଯେ, ଇଂରେଜ ସରକାର ତାଙ୍କୁ ବନ୍ଦି କରିବାପାଇଁ ସିଦ୍ଧାନ୍ତ ନେଇଥିଲେ। ଗିରଫ ପରୱାନା ଧରି ପୋଲିସ ତାଙ୍କ ଘରକୁ ବି ଯାଇଥିଲେ। ମାତ୍ର ଚିକିତ୍ସିକା ବୃତ୍ତି ହିଁ ତାଙ୍କୁ ଜେଲ୍ ଯାତ୍ରାରୁ ମୁକୁଳେଇ ଆଣିଥିଲା ଏବଂ, ସେପ୍ଟେମ୍ବର ମାସ ୧୦ ତାରିଖରେ ପୁରୀର ମୁକ୍ତିମଣ୍ଡପ ସଭା ତାଙ୍କୁ ଉତ୍କଳ ଭାରତୀ ସମ୍ବୋଧନ ସହିତ ସମ୍ମାନିତ କରିଥିଲା।

କୁନ୍ତଳା କୁମାରୀ ଜଣେ ନାରୀ ଥିଲେ। ଭାରତୀୟ ଥିଲେ। ମାତ୍ର ସମକାଳୀନ ନାରୀମାନଙ୍କ ମଧ୍ୟରୁ ତାଙ୍କ ବିଚାର ବହୁ ଦୃଷ୍ଟିରୁ ସ୍ୱତନ୍ତ୍ର ଥିଲା। ଆଧୁନିକ ଅର୍ଥରେ ଆମେ ତାଙ୍କୁ ନାରୀମୁକ୍ତି ବିଚାରର ଜାହ୍ନବୀ ଭାବରେ ସ୍ୱୀକାର କରିପାରିବା। ମାତ୍ର ନାରୀମୁକ୍ତି ସଂକ୍ରାନ୍ତ ତାଙ୍କ ବିଚାର ଗାନ୍ଧିଜୀଙ୍କ ଦର୍ଶନର ଅନୁରୂପ। ତେଣୁ ଜଣେ ଶୃଙ୍ଖଳାବଦ୍ଧ ନାରୀ, ମୁକ୍ତି ଆନ୍ଦୋଳନରେ ଆପଣାକୁ ଯେ ସଂପୂର୍ଣ୍ଣ ଭାବରେ ସମର୍ପଣ କରିପାରିବ, ଏ ସଂପର୍କରେ ସେ ସନ୍ଦେହ ପ୍ରକଟ କରୁଥିଲେ। ଥରେ ସେ ଲେଖିଥିଲେ– ''ମୁଁ ଯେ ପର୍ଯ୍ୟନ୍ତ ମୁକ୍ତ ନୁହେଁ, ମୁଁ

କାହାରିକି ମୁକ୍ତିର ବାଣୀ, ଉତ୍ସାହରେ ଆଶାର ସଂଜୀବନୀ ମନ୍ତ୍ର ଶୁଣାଇ ପାରିବିନାହିଁ।'' ତାଙ୍କ ବିଚାର ଅନେକଙ୍କୁ ଆଶ୍ଚର୍ଯ୍ୟ କରିଥିଲା। ରାଜନୀତି ପ୍ରତି ମଧ ସେ ମୁଖ୍ୟତଃ ବୀତସ୍ପୃହ ହୋଇ ପଡ଼ୁଥିଲେ। ପୃଥିବୀରେ ଯୁଦ୍ଧ, ରକ୍ତପାତର ଶେଷ ହେବନାହିଁ ବୋଲି ସେ ଅନୁଭବ କରୁଥିଲେ। ରାଜନୀତି ବା ସାମ୍ରାଜ୍ୟବାଦର ନିର୍ମୂଳୀକରଣ କ୍ଷେତ୍ରରେ ଭାରତୀୟ ଜାତୀୟ କଂଗ୍ରେସର ଭୂମିକାକୁ ସେ ସଂଶୟ ଦୃଷ୍ଟିରେ ଦେଖୁଥିଲେ। ବାପୁଜୀଙ୍କ ''ହରିଜନ'' ଆନ୍ଦୋଳନକୁ ମଧ ସେ ଅନ୍ତରରେ ସ୍ୱୀକାର କରିପାରୁ ନଥିଲେ। ଭାରତୀୟ ସମାଜରେ ଧର୍ମୀୟ ବ୍ୟବସ୍ଥା ପ୍ରତି ତାଙ୍କର ମଧ ଆସ୍ଥା ନଥିଲା। ଧର୍ମ, ସୁବିଧାବାଦୀମାନଙ୍କ ସଂକୀର୍ଣ୍ଣ ମାନସିକତାର ସୁଦୃଶ୍ୟ ଖୋଳପା ବୋଲି ସେ ବିଚାର କରୁଥିଲେ। ଏହା ବ୍ୟକ୍ତି ଜୀବନର ମୁକ୍ତି ପରିବର୍ତ୍ତେ ବରଂ ଅଧୋଗତିର କାରଣ ଥିଲା। ତେଣୁ କୁନ୍ତଳାକୁମାରୀ କୌଣସି ନିର୍ଦ୍ଦିଷ୍ଟ ଧର୍ମର ବିଚାରକୁ ଯେ ଅନ୍ତରରେ ସ୍ୱୀକାର କରିଥିଲେ, ଏକଥା କୁହାଯାଇ ନପାରେ। ସେ ଥିଲେ ମାନବବାଦୀ। ଆନୁଷ୍ଠାନିକ ଧର୍ମୀୟ ବ୍ୟବସ୍ଥାକୁ ଗ୍ରହଣ କରିପାରୁ ନଥିବା ଏକ ମୁକ୍ତ ଚେତନା।

ସେ ନାରୀଶିକ୍ଷା ବ୍ୟବସ୍ଥା ପ୍ରତି ଏତେ ମାତ୍ରାରେ ଆସ୍ଥାଶୂନ୍ୟ ହୋଇ ପଡ଼ିଥିଲେ ଯେ, ନିଜ ଦୁଇ ଝିଅଙ୍କପାଇଁ ଆନୁଷ୍ଠାନିକ ଶିକ୍ଷାଦାନର ବ୍ୟବସ୍ଥା କରି ନଥିଲେ। ଆଧୁନିକ ଉଚ୍ଚ ଶିକ୍ଷାର ବିରୋଧ କରୁଥିଲେ। ଥରେ ସେ ଲେଖିଥିଲେ– ଶିକ୍ଷାର ଫଳ ମୋ ଜୀବନରେ ମୁଁ ଭୋଗିଛି। ପୁରୁଷ ନାରୀର ଶରୀର ମାତ୍ରାକୁ ହିଁ ସର୍ବଶ୍ରେଷ୍ଠ ଭାବେ ବିବେଚନା କରେ। ଏହି ମୋର ଧାରଣା। କିନ୍ତୁ ସେହି ପୁରୁଷ ସ୍ୱାମୀ ହିସାବରେ ସ୍ତ୍ରୀକୁ ଧକ୍କା ଦିଏ, ଜାର (ଉପପତି) ହିସାବରେ ପ୍ରେମକରେ, ପୁଣି ତାପାଇଁ ସ୍ତ୍ରୀ ନରକ କୁଣ୍ଡରେ ପଡ଼େ। ପତ୍ନୀତ୍ୱ ନାରୀର ସର୍ବଶ୍ରେଷ୍ଠ ଧନ, ପୁଣି ସର୍ବଶ୍ରେଷ୍ଠ ସମ୍ମାନ। ବହୁତ ପାଠପଢ଼ି ନାରୀ ବେଶ୍ୟା ହେବାକୁ ଭଲପାଏ। ଆଧୁନିକ ପାଠର ଅର୍ଥ, ''ଆଧୁନିକ ସଭ୍ୟତାର ମୂଳ ଅର୍ଥ ନାରୀପାଇଁ– ବେଶ୍ୟା ହୁଅ, କିନ୍ତୁ ପୁରୁଷଙ୍କୁ ଭଲ ପାଅ। ଭାରତରେ ସାମାଜିକ ବ୍ୟବସ୍ଥା ଏପରି ଯେ, ଅଗ୍ନିରେ ପରୀକ୍ଷା ଦେଲାପରେ ମଧ ପର କଥାରେ ରାମଚନ୍ଦ୍ର ସୀତାଙ୍କୁ ବେଶ୍ୟା କହି ତଡି ଦେଇଥିଲେ। ପୁରୁଷ ପାଖରେ ସବୁ ସମ୍ଭବ। ଭାରତୀୟ ସମାଜ ବ୍ୟବସ୍ଥାର ଜାଲ ଭିତରେ ଅପବାଦ, ଲାଞ୍ଛନା, ଘୃଣା, ଦାସତ୍ୱର ଯନ୍ତ୍ରଣାରେ ଘାରି ହେଉଥିବା ନାରୀଟିକୁ ସେ ଭଲଭାବରେ ଚିହ୍ନିଥିଲେ। ପରାଧୀନ ନାରୀର ଯାବତୀୟ ସମସ୍ୟା, ତାର ଆବେଗ ଓ ବୁଦ୍ଧିକୁ ସେ ଅନୁଭବ କରିଥିଲେ ଏବଂ ବିଭିନ୍ନ ଲେଖାରେ ପ୍ରକାଶ କରିଥିଲେ।

– ଛ –

୧୯୩୭ ମସିହା ବେଳକୁ ବ୍ୟକ୍ତିକ ଓ ସାମାଜିକ ସମସ୍ୟା କୁନ୍ତଳାଙ୍କ ସୃଜନଶୀଳତାକୁ ଯେମିତି ପଙ୍ଗୁ କରି ଦେଇଥିଲା, ଦୁଇ ଝିଅଙ୍କ ପରେ ପୁଅଟିଏ କୋଳକୁ ଆସିଲା। ଅପେକ୍ଷାର

ଶେଷ ହେଲା। ମାତ୍ର ଶିଶୁର ପରମାୟୁ ଥିଲା ମାସେ ପନ୍ଦରଦିନ। ପୁଅର ବିଚ୍ଛେଦ ତାଙ୍କୁ ଅନ୍ୟମନସ୍କ କରିଦେଉଥିଲା। ଶାରୀରିକ ଅସୁସ୍ଥତା ଲାଗି ରହୁଥିଲା। ଅପମାର୍ଗୀ ସ୍ୱାମୀଙ୍କର କଟାକ୍ଷ ଦିନକୁ ଦିନ ବଢୁଥିଲା। ବଡ଼ଝିଅ ବାରମ୍ବାର ମ୍ୟାଲେରିଆରେ ପଡୁଥିଲା। ଭଗ୍ନମନ ଓ ଦେହକୁ ସଜାଡ଼ିବାପାଇଁ କୈଳାସ ରାଓଙ୍କ ଠିକଣାରେ ଚିଠି ଲେଖୁଥିଲେ। ଉତ୍ତର ପ୍ରାୟ ଆସୁନଥିଲା।

ଏତେ ଅସୁସ୍ଥ ସତ୍ତ୍ୱେ କୁନ୍ତଳା ପୁଣି ହସିଲେ– ଯେଉଁ ଦିନ ସେ ଅନୁଭବ କଲେ ତାଙ୍କ ଭିତରୁ ଆଉ ଜଣେ କିଏ ଆସୁଛି ବୋଲି– ଯାହାପାଇଁ ସେ କେବଳ ଅପେକ୍ଷା କରିଥିଲେ। ପୁଅର ଆସିବା ଆଗରୁ ତା ନାଁ 'ଜଗମୋହନ' ଦେଇଥିଲେ। ସେ ଆସିଲା–୧୯୩୮ ମସିହା ଅଗଷ୍ଟ ୨୩ ତାରିଖ ସନ୍ଧ୍ୟା ସାତଟା ବେଳେ। ନର୍ସ ମୁହଁରୁ ପୁଅ ଆସିଛି– ଖବର ଶୁଣିବା ମାତ୍ରେ ତାଙ୍କ ମୁହଁରୁ ଆନନ୍ଦ ଓ ପରିତୃପ୍ତିର ହସ ଝରି ପଡ଼ିଲା। ସେ ଚେତାଶୂନ୍ୟ ହୋଇ ପଡ଼ିଲେ ଏବଂ ପାଖରେ ଥିବା ମୂର୍ଖ ସ୍ୱାମୀ ବ୍ରହ୍ମଚାରୀ ଇନ୍‌ଟ୍ରାଭେନ୍‌ସ ଇଂଜେକ୍‌ସନ ଦେଇ ସଜାଡ଼ିବାକୁ ଚେଷ୍ଟା କରିଥିଲେ ତାଙ୍କ ଦେହକୁ। ତାହାହିଁ ଥିଲା ତାଙ୍କ ଦେହ ଓ ମନପାଇଁ ଶେଷ ଔଷଧ। ଅନେକଙ୍କୁ ରୋଗମୁକ୍ତକରି ମନରେ ହସ ଫୁଟେଇଥିବା ଚିକିତ୍ସାକାରିଣୀଙ୍କ ଜୀବନ ଏମିତି ଏକ କରୁଣ ଭବିଷ୍ୟତକୁ ଯେପରି ଅପେକ୍ଷା କରିଥିଲା।

କୁନ୍ତଳା ସଂସାରରେ ଅଳ୍ପଦିନ ବଞ୍ଚିଥିଲେ। ମାତ୍ର ତାଙ୍କ ଜୀବନ ଥିଲା ଘଟଣା ବହୁଳ। ସେ ଚିକିତ୍ସିକା ଥିଲେ। କଳା ଅନୁରାଗିଣୀ ବି ଥିଲେ। ପ୍ରେମିକା ଥିଲେ, ଗୃହିଣୀ ବି ଥିଲେ। ଅଭିମାନିନୀ ଥିଲେ, ବିପ୍ଳବିଣୀ ବି ଥିଲେ। ଧନୀ ଥିଲେ, ନିର୍ଦ୍ଧନ ବି ଥିଲେ। ତାଙ୍କ ଜୀବନକୁ ଆମେ ଅବଶ୍ୟ ଅନେକ ବିରୋଧଭାବ ଆଧାର ବୋଲି କହିପାରିବା। ସବୁକାଳର ସୃଜନଶୀଳ ପ୍ରତିଭାମାନେ ହିଁ ସେମିତି। ଯେଉଁମାନେ ବୁଝିହେଲାପରି ଲାଗନ୍ତି; ମାତ୍ର ତଥାପି ବୁଝି ହୁଅନ୍ତି ନାହିଁ। କୁନ୍ତଳା କୁମାରୀ ଆମ ଭିତରେ ବଞ୍ଚିଥିବା ସେମିତି ଏକ ଦୁର୍ବୋଧ୍ୟ ନାରୀ– ଯିଏ ଆପଣାର ପ୍ରେମ ଭିତରେ ପରମ ସତ୍ତାକୁ ଅନୁଭବ କରିଛନ୍ତି ଏବଂ ଗାଇଛନ୍ତି–

ମରିବାକୁ ଜନ୍ମିନାହିଁ ଭବତରୁ ଡାଳରେ
ଶେଷ ଗତି ନୁହେଁ ମୋର ମୃତ୍ୟୁ କେଉଁ କାଳରେ।



# ଭ୍ରାନ୍ତି

ଉତ୍କଳ ଭାରତୀଙ୍କ

ପବିତ୍ର ସାମାଜିକ ଉପନ୍ୟାସ

# ଉତ୍ସର୍ଗ

ପୂଜନୀୟ ଆଚାର୍ଯ୍ୟ

ଶ୍ରୀଯୁକ୍ତ ବିଶ୍ୱନାଥ କର MLCଙ୍କ

ସହଧର୍ମିଣୀ

ମୋର ପରମାରାଧ୍ୟା ଜନନୀସ୍ଥାନୀୟା ସ୍ନେହମୟୀ

ଶ୍ରୀମତୀ ଜାନକୀ ଦେବୀଙ୍କ

ଶ୍ରୀ କରକମଳରେ ଭକ୍ତି ଓ ଶ୍ରଦ୍ଧାର

ନିଦର୍ଶନ ସ୍ୱରୂପ ଏହି

କ୍ଷୁଦ୍ର ପୁସ୍ତିକା

''ଭ୍ରାନ୍ତି''

ସାଦରେ ସମର୍ପିତ ହେଲା

କଟକ

୧୪.୧୦.୨୩

ବିନୟାବନତ

ଲେଖିକା

କକ୍ଷଟି ପ୍ରଶସ୍ତ। ହିନ୍ଦୁ ଗୃହରେ ରୁଚି ଅନୁଯାୟୀ ସୁସଜ୍ଜିତ। ଗୃହ କାନ୍ଥରେ ଦେବଦେବୀଙ୍କର ବୃହଦାୟତନ ସୁନ୍ଦର ଆଲେଖ୍ୟମାଳା। ଆଲେଖ୍ୟର ବିଶେଷ ପରିଚୟ ନିଷ୍ପ୍ରୟୋଜନ, କେବଳ ଗୋଟିକର ପରିଚୟ ଦେବି। ଶ୍ରୀକୃଷ୍ଣଙ୍କର କଦମ୍ବ ମୂଳରେ ମନୋହର ନୀଳରଙ୍ଗର ଏକ ବିଚିତ୍ର ଲାବଣ୍ୟମୟ ମୂର୍ତ୍ତି, ହାତରେ ବଂଶୀ, କଣ୍ଠରେ ବନମାଳା, କଟିରେ ପୀତବସନ, ମସ୍ତକରେ ମୟୂରଚନ୍ଦ୍ରିକା, ପାର୍ଶ୍ୱଦ୍ୱିଗରେ ଭୁଜବନ୍ଧନକୃତ ରାଧାମୂର୍ତ୍ତି; ଆସନ ପଦ୍ମୋପରି, ଯମୁନାର ନୀଳତରଙ୍ଗ, ଶୁଭ୍ର ହଂସ ଭାସି ଭାସି କାଳିନ୍ଦୀରେ କ୍ରୀଡ଼ାନିରତ।

ଏ ତ ଗଲା କାନ୍ଥର ଛବି। ଛବିକୁ ଏକ ଧ୍ୟାନରେ ଅନାଇ କକ୍ଷତଳେ ଉପବିଷ୍ଟା ଜଣେ ସୁକୁମାରୀ ବାଳିକା। ଚିକ୍କଣ ସୁପାତି, ରୌପ୍ୟକରଙ୍କରେ[୧] ସଜ୍ଜିତ ତାମ୍ବୁଳ। ବାଳିକାର ଅବୟବ, ଆକୃତି ଓ ବେଶଭୂଷା ଉଚ୍ଚବଂଶୀୟା କରଣ ବାଳିକା ତୁଲ୍ୟ। ମୁଖ ଅତି ସୁନ୍ଦର, ଅତି କୋମଳ, ବୟସ ଅନୁମାନ ଦଶ ବର୍ଷ; ମାତ୍ର ଏଡ଼େ କ୍ଷୁଦ୍ର ବାଳିକା ଯେ କେଡ଼େ ସୁନ୍ଦରୀ, ତାହା ଲେଖନୀଦ୍ୱାରା ବର୍ଣ୍ଣନା କରିବା ଅସମ୍ଭବ। ସେ ସୁନ୍ଦରୀ, କାନ୍ଥରେ ଥିବା ଯମୁନା କଳହିଲ୍ଲୋଳରେ ଭାସମାନ ପ୍ରଫୁଲ୍ଲ ପଦ୍ମତୁଲ୍ୟ ସୁନ୍ଦରୀ। ନୋହିଲେ ଆଉ କାହା ପରି ? ସେ ସୁନ୍ଦରୀ; କାଳିନ୍ଦୀର ପ୍ରବାହିତ ନୀଳ କଲ୍ଲୋଳରାଶି ତୁଲ୍ୟ; ତାହାର କଲ୍ଲୋଳିତ କେଶରାଶି ପୃଷ୍ଠଦେଶରେ ବାତ୍ୟାନ୍ଦୋଳିତ। ବାଳିକା ସୁନ୍ଦରୀ– କାରଣ ତାହାର ଉପବେଶନ ଦ୍ୱାରା ସୁପାତି ଉଜ୍ଜ୍ୱଳ, କକ୍ଷଟି ପ୍ରଫୁଲ୍ଲ। କାନ୍ଥଗୁଡ଼ିକର ଚିତ୍ରମାଳା ଆଉ ବାଳିକାର ଜୀବନ୍ତ ଚିତ୍ର ଉଭୟ ମଧ୍ୟରେ ବାଳିକା ହିଁ ଶ୍ରେଷ୍ଠ। ବାଳିକା ସୁନ୍ଦରୀ, କବି-ବର୍ଣ୍ଣନୀୟା, ଉପନ୍ୟାସକଳ୍ପିତା ନାୟିକା, ତାହା ନୁହେଁ – ମାତ୍ର ସେ ସୁନ୍ଦରୀ, କାରଣ ତାହାର କୋମଳ ଅବୟବର ପ୍ରତ୍ୟେକ ଅଂଶରେ ଏକ ଅପୂର୍ବ ମାଧୁରୀ ସ୍ରୋତ ପ୍ରବାହିତ। ତାହାର ଚକ୍ଷୁ, ତାହାର ନାସିକା, ତାହାର ଲଲାଟ, ତାହାର ଚିବୁକ, ମୁକ୍ତାସଦୃଶ ଦନ୍ତପନ୍ତି, ସବୁ ସୁନ୍ଦର, ଅତି ସୁନ୍ଦର। ଫୁଲଟି ଫୁଟି ପତ୍ରଟିକୁ ଉଜ୍ଜ୍ୱଳ କଲାପରି ବାଳିକାଟି ବସି ଗୃହଟିକୁ ଉଜ୍ଜ୍ୱଳ କରିଅଛି।

ସୁପାତିର ଅନ୍ୟ ପାର୍ଶ୍ୱରେ ଆଉ ଜଣେ ଯୁବତୀ ଶାୟିତା। ସେ ମଧ୍ୟ ସୁନ୍ଦରୀ। ମାତ୍ର ଛି, ତାହାର ପୂର୍ଣ୍ଣ ଯୌବନ କୋମଳ ବାଳିକାର ଅଙ୍ଗସୌଷ୍ଠବ ଓ ସୌନ୍ଦର୍ଯ୍ୟ ତୁଳନାରେ କିଛି ନୁହେଁ। ଦର୍ଶକ ସହସା ଉଭୟର ତାରତମ୍ୟ ବୁଝି ପାରିବେ। ବାଳିକା ସୁନ୍ଦରୀ, ଏକ ଅପୂର୍ବ ଅକପଟ ମଧୁରତା, ଅତୁଳନୀୟ ସରଳତା ତାହାର ପ୍ରତ୍ୟେକ ଅଙ୍ଗରେ ପ୍ରଦୀପ୍ତ, ତାହାର ବିକାଶ ନେତ୍ରଦ୍ୱୟରେ ଶରଦାକାଶର ବିମଳ ତରଳ ଜ୍ୟୋତ୍ସ୍ନା ଢ଼ଳଢ଼ଳ, ଛଳଛଳ ! ଆଉ ଯୁବତୀ;– ତାହାର ନୟନ କୋଣରେ କୁଟିଳ କଟାକ୍ଷ, ସୁନ୍ଦର ଅଧର ପ୍ରାନ୍ତରେ ଅସରଳ ହାସ୍ୟ। ଉଭୟେ

(୧) ରୂପା ତିଆରି ବଟା ବା ଡିବା

ସୁନ୍ଦରୀ - ଜଣେ ଗ୍ରୀଷ୍ମଦିନାବସାନର ସୁବାସିତ, ଚିକ୍କଣ, ଶୁଭ୍ର ମଲ୍ଲିକା, ଆଉ ଜଣେ ଗର୍ବିତା ସୂର୍ଯ୍ୟମୁଖୀ। ଜଣେ ଶରତ ପ୍ରଭାତର ଝରା ଶେଫାଳୀ, ଆଉ ଜଣେ ପ୍ରାବୃଟ ପ୍ରାତଃକାଳୀନ ଫୁଟନ୍ତା ରଙ୍ଗ ଟହ ଟହ ହରଗୌରା; ଉଭୟ କୁସୁମ, ଜଣେ ନାମ ଅନୁରୂପା ଶେଫାଳୀ, ଅନ୍ୟଟି ତଦ୍‌ବିପରୀତା ମାଳତୀ। ଶେଫାଳୀ ସୁନ୍ଦରୀ, ସରଳା, ମଧୁରତାମୟୀ ବାଳିକା। ମାଳତୀ ସୁନ୍ଦରୀ, ଧୂର୍ତ୍ତା, ଚତୁରା, ମଦୋନ୍ମତ୍ତା ଯୁବତୀ।

ଶେଫାଳୀ ଜମିଦାର ଦୁହିତା ''ରାଣୀ ଶେଫାଳିକା'', ଉଆସର ଜେମାମଣି। ମାଳତୀ ଜମିଦାରଙ୍କ କର୍ମଚାରିର ଧୂର୍ତ୍ତା ଦୁହିତା-ଶେଫାଳୀର ସଙ୍ଗିନୀ, ତୋଷାମୋଦକାରିଣୀ, ବିଚକ୍ଷଣା ଓ କୂଟବୁଦ୍ଧିସମ୍ପନ୍ନା।

ପ୍ରଭୁକନ୍ୟା ନିକଟରେ ଉପବେଶନ ପୂର୍ବକ ମାଳତୀ, ଗଳ୍ପର ପସରା ମେଲି ଦେଇଅଛି। ଦିବା ଏକ ଘଟିକା ଉତ୍ତୀର୍ଣ୍ଣ। ଶେଫାଳୀର ଅଳ୍ପ ଅଳ୍ପ ତନ୍ଦ୍ରା ବୋଧ ହେଉଅଛି, ମାଳତୀ ତାହା ଲକ୍ଷ୍ୟ ନ କରି ଗଳ୍ପରେ ବ୍ୟାପୃତ। ହଠାତ୍ ଗୋଟାଏ ଶବ୍ଦ ଶୁଣି ସେମାନେ ଚମକି ପଡ଼ିଲେ।

''ଏ କ'ଣ ଅନୁ ବାବୁ!'' ଏହା କହି ବିସ୍ମୟରେ ହତବୁଦ୍ଧି ମାଳତୀ ଧଡ଼କରି [୧] ବସିଲା। ଶେଫାଳୀର ବାକ୍ୟସ୍ଫୂର୍ତ୍ତି ହେଲାନାହିଁ। ତାହାର ସର୍ବାଙ୍ଗ ଥରିଲା। ଅନୁ ପଡ଼ିଯାଇଅଛି, ମୁଣ୍ଡରେ ଆଘାତଲାଗି ରକ୍ତ ଝରଝର ବହିଯାଉଅଛି, ସମସ୍ତ ବସ୍ତ୍ର ରକ୍ତରେ ଆର୍ଦ୍ର, ତାହାର ଚିତ୍କାରରେ କ୍ଷଣକ ମଧ୍ୟରେ ଗୃହର ପୂଜାରୀ, ବେହେରା, ଭଣ୍ଡାରୀ, ଦାସୀ ଗୁଣ୍ଡ[୨] ହୋଇଗଲେ। କିଏ ପାଣି ଢ଼ାଳିଲା, କିଏ ପଟି ବାନ୍ଧିଲା, କିଏ ଡାକ୍ତର ଡାକିବାକୁ ଗଲା, କିଏ କେବଳ ପାଟିକଲା। ଅନୁ ଅଚେତନ।

ଡାକ୍ତର ଦିଗମ୍ବର ଚୌଧୁରୀ କ୍ଷତ ସ୍ଥାନ ପରୀକ୍ଷାକରି ଆଘାତ ଗୁରୁତର ନ ଥିବା ପ୍ରକାଶକଲେ। ହରିହରଙ୍କ ପରିବାର ଆଶ୍ୱସ୍ତହେଲେ। ଶେଫାଳୀର କମ୍ପିତ ବକ୍ଷ ସ୍ଥିରହେଲା, ମାଳତୀର ବାଷ୍ପାକୁଳିତ ନେତ୍ରବାରି ପ୍ରଶମିତହେଲା।

ଅନୁ ଶଯ୍ୟା ଶାୟିତ। ପାର୍ଶ୍ୱରେ ମୂର୍ତ୍ତିମତୀ କରୁଣାରୂପିଣୀ ଶେଫାଳିକା, କ୍ଷୁଦ୍ର ଭଗିନୀତୁଲ୍ୟା ମମତାମୟୀ, ମାତୃତୁଲ୍ୟା ଯତ୍ନବତୀ। ଶେଫାଳୀର ପ୍ରାଣ ଅନୁଠାରେ, ଧ୍ୟାନ ଅନୁଠାରେ, ଅନୁ ତାହାର ଭ୍ରାତାଠାରୁ ଅଧିକ ପ୍ରିୟ, ଆବାଲ୍ୟସଙ୍ଗୀ, କ୍ରୀଡ଼ା ସହଚର, ସୁଖ ଦୁଃଖ, ଭ୍ରମଣ, ପଠନ ସବୁର ସହଭାଗୀ। ଅନୁ ତାହାର ଅନୁ। ଶେଫାଳୀର ସ୍ନାନ ଭୋଜନରେ ତୃପ୍ତି ନାହିଁ, ଖେଳ କୌତୁକରେ ମନ ନାହିଁ। କେବଳ ଅବିଶ୍ରାନ୍ତ ଭାବରେ ଦିବସ ରଜନୀ ଅନୁ ନିକଟରେ ଅତିବାହିତ କରେ। ଅନୁ ବାଳକ, ତ୍ରୟୋଦଶବର୍ଷୀୟ ସୁକୁମାର ବାଳକ। ହରିହର ବାବୁଙ୍କର ପାଳିତ।

ହରିହର ଛୋଟଗାଏ ସ୍ଥାନୀୟ ଜମିଦାର, ଅତୁଳ ଐଶ୍ୱର୍ଯ୍ୟଶାଳୀ ଏବଂ ସଦାଶୟ; କିନ୍ତୁ ମା କମଳାଙ୍କର ବରପୁତ୍ର ହରିହର, ଷଷ୍ଠୀଦେବୀଙ୍କ କୃପାରୁ ବଞ୍ଚିତା, ତାଙ୍କର ପତ୍ନୀ ଇନ୍ଦୁମୁଖୀ

(୧) ହଠାତ୍, (୨) ଏକତ୍ର

ଅତୁଳନୀୟ ରୂପ, ଅପାର ଐଶ୍ୱର୍ଯ୍ୟର ଅଧିକାରିଣୀ ହୋଇ ସୁଦ୍ଧା ନିଜକୁ ଅତ୍ୟନ୍ତ ଅଭାଗିନୀ ଜ୍ଞାନକରି ବଡ଼ ଦୁଃଖରେ କାଳ କାଟୁଥିଲେ। ବିବାହର ଦଶବର୍ଷ ଅତୀତହେଲା। ବହୁତ ବ୍ରତ, ନିୟମଯଜ୍ଞ, ପୂଜା, ଉପବାସାଦି ପାଳନ କଲେ; ମାତ୍ର ସନ୍ତାନ ଆକାଙ୍‌କ୍ଷା ଫଳବତୀ ହେଲାନାହିଁ। ତହୁଁ ତୀର୍ଥାଦି ପର୍ଯ୍ୟଟନ କଲେ। ତଦ୍ୱାରା ମଧ୍ୟ କିଛି ଲାଭ ହେଲାନାହିଁ। ଏହି ସମୟରେ କଟକ ଜିଲ୍ଲାରୁ ଘନଶ୍ୟାମ ମହାନ୍ତି ନାମକ ଜଣେ ପରମ ଧାର୍ମିକ ବ୍ୟକ୍ତି ଗୃହ ବିବାଦରେ ନିତାନ୍ତ ନିଃସ୍ୱ ଅବସ୍ଥା ପ୍ରାପ୍ତ ହୋଇ ହରିହର ଚୌଧୁରୀଙ୍କ ଜମିଦାରିରେ ଆଶ୍ରୟ ଗ୍ରହଣକଲେ। ତଦୀୟ ପତ୍ନୀ ସୁଶୀଳା ଦେଇ ଏକମାତ୍ର ସନ୍ତାନ ଅନଙ୍ଗମୋହନର ଜନ୍ମ ପରେ ମାନବଲୀଳା ସମ୍ବରଣ କରିଥିଲେ। ଦୁଇ ବର୍ଷର ସୁକୁମାର ଶିଶୁକୁ ଘେନି ପିତା ଘନଶ୍ୟାମ ଜମିଦାର ବାବୁଙ୍କ ବସାରେ ରହି ତାଙ୍କ ଜମିଦାରିରେ ଦେବାନ କାର୍ଯ୍ୟ କରିବାକୁଲାଗିଲେ। ମାତୃହୀନ ଅନୁକୁ ପାଇ ଇନ୍ଦୁମୁଖୀଙ୍କର ଆଉ ଆହ୍ଲାଦର ସୀମା ରହିଲା ନାହିଁ। ଦିବାରାତ୍ର ଅନୁ ତାଙ୍କ ନିକଟରେ ଥାଏ। ତାହାର ସମସ୍ତ ସେବା ସ୍ୱହସ୍ତରେ କରି ସୁଦ୍ଧା ଇନ୍ଦୁମୁଖୀଙ୍କର ତୃପ୍ତି ହୁଏନାହିଁ।

ଈଶ୍ୱରେଚ୍ଛାରେ ଏହି ସମୟରେ ତାଙ୍କର ଚିରଦିନର ଦୁଃଖ ଅବସାନ ହୋଇ ଗୋଟିଏ ସନ୍ତାନ ଜନ୍ମଗ୍ରହଣ କଲା। ଗୃହ ଆଲୋକିତ କରି ଆଶ୍ୱିନ ପ୍ରାତଃକାଳର ମଧୁର ସୂର୍ଯ୍ୟୋଦୟ ସମୟରେ ଉଷାରୂପିଣୀ ଏକ ପରମାସୁନ୍ଦରୀ କନ୍ୟା ହରିହରଙ୍କ ନିରାନନ୍ଦ ଗୃହ-ମରୁରେ ଫୁଟି ଉଠିଲା। ସେତେବେଳେ ଦଶହରା ପୂଜାର ଗୋଳମାଳ, ବୃହତ୍ ଜମିଦାର ପ୍ରାସାଦ ପରିପୂର୍ଣ୍ଣ। ମା ଅନ୍ନପୂର୍ଣ୍ଣାଙ୍କ ଆଗମନ ସଙ୍ଗେ ସଙ୍ଗେ ସେହି ମା ମୂର୍ତ୍ତିମତୀ ସ୍ନେହପ୍ରତିମା ସଦୃଶ କନ୍ୟାରୂପରେ ଆଗମନ କରି ଇନ୍ଦୁମୁଖୀଙ୍କ କ୍ରୋଡ଼ାସନ ଉଜ୍ଜ୍ୱଳ କଲେ। ଆନନ୍ଦ ରୋଳରେ ବିଶାଳ ପ୍ରାଙ୍ଗଣ ପୂରିଉଠିଲା। ଆତ୍ମୀୟା, ପ୍ରତିବେଶିନୀ ସମସ୍ତେ କନ୍ୟାକୁ ଦେଖିବାକୁ ଧାଇଁଆସିଲେ। ବୃଦ୍ଧ ପିତାମହ ସାକ୍ଷାତ୍ ଅନ୍ନପୂର୍ଣ୍ଣା ମୂର୍ତ୍ତି ଭାବି ଭାବବିହ୍ୱଳ ହୋଇ ନୟନରୁ ଆନନ୍ଦାଶ୍ରୁ ଝରାଇଲେ।

ପ୍ରଭାତର ଫୁଲ, ଶରତର ଫୁଲ, ପୂଜାର ଫୁଲ, ମା'ର କଣ୍ଠମାଳା; – ନାମ ଦିଆଗଲା ଶେଫାଳିକା। ହରିହରଙ୍କ ଇଚ୍ଛାକ୍ରମେ ନାମ ଦିଆଗଲା ଶେଫାଳିକା। ଶେଫାଳିକାକୁ ଜଗଦମ୍ବାଙ୍କର ଅମଳକମଳ ଚରଣତଳେ ଉତ୍ସର୍ଗକରି ବୃଦ୍ଧ ଦୀନବନ୍ଧୁ ଓ ତଦୀୟ ପୁତ୍ର ହରିହର କୃତକୃତ୍ୟ ହେଲେ। ଇନ୍ଦୁମୁଖୀର ଲଜ୍ଜା କଳଙ୍କ ଦୂରୀଭୂତ ହେଲା। ମାତୃତ୍ୱର ଆକାଙ୍‌କ୍ଷା ପୂର୍ଣ୍ଣହେଲା।

ଶାରଦୀୟ ଶଶିକଳା ତୁଲ୍ୟ ଶେଫାଳୀ ଦିନକୁ ଦିନ ବୃଦ୍ଧି ପ୍ରାପ୍ତହେଲା। ତାହାର ଅନ୍ନପ୍ରାଶନ ଦିନ ଭକ୍ତ ଦୀନବନ୍ଧୁ ସର୍ବ ସମ୍ମତିକ୍ରମେ ଶିଶୁ କନ୍ୟାଟିର ସୁକୋମଳ ହସ୍ତ ଅନୁର ସୁକୁମାର ହସ୍ତରେ ଧରାଇଦେଲେ। ଜୟଢ଼କ୍କା ବାଜିଉଠିଲା।

ପିଲାଖେଳପରି ଅଭିନବ ବିବାହ ହୋଇଗଲା। ହରିହର ଓ ଇନ୍ଦୁମୁଖୀଙ୍କର ଆନନ୍ଦ ପୂର୍ଣ୍ଣ ହେଲା। ଘନଶ୍ୟାମଙ୍କ ଆଶା ସଫଳହେଲା। ସେହି ଦିନୁ ଗୋଟିଏ ବୃନ୍ତରେ ଯୋଡ଼ିଏ

ଫୁଲ ପରି ଅନ୍ ଓ ଶେଫାଳୀ ବଢ଼ିବାକୁ ଲାଗିଲେ। ଶିଶୁ ଦ୍ୱୟର କଳହାସ୍ୟଧ୍ୱନିରେ ବୃହତ୍ ପ୍ରାଙ୍ଗଣ ମୁଖରିତହେଲା। ଏତେ ସୁଖ! ଇନ୍ଦୁ ଏତେ ସୁଖର କଥା କଳ୍ପନା କରି ନ ଥିଲେ। ବାଳକ ବାଳିକାଙ୍କୁ ଅନାଇ ତାଙ୍କ ହୃଦୟ ଉଚ୍ଛ୍ୱଳିଉଠେ। ଉଭୟେ ତାହାର, ଏ କ୍ଷୁଦ୍ର ଦମ୍ପତି ତାହାର ସର୍ବଶ୍ରେଷ୍ଠ ସମ୍ପତ୍ତି, ଅମୂଲ୍ୟଧନ। ଉଭୟେ ଖେଳୁ ଖେଳୁ ମାତାଙ୍କ କୋଳକୁ ଡେଇଁ ପଡ଼ନ୍ତି। ଅଙ୍କାସନ[୧] ସକାଶେ ବିବାଦ କରନ୍ତି, କାରଣ ଇନ୍ଦୁ ଉଭୟଙ୍କର ମାତା।

ଶେଫାଳୀର ଜନ୍ମର ତିନିବର୍ଷ ପରେ ହଠାତ୍ ବିସୁଚିକାରେ ଘନଶ୍ୟାମ ବାବୁଙ୍କର ମୃତ୍ୟୁ ହେଲା। ଉପଯୁକ୍ତ ଦେବାନଙ୍କୁ ହରାଇ ସମସ୍ତ ପ୍ରଜା ହାହାକାର କରିବାକୁ ଲାଗିଲେ। ଅନୁ ପିତୃହୀନ ହେଲା।

ବର୍ତ୍ତମାନ ଶେଫାଳୀର ବୟସ ଦଶବର୍ଷ। ଅନୁର ବୟସ ତେର। ଅନୁ ସ୍ଥାନୀୟ ସ୍କୁଲର ଶେଷ ଶ୍ରେଣୀରେ ପଢ଼େ। ତାହାର ଶିକ୍ଷାପାଇଁ ଜମିଦାର ବାବୁଙ୍କର ବିଶେଷ ଯତ୍ନ; ଗୃହରେ ମାଷ୍ଟର ରଖାଇ ଭାବୀ ଜାମାତାକୁ ଶିକ୍ଷା ଦେବାରେ ତ୍ରୁଟି କରନ୍ତି ନାହିଁ। ସେ ଆଧୁନିକ ରୁଚିସମ୍ପନ୍ନ ବ୍ୟକ୍ତି, ମାତ୍ର ଏକାବେଳକେ ଦେଶୀ ସାହେବ ନୁହନ୍ତି। ତାଙ୍କର ପରିବାର ନିର୍ଦ୍ଦୋଷ ହିନ୍ଦୁ ପରିବାର ହେଲେ ମଧ୍ୟ, ସୁପ୍ରତିଷ୍ଠିତ ବାଳିକା ବିଦ୍ୟାଳୟରେ ଶେଫାଳୀର ପଠନରେ ବାଧା ନାହିଁ। ସେ ଦକ୍ଷତା ସହକାରେ ଅପର ପ୍ରାଇମେରୀ ପାସ୍ କରିଅଛି। ସୂଚିବିଦ୍ୟା, କଳାବିଦ୍ୟା, ରନ୍ଧନବିଦ୍ୟାରେ ପଟୁତା ଲାଭ କରିଅଛି।

ତାହାର ପିତା ବହୁ ବ୍ୟୟରେ, ବହୁ ଅନୁସନ୍ଧାନରେ ସରୟୁ ନାମ୍ନୀ ଜନୈକା ଭଦ୍ରବଂଶୀୟା ବିଧବା ମହିଳାଙ୍କୁ କଲିକତାରୁ ଅଣାଇ ଗୃହରେ କନ୍ୟାକୁ ନାନା ବିଷୟରେ ଶିକ୍ଷା ଦେବାର ବ୍ୟବସ୍ଥା କରିଅଛନ୍ତି। ଶେଫାଳୀ ଜମିଦାରିର ଭାବୀ ଉତ୍ତରାଧିକାରିଣୀ, ସେ ଜ୍ଞାନବତୀ କର୍ମକୁଶଳା ଏବଂ ସୁଗୃହିଣୀ ହେବ, ଏହାହିଁ ତାଙ୍କର ଇଚ୍ଛା। ଇନ୍ଦୁମୁଖୀ ହିନ୍ଦୁ ନାରୀର ଚୂଡ଼ାନ୍ତ ଆଦର୍ଶ ସ୍ୱରୂପ ନ ହେଲେ ହେଁ, ଅତିଶୟ ନମ୍ରପ୍ରକୃତି ଓ ସ୍ୱାମୀ ପ୍ରତି ଏକାନ୍ତ ଭକ୍ତିମତୀ। ସେ ସରଳା, ଛନ୍ଦକପଟ ତାଙ୍କୁ ଅଜଣା; ଶେଫାଳୀ ତାଙ୍କ ନୟନର ମଣି ସ୍ୱରୂପ, ତାହାକୁ ଅତି ଯତ୍ନରେ ପାଳନ କରିବା ଓ ସୁଶିକ୍ଷା ଦେବା ତାଙ୍କର ନିତ୍ୟବ୍ରତ।

(୨)

ସନ୍ଧ୍ୟା ଉତ୍ତୀର୍ଣ୍ଣ ପ୍ରାୟ। ଉପାଧାନରେ[୨] ଈଷତ୍ ଆଉଜି ପଡ଼ି ଅନୁ ଏକ ଦୃଷ୍ଟିରେ ଶେଫାଳୀକୁ ଅନାଇଅଛି। ଉଭୟେ ଏକାକୀ; ମାତ୍ର ପରସ୍ପରର କି ସମ୍ବନ୍ଧ ଉଭୟେ ଅଜ୍ଞାତ। ଭ୍ରାତା ଭଗିନୀ ତୁଲ୍ୟ ବା ତତୋଽଧିକ ପରସ୍ପର ପ୍ରତି ଅନୁରକ୍ତ। ଅନୁ ଜାଣେ-ସେ ଶେଫାଳୀର ଭ୍ରାତା ନୁହେଁ, ଶେଫାଳୀ ବିଶେଷ କିଛି ଜାଣେ ନାହିଁ। ଶେଫାଳୀର ସ୍ୱଭାବଗତ ବିଶେଷ ଦୋଷ, ସେ ବଡ଼ କ୍ରୋଧୀ। କ୍ରୋଧ ସମୟରେ ସେ ଜ୍ଞାନଶୂନ୍ୟ ହୁଏ। ଯାହା ମୁହଁରେ ଆସେ ତାହାହିଁ କହିଯାଏ। ମାତ୍ର ସେତିକି। ଦୁଇଦଣ୍ଡପରେ ସବୁ ଭୁଲିଯାଏ। ଅନୁ ତଦ୍‌ବିପରୀତ, ଶାନ୍ତ ଓ

(୧) କୋଳ, (୨) ତକିଆ, ମୁତୁଲା

ଦୃଢ଼; ମାତ୍ର ଶେଫାଳୀକୁ ଚିଡ଼ାଇବା ତାହାର ରୋଗ। କଥାକଥାକେ ତାକୁ ବିରକ୍ତକରିବା ତାହାର ବିଶେଷ ଆମୋଦ ଓ ପ୍ରଧାନ ସୁଖ।

ତାହାର କ୍ଷତ ଆରୋଗ୍ୟ ହୋଇଗଲାଣି। ସାମାନ୍ୟ ଦୁର୍ବଳ ମାତ୍ର। ପ୍ରାୟ ସବୁବେଳେ ବିଛଣାରେ ଉଠି ବସିଥାଏ ଏବଂ ଶେଫାଳୀ ସହିତ ଗଳ୍ପକରେ। ବର୍ତ୍ତମାନ ସନ୍ଧ୍ୟାରେ ସୁଦ୍ଧା ସେହି କାର୍ଯ୍ୟ ଲାଗିଅଛି। ଅନୁ ଗଳ୍ପ କରୁଅଛି, ଅନର୍ଗଳ ବକି ଯାଉଅଛି, ମାତ୍ର ସେଥିରେ ଶେଫାଳୀର ମନୋଯୋଗ ଥିଲାପରି ଜଣାଯାଉ ନାହିଁ। ତାହାର ମୁଖ ଭାରି ଗମ୍ଭୀର। କାରଣ ଦୁଇଦିନ ହେଲା ଉଭୟଙ୍କର କଳହ ହୋଇଅଛି। ସେଥିପାଇଁ ପରସ୍ପରର ବାକ୍ୟାଳାପ ନାହିଁ। ଏଥି ପୂର୍ବରୁ ମଧ ବାରମ୍ବାର କଳହ ଲାଗୁଥିଲା; ମୀମାଂସା କରୁଥିଲେ ବୃଦ୍ଧ ଦୀନବନ୍ଧୁ। ଏକବର୍ଷ ହେଲା ତାଙ୍କର କାଳ ହେବାରୁ ମୀମାଂସକ କେହି ନାହିଁ। ସେମାନେ କଳହ କରନ୍ତି, ରୁଷା ରୁଷି ହୁଅନ୍ତି, ଏକ ସପ୍ତାହ ବା ଏକପକ୍ଷ ବାକ୍ୟାଳାପ ବନ୍ଦ କରନ୍ତି, ପୁଣି ନିଜେ ନିଜେ ମିଶନ୍ତି। ଆଜି ମଧ ସେହିପରି କଳହର ପ୍ରଧାନ କର୍ତ୍ତା ଅନୁ। ସେ ଶେଫାଳୀକି ଗର୍ବୀ ଆଖ୍ୟା ପ୍ରଦାନ କରିଅଛି। କିନ୍ତୁ ତାହା ପ୍ରକୃତ ସତ୍ୟ ହେଲେ ମଧ, ଗର୍ବିତାର ଏକାନ୍ତ କ୍ରୋଧର କାରଣ ହୋଇଅଛି। ଗର୍ବିତା ସୁନ୍ଦର ବଦନ ନତକରି ବସିଅଛି। କଳହର କର୍ତ୍ତା କାରଣ ବୁଝି ପାରିଅଛି। ଯାହା ହେଉ ବର୍ତ୍ତମାନ ଯେଉଁ ଭୂତ ଧରିଅଛି, ତାକୁ ଝାଡ଼ିବା ଆବଶ୍ୟକ। ଚତୁର ଗୁଣିଆ ମନ୍ତ୍ର ପ୍ରୟୋଗ ଆରମ୍ଭକଲା। ଗଳ୍ପ ସ୍ରୋତ ବନ୍ଦହେଲା। ନିତାନ୍ତ ଶୁଷ୍କ ମୁଖରେ ମୁହଁ ଫେରାଇ ଶୟନକଲା। ଏକମିନିଟ୍, ଦୁଇମିନିଟ୍, ଦଶମିନିଟ୍ କଟିଗଲା, ଶେଫାଳୀର ଅସହ୍ୟ ହେଲା, ସେ ନ ଜାଣିଲା ପରି ତାକୁ ଚିମୁଟିଦେଲା। ହଠାତ୍ ଚମକିପଡ଼ି ଅନୁ ଉଠିବସିଲା, ''ମୋତେ ବିଛା କାମୁଡ଼ିଲା।'' ତକିଆ ବିଛଣା ସମସ୍ତ ଲେଉଟାଇ ପକାଇଲା, ତାହାର ମୁଖରେ ଭୟର ଚିହ୍ନ। ଶେଫାଳୀ ହାସ୍ୟ ସମ୍ବରଣ କରିପାରିଲା ନାହିଁ। ଦୁଇ ଦିନର ରାଗ ଉଭେଇ ଗଲା। ହସିହସି ଗୃହାନ୍ତରକୁ ପଳାଇଲା।

ଅନୁ ଡାକିଲା; ସହାସ୍ୟ ବଦନରେ ଶେଫାଳୀ ଉପସ୍ଥିତ ହେଲା; ହସ୍ତରେ ପିତୃପ୍ରଦତ୍ତ ପୁତଳିକା, ଅତି ସୁନ୍ଦର ଚିନା ବାସନର କୁଣ୍ଢେଇ। ଗର୍ବିତା ଅହଙ୍କାରରେ ଫୁଲିଉଠି ପିତୃ ଉପହାର ଅନୁକୁ ଦେଖାଇଲା। ଅନୁର ଭାରି ହିଂସାହେଲା; ପରସ୍ପର ଛଡ଼ାଛଡ଼ି ଆରମ୍ଭ କଲେ, ହରି ବାବୁ ଆସି କଳହ ମୀମାଂସା କରିବାକୁ ପ୍ରବୃତ୍ତହେଲେ। ଅଭିମାନୀ ଅନୁ କିଛି ପାଇ ନାହିଁ। ତାହାର ଚକ୍ଷୁ ଲୋତକରେ ଛଳଛଳ। ମୁଖ ତଳକୁ କରି କହିଲା, ''ବାବା, ମୋର କ'ଣ କିଛି ନାହିଁ?''

ଗୋଟିଏ ସୁନ୍ଦର ଫାଉଣ୍ଟେନ୍ ପେନ୍- ଆଉ ଆହ୍ଲାଦର ସୀମା ନାହିଁ। ବାବା କଲିକତାରୁ ମଗାଇଥିଲେ। ଶେଫାଳୀର କୁଣ୍ଢେଇ; ସେ ଖେଳଘର ଭାତ କରିବ, ପୁଅ ବିଭା କରିବ, ଆଉ ଅନୁ ସ୍କୁଲ ଛାତ୍ର, ତାହାର ଫାଉଣ୍ଟେନ୍ ପେନ୍, ସେ ଲେଖାଲେଖି କରିବ। ମାତ୍ର ଏତିକି ନୁହେ। ପୁଣି ଆସିଲା। ଭୃତ୍ୟ ବୃହତ୍ ପାର୍ଶେଲ ବାକ୍‌ସଟା ଦେଇଗଲା। ଗୋଟିଏ ଗୋଟିଏ ସୁନ୍ଦର ପଦାର୍ଥ ବାହାରି ପଡ଼ିଲା। ଶେଫାଳୀର କୁଣ୍ଢେଇ, କୁଣ୍ଢେଇର ସାଜ, ମେଜ, ଚୌକି,

ଖଟ, ଆଲମାରୀ, ବାସନ, ପିଆଲା, ପୁଣି ବ୍ୟାବହାରିକ ସିଲାଇ ବାକ୍ସ, ଚିତ୍ର ଆଲବମ୍, ସେଣ୍ଟ, ସାବୁନ୍, ଫିତା, କାଚ, ଇତ୍ୟାଦି, ଇତ୍ୟାଦି। ଶେଫାଳୀର ଏତେ, ଆଉ ଅନୁର ଏପର୍ଯ୍ୟନ୍ତ ଗୋଟାଏ ହେଲେ ପଦାର୍ଥ ବାହାରିଲା ନାହିଁ। ଛାର ଫାଉଣ୍ଟେନ୍ ପେନ ମାତ୍ର। ଅନୁ ନିରାଶ ହେଲା। ନା, ନା, ଅନୁର ବାକ୍ସ ବାହାରିଲା। ରବର, କାଳି, ଦୁଆତ, ନିବ୍, କାଚ କଲମ, ପେନସିଲକଟା କଳ! ଆଉ ଅତି ସୁନ୍ଦର, ଅତିପ୍ରିୟ, ଅନୁର ବିଶେଷ ପ୍ରାର୍ଥିତ, ହଳେ ବାଦାମୀ ଯୋତା, କଲିକତାର ତିଆରି ଇଂଲିସ୍ ସୁ। ଆଉ ତା' ପଛକୁ ସାର୍ଟ, ଗେଞ୍ଜି, ମୌଜା! ଶେଫାଳୀର ମୁଖ ଶୁଖିଗଲା। ଅନୁର ଏତେ ଆସିଛି, ତାର ଛାର କୁଣ୍ଡେଇ କେତୋଟି। ଅଭିମାନିନୀ କାନ୍ଦି ପକାଇଲା; ମାତ୍ର ହଠାତ୍ ଏ କଣ! ସୁନ୍ଦର ସେମିଜ୍, କ୍ଷୁଦ୍ର ପେଟିକୋଟ, ଛୋଟ ଜାକେଟ୍। ଏଥର ଉଭୟଙ୍କର ଆନନ୍ଦ ପୂର୍ଣ୍ଣ। ପୂଜା ଛୁଟି ନିକଟ, ପୂଜାର ଆୟୋଜନ ହେଲାଣି! ପିଲାଙ୍କର ପୂଜା ଉପହାର କଲିକତାରୁ ଆସିଲା। ପିଲାମାନଙ୍କର ଦେଖାସରିଲା। ଭୃତ୍ୟ ଦୋଳି ଆଲମାରୀରେ ବନ୍ଦକଲା। ଶେଫାଳୀ ଓ ଅନୁ କଳହ ଭୁଲିଗଲେ। ଶେଫାଳୀ ଚିନ୍ତିତା ହୋଇ ପଡ଼ିଲା, ପୁଅ ଆସିଛି, ଝିଅ ଆସିଛି; ବାହାଘର ହେବ। କ'ଣ କ'ଣ କରିବ, କେତେ ଲୋକ ନିମନ୍ତ୍ରଣ କରିବ, କ'ଣ କ'ଣ ରାନ୍ଧିବ, ଏ ସବୁ ଯେ ଠିକ୍ କରିପାରୁ ନାହିଁ। ବଡ଼ ବ୍ୟସ୍ତ। ବାହାଘର କ'ଣ ସାମାନ୍ୟ କଥା! ଦୁଇ ଦୁଇଟା ପୁଅ ଝିଅ। ବଡ଼ ବୋଝ। ବିଚାରୀ ଅନୁର ଶରଣ ନେଲା। ବିଜ୍ଞ ଅନୁ ତାହାର ଚିନ୍ତାରେ ବିଚଳିତ ହେବାର କୌଣସି କାରଣ ନ ପାଇ କହିଲେ, ''ଏହି କଥା, ମୁଁ ସବୁ ହିସାବ ପତ୍ର ରଖିବି, ନିମନ୍ତ୍ରଣ କରିବାକୁ ଯିବି, ମୋର ଫାଉଣ୍ଟେନ୍ ପେନ୍‌ରେ ଲେଖିବି ଏକା। ଆଉ ଦେଖ ଶିଉଳି, ତୋର ଏତେ କାମ କରିବି, ଆଗତୁରା କିଛି ବହିନା[1] ନ ଦେଲେ ଚଳିବ ନାହିଁ।'' ଚତୁରା ଶେଫାଳୀ ବୁଝିଲା, ''ହଁ ହଁ, ଘୁଡ଼ି ଉଡ଼େଇବୁ, ପଇସା ମାଗୁଛୁ। ଆଉ ତୋ କାମ, ମାଳତୀ ଅପା କରିଦେବ।''

ଶେଫାଳୀକୁ ବହଲାଇ[2] ଭୁଲାଇ ଅନୁ କହିଲା, ''ଦେଖ ଶିଉଳି, ମାଳତୀ ଅପା ମୂର୍ଖ। ମୁଁ ଇଂରାଜୀରେ ହିସାବ ଲେଖିବି; ଆଉ ଝିଅ ଶାଶୁଘରକୁ ଗଲେ ତାକୁ ଛାଡ଼ିବାକୁ ଯିବି, ଜାଣୁ ମୋର ନୂଆ ଯୋତା, ଗେଞ୍ଜି, କମିଜ ସବୁ ସେ ଦିନ ପିନ୍ଧିବି। ଯେତେ ହେଲେ ବାହାଘର।''

ସତ କଥା, ଯେତେହେଲେ ବାହାଘର, ସେହିକ୍ଷଣି କାଗଜ କଲମ ଆସିଲା, ବାହାଘର ନିମନ୍ତ୍ରଣ ଫର୍ଦ ହେଲା, ପ୍ରଥମ ବାବା, ଦ୍ୱିତୀୟ ବୋଉ, ତୃତୀୟ ମାଳତୀ ଅପା ଘର, ଚତୁର୍ଥ ସେବତୀ ନାନୀ ଘର, ପଞ୍ଚମ ବରକର୍ତ୍ତା ଜାନକୀ ଘର, ଷଷ୍ଠ କନ୍ୟାକର୍ତ୍ତା ଚମ୍ପା ଘର। ସବୁ ହେଲା, ସମସ୍ତେ ନିମନ୍ତ୍ରିତ ହେଲେ। ଇଚ୍ଛାରେ ହେଉ ବା ଭୁଲରେ ହେଉ, ଶେଫାଳୀ ଅନୁ ନାମ ଛାଡ଼ିଗଲା। କାର୍ଯ୍ୟ ଶେଷହେଲା, ରାଗରେ ଅନୁ ମୁହଁ ଫୁଲାଇଲା। ''ରଖ ଲୋ ତୋ ବାହାଘର, ଏତେ କାମ କରିବି, ମୋତେ ପୁଣି ନିମନ୍ତ୍ରଣ ନାହିଁ। ବିନା ନିମନ୍ତ୍ରଣରେ ତୋ ଘରେ ଖାଇବାକୁ ଯିବି? ମୁଁ କ'ଣ? ଏକଘରକିଆ?''

---

(୧) କୌଣସି ପଦାର୍ଥ କିଣିବା ପୂର୍ବରୁ ମାଲିକ ଅଥବା କାର୍ଯ୍ୟ ଆରମ୍ଭ ପୂର୍ବରୁ ସଂପୃକ୍ତ ବ୍ୟକ୍ତିଙ୍କୁ ପ୍ରଦତ୍ତ ଅଗ୍ରିମ ଅର୍ଥ, (୨) ମନନେବାପାଇଁ ଛଳନାପୂର୍ଣ୍ଣ ମିଠାକଥା।

''ହଁ, ହଁ, ତୋ ନାଁ ଲେଖା'' ଉତ୍ସୁକ ଭାବରେ ଭୀତା ଶେଫାଳୀ କହିଲା, ପଛେ ଅନୁ କଳହ କରିବ, ବାହାଦିନ ଅନର୍ଥ ଘଟାଇବ। କାରଣ ସେଥିରେ ସେ ବିଶେଷ ପଟୁ[1], ଶେଫାଳୀର ମୃତ୍ତିକା ଗୃହ, ଛୋଟ ଛୋଟ ଚୁଲ୍ଲି ଭାଙ୍ଗିବାରେ ବଡ଼ ପାରଗ[2]। ଅଲକ୍ଷ୍ୟରେ ତରକାରୀରେ ଅଯଥା ଲୁଣଦେଇ ଥରେ ଶେଫାଳୀକୁ ବିବ୍ରତ କରିଥିବା କଥା ସେ ଭୁଲି ନାହିଁ।

କାର୍ଯ୍ୟ ଶେଷହେଲା, ଅନୁର ପ୍ରାପ୍ୟ ଦୁଇଗଣ୍ଡା[3] ପଇସା, ଶେଫାଳୀ ବଡ଼ କଷ୍ଟରେ ଆଣି ଦେଲା। ଉପାଧାନ ତଳେ ଯତ୍ନରେ ରକ୍ଷାକରି ଅନୁ ଶୟନକଲା। ଅନୁ ଗାଢ଼ ନିଦ୍ରାଭିଭୂତ, ଧୀରେ ହାତ ଗଳାଇ ଶେଫାଳୀ ପଇସାତକ ନେଇ ପଳାଇଗଲା। ସକାଳେ ଉଠି ଅନୁ ତକିଆତଳ ଖୋଜିଲା, ପଇସାର ଚିହ୍ନବର୍ଣ୍ଣ ନାହିଁ।

(୩)

ସେ ସୁଖମୟ ବାଲ୍ୟକାଳ ଅତୀତ। ଶେଫାଳୀକୁ କନ୍ଦାଇ ତାକୁ ସଙ୍ଗିହୀନ କରି ଅନଙ୍ଗ ମାଇନର ପାଶ ପରେ କଟକ ଚାଲିଯାଇଅଛି। ଛୁଟି ଆଦିରେ ଆସେ। ଆଗପରି ଖେଳାଖେଳି କରେ ନାହିଁ। ଦିବାରାତ୍ର ପଢୁଥାଏ। ଅନୁର ବିଚ୍ଛେଦରେ ପ୍ରଥମେ ପ୍ରଥମେ ଶେଫାଳୀ ଅତିଶୟ କାତର ହେଉଥିଲା; ମାତ୍ର ଆଜିକାଲି ସହି ଗଲାଣି। ଅନୁ କଟକ ଗଲେ ସେ ଦିନ ଗଣୁଥାଏ, କେବେ ଆସିବ। କଟକ ବେଶି ଦୂର ନୁହେଁ। ସେଥିପାଇଁ ଯେ କୌଣସି ବଡ଼ ଛୁଟିରେ ଅନୁ ଗୃହକୁ ଆସିପାରେ। ଶେଫାଳୀ ଦିନଗଣେ। ଦୋଳ ଗଲା, ପୁଣି ଖରାଛୁଟି; ସେ ଗଲା- ପୁଣି ମହରମ-ପୁଣି ପୂଜା; ପୁଣି ବଡ଼ଦିନ। କୌଣସି କୌଣସି ଶନିବାର ମଧ୍ୟ ଆସି ରବିବାରକୁ ଚାଲିଯାଏ; ମାତ୍ର ଶେଫାଳୀ ଦିନ ଗଣୁଥାଏ। ଅନୁ ଗଲା ପରେ ତାହାର ଦିନଗୁଡ଼ାକ ବଡ଼ ହୋଇଯାଏ, ସରେ ନାହିଁ; ମାତ୍ର ସେ ଧୈର୍ଯ୍ୟଧରି ଦିନ ଗଣୁଥାଏ।

ଅନୁର ଏଣ୍ଟ୍ରାନ୍‌ସ[4] ପରୀକ୍ଷା ଶେଷ ହୋଇଅଛି; ପ୍ରଥମ ଶ୍ରେଣୀରେ ପାଶ୍ କରି ବୃତ୍ତି ପାଇଅଛି। ଛୁଟି ଶେଷ ହୋଇଆସିଲାଣି, କଲିକତା କଲେଜକୁ ଯିବାକୁ ସମସ୍ତ ସାମଗ୍ରୀ ପ୍ରସ୍ତୁତ। ମଧ୍ୟରେ ଦୁଇଦିନ ବ୍ୟବଧାନ। ତାହାର ହୃଦୟରେ ଯୁଗପତ୍ ହର୍ଷ ଓ ବିଷାଦ ଉପସ୍ଥିତ। ଛୁଟିର ଦୀର୍ଘ ଦୁଇ ମାସ ଗୃହରେ ଅବସ୍ଥାନ କଲାପରେ ପ୍ରିୟ ପିତା, ମାତା ଓ ଶେଫାଳୀକୁ ଛାଡ଼ି ଯିବାକୁ ମନ ବଳୁନାହିଁ। ମାତ୍ର ସେ ପିଲା ନୁହେଁ। ସପ୍ତଦଶ ବର୍ଷ ବୟସ୍କ କିଶୋର ବାଳକ। ଆପଣାର ଭବିଷ୍ୟତ୍ ଭାବୁଅଛି, ମାତ୍ର କାହିଁକି କେଜାଣି ଗୋଟିଏ ସୁନ୍ଦର ମୁଖ ଘନ ଘନ ତାହାର ଆଖି ଆଗରେ ଭାସିଉଠୁଅଛି। ତାହାର ମନଟା ଚଞ୍ଚଳହେଉଅଛି। ପୁଣି ପରକ୍ଷଣରେ ଅଦୃଷ୍ଟପୂର୍ବ କଲିକତା ମହାନଗରୀର କାଳ୍ପନିକ ସୌନ୍ଦର୍ଯ୍ୟ ବିଷୟ ଭାବି ମନ ଉତ୍ସୁକ ହୋଇ ଉଠୁଅଛି।

ଅନୁ ଭାବୁଅଛି ନାନା କଥା। ହଠାତ୍ ପଶ୍ଚାଦ୍ଦିଗରୁ କିଏ ଆସି କୋମଳ ବୀଣାବିନିନ୍ଦିତ କଣ୍ଠରେ ତାକୁ ଆହ୍ୱାନ କଲା। ବାଳକ ମୁଖ ଫେରାଇଲା। ସମ୍ମୁଖରେ ସ୍ନେହରୂପିଣୀ ଶେଫାଳୀ

(୧) ଦକ୍ଷ, (୨) ଦକ୍ଷ, ସମର୍ଥ, (୩) ଆଠ (୪) ମାଟ୍ରିକ୍

କଣ କହିବ କହିବ, କହି ପାରୁନାହିଁ। ଅନୁ ଆଶ୍ଚର୍ଯ୍ୟ ହେଲା। ପ୍ରଫୁଲ୍ଲ ପଦ୍ମାନନା ଶେଫାଳୀ ମୁଖରେ ଏତେବଡ଼ ବିଷାଦର ଘନ ମେଘାବରଣ କେବେ ସେ ଦେଖିନାହିଁ। ଆଜିକାଲି ଶେଫାଳୀ ବିଶେ ଗମ୍ଭୀରା। ହଠାତ୍ ତାହାର ଏକି ଦୁଃଖ ? ତାକୁ ନୀରବ ଦେଖି ଅନୁ ପଚାରିଲା, ''ଶିଉଳି, କ'ଣପାଇଁ ମୁହଁ ଶୁଖାଇଛୁ?'' କିଛିକ୍ଷଣ ଶେଫାଳୀ ଉତ୍ତର ଦେଇପାରିଲା ନାହିଁ। ମନ ମଧ୍ୟରେ କିଛି ଗୋଟାଏ ଖୋଜିଲା। ''ତୁ କଲିକତା ଯିବୁ'' ଏହା କହି ଚକ୍ଷୁରୁ ଲୁହ ଝର ଝର ବୁହାଇଲା। ଅନୁତ ଅବାକ୍¹ ! ''ଏ କ'ଣ ଶିଉଳି।'' ଆଦରକରି ପିଠି ଆଉଁସି ଅନୁ ପଚାରିଲା। ବହୁକ୍ଷଣ ଶେଫାଳୀ କିଛି କହିପାରିଲା ନାହିଁ। ଅନେକ କଷ୍ଟରେ ଆତ୍ମସମ୍ବରଣ କରି କହିଲା, ''ଅନୁ, ମୁଁ ଭାବିଥିଲି, ତୋର କଟକ ପଢ଼ା ସରିଲେ ତୁ ଘରେ ରହିବୁ, ତୁ କଲିକତା ଯିବୁ ନାହିଁ, ଆଉ ନ ପଢ଼ିଲେ? ଅନୁ ହସିଲା, କିଛିକ୍ଷଣ ପରେ ସମବେଦନାପୂରିତ କଣ୍ଠରେ କହିଲା, ''କାହିଁକି ଆଉ ପଢ଼ିବି ନାହିଁ? ମୁଁ ବୃତ୍ତି ପାଉଛି; ପଢ଼ିବି, ବି.ଏ. ପାଶ୍ କରିବି, ଗ୍ରାଜୁଏଟ୍ ହେବି, ଆମ ଘରର ନାଁ ହେବ। ହୁଣ୍ଡା ମୂର୍ଖପରି ଘରେ ବସିରହିଲେ ସମସ୍ତେ ହସିବେ।''

ଅଭିମାନରେ ଶେଫାଳୀ କହିଲା, ''ତୁ କ'ଣ ହୁଣ୍ଡା, ମୂର୍ଖ? ଆମ ଗାଁରେ ତ କେହି ଏଣ୍ଟ୍ରାନ୍‌ସ ପାଶ୍ କରିନାହିଁ। ତୁ ଏତିକି ପାଶ୍ କଲୁ ହେଲା ନାହିଁ; କ'ଣ ଚାକିରି କରିବୁ? ତୁ ଚାଲିଗଲେ ମତେ ଭଲ ଲାଗିବ ନାହିଁ। କଲିକତା ଏତେ ଦୂର, ତୁ କ'ଣ ସବୁ ଛୁଟିରେ ଆସି ପାରିବୁ?''

ଅନୁ - ମୁଁ ନ ଆସିବି ଯେବେ।

ଶେ - ନାହିଁ ନାହିଁ, ମତେ ଭଲ ଲାଗିବ ନାହିଁ।

ଅ - ଆରେ, ତତେ ଭଲ ଲାଗିବ ନାହିଁ ବୋଲି କ'ଣ ମୁଁ ପାଠ ଛାଡ଼ି ଆସିବି? ମତେ କିଏ ପୋଷିବ?

ଶେଫାଳୀ ଆଶ୍ଚର୍ଯ୍ୟ ହୋଇ କହିଲା - କାହିଁକି, ବାବା ପୋଷିବେ। ଏତେଦିନ କିଏ ପୋଷିଲା? ବାବା ତ?

ଅ - ବାବା ପୋଷିବେ ସତ, ମାତ୍ର ପଢ଼ିବା କ'ଣ ମନ୍ଦ? ମୋର ବି.ଏ., ପାଶ୍ ହେଲେ ତୁ ଖୁସି ହେବୁ ନାହିଁ?

ଶେଫାଳୀ ନିର୍ବୋଧ ପରି କହିଲା - ନା, ତୁ କଲିକତା ଯାଇ ବି.ଏ. ପାଶ୍ କରିବୁ, ଚାରିବର୍ଷ ପରେ ଆସିବୁ, ମୁଁ ଖୁସି ହେବିନାହିଁ। ସରଯୁଦି କହୁଥିଲେ କଲିକତା ଅଦ୍ଭୁତ ସହର x x x ସେଠାକାର ଲୋକେ ଦୁଷ୍ଟ, ଠକ, ମିଛ କହନ୍ତି। ତୁ ଏକା ସେଠି କେମିତି ରହିବୁ? ମୋର ଭାରି ଭୟ, ଚୋର ଯଦି ତୋତେ ଠକେ!

ଅନୁ ପୁଣି କହିଲା - ମୂର୍ଖ, ଏ ପରା ଇଂରାଜ ରାଜ୍ୟ। କିଛି ଭୟ ନାହିଁ। ମୁଁ କଲିକତା ଗଲେ ତୋ ପାଇଁ ଶଙ୍ଖା ପଠାଇବି, କେତେ ସୁନ୍ଦର ସୁନ୍ଦର କାଚ ପଠାଇବି, ଯାହା ଭଲ

(୧) ଆଶ୍ଚର୍ଯ୍ୟ

ଦେଖିବି ପଠାଇବି। କଲକତା କ'ଣ ଏମିତି ସେମିତି! ଆମ ଦେଶରେ ଦିନରାତି ଦୁଇଟା ଅଛି, ସେଠାରେ ଖାଲି ଦିନ, ବିଜୁଳିବତୀର ଆଲୁଅରେ ରାତି କିଏ, ଦିନ କିଏ ଚିହ୍ନି ହେବ ନାହିଁ। ଏଠି ଆମର ଖଣ୍ଡେଖଣ୍ଡେ କୋଠା, ସେଠି ସମସ୍ତଙ୍କର କୋଠା ଘର। ଏଠି ଆମେ କୂଅରୁ ପାଣି ଖାଉ, ସେଠି କଳପାଣି! ଆଉ କେତେ କହିବି, କଲିକତା ଭାରି ସୁନ୍ଦର, ଭାରି ବଡ଼ ସହର, ସେଠିକାର ଲୋକେ ଖୁବ୍ ଭଲ।

ଏହିପରି ଅନୁ କଲିକତା ସମ୍ବନ୍ଧୀୟ ଶ୍ରୁତପୂର୍ବ କଥାଗୁଡ଼ିକ ଆବୃତ୍ତି କରିବାକୁ ଲାଗିଲା, ଶେଫାଳୀ ନୀରବରେ ଶୁଣିଲା, ତଥାପି ତାହାର ମନରେ ଶାନ୍ତି ହେଲା ନାହିଁ।

ଦିନ ଗଲା, ରାତି ହେଲା; ରାତି ଗଲା, ଦିନ ହେଲା। ଆଜି ଅନୁ କଲିକତା ପଥର ପଥିକ ହେଲା। ମନର ଦୁଃଖ ମନରେ ମାରି ହରିହର, ଇନ୍ଦୁମୁଖୀ ଓ ଶେଫାଳୀ ସ୍ନେହର ଅନୁକୁ ପଠାଇଦେଲେ। ଆଖିରୁ କଷ୍ଟରେ ଲୋତକ ସମ୍ବରଣ କଲେ, ପଛେ ବାଳକର ଅମଙ୍ଗଳ ହୁଏ। ଏହିପରି ମାସ ଦିନ ବହିବାକୁ ଲାଗିଲା। ଶେଫାଳୀର ହୃଦୟ ବଡ଼ ଶୂନ୍ୟ ବୋଧହେଲା। ବଡ଼ କଷ୍ଟରେ ସେ ନ କାନ୍ଦି ରହିଲା, କ୍ରମେ ତାହା ମଧ୍ୟ ସହ୍ୟ ହୋଇଗଲା। ପୂଜାଛୁଟି ଆସିଲା, ଅନୁ ଆସିଲା, ପୁଣି ଗ୍ରୀଷ୍ମାବକାଶ ଆସିଲା, ଅନୁ ଆସିଲା, ତାକୁ କଲିକତାର ଅସଂଖ୍ୟ ଗଳ୍ପ ଶୁଣାଇଲା। ଅନେକ ପଦାର୍ଥ ଆଣିଦେଲା।

ଅନୁର ଏଫ୍.ଏ.ପାଶ୍ ହୋଇଅଛି। ବର୍ତ୍ତମାନ ସେ ବି.ଏ. କ୍ଲାସର ଛାତ୍ର; ତାହାର ଇଚ୍ଛା ଓକିଲାତି ମଧ୍ୟ ପଢ଼ିବ। ପିତାଙ୍କୁ ଲେଖିଲା। ସ୍ୱାସ୍ଥ୍ୟହାନି ଭୟରେ ପ୍ରଥମେ ହରିହର ଅନୁମତି ଦେବାକୁ ଇତଃସ୍ତତଃ କଲେ, ମାତ୍ର ବାଳକର ଆଗ୍ରହାତିଶଯ୍ୟ ଦେଖି ଅବଶେଷରେ ସମ୍ମତ ହେଲେ। ଅନୁ ଦୃଢ଼ ପ୍ରତିଜ୍ଞା ସହ ଏକାନ୍ତ ଅଧ୍ୟୟନ କରିବାକୁ କଲିକତାରେ ରହିଲା।

(୪)

ସାନନ୍ଦ ଦାସର ପରିବାର ଛଳ[୧] ଚାତୁରୀରେ ବିଶେଷ ପଟୁ। ତାହାର ସ୍ତ୍ରୀ, ପୁତ୍ର, କନ୍ୟା ଓ ନିଜେ ଗୃହବିଚ୍ଛେଦ[୨] କାର୍ଯ୍ୟ ଘଟାଇବା ବିଷୟରେ ସିଦ୍ଧହସ୍ତ। ତାହାର ଯୋଡ଼ିଏ କନ୍ୟା। ଜ୍ୟେଷ୍ଠା ସୁକୁମାରୀର ବହୁକାଳ ହେଲା ବିବାହ ହୋଇଯାଇଅଛି। କନିଷ୍ଠା ମାଳତୀ ଏପର୍ଯ୍ୟନ୍ତ ଅବିବାହିତା। ତାହାର ଅପସ୍ମାର (ଫିଟ୍ସ୍) ବେରାମି[୩], ସମୟ ସମୟରେ ମୂର୍ଚ୍ଛା ହୁଏ। ଏହି କାରଣରୁ ମଧ୍ୟ ତାହାର ବିବାହ ସ୍ଥଗିତ ହୋଇ ପାରନ୍ତା ନାହିଁ, ମାତ୍ର ଚୂଡ଼ା ଉପରେ ମୟୂରପୁଚ୍ଛ ପରି ତାହାର ଏପରି ଗୋଟିଏ କୁତ୍ସିତ ରୋଗ ଛଡ଼ା ଆଖିରେ କଦାକାର ଫୁଲା ପଡ଼ିଅଛି। ସାନନ୍ଦର ପରମ ହିତୈଷୀ ଭ୍ରାତା ନବକିଶୋର ଦାସଙ୍କ ପତ୍ନୀ ଉକ୍ତ ଦିଓଟି କାରଣ ହେତୁରୁ ପରମ ଆତ୍ମୀୟତା ପ୍ରକାଶକରି ମାଳତୀର ସବୁ ବର ବାହୁଡ଼ାନ୍ତି[୪] ଏବଂ କେବେ କୌଣସି ବୃଦ୍ଧା ଗୋପନରେ କନ୍ୟାଟିର ବିଷୟ ପିଚାରିବାକୁ ଆସିଲେ, ମାଳତୀର ରୂପ ଗୁଣ ସାଳଙ୍କାରରେ[୫] ବର୍ଣ୍ଣନା କରନ୍ତି। ଶ୍ରୋତା ବିମୁଖ ହୁଏ।

---

(୧) କପଟ, (୨) ଘରଭଙ୍ଗା, (୩) ବେମାରି, ରୋଗ, (୪) ଫେରାଇଦେବା
(୫) ଅତିଶୟୋକ୍ତି, ଟିକିନିଖି, ଉପମା ଦେଇ।

ମାଳତୀର ବିବାହ ହୋଇନାହିଁ। ବୟସ କିନ୍ତୁ ଅନେକ ହେଲାଣି। ଚିନ୍ତା କ'ଣ, ତାଙ୍କ ଘରେ ବାଢ଼ୁଅ କନ୍ୟା ଅନେକ ବର୍ଷ ରହିଥାନ୍ତି। ମାଳତୀ କିନ୍ତୁ ସମୟ ସମୟରେ ଚିନ୍ତାକରେ। ନିଜର ବିବାହ ବିଷୟ ଚିନ୍ତାକରିବା ବିଂଶବର୍ଷିୟା ଯୁବତୀ ପକ୍ଷରେ ଆଶ୍ଚର୍ଯ୍ୟର ବିଷୟ ନୁହେଁ। ସେହି କେବଳ ଚିନ୍ତାକରେ ତାହା ନୁହେଁ, ଆହୁରି ଚିନ୍ତାକରେ ଜଣେ, ସେ ତାହାର ମାତା। ଉଭୟଙ୍କ ଇଚ୍ଛା ତାହାର ଶୀଘ୍ର ବିବାହ ହେଉ। ପାତ୍ର ମଧସ୍ଥିର। କେହି ଶୁଣି ଅସମ୍ଭବ ଜ୍ଞାନ କରିବେ ନାହିଁତ? ମନୋନୀତ ପାତ୍ରଟି ଅନଙ୍ଗମୋହନ।

ଅନଙ୍ଗ ଜମିଦାରପୁତ୍ର ନୁହେଁ, ଶେଫାଳୀର ବାଗ୍‌ଦତ୍ତା ବର, ଏହା ତ ରାଜ୍ୟର ଲୋକେ ଜାଣନ୍ତି ନାହିଁ। ଜାଣନ୍ତି କେବଳ ଚାରି ବ୍ୟକ୍ତି; ଦୀନବନ୍ଧୁ, ଘନଶ୍ୟାମ ସ୍ୱର୍ଗରେ, ହରି ଓ ଇନ୍ଦୁ ପୃଥିବୀରେ। ଆଉ କେହି ଜାଣନ୍ତି ନାହିଁ। ସମସ୍ତେ ଭାବନ୍ତି, ଅନୁ ଜମିଦାରଙ୍କ ଆଶ୍ରିତ। ସଦାଶୟ ଜମିଦାର ତାଙ୍କୁ ଯୋଗ୍ୟକରି ଧର୍ମାର୍ଜନ କରୁଅଛନ୍ତି। ମୃତ ଘନଶ୍ୟାମର ବିଶ୍ୱସ୍ତ କାର୍ଯ୍ୟର ପୁରସ୍କାର।

ଯେ ଯାହା ଭାବୁ ପଛେକେ, ଶେଫାଳୀ ଓ ଅନୁଙ୍କର ମାଳତୀ ଘନିଷ୍ଠ ସଙ୍ଗୀ, ସେ ଉଭୟଙ୍କର ମାଳତୀ ଅପା। ମାଳତୀ ବାଳକ ବାଳିକାଙ୍କର ସମଗ୍ର ଗତିବିଧି ଲକ୍ଷ୍ୟ କରିଅଛି। ଅନୁକୁ ସେ ପ୍ରାଣାଧିକ ସ୍ନେହକରେ, ମାତ୍ର ଅନୁ ଦରିଦ୍ର ବାଳକ, ତାହାର ଏଡ଼େ ସ୍ପର୍ଦ୍ଧା, ନିଜର ସମକକ୍ଷ ମାଳତୀକୁ ସ୍ନେହ ନ କରି ବାମନ ଚାନ୍ଦ ଧରିଲାଭଳି ଅନୁ ଶେଫାଳୀର ଭକ୍ତ। ଏହା ମାଳତୀର ଅତ୍ୟନ୍ତ ଅସହ୍ୟ। ଏକେ ଶେଫାଳୀ ସୁନ୍ଦରୀ, ତଦୁପରି ଐଶ୍ୱର୍ଯ୍ୟାଶାଳିନୀ ଜମିଦାରଦୁହିତା, ଗହଣାରେ ଝଲମଲ, ପାଟ ଲୁଗାରେ ଶରୀର ଉଜ୍ଜ୍ୱଳ। ପୁଣି ବିଶେଷ ସୁକୁମାରୀ, ମାତା ପିତାର ଏକାନ୍ତ ଆଦରିଣୀ; ମାଳତୀ ତାହାର ଦାସୀ, ମାଳତୀର ବଡ଼ ଈର୍ଷା, ବିଶେଷ କ୍ରୋଧ। ଏ ତ ବାଳିକା, ସେ ତ ବାଳିକା, ମାତ୍ର "କାହିଁ ରାଣୀ, କାହିଁ ଚନ୍ଦ୍ରକାଣୀ।"

ମାଳତୀ ଶେଫାଳୀ ସହିତ ମୌଖିକ ବିଶେଷ ମଧୁର କଥା କହିଲେ ସୁଦ୍ଧା ତାଙ୍କୁ ହିଂସା କରେ। ହିଂସାର ବିଷୟ ଅନେକ – ଶେଫାଳୀର ରୂପ, ଶେଫାଳୀର ସୁନ୍ଦର କେଶରାଶି – ତାହାର ଅସଂଖ୍ୟ ମଣିମାଣିକ୍ୟ ଖଚିତ ଅଳଙ୍କାର, ସୁନ୍ଦର ସୁନ୍ଦର ପାଟ, ବନାରସୀ ଲୁଗା, ଖଟିବାକୁ ଗୋଡ଼ତଳେ କେତେ ଦାସୀ। ତାହା ଉପରେ ପୁଣି, ଅନଙ୍ଗମୋହନ, ଅତି ରୂପବାନ୍, ଗୁଣବାନ୍, ଅତି ପ୍ରିୟା ଜଗତର ସମୁଦାୟ ବସ୍ତୁ ଅପେକ୍ଷା ସୁନ୍ଦର ଅନଙ୍ଗମୋହନ, ସେ ପୁଣି ଶେଫାଳୀକୁ ଆଦର କରେ। ଆଉ ମାଳତୀକୁ? ଘୃଣା କରେ। ନିଜେ ପରାନ୍ନପାଳିତ ହୋଇ ସୁଦ୍ଧା ମାଳତୀକୁ ଦାସୀ ତୁଲ୍ୟ ମନେକରେ। ଏହା ମାଳତୀର, ମାଳତୀର ମାତାପିତା ଓ ଭ୍ରାତାମାନଙ୍କର ଅସହ୍ୟ। ହାୟ ! ନିର୍ବୋଧ ଶେଫାଳୀ, ମାଳତୀକୁ ସେ ପୁଣି ଅତ୍ୟନ୍ତ ଭଲପାଏ।

ଦୁଇବର୍ଷ ବିତିଗଲା, ଅନଙ୍ଗ ଗୃହକୁ ଫେରି ନାହିଁ। ତାହାର ବିଚ୍ଛେଦ ଏତେ ଦୀର୍ଘ ଅଦର୍ଶନ ପରେ ଶେଫାଳୀକୁ ତେତେ ଅଧିକ ବାଧୁନାହିଁ। ଆଜିକାଲି ତାହାର ବିଶେଷ ସଙ୍ଗିନୀ ମାଳତୀ। ସକାଳ ଓ ସନ୍ଧ୍ୟା ସରଯୂ ଦିଦି ନିକଟରେ ଅତିବାହିତ କରି ଦୀର୍ଘ ମଧାହ୍ନ ବାଳିକାଦ୍ୱୟ

ଏକତ୍ର କଟାନ୍ତି। ଶେଫାଳୀ ବର୍ତ୍ତମାନ ଯୁବତୀ। ତାହାର ରୂପ-ନଦୀ ତରଙ୍ଗାୟିତ, କୂଳ ଉଚ୍ଛୁଳି ପଡୁଛି। ପ୍ରିୟସଖୀ ମାଳତୀ ଦିବାରାତ୍ର ତାହାର ରୂପ ବର୍ଣ୍ଣନାକରି ଶେଫାଳୀକୁ ସନ୍ତୁଷ୍ଟ କରିବାର ପ୍ରୟାସକରେ। ନାରୀର ରୂପ ବୋଧହୁଏ ତାହାର ସର୍ବାଧିକ ପ୍ରିୟ। ରୂପର ପ୍ରଶଂସା ଶୁଣିବାକୁ କେଉଁ ନାରୀ ଉଦ୍‌ଗ୍ରୀବ ନୁହେଁ, ରୂପକୁତ୍ସାରେ କିଏ ମର୍ମାହତା ହୁଏ ନାହିଁ? ଶେଫାଳୀର ସବୁ ଅଛି, ରୂପ ଅଛି, ଗୁଣ ଅଛି, ଧନ ଅଛି, ମାନ ଅଛି, ଅତୁଳନୀୟ ଯୌବନ ଅଛି। ଶେଫାଳୀର କ'ଣ ନାହିଁ? ତୋଷାମଦପଟୁ ମାଳତୀର ବର୍ଣ୍ଣନାପାଇଁ ଶେଫାଳୀର କ'ଣ ନାହିଁ?

ଶେଫାଳୀ ରାଜକୁମାରୀ, ଐଶ୍ୱର୍ଯ୍ୟଶାଳିନୀ; ଆଉ ଅନୁ? ସେ ତାହାର ପିତାର ଆଶ୍ରିତ, ଏକ ପିତୃମାତୃହୀନ ଅନାଥ ଦରିଦ୍ର ବାଳକ। ତାହାର କୁଳଶୀଳ, ବଂଶଗୋତ୍ର କିଛି ଜଣାନାହିଁ। ତାହାର ଏକାନ୍ତ ହୀନାବସ୍ଥା ବିବୃତକରି ଶେଫାଳୀ ହୃଦୟରେ ଅନୁପ୍ରତି ବିରାଗ ଜନ୍ମାଇବା ହିଁ ମାଳତୀର ମୁଖ୍ୟ ଉଦ୍ଦେଶ୍ୟ।

ହଠାତ୍ ତାହାର ଉଦ୍ଦେଶ୍ୟ ସିଦ୍ଧିର ଏକ ଅପୂର୍ବ ସୁଯୋଗ ଉପସ୍ଥିତ ହେଲା। ଶେଫାଳୀ ଲାଗି ନାନାସ୍ଥାନରୁ ସମ୍ବନ୍ଧ ଆସିବାକୁ ଲାଗିଲା। ସାନନ୍ଦ ଦାସ ଏହି ସୁଯୋଗରେ ଶେଫାଳୀକୁ କୌଣସି ସ୍ଥାନରେ ବିବାହ କରାଇବାକୁ ପ୍ରାଣପଣେ ଚେଷ୍ଟା କରିବାକୁ ଲାଗିଲେ। ମାଳତୀ ଓ ଅନୁର ମିଳନ ପଥର କଣ୍ଟକ ଶେଫାଳୀକୁ ଦୂର କରିବା ବର୍ତ୍ତମାନ ସାନନ୍ଦ ପରିବାରର ପ୍ରଧାନ ଚିନ୍ତା।

ଦିନେ ସିଲାଇ କରୁକରୁ ଶେଫାଳୀ ଅନୁ ବିଷୟ ଭାବୁଅଛି, ଏତେ ଦିନ ହେଲା, ଦୁଇବର୍ଷ ପୂର୍ଣ୍ଣ ହେଲା, ଅନୁ ତ କୌଣସି ଛୁଟିରେ ଆସିଲା ନାହିଁ, କେବେ ତାର ଓକାଲତି ପରୀକ୍ଷା ଶେଷହେବ, ସେ ଆସିବ- ଭାବନାରେ ବିଘ୍ନ ପଡ଼ିଲା, ହଠାତ୍ ମାଳତୀ ଆସି ପଶ୍ଚାଦ୍ଦିଗରୁ ତାହାର ଚକ୍ଷୁ ଦିଓଟି ହସ୍ତାବୃତ କଲା।

''ଆଲୋ ମାଳ, ବସ୍'' ଏହା କହି ମୁହଁ ବୁଲାଇ ଶେଫାଳୀ ପ୍ରିୟତମ ବନ୍ଧୁର ସଂବର୍ଦ୍ଧନା କଲା। ମାଳତୀ ବସିଲା, ଏକଥା ସେ କଥା ହେଲା, କ୍ରମେ ଗଳ୍ପ ଜମିଲା, ବର୍ତ୍ତମାନ ମୂଳକଥା କହିବାର ସୁଯୋଗମିଳିଲା। ମାଳତୀ ଆରମ୍ଭକଲା- ''ସହି, ଗୋଟାଏ କଥା ଶୁଣିଛୁ?''

ଶେ - ସହି, କିସ କଥା?

ମା - ସହି, ବେଙ୍ଗୁଲୀ ମଥା। ଆଲୋ ଶୁଣ୍, ନୂଆଗାଁ ସାଆନ୍ତ ଘରୁ ତୋ ପାଇଁ ଖବର ଆସିଲାଣି।

କିଛି ନ ଜାଣିଲା ପରି ଶେଫାଳୀ କହିଲା, 'କି ଖବର ଲୋ'?

ମା - ବାହାଘର କଥା ଲୋ, ନୂଆଗାଁ ସାହାନ୍ତଙ୍କ ବୋହୂ ହେବୁ ଲୋ।

ଶେଫାଳୀ ବିବାହ କଥାରେ ବିଶେଷ ସଂକୁଚିତା ହୋଇ କହିଲା, ''ମାଳ, ତୋର ସବୁବେଳେ ସେହି କଥା, ଆଉ କିଛି କଥା ନାହିଁ?''

ମାଳତୀ ବଡ଼ ଆଦରରେ କହିଲା, ଆମ ଦେଶ ଆଉ ଗଣ୍ଡାଏ ଛଅଟା ମାସପରେ ଯାଇ ପରଘର କରିବେ। ଆଜଠଉଁ ଆମର ବାହୁନା[୧] ଲାଗିବ, ''ଆଗୋ ସହି ସଙ୍ଗାତେ-ମନେ ରଖିବ ମୋତେ''।

'ବସ୍' ବାଧା ଦେଇ ଶେଫାଳୀ ତାହାର ହାତ ଟାଣି ଧରିଲା। କିଛିକ୍ଷଣ ପରେ ପଚାରିଲା, ''କଥାଟା ସତ ?''

''ସତ ନୁହେଁ। ମୋ ରାଣ। ମୋ ବୋଉଠୁ ଶୁଣିଥିଲି ପରା। ଆମ ବାପା ସାଆନ୍ତେ, ମା ସାଆନ୍ତାଣୀ ହିଁ ଭରିଲେଣି, ଦିନ ମାସ କଥା ଛିଡ଼ିଲାଣି[୨], ସବୁ ଠିକ୍ ହେଲାଣି। ତୋ ରୂପ ତୋ ଗୁଣ ଶୁଣିଲେ ତ ରଜାପୁଅ ଝୁରିବେ। ଏହା ନୂଆଁଗାଁ ସାଆନ୍ତ ଘର, ତୋ ବାପା ସାଆନ୍ତ କାନ୍ଧକୁ କାନ୍ଧ। ବୋଉ କହୁଥିଲା, ତାଙ୍କର କୁଆଡ଼େ ଲକ୍ଷେ ଭରଣ ଧାନରେ ସୁନା କଳସ ବସେ, ଗୋଠରେ ହଜାର ହଜାର ଗାଈ ଗୋରୁ ବଳଦ-ଛେଳି ମେଣ୍ଢା, ଆଉ ଧନ ସମ୍ପତ୍ତିର ରଜାଘରୁ ବଳି। ଏଥର ତୁନି ତୁନି କାନରେ କହିଲା, ''ବର ନାଁ ନଟବର। ଭାରି ସୁନ୍ଦର– ବାବା ଆମର ଦେଖିଥିଲେ, ଭାରି ଭଲ, ଏଫ୍.ଏ. ପାଶ୍ କରିଛି। ଦେଖ ସହି, କାହାକୁ କହିବୁ ନାହିଁଟି, ଗୁପ୍ତ କଥା– ଭାରି ଗୁପ୍ତ– ବାପା ଯାଇଥିଲେ ନୂଆଗାଁ, ବାପା ସାଆନ୍ତ ପଠାଇଥିଲେ ବରଘର ଓର[୩] ନବାକୁ – ଆଚ୍ଛା ମଣିଷ, ଏମିତି ମିଳାପୀ, ତୋ କଥା ପଚାରିଥିଲେ, ''ଆମ ଝେମା ପରା'' ବାପା କହିଲେ, କେତେ କଥା ହେଲାଣି, ତୁ ହୁଣ୍ଡୀ କିଛି ଜାଣି ନାହୁଁ।'' କିନ୍ତୁ ଏତେ କଥାରେ ସୁଦ୍ଧା ଶେଫାଳୀର ବିଶେଷ ଉତ୍ସାହ ଦେଖାଗଲା ନାହିଁ। ତାହାର କେଜାଣି କାହିଁକି ଘନଘନ ଅନୁକଥା ମନେ ପଡ଼ିଲା; କିନ୍ତୁ ଧର୍ମଶୀଳା ସୁଚରିତ୍ରା ଶେଫାଳୀ ଭୁଲରେ ସୁଦ୍ଧା ଭ୍ରାତାତୁଲ୍ୟ ଅନୁକୁ ହୃଦୟରେ ସ୍ଥାନ ଦେଲାନାହିଁ।

(୫)

ଶେଫାଳୀ ଆଶ୍ଚର୍ଯ୍ୟ ହୋଇ ଲକ୍ଷ୍ୟ କରୁଅଛି, ଗୃହରେ ନାନା ଆୟୋଜନ ଉଦ୍‌ଯୋଗ ଲାଗିଅଛି। କୌଣସି ବିଶେଷ କାର୍ଯ୍ୟ ସକାଶେ ଯେପରି ସମସ୍ତେ ବ୍ୟସ୍ତ। ଜମିଦାରିରୁ ଭାର ଭାର ତଣ୍ଡୁଳ, ଉତ୍କୃଷ୍ଟ ଗବ୍ୟଘୃତ[୪], ମସଲା, ନାନା ଶିଳ୍ପ ପଣ୍ୟ ଦ୍ରବ୍ୟରେ ଭଣ୍ଡାର ଘର ପୂର୍ଣ୍ଣ। ମାଳତୀ କଥାରେ ତାହାର କିଞ୍ଚିତ୍ ବିଶ୍ୱାସ ହେଲା। ହଠାତ୍ ଦିନେ ଦାସୀ ଆସି ତାହାର ଅଳଙ୍କାର ସାଜ ଫିଟାଇ ମାପ ଆଦି ନେଇଗଲା। ଏ କ'ଣ ତେବେ ସତେ ତାହାର ବିବାହ ଉତ୍ସବର ପୂର୍ବ ଲକ୍ଷଣ ? ଲାଜ କଥା, ସେ କାହାକୁ ପଚାରିବ ? କେବଳ, ଏକମାତ୍ର ମାଳତୀ, ମାଳତୀର କଥା ନିଶ୍ଚୟ ସତ୍ୟ। ମାଳତୀ ନିଶ୍ଚୟ ଠିକ୍ ଖବର ଜାଣେ। ଆଜି କାଲି ଉଭୟଙ୍କର ଛାଡ଼ ବାଡ଼[୫] ନାହିଁ। ଦିନରେ, ସନ୍ଧ୍ୟାରେ, ଉଦ୍ୟାନରେ, ପୁଷ୍କରିଣୀ ତଟରେ ଦୁଇ ସଙ୍ଗୀ ମନ ସୁଖରେ ଗଳ୍ପନିରତା, ସଂସର୍ଗଜା ଦୋଷଗୁଣା ଭବନ୍ତି। ଶେଫାଳୀର ସ୍ୱଭାବ ପରିବର୍ତ୍ତନ ହୋଇଅଛି। କୋମଳା ବିନିତା ବାଳିକା ଅହଂକାରିଣୀ ରୂପଗର୍ବିଣୀ ତୋଷାମୋଦପ୍ରିୟ ହେଲାଣି, ପଢ଼ା ପଢ଼ିରେ

(୧) କାନ୍ଦ, (୨) ସ୍ଥିରହେବା, ଠିକ୍ ହେବା (୩) ଗୁପ୍ତ ଖବର, (୪) ଗାଈଘିଅ, (୫) ଦୂରରେ ରହିବା, ଅଲଗା

ତାହାର ମନ ନାହିଁ। ନିର୍ବୋଧ ବାଳିକା ମନେମନେ ନିଜକୁ କଳ୍ପିତ ନୂଆଗାଁ ଜମିଦାରଙ୍କ ଭାବୀ ବଧୂ ସ୍ଥିରକରି ଆନନ୍ଦିତା। ଅଗ୍ନିକୁ ଇନ୍ଧନ ଯୋଗାଇ ମାଳତୀ କ୍ରମେ ବର୍ଦ୍ଧିତ କରୁଅଛି।

ଶେଫାଳୀ ଆଉ ଶେଫାଳୀ ନୁହେଁ। ତାହାର ସ୍ୱଭାବ, ତାହାର ରୀତିନୀତି ପରିବର୍ତ୍ତିତ। କ୍ଷୁଦ୍ର ଝୁରୁଝୁରା ଗଙ୍ଗଶିଉଳୀ ଆଜିକାଲି ଉନ୍ନତ, ଦର୍ପିତା ଓ ଚାଟୁପ୍ରିୟା'। ମାଳତୀ ଛଡ଼ା ତାହାର ଆଉ କାହାକୁ ଭଲ ଲାଗେ ନାହିଁ। ଅନୁ କଥା ବିଶେଷ ମନେ ପଡ଼େନାହିଁ। ମନେ ପଡୁଅଛି ନଟବର-କଳ୍ପିତ ଶ୍ୟାମ ସୁନ୍ଦର ନଟବର। ତାହାର କଳ୍ପିତା ଧନୈଶ୍ୱର୍ଯ୍ୟ, କଳ୍ପିତ କୁଳମର୍ଯ୍ୟାଦା, କଳ୍ପିତ ରୂପ ଗୁଣ, ଅହଂକାରିଣୀ ଶେଫାଳୀକା ମାଳତୀ ମୁଖରେ ଓ ନିଜ ମନୋମଧ୍ୟରେ ଉପଭୋଗକରି ସୁଖଲାଳସା ବୃଦ୍ଧିକରୁଅଛି। ଜମିଦାରଙ୍କ କନ୍ୟା, ଜମିଦାର ଗୃହର ବଧୂ ହେବ, ଏହାହିଁ ତ ବିଧିସଙ୍ଗତ। ରାଜପୁତ୍ରୀ ରାଜପୁତ୍ରର ପାଣିଗ୍ରହଣ କରିବ, ଏହାହିଁ ତ ସଂସାରାନୁମୋଦିତ। ଧନଶାଳିନୀ ଧନୈଶ୍ୱର୍ଯ୍ୟଶାଳୀ ଶୂରପ୍ରତାପ ସାମନ୍ତ ନଟବର ଚନ୍ଦ୍ର ରାଉତରାୟଙ୍କର ଗୃହିଣୀ ହେବ, ଏହାହିଁ ତ ସମ୍ମାନର ବିଷୟ। ବିଷବୀଜ ରୋପଣକାରିଣୀ ମାଳତୀର ଅଭୀଷ୍ଟସିଦ୍ଧ ହୋଇଅଛି। ଆଜିକାଲି ଶେଫାଳୀ ନଟବର କଥା ଶୁଣିବାକୁ ଭଲପାଏ। ତାହାର ଧନ ଓ ପ୍ରତାପର ଗଳ୍ପ ଶୁଣୁଶୁଣୁ ବିଭୋରାହୁଏ। ତାହାର ଚକ୍ଷୁରେ ବିଦ୍ୟୁତ୍ ବିକାଶ ହୁଏ। ମାଳତୀ ଲକ୍ଷ୍ୟକରି ମନେମନେ ହାସ୍ୟକରେ ଏବଂ ନିର୍ବିବାଦରେ ଅନଙ୍ଗମୋହନର କଳ୍ପିତ କୁଞ୍ଜ-କୁଟୀରର ରାଣୀ ହୋଇ ସୁଖାନୁଭବକରେ।

(୬)

ଓକିଲାତି ପରୀକ୍ଷା ଶେଷ ହୋଇଅଛି। ଦୀର୍ଘ ପ୍ରବାସର ଅବସାନ ପରେ ପାଠଶ୍ରମଶୀର୍ଣ୍ଣ, ଗୁଣବାନ୍, ବିନୟ, ସାଧୁ ପ୍ରକୃତି ଅନୁ ଆସି ପିତୃତୁଲ୍ୟ ହରିହର ଛୋଟରାୟଙ୍କ ଶ୍ରୀ ଚରଣରେ ପ୍ରଣାମ କଲା। ତାହାର ସୁଖଶ୍ରୀକୁ ଅନାଇ ହରିହର ତୃପ୍ତହେଲେ, ମନେମନେ ଅସଂଖ୍ୟ ଆଶୀର୍ବାଦ କଲେ। ଅନ୍ତରାଳରୁ ଭାବୀ ଜାମାତା ସର୍ବଗୁଣସମ୍ପନ୍ନ ଓ ଅନୁଗତ ଅନଙ୍ଗର ବଦନେନ୍ଦୁକୁ ନିରୀକ୍ଷଣ କରି ଇନ୍ଦୁମୁଖୀ ତୃପ୍ତହେଲେ। ତାଙ୍କ ହୃଦୟରେ ଶେଫାଳୀ ଓ ଅନୁର ଯୁଗଳ ମୂର୍ତ୍ତି ଫୁଟିଉଠିଲା। ବାଲ୍ୟର ସେ ଯୁଗଳମୂର୍ତ୍ତି ଅଙ୍କାସନ ସକାଶେ ବିବାଦପ୍ରବୃତ୍ତ କ୍ଷୁଦ୍ର ପୁଷ୍ପକଳିକା ତୁଲ୍ୟ କୋମଳ ଶିଶୁ ଦିଓଟି, ଆଉ ଯୌବନର ଏ ଯୁଗଳ ମୂର୍ତ୍ତି। ଅନୁ ଯୁବକ-ତାହାର ବୟସ ଦ୍ୱାବିଂଶ ଅତିକ୍ରମ କରିବ। ଏତେ ଅଳ୍ପ ବୟସରେ ସେ ଓକିଲ, ବି.ଏ. ପାଶ୍ ଆଉ ଏଥିରୁ ବଳି କ'ଣ ଆନନ୍ଦ ଅଛି ? ସେ ପୁଣି ଶେଫାଳୀର ସ୍ୱାମୀ, ଇନ୍ଦୁଙ୍କର ବାହାଁ।

ଅନ୍ତରାଳରୁ ଆଉ ଜଣେ ରମଣୀ ଦର୍ଶନ କଲା। ସେ ମାଳତୀର ମାତା ଦୁର୍ଗାବତୀ। ଅନଙ୍ଗ ସତେ ତା'ର ବାହାଁ ହେବ। ଆଶା ଓ ବିଶ୍ୱାସ ତାହାକୁ ଆକୁଳ କରିପକାଇଲା। ଶେଫାଳୀ ଯଦି ନୂଆଗାଁର ବୋହୂ ହୁଏ, ତେବେ କୁଳୀନ ସାନନ୍ଦ ପରିବାର କନ୍ୟାକୁ ଅନଙ୍ଗ କିପାଁ ବିବାହ ନ କରିବ ? ମାତା ଦୃଷ୍ଟିରେ ମାଳତୀ ଅତି ସୁନ୍ଦରୀ। କେଉଁ ମା ସନ୍ତାନକୁ କୁତ୍ସିତ ଦେଖେ !

କିନ୍ତୁ ଯାହାକୁ ଦର୍ଶନ କରିବାକୁ ଅନୁର ଏକାନ୍ତ ଆକାଂକ୍ଷା, ସେହି ଶେଫାଳୀକୁ ପ୍ରଥମ ଦର୍ଶନକରି ହଠାତ୍ ତାହାର ହୃଦୟରେ ଦାରୁଣ ଆଘାତ ଲାଗିଲା। ଏ କ'ଣ ! ତାହାର ସରଳା, କୋମଳହୃଦୟା, ଏକାନ୍ତ ଅନୁଗତା ଶେଫାଳୀ ? ତାହାର ହୃଦୟରେ ପୂର୍ବର ସ୍ନେହ ଓ ଆଦର ନାହିଁ କହିଲେ ଚଳେ। ଶେଫାଳୀ ତାକୁ ଓଳିକିଂ ହେଲା। ସ୍ୱଭାବସୁଲଭ 'ତୁ' ବଦଳରେ ବଡ଼ ସଂକୋଚରେ 'ତୁମେ' କହିଲା। ସେ ତ ଭାବିଥିଲା ଶେଫାଳୀ ଦୌଡ଼ିଯାଇ ଦେଖା କରିବ, ଆଦରରେ କଥା ଉପରେ କଥା ପଚାରିବ, କାହିଁ ଶେଫାଳୀ ତାହାତ କିଛି କଲାନାହିଁ। ଲଜ୍ଜାରେ ସଂକୋଚରେ ଓଳିକିହେଲା, ପରେ ଦୁଇପଦ କଥା ପଚାରିଲା, ଚାଲିଗଲା, ଅନୁ କ'ଣ ଶେଫାଳୀଠାରୁ ଏହାହିଁ ପ୍ରତ୍ୟାଶା କରିଥିଲା ? ଦୀର୍ଘ ତିନିବର୍ଷ ବିଚ୍ଛେଦ ପରେ ପ୍ରଥମ ଦର୍ଶନରେ କଣ ଏହିପରି ଉଦାସୀନତାର କଥା ଭାବିଥିଲା ?

ହାବଡ଼ା ଷ୍ଟେସନରେ ଟ୍ରେନ୍‌ରେ ଚଢୁଚଢୁ ଗୋଟିଏ ଗୀତ ଶୁଣିଥିଲା – ତାହାର ମନକୁ ଆସିଥିଲା, କୋମଳ ହୃଦୟତନ୍ତ୍ରୀରେ ବାଜି ଉଠୁଥିଲା, ''ଆମାର କୁଟୀରରାଣୀ – ସେ ଯେ ଗୋ – ଆମାର ହୃଦୟରାଣୀ।'' କିନ୍ତୁ ସେହି କଳ୍ପିତ କୁଟୀରରାଣୀ ତାହାର ସମାଦର କଲାନାହିଁ, ଅଭ୍ୟର୍ଥନା କଲାନାହିଁ। କେବଳ ଗୋଟିଏ ଓଳିକି ! ଅଭିମାନରେ ଅନୁର ନୟନ ପଲ୍ଲବ ଆର୍ଦ୍ର ହୋଇଗଲା। ଅନୁ ସମ୍ଭାଳି ନେଲା। ''ନା, ଏ ଯୌବନ-ସୁଲଭ ସଂକୋଚ – କୁଳକାମିନୀର ଭୂଷଣ ଲଜ୍ଜା।'' ଅନୁ ଟିକିଏ ଆଶ୍ୱସ୍ତ ହେଲା।

ମାତ୍ର ଯେତେଦିନ ଗଡ଼ିଲା, ଅନୁ ତେତେ ଏ ପାର୍ଥକ୍ୟ ବୁଝିପାରିଲା। ଏ ଶେଫାଳୀ ବର୍ଷତ୍ରୟ ପୂର୍ବର ଶେଫାଳୀ ନୁହେଁ। ଯୁବକ ଆବେଗରେ ଭାବିଲା, ''ଗଙ୍ଗଶିଉଳି ! କି ଖରା ଲାଗି ତୁ ଗଲୁ ମଉଳି।'' ସତ କଥା, ଶେଫାଳୀର ଶେଫାଳୀତ୍ୱ ନାହିଁ। ତାହାର ପ୍ରାଣରେ ଅନୁ ପ୍ରତି ବିଶେଷ ମମତା ନାହିଁ। ନଟବର ଚିନ୍ତାରେ ହୃଦୟପୂର୍ଣ୍ଣ। ଅନୁର ପ୍ରାଣରେ ବିଷମ ବେଦନା। ଶେଫାଳୀର କଥା କଥାକେ ଅନାସ୍ଥା, ପଦେପଦେ ଅନାଦର, ତାହା ବୁଦ୍ଧିବାନ୍ ଯୁବକ ବୁଝିପାରିଲା, ତାହାର ପ୍ରାଣ ଫାଟିଗଲା। ଗୋଟିଏ ଦୀର୍ଘଶ୍ୱାସ ହୃଦୟକନ୍ଦର ଧ୍ୱନିତ ଓ ବିଦୀର୍ଣ୍ଣକରି ବାହାରିଲା।

କିନ୍ତୁ ସେତିକି, ବାହାରେ ତାହାର ଚାଞ୍ଚଲ୍ୟ ପ୍ରକାଶିତ ହେଲାନାହିଁ। ଗୃହ ତାକୁ ଭଲ ଲାଗିଲା ନାହିଁ, ଅନୁ ସକାଳ ସନ୍ଧ୍ୟା ନଦୀ ତଟରେ ବୁଲିବାକୁ ଲାଗିଲା। ଜମିଦାର ହରିହର ବାବୁ ଦୀର୍ଘ ପରିଶ୍ରମ ପରେ ବିଶ୍ରାମ ଓ ବ୍ୟସନ ପ୍ରୟୋଜନ ଭାବି ଅନୁକୁ କୌଣସି କାର୍ଯ୍ୟ କରିବାକୁ ଅନୁରୋଧ କଲେ ନାହିଁ। ଅନୁକୁ ଅବ୍ୟାହତି ମିଳିଲା। ଏହି ଭ୍ରମଣର ସଙ୍ଗୀ ସ୍ୱରୂପ ହଠାତ୍ ଆସି ମିଳିଲେ ସାନନ୍ଦଙ୍କ ପୁତ୍ରଦ୍ୱୟ – ଗଣନାଥ ଓ ଗୋପୀନାଥ। ଉଭୟେ ପ୍ରାୟ ଅନୁର ସମବୟସ୍କ। ଏକାନ୍ତ ସଙ୍ଗୀହୀନ ସ୍ଥଳରେ ଉଭୟଙ୍କ ସାହଚର୍ଯ୍ୟ ଅନୁକୁ ଭଲଲାଗିଲା। 'ବିଷକୁମ୍ଭଃ ପ୍ରୟୋମୁଖଃ' ଗଣନାଥ ଓ ଗୋପୀନାଥ ଶୀଘ୍ର ଅନୁକୁ ସୌହାର୍ଦ୍ଦ୍ୟରେ ବଶୀଭୂତ କରି ପକାଇଲେ। ପ୍ରାଣର କଥା ବାହାରିଲା – ଶେଫାଳୀର ବିବାହ ପ୍ରସଙ୍ଗ – ନବଗ୍ରାମ ଜମିଦାର ଗୃହର

(୧) ନମସ୍କାର

ବିବରଣ – ସାମନ୍ତ ନଟବରଚନ୍ଦ୍ର ରାଉତରାୟଙ୍କ ଗୁଣଗ୍ରାମ। ଅନଙ୍ଗମୋହନ ସ୍ତବ୍ଧ ହେଲା, ତାହାର ହୃଦୟରେ କିଏ ବରଫ ଜଳ ଢ଼ାଳିଦେଲା – ମାତ୍ର ଆହୁରି ଅଛି, ଅନୁ– ଆହୁରି! ପୁତ୍ରଦ୍ୱୟଙ୍କ ଚକ୍ରାନ୍ତରେ ଯୋଗଦେଲେ ବୃଦ୍ଧ ସାନନ୍ଦ ଆଉ ସର୍ବଗୁଣାଳଙ୍କୃତା ମାଳତୀ।

ସାନ୍ଧ୍ୟ ସମୀର ସେବନ କରୁକରୁ ଅନୁ ପୁଷ୍କରିଣୀ ତଟରେ ଉପସ୍ଥିତ। ତାହାର ଶରୀର ଅସୁସ୍ଥ ବୋଧହେବାରୁ ନଦୀତଟ ଭ୍ରମଣାର୍ଥ ବହିର୍ଗତ ହୋଇନାହିଁ। ଘଟନାକ୍ରମେ ସେଠାରେ ଶେଫାଳୀ ଓ ମାଳତୀ ପ୍ରସ୍ତରାସନୋପରି ଉପବିଷ୍ଟା – ଏକାନ୍ତ ମନରେ ବାକ୍ୟାଳାପନିରତା। ଅନୁ ବିଚରଣ କରୁକରୁ ବୃକ୍ଷାନ୍ତରାଳରୁ ସେମାନଙ୍କ କଥାବାର୍ତ୍ତା ଶୁଣିପାରିଲା।

ମାଳତୀ– "ସହି, ଆଉ ଅଳ୍ପଦିନ – ନଟବର –"।

ଅନୁର କୌତୂହଳ ବର୍ଦ୍ଧିତ ହେଲା। ନଟବର ନାମ, କର୍ଣ୍ଣରେ ବାଜିଗଲା। କୁମାରୀଦ୍ୱୟ କି କଥା କହୁଅଛନ୍ତି ଶୁଣିବାକୁ ସେ ବୃକ୍ଷାନ୍ତରାଳରେ ଉପବେଶନକଲା। ମାଳତୀ ଆରମ୍ଭ କଲା – ତୋ ଶାଶୁଘର ସମସ୍ତେ ଭାରି ଭଲ – ଭାରି ଆଳାପୀ ମଣିଷ। ବାପା ନୂଆଗାଁ ଯାଇଥିଲେ, ତୋ ଦିଅର ବୀରକିଶୋର ସାମନ୍ତଙ୍କ ସଙ୍ଗେ ଦେଖାହେଲା।

ଶେଫାଳୀ ଉତ୍ସୁକ ହୋଇ ପଚାରିଲା – ନୂଆଗାଁ କାହିଁକି ଯାଇଥିଲେ?

ମା, କେଜାଣି ତୋ ଶାଶୁଘର କଥା ହୋଇଥିବ? ମୁଁ ଭଲ ଶୁଣି ନାହିଁ, ହେଲେ ତୋ କପାଳ! ସେଠା କୁଆଡ଼େ ମାଟି ନୁହେଁ, ସୁନା ପତର। ଧାନ ଗଛରେ ସୁନା ଫଳେ।

ତତ୍ପରେ ନଟବର ବିଷୟ ଆରମ୍ଭହେଲା। ସଙ୍ଗିନୀଦ୍ୱୟ ହାସ୍ୟ ପରିହାସ କରିବାକୁ ଲାଗିଲେ। ଅନୁ ଆଉ ସହ୍ୟ କରିପାରିଲା ନାହିଁ। ତାହାର ଆଶା ଆକାଶ-ଅଟ୍ଟାଳିକା ଚୂର୍ଣ୍ଣ ହୋଇଗଲା। ଶାନ୍ତ ହୃଦୟରେ ସେ ସଦରକୁ ଫେରିଗଲା। ଆଜି କଚେରିରେ ବେଶି ଲୋକ ନାହାନ୍ତି। ଗଣନାଥ ଏକମନରେ ଖାତାପତ୍ରର ହିସାବ ଦେଖୁଅଛି। ହଠାତ୍ ଅନଙ୍ଗ ଆସି ପଶ୍ଚାତ୍‌ଭାଗରେ ଦଣ୍ଡାୟମାନ ହେଲା।

ଅତ୍ୟନ୍ତ ଭଦ୍ରତା ସହକାରେ ଅଭ୍ୟର୍ଥନା କରି ଗଣନାଥ ଅନୁକୁ ବସିବାକୁ ଆସନ ଦେଲା। ଅନୁ ସୁଖୋପବିଷ୍ଟ ହେଲାପରେ କହିଲା, "ଭାଇ, ବାବୁ ସାଆନ୍ତ ତୁମ୍ଭର କାର୍ଯ୍ୟ କଥା କହୁଥିଲେ କି– ମୁଁ ଶୁଣିଛି, ତୁମେ ତୁମ୍ଭର ପିତାଙ୍କ ପଦ ପାଇବ।"

କକ୍ଷର ଅପର ପାର୍ଶ୍ୱରୁ ସାନନ୍ଦ ତାହା ଶୁଣିପାରି ନିକଟକୁ ଆସିଲେ। ପରମାତ୍ମୀୟ ଭାବ ପ୍ରକାଶ ପୂର୍ବକ କହିଲେ "ବାବା ଅନୁ, ବାଳ ପାଚିଲା, ବୁଢ଼ା ହେଲି, ଜମିଦାରିରେ କାର୍ଯ୍ୟ କରି ବୟସ ତିନିକୋଡ଼ି ହେଲା, କିନ୍ତୁ ତୁମପରି ପୁଅ ଦେଖିଲି ନାହିଁ, ଉପଯୁକ୍ତ ପିତାର ଉପଯୁକ୍ତ ପୁତ୍ର। ଏବେ ତୁମ୍ଭର କାର୍ଯ୍ୟକାଳ ଆସିଲା। ଆମର ମୁନିବ ହେବ। ବାବୁ ସାଆନ୍ତ ତୁମ ପିତାଙ୍କ ମୃତ୍ୟୁପରେ ସବୁ କାମ, ନିଜେ ଦେଖୁଥିଲେ, ମୁଁ ଏକା ତାଙ୍କର ସାହାଯ୍ୟ କରେ। ଏବେ

ସବୁ ତୁମକୁ ଦେଖିବାକୁ ହେବ। ଓକିଲ ହେଲ, ଆଇନ ଅଦାଲତ କଥା ଆମଠୁ ଭଲ ଜାଣ। କେବଳ ଦୋଷ ଭିତରେ ପିଲାଲୋକ, ତା ସେଥିରେ କଣ, ''ବୁଦ୍ଧିର୍ଯ୍ୟସ୍ୟ ବଳଂ ତସ୍ୟ।'' ତୁମେ ବୁଦ୍ଧିମାନ୍, ଗୁଣବାନ୍, ତୁମଦ୍ୱାରା ଆମ ଜମିଦାରିର ଉନ୍ନତି ହେବ। କାଲି ନବଗ୍ରାମ ଯାଇଥିଲି। ନଟବର ସାମନ୍ତ ତୁମ କଥା ପଚାରୁଥିଲେ। ତୁମେ ବି.ଏ. ପାଶ୍ କରିଛ, ଓକାଲତି ପାଶ୍‌କରିଛି ଶୁଣି ଭାରି ସୁଖୀହେଲେ। ଆସନ୍ତା ସପ୍ତାହ ସେ ଏଠାକୁ ଆସିବେ।'' ଅତଃପର ସ୍ୱର ନୂଆଇଁ କହିଲେ, ''ଅନୁବାବୁ, ଜାଣ! ସେ ଆମ ବାବୁ ସାଆନ୍ତଙ୍କ ଭାବୀ ଜ୍ୱାଇଁ –'' ଅନୁର ମୁଖ ଅନ୍ଧକାରାଚ୍ଛନ୍ନ ହୋଇଗଲା। ବଡ଼ କଷ୍ଟରେ ଆତ୍ମସମ୍ବରଣ କଲା। ପ୍ରତିଯୋଗୀ ନବଗ୍ରାମର ଜମିଦାର ପୁତ୍ର ନିଶାଖୋର କୁଚରିତ୍ର ନଟବର! ତିନିଥର ଏଣ୍ଟ୍ରାନ୍‌ସ ଫେଲ୍। ସେ ପୁଣି ଶେଫାଳୀର ଭାବୀ ସ୍ୱାମୀ, ଆଉ ଅନଙ୍ଗମୋହନ ସର୍ବାଂଶରେ ଶେଫାଳୀର ଉପଯୁକ୍ତ ହୋଇ ସୁଦ୍ଧା ଶେଫାଳୀର ଯତ୍ନରୁ ବଞ୍ଚିତ। କଥା ସର୍ବୈବ ସତ୍ୟ। ଶେଫାଳୀ ନଟବରର ଭାବୀ ପତ୍ନୀ। ଅନୁ ପ୍ରାଣକୁ ବଡ଼ ବାଧିଲା। ସେ ଜାଣେ, ସେ ପିତୃମାତୃହୀନ, ପରାନ୍ନପାଳିତ, ଗର୍ବିତା ଜମିଦାରଦୁହିତା ଶେଫାଳୀର ସମକକ୍ଷ ହେବାର ଆଶା ତାହା ପକ୍ଷରେ ଆକାଶକୁସୁମ। ତେବେ ସେ କାହା ସକାଶେ ଦୀର୍ଘ ପଞ୍ଚବର୍ଷ ପ୍ରଗାଢ଼ ପରିଶ୍ରମ କରିଥିଲା? କିପାଁ କୁହୁକିନୀ ଆଶା, କାନେକାନେ ଏଡ଼େ ମଧୁର କଥା ଶୁଣାଇଥିଲା?

ଶୟନରେ, ସ୍ୱପନରେ ଶେଫାଳୀର ମୂର୍ତ୍ତି, ଅନୁପମ ଶେଫାଳୀର ନବନୀତକୋମଳ ସୌନ୍ଦର୍ଯ୍ୟ ଧ୍ୟାନ କରୁକରୁ ଜୀବନସଂଗ୍ରାମରେ ଜୟୀ ହୋଇଥିଲା। ଆଶା ମାୟାବିନୀ! ଅନୁର ବିଶ୍ୱାସ ଥିଲା, ନିଜର ଯୋଗ୍ୟତା ଦେଖାଇ ପାରିଲେ, ସ୍ୱଭାବର ମାଧୁର୍ଯ୍ୟରେ, ଚରିତ୍ରର ଗୌରବରେ, ହରିହର ବାବୁଙ୍କୁ ତୁଷ୍ଟ କରିପାରିଲେ ବୋଧହୁଏ ତାହାର ଅଦୃଷ୍ଟ ପ୍ରସନ୍ନ ହୋଇପାରେ, ଆଶାକାନନରେ ସୌରଭମୟୀ ଶେଫାଳୀକୁସୁମ ଫୁଟିପାରେ; ମାତ୍ର ସେତିକି ଦୂର। ଦରିଦ୍ର ଅନାଥ ବାଳକ ତତୋଽଧିକ ଆଶା କରିବାକୁ ଭୟକଲା। ମାତ୍ର ଆଜି! ସମସ୍ତ ଆଶା ଚୂର୍ଣ୍ଣ! ନିଃସନ୍ଦେହ! ଶେଫାଳୀ କାହିଁକି ତାକୁ ଆଦର କରିବ? ଶେଫାଳୀର କି ଦୋଷ। ପ୍ରେମିକ ଅନୁ ଶେଫାଳୀର ଦୋଷ ଦେଖିପାରିଲା ନାହିଁ। ଶେଫାଳୀ ପ୍ରତି ତାହାର ସହାନୁଭୂତି ଜାତହେଲା। ବହୁବର୍ଷ ତଳର କଥା ମନେପଡ଼ିଲା। ନିଜର ପ୍ରଥମ କଲିକତା ଯାତ୍ରା ସମୟରେ ଶେଫାଳୀକର୍ତ୍ତୃକ ସ୍ନେହୋକ୍ତି – ''ତୁ କଲିକତା ଗଲେ ମତେ ଭଲଲାଗିବ ନାହିଁ–ଆଉ–ସେଠି ଯଦି ତତେ ଚୋର କାଟେ।'' ହାୟ ଶେଫାଳୀ! ପଞ୍ଚବର୍ଷ କଲିକତା ବୁଲିଲା, ବିଶାଳ ସହରର ଗଳିଗଳି କନ୍ଦିକନ୍ଦି ଘୁରିଲା। ତାହାର ଅଶେଷ ମନୋହାରିତାରେ ବୁଡ଼ିଲା–ତାହାର ଅପୂର୍ବ ମାଦକତାରେ ମଜ୍ଜିଲା–ତାହାର ଥିଏଟର, ସିନେମା, ବାୟସ୍କୋପ୍ ସବୁ ଦେଖିଲା; ମାତ୍ର କାହିଁ– ଅନୁ ତ ସେହି ଅନୁ। ପାପପଙ୍କିଳ ନଗରୀର ଆବର୍ଜନାରେ ତାହାର ବିମଳ ଚରିତ୍ର କଳୁଷିତ ହେଲାନାହିଁ, କଳଙ୍କର ଛିଟାଟିଏ ଲାଗିଲା ନାହିଁ। ମାତ୍ର ଶେଫାଳୀ-ଗୃହ କୋଣରେ ଥାଇ

ଶେଫାଳୀ ପରିବର୍ତ୍ତିତ। ଅନୁକୁ ଭୁଲିଗଲା। ଅନୁର ବିଷମ ଅଭିମାନହେଲା। କ୍ଷାନ୍ତହୁଅ ଅନୁ।–ଶେଫାଳୀ ନିର୍ଦ୍ଦୋଷ। ତାହାର ଅପୂର୍ବ ସରଳତାରେ ସେ ତୁମକୁ ଭ୍ରାତାତୁଲ୍ୟ ଜ୍ଞାନ କରେ।

(୭)

ଆଜିକି ମାସେ ହେଲା ଅନୁର ଆଦୌ ସ୍ଫୂର୍ତ୍ତି ନାହିଁ। ଦିବାରାତ୍ର ଯେପରି କି କୌଣସି ବିଶେଷ ଚିନ୍ତାରେ ମଗ୍ନ, ତାହାର କି ଚନ୍ତା ସେ ନିଜେ ବୁଝି ପାରୁନାହିଁ। କି ଏକ ଭୀଷଣ ନୈରାଶ୍ୟ ଅନ୍ଧକାର ତାହାର ସମଗ୍ର ହୃଦୟକୁ ଆବୃତକରି ରଖିଅଛି। ଆଜି କାଲି ସେ ସର୍ବଦା ସଦରରେ ଥାଏ, ଭିତରକୁ ମଧ୍ୟେମଧ୍ୟେ ଆସେ, କିନ୍ତୁ ତାହା ଅତି ଅଳ୍ପକ୍ଷଣ ସକାଶେ। ଶେଫାଳୀ ମଧ ବାଲ୍ୟକାଳପରି ତାଙ୍କୁ ଦେଖିବାକୁ ବିଶେଷ ଉଦ୍‌ବିଗ୍ନ ନୁହେଁ। ମାଳତୀର କୌଶଳ ସଫଳ ହୋଇଅଛି।

ଆଜି ପର୍ବ ଦିବସ। ସ୍ୱହସ୍ତରେ ନାନାବିଧ ମିଷ୍ଟାନ୍ନ ପ୍ରସ୍ତୁତକରି ଅନୁକୁ ଭୋଜନରେ ବସାଇ ପରିବେଷଣପୂର୍ବକ ଇନ୍ଦୁମୁଖୀ ଅନ୍ତରାଳରେ ରହିଲେ। ଶେଫାଳୀ ନିକଟରେ ବସି ନୀରବରେ ଅନୁପ୍ରତି ମାତାଙ୍କର ଆଦର ଲକ୍ଷ୍ୟକରୁଥିଲା ଏବଂ ଭବିଷ୍ୟତରେ ନବଗ୍ରାମର ଜମିଦାରପୁତ୍ର ନଟବର ଯେ ଏହି ଆଦରର ଅଧିକାରୀ, ଏହାହିଁ ଭାବୁଥିଲା।

ଅନୁର ଭୋଜନ ସାଙ୍ଗ ହେଲାପରେ, ଚତୁର ଅନୁ ଇଚ୍ଛାକରି ଶେଫାଳୀକୁ ପାନ ମାଗିଲା। ଦାସୀ ଆସି ପାନ ଦେଇଗଲା। ଅନୁ ତାହା ଗ୍ରହଣ ନ କରି ପୁନଃପୁନଃ ଶେଫାଳୀକୁ ମାଗିବାକୁ ଲାଗିଲା। ଶେଫାଳୀ ବିରକ୍ତ ହୋଇ କହିଲା, "ଆଗରେ ଥୁଆ ହୋଇଛି, ନିଅ।" ଅନୁ ବାଧ ହୋଇ ଗ୍ରହଣକଲା, ଉଦ୍ଦେଶ୍ୟ କରି କହିଲା, "ନଟବର ଆର ସପ୍ତାହରେ ଆସିବ–ଘୋଡାଦୌଡ଼ ଦେଖିବାକୁ। ପାନ ଭାଙ୍ଗି ପଠାଇବୁ–ତୋଲି ସଜାଡ଼ି ଦେବୁ। ଦୁଃଖର କଥା, ଆମ ଗାଁରେ ତ ମଦଖଟି, ଗୋଲିଖଟି ନାହିଁ।" ଏହା କହି ଦ୍ରୁତ ବେଗରେ ବାହାରକୁ ଚାଲିଗଲା।

ଅନୁର ପରିହାସ ଶେଫାଳୀର ପ୍ରାଣରେ ବଡ଼ ବାଧିଲା। ଅନୁ ସତ୍ୟବାଦୀ, କେବେ ତ ମିଥ୍ୟା କହେନାହିଁ। ତେବେ କଣ ସତେ ନଟବରର ଗୁଲି ମଦ ସହିତ ସମ୍ବନ୍ଧ ଅଛି–ନା, ଏ ଥଟ୍ଟା ପରିହାସ? ଶେଫାଳୀ ବଡ଼ ଭାବନାରେ ଶଯ୍ୟା ଗ୍ରହଣକଲା। କାହାକୁ କିଛି ପଚାରିବାକୁ ସାହସ ହେଲା ନାହିଁ।

ଅନୁ ମାତୃତୁଲ୍ୟା ଇନ୍ଦୁମୁଖୀକୁ ପ୍ରଣାମ କରି କଚେରୀ ଗୃହରେ ଉପସ୍ଥିତହେଲା। କଚେରୀର ଲୋକ ଗହଳ ଭାଙ୍ଗିଗଲାଣି, ସାନନ୍ଦ ଦାସ ଖାତାପତ୍ର ସଜାଡ଼ି ରଖୁଅଛନ୍ତି– "ହରି ହରି" କହି ବୃଦ୍ଧ ହରିହର ଆସନରୁ ଉଠିଲେ, ଅନୁ ପ୍ରଣାମକଲା। ଆଦର କରି ବୃଦ୍ଧ ଆଶୀର୍ବାଦ କଲେ, କିଛିକ୍ଷଣ କଥାବାର୍ତ୍ତା ପରେ ପରୀକ୍ଷା ଛଳରେ ପଚାରିଲେ, "ବାବୁ ବି.ଏ. ପାଶ୍ କଲ, ବି.ଏଲ୍. ପାଶ୍ କଲ, ଅତଃପର କର୍ତ୍ତବ୍ୟ ବିଚାର କରିଅଛ?" ଅନୁ କି ଉତ୍ତର

ଦେବ ଭାବିପାରିଲା ନାହିଁ। ''ଆପଣଙ୍କ ଇଚ୍ଛା''– ଏତିକି କହି ତୁନିହୋଇ ରହିଲା। ବାଳକର ନମ୍ର ସ୍ୱଭାବରେ ହରିହର ମୁଗ୍ଧହେଲେ। ସସ୍ନେହରେ ତାହାର ପୃଷ୍ଠ ଦେଶରେ ହସ୍ତ ସ୍ଥାପନ କରି କହିଲେ, ବାବା, ଏଥର ସଂସାରର କାର୍ଯ୍ୟ କରିବା ତୁମର କର୍ତ୍ତବ୍ୟ ନୁହେଁ କି ? ତୁମ୍ଭର ଆଚରଣ ଓ ପଢ଼ାପଢ଼ିରେ ଆମ୍ଭେମାନେ ସମସ୍ତେ ଅତି ସନ୍ତୁଷ୍ଟ। ଯୋଗ୍ୟ ପିତାର ଯୋଗ୍ୟ ପୁତ୍ର, ସେଥିପାଇଁ ଉପଯୁକ୍ତ ପୁରସ୍କାର ପାଇବ। କାଲିଠାରୁ କଚେରୀରେ କାର୍ଯ୍ୟାଦି ଦେଖ।' 'ଆଜ୍ଞା' କହି ଅନୁ ବିଦାୟହେଲା। ଜାମାତା ଓ ଦୁହିତାର ମିଳନ ଜନିତ ଶତ ସୁଖର କଳ୍ପନା କରି ବୃଦ୍ଧ ହରିହର ଅନ୍ତଃପୁରାଭିମୁଖରେ ପ୍ରସ୍ଥାନକଲେ।

ଅନୁ କଚେରୀ ପଥରୁ କିୟଦ୍ଦୂର ଆସିଅଛି, ହଠାତ୍ ସାନନ୍ଦ ବାବୁ ଅନ୍ତରାଳରୁ ତାହାର ହସ୍ତ ଟାଣିଧରିଲେ। ''ଠିଆ ହୁଅ, ଠିଆ ହୁଅ, ଅନୁ ବାବୁ।'' କଥାବାର୍ତ୍ତା କରୁ କରୁ ଉଭୟେ ଅନଙ୍ଗର ପ୍ରକୋଷ୍ଠରେ ପ୍ରବେଶକଲେ। କଥାବାର୍ତ୍ତାର କିୟଦଂଶ ଏହିପରି –

ଅ–ଆପଣ କହୁଛନ୍ତି ମୁଁ ପୋଷ୍ୟ ପୁତ୍ର ହୋଇଥିଲି। ତେବେ ସେ କଥାଟା ଗୁପ୍ତ ହେଲା କାହିଁକି ? ବାବାଙ୍କର ତ ଆଉ ପୁତ୍ର ସନ୍ତାନ ନାହିଁ ?

ସା–ପୁତ୍ର ସନ୍ତାନ ନ ଥିଲେ କଣ କନ୍ୟା ସନ୍ତାନ ନାହିଁ ? ପୋଷ୍ୟପୁତ୍ର କି କେବେ ଜୁଆଇଁ ହୁଏ ? ସେ ତ ପୁତ୍ର ତୁଲ୍ୟ। ତେବେ ଅକାରଣ ସେ ସମ୍ପତ୍ତିର ଅଧିକାରୀ ହେବ, ନାତି କଣ ଅଧିକାରୀ ହୋଇ ନପାରେ ?

ଅନୁ ଏତେ କଥା ଭାବି ନ ଥିଲା, ଏବେ ବୁଝିଲା– ସେ ପୋଷ୍ୟ ପୁତ୍ର ହୋଇଥିଲା, କିନ୍ତୁ କନ୍ୟା ଜନ୍ମ ପରେ ସେ ଅଧିକାରରୁ ବଞ୍ଚିତ ହୋଇଅଛି; ଅଥଚ ଭଗିନୀ ସମ୍ପର୍କୀୟା ଶେଫାଳୀ ସହିତ ବିବାହ ମଧ୍ୟ ହେବ ନାହିଁ। ସେ ସ୍ତମ୍ଭିତ ହୋଇ ଶୁଣିଲା। ପୁଣି ସାନନ୍ଦ ଦାସ କହିଲେ– ''ଭାଇ ଭଉଣୀର ବିବାହ ହୋଇ ନପାରେ, ଆମ ଶାସ୍ତ୍ର ବିରୁଦ୍ଧ; ସେଥିପାଇଁ ନୂଆଗାଁ ସାଆନ୍ତ ପୁଅଙ୍କ ସହିତ ଜେମାଙ୍କର ବିବାହ ନିର୍ବନ୍ଧ[୧] ସ୍ଥିରହେଲାଣି। ମୁଁ ତୁମ୍ଭଙ୍କୁ ଗୋପନରେ କହୁଛି।'' ଅତି ମୃଦୁ ସ୍ୱରରେ କହିଲେ ''ତୁମ୍ଭର ପିତା ଏଠାର ଦେବାନ ଥିଲେ, ଖୁବ୍ ସମ୍ପତ୍ତିବାଡ଼ି କରିଯାଇଥିଲେ। ତାଙ୍କର କିଏ ଥିଲା ? ଏଠି ସାତବର୍ଷ କାର୍ଯ୍ୟ କରିଅଛନ୍ତି। ଆଉ ଆଜି ତୁମ୍ଭେ ଦାଣ୍ଡର ଭିକାରୀ। ନା, ନା, ତୁମ୍ଭର ଏତିକି ଭଲ ହୋଇଛି, ଆମ ସାଆନ୍ତ ଅତି ସଦାଶୟ, ପିଲାକାଳୁ ତୁମ୍ଭଙ୍କୁ ମା ବାପା ଛେଉଣ୍ଡ ଜାଣି ମନୁଷ୍ୟକରି ତୁମ୍ଭର ବାବାଙ୍କ ପଦ ଦେବେ। ତୁମ୍ଭେ ଶୁଣିଲ ତ, ପୁରସ୍କାର ପାଇବ। ସେ କ'ଣ ଦେବାନ ପଦ।''

ଏହିପରି ନାନା ଗଳ୍ପ ହେଲା। ରାତ୍ର ଏଗାରଟା ବାଜିଲା, ଚନ୍ଦ୍ର ବୁଡ଼ିଲା[୨]। ଅସ୍ତଗଲା। ଆକାଶ ମେଘରେ ଆଚ୍ଛନ୍ନ। ସାନନ୍ଦ ସ୍ୱ ଅଭୀଷ୍ଟ ସାଧନର ପ୍ରଥମ ଅଙ୍କ ସମାପ୍ତ କରି ମହୋଲ୍ଲାସରେ ଗୃହକୁ ପ୍ରସ୍ଥାନକଲା। ଅନୁ କ୍ଳାନ୍ତଦେହ ଓ ଭଗ୍ନମନରେ ଶଯ୍ୟା ଗ୍ରହଣକଲା। ତାହାର ଜୀବନବ୍ୟାପୀ ବହୁ ଆଶା-ଗଠିତ ଆକାଶ-ସୌଧ ହଠାତ୍ ଭାଙ୍ଗିପଡ଼ିଲା। ସାନନ୍ଦ ପରିବାରର ପ୍ରତ୍ୟେକ କଥା ଜ୍ୱଳନ୍ତ ସତ୍ୟତୁଲ୍ୟ ତାହା ଦୃଷ୍ଟିରେ ପତିଭାତହେଲା। କାରଣ

(୧) ଚୁକ୍ତି, ସମ୍ପର୍କ, (୨) ଅସ୍ତଗଲା

ଶେଫାଳୀର ବ୍ୟବହାର, ହରିହର ବାବୁଙ୍କର କଥା, ଏସବୁ ତ ତାହାର ପ୍ରତ୍ୟକ୍ଷ ପ୍ରମାଣ। ଆଉ ନଟବର ସହିତ ଆଦରର ଧନ ଶିଉଳୀର ବିବାହ ତ ସର୍ବୈବ ସତ୍ୟ, ଏଥିରେ ତ ସନ୍ଦେହର କିଛି କଥା ନାହିଁ। ଅନୁ ଭାବନାରେ ମଗ୍ନହେଲା, ନିଦ୍ରାଦେବୀଙ୍କର ସାକ୍ଷାତ୍ ନାହିଁ।

ଗଭୀର ରାତ୍ରି, କକ୍ଷରେ ଅନ୍ଧକାର, ଅନଙ୍ଗର ହୃଦୟରେ ମଧ ଘୋର ଅନ୍ଧକାର। ଆଜିକି ସେ ବହୁବର୍ଷର କଥା– ଅତି ବାଲ୍ୟକାଳର କଥା। ଦଣ୍ଡେ ଶେଫାଳୀକୁ ନ ଦେଖିଲେ ତାହାର ତୃପ୍ତି ହେଉ ନଥିଲା। ଦିନ ମଧରେ ପନ୍ଦରଥର ସାକ୍ଷାତ୍‌ହେଲେ ମଧ ଶେଫାଳୀ ଆଉ ଥରେ ଆସିବାକୁ କହୁଥିଲା। ଆଜି ସେ ସବୁ ଅତି ପୁରୁଣା କଥା, ଅସାର କଥା, ତାହାର ସ୍ମରଣରେ କି ଲାଭ ? ମାତ୍ର ଅନୁ ସ୍ମରଣକଲା। ସେ କୋମଳ ଅଧରରେ ମଧୁର ହାସ୍ୟ ସ୍ମରଣ କଲା। ମଧାହ୍ନର ଛୁଟି ହୋଇଥିଲା; ଖେଳଛୁଟି ହୋଇଥିଲା। ହଠାତ୍ ଶେଫାଳୀକୁ ଦେଖିବାର ଇଚ୍ଛା ପ୍ରବଳହେଲା, ତରତର ହୋଇ ସ୍କୁଲରୁ ଦୌଡ଼ି ଆସିଲା, ଅସାବଧାନରେ ଚିକ୍କଣ ମର୍ମର ପାବଚ୍ଛରୁ ପାଦ ଖସିଗଲା। ଅନୁ ପଡ଼ିଗଲା, ଆଉ ମନେ ନାହିଁ; ଆହା, ସେତେବେଳେ ଅନାଥ ହତଭାଗା କିପାଁ ନ ମଲା !

ସନ୍ଧ୍ୟାକାଳରେ ଜ୍ଞାନୋଦୟ ହେଲା, ଦେଖିଲା, ଦେବୀତୁଲ୍ୟ, ଅପ୍‌ସରାତୁଲ୍ୟ ସୁନ୍ଦରୀ ଶେଫାଳୀ ନିକଟରେ ବସିଅଛି। ଦିନ ନାହିଁ, ରାତି ନାହିଁ, ଶେଫାଳୀ ନିକଟରେ ବସିଅଛି। ସେତେବେଳେ ଶେଫାଳୀ ପ୍ରାଣର ଅତି ନିକଟରେ। ହାୟ ! ସେ ଦିନ, ଆଉ ଏ ଦିନ। ସେତେବେଳେ କଥାରେ ସୁଖ, ଗୀତରେ ସୁଖ, ଭ୍ରମଣରେ ସୁଖ, କଳହରେ ମଧ ସୁଖ। ପିଲା କାଳରେ ବୃଦ୍ଧ ଦୀନବନ୍ଧୁଙ୍କ ପୃଷ୍ଠଦେଶରେ ଚଢ଼ି ବାଳକବାଳିକା ଖେଳୁଥିଲେ। ନାତି ନାତୁଣୀଙ୍କୁ ଥଟ୍ଟାକରି ବୃଦ୍ଧ କେତେଥର ବିବାହ କରାଇଦେଉଥିଲେ, କେତେଥର ହରଗୌରୀ ବୋଲି ଡାକୁଥିଲେ, ମାତ୍ର ସେ ଦିନ, ଆଉ ଏ ଦିନ। ଏତେଦିନ ପରେ, ଏତେ ଦୀର୍ଘକାଳ ପରେ, ଅନୁ ଶୁଣୁଅଛି, ଶେଫାଳୀ ତାହାର ଭଗିନୀ, ଅଥଚ ଶେଫାଳୀ ଦିନେ ଭାଇ ବୋଲି ଡାକିଲା ନାହିଁ। ଯେଉଁ ଆଶାର ପ୍ରଲୋଭନ ଏତାବତ୍‌କାଳ ତାକୁ ଭୁଲାଇ ରଖିଥିଲା, ଯେଉଁ ମୋହରେ ଚିରଜୀବନ ପରିଚାଳିତ ହୋଇଥିଲା, ଆଜି ସହସା ତାହା ଭଗ୍ନହେଲା। ଅନୁର ଚତୁର୍ଦ୍ଦିଗ ଅନ୍ଧକାର, ତାହାର ମୁଣ୍ଡ ଘୁରିଲା। ଏତେଦିନ ପରେ ସ୍ନେହମୟୀ ଶେଫାଳୀର ଅନୁପମ ମୂର୍ତ୍ତି ମାନସ ପଟରୁ ପୋଛିବାକୁ ହେବ ଭାବି ସେ ଅତ୍ୟନ୍ତ କାତରହେଲା; କାରଣ ସେ ଭଗିନୀ, ସେ ପରର ସ୍ତ୍ରୀ। ଭଉଣୀ ସହିତ ବିବାହ ଅସମ୍ଭବ। କ୍ରୂର ଆଶା ! ଆଜି ତୁ କେଉଁଠାରେ ? ଅନୁ କି ମୂର୍ଖ। ତୋହର ଆଶ୍ରୟ ଗ୍ରହଣକରିଥିଲା। ଯୁବକର ଦାରୁଣ ଅଭିମାନ ହେଲା। ଦୁଇ ନୟନରୁ ଅବିରଳ ତପ୍ତ ଅଶ୍ରୁଧାରା ପ୍ରବାହିତହୋଇ ଉପାଧାନ ସିକ୍ତକଲା। ସାନନ୍ଦ ଦାସର ପ୍ରତ୍ୟେକ କଥା କର୍ଣ୍ଣକୁହରରେ ବାଜି ଉଠିଲା – ''ଶେଫାଳୀ ଭଉଣୀ, ଶେଫାଳୀ ଭଉଣୀ– ନଟବର-ନଟବର ଶେଫାଳୀର ସ୍ୱାମୀ।'' ଆଉ ଅନୁ ଚିରଜୀବନ ଶେଫାଳୀକୁ ପୂଜାକରି, ପ୍ରାଣରେ ଧାରଣକରି ବଂଚିବା ଅନୁ ତାହାର କିଛି ନୁହେଁ। ନିଶାଖୋର କୁଚରିତ୍ର ନଟବର

ଅତୁଲ୍ୟ ଶେଫାଳୀ କୁସୁମର ମାଳା ହସିହସି ଗଳାରେ ଲମ୍ବାଇ ଚାଲିଯିବ, ଆଉ ଅଭାଗା ଅନୁ ଭିକାରୀପରି ଷ୍ଟେଟରେ ଖଣ୍ଡେ ଚାକିରୀ ଘେନି ରହିବ। ହରିହର ବାବୁଙ୍କ ଅନ୍ତେ ଶେଫାଳୀ ଓ ନଟବର ହେବେ ତାହାର ପ୍ରଭୁ, ସେ ହେବ ବେତନଭୋଗୀ ଭୃତ୍ୟ। ଏତେ ଲାଞ୍ଛନା ଅପେକ୍ଷା ମୃତ୍ୟୁ ହିଁ ଶ୍ରେୟଃ। ତାହାର ଏଡ଼େ ମହତ୍, ଏଡ଼େ ବିଶାଳ ଆଶାର କି ଏହାହିଁ ଚରମ ପରିଣତି ?

ଅନୁର ଅନେକ କଥା ମନେପଡ଼ିଲା। କଟକର ବୋର୍ଡ଼ିଂ, କଲିକତାର ମେସ୍, ନିଜର କଠିନ ପରିଶ୍ରମ, ଦିବସ ରଜନୀ ଏକାନ୍ତ ଧ୍ୟାନରେ ପଠନଶ୍ରମ, କାହା ସକାଶେ ଏତେ କରିଥିଲା ? ଅଭଗା ହଠାତ୍ ସବୁ ସୁଖରୁ ବଞ୍ଚିତହେଲା। ହରିହର ଓ ଇନ୍ଦୁମୁଖୀ ତେବେ କାହିଁକି ତାକୁ ପୁତ୍ରାଧିକ ସ୍ନେହକଲେ, ଯତ୍ନକଲେ। ତାହାର ପଢ଼ା ସକାଶେ ରାଶିରାଶି ଅର୍ଥ ସାରିଲେ, ପୌଷ୍ୟପୁତ୍ରରୁ ବଞ୍ଚିତକଲେ, ଶେଷକୁ ଶେଫାଳୀ– ରତ୍ନକୁ ଅନ୍ୟକୁ ଦେଲେ; ଅଥଚ ତାହା ଅନାଥ ବାଳକଠାରୁ ସମ୍ପୂର୍ଣ୍ଣ ଗୋପନରଖି, ତାହାର ହୃଦୟରେ ଅଯଥା ଆଶାବୀଜ ରୋପଣ କଲେ। ଏବେ ପୁଷ୍ପିତା ଆଶାଲତା ନିଷ୍ଠୁର ଭାବରେ ଛେଦନକଲେ କି ତାହାର ସ୍ନେହର ପରାକାଷ୍ଠା ହେବ ?

ଭାବୁଭାବୁ ଅନୁର ଶ୍ରାନ୍ତ ଚକ୍ଷୁ ତନ୍ଦ୍ରାତୁର ହୋଇଗଲା। ପରିଶେଷରେ ଚିରଶାନ୍ତିଦାୟିନୀ ନିଦ୍ରା ତାହାର ସମସ୍ତ ବେଦନା ଦୂରକଲା। ସେ ଉଠିବାବେଳେ ଦେଖିଲା, ଜଳାକବାଟିର[୧] ଛିଦ୍ରବାଟେ ରୌଦ୍ର ପ୍ରବେଶ କରୁଅଛି। ବେଳ ଅନେକ। ଉଠି ଠିଆହେଲା, କିନ୍ତୁ ଆଜି ତାହାର କିଛି ଶକ୍ତିନାହିଁ। ପାଦ ଚଳୁ ନାହିଁ। ବହୁଦିନର ପୀଡ଼ିତ ବ୍ୟକ୍ତିପରି ଧୀର ଦୁର୍ବଳ ପଦକ୍ଷେପରେ ନଦୀସ୍ନାନକୁ ବାହାରିଲା।

(୮)

ଗତ ରାତ୍ରର ଭୀଷଣ ପ୍ରଳୟ ପରେ ପ୍ରକୃତି ଉଜ୍ଜ୍ୱଳ ମୂର୍ତ୍ତି ଧାରଣକରି ନବୀନ ପ୍ରଭାତକୁ ଆଲିଙ୍ଗନକଲା। ଚରାଚର ହସିଉଠିଲେ ବାଳାର୍କ। କିରଣରଞ୍ଜିତ କୁସୁମଦାମ ଦଳବିକାଶ ଛଳରେ ହସିହସି ସୌରଭ ବିସ୍ତାରକଲେ।

ଦଶଟା ବାଜିଲାଣି, ଅନୁର ଦେଖା ନାହିଁ। ସେ ତ ଅତି ପ୍ରଭାତରୁ ନଦୀସ୍ନାନକୁ ଯାଏ। ଆଜି ମଧ ଯାଇଥିବ, କିନ୍ତୁ କାହିଁ, ଦିବା ଦଶଘଟିକା ଉତ୍ତୀର୍ଣ୍ଣ ପ୍ରାୟ, ସୂର୍ଯ୍ୟ ମୁଣ୍ଡ ଉପରେ।

ଏତେବେଳ ହେଲାଣି, ପ୍ରାତଭୋଜନ ସକାଶେ ଅନୁ ତ ଅନ୍ତଃପୁରକୁ ଆସିଲା ନାହିଁ। ବ୍ୟସ୍ତ ହୋଇ ଇନ୍ଦୁମୁଖୀ ସଦରକୁ ସମ୍ବାଦ ଦେଲେ। ସେଠାରେ ମଧ ଅନୁ ନାହିଁ, ଆହୁରି ଘଣ୍ଟାଏ ଅପେକ୍ଷାକଲେ, ମାତ୍ର ଅନୁର ଦର୍ଶନ ନାହିଁ। କ୍ରମେ ବାରଟା ବାଜିଲା। ଏକ, ଦୁଇ, ତିନି କରି ଛଅ ବାଜିଲା। ସନ୍ଧ୍ୟା ଲାଗିଲା, ଦେବମନ୍ଦିରରେ ଆରତିଘଣ୍ଟା ବାଜିଉଠିଲା, ମାତ୍ର ଅନୁର ଦେଖାନାହିଁ। ହରିହର ବାବୁ ଗ୍ରାମରେ ଅନୁପସ୍ଥିତ। ଭୀତାତ୍ରସ୍ତା ଇନ୍ଦୁମୁଖୀ ସାନନ୍ଦ ଦାସ

(୧) ବାହାରର ଆଲୋକ, ପବନ ଆସିବାପାଇଁ ଥିବା କୋଠରୀରେ ଥିବା ଛୋଟ ଝରକା।

ନିକଟକୁ ସମ୍ବାଦ ପ୍ରେରଣକଲେ, କେହି ଅନୁକୁ ଦେଖିନାହାନ୍ତି। ସାରା ଗ୍ରାମଟି ଅନ୍ୱେଷଣ ହେଲା। ମାତ୍ର ତାହାର ଉଦ୍ଦେଶ ମିଳିଲା ନାହିଁ। ବୁଲି ବୁଲି ରାତ୍ରି ଦଶଘଟିକା ସମୟରେ ଶ୍ରାନ୍ତ ଧାଉଡ଼ିଆଂ[1] ଖବରଦେଲା, ଅନୁବାବୁ ମିଳିଲେ ନାହିଁ। ଇନ୍ଦୁମୁଖୀ କାନ୍ଦିବାକୁ ଲାଗିଲେ। ଭୀତା ଶେଫାଳୀ ମାତା ନିକଟରେ ଠିଆହୋଇ କମ୍ପିବାକୁଲାଗିଲା। ତାହାର ନୟନରେ ଅଶ୍ରୁ, ହୃଦୟରେ ଭୟ ଓ ଦୁଃଖ।

ହରିହର ବାବୁ ଗ୍ରାମକୁ ପ୍ରତ୍ୟାବୃତ ହୋଇ ଏହି ଦୁଃସମ୍ବାଦ ଶ୍ରବଣରେ ହତବୁଦ୍ଧି ହୋଇ ପଡ଼ିଲେ। ହଠାତ୍ ଅନୁର ଏବଂବିଧ ଆଚରଣର କୌଣସି କାରଣ ସେ ଅବଧାରଣ କରି ପାରିଲେ ନାହିଁ। ଅନୁ ତାଙ୍କର ଭାବୀ ଜାମାତା, ପୁତ୍ରାଧିକ ଅନୁରକ୍ତ ଓ ବାଧ୍ୟ, ସେ କାହିଁକି ହଠାତ୍ ବିଶ୍ୱାସଘାତକତାକରି ପଳାୟନ କରିବ? ତେବେ କୌଣସି ଦୁଷ୍ଟଲୋକ କି ଚକ୍ରାନ୍ତ କରି ତାହାର କିଛି ଅନିଷ୍ଟ ଘଟାଇଲା? ସେ ଅତ୍ୟନ୍ତଭୀତ ହୋଇ ପୁଲିସରେ ସମ୍ବାଦଦେଲେ। ହୁଲିୟା[2] ଜାରିହେଲା, ମାତ୍ର ଅନୁର କୌଣସି ସନ୍ଧାନ ମିଳିଲା ନାହିଁ।

ଇନ୍ଦୁମୁଖୀ ବହୁତ ରୋଦନକଲେ। ଶେଫାଳୀର କୋମଳ ହୃଦୟ ଅତ୍ୟନ୍ତ ଅଧୀର ହେଲା, ମାତାଙ୍କର ଶୀର୍ଣ୍ଣ ବଦନକୁ ଚାହିଁ ତାହାର ଅତିଶୟ କଷ୍ଟହେଲା। ସେ ମଧ୍ୟ କାନ୍ଦିଲା; କିନ୍ତୁ ଦିନ ପରେ ଦିନ, ମାସ ପରେ ମାସ ଗଲା, ଅନୁ ମିଳିଲା ନାହିଁ, ଶେଫାଳୀର ବିବାହ ଆୟୋଜନ ସ୍ଥଗିତହେଲା।

କନ୍ୟାକୁ ଉଦ୍ଦେଶ୍ୟ କରି ମାତା ବିଳାପକରିବାକୁ ଲାଗିଲେ। ଶେଫାଳୀ ବୁଝିଲା, କାହା ସହିତ ବିବାହର ଆୟୋଜନ ହେଉଥିଲା – କିଏ ସେ ବର। ସେ କଳ୍ପିତ ନବ-ଗ୍ରାମର ଜମିଦାର ପୁତ୍ର ନଟବର ନୁହେ। ସେ ତାହାରି ଆବାଲ୍ୟସଙ୍ଗୀ ଏକାନ୍ତ ଅନୁରକ୍ତ ଅନଙ୍ଗମୋହନ; ଧୀର, ଦୃଢ଼ମନା, ସୁଚରିତ୍ର ଅନଙ୍ଗମୋହନ। ମାଳତୀର ମୁଖରେ ଚୂନକାଳି ଲାଗିଲା। ଅଭାଗିନୀର ଆଶା ସୌଧ ଭଗ୍ନହେଲା, ଅନ୍ୟକୁ ନିରାଶ କରିବାକୁଯାଇ ଆପେ ବଞ୍ଚିତ ହେଲା, ଗୁପ୍ତକଥା ମଧ୍ୟ ଧରାପଡ଼ି ସାନନ୍ଦର କଠୋର ଶାସ୍ତିବିଧାନହେଲା। ମାଳତୀ ପରିବାର ଜମିଦାର ଆବାସରୁ ବିତାଡ଼ିତହେଲେ। ଦୁଃଖିନୀ ଶେଫାଳୀର ପ୍ରଫୁଲ୍ଲ ପଦ୍ମତୁଲ୍ୟ ବଦନ ଶୁଖି କଳା ପଡ଼ିଗଲା। ଚକ୍ଷୁ କୋଣରେ ଗାଢ଼ କାଳିମା ଅଙ୍କିତହେଲା।

ବୃଦ୍ଧ ହରିହର ଓ ଇନ୍ଦୁମୁଖୀ ଏତେବଡ଼ ଆଶାରେ ନିରାଶହୋଇ ଅବସନ୍ନ ହୋଇପଡ଼ିଲେ। ଏକମାତ୍ର କନ୍ୟାର ଏତାଦୃଶ ଭାଗ୍ୟବିପର୍ଯ୍ୟୟ ହଠାତ୍ ନିର୍ମଳ ଆକାଶରେ ପ୍ରଳୟର ମେଘତୁଲ୍ୟ ସେମାନଙ୍କର ସୁଖସୂର୍ଯ୍ୟକୁ ଗ୍ରାସ କଲା। ମାତ୍ର ତଥାପି କାଳ ବହିଗଲା। କାଳ କ'ଣ କାହାପାଇଁ ଅପେକ୍ଷାକରେ, କାହାର ସୁଖ ଦୁଃଖକୁ ଅନାଏ?

(୯)

ବିଶ୍ୱେଶ୍ୱରଙ୍କ ମସ୍ତକସ୍ଥିତା ଜାହ୍ନବୀ ବଡ଼ ଗୌରବରେ ତାଙ୍କ ମନ୍ଦିରର ପାଦଧୌତ କରି ପ୍ରବାହିତା। ନଦୀବକ୍ଷରେ ଅସଂଖ୍ୟ ନୌକା, ଶୁଭ୍ର ପାଲ ବିସ୍ତାରକରି ସାନ୍ଧ୍ୟସମୀର ସେବନ

(୧) ଗାଁ ଗାଁ ବୁଲି ଖବର ସଂଗ୍ରହକାରୀ, (୨) କଡ଼ା ନିର୍ଦ୍ଦେଶ

ଛଳରେ ତୀରଦେଶରେ ଶାୟିତ, ତାହିଁ ମଧ୍ୟରେ ନାବିକମାନେ ଆନନ୍ଦରେ ଗୀତ ଗାଉଗାଉ ରନ୍ଧନ କାର୍ଯ୍ୟରେ ବ୍ୟାପୃତ। ପବିତ୍ରତୋୟା ଜାହ୍ନବୀର ସୁନୀଳ ଜଳରାଶି କଳକଳ ରବରେ ପ୍ରବାହିତ। ତୀରରେ ଅସଂଖ୍ୟ ବିପଣୀ, ଘାଟରେ ଜନତାର ଭିଡ଼, ଅସଂଖ୍ୟ ଲୋକ ରାଜମାର୍ଗରେ ଯାତାୟାତ କରୁଅଛନ୍ତି। କିଏ ପଚାରେ କାହା କଥା? ସମସ୍ତେ ନିଜନିଜ କାର୍ଯ୍ୟରେ ବ୍ୟସ୍ତ। ବିଶାଳ କାଶୀନଗରୀ ବିଶ୍ୱନାଥଙ୍କ ମନ୍ଦିର ବକ୍ଷୋପରି ବହନକରି ହିନ୍ଦୁଙ୍କର ପବିତ୍ରତମ ତୀର୍ଥ ମଧ୍ୟରେ ପରିଗଣିତ; ତାହାର ଅପାର ସୌନ୍ଦର୍ଯ୍ୟ, ଅଶେଷ ମନୋହାରିତ୍ୱ, ବିଶାଳ ବିପଣୀ ଓ ମନ୍ଦିରର ସମାବେଶ, ଅସଂଖ୍ୟ ରାଜମାର୍ଗ ଦର୍ଶକଙ୍କୁ ମୋହିତକରୁଅଛି।

ସନ୍ଧ୍ୟାକାଳ। ସୂର୍ଯ୍ୟଦେବ ପଶ୍ଚିମାଞ୍ଚଳରେ ଆସ୍ତମିତ, ନାନାବର୍ଣ୍ଣାନୁରଞ୍ଜିତ ମେଘମାଳା-ଜାହ୍ନବୀର ବିପୁଳ ଜଳ ଦର୍ପଣରେ ପ୍ରତିବିମ୍ବିତ। ଧୀରେଧୀରେ ଅନ୍ଧକାର ଯେପରି ଆକାଶରୁ ଓହ୍ଲାଇ ଆସୁଅଛି, କ୍ରମେ ଯେପରି ତାହାର ବିରାଟ କାୟା ସମଗ୍ର ନଗରୀକୁ ଆଚ୍ଛନ୍ନକରି ପକାଇବ। ପ୍ରତି ମନ୍ଦିରରେ ଆରତିର ଧ୍ୱନି, ଘଣ୍ଟା ନିନାଦରେ କର୍ଣ୍ଣ ବଧିରପ୍ରାୟ।

ଗଙ୍ଗାତୀରରେ ଅସଂଖ୍ୟ ଲୋକ, ସାଧୁ ସନ୍ନ୍ୟାସୀ, ଯୋଗୀ, ସନ୍ନ୍ୟାସିନୀ ଓ ସ୍ନାନାର୍ଥରେ ପ୍ରତ୍ୟେକ ଘାଟ ପରିପୂର୍ଣ୍ଣ। କିଏ ସ୍ତବାବୃତ୍ତି କରୁଅଛି, କିଏ ମନ୍ତ୍ରପାଠନିରତ, କିଏ ବା ମାଳା ଜପୁଅଛି। କେତେ ଭେକଧାରୀ ସର୍ବାଙ୍ଗ ଭସ୍ମାଭୂତକରି ନାମାବଳୀର ଅସଂଖ୍ୟ ଛାପାଘେନି ଶିଷ୍ୟବୃନ୍ଦଙ୍କଠାରୁ ଅର୍ଥ ସଂଗ୍ରହରେ ତତ୍ପର। କେତେକ ଭକ୍ତ ମୁଣ୍ଡିତମସ୍ତକା ବିଧବା ରମଣୀ ବିଶ୍ୱେଶ୍ୱରଙ୍କୁ ଉଦ୍ଦେଶ୍ୟକରି ପ୍ରଣାମପୂର୍ବକ ପୂଜାନିରତ, ଆକାଶ ମାର୍ଗରେ ବିହଙ୍ଗମ କୋଳାହଳ।

ଏହିପରି ସମୟରେ ଜଣେ ଯୁବକ ଗଙ୍ଗାତଟରେ ସମାସୀନ; ଉଦ୍‌ଭ୍ରାନ୍ତ ନୟନରେ ପ୍ରକୃତି ଶୋଭା ପର୍ଯ୍ୟବେକ୍ଷଣ– ନିରତ। ମାତ୍ର ସେଥିରେ ତାହାର ସ୍ଫୂର୍ତ୍ତି ନାହିଁ। ପ୍ରାଣହୀନ, ଉତ୍ସାହହୀନ ଭାବରେ ଲୋକଙ୍କର ଚରଣଗତି ମାତ୍ର ଲକ୍ଷ୍ୟକରୁଅଛି।

ବିଶାଳ କାଶୀନଗରୀ। କେତେ ଲୋକ ଯାତାୟାତ କରନ୍ତି। କିଏ କାହାର ଖବର ରଖେ? ଯୁବକ ସମ୍ପୂର୍ଣ୍ଣ ଏକାକୀ, ଆପଣାର ଚିନ୍ତାରେ ମଗ୍ନ। କିନ୍ତୁ ନୟନ ଆକାଶରେ ତାହାର ଚିନ୍ତା ଅପାର, ଅଶେଷ। ଆରତିର ଧ୍ୱନି କର୍ଣ୍ଣରେ ପ୍ରବେଶକରି ସୁଦ୍ଧା ଚିନ୍ତାସ୍ରୋତ ଭଗ୍ନ ହେଉନାହିଁ; ଅଲକ୍ଷରେ ହସ୍ତ ଯୋଡ଼ିକ ବଦ୍ଧାଞ୍ଜଳିହୋଇ କପାଳ ସ୍ପର୍ଶକରୁଅଛି ମାତ୍ର। ତାହାର ଚିନ୍ତା ବିଶାଳ! ବିଶାଳ ଜାହ୍ନବୀ ବକ୍ଷଠାରୁ ବିଶାଳ, ଅନନ୍ତ ଅମ୍ବର ଠାରୁ ଅନନ୍ତ, ଅପାର ସମୁଦ୍ରଠାରୁ ଅପାର, ସୁଦୂର ତାରାଠାରୁ ସୁଦୂର। ତାହାର ସ୍ୱପ୍ନ ଅତୀତ; ଅତୀତ ଜଗତର ଏକ ନୈରାଶ୍ୟଜଡ଼ିତ ସ୍ୱପ୍ନ! ଆଶା ଓ ବିଶ୍ୱାସର ଏକ ଅସ୍ପଷ୍ଟ ଆଲୋକଚିତ୍ର।

ଆଜି ତାହା ନାହିଁ। ମାତ୍ର ତାହା ଦିନେ ଥିଲା। ଦିନେ ଯୁବକ ଦେଖିଥିଲା, ହସିଥିଲା, କାନ୍ଦିଥିଲା, ହସାଇଥିଲା, କନ୍ଦାଇଥିଲା। ଆଜି ତାହା ନାହିଁ– ଆଜି ସୁଦୂର ନୟନାନ୍ତରାଳରେ ପ୍ରେତ-ଜଗତରେ ତାହାର ଅସ୍ତିତ୍ୱ ବିଲୀନ।

ବସନ୍ତରେ ଫୁଲ ଫୁଟିଥିଲା, କାନନରେ କୋକିଳ ଗାଉଥିଲା, ଆମ୍ର ବକୁଳ-ମୁକୁଳାନ୍ତରାଳରେ ଅଳିର ଝଙ୍କାର ଶୁଣିଥିଲା। ମାତ୍ର ଆଜି ସେ ବସନ୍ତ ନାହିଁ। ସେ ଆକାଶ କୁସୁମ ଝଡ଼ିଯାଇଅଛି। ପ୍ରେମପିକ ନୀରବ ହୋଇଅଛି। ଆଜି ଭୀଷଣ ନିଦାଘ, ନିର୍ମମ ନିଷ୍ଠୁର ନିଦାଘ ଆଜି, ତାହାର ହୃଦୟ ପ୍ରାନ୍ତର ମରୁଭୂମି। ସେଠାରେ ଜଳନାହିଁ, କେବଳ ନୈରାଶ୍ୟ ମରୀଚିକା, ସେଠାରେ ଭରସା ନାହିଁ, କେବଳ ଅନ୍ତର୍ଦାହର ଭୀଷଣ ଅନୁଭୂତି। ଜ୍ୱାଳାମୟ ହୃଦୟର ଦାରୁଣ ସ୍ପନ୍ଦନ। ଯୁବକର ଚକ୍ଷୁପଟରେ କିଛି ନାହିଁ, ସବୁ ଶୂନ୍ୟ, ସବୁଆଡୁ ଶୂନ୍ୟ। ତାହାର ସମ୍ମୁଖରେ କେବଳ ମୃତ୍ୟୁ ବିଭୀଷିକା, ମାତ୍ର ଅତୀତର-ମଧୁର ଅତୀତର ସମୁଦାୟ କ୍ଳେଶ ମଧ୍ୟରେ ମର୍ମାନ୍ତିକ ଯନ୍ତ୍ରଣା ମଧ୍ୟରେ ଯୁବକର ସାନ୍ତ୍ୱନାସ୍ଫୂର୍ତ୍ତି ନିହିତ-ସାନ୍ତ୍ୱନା ସୁଧାର କଣିକାଟିଏ ଲୁକ୍କାୟିତ।

ଯୁବକ ଦେଖୁଅଛି-ଯୁବକ ଶୁଣୁଅଛି। କଣ ଦେଖୁଅଛି, କ'ଣ ଶୁଣୁଅଛି, ସେହି ଜାଣେ। ତାହାର ଆକାଶ- ନିବିଷ୍ଟ ନୟନ ଦୂରାଗତ ତାରାଲୋକ ଲକ୍ଷ୍ୟ କରୁଛି କି ନାହିଁ ସନ୍ଦେହ। ତାହାର ସ୍ତବ୍ଧ- ଶ୍ରବଣ, ଜାହ୍ନବୀର ମଧୁର କଳନିନାଦ ଉପଭୋଗ କରୁଅଛି କି ନାହିଁ ସନ୍ଦେହ, ମାତ୍ର ଯୁବକ ଦେଖୁଅଛି ଓ ଶୁଣୁଅଛି। ମଧୁର ଯୌବନର ଅତୀତ ଆଶାର ଭଗ୍ନ- ଚିତ୍ର, ଆଉ ଭଗ୍ନ- ବୀଣାର ଛିନ୍ନତାରରେ ଏକ ବେସୁରା ରାଗିଣୀ। ଯୁବକ ନିବିଷ୍ଟ ମନରେ ଚିନ୍ତାନିରତ। ତାହାର ହୃଦୟରେ ଏକ ଅପୂର୍ବ ଲାବଣ୍ୟମୟୀ ମୂର୍ତ୍ତି। ସେ ମୂର୍ତ୍ତି କ୍ଷଣେ ହସୁଅଛି, ଆକାଶ ଅଙ୍କସ୍ଥିତ ବିମଳ ଚନ୍ଦ୍ରମାତୁଲ୍ୟ କ୍ଷଣେ ହସୁଅଛି; ପୁଣି ପରକ୍ଷଣରେ ରୋଷ ଜର୍ଜରିତ ବଦନରେ ଭ୍ରୂକୁଟିକୁଟିଳ ନେତ୍ରରେ ଚାହୁଁଅଛି। ପରକ୍ଷଣରେ ସବୁ ଅନ୍ଧକାର, କିନ୍ତୁ ଅନ୍ଧକାରକୁ ଉଜ୍ଜ୍ୱଳ କରି ସେ ମୂର୍ତ୍ତି ଜଳିଉଠୁଅଛି; କି ସାଧ୍ୟ ଅନ୍ଧକାର ତାହାକୁ ଘୋଡ଼ାଇ ରଖିବ ? ସେ ଦୀପ୍ତ ଆନନ୍ଦ, ନୈରାଶ୍ୟର ଘନ ଅନ୍ଧକାରରେ ଉଜ୍ଜ୍ୱଳ। ଯୁବକ ଦେଖୁଅଛି, ଭୁଲୁଅଛି, ନୟନରୁ ଅବିରଳ ଅଶ୍ରୁ ଝରୁଅଛି, ପୁଣି ପରକ୍ଷଣରେ ଆତ୍ମସଂଯମ କରି ଭାବୁଅଛି, କାହିଁକି – କାହିଁକି ଏ ଚିନ୍ତା, ଏ ବିଳାପ, ଯେ ମୋହର ନୁହେଁ, ମୋହର ହେବ ନାହିଁ, ଯାହାର ଚିନ୍ତା ମଧ୍ୟ ପାପ, ପୁଣି ତାହାରି ଧ୍ୟାନ, ତାହାରି ରୂପସୁଧାପାନ। ପ୍ରଭୁ ଶକ୍ତି ଦିଅ, ହେ ବିଶ୍ୱନାଥ, ହେ କାଶୀନାଥ, ଶକ୍ତି ଦିଅ, ରକ୍ଷାକର ପ୍ରଭୁ। ଯୁବକ ପୁଣି ଭାବିଲା, ଭାବନାରେ ଦୋଷ କ'ଣ ? ନିଷ୍ଠୁର ନିୟତି ତାହାପ୍ରତି ବାମ, ମାତ୍ର ସେଥିରେ ତାହାର କି ଦୋଷ ? ଯୁବକ ନାନାକଥା ଭାବୁଅଛି-ଭବିଷ୍ୟତ୍-ବର୍ତ୍ତମାନ-ଅତୀତ। ଭବିଷ୍ୟତ୍ ଅନ୍ଧକାରମୟ, ଅଜ୍ଞାତ। ବର୍ତ୍ତମାନ ନୈରାଶ୍ୟ-କୁହେଳୀସମାଚ୍ଛନ୍ନ। ଯୁବକ ଅନାଥ, ଆପଣାର କହିବାକୁ ତ୍ରିଜଗତରେ କେହିନାହିଁ। ବାସନାହିଁ, କାର୍ଯ୍ୟନାହିଁ, ଯୁବକ ଅନାଥ। ଅଛି କେବଳ ଏକମାତ୍ର ସମ୍ବଳ ବିଦ୍ୟା, ଆଉ କିଛି ନାହିଁ। ମାତ୍ର ଅଛନ୍ତି ମସ୍ତକୋପରି, ବିଶାଳ ଆକାଶୋପରି ଅନାଥର ନାଥ ବିଶ୍ୱର ସହାୟ ଭଗବାନ। ବର୍ତ୍ତମାନ ତାହାଙ୍କ ଛଡ଼ା ଯୁବକର ଆଉ କେହି ନାହିଁ, ଅତୀତ-ଦୁଃଖର ସ୍ମୃତିରେ ପୂର୍ଣ୍ଣ। ବାଲ୍ୟକାଳରୁ ମାତୃହୀନ, ମାତାବୋଲି ଜାଣି ନାହିଁ, ଜ୍ଞାନତଃ ମା ବୋଲି ସମ୍ବୋଧନ

କରିନାହିଁ। ଅତ୍ୟଳ୍ପ ବୟସରେ ପିତୃହୀନ। ପିତାଙ୍କର ମୁଖ ଛାୟାତୁଲ୍ୟ ଅସ୍ପଷ୍ଟ ପ୍ରତୀୟମାନ। ତତ୍‌ପରେ ପିତୃ-ମାତୃତୁଲ୍ୟ ପୋଷଣକର୍ତ୍ତ୍ରୀ ଓ ସ୍ନେହଦାତ୍ରୀ। ସେମାନଙ୍କର ବିଶାଳ ସ୍ନେହ, ଅଭାଗା ଭୁଲିପାରୁନାହିଁ। ନିଜର ବିରାଟ ଅଯୋଗ୍ୟତା ସ୍ମରଣକରି ହୃଦୟ କ୍ଷୁବ୍‌ଧ। ଯୁବକ ଅଧୀର, ଅଶାନ୍ତ, ଉଦ୍‌ଭ୍ରାନ୍ତ; ରାତ୍ରିର ଗଭୀରତାପ୍ରତି ତାହାର ଦୃଷ୍ଟି ନାହିଁ, ଦୂରାଗତ ଝିଲ୍ଲିସ୍ୱନପ୍ରତି ତାହାର କର୍ଣ୍ଣ ନାହିଁ, ନୟନ ଓ ଶ୍ରବଣ ଉଭୟେ ଅନ୍ତରର ଅନ୍ତରତମ ରାଜ୍ୟରେ, ଯୁବକ ଧ୍ୟାନମଗ୍ନ। ସହସା କାହାର ଶୀତଳ କରସ୍ପର୍ଶ। ଯୁବକର ଧ୍ୟାନ ଭଗ୍ନହେଲା, ସେ ଉଠି ଠିଆହେଲା, ଆଗନ୍ତୁକ କର ଆକର୍ଷଣକରି କହିଲା, ''ଚାଲ ବାଞ୍ଛା ଦା, ରାତି ଯେ ୮ ଟା ହେଲାଣି। ଦାଦା ତୁମକୁ ନ ଦେଖି ମୋତେ କହିଲେ, ଯା ତ ରମେଶ ଦେଖିବୁ, ବାଞ୍ଛାନିଧି ବାବୁ କାହାନ୍ତି? ମୁଁ ଖୋଜିଖୋଜି ତୁମକୁ ନଦୀତଟରେ ଦେଖିଲି। କଣ ଏତେ ଚିନ୍ତା କରୁଛ ଭାଇ?''

ଦୀର୍ଘ ନିଃଶ୍ୱାସ ସହ ବାଞ୍ଛାନିଧି କହିଲା, ''ରମେଶ, ତୁମେ ବାଳକ, ତୁମର ଚିନ୍ତା କ'ଣ; ତୁମର ପିତାମାତା, ଦାଦା ବର୍ତ୍ତମାନ। ମୋ ପରି ହତଭାଗ୍ୟ, ଅନାଥ, ପିତୃମାତୃହୀନ, ନିଃସହାୟ ହୋଇଥିଲେ ତୁମର ବି ଚିନ୍ତା ହୁଅନ୍ତା।'' ରମେଶ ପରମ ସ୍ନେହରେ ବାଞ୍ଛାନିଧିର କର ମର୍ଦ୍ଦନକରି କହିଲା, ''ବାଞ୍ଛା ଦା, ଚିନ୍ତାକରନା, ଭଗବାନ ଅଛନ୍ତି। ଦାଦାଙ୍କର କଥା ଗୋଟାଏ, ତୁମେ ନିଶ୍ଚୟ ଚାକିରୀ ପାଇବ। ଆମର ବନାରସୀ ଦୋକାନରେ ତୁମପରି ଲୋକ ରହିବା ତ ଦାଦାଙ୍କର ଭାରି ଇଚ୍ଛା।''

ଏକ ଗଭୀର ଦୀର୍ଘ ନିଃଶ୍ୱାସ ସହ ବାଞ୍ଛାନିଧି କହିଲା, ''ତା ତ ତୁମ ଦାଦାଙ୍କର ଅନୁଗ୍ରହ।'' ତାହାର ମୁଖର କଥା ନ ସରୁଣୁ ଯୁବକଦ୍ୱୟ ସଂକୀର୍ଣ୍ଣ ଗଳି ପଥରେ କ୍ଷଣକେ ଅଦୃଶ୍ୟ ହୋଇଗଲେ।

(୧୦)

ସେହି କକ୍ଷ। ସେହି ଭିତ୍ତି। ଭିତ୍ତିଗାତ୍ରସ୍ଥ ସେହି ଚିତ୍ର। ରାଧାମାଧବଙ୍କର ଯୁଗଳମୂର୍ତ୍ତି, ସେହି ଯମୁନାର ଜଳ କଳକଳ–ସେହି କାଳନ୍ଦୀକମଳ ଢ଼ଳଢ଼ଳ, ସେହି ରାଧାଙ୍କ ନୟନ ଛଳଛଳ, ଆଉ ସୁପାତିଶାୟିତା ଶେଫାଳୀର ନୟନ ଅଶ୍ରୁରେ ଟଳଟଳ। ଦୀର୍ଘ ଏକବର୍ଷ, ବହୁ ସୁଖଦୁଃଖ ସମନ୍ୱିତ ଦୀର୍ଘ ଏକବର୍ଷ, ଅନୁର ଅନ୍ତର୍ଦ୍ଧାନର ଦୀର୍ଘ ଏକବର୍ଷ। ଏକବର୍ଷ ହେଲା ଅନଙ୍ଗମୋହନ ହରିହର ନିଳୟ ତ୍ୟାଗକରି ପୃଥିବୀର ମହାନ ବିଶାଳତା ମଧ୍ୟରେ କେଉଁଠାରେ ଲୁଚିଯାଇଅଛି, ହଜିଯାଇଅଛି, ମାତ୍ର ଏକବର୍ଷ ହେଲା ଶେଫାଳୀ ହୃଦୟ ରାଜ୍ୟରେ ତାହାର ଅବାଲ୍ୟମଧୁର ମୂର୍ତ୍ତି, ଆଜୀବନ ସୁନ୍ଦର ବରେଣ୍ୟ ରୂପ ମଧୁରତର, ସୁନ୍ଦରତର ହୋଇ ଉଠୁଅଛି।

ଶେଫାଳୀ ଗର୍ବିତା, ଧନଶାଳିନୀ ଜମିଦାରଦୁହିତା। ଶେଫାଳୀ ଦୁଃଖ କ'ଣ ଜାଣି ନଥିଲା। ଅଭାବ କ'ଣ ବୁଝି ନଥିଲା। ଏବେ ମଧ୍ୟ ଦୁଃଖ କିଛି ନାହିଁ, ଅଭାବ କିଛି ନାହିଁ, ମାତ୍ର ଅଛି ଗୋଟାଏ ବିରାଟ ଶୂନ୍ୟତା, ସମଗ୍ର ହୃଦୟରେ ଏକ ବିଶାଳ ଅଭାବ, ସମଗ୍ର ଅନ୍ତଃକରଣରେ ଏକ ଅନନୁଭୂତ କ୍ଲେଶ। ଶେଫାଳୀ ଯେ ଅନଙ୍ଗକୁ ଏତେ ସ୍ନେହକରେ, ତାହା

ତ ସେ ସ୍ୱପ୍ନରେ ଭାବି ନଥିଲା। ଯେତେଦିନ ଅନଙ୍ଗ ସେମାନଙ୍କର ପରିବାରଭୁକ୍ତ ଜଣେ ବାଳକ ଥିଲା, ସେତେଦିନ ତ ଶେଫାଳୀ ତାକୁ ବାଳକ ମାତ୍ର ଜାଣିଥିଲା। ସେତେଦିନ ତା ପିତାମାତା ବା ଅନ୍ୟ କାହାରିଠାରୁ ଘୁଣାକ୍ଷରେ କିଛି ଶୁଣି ନଥିଲା। ତେବେ କଣ ଅନଙ୍ଗ ତାହାରି ଗର୍ବ ସକାଶେ, ତାହାରି ଚାଞ୍ଚଲ୍ୟ ସକାଶେ ଦେଶତ୍ୟାଗୀ ହେଲା? କିଏ ବା ଜମିଦାରପୁତ୍ର ନଟବର? କିପାଁ ସେ ମାଳତୀ କଥାରେ ବିଶ୍ୱାସ କଲା? ମାତାଙ୍କୁ ପଚାରିଥିଲେ କ'ଣ ଏତେଦୂର ନିର୍ଲ୍ଲଜତା ହୋଇଥାନ୍ତା? ଅକାରଣ ଏକ କଳ୍ପିତ ବ୍ୟକ୍ତିର ଧନସମ୍ପଦ ମୋହ ପ୍ରଲୋଭନରେ ଭୁଲିଲା। ସେ କ'ଣ ଏଡ଼େ ଦୁର୍ବଳ? ତାହାର ଉଚ୍ଚ ଶିକ୍ଷାର କି ଏହି କୁଫଳ? ଅନୁ ତାହାକୁ ସ୍ନେହକରେ, ସେ ସ୍ନେହକୁ ସେ ପୂଜା ନକରି, ତାହାକୁ ହିଁ ପାପବୋଲି ଘୃଣା କଲା। ଏପରି କଣ ଜଗତରେ କେବେ ଘଟିଅଛି। ମାତ୍ର ସେ ତ ଅନୁକୁ ଅନାଦର କରି ନାହିଁ, କଟୁକଥା କହି ନାହିଁ, ତେବେ କାହିଁକି ଅନୁ ତାକୁ ତ୍ୟାଗକଲା। ତାହାର ଅତି ଆଦରର ଶିଉଳୀ ଫୁଲକୁ କାହିଁକି ଶୁଣିବାକୁ ପକାଇଦେଇଗଲା? ନା ଅନୁ, ତୁମର କି ଦୋଷ, ତୁମେ ଯେ ଭାବିଅଛ ଶେଫାଳୀ ନଟବରର, ଏ ଅପମାନ ସହ୍ୟ କରିବା ତୁମ୍ଭର ସାଧ୍ୟାତୀତ। ଏତେବଡ଼ ଭୁଲ କାହିଁକି ହେଲା? କ୍ଷଣିକ ଭୁଲରେ ଏଡ଼େବଡ଼ ସର୍ବନାଶ ହେଲା। କ୍ଷଣିକ ଭ୍ରାନ୍ତିରେ ପରିବାର ବିଧ୍ୱସ୍ତ ହେଲା। ତାହାର ଇହକାଳ ନଷ୍ଟ ହେଲା। ଶେଫାଳୀ ଆଉ ଭାବି ପାରିଲା ନାହିଁ, ତାହାର ନୟନ ପଲ୍ଲବ ଅଶ୍ରୁଭାର ସମ୍ଭାଳି ପାରିଲା ନାହିଁ, ଝରଝର ଝରଝର ବହିଗଲା, ମର୍ମବେଦନାର ତପ୍ତଅଶ୍ରୁ।

ଆଜିକାଲି ଶେଫାଳୀ ନିତାନ୍ତ ଏକାକିନୀ, ତାହାର ପାଠ ଶେଷହୋଇଅଛି, ସରଯୂ ଦିଦୀ କଲିକତା ଚାଲିଯାଇଅଛନ୍ତି, ଶେଫାଳୀ ଏକାକିନୀ, ତାହାର ହାରମୋନିୟମ, ପିଆନୋ, ଗ୍ରାମଫୋନ ପଡ଼ିରହିଅଛି। ଅଳଙ୍କାର ବାକ୍ସରେ ଧୂଳି ପଡ଼ିଅଛି। ମୟୂର, ପାରା ଓ ଠେକୁଆ ବିନି ଦାସୀର ହସ୍ତରେ। ତାହାର ଉଦ୍ୟାନଭ୍ରମଣ ବନ୍ଦ ହୋଇଅଛି। ସୂଚିଶିଳ୍ପର ଡାଲା, ଥାକରେ ଅଯତ୍ନ ଭାବରେ ପଡ଼ିରହିଅଛି। କାର୍ପେଟ ବୁଣା ଛୁଞ୍ଚ ହଜିଅଛି। ନକ୍ସା କରିବା ପେଣ୍ଟ[୧] ବାକ୍ସ ଆଲମାରୀରେ ପଡ଼ିରହିଅଛି। ଅରଟରେ ସୂତାକଟା ବନ୍ଦ। ହାଣ୍ଡି ପିଢ଼ା ଚିତ୍ରକରିବା[୨] ସେ ଛାଡ଼ିଲାଣି। ଅଳତା, ଅଞ୍ଜନ ଓ କେଶରଞ୍ଜନ ଭୁଲିଲାଣି। ନିତି ରନ୍ଧାଘରେ ତିଅଣଟିଏ[୩] ରାନ୍ଧିବାକୁ ଯାଏ ନାହିଁ, ଗଲେ ମଧ ସୁସ୍ୱାଦୁ କରିପାରେ ନାହିଁ, ଅଲଣା ଦରସିଝାକରି ଓହ୍ଲାଏ। ଗାଧୁଆ ତୁଠ ଗଳ୍ପରେ ତାହାର ଆସକ୍ତି ନାହିଁ, ବହି ପଢ଼ିବାକୁ ମନ ନାହିଁ, ରାମାୟଣ ଓ ମହାଭାରତର ଛତ୍ରେ[୪] ଦୁଇଛତ୍ର ପଢ଼ି କ୍ଲାନ୍ତି ବୋଧହୁଏ, ଶେଫାଳୀ ବଡ଼ ଅଳସୀ, ଉଠିବାକୁ ସକାଳେ ବେଳ ହୋଇଯାଏ। କାରଣ ତାହା ଦେହରେ ବଳ ନାହିଁ, ଚକ୍ଷୁ କୋଣରେ କାଳିମା, ମୁଖଟା ବଡ଼ ଧୋବଲା, ବଡ଼ ଶେତା। ସଙ୍ଗିନୀମାନେ ଭାବନ୍ତି – ଯୁବାକାଳ, ସେ ଗୋରା ଦିଶୁଅଛି। ମାତ୍ର ଏ ସବୁ ଲକ୍ଷ୍ୟ କରୁଅଛନ୍ତି ଜଣେ, ସେ ମାତା ଇନ୍ଦୁମୁଖୀ।

---

(୧) ରଂଗ ବାକ୍ସ, (୨) ହାଣ୍ଡି ପିଢ଼ାକୁ ସୁନ୍ଦର କରିବା ପାଇଁ ବିଭିନ୍ନ ଦେବାଦେବୀ, ଫୁଲ ଫଳରେ ଚିତ୍ର ଅଂକନ, (୩) ତରକାରି, (୪) ପୃଷ୍ଠାଏ

ଇନ୍ଦୁମୁଖୀ କନ୍ୟାର ଏତାଦୃଶ ଦୁଃଖର କାରଣ ବୁଝିପାରିଥିଛନ୍ତି। କନ୍ୟାର ବୟସ ଗଡ଼ିଲାଣି। କୋଡ଼ିଏ ପଡ଼ିଲେ ବୁଢ଼ୀ ହୁଅନ୍ତି, ଏତ ଚଳନ୍ତି କଥା। ଏତେ ବଡ଼ ଯୁବତୀ କନ୍ୟା, ଅବିବାହିତା ଅବସ୍ଥାରେ ପିତୃଗୃହରେ କାଳକାଟିବ। ଦୁଃଖରେ ତାଙ୍କର ହୃଦୟ ଫାଟିଗଲା। ଜଣକ ସହିତ ସତ୍ୟ ହୋଇଅଛି ବୋଲି କ'ଣ ଶେଫାଳୀର ବିବାହ ଆଉ ଅସମ୍ଭବ ? ସ୍ୱାମୀଙ୍କୁ ଏ କଥା କହିଲେ। ସ୍ୱାମୀ ସ୍ତ୍ରୀ ବହୁକ୍ଷଣ ବିଚାରକଲେ। ନିଜେ ମୀମାଂସା କରିପାରିଲେ ନାହିଁ। କୁଳ ପୁରୋହିତଙ୍କୁ ଡକାଇ ଗୋପନରେ ପରାମର୍ଶକଲେ। କୁଳଯାଜକ ବୃଦ୍ଧ ଅଚ୍ୟୁତାନନ୍ଦ ରାଜଗୁରୁ ବିବାହରେ ବାଧାନାହିଁବୋଲି ମତଦେଲେ। ଶାସ୍ତ୍ରୀୟ ଶ୍ଳୋକ ଗାଇଲେ, ହରିହରଙ୍କ ମନ ମାନିଗଲା। ପୁଣି କନ୍ୟାର ବିବାହ ଉଦ୍‌ଯୋଗକଲେ।

କଥା ଗୋପନରହିଲା ନାହିଁ। ନାନା ଆଡୁ ସମ୍ବନ୍ଧ[1] ଆସିଲା। ଅନେକେ ଅନୁପଯୁକ୍ତ ବିବେଚିତ ହୋଇ ପ୍ରତ୍ୟାଖ୍ୟାତ ହେଲେ। ବୃଦ୍ଧ ହରିହରଙ୍କର କିନ୍ତୁ କନ୍ୟାର ବିବାହଲାଗି ବିଶେଷ ଚାଞ୍ଚଲ୍ୟ ଦେଖାନାହିଁ, ତାଙ୍କ ହୃଦୟ କୋଣରେ କ୍ଷୁଦ୍ର କ୍ଷୀଣ ଆଶାଟିଏ ଥାଏ। କାଳେ କାଳେ କହୁଥାଏ। କେଜାଣି ଅନଙ୍ଗ ଫେରି ଆସି ପାରେ, କାଳେ ଦୈବାତ୍ ଘନଶ୍ୟାମ ସହିତ ପିତୃସତ୍ୟ ରକ୍ଷିତ ହୋଇପାରେ। ପିତୃସତ୍ୟ ରକ୍ଷାଲାଗି ସ୍ୱୟଂ ରାମଚନ୍ଦ୍ର ବନକୁ ଯାଇଥିଲେ, ଆଜି ସେ କଣ ପିତୃସତ୍ୟ ରକ୍ଷା କରିବେ ନାହିଁ ? ଯାହାର ବ୍ୟଥା ସେ ଜାଣେ; ମାତ୍ର ପୁଣି ଦୀର୍ଘ ଏକବର୍ଷ ଗଲା, ଅନୁ ତ ଫେରିଲା ନାହିଁ, ଏଥର ବୃଦ୍ଧ ଚଞ୍ଚଳ ହେଲେ, ଅନେକ ବଛାବଛିପରେ ଜଣଙ୍କୁ ମନୋନୀତ କଲେ, ବରଟି ଶେଫାଳୀର ଉପଯୁକ୍ତ। ମାତ୍ର କେବଳ ଗୋଟିଏ ଅନ୍ତରାୟ; ସେ ଗୃହଜାମାତୃପଦ[2] ଚରଣାର୍ଥେ ନିତାନ୍ତ ଅନିଚ୍ଛୁକ। ସାତପାଞ୍ଚ ଭାବି ବୃଦ୍ଧ ସ୍ନେହମୟୀ କନ୍ୟାର ମାୟାପାଶ ଛେଦନକରିବା ହିଁ ଶ୍ରେୟ ବିବେଚନାକଲେ। ମାତ୍ର ମଧ୍ୟେ ମଧ୍ୟେ କନ୍ୟାଙ୍କୁ ଗୃହକୁ ଆଣିବେ। ଏହାହିଁ ସ୍ଥିରହେଲା।

ବିବାହର ଆୟୋଜନ ହେଲା। ଶେଫାଳୀର ଏକଥା କର୍ଣ୍ଣଗୋଚର ହେଲା। ହତଭାଗିନୀର ମସ୍ତକରେ ଆକାଶ ଭାଙ୍ଗିପଡ଼ିଲା। ଏଥର ପ୍ରକୃତରେ ଶେଫାଳୀ ଫୁଲଟି ମଉଳିବାକୁ ଲାଗିଲା।

ଶୁଭ ବିବାହ ନିକଟବର୍ତ୍ତୀ ହେଲା। ସତେ ଯେପରି ଦୀର୍ଘ ରାତ୍ରିପରେ ବିମଳ ପ୍ରଭାତ ଫୁଟି ଉଠିବ। ମାତ୍ର ସେହି ଶୁଭ ବିବାହର ପାତ୍ର, ସେହି ପ୍ରଭାତ ପବନରେ ଝଡ଼ିପଡ଼ିବ ପରା। ତାହାର ସମଗ୍ର ଆଶା, ସକଳ ସାନ୍ତ୍ୱନା, ହୃଦୟର କ୍ଷୀଣ ବିଶ୍ୱାସ ଲୁପ୍ତହେଲା। ପ୍ରବଳ ଝଞ୍ଜାବାତରେ ଭଗ୍ନ ଦେବଦାରୁ ତୁଲ୍ୟ ଅଭାଗିନୀ ଭାଙ୍ଗିପଡ଼ିଲା। ଶେଫାଳୀ ଶଯ୍ୟା ଗ୍ରହଣ କଲା।

(୧୧)

କଲିକତା ମହାନଗରୀ, ବିଳାସର ଲୀଳାଭୂମି। ଇଂରାଜ ଜାତି ବିଳାସପ୍ରିୟ। ବାଇବେଲବର୍ଣ୍ଣିତ ଇଡେ଼ନ୍ ଉଦ୍ୟାନର ଅନୁକରଣରେ କଲିକତାର ଆଉଟ୍‌ରାମ୍ ଘାଟ ସନ୍ନିହିତ

(୧) ବାହାଘର ପ୍ରସ୍ତାବ, (୨) ଘରଜୋଇଁଆ

ସ୍ଥାନରେ ଇଡେନ୍ ଉଦ୍ୟାନ। ତାହାର ବିଶେଷତ୍ୱ ଏହି ଯେ– ତାହା ଶିଳ୍ପନୈପୁଣ୍ୟଦ୍ୱାରା ବହୁ ବିସ୍ମୟୋତ୍ପାଦକ ପ୍ରାକୃତିକ ଦୃଶ୍ୟରାଜିରେ ପୂର୍ଣ୍ଣ। କ୍ଷୁଦ୍ର କ୍ଷୁଦ୍ର କୃତ୍ରିମ ଲତାକୁଞ୍ଜ, କୃତ୍ରିମ ବୃକ୍ଷମଣ୍ଡପ, ଅସଂଖ୍ୟ ପୁଷ୍ପିତ ତରୁ, ପକ୍ଷୀର ଆନନ୍ଦ କୋଳାହଳ, ସାନ୍ଧ୍ୟ-ସମୀର-ସେବନ-ପ୍ରିୟ ନରନାରୀଙ୍କ ପକ୍ଷରେ ଇଡ଼େନ୍ ଭ୍ରମଣ ଅପୂର୍ବ ସୁଖବୋଲି ଉପଲବ୍ଧିହୁଏ। ଇଡେନ୍ ଉଦ୍ୟାନରେ ଅସଂଖ୍ୟା ଲୋକ ସମାଗମ ହୋଇଥାଏ; ମାତ୍ର ବିଶେଷତଃ ଏକାକୀ ଭ୍ରମଣପ୍ରିୟ ଭାବୁକମାନେ ଏଠାକୁ ଆସିବାକୁ ଭଲପାନ୍ତି। ନିର୍ଜନ ଲତାକୁଞ୍ଜରେ ବସି ନିଃସର୍ଗନଳିନୀର ସୁମୋହନ ଛବି ହୃଦୟପଟରେ ଅଙ୍କନକରିବାକୁ ବଙ୍ଗାଳୀର ହୃଦୟ ସ୍ୱତଃ ପ୍ରବୃତ୍ତହୁଏ। ବଙ୍ଗାଳୀ କଳ୍ପନାପ୍ରିୟ, କବିଜାତି। କେବଳ ବଙ୍ଗାଳୀ କାହିଁକି, ଭାରତବାସୀ ପ୍ରତ୍ୟେକ ଜାତିର ରକ୍ତରେ ପୂର୍ବ ପୁରୁଷର ଅଧିକାରସୂତ୍ରରେ କଳ୍ପନାଧାରୀ ପ୍ରବାହିତ। ଯେଉଁ ଭୂମିରେ କାଳିଦାସ, ଭବଭୂତି, ଚଣ୍ଡୀଦାସ, ଉପେନ୍ଦ୍ର ଭଞ୍ଜଙ୍କର ଆବିର୍ଭାବ, ଯେଉଁ ଭୂମିରେ ରବୀନ୍ଦ୍ର, ହେମଚନ୍ଦ୍ର, ବଙ୍କିମ, ରାଧାନାଥଙ୍କ ଜନ୍ମ, ଯେଉଁ ଭୂମିରେ ଚୈତନ୍ୟ, କବୀର, ତୁଳସୀ ଦାସ, ଜଗନ୍ନାଥ ଦାସଙ୍କର ଅଭ୍ୟୁଥାନ, ସେହି ଭୂମିରେ ଯେ କଳ୍ପନା-କଳ୍ପ-ବୃକ୍ଷ ବଢ଼ିଉଠିବ, ଏହାତ କିଛି ଆଶ୍ଚର୍ଯ୍ୟ ନୁହେଁ।

ବର୍ଣ୍ଣିତ ସନ୍ଧ୍ୟା ସମୟରେ ଜଣେ ଯୁବକ ଇଡ଼େନ୍‌ର ବିସ୍ତୃତ କ୍ଷେତ୍ରରେ ପାଦଚାରଣ କରୁଅଛି। ଯୁବକର ପରିଚ୍ଛଦ ଓ ମୁଖ ବଙ୍ଗବାସୀର ଅନୁରୂପ। ତାହାର ପରିଧାନ ଖଣ୍ଡିଏ ଢାକାଇ ଧୋତି, ଗୋଟିଏ ପଞ୍ଜାବି, ମସ୍ତକରେ କୁଞ୍ଚିତ ଫିରେଇ, ପାଦରେ ପମ୍ପସୁ, ହାତରେ ରିଷ୍ଟ ଉଆଚ୍। ସେ ଭ୍ରମଣ କରୁକରୁ ଘଟନାକ୍ରମେ ଘାଟ ନିକଟରେ ଉପସ୍ଥିତ ହେଲା। ଗଙ୍ଗାର ଘାଟ; ଭାଗୀରଥିର ପବିତ୍ର ଜଳରେ ଅସଂଖ୍ୟ ନୌକାଶ୍ରେଣୀ, ଜଳ ସେତେ ସ୍ୱଚ୍ଛ ନୁହେଁ, ପଙ୍କିଳ, ପୀତବର୍ଣ୍ଣ। ମାତ୍ର ସେହି ଜଳରେ ପବିତ୍ରତାରେ ନିଃସନ୍ଦେହମନା ଶତ ଶତ ଭକ୍ତ, ସାଧୁ ସନ୍ନ୍ୟାସୀ, ନାଉରିଆ, ମାଝି ମହ୍ଲାରମାନେ ଆପଣା ଆପଣା ପ୍ରୟୋଜନୀୟ କାର୍ଯ୍ୟ ସମ୍ପନ୍ନ କରୁଅଛନ୍ତି। ଅଦୂରରେ ବଡ଼ବଡ଼ ଇଂଲିସ୍ ଷ୍ଟିମର ଶ୍ରେଣୀ। ଯୁବକ ଚତୁର୍ଦ୍ଦିଗ ନିରୀକ୍ଷଣ କରୁ କରୁ ଉପବେଶନକଲା। ସେହି ସମୟରେ ଜଣେ ନବୀନ ଆଗନ୍ତୁକ ତାହା ସହିତ ସ୍ୱତଃପ୍ରବୃତ୍ତ ହୋଇ ଆଳାପ ଆରମ୍ଭକଲା। ଆଗନ୍ତୁକ ମଧ ବଙ୍ଗୀୟ ଯୁବକ, ପୂର୍ବୋକ୍ତ ଯୁବକ ତୁଲ୍ୟ ତାହାର ପରିଚ୍ଛଦ, ମାତ୍ର ଅତିରିକ୍ତ କେବଳ 'ପୋଲୋ' ବ୍ରାଣ୍ଡ ସିଗାରେଟ୍। ଆଗନ୍ତୁକର ନାମ ଗିରୀନ୍ଦ୍ର ମୋହନ ଦେ। ଗିରୀନ୍ଦ୍ର ପୂର୍ବୋକ୍ତ ଯୁବକ ନିକଟରେ ଆସି ବସିଲା, ସିଗାରେଟ୍‌ର ଧୂମ ଉଦ୍‌ଗୀରଣ କରୁକରୁ ତାକୁ ତାହାର ନାମ ଧାମ ପଚାରିଲା। ଅତ୍ୟଳ୍ପ କାଳ ମଧ୍ୟରେ ଉଭୟେ ବନ୍ଧୁ ହୋଇଗଲେ। ଆଜିକାଲି ବନ୍ଧୁତ୍ୱ ଅତି ସୁଲଭ। ପୂର୍ବୋକ୍ତ ଯୁବକର ନାମ ବାଞ୍ଛାନିଧି ପଟ୍ଟନାୟକ। ନାମଟା ଓଡ଼ିଆ– ମାତ୍ର କଲିକତାରେ ଓଡ଼ିଆର ଅଭାବ ନାହିଁ। ବାଞ୍ଛାନିଧି ବାବୁ ସୁରେଶ ଚାଟର୍ଜିଙ୍କର ବନାରସୀ ଦୋକାନରେ ଏଜେଣ୍ଟ। ଲୋକଟି ବିଶେଷ ଭଦ୍ର ଓ ସଚ୍ଚରିତ୍ର। ଏହି ପରିଚୟ ଉତ୍ତାରେ ଗିରିନ୍ଦ୍ର ପ୍ରତ୍ୟହ ସନ୍ଧ୍ୟାବେଳେ ବାଞ୍ଛାନିଧି ବାବୁଙ୍କ ବସାକୁ ଆସି ନଦୀତଟ କ୍ଲବ୍ ଆଦି ଭ୍ରମଣପାଇଁ ତାଙ୍କୁ ସଙ୍ଗରେ ଘେନିଯାଏ। ଉଭୟେ ଅବିବାହିତ, ଗିରୀନ୍ଦ୍ର କଲେଜର ଛାତ୍ର, ଏମ୍.ଏ. ଶ୍ରେଣୀରେ ଅଧ୍ୟୟନ କରେ।

ପ୍ରଗାଢ଼ ବନ୍ଧୁତା ଫଳରେ ଉଭୟେ ଅତି ଘନିଷ୍ଠ ଆତ୍ମୀୟ ହେଲେ। ଏହି ସମୟରେ ଗିରିନ୍‌ର ବିବାହ ସମୟ ଉପସ୍ଥିତ ହେଲା। କନ୍ୟା କଲୁଟୋଲା ଷ୍ଟ୍ରିଟ୍‌ସ୍ଥ ଭବାନୀଚରଣ ପାଲିତିଙ୍କର ମଧ୍ୟମା କନ୍ୟା, ସୁନ୍ଦରୀ ସରସୀବାଳା।

ଯୁବକ ବନ୍ଧୁବର ବାଞ୍ଛାନିଧିଙ୍କୁ ବିବାହରେ ନିମନ୍ତ୍ରଣ କଲେ, ବୁଆଁଭ ଭୋଜନ ଦିନ ସଙ୍ଗରେ ଘେନିଗଲେ। ଫଳତଃ ଭବାନୀ ପାଲିତଙ୍କ ବସାରେ ମଧ୍ୟ ବାଞ୍ଛାନିଧିଙ୍କର ପରିଚୟ ହେଲା। ଏହିପରି ଦିନ ଗଲା।

ଏକବର୍ଷ ଘନିଷ୍ଠ ପରିଚୟରେ ଗିରିନ୍‌ର ଶ୍ୟାଳକ ଶଶିଭୂଷଣ ଓ ଇନ୍ଦୁଭୂଷଣଙ୍କ ସହିତ ବାଞ୍ଛାନିଧିର ଅଭେଦ ପ୍ରୀତି ସ୍ଥାପିତ ହେଲା। ଏହି ସମୟରେ ଗିରିନ୍ ପାସ୍ କରି ଚାକିରି ଘେନି ନବବଧୂ ସହିତ ମୁର୍ଶିଦାବାଦ ଯାତ୍ରାକଲେ। ବାଞ୍ଛାନିଧି ବନ୍ଧୁ ବିରହରେ ବଡ଼ ଦୁଃଖିତ ହେଲେ, ମାତ୍ର ଶଶୀ ଓ ଇନ୍ଦୁଭୂଷଣଙ୍କ ସକାଶେ ଭବାନୀଭବନର ଦ୍ୱାର ତାଙ୍କ ନିକଟରେ ପୂର୍ବବତ୍ ଅବାରିତ ରହିଲା।

ଦିନ ୯ ଘଣ୍ଟା ହେଲାଣି। ଲୁଗାପଟା ପିନ୍ଧି ଶଶିଭୂଷଣ ତର ତର ହୋଇ କଚେରୀକୁ ବାହାରିଅଛନ୍ତି। ଇନ୍ଦୁର ଜ୍ୱର ହୋଇଅଛି, ଠିକ୍ ସେହି ସମୟରେ ବାଞ୍ଛାନିଧି ବାବୁ ଉପସ୍ଥିତ। ବାଞ୍ଛାନିଧି ବାବୁଙ୍କୁ ଦେଖି ବଡ଼ ଆନନ୍ଦରେ ଶଶୀ ବାବୁ କହିଲେ ''ଭଗବାନ୍ ରକ୍ଷା କଲେ, ଭାବିଥିଲି ଖବର ଦେବି, ଦିଦୀ ମୋର ଏହି ଦଶଟା ଗାଡ଼ିରେ ଆସୁଅଛନ୍ତି, ତାଙ୍କୁ ଆଣିବାକୁ ଏକେ ତ ମୋର ବେଳ ନାହିଁ, ପୁଣି ଇନ୍ଦୁର ଜ୍ୱର, ଆପଣ ଅନୁଗ୍ରହ କରି ସେ ଭାରଟି ନେଲେ ବାଧିତ ହୁଅନ୍ତି।'' ପରୋପକାରରେ ବାଞ୍ଛାନିଧି ସର୍ବଦା ତତ୍ପର। ସେହିକ୍ଷଣି ଶଶୀ ବାବୁଙ୍କ ଜ୍ୟେଷ୍ଠା ଭଗନୀକୁ ଆଣିବା ସକାଶେ ଗାଡ଼ି କରି ଷ୍ଟେସନକୁ ବାହାରିଲେ।

ଶିଆଲଦା ଷ୍ଟେସନରେ ଲୋକର ଭିଡ଼ ଅତିରିକ୍ତ। ଅପରିଚିତା ଆଗନ୍ତୁକଙ୍କୁ ଚିହ୍ନିବାରେ ବାଞ୍ଛାନିଧି ବାବୁଙ୍କର କିଞ୍ଚିତ୍ ବିଳମ୍ବ ହେଲା। ମାତ୍ର ସେ ନିରାଶ ହେଲେ ନାହିଁ। ଜଣେ ପ୍ରୌଢ଼ା ରମଣୀଙ୍କୁ ଦେଖି ଅନୁମାନରେ ବୁଝିଲେ, ସେହି ଶଶୀ ବାବୁଙ୍କ ଭଗିନୀ। ତାଙ୍କୁ ଶଶୀ ବାବୁଙ୍କ ନାମ କହିବା ମାତ୍ରକେ ତାଙ୍କ ଅନୁମାନ ଯଥାର୍ଥ ପ୍ରମାଣିତ ହେଲା। ରମଣୀ ଟିକିଏ ବିସ୍ମିତ ହୋଇ ପଚାରିଲେ, ''ଆପଣଙ୍କ ନାମ କଣ ବାଞ୍ଛାନିଧି ବାବୁ?'' ''ଆଜ୍ଞା ହଁ'', ଏହା କହି ବାଞ୍ଛାନିଧି ସାଦର ଅଭିବାଦନ କରି ତାଙ୍କୁ ସଙ୍ଗରେ ଆଣି ଗାଡ଼ିରେ ବସାଇଲେ ଏବଂ ନିଜେ କୋଚ୍[୧] ବାକ୍ସ ଉପରେ ବସି ପ୍ରସ୍ଥାନ କଲେ। ଅଧଘଣ୍ଟା ପରେ ଉଭୟେ ଭବାନୀ ଭବନରେ ଉପସ୍ଥିତ ହେଲେ। ବାଞ୍ଛାନିଧି ଅବାକ୍। ଆଗନ୍ତୁକା ରମଣୀଙ୍କ ନାମ ସରଯୂବାଳା ସରକାର। ଏ କଣ ସେହି ସରଯୂ ଦିଦୀ ନୁହନ୍ତି? ଠିକ୍ ସେହି ମୁଖାକୃତି, ସେହି ନାମ, ଭବାନୀ ପାଲିତଙ୍କ ଜ୍ୟେଷ୍ଠା କନ୍ୟା, ବାଳବିଧବା। କେଜାଣି କାହିଁକି ଯୁବକ ବାଞ୍ଛାନିଧିଙ୍କ ପ୍ରାଣ କାନ୍ଦି ଉଠିଲା, ସେ ଦିନ ସେ ଶୀଘ୍ର ବସାକୁ ଫେରିଗଲେ।

(୧) ଘୋଡ଼ାଗାଡ଼ି ଚାଳକ

ସରଯୂ ମେଜ ନିକଟରେ ବସି ବନ୍ଧୁମାନଙ୍କୁ ପତ୍ରାଦି ଲେଖୁଅଛନ୍ତି, ଡାକ ହରକରା(୧) ପତ୍ର ଦେଇଗଲା– ତିନୋଟି ଲଫାପା, ଖଣ୍ଡିଏ କାର୍ଡ଼। ପ୍ରଥମ ଲଫାପା ହରିହର ବାବୁଙ୍କର– ଶେଫାଳୀର ବିବାହ ନିମନ୍ତ୍ରଣ ଏବଂ ତାହାର ଶାରୀରିକ ଅସ୍ୱାସ୍ଥ୍ୟ ଜ୍ଞାପନ। ପ୍ରିୟତମା ଛାତ୍ରୀ ବିଷୟ ଚିନ୍ତାକରି ସରଯୂ ଦୁଃଖିତା ହେଲେ। ଶେଫାଳୀକୁ ସେ ବିଶେଷ ସ୍ନେହ କରନ୍ତି। ଦ୍ୱିତୀୟ ଲଫାପା ତାଙ୍କର ବର୍ତ୍ତମାନ କର୍ମସ୍ଥଳର ଅଧିନାୟିକାଙ୍କ ଲିଖିତ, ବିଶେଷ କିଛି ନାହିଁ, କେବେ ଆସୁଅଛ ? କାର୍ଡ଼ ଖଣ୍ଡି ଭଗିନୀ ସରସୀର। ଅନ୍ୟ ଲଫାପା ଅପରିଚିତ ହସ୍ତାକ୍ଷରରେ ଶିରୋନାମା ଲିଖିତ। କୌତୂହଳୀ ସରଯୂ ତାହା ଶୀଘ୍ର ଫିଟାଇଲେ। ପାଠକରି ତାଙ୍କର ଚକ୍ଷୁ ସ୍ଥିର– ଏ କ'ଣ ! ସ୍ୱପ୍ନ ନା ସତ୍ୟ ! ପତ୍ରର କିୟଦଂଶ ଏହିପରି– ''ଦିଦି, ଯେଉଁ ହତଭାଗ ବାଞ୍ଛାନିଧି ବୋଲି ପରିଚୟ ଦେଇ ଆପଣଙ୍କୁ ଷ୍ଟେସନରୁ ଆଣିଥିଲା, ସେ ଆଉ କେହି ନୁହେଁ, ଆପଣଙ୍କର ସ୍ନେହର ଅନଙ୍ଗ, ଅଭାଗା ବଞ୍ଚିଛି, ମରିନାହିଁ। ଆପଣଙ୍କର ଆଦେଶ ହେଲେ ଆପଣଙ୍କ ସହିତ ସାକ୍ଷାତ୍ କରି ହରିହର ବାବୁଙ୍କ ପରିବାରର ଖବର ଜାଣିବ।''

ସରଯୂ ଦିଦୀ ଓ ଅନଙ୍ଗର ସାକ୍ଷାତ୍ ହେଲା, ଶେଫାଳୀର ବିବରଣ ଶ୍ରବଣ କରି ଅନଙ୍ଗର ଶରୀର ଅବଶ ହୋଇଗଲା। ଆତ୍ମକୃତ ଭୁଲ ସକାଶେ ଅନଙ୍ଗର ଆତ୍ମଦାହ ଉପସ୍ଥିତ ହେଲା। ସେ ଆଉ ବସି ପାରିଲା ନାହିଁ, ନିଜକୁ ଧିକ୍କାର ଦେଇ ଦେଇ ଶତ ଶତ କ୍ଷୁଦ୍ର ବୃହତ୍ ଗଳି ମୋଡ଼ ବାଙ୍କ ବୁଲି ବୁଲି ଉଦ୍‌ଭ୍ରାନ୍ତ ଭାବରେ ଆସି ଶଯ୍ୟାରେ ଶୟନ କଲା। ପୂଜାରୀ ଅନ୍ନ ଦେଇ ଗଲା। ତାହା ଅସ୍ପର୍ଶ ହୋଇ ପଡ଼ି ରହିଲା। ଅନଙ୍ଗର ଆତ୍ମଗ୍ଳାନିର ସୀମା ନାହିଁ। ଏତେ ବଡ଼ ଭ୍ରାନ୍ତି ! ପିତୃତୁଲ୍ୟ ସଦାଶୟ ହରିହର ବାବୁଙ୍କୁ ଅବିଶ୍ୱାସ ! ଗୋପନରେ କ୍ଷଣକର ଝୁଙ୍କରେ ନିଶାରେ ଉନ୍ମତ୍ତ ବ୍ୟକ୍ତିପରି ଗୃହତ୍ୟାଗ କରି ପଳାୟନ ! କାହାକୁ ପଚାରିଲା ନାହିଁ, କେବଳ ସାନନ୍ଦ ପରିବାରର କଥାରେ ବିଶ୍ୱାସକରି ଗୃହତ୍ୟାଗକଲା। ନିଜେ କାନ୍ଦିଲା, ଶେଫାଳୀକୁ କନ୍ଦାଇଲା। ଅନଙ୍ଗ ଆଉ ଚିନ୍ତା କରିପାରିଲା ନାହିଁ। ତାହାର ତିନିଦିନ ବଡ଼ ଜ୍ୱର ହେଲା। ଅଫିସ୍ ଯିବା ବନ୍ଦ ହେଲା। ସୁରେଶ ବାବୁ ବ୍ୟସ୍ତ ହୋଇ ସମ୍ବାଦ ଜାଣିବାକୁ ଭୃତ୍ୟ ପଠାଇଲେ, ଭୃତ୍ୟ ଖବର ଦେଲା, ବାବୁଙ୍କର ଜ୍ୱର ହୋଇଛି। ଦେଖିବାକୁ ସୁରେଶ ରମେଶ ଧାଇଁ ଆସିଲେ।

ଏକ ସପ୍ତାହ ପରେ ଅନଙ୍ଗ ଭଲ ହୋଇ କାର୍ଯ୍ୟକୁ ଗଲା। ଦୁଇଦିନ ପରେ ଅଫିସ୍ ଫେରନ୍ତି ହଠାତ୍ ଶଶୀ ବାବୁଙ୍କ ଚାକର ଦ୍ୱାରରେ ଦଣ୍ଡାୟମାନ ଦେଖିଲା। ସରଯୂ ଦିଦୀ ଡାକି ପଠାଇ ଅଛନ୍ତି।

ଅନଙ୍ଗ ଶୁଣିଲା, ଟେଲିଗ୍ରାମ୍ ଆସିଅଛି–ଶେଫାଳୀର ବିଷମ ସାନ୍ନିପାତିକ (ଟାଇଫଏଡ୍) ଜ୍ୱର। ସେ ଅଜ୍ଞାନ ହୋଇ କକ୍ଷତଳେ ପଡ଼ିଗଲା।

(୧୨)

ଶେଫାଳୀର ବିବାହ ଦୁଇଦିନ ମାତ୍ର ବାକି। ସମସ୍ତ ଆୟୋଜନ ଉଦ୍‌ଯୋଗପୂର୍ଣ୍ଣ। ହଠାତ୍ ଗାଧୋଇ ଆସି ଶେଫାଳୀ ନାସିକାରୁ ଗଳ ଗଳ ହୋଇ ରକ୍ତ ବହିଗଲା। ଇନ୍ଦୁ ଓ ହରିହର ବାବୁ ମୂର୍ଚ୍ଛିତପ୍ରାୟ ହେଲେ। ଡାକ୍ତର ଦିଗମ୍ବର ଚୌଧୁରୀ, କବିରାଜ କାହ୍ନୁଚରଣ ହୋତା ଆସି ଉପସ୍ଥିତ ହେଲେ। ଡାକ୍ତର ଥର୍ମୋ ଲଗାଇ ଦେଖିଲେ ୧୦୩ ଡିଗ୍ରୀ ଜର। ପରେ ପରେ

(୧) ଡାକବାଲା, ପୋଷ୍ଟପିଅନ

ଦୁଇଥର ବାନ୍ତି ହେଲା,. ପୁଣି ହେଲା ଭେଦ, ଡାକ୍ତର ବର୍ଣ୍ଣ ଦେଖି ଭୀତ ହେଲେ। ଏ କଣ ଟାଇଫଏଡ୍? ବହୁଦର୍ଶୀ ଡାକ୍ତରଙ୍କର ମଧ ବଡ଼ ସନ୍ଦେହ ହେଲା। ରୋଗିଣୀର ଯଥୋପଯୁକ୍ତ ବ୍ୟବସ୍ଥା କରି ସନ୍ଧ୍ୟାକୁ ଆସିବେ କହି ଡାକ୍ତର ବିଦାୟ ହେଲେ। କବିରାଜ ପ୍ରବୀଣ, ତାଙ୍କର ହାତଯଶ ଗ୍ରାମରେ ଓ ଚାରିଆଡ଼େ ଘୋଷିତ। ସେ ନାଡ଼ିଦେଖି କହିଲେ, ଜ୍ୱରଟି ବିଷମ। ହରିହର ଓ ଇନ୍ଦୁମୁଖୀଙ୍କର ହଁସା ଉଡ଼ିଗଲା[୧]। ଇନ୍ଦୁ ଚିତ୍କାର କରି କାନ୍ଦିବାକୁ ଲାଗିଲେ।

ସେହିକ୍ଷଣି କଟକକୁ ତାର[୨] ପ୍ରେରିତ ହେଲା। ବହୁଦର୍ଶୀ ଡାକ୍ତର ଓ ସର୍ଜନମାନେ ପହଞ୍ଚିଲେ। ରୋଗୀକୁ ପରୀକ୍ଷା କଲେ। ସମସ୍ତେ କହିଲେ ଟାଇଫ୍ଏଡ୍। ଅଙ୍ଗରେ ଲାଲବର୍ଣ୍ଣ ଚିହ୍ନମାନ ବାହାରି ପଡ଼ିଲା, ଜ୍ୱର ଦିନକୁ ଦିନ ବଢ଼ିବାକୁ ଲାଗିଲା।

ଏହିପରି ଏକ ସପ୍ତାହ ଗଲା। ଇନ୍ଦୁଙ୍କର ଖିଆପିଆ ନାହିଁ, ଏକମାତ୍ର ସନ୍ତାନର ଏ ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦେଖିବ ଅପେକ୍ଷା ମରିବା ଭଲ। ଦିନ ନାହିଁ, ରାତ୍ର ନାହିଁ, ଇନ୍ଦୁ ଶଯ୍ୟା ନିକଟରେ, ରୋଗିଣୀର ଅଙ୍ଗ ଅଗ୍ନିପରି ଉତପ୍ତ, ଖଇ ଫୁଟୁଅଛି, ସେ ଅଜ୍ଞାନ, ପ୍ରଳାପ କରୁଅଛି। ତାହାର ଚକ୍ଷୁ ରକ୍ତବର୍ଣ୍ଣ। ଡାକ୍ତରମାନେ ଭରସାହୀନ। ସମସ୍ତେ ଏକ ବାକ୍ୟରେ କହିଲେ, ଏ ଜ୍ୱରରେ ଶୁଶ୍ରୂଷାହିଁ ଏକମାତ୍ର ଚିକିତ୍ସା, ଦୀର୍ଘ ଏକମାସ ଜ୍ୱର ଭୋଗ। ଦୀର୍ଘ ଏକମାସ ପ୍ରତି ମୁହୂର୍ତ୍ତ ଜଗିରହି ଉତ୍ତମ ରୂପେ ଧୀର ଚିତ୍ତରେ ଶୁଶ୍ରୂଷା କରିବାକୁ ହେବ। ନୋହିଲେ ରୋଗିଣୀର ଜୀବନାଶଙ୍କା।

କିନ୍ତୁ ଇନ୍ଦୁ ସେ ଶକ୍ତିବିହୀନ। ତାଙ୍କର ସମଗ୍ର ମାତୃହୃଦୟ ସନ୍ତାନର ଅନିଷ୍ଟାଶଙ୍କାରେ ଅଭିଭୂତ। ସେ ତ ନିଜେ କ୍ଷଣେ କ୍ଷଣେ ମୂର୍ଚ୍ଛିତା ହେଉଅଛନ୍ତି, ଶେଫାଳୀର କି ସେବା କରିବେ, ହରିହର ବାବୁ ଆଉ କାହା ଉପରେ ଭରସା କରି ପାରିଲେ ନାହିଁ। ତତ୍କ୍ଷଣାତ୍ ସରଯୂ ନିକଟକୁ ଅର୍ଜେଣ୍ଟ[୩] ଟେଲିଗ୍ରାଫ୍ ହେଲା– ''ଶୀଘ୍ର ନର୍ସ ଡାକ୍ତର ଘେନି ଆସ, ଶେଫାଳୀର ଟାଇଫଏଡ୍।'' ପରଦିନ ସରଯୂ ଉପସ୍ଥିତ। ସଙ୍ଗେ ସଙ୍ଗେ ଅନଙ୍ଗ ମୋହନ। ''ଆସିଛ ବାବା, ଆସିଛ'' କାନ୍ଦି କାନ୍ଦି କହି ହରିହର ମୂର୍ଚ୍ଛିତ ହେଲେ। ଅନୁ କିନ୍ତୁ ଦୃଢ଼। ତାହାର କି ଏ ସମୟରେ କାନ୍ଦିବାର କଥା, ସେ ଅଣ୍ଟା ଭିଡ଼ି ଶେଫାଳୀର ଶଯ୍ୟାରେ ପାଖରେ ବସିଲା। କଲିକତାର ବିଖ୍ୟାତ ଡାକ୍ତର, ରମେଶର ପ୍ରାଣଦାତା ଟି.ଏନ୍.ବାନୁର୍ଯ୍ୟା ଚିକିତ୍ସାର ଭାର ନେଲେ। ସରଯୂ ଅନୁର ସାହାଯ୍ୟାର୍ଥ ରହିଲେ। ଇନ୍ଦୁ ଓ ହରିହର ଅବ୍ୟହତି ପାଇଲେ। ରୋଗର ପ୍ରକୋପ ଅତ୍ୟନ୍ତ ପ୍ରବଳ। ଦିନ ପରେ ଦିନ ଯାଉଅଛି, ମାତ୍ର ରୋଗର ବୃଦ୍ଧି ବିନା ହ୍ରାସ ନାହିଁ। ଶେଫାଳୀ ସମ୍ପୂର୍ଣ୍ଣ ଅଜ୍ଞାନ, ତାହାର ଚକ୍ଷୁ ନିସ୍ତେଜ; ସର୍ବାଙ୍ଗ ଝାଳ, ଅସ୍ପଷ୍ଟ ପ୍ରଳାପ, ସେ ଅଜ୍ଞାନ ଅବସ୍ଥାରେ ଶଯ୍ୟା ଦରାଣ୍ଡୁ[୪] ଅଛି, କ'ଣ ଗୁଡ଼ାଏ କହିଯାଉଅଛି। ସମସ୍ତେ ଭୀତ। ସ୍ୱୟଂ ଡାକ୍ତର ବାବୁ ଟି.ଏନ୍. ବାନୁର୍ଯ୍ୟାଙ୍କର ଆଶା ଭରସା କ୍ରମେ କ୍ଷୀଣ ହେଲାଣି, ମାତ୍ର କେବଳ ଅନଙ୍ଗ ହୃଦୟରେ ପ୍ରବଳ ଆଶା। ଶେଫାଳୀର ଜୀବନ ମୃତ୍ୟୁ ସଂଗ୍ରାମରେ ଅନଙ୍ଗ ହିଁ ଏକମାତ୍ର ଜୀବନ ଦେବାକୁ ପ୍ରସ୍ତୁତ। ତାହାର ସମଗ୍ର ଶକ୍ତି ଏକତ୍ରିତ କରି ସେ ଯୁଦ୍ଧ କରୁଅଛି। ଘଣ୍ଟାକୁ ଘଣ୍ଟା ଔଷଧ, ଘଣ୍ଟାକୁ ଘଣ୍ଟା ପଥ୍ୟ ନିୟମିତ ରୂପେ ଦେଉଅଛି। ତାହାର ଶାନ୍ତି ନାହିଁ, ଆହାର ନାହିଁ, ନିଦ୍ରା ନାହିଁ, ହୃଦୟରେ ଭୟ ନାହିଁ, ଅବିଶ୍ୱାସ ନାହିଁ, ଭଗବାନ ଅଛନ୍ତି, ଏତିକି ମାତ୍ର ଭରସା। ତାହାଙ୍କ ଇଚ୍ଛା ବିନା କି କେହି ମରିପାରେ।

(୧) ଜୀବନ ଛାଡ଼ିଗଲାପରି ମାନସିକତା, (୨) ଟେଲିଗ୍ରାମ, (୩) ଶୀଘ୍ର, ତ୍ୱରିତ, (୪) ବିକଳହୋଇ ଖୋଜିବା

ଆଜି ରୋଗର ଏକୋଇଶ ଦିନ, ଆଜି ଜଣାଯିବ, ଏପାରି କି ସେପାରି[୧]। ଅତି ପ୍ରଭାତରୁ ଅନଙ୍ଗ ବସି ରହିଲା। ସେ ଆଜି ଜଳ ଗ୍ରହଣ କରି ନାହିଁ, ଏକ ଧ୍ୟାନରେ ଈଶ୍ୱରଙ୍କୁ ଡାକୁଅଛି। ସରଯୂ ଆସି ବିଶେଷ ବକାବକି[୨] କରିବାରୁ ଟିକିଏ ଚାହା ଖାଇଅଛି। ସାରା ଦିନଟା ଗଲା। ସନ୍ଧ୍ୟାରୁ ଡାକ୍ତର ବାବୁ ଔଷଧ, ଇଞ୍ଜେକ୍‌ସନ୍ ଯନ୍ତ୍ରାଦି ଘେନି ରୋଗୀ ଶଯ୍ୟା ନିକଟରେ ବସି ରହିଲେ, ମସ୍ତକ ଉପରେ ଅନଙ୍ଗମୋହନ, ପାର୍ଶ୍ୱରେ ସରଯୂ। ଘଣ୍ଟା ଘଣ୍ଟା ହୋଇ ରାତ୍ରିକଟିବାକୁ ଲାଗିଲା। ଡାକ୍ତର ଗୋଟାଏ ଦୁଇଟା ଇଞ୍ଜେକ୍‌ସନ୍ ଦେଲେ। ସରଯୂ ଚାମଚେ ଚାମଚେ ପଥ୍ୟ ଦେଲେ। ମାତ୍ର ଢ଼ୋକି ଦେଲା ନାହିଁ, କଳବାଟେ ବହିଗଲା।

ରାତ୍ରି ପାଞ୍ଚଟା, ରୋଗିଣୀର ସର୍ବାଙ୍ଗ ଶୀତଳ, ପ୍ରାଣବାୟୁ ଗତପ୍ରାୟ ! ଡାକ୍ତର ଉଠି ନାଡ଼ି ଦେଖିଲେ, ନାଡ଼ି ନାହିଁ। ଇଞ୍ଜେକ୍‌ସନ୍ ଦେଲେ, ନାଡ଼ି ଫେରିଆସିଲା। ଆଉ ଏକଘଣ୍ଟା, ପୁଣି ନାଡ଼ି ଦେଖିଲେ, ପୁଣି ନାଡ଼ି ଛାଡ଼ିଲାପରି। ପୁଣି ଇଞ୍ଜେକ୍‌ସନ ଦେଲେ। ଏଥର ଅନୁର ମଧ୍ୟ ଭୟ ହେଲା। ସେ ଆଉ ସମ୍ଭାଳି ପାରିଲା ନାହିଁ। ଡାକ୍ତର ବାବୁଙ୍କ ହାତରେ ରୋଗୀକୁ ଛାଡ଼ିଦେଲା। ଏକ ଦୌଡ଼ରେ ଯାଇ ଗୃହଦେବତା ଜଗନ୍ନାଥଙ୍କ ଚରଣରେ ପଡ଼ିରହିଲା। କିଏ ଜାଣେ ସେ କଣ ପ୍ରାର୍ଥନା କରୁଥିଲା। ମାତ୍ର କେହି କିଛି ଶବ୍ଦ ଶୁଣିଲେ ନାହିଁ। ଏକଘଣ୍ଟା, ଦୁଇଘଣ୍ଟା, ତିନିଘଣ୍ଟା, ଚାରିଘଣ୍ଟା ଗୋଟିଏ ଘାଟି[୩] ଗଲା। ଅନୁ ଦେବମନ୍ଦିରରୁ ଫେରି ଆସିଲା। ତାହାର ମୁଖରେ ଲେଶମାତ୍ର ଭୟର ଚିହ୍ନ ନାହିଁ। ''ରଖେ ହରି ମାରେ କେ, ମାରେ ହରି ରଖେ କେ।''

ଆଜି ରୋଗର ଚବିଶ ଦିନ। ଆଜି ମଧ୍ୟ ଗୋଟାଏ ଘାଟି ଗଲା।

ଏବେ ସବୁଠାରୁ ଶେଷ ଘାଟି ଆସିଲା। ଆଜି ପୂର୍ଣ୍ଣ ୨୮ ଦିନ। ରୋଗୀ କେତେ ସହିବ ? ତାହାର ହାତ ଗୋଡ଼ କାଠପରି[୪], ମୁଖରେ ରକ୍ତର ଚିହ୍ନ ନାହିଁ, କପାଳ ଶୀତଳ। ଶଯ୍ୟାରେ ମିଶି ଯାଇଅଛି। ହେଉ ପ୍ରାଣ ଗଲା, ପ୍ରାଣଗଲା। ସମସ୍ତେ ବ୍ୟାକୁଳ। ଇନ୍ଦୁ କ୍ଷଣେ କ୍ଷଣେ ମୂର୍ଚ୍ଛିତା, ସରଯୂ ଓ ଡାକ୍ତର ବାବୁ ସମସ୍ତେ ଭରସାହୀନ। ମାତ୍ର କେଜାଣି କାହିଁକି ଅନଙ୍ଗର ତିଳେ ମାତ୍ର ଭୟନାହିଁ। ତାହାର ଦୃଢ଼ ବିଶ୍ୱାସ, ଶେଫାଳୀ ବଞ୍ଚିବ। ଠାକୁର କଣ ପ୍ରତାରଣା କରିବେ ? ସେ ସାରାଦିନ ଜଗିଲା। କ୍ଷଣେ କ୍ଷଣେ ନାଡ଼ି ଛାଡ଼ି ଯାଉଅଛି। ଡକ୍ତର ବାବୁ ଲବଣ ଓ ସର୍କରା ଜଳର ପିଚକାରୀ ବ୍ୟବସ୍ଥା କଲେ। ମାତ୍ର ଏତେ ହେଲେ ସୁଦ୍ଧା ଅନଙ୍ଗ ଆଶାହୀନ ନୁହେଁ। ସେ ଏକ ଧ୍ୟାନରେ ଜୀବନ-ମୃତ୍ୟୁର ସଂଗ୍ରାମ ଦେଖୁଅଛି। ଏକମନରେ ଠାକୁରଙ୍କୁ ଡାକୁଅଛି, ଏକ ହୃଦୟରେ ଠାକୁରଙ୍କୁ ପ୍ରାର୍ଥନା କରୁଅଛି, ସହସା ଡାକ୍ତର ବାବୁ ଲକ୍ଷ୍ୟ କଲେ, ଧୀରେ ଧୀରେ ରୋଗିଣୀର ମୁଖାକୃତି ପରିବର୍ତ୍ତିତ ହେଉଅଛି। ତାଙ୍କର ଆଶା ଫେରିଆସିଲା।

ଦିନେ, ଦୁଇ ଦିନ, ଏକ ସପ୍ତାହ, ଶେଫାଳୀ ଏଥର ରୋଗମୁକ୍ତ। ତାହାର ପ୍ରଥମ ଜ୍ଞାନ ସଞ୍ଚାର ସଙ୍ଗେ ସଙ୍ଗେ ସେ ଦେଖିଲା ଶିରୋପରି ଅଦ୍ଭୁତ ମୂର୍ତ୍ତି ! ଏ କ'ଣ ସ୍ୱପ୍ନ ! ଜ୍ୱର ବିକାର। ତାହାର କ୍ଷୀଣ ଓଷ୍ଠାଧର ହଲିଲା, କ୍ଷୀଣ କଣ୍ଠରେ ଡାକିଲା, ପ୍ରଳାପ ନିଶ୍ଚୟ, 'ଅନୁ' 'ଅନୁ' !

ଅନୁ ଶୁଣି ପାରିଲା। ମୁଖ ନିକଟରେ କର୍ଣ୍ଣ ନିବେଶ କଲା। ପୁଣି ମୃତ୍ୟୁ ରାଜ୍ୟରୁ ପ୍ରତ୍ୟାଗତ[୫] ବ୍ୟକ୍ତି ପରି ଶେଫାଳୀ ଡାକିଲା। ଅନୁ 'ଏ ଯେ ମୁଁ।' ଆହ୍ଲାଦରେ ଅନୁ ଉତ୍ତର କଲା। ପରକ୍ଷଣରେ ରୋଗିଣୀ ଡାକିଲା, 'ମା।'

---

(୧) ବଂଚିବ କି ମରିବ, ହେବ କି ନ ହେବ, (୨) ଗାଳିଦେବା, ବାଧ କରିବା, (୩) ବିପଦ, ଅବରୋଧ, (୪) ନିର୍ଜୀବ, (୫) ଫେରନ୍ତା

ଆହୁରି ଏକ ସପ୍ତାହ, ଶେଫାଳୀ ଶଯ୍ୟାରେ ଉଠି ବସିଲା। ଅନଙ୍ଗକୁ ଦର୍ଶନ କରି ତାହାର ଦୁର୍ବଳ ଦେହ ଶୀଘ୍ର ସବଳ ହେଲା। ଆଶାତୀତ ଫିସ ଓ ପୁରସ୍କାର ପାଇ ଡାକ୍ତର ବାବୁ କଲିକତା ପ୍ରସ୍ଥାନ କଲେ। ଅନୁ ଓ ସରଯୂ ରହିଲେ। ଶେଫାଳୀ ଅତି ଦୁର୍ବଳ, ତାହାର ଶୁଶ୍ରୂଷା କରିବାକୁ ସରଯୂ ଓ ଅନୁ ଛଡ଼ା କିଏ ପାରିବ?

ଅନଙ୍ଗର ଏତାଦୃଶ ଅଦ୍ଭୁତ ଶୁଶ୍ରୂଷାରେ ହରିହର ଓ ଇନ୍ଦୁମୁଖୀ ବିସ୍ମିତ ହେଲେ। ତାହାର ଐକାନ୍ତିକ ଯତ୍ନରେ ଶେଫାଳୀ ପ୍ରାଣ ପାଇଲା।

ଏହା କି ଭୁଲିବା କଥା? ବର୍ତ୍ତମାନ ଶେଫାଳୀ ଉଠି ବୁଲିପାରେ। ମାତ୍ର ଭୟାକୁଳ ଅନୁ ତାକୁ ବାରମ୍ବାର ବାରଣ କରୁଥାଏ। ତହିଁରେ ଶେଫାଳୀର ଶୀର୍ଣ୍ଣ ଅଧର ହାସ୍ୟରେ ଉଦ୍ଭିନ୍ନ ହୁଏ। ଅନୁର ତାହାହିଁ ପୁରସ୍କାର।

ଶେଫାଳୀର ରୋଗ ମୁକ୍ତିପାଇଁ ଅନୁର ଅଦ୍ଭୁତ ଆତ୍ମତ୍ୟାଗ, ବିଶେଷତଃ ତାହାର ଠାକୁର ଘରେ ଧାରଣା ଦେବା କଥା ଯେ ଶୁଣିଲା, ସେ ଆଶ୍ଚର୍ଯ୍ୟ ହେଲା। 'ଧନ୍ୟ ଅନୁ! ଧନ୍ୟ ଅନୁ!' ଦେଶସାରା ଚହଳ ପଡ଼ିଗଲା। ଠାକୁର ଘର ନାମରେ ଅଧିକା ବୃତ୍ତିଟିଏ ଖଞ୍ଜା ହୋଇ ଆର୍ତ୍ତସେବା ସକାଶେ ଦଉହେଲା। ହରିଲୁଟ୍ ହେଲା।

(୧୩)

'ବାବା! ତୁମ୍ଭର ବିଶ୍ୱସ୍ତ ଆଉ ଉଦାର ବ୍ୟବହାର ସକାଶେ ମୁଁ କ'ଣ ପୁରସ୍କାର ଦେଇପାରେ? ବାବା! ତୁମେ ଯାହାକୁ ବଞ୍ଚାଇଛ, ସେହି ଶେଫାଳୀକୁ ତୁମକୁ ଦେଲି। ତୁମ ଦୁଇ ଜଣଙ୍କୁ ସୁଖୀ ଦେଖି ମୁଁ ମରିବାକୁ ଚାହେଁ।' ଶେଫାଳୀର ରୋଗମୁକ୍ତିର ଦଶମାସ ପରେ ଦିନେ କଚେରି ଫେରନ୍ତି ହରିହର ବାବୁ ଅନଙ୍ଗକୁ ପୂର୍ବୋକ୍ତ କଥାମାନ କହିଲେ। ଅନଙ୍ଗ ମସ୍ତକ ନୁଆଁଇ ପ୍ରଣାମ କଲା। ବୃଦ୍ଧ ପ୍ରୀତି ହେଲେ।

ଯଥା ସମୟରେ, ବହୁ ସମାରୋହରେ ଜମିଦାର ଦୁହିତା ଶେଫାଳୀକା ସହିତ ସୁଯୋଗ୍ୟ ଦେବାନ ପୁତ୍ର, ସର୍ବଗୁଣାଳଙ୍କୃତ ଅନଙ୍ଗମୋହନ ମହାନ୍ତିଙ୍କର ଶୁଭ ପରିଣୟ ଯଥାବିଧି ସମ୍ପାଦିତ ହେଲା। ବ୍ରାହ୍ମଣ ଭୋଜନ, ଆର୍ତ୍ତ ଓ ଦରିଦ୍ରନାରାୟଣଙ୍କ ସେବା ଏବଂ ଠାକୁରଘରକୁ ଯଥାସାଧ ଦାନ ଧ୍ୟାନ କରାଗଲା।

ଆଜି ଯେପରି ସମସ୍ତ ଦୁଃଖର ଅବସାନ। ବରବେଶରେ ସଜ୍ଜିତ ଅନଙ୍ଗମୋହନ। ଶେଫାଳୀ କୁସୁମ ପାର୍ଶ୍ୱରେ ମୃତ ଦୀନବନ୍ଧୁଙ୍କ ପରିହାସୋକ୍ତି 'ହର ଗୌରୀ ତୁଲ୍ୟ ଶୋଭା ପାଇଲେ।' କବିଭାଷାରେ ଯେପରି 'ସୁବର୍ଣ୍ଣ ବୃକ୍ଷରେ ହୀରକ ପୁଷ୍ପ।'

ବିବାହରେ କଲିକତାରୁ ଅନୁର ଆଶ୍ରୟଦାତା ସୁରେଶ ଓ ରମେଶ, ଗିରୀନ୍ଦ୍ର ଏବଂ ସରଯୂ ଦିଦୀଙ୍କ ପରିବାରର ସମସ୍ତେ ନିମନ୍ତ୍ରିତ ହୋଇ ଆସିଲେ। ଆନନ୍ଦର ମାତ୍ରା ପୂର୍ଣ୍ଣ ହେଲା। ରମେଶ ବାଞ୍ଛାଦାଙ୍କୁ ନାନାପ୍ରକାର ଅଭିନବ ବେଶରେ ସଜାଇବାକୁ ଲାଗିଲା। ଗିରୀନ୍ଦ୍ରଙ୍କର ତ କଥା ନାହିଁ। ସେ ଓ ତାଙ୍କ ପତ୍ନୀ ଉପଯୁକ୍ତ ବନ୍ଧୁପରି ନାନା ହାସ ପରିହାସ ଓ ଆମୋଦ ପ୍ରମୋଦଦ୍ୱାରା ନବଦମ୍ପତିକୁ ଆପ୍ୟାୟିତ କଲେ।

ହରିହର ଯଥାସାଧ ଅର୍ଥବ୍ୟୟରେ ତ୍ରୁଟି କଲେନାହିଁ। ଏହା ଯେ ତାଙ୍କର ଏକମାତ୍ର ଦୁହିତାର ବିବାହ!

---

(୧) ହରିହାଟ

# ଉପସଂହାର

ମଧ୍ୟାହ୍ନ। ଶେଫାଳୀ ଓ ଅନୁ ସୁପାତିଶାୟିତ, ପାର୍ଶ୍ୱରେ ଏକ ବର୍ଷର ଶିଶୁପୁତ୍ର ବିନୟାନନ୍ଦ ଖେଳୁଅଛି। ମାତା ବଡ଼ ସ୍ନେହରେ ପୁତ୍ରର ସୁନ୍ଦର ମୁଖଶ୍ରୀକୁ ଚାହିଁ ଚାହିଁ ବିଭୋର। ଏହି ସମୟରେ ଅନୁ ପଚାରିଲେ, ''ଶେଫାଳି! ତୁମର ମନେ ଅଛି ସେ ଦିନ କଥା, ଯେଉଁଦିନ ରାତିରେ ତୁମେ କାନ୍ଦି କାନ୍ଦି ମୋତେ କହିଥିଲ, ''କଲିକତା ଯାଆନା, ତୋତେ ଚୋର କାଟି ପକାଇବ।'' ଭାଗ୍ୟକୁ ମୁଁ କଲିକତା ଗଲି, ଏତେ କାଣ୍ଡ ହେଲା! ଏ କାହାର ଭ୍ରାନ୍ତି?'' ଶେଫାଳୀ ନିରୁତ୍ତର ରହିଲା।

ପୁଣି ଅନୁ କହିଲେ, ''ଦେଖ ତ ସାମାନ୍ୟ ଭ୍ରାନ୍ତିରେ କେତେବଡ଼ କାଣ୍ଡ ହେଲା! ଆମ ଦୁହିଁଙ୍କର ଭୁଲ। ତୁମର ବୁଝିବାର ଭୁଲ, ତୁମେ ମାଙ୍କୁ ପଚାରିଲ ନାହିଁ; ମୋର କାର୍ଯ୍ୟରେ ଭୁଲ, ମୁଁ ବାବାଙ୍କୁ ପଚାରିଲି ନାହିଁ।''

ଶେଫାଳୀ ସୁଦୀର୍ଘ ନିଃଶ୍ୱାସ ସହ କହିଲା, ''ସେ ସବୁ କଥା ଛାଡ଼, ମନେକଲେ ମୋର କଷ୍ଟ ହୁଏ। ଭାଗ୍ୟକୁ ତୁମେ ଆସିଲ ବୋଲି ମୁଁ ବଞ୍ଚିଲି, ନୋହିଲେ ଦେହ ପାଉଁଶ ହୋଇ ମାଟିରେ ମିଶନ୍ତାଣି।''

ଅନୁ ପରମ ସ୍ନେହରେ ବ୍ୟଙ୍ଗଛଳରେ କହିଲେ, ''ଆଉ ମୁଁ ଧାରୁଆ ହୋଇ ରହିଥାନ୍ତି! ମନେ କରତ, ମୋର ମୁଣ୍ଡ ଫାଟି ଯାଇଥିଲା, କିଏ ସେବା କରିଥିଲା?''

ଶେଫାଳୀ ହସି ହସି କହିଲା, ''ଛି, ମୁଁ କରି ନାହିଁ! ମୁଁ ତ ଏତେ ସାନ ଥିଲି। ତୁମେ ତ ମତେ ଜୀବନ ଦେଲ।''

ଅ– ମୁଁ ଦେଲି। ମୋ ନା କହ ନା। କହ ଭଗବାନ୍! ଶେଫାଳୀ ଭକ୍ତିଭରେ କହିଲା, ''ଭଗବାନ୍ ଦେଲେ, ଆଉ ଦେଲେ'' (ଏହା କହି ପୁତ୍ରକୁ ଟାଣି ଆଣି ସ୍ୱାମୀ କୋଳରେ ଦେଇ ପରମ ଆଦରରେ କହିଲା) ଆଉ ଦେଲେ ଏହି ନଣ୍ଡାମୁଣ୍ଡା, ଏହି ଏକୋଇର କଳା ବିଶିକେଶନ!'' ଏହା କହି ପିଲାର ଗାଲ ଚିପିଦେଲା। ସେ ହସୁ ହସୁ କାନ୍ଦି ପକାଇଲା। ''ମା ମାଇଲା!'' ଏହା କହି ଅନଙ୍ଗ ଆଦରର ଧନକୁ କୋଳକୁ ନେଇ ବାରମ୍ୱାର ମୁଖ ଚୁମ୍ବନ କରିବାକୁ ଲାଗିଲେ।



କାଉ କା' ନ କରୁଣୁ ଲଳିତାର ନିଦ ଭାଙ୍ଗିଲା, ଯେପରି ଗୋଟିଏ ଦୁଃସ୍ୱପ୍ନରେ ସେ ମଗ୍ନ ଥିଲା। ତାହାର ଜ୍ୱର ଛାଡ଼ିଯାଇଛି, କିନ୍ତୁ ଦିହ-ବଡ଼ ଦୁର୍ବଳ, ଛାତି ଭିତର ଢେ଼ଙ୍କି କୁଟିଲାପରି ଉଠୁଚି ପଡୁଚି। ମୁଣ୍ଡଟା ବଡ଼ ପରାସ୍ତ[୧]।

ଏହି କେତୋଟି ଦିନ ଜ୍ୱର ସମୟରେ ତାହାର ବୋଉକଥା, ନାନାକଥା ଲଳିତାର ବିଶେଷ ମନେପଡୁଛି। ସେ ସେତେବେଳକୁ ହରିପୁରରେ। ତା' ନନା ସେଠି ଡାକବାବୁ। ସେଠି ଥରେ ତାର ଜ୍ୱର ହୋଇଥିଲା। ନାନା ତାର ଅଫିସରୁ ଆସି କୋଡ଼ିଏ ଥର ଲେଖାଁ ପଚାରି ଯାଉଥିଲେ। ମୁଣ୍ଡ ପାଖରେ ବସି ବୋଉ ଦିନରାତି ସେବା ଶୁଶ୍ରୁଷା କରୁଥିଲା। କେତେ ଦିଅଁ ଦେବତା କତିରେ ମାନସିକ କରୁଥିଲା। କିନ୍ତୁ ଆଜି ପ୍ରାୟ ଦୁଇ ବରଷ ହେଲା ଲଳିତା ଯେ କାରାବାସ-ଯନ୍ତ୍ରଣା ଭୋଗ କରୁଛି, ଏ କଥା କ'ଣ ନନା, ବୋଉ ଜାଣିନାହାନ୍ତି? ଜାଣିଲେ ମଧ୍ୟ କଣ କରିବେ? ''ଦେଲେ ନାରୀ ହେଲେ ପାରି'' ଏବେ ତ ସେ ନିଜ କରମ ଆଦରି ପଡ଼ି ରହିବ। ସେ ପରା ଝିଅ! ତା ଭାଗ୍ୟ ପରା ପଥର ତଳେ! ସତେ ପଥର ନେଉଟିବ, ତା'ଭାଗ୍ୟ ଫେରିବ? ଗଭୀର ଦୀର୍ଘଶ୍ୱାସରେ ଲଳିତାର ହୃଦୟ ବିଦୀର୍ଣ୍ଣ ହେଲା। ପୁଣି ଭାବିଲା, ସେ ତ ମଣିଷ, ତା'ପାଇଁ ବିଧାତା ଏତେ ଦୁଃଖ କିଆଁ ଖଞ୍ଜିଲା। ତାରି ନନା, ତାରି ବୋଉ, ତାଙ୍କଠୁଁ ଜନମ, ତାଙ୍କରି ହାତରେ ମଣିଷ, ଆଉ ତାଙ୍କଠୁ ଆଜି ସେ ଶତ ଦୂରରେ, ପୂରୁବଠୁ ପଶ୍ଚିମ ଭଳି। ତାଙ୍କର ପଦେ ସ୍ନେହ-ବୋଳା କଥା ଶୁଣିବାକୁ ଲଳିତାର ପ୍ରାଣ କାନ୍ଦିଉଠିଲା। ସ୍ୱପ୍ନରେ ସୁଦ୍ଧା ବୋଉ କତିରେ ରୋଷେଇଶାଳରେ, ନନାଙ୍କ ମେଜ କତିରେ ଦଣ୍ଡେ ବସିବାକୁ, ଟିକେ ଠିଆ ହେବାକୁ ତାର ମନ ବଳିଲା। ସେ ଘରର ଏ ପାଖ ସେପାଖ ଅନାଇଲା। କେହି ନାହିଁ। ସେ ଦୀର୍ଘଶ୍ୱାସଟିଏ ଟାଣିଲା। ତତଲା ଦି'ଟୋପା ଲୁହ ତା' ଆଖିରୁ ମୁଟୁକା[୨] ଉପରକୁ ଗଡ଼ିଗଲା। ଲଳିତା ଆଖି ବୁଜିଲା।

ଆଜି ଦୁଇ ବରଷରୁ ଅଧିକ ହେଲା ସେ ଘରକୁ ବୋହୂ, କିନ୍ତୁ ବନ୍ଦିନୀ କହିଲେ ଅଧିକ ଉପଯୁକ୍ତ ହୁଅନ୍ତା, ବଣର ସାରୀକୁ ଆଣି ସୁବର୍ଣ୍ଣପଞ୍ଜରାରେ ରଖ ବା ଲୁହ ପିଞ୍ଜରାରେ ରଖ, ତା' ଦୁଃଖଟି ଯିମିତି ଏକା। ବୋହୂ କୁହ, ସ୍ତ୍ରୀ କୁହ, ବା ବନ୍ଦିନୀ କୁହ, ଲଳିତାର ଦୁଃଖ– ସେହି ଏକା ଏ ଘରେ ତା' ସ୍ୱାମୀ ନାମରେ ପରିଚିତ ବ୍ୟକ୍ତି ବାର ମାସରୁ ଏଗାର ମାସ ଥାଆନ୍ତି କଟକରେ ଚାକିରିଲାଗି। ତାଙ୍କ ସହିତ ଲଳିତାର ପରିଚୟ ଅଳ୍ପ। ଆଉ ପ୍ରକୃତିର ସାମଞ୍ଜସ୍ୟ ଅଛି କି ନାହିଁ, ସେ କଥା ଲଳିତା କେବେ ଚିନ୍ତା କରିନାହିଁ।

---

(୧) ଦରଜ, (୨) ତକିଆ।

ବିମ୍ବାଧର କିରାଣ। ଦିନ ଦଶଟାରୁ ରାତି ସାତଟାଯାକେ ଅଫିସର ଗୋଟିଏ ଅପରିଷ୍କାର, ଅଳ୍ପାଲୋକ, ବାୟୁବିହୀନ ପ୍ରକୋଷ୍ଠରେ ଗଦାଏ ଖାତା ଘାଣ୍ଟିଘାଣ୍ଟି ତାଙ୍କ ପ୍ରକୃତିର କୋମଳ ଅଂଶ ଏକାବେଳେ ପାଷାଣରେ ପରିଣତ ହୋଇଯାଇଛି। ଟଙ୍କା ୪୦ଟାକୁ ଗଧ ଖଟଣି। ଖଟିଖଟି ମନୁଷ୍ୟର ଯଦି ମନୁଷ୍ୟତ୍ୱ ଲୋପ ନପାଇବ, ତେବେ ଆଉ କାହିଁକିରେ ଲୋପ ପାଇବ ?

ଘରେ ତାଙ୍କର ବିଧବା ମାତା, ବିଧବା ଭଗିନୀ ଓ ଭାତୃଜାୟା ଏବଂ ସେମାନଙ୍କର ୫ଟି ସନ୍ତାନ; ଆଉ ନିକଟରେ ବାରବର୍ଷ ବୟସ୍କ ଭ୍ରାତା, ବାଳକ ବୃନ୍ଦାବନ। ବୃନ୍ଦାବନ ନର୍ମାଲ ସ୍କୁଲରେ ପଢ଼େ, ଆଉ ଘରର ରୋଷେଇବାସ କରେ।

ବୋହୂ ଘରକୁ ଆସିବାର ଚାରିମାସ ପରେ ଥରେ ବିମ୍ବାଧର ବଡ଼ ଉତ୍ସାହରେ କଟକରେ ବସାଘର ଠିକଣା କରି[1] ନବବଧୂକୁ ଆଣିବାକୁ ଘରକୁ ଗଲେ। କିନ୍ତୁ ମାତା ବାରଣ[2] କଲେ। ନୂଆ ଭୂଆସୁଣୀ[3] ଦାଣ୍ଡକୁ ବାହାରିବ! ଲୋକେ ହସିବେ। ପିଲାଟି ତେର ବର୍ଷର, କଟକ ସହର କୋଉ କଥା, ବାର ଅପନିନ୍ଦା ଶୁଣିବାକୁ ହେବ। ଲଳିତା ବଡ଼ ଆଶାରେ ନିରାଶ ହୋଇ ସ୍ୱାମୀକୁ ବିଦାୟ ଦେଲା। ତାହାର ନବୀନ ଜୀବନର ମଧୁର ସ୍ୱପ୍ନ ହଠାତ୍ ଭାଙ୍ଗିଗଲା ପରା। କିନ୍ତୁ ତଥାପି ତା' ମନରେ ଆଶା ଥିଲା। ଶାଶୂ କହିଛନ୍ତି ପିଲାଟା, ଆର ବର୍ଷକୁ କଣ ଆଉ ସେ ବାଧା ଥିବ ? ଆଉ ଛ ମାସ ପରେ ସ୍ୱାମୀ ଆସିଲେ। ଲଳିତା ନୂତନ ଆଶାରେ ନୂତନ ଆନନ୍ଦରେ ବୁଡ଼ିଗଲା। ସ୍ୱାମୀ ଏଥର ନିଶ୍ଚୟ ସଙ୍ଗରେ ଘେନିଯିବେ। ବଡ଼ ଯା ରମାଙ୍କର ଈର୍ଷା-ଦୃଷ୍ଟିରୁ ଏଥର ତ୍ରାହି ମିଳିବ। ନଣନ୍ଦ ତମାଳିନୀ ଏଥର କାହା ଉପରେ ଚଢ଼ାଉ କରିବେ ? ଶାଶୂଏ କାହା ଉପରେ ଗରଗର ଖରଖର[4] ହେବେ ? ଲଳିତା ଭଲରୂପେ ବୁଝିଥିଲା, ଏ ଘରେ ତାକୁ ସ୍ନେହ ଦୃଷ୍ଟିରେ ଦେଖନ୍ତି କେବଳ ଜଣେ। ସେ ଜଣକ ତା ସ୍ୱାମୀ, ତା' ଜୀବନ ଦେବତା। ଆଉ ସେତକ ଭାବି ଲଳିତା ମହାସୁଖୀ। ଶାଶୂ, ନଣନ୍ଦ, ଯା, ଚାହିଁଲେ ଚାହାନ୍ତୁ, ନୋହିଲେ ନାହିଁ। ସ୍ୱାମୀତ ଆଦର କରନ୍ତି। ଛୁଟିର କେତୋଟି ଦିନ ପରମାନନ୍ଦରେ କଟିଲା। ଯିବାଦିନ ନିକଟ ହେଲା। ବିମ୍ବାଧର ସ୍ତ୍ରୀକୁ ଘେନିଯିବା କଥା ଉତ୍ଥାପନ କଲେ। ଏଥିରେ ମାତା ଚିଡ଼ିଭିଡ଼ି ହୋଇ, ଗୋଡ଼ କଚାଡ଼ି କଚାଡ଼ି ଆର ଘରକୁ ଚାଲିଗଲେ, କେବଳ ଶୁଭିଲା କଠୋର କଟୁକ୍ତି। ବିମ୍ବାଧର ମାତାଙ୍କୁ ଅଧିକ ବିରକ୍ତ କରିବାକୁ ସାହସୀ ହେଲେନାହିଁ। ନିରାଶ ଚିତ୍ତରେ କଟକ ଗଲେ। ନବନୀତ କୋମଳ-ଯୌବନା ଲଳିତା, ହୃଦୟପୂର୍ଣ୍ଣ ପ୍ରେମ, ପ୍ରାଣପୂର୍ଣ୍ଣ ଆକୁଳ ଆକାଂକ୍ଷା ଘେନି ପଲ୍ଲିର ସେହି କ୍ଷୁଦ୍ର ଗୃହର ନିଭୃତ କକ୍ଷରେ ପଡ଼ି ରହିଲା; ଦିନାକେତେ ବଡ଼ କାନ୍ଦିଲା, ଘରର କାମଦାମ କରିପାରିଲା ନାହିଁ। ବୋହୂର ଅନ୍ୟମନସ୍କତାକୁ ଆଳସ୍ୟର ଲକ୍ଷଣ ଭାବି ଶାଶୁଏ ଉତ୍ତମ ମଧମ ଥୋଇବାକୁ ଆରମ୍ଭ କଲେ। କାମର ଲମ୍ବ ଲମ୍ବ ତାଲିକା ହେଲା। ତମାଳିନୀ ଓ ରମାସୁନ୍ଦରୀ ହାତଗୋଡ଼ ଯୋଡ଼ି ବସି ପାନଖିଆ ଓ ପରଚର୍ଚ୍ଚାର ସୁବିଧାଟିକ କରିନେଲେ। ତମାଙ୍କ ଗୁଣବତୀ କନ୍ୟା କମା, ମାଇଁଙ୍କ ନାମରେ ଖଚମିଛ[5] କହି ଆତ୍ମମନ ପାଇବାକୁ ବ୍ୟସ୍ତ ହେଲା।

(୧) ସ୍ଥିରକରି, (୨) ମନାକରିବା, (୩) ବୋହୂ, (୪) ଚିଡ଼ିଚିଡ଼ି, ବିରକ୍ତ (୫) ମାଡ଼, (୬) ଚୁଗୁଲି

ସବୁ ଦୁଃଖ ମୁଣ୍ଡରେ ମୁଣ୍ଡାଇ, ହାତପିଠିରେ ଲୁହ ପୋଛି, ଗଧପରି ଖଟିଖଟି ପେଟକୁ ମୁଠାଏ, ଦେହକୁ ଖଣ୍ଡେ ସମ୍ବଳକରି ଚଉଦ ବରଷର ଲଳିତା ଦିନ କଟାଉଲା। ତାହାର କେବଳ ଶେଷ ଭରସାଥିଲା ତାହାର ସ୍ୱାମୀ, ସେତ ତାକୁ ଭଲପାଏ। ଶାଶୁ ହଜାର ଗାଳିମାଡ଼ ଦିଅନ୍ତୁ, ନଣନ୍ଦ ଯା' ହଜାର ତିରସ୍କାର କରନ୍ତୁ, ପୁତୁରା ଝିଆରୀ ହଜାର ଖଚମିଛ[୧] କହନ୍ତୁ, ତାହାର ଶେଷ ସମ୍ବଳ, ତାହାର ଶେଷ ଆଶା, ନୈରାଶ୍ୟ ଅନ୍ଧକାରର ଧ୍ରୁବତାରା ତାହାର ସ୍ୱାମୀର ପ୍ରେମ, ତାହାର ଜୀବନ-ଦେବତାର ସେହି ମନୋମୋହନ ମୂର୍ତ୍ତି, ଏଗାର ମାସ ପରେ ଥରେତ ଆସିବେ, ଦୋଳ ଦଶରାକୁ ଥରେ ତ ଘରେ ପାଦଦେବେ। ସେହି ତ ଲଳିତାର ଲକ୍ଷେଟଙ୍କା। ସେ ମୂର୍ତ୍ତି ଦେଖିଲେ ଲଳିତା ଯେ ସବୁ ଦୁଃଖ, ସବୁ ମାଡ଼ର ଜ୍ୱାଳା ଭୁଲିଯିବ। .

ଲଳିତା ଲେଖିପଢ଼ି ଜାଣେ, କିନ୍ତୁ କେବେହେଲେ ସ୍ୱାମୀକୁ ପତ୍ର ଲେଖିପାରିନାହିଁ। ତାହାର ବଡ଼ ଲଜ୍ଜା। ଶାଶୁ ଶୁଣିବେ, ନଣନ୍ଦ ଯା' ହେରିକା[୨] ଜାଣିବେ, କଣ ଭାବିବେ, କେତେ ଗାଳି ଗଞ୍ଜଣା[୩] ଦେବେ! କିନ୍ତୁ ସ୍ୱାମୀକୁ ଜଣାଇବାପାଇଁ କଣ ତା' ମନରେ କଥା ନାହିଁ? କଥା ଅଛି, କିନ୍ତୁ ଜଣାଇବାର, ବୁଝାଇବାର ପନ୍ଥା ତାକୁ ଅଗୋଚର। ସେ ତ ସ୍ୱାମୀ ସହିତ ଭଲକରି କଥା କହିପାରେନାହିଁ। ଛୁଟିର କେତୋଟି ଦିନ ସେ ସ୍ୱାମୀକୁ ପରିତୋଷରେ ଭୋଜନ କରାଇବାପାଇଁ ରୋଷେଇ ଘରେ ବ୍ୟସ୍ତଥାଏ। ବୋଉ ତାକୁ କେତେ ରନ୍ଧା ଶିଖେଇଛି। ସ୍ୱାମୀକୁ ରାନ୍ଧି ନ ଖୁଆଇଲେ ତା' ଶିଖିବା ଯେ ବୃଥା। ତଥାପି ଦିନ୍‌ବେଳେ ସ୍ୱାମୀ ସହିତ ଦେଖାହେଲେ ଲାଜରେ ସେ ମରିଯାଏ, ଓଢ଼ଣାଟି ଟାଣି ଅନ୍ୟ ଘରକୁ ପଳାଏ, କାଳେ କମା, ମିନି ଦେଖି, ଆଈ ଆଗରେ କହିଦେବେ ପରା!

କିନ୍ତ ଲଳିତ ବାଟ ଚାହିଁଥାଏ। ସପ୍ତାହରେ ଶାଶୁ ନିକଟକୁ ଦୁଇଖଣ୍ଡି ପତ୍ର ଆସେ। ସେ ଭଲ ଅଛନ୍ତି, ଏକଥା ଅନ୍ୟ ମୁହଁରୁ ଶୁଣି ମଧ୍ୟ ତାହାର ଦଗ୍ଧ ପ୍ରାଣରେ ଶାନ୍ତି ଆସେ!

ଦୋଳ ମୁଣ୍ଡ ଉପରେ। ଲଳିତା ଭାବିଲା, ସ୍ୱାମୀ ଘରକୁ ଆସିବେ। ଭାବନାରେ ଆନନ୍ଦିତା ହେଲା। ମାତୃଦତ୍ତ ଲୁଗାପେଡ଼ି ଫିଟାଇ ସଯତ୍ନରକ୍ଷିତ ଗୋଲାପୀ ପାଟ ଖଣ୍ଡିକର ଭାଙ୍ଗ ଖୋଲି ଦେଖିଲା, ସ୍ୱାମୀ ଆସିଲେ ପିନ୍ଧିବ ପରା! କଲିକତା ବଣିଆ ତିଅରି ପୁଷ୍ପହାରଟି ଗଳାରେ ନାଇବ ପରା; ଆଉ ସ୍ୱାମୀ ଲୁଚାଇକରି ଯେଉଁ ସୁନାଚୁଡ଼ି ଦି'ପଟ କଟକରୁ ଆଣି ଦେଇଛନ୍ତି, ହାତରେ ନାଇବ ପରା; ପରକ୍ଷଣରେ ଲଜ୍ଜା ଗ୍ରାସକଲା। ଏ ଆଡ଼କୁ ସେ ଆଡ଼କୁ ଅନାଇ ପେଡ଼ି ବନ୍ଦକଲା। ବାହାରୁ ନଣନ୍ଦର କର୍କଶ କଣ୍ଠ ଶୁଭିଲା, ''ହଇଲୋ ନୂଆବୋହୂ। ଘରଟା ଭିତରେ ପଶି କଣ କରୁଛୁ? ଦି଼ନରାତି ବାପ ଦେଇଥିବା ଲୁଗା ଖଣ୍ଡିକ ଦେଖାହେଉଛି ପରା! ଛିଆଲୋ, ଛାର[୪] ପାଟଖଣ୍ଡିକ। ଆମ ଦି'ହାତରେ କେତେ ବନାରସୀ, ନୀଳାମ୍ବରୀ, ପୀତାମ୍ବରୀ ପିନ୍ଧିଛୁ, ଆଉ ଇମିତି ହଲେଇ ଫୁଲେଇ ହଉନା। ରଖ୍ ତୋ ପେଡ଼ି ସଜଡ଼ା, ଆଗ ରନ୍ଧାଘର କାମ ଦେଖ, ମାଛ ପଛେ ବିଲେଇ ଖାଉଛି, ମୋ' ପାଟ ପଡନୀ ପିନ୍ଧା ଲାଗିଛି।'' ଏହା କହି,

(୧) ଚୁଗୁଲି, (୨) ମାନେ, ଇତ୍ୟାଦି, (୩) ଗଂଜଣା, ନିଂଦା, ଉଘାଣ, (୪) ସାମାନ୍ୟ

ନାନାଦି ଅକଥ୍ୟ ଭାଷାରେ କଥାର ଉପସଂହାରକରି, ପାନବଟାଟା ଟାଣିଆଣି ପାନ ଭାଙ୍ଗି ବସିଲା। ଲଳିତା ଯାଉଁ ଯାଉଁ ଶୁଣିପାରିଲା- ମାଲୋ ଅଳସେଇ ! ପାନ ଖଣ୍ଡକ ଭାଙ୍ଗିବାକୁ ଭାର୍ଜନ[୧] ନୁହଁ। ଆମ ଶାଶୂଶ୍ୱଶୁର ଗରେ[୨] ଆମେ ଇମିତି ଏକା ଫୁଲ-ଚନ୍ଦନ ନାଇ ବସିଥିଲେଇଁ, ଆଉ ଆମ ଗୋଡ଼ତଳକୁ ସାତ ତିଅଣ ନଅ ଭଜା ସଜଡ଼ା ହଉଥିଲା।

ତା'ଆରଦିନ ଡାକବାଲା ଚିଠି ଦେଇଗଲା। ଶାଶୂ ପଢ଼ିଲେଖି ଜାଣନ୍ତି ନାହିଁ। ରମାସୁନ୍ଦରୀ ପଢ଼ି ଶୁଣାଇଲେ, ବିମ୍ବାଧର ଲେଖିଛନ୍ତି, ବହୁତ ଖର୍ଚ୍ଚ. ଏଥର ଘରକୁ ଆସି ପାରିବେନାହିଁ, ଆସିବେ ଏକାବେଳକେ ଯାଇ ଦଶରାରେ। ଲଳିତା ମୁଣ୍ଡରେ ବଜ୍ରାଘାତ ହେଲା। ନିତି ସକାଳୁ କାଉଟିକୁ ଆଧାର ଦେଇଦେଇ ଯାହା ପଚାରିଥିଲା, ସବୁ ମିଛ। ଅଲକ୍ଷଣା କାଉଟା ଉପରେ ତାର ବଡ଼ ରାଗହେଲା। ଆଖିରୁ ଝଡ଼ି ପଡୁଥିବା ଦି'ଟୋପା ଲୁହ ସମାଳି ନେଇ[୩] ଲଳିତା ଘର କାମରେ ମନଦେଲା। ତାହାର ବିରସଭାବ ଲକ୍ଷକରି ଶାଶୁ ନିତାନ୍ତ ଅସହନୀୟ ଭାଷାରେ ତାକୁ ମର୍ମାନ୍ତିକ କଷଣ[୪] ଦେଲେ। କିନ୍ତୁ ସେ ବୋହୂ-ସେ କ'ଣ ଉତ୍ତର ଦେବ ?

ପୁଣି ମାସ ପରେ ମାସ ବହିଗଲା। ଦଶରା ଛୁଟି ଆରମ୍ଭହେଲା। ବିମ୍ବାଧରଙ୍କର ଦେଖା ନାହିଁ କି ପତ୍ର ନାହିଁ। ମାସ ଆରମ୍ଭରେ କୋଡ଼ିଏଟି ଟଙ୍କା ପଠାଇଦେଇ ସେହି ଯେ ଲେଖିଥିଲେ– ମୁଁ ଭଲଅଛି, ସେତିକି। ଭାବନାରେ ଭାବନାରେ ଲଳିତାର ଜରହେଲା, କିନ୍ତୁ ଜରହେଲେ ପଚାରେ କିଏ ? ସେହିଥିରେ ବାପାଲୋ ବୋଉଲୋ ହୋଇ ଲଳିତା ସାତ ତିଅଣ ନଅ ଭଜା କରି ସମସ୍ତଙ୍କୁ ଖାଇବାକୁଦେଲା। ଶାଶୂଙ୍କର ବରାଦ ହେଲା– ଆରିଷା ପିଠା ଛଣାଯିବ। ପୂଜାପାର୍ବଣ ଆୟୋଜନରେ ଜରୁଆ ଦେହରେ ଢ଼େଙ୍କିଚକି କାମରୁ[୫] ସୁଦ୍ଧା ଛୁଟି ମିଳିଲାନାହିଁ[୬]। କିନ୍ତୁ ଗତ କାଲି ପ୍ରବଳ ଜରରେ ସେ ଅଜ୍ଞାନ[୭] ହୋଇ କୂଅମୂଳେ କଚାଡ଼ି ହୋଇ ପଡ଼ିଗଲା। ପାଣିଭରା ମାଠିଆଟ ପଡ଼ି ଦଶଖଣ୍ଡ ହେଲା, ଏଣେ କୁଣ୍ଡମୂଳ ପଥର ବାଜି ମୁଣ୍ଡ ଠାଏ କଣାହୋଇଗଲା। ରକ୍ତରେ ଲୁଗାପଟା ଭାସିଲା। ପଡ଼ସୁଣୀ[୮] ଇନ୍ଦୁମା ପୋଖରୀରେ ଗାଧୋଉଥିଲା; କଣ ଦୁମକିନା ପଡ଼ିଲା ଶୁଣି, ଓଦାସରସର ଲୁଗାରେ କୂଅମୂଳକୁ ଦୌଡ଼ି ଯାଇ ଦେଖେ, ସର୍ବନାଶ ! ''ଭଲୋ ମାଉସି, ମାଉସି ତୋ ବୋଉ କ'ଣ ପଡ଼ି ଚେତାବୁଡ଼ିଗଲାଣି, ମୁଣ୍ଡ ଫାଟି ରକତ ବୋହୁଛି। ଆଲୋ, ଦେଖିଯା।'' ତା ପାଟିରେ ଗାଧୋଇ ଆସିଥିବା ବିମଳା ମା, ରତିନାନୀ, ଗୁଣ୍ଡିଚା ବୋଉ ଇତ୍ୟାଦି ଘଟଣା-ସ୍ଥଳରେ ପହଞ୍ଚିଗଲେ। ଯେମିତି ମାୟା ମମତାରେ ବୁଡ଼ିରହିଛନ୍ତି, ଏପରି ଭାବ ଦେଖାଇ ନଣନ୍ଦ ଯା, ଦି'ଜଣ ଯାକ ଘରୁ ଦଉଡ଼ି ଅଇଲେ। ଶାଶୁଙ୍କ ଆଖିରୁ ଲୁହ ବହିଲା ପରା ! ପଣନ୍ତକାନିଟା ଆଖିରେ ଦେଇ କହିଲେ, ''ବାୟାଣୀଟାକୁ କିଏ କହୁଛି ପାଣି କାଢ଼ ବୋଲି, ବାପା ମା ମୂଳରୁ ଝିଅକୁ ସଉଖିନୀ[୯] କଲେ; କାମଦାମ ତ ମୋଟେ ଜାଣିନାହିଁ; ଗହିରୀ କୂଅ ଦେଖି ମୁଣ୍ଡ ବୁଲାଇଲା ପରା।''। ମାଇପିମାନେ

(୧) ସମର୍ଥ, ଯୋଗ୍ୟ; (୨) ଘରେ; (୩) ସହିନେବା; (୪) କଷ୍ଟ; (୫) ଛୋଟମୋଟ କାମ, ସାଧାରଣ କାମ (୬) ବିଶ୍ରାମ; (୭) ଚେତାଶୂନ୍ୟ, ବେହୋସ; (୮) ପଡ଼ୋସୀ, (୯) ଅୟସୀ।

ଧରାଧରି କରି ନେଉଁନେଉଁ ଗତିନାନୀ କହିଲା "ଇଲୋ ନାନି! ବୋହୂ ଦେହରେ ତ ସାତତାଳ ଜର ଭରତି, ଦେହଟା ତ ଖଇ ଫୁଟୁଛି।"

ଶାଶୁ ଆଶ୍ଚର୍ଯ୍ୟ ହୋଇ କହିଲେ, "ଜର ହେଉଛି! ଆମକୁ ଜମା କହିନାହିଁ। ଏମିତି କପଟ ସଭାବକୁ[୧] ମୋ' ହାଡ଼ ଚିଡ଼େ[୨]।"

ଯା, ନଣନ୍ଦ ବୋହୂକୁ ନେଇ ବିଛଣାରେ ଶୁଆଇଲେ। ଜନା ଖଣ୍ଡିଏ ପୋଡ଼ି କର୍ପାଳର ଖଣ୍ଡିଆ ଜାଗାରେ ମାଡ଼ିଦେଲେ। ଲଳିତା ସମ୍ପୂର୍ଣ୍ଣ ଅଚେତନହୋଇ ପଡ଼ିରହିଥିଲା।

"ଅରଖିତକୁ ଦେବି ସାହା"। ଲଳିତା ନ ମରି ବଞ୍ଚି ଉଠିଲା। ଆରଦିନ କାଉ କା' କଲାବେଳକୁ ତାର ନିଦ ଭାଙ୍ଗିଲା। ତାହାର ରହିରହି କେବଳ ବାପଘର କଥା ମନେପଡ଼ିଲା। ବୋଉର ସୁନ୍ଦର ମୁହଁଟି, ସାନଭାଇ ଲଖିଆର କଅଁଳ କଥା, ନନାର "ମା" ଡାକ, ସବୁ ତା' ଆଖି ଆଗରେ ଆଜି ବଡ଼ ମଧୁର ଦିଶିଲା। ନନାର କଥା ପଦେ ଶୁଣିବାକୁ, ସାନ ଭଉଣୀ ରେବତୀର "ନାନି ନାନି" ଡାକ ଶୁଣିବାକୁ ତାହାର ତୃଷିତ କାନ କେତେ ଆକୁଳହେଲା। କିନ୍ତୁ ତାହାର ବୃଥା ଆକୁଳତା। ପିତା କଣ ସତେ ଆସିବେ? ସତେ ଅଭାଗିନୀର ମୁହଁ ଚାହିଁବେ? ବୋଉ କଣ ସତେ ତା' କଥା ମନେକରେ? ଆହା, ଏଠି ଯୋଉ ବୋଉ ଅଛି, ସେତ ଯମର ମୂର୍ତ୍ତି! ଲଳିତାର କାଠଫାଳିଆ ମାଡ଼କଥା ମନେପଡ଼ିଲା। କି ନିର୍ମମ ପାଷାଣ! କାହିଁକି, ସେ କଣ ଦୋଷ କରିଥିଲା କି? ପରଝିଅକୁ ବିଭାକରି ଆଣିବେ, ଶେଷକୁ ଏପରି ମାଡ଼ମାରି ତା' ହାଡ଼ ଭାଙ୍ଗିବେ। କିବା କଥା! ତା' ଯୌତୁକ ଭଲ ହୋଇନାହିଁ, ଗହଣା ଗୁଡ଼ା ନୀରସା, ସେଥିରେ ତାର ଦୋଷ କଣ? ଟଙ୍କାଗଣ୍ଡାର ଡାକବାକୁ ତା' ବାପ, ଆଉ କେତେ ଦେଇଥାନ୍ତେ? ଆହା, ନନା ଯେ ପାରୁ[୩] ପର୍ଯ୍ୟନ୍ତେ ଦେଇଛନ୍ତି। ଝିଅ ବୁଢ଼ୀଙ୍କ ମନ ପାଇବାପାଇଁ ସବୁରୁ ସବୁ ଖଞ୍ଜିଦେଇ ପୁଣି ଏତେ ଅପମାନ। ଅଭିମାନରେ ଲଳିତାର ଛାତି ଫାଟିପଡ଼ିଲା। ଭାବିଲା, ଏ ପୂର୍ବଜନ୍ମ କର୍ମର ଫଳ; ଏମିତି ହାନିକପାଳୀ ନ ହୋଇଥିଲେ, ଦିଅଁପରି ବର ପାଇ ସେ ଦିନେ ସୁଖ ବୋଲି କଣ ଜାଣିଲା ନାହିଁ। ଚିନ୍ତା କରୁକରୁ ଅଜ୍ଞାତରେ ତା' ଆଖିପତା ନିଦରେ ଭାରି ହୋଇଗଲା।

ବେଳ ଦୁଇଘଡ଼ି ବେଳକୁ ଅନ୍ୟ ଘରୁ ପାଟି କରୁକରୁ ଝଡ଼ପରି କବାଟ ଠେଲି ଆସି ପଶିଗଲେ, କରାଳମୂର୍ତ୍ତି ଶାଶୁ। ତାଙ୍କୁ ଦେଖି ଲଳିତା ଧଡ଼କିନା ବିଛଣାରୁ ଉଠିପଡ଼ି କଣରେ ପଶିଗଲା। ମେଘଗର୍ଜନ ପରି ପାଟିମେଲାଇ ଶାଶୂ କହିଲେ, "ଇଲୋ ଅଲିଅଳଘର[୪] ଝିଅ! ଦିନ ଦଶଟାକୁ ଉଠ୍, ସକାଳୁ ଉଠି ବୁଢ଼ୀନୋକଟା ବାସି ପାଇଟି ସବୁ ସାଇଲିଣି, ଏବେ ତୋ' ଗୋଡ଼ ମୋଡ଼ିବାପାଇଁ ବାକି ରହିଲା ପରା! କାଲି ଟିକେ ଜର ହୋଇଥିଲା। ବୋଲି ରାଣୀଙ୍କ ଛଟା[୫] ସୁଆଗ[୬] ଦେଖ! ଶାଶୂ, ନଣନ୍ଦ ରାନ୍ଧିବାଢ଼ି ଦେଲେ ସାଆନ୍ତାଣୀ ଗୁଣ୍ଡା ବଳିବେ[୭]। ଯା' ମୋ' କପାଳରେ ଥିଲାରେ ବିମ୍ୱାଧର। ତମ ବାପ ପୁଅର ପାଇଟ କରି

(୧) ଆଚରଣ; (୨) ରାଗ ଆସିବା; (୩) ସାମର୍ଥ୍ୟ, (୪) ଅଯସ, ଗେହ୍ଲା; (୫) ଢଂଗ, ଖୋଇ; (୬) ସ୍ନେହ, ଆଦର, (୭) ବସିବସି ଖାଇବା।

କରି ଏବେ ବୁଢ଼ୀ ବେଳର ବୋଉ ସେବା ନ କଲେ ଭାତ ମିଳିଲା ନାହିଁ। କୁଆଡ଼େ ଗଲ ହେ ଛାଡ଼ି।'' କାନ୍ଦଣା ସ୍ୱରରେ ସ୍ୱାମୀଙ୍କ କଥା ବାହୁନୁ ବାହୁନୁ ବୁଢ଼ୀ ପୋଖରୀକି ଗାଧୋଇ ଗଲେ। ଲଳିତା ମୁହଁବୁଜି, ଆଖିପୋଛି ବାରିଆଡ଼େ ଗଲାମାତ୍ରେ ବାଘୁଣୀ ପରି ତମାଳିନୀ ଖାଇ ଗୋଡ଼ାଇଲେ। ଲଳିତା ନିତାନ୍ତ ହତାଶରେ ଅସୁସ୍ଥ ଦେହ ଘିନି ପ୍ରାତଃକୃତ୍ୟ ସାରିବସିଲା।



ଭାତ ବସାଇ, ପରିବା କାଟି ମସଲା ବାଟୁବାଟୁ ବଡ଼ ଯା' ତୁହ୍ଲାଟାରେ କଳିକଲେ। ଶାଶୁ ପୂଜା ସାରି ଆସି ବଡ଼ ବୋହୂର ପାଟି ଶୁଣି ଦୁଇଟି ବୋହୂଙ୍କୁ ଜୀଅନ୍ତା ଯମଘରକୁ ପଠାଇବା ବ୍ୟବସ୍ଥା କରୁକରୁ ଖଣ୍ଡିଆ ଭୂତ ପରି ଆସି ରୋଷେଇଘରେ ପଶିଗଲେ। ତାଙ୍କ ମୂର୍ତ୍ତି ଦେଖି ଲଳିତା ଛାତିରୁ ଅଧେ ରକ୍ତ ଶୁଖିଗଲା। ସେ ଭାତ ଗାଳିବାକୁ ଯାଉଥିଲା। ତାହାର ଥରଥର ହାତରୁ ଭାତହାଣ୍ଡିର ଫନ୍ଦଟା ଛାଡ଼ିଗଲା ମାତ୍ରେ ଦୁଲ୍‌କିନା ତତଲା ହାଣ୍ଡିଟା ତା' ଗୋଡ଼ ଉପରେ କଚାଡ଼ି ହୋଇପଡ଼ିଲା। ହାଣ୍ଡି ତ ନବଚୂନା[୩] ହେଲା; ଭାତଗୁଡ଼ିକ ବିଞ୍ଛି ତତଲା ପେଜ ପଡ଼ି ଶାଶୁ ବୋହୂ ତିନିଙ୍କର ଗୋଡ଼ ପୋଡ଼ିଗଲା। ପୋଡ଼ା ଜ୍ୱାଳାରେ ଛଟପଟ ହୋଇ ଅକଥ୍ୟ ଭାଷାରେ ଲଳିତାକୁ ଗାଳି ଦେଉଦେଉ ରମା ବାହାରକୁ ପଳାଇଗଲା। ଶାଶୁ ଦିଗ୍ୱିଦିଗଜ୍ଞାନଶୂନ୍ୟା ହୋଇ ଫୁଙ୍କନଳାଟି ଉଠାଇ ବୋହୂର ମଝିପିଠିରେ କଷିକଷି ଚାରିପାଞ୍ଚ ପାହାର ବାଡ଼େଇଗଲେ।

ଘଟନାସ୍ଥଳରେ ତମାଳିନୀ ପହଞ୍ଚି କାଣ୍ଡ ଦେଖି ବୋହୂକୁ ଦୋଷୀ ଜ୍ଞାନକରି ତଣ୍ଟିଆ ଦେଇ ରନ୍ଧାଘରୁ କାଢ଼ି ଆପେ ରାନ୍ଧିବସିଲେ। ମାତା ଓ କନ୍ୟାର ଐକତାନ କଣ୍ଠରେ ବାରିପଟ ପର୍ଯ୍ୟନ୍ତ ଉଚ୍ଛୁଳିଉଠିଲା।

ଛାତିର କୋହ ଛାତିରେ ଚାପି, ଅପରାଧିନୀ ଲଳିତା ଆସି ଆପଣା କୋଠରୀରେ ବସିଲା। ତାହାର ବାହ୍ୟଜ୍ଞାନଶୂନ୍ୟ ଦେହ କାନ୍ଥକୁ ଆଉଜିରହିଲା। ଲୁହ ଆଖିପତାରେ ଶୁଖିଲା।

(୧) କିଛି ବିଚାର ନକରି, (୨) ଫୁଙ୍କି ଚୁଲି ଜଳାଇବାପାଇଁ ବ୍ୟବହୃତ ଫଂପା ନଳୀ, (୩) ଛୋଟ ଛୋଟ ଖଣ୍ଡ

ପୋଡ଼ା ଗୋଡ଼ ହାତର ଜ୍ୱାଳା ଅପେକ୍ଷା ତାହାର ହୃଦୟର ଜ୍ୱାଳା ଅସହନୀୟ। ସେ ସତସତିକା ଆଜି ଶାଶୁ ନଣନ୍ଦଙ୍କୁ ଘୃଣାକଲା। ଏହିମାନେ ପୁଣି ଗୁରୁଜନ, ଦିଅଁଦେବତା। ତାହାର ମୁଖ ଫିଟିଲା ନାହିଁ; କିନ୍ତୁ ମନେମନେ ସଞ୍ଚିତ କ୍ରୋଧ ଓ ଅଭିମାନରେ ତାହାର ସର୍ବାଙ୍ଗ ବିଷରେ ଜରଜର ହେଲାପରି ଲାଗିଲା। ନିଜ ଜୀବନ ଉପରେ ତାହାର ଭାରୀ ଘୃଣାହେଲା। ସ୍ତ୍ରୀ-ଜନ୍ମ ପାଇ ସେ ଯେ କେଡ଼େ ହୀନା, ଏହା ବୁଝିବାକୁ ତା'ର ଆଉ ବାକି ରହିଲା ନାହିଁ। କତିରେ ତା' ପୋଷା ବିଲେଇଟି ଆସି ବସିଲା। ଲଳିତା ତା' ଦେହ ଆଉଁସିଆଉଁସି ଭାବିଲା, ''ବିଲେଇଟି ଭଲା ହୋଇଥାନ୍ତି।'' ଆଜି ସେ ଉପାସ। ସନ୍ଧ୍ୟା ବେଳକୁ ଉଦିଆ ଦୋକାନରୁ ଉମା ଦୁଇପଇସାର ଚୂଡ଼ାଭୁଜା ଆଣିଦେଲା। ଲଳିତା ତାହାହିଁ ପାଟିରେପକାଇ ଶୋଇଲା।



## (୨)

ବାଡିପଟ ଘୋର ଅନ୍ଧାର, ଆଉ ଲଳିତାର ହୃଦୟ ତଦପେକ୍ଷା ଅନ୍ଧକାର। ଆକାଶ ନକ୍ଷତ୍ରଖଚିତ, କିନ୍ତୁ ଲଳିତାର ହୃଦୟ ଅଶାଲୋକଶୂନ୍ୟ। ନିରାଶ ହୃଦୟର ବେଦନା ଘେନି ଲଳିତା ଆସି ପୋଖରୀ କୂଳରେ ବସିଲା। ଆଜି ତାହାର ବେଦନା ଅହସ୍ୟ। ବଡ଼ ଗଭୀର ଗୋଟିଏ ଦୀର୍ଘଶ୍ୱାସରେ ହୃଦୟନିହିତ ବ୍ୟଥାର ପରିମାଣ ଜଣାଇ ସେ ଆକାଶକୁ ଚାହିଁଲା। ପ୍ରକୃତି ନିସ୍ତବ୍ଧ; ସେ ନିସ୍ତବ୍ଧତା ମଧ୍ୟରେ ପବନର ସରସର ଶବ୍ଦ ବଡ଼ ମର୍ମସ୍ପର୍ଶୀ, ବଡ଼ କରୁଣ। ଲଳିତାର ମନେହେଲା, ପ୍ରକୃତି କାନ୍ଦୁଛି, ତାହାର କାନ୍ଦଣାରେ ଗଛପତ୍ର କାନ୍ଦୁଛନ୍ତି, ତାହାର ବ୍ୟଥାରେ ପବନ ବ୍ୟଥିତ, ଆକାଶରୁ ବ୍ୟଥାର ଶିଶିର ଝରିପଡୁଛି। ଆଜି ସମଗ୍ର ବିଶ୍ୱ ମଧ୍ୟରେ ସେ ଏକା, ତାହାର ବିରାଟ ଶୂନ୍ୟତାରେ ଆଜି ସେ ଆତ୍ମହରା। ଜଗତରେ ଏପରି ଜଣେ ନାହିଁ, ଯେ ତା' ଦୁଃଖ ବୁଝିବ; ଏପରି ମନୁଷ୍ୟଟିଏ ନାହିଁ, ଯେ ତାହାର ବେଦନାରେ ସହାନୁଭୂତି କରିବ। ସେ ଏକାବେଳେ ନିଃସଙ୍ଗ, ନିରାଶ୍ରୟ। ଆଃ! ଏତେ ଦୁଃଖ ତା' କପାଳରେ ଥିଲା, ଏତେ କଷ୍ଟ! ବାପମା'ର ଗେଲବସର ଝିଅ, ଆଦରର ସୀମା ନ ଥିଲା, ସୁଖର ଅନ୍ତ ନଥିଲା, ସେ ପୁଣି ଆଜି ବାର ଲୋକର ବାର ଗଞ୍ଜଣାରେ ବ୍ୟଥିତା। ଦାସୀ ପରି ଖଟିଖଟି ସୁଦ୍ଧା, ହାଡ଼ରୁ ମାଂସ ଝଡ଼ାଇ ସୁଦ୍ଧା, କାହାରି ମନ ପାଇଲା ନାହିଁ। କିଏ ପଦେ 'ଆହା' ବୋଲି ତୁଣ୍ଡ ଦି'ଖଣ୍ଡ କଲେନାହିଁ। ସମସ୍ତେ ଶତ୍ରୁ, ସମସ୍ତେ ନିଷ୍ଠୁର, ସମସ୍ତେ ପାଷାଣ। ଆଉ ସ୍ୱାମୀ, ଯାହା ଆଶାରେ, ଯାହାର ପ୍ରେମଆକାଙ୍କ୍ଷାରେ, ଯାହାରିଲାଗି ସେ ସବୁ ଦୁଃଖ ସହିଲା, ଗାଳିକୁ ଚନ୍ଦନ କଲା, ମାଡ଼କୁ ଭୂଷଣ କଲା, ପିଠିପଟାଇ ଶରା, କାକର, ବର୍ଷା ସହିଲା, ଦାସୀ ପୋଇଲି ପରି ଖଟିଲା, ସେ ଶେଷକୁ ଯା ହେଲା! ଯା ତା' କପାଳରେ ଥିଲା! ଯାହା ଗୋଡ଼ତଳେ ବସି ସେ ସ୍ୱର୍ଗସୁଖ ଅନୁଭବ କରୁଥିଲା, ଯାହାର ଆଶା ଆଶ୍ୱାସନାରେ ସେ ଜୀବନ ଧରି ରହିଛି, ସେ ପୁଣି ଯାଇ ପରକୁ ହୃଦୟ ବିକିଲା, ଆଉ ଲଳିତା ତା' କାନରେ

ଶୁଣିଲା। ତାର ଦେବତୁଲ୍ୟ ସ୍ୱାମୀ ଆଜି ଚରିତ୍ରହୀନ, ନିଶାଖୋର। ପୃଥିବୀ ଦି'ଖଣ୍ଡ ହେଲାନାହିଁ। ଲଳିତା ପଶିଯାନ୍ତା ଏ ଦୁଃଖ ଭୁଲନ୍ତା। ଯା ପୂର୍ବରୁ ଭଲା ତାର ମୃତ୍ୟୁ ହୋଇଥାନ୍ତା ! କୂଅମୂଳେ କଚାଡ଼ି ପଡ଼ି ଟିକେ କପାଳ କଣାହୋଇ ରହିଗଲା, ସମୁଦାୟ ମୁଣ୍ଡଟା ଫାଟିଗଲାନାହିଁ ? ଚିତାଗ୍ନିରେ ତ ଆଜି ତାର ସବୁ ଦୁଃଖ ଭସ୍ମ ହୋଇଯାଇଥାନ୍ତା। ଜର ହୋଇଥିଲା, ସେଥିରେ ପ୍ରାଣ ଗଲାନାହିଁ ?

ଲଳିତା କାନ୍ଦିଲା, ଆକାଶର ଗାଢ଼ ଅନ୍ଧକାର ତା ସହିତ କାନ୍ଦିଲା, ପୋଖରୀ କୂଳର ଲୁଡିଆଗି ଗଛଗୁଡ଼ିକ ତା ସହିତ କାନ୍ଦିଲେ, ଚେକା ମାଙ୍କଡ଼ା ପଥରଟି ସୁଦ୍ଧା ତା ଦୁଃଖ ବୁଝିଲା, କିନ୍ତୁ ବୁଝିଲା ନାହିଁ ମଣିଷ ! ମଣିଷ କଣ ପାଷାଣଠୁ ବଳି ପାଷାଣ, ମଣିଷ କଣ ମାଟିଠୁ ବଳି ମାଟି, ମଣିଷ କଣ ହୃଦୟହୀନତାର ଚରମ ସୀମା ?

ଲଳିତା ପୋଖରୀକୁ ଅନାଇଲା। ଅନ୍ଧାରରେ ପାଣି ଉପରଟା କଳା ଚାଦରଟି ପରି ଦିଶିଲା, ଠାଏଠାଏ ତାରା ଆଲୁଅ ଝକଝକ, ଠାଏଠାଏ ପ୍ରତିବିମ୍ବଟିଏ ଫୁଟୁଛି, ପୁଣି ନିଭୁଛି। ଲଳିତାର ହୃଦୟ କଣ ସେହିପରି ? ଲଳିତାର ମନେ ହେଲା– ବାପାମା, ସାନ ଭାଇ ଲଖିଆର କୋମଳ ମୁହଁଟି, କୃଷ୍ଣବର୍ଣ୍ଣ ଆଖି ଦୋଟି, ସାନ ଭଉଣୀ ରେବତୀର ଦୁଧଗୋଳା ଅଳତାପରି କଅଁଳ ସୁନ୍ଦର ମୁହଁଟି, ପଦ୍ମ-ପାଖୁଡ଼ା ପରି ଆଖିଟିମାନ। କି ସୁନ୍ଦର ସେଗୁଡ଼ିକ, କି ପ୍ରେମରେ ପୂର୍ଣ୍ଣ ! ବୋଉର ସେ ଚିରମଧୁର, ଚିରସୁନ୍ଦର ସ୍ନେହମୟ ଦୃଷ୍ଟି। ଲଳିତା ତୁ ମରିବୁ। ଏମାନେ ଶୁଣିଲେ କଣ କହିଲେ, ଯାଙ୍କୁ ଦେଖିବୁ ନାହିଁ ? ଯାଙ୍କ ଆଶା କଣ ଏକାବେଳେ ଛାଡ଼ିଲୁ ? କିନ୍ତୁ ପରକ୍ଷଣରେ ଅଭିମାନ ଆସିଲା। ହଁ, ତାର ନନା ଅଛନ୍ତି, ବୋଉ ଅଛନ୍ତି, ବାରବର୍ଷର ପିଲାକୁ ଶାଶୁଘରକୁ ପଠାଇ ଦିନେ ଦେଖା ନାହିଁ, ଦିନେ ଚିଠି ଖଣ୍ଡେ ନାହିଁ। ନନା କଣ ଟିକେ ଦେଖିଆସିଲେ ତାଙ୍କର କ୍ଷତି ହୁଅନ୍ତା ? ପୁଣି ମନେକଲା– ପିତାର ଅପମାନ, ଶାଶୁ ହସ୍ତରେ ନିର୍ଦ୍ଦୋଷ ପିତାର ଲାଞ୍ଛନା। କିଏ ଆପଣା ମାନ ହରାଏ, ଛାର ଝିଅଟାଲାଗି କିପାଁ ତାର ପିତା ନିନ୍ଦିତ, ଅପମାନିତ ହେବେ ? ପିତାର ଶେଷ ବିଦାୟସ୍ମୃତି ତା ମନେପଡ଼ିଲା। ''ନାଲି, ମୁଁ ଯାଉଛି ମା'', କଣ ଜୀବନରେ ସେହି ଶେଷ କଥା, ସେହି ଶେଷ ସାକ୍ଷାତ ? ହଜାର ଅପମାନ ହେଉ, ସେ ଝିଅତ, ତା କଥା ତ ଠୁଳେ[୧] ମନେ ପକାଇବା ଉଚିତ୍। ନାହିଁ, ବାପମାର ଆଶା ବୃଥା; ସେ ଆଶା-କୁହକରେ ସେ ବଞ୍ଚିପାରିବନାହିଁ। ସହିବାର ତ ଗୋଟିଏ ସୀମା ଅଛି, ସେ ଆଉ ସହିପାରିବନାହିଁ। ଶାଶୂର ସକାଳ ବ୍ୟବହାର ମନେପଡ଼ିଲା ''ତୋ ଲାଗି ମୋ ପୁଅ ଖରାପ ହେଲା, ଟଙ୍କା ବନ୍ଦକଲା, ତୁ ଅଲକ୍ଷଣୀ ଘରେ ପାଦ ଦେଲା ଦଶନୁ ହତଶିରୀ ବା'[୨] ଗୋଡ଼େଇଲା। ଆସିବାର ଦି'ମାସ ହୋଇନାହିଁ, ଶ୍ୱଶୁରକୁ ଖାଇଲୁ, ଆଲୋ ପାଦେକେ ଶିରୀ, ପାଦେକେ ହତଶିରୀ।'' ସେ ଅଲକ୍ଷଣୀ, ତା କପାଳଟା ଉଚ୍ଚ, ତା ଗୋଇଠିଟା ମୋଟା, ତା ପାଦଟା ବଙ୍କା। ସବୁ କୁଲକ୍ଷଣରେ ପୂର୍ଣ୍ଣ-ଏସବ୍ କଥା ସବିସ୍ତାରେ[୩]

(୧) ଥରେ ଥରେ, (୨) ପବନ, (୩) ବନେଇ ଚୁନେଇ, ଭଲକରି



ଆଲୋଚନା କରିକରି ସୁଦ୍ଧା ତମାଳନୀର ତୃପ୍ତି ହୋଇ ନାହିଁ। ସମସ୍ତେ କହନ୍ତି, ସେ ହିଁ ସର୍ବନାଶର ମୂଳ। ସେ ଘରେ ପାଦ ଦେଲାଦିନକୁ ସବୁ ଅନର୍ଥ¹। ମଣିଷର ପ୍ରାଣ ଆଉ କେତେ ସହିବ? କାହାପାଇଁ ସହିବ?

ଆଜି ତ ତାହାର ସବୁ ଆଶା ନିର୍ମୂଳ। ଦୁଇ ବରଷ ଛାତିରେ ପଥର ପକାଇ ଯାହାପାଇଁ ଏତେ ସହିଲା, ସେହି ସ୍ୱାମୀ ତା ତଣ୍ଟିରେ ଛୁରୀ ଦେଲା। ପୁରୁଷପୁଅ ବୋଲି କଣ ସାତଖୁଣି² ମାଫ? ଅଭିମାନରେ, କୋହରେ ମର୍ମସ୍ଥଳ ବିଦୀର୍ଣ୍ଣ ହେଲା। ସେ ଆକାଶକୁ ଅନାଇଲା। ଆକାଶର ଗାଢ଼ ଅନ୍ଧକାର ଭିତରୁ ତାରାର ମିଟିମିଟି ଚାହାଣୀ ଦେଖି ତା' ମନଟା ଉଦାସ ହୋଇଗଲା। ତାରାଗୁଡ଼ିଏ କେତେଦୂର! ସେ ରାଇଜରେ କଣ ଏହିପରି ସୁଖଦୁଃଖ ଅଛି? ଏହିପରି ହସକାନ୍ଦର ଅଭିନୟ କଣ ସେହି ରାଜ୍ୟରେ ଦେଖାଯାଏ? ନା, କେବଳ କ୍ରୂର ଅତ୍ୟାଚାରୀ, ଅନାଚାରୀ ମଣିଷରାଜ୍ୟରେ ଅଛୁ? ମଣିଷ କାହିଁକି ଏ ପାପ ପୃଥିବୀରେ ଜନ୍ମ ହୁଏ, କାହିଁକି ମିଛେମିଛେ ଏତେ ଦୁଃଖ ଯନ୍ତ୍ରଣା ସହେ? ଲଳିତା କେତେ ଭାବିଲା, କିନ୍ତୁ ଭାବି ଭାବି ଅନ୍ତପାଇଲା ନାହିଁ। ଆଜି ମଣିଷ ଉପରେ, ଅବିଶ୍ୱାସୀ ଛନ୍ଦ କୁଟିଳ ମଣିଷ ଉପରେ ରାଗକରି ସେ ମରିବାକୁ ବସିଛି। ତା' ହୃଦୟରେ ଚିତାର ଅନଳ। ସେ ଦହନ ସେ ସହିପାରିବନାହିଁ।

ସେ ବଞ୍ଚିବନାହିଁ, ମରିବ, ନିଶ୍ଚେ ମରିବ। କିନ୍ତୁ କିମିତି ମରିବ? ନିଜେ ପ୍ରଶ୍ନକଲା, ନିଜେ ଉତ୍ତର ଆସିଲା। ସମ୍ମୁଖରେ ବିସ୍ତୃତ ଜଳାଧାର, କତି³ରେ କୂଅ, ମରିବାର ଭାବନା କ'ଣ? ଆହା ଜୀବନ ଯେ ବଡ଼ପ୍ରିୟ, ବଡ଼ ମଧୁର। ଲଳିତା ଇତସ୍ତତଃ ହେଲା। ତାର ନବୀନ ବୟସ, କୋମଳ ମନ! କିନ୍ତୁ ପରକ୍ଷଣରେ ମନେପଡ଼ିଲା-ଶାଶୂ, ନଣନ୍ଦ, ସ୍ୱାମୀ। ଶାଶୂ ଅତ୍ୟାଚାରୀ, ନଣନ୍ଦ ନିଷ୍ଠୁର-ଆଉ ସ୍ୱାମୀ। ଲଳିତାର ହୃଦୟ ସ୍ତବ୍ଧ ହେଲା, ହାତଗୋଡ଼ କାଠପରି ଲାଗିଲା। ସେ ଭାବିପାରିଲା ନାହିଁ, ଯେ ତାର ସ୍ୱାମୀ, ତାର ହୃଦୟର ଦେବତା, ତାର ସମଗ୍ର ଆଶାଆକାଙ୍କ୍ଷାର ଚରମ, ତାହାର ପ୍ରେମର ପ୍ରଭୁ, ସେ ଆଜି ବିଶ୍ୱାସଘାତକ- ସେ ଅନ୍ୟାସକ୍ତ, ସେ ସୁରାପାୟୀ! ଲଳିତାର ମୁଣ୍ଡ ବୁଲେଇଲା। ଆକାଶ ଅନ୍ଧାର ଦିଶିଲା, ପୃଥିବୀ ଅନ୍ଧାର ଦିଶିଲା, ନିଜର ସମଗ୍ର ଜୀବନ ଅନ୍ଧାର ଦିଶିଲା। ଆଉ ଠାବ ନାହିଁ, ଆଉ ଆଶା ନାହିଁ। ଆଉ ସୁଖଶାନ୍ତି ନାହିଁ। ବିଶାଳ ଶୂନ୍ୟ ଅନ୍ଧକାରରେ ଲଳିତାର ସମୁଦାୟ ସତ୍ତା ବିଲୀନହେଲା। ସେ ନିଃଶବ୍ଦରେ ଚେକା ପଥର ତଳକୁ ଓହ୍ଲାଇଗଲା। ଏ ଜୀବନର ବ୍ୟର୍ଥତା କିଏ ଦେଖିବ? ଏ ଜୀବନଯଜ୍ଞ କାହା ଉଦ୍ଦେଶ୍ୟରେ? ଆଜି ତାହାର ସବୁ ଶେଷ! କେହି ଜାଣିବେନାହିଁ, କେହି ଦେଖିବେନାହିଁ, କେହି ବୁଝିବେ ନାହିଁ।

କିନ୍ତୁ ହଠାତ୍ ଏ କ'ଣ? କିଏ ପଛା'ରୁ ତାହାର ଲୁଗା ଧରି ପକାଇଲା? ଲଳିତାର ଭାରି ଭୟହେଲା; ସେ ଭୂତ ଭାବି ମୁହୂର୍ତ୍ତକରେ ଶିହରିଉଠିଲା। ଗୋଟିଏ ଅସ୍ଫୁଟ ଚିତ୍କାର ତାହାର ମୁଖରୁ ବାହାରିଗଲା। ତାହାର ସର୍ବାଙ୍ଗ କମ୍ପିଉଠିଲା। କୋମଳ ସ୍ୱରରେ ଈଷତ୍

(୧) କ୍ଷୟକ୍ଷତି, ନଷ୍ଟ; (୨) ଭୁଲ କଲେ ମଧଦଣ୍ଡ ନ ପାଇବା; (୩) ପାଖ।

ଭୀତିଉତ୍ତେଜନାପୂର୍ଣ୍ଣ ଭାବରେ ବୃନ୍ଦାବନ ଡାକିଲା, ''ନୂଆବୋଉ, ନୂଆବୋଉ!'' ବାଳକର ସ୍ୱର କମ୍ପିତ। ଲଳିତା ଉତ୍ତର ଦେଇପାରିଲା ନାହିଁ। ହୃଦୟୋତ୍ଥିତ ଦୀର୍ଘଶ୍ୱାସ ହୃଦୟକୁ ଫେରାଇ ଦେଇ ଲୁଗା ଛଡ଼ାଇବାର ବ୍ୟର୍ଥ ଚେଷ୍ଟାରେ ଅଜ୍ଞାତ ସାରରେ ଉପରକୁ ଉଠିଆସିଲା। ବୃନ୍ଦାବନ ପୁଣି ଡାକିଲା, ''ନୂଆବୋଉ! ଘରକୁ ଯିବ ଚାଲ; ବୋଉ, ନାନୀ ହରିକା ଜାଣିଲେ କେତେ ନିନ୍ଦାହବ; କୁହତ?'' ଲଳିତା ଉତ୍ତର ଦେଲାନାହିଁ। ତାହାର ସଙ୍କଳ୍ପ ଶିଥିଳ ହୋଇ ଆସିଲା; ଛାତି ଭିତର ବଡ଼ ଜୋରେଜୋରେ ଥରିଲା, ବୃନ୍ଦାବନ ଗୋଡ଼ତଳେ ପଡ଼ିଗଲା। ଗୋଡ଼ ଧରି ପିଲାଟିପରି କାନ୍ଦିପକାଇଲା। ଲଳିତାର ଆଖିରୁ ମଧ ଲୁହ ବହିଲା। ସେ ଧାରାର ବିରାମ ନାହିଁ। ମହାନଦୀ କାଠଯୋଡ଼ୀ କହୁଛି ପରା! ତାହାର ନୀରସ ମରୁ ହୃଦୟରେ ଏ ଟୋପାକ ଅମୃତ ପାଣି ବରଷା! ଲଳିତାର ମରିବା କଥା କୁଆଡ଼େ ଗଲା! ପୋଖରୀ କୂଳରେ ଆସି ବସିପଡ଼ିଲା। ଆଖି ରଗଡ଼ି ରଗଡ଼ି ତେବେ ସୁଦ୍ଧା ଆଖିଝରା ବନ୍ଦ ହେଲା ନାହିଁ। ବୃନ୍ଦାବନ ଧୀର ସ୍ୱରରେ କହିଲା, ''ନୂଆବୋଉ! ଭଗବାନଙ୍କୁ ଡାକ। ଛି! ଆତ୍ମହତ୍ୟା କରନା, କୂଳରେ କଳଙ୍କ ଦିଅନା।'' ତେରବର୍ଷ ବାଳକ ମୁଖରେ ଏ କଥା! ପୁଣି ବୃନ୍ଦାବନ କହିଲା, ''ବୋଉ! ଭାଇଙ୍କ ସୁମତି[୧] ପାଇଁ ହରିଙ୍କି ଡାକ। ଚାଲ, ଘରକୁ ଚାଲ।''

ଲଳିତା ଉଠିଲା, ମନ୍ତ୍ରଚାଳିତବତ୍ ଶେଯରେ ଆସି ଶୋଇଲା। ତାହାର ଗଭୀର ନୈରାଶ୍ୟ-ଅନ୍ଧକାରରେ ଏ ତାରାଟି କାହୁଁ ଫୁଟିଲା? ସେ ଅନେକ କଥା ଭାବୁଭାବୁ ଶୋଇପଡ଼ିଲା।

ବୃନ୍ଦାବନ ରଘୁନାଥପୁର ଯାଇଛି। ନାନୀ ଆଉ ବୋଉ ଗାଳି ଦେଉଛନ୍ତି। ଲଳିତାର ଏକମାତ୍ର ଦୁଃଖରେ ଦୁଃଖୀପ୍ରତି କଟୂକ୍ତି ତାହାର ସହ୍ୟ ହେଲାନାହିଁ। ''ଦୁଷ୍ଟ ପିଲା'' କହି ଗାଳି ଦେବାକୁ ତାହାର ଇଚ୍ଛାହେଲା। ସେ ରନ୍ଧାଘରେ ବସି ତିଅଣ ଯୋଗାଡୁଛି, କୌତୂହଳ ବଶତଃ ବାହାରକୁ ଅନାଇ ଦେଖିଲା, ବିନ୍ଦିଆ ବୋଉ, ତାରା ଅପା ଆଉ ତମା ନାନୀ ଗଳ୍ପରେ ନିଯୁକ୍ତ। ସେମାନଙ୍କର କ୍ରୂର କଟାକ୍ଷ ଓ ଈଷତ୍ କଥା ଶବ୍ଦ ତା' କାନରେ ବାଜି ଗଲାରୁ ହଠାତ୍ ତା ଛାତିରୁ ନିଆଁ ଖସିପଡ଼ିଲା। ସେଦିନ ତିଅଣ[୨] ନୁଣିଆ[୩] ହୋଇଛି ବୋଲି ସେ ଶାଶୁଙ୍କଠୁ ଗାଳି ସଙ୍ଗେସଙ୍ଗେ ନିଜର ଚରିତ୍ରହୀନତା କଥା ଶୁଣି ତାର ଜ୍ଞାନ ହଜିଗଲା। ସେ ରାତି ପୋଖରୀରେ ବୁଡ଼ି ମରିବା କଥା ଯେ ତିଳରୁ ତାଳ ହୋଇଛି। ଧିକ୍ ଲଳିତା! ତୁ ପୁଣି ଜନସମାଜରେ ମୁହଁ ଦେଖାଉ! ସେ ଦିନ ସେ ଅଧା ଉପାସ। ସନ୍ଧ୍ୟାବେଳେ ଶାଶୂଙ୍କ ସମବୟସ୍କ ବୁଢ଼ୀ, ଅଧୁଆରୀ ଗଣ୍ଡିଏ ପଞ୍ଚଟି ଆସି ପିଣ୍ଡାରେ ବସିଲେ; ବୁଢ଼ୀ ବୋଉ, ଓରଫେ ବିମ୍ବାଧରଙ୍କ ଜନନୀ ସହିତ ଦୁଃଖସୁଖ ପଞ୍ଚକଥା ପଡ଼ିଲା। ଲଳିତା କବାଟ କଣରେ କାନ ପାରି ଶୁଣିଲା, ତାରି ଚର୍ଚ୍ଚା ଷୋଳପଣ- ତାର ଚରିତ୍ର-ଦୋଷ-ଠଉଁ ଆରମ୍ଭ କରି ଛାଡ଼ପତ୍ରାଦି ବ୍ୟବସ୍ଥା ପର୍ଯ୍ୟନ୍ତ ହୋଇଗଲା। ହା ପୃଥିବୀ, ତୁ ଏହା ସହିଲୁ? ହା ମହାପୁରୁ, ତୁ ଏହା ଦେଖିଲୁ। ଆଖିଲୁହ ଆଖିରେ ମାରି ଭିତର ପିଣ୍ଡାରେ ବସି ଲଳିତା ଅନେକ କଥା ଚିନ୍ତାକଲା। ଏମିତି

(୧) ଭଲ ମନ, (୨) ତରକାରି, (୩) ଅଧିକ ଲୁଣମିଶା ଖାଦ୍ୟ

କଟକଟିଆ ଜୀବନ ନ ହୋଇଥିଲେ, ଆଜିଯାକେ ଧଡ଼଼ଂରେ ଥାଆନ୍ତା ? ସେ ମଣିଷ ନୁହେଁ, ସେ ପାଷାଣପିତୁଳା। କିନ୍ତୁ ବୃନ୍ଦାବନର କଥା ମନେପଡ଼ିଲା। ଆଶାର କ୍ଷୀଣ ରଶ୍ମି ଦିଶିଲା। ସତେ ନନା ଆସିବେ ?

ଏଣେ ବୃନ୍ଦାବନ ଦିନ ଦୁଇଟାବେଳେ ଆସି ବାହାର ଜିଞ୍ଜିରଟା ଟାଣିଦେବାରୁ ଖଡ଼ ଖଡ଼ ଶବ୍ଦ ହେଲା। ଆନନ୍ଦବାବୁଙ୍କର ଠିକ ସେହି ସମୟକୁ ଟିକେ ତନ୍ଦ୍ରା ଲାଗିଆସୁଥିଲା। ସ୍ତ୍ରୀ ଲାବଣ୍ୟବତୀ ଗୋଡ଼ କତିରେ ବସି ଗୋଡ଼ ଚିପୁଚିପୁ ଝିଅଟି କଥା ମନେପକାଇ କାନିରେ ଆଖି ପୋଛୁଥିଲେ।

ତିନିବର୍ଷ ହେଲାଣି ଝୁଅଟି ଗଲାଣି ଯେ, ତାଙ୍କର କାନ୍ଦିକାନ୍ଦି, ଚିନ୍ତା କରିକରି ହାଡ଼ରୁ ମାଉଁସ ମିଳାଇଲାଣି। ''କେଡ଼େ ସୁକୁମାରୀଟି, ମୋଟେ ବାର ବରଷର, ରାନ୍ଧି ଜାଣେନାହିଁ, ପାଣି କାଢ଼ି ଜାଣେ ନାହିଁ, ଶାଶୁଘର ମଫସଲ ଗାଁରେ କଣ କରୁଥିବ ? ଶାଶୁ ନଣନ୍ଦଙ୍କ କଥାତ ସବୁ ଜଣା। ଶାଶୁ ନାଗୁଣୀ, କି ନଣନ୍ଦ ବାଘୁଣୀ ! ଏଣେ ବୋଝ ଉପରେ ଲଳିତାବିଡ଼ା ଯା'ଟି ଶାର୍ଙ୍ଗୁଣୀ, ଯାଙ୍କ ହାବୁଡ଼ରେ ପଡ଼ି ମୋ' ନହୁଣୀ-ପିତୁଳାଟି କଣ କରୁଥିବ ? ଏମିତି ଘରେ ଝୁଅ ବାହା ଦିଅନ୍ତି। ଆହା କପାଳ ଲେଖନ, କେ କରିବ ଆନ ? ଭଲ ଘରବର ବାଛି ବିଭା ଦେଇ ଯଦି କରମ ଦୋଷକୁ ଇମିତି ହବ, ତେବେ ବଳ କାହାର ? କରମ[୨] ଗୁଣେ ସିନା କରମଙ୍ଗା ଫଳେ।'' ରେବି ଆସି ଡାକିଲା, ''ବୋଉ ଲୋ, ଦାଣ୍ଡ ଦୁଆରେ ବାମନ ଭିଣୋଇ ଡାକୁଛନ୍ତି।'' ଛାତିଟା ଦାଉ କିନି ହୋଇଗଲା। ଧଡ଼ପଡ଼ ଲୁଗାଟା ଟାଣିଟୁଣି ଦେହରେ ଦେଇ ବାହାରକୁ ବାହାରିପଡ଼ିଲେ। ଆଦର ଅଭ୍ୟର୍ଥନାରେ ବୃନ୍ଦାବନ ପୋତି ହୋଇପଡ଼ିଲା।

ଝିଅଟିର କଥା ଶୁଣି ପିତାମାତାଙ୍କ ହଂସା ଉଡ଼ିଲା[୩]। ମା ଗୋଡ଼ ଲମ୍ବାଇ କାନ୍ଦି ବସିଲା। ରେବି ଆଖିରେ ପଣନ୍ତକାନି ଦେଲା। ଆନନ୍ଦ ବାବୁ ଅସ୍ଥିର। ବାଲ୍ୟସଖା ଗଙ୍ଗାଧରଙ୍କ ପୁତ୍ରକୁ କନ୍ୟାଦାନ କରି ସେ ଭାବିଥିଲେ, ଝିଅଟି ସପ୍ତମ ସ୍ୱର୍ଗରେ ବସିଲା। କିନ୍ତୁ ଗଙ୍ଗାଧର ଗଲେ, ତାଙ୍କ ପଛେ ପଛେ ନଲୀର ସବୁ ଗଲା। ଗଙ୍ଗାଧର ଥିଲେ, କି ଲଳିତା, ବିଦ୍ୟାଧର ଏପରି ହୋଇଥାନ୍ତେ ?

କିନ୍ତୁ ମା ମନ ତହିଁରେ ମାନିଲା ନାହିଁ। ବିଦ୍ୟାଧରଙ୍କ ମାତା ମୁଖରା[୪], ଏହା ଆଗରୁ ଅଟ୍ଟେଅଟ୍ଟେ ଜାଣି ଶୁଣି ଝିଅକୁ ସେଠାରେ ଦେଇଥିବାରୁ ଆଜି ସ୍ୱାମୀ-ସ୍ତ୍ରୀଙ୍କର ଭୀଷଣ କଳହ ହେଲା। ସ୍ତ୍ରୀଙ୍କ ବାକ୍ୟ-ବାଣରେ ଆନନ୍ଦବାବୁ ଅତିଶୟ ମର୍ମପୀଡ଼ିତହୋଇ କହିଲେ, ''କଣ ସୁନାଗଢ଼ା ବର ଆଣି ଝିଅକୁ ବାହା ଦେଇଥାନ୍ତି ? ଭଲ ଘରବର ତ ବାଛି ଦେଇଥିଲି, ଗଙ୍ଗାଧର ବଞ୍ଚିଥିଲେ ତ ଦ୍ୱାଇଁଟି ବି.ଏ. ପଢ଼ି ଡେପୁଟି ହୋଇଥାନ୍ତା। ଦୈବ ଉପରେ ବଳ କାହାର ?'' କିନ୍ତୁ ଲାବଣ୍ୟବତୀ ଅବୁଝା, ବିଦ୍ୟାଧରଙ୍କ ମାଙ୍କୁ ମନଇଚ୍ଛା ଗାଳି ଦେଇଦେଇ ବାହୁନିବାହୁନି କାନ୍ଦିବାକୁ ଲାଗିଲେ। ସେ ରାତ୍ରିରେ ଘରବଂଶ ଥକିଗଲେ[୫]– କେହି ତାଙ୍କ ତୁଣ୍ଡରେ ଟୋପାଏ ପାଣି ପିଆଇ ପାରିଲା ନାହିଁ।

---

(୧) ଆକଟ, ନିଶ୍ଚିତ୍; (୨) କର୍ମ, ଭାଗ୍ୟ; (୩) ସଂଖ୍ୟାହୀନ ଅବସ୍ଥା, (୪) ମୁହଁଶରା, କଳିହୁଡ଼ୀ; (୫) କ୍ଲାନ୍ତ ହୋଇପଡ଼ିବା, ଚେଷ୍ଟା ସତ୍ତ୍ୱେ କାର୍ଯ୍ୟସାଧନରେ ଅସମର୍ଥ।

ଅଗତ୍ୟା ବାଧହୋଇ ଆନନ୍ଦବାବୁ ଝିଅକୁ ଆଣିବାକୁ ଯାତ୍ରାକଲେ। ପୂର୍ବକୃତ ଅପମାନ କଥା ଅକ୍ଷେଅକ୍ଷେ ମନେପଡ଼ି ମନଟା କ୍ରୋଧରେ ପୂର୍ଣ୍ଣହେଲା; କିନ୍ତୁ "ଝିଅ ଦେଇଥିବ ଯାହାକୁ, ନଇଁ ପଡ଼ିଥିବ ତାହାକୁ।" ଆନନ୍ଦ ବାବୁ ଝିଅର ବାପ, ପିଠିରେ ପଥର ପଡ଼ିଲେ ସହି। ମିଠେଇ, ଚୂଡ଼ାଭୁଜା, ଉଖୁଡ଼ା, ଫଳଫୁଲରୀକରି ନାନାବିଧ ଦ୍ରବ୍ୟରେ ବଡ଼ କଣ୍ଢିରାଟି[୧] ବାନ୍ଧିଆଣି ଗାଡ଼ିରେ ଥୋଇଲେ। ହଠାତ୍ ବାଁ ଆଖିଟା ଡେଇଁଲା। ଆନନ୍ଦବାବୁ ଇଷ୍ଟ ଦେବତାକୁ ସ୍ମରଣକରି ବାହାରିପଡ଼ିଲେ।

ନନା ଆସିଛନ୍ତି ଶୁଣି, ପ୍ରଥମେ ଲଳିତା ନିଜ କାନକୁ ବିଶ୍ୱାସ କରିପାରିଲା ନାହିଁ। କିନ୍ତୁ ପରକ୍ଷଣରେ ଗଳବସ୍ତ୍ର[୨] ହୋଇ ଆସି ପ୍ରମାଣକଲା। ପିତା କନ୍ୟାର ଶୁଷ୍କ କାନ୍ତି, ଶୀର୍ଣ୍ଣ ମୁଖ ଦେଖି ସମ୍ଭାଳିପାରିଲେ ନାହିଁ। ଲଳିତା ଏଡ଼େ ଧଡ଼ିଆ, ଏଡ଼େ କଳା ହୋଇଯାଇଛି ଦେଖି ପ୍ରଥମେ ନିଜ ଆଖିକୁ ବିଶ୍ୱାସହେଲା ନାହିଁ। ସେ ହଠାତ୍ କାନ୍ଦି ପକାଇଲେ। ଲଳିତାର ଆଖିରୁ ଲୁହ ବାହାରିଲା। ଆଜି ଦୁଇବର୍ଷ ପରେ ପିତାକନ୍ୟାର ମିଳନ। ଏଥି ଭିତରେ କେତେ ଅତ୍ୟାଚାର, କେତେ ଦୁଃଖ ଲଳିତା ପିଠି ଉପରେ ଦେଇ ଯାଇଛି, ସେ ବେଦନାର ଅନୁଭୂତି ମାତ୍ରେ ବାପ ମନଟି ଘାଣ୍ଟି ଚକଟି ହୋଇଗଲା[୩]। ତାଙ୍କର ଅଣାୟତ୍ତରେ ସେ କାନ୍ଦିପକାଇଲେ, କିନ୍ତୁ ପରକ୍ଷଣରେ ଆଖିପୋଛି କନ୍ୟାକୁ ଆଶୀର୍ବାଦ କଲେ। ଶାଶୁ ନିକଟରେ ଠିଆ ହୋଇଥିଲେ। ଏ ଦୃଶ୍ୟ ତାଙ୍କର ସହ୍ୟ ହେଲାନାହିଁ। ସେ ମୁରୁକି ହସି ଟିକେ କର୍କଶ କଣ୍ଠରେ କହିଲେ, "ଝିଅକୁ ତ ଦେଖିବ, କାନ୍ଦିବ କିଆଁ? କଣ କାନ୍ଦପୁଟୁଳିଟା ଝିଅଘରକୁ ବାନ୍ଧି ଆଣିଥିଲ କି?" ଆନନ୍ଦ ବାବୁ ବୁଝିଲେ, ଏ ସମୁଦୁଣୀ-ଥଟ୍ଟା ନୁହେଁ। ତାଙ୍କ ଛାତି କରତି ହୋଇଗଲେ ସୁଦ୍ଧା ଝିଅମୁହଁକୁ ଅନାଇ କିଛି କହିଲେନାହିଁ।

ଲଳିତା କୁଅମୂଳେ ପାଣି କାଢୁଥିଲା, ନଣନ୍ଦ ପରିହାସକରି କହିଲେ, "ସୁଆଗ ଶୁଣ, କଡ଼ାଏ କଉଡ଼ିକି ଛଟାଙ୍କିଏ ଲୁଣ! ଇମିତି ବାପଝିଅ ଦେଖାଦରଶନ ନାହିଁ। କୋଉ ଗାଁରେ ଶାଶୁଘରେ ଝିଅକୁ ଦେଖିଆସି ବାପ କାନ୍ଦେ? ଭାରି ଗେଲବସରା, ରଙ୍କପସରୀଟା ପରା!" ଲଳିତା ଦେହରେ ଛୁରୀ ଚାଲିଗଲା; କିନ୍ତୁ ମୁହଁବୁଜି ପାଣି ମାଠିଆଟା ଘିନି ରନ୍ଧାଘରକୁ ଗଲା। କବାଟ କୋଣରେ ଆଖି ପୋଛୁଥିଲା। ବଡ଼ ଯା' କହିଲେ, "ଇମିତି' ନୋକଙ୍କର ପେଟ ଯୋଡ଼େ, ବାପ ମିଠେଇ ଆଣିଛି ବୋଲି ଝୁଅ କବାଟ କୋଣରେ ଖାଉଛି। କିଏ କାହାକୁ ମାଗିଯାଉଛି କି? ମୋ' ପିଲାଗୁଡ଼ା ଇମିତି ରଙ୍କ ନୁହନ୍ତି।" ଲଳିତା ପ୍ରତ୍ୟୁତ୍ତର କଲାମାତ୍ରେ ମିନିଥିଲା ଥିଲା କାନ୍ଦିଲା, "ହଁ ମାଇଁ, ତୁମେ ସେ ଦିନ ସନ୍ଧିଆରୁ[୪] ଚୁଡ଼ାଭୁଜା ଖାଉଥିଲ ନୁଚେଇ ନୁଚେଇ, ମୁଁ ଦେଖିଛି।" କଥା ପ୍ରମାଣିତ ହେଲା, ଲଳିତା ଚୋରଣୀ, ଓଲେଣି[୫]।

ବୋହୂର ଅପାର ଦୋଷରାଶି ଗୋଟିଗୋଟି କହିସାରି ଶାଶୂ ବଡ଼ ନିଃଶ୍ୱାସଟି ପକାଇ ସମୁଦିଙ୍କୁ କହିଲେ, "କହ ଦେଖିନି; ଇମିତି ବୋହୂ ଘିନି କିମିତି କିଏ ଚଳିବ? ପୁଅ ସୁନ୍ଦର ବୋଲିତ ଗୁହ[୬] ସୁନ୍ଦର ନୁହଁ। ରୂପଟା ଥିଲେ କଣ ହେଲା, ଦୁର୍ଗୁଣର ତ ସୀମା ନାହିଁ। ମା,

---

(୧) ବଡ଼ ପୁଟୁଳି, (୨) ବେକରେ କାନି ଗୁଡ଼ାଇ, (୩) ବିକଳଭାବ, (୪) ଜିନିଷପତ୍ର ରଖିବାପାଇଁ ଘର କାନ୍ଥ ଭିତରେ ତିଆରି ବଡ଼ ଠଣା, (୫) ବିଶୃଙ୍ଖଳିତ, କଥା ମାନୁନଥିବା, ବୋକୀ (୬) ମଳ

ରୂପ ଘିନି[୧] କଣ ଧୋଇ ପିଇବ ନା, ବାଳ ଘିନି ପାରି ଶୋଇବ ? ଗୁଣ ନ ଥିଲାକୁ ତ ସବୁ ବୃଥା। ମୋ' ଝିଅ ହୋଇଥିଲେ ତ ଦି'ଖଣ୍ଡ କରି ନୁଣମରିଚ ଗୁଣ୍ଡ[୨] ବୋଳିଥାନ୍ତି। ପର ଝିଅ, ମୋର କି କ୍ଷମତା ? ପଦେ କହିଦେଲେ ତ ଚୁଟିମୁଣ୍ଡ ଗୁହେନା[୩], ଆଉ ପୁଣି ଶାସନ କରିବି ?

ପିତା ଅନୁନୟ କରି ଝିଅକୁ ଘିନିଯିବାକୁ କହିଲେ, କିନ୍ତୁ ସେଥିରେ ଶାଶୁ ଅଟକ। ତା' ସ୍ୱାମୀ ନାହିଁ, ମୁଁ କିମିତି ତା' ଭାର୍ଯ୍ୟାକୁ ପଠେଇ ଦେବି ?'' ଆନନ୍ଦ ବାବୁ ଅବାକ୍ ହେଲେ। ତାଙ୍କୁ ଚିଠିଦେଲେ। ଦୁଇଦିନ ଅପେକ୍ଷାକଲେ; ଉତ୍ତର ଆସିଲା, ମା ଠାକୁରାଣୀଙ୍କ ଇଚ୍ଛାରେ ପୁଅର ଇଚ୍ଛା। ଏଥର ବୋହୂକୁ ପଠାଇବାକୁ ଶାଶୂ ନିଷ୍ଠା[୪] ନାହିଁ କଲେ। ''କଣ ଦି'ବରଷ ହେଲା ଶୁଆସାରୀପରି ପଢ଼େଇଲି; ଫେଣେ[୫] ତମ ଘରକୁ ପଠେଇ ମୋ' ତୁଳସୀଗଛକୁ ବିଛୁଆତି କରିବି ? ମନେମନେ ସ୍ତ୍ରୀ ଉପରେ କ୍ରୋଧ ଢ଼ାଳିଦେଇ କ୍ଷୁଣ୍ଣ ମନରେ ପିତା ବିଦାୟ ହେଲେ। ଗଲାବେଳେ ଝିଅକୁ ସାନ୍ତ୍ୱନା ପଦେ ଦେବାକୁ ତାଙ୍କୁ କଥା ଯୋଡ଼ିଲା ନାହିଁ। କେବଳ ଭାବିଲେ, ''ଝିଅ ଜନ୍ମକରି ଇମିତି ହଟହଟା ହେବ ! ହାରେ ନଳି ! ତୁ ପିଲାଦିନେ ମରିଯାଇଥିଲେ ମୁଁ ତ୍ରାହି ପାଇଥାନ୍ତି, ଇମିତି ଛୋଟ ଲୋକଠୁଁ ଆନନ୍ଦ ମିଶ୍ର କଥା ଶୁଣିଥାନ୍ତା।''

ସ୍ୱାମୀ ସହିତ ଝିଅକୁ ଦେଖିବାକୁ ନ ପାଇ ଲାବଣ୍ୟବତୀ ମୁଣ୍ଡ ବାଡ଼େଇହେଲେ। କିନ୍ତୁ ଆନନ୍ଦ ବାବୁ କିଛି ସହାନୁଭୂତି କରିପାରିଲେ ନାହିଁ। ଅପମାନର ବେଦନାରେ ତାଙ୍କ ବୁକୁ ଫାଟି ଯାଉଥିଲା। ଏପରି ଝିଅ ଜନ୍ମକରିଥିବାରୁ ସ୍ତ୍ରୀକୁ ବହେ ଗାଳିଦେଇ ମନ ଶାନ୍ତ କଲେ। ବିଷ ଜ୍ୱାଳାରେ ଜରଜର ଲାବଣ୍ୟବତୀଙ୍କ ପାଟିଫିଟିଲା, ବଡ଼ କ୍ରୋଧରେ ହତାଶ ବେଦନାରେ ଚିତ୍କାର କରି କହିଲେ, ''ଧିକ୍ ଲୋ ବ୍ରାହ୍ମଣ କୂଳ, ହାଡିକୁଳେ ତିରୀ[୬] ଜନମ ନବ, ଏ ଉଚ୍ଚ କୁଳରେ ଜନମ ହେବନାଇଁ। କି ମହାପାପ ଫଳରୁ ଇମିତି ହୀନକପାଳୀ ହେଲି ? ବାର ବରଷର ଝିଅକୁ ଯମକୁ ଦେଲି ! ଆଲୋ ମୋ ଝିଅର ମୁଣ୍ଡ ଫାଟୁଛି, ରକ୍ତରେ ଲୁଗା ଭାସୁଛି, ସାତତାଳ ଦିହରେ ଜର- ସେଥିରେ ପୁଣି ମୋ ଝୁଅ ବଅଁଶ କୁଟୁମ୍ବକୁ ରାନ୍ଧିବାଢ଼ି ପରଶିବ ! ଏମିତି ଶାଶୁଘର ଲୋଡ଼ାନାହିଁ। ଛାଡ଼ିଦିଅନ୍ତୁ ମୋ ଝୁଅକୁ, ମୁଁ ଢ଼େଙ୍କି କୁଟି ଭିକ ମାଗି ତାକୁ ପୋଷିବି। ଗଛକୁ କଣ ଫଳ ପିରା ?'' ଚିନ୍ତାରେ ଚିନ୍ତାରେ ତାଙ୍କୁ ଜର ହୋଇଗଲା। ଅନେକ ସାନ୍ତ୍ୱନାଦେଇ ଆନନ୍ଦ ବାବୁ ପୁଣି ଜ୍ୱାଇଁଙ୍କ ଚିଠି ଲେଖିବସିଲେ।

ଶ୍ୱଶୁରଙ୍କର କଡ଼ା ଚିଠିର ଉତ୍ତର ସ୍ୱରୂପ ଜ୍ୱାଇଁ ଲେଖିଲେ, ତାଙ୍କ ମାତା ତାଙ୍କର ଇଷ୍ଟଦେବତା, ତାଙ୍କ ସ୍ତ୍ରୀ ତାଙ୍କ ମାତାଙ୍କର କାୟମନୋବାକ୍ୟରେ ଅଧୀନ ହେବା ସର୍ବତୋଭାବେ ଶୋଭନୀୟ। ସେଥିରେ ମାହାଳିଆ ବାହାରୁ ଲୋକଙ୍କ ମୁଣ୍ଡବଥା ସେ ଚାହାନ୍ତିନାହିଁ। ଶ୍ୱଶୁର ନୀରବ ହେଲେ, ଶାଶୁ ମଧ ସମୁଦୁଣୀଙ୍କୁ ଓ ନିଜ ଅଦୃଷ୍ଟକୁ ଗାଳିଦେବା ଛଡ଼ା ଆଉ କିଛି ସଦୁପାୟ ଖୋଜି ପାଇଲେ ନାହିଁ।

(୧) ଘେନି, ନେଇ; (୨) ଚୂନା; (୩) ସାମାନ୍ୟ କଥାରେ ଜବାବ ଦେବା, ବେଇଜ୍ଜତ କରିବା; (୪) ଦୃଢ଼ତାର ସହିତ, ରୋକ୍‌ଠୋକ୍; (୫) ପୁଣି, ଆହୁରି; (୬) ସ୍ତିରୀ, ନାରୀ।

ରାତି ଦୁଇଟା, ଭିତରେ ଦୀପ ଜଳୁଛି । ଲଳିତା ସ୍ୱାମୀକଥା, ପିତାମାତା କଥା ଆଉ ନିଜ ଅଦୃଷ୍ଟ କଥା ଭାବିଭାବି ଦୀର୍ଘନିଃଶ୍ୱାସ ତ୍ୟାଗକରୁଛି । କତି[୧]ରେ ବଡ଼ ଯା' କୁମ୍ଭକର୍ଣ୍ଣ ପରି ନିଦ୍ରାରେ ମଗ୍ନ । ଧୀରସ୍ୱରରେ ବାହାରୁ ବୃନ୍ଦାବନ ଡାକିଲା, ନୂଆବୋଉ । ଲଳିତା କବାଟ କତିକି ଆସି ପଚାରିଲା, ''କିଏ'' ? ବୃନ୍ଦାବନ ଧୀରେଧୀରେ କଣ କହିଲା । ଲଳିତା ପ୍ରଥମେ ଅସମ୍ମତ ହେଲା । ତେର ବର୍ଷର ବାଳକ କଥାରେ ତାହାର ବିଶ୍ୱାସ ହେଲାନାହିଁ । ଏତେ଼ଟିକେ ପିଲାଟି ଉପରେ ନିର୍ଭର କରିବାକୁ ତାହାର ସାହସ ହେଲାନାହିଁ । କିନ୍ତୁ ଅକୂଳ ସମୁଦ୍ରରେ ଭାସିଲା ଲୋକ କୁଟା ଖଣ୍ଡକ ଆଶ୍ରାକଲାପରି ଅଲଗୁଣୀରୁ[୨] ଓଢ଼ଣା ଚାଦରଟା ଟାଣିଆଣି ଦେହରେ ଦେଇ ବାହାରକୁ ଆସିଲା । ମନରେ ବଡ଼ ଭୟ, କିଏ ଜାଣିବ ପରା, କିଏ ଦେଖିବ ପରା । କିନ୍ତୁ ବୃନ୍ଦାବନ ସାହସଦେଲା । ତାହାରି ଭରସାରେ ଗୋଟିଏ ଲୁଗାରେ କଡ଼ା-କଉଡ଼ି ଶୂନ୍ୟ ଲଳିତା ବାହାରକୁ ଆସିଲା । ଦୁଃଖ ତାହାର ପ୍ରାଣାନ୍ତକ; ନିନ୍ଦା ଅପମାନ କଥା ସେ ଚିନ୍ତା କରିପାରିଲା ନାହିଁ ।

ଲାବଣ୍ୟବତୀ ଦୁହିତା ଓ ବୃନ୍ଦାବନକୁ ଦେଖି ଅବାକ୍ ହୋଇଗଲେ । ବୃନ୍ଦାବନକୁ କୋଟି ଆଶୀର୍ବାଦ କରୁକରୁ ହଜିଲା ରତନଟି ସାଉଁଟି କାନିରେ ବାନ୍ଧିଲାପରି ଲାବଣ୍ୟବତୀ ଝିଅକୁ ଘର ଭିତରକୁ ଘିନି[୩] ଯିବାକୁ ବାହାରିଲେ । କିନ୍ତୁ ଲଳିତା ଗଲାନାହିଁ । ଝିଅ ଅଧିକାର କଣ ତାର ଅଛି । ଏ ଘରେ ସେ ପର । ସେ ପିଣ୍ଡାରେ ବସି ପିତାଙ୍କୁ ଅପେକ୍ଷାକଲା । ଦ୍ୱାରମୁଣ୍ଡରେ ଠିଆ ହୋଇ ମା କନ୍ଦାକଟା କଲେ । ତାଙ୍କୁ ସାନ୍ତ୍ୱନା ଦେଇ ଲଳିତା କହିଲା, ''ବୋଉ କାନ୍ଦନା, ନନା[୪] ଆସନ୍ତୁ, ଘରେ ରହିବାକୁ କହିଲେ ରହିବି ।''

''ନାନା କିଏ ? ମୁଁ କହୁଛି ଆ'' । ହାତଧରି ଟାଣିଲେ । ଲଳିତା ପଥର ମୂର୍ତ୍ତି ! ଆଖିରୁ ଲୁହଗଡ଼ାଇ କହିଲା, 'ବୋଉଲୋ', ନନାଙ୍କ ଅପମାନ ତୁ ଦେଖିନୁଁ । ଏ ଅଲକ୍ଷଣୀକି ସେ ଘରେ ଥାନ ଦେବେକି ନାହିଁ ନଜାଣି ମୁଁ କୋଉ ସାହସରେ ଘର ଭିତରକୁ ଯିବି ? ଯଦି ନାହିଁ କରନ୍ତି ? ''ନାନା ନାହିଁ କରିବେ ?'' ଅବିଶ୍ୱାସ କଥାରେ ବାଧାଦେଇ ଲଳିତା କହିଲା, ''ଯଦି ନାହିଁ କରନ୍ତି, ତେବେ ଯାହା ହାତରେ ଦେଇଛି, ତାରି କତିକି ଯିବି । ସେ ତାଗିଲେ ତାଗୁ, ମାରିଲେ ମାରୁ ।'' ଘର ଚାକିରାଣୀ ହୁରୁଷିଆ ମା ଲଳିତା କଥା ଶୁଣି ସମାଳି ହୋଇପାରିଲା ନାହିଁ । କାନ୍ଦିକାନ୍ଦି କହିଲା ''ସାଆନ୍ତାଣୀ ଝିଅକୁ ବିଦା ଦିଅନା । ବାବୁଙ୍କୁ କହ ।'' ରେବତୀ ଆଉ ଲଖିଆ ଭଉଣୀକି ବେଢ଼ି ବସିଲେ । ନାନୀ କାନ୍ଦୁଛି, ବୋଉ କାନ୍ଦୁଛି, ପିଲା ଯୋଡ଼ିଏ ଅଥୟହୋଇ କାନ୍ଦିଲେ । ହୁରୁଷିଆ ମା ମଧ କାରଣ ନ ବୁଝି କାନ୍ଦିପକାଇଲା ।

ହଠାତ୍ ଏ ଦୃଶ୍ୟ ମଧ୍ୟରେ ପଶିଯାଇ ଆନନ୍ଦବାବୁଙ୍କ ଜ୍ଞାନହଜିଗଲା । ଲଳିତା ଗୋଡ଼ଧରି ପକାଇଲେ । ଆନନ୍ଦବାବୁ ମାନଅପମାନ କଥା ଭୁଲିଲେ । ତାଙ୍କରି ସୁକୁମାରୀ ଲବଣୀପିତୁଳା ଆସି ଗୋଡ଼ଧରି କାନ୍ଦୁଛି, ଆଉ ସେ ଧୈର୍ଯ୍ୟ ଧରି ରହିଛନ୍ତି ? ପୃଥିବୀ ତାଙ୍କ ଆଖି ଆଗରୁ

(୧) ପାଖ; (୨) ଲୁଗାପଟା ରଖିବା ପାଇଁ ଘରର ପଞ୍ଜରାରୁ ଓହଳା ମୋଟା ରସି; (୩) ନେଇ; (୪) ବାପା ।

ମିଳେଇଗଲା। ଲଳିତା ଆଶ୍ରୟଭିକ୍ଷା କଲା। ହାୟ ପିତୃପ୍ରାଣ! ସେ ଫାଟି ନ ଯାଇ ରହିଛି। ବାପ ଝିଅକୁ କୁଣ୍ଢେଇ କାନ୍ଦିପକେଇଲେ। ସମସ୍ତେ ନିର୍ବାକ୍, ନିଷ୍ପନ୍ଦ।

ବୃନ୍ଦାବନ ସେହି ଦିନ କଟକ ଗଲା। ଲଳିତା ଯେତେ କହିଲେ ରହିବାକୁ ମଙ୍ଗିଲା ନାହିଁ।

ଏଣେ ସକାଳୁ ଉଠି ସମସ୍ତେ ସ୍ତମ୍ଭିତ। ଲଳିତା ନାହିଁ, କି ବୃନ୍ଦାବନ ନାହିଁ! ଗାଁ ଚାରିଆଡ଼େ ଖୋଜିକରି କିଛି ସନ୍ଧାନ ପାଇଲେ ନାହିଁ। ଆର ଦିନ କଟକେ ଚିଠି ଗଲା। ଉତ୍ତରରେ ବୃନ୍ଦାବନ, ଭାଇବୋଉ, ସମସ୍ତେ ଭଲଥିବାର ଜଣାଗଲା। ବିଦ୍ୟାଧରର କାର୍ଯ୍ୟରେ ମା-ଭଉଣୀ ଅବାକ୍ ହୋଇଗଲେ। ଏମିତି ସୂତ୍ରରେ ବୋହୂକୁ ଖସାଇ ପାଖକୁ ନେବ ବୋଲି କିଏ ଜାଣିଥିଲା? ଗାଁ ଲୋକେ ଆଶ୍ଚର୍ଯ୍ୟ ହେଲେ, ଏଡ଼େ ମଉନମୁହାଁ ଟୋକାର ପେଟେପେଟେ ଏତେ ବୁଦ୍ଧି! କେହି କେହି ବୁଢ଼ୀ କହିଲେ, ''ଆଲୋ ବୁଢ଼ୀ ବୋଉ! ତୁ କଣ ବୁଝୁଛୁ? ତୋ' ବୋହୂ ପୁଅକୁ ଓଷଦ କରିଛି, ନଇଲେ ଟଙ୍କା ଦବା ବନ୍ଦ କଲା, ପୁଣି ଗୁପତେ ଗୁପତେ ଭାର୍ଯ୍ୟାକୁ ନେଇଗଲା। ଏଡ଼େ ଆଦର କୋଉ ଦିନ ହେଲାମ! ତୋ ସମୁଦି ସମୁଦୁଣୀଙ୍କର ଏଥିରେ କେତେ କୂଟ ଥିବ! ଜାଣିବୁନୁଁ ପଛନ୍ତେ।''



## (୩)

ଏଠି ଲଳିତାର କଣ ନାହିଁ? ଖାଇବାକୁ ନାହିଁ, ନା ପିନ୍ଧିବାକୁ ନାହିଁ? ପୁଣି ସ୍ନେହର ସୀମା ନାହିଁ। ଝିଅ ଝଡ଼ିଯାଇଛି ଦେଖି ମା ସାତ ଉପଚାରରେ ଝିଅକୁ ଖୁଆନ୍ତି; ସାତ ତିଅଣ, ନଅ ଭଜା, ବାର ପିଠାପଣା କରି ଆନନ୍ଦରେ ଝିଅ ଆଗରେ ଥାଳି ପୂରେଇ ଥୁଅନ୍ତି। ଏଇଟା ଖା, ସେଇଟା ଖା, କହି କେତେ ଆଦର କରନ୍ତି। ଗାଧୁଆ, ମୁଣ୍ଡବନ୍ଧା ସବୁଗୁଡ଼ିକ ନିଜ ହାତରେ ନ କଲେ ତୃପ୍ତି ନାହିଁ। ଲଳିତା ଆପଣାର ଦୁଃଖ କାହାଣୀଗୁଡ଼ିକ ଟିକକଠଉଁ ନିଶ ପର୍ଯ୍ୟନ୍ତେ ମା ଆଗରେ କହୁଛି। ମା କାନ୍ଦିକାନ୍ଦି କହନ୍ତି, ''ଦେଖିବୁ ଥା; ସେ କେତେ ଅବସ୍ଥାହେଇ ମରିବ, ମୁହଁରେ ପାଣି ଟୋପାଏ ଦେବାକୁ କେହି ନଥିବ। ଚଣ୍ଡାଳୁଣୀ, ମୋର ତା ପରା ଝୁଅକୁ ନାରଖାର(୧) କଲା। ବିଧାତା ଥିଲେ ବୁଝିବେ।'' ରେବତୀ, ଲଖିଆ ତ ବହୁଦିନ ପରେ ନାନୀକୁ ପାଇ ମହାହରଷ। ଘରଚାକିରାଣୀ ହୁରୁଷିଆମା ସୁଦ୍ଧା ଲଳିତାକୁ ତେଲ-ହଳଦୀ ଲଗାଇ ଦେଇ ପରମାନନ୍ଦିତା। କିନ୍ତୁ ଲଳିତା ସୁଖୀ ନୁହେ। କେବଳ ଖିଆପିଆ, କେବଳ ଲୁଗାପଟାରେ ଯଦି ମଣିରେ ସୁଖ ଥାଆନ୍ତା, ଲଳିତା ମଧ୍ୟ ସୁଖୀ ହୁଅନ୍ତା। ମନୁଷ୍ୟ ନିତ୍ୟ ନୂତନ ସୁଖର ପ୍ରତ୍ୟାଶୀ। ଆଗେ ଶାଶୁଘରେ ଦୁଃଖରେ ଥିଲା ବେଳେ ସେ ଦୁଃଖରୁ ତ୍ରାହି ପାଇବାର ଉପାୟ ଖୋଜି ବୁଲୁଥିଲା, କିନ୍ତୁ ଏଠାରେ ଦୁଃଖ ଯାତନାଦି ନଥିବାରୁ ବେଶି ମନେ ପଡ଼ିଲା, ତାହାର ସ୍ୱାମୀ। ଲଳିତାର ସ୍ୱାମୀ ହେଲା ଜ୍ଞାନଧ୍ୟାନ, ଜପାମାଳୀ।

(୧) ହଇରାଣ, ନଷ୍ଟ।

ବାଡ଼ି ପିଣ୍ଡାରେ ବସି, ରେବା ହାତରେ ଏଠାରେ ନୂଆ ସଙ୍ଗିନୀ ପ୍ରୀତିମାଳୀକୁ ଡକାଇ ପଠାଇ, ଲଳିତା କାନିରୁ ପାନ ଫିଟାଇ ମୁହଁରେଦେଲା। ପଛାଡୁ ଆସି ପ୍ରୀତିମାଳୀ ଦା ବଉଳର ଆଖି ଦୋଟି ହାତରେ ଚାପିଧରିଲା। ''ଆ ଲୋ ବସିବୁ।'' ଆଦରରେ ପାଖରେ ବସାଇ ସଙ୍ଗିନୀକୁ ଗଳ୍ପ ସ୍ରୋତରେ ବୁଡ଼ାଇଦେଲା।

ପ୍ରୀତିମାଳୀ ଏଠାକାର ଡାକ୍ତର ବାବୁଙ୍କ ଝିଅ, ନୂଆ ବିଭା ହୋଇଛି। ତା' ସ୍ୱାମୀ ଜଣେ ଜମିଦାର, ମଧ୍ୟ ଓକିଲ ଆଉ ଗୁଣରେ ହୀରାଖଣ୍ଡେ। ସ୍ୱାମୀର ଅପର୍ଯ୍ୟାପ୍ତ ପ୍ରେମର ଅଧିକାରିଣୀ ପ୍ରୀତି ସ୍ୱଭାବତଃ ଦିନରାତି ସ୍ୱାମୀ କଥା କହିବାକୁ ସୁଖପାଏ। କିନ୍ତୁ ମନୋମତ ସଙ୍ଗୀଟି ନ ହେଲେ କହିବ କାହାକୁ? ଲଳିତା ଏଠିକି ଆସିଲା ଦିନୁଁ ଡାକବାବୁ-ଘର ତାର ଭାତ ଖାଇ କୁଳି ପକେଇବା ଥାନ ହେଲାଣି। ଦିନଯାକ ଦୁଇସଙ୍ଗୀ ବସି ପରସ୍ପର ମନକଥା କହନ୍ତି। ଲଳିତା ସ୍ୱାମୀକୁ ଏକାନ୍ତ ଭକ୍ତିକରେ। ସେ ତାର ଜୀବନର ଦେବତା, ଆଶାର ଧ୍ରୁବ ତାରା। ତାଙ୍କରି କତିକୁ ଯିବାକୁ ତା' ମନ ବ୍ୟସ୍ତ। ବାପଘରେ ଆଉ ମନ ଲାଗୁନାହିଁ। କିନ୍ତୁ ଏ କଥାଗୁଡ଼ିକ ପ୍ରୀତିମାଳିକୁ କହିବା ଯେଡ଼େ ସହଜ, ନନା ଆଉ ବୋଉ ଆଗରେ କହିବା ତେଡ଼େ ସହଜ କି? ଲଳିତା ଲାଜରେ ମରିଛି। ତା' ନନା ଜ୍ୱାଇଁଙ୍କୁ ଯେତେ ଖଣ୍ଡ ଚିଠି ଦେଲେଣି, ଗୋଟାକର ଉତ୍ତର ନ ଆସିବାରୁ ଲଳିତା ବନ ବ୍ୟସ୍ତ। ବଡ଼ ଅସୁଖୀ। କଣ ସତେ ତା ସ୍ୱାମୀ ତାକୁ ପରିତ୍ୟାଗ କଲେ? ଓଃ, ସେ ଶାଶୁଘରେ ନ ମଲା କାହିଁକି? ବାପଘରକୁ ଆସିବା କୁବୁଦ୍ଧି କିପାଁ ତା ମୁଣ୍ଡରେ ପଶିଲା? ପ୍ରୀତିମାଳୀ ସଙ୍ଗିନୀଠାରୁ ସବୁ ଶୁଣିଯାଇ ଲାବଣ୍ୟବତୀ ଆଗରେ କହିଲେ।

ସ୍ୱାମୀକୁ କୁହାପୁଛା କରି ଲାବଣ୍ୟବତୀ ଛୁଟି ଘେନି କଟକ ଯିବା ଠିକଣାକଲେ। ଲଳିତା ମହାନନ୍ଦରେ ସେ ହପ୍ତାଟି କଟାଇଲା।



*କାବୁଲୀ ମହାଜନ ନିତି ଦୁଆରକୁ ଦଉଡୁଛି, ତାହାର ଲାଲ କଟକଟ ଆଖି ଦେଖି ବିଦ୍ୟାଧର ଅର୍ଦ୍ଧମୃତ।*

ବିମ୍ବାଧର ବସାଘର ଝୋଲାସାହରେ। ତାଙ୍କର ବସାର ସନ୍ଧାନ ଘେନି ତାହାରି ଅଳ୍ପଦୂରରେ ଗୋଟିଏ ବସା ଠିକଣାକରି ଆନନ୍ଦବାବୁ ସପରିବାର ରହିଲେ। ନବ ଆଶାରେ ଲଳିତାର ପ୍ରାଣ ପୂରିଗଲା। ସୁଖ ସ୍ୱପ୍ନରେ ସେ ବିଭୋରା। କିନ୍ତୁ ତଥାପି ଥରେ ଅଧେ ଭାବିଲା, କେଜାଣି ସ୍ୱାମୀ କ'ଣ କହିବେ, ନ କହି ଯେ ବାପଘରକୁ ପଳାଇ ଆସିଛି।'' କିନ୍ତୁ ତଥାପି ଆଶାପୂର୍ଣ୍ଣ ଆଖି ଯୋଡ଼ିକ ଦାଣ୍ଡଦ୍ୱାରକୁ ଚାହିଁ ରହିଲା।

ରାମା ହାତାରେ ସମ୍ବାଦ ପାଇ ବୃନ୍ଦାବନ ନୂଆବୋହୂକୁ ଦେଖିବାକୁ ଆସିଲା। ବାମନ ଆଗରେ ଲଳିତା ମନ ଖୋଲି କାନ୍ଦିଲା। ବୃନ୍ଦାବନର କୋମଳ ହୃଦୟ ତିନ୍ତିଗଲା।

ସେଦିନ ସନ୍ଧ୍ୟାବେଳେ ଭାଇ ବସାରେ ଥିଲେ। ହାତରେ ପଇସା କଉଡ଼ିର ଅଭାବ। ତିନିଟା ଟିଉସନ୍ ମଧ୍ୟରୁ ଯୋଡ଼ିଏ ଛାଡ଼ିଯାଇଛି। ଉପୁରୀ ଟ୨୦ଙ୍କା ବନ୍ଦ। ସଂସାର ଅଚଳ ହୋଇଛି। ବଜାରରେ ଟ୪୦୦ଙ୍କା କରଜ। କାବୁଲି ମହାଜନ ପ୍ରତ୍ୟେକ ଦିନ ଦୁଆରକୁ ଦଉଡୁଛି। ଟଙ୍କା ନ ପାଇଲାରୁ ଦୁଇପଦ ଟାଣକରି ଶୁଣାଇବାକୁ ଛାଡୁନାହିଁ। ତାହାର ଲାଲକଟକଟ ଆଖି ଦେଖି ବିମ୍ବାଧର ଅର୍ଦ୍ଧମୃତ। ''ଆଜି ଦେବି, କାଲି ଦେବି'' କହି, ସମୟ କଟାଉଛନ୍ତି। ନାଲିଶର ଭୟରେ ପ୍ରାଣ ଅସ୍ଥିର। ତଦୁପରେ ମୋହିନୀର ସୁନାଚିକ ଫରମାସୀ। ବହୁ କଷ୍ଟରେ ଟ୨୦୧ଙ୍କା ଯୋଗାଡ଼ କରି ତା' ହାତରେ ଦେଇ ଆସିଥିଲେ। ବାକି ଟଙ୍କା ୧୫୦ ଖଣ୍ଡେ ଦେବାପାଇଁ ଶକ୍ତି ନଥିବା ସତ୍ତ୍ୱେ ହଁ ଭରି ତାକୁ ଭୁଲାଇ ରଖିଥିଲେ। ଦୁଇଦିନ ତଳେ ମନୋମୋହନ ତାକୁ ବିମ୍ବାଧରଙ୍କର ପ୍ରକୃତ ଅବସ୍ଥା ଜଣାଇଦେବାରୁ, ସେ ଘୃଣାରେ ରାଗରେ ବିମ୍ବାଧରକୁ ଦୁଆରୁ ତଡ଼ିଦେଇଛି। ସେ ଦିନ ସେ ଆତ୍ମହତ୍ୟା କରିବାକୁ ବାହାରି ଥିଲେ; କିନ୍ତୁ କେଜାଣି କାହିଁକି, ହଠାତ୍ ଗୋଟିଏ ସୁନ୍ଦର ମୁହଁ ତାଙ୍କୁ ବାଧା ଦେଲା।

ନିରାଶ ପ୍ରାଣର ତୀବ୍ର ବେଦନାରେ ଅସ୍ଥିର ବିମ୍ବାଧର ଭିତର ଅଗଣାରେ ଆରାମଚୌକି ଉପରେ ଅର୍ଦ୍ଧଶାୟୀତ ଅବସ୍ଥାରେ ମୁହଁରେ ଗୋଟିଏ ଦରନିଭିଲା ବିଡ଼ି ଦେଇ, ଆଖିବୁଜି ନାନାକଥା ଭାବୁଛନ୍ତି। ଭାବନା ଅତୀତ ଓ ବର୍ତ୍ତମାନ। ତିନିବର୍ଷ ତଳେ ସେ କଣ ଥିଲେ, ବର୍ତ୍ତମାନ କଣ ହେଲେ! ତିନିବର୍ଷ ତଳେ ପିତା ଜୀବିତ, ସେ କଲେଜରେ ଆଇ.ଏ. ପଢୁଥିଲେ। କେତେ ଉଚ୍ଚାଶାରେ ତାଙ୍କ ତରୁଣ ହୃଦୟ ପୂର୍ଣ୍ଣଥିଲା। ବି.ଏ. ପାଶ୍ କରିବେ, ଡେପୁଟୀ ହେବେ। କିନ୍ତୁ ଦୁର୍ଦ୍ଦୈବ! ହଠାତ୍ ପିତାଙ୍କର ନିଉମୋନିଆରେ ମୃତ୍ୟୁହେଲା। କଲେଜ ଛାଡ଼ି ସେ ଗୃହବାସୀ ହେଲେ। ତାଙ୍କୁ ପଢ଼ାଇବା ସକାଶେ ପିତା ଜମିବାଡ଼ି ବିକିଥିଲେ। ମନରେ ଆଶା କରିଥିଲେ, ପୁଅ ଡିପୋଟୀ ହେଲେ କେତେ ଜମିବାଡ଼ି! ବଡ଼ ଗଭୀର ଦୀର୍ଘଶ୍ୱାସରେ ବିମ୍ବାଧରଙ୍କର ହୃଦୟ ବ୍ୟଥିତହେଲା। ପିତା ଥାଉ ଥାଉ ଅଗ୍ରଜଙ୍କର ମୃତ୍ୟୁ ହୋଇଥିଲା। ତାଙ୍କର ପୁଅଝିଅ ହୋଇ ଯୋଡ଼ିଏ। ବିଧବା ଭଉଣୀ, ପୁଣି ତାଙ୍କ ଦୁଇ ଝିଅ ଓ ପୁଅଟିକୁ ନେଇଆସି ଭାଇ ଆଶ୍ରାରେ ରହିଲେ। ଦୁଃଖ ପରେ ଦୁଃଖ ମାଡ଼ିଆସିଲା। ସ୍ତ୍ରୀ ମଧ୍ୟ ଆସି ଶ୍ୱଶୁରଘରେ ପହଞ୍ଚିଲେ। ଏତେଗୁଡ଼ିଏ ଲୋକଙ୍କ ପେଟପାଟଣା, କି ବିଲ ଦଶମାଣରେ ହୋଇପାରେ? ତାଙ୍କ

ପଢ଼ିବା ପିପାସା ଦୂରହେଲା। ସେ ବିବ୍ରତହୋଇ ଚାକିରୀ ଖୋଜି ବୁଲିଲେ। କପାଳ ମନ୍ଦ ଥିଲେ ସବୁଆଡୁ ମନ୍ଦ ଘୋଟେ୧। ବହୁତ ଖୋଜିଖୋଜି, ବହୁତ ଦରଖାସ୍ତ ପକାଇପକାଇ, ହାତ ଓଠ ଧରିଧରି ଶେଷକୁ କିଲଟରୀରେ ଖଣ୍ଡିଏ କିରାଣୀ ଚାକିରି ମିଳିଲା। ଦରମା ତିରିଶ ଟଙ୍କା। ବିମ୍ବାଧର ଆପାତତଃ ତାହାହିଁ ଦୈବାନୁଗ୍ରହ ଜ୍ଞାନକରି ସେହି କାର୍ଯ୍ୟରେ ନିଯୁକ୍ତ ହେଲେ। ଅସଦୁପାୟରେ ଦୁଇ ପଇସା ରୋଜଗାରର ବିଶେଷ ସୁବିଧା ମଧ୍ୟ ଥିଲା।

ପୁଣି ମନେ ପଡ଼ିଲା, ଅନେକ ଦିନ ପରେ ମନେ ପଡ଼ିଲା ଗୋଟିଏ ସରଳ ଅଶ୍ରୁମୁଖୀ। ଲଳିତାର ରକ୍ତକାଞ୍ଚନ କମନୀୟ ମୂର୍ତ୍ତି। ଦରମା ୮୩୦ରୁ ହେଲା ୮୪୦ଙ୍କା। ନବୋତ୍ସାହରେ ନବବଧୂକୁ ଆଣି ନବ ସଂସାର ରଚନାରେ ଆକାଙ୍କ୍ଷା ହେଲା। କିନ୍ତୁ ବାଧା ଦେଲେ ସ୍ୱୟଂ ମାତା। ଦୁଇ ଦୁଇଥର ବାଧାଦେଲେ। ବଡ଼ ଅଶୁଭ କ୍ଷଣରେ ମନୋମୋହିନୀ ସହିତ ଭେଟ ହେଲା। ତାଙ୍କ ଜୀବନର ସର୍ବନାଶହେଲା। ମୋହିନୀର ପାଦ ପୂଜା କରି ସେ ଅମୂଲ୍ୟ ଚରିତ୍ର-ରତ୍ନ ହରାଇବସିଲେ। କିନ୍ତୁ କୁଆଡ଼େ ଗଲା ମୋହିନୀର ମାୟା! ଯାହାର ଅଶୁଚି ଶରୀର ସଜାଇବାପାଇଁ ସେ ଭୀଷଣ କାବୁଲି ମହାଜନର କରକବଳିତ, ସେ ପୁଣି ଛାର ଚିଜଟା ସକାଶେ ଏକାବେଳେ ଦୁଆରୁ ତଡ଼ିଦେଲା। ମନେପଡ଼ିଲା ଲଳିତା, ମନେପଡ଼ିଲା ତାହାର କୋମଳ ପ୍ରେମପୂର୍ଣ୍ଣ ବ୍ୟବହାର, ସେ ଲଜ୍ଜାବିଜଡ଼ିତ ଆଖି ଦୋଟିର ସ୍ନିଗ୍ଧ ଚାହାଣୀ। ଅଜ୍ଞାତରେ ତାଙ୍କର ତନ୍ଦ୍ରାତୁର ନୟନପଲ୍ଲବ ସିକ୍ତହେଲା।

ବାମନ ଧୀରେ ଡାକିଲା– ''ଭାଇନା–।'' ହଠାତ୍ ନିଦରୁ ଉଠିଲାପରି ବିମ୍ବାଧର ଚମକିପଡ଼ି କହିଲେ, ''କଣ ?'' ''ଭାଇନା ତମ ଶଶୁର ଆସିଛନ୍ତି।''

''ସେଥିରେ ମୋର କ'ଣ ଗଲା ?'' ଏହା କହି ବିରକ୍ତ ଭାବରେ ମୁଖ ଫେରାଇ ନେଲେ। ପୁଣି ବାମନ କହିଲା, ''ଦେଖା କରିବାକୁ ଡାକିଛନ୍ତି।'' ବିମ୍ବାଧର ଅଧିକତର ବିରକ୍ତ ହୋଇ କିଛି ଉତ୍ତର ଦେଲେନାହିଁ। ବୃନ୍ଦାବନର ଦ୍ୱିତୀୟ କଥା କହିବାକୁ ଆଉ ସାହସ ହେଲାନାହିଁ।

ଥରେଥରେ ମନୁଷ୍ୟ ଯାହା ଖୋଜିନଥାଏ, ଯାହା ପାଇବ ବୋଲି ଠୁଳେ୨ ଭାବିନଥାଏ, ହଠାତ୍ ତା' ମିଳିଯାଏ।

ସଞ୍ଜର ମୃଦୁ ଅନ୍ଧାରରେ ବାରିପଟେ ଠିଆହୋଇ ଲଳିତା ଗୋଧୂଳିଗୋଳା ଆକାଶକୁ ଅନାଇଛି। ଗୋଧୂଳି ରଙ୍ଗରେ ତାହାର ରକ୍ତ କନକବର୍ଣ୍ଣ ଆହୁରି ରକ୍ତିମ ଦିଶୁଛି। ପ୍ରଶାନ୍ତ ବୃହତ୍ ଆଖି ଦୋଟି ସୂର୍ଯ୍ୟପରିତ୍ୟକ୍ତ ପଶ୍ଚିମାକାଶରେ ନିହିତ। ଏହି ପୂର୍ବ କ୍ଷଣର ନାନାରଙ୍ଗର ମେଘାବଳୀରେ ରଞ୍ଜିତ ବାରୁଣୀବଦନ, ବର୍ତ୍ତମାନ ଶେଷ ସୂର୍ଯ୍ୟ-କିରଣର ମ୍ଳାନ ଛଟା, ଅଶ୍ରୁମୁଖୀ ପତିପରିତ୍ୟକ୍ତା ବଦନର କରୁଣ ଛବି! ଏହିପରି ଜଗତ୍! ଏହି ହସ! ଏହି କାନ୍ଦ! ଠାଏ

(୧) ଆଚ୍ଛନ୍ନ କରେ, ଘୋଡ଼େଇ ରଖେ; (୨) ଟିକିଏ, ଥରେ।

ସୂର୍ଯ୍ୟ କିରଣ, ଠାଏ ଛାଇ। ତା' ମନରେ କେତେ କଥା ଉଦୟହେଲା। ପନ୍ଦର ଦିନ ହେଲା ସେ କଟକକୁ ଆସିଛି। କିନ୍ତୁ କାହିଁ, ଯାହାକୁ ଦେଖିବ ବୋଲି ଆଶାରେ ସେ ଅସିଲା, ସେ କାହିଁ– ତାର ଦେଖାଦର୍ଶନତ ନାହିଁ। ଗୋଟିଏ ଦୀର୍ଘାକାର, ସରଳ, ସୁଡ଼ୌଳ କନକକାନ୍ତି ଯୁବକର ମୁଖ ତା' ମାନସପଟରେ ଅଙ୍କିତହେଲା। ସତେ ସେ ଆସିବ ? ତାହାର ହେବ ? ତାକୁ ନେଇ ସେ ଘର କରିବ ? ତାହାର ପ୍ରେମ, ତାହାର ସାହଚର୍ଯ୍ୟରେ ତାହାର ଜୀବନର ସଫଳତା, ଜୀବନର ପୂର୍ଣ୍ଣତା ସାଧିତହେବ ? ଲଳିତା ଶୂନ୍ୟଚକ୍ଷୁ; ତା' ଦୃଷ୍ଟିରେ ଆଉ ଜଗତ୍ ନାହିଁ; ତାହାର ଦୃଷ୍ଟି ଅନ୍ତଃରାଜ୍ୟପ୍ରବିଷ୍ଟ। ତାହାର ଜଗତ୍ ବିଦ୍ୟାଧରମୟ। ବିଦ୍ୟାଧର ଆକାଶରେ, ବିଦ୍ୟାଧର ପଶ୍ଚିମ ଗଗନରେ, ବିଦ୍ୟାଧର ପବନରେ, ପବନର ସେହି ମୃଦୁଳ ସ୍ପର୍ଶରେ, ବିଦ୍ୟାଧର ଲଳିତା ହୃଦୟରେ, ଲଳିତାର ସେହି ମୁଗ୍ଧ ଶାନ୍ତ ଦୃଷ୍ଟିରେ; ଲଳିତା ବିଦ୍ୟାଧର-ସ୍ୱପ୍ନରେ ବିଭୋର।

ହଠାତ୍ ପଛା'ରୁ କିଏ ଡାକିଲା। ଚକିତା, ମୁଗ୍ଧା ଲଳିତା ଅନାଇଲା। ଚାରି ଚକ୍ଷୁର ମିଳନହେଲା। ଲଳିତାର ଶିରା ପ୍ରଶିରାରେ ବିଦ୍ୟୁତ୍‌ପ୍ରବାହ ଖେଳିଗଲା। ବଡ଼ ଜୋରେ ଜୋରେ ହୃଦୟ ସ୍ପନ୍ଦିତହେଲା। କ୍ଷଣକରେ ଲଜ୍ଜା ଆକ୍ରମଣକଲା। ଲଜ୍ଜାରେ ଜଡ଼ସଡ଼ ତରୁଣୀ ଲୁଗାଟା ହାତେ ମୁହଁ ଉପରକୁ ଟାଣିନେଲା; ପରକ୍ଷଣରେ ସେ ବିଦ୍ୟାଧର କୋଳରେ।

ଏପରି ମିଳନ କେବେଁ ହୋଇନାହିଁ, କେବେଁ ହେବାର ନୁହେଁ। ଏ ସ୍ୱପ୍ନାତୀତ ମିଳନ। ତୃଷିତା ଚାତକିନୀ ପକ୍ଷରେ ଏ ନବ-ବାରିଦ-ବିନ୍ଦୁ! ଲଳିତା ମୁଖରୁ କଥା ବାହାରିଲା ନାହିଁ। କିନ୍ତୁ ଆଜି ତାହାର ଜୀବନର ଚରମ ସଫଳତା! ତାହାର ଶରୀରର ପ୍ରତ୍ୟେକ ଅଣୁପରମାଣୁର ପରମ କୃତାର୍ଥତା। ତାହାର ପ୍ରତ୍ୟେକ ଶୋଣିତ ବିନ୍ଦୁରେ ପରମାନନ୍ଦର ଲହରୀ। ଆଜି ଲଳିତାର ଜୀବନ ପୂର୍ଣ୍ଣ, ପରମ ପରିତୃପ୍ତ, ତାହାର ଜୀବନ ସଙ୍ଗୀତ ନବୀନ ବୀଣାତାରରେ ନୂତନ ଛନ୍ଦରେ ଝଙ୍କୃତ। ତାହାର ପ୍ରାଣର ପୀୟୂଷଧାରା ଚିର-ମଙ୍ଗଳସିନ୍ଧୁରେ ସମ୍ମିଳିତ। ଲଳିତା ଆଜି ଧନ୍ୟା!

ସନ୍ଧ୍ୟାର ଅନ୍ଧକାରରେ ବସି ସ୍ୱାମୀ ସ୍ତ୍ରୀ ବହୁତ କାନ୍ଦିଲେ, ପରସ୍ପର ନିକଟରେ ଅନେକ କ୍ଷମାଭିକ୍ଷାକଲେ। ଦୋଷୀ ଉଭୟେ– ଲଳିତା ଗୃହତ୍ୟାଗିନୀ, ବିଦ୍ୟାଧର କଳଙ୍କିତ। କିନ୍ତୁ ଲଳିତା ଆଜି ପୂର୍ଣ୍ଣକାମା, ଆଉ ବିଦ୍ୟାଧର ଶତବୃଶ୍ଚିକ ଦଂଶନରେ ପୀଡ଼ିତ। ଲଳିତାର ପବିତ୍ର ଅଙ୍ଗସ୍ପର୍ଶରେ ତାହାର ହୃଦୟର ଗୁପ୍ତ ପ୍ରଦେଶ ଶିହରିଉଠିଲା। ଗୋଟିଏ ପାପିନୀ ପିଶାଚୀର ବିକଟ ମୂର୍ତ୍ତି ରହିରହି ତାହାର ମାନସ ଚକ୍ଷୁରେ ନାଚିଉଠିଲା। ସେ ଆଉ ଏ! ହୀରା ଆଉ କାଚ! ବିଦ୍ୟାଧର ମନେମନେ ତୁଳନାକଲା। ଗୋଟିଏ ସ୍ୱର୍ଗର ମନ୍ଦାକିନୀ ଧାରା, ଆରଟି ପୃଥିବୀର ପଙ୍କିଳ କର୍ମନାଶା-ସ୍ରୋତ। ଗୋଟିଏ କମଳ ବନର ମଧୁର ସୌରଭ, ଆରଟି ଆଗ୍ନେୟ ଗିରିର ଭୀଷଣ ଅନ୍ତର୍ଦାହ। ବିଦ୍ୟାଧରର କ୍ଷଣିକ ଚୈତନ୍ୟହେଲା। ମନେମନେ ପ୍ରତିଜ୍ଞାର ଉଦୟ ହେଲା। ଆଉ ନୁହେଁ, ଆଉ ନୁହେଁ। ଏଥର ସ୍ତ୍ରୀ ଘେନି ଘରସଂସାର କରିବ। ଲଳିତାର ଜୀବନରେ ତାହାର ଜୀବନ ମିଶାଇଦେବ। ଲଳିତାର ପବିତ୍ର ପ୍ରେମରେ ତାହାର ଦୂଷିତ ହୃଦୟ

ନିର୍ମଳ ହେବ। ପ୍ରତିଜ୍ଞା ରଖ, ବିମ୍ବାଧର। ଜୀବନ ସଙ୍ଗିନୀ ସହିତ ଏକାତ୍ମ ହୁଅ, ବିମ୍ବାଧର! ନୋହିଲେ ମୁହୂର୍ତ୍ତକର ତୀବ୍ର ଉତ୍ତେଜନାରେ ପ୍ରତିଜ୍ଞା-ସେ କେଉଁ କଥା!

ଝିଅ ଜ୍ୱାଇଁର ଅଭାବନୀୟ ମିଳନରେ ପିତାମାତା ବଡ଼ ସୁଖୀହେଲେ। ଲଳିତା ଯାହା ଚାହୁଁଥିଲା, ଏତେଦିନରେ ତା' ପାଇଲା। ସ୍କୁଲର ପୂର୍ବତନ ସଙ୍ଗୀ ସୁଧୀର ସହିତ ଘଟନାକ୍ରମେ ବାଟରେ ବିମ୍ବାଧରଙ୍କର ଦେଖାହେଲା। ଦୁଇ ସଙ୍ଗୀ ବହୁତ ଦୁଃଖସୁଖର କଥାବାର୍ତ୍ତାହେଲେ। ସୁଧୀରଙ୍କର ତେଲଙ୍ଗାବଜାରର କୋଠାକୁ ଲାଗି ଚାରି ବଖରା ନାହାଚାଳିଆ[୧] ପ୍ରଶସ୍ତ ମାଟିଘର ଥିଲା। ପରିବାରଟିଏ ଚଳିବା ସକାଶେ ବେଶ ସୁବିଧା। ସୁଧୀରଙ୍କ ଅନୁଗ୍ରହରେ, ବିନା ଭଡ଼ାରେ ଘରଟି ପାଇ ବିମ୍ବାଧର ଝୋଲା ସାହିରୁଉଠିଆସିଲେ।

ଗଲାବେଳେ ଲାବଣ୍ୟବତୀ ଲୁଚାଇକରି ଝିଅ ହାତରେ ନଗଦ ଦୁଇଶ ଟଙ୍କା, ନିଜ ହାତର ଦି'ପଟି ସୁନା ପଇଞ୍ଚ[୨] ଦେଇଗଲେ। ଜ୍ୱାଇଁ ପିନ୍ଧା ପାଟଯୋଡ଼ ମଧ ବାଦ ଗଲାନାହିଁ। ଲଳିତାର ସୁଖର ଅନ୍ତନାହିଁ। କିନ୍ତୁ ମଣିଷର ସୁଖ ପାଣି ଫୋଟକା ପରି, ଏହା ବୁଝିବାକୁ ଲଳିତାର ବହୁତ ଦିନ ଗଲାନାହିଁ। ନୂଆ ଘରକୁ ଆସିବାର ପନ୍ଦର ଦିନ ହୋଇନାହିଁ, ହଠାତ୍ ଦିନେ କାବୁଲି ମହାଜନ ରହିମ ଖାଁ ଆସି ଦାଣ୍ଡରେ ଦେଖାଦେଲେ। ଦଶଦିନ ମଧରେ ଚାରିଶ ଟଙ୍କା ନ ଦେଲେ ଘର କୋରକୀ[୩] ହେବ ଶୁଣି ଲଳିତାର ପିଳେହି ପାଣି ହୋଇଗଲା। ସେ ଦିନ ରାତିରେ ଭୟରେ ତାହାର ନିଦ ହେଲାନାହିଁ। ବିମ୍ବାଧର ଘରେ ନଥିଲେ; ବିଶେଷ କାର୍ଯ୍ୟରେ ପୁରୀ ଯାଇଥିଲେ। ଏକାକିନୀ ଲଳିତା ସ୍ୱାମୀର ଅଦୃଷ୍ଟ ଚିନ୍ତାକଲା। ତାହାର ଦେହରେ କେତେଗୁଡ଼ିଏ ଅଳଙ୍କାର ଥିଲା, ମା ଦେଇଥିବା ସୁନା ପଇଞ୍ଚ ବାକ୍ସରେ ଥିଲା। ଏତେ ଥାଉ ସ୍ୱାମୀ ଜେଲ ଯିବ? ଘର କୋରକୀ ହେବ? ମନ ଭାବନାରେ ଲଳିତା ସେ ରାତି କଟାଇଲା। ଆରଦିନ ଦିଅର ଭାଉଜ ବିଚାରକଲେ। ବେକର ହରଡ଼ଫାଳ, କାନର କଣ୍ଢିଆ ଆଉ ସୁନା ପଇଚି ବନ୍ଧା ରଖି ଦୁଇଶଟି ଟଙ୍କା ଯୋଗାଡ଼ହେଲା। ମଙ୍ଗଳବାର ଦିନ ବିମ୍ବାଧର ଯେତେବେଳେ କାବୁଲି ମହାଜନକୁ ଚାରିଶ ଟଙ୍କା ଗଣିଦେଇ ସ୍ୱସ୍ତିର ନିଃଶ୍ୱାସ ମାରିଲେ, ତାଙ୍କ ମନେହେଲା ଲଳିତା ଦେବୀ, ମାନବୀଠାରେ କଣ ଏତେ ପ୍ରେମ ସମ୍ଭବ? ପଚାରିଲା ନାହିଁ, ବିଚାରିଲା ନାହିଁ, ଦେହରୁ ଗହଣା କାଢ଼ି ସ୍ୱାମୀର ଦେଣା ଟଙ୍କା ଶୁଝିଲା! ଆଉ ଧିକ୍ ବିମ୍ବାଧର! ସେହି ଟଙ୍କାରେ ତୁ ସୁନାଚୁଡ଼ି ସୁନାବାଲା ଗଢ଼ିଥିଲୁ? ପାପିଷ୍ଠାକୁ ଆଭରଣଭୂଷିତା କରି ଆଜି ତୁ ଦେବତାର ଦେହ ଶୂନ୍ୟ କଲୁ? ଏପରି ସ୍ତ୍ରୀ ବିମ୍ବାଧରର ପୂଜା କରିବାକୁ ମନ ହେଲା। ଲଳିତା ତାଙ୍କର ସମଗ୍ର ଜୀବନଟା ଅଧିକାର କରିବସିଲା।

କିନ୍ତୁ ଏତେ ସ୍ନେହ, ଏତେ ଆଦର ଭିତରେ ଗନ୍ଧପୁଷ୍ପରେ କୀଟପରି ଲଳିତାର ଆଉ ଗୋଟିଏ ଦୁଃଖ ଆସି ପହଞ୍ଚିଲା------ ସେ କେବଳ ସ୍ୱାମୀଙ୍କ ସ୍ନେହର ଭାଗିନୀ ନୁହେଁ, ରୋଗର ଭାଗିନୀ ମଧ। କବିରାଜ ଗଦାଧର ମିଶ୍ରଙ୍କୁ ହାତରୁ କମ ବାହିଚୁଡ଼ି ବିକି ଟଙ୍କାଦେଇ

(୧) ଏକପାଖିଆ ଛପର ଥିବା, (୨) ହାତର ଅଳଙ୍କାର ବିଶେଷ, (୩) ଘର, ଜମି ଓ ଆସବାବପତ୍ର ସର୍ବସାଧାରଣରେ ନିଲାମ।

ସ୍ୱାମୀ ସ୍ତ୍ରୀ ଔଷଧ ଖାଇବାକୁ ଲାଗିଲେ। ରୋଗଜ୍ୱାଳାରେ ଲଳିତାର ଯୌବନ-କାନ୍ତି ମଳିନ ହେଲା। ଜୀବନ ଭାର ବୋଧହେଲା। ଗୋଟିଏ ପରେ ଗୋଟିଏ ଦୁଃଖ କଣ ତା' କପାଳ ଲିଖନ ?



## (୪)

ମାଟିର ଛୋଟ ଚାଳଘର ହସିଉଠିଲା। କ୍ଷୁଦ୍ର କୋଠରୀଟି ଆଲୁଅକରି ନୂଆ ପୁଅଟିଏ ଆସି ଦେଖାଦେଲା। ଲଳିତାର ମାତୃହୃଦୟ ସଫଳାନନ୍ଦର ପୂର୍ଣ୍ଣତାରେ ପ୍ରସବର ଦୁଃଖ ବେଦନା ଭୁଲିଲା। ମାତୃ ହୃଦୟଟି କଣ, ସେ ଯେ କେଉଁ ଉପାଦାନରେ ଗଠିତ, ଏହା କୌଣସି କବି, କୌଣସି ଭାବୁକ ଆଜି ପର୍ଯ୍ୟନ୍ତ ଠିକଣା କରିପାରିନାହାନ୍ତି। ଲଳିତାର ପ୍ରଥମ ମାତୃତ୍ୱରେ ଆଜି ଏ ଅଜ୍ଞାତ ପ୍ରଦେଶରୁ ନବାଗତ ଅତିଥି ସ୍ନେହ-ଚନ୍ଦନ-ସିକ୍ତ ହେଲା ପରା। ଅନ୍ତୁଡ଼ିଶାଳର ଦୀର୍ଘ ଦିନଗୁଡ଼ିକ ଗୋଟିଏ କ୍ଷୁଦ୍ର ଅନ୍ଧାର କୋଠରୀରେ ଛିଣ୍ଡା ହେଁସକତରାରେ ପଡ଼ିପଡ଼ି ନିଆଁ ଧୂଆଁରେ ପଶିପଶି, ରାଗ ଶୁଣ୍ଠିପିପୁଳି ଖାଇଖାଇ ହଳଦୀ, ସିଝା ବାଇଗଣ ଭାତ, ଶୁଖିଲା ଚୁଡ଼ାଭୁଜା, ପାଣିଟିକକ ସୁଦ୍ଧା ଢ଼ୋକକରୁ ଦି'ଢ଼ୋକ ପିଇବା ବାରଣ, ଇତ୍ୟାଦି କଷ୍ଟରେ କାଟିଥିଲେ ହେଁ କୋଳ କତିରେ ନୂଆ ପୁଅଟିକି ଚାହିଁ ଲଳିତା-ହୃଦୟ ଆନନ୍ଦରେ ପୂରି ଯାଉଥିଲା। ସାତ-ଦିନ-ପାଣି[୧] ଗାଧୋଇ ଯେତେବେଳେ ସେ ପରିଷ୍କାର ହେଲା, ଆଉ ବିମ୍ବାଧର ଘର ଭିତରକୁ ଆସି ପୁଅଟିକି ଚାହିଁଗଲେ, ଲଳିତାର ମାତୃହୃଦୟ ପରମ କୃତାର୍ଥହେଲା। ସେ ମନେମନେ ନବ ଶିଶୁକୁ ସ୍ୱାମୀର କରକମଳରେ ଅର୍ପଣକରି ନୀରବ ନୟନରେ ଯେତେବେଳେ ବିମ୍ବାଧରର ପ୍ରଫୁଲ୍ଲ ମୁଖଶ୍ରୀ ଦେଖିଲା, ତାହାର ମସ୍ତକରେ ନାରୀତ୍ୱର ଗୌରବମଣ୍ଡିତ ମୁକୁଟ ଯେପରି ଆପେ ଆସି ଶୋଭିତହେଲା। ଏ ନନ୍ଦନର ଫୁଲମାଳା, ଏ ପ୍ରେମର ପାରିଜାତ ବଡ଼ ଆଦରରେ ଚୌଦ ବର୍ଷର ବୃନ୍ଦାବନ ନବ ଶିଶୁର କଳେଇ-ପଦ ଅଧିକାର କଲା। ଆଜି ବିମ୍ବାଧର-ଜନନୀ ମଧ ଆନନ୍ଦିତା। ନୂଆ ନାତିଟିକୁ କୋଳରେ ଧରି ଟିକେ ବାହାରକୁ ଆଣି ଦେଖାଇଲେ। ପ୍ରତିବେଶିନୀ ପ୍ରମିଳାଙ୍କର ଶାଶୁ ପିଲାଟିକୁ ଟଙ୍କା ୫ଟା ଦେଇ ମୁଖଦେଖି ଆଶୀର୍ବାଦକଲେ। କ୍ରମେ ଏକୋଇଶା ଆସିଲା।

ସେଦିନ ମହାମୋହାତ୍ସବ। ଜମିଦାର-ପତ୍ନୀ ପ୍ରମିଳା ନିଜେ ସବୁ ଅରୁଆଚାଉଳ, ନଡ଼ିଆ, ମିଠେଇ, ପାଚିଲା କଦଳି[୨] କାନ୍ଧିଏ ପଠାଇଦେଲେ। ତାଙ୍କ ଜମିଦାରିରୁ ଗୁଆ[୩] ଘିଅ ଆସିଥିଲା, ତାଙ୍କ ଶାଶୁ ମଧ ସେଉରେ ଖଣ୍ଡେ ପଠାଇଲେ। ପ୍ରୀତିମାଳି ବଉଳର ନୂଆ ପୁଅ ସକାଶେ ସୁନାର ଚେନ୍, ଅଣ୍ଟାସୁତା ପାର୍ଶଲକରି ପଠାଇଥିଲା। ଅଳାଆଣ ହାତ-ଖଡୁ ଗୋଡ଼-ଖଡୁ, ନୂଆ ଜାମା, ଝିଅବ୍ୱାଇଁପାଇଁ ଲୁଗା ହେରିକା[୪] ପଠାଇଲେ। ଏହିଟି ତାଙ୍କର ପ୍ରଥମ ନାତି। ବିମ୍ବାଧର ନିଜେ କୋଡ଼ିଏ ଟଙ୍କା ଖରଚକରି ସାମାନ୍ୟ ଭୋଜନାଦିର ବ୍ୟବସ୍ଥା କଲେ।

(୧) ପ୍ରସବର ସପ୍ତମ ଦିନର ନାରୀର ଗାଧୁଆ, (୨) କଦଳୀ, (୩) ଗାଈଘିଅ, (୪) ଇତ୍ୟାଦି।

ଜାତି କୁଟୁମ୍ବ ସଙ୍ଗୀ ସଙ୍ଗାତ ଖାଇପିଇ ବାହାରିଗଲେ। ସେତେବେଳକୁ ରାତି ୯ଟା। ଦୁଃଖସୁଖରେ କଥା ପଦେ ହେଉଁହେଉଁ ହଠାତ୍ ତମାଳିନୀ ବୋହୂ ସହିତ କଳହ କରି ବସିଲେ। ତାଙ୍କର ପିଲା ତିନୋଟି ସଙ୍ଗରେ ଆସିଥିଲେ। ନୂଆବୋହୂର ଟିକି ପିଲାଟିର ଆଦରପ୍ରେମ ତାଙ୍କ ଆଖିରେ ସହ୍ୟହେଲା ନାହିଁ। ସେ କଥାରେ କଥାରେ କହିବସିଲେ, ''ହଁ ଅରକ୍ଷିତକୁ ଦଇବ ସାହା। ବାପଭାଇ ଘରେପଡ଼ି ଖାଉଛି– ଗୋଇଠା ଦେଲେ ସହି, ଛାଞ୍ଚୁଣି ମାଡ଼ ଦେଲେ ସହି।'' ତାଙ୍କର ଏଡ଼େବଡ଼ ଗଭୀର ଆକ୍ଷେପ କଥା ମା କାନରେ ପଡ଼ିଲା। ହଁ, ତୁ ଛାର ଖଣ୍ଡେ ପିଲା ଜନମ କରି ତୋର ଏଡ଼େ ଗରବ, ତୁ ମୋ ଝିଅକୁ କହିଲୁ। କଂସା ମାଜିଲେ ଛୋଟ, କଥା ମାଜିଲେ ମୋଟ; କଥାକୁ ପାଞ୍ଚକଥା ହେଲା। ତମାଳିନୀ ବଡ଼ ପାଟିକରି କାନ୍ଦିବସିଲେ। ହଁ, ସେ ବିଧବା ବୋଲି ତାଙ୍କୁ ଓ ତାଙ୍କ ପିଲାଙ୍କୁ ଲୋକେ ଏତେ କଥା କହୁଛନ୍ତି। ଦୋଷ ଭିତରେ ସକାଳେ କୁଆଡ଼େ କମଳିନୀ ରସଗୋଲା ମାଗିଲାରୁ ତା' ମାଇଁ କହିଲା, ''ଥାଉ, ମାମୁ ଖାଇଲା ପରେ ଦିଆଯିବ।'' ''କଣ ପିଲାଟା ଗୋଟିଏ ଛାର ରସଗୋଲା ସକାଶେ ହାତ ପତେଇଲା, ତୁ ତାକୁ ମୂଳରୁ ମନା କଲୁ।'' ସେହି ରୋଷରେ ତମାଳିନୀ ଉପାସରହିଲେ। କିନ୍ତୁ ସେ କଥା କିଏ ଜାଣିଛି? ଯେ ଯାହାର ଖିଆପିଆ କଲେ। ବାହାର ଲୋକଯାକ ଖାଇପିଇ ବାହାରିଗଲେ। ସନ୍ଧ୍ୟା ହେଲା, ରାଗରେ, ଉପବାସରେ ନାଗୁଣୀ ପରି ଫଁ ଫଁ ହୋଇ ତମାଳିନୀ ମନର ବିଷତକ ବୋହୂ ଉପରେ ଝାଡ଼ିବସିଲେ। ବିମ୍ବାଧର ଓ ବୃନ୍ଦାବନ ଭଉଣୀର ଏପରି ଅଯଥା ରାଗଦେଖି ବିରକ୍ତହୋଇ କିଛି କହିଲା ମାତ୍ରେ, ବଡ଼ ଭଉଣୀ ଓ ମା ଗର୍ଜନ କରି କହିଲେ, ''ଆରେ, ମାଇପପଟିଆ[୧] ହେଲୁରେ, ମା ଭଉଣୀଙ୍କୁ ନାରଖାର[୨] କରି ତାକୁ ସୁନା-ପଲଙ୍କରେ ବସାରେ। ତୋ' ମନରେ ଏତେ କୂଟ ଥିଲା ବୋଲି ଜାଣିଥିଲେ କଟକ ପୃଥିବୀ ମାଡ଼ି ନଥାନ୍ତୁ।' ସେଠୁ ମା ବୟାନ କଲେ ''କଣ– ବୋହୂ ପିନ୍ଧିଲା ପାଟପୀତାମ୍ବରୀ, ମୋ ଝୁଅପାଇଁ ପୁଣି ନୀରସା ମାଣିଆବନ୍ଧିଟାଏ। ପୁଅ ସତୁରି ଟଙ୍କା ଲେଖା ରୋଜଗାର କରି ଛାର ଟ୧୫ଙ୍କା ଘରକୁ ପଠାଏ ସିନା, ସେଥିରେ ପୁଣି ମୁଁ ସରୁଚୁଡ଼ା ଆମ୍ବୁଲ, ବଡ଼ି, ପଣସ, ଆମ୍ବ, ଇତ୍ୟାଦି ଯାହା ଯେତେବେଳେ ପାଇଲି, ପଠେଇଲି। ଏଠି ଜମାରୁ ତିନିଟା ଲୋକ, ତମକୁ ଏତେ ଟଙ୍କା ଅଣ୍ଟୁନାହିଁ। ଟଙ୍କାଗୁଡ଼ା କ'ଣ ଚୋବଉଛ? ବିମ୍ବାଧର ରାଗହୋଇ କହିଲେ, ମୁଁ ମାସି ପନ୍ଦର ଟଙ୍କା ପଠେଇଲି। ମୋର ଟିଉସନ୍ ଆଜି ଅଛିତ କାଲି ନାହିଁ। ଟଙ୍କା ଚାଳିଶଟା ପଚାଶଟାରୁ କେତେ ଆଡ଼କୁ ଦେବି? ତୁମର ଘରବାରି ସବୁ ଅଛି। କଟକ ପରି ମହଙ୍ଗା ଜାଗାରେ ଚଳନ୍ତ କି, ମନ ଜାଣନ୍ତା। ଏଥର ମାକୁ ପାରେ କିଏ। ପୁଅ ବୋହୂକୁ ଯାବତୀୟ ଗାଳିଗୁଲଜ କରି ପୁଟୁଳା ପୁଟୁଳିବାନ୍ଧି କାନ୍ଦିକାନ୍ଦି ଡାକିଲେ, ''ଆରେ ବାମନ, ଗାଡ଼ି ଖଣ୍ଡେ କରିଦେ...। ଏ ଘରୁ ଗଲେ ତ୍ରାହି, ଆଉ ଏ କଟକ ପୃଥିବୀ ମୁହଁ ଦେଖିବୁ ନାହିଁ'', ଯା କହି ବାହୁନି ବାହୁନି କାନ୍ଦି ଆସି ପିଣ୍ଡାରେ ବସିଲେ। ଲଳିତା କେତେ ଗୋଡ଼ ହାତ ଧରିଲା, କେତେ କ୍ଷମା ଚାହିଁଲା! ଶାଶୁ ନଣନ୍ଦ କ୍ଷମାଦେବା ଦୂରେ ଥାଉ, ହାତରେ

(୧) ସ୍ତ୍ରୀ ପକ୍ଷ, ସ୍ତ୍ରୀବୋଲକରା, (୨) ନଷ୍ଟ, (୩) ମାସକୁମାସ

ଠେଲି ଦେଇ କହିଲେ ''ରଖଲୋ ତୋ ଖେମା[୧], ତୋ' ଗରବର ଫଳ ପାଇବୁ ଯେ! ଛ ମାସ ଛ ପକ୍ଷ ଯିବନାହିଁ, ପୁଅକୁ ଖାଇ ବସିବୁ। ଡାଆଣୀଟା, ତୁ ପୁଣି ପିଲା ଦେଖେଇ ହଉଚୁ।'' ଲଳିତାର ଧୈର୍ଯ୍ୟ-ବନ୍ଧ ଭାଙ୍ଗିଲା। ସେ ଦୋଷକଲା ବୋଲି ତାର ନିର୍ଦ୍ଦୋଷ ସୁକୁମାର ପୁଅଟିକୁ ଏଡ଼େ ଅଭିଶାପ! ଏମିତି ଲୋକଙ୍କର କାନେକାନେ ମୁହଁ ଚାହିଁବାର ନୁହେଁ। ବିଷାଦିନୀ ଝରକା-ବାଡ଼ ଧରି ତୁନିତୁନି ଅନେକ କାନ୍ଦିଲା। ଏଣେ ଶାଶୂ ନଣନ୍ଦ ଦିହେଁ ଗାଁକୁ ଗଲେ। କଷ୍ଟେମଷ୍ଟେ ଦି'ମୁଠା ଫୁଟାଇ କଚେରୀ ବେଳ ହେଲାରୁ ସ୍ୱାମୀକୁ ପରଷି ଦେଇ ଦେଖିଲା, ସ୍ୱାମୀ ରାଗରେ ପୂରି ରହିଛନ୍ତି। ତା' ସହିତ କଥା କହିଲେ ନାହିଁ। ନିକୁଟି[୨] ହୋଇ ଲଳିତା ପଚାରିଲା, ''କିଆଁ, କଥା କହୁନା?'' ବିମ୍ବାଧର ପ୍ରଥମେ କିଛି ଉତ୍ତର ଦେଲେନାହିଁ। ଅନେକକ୍ଷଣ ପରେ କହିଲେ, ମୋ' କର୍ମ ବଡ଼ ମନ୍ଦ! ଯେତେ ଯୁଆଡୁ କଲି, କେହି କହିଲେ ନାହିଁ, ଆମପାଇଁ ଯା କଲା। ଏଇ ଭଉଣୀ ତାର ତିନିଟା ତିନିଟା ପିଲାଙ୍କୁ ଆଣି ମୋ ବେକରେ ପଡ଼ିନଥିଲେ, ମୁଁତ ତୁମକୁ ନନା ପାଖେ ଛାଡ଼ିଦେଇ ସୁଖରେ ବି.ଏ. ପଢ଼ି ଏତେବେଳର କ'ଣ ହୋଇଥାନ୍ତି। ମୋର ସର୍ବନାଶ କରି ପୁଣି ବାଲିଙ୍ଗି[୩] ଦେଖ।'' ଲଳିତା ଆଖିରେ ଲୁଗାକାନିଟା ଝଟ୍ ପୋଛିଆଣି ମୃଦୁସ୍ୱରରେ କହିଲା, ''କରିଛ ତ, ଉଘେଇ[୪] ହଉଛ କାହିଁକି? ଯେତେ-ହେଲେ ତ ମା ଭଉଣୀ, ତୁମକୁ ସେମାନେ ମଣିଷ କରିନଥିଲେ ତୁମେ କୁଆଡ଼େ ଥାଆନ୍ତ? ତାଙ୍କୁ ନିନ୍ଦନା।''

ପିଲାଟିର ବୟସ ଆଠମାସ। ପିଲାଟି ହସିଲାଣି, ପେଟେଇଲାଣି, 'ଆ, ଆ' ହେଲାଣି, ଦାନ୍ତ ଗୋଟିଏ ଯୋଡ଼ିଏ ଦିଶିଲାଣି। ପିଲାଟି ବଡ଼ ସୁନ୍ଦର। ତାକୁ ଚାହିଁଚାହିଁ ଲଳିତାର ଭୋକ ଶୋଷ ମରିଯାଏ। ଏମିତି ସୁନ୍ଦର ପୁଅ କାହାର ଅଛି? ଏତ ଲଳିତାର କୋଟିନିଧି। ସୁନ୍ଦର, କଞ୍ଚାସୁନା ପରି ରଙ୍ଗ, ବଡ଼ବଡ଼ କଳାଆଖି ଯୋଡ଼ିକ, ଗୋରା କପାଳ ଉପରେ କୁଞ୍ଚୁକୁଞ୍ଚୁ ବାଳ। ପଦ୍ମବନରେ ଭଅଁର ଖେଳୁଛି ପରା। ଭିତର ପିଣ୍ଡାରେ ଖଣ୍ଡିଏ ଛୋଟ ମସିଣା ଉପରେ ଶୁଆଇ ରାନ୍ଧୁରାନ୍ଧୁ ଲଳିତା ଥରେ ଅନେଇଦିଏ, ମା ମୁଁହକୁ ଚାହିଁ ପିଲାଟି ହସିଦିଏ, ଲଳିତା ହୃଦୟରେ କିଏ ମଧୁବରଷା କରେ ପରା। ସତେ ଯିମିତି ଚମ୍ପାଫୁଲ ମାଳଟି କିଏ ବିଛେଇ ଦେଇଛି। ଲଳିତା ଦଉଡ଼ି ଆସି ପୁଅକୁ କୋଳରେ ଯାକିପକାଏ, ପେଟଭିତରେ ପୂରେଇ ରାନ୍ଧିବସେ। ପିଲାଟି କାନ୍ଦିଉଠିଲେ କହେ, ''ବାୟା ବାୟା!'' ଚାରିଟାବେଳେ ବୃନ୍ଦାବନ ସ୍କୁଲରୁ ଆସି ବହିପତ୍ର ରଖି, ଗୋଡ଼ହାତ ଧୋଇଲାକ୍ଷଣି, ପୁଅଟିକି ଚାହିଁଦିଏ। ତାର ଖିଆପିଆ ମନେ ରହେନାହିଁ। ନୂଆ ପୁଅକୁ କୋଳରେ ଯାକି ପଖାଳ ଖାଇବସେ। ଲଳିତା କିଛି କହିଲେ ଗେଲରେ କୁହେ, ''ନୂଆବୋଉ! ଦେଖ ଦେଖ, ନୂଆ ପୁଅକୁ ପଖାଳ ଗୁଣ୍ଡାଏ ଖୁଆଇ ଦେବିଟି!'' ତାକୁ ଚୁମ୍ବନକରି କୋଳରେ ଧରିଧରି ବୃନ୍ଦାବନ ବୁଲୁଥାଏ। ବଜାରରୁ ନାଲି ମସୁରୀଟିଏ, ଝୁଲଣୀଟା ଅଣା ସରିଲାଣି। ପୁଅ-ବାପର ବଡ଼ ଗେହ୍ଲା। କାମରୁ ଆସି ତାକୁ

(୧) କ୍ଷମା, (୨) ନିଉଛାଳି, ଅନୁନୟ, ବିନୟ, (୩) ଢମ, ମୁହଁତୋଡ଼; (୪) ଅନ୍ୟପ୍ରତି କରିଥିବା ସାହାଯ୍ୟ / ଉପକାରକୁ ତା ଆଗରେ ନିଜ ତୁଣ୍ଡରେ କହିବା।

ଟିକେ କୋଳରେ ନ ଧଇଲେ ବାପର ତୃପ୍ତି ହୁଏନାହିଁ। ପୁଅ ନା' ରାଜକୁମାର। ଡାକନ୍ତି, ରାଜା। ସତକୁ ସତ, ସେ ସଭିଙ୍କର ସ୍ନେହ-ରାଜ୍ୟର ରାଜା।

ଆଜିକାଲି କେତେଦିନ ହେଲା ପୁଅ ଦେହ ଭଲନାହିଁ। ଲଳିତା ସେବାଶୁଶ୍ରୂଷା କରୁଛି। କେତେ ଦିଅଁଦେବତା କତିରେ ମାନସିକ କରିଛି। ଦେହଯାକ କଣ ବିଷିରିପି ପରି ଘା ହୋଇଛି, ଯେତେ ଟୁଟୁକା ଟୁଟୁକି[୧] କରି ଭଲ ହବାକୁ ନାହିଁ। ଶେଷକୁ ଡାକ୍ତରଖାନାରୁ ଔଷଧ ଆସିଲା। ଘା' କେତେ ପରିମାଣରେ ଶୁଖିଗଲା। ମାସକ ପରେ ପୁଣି ହେଲା: ଏଥର ଗଦାଧର ମିଶ୍ର ଔଷଧ ଦେଲେ। ଚମ ଉପର ଘା ଶୁଖିଲା, କିନ୍ତୁ ପାଚିଯାକ ହେଲା। ପିଲାଟିର ଚାନ୍ଦମୁହଁ ମଉଳିଗଲା। ହାଡ଼ କଣ୍ଟା ରହିଗଲା।

ଝିପିଝିପିଆ ମେଘ ବରଷାରେ ଯେତେବେଳେ ଲଳିତା ନିଜର ହୃଦୟକୁ କାଟି ଶେଷ ବିସର୍ଜନ ହେଲା, ସେତେବେଳେ ତା'ର ଜ୍ଞାନ ଥିଲା କି ନ ଥିଲା। ପିତାର ପାଦଚିହ୍ନ ଘେନି ପୁତ୍ର ଜଗତରୁ ଚିର ବିଦାୟ ଗ୍ରହଣକଲା। ଦାଣ୍ଡ ପିଣ୍ଡା ତକ୍ତପୋଷ ଉପରେ ପଡ଼ି ବିମ୍ବାଧର ଆଖିରୁ ଉଷ୍ଣ ପ୍ରସ୍ରବଣ ଝରିଲା। ବିମ୍ବାଧର ବୁଝିଲା, ପୁଅର କି ରୋଗ! ଲଳିତା ଭାବିଲା ଶାଶୁର ଅଭିଶାପ। ଦୈବବିଧାନ ଏହିତା। ଦୈବଉପରେ ଲଳିତାର ରାଗହେଲା, ତାର ଛାତି ଖଣ୍ଡଖଣ୍ଡ ହୋଇଛି; ପ୍ରାଣଟି ଗଲେ ଭଲ ହୁଅନ୍ତା। ସେ ଏକାବେଳେ ବାୟାଣୀ ହୋଇଛି। ବୃନ୍ଦାବନ ଶିଶୁପରି କାନ୍ଦୁଛି। ସେଦିନ ହାଣ୍ଡି ଚୁଲ୍ଲିକି ଗଲାନାହିଁ। ଘରେ ଦୀପ ଲାଗିଲା ନାହିଁ। ଜଗତଟା କଣ ମାୟା ମନ୍ଦିର! ନାଟୁଆ, ନାଟୋଇ ପରି କଣ ସୁଆଙ୍ଗ ଖେଳିବାକୁ ମଣିଷ ସଂସାରକୁ ଆସେ ?

ଲଳିତା ସବୁବେଳେ ବାୟାଣୀ ପରି ହେଉଛି, ଯୋଉଠି ବସୁଛି ସେଇଠି, ଖାଇଲେ ଖାଉଛି, ନୋହିଲେ ନାହିଁ। ମୁଣ୍ଡ ବନ୍ଧା ନାହିଁ, କି ହଳଦିକଜଳ ନାହିଁ। ଅଳତା ବିହୁନେ ପାଦ ତଳିପା ଫାଟିଲାଣି। ଖାଲି ସବୁବେଳେ ମନେପଡୁଛି– ତା' ରାଜା, ତା ରଙ୍ଗପସରା, ତାର ସର୍ବସ୍ୱଧନ। ସତେ କଣ ସେ ଛୁଆଖାଇ ଡାଆଣୀ ? ପ୍ରମିଳା ଆସି କେତେ ବୁଝେଇଲେ। ପରେପରେ ପ୍ରମିଳାଙ୍କର ତିନୋଟି ପିଲା ପେଟରୁ ମରିଛନ୍ତି। ବୋଝିଆ ବଳଦ ପରି, ବୋଝବୁହା ସାର। ପେଟରୁ ମଲା ପୁଅଟିଏ ଜନ୍ମହେଲା କ୍ଷଣି ତାଙ୍କର ଚେତା ବୁଡ଼ିଯାଇଥିଲା। ଥରେ ତିନିମାସର ପିଲାଟି ମଲା। କଣ, ନୂଆ ବୟସ! କେତେ ପିଲା ହେବ, ତଥାପି ଲଳିତା ମନ ମାନେନାହିଁ।

ଦୁଃଖଟା କିନ୍ତୁ ବେଶିଦିନ ରହିଲା ନାହିଁ। ଚକର ପରିଧି ଘୁରିଲା ପରି ଦୁଃଖପରେ ସୁଖ, ସୁଖପରେ ଦୁଃଖ। ଲଳିତାର ଦିବ୍ୟସୁନ୍ଦର ଝିଅଟିଏ ହେଲା। ଲଳିତା ଦି'କଡ଼ା କଉଡ଼ିକୁ ତାକୁ ହରିଆମା ପାଲୁଣୀକି ବିକିଲା। ତାକୁ ଆଦର ନାହିଁକି, ଯତ୍ନ ନାହିଁ। ମନ ଭିତରେ ଅପାର ସ୍ନେହ ଥିଲେ ସୁଦ୍ଧା କେହି ତାକୁ ଗେଲକରନ୍ତି[୨] ନାହିଁ। ଦୈବବିଡ଼ମ୍ବନା କଥା ସେମାନେ ଭୁଲି

(୧) ଚେରମୂଳି ଔଷଧ, (୨) ଚୁମା ଦେବା।

ନାହାନ୍ତି । ପାଲୁଣୀ ଠୁକେଇ ଠୁକେଇ ଚାଲିଲା ବେଳକୁ ପୁଣି ପୁଅଟିଏ ହେଲା । ତାକୁ ବରଷେ ଚାରିମାସ ନୋହୁଣୁ ଆହୁରି ଗୋଟିଏ ପୁଅ ହେଲା । ତା' ପରେ ଆହୁରି ପୁଅଟିଏ ହୋଇ ତିନିମାସରେ ମରିଗଲା ।

ସୁଖଦୁଃଖର ସଂସାର । ବର୍ତ୍ତମାନ ଲଳିତା ଆଉ ଯୁବତୀ ନୁହେଁ । ଜୀବନର ତିରିଶ ବର୍ଷ ପୂର୍ଣ୍ଣ ନୋହୁଣୁ ଆଠ ପିଲାର ମା । ତାର ରଙ୍ଗ କୁଆଡ଼େ ଗଲା, ତା' ରୂପ କୁଆଡ଼େ ଗଲା । ଚାରି ପୁଅ, ଦୁଇ ଝିଅକୁ ଘେନି ତା' ଜୀବନ ଭାରଗ୍ରସ୍ତ । ତା' ଉପରେ ପୁଣି ସୂତିକା ଝାଡ଼ାରେ ତା' ଦେହ ଶୀର୍ଣ୍ଣ, ଆଉ ପାଲୁଣୀର ବିଭାକଥା ଚିନ୍ତାରେ ଅସ୍ଥିଚର୍ମ ସାର । ପାଲୁଣୀକି ଏଗାର ପୂରିଗଲାଣି । ବିଭା ନ ଦେଲେ ନ ଚଳେ । ଯେତେହେଲେ ବ୍ରାହ୍ମଣ କୁଳ । ଅଜା ଆଇ ବର ଖୋଜି ଲାଗିଛନ୍ତି ।

କିନ୍ତୁ ବାପର ଭାବନା ନାହିଁ । ପ୍ରଥମ ଯୌବନର ମୋହମଦିରା-ପାନ ଶେଷହୋଇଛି । ଲଳିତା ଆଉ ତାଙ୍କ ସୁଧାଦୃଷ୍ଟିଭଗିନୀ ନୁହେଁ । ବର୍ତ୍ତମାନ ସେ ନନ୍ଦିନୀର ପଣନ୍ତଧରା । ପରେପରେ ସନ୍ତାନ ହୋଇ ଲଳିତା ଏକାବେଳେ ଅସୁସ୍ଥ, ଯୌବନରେ ବୁଢ଼ୀ । ତାଙ୍କର ଦୁର୍ଦ୍ଦଶା ଦେଖି ବିଦ୍ୟାଧରଙ୍କର ମନରେ ବଡ଼ କଷ୍ଟହେଲା । ଏପରି ସମୟରେ ପ୍ରମିଳାଙ୍କ ସ୍ୱାମୀ ପ୍ରାଣରବନ୍ଧୁ ସୁଧୀର ସହିତ ଆତ୍ମୀୟତା ଘନୀଭୂତ ହେଲାଣି । ଦିନେ କଥା ପଡୁପଡୁ ସୁଧୀର କହିଲେ, ''ଭାର୍ଯ୍ୟା ତ ଘରସଜା ଅଇନା, ପୁରୁଷର କେବଳ ସ୍ତ୍ରୀ ଅଧୀନ ହୋଇ ଚଳିବା ଦୂଷର । ସେଥିରେ ସଂସାରରେ ବଡ଼ ବିଡ଼ମ୍ବନା ଭୋଗହୁଏ ।'' ଦୁଇ ବନ୍ଧୁର କେତେ ଯୁକ୍ତିତର୍କ ହେଲା । କ୍ରମେ ସୁଧୀରଙ୍କ ସଙ୍ଗ ପ୍ରଭାବରୁ ବିଦ୍ୟାଧର ପୁରୁଣା ଅଭ୍ୟାସଗୁଡ଼ିକ ନୂଆ କରିନେଲେ । ଲଳିତାର ଦୁଃଖର ଅବଧି ରହିଲା ନାହିଁ ।

ଝିଅକୁ ବାହା କରିଯାଇ ବାପଘରେ ସୁଖରେ ଚାରିମାସ ରହି ଫେରିଆସି ଦେଖିଲା ବେଳକୁ ଘରେ ହାଣ୍ଡି ମାଙ୍କଡ଼ଚିତ୍ ମାରୁଛି । ଘରର ଦୁର୍ଦ୍ଦଶା କହିଲେ ନ ସରେ । ବୃନ୍ଦାବନ ମୁଠାଏ ରୋଷାଇବାସ କରି ଖାଉଛି ବୋଲି ରୋଷାଇ ଘରଟା ରୋଷେଇଘର ପରି ଅଛି; ବାବୁଙ୍କର ତ ତିନିଚାରି ଦିନପରେ ଦେଖାଦର୍ଶନ ମିଳେ । ଏଥର ମଦର ମାତ୍ରା ବଢ଼ିଛି । ଘରର ଭଲଭଲ ଜିନିସଗୁଡ଼ିଏ କୁଆଡ଼େ ଅନ୍ତର୍ଦ୍ଧାନ । ବୃନ୍ଦାବନକୁ ପଚାରିଲାରୁ ସେ କହିଲା, ''ଭାଇନା ଜାଣନ୍ତି ।''

ଲଳିତାର ବୁଝିବାକୁ ବାକିରହିଲା ନାହିଁ । ଏମିତି ଜଳଜଳା ଜୀବନଟା ତାର ଜଗତରେ ରହି ସନ୍ତୁଳିହେବା ଅପେକ୍ଷା ମରଣ ସହସ୍ର ଗୁଣରେ ଭଲ । ରାଗରେ ନଳିନୀ ଆଉ ଫୁଲକୁ ଶୂଳିରେ ଚଢ଼େଇ ତାର ତୃପ୍ତି ହେଲାନାହିଁ । ପ୍ରମିଳା ସାଙ୍ଗରେ କାନ୍ଦିକାନ୍ଦି ଲମ୍ବଦିନଟା କଟାଇଲା । କେତେ ପାପକଲେ ଯେ ସ୍ତ୍ରୀ ଜନ୍ମ ପାଆନ୍ତି, ଏହା ସେ କଳନା କରିପାରିଲା ନାହିଁ ।

ଚାକିରୀ ଖୋଜିଖୋଜି ବୃନ୍ଦାବନ ଅସ୍ଥିରହେଲାଣି। ପନ୍ଦର ଟଙ୍କାର ସ୍କୁଲ ମାଷ୍ଟରି ତାକୁ ଆଉ ଭଲ ଲାଗୁନାହିଁ। କିନ୍ତୁ ଦୁଇଟା ମାଇନର୍ ପାଶ୍‌ଟାରେ ଏହାଠୁ ବଳି ବଡ଼ ଚାକିରି ବା ମିଳିବ କାହୁଁ? ପନ୍ଦର ଟଙ୍କାରୁ ଘରକୁ ମା କତିକି ପାଞ୍ଚଟଙ୍କା ପଠାଇ ବାକି ଟ୧୦ଙ୍କା ନୂଆବୋହୂ ହାତରେ ଦେଇ ବୃନ୍ଦାବନ ନିଶ୍ଚିନ୍ତ। ତାହାର ସେହି ମୋଟ ଲୁଗା, ମୋଟ ଭାତରେ ପରମାନନ୍ଦ। ଭାଇଭାଉଜ, ପୁତୁରାଝିଆରୀଙ୍କ ସୁଖରେ ସେ ମହାସୁଖୀ। ବୃନ୍ଦାବନ ସଉକି କାହାକୁ କହନ୍ତିଜାଣେ ନାହିଁ। ନେଡ଼ିରେ ନେଡ଼ିଏ ସୋରିଷତେଲ ହେଲେ ଗାଧୁଆ ସରେ, ସାବୁନ୍ ସାଙ୍ଗେ ଦେଖାସାକ୍ଷାତ୍ ନାହିଁ। ଆଳୁ ଭରତା, ବାଇଗଣ ଭରତା, ପଖାଳଭାତ, ଶାଗ ଖରଡ଼ା–ଏସବୁ ତାର ପ୍ରିୟ ଖାଦ୍ୟ। ଚୂଡ଼ାଭଜା ମୁଠାଏ ପାଟିରେ ପକାଇ ଓଳିଏ କଟାଇ ଦେଇପାରେ। ଛିଣ୍ଡା ସପ ଖଣ୍ଡକ ତାର ବିଛଣା। ପଚିଶ ବର୍ଷ ବୟସ ହେଲାଣି, ପିଲାଟି ପରି ସ୍ୱଭାବ। ଛନ୍ଦ, କପଟ କିଛି ଜାଣେନାହିଁ।

ଆଜିକି ବରଷେ ହେଲାଣି, ଭାଇଙ୍କ ଦରମା ପଇସା ଘରେ ପଶେନାହିଁ। ମାସକୁ ବଡ଼ ଜୋର ଟ.୧୦/-, ଟ୧୫ଙ୍କା ଦିଅନ୍ତି। ସଂସାରରେ ବଡ଼ କଷ୍ଟ। ଲଳିତା ଆପଣାର ଗହଣା-ଗଣ୍ଠି ବିକିଭାଙ୍ଗି, ଯାହା ବା ଛିଞ୍ଚିଥିଲା[୧], ସବୁ ମିଶାଇ ଲୀଳାବତୀକି ହାତକୁ ଦିହାତ କରିଛି।[୨] ମା ବାପ ସାହାଯ୍ୟ ହୋଇ ନଥିଲେ, ଶାଶୂଘରକୁ ପଠେଇ ପାରିଥାନ୍ତା କି ନା, ସନ୍ଦେହ। ଏବେତ ହାତରେ ଦି'ପଟି କାଚ ଝୁଲୁଛି। ବେକ କାନ ସବୁ ଲଙ୍ଗଳା। ମୋଟାମସିଆ ଧୋଇଶୁଖାଇ ପିନ୍ଧି ଦିନଯାଉଛି। ବୃନ୍ଦାବନର ଟ୧୦ଙ୍କା ତ ସମୁଦ୍ରକୁ ଶଙ୍ଖେ ପରି। ବୃନ୍ଦାବନ ଭାବନାରେ ବ୍ୟସ୍ତ। ଚାକିରି ଲାଗି ଚାରିଆଡ଼େ ଖୋଜିବୁଲୁଛି। ବିଧାତା ପ୍ରସନ୍ନଥିଲେ ସବୁହୁଏ। ରାମରତନ ମାରଓ୍ୱାଡ଼ି ଦୋକାନରେ ସାନ ଗୁମାସ୍ତା କାମ ଖାଲିହେଲା। ବୃନ୍ଦାବନ ଟ୨୫ଙ୍କା ବେତନରେ ସେଠି ଚାକିରି ପାଇଲା। ପହିଲି ଦରମାରୁ ଦି'ଟଙ୍କା ଭିକାରିଙ୍କି ବାଣ୍ଟି, ଲଳିତା ଦିଅରର ଉନ୍ନତିପାଇଁ ଠାକୁରଙ୍କୁ ଡାକିଲା।

ମାରଓ୍ୱାଡ଼ି ବୁଢ଼ା କଲିକତା ଯାଇଥିଲେ। ବୃନ୍ଦାବନ ଓ ସଦାନନ୍ଦ (ବଡ଼ ଗୁମାସ୍ତା) ହାତରେ ଗୋଟିଏ ଯୋଡ଼ିଏ ନିଲାମ ଧରିବାପାଇଁ ଦଶହଜାର ଲେଖାଁ ଟଙ୍କା ଦେଇଯାଇଥିଲେ। ବୃନ୍ଦାବନ ଆଠ ହଜାରରେ ନିଲାମି ମାଲଧରି, ବଡ଼ ସୁଯୋଗରେ କୋଡ଼ିଏ ହଜାରକୁ ତାକୁ ଆଉ ଜଣେ ମହାଜନକୁ ବିକିଲା। ମାରଓ୍ୱାଡ଼ି କଲିକତାରୁ ଫେରିଆସି ଦଶହଜାର ଟଙ୍କା ବଦଳି ୨୨ ହଜାର ଟଙ୍କା ପାଇ, ଆଉ ଘଟନା ଶୁଣି ଆଶ୍ଚର୍ଯ୍ୟହୋଇଗଲେ। କୋଡ଼ିଏ ପଚିଶ ବର୍ଷର ଟୋକାଟା, ଇଚ୍ଛାକଲେ ଦି ହଜାର ଟଙ୍କାତ ମାରିପାରିଥାନ୍ତା। ବୃନ୍ଦାବନର ଦୁଇବର୍ଷ ଚାକିରି ଭିତରେ ସେ ପଦେ ମିଛ କହିବାର ଦେଖିନେଲନାହିଁ। ବିଶ୍ୱସ୍ତ କର୍ମଚାରୀକୁ ପୁରସ୍କାର ସ୍ୱରୂପ ଟ୧୦୦/- ଗୋଟିଏ ସୁନାମୁଦି ଦେଲେ; ଆଉ ଦରମା ଟ୨୫ଙ୍କାରୁ ଟ୫୦ଙ୍କା କରି ବଡ଼ ଗୁମାସ୍ତା ପଦରେ ବାହାଲକଲେ।[୩]

(୧) ସଂଚୟ କରିଥିଲା, (୨) ବାହା [illegible], (୩) ନିଯୁକ୍ତ କରିବା।

ଦିନାକେତେ ଲଳିତାର ସୁଖରେ ଦିନଗଲା। ପିଲାମାନେ ଉକେଇଠୁଁ ମିଠେଇ ଖାଇବାକୁ ପାଇ ଆନନ୍ଦ ପ୍ରକାଶକରବାକୁ ଲାଗିଲେ।

ସାନ ପୁଅର ଟ୫୦ଙ୍କା ଦରମା ହୋଇଛି ଖବରପାଇ ପୁଅକୁ ବାହାକରିବାକୁ ମା'ର ମନ ବ୍ୟସ୍ତହେଲା। ନବ ଚୌଧୁରୀଙ୍କ ସାନ ଝିଅ ତରୁ ରୂପଗୁଣରେ ବୃନ୍ଦାବନ ଯୋଗ୍ୟା ଭାବି କଥା ଠିକଣା କରିବାକୁ ଦିନେ ରାତି ନ ପାହୁଣୁ କଟକରେ ଆସିପହଞ୍ଚିଲେ। ବିମ୍ବାଧର ଘରେ ନ ଥିଲେ। ନୂଆବୋହୂଠୁ ସବୁ କଥା ଶୁଣି ବୃନ୍ଦାବନର ମୁହଁ ଅନ୍ଧାରଦିଶିଲା। ସେ କିଛିକ୍ଷଣ ନିରବ ରହି ଧୀର ସ୍ୱରରେ କହିଲା, ''ଘରର ହାଲ ସବୁ ଜାଣି, ପୁଣି ମୋତେ ଏ ସବୁକଥା ପଚାରୁଛ, ନୂଆ ବୋଉ?''

ନୂ – ଘରର ହାଲ କ'ଣ? ଆପେ ଭଲ ତ, ସଂସାର ଭଲ।

ବୃ – ସତ କହିଲ, ଟିକେ ଭାବୁନା? ରଙ୍ଗ, ରାଜି ହେରିକାକୁ ମଣିଷ କରିବ କିଏ? କିନ୍ତୁ ହଠାତ୍ ସେ ରହିଗଲା। ଏତେ ଗୁଡ଼ାଏ ସ୍ପଷ୍ଟକଥା କହି ତାହାର ପ୍ରଗାଢ଼ ଲଜ୍ଜାହେଲା। ସେ ଚିରଦିନ ସରଳ, ବିଶେଷତଃ ନୂଆବୋଉ କତିଂରେ। ଲଳିତା ଦିଅରର ସ୍ୱଭାବ ଜାଣିଥିବାରୁ ଅଳ୍ପ ହସି କହିଲା, ''ଆପଣା ବାଟତ ପୁଣି ଓଳେଇବ?[୨]''

ବୃ– ଏଠି କଣ କିଏ ପର ଅଛି? ରଙ୍ଗ, ରାଜି ହେରିକାତ ମୋରି ପିଲା। ଭାଇନା କଣ ଏକା ତାଙ୍କର ବୋଲି କହିପାରିବେ। କେବେଁ ନୁହେଁ। ସେମାନେ ତୁମ୍ଭ ସ୍ନେହର ଯେମିତି ଦାବୀ କରନ୍ତି, ମୋଠି ବି ତାଉ[୩]। ମୁଁ ତାଙ୍କୁ ଛାଡ଼ିପାରିବିନାହିଁ।

ଦୀର୍ଘ ନିଃଶ୍ୱାସଟିଏ ଟାଣି ଲଳିତା କହିଲା – ''ବାମନ, ତୁମେ ଯାହା କରୁଛ ମୋ ପିଲାଙ୍କୁ ତା କିଏ କରିବ? ତା ବୋଲି କଣ ହାତକୁ ବିହାତ ହେବନାହିଁ?'' ବୃନ୍ଦାବନ ଉତ୍ତର ନ ଦେଇ ବାହାରକୁ ପଳାଇଗଲା। ''କକା କକା'' କହି ସାନପୁଅ ରସମୟ ପଛେପଛେ ଗୋଡ଼ାଇଲା। ସାନଝିଅ ଲବଙ୍ଗଲତା ମଧ୍ୟ ମା' କୋଳରୁ ଡେଇଁପଡ଼ି ଦଉଡ଼ିଦଉଡ଼ି କକା କତିକି ଗଲା। ଗୋସି ମା'[୪] ଏହା ଦେଖି ମନେମନେ ରାଗହୋଇ ସେହି ଦିନ ଗାଁକୁ ଗଲେ। ଉଚ୍ଚସ୍ୱରରେ ଗାଳି ଦେଉଁ ଦେଉଁ ତମାଳିନୀ ଲଳିତାକୁ ସବୁର ମୂଳକାରଣ ଧରିନେଇ, ତାହାର ପିତୃପିତାମହ ଉଦ୍ଦେଶ୍ୟରେ ସୁମଧୁର ବାକ୍ୟ ବର୍ଷଣକରିବାକୁ ଲାଗିଲେ। ତାହାର ପ୍ରଧାନ ଦୋଷ, ସେ ଏତେଗୁଡ଼ିଏ ପିଲାଙ୍କ ଜନ୍ମକରି ଦୁଇ ଭାଇର କମେଇ[୫] ସବୁ ତାଙ୍କ ପଛରେ ସାରୁଛି। ବଡ଼ବୋହୂ ନଣନ୍ଦର କଥା ଶୁଣି ଟିକେଈର୍ଷାନ୍ୱିତଭାବେ କହିଲେ– ''ହଁ, ବିମ୍ବାଧର ପାଉଛନ୍ତି ଟ୧୭ଙ୍କା, ବାମନ ପାଇଲା ଟ୫୦ଙ୍କା; ଦଶ ଦଶ ମାଣ ବିଲ, ସବୁ ସେଇ ବିମ୍ବାଧରଙ୍କ ପିଲା ପଛରେ। ଆଉ ଏଠି କମି, ମିନି ହେରିକା ପଛରେ ତ ଖରଚ ହଉଚି, ମୋ' ପିଲାଏ ଗଡ଼ିସଡ଼ିଗଲେ ତାଙ୍କ ତୁଣ୍ଡରେ ଟୋପାଏ ପାଣି ଦେବାକୁ କେହି ନାହିଁ। ଉମା ଆଉ ହେମନ୍ତର ନନା ଥାଆନ୍ତେ କି ସେମାନେ ଏଡ଼େ ହିନସ୍ତା ହୁଅନ୍ତେ।'' ତମାଳିନୀ ଶୁଣିପାରି ବଡ଼ବୋହୂ

(୧) ପାଖ, (୨) ନିଜ କଥା ନିଜେ ବୁଝିବା, (୩) ତାହା, ସେହିପରି, (୪) ଜେଜୀ, (୫) ରୋଜଗାର।

ସହିତ ପଟେ[୧] କଢିଆ ଲଗାଇଲେ, ଗାଧୋଇ ଆସି ମା' ମଧ ମିଶିଗଲେ। କମି, ମିନି ମଧ ମାଇଁକୁ ଦି'ପଦ ଶୁଣାଇଦେଲେ। ସେ ଦିନ ବଡ଼ ବୋହୂ ଉପାସରହିଲା। ରାଗରେ କୂଅମୂଳେ ବସି ଭାବିଲା, ''ବାପା ମା' ଥିଲେ କି ଏତେସରି ହୋଇଥାନ୍ତି? ପିଲା ଦି'ଟା ଭଲ ନଥାନ୍ତେ।'' ବିଧବାର ଦୀର୍ଘଶ୍ୱାସରେ ସନ୍ଧ୍ୟାର ଧୂସର ଆକାଶ କାନ୍ଦିଲା ପରା। କ୍ରମେ ଛାୟା ମ୍ଳାନତର ହୋଇ ରାତ୍ରିର ଅନ୍ଧକାରରେ ପରିଣତହେଲା, ତଥାପି ବୋହୂ ଉଠିଲାନାହିଁ।



## (୫)

ପ୍ରମିଳା ବଡ଼ଘର ବୋହୂ, ତାଙ୍କ କୋଠାକୁ ଲାଗି ସାନ ଚାଳଘରେ ଲଳିତା ଆଉ ତାର ସ୍ୱାମୀ ଥାଆନ୍ତି। ପ୍ରମିଳା ବଡ଼ଲୋକ, ଲଳିତା ଗରିବ ଲୋକ। ହେଲେ ମଧ ଲଳିତା ଓ ପ୍ରମିଳା ଏକପ୍ରାଣ। ଯେଉଁଠାରେ ଦୁଃଖର ଅନୁଭୂତି ସମାନ, ସେଠାରେ ଏକପ୍ରାଣତା ବିଦ୍ୟମାନ।

ପ୍ରମିଳାର ସ୍ୱାମୀ ସୁଧୀର କଲିକତାରେ ରହି ବି.ଏ. ପାଶ୍ କରିଛନ୍ତି, ଭାରି ବଡ଼ ଜମିଦାରର ପୁଅ। କିନ୍ତୁ ଧନ, ମାନ, ବିଦ୍ୟା ସବୁ ଥାଇ କେବଳ ଗୋଟିଏ ପଦାର୍ଥ ନଥିବାରୁ ପ୍ରମିଳା ପରି ପରମା ସୁନ୍ଦରୀ, ସର୍ବଗୁଣାଳଂକୃତା ବିଦୂଷୀର କପାଳ ଏକାବେଳେ ଫାଟି ଦି'ଖଣ୍ଡ ହୋଇଯାଇଥିଲା। ପ୍ରମିଳା କଲିକତାର ଝିଅ, ତାଙ୍କ ପିତା ଜଣେ ବିଖ୍ୟାତ ଓକିଲ। କିନ୍ତୁ ସବୁ ଥାଇ ନଥିଲା ଗୋଟିଏ କଥା। ସୁଧୀର ଚରିତ୍ରହୀନ, ସୁଧୀର ନିଶାଖୋର। ଲୋକ ଦେଖାଣିରେ ସୁଧୀର ମିଷ୍ଟାଳାପୀ, ଭଦ୍ର ଏବଂ ବିନୟୀ। ଏଡ଼େବଡ଼ ଜମିଦାର, ଅହଙ୍କାର ମୋଟେ ନାହିଁ। ଯେ ମାଗିଲା, ତାକୁ ଦଶପଚିଶ ଦେଇଦେଲେ, ପଇସାକୁ ଖାତିରି ନାହିଁ। ବନ୍ଧୁ ମହଲରେ ସୁଧୀର ଜ୍ଞାନୀ, ଦେଶର ଦଶର ଖବର ରଖନ୍ତି, ନିୟମିତ ଖବରକାଗଜ ପଢ଼ନ୍ତି, ସଂବାଦ ପତ୍ରରେ ତାଙ୍କ ପ୍ରବନ୍ଧାଦି ପଢ଼ି ଲୋକେ ତାଙ୍କୁ 'ବାହାବା'[୨] ଦିଅନ୍ତି। ତାଙ୍କ ସଙ୍ଗୀମାନେ କହନ୍ତି, ''ବନ୍ଧୁ କରିବ ତ ସୁଧୀର ବାବୁଙ୍କ ପରି ଲୋକ ସଙ୍ଗେ ବନ୍ଧୁତା କରିବ।'' ସୁଧୀର ଦାତା, ସାମାଜିକ ପାଞ୍ଚଟା କାର୍ଯ୍ୟ ଘେନି କିଛି ଚାନ୍ଦା ଆଦାୟ କରିବାକୁହେଲେ, ଆଗେ ସୁଧୀରଙ୍କ ନାମ ଖାତାରେ ଦେଖାଯାଏ। କିଏ ପାଞ୍ଚ ଦେଲେ, ସେ ଦଶ ଦେବେ; କିଏ ଦଶ ଦେଲେ, ସେ ପଚାଶ ଦେବେ। ତାଙ୍କର ଅନେକ ସତ୍‌କାର୍ଯ୍ୟ ସକାଶେ ସର୍କାରଠୁଁ ସେ ''ରାୟସାହେବ'' ଉପାଧି ମଧ ପାଇବା ଆଶାକରନ୍ତି। କିନ୍ତୁ ଭିତରେ ସୁଧୀର ପୋକକଟା ଫୁଲଟି ପରି। ମିସେସ୍ ନେଲସନ୍ ନାମ୍ନୀ ଜଣେ ଫିରିଙ୍ଗୀ ରମଣୀଠାରୁ ଆରମ୍ଭ କରି ସୁରବାଳା, ନଳିନୀ ଓ ଫୁଲ ପର୍ଯ୍ୟନ୍ତ ତାଙ୍କର ଅନୁଗ୍ରହଭାଗିନୀ। ଗୋଟିଏ ବୋଲି ପୁଅର ଏ ଦୁର୍ଦ୍ଦଶା ଦେଖି ସୁଧୀରଙ୍କ ବିଧବା ମାତା କାନ୍ଦି କାନ୍ଦି ଆସି କାଶୀ ହେଲେଣି। କିନ୍ତୁ ସୁଧୀରଙ୍କର ମତିଗତି ପରିବର୍ତ୍ତନ ହେବାର କେବେଁ[୩] କୌଣସି ଲକ୍ଷଣ ଦେଖାଯାଇନାହିଁ।

(୧) ଏକପାଖିଆ, (୨) ଧନ୍ୟବାଦ, ପ୍ରଶଂସା, (୩) କେବେ।

ଦିନ ଦି ପହରେ, ପ୍ରମିଳା ଦାସୀଦ୍ୱାରା ଲଳିତାଙ୍କୁ ନିଜ ଘରକୁ ଡ଼କାଇ ପଠାଇଲେ। ଲବଙ୍ଗକୁ କାଖେଇ ଲଳିତା ବନ୍ଧୁଘରକୁ ଗଲା। ଯାଇ ଦେଖିଲା, ପ୍ରମିଳା ଶଯ୍ୟାଶାୟିନୀ, ଜ୍ୱର ହୋଇଛି। କତିରେ ତାଙ୍କ ଶାଶୁ ବସି କାନ୍ଦୁଥିଲେ। ସାନ୍ତ୍ୱନାଦେଇ ଲଳିତା କାରଣ ପଚାରିଲା। ବୁଢ଼ୀ ଅଧିକ କାନ୍ଦିକାନ୍ଦି କହିଲେ, ''ମା', କପାଳ ପୋଡ଼ିଛି, ଆଉ କଣ ହୋଇଛି। କି କୁକ୍ଷଣରେ ପୁଅର ମା' ହୋଇଥିଲି, କେତେ ଦିଅଁ ଦେବତାଙ୍କୁ ଡାକି ପୁଅ ପାଇଥିଲି; ପିଲା ହେଉନଥିଲା ବୋଲି ଶାଶୁ ପୁଅଙ୍କୁ ବିଭା କରିବାକୁ ବସିଥିଲେ, ହାୟ, ଆଜି ସେହି ଆଦରର ଧନ ତଣ୍ଟିରେ ଛୁରୀ ଦେଉଛି। ବୋଉର ମୋର ସୁନାରଙ୍ଗ କାଳି ହେଲା, ଚାନ୍ଦପରି ମୁହଁ ମଉଳି ଗଲା, ଖୋଜିଖୋଜି ବୋହୂକଲି ଲକ୍ଷ୍ମୀଟିଏ, କପାଳ ମନ୍ଦ, ସେ ବୋହୂହେଲା ପୁଅର ଦି'ଆଖିର ବିଷ। ମାସେହେଲା ପୁଅ ଅନ୍ତଃପୁରକୁ ଆସିଲାନାହିଁ। ଚାକର ଦାସୀ ଖବର ନେଇଗଲେ, ଖବର ନ ପାଇ ଫେରିଆଇଲେ। ବାବୁ ବାହାରେ ବାହାରେ ଦିନ କଟାଉଛନ୍ତି। ଶାଶୁ ବୋହୂ ଆମେ କାନ୍ଦିକାନ୍ଦି ଚାରିକାନ୍ଥ ଭିତରେ ପଚିଲୁଣି। ମା', ତୁମେ ରାଜବାବାଙ୍କୁ କୁହ, ଟିକେ ଅଭାଗିନୀକୁ ଦୟାକର। ସେ ତାଙ୍କର ବିଶେଷ ବନ୍ଧୁ। କେଜାଣି କଥା ରକ୍ଷା କରିବେ।'' ଲଳିତା ଆଖି ପୋଛୁପୋଛୁ କହିଲା, ''ମା' ଠାକୁରାଣି, ମୋ ଦଶାତ ଜାଣିଛ, ଦୁଇଦିନ ହେଲା ତାଙ୍କର ମୋ' ସଙ୍ଗେ କଥାବାର୍ତ୍ତା ନାହିଁ, ଏପରି ପୋଡ଼ା କପାଳ ଘେନି ମା' ଜଗତକୁ ଆସିଲି।''

''ଯାହା ଇଚ୍ଛା ଭଗବାନର। ହରି, ତୁମେଇ ମାରିବ, ତୁମେଇ ତାରିବ।'' କହି ବୁଢ଼ୀ ଆରଘରକୁ ଗଲେ। ଲଳିତାକୁ ଏକାନ୍ତରେ ପାଇ ପ୍ରମିଳା ଟାଣିଆଣି କତିରେ ବସାଇଲା। ତାହା କୋଳରେ ମୁହଁ ଲୁଚାଇ ଅନେକ ବେଳଯାଏ କାନ୍ଦିଲା। ଲଳିତା ମଧ କାନ୍ଦିଲା, କିଛି ନବୁଝି ଲବଙ୍ଗ ମଧ ପାଟିକରି କାନ୍ଦିଲା। ପିଲାଟିକୁ ତୁନି କରିବାକୁ ପ୍ରମିଳା କାନିରେ ଆଖି ପୋଛିଲେ। ତାଙ୍କ ରୂପ ଦେଖି ଲଳିତାର ଭୟହେଲା। କ୍ଷୀଣକଣ୍ଠରେ ପ୍ରମିଳା କହିଲେ, ''ଏ ଜୀବନ ରଖିବିନାହିଁ, ଏଥର ନ ପଚାରିଲେ ବିଷଖାଇ ମରିବି। କି ଦୋଷରେ ଅଭିଗିନୀକି ତ୍ୟାଗ କଲେ? ଆଗରେ ଚିଡୁଥିଲି, ଗାଳିଦେଉଥିଲି, କିନ୍ତୁ କିଛି ଫଳ ହେଲାନାହିଁ ଦେଖି ସବୁ ଛାଡ଼ିଲି, ଯା, ଇଚ୍ଛା ତା' କଲେ, ତଥାପି ଶାନ୍ତି ନାହିଁ। ଟିକେ ଭିତରକୁ ଆସୁଥିଲେ, ତା ବନ୍ଦ କଲେ, ଦିନାନ୍ତେ ଦଣ୍ଡେ ଦେଖିବାକୁ ଦେଲେନାହିଁ। ଭଉଣୀ, ନାରୀ କ'ଣ ପାଷାଣ, କେତେ ସହିବ? ଯାହା ଗୋଡ଼ଧରି ଆମେ ପଡ଼ିଛୁଁ, ଯାହାଙ୍କୁ ଦେବତା ଭିନ୍ନ ଅନ୍ୟ କିଛି ଭାବି ପାରୁନାଁ, ଯାହାଙ୍କୁ ପତି ପରମଗୁରୁ କହି ହୃଦୟର ଷୋଳଅଣା ଭକ୍ତି ଦେଲୁ, ମାବାପାଙ୍କୁ ଛାଡ଼ିଲୁଁ, ଭାଇଭଉଣୀଙ୍କି ପର କଲୁ, ଆତ୍ମୀୟସ୍ୱଜନଙ୍କୁ ତ୍ୟାଗ କଲୁ, ସ୍ୱାମୀ ଲଙ୍କାକୁ ଗଲେ ଲଙ୍କାକୁ ଗଲୁ, ବଣକୁ ଗଲେ ବଣକୁ ଗଲୁ, ସାତ ସମୁଦ୍ର ତେର ନଦୀ ପାରିରେ ସ୍ୱାମୀ ରହିଲେ, ସେଠି ହେଲା ଆମର ଘରଦ୍ୱାର। ଯା'ଙ୍କୁ ଚହ୍ନି ନ ଥାଇ, ଜାଣି ନଥାଇ, ସେହି ହେଲେ ଆମ ମା', ବାପ, ଭାଇ, ଭୌଣୀ। ସେଠି ସ୍ନେହ ପାଇଲେ ସହି, ଝାଡ଼ୁପାହାର ପାଇଲେ ସହି। ଭଉଣୀ! କହ, କଣ

ପ୍ରତିକାର ଅଛି। କଣ କରିବି, ହିନ୍ଦୁଘର ବୋହୂ ଘରକଣରୁ ବାହାରିନାହିଁ, ସ୍ୱାମୀ କୁଆଡ଼େ ଅଛନ୍ତି, କଣ କରୁଛନ୍ତି, କିମିତି ଜାଣିବି? କିଏ ଟିକେ ଖବର ଦବ? ମୋ' ସକାଶେ ଟିକେ ବିମ୍ୱାଧର ବାବୁଙ୍କୁ କୁହ, ଲୋ ଭୌଣି! ତୁମ ହାତଓଠ ଧରୁଛି, ଟିକେ ମୋ କଥା କହିବ ଲୋ। ମୁଁ ବଡ଼ ଅଭାଗିନୀ।'' କହୁଁ କହୁଁ ପୁଣି କାନ୍ଦିଲେ। ଲଳିତା କାଠ ମୂର୍ତ୍ତି ପରି ସବୁ ଶୁଣିଲା। ସେତ ନିଜେ ପୋଡ଼ାକପାଳୀ, ପ୍ରମିଳାର ଦୁଃଖ ଦୂର କରିବାର ତାର ସାଧ୍ୟ କଣ? କିନ୍ତୁ ନାରୀଜାତି ଉପରେ ବଡ଼ ରାଗହେଲା। ନାରୀତ ନାରୀର ଦୁଃଖର ମୂଳ କାରଣ। ସେ ତାଙ୍କରି ଉପରେ ବିଷ ବର୍ଷଣକରି କହିଲା, ''ଭୌଣି! ନାରୀ ହୋଇ ନାରୀର ସର୍ବନାଶ କରନ୍ତି। ନାରୀ ହୋଇ ଏପରି ପିଶାଚୀ।''

ପ୍ରମିଳା ଉତ୍ତର କଲା – ଭୌଣି! ପୁରୁଷ ଠିକ୍ ଣା ଥିଲେ କିଏ ତାଙ୍କର କଣ କରନ୍ତା? ନାରୀକୁ କହନ୍ତି ପରା, ଅବଳା ଦୁର୍ବଳା, ଆଉ ଚରିତ୍ର ରଖିବା ବେଳକୁ କିଏ ଦୁର୍ବଳ, କିଏ ସବଳ ଜଣାଯାଏ ଯେ! ହାୟରେ ପୋଡ଼ା କପାଳ! ପୁଣି ତାଙ୍କ ଚରିତ୍ର କଥା କହୁଛେଁ, ସବୁ ପୋଥିପାଞ୍ଜିତ ତାଙ୍କରିପାଇଁ! ତାଙ୍କ ଚରିତ୍ରଟା କୋଉ କାଳେ ଖୋଜାପଡ଼େ ମ?

ଲ– ତାଙ୍କୁତ ସାତଖୁଣି ମାଫ୍, ଆମେ ପଦାକୁ ଚାହିଁଦେଲେ ଆମର ଦୋଷ, ଆମେ ଅସତୀ, ଆଉ ଆମରି ଆଖି ଆଗରେ ଆମ କଲିଜା ଦୁହିଁ, ଦଶ ହଜାର ସ୍ତ୍ରୀ ଘେନନ୍ତୁ, ସେଥିରେ ତାଙ୍କୁ ଲୋକେ ତତଲା ପାଣିରେ ଗୋଡ଼ ବୁଡ଼େଇଛି ବୋଲି କହିହେବନାହିଁ। ହାୟରେ ସମାଜ! ଆମ ଦୀର୍ଘ ନିଃଶ୍ୱାସରେ ଫାଟି ପଡୁନାହିଁ ଆମ ସମାଜ।

ପ୍ର– ସମାଜଟା ପୁଣି ଗୋଟାଏ କଣ? ସବୁ ଦୋଷ ପୁରୁଷଙ୍କର। ବାପ, ଭାଇ, ସ୍ୱାମୀ, ଆତ୍ମୀୟକୁଟୁମ୍ବ, ଗୁରୁ ପୁରୋହିତ, ସବୁ ଆକାରରେ ପୁରୁଷ ଆମରି ଉପରେ ଚଢ଼ାଉକଲେ। ହଁ, ଆମେ ତାଙ୍କଠୁ ଦୁର୍ବଳ, ସାନ, କିନ୍ତୁ ଆମକୁ ଦୟାକରିବା ତ ତାଙ୍କର ଧର୍ମ? ତାଙ୍କ ଗୋଡ଼ ଧୂଳିକି ଆମେ ମନେକଲୁ ମହାପବିତ୍ର, ତାଙ୍କ ପାଦଧୂଆ ପାଣି ହେଲା ଆମ ଗଙ୍ଗାଜଳ, ଆଉ ଆମ ଦୁଃଖଦୁର୍ଦ୍ଦଶାକୁ ଚାହିଁବାକୁ ତାଙ୍କୁ ବେଳ ନାହିଁ କି, ମନ ନାହିଁ? ଆମେ କେତେ କାନ୍ଦିକାଟି ଆୟୁଷ ସାରିବୁ?

ଲ– ଆଉ ଆମର ଚାରା କ'ଣ? ଆମ ବାବୁ ପରା କହନ୍ତି– ମାଇକିନାଗୁଡ଼ା ତୁମର ଗୋଟାଏ ମନ ଅଛି, ତୁମ ଭିତରେ ଆତ୍ମା ଗୋଟାଏ ଅଛି?

ପ୍ର– ସେ ପରା କହନ୍ତି, ତୁମେ ଘରସାର, ଗୋଟିଏ ବହୁମୂଲ୍ୟ ପଦାର୍ଥ- ତମ ଆମର ସମ୍ବନ୍ଧ ସେତିକି। ସୁନାଖଣ୍ଡକ ବାକ୍ସରେ ଥାଉ, ତା' ବୋଲି ପୁରୁଷ ଉପରେ ତୁମେ ଷୋଳ'ଣା ଦାବୀକରି ବସିବ, ଏ କୋଉ ଗାଁ କଥା? ତୁମେ ଭୋଗ୍ୟ ବସ୍ତୁ, ଆମେ ଭୋଗୀ! ତୁମ ମନ ସହିତ ଆମ ମନମିଳିବା କି ପ୍ରୟୋଜନ! ଭାତଖିଆଥାଳି ସହିତ କଣ ଭାତ ଖାଇବା ଲୋକ ସମାନ? ତାର ଦେଖିବା କଥା ଥାଳିଟି ପରିଷ୍କାର ଅଛି କି ନାହିଁ।

ଦୀର୍ଘନିଃଶ୍ୱାସ ଟାଣି ଲଳିତା କହିଲା, ''ଆମେ ଯେ ମଣିଷ, ଏହା କୋଉ ଦିନ • ସେମାନେ ଭାବିବେ ?''

ଗମ୍ଭୀର ବିଷାଦ ସହ ପ୍ରମିଳା କହିଲା – ''ସୂର୍ଯ୍ୟ ପଶ୍ଚିମରେ ଉଦୟହେଲେ ସୁଦ୍ଧା ତା' ହବ କି ନା ସନ୍ଦେହ।''

ଲ– ମୁଁ ଭାବେ, ମଣିଷ ଅନେକ ଜନ୍ମ ବହୁତ କୁକର୍ମ କରିକରି ଶେଷକୁ ବିଧାତା ତାକୁ ନାରୀ-ଜନ୍ମ ଦିଅନ୍ତି। ଯା, ସଂସାରରେ ମାଇକିନା[୧] ହୋଇ ଜନମ ଯା', ସବୁ କର୍ମ ଫଳ ଏକାଠି ଭୋଗିବୁ। ନୋହିଲେ ଜଗତଯାକ ମାଇକିନାଙ୍କର ଏତେ ଦୁଃଖ କାହିଁକି ?

ପ୍ର– କଣ କହିବି, ଭୌଣି ! କିମିତି ବା କହିବି, ଏ ଆମର କର୍ମଫଳ ? ଆମର ଯେ କିଛି ଦୋଷ ନାହିଁ, ଏହା ବା କିମିତି କହିବି ? ଦି'ହାତରେ ସିନା ତାଳିବାଜେ।

ଲ– ସେହିଯୋଗୁଁ କହୁଥିଲି ସିନା, ନାରୀର ଶତ୍ରୁ ନାରୀ। ପୁରୁଷ ଏକ ପକ୍ଷରେ ଦେଖିବାକୁଗଲେ ସ୍ତ୍ରୀ ହାତରେ ଖେଳନା ! ମା ଭୌଣୀ ହାତରେ ପଡ଼ି ପୁରୁଷ ଆପଣା ସ୍ତ୍ରୀକୁ ଦୁଃଖଦିଏ, ପୁଣି ବାହାରର ସ୍ତ୍ରୀ ହାତମୁଠା ଭିତରେ ରହି ଆପଣା ଭାର୍ଯ୍ୟାକୁ ପରିତ୍ୟାଗକରେ। ପୁରୁଷ ପୁରୁଷ ବଶରେ ରହି ସ୍ତ୍ରୀ ତ୍ୟାଗକରିଛି, ଯା'ତ ମୁଁ ଦେଖିନାହିଁ।

ପ୍ର– କିନ୍ତୁ ଭୌଣୀ ! ସ୍ତ୍ରୀ ସମାଜର ଦୁର୍ବଳତା ସକାଶ ଦାୟୀ କିଏ ?

ଲ– ଦାୟୀ ପୁରୁଷ, ପୁରୁଷର ପୋଥିପାଞ୍ଜି।

ପ୍ର– ଫଳସ୍ୱରୂପ, ଆମେ ବି ଭଲ ମା' ହୋଇପାରିଲୁ ନାହିଁ, କି ଆମ ପୁଅଝିଅ ବି ମଣିଷ ହେଲେନାହିଁ। ହାୟ ହାୟ ! ଏସବୁ ଦୁଃଖ ଅତ୍ୟାଚାର ଯିବା ସକାଶ କେବେ ସୁଦିନ ଆସିବ ? ପୋକରା[୨] ଗଛରେ କଣ ଭଲ ଫଳ ଫଳେ ?

କଥା କହୁଁକହୁଁ ସନ୍ଧ୍ୟା ହେଲା। ଘରେ ଅନେକ କାମ ପଡ଼ିରହିଛି କହି ଲଳିତା ବିଦାୟ ନେଲା। ରଙ୍ଗ, ରାଜି, ଆଉ ରତନା ସ୍କୁଲରୁ ଆସିଲେ। ପଖାଳ ଗଣ୍ଡିଏ, ଗୋଟିଏ ଗୋଟିଏ ପିଆଜ ଘିନି[୩] ଖାଇଲା ବେଳକୁ ରତନ ଆଖିରୁ ପାଣିବାହାରିଲା। ସେ କାନ୍ଦିକାନ୍ଦି କହିଲା, ''ମୁଁ ଖାଇପାରିବି ନାହିଁ; ତରକାରୀ ଦେ, ବୋଉ।'' ଘରେ ତରକାରୀ ନଥିଲା। ବାଇଟାବେଳେ ଶୁଖୁଆ ପୋଡ଼ା ଗେନି[୩] ଭାତ ଖିଆ ହୋଇଥିଲା। ସାନ୍ତ୍ୱନା ଛଳରେ ବୋଉ କହିଲା, ''ଦାଦା ପରା ଗାଁକୁ ଯାଇଛି। କାଲି ଆସିଲେ କେତେ ନଡ଼ିଆ, ଉଖୁଡ଼ା ହରିକା ଆଣିବ। ମୁଁ କାକରା ପିଠା କରିଦେବି।'' ଦାଦା ନା' ଶୁଣି ରତନା ତୁନି ହେଲା।

ସେତେବେଳକୁ ରାତି ୧୨ଟା। ପିଲାମାନେ ଗଣ୍ଡିଏ ଗଣ୍ଡିଏ ଖାଇ, କିଏ କେଉଁ କଣରେ ପଡ଼ିଲେଣି। ବର୍ଷାଦିନର ରାତି। ଝମ୍‌ଝମ୍ ମେଘ ବରଷୁଛି। ଘଡ଼ଘଡ଼ି ଘଡଘଡ଼ି ରଡ଼ିଛାଡ଼ିଛି, ଝଲ୍‌ଝଲ୍ ବିଜୁଳୀ ହସୁଛି; ବାହାର ଆଡ଼ ଘୋର ଅନ୍ଧାର। ଥରେଥରେ ବିଲୁଆ

(୧) ନାରୀ, (୨) ପୋକଖିଆ, ଦୁର୍ବଳ, (୩) ଘେନି, ସହିତ।

ପାଟିରେ ନିଦ୍ରାହୀନର ଅନ୍ତସ୍ଥଳ କମ୍ପିଉଠୁଛି। ଗଛ ପତରରୁ ଝରଝର ପାଣିଖସିବା ଶବ୍ଦ ସହିତ ବେଙ୍ଗର ଡାକ ମିଶି ଏମିତି ଗୋଟିଏ ନିଦୁଆ- ରାଗିଣୀ ସୃଷ୍ଟି କରିଛି ଯେ, ନିଦ ନ ମାଡ଼ିଲା ଲୋକର ଆଖିପତା ଢୁଳାଇପଡ଼ିବ। ଏମିତି ମେଘବରଷା ନିଃଶୂନ ରାତିରେ କାହାର ଆଖିକି ବା ନିଦ ନ ଆସିବ।

କିନ୍ତୁ ନିଦ ଆସିନାହିଁ ଜଣକର। ଲଣ୍ଠଣଟି ଅଳପ ଟିକେ ଟେକି ଗୋଟିଏ କଣରେ ରଖିଦେଇ ଥରେ ଘର ଭିତରକୁ, ଥରେ ବାହାରକୁ, ଥରେ ଦାଣ୍ଡପିଣ୍ଡାକୁ ଥରେଥରେ ପିଲାଙ୍କ କତିକି[1] ଯାଆସ କରୁଛି ଲଳିତା। ଆଜି ତାହାର ପ୍ରାଣ ବିଶେଷ ଉତ୍କଣ୍ଠାପୂର୍ଣ୍ଣ। ରାତି ବାରଟା ହେଲା ବିମ୍ବାଧରଙ୍କର ଦେଖାନାହିଁ। କୁଆଡ଼େ ଯାଇଛନ୍ତି, କେହି ଜାଣେନାହିଁ। ଲଳିତା ନ ଖାଇ ନ ପିଇ ବାଟ ଚାହିଁବସିଛି। କାନ ଖାଲି ଦାଣ୍ଡଦୁଆର ପଟକୁ। ବରଷା ଶବ୍ଦଟା କାନକୁ ଶୁଭୁଛି, ଯେମିତି କିଏ ଗୋଟାଏ ଡାକିଦେଲା ପରା! ଲଳିତା ଦଉଡ଼ି ଯାଇ ଦେଖି ଆସୁଛି, ମାତ୍ର କେହି ନାହିଁ। ମୂଷାଟା ଖୁଡ୍ରୁଖୁଡ୍ରୁ ହେଲେ, ଲଳିତା ଭାବୁଛି ବିମ୍ବାଧରର ଯୁତାଶବ୍ଦ, ଟିକେ କବାଟ ଫିଟାଇ ଅନାଇଦେଉଛି। ବାହାରେ କିଟିକିଟ୍ ଅନ୍ଧାର, ମୁହଁକୁ ମୁହଁ ଦିଶୁନାହିଁ। ଏମିତି ଅନ୍ଧାରରେ କିମିତି ଏକା ଘରକୁ ଆସିବେ? ତା' ପ୍ରାଣ କାନ୍ଦିଉଠୁଛି। ଆର ଘରୁ ବୃନ୍ଦାବନ ଆସି ଡାକିଲା, '', ନୂଆ ବୋଉ! ଇମିତେ ରାତିଯାକ ବୁଲୁଥିବ କିହେ? ଭାଇନା'ଙ୍କ ଆସିବାର କଣ ଠିକଣା? ତୁମେ ଯାଅ ଶୋଇବ, ମୁଁ ଦୁଆର ଫିଟେଇଦେବି।''

''ହଁ ମୁଁ ଶୋଉଛି'' କହି ଲଳିତା ଆଉ ଥରେ ଦାଣ୍ଡପିଣ୍ଡାକୁ ଗଲା। ତା' ଆଖିରେ ଲୁହ ଟଳଟଳ। କିନ୍ତୁ ବିମ୍ବାଧରଙ୍କର ଦେଖାନାହିଁ।

ଘଣ୍ଟାଏ ଗଲା, ଦୁଇ ଘଣ୍ଟା ଗଲା। ଶେଷକୁ ଲଳିତା ବାଧ ହୋଇ ବୃନ୍ଦାବନକୁ ଡାକିଲା। କିନ୍ତୁ କଣ କହିବ? ରାତି ପ୍ରାୟ ୨ଟା, ଏପରି ଘୋର ବର୍ଷା, ଏପରି ଘୋର ଅନ୍ଧାର, ଏ ଅସମୟରେ ବୃନ୍ଦାବନ କୁଆଡ଼େ ଯିବ? ଯିବା ସ୍ଥାନଟା ଠିକଣା ଥଆନ୍ତା ଭଲା! ଏକାନ୍ତ ଅସହାୟ। ଲଳିତାର ଛାତି କୋହରେ ଫାଟିପଡ଼ିଲା। ଆଉ ସମାଳି ହେଲାନାହିଁ। କାନ୍ଦି କାନ୍ଦି କହିଲା, ''ବାମନ! ଭାଇନା କଣ ଘରକୁ ଆଜି ଆସିବେ ନାହିଁ? ଏଡ଼େ ଭୟଙ୍କର ବରଷା! କିଏ ଯାଇ ଭଲା ଦେଖନ୍ତା! ବାମନ, ତୁମ ବିନା ମୋର-'' କଥା ଶେଷ ନୋହୁଣୁ ବୃନ୍ଦାବନ କଥାର ଖିଅଧରି କହିଲା, ''ମୁଁ ଯାଆନ୍ତି! ହେଲେ ଯିବି କୁଆଡ଼ିକି? ଭାଇ କୋଉଠିକି ଯାଇଛନ୍ତି, କିଛି କହିଛନ୍ତି କି?

ଲ- ମୋତେ କଣ କେବେ କହିଯାଆନ୍ତି କି କୁଆଡ଼େ ଯିବେ ବୋଲି? ମୁଁ କିମିତି କହିବି? ବୃନ୍ଦାବନ ବୁଝିଲା। ଛତାଟିଏ ଧରି ମିଟିମିଟି ଲଣ୍ଠଣ ଆଲୁଅରେ ପଦାକୁ ବାହାରି ପଡ଼ିଲା। ଲଳିତା ବାରଣ କରୁକରୁ ରହିଗଲା।

ଇୟା ରାତିଟା ଯେ ସରୁନାହିଁ। ଲଳିତା ଏ ପିଣ୍ଡା ସେ ପିଣ୍ଡା ହେଉ ହେଉଁ, ମନେ ମନେ ସହସ୍ର ଦିଅଁ ଦେବତାଙ୍କୁ ଡାକୁଡାକୁ ଘଣ୍ଟାକ ପରେ ଘଣ୍ଟା କଟାଇଲା[2]। ବୃନ୍ଦାବନ

(୧) ପାଖ, ନିକଟ; (୨) ବିତେଇବା।

ଫେରିନାହିଁ। ସେ ଦିନ ତାହାର ମନ ବାୟା ପରି। ଗଭୀର ବିଷାଦରେ ଭାବିଲା, ''ଭଗବାନ୍ କଣ ଦୁଃଖିର ପ୍ରାର୍ଥନା ଶୁଣନ୍ତି ନାହିଁ, ନା ଛାର ଅରକ୍ଷିତିଆଣୀ ମାଇକିନିଆ ଝୁଅର କାକୁତି ତାଙ୍କ ଶ୍ରୀଛାମୁରେ ପହଞ୍ଚୁନାହିଁ।''

କିନ୍ତୁ ଭଗବାନ୍ ପ୍ରାର୍ଥନା ଶୁଣିଲେ। ରାତି ସାଢ଼େ ଚାରିଟା ବେଳକୁ ଟଳିଟଳି, ମଦରେ ଅଧା ଅଚେତ ବିମ୍ବାଧର, ବୃନ୍ଦାବନ ସହିତ ଘରକୁ ଆସିଲେ। ତାଙ୍କ ମୂର୍ତ୍ତି ଦେଖି ଲଳିତା କାଠ[୧] ପରି ହୋଇଗଲା।

ସ୍ୱାମୀ ତ ! କଣ କରିବ ! ଗାଳି ଖାଇବା ସତ୍ତ୍ୱେ ଦେହରୁ ଜାମା ମୋଜା ହେରିକା ଓହ୍ଲାଇ ଦିଅର ଭାଉଜ ଧରାଧରି କରି ମସିଣାରେ ବସାଇଲେ। ଲଳିତା ରନ୍ଧା ଘରୁ ବଡ଼ ଯତ୍ନରେ ରଖିଥିବା ଭାତତିଅଣ ଆଣି କତିରେ ଥୋଇଲା। ସେତେବେଳକୁ ତାଙ୍କର ଅନେକଟା ନିଶା ଛାଡ଼ିଯାଇଥାଏ। ସ୍ୱାମୀ ଭାତ ଖାଉଖାଉ ଲଳିତା ପଚାରିଲା, ''ଏତେ ରାତିଯାକ କୁଆଡ଼େ ଥିଲ'' ଅତି ଅକଥ୍ୟ ଭାଷାରେ ତାହାର ଉତ୍ତର ଦେଇ ବିମ୍ବାଧର ଭାତ ଖାଇବାରେ ଲାଗିଲେ।



କିଛିକ୍ଷଣ ପରେ ପୁଣି ଲଳିତା ପଚାରିଲା, ''ଏଡ଼େବରଷାରେ ଏମିତି ବାହାରେ ବାହାରେ ବୁଲିବ, ଏ ଭଲ କଥା ? ଆମକୁ ଡର ମାଡୁଛି।'' ସ୍ତ୍ରୀ କଥାରେ ବିମ୍ବାଧର ଭୟଙ୍କର ରାଗିଗଲେ। ହଠାତ୍ ଉଠି ଦୁଇ ହାତରେ ଭାତ ତରକାରୀ ଥାଳି ଫୋପାଡ଼ି ମାଇଲେ। ଲଳିତା ଦେହରେ ବାଜୁବାଜୁ ରହିଗଲା। ବୃନ୍ଦାବନ ମଝିରେ ଆସି ଝଟ୍[୩] ବାଟ ଓଗାଳି ପକାଇଲେ। ଗୋଟିଗୋଟି ହୋଇ ଭାତ-ତରକାରୀଯାକ ଘର ଚାରିଆଡ଼େ ବିଞ୍ଚିହୋଇଗଲା। ତଥାପି ଅଶ୍ରାବ୍ୟ ଗାଳି ଦେଉଦେଉ ଭାଇକୁ ଠେଲି ବିମ୍ବାଧର ସ୍ତ୍ରୀଙ୍କୁ ଚାରି ଛଅ ବିଧାଗୋଇଠା କଷି ଦେଲେ।[୪] ମାଡ଼ର ଯନ୍ତ୍ରଣା ନିର୍ବିବାଦରେ ସହ୍ୟକରି ଲଳିତା ସ୍ୱାମୀର ଗୋଡ଼ଧରି କ୍ଷମାଚାହିଁଲା। ନୋହିଲେ

(୧) ଚଳତ୍‌ଶକ୍ତିହୀନ, ନିର୍ଜୀବ; (୨) ସେହିସବୁ; (୩) ହଠାତ୍, ଆକସ୍ମିକ, ତତ୍କ୍ଷଣାତ୍; (୪) ଯୋର୍‌ରେ ଆଘାତ କରିବା।

ସେହିକ୍ଷଣି ସେ ଘରୁ ବାହାରି ଯାଉଥିଲେ। ଭାଇ ଅଟକାଇବାରୁ ଭାଇ ଦେହରେ ମଧ ଦୁଇ ପାହାର ବାଜିଗଲା।

ସେଦିନ, ଦିନ ଏଗାରଟାକୁ ବିଦ୍ୟାଧରଙ୍କର ନିଦଭାଙ୍ଗିଲା। ଆଖି ମେଲାଇ ଚାହିଁଲେ, ଲଳିତା ଗୋଡ଼ଘସୁଛି। ପୂର୍ବ ରାତି କଥା ମନେପଡ଼ି ତାଙ୍କର ବଡ଼ ଲଜ୍ଜାହେଲା। ଅନୁତାପ ମଧ ହେଲା। କୋମଳ ସ୍ୱରରେ ଲଳିତା ଅନୁନୟ କରି କହିଲା, ''ମୁଁ ଗୋଡ଼ତଳେ ପଡୁଛି, ଆଉ ସେଗୁରା ଖାଅନା। ରଙ୍ଗ, ରାଜିହେରିକା ମୁହଁ ଆଡ଼କୁ ଟିକିଏ ଚାହଁ। ଛ' ଛ'ଟା ପିଲା ଈଶ୍ୱର ଦେଇଛନ୍ତି। କେବେ ଆଉ ତାଙ୍କୁ ଦେଖିବ? ଚାରି ଚାରିଟା ପୁଅ, କେବେ ତାଙ୍କ ଭବିଷ୍ୟତ ଭାବିବ?''

ଅନୁତପ୍ତ ବିଦ୍ୟାଧର କିଛି କହିପାରିଲେ ନାହିଁ। ଲଳିତା ଲକ୍ଷ୍ୟକଲା, ସ୍ୱାମୀ ଆଖିରେ ଦି'ଟୋପା ଲୁହ। ତାହାର ସବୁ ଅପମାନର ଯନ୍ତ୍ରଣା ଦୂରହେଲା। ସ୍ୱାମୀ ପ୍ରତି ନିଜର ରାଗର ଭର୍ତ୍ସନାକରି ତାଙ୍କର ସୁମତି ସକାଳେ ଇଷ୍ଟ ଦେବତାଙ୍କୁ ସ୍ମରଣକଲା।

ପ୍ରତିଜ୍ଞାମତେ ବିଦ୍ୟାଧର ଦୁଇଦିନ ଭଲରେ ଘରେ ରହିଲେ। ଦିନେ ଚାରିଟା ବେଳେ ସୁଧୀର ବାବୁ ଡକାଇପଠାଇଲେ। ଲଳିତା କାନ୍ଦିକାନ୍ଦି ଗୋଡ଼ ଧଇଲେ ସୁଦ୍ଧା ତା' କଥା ଠେଲି ବିଦ୍ୟାଧର ଚାଲିଗଲେ। କହନ୍ତି ପରା, ''ଯେତେ ମାଠୁଥିବୁ ମାଠ, ମୁଁ ସେଇ ଦରପୋଡ଼ା କାଠ।'' ସୁଧୀରଙ୍କ ବୈଠକ ଖାନାରେ ପହଞ୍ଚିଲାରୁ ସୁଧୀର ମୁରକି ହସିଦେଇ କହିଲେ– ''ଦି'ଦିନ ତ ବାବୁସାହେବର ଦେଖା ନାହିଁ। କଣ ହାତ ପଇଠ ହେଲଣି କି? ଆରେ Old Fool (ପୁରୁଣା ମୂର୍ଖ), ତୁମରସବୁ ଅକଲ୍ ନାହିଁ। ତାଙ୍କୁ ଏତେଟା ସ୍ୱାଧୀନତା?''

ବିଦ୍ୟାଧର ଲଜ୍ଜିତହେଲେ। କାଚଗିଲାସରେ ଚକମକିଆ ପାଣି ଆସିଲା। ପ୍ରଥମେ ନାହିଁ କରୁକରୁ ପରେ ଟିକେ ଚାଖିନେଲେ। ମଗଜ ପରିଷ୍କାର ହେଲା। ପ୍ରତିଜ୍ଞା କୁଆଡ଼େ ଗଲା, ଲଳିତା ଓ ପିଲାଏ କୁଆଡ଼େ ଗଲେ! ବଡ଼ ଆରାମରେ ବନ୍ଧୁ ଯୋଡ଼ିକ ବୁଲି ବାହାରିଲେ ସିଧା ''ମେରି'' ଓରଫେ ମିସେସ୍ ନେଲସନ୍ଙ୍କ କୋଠିକୁ। ମିସେସ୍ ନେଲ୍ସନ୍ ଓ ତାଙ୍କ କନ୍ୟାଦ୍ୱୟ ମାର୍ଗାରେଟ୍ ଓ ମାର୍ଜୋରୀ ବହୁଦିନ ପରେ ମିଷ୍ଟର ରଥଙ୍କୁ ଦେଖି ପରମ ଆପ୍ୟାୟିତହେଲେ। ସୁରାର ସଦ୍‌ବ୍ୟବହାର ସଙ୍ଗେସଙ୍ଗେ ଖୁସ୍‌ଗଳ୍ପ ଲାଗିଲା। ସ୍ୱାମୀର ଅନାଚାର ଓ ଅବିଚାରରେ ଲଳିତା ଦିନଦିନ କ୍ଷୀଣହେଲା। ଦେହରୁ ରକ୍ତ ମାଂସ ଶୁଖିଲା, ଦେହ ହାଡ଼ କଣ୍ଟା ହେଲା; ଶୋଥ[୧] ଦେଖା ଦେଲା। ଲଳିତାର ଆଖିପତାଗୁଡ଼ିକ କାଗଜପରି ଧଳା ଦିଶିଲା। ବୃନ୍ଦାବନ ଲକ୍ଷ୍ୟକରି କବିରାଜ ଘରକୁ ଗଲା।

କବିରାଜ ଗଦାଧର ହାତ ଦେଖି, ନାଡ଼ି ଚିପି ଔଷଧ ବ୍ୟବସ୍ଥାକଲେ। ଦଶ ଟଙ୍କାର ମୂଦୁକ[୨] ତିଆରି ହେଲା। ବୃନ୍ଦାବନ ହାତରୁ ଟଙ୍କା ଦେଲା। ଡାକ୍ତର ଗୋଟିଏ ଡକାଇ କିଛି ଇଞ୍ଜେକ୍‌ସନ୍ ଦିଆଗଲା, ଲଳିତାର ପୂର୍ବସ୍ୱାସ୍ଥ୍ୟ ଅନେକ ପରିମାଣରେ ଫେରି ଆସିଲା। କିନ୍ତୁ ତହିଁ ଉପରେ ହେଲା ପୁଣି ଗର୍ଭସଞ୍ଚାର।

---

(୧) ରକ୍ତହୀନତା ଯୋଗୁ ନିସ୍ତେଜତା, (୨) ମୋଦକ, ଟନିକ୍, ରୋଗ ପ୍ରତିରୋଧକ ଓ ଶକ୍ତିବର୍ଦ୍ଧକ ଔଷଧୀୟ ଗୁଣଯୁକ୍ତ ପଦାର୍ଥ।

ଲଳିତା ବଞ୍ଚି ଉଠୁଁଉଠୁଁ ପଣି ମରିବାକୁ ବସିଲା। ଆଠମାସ ପରେ ମଲାପିଲା ପେଟରୁ ପ୍ରସବ ହେଲା। ଭୀଷଣ ସୂତିକା-ଜ୍ୱରରେ ଲଳିତାର ଭଙ୍ଗାଦେହ ଚିରଦିନ ସକାଶେ ମଉଳିବାକୁ ବସିଲା। ଡାକ୍ତର ଲାଗିଲା। ବୃନ୍ଦାବନର କଷ୍ଟସଞ୍ଚିତ ଟ୧୫୦ଙ୍କା ବିଞ୍ଚିଦେଇ ଲଳିତା କ୍ଷୀଣ ଦେହ ଘେନି ଶଯ୍ୟାରୁ ଉଠିବସିଲା। ଘରର କଂସା ଡାଟିଆ ବନ୍ଧାପଡ଼ିଲା, କିନ୍ତୁ ଲଳିତା ବଞ୍ଚିଲା। ତାହାର ସଂସାର ଉପରେ ଦାରୁଣ ଘୃଣାହେଲା। ସ୍ୱାମୀ ଦେବତା! ସେହି ସ୍ୱାମୀ-ଦେବତାର ଅତ୍ୟାଚାରରେ ତାହାର ଦଶା ଯା' ହେଲା। ସ୍ୱାମୀକୁ ଭଲ କରିବାର ଶେଷ ଆଶାଟିକ ତା' ହୃଦୟରୁ ପୋଛି ପିଲା ପାଞ୍ଚୋଟିକି ଅନାଇ ଲଳିତା ବଞ୍ଚିଲା– ବିମ୍ବାଧର ଅବାଧ ଗତିରେ ପାପ ସ୍ରୋତରେ ଦେହ ଢାଳିଦେଲେ। ଶେଷକୁ ଚାକିରି ଛାଡ଼ିଗଲା। ବିମ୍ବାଧର ସୁଧୀରଙ୍କ କତିରେ ଚାକିରି କରିବାକୁ ଲାଗିଲେ। ଚାକିରି ସତ କି ମିଛ, କେବଳ ତାଙ୍କୁ ଜଣା। ସେହି ଦିନୁ ଲଳିତା ସ୍ୱାମୀର ପଇସାଟି ଆଉ ଜାଣିଲାନାହିଁ। ଭାଉଜ ଓ ତାଙ୍କର ପାଞ୍ଚଟି ପିଲା ବୃନ୍ଦାବନ ବେକରେ ପଡ଼ିଲେ। ବୃନ୍ଦାବନ ମାରୱାଡ଼ି କତିରେ ଟ୫୦ଙ୍କା ପାଇ ସୁଦ୍ଧା ଘରକୁ ପନ୍ଦର ଟଙ୍କା ପଠାଉଥିବାରୁ ସାନ ପିଲାଙ୍କୁ ପଢ଼ାଇବାକୁ ଘରେ ଗୋଟିଏ ଛୋଟ ସକାଳ ସ୍କୁଲ ଖୋଲିଲା। ମାସା[1] ଟ୧ଙ୍କା ଦେଇ ପିଲା ୮/୧୦ଟି ସେଠି ପାଠ ପଢ଼ିଲେ।



## (୬)

ବିଷଗଛରେ ଫଳ ଫଳିଲା। ବିମ୍ବାଧରର ଦେହ ଶୀର୍ଣ୍ଣହେଲା। କ୍ରମେ ଜ୍ୱର ହେଲା। ଶେଷକୁ ଜ୍ୱରଆଉ ଛାଡ଼ିଲା ନାହିଁ। କାଶ ଆରମ୍ଭହେଲା। ଦିନେ ହଠାତ୍ କାଶରେ ରକ୍ତ ପଡ଼ିଲା। ଲଳିତା ଚମକିଉଠିଲା। ଧବଳେଶ୍ୱରଙ୍କ କତିରେ ମାନସିକକଲା। ଡାକ୍ତର କବିରାଜ ଦେଖି କହିଲେ, ଏ ରାଜକାଶ[2]। ବିମ୍ବାଧର ବିଛଣା ଘେନିଲେ। ସେବାକରିବାକୁ ଲଳିତା ଆଉ ବୃନ୍ଦାବନ ଛଡ଼ା[3] କେହିନାହିଁ। ଘରକୁ ଚିଠି ଗଲା। ମା ଅଇଲେ। ପ୍ରଥମେ ଥରେ ଅଧେ ବୋହୂ ସହିତ ଖୁଟ୍‌ଖାଟ୍[4] ଲାଗିଲା। କିନ୍ତୁ ଲଳିତା ମୁହଁବୁଜି[5] ସବୁ ସହିଲା। ଏତେବେଳେ ତ ତା' କପାଳ ପଡ଼ିଛି। ମା ବୁଝିପାରିଲେ। ପୁଅର ଭୀଷଣ ବ୍ୟାଧି-ଚିନ୍ତାରେ ତାଙ୍କର ରାଗ ଓ ଅଭିମାନ ଊଣା ହୋଇଆସିଲା। ବଡ଼ ପୁଅ ବଂଶାଧର ବାଇଶି ବର୍ଷରେ ଓଳାଉଠା[6]ରେ ମରିଥିଲେ; ସେତେବେଳକୁ ତାଙ୍କର ଟ୬୦ଙ୍କାର ଚାକିରି, ପୁଅଝିଅ ଯୋଡ଼ିଏ, ଷୋଳ ବର୍ଷର ବୋହୂ। ତାଙ୍କ ଯିବାର ଦୁଇମାସ ପରେ ସ୍ୱାମୀ ନିଉମୋନିଆ ଜ୍ୱରରେ ଗଲେ। ପଇଁତ୍ରିଶ ବର୍ଷ ବୟସରେ ସ୍ୱାମୀ, ପୁଅ, ଜ୍ୱାଇଁଙ୍କି ହରାଇ ଶୈବଳିନୀ ଏକାବେଳେ ନିରାଶ୍ରୟ ହୋଇଗଲେ। କିନ୍ତୁ ସେତିକି ବେଳକୁ ବିମ୍ବାଧର ଚାକିରିକରି ମାନମହତ ରଖିଲେ। ସୁଖରେ, ଦୁଃଖରେ ଚବିଶି ବର୍ଷ କଟିଗଲା। ବୁଢ଼ୀ ମନେକରିଥିଲେ, ବୋହୂ ମୁଣ୍ଡରେ ସିନ୍ଦୂର ଟୋପା ଦେଖି ଚିତାରେ ଶୋଇବେ ବୋଲି। କିନ୍ତୁ ବିଧାତାଙ୍କ ଇଚ୍ଛା ଅନ୍ୟପ୍ରକାର। ତାଙ୍କରି ଆଗରେ ତାଙ୍କ ପୁଅର ଏ ଦଶା[7]।

---

(୧) ମାସକୁ, (୨) ଯକ୍ଷ୍ମା, (୩) ବ୍ୟତୀତ, (୪) ଛୋଟ ଛୋଟ ଘଟଣାରେ କଥା କଟାକଟି, (୫) ନିରବରେ, ବିନା ପ୍ରତିବାଦ, (୬) ହଇଜା, (୭) ଅବସ୍ଥା

ବୁଢ଼ୀକି ଆସି ୬୦ ବର୍ଷ ହେଲା। ବୁଢ଼ା ଗଛ ସିନା ଆଗେ ଝାଉଁଳିବ! ହା'ରେ ଦଇବ! ତୁ ସଜଫୁଲ ଶୁଖାଉଛୁ? ବାରିପଟ ପିଣ୍ଡାରେ କାନ୍ଥକୁ ଆଉଜି ବସି ବୁଢ଼ୀ ଆଖିରୁ ଲୋତକ-ଧାର ବୋହୁଛି। ବିମ୍ବାଧରର ଅବସ୍ଥା ଦିନୁଦିନ ମନ୍ଦ ହେଲାଣି। କାଶରେ ଥୋପିଥୋପି ରକ୍ତ। ବିଛଣାରୁ ଉଠିବାକୁ ଶକ୍ତି ନାହିଁ। ସେଇଠି ମଳମୂତ୍ର ତ୍ୟାଗକରୁଛନ୍ତି। ସବୁ ଅସନା ପରିଷ୍କାର କରୁଛି ଲଳିତା, ସବୁ ଅର୍ଦ୍ଦଳି ସହୁଛି ଲଳିତା। ପାଞ୍ଚପାଞ୍ଚଟା ପିଲା, ତାଙ୍କ ଖିଆପିଆ, ଘରର ରୋଷାଇବାସ ଇତ୍ୟାଦି ବାର ଅଣାର[୧] କାମ, ତା'ଉପରେ ଶାଶୂଙ୍କ ପାଇଟି[୨], ଆଉ ସ୍ୱାମୀର ସେବାଶୁଶ୍ରୂଷା। ବୃନ୍ଦାବନ ପାରୁପର୍ଯ୍ୟନ୍ତେ ସାହାଯ୍ୟକରେ। ସେବା କରିକରି, ରାତି ଜଗି, ଜଗି ଲଳିତା କ୍ଷୀଣହେଲାଣି। ତା' ରୂପ ଦେଖିଲେ କାନ୍ଦମାଡ଼େ।

ଶାଶୂ ବୁଝିପାରିଲେ। ଏତେ ଦିନରେ କଠିନ ମନଟା ତରଳିଲା। ସକାଳୁ ଉଠି ଲଳିତା ରନ୍ଧାଘରେ ଗୋବର ଲିପୁଲିପୁ ବୁଢ଼ୀ କଂସା ବାସନତକ ମାଜିବାକୁ ଘିନିଗଲେ। ଶାଶୂଙ୍କ କଥା ଦେଖି ଲଳିତାର ଭୟହେଲା। ଝଟ୍ ଗୋବର ହାଣ୍ଡିଟା ଥୋଇଦେଇ ଶାଶୂ ହାତରୁ କଂସାବାସନ ଘେନିବାକୁ ଗଲା, ''ବୋଉ ମୁଁ ମାଜି ଦଉଛି, ଉଠ।'' ବୋଉ ତୁ ପୁଅ ପାଖକୁ ଯା ଆଜି ମୁଁ ରୋଷେଇଟା ସାରି ଦେବି।'' ଲଳିତା ମିନତି କରିବାସତ୍ତ୍ୱେ, ବୁଢ଼ୀ ଆଜି ରାନ୍ଧିବସିଲେ। ତାଙ୍କ ବ୍ୟବହାରର ସରଳତାରେ ଲଳିତା ଆଶ୍ଚର୍ଯ୍ୟହୋଇ, ଯାଇ ସ୍ୱାମୀ କତିରେ ବସିଲା।

ସ୍ତ୍ରୀକୁ ୨୪ ଘଣ୍ଟା ପାଖରେ ଯାଇ ବିମ୍ବାଧର ଆଶ୍ଚର୍ଯ୍ୟହୋଇ ପଚାରିଲେ, ''ଘରର ରୋଷେଇବାସ କିଏ କରୁଛି?'' ''ବୋଉ!'' ଲଳିତା ମୁହଁରୁ ଏ ପଦକ ଶୁଣି ତାକୁ କାବା[୩] ଲାଗିଲା। ଧୀରେଧୀରେ ଲଳିତା ଶାଶୂଙ୍କର ସଦ୍‌ବ୍ୟବହାର କଥା କହିଗଲା। ଦୀର୍ଘନିଃଶ୍ୱାସ ମାରି ବିମ୍ବାଧର କହିଲେ, ''ବୋଉ ସେତିକିବେଳେ ଯଦି ଇମିତି ହେଇଥାନ୍ତା, ଆଜି ମୋ' ଦଶା ଯା' ହେଇଥାନ୍ତା କି?'' ତାଙ୍କ ଆଖିରୁ ବଡ଼ବଡ଼ ଟୋପା ଲୁହ ବିଛଣାରେ ପଡ଼ିଲା। ସ୍ୱାମୀର ଆଖିପୋଛି ଲଳିତା ସାନ୍ତ୍ୱନାଦେଇ କହିଲା, ''ଗଲାକଥା ଗଲାଣି. ତୁନି[୪] ହୁଅ, ତୁନି ହୁଅ, କରମ ବାମ[୫] ଥିଲେ ବୋଉ କଣ କରିବେ, ଭାଇ କଣ କରିବେ?'' କିନ୍ତୁ ବିମ୍ବାଧରଙ୍କ ହୃଦୟ ଏ ସାନ୍ତ୍ୱନାରେ ସିକ୍ତହେଲାନାହିଁ। ନିଜର ଅପାର ପାପରାଶି ତାଙ୍କ ଆଗରେ ମୂର୍ତ୍ତିଧରି ଠିଆହେଲା ପରା! ସେ ବଡ଼ ଅନ୍ଧାର, ସେ ବଡ଼ ବିକଟ। ମୋହିନୀ, ମୁରବାଲା, ନଳିନୀ, ଫୁଲ. ମାର୍ଗାରେଟ, ମାର୍ଜୋରୀ ସଭିଙ୍କର ଗୋଟିଏଗୋଟିଏ କଳା ମୂର୍ତ୍ତି, ଗୋଟିଏ ଗୋଟିଏ ପୈଶାଚିକ ରୂପ ତାଙ୍କ ଆଖି ଆଗରେ ନାଚିଉଠିଲା। ଛାତିଟା ଦାଉଁଦାଉଁ ପଡ଼ିଲା। ମୁଣ୍ଡ ବୁଲାଇଲା। ବିମ୍ବାଧର ମୂର୍ଚ୍ଛିତ। ବଡ଼ ପାଟିକରି କାନ୍ଦି ଲଳିତା ସ୍ୱାମୀଙ୍କୁ କୋଳରେ ଘେନିଲା। ଶାଶୁ ଦଉଡ଼ିଆସିଲେ। କାନ ଫୁଙ୍କାଫୁଙ୍କି କରି ଚେତନାହେଲା। ଜ୍ଞାନ ଫେରି ଅଇଲାରୁ ଲଳିତା ଓ ମାତାଙ୍କୁ ଚାହିଁ ବିମ୍ବାଧର କହିଲେ, ''ବୋଉ! ଦେଖ୍ ଏ ଗୋଟିଏ ଲକ୍ଷ୍ମୀ, ତୋ'ରି ଦୋଷରୁ ଦେଖ୍ ତା' ରୂପ ଭେକ, ଆଉ ମୋ' ଦୁର୍ଦ୍ଦଶା! ତିନିତିନି ଥର ବୋଉକୁ କଟକ ଆଣିବାକୁ ଗଲି, ତିନିତିନି ତର ଛାଡ଼ିଲୁ ନାହିଁ, ଏବେ ଶେଷ ଫଳ ଭୋଗ୍।'' ତାଙ୍କର ଗଭୀର

(୧) ଚାରିଭାଗରୁ ତିନିଭାଗ, (୨) କାମ, (୩) ଆଶ୍ଚର୍ଯ୍ୟ, (୪) ନିରବ, (୫) ବଂକା, ମନ୍ଦ, ଖରାପ।

ଘୃଣାବ୍ୟଞ୍ଜକ ଦୃଷ୍ଟିରେ ମାତାଙ୍କ ପୂର୍ବ ବ୍ୟବହାର ସବୁ ମନେପଡ଼ିଲା। ପୁଅ ବୋହୂ କତିରେ ସେ ଯେ କେଡ଼େବଡ଼ ଅପରାଧିନୀ, ଏହା ଆଜି ପ୍ରଥମ ଜାଣିଲେ। ଅନୁତାପରେ ତାଙ୍କର ହୃଦୟ ଦଗ୍ଧ ହେଲା। କିନ୍ତୁ ନେଡ଼ି ଗୁଡ଼ କହୁଣିକି ବହିଯାଇଛି।[୧] ଆଉ ଉପାୟ ନାହିଁ। ଲୁଗା କାନିରେ ଆଖି ରଗୁଡୁ ରଗୁଡୁ[୨] ବାହାରକୁ ଗଲେ।

ବିମ୍ବାଧରର ଭଲରୂପେ ଜ୍ଞାନହେଲାରୁ ଲଳିତା କହିଲା, "ତୁମେ ମାଙ୍କୁ ଏଡ଼େ କଟୁକଥା କହିଲ?" ବିମ୍ବାଧରଙ୍କ ମନ କଣ ହେଲା। ମାଙ୍କୁ ଡାକି କ୍ଷମା ମାଗିଲେ, କାନ୍ଦିଲେ। ମା' ମଧ କାନ୍ଦିଲେ, ତାଙ୍କ ଦୋଷରାଶି ଆହୁରି ବିକଟ ରୂପରେ ତାଙ୍କ ଆଗରେ ଛିଡ଼ାହେଲା। ଲୁହ ଟଳଟଳ ଆଖିରେ ବିମ୍ବାଧର କହିଲେ, "ବୋଉ! ମୁଁ ମରିବି, ମୁଁ ଜାଣେ; କିନ୍ତୁ ମୋ' ବୋହୂଟିକୁ ଦେଖିବୁ। ବିଚାରୀ ତୋର ମୋର ଅପରାଧରେ ଚିରଦିନ କଷ୍ଟପାଇଛି, ତା' ଶେଷ ଜୀବନରେ ଟିକେ ତାକୁ ଶାନ୍ତିଦେବୁ। ତୋ' ମଲା ପୁଅ କଥାଟି ମନେରଖିବୁ।" ମା' ଭୋ' ଭୋ' ହୋଇ କାନ୍ଦିପକାଇଲେ। ଲଳିତାର ଦୁଇହାତ ଧରି ବିମ୍ବାଧର କହିଲେ "ତୋତେ ବଡ଼ କଷ୍ଟଦେଇଛି, ବଡ଼ ଅତ୍ୟାଚାରକରିଛି। ସ୍ୱାମୀର ଯୋଗ୍ୟ କିଛି କରିନାହିଁ। ତୋ ମହତପଣିଆରେ ଚିରଦିନ ମୋର ସବୁ ସହିଛୁ, ଏବେ ଶେଷ ବେଳେ ମୋତେ କ୍ଷମା ଦେବୁ କି?" ଲଳିତା ସ୍ୱାମୀଙ୍କ ଗୋଡ଼ ତଳେ ଢ଼ଳିପଡ଼ିଲା। ସେ କ୍ଷମାଦେବ, ସ୍ୱାମୀ ଦେବତାଙ୍କୁ! "ଭଗବାନ୍! ସ୍ୱାମୀ ମୋର ସୁସ୍ଥ ହେଉନ୍ତୁ, ମୋତେ ସେ ରୋଗ ହେଉ।" ତା' ଆଖିରୁ ତତଲା ଲୁହ ଝରଝର ବହିଲା।

ଆନନ୍ଦ ବାବୁ ଆସି ପିଲାମାନଙ୍କୁ ଆଉ ପାଖକୁ ଘିନିଗଲେ। ବିମ୍ବାଧରଙ୍କ ଅବସ୍ଥା ଦିନୁ ଦିନ ମନ୍ଦ ହେଉଥିବାର ଦେଖି ଡାକ୍ତର ତାଙ୍କୁ ବାୟୁପରିବର୍ତ୍ତନ କରିବାକୁ ପରାମର୍ଶଦେଲେ। ସୁଧୀରଙ୍କର ପୁରୀ ସମୁଦ୍ରକୂଳରେ ଗୋଟିଏ ବଡ଼ କୋଠା ଥିଲା। ପ୍ରମିଳାଙ୍କ ଯତ୍ନରେ ଓ ସୁଧୀରଙ୍କ ବନ୍ଧୁ ପ୍ରୀତିର ନିଦର୍ଶନରୂପ ବିମ୍ବାଧର ସପରିବାର ବିନା ଭଡ଼ାରେ ସେଠାରେ ସ୍ଥାନ ପାଇଲେ। ଡାକ୍ତର ଖର୍ଚ୍ଚପାଇଁ ସୁଧୀର ନଗଦ ଟ୬୦୦ଙ୍କା ଦେଲେ। ପ୍ରମିଳା ମଧ ଲୁଚାଇକରି ଟ୫୦୦ଙ୍କା ମୂଲ୍ୟର ଅଳଙ୍କାର ଲଳିତା କତିକି ପଠାଇଦେଲେ।

ଐକାନ୍ତିକ ଯତ୍ନ ଓ ଶୁଶ୍ରୂଷା ଫଳରେ ବିମ୍ବାଧର କେତେକ ପରିମାଣରେ ସୁସ୍ଥହେଲେ। କିନ୍ତୁ ସେ ଯେ ବହୁଦିନ ବଞ୍ଚିବେ ନାହିଁ, ଏହା ଜାଣିଥିଲେ। ଲଳିତା ପ୍ରତି କୃତ ପୂର୍ବର ଅନ୍ୟାୟ ଆଚରଣ ସକାଶେ ବାରମ୍ବାର କ୍ଷମାଭିକ୍ଷାକରି ବିମ୍ବାଧର ଶେଷ ଜୀବନରେ ଶାନ୍ତି ଖୋଜିଥିଲା। ଲଳିତାର ମୂଲ୍ୟ ଏତେ ଦିନକରେ ମା' ପୁଅ ବୁଝିଲେ। ଅନୁତାପରେ ଦୁଇ ଜଣଙ୍କର ହୃଦୟ ଦଗ୍ଧହେଲା। ତମାଳିନୀ ଓ ରମାସୁନ୍ଦରୀ ବିମ୍ବାଧରଙ୍କୁ ଦେଖିବାକୁ ପୁରୀ ଆସିଲେ। ମାତାଂକୁ ରନ୍ଧାବଢ଼ାରେ ବ୍ୟସ୍ତଦେଖି ପୂର୍ବ ସ୍ୱଭାବ ଅନୁଯାୟୀ ତମଳିନୀ ରୁକ୍ଷଭାବରେ ବୋହୂକୁ କହିଲେ, "ଯା ବୋହୂ! ରାନ୍ଧିବୁ, ଦିନରାତି ବିମ୍ବାଧର କତିରେ କଣ ବସିଛୁ। ମା ବୁଢ଼ୀଟା ଖଟିଖଟି ମରୁଛି।" ତା କଥା ଶେଷ ନୋହୁଣୁ ମା' କହଲେ, ଆମେ ଦି'ଜଣ ରୋଷେଇ କରିନବୁଁ, ଯାଉ ସେ ପୁଅକତିରେ ବସୁ। ତାକୁ କିଛି କହନା।" ମାତାର ବୋହୂ ପ୍ରତି ପ୍ରେମ ଦେଖି

(୧) ସବୁ ନଷ୍ଟ ହୋଇଯାଇଛି, ଶେଷ ହୋଇଯାଇଛି, (୨) ବଳ ପ୍ରୟୋଗ କରି ଘସିବା

ତମାଳିନୀ ଦେହରେ ଲୁଣ ଲଙ୍କାମରିଚ ବୋଳିଲାପରି ଲାଗିଲା। ରାଗରେ ଗରମ ହୋଇ ତୁନି ରହିଲା। ତିନିଚାରି ଦିନରେ ବୁଝିବାକୁ ବାକି ରହିଲା ନାହିଁ। ଦୀର୍ଘନିଃଶ୍ୱାସ ତ୍ୟାଗକରି ତମାଳିନୀ ଭାବିଲା, "ଯେ ଯାହାର, ଠେଙ୍ଗା ବାଡ଼ି ଘିନି ଘରଦୁଆର ଜଗୁ। ତମାଳିନୀ ଆରଦିନ ଗାଁକୁ ବାହାରିଲା। ଶାଶୁଙ୍କ ପରିବର୍ତ୍ତନରେ ଲଜ୍ଜିତାହେଲା ରମାସୁନ୍ଦରୀ, ସାମାନ୍ୟ ଈର୍ଷା ମଧ ହେଲା। ନିଜର ଦଶା ସହିତ ଅଳ୍ପ ଦିନପରେ ଲଳିତାର ଦଶା ସମାନ ହେବ, ଭାବି ମନେମନେ ଟିକେ ସୁଖୀହେଲା। କିନ୍ତୁ ଶାଶୂଙ୍କର ଭଲ ବ୍ୟବହାରରେ ତା' ମନ ଟିକେ ବିକ୍ଷେଇଲା। ସେ ମଧ ତମାଳିନୀ ସହିତ ଗାଁକୁ ଚାଲିଗଲା। ଶାଶୂବୋହୂ ରହି ପୁଅର ସେବାକଲେ। ବୃନ୍ଦାବନ ମାସୀ ଟ୪୦ଙ୍କା ଲେଖା ପଠାଇବାକୁ ଲାଗିଲା। ରବିବାରିଆ ଥରେ ଅଧେ ଦେଖିଦେଖି ଗଲା। ବିମ୍ବାଧର ବରଷେ ବିଛଣାରେ ପଡ଼ିଲେ। ଯାହା କିଛି ଛଅାଛନ୍ଦି[୧] ଥିଲା, ତାଙ୍କ ପିଛାରେ[୨] ସବୁ ସରିଲା। ଶେଷକୁ ଧାନ ଜମିରୁ ଦି'ମାଣ ବିକ୍ରିହେଲା। ତଥାପି ରୋଗର ଉପଶମ ହେଲାନାହିଁ।

ମା'ର କାନ୍ଦଣା, ଭାଇର କନ୍ଦଣା, ସ୍ତ୍ରୀର କାନ୍ଦଣା, ପିଲାଙ୍କର କାନ୍ଦଣା, ଘର ବଂଶର କାନ୍ଦଣାକୁ ଉପେକ୍ଷାକରି ବିମ୍ବାଧର ଆଖିବୁଜିଲେ। ଚିରଦିନ ଲାଗି ଲଳିତାର କାଚ ସିନ୍ଦୂର ପୋଛି, ଯେତେବେଳେ ଚିତାରେ ଶୋଇଲେ, ସେତେବେଳେ ଲଳିତା ଅଜ୍ଞାନ। ଆହା! ତାହାର ସେହି ଅଚେତ ଅବସ୍ଥାରେ ପ୍ରାଣଟା ବାହାରିଯାଇଥାନ୍ତା କି? କିନ୍ତୁ ତା' ଗଲାନାହିଁ। ସଂସାରରେ ଆହୁରି କଲବଲ ହେବାକୁ ଲଳିତା ରହିଲା। ସବୁଆଡ଼ ଶୂନ୍ୟ। ମା ଓ ଶାଶୂ ମୁଣ୍ଡ ପିଟି କାନ୍ଦୁଛନ୍ତି ବଡ଼ ପାଟିରେ ତମାଳିନୀ, ରମାସୁନ୍ଦରୀ ଓ ପିଲାମାନେ କନ୍ଦାକଟା ଲଗାଇଛନ୍ତି। ତାର ମୁଣ୍ଡ ଘୂରିବାକୁ ଲାଗିଲା। ପୁଣି ତଳେ ଢଳିପଡ଼ିଲା। ପାଞ୍ଚଦିନ ତାର ପ୍ରବଳ ଜ୍ୱର ହେଲା। ଅଜ୍ଞାନ ଅବସ୍ଥାରେ କେବଳ ବିମ୍ବାଧର ଓ ରାଜକୁମାର କଥା ବକୁଥିଲା।

ବୃନ୍ଦାବନର ଯତ୍ନରେ ଏଥର ମଧ ପ୍ରାଣପାଇଲା। ଆନନ୍ଦ ବାବୁ ଝିଅ ଓ ନାତିନାତୁଣୀକି ଆପଣା ଗାଁକୁ ଘେନିଗଲେ। ଲଳିତା କାନ୍ଦି କାଟି ଭାଇ ଭାଉଜ କତିରେ ରହିଲା। କିନ୍ତୁ ସବୁଦିନ ସମାନ ଯାଏ ନା। ପିଲାଙ୍କ ମାୟାରେ ଲଳିତା ପୁଣି ସଂସାର କଲା।

ଲଙ୍ଗାଳା ହାତ, ଛେଦାଲୁଗା[୩] ପିନ୍ଧି ପୁଅ ବାହା ବେଳକୁ ଲଳିତା ଯେତେବେଳେ ବାପଘରୁ ସ୍ୱାମୀ ଘରକୁ ଅାସିଲା, ଗାଡ଼ିରୁ ଓହ୍ଲାଇଲା ମାତ୍ରେ ଶାଶୂ କାନ୍ଦିପକାଇଲେ। ଶାଶୂଙ୍କର ଦେହ ଭଲନାହିଁ। ଅନୁତାପରେ ସେ ସଢୁଛନ୍ତି। ଏତେ ଦୁଷ୍କୃତିରେ କଣ ପ୍ରାୟଶ୍ଚିତ୍ତ ନାହିଁ? ମାଙ୍କ ଦଗଧନି[୪]ରେ ଝିଅ ମଧ ପୋଡ଼ିଲେଣି। ତମାଳିନୀ ବୁଝିଲେଣି, ମା ତାଙ୍କୁ କି ଆଖିରେ ଦେଖୁଛନ୍ତି। ସେ ଚିରକାଳ ମାର ମନ୍ତ୍ରୀ ଥିଲେ। ଚିରକାଳକୁ ପରାମର୍ଶ ଦେଇ ମାଙ୍କୁ ବୋହୂମାନଙ୍କଠୁ ପୃଥକ୍ ରଖିଥିଲେ। ଶେଷ ବେଳକୁ ହାରିଲେ। ହାରି ବୁଝିଲେ, କେଡ଼େ ବଡ଼

(୧) ସଂଚୟ, (୨) ପଛରେ, ଆବଶ୍ୟକତା ପୂରଣ ପାଇଁ, (୩) ଏକରଂଗୀ ଅାଂଚଲ ନଥିବା ମୋଟା ଲୁଗା, (୪) ପୋଡ଼ିଯିବା ଜନିତ ଯନ୍ତ୍ରଣା।

ପାପ, କି ଭୟଙ୍କର ଦୋଷ ସେ କରିଛନ୍ତି। ସଂସାର ନାରଖାରକଲେ[୧]। ଭାଇ ଭାଉଙ୍କୁ ଭିନ୍ନ କଲେ। ଭାଇ କୁସଙ୍ଗରେ ପଡ଼ି ଚିରକାଳ ମାଟିହେଲେ,[୨] ଶେଷକୁ ସାଂଘାତିକ ରୋଗରେ ଅଧା ବୟସରେ ମଲେ। ତାଙ୍କ ମନ ଦିନରାତି ଘାଣ୍ଟିହେଉଛି। ଦିନେ ଯେ ଭଗବାନଙ୍କୁ ମନେ କରି ନ ଥିଲେ, ଧରମର ଧ ଅକ୍ଷର ମୁହଁରେ ଧରି ନ ଥିଲେ, ଶେଷ ବେଳକୁ ତାଙ୍କର ମଧ ମତିଗତି ଟଳିଲା।

କମଳିନୀ, ମୃଣାଳିନୀ ଓ ଉମାସୁନ୍ଦରୀ ଗୋଟିକ ପରେ ଗୋଟିଏ ବାହା ହୋଇଯାଇଥିଲେ। ହେମନ୍ତ ଓ ଅଭିନ୍ନଙ୍କର ଟିକି ବୋହୂଯୋଡ଼ିକ ମୁଣ୍ଡରେ ହାତେ ଓଢ଼ଣା ଦେଇ ଘରର ବାର ପାଇଟି[୩] ହାତରେ ନେଲେଣି। ବିଧବା ରମା, ତମାଳିନୀ ଓ ଶାଶୂ ବୁଢ଼ୀ ଅବସର ସମୟତକ ବସି ଭଗବତ ପଢୁଛନ୍ତି। ଲଳିତା ଦେଖି ଆଶ୍ଚର୍ଯ୍ୟହେଲା। ଆଦର କରି ଶାଶୂ କହିଲେ, ''ମା, ତୋରି ପରଶରେ ଆମ ଲୁହା-ମନ ସୁନା ହେଲା; ମୁଁ ବୋଉ ପାଇନଥିଲି ଯେ, ପରଶମଣି ପାଇଥିଲି। କିନ୍ତୁ ଆପଣା ଦୋଷରୁ ହରେଇଲି। ଅଳ୍ପ ଟିକେ କାନ୍ଦି ଲଳିତା କହିଲା! ''ବୋଉ ମୋର କି ସାଧ! ସବୁ ସେ ମହାପୁରୁଷଙ୍କର ଇଚ୍ଛା, ତାଙ୍କରି ଲୀଳା। ଶାଶୂ କହିଲେ, ''ସେହି ଲୀଳାମୟ ହରି! ତାଙ୍କରି ଲୀଳାରେ ଏ ସବୁ ଘଟିଲା।'' ଶାଶୂ ବୋହୂକୁ କୁଣ୍ଢାଇ ଘରଭିତରକୁ ନେଲେ। ଗଙ୍ଗାଧର ଓ ରାଜୀବଲୋଚନର ବିବାହ ହୋଇଗଲା। ସ୍ୱାମୀଙ୍କୁ ସ୍ମରଣକରି ନିଭୃତରେ ଆଖିପୋଛି ଲଳିତା କେତୋଟି ଦିନ କଟାଇଲା। ସଂସାର ଆଉ ତାକୁ ଭଲଲାଗିଲା ନାହିଁ। ଭାଗବତରେ ପିଙ୍ଗଳା କଥା ପଢ଼ିଥିଲା। ତାହାର ଘନ ଘନ ମନେ ପଡ଼ିଲା।

''ମର୍ତ୍ତ୍ୟମଣ୍ଡଳେ ଦେହ ବହି,
ଦେବତା ହୋଇଲେ ମରଇ।
ଯାବତ୍ ଅଛି ମୋହ-ପାଶ,
ତାବତ୍ ଜ୍ଞାନ କରେ ନାଶ।
ଯାବତ୍ ଗୋବିନ୍ଦ ଚରଣ,
ଏ ଜୀବ ନ ପଶେ ଶରଣ
ତାବତ ନୋହେ ଆତ୍ମା ସୁଖୀ,
ନିରତେ ତାପତ୍ରୟେ ଦୁଃଖୀ।''

ସଂସାର ଛାଡ଼ିବାକୁ ତାହାର ମନହେଲା। କିନ୍ତୁ ସେ କୁଳବଧୂ। ଶାଶୂ ଅଛନ୍ତି, ନଣନ୍ଦ ଅଛନ୍ତି, ଯା' ଦିଅର ଅଛନ୍ତି; ଏତେଗୁଡ଼ିଏ ମୁରବିଙ୍କ କଥା ବଡ଼, ନା ତା'ଇଚ୍ଛା ବଡ଼? ମନେ ମନେ ଗଭୀର ବୈରାଗ୍ୟ ପୋଷଣକରି ଲଳିତା ତୁନିହୋଇ ରହିଲା।

(୧) ନଷ୍ଟ, (୨) ଅକର୍ମଣ୍ୟ, ଅକାମୀ, (୩) କାମ।

ଏକାଠ ବସି ବୋହୂ ଦୁଇଜଣ ଭଗବତ ପଢୁଥିଲେ। ଲଳିତାଙ୍କ ସମ୍ପର୍କରେ ରମାଙ୍କର ମଧ୍ୟ ପରିବର୍ତ୍ତନ ହୋଇଛି। ଆଉ ସେ ଈର୍ଷାକୁଟିଳହୃଦୟା ନୁହନ୍ତି। ଦୁଇ ଯା, ନଣନ୍ଦ ଓ ଶାଶୂ ସଭିଙ୍କର ପ୍ରେମପୂର୍ଣ୍ଣ ମିଳନରେ ଘରଟି ନନ୍ଦନବନ ପରି ହୋଇଛି। ଚାରୋଟି ଛୋଟଛୋଟ ବୋହୂ ଶାଶୂମାନଙ୍କ ଆଦରରେ, ସ୍ୱାମୀଙ୍କର ଯତ୍ନରେ ପାରିଜାତ ଫୁଲପରି ଫୁଟିଉଠିଛନ୍ତି। କିନ୍ତୁ ଏତେ ସୁଖ ମଧ୍ୟରେ ଥାଇ ସୁଦ୍ଧା ସ୍ୱାମୀଙ୍କୁ ମନେକରି ଲୁହଢ଼ାଳୁଛି। ଲଳିତା, ଆଉ ହା ହୁତାଶ କରୁଛନ୍ତି ଶାଶୁ-ବୁଢ଼ୀ। ଲଳିତାର ସୁନା ସଂସାରକୁ ସେ ଚୂନାକରିଛନ୍ତି; ତାଙ୍କୁ ଶାନ୍ତି ମିଳିବ କାହୁଁ?

ବୋହୂଙ୍କର ଭାଗବତ ପାଠ ଶୁଣୁଶୁଣୁ ବୁଢ଼ୀ ଆଖିରୁ ଲୁହଝରିଲା। ବାତରେ ବୁଢ଼ୀ ଶଯ୍ୟାଶାୟିନୀ, ଆଉ ଚିନ୍ତାର ଦଗ୍ଧହୃଦୟା।

ସେତେବେଳକୁ ସଞ୍ଜ ଅନ୍ଧାର ଘୋଟିଆସିଲାଣି। ମଲ୍ଲୀଗଛ ଯୋଡ଼ିକରେ ପାଣି ଦେଇ ଲଳିତା ସଞ୍ଜ ଦୀପଟି ଶାଶୁଙ୍କଘରେ ଦେଇଗଲା। ଶାଶୂ ହାତଠାରି ବୋହୂକୁ ପାଖକୁ ଡାକିଲେ। ଆଦରରେ ପିଠିରେ ହାତ ବୁଲାଇ ଘଡ଼ିଏ ମୁହଁକୁ ଚାହିଁଲେ। ତାଙ୍କ ଆଖି ଛଳଛଳ। ଦୀର୍ଘନିଃଶ୍ୱାସ ସହ କହିଲେ, ''ଏପରା ସୁନ୍ଦର ବୋହୂକୁ ଦାଣ୍ଡରେ ବସେଇଲି! ମୋ' ଦୋଷରୁ ଯା ହେଲା କି? ବିମ୍ବାଧର ତୁ କୁଆଡ଼େ ଗଲୁରେ। ଏ ଅଲକ୍ଷଣୀ ହିନକପାଳୀକି ସଭିଏଁ ଛାଡ଼ିଗଲ କି ଗୋ? ମା, ତୁ ମୋତେ କ୍ଷମାକରିବୁ କି?'' ଶାଶୁ ଲଳିତାର ହାତ ଧରିପକାଇଲେ। ଲଳିତା କାନ୍ଦିଲା। ସେ ଦିନ ଶାଶୁବୋହୂ ଅନେକ କଥାହେଲେ। ବୋହୂର ସଂସାରତ୍ୟାଗର ବାସନା ଜାଣି କାନ୍ଦିକାନ୍ଦି କହିଲେ, ମୁଁ ମଲେ କରିବୁ।''

ବାତରେ ବଡ଼ କଷ୍ଟପାଇ ଚାରିମାସକାଳ ଘାଣ୍ଟି[୧] ହୋଇ ବୁଢ଼ୀ ଇହଜଗତ ଛାଡ଼ିଲେ। ତାଙ୍କ ପଛେପଛେ ସଂସାର ଛାଡ଼ିଲେ ଲଳିତା, ତାଙ୍କର ସ୍ୱେଚ୍ଛାସଙ୍ଗିନୀ ହେଲେ ରମାସୁନ୍ଦରୀ ଓ ତମାଳିନୀ। ଦିନେ ଦିନଗାଡ଼ିରେ ସେମାନେ ପୁରୀ ପହଞ୍ଚିଲେ। ତାଙ୍କର ଲୁଗା ଗେରୁଆ, ଗଳାରେ ତୁଳସୀ-ମାଳା।



## ଉପସଂହାର

ସେସମୟରେ ରଥଯାତ୍ରା। ଲୋକସମାଗମରେ ପୁରୀ ସହର ପୂର୍ଣ୍ଣ। ରଥ ଦେଖିବା ଅଭିପ୍ରାୟରେ ବୃନ୍ଦାବନ ପୁରୀ ଗଲେ। ସେଠାରେ ଦୁଇ ଭାଉଜ ଓ ଭଉଣୀଙ୍କ ସଙ୍ଗେ ଭେଟ ହେଲା। ଅଳ୍ପଅଳ୍ପ ମେଘ ହେଉଥିଲା। ଗୋଟିଏ କୋଠା ପିଣ୍ଡାରେ ଚାରିଜଣ ଯାଇ ବସିଲେ। ନାନା ଦୁଃଖସୁଖ କଥା ହେଉଁହେଉଁ ଲଳିତା ବୃନ୍ଦାବନକୁ ପଚାରିଲା, ''ଏଥର ବିବାହ କର।'' ସ୍ୱଭାବସୁଲଭ ସରଳତାରେ ହସିହସି ବୃନ୍ଦାବନ କହିଲେ, ''ବିବାହିତ ଜୀବନ ତୋର ଦେଖିଲି, କ୍ଷମାକର ବୋହୂ, ମୋର ବିବାହରେ ବାସନା ନାହିଁ।''

(୧) କଷ୍ଟପାଇ।

''ପିଲାପିଲି ଖୋଜୁନା?'' ବୃନ୍ଦାବନ ଉତ୍ତର ଦେଲେ, ''ମୋର କଣ ପିଲାର ଅଭାବ। ତୁମର ଛ'ଟା ପିଲା, ବଡ଼ ବୋହୂଙ୍କର ଯୋଡ଼ିଏ, ନାନୀର ତିନୋଟି, ମୁଁ ତ ବୁଢ଼ା ହେଲିଣି, ନାତିନାତୁଣୀ ଦେଖିଲିଣି।''

ଦିଅର ମୁହଁକୁ ଚାହିଁ ବୋହୂ କହିଲେ –

ଧନ୍ୟ ଜୀବନ ଏ ଜଗତେ
ଯେ ପ୍ରାଣଧରେ ପ୍ରାଣୀ ହିତେ।
ଧନ୍ୟ ଜୀବନ ଧନ୍ୟ ତାର
ଦୁର୍ଲ୍ଲଭ କର୍ମ ଏ ବେଭାର।''

ଭକ୍ତିଭରେ ସମସ୍ତେ ମଥା ନୁଆଁଇଲେ। କିଛି କ୍ଷଣପରେ ବୃନ୍ଦାବନ ପଚାରିଲେ, ''ଏଠି ଏଭଳା କଣ କରୁଛ?

ଲ– ପ୍ରାଣୀସେବା, ରୋଗୀ ଓ ଦୁଃଖୀ ଶୁଶ୍ରୂଷା ଆଉ ହରିନାମକୀର୍ତ୍ତନ।'' ବୃନ୍ଦାବନର ଆଖି ଅଶ୍ରୁପୂର୍ଣ୍ଣ ହେଲା। ଧୀରେଧୀରେ କହିଲେ, ''ମୁଁ କେଉଁଦିନ ଆସି ଯୋଗଦେବି! ମୋ' ଉପରେ ଯେ ସଂସାରର ଭାର ପକାଇଆସିଛ।''

''ସବୁ ସେ ହରିଙ୍କ ଇଚ୍ଛା।''

× × ×

ସେ ରାତିଟି ବଡ଼ ଗଭୀର, ବଡ଼ ନୀରବ। ପବନଟି ବଡ଼ ମଧୁର। ଆକାଶଟି ବଡ଼ ସୁନ୍ଦର। ଦୂର ସୈକତ ଭୂମିରୁ ଜ୍ୟୋତ୍ସ୍ନାଧୋଉ ସାଗରବକ୍ଷଟି ବଡ଼ ମନୋହର। ଏକାକିନୀ ଲଳିତା ସମୁଦ୍ର କୂଳରେ ବୁଲୁଛି। ତାହାର କଣ୍ଠରେ ହରିନାମ ସଙ୍ଗୀତ, ଆଖିରେ ଆନନ୍ଦାଶ୍ରୁ, ହୃଦୟରେ ଦିବ୍ୟ ଭାବ! ଦୂର ଆକାଶକୁ ଅନାଇ, ପୂର୍ଣ୍ଣମୀ ଚାନ୍ଦର ପରମସୁନ୍ଦର ରୂପସୁଧାରେ ମୋହିତହୋଇ ଲଳିତା ଭାବିଲା,''ସ୍ୱାମିନ୍! ପ୍ରଭୁ! ସତେ ଚାଲିଯାଇଛ ମୋତେ ଛାଡ଼ି। ନା ନା! ହେଇ ତ ଆକାଶରେ ତୁମ୍ଭର ରୂପ, ପବନରେ ତୁମ୍ଭର ମଧୁର ସ୍ପର୍ଶ! ଅନ୍ତରରେ ତୁମେ ମୋର ଯେ ଜାଗ୍ରତ ଓ ଜୀବନ୍ତ ଦେବତା! ପ୍ରଭୁ ତୁମକୁ ନମସ୍କାର।'' ତାହାର ଯୁକ୍ତକର(୧) ଲଲାଟ ସ୍ପର୍ଶ କଲା– କେବଳ ଶୁଭିଲା ''ଓଁ ଶାନ୍ତି! ଶାନ୍ତି! ଶାନ୍ତି!''



(୧) ଦୁଇ ହାତଯୋଡ଼ି ନମସ୍କାର ମୁଦ୍ରା।

# ଭୂମିକା

ଓଡ଼ିଶାରେ କଳିଆଖୋରଣୀର ଅଭାବ ନାହିଁ। ବିଲାତି 'Katherine the shrew'ମଧ୍ୟ ପାଠୁଆଙ୍କ କତିରେ ପରିଚିତା। ଆମ ନଅତୁଣ୍ଡୀ, ତୁଚ୍ଛା ଓଡ଼ିଆଣୀ, ମଫସଲିଆଣୀ, ତାର ନିଜର କିଛିଗୁଣ ଥିଲେ ଆଦର ପାଇବ। ନୋହିଲେ ଝାଡୁପାହାର।

କଥାରେ କହନ୍ତି –

ବାଳ ଥିଲେ ବିନ୍ଧ,

ଗୁଣଥିଲେ କାନ୍ଦ।

କିନ୍ତୁ ନଅତୁଣ୍ଡୀ ନିତାନ୍ତ ନିର୍ଗୁଣୀ, ସେଥିପାଇଁ ସଭିଏଁ ହସିଲେ ସେ ଖୁସୀ ହେବ।

ହସ, ଅପାଠୁଆ ହସ !

ପାଠୁଆ, ଦୋଷଖୋଜି ବୁଲିବସ।

୧.୪.୨୫ ପ୍ରଣେତ୍ରୀ

କଟକ

# ''ପହିଲି କଥା''

ମାଟଣା ଆଡ଼େ ବିଦିଆର ଘର। ଖଣ୍ଡେଇତ ଘର ପୁଅ। ଲୋକଟି ବଡ଼ ଗରିବ, ମୂଲିଆମୁଣ୍ଡ[୧], ଓଳିଏ ଖାଇଲେ ଆର ଓଳିକି ଦାନା[୨] ନାହିଁ। ତହିଁକି ପୁଣି ନିପଟ ଓଲୁ[୩]। ତୁମେ ଯେବେ ଟଙ୍କାକର ପଇସା ଗଣିବାକୁ ଦବ, ଆଉ ଟଙ୍କାକ କେତେ ଅଣା ପଚାରିବ, ବୁଢ଼ା ଘଡ଼ିଏ ଖଣ୍ଡେ ତୁନି ହେଇ ଭାବିଚିନ୍ତି ଜବାବ ଦବ, କେବେ ଷୋଳଅଣା[୪] ତ କେବେ ସତର ଅଣା। ବୁଢ଼ା ଘଟରେ[୫] ବୁଦ୍ଧି ବୋଇଲେ ଏତିକି, କିନ୍ତୁ ତା' ଭାରିଯା ଗେଲ୍ହୀ ଆଉ ଝିଅ ରତନୀ ନାଁ, ଗାଁ ଗଣ୍ଡାକରେ ବିଖ୍ୟାତ। ସେମାନେ ମସ୍ତ[୬] କଳିଆଖୋରଣୀ[୭], କଣ୍ଟା ବାଡ଼ରେ ଲୁଗା ପକାଇ କଳିଆ କରିବେ। ଗାଁ ମାଇପେ ତାଙ୍କ ଜ୍ୱାଳାରେ ଅଥୟ। ପର ଘର ଭାଙ୍ଗିବା, ତୁଣ୍ଡାକୁ ତୁଣ୍ଡା ଯା' ମନ ତାଠି, ତା' ମନ ଯାଠି ବିରିସେଇବା[୮], ବୋହୂ ବିରୁଦ୍ଧରେ ଶାଶୂକୁ, ଶାଉ ବିରୁଦ୍ଧରେ ବୋହୂକୁ ମତେଇକି ଯେ କଳିକନ୍ଦଳ ଭିଆଣ କରନ୍ତି, ତାର ସୀମା ନାହିଁ। ହେଲେ କହିବ କିଏ? କାହା ଜିଭରେ ହାଡଟା ଅଛି?

ଲୋକେ କହନ୍ତି ଗେଲ୍ହୀ ଶ୍ରେଷ୍ଠ ପଧାନଘର ଝିଅ। କୁଆଡ଼େ ଆଗ କାଳରେ ତାଙ୍କ ଘର ପୁଅମାନେ ନଡ଼େଇକି[୯] ଯାଇ ବୀରପଣିଆ ଦେଖେଇ ଶାଢ଼ି ଶିରପା ପାଇଥିଲେ। ଆଜିଯାକେ କିନା ତା' ବାପ ଘରେ ଖଣ୍ଡେ ଦନ୍ତୁଡ଼ା[୧୦] କଟାରୀଟା ପୂଜା ହୁଏ। ସେ ସବୁ ଓଡ଼ିଆ ଅମଳ କଥା। ମୁକୁନ୍ଦଦେବ ଯେତେବେଳେ ଲକ୍ଷେ ରଜାର ମଉଡ଼ମଣି ଥିଲେ; ସେତେବେଳେ ଯାର କୋଉ ତା' ବାପ, ତା' ବାପ, ତା' ବାପର ଚଉଦ ପୁରୁଷ ଆଗର କହ୍ନେଇ ପଧାନ ପଠାଣଙ୍କ ସାଙ୍ଗରେ ଯୁଦ୍ଧକରି ତାଙ୍କୁ ହଟେଇ[୧୧] ଦେଇଥିଲା, ଆଉ ରଜା ପଦ ଦେଇଥିଲେ ଗଡ଼ନାୟକ। ଆଜି ଯାକେ ଗଡ଼ନାୟକ ଘର ଝିଅ ବୋଲି ଗେଲ୍ହୀର ଟାଣ[୧୨] କିଏ ଦେଖିବ।

---

(୧) ମଜୁରିଲାଗି ପେଟ ପୋଷୁଥିବା ଲୋକ, (୨) ଖାଦ୍ୟ, (୩) ବୋକା, (୪) ୬୪ ପଇସା, ଏକଟଙ୍କା (୫) ମୁଣ୍ଡ, ଦେହ (୬) ପଟୁ, ଓସ୍ତାତ, ଦକ୍ଷ (୭) କଳିହୁଡ଼ୀ, (୮) ଅପଡ଼ କରିବା, (୯) ଯୁଦ୍ଧ, (୧୦) ଧାର ନଥିବା, (୧୧) ଘଉଡ଼ାଇ ଦେବା, ପରାସ୍ତ କରିବା, (୧୨) ଦମ୍ଭ, ଗର୍ବ

ପୋଖରୀ ତୁଠରେ ଶୁଣିବ ତା' ବୟାନ[୧]। ସେଠି ଦାନ୍ତ ଘସୁଥିବ, ପିଉଳ ଖଡୁମୁଠାଟା ମାଜୁଥିବ, ନଇଲେ ଆଣ୍ଠୁଏ ପାଣିରେ ଠିଆ ହୋଇ ଗୋଡ଼ ଘସୁଥିବ, ଆଉ ଗାଉଥିବ ନିଜ ପୂର୍ବପୁରୁଷଙ୍କ କୀର୍ତ୍ତି! ବେଶି ପୁଣି ଯେଉଁଦିନ ବିଦିଆ ବୁଢ଼ା ସାଙ୍ଗେ କଜିଆ ଲାଗିଥିବ, ସେ ଦିନ ସ୍ୱାମୀ ବଂଶର ନୀଚପଣିଆ ସାଙ୍ଗେ ନିଜ ବାପ ଜେଜେ ବାପର ବଡ଼ ପଣିଆକୁ ଉଲୁଖା[୨] ଦେଇ ବକୁଥିବ। ଶୁଣିବା ଲୋକେ ବି ମିଳନ୍ତି ଅନେକ।

କିନ୍ତୁ ସତ କହିବାକୁ ଗଲେ, ବିଦିଆ ବି ଊଣା ଘର ପିଲା ନ ଥିଲା; ଆଜି ସିନା ଗରିବ ହେଲା। ତା' ବାପା ମା ଥିଲେ, ବିଦିଆର ଏ ଦଶା ହେଇ ନଥାନ୍ତା। ବିଚରାଟିର ବଡ଼ ଅଭାଗ୍ୟ କପାଳ, ତିନି ମାସର ହେଇଥିଲା ବାପ ମଲା, ତିନି ବର୍ଷ ନୋହୁଣୁ ମା ମଲା। ବିଦିଆକୁ ଆଉ ଦେଖିବ କିଏ? ଖୁଡ଼ୀ ଖୁଡୁତା ସବୁ ସମରି ମାଇଲେ[୩]। ଗାଁଆର ସାହାଲାରେ[୪] ତାଙ୍କ କୋଠାବାଡ଼ି। ଖୁଡ଼ୀର ଅତ୍ୟାଚାର ସହି ନପାରି ବିଦିଆ ଘର ଛାଡ଼ି କେତେ ବର୍ଷ କୁଆଡ଼େ ପଳେଇ ଯାଇଥିଲା। ଫେରି ଅଇଲାବେଳକୁ ଖୁଡ଼ୀର କାଳ ହୋଇ ସାରିଥିଲା। ଖୁଡୁତା[୫] ତାକୁ ଆଉ ଗାଁ ପଧାନର ଝିଅ ଗେଲହୀ ସାଥିରେ ହାତକୁ ଦିହାତ କରି ଦେଲା। ହେଲେ କଣ ହବ, ଗେଲହୀର ତ ଯା' ନଣନ୍ଦ ସାଙ୍ଗେ ଦଣ୍ଡେ ପଡ଼ିଲା ନାହିଁ। ଦିନ ରାତି କଳିକରି ସ୍ୱାମୀକୁ ଶିଖେଇ ଭିନ୍ନ[୬] ହେଲା। ସେତେବେଳେ ବିଦିଆର ବି ବୟସ ଥିଲା। ଦୋଟି[୭] ପୁଅ ହେଇଥିଲେ।

ଭାର୍ଯ୍ୟା[୮] ଶିକ୍ଷାରେ ପଡ଼ି ଭିନ୍ନ ହବାର କୋଡ଼ିଏ ବର୍ଷ ହବ। ହେଲେ ସ୍ୱାମୀକୁ ହାତ ମୁଠା ଭିତରେ ରଖି ଭିନ୍ନଭାନ୍ନ ହେଇ ଗେଲହୀର କିଛି ଯଶ ହେଲାନାହିଁ। ହଇଜାରେ ପୁଅ ଦୋଟିଯାକ ମଲେ। ସେତେବେଳକୁ ଗଉନୀ ଜନମ ହେଇଥାଏ। ପୁଣି ଥରେ ବୈଶାଖ ଜ୍ୟେଷ୍ଠ ଆଡିକି ବିଦିଆକୁ ବଡ଼ ଶୂଳା ପୋଖରୀ ଧଇଲା। କିଛିରେ ଯୋଉଠୁ ଭଲ ନୋହିଲା, ଗାଁ ବଇଦ ମାଗୁଣି ମିଶ୍ରେ ବତେଇଲେ, ଅଧଲାକର ଆପୁ[୯] ଖା'। ବୁଢ଼ା ଅଧଲାକର ଆପୁ ଖାଇବା ଅଭ୍ୟାସକଲା। ମହାପୁରୁଷ କଇଲାଣରେ[୧୦] ରୋଗଟା ତ ଭଲ ହେଲା, ଆପୁ ଛାଡ଼ିବା ଦୂରେ ଥାଉ, ବଢ଼ି ବଢ଼ି ଆଜିକାଲି ଦଶ ପଇସାରେ ଠେକିଲାଣି।[୧୧] ଅଫିମ ଖାଇଲାଦିନୁ ବିଦିଆର ଆଗ ମତି ଗତି[୧୨] ନାହିଁ। ସେମିତି ଚଞ୍ଚଳ, ସେମିତି କାମିକା, ସେମିତି ବୃଦ୍ଧକପଣିଆ କୁଆଡ଼େ ଗଲାଣି। ରୋଗ ବଇରାଗ, ନିଶାପତ୍ରରେ ସବୁ ଗଲାଣି! ଅଛି ଖାଲି ମୁଣ୍ଡ ଗୁଞ୍ଜିବା ଚାଳ ଖଣ୍ଡିକ। ସେହିଟାବି ଏ ବରଷ ଛୁଆଣି ହେଲାପରି ଦିଶୁ ନାହିଁ। ଟଙ୍କା କାହିଁ ଯେ ହବ।

ଘର ଚଳାନ୍ତି ଗେଲହୀ ଆଉ ତା' ଝିଅ। ଦୁଃଖଧନ୍ଦା କରି, ଧାନ କୁଟି, ଧାନ ଉସେଇଁ ପରଘର ପାଞ୍ଚପାଇଟି[୧୩] କରି ମା ଝିଅ ଚଳନ୍ତି। ମା ଝିଅ ଯୋଡ଼ିକ କିନ୍ତୁ ବଡ଼ କର୍ମଶୀଳ। ଗାଁ ଗୋଟାକରେ ଲୋକେ ତାଙ୍କୁ ସେଇ ଗୁଣରୁ ଏକା ପାଖରେ ପୂରାନ୍ତି। ଯେତେ ଭିଡ଼ କାମ

(୧) ବ୍ୟାଖ୍ୟା, ଚର୍ଚ୍ଚା, (୨) ଉଦାହରଣ, ଢ଼ଙ୍ଗ, (୩) ଅକ୍ତିଆର କରିଦେବା, (୪) ଦାଣ୍ଡର ଉଭୟ ପାଖରେ ତିଆରି ଘରର ଧାଡ଼ି, (୫) କକା, (୬) ଅଲଗା, (୭) ଦିଓଟି, (୮) ସ୍ତ୍ରୀ, (୯) ଅଫିମ, (୧୦) କଲ୍ୟାଣ, ଆଶୀର୍ବାଦ, (୧୧) ପହଂଚିଲାଣି, (୧୨) ମନ, (୧୩) କାମଧନ୍ଦା।

ହଉ, ଗେଲ୍‌ହୀ ରତନୀର ଡର ନାହିଁ। ପୁଅ ମଲା ଦିନୁଁ ଗେଲ୍‌ହୀର ଟିକେ ବଳ ଭାଙ୍ଗି ଗଲାଣି। କିନ୍ତୁ ରତନୀ ସବୁଥିକି ଆଗୁସାର।[୧]

ରତନୀ ଦେଖିବାକୁ ସୁନ୍ଦର ସତ, ବର୍ଣ୍ଣ ବି ମସିଆ ନୁହେ। ଡଉଲଡାଉଲ ଗୋଲଗାଲ ଚେହେରା। ହେଲେ ନାକଟା ଟିକେ ଚେପା। କିନ୍ତୁ ସେ କଥା ତାଙ୍କୁ କିଏ ଭରସି କରି କହିବ; କେଜାଣି କଥାରେ ତୁମ ଅନ୍ତପିର ଦୁହିଁଦବ। ତା'ପରି ସାହସୀ ଆଉ ଜବରବୁକୁ[୨] ଝିଅ ସେ ଅଞ୍ଚଳରେ ଆଉ ଦୋଟି ନ ଥିଲେ। ଆଖପାଖ ଗାଁ ଗଣ୍ଡାରେ ମଧ୍ୟ ତା' ନାଁ ପଡୁଥିଲା। ପାଣିରେ ପହଁରିବାକୁ, ଗଛ ଚଢ଼ିବାକୁ, ବିଲବାରି ହଣାମରା କରିବାକୁ, ଧାନ କୁଟିବାକ, ଧାନ ଉସେଇବାକୁ ରତନୀ ଯେମିତି ପାରେ, ଆଉ କିଏ ସେମିତି ପାରିବ? ପାଣିକଢ଼ାରେ ସେ ସଭିଙ୍କି ଜିତେ। ପୁଣି ଖୋରଣୀ[୩] ପଣରେ ତହିଁକି ବଳି।

ଭାରି କଳିଆଖୋରଣୀ କହିଲେ ବି ତାଙ୍କ ଗୁଣକୁ ଯଥେଷ୍ଟ ନୁହେଁ। ତାଙ୍କୁ ପୁରୁଷ, ସ୍ତ୍ରୀ, ପିଲା, ବୁଢ଼ା ସଭିଏଁ ଭୟକରନ୍ତି। ଥରେ ବିଦିଆ ଘରେ ଗୋଟାଏ ଚୋର ପଶିଥିଲା। ତା' ଘରେ ବା କ'ଣ ଅଛି, କଁସା, ଥାଳି ପଟକ। ଚୋରର ଖଡ଼ଖଡ଼ରେ ରତନୀର ନିଦ ଭାଙ୍ଗିଲା। ମାକୁ ଠେଲି ଉଠେଇ ଦେଇ ଗୋଟିଏ ଫାରସା ଧରି ଚୋରକୁ ଗୋଡ଼େଇ ଗଲା। ଚୋର ତ କାନ୍ଥ ଡେଇଁ ପାର। ମା ଝିଅ ହାଉଳିରେ[୪] ଗାଁ ଲୋକେ ଧାଇଁ ପଡ଼ିଲେ। ବିଦିଆ ତ କୋଣରେ ବସି ଥରୁଥାଏ। ସେତେବେଳକୁ 'ଚୋ' 'ଚୋ' କହି ତା' ପାଟି ପଡ଼ି ଗଲାଣି।[୫] ଲୋକେ ଆଜିଯାକେ ଏ କଥା ଗପ କରନ୍ତି।

ରତନୀକି ଆସି ହେଲାଣି ଷୋହଳ ବର୍ଷ। କିନ୍ତୁ ବାହାସାହାର ନାଁ ନାହିଁ। ତାଙ୍କୁ ବା ବାହା ହବ କିଏ? ସେ ତ ପକ୍କା କଳିଆଖୋରଣୀ। ରତନୀ ନାଁ କିଏ ଶୁଣିନାହିଁ ଯେ, ତାଙ୍କୁ ଭରସି[୬] ବେନ୍ଥୁ କରିବ। ବିଦିଆର ବା କ'ଣ ସମ୍ବଳ[୭] ଅଛି? ହେଲେ ଥରେ ରତନୀ ଭାଗ୍ୟରେ ଗୋଟିଏ ବର ଘଟଣା ହେଇଥିଲା। ତା' ନାଁ ଭାଲୁଆ। ଭାଲୁଆର ଜାତି ବି ଭଲ ନୁହଁ, କି ତା' ଗୁଣ ବି ଭଲ ନୁହଁ। ଗଞ୍ଜେଇ ଖିଆରେ ପାଣ୍ଡ୍। ଦିନେ ଆଖଡ଼ାରେ କ'ଣ କଥା ପଡୁ ପଡୁ ନବଘନିଆ ତାଙ୍କୁ ଥଟ୍ଟାକରି ରତନୀର ବର ବୋଲି କହିବାରୁ ସେବି ସତକୁ ସତ ରତନୀକି ବାହା ହବାକୁ ମଜ୍ଜିଲା[୮]। ଗାଁ ଯାକ ସମସ୍ତେ ଜାଣନ୍ତି– ରତନୀ ମା' ଯେମିତି ଖୋରଣୀ, ତା ଝିଅ ସେମିତି ଖେରଣୀ। ଜାଣି ଜାଣି ପିଲାମାନେ ତାଙ୍କ ସାଙ୍ଗେ ଲଗାନ୍ତି। ଭାଲୁଆ ପରି ଦୁଷ୍ଟ ସେ ଖଣ୍ଡକରେ ନ ଥାନ୍ତି।

ଦିନେ ଗେଲ୍‌ହୀ ଗାଧେଇ ଆସୁଥିଲା, ମାରକଣ୍ଡିଆ ତା' ପଛାଡ଼େ ତାଳି ମାରି ମାରି କହିଲା, ''ଭାଲୁଆ ଶାଶୁ! ଭାଲୁଆ ଶାଶୁ!'' ଗେଲହୀ କାନରେ ପଡ଼ିଗଲା। ସେ ମାରକଣ୍ଡିଆକୁ

(୧) ଆଗୁଆ, (୨) ସାହାସୀ ଓ ବଳୁଆ (୩) କଳିହୁଡ଼ୀ, (୪) ପାଟିତୁଣ୍ଡ, (୫) କଥା କହିନପାରିବା, (୬) ସାହସକରି, (୭) ସଂପତ୍ତି, ଧନରତ୍ନ, (୮) ରାଜିହେବା।

ଧରି ନିର୍ଘୁମ ଛେଚିଲା। ମାରକଣ୍ଡିଆ କାନ୍ଦି ବୋବେଇ ଯାଇ ତା' ବାପ କତିରେ ଗୁହାରି କଲା। ବାପ ମଦନା ଏ କଥା ଶୁଣି ସେହିକ୍ଷଣ ଗେଲହୀ ଦୁଆରେ ଯାଇ ହକାର। ଗେଲହୀର ତାର ଆଜ୍ଞା ଦି'ପଟା କଳିଆ ଲାଗିଗଲା। ଗାଁର ପଞ୍ଚ ଭଲଲୋକ ମିଶି ନିଷାପ କଲେ। ଗେଲହୀ କଳିଯା କଲା, ବିଦିଆ ଦେଲା ଟ.୦.୪ ପଇସା ଜୋରିମାନା! ବିଦିଆ ତ ଓଲୁ। ଜାତି ଭଲଲୋକ ଗଲାରୁ ଗେଲହୀକି ଶୋଧିଲା। ସେଠୁ ତାର ଗେଲହୀର ରାତି ଅଧରେ ଭାରି କଳିଆ ଲାଗିଲା। ସାଇ କମ୍ପିଲା। ରାଗରେ ବିଦିଆ ରାତା ରାତି ଉଠି ଖୋରଧା ପଳେଇଲା।

ଆଉ ପନ୍ଦର ଦିନଯାକେ ବିଦିଆର ଦେଖା ନାହିଁ। ଗାଁରେ ସ୍ତ୍ରୀମାନେ ଭିତରେ ଭିତରେ ବିଦିଆ ଆଉ ଗେଲହୀ କଥା ଫୁଟୁରୁ ଫୁଟୁରୁ ହେଲେ। ଗେଲହୀ କାନରେ ପଇଲା। ପୋଖରୀ ତୁଠରେ ସାତ ପାଞ୍ଚ ମାଇକିନା ଗାଧୋଉ ଥିଲେ। ବେଳ ବୁଝି ଗେଲହୀ କଥାଟା କାଢ଼ିଲା। ନଈଖଣା ଭାରିଯା ସେଥିରେ ପଦେ ଦିପଦ କହିଲା। ନବଘନିଆ ମାଁ ସେଥିରେ ମିଶିଗଲା। ଭାଲୁଆ ମାଁ ଥିଲା ଥିଲା, କହିଲା– ''ହ, ଚେପଟୀନାକୀ, କଠଉଗୋଡ଼ୀ କି ବୋହୂ ନ କଲେ ମୋ' ଦିନ ସରୁନାହିଁ। ଝିଅର ରୂପ ବର୍ଣ୍ଣନା ଶୁଣି ଗେଲହୀ ବାରୁଦ ପରି ଜଳି ଉଠିଲା। ସେ ଏକାବେଳେ ଯାଇ ତା' ଉପରେ ପଡ଼ିଲା। ପିଇଳ ଖଡୁରେ ଖୁବ୍ ମାଇଲା, ସେଦିନ ଭାଲୁଆ ମା' ତା' ହାତରୁ ମାଡ଼ଖାଇ କେତେଦିନ ତା' ପିଠି ପରାସ[୧] ହୋଇ ରହିଲା। ଚାରିଦିନ ବିଛଣାରୁ ଉଠି ପାରିଲା ନାହିଁ। ଗାଁ ଲୋକେ ପୁଣି ନିଷ୍ପରି କଲେ।

ତାଙ୍କ ଗାଁର ପ୍ରଧାନ ବେହେରା ନାଁ ବାଇଧର ଜେନା; ସେ ପୁଣି ଗେଲହୀର ଦେଢ଼ଶୁର[୨]। ସେ ତାଙ୍କର ଜମିବାଡ଼ି ସବୁ ମାରିଥାଏ[୩]। ଗେଲହୀ ଦାଉ କେମିତି ନବ ଉଣ୍ଡୁଥାଏ। ରାଗରେ ତା'ହାଡ଼ କଡ଼ କଡ଼ ଡାକୁଥାଏ। ଥରେ ତାଙ୍କର ଜାତିସଭା ବସିଥିଲା। ପାଞ୍ଚ ପଞ୍ଚୁ[୪] ବଇଥିଲେ। ନ୍ୟାୟ ନିଷାପ ହଉଥିଲା। ଗେଲହୀ ଯାଇ ହାଜର। ସେ ଦିନ ସେ ସମସ୍ତଙ୍କୁ ତା' ପ୍ରାଣପଣେ ଶୋଧିଲା। ତାଙ୍କ ଘରେ ଯାହା ଯାହା ହୋଇଥିଲା ସବୁକଥା କାଢ଼ିଲା। ପରର ଛିଦ୍ର ଖୋଜି ବୁଲିବା ଥିଲା ତା' କାମ। ଗାଁ ପଞ୍ଚଏତର ବାଉରୀ ବନ୍ଧୁ ସାହାଣୀର ଝିଅ କଲିକତା ଚାଲି ଯାଇଥିଲା, ନିତେଇ ପ୍ରଧାନ ବୋହୂ ଅଫିମ ଖାଇ ମରିଥିଲା, କିଏ କାହାର କିସ ଚୋରି କରିଥିଲା, ଏସବୁ ବୟାନ କଲା। ଧେଠୁ ଭାରି କଳିଆ ଗୋଳ ଲାଗିଗଲା। ଚେମୀ ମାଁ ସଇତା ଘରୁ କେତେ ଗୌଣୀ ଧାନ ଚୋରି କରିଥିଲା। ଗେଲହୀ ତାକୁ ଧରା ପକାଇଦେଲା। ସବୁକଥା ନିଷାପ ହଉଁ ହଉଁ ମାସେଖଣ୍ଡେ ଲାଗିଲା। ହେଲେ କଳିଆ ଥମିଲା ନାହିଁ।

ସକାଳେ ଉଠି ଶୁଣ, ସେ ଗାଁରେ କଳିଆ ଲାଗିଛି, ସଞ୍ଜେ ଶୁଣ ସେ ଗାଁରେ କଳିଆ ଲାଗିଛି। ଗେଲହୀ ନିଜେ କେବଳ କଳିଆ କରେ ତା' ନୁହେଁ, ଲଗେଇ ଜୁଟେଇ[୫] ଢ଼େର କଳିଆ ତିଆଣ[୬] କରେ। ଗେଲହୀ ସାଙ୍ଗକୁ ଆହୁରି କେତୋଟି ବୁଢ଼ୀ ସେ ଗାଁରେ ଥାନ୍ତି।

---

(୧) ଦରଜ, (୨) ସ୍ୱାମୀର ବଡ଼ଭାଇ, (୩) ଅନ୍ୟାୟରେ ନିଜର କରିଦେବା, (୪) ଗ୍ରାମସଭା, (୫) ଯୋଡ଼ାଯୋଡ଼ି କରିବା, (୬) ସୃଷ୍ଟିକରିବା।

ଗେଲ୍‌ହୀ ଥାଏ ତାଙ୍କ ସରଦାର[୧]। ଗୋବରା ପିଣ୍ଡାରେ ନିତି ସନ୍ଧ୍ୟାକୁ ବୁଢ଼ାଙ୍କର ସଭା ହୁଏ, ଗେଲ୍‌ହୀ ହୋଇଥାଏ ସଭାପତି। ସେ ବର୍ଷ ମୋଟେ ଖେତ ହେଲାନାହିଁ। ସୁନ୍ଦରା ନହାକ ବାଇଧର ଜେନାର ଜମି ଧରିଥାଏ। ଗେଲ୍‌ହୀ ଓରବୁଝି ବାଇଧର ଜେନାଘର ଚାକରାଣୀ ସୋବି ଆଗରେ ଗାଧୁଆ ତୁଠରେ ଦିନେ କହିଲା, ''ସୁନ୍ଦରା ନାହାକ ବାଇଧରର ଦି' ଭରଣ ଧାନ ଖାଇ ଯାଇଚି।'' କଥାଟା ବାଇଧର କାନରେ ଉଠିଲା। ସେ ଭାରି ସନ୍ଦେହୀ ଲୋକ। ଗଲା ସୁନ୍ଦର ନାଁରେ ମକଦ୍ଦମା କରି। ମକଦ୍ଦମା ଲାଗିଲା ଛ ମାସ! ଖୁବ୍ ଥୋଡ଼ାଏ ଟଙ୍କା ଖରଚ ହେଲା। ଖୋରଧା କଚିରୀକି, ଆଉ ପୁରୀକି ଦଉଡ଼ି ଦଉଡ଼ି ତାଙ୍କର ଗୋଡ଼ରୁ ପାଣିମଲା। ଗେଲ୍‌ହୀର ହିଂସା ଲାଗିଥାଏ। କଣ୍ଡୁରିଆ ଘରେ ଗୋଟାଏ ଗୋରୁମଲା, ସେ ବିଚରା ଜାଣିନାହିଁ। ଗେଲ୍‌ହୀ ଯାଇ ସନେଇ ମହାପାତ୍ରକୁ ଖବର ଦେଇ ଆଇଲା। ମହାପାତ୍ରେ ସେହିକ୍ଷଣି ଧାଇଁ ଆସିଲେ, ପ୍ରାୟଶ୍ଚିତ ହେଲା, କ୍ରିୟା କର୍ମ ହେଲା, କଣ୍ଡୁରିଆ ଥୋଡ଼ାଏ ଟଙ୍କା ବୁଣିଲା, ତ୍ରାହି[୨] ପାଇଲା।

ଦରଜୀ ସାହିରେ ଧୋବି ମହାରଣା ଘରେ କୁଷୁନିଆ ନିଆଁ ନଗେଇ ଦେଇଥିଲା। ଏକଥା ଗେଲ୍‌ହୀ କୋଉଠୁ ଖବର ପାଇ ଯାଇ ଧୋବି ଆଗେ କହିଲା। ସେଠୁ ସେ ସାହିରେ ଭାରି ଗଣ୍ଡଗୋଳ ଲାଗିଲା।

ଏମିତି ବରାବରି[୩] ହେବାରୁ ଲୋକେ ଗେଲ୍‌ହୀ ସାଙ୍ଗେ କାରବାର ବନ୍ଦକଲେ। ତା' ଦୁଆର ପଇଲା। କେହି ଆଉ ତାଙ୍କ ଘର ପାଖ ଦେଇ ଯିବା ଆସିବା କଲେନାହିଁ। ଗାଁ ଟୋକାଏ ଗେଲ୍‌ହୀକି ନାଁ ଦେଲେ 'ଏଗାର ତୁଣ୍ଡୀ'। ଗେଲ୍‌ହୀ ସାଙ୍ଗକୁ ରତନୀ ହେଇ ଆସିଲା ସେଠୁ ତା' ନାଁ ହେଲା 'ନଅତୁଣ୍ଡୀ।'

ସମସ୍ତେ ଗେଲ୍‌ହୀ ଦୁଆରମଡ଼ା ଛାଡ଼ିଲେ ସତ, ଏକା ଲୋକି ମହାରଣା ଘର ଗେଲ୍‌ହୀ ସାଙ୍ଗେ ବରାବରି ଚଳି ଆସିଲେ। ଖୋରଣୀ ହେଲେ କ'ଣ ଆଉ ସାଙ୍ଗସରିଷା ମିଳିବେ ନାହିଁ। ଲୋକି ବାପ ନାଁ ସତୁରା। ତାର ଆଉ ବିଦିଆର ବଡ଼ ସାଙ୍ଗ। ପିଲାଟି ଦିନୁ ଏକାଠି ଖେଳା ବୁଲା, ଚାହାଳୀ ଯିବା ସବୁ ହେଇଥିଲା। ଦି'ଜଣଙ୍କର ଯେମିତି ଏକା ପ୍ରାଣ।

ଯେତେବେଳେ ଭାଇ ଭଗାରୀଙ୍କ ହିଁସାରେ ବିଦିଆ ଭିନ୍ନ[୪] ହେଲା, ସେତେବେଳେ ସତୁରା ତାକୁ ଆପଣା ଘର ପାଖ ଡିହଟା ଘର କରି ରହିବା ସକାଶେ ଦେଲା। ସତୁରା କୋଉକାଳୁ ମଲାଣି, ଅଛି ଖାଲି ଲୋକା। ଲୋକା ପୁଣି ଭଗବାନପୁର ରାଉତୁରା[୫] ଘରେ କାମ କରେ। ଭଗବାନପୁର ରାଉତୁରା ବଂଶକୁ[୬] କିଏ ନ ଚିହ୍ନେ? ତାଙ୍କର ସାତପୁରୁଷିଆ ଜମିଦାର ଘର, ନାଁ ଡାକ। ଜାତିରେ ଚଷା ହେଲେ ମଧ ଧନ, ମାନ ସକାଶେ ଆପଣାକୁ ମାହାନ୍ତି ବୋଲାନ୍ତି। ତାଙ୍କର ଧାନଜମି କିଜାଣି ଶଏ ବାଟି[୭] ଉପରେ। ବୁଢ଼ା ଜମିଦାର ଯଦୁମଣି ରାଉତୁରାଙ୍କର ଦି'ସଂସାର, ପୁଅ ଛଅଟାକୁ ଝିଅ ପାଞ୍ଚଟା। ଗଣ୍ଡାଏ[୮] ଝିଅ ମରିଛନ୍ତି। ସାନଟା

(୧) ନେତା, ମୁଖ୍ୟ, (୨) ମୁକ୍ତି, (୩) ବାରମ୍ବାର, ପ୍ରାୟ ସବୁବେଳେ, (୪) ଅଲଗା, (୫) ରାଉତରାୟ, (୬) ବଂଶ, (୭) ୨୦ ଏକର, (୮) ଚାରି।

ବାଲୁବିଶ ଆଡ଼େ ବାହା ହୋଇଛି। ବୁଢ଼ାଙ୍କର ୧୦ ବର୍ଷ ହେଲା କାଳ ହେଲାଣି[୧]। ସାନ ଭରିଯା ବି ସତାସାନ ପୁଅ ହରିର ଜନ୍ମବାସି[୨] ଦିନ ମରିଛନ୍ତି।

ବଡ଼ପୁଅ ଶିବଚନ୍ଦ୍ର ଜମିଦାରି ବୁଝନ୍ତି। ତାଙ୍କ ଭାରିଯାଙ୍କର ପିଲାପିଲି ମୂଳରୁ ନାହିଁ। କୋଠାବାଡ଼ି କଥା ବୁଝନ୍ତି ଗୋବିନ୍ଦ। ପୁରୀରେ, କଟକରେ ଯାଙ୍କର ଅନେକ କୋଠାଥାଏ; ଭଡ଼ାଲାଗି ଥାଏ। ମଧୁବନ, ମାଳଣା ଆଡ଼େ ଅନେକ ଜମି ଆଉ ଆମ୍ବ ତୋଟାଥାଏ। ବୀର ତ ଯାଜପୁର ଆଡ଼େ ଓକିଲ। ନବୀନ ଗାଁରେ ଥାନ୍ତି; ସେ ଭାରି ଦେଶଭକ୍ତ। ତାଙ୍କଠି ଦେଖିବ ନାହିଁ ଖଣ୍ଡେ ବିଦେଶୀ ଜିନିସ। ହାତକଟା ସୂତାର ମୋଟ ଲୁଗା। ଯେଡ଼େ ଗରମ ଦିନ ହଉପଛେ ପିନ୍ଧି ବୁଲୁଥିବେ। ମାଁ ମାଉସୀ ଗାଳି କଲେ ବି ଶୁଣନ୍ତି ନାହିଁ। ହସି ହସି କହନ୍ତି, ''ଆପଣା ଦେଶର ଭାତ କପଡ଼ା, ଛାଡ଼ିଲେ ହବଟି ରାଇଜ ଛଡ଼ା[୩]।'' କଣ ଆମେ ଓଡ଼ିଆ ଦେଢ଼ ଗୋଡ଼ିଆ, ଆମର ହାତେ ଓସାର ଚାଖଣ୍ଡେ ଲମ୍ବ ଲୁଗା ହେଲେ ବି ଚଳେ। ଲୋକଟି ଭାରି ନକଲିଆ[୪]। କଥାରେ ମଣିଷକୁ ହସେଇ ହସେଇ ପେଟପରାସ କରିବେ। କିନ୍ତୁ କାମିକା ମଣିଷ। ପ୍ରଜାଙ୍କର ଭାରି ଭଲ ଚାହାନ୍ତି। ତାଙ୍କ ଚେଷ୍ଟାରେ ଗାଁରେ ଅନେକ ଭଲକାମ ହେଲାଣି। ଗାଁରେ ପୋଖରୀମାନଙ୍କରେ ଦଳମାଡ଼ି ତୁଆକୁ ତୁଆଁ[୫] ତାଙ୍କ ଗାଁରେ ବଡ଼ ମେଲେରିଆ ଜର ଧଇଲା। ଲୋକେ ଛାନିଆ ହେଇ ଘରଦ୍ୱାରା ଛାଡ଼ି କଲିକତା, ରେଙ୍ଗୁନ[୬] ଆଡ଼େ ପଳେଇଲେ। ଅନେକ ବି ମଲେ। ପୁଣି ବଡ଼ ଦୁର୍ଭିକ୍ଷ ହେଲା। ନବୀନବାବୁ ବଡ଼ଭାଇଙ୍କି କୁହାପୋଛା[୭] କରି ପ୍ରଜାଙ୍କ ଖଜଣା ମାଫି କରେଇଲେ, ଆଉ ପୋଖରୀରୁ ଦଳ କାଢ଼ିବାରେ ଅନେକ ଟଙ୍କା ଖର୍ଚ୍ଚକଲେ। ଦଳ କିନ୍ତୁ ଜମାରୁ ମରୁ ନ ଥାଏ। ଶେଷକୁ ବାଧ ହୋଇ ଗୋଟିଏ ଯୋଡ଼ିଏ ପୋଖରୀ ବିବାକ[୮] ପୋତିଦେଇ ତିନିଟା କୂଅ ଖୋଳେଇ ଦେଲେ। ଜମିଦାରିର କଣ ଉଣା? ତହବିଲ ଖରଚ ହେଲା? ବଡ଼ଭାଇ ଗାଳି କଲେ। ଏମିତି ପ୍ରତିବର୍ଷ କଲେ; ଭିକ ମାଗିବୁ କହିଲେ। ନବୀନ ସବୁ ଶୁଣନ୍ତି, ପଛନ୍ତେ ଯୋଉ କଥାକୁ ସେଇ କଥା। ପ୍ରଜାଏ କିନ୍ତୁ ତାଙ୍କୁ ଧନ୍ୟ ଧନ୍ୟ କହନ୍ତି।

କୃଷ୍ଣଚନ୍ଦ୍ର ନବୀନ ଭାଇଙ୍କୁ ଭାରି ମାନି ଚଳନ୍ତି। ଦେଶ ଚିନ୍ତା ତାଙ୍କୁ ଷୋଳପଣି[୧୦] ଘାରିଥାଏ। ଦେଶର ଆଦର୍ଶ କେମିତି ହବ, ସାଧାରଣ ଲୋକେ କେମିତି ଶିକ୍ଷା ଦୀକ୍ଷା ପାଇବେ, ଆମ ଦେଶ ଝିଅମାନେ କେମିତି ପଦାକୁ ବାହାରିବେ, ପୁରୁଷଙ୍କ ସଙ୍ଗେ ପାଞ୍ଚଟା ଭଲ କାମରେ ମିଶିବେ; ଆଜିକାଲି ଯେମିତି ଦୁର୍ଭିକ୍ଷ, ଜ୍ୱର ଚାରିଆଡ଼େ ମାଡ଼ିଗଲାଣି[୧୧], ସେସବୁ କେମିତି ଯିବ, ଏସବୁ କଥାର ତଦନ୍ତରେ[୧୨] ହରି, କୃଷ୍ଣ ଆଉ ନବୀନ ଏ ତିନିଭାଇ ଯାକ ବରାବର ଲାଗିଥାନ୍ତି।

କୃଷ୍ଣର ଲୋକନାଥ ବଡ଼ ସାଙ୍ଗ। ଲୋକନାଥ ଜାତିରେ ଦରଜି। ହେଲେ କ'ଣ ହବ କୃଷ୍ଣ ହରି ସାଙ୍ଗରେ ତାର ଅଭେଦ ପ୍ରୀତି। ସେ ଆଗରେ କଟକରେ କୋଉ ଅଫିସ୍‌ରେ କିରାଣିକାମ କରୁଥିଲା। କୋଉଠି କୋଉଠି ଟିଉସନ୍ ବି କରୁଥିଲା।

---

(୧) ମରିଯିବା, (୨) ପରବର୍ତ୍ତୀ, (୩) ତ୍ୟାଗୀ, (୪) ରହସ୍ୟପ୍ରିୟ, (୫) ଥରକୁ ଥର, ବାରମ୍ବାର, (୬) ରେଂଗୁନ, ବ୍ରହ୍ମଦେଶ, ଆଧୁନିକ ମ୍ୟାମ୍ମାର (୭) ଅନୁରୋଧ, (୮) ଛାଡ଼, ଫି, (୯) ପୂରା, (୧୦) ପୂରାପୂରି, (୧୧) ବ୍ୟାପିଯିବା, (୧୨) କ୍ଷେତ୍ର ସର୍ବେକ୍ଷଣ କରି ସତ୍ୟାସତ୍ୟ ଅନୁସନ୍ଧାନ

ବୟସ ଅଳ୍ପ, ପୁଣି ସାଙ୍ଗସୁଙ୍ଗା, ହସ ଖେଳ କଉତୁକରେ ଦିନଯାଏ। ଜାଣ ତ ଆଜିକାଲିକାର ଟୋକାଙ୍କର ଢ଼ଙ୍ଗ[୧]। ତାଙ୍କ ଆଖି ଆଗରେ କୋଉ କଥାଟା କଠିଣ। ମନକାମନ ତାଙ୍କର ଶୂନ୍ୟରେ କୋଠା ହେଇଯାଏ। ମନକାମନ ଦେଶ ଉଦ୍ଧାର କରି ପକାନ୍ତି। କଥାଟା ହଉଛି, ତାଙ୍କ ଭିତରେ ଭାରି ଆଗ୍ରହ। ଯୁବା ଲୋକ କି ନା, ପ୍ରାଣଟା ଫୂର୍ତ୍ତିରେ ପୂରିଛି। କୃଷ୍ଣ ହରି ଆଉ ଲୋକନାଥର ଠିକ୍ ଏଇପରି ସ୍ୱଭାବ। ସେଥିରେ ପୁଣି ଗୁରୁଚରଣ ମିଶିଥାଏ। ଦେଶ ଉଦ୍ଧାର ହଉ ନ ହଉ, ଆଗ ଥୋଡ଼ାଏ ହୋ' ହା' ହେଇଗଲେ। ଦିନକେତେ ଇଂରାଜି ପାଠ ପଢ଼ିବେ ନାହିଁ ବୋଲି ଇସ୍କୁଲ ଛାଡ଼ିଲେ; ଗାଁ ଗାଁ ବୁଲି ଅରଟରେ ସୁତା କଟା, ଲୁଗା ବୁଣା, ଛୋଟ ଜାତି ପିଲାଙ୍କ ସକାଶେ ପାଠଶାଳା କର, ଗାଁ ଗାଁ ପଞ୍ଚାଏତ ବସା, ଏସବୁ କାମରେ ଲାଗିଗଲେ। ଛ ମାସ, ଆଠ ମାସ ପରେ ପୁଣି ଯୋଉ କଥାକୁ ସେଇ କଥା। ବାପ ଯାଇ ଗାଳି କଲାରୁ ପୁଣି କଲେଜରେ ପଶିଲେ। ତାଙ୍କ ଉଦ୍ଦେଶ୍ୟ ଥିଲା ଭଲ, ହେଲେ କେମିତି କଣ କରିବେ, ସେତେ ଠିକଣା କରି[୨] ପାରୁ ନ ଥିଲେ। ବାପ ଭାଇଙ୍କ ଗାଳିରେ ବି ଚପି[୩] ଯାଉଥିଲେ।

କଞ୍ଚା ଉମର[୪], ସଂସାର କଥା ଜାଣନ୍ତି କ'ଣ। କେଡ଼େ କଷ୍ଟରେ ଯେ ପଇସାଟିଏ ରୋଜଗାର ହୁଏ, ତା' ତାଙ୍କୁ କି ଜଣା। ଯାହା ଭଲ ବୁଝିଲେ ସେଇଥିରେ ମାତିଗଲେ।

ସେତେବେଳେ ଗୋଟିଏ ଘଟଣା ଘଟିଲା। ହଠାତ୍ ଶିବଚନ୍ଦ୍ର ମରିଗଲେ। ବଡ଼ଭାଇ ମଲାରୁ ଘରଟି ଭାଙ୍ଗିଲା। ମା ବିଧବା ଲୋକ, ତାଙ୍କୁ ଯେ ଯାହା ବତେଇଲା[୫], ସେ ସେଇଥିରେ ଚାଲିଲେ। ବୀର ବାବୁ ଥାନ୍ତି ଯାଜପୁରରେ, ସେ ଓକିଲ। ପଇସାପତ୍ରକୁ ଭାରି ଚିହ୍ନନ୍ତି। ସାନ ତିନିଭାଇଙ୍କ କାଣ୍ଡ କାରଖାନା[୬] କି ତାଙ୍କ ଦିହ ସହେ! ବାପର ଇଜିମାଲି[୭] ସମ୍ପତ୍ତି ବେଶ୍ ଥିଲା। ଶିବବାବୁର ପୁଅପଡି କିଛି ନଥିଲେ। ମାଁ ଥିଲେ ଗୋବିନ୍ଦ ଆଡ଼ିକି। ବଡ଼ ମଝିଆ ଗୋବିନ୍ଦ ଯେମିତି ହିସାବୀ, ତାଙ୍କ ଭାରିଯାଟି ସେମିତି ଘରଣୀ। ଶେଷକୁ ଭାଇ ଭାଇର କଜିଆ ଗୋଳ ହେଇଁ ଭିନ୍ନ ଭିନ୍ନ ହେଲେ। ଯେଝା ସମ୍ପତ୍ତି ବାଣ୍ଟ ବଖରା[୮] ହେଲା ପରେ, ନବୀନ ଚାଲିଗଲେ କାଶି। ତାଙ୍କର ଦେଶ ସେବାରେ ମନ ଥାଏ ଷୋଳପଣ, ଆଉ କାମଟି କରୁଥିଲେ ପକ୍କା।

ସେତେବେଳେ କାଶିଆଡ଼େ ହିନ୍ଦୁ ଧର୍ମର ଜାତୀୟ ମହାସଭା ହେଉଥାଏ। ନବୀନ ବାବୁ ଯାଇଥିଲେ ପ୍ରତିନିଧି ହେଇଁ। କିନ୍ତୁ ତାଙ୍କର କଣ ମନ ହେଲା, ସ୍ୱାମୀ ଭୋଳାନନ୍ଦ ଗିରିଙ୍କ ଉପଦେଶରେ ସେ ଗେରୁଆ ଲୁଗା ପିନ୍ଧି, ସଂସାରର ସବୁ ଛାଡ଼ିଛୁଡ଼ି ଦେଇ ସେଠି ରହିଗଲେ।

ସାନ ଦି ଭାଇଙ୍କି ବାଗ[୯] ମିଳିଲା। ହରି ଆଇ.ଏ. ପରୀକ୍ଷା ଦେଇ ବି.ଏ.ରେ ପଶିଥିଲେ। ସେ ଆଉ ପଢ଼ିଲେ ନାହିଁ। କୃଷ୍ଣଚନ୍ଦ୍ରଙ୍କର ଏମ୍.ଏ ପଢ଼ିବାକୁ କଲିକତା ଯିବାର ଥିଲା। ସେ ବି ଆଉ ପଢ଼ିଲେ ନାହିଁ। ଲୋକନାଥ ବି ଚାକିରି ଛାଡ଼ିଲେ।

---

(୧) ଆଚରଣ, ଆଦବ କାଇଦା, (୨) ସ୍ଥିର, ସିଦ୍ଧାନ୍ତ, (୩) ନରମିଯିବା, (୪) ବୟସ, (୫) ପରାମର୍ଶ ଦେବା, (୬) କାର୍ଯ୍ୟ, ଆଚରଣ, (୭) ଯୌଥ, (୮) ବାଂଟକୁଂଟ, (୯) ବାଟ, ସୁବିଧା

ସରଦେଈପୁର ଆଡ଼େ ତାଙ୍କର ଗୋଟିଏ ବଡ଼ କୋଠାଥାଏ। ଦି ଭାଇ ଆଉ ଲୋକନାଥ ମିଶି ସେଇଠି ରହିଲେ। ସେମାନେ ଗାଁ ଜମିଦାର। ସହଜେ ପ୍ରଜାମାନେ ତାଙ୍କରି କଥାରେ ଚାଲିଲେ। ପ୍ରଜାଙ୍କ ଖଜଣା କମିଲା। ଫସଲ କେମିତି ଭଲ ହେଲେ ପ୍ରଜାଏ ମୁଠାଏ ସୁଖରେ ଖାଇପିନ୍ଧି ରହିବେ, ଏ ଆଡ଼କୁ କୃଷ୍ଣବାବୁର ଭାରି ଦୃଷ୍ଟିଥାଏ। ସବୁ କଥାରେ ସେ କହନ୍ତି ''ଆଗେ ପେଟ, ପରେ ସବୁ କଥା। ଉଦର ନ ପୂରିଲେ ମଣିଷ, ମଣିଷ ହବ କୋଉଠୁ। ପେଟପୂରା ହେଲେ ତ ପାଞ୍ଚକାମ ଆଦାୟ ହବ।''

ସରଦେଈପୁର ମସ୍ତ ବଡ଼ ଗାଁ। ଛତିଶପାଟକ ଜାତିର ବାସ। ତନ୍ତୀ, କମାର, ଧୋବା, ତେଲୀ, ଗୁଡ଼ିଆ, ପଠାଣ, କିରିସ୍ତାନ, ଆଦି କରି ସବୁ ଜାତି ଆପଣା ପାଖ ପଡ଼ିଶା ପରି ଏ ତା' ଭାଇ, ସେ ତା' ଦାଦି, ସେ ତା' ମଉସା ହେଇଁ ଚଳନ୍ତି। ଆୟ ଅଳପ ହେଲେ ବି ଯେଝା ସୁଖରେ ଚଳନ୍ତି। ପାଠପଢ଼ା ଲୋକ ସେ ଗାଁରେ ବେଶି ପାଇବ ନାହିଁ। ଟୋକାଙ୍କର ମିଡ଼ିଲି ଇସ୍କୁଲ ଆଉ ଝିଅଙ୍କର ଗୋଟିଏ ଲୋଅର ଇସ୍କୁଲ ଥିଲା। ସେଠା ପିଲାଙ୍କ ପାଠପଢ଼ିବା ଥାନ[୧]। ହେଲେ କେତେଟା ଅବଧାନୀ ଚାହାଳି ଥିଲା। ସେଠି ବି ପିଲାଏ ପଢୁଥିଲେ।

ସବୁ କଥା ଭଲ ଥିଲା। ଏକା ଗାଁରେ ଗୋଟିଏ ତାଡ଼ି[୨] ଖଟି ଥିଲା। ସେଠି ଗୁପ୍ତେ[୩] ୨ ଲୋକେ ମଦତ ଗୁଲି ବି ଖାଉଥିଲେ। ଆଖଡ଼ା ଦଳର ପିଲାମାନେ ଆଗ କାଳରେ କୁସ୍ତି ନଚ୍ଛୁଥିଲେ। ଏବ କାଳକୁ କୁସ୍ତି ଫୁସ୍ତି ନାମମାତ୍ର, ଥିଲା ଟୋକାଙ୍କର ବାର ବଜାରିଆପଣ, ଗୀତ, ନାଚ, ତାମସା, ଆଉ ଗଞ୍ଜେଇଟଣା।

କୃଷ୍ଣବାବୁ ଆସି ଆଗ କିନା ଏ ତାଡ଼ି ଖଟିଟି ଉଠେଇଲେ। ଲୋକେ ଭାରି ଆପତ୍ତି କଲେ। ଅନେକ ଦରଖାସ୍ତ ପଡ଼ିଲା। ବାବୁଙ୍କ ଉପରେ କେହି କେହି ବିରକ୍ତ ବି ହେଲେ। କିନ୍ତୁ ତାଙ୍କ କଥା ଶୁଣୁଛି କିଏ?

ଗାଁ ଦଳବେହେରା ବୈରାଗୀଚରଣ କାନୁନ୍‌ଗୋ ଦିନେ ଜମିଦାର ବାବୁଙ୍କ ସାଙ୍ଗେ ଦେଖାକରି ଏ ବିଷୟରେ ଅନେକ କଥାବାର୍ତ୍ତା ହେଲେ। କୃଷ୍ଣବାବୁ କହିଲେ ''ଦେଖ ମଉସା, ତେମେ ସିନା କହୁଛ; ଟୋକାଏ ତାଡ଼ି ମଦ ଖାଇ ଖରାପ ହେବେ, ଆଛା, ଭବିଷ୍ୟତକୁ ଆମ ସମାଜଟା କ'ଣ ହବଟି! ଏଇ ମଦୁଆ ମଦତିଆ କଣ ଆମ ସମାଜର ହେବେ? ପାଞ୍ଚୁ ପାଞ୍ଚୁ ଦେଶଟା ଉଛନ ଯିବଟି। ଆୟ କଥା କହୁଛ, ସତ, ଲୋକଙ୍କୁ ତାଡ଼ି ମଦ ଖୁଆଇ, ଦଙ୍ଗାହଙ୍ଗମା[୪] କରେଇ ମାଲିମକଦ୍ଦମାରେ ଯୋଉ ଆୟଟି, ସେଥିରେ ବରକତ[୫] ଅଛି! ଆପଣେ ବିଚାର କରନ୍ତୁ। ମୁଁ ତ ପିଲା ଲୋକ। ଦଳ ବେହେରା ବା କ'ଣ କହିବେ। ଆଗରେ ତ ପାଟି ଫିଟେଇ ପାରିଲେ ନାହିଁ। ପଛରେ ବଡ଼ର ବଡ଼ର[୬] ହେଇଁ ହେଇଁ ଘରକୁ ଗଲେ। କଥା ଭିତରେ ତାଙ୍କ ଲାଭଟି ମୂଳରୁ ମଲା। ମାଲିମକଦ୍ଦମା ନାଗନ୍ତା, ପାଞ୍ଚ ପଚିଶ ପାଆନ୍ତେ, ଏବେ ତ ଲୋକେ ହେବେ ସୁଧୀରା, ହାତ ଗୁଞ୍ଜା, ଅଣ୍ଟା ଗୁଞ୍ଜାଟା[୭] ମିଳିବ କୋଉଠୁ?

(୧) ସ୍ଥାନ, ଜାଗା, (୨) ମଦଭାଟି, (୩) ନୁଚି ନୁଚି, ଗୋପନରେ, (୪) ମାଡ଼ଗୋଳ, (୫) ଅର୍ଥ, (୬) ବକର ବକର, ଭଡ଼ଭଡ଼ (୭) ଲାଂଚ, ଗିସ୍‌ପତ

କିନ୍ତୁ ଟୋକାମାନଙ୍କର ମଉଜ ସକାଶେ ଗାଁରେ ଗୋଟିଏ ଥିଏଟର ଦଳ ବସିଲା। ଜମିଦାରବାବୁ ସେଥିରେ ଭାରି ଉତ୍ସାହୀ। ଗାଆନ୍ ବାଜଣା, ମାଛଧରା ଦେଖି ଯିବା, ଏମିତି କେତେ ଭଲ ଭଲ ମଉଜିଆ[୧] କଥାମାନ ଠିକଣା ହୋଇଥାଏ। ଶନିବାର ଉପର ଓଳିଠୁ ରଇବାର[୨] ଦିନ ଗୋଟାକ ଯାକ ଲୋକେ ଭାରି ଫୂର୍ତ୍ତିରେ କଟାନ୍ତି। ଆନନ୍ଦକୁ ଆନନ୍ଦ ବି ହୁଏ, ଶିକ୍ଷାକୁ ଶିକ୍ଷା ବି ହୁଏ।



## ''ଦୁସୁରା କଥା''

ଲୋକନାଥ କଥା ପକାଇ ଆମେ ଏତେ ଦିନ ଆଉ ନଅତୁଣ୍ଡୀର ଖବର ରଖିନୁଁ, ଏଇଟା ବଡ଼ ଅନ୍ୟାୟ। ହଉ ଆଜି ଚାଲ, ମାଁ ଝିଅ କଣ କରୁଛନ୍ତି ଦେଖିବା। ଆଗରୁ କହିଛୁ– ଲୋକନାଥ ଘର ମଙ୍ଗଳପୁରରେ। ତା' ମାଁ ଦୁଲୀ ସାଙ୍ଗେ ଗେଲ୍‌ହୀର ଭାରି ଭାବ। ଖୋରଣୀ ହେଲେ କ'ଣ ହବ, ଗେଲ୍‌ହୀକି ଦୁଲୀ, ନାଁକୁ ନାଁ ପଡ଼ିଛି, ପୁଣି କାନୁକୁ କାନୁ ନାଗିଚି। ଦୁଲୀ ବିଧବା। ପିଲା ଝିଲା ଭିତରେ ପୁଅଟିଏ, ଝୁଅଟିଏ। ପୁଅତ ଲୋକା, ଝିଅ ନାଁ ଯତନୀ। ରତନୀଠୁ ବର୍ଷେ ସାନ। ରତନୀ ନାଁକୁ ନାଁ ପକେଇ ଗେଲ୍‌ହୀ ଦେଇଥିଲା ଯତନୀ। ରତନୀ ଯତନୀର ଭାରି ସାଙ୍ଗ, ଦଣ୍ଡେ ନ ଦେଖିଲେ ଅଥୟ। ଖୋରଣୀ ହେଲେ କ'ଣ ଆଉ ସାଙ୍ଗ ସରିସା ମିଳିବେ ନାହିଁ? ଯତନୀ କିନ୍ତୁ ସ୍ୱଭାବରେ ମୂଷାଟିଏ।[୩] ମଲାମାଛିକି ''ମ'' କହିବ ନାହିଁ। ଯତନୀ ମାଁ ଦୁଲୀ ବି ବଡ଼ ଧୀରା।

ଥରେ ତା' ଯା' ସାଙ୍ଗରେ ଭାରି ଝଗଡ଼ା ଲାଗିଲା। ଦୁଲୀ କଣ କହିବ। ଗେଲ୍‌ହୀ ତା' ପଟ ହେଇ ଶରଧାବୋଉକୁ ଏମିତି ଶୋଧନା[୪] ଦେଲା ଯେ, ସେ ଆଉ ଦିନେ ଭରସି କରି ତା' ଆ' ପିଣ୍ଡାରେ ଗୋଡ଼ ଦେଇ ନାହିଁ। ଗେଲ୍‌ହୀ ଚଦିଥାଏ[୫], ଗୋଡ଼ ଛୋଟା କରିବ ବୋଲି।

ଲୋକନାଥକୁ ରତନୀ ଭାଇ ବୋଲି ମାନିଥାଏ। ଖୋରଣୀ ହେଲେ କଣ ହବ, ଲୋକା ଭାଇକି ତାର ଭାରି ଶରଧା। ଗେଲ୍‌ହୀବି ଲୋକାକୁ ପୁଅଠୁ ବଳି ମାୟା ମମତା କରେ। ତାର ସବୁ ଅର୍ଦ୍ଦଳି ସେ ସହିଛି। ଆପଣା ପୁଅ ଦୁଇଟି ମଲାପରେ ଏଇ ଲୋକାଟି ଜାଣି ତା' ଦୁଃଖ ହରିଛି। ଆପଣା ପେଟରୁ କାଟି ଯାହା କିଛି ଭଲ ଚିଜ ଗେଲ୍‌ହୀ ଲୋକା ପାଇଁ ଛିଞ୍ଚିଥିବ;[୬] ରତନୀକି ସୁଦ୍ଧା ଦେଖେଇବ ନାହିଁ। ରତନୀ ଥରେ ଥରେ ରାଗହେଇ ମା'କୁ ଗାଳି କରେ। ମାନମାରି କାନ୍ଦେ। ହେଲେ ଲୋକାକୁ ସେବି ବଡ଼ ଭାଇ କରି ମଣିଥାଏ। ଲୋକା ଯେତେବେଳେ ଆସେ, ଜମିଦାର ଘରୁ ବହୁତ ଚିଜ ଆଣେ, ଦି' ସଙ୍ଗାତ ବାଣ୍ଟିକୁଣ୍ଟି ନିଅନ୍ତି। ଥରେ ଗୋଟାଏ ମାଣିଆବନ୍ଧି ଶାଢ଼ି ଆଣିଥିଲା, ଦବ କାହାକୁ? ଯତନୀ କି ଦେଲେ ରତନୀ

(୧) ଆନନ୍ଦଦାୟକ, (୨) ରବିବାର, (୩) ଅତି ଡରକୁଳା, (୪) ଗାଳି, (୫) ଧମକ ଦେବା, (୬) ସାଇତି ରଖିବା

ନିଶ୍ଚେ କଛିଆ କରିବ, ରତନୀ କି ଦେଲେ ଯତନୀ ମୁହଁ ଫୁଲେଇବ[୧]। ଲୋକା ବିଚାରରେ ଥାଏ। କିନ୍ତୁ ଯତନୀ ଆଗରୁ ତା' ବୁକୁଚା[୨] ଘାଣ୍ଟି ଶାଢ଼ୀଟି ନୁଚେଇ ଦେଲା। ରତନୀ କି ଯା ସହେ, ଦଣ୍ଡେ ନ ଯାଉଣୁ ରତନୀ କାନରେ କଥାଟି ବାଜିଗଲା। ସେ ଦିନ ଆଉ ରତନୀ ବଡ଼ ଭାଇକି କି ମାନୁଛି? ଶାଢ଼ୀ ପାଇଁ ଯେତେ ଝଗଡ଼ା କଲା, ଶେଷକୁ ଲୋକା ଶାଢ଼ୀ ଦବା ଖରଚା କଲାରୁ ଯାଇ ତୁନି ହେଲା।

ରତନୀର ଢଙ୍ଗଢ଼ାଙ୍ଗ[୩] ଦେଖି ଦୁଲୀ ଦୀର୍ଘନିଃଶ୍ୱାସଟିଏ ପକେଇ କହିଲା, ''ଏ କାହା ଘର କରିବ ଲୋ ବାପା? ମାଇକିନା ଝିଅଟା, ଯାର ପାଟି କେଡ଼େ।'' ଲୋକା ମାଁ କଥା ଶୁଣି କହିଲା, ''ଆଉ ଆମ ରତନୀ ପରି ମଳାମୂଷା! କେହି ଦଶ ଚାପଡ଼ା ଦେଲେବି କଥା ଫିଟିବ ନହିଁ।'' ଦୁଲୀ ଟିକେ ତାଚ୍ଛଲ୍ୟରେ କହିଲା, ''ଯେମିତି ଜାତି ସେମିତି ଗୁଣ, ଜାତି ତାଷୁଣୀ, ଆଉ ଖୋରଣୀ ହେବେ ନାହିଁ ତ ଆଉ ହବ କିଏ? ମାଁ ଲୋ! ମାଇକିନାଁ ଝୁଅର ଏଡ଼େ ପାଟି। ଝିଅ ଅଛନ୍ତି ଯେ, କଥା କହିଲେ କାନକୁ ଶୁଭିବ ନାହିଁ। ଯାକୁ ବିଦିଆ କୋଉଠି ବାହା କରିବ କିଜାଣି? ବିଚରା ବୁଢ଼ାଟା ମାଇ ନୁହେଁ କି ଗାଈ ନୁହେଁ, ଏ ମା ଝିଅ ଦି'ଟା ଯାକ କଣ ହେଉଛନ୍ତି।

କଥାଗୁଡ଼ିକ ଅବଶ୍ୟ ରତନୀ ଶୁଣି ନଥିଲା। ସେ ଘରକୁ ଯାଇ ସାରିଥିଲା। ନୋହିଲେ ସେଦିନ ଦୁଲୀର ମାଉସୀପଣିଆ ସରିଥାନ୍ତା। ଦୁଲୀ ବିଧବା ଲୋକ, ପୁଣି ଆଗରେ ଯା' ନଣନ୍ଦ ବଡ଼ ଦୁଃଖ ଦେଉଥିଲେ। ପିଲା ସାନ ସାନ ହେଉଥିଲେ, ସ୍ୱାମୀ ମରିଗଲେ। ଗେଲ୍‌ହୀ ତାର ବଡ଼ ଉପକାରୀ। ତା' ଯୋଗୁଁ ଲୋକା, ଯତନୀ ମଣିଷ ହେଲେ, ବୁଢ଼ୀକି ପୁଣି ଆଜିକାଲି ବାତ ମାରେ; ପାଞ୍ଚ ପାଇଟି ଏଇମାନେ ତୁଲାନ୍ତି, ସେଥିପାଇଁ ଦଶପଦ ଟାଣରେ କହିଲେ ବି, ବୁଢ଼ୀ ଆଉ କିଛି କହିପାରେ ନାହିଁ। ମୁହଁବୁଜି ସବୁ ସହେ। ପଛକେ ଭୁଲିଯାଏ।

ଲୋକା କିନ୍ତୁ ଗେଲ୍‌ହୀକି ମାଁଠୁ ବଳି ଭଲ ପାଏ। ରତନୀର ଖୋରଣୀପଣକୁ ଭାରି ସୁଦୃଷ୍ଟିରେ ଦେଖେ। କହେ – ମାଇକିନାଁ ଝିଅ ହେଲେ କଣ ହବ, ମରଦ ପୁଅର ସାହସ ତା'ଠି। ମାଁ କଥା ଶୁଣି ସେଇଟିପାଇଁ କହିଲା, ''ବୋଉ ତୁ ଜାତି ତାଷୁଣୀ ବୋଲି କହିଲୁ ଭଲ କଲୁ, କିନ୍ତୁ ଏଇ ଜାତିଟା ଇ ଥିଲା ଆମ ଓଡ଼ିଶାର ଶ୍ରେଷ୍ଠ ଜାତି। ଏଇମାନେ ଥିଲେ ବୀର, ଖଣ୍ଡେଇତ ପରା। ଖଣ୍ଡା ଥିଲା ତାଙ୍କ ବେଉସା, ନଡ଼େଇ[୫] ଏଇମାନେ କରୁଥିଲେ, ରଜା ଜମି ଖଞ୍ଜି ଦବାରୁ ହେଲେ ଚଷା। ଯାଙ୍କ ଘର ଝିଅମାନେ ସାହସୀ ନ ହେଲେ ଆଉ କାହା ଘର ଝିଅ ହେବେ? ରଜାକୁ ରେ କହିଲାବାଲା ଏମାନେ।''

ଲୋକନାଥର କଥା ନ ସରୁଣୁ ଦାଣ୍ଡରେ ଦାମା ବାରିକ ଆସି ଡାକ ଦେଲା, ''ଲୋକନାଥ ବାବୁ ଅଛ କି?'' ହଠାତ୍ କୃଷ୍ଣଚନ୍ଦ୍ରର ଭଣ୍ଡାରୀ ଟୋକା କାହିଁକି ଆସିଛି ଜାଣିବାକୁ ଲୋକନାଥ ଦାଣ୍ଡକୁ ବାହାରି ଗଲେ। ଦାମା ବାରିକ ଓଳଗି ହୋଇ କହିଲା, ''ବାବୁ ଖବର ପଠେଇଛନ୍ତି, କାଲି ବଡ଼ି ଭୋରୁ ଏଠି ପହଞ୍ଚିବେ, ତମ କଦଳଆ ଗଣ୍ଡରେ ମାଛ ମାରିବେ,

(୧) ଅଭିମାନ କରିବା, (୨) ଗଂଠିଲି, (୩) ଆଚରଣ, (୪) ବ୍ୟକ୍ତିତ୍ୱହୀନ, ମାମୁଲି,
(୫) ଲଢ଼େଇ, ଯୁଦ୍ଧ

ଆଉ ପକ୍ଷୀ ଶିକାର କରିବେ। ହରି ବାବୁ ମାଁ ସାଆନ୍ତାଣୀ କତିକି[୧] ଯାଇଛନ୍ତି। ବାବୁ ଏକା ଆସିବେ, ତମ ଗାଁ ବି ଦେଖିବେ। ତାଙ୍କପାଇଁ ସବୁ ବନ୍ଦୋବସ୍ତ କରିଥିବଟି।''

ଜମିଦାର ବାବୁ ଆସିବେ, କଥାଟା ଦଣ୍ଡକରେ ଗାଁଯାକ ରାଷ୍ଟ୍ର ହୋଇଗଲା[୨]। ଜମିଦାର ବାବୁ ନାଁ ଶୁଣିଲେ ପ୍ରଜାଏ ବଡ଼ ଡରିଯାନ୍ତି। ଜମିଦାର ଆଇଲେ ଜାଣ ଖରଚ ବଢ଼ିଲା। କାହା ବାରି କଦଳି କାନ୍ଦି, କାହା ଗୁହାଳର ଗାଈ, କାହା ତୋଟାରୁ ଆମ୍ବ ନଡ଼ିଆ ନ ନେଲେ ଆଉ ଠାକୁ ଉଠିବେ ନାହିଁ। ଆମ କୃଷ୍ଣବାବୁ କାହାଠୁ କିଛି ନିଅନ୍ତି ନାହିଁ, ହେଲେ ଲୋକେ ତ ସେ କଥା ଜାଣନ୍ତି ନାହିଁ। ତାଙ୍କ ଭାଇମାନେ ବରାବରି ନଉଥିଲେ, ସେ ତ ଏ ଅଞ୍ଚଳକୁ ମୋଟେ ଆସି ନାହାନ୍ତି।

ସଞ୍ଜବେଳେ ପିଣ୍ଡାରେ ବସି ବିଦିଆ ଗାଲରେ ହାତ ଦେଇ ଭାବୁଛି। ତିନିବର୍ଷ ହେଲା ଖଜଣା ଦବାକୁ ନାହିଁ। କାଲି ତ ଜମିଦାର ବାବୁ ଆସିବେ। ବରଷେ ବହୁ କଷ୍ଟରେ ମାଫି[୩] ହେଇଥିଲା, ତା'ପରେ ବି ଖଜଣା ଦେଇ ପାରିନାହିଁ। ଆସି ଏ ବଇଶାଖକୁ ତିନି ପୂରିବ। ଏଥର ତାଟି କବାଟ ଉଠିଲା ପରା! ଭାଳେଣିରେ ତାର ଦିନଯାକ ମନଟା ଭାରି ଛଟପଟ ହେଉଥାଏ। ସେଦିନ ପୁଣି ଘରେ ଚାଉଳ ଦାନାଏ ନାହିଁ। ଦିନଯାକ ଖୋଜି ଖୋଜି ମୂଲଟିଏ ମିଳିଲା ନାହିଁ। ଗେଲହୀକି ହୋଇଚି ଜ୍ୱର। ରତନୀ ବା କ'ଣ କରିବ? ଯୁବା ଝିଅ, ଖୋରଣୀ ହେଉ, ଯା' ହଉ, ତାର ତ ଆଉ ପର ଘରେ ପାଇଟି କରିବା କଥା ନୁହଁ।

କାଠପତ୍ର ପିକାଟି[୪] କଳରେ ଯାକି ବିଦିଆ ଆସି ପିଣ୍ଡାରେ ବସି ପଡ଼ିଲା। ଘର ଭିତରେ ଥାଇ ଗେଲହୀ ପଇସା ମାଗିଲା। ବିଦିଆର ତ ମନ ସେଦିନ ସୁଖ ନ ଥାଏ, ପୁଣି ଅଫିମ ଝୁଙ୍କ[୫]। ରାଗରେ ଦି'ପଦ ପାଟିରୁ ବାହାରି ପଇଲା। ଆଉ ଗେଲହୀକୁ ପାଏ କିଏ? ତା' ଜ୍ୱର କୁଆଡ଼େ ଗଲା। ଉଠି ବସି ସ୍ୱାମୀ ସାଙ୍ଗେ ପଟେ କଜିଆ କଲା, ଶେଷକୁ ଦଉଡ଼ି ଯାଇ ଖଡ୍ଗମୁଷାରେ ମୁଣ୍ଡରେ ଦି ପାହାର ଦେଲା। ସେ ତ ପିଉଳ ଖଡୁ, ବାଜି ମୁଣ୍ଡ କଣା ହେଇଗଲା। ରକ୍ତ ଧାର ଧାର ଛୁଟିଲା। ''ଇଲୋ ମୋ' ବୋପାକୁ ମାରି ପକଉଲା ଲୋ''– କହି ରତନୀ ଆର ଅଗଣାରୁ ଦୌଡ଼ି ଆସି ମା ଉପରେ ପଡ଼ିଗଲା।

ସେ ଦିନ ତାଙ୍କ ଘରେ ତିନିପ୍ରାଣୀ ଉପାସ। ବିଦିଆ, ମା ଝିଅଙ୍କ ଜ୍ୱାଳାରେ[୬] ଦେଶ ଛାଡ଼ି ପଳେଇବାକୁ ବସିଲା। ରାତି ଦି ଘଡ଼ିକି ଲୋକନାଥ ଘରକୁ ଆସି ସବୁ ଶୁଣି ସେହିକ୍ଷଣି ବଜାରରୁ ଜଳଖିଆ ଆଣି ତାଙ୍କୁ ଖୁଆଇଲା। ବିଦିଆ କାନ୍ଦି କାନ୍ଦି କହିଲା, ''ବାପା! ମୁଁ ଯାଙ୍କଠୁ ମରୁ ନାହିଁ, କି ଏମାନେ ମୋ'ଠୁ ମରୁ ନାହାନ୍ତି। କି ପିଲା କି ଭାର୍ଯ୍ୟା! ଯାଉଛି ଛାଡ଼ିଛୁଡ଼ି କୁଆଡ଼େ ପଳେଇବି। କୁଲି କାମ ତ ମିଳିବ। ମା ଝିଅ ଭିକ ମାଗୁଥାନ୍ତୁ।

''ନଇଲେ ତୁ ଆମକୁ ଭାରି ପୋଷୁ! ଯା' କୁଆଡ଼େ ପଳା। ମୁଁ ତ କାଳକଯାକ ତୋତେ ପୋଷିଲି, ହଇରେ ଅରକ୍ଷିତ, ଆହୁରି କଥା କହୁଛୁ। ଭାର୍ଯ୍ୟାର କଥାରେ ଅନ୍ୟ ଦିନ

(୧) ପାଖକୁ, (୨) ପ୍ରଘଟ, ବ୍ୟାପିଯିବା, (୩) ଛାଡ଼, (୪) ଶାଳପତ୍ରରେ ବନ୍ଧା ହୋଇଥିବା ଧୂଆଁପତ୍ର, (୫) ନିଶା, (୬) ତାପ, ଡରାଣ, ଦୌରାତ୍ମ୍ୟ

ହେଇଥିଲେ ବିଦିଆ ଡରିଥାନ୍ତା; ଆଜି ଲୋକନାଥ କତିରେ ଥିବାରୁ ତା ସାହସ ପାଇଲା। ସେ ବି ସମାନ ସ୍ୱରରେ ଉତ୍ତର କଲା– "ହଁ ଏଥର ବାରଦ୍ୱାର ଶୁଣ୍ଢିପିଣ୍ଡା ତ ହବ। ଯେମିତି ତିନିବରଷ ଖଜଣା ଦିଆ ହେଇ ନାହିଁ, ଜମିଦାର ତ ଡାଟି କବାଟ ଉଠେଇ କରି ନବ। ମା ଝିଅ କାହା ଚୁଲ୍ଲି ଚାଳରେ ବାସ ପାଇବେ କି! ଯେମିତି ଖୋରଣୀ ଯାକ।" ବିଦିଆର ପାଟି ବନ୍ଦ ନୋହୁଣୁ, ଗେଲ୍‌ହୀ ତାକୁ ଶୋଧି ୨ ଧଇଁ ସଇଁ ହୋଇଗଲା। ଜ୍ୱର ହୋଇଥିଲା। ସେଥିରେ ପୁଣି ଏ ଉତ୍ପାତ। ଲୋକନାଥ କେତେ ମନାକଲା। ଶେଷକୁ ଦେହ କ'ଣ ହୋଇ ମୋହିଗଲା।[୧] ରତନୀ କାନ୍ଦି କାନ୍ଦି ମାଉ ସେବା କରୁଥାଏ, ଆଉ ଆପଣା ପୋଡ଼ା କରମକୁ ନିନ୍ଦୁଥାଏ। ଗେଲ୍‌ହୀର ଚେତା ପସିଲା ପରେ ଲୋକନାଥ ଘରକୁ ଗଲା। ସେ ରାତି ତାର ଆଖିପତା କଷା ହେଉ ନଥାଏ[୨]। ରତନୀ କଥା ଭାବି ତା' ମନ ବଡ଼ ଦୁଃଖ। ସତେ ରତନୀ ଘର କରିବ? ତା' ସାଙ୍ଗରୁ ସେ, ଆଉ ଯତନୀ ବାହା ସଇଲେଣି। ଆଉ କେତେ ଦିନରେ ଭାଉ ନେଇ ଯତନୀ ଶାଶୁଘର କରିଯିବ। ତା' ବୋହୂ ବି ଏଇଥି ଭିତରେ ଆସିବ। ସବୁତ ହବ, କିନ୍ତୁ ଏଡ଼େ ଉପକାରୀ ଗେଲ୍‌ହୀ ଝିଅଟି ହାତକୁ ଦି ହାତ ନୋହିଲା। ଲୋକନାଥ ଠିକ୍ ଜାଣେ, ରତନୀକି ଆଖପାଖ ଗାଁ ଗଣ୍ଡାକରେ କେହି ବାହା ହେବେନାହିଁ, ତା' ମୁହଁ ସକାଶେ। ପୁଣି ବାପାମାଉ ବା କି ସମ୍ବଳ ଅଛି। ବିଦିଆ ତ ଦିନକୁ ଦିନ ନିଷର୍ମା ହେଲା। ଗେଲ୍‌ହୀକି ତ ତୁଆକୁତୁଆ[୩] ବାତଜର ଧଇଲା। ସେହି ସିନା ପାଞ୍ଚ ପାଇଟି କରି ଯାକୁ ଚଳାଏ। ରତନୀ ବା କାହା ଘରେ ମୂଲ ଲାଗିବ।

ସେ ଦିନ ବଡ଼ି ଭୋରୁ ଲୋକନାଥ ଉଠି, ଦାନ୍ତପତର କରି ଜମିଦାରବାବୁଙ୍କୁ ପାଛୋଟି ଆଣିବାକୁ ବାହାରି ଗଲା। ରତନୀ କଥା ଆଉ ସେତେବେଳେକୁ ତା' ମନରେ ନାହିଁ।

ଏଣେ ରତନୀ ବସି ବାସି ପାଇଟି[୪] ସାରୁଥାଏ, ଦୀନାବୋହୂ ଆସି ଦୁଆରେ ହାଜର। ଦୀନାବୋହୂର ଏମାନେ ଟଙ୍କାଟିଏ ଧାରିଥାନ୍ତି[୫], ତା' ପୁଅକୁ ହୋଇଛି ଜର। ସେ ଦି'ଦିନ ମୂଲ ଲାଗି ଯାଇନାହିଁ। ବାରି ପଟେ କଂସା ମଜା ଶବଦ ଶୁଣି, ଦାନ୍ତ କାଠିଟା ହାତରେ ଧରି ଆସି, ସେ ରତନୀ କତିରେ ଛିଡ଼ା ହେଲା। ରତନୀ ଠିକ୍ ଜାଣେ ପଇସା ମାଗିବାକୁ ଆଇଛି। ସେ ବା କାହାକୁ ଲିଜାଜ[୬] କରେ। କଂସା ଘସର ଘସର କରି ମାଜୁ ମାଜୁ ତଳକୁ ଅନେଇ ଯେମିତି ତାକୁ ନ ଦେଖି କହିଲା, "ମ ରାଇଜ ଛାଡ଼ିତ ପଳେଇବୁ, ଅଧୁଆ ମୁହଁରେ ଆସି ଟଙ୍କା ଗୋଟାଏ ପୁଣି ମାଗି ବସିଲାଣି। ମଣିଷ ସଖାଳୁ ଉଠି ଏଇ ଅଲକ୍ଷଣୀର ମୁହଁଟା ଚାହିଁଲା। ଦିନଟା ଭଲରେ କଟିଲେ ହୁଏ।" ଦୀନାବୋହୂ ବି ରଣା ନୁହେ। ସେହିକ୍ଷଣି ଉତ୍ତର ଦେଲା। ଶେଷକୁ ରତନୀ କଂସା ମଜାରୁ ଉଠି ପଡ଼ିଲା। ଅଣ୍ଟାରେ ଲୁଗାକୁ ଭିଡ଼ିଦେଲା। "କଣ କହିଲୁ", କହି ଦୀନା ବୋହୂର ଚୁଟି ଝିଙ୍କି ଘୋଷାଡ଼ି ଆଣି ଦୁମକିନା ତା' ମଝିପିଠିରେ ଗୋଟିଏ ବିଧା ବସେଇଲା। ତାଙ୍କ ପାଟିରେ ଆରଘରୁ ଯତନୀ, ଦୁଲୀ ଆଉ ଗେଲ୍‌ହୀ ବାହାରି ପଡ଼ିଲେ। "ମୋ ଝିଅକୁ ମାରି ପକେଇଲା" କହି ଗେଲ୍‌ହୀ ବି ତାକୁ ବାରଅନା[୭] କରି ଗାଳି ଦେଲା।

(୧) ମୂର୍ଚ୍ଛାଯିବା, ଚେତାହରାଇବା, (୨) ନିଦ ନହେବା, (୩) ଥରକୁଥର, ବାରମ୍ବାର, (୪) ଘରକାମ, (୫) କରଜ କରିବା, (୬) ଖାତିର, (୭) ଯା ଇଚ୍ଛା ତା

ପାଖ ପଡ଼ିଶା ତାଙ୍କ ପାଟିରେ ଧାଇଁ ଆସିଲେ। ଏ ତାକୁ ମାରୁଥାଏ, ସେ ତାକୁ ମାରୁଥାଏ; ରତନୀ ଯୁବା ଲୋକ, ବଳ ବି ଯଥେଷ୍ଟ, ଦୀନା ବୋହୂଟା ବୁଢ଼ୀ ମଣିଷ, ସେତେବେଳକୁ ମାଡ଼ ଖାଇ ଖାଇ ତା' ଦେହ ପାଚିଗଲାଣି। ସାଇବାଲା ମିଶି ଛଡ଼ାଛଡ଼ି କଲେ; ଗେଲ୍ହୀ, ରତନୀ ଗୁଣ ତ ସମସ୍ତେ ଜାଣନ୍ତି। କେହି ତାକୁ ପଦେ କହିଲେ, ସେ ଦଶପଦ ଶୁଣାଉଥାନ୍ତି। ଶେଷକୁ ବିଚରା ବିଦିଆ ସମସ୍ତଙ୍କ ଗୋଡ଼ହାତ ଧରି, ମା ଝିଅଙ୍କୁ ତୁନିତାନି କରି, ସମସ୍ତଙ୍କୁ ବିଦାୟ କଲା। ଧାର ଟଙ୍କାଟା ବାବଦ ଦୀନା ବୋହୂ କଂସା ଖଣ୍ଡିକ ଘେନିଗଲା। ସୂର୍ଯ୍ୟ ମୁଣ୍ଡ ଉପରେ ଆସି ହେଲାଣି। ଘରେ ରନ୍ଧାବଢ଼ା ନାହିଁ। ଗେଲ୍ହୀ ବେମାରିଆ ମଣିଷଟା, ତାର ବି ପଥି ହେଉନାହିଁ। ରାଗରେ ନାଗସାପ ପରି ଫଁ ଫଁ ହେଇ ରତନୀ ଗାଧୋଇ ଗଲା। ସେ ଦିନ ଗାଁକୁ ଯେ ଜମିଦାରବାବୁ ଆଇଛନ୍ତି, ଏକଥା ତା'ର ଜମାରୁ ମନରେ ନ ଥାଏ। ବଟା ହଳଦୀ ଗିନାଏ, ଷୋରିଶତେଲ ଧରି ଗାମୁଛା କାନ୍ଧରେ ପକେଇ ବେଶ ଚାଲି ଯାଉଛି। ପୋଖରୀ କିଛି ଘରକତିରେ ନାହିଁ। ପ୍ରାୟ ଅଧମାଇଲ ଦୂରରେ। ବାଟରେ ଜଙ୍ଗାଙ୍ଗ ତାଳଟିଏ ଭାଙ୍ଗୁ ଭାଙ୍ଗୁ ହଠାତ୍ ଦେଖିଲା, ପଞ୍ଚାଏ ଲୋକ ତା' କତିକି ମାଡ଼ି ଆସୁଛନ୍ତି। ଏକେ ମାଇକିନା ଲୋକ, ସେଥିରେ ପୁଣି ମଫସଲିଆଣୀ। ଲୋକଗୁଡ଼ିଏ ଭାବିଲେ, ଏ ଆମକୁ ଦେଖିଲେ କିଜାଣି ବଣ ବୁଦାଭିତରେ ଲୁଚିଯିବ ପରା। ସମସ୍ତେ ଧୋବ ଧାଉଳିଆ ପିନ୍ଧିଛନ୍ତି। ପ୍ରାୟ ସମସ୍ତେ ଟୋକା। ରତନୀର ତାଙ୍କୁ କି ଖାତିର। ସେ ଖଣ୍ଡେ ତାଳ ଭାଙ୍ଗିଲା। ବଲବଲ କରି ତାଙ୍କୁ ଥୋଡ଼ାଏ ବେଳ ଅନେଇଲା। ସେମାନେ ବି ମଉଜ କରିବା ଅଭିପ୍ରାୟରେ ତାକୁ ଜଣ ପଦେ କହିଦେଲେ। ରତନୀ ତ ସକାଳୁ ରାଗିଥିଲା। ଖୁବ୍ ବଡ଼ ପାଟିରେ ତାଙ୍କୁ ଶୋଧିଲା; ତା' ପାଟି ଶୁଣି ଲୋକେ ଥାଟପଟାଳ[୧] ପରି ଠିଆ ହୋଇଗଲେ। ଜଣେ ତାଙ୍କ ଭିତରୁ କହିଲା, ''ହଇଲୋ, ଆମେ ଜମିଦାର ବାବୁର ପାଖଲୋକ, ଆମକୁ ତୋର ଖାତିରି ନାହିଁ। ରତନୀ ଆହୁରି ଉଗ୍ରମୂର୍ତ୍ତି ଧରି କହିଲା ''ରଖ୍ ତୋ' ଜମିଦାର ବାବୁକୁ ତୋ' ଘରେ, ମୁଁ ତୋ' ଜମିଦାରର୍ ଖାଏ, ନାଁ ଧାରେ, ମୁଁ ସେଇଟାକୁ କିଆଁ ଡରିବି।'' ଜମିଦାର ବାବୁ ଖଣ୍ଡେ ଦୂରରେ ଥିଲେ। ମାଇକିନା ଲୋକର ପାଟି ଶୁଣି କତିକି ଆସିଲେ। ଆପଣା ସାଙ୍ଗଲୋକଙ୍କୁ ଖୁବ୍ ଗାଳିଦେଲେ। ହଠାତ୍ ଲୋକନାଥ ରତନୀକି ଦେଖି ସରମରେ ତା' ମୁଣ୍ଡ ତଳକୁ ହେଇଗଲା। ରତନୀ ବି ଲୋକନାଥକୁ ଦେଖି କାନ୍ଧି ପକେଇଲା। ମାଗୁଣିଆ, ଭୀମା ହରିକା ତାକୁ ବିରକ୍ତ କରିଥିବାରୁ ସେହିକ୍ଷଣି ଜମିଦାର ବାବୁ ତାଙ୍କୁ ସଜା[୨] ଦବାର ହୁକୁମ୍ ଦେଲେ। ରତନୀ ଆଉ ଗାଧୋଇ ଗଲାନାହିଁ। ଘରକୁ ଫେରି ଆସି କବାଟ କିଳି ଶୋଇଲା।

ରତନୀର ସାହସ ଦେଖି ଜମିଦାର ବାବୁ ଭାରି ହରଷ ହୋଇଥିଲେ। ନିର୍ଜନରେ ଲୋକନାଥକୁ ପଚାରିଲେ, ''କୁହ ତ ସଙ୍ଗାତ-ସେ ଝିଅଟି କିଏ? ସତେ ଯେମିତି ଗୋଟିଏ ଉଗ୍ରଚଣ୍ଡୀ।'' ଲୋକନାଥ ହସି ହସି କହିଲା, ''ସେ ଉଗ୍ରଚଣ୍ଡୀ ନାଁ ହଉଛି ନଅତୁଣ୍ଡୀ। ତା'ପରି ଖୋରଣୀ, ତା'ପରି ସାହସୀ ଝିଅ ସେ ଗାଁ ଭିତରେ କେହି ନାହିଁ। ଆଉ ବି କୋଉଠି ଅଛନ୍ତି ବୋଲି ଜଣା ନାହିଁ। ଦେଖିଲ ତ, ଏତେଗୁଡ଼ାଏ ଲୋକଙ୍କୁ ସେ୍ କେମିତି ମାରି ଗୋଡ଼େଇଲା।

(୧) ବହୁସଂଖ୍ୟାରେ, (୨) ଦଣ୍ଡ

ତରଭୟ କଣ ସେ ଜାଣେ ? କୃଷ୍ଣବାବୁ କହିଲେ – ''ସାବାସ୍ ଝିଅଟି ଏକା। ଏମିତି ଝିଅ ବି ଆମ ଦେଶରେ ଅଛନ୍ତି ବୋଲି ମୁଁ ଜାଣିନାହିଁ।'' ଏମାନେ କିଜାଣି ନଢ଼େଇ କରି ପାରନ୍ତେ। ଆଗ କାଳରେ ଏଇମାନେ ଘୋଡ଼ା ପିଠିରେ ଚଢ଼ି ଲଢ଼େଇକି ଯାଉଥିଲେ। ଲୋକନାଥ କହିଲା– ସେମାନେ ସେଇ ଜାତିର ଝିଅ, ତାଙ୍କର ଆଗ ଅମଳରେ ସଭିଏଁ ଯୁଦ୍ଧ ବିଦ୍ୟା ଶିଖୁଥିଲେ। ତା' ମା ନା ତାଳ[୧] କନ୍ଧେଇ ଗଡ଼ନାୟକ ବଂଶର ଝିଅ। ତା' ବାପ, ଶୁଣିଥିବ ପଦ୍ମଲାଭ ଜେନା କଥା, ତାରି ପୁଅ। ଏବକାଳକୁ ସେମାନେ ଗରିବ ହୋଇଗଲେ। ଆଗ ସମ୍ପତ୍ତି, ଆଗ ମାନ ମର୍ଯ୍ୟାଦା କୁଆଡ଼େ ଗଲା।'' କୃଷ୍ଣଚନ୍ଦ୍ର ମନରେ ଟିକେ ଦୁଃଖ କଲେ। କହିଲେ, ''ଏମାନେ ଆମରି ଜାତିର ଲୋକ, ଆମ ଜାତିଟା ଓଡ଼ିଶା ରାଜାଙ୍କ ଡାହାଣ ବାହା[୨] ଥିଲା। ଯୁଦ୍ଧ ପଇଲା[୩], ଆମକୁ ଡାକ। ଦସ୍ୟୁ ରାଇଜ ଲୁଟି କଲେ। ଆମକୁ ଡାକ। ଆମର ଏତେ ସମ୍ପତ୍ତି ଆଉ କୁଆଡୁ ହେଲା କି। ରଜା ଜମିବାଡ଼ି ଖଞ୍ଜି ଦେଇଥିଲେ। ଆମ ପୂର୍ବପୁରୁଷ ସେହି ରଜା ଦେଇଥିବା ଉପାଧି ପାଇଥିଲେ ନା, ରାଉତରା।

ସେ ଦିନ ଦି'ସାଙ୍ଗ ନଅତୁଣ୍ଡୀ ବିଷୟରେ ଅନେକ କଥାବାର୍ତ୍ତା ହେଲେ। କୃଷ୍ଣଚନ୍ଦ୍ର ବଡ଼ ନକଲିଆ ମଣିଷ, ଲୋକନାଥକୁ କହିଲେ, ନଅତୁଣ୍ଡୀକି କହିବ, ସେ କେମିତି ଜମିଦାରକୁ ଖାତିରି କରେନାହିଁ, ଜମିଦାର ତାକୁ ଖୁବ୍ ସଜାଦେବେ, ନଇଲେ ଜେଲ ଦେବେ।

ସଞ୍ଜ ବଳିତା ନ ଲାଗୁଣୁ ଲୋକନାଥ ଥୋଡ଼ାଏ ମାଛ ଆଉ କାର ଚଢ଼େଇ ଆଣି ଘରେ ଗଦାକରିଗଲା। ରତନୀ ଘରକୁ ଦେଖିଲା, ରତନୀ କବାଟ କିଳି ଶୋଇଛି। ଗେଲହୀ ଭୁଜା ମୁଠାଏ, କନ୍ଦ[୪] ଖଣ୍ଡେ ଧରି ଚୋବାଉଛି। ଲୋକନାଥକୁ ଦେଖି ଗେଲହୀର ପାଟି ଫିଟିଲା। ''ତୁ ଜମିଦାରର ପାଖରେ ଅଛୁ। ମୋ' ଝିଅଟାକୁ ତୋ' ଜମିଦାର ଘର ଲୋକେ ମାଡ଼ ମାଇଲେ, ତୁ କୁଆଡ଼େ ମରିଯାଇଥିଲୁ, ପିଠିରେ ପଇଲୁନାହିଁ। ତୋତେ ପୁଅପରି ପାଳି ଏଡ଼େଟୁ ଏଡ଼େଟା କଲି। ଛୁଟିକା ଝାଡ଼ାରେ ମାଁ ମରିଯାଉଥିଲା, ସେତେବେଳେ କଥା ପାସୋରି ଗଲା, ଏବେ ବାବୁ ହେଲ, ପଞ୍ଚପଇସା ରୋଜଗାର କଲ।'' ଗଲା ରାମାୟଣ ମହାଭାରତ ବାହାରିଲା। ଲୋକନାଥ ସେ କଥାରେ ଉରସି କରି ଉତ୍ତର ନ ଦେଇ ଯାଇ ରତନୀ ଦୁଆରେ ଥୋଡ଼ାଏ ବେଳ ଖୁବ୍ ଡାକିଲା। ରତନୀ ସବୁ ଶୁଣୁଥାଏ। ଲୋକନାଥ ଉପରେ ଆଜି ତାର ଭାରି ରାଗ। ସେ କି ସହଜରେ ଦୁଆର ଖୋଲେ। ଶେଷକୁ ଗାଳି ଦେଇ ଦେଇ କବାଟ ଖୋଲିଲା। ତା' ମୁହଁ ଶୁଖି କଳାକାଠ ପଡ଼ିଯାଇଛି। ଦି ଦିନ ହେଲା ଦାନା ନ ପଶିଲେ ଯାହା ହେଇଥାଏ। ଦୁଲୀ, ଯତନୀ ପ୍ରବୋଧ କରି ଶେଷକୁ ମାଁ ଝିଅକୁ ଖୁଆଇ ପିଆଇ ରାତି ଦି'ଘଡ଼ି ବେଳକୁ ଘରକୁ ଗଲେ।

ଲୋକନାଥ ଆଣିଥିବା ମାଛ ବିଭାଗ ହେଲା। ରତନୀ ହଳଦୀ ବେସର ବାଟି ଝୋଳ କରି ବସିଲା। ବାପ ଘରେ ନ ଥିଲା। ଦିନତମାମ ସେ ବୁଲି ବୁଲି ମୂଲ ଖୋଜୁଥିଲା। ଟଙ୍କାଏ ମଣାଏ ହେଲେ ଜମିଦାରକୁ ଖଜଣା ଦବ। ଭାଗ୍ୟକୁ ଆର ଗାଁରେ ଘର ଛୁଆଣି ମିଳିଗଲା। ମା ଝିଅର କଣ ଦଶା ହେଇଥିଲା ସେ କି ଜାଣେ ?

(୧) ବିଖ୍ୟାତ, (୨) ବାହୁ, (୩) ପଡ଼ିଲା, ହେଲା, (୪) ଆଖୁ ରସରୁ ତିଆରି ଏକପ୍ରକାର ମିଠା

ଲୋକନାଥଠୁ ସବୁ ଶୁଣି ତା' ହାଲକ[୧] ଶୁଖିଲା। ଜମିଦାର ଏଥର ଗାଉଁରେ ରଖିବେ କି ନାହିଁ କିଏ ଜାଣେ? ଝିଅକୁ, ଭାର୍ଯ୍ୟାକୁ ମନେମନେ ଗାଳି ଦେଇଦେଇ ମୁଣ୍ଡରେ ହାତ ଦେଇ ବସିଲା।



## ''ତିସିରା କଥା''

ଜିମିଦାର କଚିରି ଆଡ଼େ ଲୋକ ଥାଟପଟାଳ ଭାଙ୍ଗି ପଡୁଛନ୍ତି। କିଏ ଘିଅ ଭାରେ ଆଣିଛି, କିଏ ନଡ଼ିଆ ଭାରେ, କିଏ ଛେନା, ଗୁଡ଼, କଦଳୀ, କିଏ ଆଖୁ, ତରଭୁଜ। କିଏ ଭଲ ଭଲ ଛେଳୀ ପୁଞ୍ଜାଏ, କିଏ ଗାଈ ଗୋଟାଏ। ଜମିଦାରର ସଲାମି[୨] ଏତକ। ଲୋକେ ଦାଣ୍ଡପାଖେ ଜମା। ଘଡ଼ିଏ ଖଣ୍ଡେ ଛାଡ଼ି ଜମିଦାରଙ୍କ ଦର୍ଶନ ମିଳିଲା। ନୂଆ ଜମିଦାର, ଲୋକେ ଭାବିଥିଲେ କୋଟ ପେଣ୍ଟଲୁନ ପିନ୍ଧା, ମୁଣ୍ଡରେ ପଲମଟା ଘୋରି ହୋଇଥିବେ ପରା। ଶୁଣିଥିଲେ, ଭାରି ପଢ଼ାକି ଲୋକ। କିନ୍ତୁ ଦେଖିଲା ବେଳକୁ ଜମିଦାର ପିନ୍ଧିଛନ୍ତି ଖଣ୍ଡେ ଖଦି, ସେ ପୁଣି ଆଣ୍ଠୁ ଲୁଚିବାକୁ ନାହିଁ, ଦେହରେ ଗୋଟିଏ ମୋଟରା ଚାଦର, ଗୋଡ଼ରେ ପୁଣି ଭୋଟ[୩] ଅମଳର ଚଟି। ହାତରେ ସୁନା ମୁଦିଟି ଜକ ଜକ ଦୁଶୁଥାଏ ଏକା। କିନ୍ତୁ ଯେତେବେଳେ ହାକିମ, ଲୋକେ ଲମ୍ବଲମ୍ବ ଗୋଡ଼ତଳେ ପଇଲେ। ସଲାମି ଭେଟୀ ଥୋଇଲେ। ହେଲେ ଜମିଦାର କିଛି ଛୁଇଁଲେ ନାହିଁ, ସବୁ ଜିନିଷ ଫେରେଇ ଦେଲେ। ପ୍ରଜାଏ ମହାଖୁସି। ଜମିଦାରଙ୍କ ନାଁରେ ଧନ୍ୟ ଧନ୍ୟ ପଡ଼ିଗଲା।

ସେଦିନ ଉପରବେଳା ଆମ୍ବତୋଟା ମେଳା ଜାଗାରେ ଗୋଟାଏ ସଭା ହେଲା। ଲୋକେ କେମିତି ଭଲ ହେବେ, ଆପଣା ଦେଶ ଜିନିଷରେ ମାୟାମମତା କରିବେ, ଏ କଥା ପଇଲା। ଜମିଦାର କହିଲେ ''ଧର ଗୋଟିଏ କଥା, ଆମେ ହେଲୁ ଓଡ଼ିଆ, ପଖାଳଖିଆ, ଆମର ବାପ ଜେଜେବାପ ଅମଳର ଲୋକେ କଣ ମୋଟ ଖାଇ, ମୋଟ ପିନ୍ଧି ସୁଖରେ ସଂସାର କରୁ ନଥିଲେ, ସେତେବେଳେ ଟଙ୍କାକୁ ୫୦ ସେର ଚାଉଳ ମିଳୁଥିଲା, ଟଙ୍କାକୁ ଘିଅ ଦି' ତିନି ସେର। ଏବ କାଳକୁ ଟଙ୍କାକୁ ସରୁଚାଉଳ ଚାରିସେର ମିଳିବା କଷ୍ଟ। କିଆଁ ଇମିତି ହେଲା? ଆମ ଦେଶରେ କଣ ଧାନ ଫସଲ ହଉନାହିଁ, ନାଁ ଗଛରେ କପା ଫଳୁନାହିଁ? ଆମ ପୋଖରୀରେ କଣ ମାଛ ନାଇଁ, ନାଁ ଆମ ଗୁହାଳରେ ଗାଈ ନାହିଁ? ଅଛି ସବୁ। ହେଲେ ଆମ ଆଖିଟା ହେଲାଣି ଦୁସୁରା। ଆମେ ହେଲୁଣି ବାବୁ ଆଉ ଅଳସୁଆ। ଆମ ଦେଶରେ କୋଟିଏ ଲୋକ ଯଦି ବାବୁଆନି ଛାଡ଼ନ୍ତେ, କହନ୍ତେ– ନାଁ ଆମେ ହାତେ ଅରଜି – ମୁଁ, ହାତେ ଖାଇମୁଁ ହାତେ ଲୁଗା ବୁଣିମୁଁ, ହାତେ ପିନ୍ଧିବୁଁ; ଆମେ ଆଉ ପର ଦୁଆରକୁ ଚାହିଁବୁନୁଁ, ଆମେ ଆମ ଭିତରେ କଜିଆ ଗୋଳ କରିବୁନୁଁ, ଗାଈ ହେଲେ ଗୋମାତା, ତାଙ୍କ ଦୁଧ ଖାଇ ଆମେ ପିଲାଦିନେ ବଢ଼ିଛେଁ, ତାଙ୍କୁ ଯତନରେ ପାଳିବୁଁ। ତେବେ କଣ ଘିଅ ଦୁଧରେ ଘର

(୧) ମନବଳ, ସାହସ, ଭୟପାଇବା (୨) ଦର୍ଶନକାଳୀନ ଉପଢ଼ୌକନ (୩) ପୁରୁଣା କାଳିଆ

ଭାସନ୍ତା ନାହିଁ? ନିତି ନାଁ ଶହେଟା ଗୋରୁ ହଣା ହେଉଛନ୍ତି, ଆଉ ପଠାଣଙ୍କ ଉଦରେ ତାଙ୍କ ଧରମ ପରବରେ ଗୋଟିଏ ଯୋଡ଼ିଏ ଗୋରୁ କୋରବାଣୀ[୧] ହେଲେ, ହିନ୍ଦୁଙ୍କ ଅଷ୍ଟାଙ୍ଗ ଜଳି ଉଠୁଛି, ଆଉ ନିଜେ କଂସେଇକି ଗାଈ ବିକିଦେଲା ବେଳକୁ ଗୋହତ୍ୟା ପାପଟା ଲାଗି ଯାଉନାହିଁ ପରା। ହେଇତି ଦେଖ– ଏଇ ଯୋଉ ହାଡ଼ି, ପାଣ, ମୋଚି, ଚମାରଙ୍କୁ ଆମେ ଛୋଟ ଜାତି କହୁଛେଁ, ତାଙ୍କୁ ଖାଲି ଛୁଇଁ ଦେଲେ ମାରା ହୋଇ ଯାଉଛେଁ, ଭାବିଲା ବେଳକୁ ତାଙ୍କ କାମଟା କିଏ ତୁଲାନ୍ତା? ଏମାନେ ତାଙ୍କ କାମ ନ କଲେ ତ ଆମ ସଂସାର ଚଳନ୍ତା ନାହିଁ। ଆମର ଏଡ଼େ ଉପକାରୀ ମଣିଷଙ୍କୁ ଆମେ ଜାତି ପାଟକରୁ ଅଲଗା ରଖି ଛୁଆଁ ଛୁଆଁ ଗଡ଼ି ଛାଡ଼ିଲେ ହବ। ଏଇଟା ବିଧାତା ସହିବଟି।''

ଘଡ଼ିଏ ଦି ଘଡ଼ି କାଳ ଖୁବ କଥା ଚାଲିଲା, କିଏ ହଁ ଭରିଲା, କିଏ ନାହିଁ କଲା; କିଏ ଜମିଦାର ମୁହଁରେ ହଁ ମାଇଲେ ପଛାଡ଼େ କହିଲେ, ''ମଲା ମୋର, ଆମେ ମୋଟ ଖଦି କିଆଁ ପିନ୍ଧିବୁଁ! ଆମର କାଳକ ସରୁରେ ଗଲାଣି ନାଁ ଅଜିକାଲି ଏସବୁ ନନ୍‌କୋଅପରସନ' ବାହାରିଛନ୍ତି, ଆମେ ଏଡ଼େ ଓଲୁ ହୋଇଚେଁ, ଆମେ ଯାଇ ଅପରସନରେ ମିଶିବୁଁ ସରଦାର ଆମଠେଇଁ ଅପରସନ ହେଲେ ସେତେବେଳେ ଆମ ମଜାଟା କିଏ ବୁଝିବ? ଜମିଦାର ଆସି କ'ଣ ତୁଲେଇବେ[୩]? ମୁହଁରେ ବାଲିଙ୍ଗି[୪] କଲେ କଅଣ ହବ।''

ରାମ ପ୍ରଧାନ କହିଲା – ଉଠ ହୋ ''ସତେ ସତ୍ୟଯୁଗ ଫେରି ଆସିବ, ଲୋକେ ତାଡ଼ି ମଦ ଗଞ୍ଜେଇ ଛାଡ଼ିବେ।

ଲଇକ୍ଷଣା ପୁରୁଣା ଗୋଲିଖୋର। ସେ ବାହାଦୂରୀ ଦେଖେଇ କହିଲା – ''ଯେତେ ଶାଆସ୍ତ୍ର କୁହ, ଯେତେ ପୋଥି କୁହ, ଲଇକ୍ଷଣ ବେହେରା ଗୋଲି ନ ଛାଡ଼ନ୍ତି, ମଦତ ଯେ ନ ଖାଉଲା, ସେ କିଆ ମରଦକା ବେଟା।'' ଦୀନା ଧଳ ଯୋଗ ଦେଇ କହିଲା, ''ହଁ ରେ ସଙ୍ଗାତ, ସତ କହିଲୁ, ଯେ ନ ଖାଏ ଗଞ୍ଜେଇ ଗୋଲି, ତାକୁ କି ମଣିଷ ବୋଲି।'' ହାତୁ ଗୋଛେଇତ ସେ କଥା ଶୁଣି କହିଲା, ଆମର ଦାରୁ ନ ହେଲେ ଦିନେ ଚଳିବ ନାହିଁ।

ତଥାପି ବିଶିଆ, କାହ୍ନୁ ଚରଣ, ବର୍ଜୁଆ ହରିକା ଜମିଦାର ବାବୁ କଥାକୁ ଭାରି ପସନ୍ଦ କଲେ। ବାବୁଙ୍କ ହୁକୁମ ଥିଲା– ଆଖଡାରୁ ନିଶା ପାଣି ଉଠିଯିବ, ସେଠି ଫି ଶନିବାର ନାଟ ତାମସା ହବ, ରଇବାର[୫] ନାମ ସଙ୍କୀର୍ତ୍ତନ ହବ। ଗାଉଲା ବଜେଇଲା ବାଲା ସବୁ ସେଠି ପଞ୍ଚା ହୋଇ ବସିବେ। ଆଉ ସେ ଗାଁରେ ଗୋଟିଏ ଭାଗବତ ଘର ଥାଏ। ଆଜିକାଲି ସେଠି ପୋଥି ବୋଲା ଅଛି କି ନ ଅଛି, ପର ଚର୍ଚ୍ଚାଟା ହୁଏ ପୂରା ମାତ୍ରା, ସେ ବି ଆଖଡ଼ା ଘରକୁ ଲାଗି ଲାଗି, ବାବୁ ଗାଁର ଭଲ ଭଲ ପଞ୍ଚ ଜଣକୁ କହିଲେ, ''ଦେଖ, ତେମେମାନେ ଆଗ ପରି ପଞ୍ଚ ପଞ୍ଚୁର ଟେକ ରଖ। ପାଞ୍ଚ ପଞ୍ଚୁର କଥା ସରକାର ଏଡ଼ିପାରେ ନାହିଁ। ତୁମେ ହେଲ ସବୁ ଜାତିର ଦଳ ବେହେରା, ତୁମ୍ଭେ ମହତ କାମ କରିବ, ମହତ କଥା କହିବ, ନ୍ୟାୟ ନିସାପ କରିବ, ରିସପତ[୬] ଲୋଭ ଛାଡ଼ିବ, ତେବେ ଦେଖିବ ଆମ ଓଡ଼ିଶା କଣ ଅଛି, କଣ

(୧) ବଳି ପଡ଼ିଲେ, (୨) ଅସହଯୋଗ, (୩) ସମାଧାନ କରିବା, (୪) ମୁହଁତୋଡ କଥା, (୫) ରବିବାର, (୬) ଲାଂଚ

ହେବ। ବାବୁ କଥାରେ ତାଙ୍କ ମୁହଁରେ ସଭିଏଁ ହଁ କରିଲେ। ସେ ଦିନ ଗାଁରେ ଏ ସବୁ କଥା ନେଇ ବଡ଼ ଚହଳ ପଡ଼ିଲା।

ଯା' ହେଉ ଜମିଦାରଙ୍କୁ ଡରି କରି ହଉ, ନଇଲେ ଛାଏଁ ହଉ, ସେ ଗାଁରେ ଗୋଟାଏ ଅରଟ ଘର ବସିଲା। ଗାଁରେ ସାତ ଖଣ୍ଡ ଅରଟ ଥୁଆ ଗଲା। ନୋକ[୧] ରହିଲେ ସୁତାକଟା ଶିଖେଇବେ ବୋଲି। ଗାଁ ମାଇକିନାଙ୍କ ସକାଶେ ଗାଁର ବାଳିକା ସ୍କୁଲରେ ଚରଖା କାଟିବା ବନ୍ଦୋବସ୍ତ ହେଲା। ଅକାରଣେ କଳି କନ୍ଦଳରେ ସମିୟ[୨] ନଷ୍ଟ କରୁଛନ୍ତି, ଭଲା ସୂତା କାଟନ୍ତୁ। ତାସ, ଛକା ପଚିଶ ଭଲା ଉଠିଯାଉ।

ସେଇଦିନ ହଠାତ୍ ଜମିଦାରବାବୁ ଖବର ପାଇଲେ ତାଙ୍କ ଭାଇ ବୀର ତାଙ୍କୁ ଡକେଇ ପଠେଇଛନ୍ତି। ଇୟାଡ଼ିକାର କାମ ସାରିବାକୁ ଘର ଠେଇଁକି ବାହାରି ଗଲେ। ଶୁଣିଲେ ତାଙ୍କ ମାଁ ଦିହ ସୁଖ ନାହିଁ।

ମାଁଙ୍କ ଶେଷ ସମୟ ହୋଇଥାଏ। ଶୂଳା ଗ୍ରହଣୀ ଧରିଥାଏ। ଅନେକ ଅନେକ ଉପାୟ କଲେ। ଡାକତରୀ ବଇଦ ଚିକିତ୍ସା ବି ହେଲା ଢ଼େର। ହେଲେ ଯମଦୁଆରେ ହାଜର। ରଖିବ କିଏ? ପୁଅ ନାତିଙ୍କି କନ୍ଦେଇ ବୂଢ଼ୀ ଚାଲିଗଲେ। ଘର ଖାଲି ପଡ଼ିଲା। ଅଭିଆଡ଼ା ପୁଅ ଦୋଟିର କଥା ବୁଝିବାକୁ ରହିଲେ ତାଙ୍କ ବିଧବା ପିଇସୀ ନାରେଣୀ ଦେଈ।

ନାରେଣୀ ଦେଈ କୃଷ୍ଣଙ୍କୁ, ହରିଙ୍କି ଭାରି ସୁଖ ପାଆନ୍ତି। ବାଳ ବିଧବା। ସ୍ୱାମୀ ମଲାଦିନୁ ଭାଇଭାଉଜଙ୍କ ଘରଥିଲା ତାଙ୍କ ନିଜ ଘର। ଭାଉଜମାନଙ୍କର ପିଲାଙ୍କୁ ହାତରେ ମଣିଷ କରିଥିଲେ। ବଡ଼ ପୁତୁରା ଶିବ ମଲାପରେ ଭାଇ ଭାଇ ଗୋଳ କରି ଭିନ୍ନ[୩] ହେଲାରୁ, ତାଙ୍କ ମନକୁ ବଡ଼ ବାଧିଥିଲା। ସତ କହିଲେ, ତାଙ୍କ ବଡ଼ ଭାଉଜ ଦୋଷରେ ଏଡ଼େ କଥାଟା ହେଇଥିଲା। ମାଁ ହେଇ ପୁଅଙ୍କୁ ପାତର ଅନ୍ତର[୪] କରୁଥିଲେ। କଥାଥିଲା କ'ଣ ନାଁ, କୃଷ୍ଣ ଆଉ ହରି ସାନ ସଉତୁଣୀର ପିଲା। ହରିର ଜନମ ପରେ ତାଙ୍କ ମାଁଙ୍କର କାଳ ହୋଇଥିଲା। ସାବତ ମାଁ ଏ ପିଲା ଦୋଟିଙ୍କି ମୋଟେ ଦେଖି ପାରନ୍ତି ନାହିଁ। କିନ୍ତୁ ତାଙ୍କର ନିଜ ମାଁ କଥା ମୋଟେ ଯାଙ୍କର ମନେ ନ ଥିଲା। ଏ ମାଁକୁ ମାଁପରି ମାନୁ ନ ଥିଲେ। କଥାରେ କହନ୍ତି, ''ସଉତୁଣୀ ଥିବ, ସଉତୁଣୀ କଣ୍ଟା ନ ଥିବ।'' ନାରେଣୀ ଦେଈ ଏ ପୁଅ ଦୋଟି ଉପରେ ସାବତ ମାଁର ଅତ୍ୟାଚାର ମୋଟେ ସହି ପାରନ୍ତି ନାହିଁ। ଯାଙ୍କୁ ଅନେକ ରକମ[୫] ଶିଖାଶିଖି କରନ୍ତି। ଫଳରେ ଶେଷକୁ ସାନ ପୁଅ ହରି ବଡ଼ ବଗୁଲିୟା[୬] ହୋଇ ଉଠିଲା। ସେ ଆଉ କାହାକୁ ମାନେ ନାହିଁ। ମାନିଲା ଭିତରେ ଟିକେ ଡରଭୟ ଥାଏ ବଡ଼ଭାଇ ନବୀନ ଆଉ କୃଷ୍ଣଙ୍କୁ। ନୋହିଲେ ସେ ଚାଲିଲା ଶଗଡ଼ରେ ହାତ ଦେବ। ହେଲେ ବଡ଼ ଚଲାଖୀ, ସେମିତି ସ୍ମରଣ ଶକ୍ତି। ପାଠରେ ସମସ୍ତଙ୍କୁ ଟପିଯାଏ। ବି.ଏ. ଯାକେ ଯାଇ ତ କଲେଜ ଛାଡ଼ିଲା। ତାର ଗୋଟିଏ ଗୁଣ, ସେ ଯୋଉଥିରେ ମାତିଯିବ, ଏକାବେଳେ ମାତିଯିବ। ଯେମିତି ଚଗଲା,

(୧) ଲୋକ, (୨) ସମୟ, (୩) ଅଲଗା, (୪) ଅଲଗା ଅଲଗା ବ୍ୟବହାର, ଭେଦଭାବ (୫) ପ୍ରକାର, (୬) ବୁଲା, ଅମାନିଆ

ବଗୁଲିଆ, ସେମତି ବୁଝକ ଆଉ ଜ୍ଞାନୀ। ଗୀତ ବାଜାରେ ଫାଷ୍ଟ, ନାଟ ତାମସାରେ ଫାଷ୍ଟ, ହେର୍ଷାମୀରେ[୧] ବି ଫାଷ୍ଟ। ଏବେ ନବୀନ ଘରେ ନାହାନ୍ତି। କୃଷ୍ଣଙ୍କୁ ଖାଲି ସେ ମାନିଥାଏ। ଲୋକନାଥର ତାର ବେଶ୍ ପଡ଼େ; କିନ୍ତୁ ଗୁରୁଚରଣ ଥାଏ ତାର ଦୁସୁରା ଜୀବନ। ଗୁରୁଚରଣ ବାହ୍ମଣ ଘର ପିଲା। ମାତ୍ର ଦେଖିଲେ ଜଣାପଡ଼ିବ ନାହିଁ, ବ୍ରାହ୍ମଣ ଘର ପିଲା, କି ବାଉରି ଘର ପିଲା। ବାପ ମାର ଗୋଟିଏ ବୋଲି ପୁଅ। ପାଠଶାଠର ଧାର୍ ଧାରେ ନାହିଁ। ଯେତେକ ଦୁଷ୍ଟାମୀ, ସବୁରେ ପକ୍କା। ହେଲେ ଏମାନେ କେବେ କାହାରି ଅନିଷ୍ଟ କରନ୍ତି ନାହିଁ। ନିଶାପାଣି ନାହିଁ। ଖାଲି ପିଲା ବୟସ, ବଗୁଲିଆଗିରି ସାର। ବାପ ମାଇଲେ ବୋଲିଲେ, ମାଁ ଆବୁଡ଼ି[୨] ପଡ଼େ। ସେହି ଯୋଗୁ ଗୁରୁଚରଣ ସଭିଙ୍କି ଅଖାତିରି[୩] କରୁଥାଏ। ଜମିଦାର ପୁଅ ହରି ବି ସାଙ୍ଗକୁ ମିଳିଥାଏ।

ପିଲାବେଳେ ଯାଙ୍କ ଜାଳାରେ ଗୋଟିଏ ଫଳ କାହା ଗଛରେ ରହୁ ନ ଥିଲା। ଦିହିପହରେ ସମସ୍ତେ ଟାଟି କବାଟ କିଳି ଶୋଇଛନ୍ତି, ଏମାନେ କାହା ବାରିର ପିଚୁଡ଼ି, କାହା ବାରିର ପଣସ, କାହା ବାରି ନେମ୍ବୁ ପାରିଆଣି ପିଣ୍ଡାରେ ଗଦେଇଦେଇ ଚାଲିଯିବେ। ଗୋଠରୁ ଗାଈ ଧରି କାଞ୍ଜି ହାଉଦାରେ ପୂରେଇବେ। ତମେ ପଇସା ଗଣି ଆଣୁଥାଅ। ଧୋବା ତୁଠରେ ନୁଗା ଶୁଖେଇଛି, ଖଣ୍ଡେ ଦି'ଖଣ୍ଡ ପଥର ତଳେ ନୁଚେଇ ଦେବେ। ଅବଧାନେ ଚାହାଳୀରେ ନାହାନ୍ତି, ପିଲାଙ୍କୁ କହିବେ "ଆରେ ଯାଅରେ ଅବଧାନ ଘରଠିକି ଗଲେଣି। ଆଜି ଛୁଟି।" ଏମିତି ଦୁଷ୍ଟପଣିଆରେ ଲୋକେ ବଡ଼ ବିରକ୍ତ ହୁଅନ୍ତି, ଆସି ବାବୁ ଆଗରେ ଫେରାଦ[୪] କରନ୍ତି। ବାବୁ ମାଇଲେ ଧଇଲେ, କିଛି ଦିନ ତୁନି ତାନି[୫] ଥାଆନ୍ତି, ପୁଣି ଯୋଉ କଥାକୁ ସେଇ କଥା। ହରି ବା ମାଡ଼ ଖାଇବ କ'ଣ। ଶେଷକୁ ପିଇସି ପିଠିରେ ପଡ଼ି, ତାକୁ ମାଡ଼ରୁ ଉଦ୍ଧାରନ୍ତି। ଏମିତି ମୁହଁ ପାଇ ୨ ସେ ବଢୁଥାଏ।

କଟକ ପଢ଼ିଗଲା ଯେ ପିଇସୀ ସାଙ୍ଗରେ ଗଲେ। ହଠାତ୍ ନଅନ୍-କୋପର୍ସନରେ ମିଶି ଦି ଭାଇ କି ଦି'ଭାଇ, ବର୍ଷେ ଖଣ୍ଡେ କଲେଜ ଛାଡ଼ି ଦେଶ ଦେଶ ବୁଲିଲେ। ପୁଣି ବାପଠୁ ତଡ଼ା ଖାଇ[୬] ଆଉଥରେ ଆସି ନାଁ ଲେଖେଇଲେ। କୃଷ୍ଣ ଧୀର ଶାନ୍ତ, ଆଉ ହରି ଉଦ୍ଧତ, ଉଗ୍ରମୂର୍ତ୍ତି। କୃଷ୍ଣ ଲୋକନାଥ, ହରି ଗୁରୁଚରଣ ସାଙ୍ଗକୁ ବି ମଳିଥାନ୍ତି ବେଶ୍।

ଦିନାକେତେ ଗଲା। କୃଷ୍ଣର ବିଭାଘର କଥା ଉଠିଲା। ବାପ ନ ଥିଲେ ଭାଇ ତ ଅଛନ୍ତି, ମା' ନ ଥିଲେ ଅପା ତ ଅଛନ୍ତି। ଲଇଖଣପୁରରେ କନ୍ୟାଘର ଠିକଣା[୭] ହେଲା। ଯେମିତି ସୁନ୍ଦରୀ, ସେମିତି ବଡ଼ଘର ଝିଅ। ପାଠ ଶାଠ କିଛି ପଢ଼ି ନ ଥାଏ। ଅ ଅକ୍ଷର ଚିହ୍ନି ଆସେ ନାହିଁ। କିନ୍ତୁ ରୂପରେ ଇନ୍ଦ୍ରାଣୀ ପରି। ନାରେଣୀ ଦେଈଙ୍କ ମନ ମାନିଗଲା। ବଡ଼ ଜାକଜମକରେ[୮] ବାହାଘର ହେଲା। ଖୁବ୍ ଦେଏଣ ନେଏଣ ହେଲା; କନ୍ୟାଘର ଯାକି ଯଉତୁକ ଖୁବ୍ ଦେଇଥାନ୍ତି। ବାହାଘର ବଡ଼ ମଉଜରେ କଟିଲା। ପିଠାପଣାର ସୀମା ନାହିଁ। ଖାଆଣ ପିଆଣର ପରିଯନ୍ତ[୯] ନାହିଁ। କିଏ କେତେ ନେଲେ, କିଏ କେତେ ବୋହିଲେ ତାର ସୁମାରି[୧୦]

(୧) ରଂଗରହସ୍ୟ, (୨) ଉପରେ ପଡ଼ିବା, (୩) ଅମାନ୍ୟ, (୪) ଅଭିଯୋଗ, (୫) ଚୁପ୍‌ଚାପ୍, (୬) ଆଦେଶ ପାଇ, (୭) ସ୍ଥିର, (୮) ଧୁମ୍‌ଧାମ୍, (୯) ସୀମା (୧୦) ହିସାବ

ନାହିଁ। ରୋଷଣୀ ଖୁବ୍ ହେଉଥିଲା, ବାଜଦ ଖୁବ୍ ବାଜିଥିଲା, ନାଟତାମସା ଆଚ୍ଛା ହେଉଥିଲା। କିନ୍ତୁ କୃଷ୍ଣବାବୁଙ୍କ ମନ ଏଥିରେ ବଡ଼ ଖରାପ ହେଲା। ଅକାରଣ ଏତେଗୁଡ଼ା ଟଙ୍କା ବେଫାଇଦା[1] ଖର୍ଚ୍ଚ ହେଲା। ଏଥିରେ ଭେଲା ଦେଶର କାଣିଚାଏ କାମ ହୋଇଥାନ୍ତା। ଯାହାହେଉ ବଡ଼ ଭାଇ, ଭାଉଜ, ପିଉସି, ଆଦି କୁଟୁମ୍ବଙ୍କ ମୁହଁକୁ ଚାହିଁ କିଛି କହିଲେ ନାହିଁ। ବାହା ସଇଲା। ବୋହୂ ଆଇଲା ଘରକୁ। ରୂପରେ ଅନ୍ଧାର ଘର ଆଲୁଅ ହେଲା। କୃଷ୍ଣ ସବୁ ଦୁଃଖ ପାସୋରି ଗଲେ। କିଛିଦିନ ବଡ଼ ଆନନ୍ଦରେ କଟିଲା। ହେଲେ ସବୁଦିନ ନୂଆ କଥା ନ ଥାଏ। ବୋହୂ ଦି ଅକ୍ଷର ଜାଣନ୍ତି ନାହିଁ। କୃଷ୍ଣର ଇଚ୍ଛା ତାଙ୍କୁ ପାଠ ପଢ଼େଇବାକୁ। କଟକରୁ ଆଣିଲେ ଗୋଟିଏ ମଷ୍ଟରାଣୀ; ବୋହୂ କି ପାଠ ପଢ଼ିବେ। ଦିନେ ଅଧେ ବର୍ଣ୍ଣବୋଧ ଧଇଲେ। ଶେଷକୁ ମାନ ମାରି କାନ୍ଦି ବସିଲେ। ସେ ନିହାତି ଓଲୀ, ପାଠ ତାଙ୍କ ଜାତକରେ ନଥାଏ। ଆପଣା ମା ଜେଜେମାଠୁଁ ଶୁଣିଥାନ୍ତି, ମାଇକିନିଆ ଝିଅ ଚୁଲିମୁଣ୍ଡକୁ। ତାଙ୍କ ବଅଁଶଯାକରେ କୋଉ ଝିଅ ପାଠ ପଢ଼ି ନଥିଲେ। ଥରେ କୁଆଡ଼େ ତାଙ୍କ ବଅଁଶର ଗୋଟିଏ ଝିଅ ସ୍ୱାମୀଙ୍କ ବଳାକୋରିରେ[2] ପାଠ ପଢ଼ିଥିଲେ। କିଛିଦିନ ପରେ ସେ ବିଧବା ହେଲେ। ସେ ଦିନୁ ତାଙ୍କ ଘରେ ବିଶ୍ୱାସ, ପାଠ ପଢ଼ିଲେ ଝିଅ ବିଧବା ହୁଅନ୍ତି। ଏଠି ପାଠ ପଢ଼ିବାର ଧୁମ୍ ଦେଖି ତାଙ୍କୁ ବଡ଼ ଡର ମାଡ଼ିଲା। ଶାଶୂ ଆଗରେ କାନ୍ଦିଲେ, ତାଙ୍କ କାନ୍ଦକଟା ଦେଖି ଶାଶୂ ମାଷ୍ଟରାଣୀକି ତଡ଼ିଲେ[3]। ପାଠ ପଢ଼ା ଇତି ହେଲା। କୃଷ୍ଣଙ୍କର ମନ ଏକାବେଳକେ ପୋଡ଼ିଗଲା। ତାଙ୍କ ମନରେ ଯୋଉ ଆଶା ପୋଷିଥିଲେ; ଭାରିଯା ପାଠ ପଢ଼ିବ, ତାଙ୍କ ସଙ୍ଗରେ ମିଳିମିଶି କାମ କରିବ, ସବୁ ଚୁଲିରେ ଗଲା। ଭାର୍ଯ୍ୟା ହେଲା ତାଙ୍କ ଗୋଡ଼କୁ ଶାଙ୍କୁଳି ହାତକୁ କଡ଼ି।

ଖାଲି ଏତିକି ନୁହଁ, ତାଙ୍କ ବୋହୂଟି କୋଉ କାମ ଜାଣନ୍ତି ନାହିଁ। ଅଲିଅଳ ଘରଝିଅ, ପାଣି ନୋଟିଏ କାଢ଼ି ନାହାନ୍ତି। ହାଣ୍ଡି ଚୁଲି ଉପରକୁ ଟେକି ନାହାନ୍ତି। ଏଠି ବି ଚାକର ଚାକିରାଣୀର ଅଭାବ ନାହିଁ। ବାପ ବଇସା ମାଁକୁ ପୁଣି ସାଙ୍ଗରେ ଦେଇଥାନ୍ତି। ଆଉ ସେ ପୁଣି କି ପାଇଟି[4] କରିବେ? ଦିନରାତି ଖଟରେ ଶୋଇଥାନ୍ତି, ସ୍ୱାମୀ ନ ଥିଲା ବେଳେ ନୁଚେଇ ନୁଚେଇ ତାସ କଉଡ଼ି ଖେଳ ଲଗାନ୍ତି। ବାରବେଳେ[5] ବାରବେମାରୀ, ସେଥିରେ ପୁଣି ପହିଲି ବରଷ ଗୋଟିଏ ପିଲା ହେଇଁ ନଷ୍ଟ ଗଲା, ଆଉ ତାଙ୍କୁ ଧଇଲା ଛୁତିକା[6] ଜର। ସେଥିରୁ ଛ ମାସରେ ଭଲ ହେଲେ। ପଥିରେ ରହନ୍ତି ନାହିଁ, ସ୍ୱାମୀ, ଶାଶୂ କାହାରି କଥା ମାନନ୍ତି ନାହିଁ, ଭଲ ହେବେ କୋଉଠୁ? ମନଟି ବଡ଼ ହିଂସାରେ ପୂର୍ଣ୍ଣ। କାହାରି ଭଲ ଦେଖି ପାରନ୍ତି ନାହିଁ, ଲୁଗା ଗହଣାକୁ ଜୀବନଠୁ ବଡ଼ ମଣିଥାନ୍ତି। ଏମିତି ବାର ରକମ କଥାରେ କୃଷ୍ଣଙ୍କ ମନ ମରିଗଲା। ସେ ନିଜେ ଲୋକଙ୍କୁ ଉପଦେଶ ଦେଉଛନ୍ତି। ସରୁ ଲୁଗା ଛାଡ଼, ହାତକଟା ସୂତା ଲୁଗା ପିନ୍ଧ, ଏଣେ ଘରେ ତାଙ୍କରି ବୋହୂ ତାଙ୍କୁ ଅମାନିଆ କରି ସରୁଲୁଗା, ବାସନା ସାବୁନ୍, ବାସନା ତେଲ, ଅତର ଛାଡ଼ି ନାହାନ୍ତି। ବାବୁ କହିଲେ ଚରଖା କାଟ। ସାଆନ୍ତାଣୀ କହିଲେ, ''ମଲା ମୋର! ମୁଁ କ'ଣ ତନ୍ତିଆଣୀ, ମୁଁ ବସି ସୂତା କାଟିବି।'' ଶାଶୂ ହେଲେ ତାଙ୍କ ପକ୍ଷ। ସତକଥା, ବଡ଼ ଲୋକ ଝିଅ, ଏଡ଼େ ଭିଡ଼ କାମ ସେ କଣ ପାରିବ; ପିଲାଦିନୁ ଯେ କୁଟା

(୧) ଅନାବଶ୍ୟକ, (୨) ବାଧବାଧକତା, (୩) ବାହାର କରିଦେବା, (୪) କାମ, (୫) ବିଭିନ୍ନ ସମୟରେ, (୬) ସୂତିକା, ପ୍ରସବ

ଖଣ୍ଡେ ବି'ଖଣ୍ଡ କରି ନାହିଁ। "ଥରେ ସ୍ୱାମୀଙ୍କ ବଳାତ୍କାରିରେ[୧] ଚରଖା ବୁଲେଇ ଥିଲେ, ଆଉ ହାତ କ'ଣ ହେଲା, ଖୁଆ' ଫାଟି ପଉଲା କହି କାନ୍ଦିଲେ।" ମହାନାରାୟଣ ତେଲ ମାଲସ କରି, ସେକ ଦେଇ, ତିନି ଦିନରେ ସେ ଭଲ ହେଲା। ଖୁଆରୁ ଦରଜ ଛାଡ଼ିଲା। ସେ ଆଉ ଦେଶ ଉଦ୍ଧାରିବେ କ'ଣ, ତାଙ୍କ ସ୍ୱାମୀ ଆଉ କିଛି କହିଲେ ନାହିଁ। କରମ ଆଦରି ତୁନି ହୋଇ ରହିଲେ।

ଦିନେ ସଞ୍ଜବେଳେ କଚିରୀରେ କେହି ନ ଥାନ୍ତି। ଲୋକନାଥ ଆଉ ବାବୁ ଏକା ବସିଥାନ୍ତି। ସାଆନ୍ତାଣୀଙ୍କ ହାଲ[୩] ଲୋକନାଥ ସବୁ ଜାଣିଥାନ୍ତି; ଆଜି କାଲି ବାବୁଙ୍କର ଯେ ଆଗପରି ଫୂର୍ତ୍ତିନାହିଁ, ଏ କଥା ଚତୁର ଲୋକନାଥ ସବୁ ବୁଝିଥାଏ। କେତେ କଥା ହଉଁ ହଉଁ ଘର କଥା ପଉଲା। ଲୋକନାଥର ବୋହୂ ବଡ଼ ସୁଧୀରା, ସ୍ୱାମୀ ଶାଶୂ କଥାରୁ ପଦେ ଟେକ ନାହିଁ; ଆଉ ସେ କେଇଟା ଦିନ ଭିତରେ ଭଲ ଚରଖା କାଟି ଶିଖିଲାଣି। ତା' କତିରୁ ରତନୀ ଓରଫେ ନଅତୁଣ୍ଡୀ ବି ଚରଖା ଶିଖି, ସେ ପୁଣି ଯୋଉ ସରୁସୂତା କାଟଲାଣି ଛାଡ଼। କଥାଟା ବାବୁକାନକୁ ବଡ଼ ମିଠା ଲାଗିଲା। ଦୀର୍ଘ ନିଃଶ୍ୱାସଟିଏ ପକେଇ କହିଲେ, ନଅତୁଣ୍ଡୀ କି ବାହା ହେଇଥିଲେ ବି ହୋଇଥାନ୍ତା। ଅକାରଣେ ଗୋରୁଟିଏ ଆଣି ଖୁଣ୍ଟରେ ବାନ୍ଧି ଲାଭ କ'ଣ ? ତାର ଯୋଉ ତେଜ ମୂର୍ତ୍ତି, ମୁଁ କେବେ ଭୁଲି ପାରିବି ନାହିଁ। ତା' ଭିତରେ କେତେ ଶକ୍ତି। ଅସାଧ ସାଧିଲା ଝିଅ ସେ।

ଲୋକନାଥ ଅବିଶ୍ୱାସରେ ହସି ଦେଇ କହିଲା, "ମୂଲିଆ ମୁଣ୍ଡର ଝିଅ ରତନୀ, ତାଙ୍କର ମାନ ମହତ କଣ ଯେ, ଆପଣଙ୍କର କୋଉ କାନ୍ଧକୁ କାନ୍ଧ ପାଇବ ? ଦୁଃଖ କଲେ[୪], ପେଟ ପୋଷିବେ। ବାବୁ ଗମ୍ଭୀର ହେଇ କହିଲେ, "ମଣିଷ, ରଜା ରାଉତୁରା ହେଲେ ବି ମଣିଷ ମୂଲିଆ ମୁଣ୍ଡ ହେଲେ ବି ମଣିଷ। ଆଉ ଦୁଃଖ କରି ପେଟ ପୋଷିବା କଥା ଯାହା କହିଲ, ସେଥିରେ ଲାଜ କ'ଣ ?" ଅକାର୍ଯ୍ୟରେ ଲାଜ, ଅଳସ ପଣରେ ଲାଜ, ଗାନ୍ଧିଙ୍କ ଶିକ୍ଷା କ'ଣ ଜାଣିନ ? ଲୋକନାଥ ତାଚ୍ଛଲ୍ୟରେ କହିଲା, "ସେ ମସ୍ତ ଖୋରଣୀ, ନଅତୁଣ୍ଡୀ ନାଁ ତାକ, ଜାଣୁ ଜାଣୁ ନାଗ ସାପ ବେକରେ ବାନ୍ଧିବ।"

ବାବୁ କହିଲେ, "ହଁ ସେମିତି ଗୁଣିଆ କେଜା ହେଲେ ତ ! ମନ୍ତ ପଢ଼ି ଜାଣିଲେ ନାଗ ସାପ ବଶ।"

ଲୋକନାଥ କହିଲା, "ଛି, ଛି, ମୋ ଧର୍ମ୍ମଭଉଣୀ ସତ, ତା' ବୋଲି ସେ ଖୋରଣୀଟାକୁ କେହି ବାହା ହଉ ନାହାନ୍ତି, ତୁମର ଦିବ୍ୟ ସୁନ୍ଦର ବୋହୂ ଥାଉ ଥାଉ –

ଲୋକନାଥ କଥାଟା ଭାଙ୍ଗିବାକୁ ଟିକେ ଶୁଖିଲା ମୁହଁରେ କହିଲେ, ହଁ, ନେଡ଼ି ଗୁଡ଼ କହୁଣୀକି ବୋହି ଯାଉଛି ଲୋକନାଥ ! ସୁନ୍ଦର ନେଇ କେହି ଧୋଇ ପିଇବ ନାହିଁ। ଏମିତି

(୧) ବାଧରେ, (୨) ବାହୁ, (୩) ଖବର, (୪) ମୂଲ ଲାଗିଲେ।

ଅଳସେଇ, ଅକର୍ମଣ୍ୟ, ଅହଂକାରୁଣୀ ହଜାରଟା ବଡ଼ଲୋକ ଝିଅକୁ ବିଭାହେବା ଅପେକ୍ଷା, ମୂଲିଆମୁଣ୍ଡର କାଳି କୋତରୀ ଝିଅଟିକି ସହଧର୍ମିଣୀ କରିବା ଭଲ।" ସେ ଦିନ ଆଉ ବେଶି କିଛି କଥା ହେଲାନାହିଁ।

ଲୋକା ମନେ ମନେ ଭାରି ଖୁସି। ଶେଷକୁ ସାଙ୍ଗ ମହଲରେ ନ'ତୁଣ୍ଡୀ କଥା ରାଷ୍ଟ୍ର ହେଇଗଲା। ହରି, ଗୁରୁଚରଣ ମହାବଗୁଲିଆ। ନଅତୁଣ୍ଡୀକି ଭାଇ ବାହାହେବେ ଶୁଣି ହରି କହିଲା, ''ହଉ ହଉ, ଆମେ ଆଗ ତାକୁ ବାହାହବା। ସେ ଏଡ଼େ ସୁଧୀରା; ତାକୁ ଭାଇ ଚଳେଇ ଜାଣିବେ ନାହିଁ। ମୁଁ ହେଲେ ତାକୁ ଠିକ୍ କରିବି। ବସ୍ କହିଲେ ବସିବ, ଉଠ୍ କହିଲେ ଉଠିବ। ମାଡ଼କୁ ମହାଦେବ ଡରନ୍ତି; ଛାର ଝିଅଟା ଡରିବ ନାହିଁ।'' ଗୁରୁଚରଣ କହିଲା, ''ସେ କ'ଣ ମାଳଣା ଜଙ୍ଗଲର ବାଘଟା କି? ମୁଁ ଦେଖିନେବି ତା' ଟାଣ।''

ଅବଶ୍ୟ ଏ ସବୁ କଥା ଲୋକନାଥକୁ ଲୁଚେଇ ଲୁଚେଇ ହୁଏ। ଲୋକନାଥ ବିଚରା କିଛି ଜଣି ନଥାଏ। ସେତେବେଳେ ଜମିଦାରିରେ କାମର ଧୁବ୍‌ଧାମ୍। ଜମିଦାର ବାବୁ ନୂଆଢ଼ଙ୍ଗର ରାଇଜ ଚଳଉଛନ୍ତି। ଗାଁ ଗାଁ ତାଙ୍କର ଦେଶୀ ଜିନିଷ ପ୍ରଚାର ନାଗିଛି। ଚରଖା ଚାଲୁଚି, ବକ୍ତୃତା ହଉଛି, ମିଟିଙ୍ଗି ବସୁଛି। ଚାନ୍ଦା ଉଠୁଛି। ହାଡ଼ି, ପାଣ, କଣ୍ଡରାଙ୍କୁ ଛୁଆଁ ଜାତି ଭିତରେ ଆଣିବାକୁ ଯତ୍ନ ଲାଗିଛି। ନ'ତୁଣ୍ଡୀ କଥା ଭାବୁଛି କିଏ?

ସେତେବେଳକୁ ପୁଣି ଗୋଟିଏ ଗୋଟିଏ ଗାଁରେ ଭାରି ଜର ହେଉଥାଏ। କାହିଁ କାହିଁ ବସନ୍ତ ଲାଗିଯାଉଥାଏ। ବାବୁ ହାତରୁ ଟଙ୍କା ଖରଚ କରି, ବଇଦ ଡାକତର, ଓଷଧ ପଥି, ପଠଉଛନ୍ତି। ତାଙ୍କୁ କାମରେ ତର ନାହିଁ। ଲୋକନାଥକୁ ବି ତର ନାହିଁ। ହରି, ଗୁରୁଚରଣ ବି ବସି ନାହାନ୍ତି।

ଖାଲି ବେଳେ ବେଳେ ବାବୁଙ୍କ ମନ ଦୁଃଖ ହୁଏ, ଉମା ସୁନ୍ଦରୀ ଲାଗି। ରୂପରେ ଉମା, ଭଲା ଗୁଣରେ ଉମା ହେଇଥାନ୍ତେ। ଯେ ଦୁନିଆଯାକକୁ ଶିକ୍ଷା ଦେଉଛି, ତା' ଘରେ ପୁଣି ତାର ଓଲଟା, ଏ କଥାରେ ଭଲା କାହାକୁ ଦୁଃଖ ନ ଲାଗିବ?



## 'ଚଉଥା କଥା'

ଆଗରୁ ଶୁଣିଛ, ଲୋକା ଘରକୁ ବିଦିଆ ଘର, ବାରିକି ବାରି କାନ୍ଥକୁ କାନ୍ଥ ଲାଗିଛି। ଲୋକନାଥ ଘରେ ଲକ୍ଷ୍ମୀଙ୍କ ବାସ, ବିଦିଆ ଘରେ ଦାନା ନାହିଁ। ହତଶିରୀର ଶେଷ ସୀମା। ଏଠି ବାପ, ମାଁ, ଝୁଅ ତିନି ପ୍ରାଣୀ। ହେଲେ ବିଦିଆ ଆଉ କାମକୁ ପାରୁ ନାହିଁ। କିନ୍ତୁ ଅଫିମ ମାତ୍ରା ଦିନକୁ ଦିନ ବଢୁଛି। ଗେଲ୍‌ହୀ ଆଉ ରତନୀ ଦୁଃଖ ଧନ୍ଦା କରନ୍ତି, ବୁଢ଼ା ସେଥିରୁ ଅଧା ଅଫିମରେ ଉଡ଼ାଏ[୧]। ଗେଲ୍‌ହୀକୁ ପୁଣି ତୁଆକୁ ତୁଆ[୨] ବାତଜ୍ୱର, ଗୋଡ଼ ହେଲାଣି

(୧) ଅନାବଶ୍ୟକ ଖର୍ଚ୍ଚ, ଅପବ୍ୟୟ, (୨) ବାରମ୍ବାର, ପରପର

ଗୋଟିଏ ଗୋଟିଏ ଖୁଣ୍ଟପରି। ସେ ବି ଆଗପରି ପାଇଟିକି[୧] ପାରୁନାହିଁ। ଅଛି ଏକା ରତନୀ। ଏ ପର୍ଯ୍ୟନ୍ତ ବାହା ସାହା ହେଉନାହିଁ, କେହି ବି ମାଗୁନାହାନ୍ତି। ସେ ଆପଣା ପାଇଟି କରେ, ଭଙ୍ଗା ଘର ଆଉ ବୁଢ଼ାବୁଢ଼ୀଙ୍କି ଆବୋଡ଼ିକରି[୨] ଥାଏ। ଖଜଣା ଅସୁଲ ନ ହେଲାରୁ ଜମିଦାର ଉଠେଇ ଦବାକୁ ବସିଲେଣି। ଏଣେ ତିନିବର୍ଷ ହେଲା ଘର ଛୁଆଣି ଛପର ନାହିଁ, ଠାଏ ଠାଏ କାନ୍ଥ ଭାଙ୍ଗିଗଲାଣି, ଚାଳରେ ବଡ଼ ବଡ଼ କଣା। ବର୍ଷା ଦିନରେ ଲୋକି ଓଳି ଛଡ଼ା ଆଶ୍ରା ଭରସା କେହି ନାହିଁ।

ଲୋକି ଘର ଆଜିକାଲି ଅନ୍ୟ ଢ଼ଙ୍ଗର ହେଲାଣି। ଦୁଲୀ ମଲାଣି। ଯତନୀ ଜ୍ୱାଉକାକୁ ଶାଶୁଘର କଲାଣି, ତାର ଆଜିକାଲି ତିନିଟା ପିଲା। ଲୋକିର ବି ବୋହୂ ଅଇଲାଣି। ତାର ବି ଯୋଡ଼ିଏ ତିନୋଟି ଗୁଡୁରୁ ଗାଡୁରୁ ହେଲେଣି। ଲୋକି ବୋହୂ ମିଳାପୀ ମଣିଷ ସତ, କିନ୍ତୁ ନିଜ ପଇସା ପତ୍ରକୁ ଭାରି ଆଖି। କହନ୍ତି କଥାରେ– ଛୋଟକୁ କେ ଦେଲା ବଡ଼ପଣ; ତା' ଠେଇ ନାହିଁ ଥାନ ମାନ[୩]। ଲୋକା ବରାବରି[୪] ଥାଏ ତା' ବାବୁ କତିରେ। ବାବୁର ଜମିଦାରୀ ବୁଝାସୁଝା କରେ। ମଝିରେ ମଝିରେ ହପ୍ତାଏ ଖଣ୍ଡେ ଛୁଟି ନେଇ ଘରକୁ ଆସେ। ଗେଲହୀ ଆଉ ରତନୀ ବୋହୂଟିକି ଆବୋଡ଼ି ଥାଆନ୍ତି, କିନ୍ତୁ ବୋହୂଟି ମୁହଁରେ କିଛି ନ କହିଲେ ସୁଦ୍ଧା ଯାଙ୍କ କରତାପଣିଆଁ[୫] ସୁଖ ପାଏନାହିଁ। ଗରଜ[୬] ପଇଲେ ଲୋକେ ଗଧ ପାଦ ଧରନ୍ତି। ଏହିଟା ଜାଣିଥିବାରୁ ଚତୁରା ସାରଦା କେବେ ହେଲେ ଯାଙ୍କୁ ହଟି କରି[୭] ପଦେ କହେ ନାହିଁ। କିନ୍ତୁ ମୁଠିଏ ଚାଉଳ କେବେ ଦେବାକୁ ଚାହେଁ ନାହିଁ। ରତନୀ ଖୋରଣୀ ସତ, ରତନୀର କିନ୍ତୁ ଲୋକା ଭାଇ ପ୍ରତି ବଡ଼ ମାୟା। ତା' ପିଲାଙ୍କର ବାରପାଇଟି[୮] କଲେ ତାକୁ ଅସୁଖ ଲାଗେନାହିଁ। ସେ ଜାଣି ଦୁଃଖୀ, କାହା ସାଙ୍ଗେ ନଡ଼ିବ[୯] ଯାଇ? ଲୋକା ଘରେ ଥିଲେ ଖୁବ୍ ଦିଆ ନିଆ କରେ। ତେବେ ପଇସା ଲୋଭ କାହାଠି ନାହିଁ?

ଏତେ ଦୁଃଖ ହେଲାଣି, କିନ୍ତୁ ମାଁ ଝିଅ ଖୋରଣୀପଣ ଛାଡ଼ି ନାହାନ୍ତି। ଏ ପାଖ ସାହିରେ ଯାଙ୍କ ଜାତିଘର କେହି ନ ଥାନ୍ତି। ଏହିଟା ଦରଜୀ ସାହି। ପ୍ରାୟ ୨୫ ବରଷ ତଳେ ଭାରିଯା କଥାରେ ପଡ଼ି ବିଦିଆ ଭିନ୍ନ ହେଇ ଆସି ଏ ସାହିରେ ଘର କଲା। ଆଗେ ତାଙ୍କ ଘରଥିଲା ଖଣ୍ଡେଇତ ସାହି ବାଇଧର ଜେନା ଘରେ। ତା' ବାପ ଉଦିଆ ଜେନା ବିଦିଆର ଖୁଡୁତା, ମସ୍ତ ମହାଜନ। ଧାନ ଚାଉଳ କାରବାର। ସେ କିନ୍ତୁ ଅନେକ ଦିନ ହେଲା ମଲେଣି। ତାଙ୍କ ପୁଅ ବାଇଧର ଜେନା ଆଜିକାଲି ମାଲିକ। ତାଙ୍କ ନାଁ ଗାଁ ଦଶ କୋଶ ବାଟରେ ପଡୁଛି[୧୦]। ଟଙ୍କା ଲକ୍ଷେ ଖଣ୍ଡେ ଘରୁ ଗଣି ଦେବେ, କିନ୍ତୁ ଲୋକଟି ଯେମିତି କାମି, ସେମିତି ଢାଲିଆ[୧୧]। ଲୋକେ କହନ୍ତି; ତା' ନାଁ ଧଇଲେ ସେ ଦିନ ଭାତ ମିଳିବା ଦୁଷର। ତା' ନାଁର ଏଡ଼େ କରାମତି[୧୨]। ସେ ଯେ କେତେ ଲୋକର ଜମି ମାରିଛି, ସମ୍ପତ୍ତି ମାରିଛି, ତାର ସୀମା ନାହିଁ।

(୧) କାମ, (୨) ନିର୍ଭର କରିବା, (୩) ସମ୍ମାନବୋଧ, (୪) ସବୁ ସମୟରେ, (୫) କର୍ତ୍ତୃତ୍ୱ, ଅଧିକାରବୋଧ, (୬) ଆବଶ୍ୟକ, (୭) ବେଖାତିର, (୮) ସବୁକାମ, (୯) ଲଢ଼େଇ, କଳି, (୧୦) ସମ୍ମାନାସ୍ପଦ, (୧୧) କପଟିଆ, ଚକ୍ରାନ୍ତକାରୀ (୧୨) ଶକ୍ତି

ବିଦିଆର ସର୍ବସ୍ୱ ମାରି ତାକୁ ଭିକାରୀ ଦଶା କରେଇ ସୁଦ୍ଧା ତାର ତୃପ୍ତି ନ ଥାଏ। ଟଙ୍କା ଯେ ତାଠୁ ଥରେ ଧାର ଆଣିଲା, ଜାଣ, ସେ ମୂଳରୁ ମଲା। ଗଲା ତାର ତାଟି କବାଟ ଉଠେଇ ନବ[୧]।

ଥରେ ବିଦିଆର ଦିହ ଦୁଃଖ[୨] ହେଇଥିଲା। ଆଉ କିଛି ଉପାୟ ନ ପାଇ ତା'ଠୁ ଟଙ୍କା ୨୦ଟା କରଜ ଆଣିଲା। ଭାବିଲା ଭାଇତ! ଗେଲହୀ ଯେତେ ମନା କଲା ମାନିଲା ନାହିଁ। ସେହି ଟଙ୍କା ବଢ଼ି ବଢ଼ି ସୁଧ ମୂଳ ମିଶି ଟ୩୦୦ଙ୍କା ହେଲା। ବାଇଧରକୁ ବାଗ[୩] ମିଳିଲା। ବିଦିଆର ଘର ଖଣ୍ଡିକ ନିଲାମ କରି ନେଇଗଲା। ପରିବାରଟି ଲୋକନାଥ ପିଣ୍ଡାରେ ଆଶ୍ରା ନେଲେ। ଗେଲହୀ ସେ ଦିନ ବାଇଧରକୁ ଅଭିଶାପ ଦେଇ ଦେଇ କିଜାଣି କୋଟାଏ ପାଣି ପିଇଛି[୪]।

ବିଦିଆର ସବୁ ଗଲା, ବାସ ନାହିଁ, ଦାନା ନାହିଁ, କନା ନାହିଁ, ବେକରେ କୋଡ଼ିଏ ବରଷର ଝିଅ ବନ୍ଧା, ଭାରିଯାର ଏ ଅବସ୍ଥା। ଭାବି ଭାବି ତାକୁ ଜର ହେଲା। ଜରରେ ବିଦିଆ ସେ ପୁରକୁ ଗଲା। ଗେଲହୀ ବିଧବା ହୋଇ ଆହୁରି ଦୁଃଖରେ କାଳ କାଟିଲା। ସେ ବି ଆଉ କାମକୁ ପାରିଲା ନାହିଁ। ରତନୀ ଏବେ କରିବ କ'ଣ? ତାକୁ କିଛି ବୁଦ୍ଧି ବାଟ ଦିଶିଲା ନାହିଁ। ଅଣ୍ଟାରେ ଲୁଗା ଭିଡ଼ି ଦାଣ୍ଡକୁ ବାହାରିଲା। ତା' ଖୋରଣୀପଣ ସକାଶେ ତାକୁ ମୂଲ ବି ବେଶି ମିଳୁ ନ ଥାଏ। ଶେଷକୁ ବୁଦ୍ଧିକରି ଟାଙ୍ଗିଆ ଧରି କାଠକଟାଳୀ ବାଉରାଣୀଙ୍କ ସାଙ୍ଗେ ବଣକୁ ଗଲା। ତା' ଦେହରେ ଭାରି ବଳ। କାଠ ହାଣିଲା, ବିଡ଼ା ବାନ୍ଧିଲା, ମୁଣ୍ଡରେ ମୁଣ୍ଡେଇ କାଠ ବିକିଲା, ସେଇଥିରେ ଦୁଃଖେସୁଖେ ତା' ଦିନ ଗଲା। ତା' ଆଗକୁ କେହି ନାହିଁ, ପଛକୁ କେହି ନାହିଁ, ସେ କରିବ କ'ଣ? ଘରେ ଲାଜ କରି ବସିଲେ ତ ଆଉ ଭାତ ମୁଠାଏ କେହି ଦୟାକରି ଦବ ନାହିଁ।

ହେଲେ ଝିଅର ଅର୍ଜନ[୫] ଖାଇ ଗେଲହୀ ମନରେ ସୁଖ ନ ଥାଏ। ଦୁନିଆଯାକ ଲୋକେ ବାହା ହେଉଛନ୍ତି, ତା' ଝିଅଟାକୁ ବର ମିଳିଲା ନାହିଁ, ଶେଷକୁ ବୁଢ଼ୀ ହୋଇ ଘରେ ବସିଲା; ଜମି ଗଲା, ବାଡ଼ି ଗଲା, ଘର ଗଲା, ଦ୍ୱାର ଗଲା, ବାପ ମଲା। ରତନୀ ଏଡ଼େ ହୀନିମାନୀ ହବାପାଇଁ କ'ଣ ଜନମ ପାଇଥିଲା? ଏ କଥା ଭାବି ଭାବି ଥରେ ଥରେ ତା' ମନ କଣ ହୁଏ, ସେ ଭାରି କାନ୍ଦେ। କିନ୍ତୁ ତା' କାନ୍ଦ ଦେଖୁଛି କିଏ?

ଲୋକା ଯେତେବେଳେ ଘରକୁ ଆସେ, ସେତେବେଳେ ଗେଲହୀ ଲୋକା ସାଙ୍ଗେ ଭାରି ଲଗାଏ, ତୁ ରତନୀକି ହାତକୁ ଦି ହାତ କର। ହେଲେ ଲୋକା କଣ ରତନୀପାଇଁ ଚକରେ ବରଟା ଗଢ଼ିବ, ନା ସରଗରୁ ତୋଳି ଆଣିବ? କିନ୍ତୁ ଗେଲହୀ ସେଇଟା ବୁଝିଲେତ ହୁଏ। ଦିନେ ପିଣ୍ଡାରେ ବସି ରାଗରେ ତମ ତମ ହୋଇ କହିଲା– ମୋ' ଝିଅ କାଣୀ ନୁହଁ, କି କୁଜୀ ନୁହଁ, ସଲେଇ ନୁହଁ କି ଚୋରଣୀ ନୁହଁ, ତାକୁ ପୁଣି ବର ମିଳିବେ ନାହିଁ। ତା'

(୧) ଉଜାଡ଼ିଦେବା, ନଷ୍ଟ କରିଦେବା, (୨) ଖରାପ, ରୋଗ, (୩) ସୁଯୋଗ (୪) ହଇରାଣ ହେବା, ସମସ୍ୟାରେ ପଡ଼ିବା, (୫) ରୋଜଗାର।

ଗୋଡ଼ ତଳକୁ ଗଣ୍ଡା ଗଣ୍ଡା ବର ଆସିବେ। ଆମ ହିନ୍ଦୁକୂଳ ବୋଲି ନେହୁରା ପଡ଼ିଛି; ନଇଲେ ମିନିଚିନିପାଟଣାର ସଦେଇ ମହାରାଣୀ ଝିଅ ବିନ୍ଦୁ କେମିତି ଆପଣା ରାଜିରେ ବା' ହୋଇଗଲା। ସେମାନେ କିରିସ୍ତାନୀ। ତାଙ୍କ କଥା ଦୋସରା[୧]; ନୋହିଲେ ଛାର[୨] ଲୋକାଟାର ଗୋଡ଼ ଧରନ୍ତି କିଆଁ। ତା' ବୋଉଠୁ କଣ ମୋ ଝିଅ ଡଉଲ ନୁହଁ? ପାଣୁ ମା'ଟା ଏବେ କି ସୁନ୍ଦର? ଟାକୁଆଗାଲୀ, ଉଞ୍ଚକପାଳୀ, ନଳିଗୋଡ଼!

ଆଉ ଘରେ ସାରଦା ବସି ରାନ୍ଧୁଥିଲା, ତା' ମାଁ କତିରେ ବସିଥିଲା। ସେ ବୁଢ଼ୀ ବି ଭାରି ଖେରଣୀ; ତା' କାନରେ ଗେଲହୀର ବୟାନ ବାଜିଗଲା। ସେ ତ ରନ୍ଧାଘରୁ ବାହାରି ପଡ଼ି, ହାତହଲେଇ, ମୁହଁହଲେଇ, ନାକଛିଆଡ଼ି କହିଲା "ମୋ' ଝିଅଟାକୁ ବାହୁନିବୁ[୩] ଲୋ ଅଇଁଠାଖାଇ, ତୋର ଏଡ଼େ ଗରବ[୪]। ଏବେ ବାହାର ମୋ ଘରୁ, ଏବେ ବାହାର, କିଛି ନ କହିଲାରୁ ମୁହଁ ବଢ଼ି ଯାଉଛି।" ଏ କଥାରେ ଗେଲହୀ କି ତୁନି ହବା ଲୋକ। ସେ ଉଠି, ଲୁଗାକୁ ଅଣ୍ଟାରେ ଭିଡ଼ି ଦେଇ ଲୋକା ମାଁ ସାଙ୍ଗେ ଦିନଯାକ କଳିଆ କଲା। ଶେଷକୁ ସଞ୍ଜ ଗୁଞ୍ଜୁ ଗୁଞ୍ଜୁ, ମାଁ ଝିଅଁ କଂସା ଦି'ପଟି, ଦିଖଣ୍ଡ ମଶିଣା ଛିଣ୍ଡା ଗୁଡ଼ାଇ, ଆଉ ଆଉ ତାଙ୍କର ଛୋଟିଆ ମୋଟିଆ ଚିଜ ସବୁ ବାନ୍ଧିଲେ। ଗେଲହୀ ପାଟି କରୁଥାଏ, ଶୋଧୁଥାଏ, କହୁଥାଏ– ମଲା ମୋର, ଦୁଃଖ ଧନ୍ଦା କଲେ ପେଟପୋଷିବୁ, ବାର ଲୋକଙ୍କ କଥା କିଆଁ ସହିମୁଁ। ଲୋକା ନ ଥାଏ, ଭଗବାନପୁରରେ ତା' କଚିରୀଠି ଥାଏ। ସେ ଥିଲେ କେଜାଣି ଗେଲହୀ ବାହାରି ଯାଇ ନଥାନ୍ତା।

ମାଁ ଝିଅ ଯୋଉଠୁ କିଛି କହିଲେ ନାହିଁ, ଗେଲହୀ ବି ଆପଣା ପିଲା ହାତ ଧରି, ଚିଜତକ ମୁଣ୍ଡରେ ମୁଣ୍ଡେଇ ବାହାରିଗଲା। ସେତେବେଳେ ପାଣି କହୁଛି ମୁଁ, ପବନ କହୁଛି ମୁଁ। ଘଡ଼ଘଡ଼ି ମାରୁଛି, ଝମ ଝମ ମେଘ ପକାଉଛି, ଝିଲ୍ ଝିଲ୍ ବିଜୁଳି ମାରିଦଉଛି। ହେଲେ ମାଁ ଝିଅଙ୍କ ଦେହ ଅକାଠ[୫]। ରାଗରେ ବି ଆହୁରି ଅକାଠ ହେଉଥାନ୍ତି।

ମାଁ ଝିଅ ବାହାରି ଗଲେ। ମୁହଁକୁ ମୁହଁ ଦୁଶୁନାହିଁ, କିଟି କିଟି ଅନ୍ଧାର ମାଡ଼ି ଆଇଲାଣି। ଖୋରଧା ବାଟ ଧରିଥିଲେ, ବାରି ନ ପାରି ଅନ୍ୟ ସଡ଼କରେ ଯାଇ ଉଠିଲେ। ଚାଲୁଛନ୍ତି। ବାଟର ପରିଯନ୍ତ[୬] ନାହିଁ; ସେତେବେଳେ ଜ୍ୟେଷ୍ଠ ମାସ। ଦିନଯାକ ଟାଣ ଖରା ହୋଇଥିଲା, ସଞ୍ଜ ପହରୁ ଧରିଛି ବରଷା, ଜହ୍ନ ଉଠିବାକୁ ନାହିଁ। ବାଟ ପାଖରୁ ମହୁଲ ବାସନା ନାକରେ ବାଜି ଯାଉଛି। ମହୁଲ ଖାଇବାକୁ ଭାଲୁମାନେ ଭାରି ଭଲପାନ୍ତି। ସତକୁ ସତ ଗୋଟାଏ ମହୁଲ ବୁଦା ମୂଳେ ଭାଲୁଟାଏ ସୁଡ଼ୁସୁଡ଼ୁ ହଉଥାଏ। ଗେଲହୀ ତାକୁ ଦେଖି ସାଇଲାଣି। ଯେତେହେଲେ ମାଇକିନା ଲୋକ, ତା' ଛାତିରୁ ନିଆଁଟାଏ ଖସି ପଡ଼ିଲା। ହାତରେ ଅସ୍ତ୍ର ଭିତରେ ଗୋଟିଏ କୁରହାଡ଼ି, ଆଉ ରତନୀ ହାତରେ ଥାଏ ଟାଙ୍ଗିଆଟା।

(୧) ଅଲଗା, ନିଆରା (୨) ଅତି ସାଧାରଣ, (୩) ଖୁଣିବା, ନିନ୍ଦିବା, (୪) ଗର୍ବ, (୫) ଅବିଚଳିତ, (୬) ସୀମା

ବାଘ ହଉ ଭାଲୁ ହଉ, ଯମ ତ ଭେଟିଲେ ଗେଲହୀ ଆଉ ନ ଫେରନ୍ତି। ଭଏ ବା ଯିବ କୁଆଡ଼େ। ବତିରେ ଗାଁ ଗଣ୍ଡା ଦୁଶୁନାହିଁ। କୋଉଠି ଟିକେ ଆଲୁଅ ନାହିଁ, ଜନପ୍ରାଣୀର ଶବଦ ନାହିଁ। ନିଛାଟିଆ, ନିଶୁନ ରାତି। ପୁଣି ପ୍ରାଣ ଉପରେଡ ପଡ଼ିଛି। ଗେଲହୀ ମନେ ୨ କହୁଛି– ଯା ହବାର ହବ। ବାଘ ଆସୁ, ଭାଲୁ ଆସୁ, ଏଇ ଟାଙ୍ଗିଆରେ ଏକା ଚୋଟେ ଦେବି ଯେ, ଦି'ଗରିଂ ହେଇ ପଡ଼ିଥିବ। ତା' ମନ କଥା ମନରେ ଅଛି, ମଣିଷ ଗନ୍ଧବାରି ଭାଲୁତ ଗର୍ଜନ କରି ଧାଇ ଆସିଲା। ଗେଲହୀକି ବିଧାତା ବଳଦେଲାପରି ସେ ଆଉ କିଛି ନପାଇ କୁରାଡ଼ିରେ ଦେଲାତ ଏକାଚୋଟେ ତା' କାନ୍ଧରେକିନା? ବଡ଼ ଜନ୍ତୁ ହେଲେ କଅଣ ହବ, ଭାଲୁ ବଡ଼ ଡରକୁରା। ସେତ ରଡ଼ିଛାଡ଼ି ପଳେଇଛି ଜଙ୍ଗଲକୁ। ଗେଲହୀ ବି ବଡ଼ ଜୋରେ ମାରିଥିଲା। ଭାଲୁର ନିଶ୍ଚେ ଜାଗାଏ ଦି'ଜାଗା ଖଣ୍ଡିୟା ହୋଇଥିବ। ସେତେବେଳକୁ ଚାନ୍ଦ ଉଇଁ ଆଇଲାଣି। ବରଷା ବି ଛାଡ଼ି ଗଲାଣି। ସାହସରେ ପୁଣି ମାଁ ଝିଅ କିଛି ଦୂର ଗଲେ। ନିବୁଜ ବଣ ଭିତରୁ ଗୋଟିଏ ଟିକି ଆଲୁଅ ହଠାତ୍ ଦୁଶିଗଲା। ଗେଲହୀ ବିଚାରିଲା– ଆଲୁଅ ଯେତେବେଳେ ଦୁଶିଲାଣି, ଏଠି ନିଶ୍ଚେ ଗାଁ ଗଣ୍ଡା ଅଛି। ମଣିଷ ନ ଥିଲେ ଆଲୁଅ ଜଳେଇବ କିଏ? ଆଲୁଅକୁ ଅନେଇ ୨ ମା ଝିଅ ଚାଲିଲେ। କ୍ରମେ ଜଙ୍ଗଲ ପାରିହୋଇଁ ପଶିଲେ ଗୋଟିଏ ଗାଁ ଭିତରେ। ସେଠି ଅନେକ ଲୋକ ସାନ ୨ କୁଡ଼ିଆଟିମାନ, ପତରଛୁଆଣି, ଲୋକଙ୍କ ଚେହେରା ଯମଦୂତ ପରି। ଆକାର ପ୍ରକାରରୁ ଶଅର ଶଅରୁଣୀ² ପରି ଦୁଶୁଥାନ୍ତି। ଗେଲହୀ ଆଉ ରତନୀକି ଦେଖି କେତେ ଲୋକ ପିଲା, ଯୁବା, ବୁଢ଼ା, ପୁରୁଷ ସ୍ତ୍ରୀ ଧାଇଁ ଅଇଲେ। ''ତେମେ କିଏ ଲୋ'' କି ଜାଣି ଶହେ ଜଣଙ୍କ ମୁହଁରୁ ବାହାରିଲା। ତାଙ୍କ କଥାରେ ପଦେ ଦି'ପଦ ଜବାବ ଦେଇ ଗେଲହୀ ଗୋଟାଏ କାଠ ମୁଣ୍ଡିଆ ଉପରେ ବସିଗଲା। ତା' କତିରେ ରତନୀ ବସିଲା। ମୁଣ୍ଡରୁ ଚିଜ ଓହ୍ଲେଇ ଭୂଇଁରେ ଥୋଇଲେ। ଲୁଗାପଟା ସବୁ ପାଣି ସଡ଼ ସଡ଼ ହୋଇଥାଏ। ତାକୁ ଚିପୁଡ଼ିଲେ।

ଶଅର ଛୋଟ ଜାତି ହେଲେ କଅଣ ହବ, ତାଙ୍କପରି ମାୟାମମତାଶୀଳ କେଇଟା ଜଣ ଅଛନ୍ତି? ସେହିକ୍ଷଣି ତାଙ୍କୁ କିଏ ଘରକୁ ଡାକିଲା, କିଏ ଖାଇବାର ଯାଚିଲା। ହେଲେ ଗେଲହୀ ତାଙ୍କ ହାତରୁ ପାଣି କେମିତି ଛୁଇଁବ, ସେ କହିଲା– ଏଠି ଚଷା ଖଣ୍ଡେଇତ ଘର କି, ଗୁଡ଼ିଆ, ଗଉଡ଼ ଘର ନାହାନ୍ତି। ଗେଲହୀ କଥାରେ ଜଣେ ବୁଢ଼ୀ କହିଲା; ହଉଲୋ, ନାନି– ଆଜି ରାତିକି ଏଠି ରହି କାଲି ସକାଳେ ତେତେ ଆମ ସାଆନ୍ତ ଘର ବିଶିପଡ଼ାରେ ଛାଡ଼ିଦବୁ। ସେଠି ଅନେକ ଚଷାଘର।

ବଡ଼ କଷ୍ଟରେ ରାତି ପାହିଲା। ଶଉରୁଣୀ ବୁଢ଼ୀ ଆପଣା କଥାମତେ³ ମାଁ ଝୁଅଙ୍କୁ ନେଇ ଦନେଇ ପାତ୍ର ଘର କତି ଗାଁରେ ଛାଡ଼ିଦେଲେ। ସେଠି କି ଜାଣି ଦିଇଶ ଘର ଚଷାଥିବେ। ମଣିଷକୁ ମଣିଷ ଆଶ୍ରା। ଗେଲହୀକ ବି କାଲୁ ପରିଡ଼ା ଘରେ ବାସ ମିଳିଗଲା।

(୧) ଖଣ୍ଡ, (୨) ଶବରୁଣୀ, (୩) କଥା ମୁତାବକ

ଗେଲ୍‌ହୀ ଆପଣା ଦୁଃଖ ଧନ୍ଦା କରେ; କାଲୁ ପରିଡ଼ାର ଢ଼େଙ୍କି ଚାଳିଆରେ ମାଁ ଝିଅ ବି' ମୁଠା ଫୁଟେଇ ଖାଆନ୍ତି, କାନିପାରି ଶୁଅନ୍ତି। କାଲୁ ଘରର ବୋଲବାଣୀଟା ନିତି କରି ଦିଅନ୍ତି। କାଲୁ ପରିଡ଼ା ପରି ଲୋକ ତେମେ ପାଇବ ନାହିଁ। ବଡ଼ ସରଳ, ନନ୍ଦପନ୍ଦ[୧] କିଛି ଜାଣେ ନାହିଁ। ତା' ଭାରିଜାଟି ବି ଦୁର୍ଗାଟିଏ। ରୂପ ଯେମିତି, ଗୁଣ ସେମିତି। ହେଲେ ମାଣିକ ପେଟରୁ ଘୁଷୁଡ଼ି ଜାତ। କାଲୁର ପୁଅ, ନାଲୁ ପରିଡ଼ା ଡ଼ୁଳା ଗୋଟିଏ ଶଇତାନ। ଗୋଟିଏ ବୋଲି ପୁଅ, ବାପ ମାଁ ବଡ଼ ଗେଲବସରରେ ବଢ଼େଇଥିଲେ। ସେଇଯୋଗୁ ସେ ନାଁ ବାପକୁ ମାନେ, ନାଁ ମାକୁ ମାନେ। ଯେମିତି ବଜାରୀ, ସେମିତି ଦୁଷ୍ଟ। ଭାରିଯାକୁ ତ ଚୁଲ୍ଲି ଚାଳରେ ବାସ ଦିଏନାଁ। ପଇସାଟିଏ ଦିନେ ରୋଜଗାର ନାହିଁ, ହେଲେ ଘରୁ ମାଁର ସୁନା ପଇଁଚି, କଣ୍ଟି କଡ଼ି, ଯାଇ ବଣିଆ ଦୋକାନରେ ବନ୍ଧା ପକେଇ ଦବ। ବାକ୍ସ ଫିଟେଇ ଟଙ୍କା ନେଇ ଚାଲିଯିବ।

ଲାଗୁ ପରିଡ଼ା ରତନୀକି ଦେଖିଲା ଦିନୁ ତା' ମନେ ୨ ଥାଏ, ରତନୀକି ବାହା ହେବ। ହେଲେ ମା ବାପା ତା କରେଇ ଦେବେ ନାହିଁ। ଦୁଷ୍ଟତ, ଶେଷକୁ ମନରେ ଗୋଟିଏ ବୁଦ୍ଧି ପାଞ୍ଚିଲା। ରତନୀକି ନେଇ କଲିକତା ଗଲେ ବୋପା ମାଁ କରିବେ କଣ? ଏକଥା ଭାବି ଦିନେ ରତନୀକି କହିଲା। ଭାବିଥିଲା ରତନୀ ରାଜି ହୋଇଯିବ। ରତନୀ ଏକଥା ଶୁଣି କି ଆଉ ଥୟ ଧରେ। ଲାଗିଲା ଧୁମାଧୁମ କଜିଯା। ଗେଲ୍‌ହୀ ତାକୁ ମାରିବାକୁ ଗୋଡ଼େଇଲା। ନାଲୁ ମାଁ କେତେ କାନ୍ଦିଲା। ତା ଭାରିଯା ରତନୀକି ଅଭିଶାପ ଦେଲା। ସେଠୁ ମା ଝିଅଙ୍କ ବାସ ଉଠିଲା। ଗଲେ ନିଧି ବାରିକ ଘରେ ରହିଲେ। ତା' ବୋଉ ଭାରି ଖୋରଣୀ। ସେ କିଛିଦିନ ଯାଙ୍କ ସାଙ୍ଗେ ଭଲରେ ଚଳିଲା, ପୁଣି ସେଠିବି କଜିଆ ନଗେଇ ଯାଇ ଏକାବେଳେ ରହିଲେ ବାହ୍ମଣ ସାହି ଅର୍ଜୁନ ମିଶ୍ର ଘରେ।

ଅର୍ଜୁନ ମିଶ୍ର ବାହ୍ମଣ, ପୁଣି ବଡ଼ ଲୋଭୀ, ତାର ଗାଈ ବାଛୁରୀ ପରି ପଲେ ପିଲା; କୁଟୁମ୍ବ ହେଇ ଦଶ ପନ୍ଦର ଜଣ। ଭାବିଲା ମାଁ ଝିଅ ଦିଟା ଯାକ ଖଟିବେ, ଭାତ ମୁଠାଏ, ଲୁଗା ଖଣ୍ଡକୁ ଏମିତି ପୋଇଲୀ କେଇଟା ମିଳିବେ। କିନ୍ତୁ ଗେଲ୍‌ହୀ ଗୁଣ ସେ ଜାଣି ନଥିଲା। ଗେଲ୍‌ହାକି ନେଇ ବିଚରା ବଡ଼ ବିପଦରେ ପଡ଼ିଲା। ତା ଘର ହେଲା କଳହପୁରୀ। ସକାଳେ ଦେଖ କଜିଆ, ସଞ୍ଜେ ଦେଖ କଜିଆ, ଦି ପହରେ ଦେଖ କଜିଆ। ରାତି ଅଧରେ ଦେଖ କଜିଆ। ରତନୀତ ଅଣ୍ଡାଭିଡ଼ି ତା ପିଲାଙ୍କ ସାଙ୍ଗେ କଜିଆ କଲା। ବେଳେବେଳେ ଦିଟା ଥୋଇ ଦେବାକୁ[୨] ବି ଭୁଲିଲା ନାହିଁ।

ଏମିତି ହେଇ ଯାଙ୍କର ଦିନ ଗଲା। ଖୋରଣୀକି ବାସ ମିଳିବ ପୁଣି କୋଉଠି?

ଏ ମାଁ ଝିଏ ତ ବିଶିପଡ଼ାରେ ରହିଲେ। ଏଣେ ଲୋକା ଯାଙ୍କ ଖବର ପାଇ ମହା ମୁସ୍କିଲ୍‌ରେ[୩] ପଇଲା। ପିଲାଟିକାଳୁ ଗେଲ୍‌ହୀ କି ମା ପରି, ରତନୀକି ଭଉଣୀପରି ମାନିଥିଲା,

(୧) ଛନ୍ଦକପଟ, (୨) ମାଡ଼ଦେବା, (୩) ସମସ୍ୟା।

ମାୟାମମତା ବି ଲାଗି ଯାଇଥିଲା, ଭାରିଯାକୁ ଶାଶୁକୁ ବହେ[୧] ଶୋଧିଲା; ଶେଷକୁ ବାବୁଙ୍କୁ କହି ଗାଁ ଗାଁ ଲୋକ ପଠେଇ ଖୋଜେଇଲା।

ବିଶିପଡ଼ା ସରଦେଇପୁରକୁ ବାଟ ତିନି କୋଶ ହବ। ଲୋକାକୁ କିଏ କହିଲା– ଗେଲହୀ ରତନୀ, ସେଇଠି ଅଛନ୍ତି। ଲୋକା ଯାଇ ବଡ଼ କଷ୍ଟରେ ତାଙ୍କୁ ସେଠୁ ବୁଝେଇ ବାଝେଇ ଘରକୁ ଆଣିଲା।

ସେତେବେଳକୁ ସାରଦାର ପିଲାପିଲିର ସମ୍ଭାବନା। ସେ ବି କାମ ତୁଲେଇ ନବା ଆଶାରେ ମୁହଁ ଉପରେ ଆଉ କିଛି କହିଲା ନାହିଁ। ଘରେ ତ ଲୋକା ଯାଙ୍କୁ ଥୟଥାୟ[୨] କରି ଦେଇଗଲା। ଏଣେ ଜାତିବାଲା ତାକୁ କଲେ ଜାତିରୁ ଅଟକ[୩]। ଗେଲହୀ ଆଉ ତା'ଝିଅ ଏତେ ଦିନ କୁଆଡ଼େ ଥିଲେ। ବାଉରୀ ହାଣ୍ଡିରେ ଖାଇଛନ୍ତି, କି ହାଡ଼ି ହାତରେ ଖାଇଛନ୍ତି କିଏ ଜାଣେ। ମାଇକିନା ଝୁଅ ଘରୁ ଗୋଡ଼ କାଢ଼ିଛନ୍ତି, ତାଙ୍କୁ ପୁଣି ଏ ଘରେ ପୂରେଇଲା।

ମାତ୍ର ଲୋକା ଜାତିକି ବୋଉ ଖାତିର କରେ। ତା' ଭାରିଯା ଚିଡ଼ିଭିଡ଼ି[୪] ହେଲାରୁ କହିଲା, ''ମ, ଏଣ୍ଡୁରୁ ସାଇବ କଣା, ମୋ ଆଣ୍ଟୁଆତୁ ବୁଝାମଣା'' ଏଇ ଅଲହୀଆ ଜାତିକି ମୁଁ ଡରିବି। ଲୋକେ ମଦ ଗଞ୍ଜେଇ ଖାଇଲେ ତାଙ୍କ ଜାତି ଯାଉ ନାହିଁ। ରାଣ୍ଡ ଅରଖିତଙ୍କ ଜମିବାଡ଼ି ବୁଡ଼େଇ ଦେଲେ ତାଙ୍କୁ ପାଞ୍ଚପଞ୍ଚୁରୁ ସଜାନାହିଁ। ଲୋକ ଦି'ଟାକୁ ଆଶ୍ରା ଦେଲାରୁ ହେଲା ମୋର ମହାପାପ। ଥାଆନ୍ତୁ ତାଙ୍କ ଜାତି ନେଇ ସେହିମାନେ। ମୁଁ ତାଙ୍କୁ ଡ଼ରେ ନାହିଁ। ତା' ଭାରିଯା ଏଗାରତୁଣ୍ଡୀ, ନଅତୁଣ୍ଡୀ, ଲୋକନାଥ ଜାତିରୁ ଅଟକ ହେଉଛନ୍ତି, ଏ କଥା ଜମିଦାର ବାବୁ ଶୁଣି ପାରିଲେ। ଦିନେ ଲୋକନାଥକୁ କହିଲେ, ଚାଲ ଗୋଟାଏ ମଉଜ କରିବା। ନଅତୁଣ୍ଡୀ ଯେମିତି ଖୋରଣୀ ତାଙ୍କୁ ଠିକ ସେମିତି ଗୋଟିଏ ବର କରି ବାହା ଦେଇଦବା। ତମ ଉପରୁ ବୋଝ ଭାରଟା ଯିବ। ଲୋକନାଥ ବାବୁର ଆଗ କଥା ମନେ ପଡ଼ିଗଲା। କିନ୍ତୁ ସେ ହଉଛନ୍ତି ମୁନିବ, ତାଙ୍କୁ କଣ କହି ହବ। କହିଲା, ''ହଉ ଆଜ୍ଞା ସତକଥା, ରତନୀ ବାହା ହେଇଗଲେ ଜଞ୍ଜାଳ ଯାଏ।'' ହେଲେ ଏଡ଼େ ଖୋରଣୀକି ସତରେ କିଏ ବାହାହବ ଭାବିଲା। ବାବୁ ତା' ମନ କଥା ଜାଣିପାରି କହିଲେ, ''ଲୋକନାଥ, ଆମ ରଇତ[୫] ଭିତରୁ ଗୋଟାଏ ଚଷା ଟୋକା ଦେଖି ବାହାକରି ଦବା। ମୁଁ ପଛେ ତାକୁ ଦି'ମାଣ ଜମି ଯଉତୁକ ଦେବି। ଗୋଟାଏ ପୁଣ୍ୟ କାର୍ଯ୍ୟତ ହବ। ଲୋକନାଥର ଏଥିରେ ନାହିଁ କରିବାର କ'ଣ ଥିଲା?

ବାବୁ କଥା ଠିକଣା[୫] ହେଲା। ଲୋକନାଥ ଘରକୁ ଆଇଲା। ତା' ଭାର୍ଯ୍ୟା ଏ କଥା ଶୁଣି ରତନୀ କାନରେ ପକେଇଲା[୬]। ସେତ ରାଗରେ ଗୋଟାକୁ ଗୋଟା। ତାକୁ ପୁଣି ବାହା ହବ, ଏଡ଼େ ଛାତି କାହାର? ତା'କଥାରେ ସାରଦାର ଦେହ ଜଳି ଗଲା। ତା' ସକାଶେ ଏମାନେ ଏକଘରକିଆ, ଏ କଥା ସାରଦା ମୋଟେ ଭୁଲି ପାରୁ ନଥାଏ। ତା' ଇଚ୍ଛା ହେଉଥାଏ

(୧) ବହୁତ, ଭଲକରି, (୨) ବ୍ୟବସ୍ଥିତ, (୩) ବାସଂଦ (୪) ବିରକ୍ତ, (୫) ସ୍ଥିର, (୬) କହିବା, (୭) ପ୍ରଜା

ଏଇକ୍ଷଣି ରତନୀକି ପୁଣି ଘରୁ ତଡ଼ିଦବ। ହେଲେ ସ୍ୱାମୀ ମୁହଁକୁ ଚାହିଁ ଆଉ କିଛି କହିପାରୁ ନଥାଏ। ମାତ୍ର ଲୋକା ଶାଶୂ ବା କାହିଁକି ସହିବ ? ସେ ଆଉ ସମାଳି ପାରିଲା ନାହିଁ। ଝିଅକୁ ଦେଖେଇ କହିଲା, ''ଏ ସବୁ ଅର୍ଜିତ ଟାଣ, ଥୋଇ ଦଉ ତା' ବୋପାଭାଇ ଘରେ। ଏଠି ମୋ' ଝିଅ ଉପରେ କର୍ତ୍ତାପଣିଆ[୧] କରିବାକୁ କିଏ କହିଲା ମ ଅଗଠାଖାଇ କି ? ରତନୀ ବଡ଼ ଛୋଟ ମାନିବା ଜନ୍ତୁ ନୁହେଁ। ସେ ବି ବୁଢ଼ୀକି ଖୁବୁ ବଟେଇଲା। ଶେଷକୁ ରାଗରେ ରତନୀ ଘରୁ ବାହାରିଗଲା। ଗେହ୍ଲୀ ଯାଇଥାଏ ଆର ଗାଁକୁ ଧାନକୁଟି। ଲୋକା ସାହିରେ, କାହା ଘରକୁ ବୁଲି ଯାଇଥାଏ। ରାତି ନଅଟା ବେଳକୁ ଆସି ଶୁଣିଲା, ରତନୀ ଘରୁ ବାହାରି ଗଲାଣି। ତାକୁ ଅନ୍ଧାର ଦୁଶିଲା। କାଲି ତା' ବାହାଘର, ଆଜି କନିଆ ପଳେଇଲାଣି, ବାବୁ କ'ଣ ଭାବିବେ, ତାଙ୍କ ସାଙ୍ଗେ ଥଟା କରୁଛି। ବଡ଼ ବ୍ୟସ୍ତ ହୋଇ ଭାର୍ଯ୍ୟାକୁ ବକିବକି ଲଣ୍ଠନ ଧରି ଖୋଜି ବାହାରିଲା। ଗେଲହ୍ୱୀ ଆସି ଏ ଖବର ଶୁଣି କାହାକୁ ମାରିବ କି ତାରିବ। ସେ ବି ଲୋକା ସାଙ୍ଗେ ବାହାରିଲା। ଘଡ଼ିଏ ଖଣ୍ଡେ ଏଣେ ତେଣେ ଖୋଜୁ ଖୋଜୁ ଆମ୍ବ ତୋଟାରେ ତାକୁ ପାଇଲେ। କଇଁ ଫୁଲପରି ଜହ୍ନ ପଡ଼ିଛି। ସୋରିଷ ବୁଣି ଦେଲେ ଖୁଣ୍ଟି[୨] ହେଇଯିବ। ଗୋଟାଏ ଆମ୍ବ ଗଛମୂଳେ ଏକାଟିଆ ରତନୀ ବୁଲୁଥାଏ। ଏମିତି ଜାଗାକୁ ଯିବାକୁ ପୁରୁଷ ଡରିବେ। ରାଗରେ ତାର ଡରଭୟ ନଥାଏ। ଲୋକନାଥ କେତେ କୁହାପୋଛା କରି ଶେଷକୁ ହାତଧରି ତାକୁ ଘରକୁ ନେଲା। ସେତେବେଳକୁ ରାତି ବାରଟା। ଦୁହେଁ ଘରକୁ ଗଲେ। ଏଣେ ସାରଦା ମୁହଁ ଫୁଲେଇ ବସିଥାଏ। ସଭିଙ୍କି ବୁଝାଉ ବୁଝାଉ ରାତି ତିନିପହର ହେଲା।

ସେ ଦିନ ଉଠୁ ଉଠୁ ତାଙ୍କୁ ବେଳ ପ୍ରାୟ ଆଠଟା ହେଲା। ଏମିତି ସମୟରେ ଗୋଟିଏ ଲୋକ ଆସି ହାଜର। ଲୋକାତ ତାକୁ ଘଡ଼ିଏ ଖଣ୍ଡେ ଏକା ଦୃଷ୍ଟିରେ ଅନେଇ ରହିଲା। ଚଷା ଚାଷେଣ୍ଡିଆ ଚେହେରା, ଭୂତମୁଣ୍ଡିଆ, ଖଣ୍ଡେ ଲେଙ୍ଗୁଟି ମାରିଛି, କଳା ମୁସୁ ୨ ଚେହେରା। ଆସି ହଠାତ୍ ଲୋକା ଗୋଡ଼ ତଳେ ଲମ୍ବଦଣ୍ଡା[୩] ହୋଇ ପଡ଼ିଗଲା। ଲୋକା ଏକାବେଳେ ହତବୁଦ୍ଧି। ଲୋକଟା ହଠାତ୍ ଉଠି ବାୟାଙ୍କ ପରି ସ୍ୱରରେ କହିଲା– ମଣିମାଁ, ସାଆନ୍ତେ, ମେତେ ବଟେଇଛନ୍ତି ବା'ହବାକୁ। ମୋ' ନାଁଟି ଫକିରା, ମେ' ବାପା ନାଁଟି ଭିକାରିଆ, ମୋ' ଜେଜିବାପା ନାଁଟି ଭରତିଆ, ମୋ' ଅଣଜେଜିବାପ ନାଁଟି ଆରତିଆ, ମୋ' ପଣଜେଜିବାପ ନାଁଟି ସାରତିଆ– ''ଲୋକା ତା' ସ୍ୱରରେ ଚିଡ଼ିଉଠି ଗୋଡ଼ରୁ ଖଡ଼ଉ କାଢ଼ିଲା। ମାରିବାକୁ ଗୋଡ଼ାଇଲା। ବର ଖଣ୍ଡେ ଦୁର ଦୌଡ଼ି ଯାଇ, ପୁଣି ନେଉଟି ଆଇଲା। ଲୋକନାଥ ସେତେବେଳକୁ ଭିତରକୁ ପଶି ଗଲାଣି। ଲୋକଟା ଆସି ଦୁଆରେ ଡାକିଲା। ଗେଲହ୍ୱୀ ବାହାରି ପଇଲା। ତା' ବିଭୀଷଣ ମୂର୍ତ୍ତି ଦେଖି ଗେଲହ୍ୱୀ ଆଉ ସମ୍ଭାଳି ନପାରି କହିଲା, ''ମାଁ ଲୋ, କି ଅପରଛିନୀୟା ଅବରଜିୟାଟା[୪], ଏ କୋଉ ଗାଡ଼ରୁ[୫] ଉଠି ଆଇଛି।'' ଲୋକଟା କଟମଟ[୬] ହେଇ ଗେଲହ୍ୱୀ ମୁହଁକୁ ଦଣ୍ଡେକାଳ ଚାହିଁ କହିଲା, ''ମୁଁ ବା' ହବାକୁ ଆଇଚି।''

(୧) ହାକିମାତି, ପ୍ରଭୁତ୍ୱ, (୨) ଗୋଟି ଗୋଟି କରି ବାଛିବା, (୩) ଲମ୍ବ ହୋଇ ମାଟି ଉପରେ ଶୋଇପଡ଼ିବା, (୪) ଅପରିଷ୍କାର, କୁତ୍ସିତ, (୫) ଗାତ, (୬) ପଲକହୀନ ଆଖି

ଗେଲ୍ହୀ ଘୃଣାରେ ମୁହଁ ବୁଲେଇଦେଇ କହିଲା– ତୁ ଛତରାଟା କାହାକୁ ବାହା ହବୁକିରେ? ''ତୋର ଯୋଉ ରୂପ, ଲୋକେ ଖାଲି ଧାଇଁପଡ଼ିବେ ଝୁଅ ଦବାକୁ। ଗେଲ୍ହୀ ଆଉ କ'ଣ କହିଥାନ୍ତା, ବରଟା ତ ଦୁମକିନା[୧] ତା ଗୋଡ଼ ତଳେ ପଡ଼ିଗଲା। ବଡ଼ ପାଟି କରି କହିଲା, ''ମାଉସୀ ଲୋ, ମୁଁ ବା' ହବାକୁ ଆଇଚି, ଆଖି ଛୁଁଉଚି, ମୁଁ ବା ହବାକୁ ଆଇଚି, ଦାନ୍ତରେ କୁଟା ହଉଚି, ମୁଁ ବା' ହବାକୁ ଆଇଚି, ତୋ ରାଣ ମୁଁ ବାହାହବାକୁ, ତୋ ଗୁରସ୍ତରାଣ[୨] ମୁଁ ବା' ହବାକୁ ଆଇଚି, ତୋ' ଝିଅ ରାଣ ମୁଁ ବା' ହବାକୁ ଆଇଚି; ତୋ ପୁଅ ରାଣ–'' ଗେଲ୍ହୀ ଆଉ ସହି ପାରିଲା ନାହିଁ, ଝାଡୁରେ ଦି' ପାହାର ଦେଲା, ଗୋଡ଼ରେ ଗଡ଼େଇ ଦେଇ; ପାଟି କରି କହିଲା ''ମଲା ମୋର କପାଳଟା ନିଆଁ ଲଗାଟା'', ତା' ପାଟିରେ ଲୋକା ବି ଦଉଡ଼ି ଆଇଲା, ରତନୀ ବି ଦଉଡ଼ି ଆଇଲା। ସେତେବେଳେକୁ ଲୋକଟା ''ବାପ ଲୋ, ମାଁ ଲୋ, ହାଡ଼ ଭାଙ୍ଗଲା ଲୋ କହି ଏଡ଼େ ପାଟି କଲା ଯେ ସାଇଯାକ ଦଉଡ଼ି ଆଇଲେ। ସେମାନେ ତ ଯାକୁ ଦେଖି ଅବାକ୍[୩]। ଏମିତି ଅପରଛନ୍ନ ମୂର୍ତ୍ତି, ଯମଦୂତପରି ଚେହେରା ଦେଖି ପିଲାଏ ବି ଡରିଗଲେ। ତାଙ୍କ ଡର ଦେଖି ସେ ତାଙ୍କ ପଛେ ପଛେ ଗୋଡ଼େଇଲା। ବଡ଼ ପାଟିରେ ହସିଲା, ତା' ମୁହଁରୁ ନାଳ ବୋହି ପଡୁଥାଏ। ଏଠି କଚାଡ଼ି ହ, ସେଠି ବାଡ଼େଇ ହ, ଯା ଗୋଡ଼ ଧ', ତା' ଗୋଡ଼ ଧ' ଲୋକ ଥାଟପଟାଳି ଜମିଗଲେ। ସେ ବାହୁନି ନାଗିଚି, ଆଉ କାନ୍ଦୁଚି;

ଆରେ ମାଇଲେ ଲୋ, ହାଡ଼ ଭାଙ୍ଗିଲେ, ରକ୍ଷାକର, ରକ୍ଷାକର।
ପୋଡ଼ିଯାଉ କିନାଁ ବାହାଘର।
ଶାଶୂ ମୋ' ବାଘୁଣୀ, ଭରିଯା ନାଗୁଣୀ
ମଲାଣି ଶଶୁର ବିଦିଆଧର। ଆରେ ଗାଁ ବାଲା ରକ୍ଷାକର।

ତା' କାନ୍ଦ, ତା' ଢ଼ଙ୍ଗରେ ଲୋକେ କିଛି ବେଳ ଛିଡ଼ା ହେଇଗଲେ। ଗେଲ୍ହୀ ତାକୁ ତୁଚ୍ଛା ବାୟାଟାକୁ, ଝାଡୁରେ ପିଟିଛି, ଏକଥା କେହି ସହ୍ୟ କରିପାରିଲେ ନାହିଁ। ଲୋକା ଭାରି ରାଗିଯାଇ କହିଲା, ''ତୋର ମାଉସୀ ଏ କି ଗୁଣ! ଲେକଟା ତୋ' ଝିଅକୁ ବାହାହବ କହିଲା ମାନେ କଣ ବା' ହୋଇଯାଉଚି ନାଁ, ସତେ ଆମେ ଦେଇ ଦଉଚେ।''

ଲୋକା କଥାରେ ବାୟା ଭାରି ଖୁସି। ହାତ ହଲେଇ ମୁଣ୍ଡ ହଲେଇ କହିଲା ''ଯାଇଁଲ! ମୋ' ନାଁଟି ଫକିରା, ମୋ' ବାପ ନାଁଟି ଭିକାରିଆ, ତା' ବାପ ନାଁଟି ଭରତିଆ, ତା' ବାପ ନାଁଆଟି ଆର୍ତ୍ତିଆ, ତା' ବାପ ନାଁଟି ସାରତିଆ। ଆମେ ଜାତିରେ କରଣ ଖଣ୍ଡେଇତ, କରଣ ଖୁରାରେ[୪] ଦଣ୍ଡବତ। କିଆ ଲୋକି ମହାରଣା, ବାବୁ ମୋତେ ବଟେଇଚିନି ବା' ହବାକୁ, ଆମ ଖବର ବୁଝୁନା କିଆଁ? ଆଲୋ ମାଉସୀ, ତୋ' ଗୋଡ଼ ଧରୁସି, କନିଆ ଆଣି ଦେ,

(୧) କଚାଡ଼ିହୋଇ ମାଟି ଉପରେ ପଡ଼ିବା, (୨) ସ୍ୱାମୀ, (୩) ଆଶ୍ଚର୍ଯ୍ୟ, (୪) ପାଦ

ବାହା ସା' ହୁଏଁ, ଘରକୁ ଯାଏଁ, ବେଳ ଯେ ମାଡ଼ି ଆଉଚି। ଆଲୋ ମାଉସୀ, ମାଈଲେ ପଛେ ମାର, ଦେ' ଦିଟା ଝଡୁ ପାହାର, ମୁଁ ସହିବି, ପାଟି ବୁଜିବି, ଆଖି ବୁଜିବି, କନିଆଟି ଆଣି ଦାଣ୍ଡରେ ଥୁଅ, ଭଲେ ଭଲେ ମେତେ ବିଦାକି ଦିଅ।'' ତା' ଗୀତ, ତା' ସ୍ୱରରେ ସଭିଏଁ ଖୁବ ହସିଲେ। ସାଇ ମାଇପେ ରତନୀକି ଥଟା କରି କହିଲେ, ଆଲୋ ରତନି, ତୋ' ବର ଲୋ।'' ରତନୀଟି ରାଗରେ ଗୋଟା ଗୋଟା! ଏଣେ ବର ତାକୁ ଦେଖି ତାଳି ମାରି ନାଚି ନାଚି କହିଲା– ''ଏଇ ମୋ' କନିଆ, ଏଇ ମୋ' କନିଆ! ଆଲୋ ଚେପିଟୀନାକି, ଛାମୁ ଦାନ୍ତୁରି, ନାକକାନ୍ଧୁରି, ମାଧିଆ ମାଁ, ମୁଁ ତୋ' ବର ଲୋ, ବର ଲୋ! ମେତେ ଅନା ଲୋ।'' ''ଆରେ ନିଅସିଆଂ, ତୋ' ବରପଣିଆ ଚୁଲ୍ଲିରେ ଯାଉକିନା'' ରତନୀ ତାକୁ ଖଣ୍ଡିଆ ଝାଡୁମୁଠା ଧରି ମାରି ଗୋଡ଼େଇଲା! ''ଆଲୋ ମେତେଂ ମାର ନାଁ ଲୋ! ମୁଁ ତୋ' ବରଲୋ।'' ବର ପାଟି କରୁଥାଏ।

ସେତେବେଳକୁ ସେଠି ଆଉ ଦି'ଜଣ ହାଜିର[୨]! ବାବୁର ଭଣ୍ଡାରୀ ଟୋକା ଦାମା ବାରିକ, ତା' ସାଙ୍ଗରେ ଗୋଟାଏ ବୁଢ଼ା ନାହାକ। ବାଡ଼ି ଖଣ୍ଡେ ଧରିଚି, ଠୁକେଇ ଠୁକେଇ ଚାଲୁଛି। ତା' ମୁଣ୍ଡର ବାଳ ଝୋଟପରି। ତା' କାଖରେ ବିଡ଼ାଏ ତାଳପତ୍ର, ହାତରେ ଗୋଟାଏ ପୁରୁଣା ଫଟ, ଉଇକଟା ପାଞ୍ଜି, ତା' ମଲାଟ କୁଆଡ଼େ ଗଲାଣି! ବୁଢ଼ା ଥରେ ଥରେ କାଶୁଚି, ଥରେ ଥରେ ଛିଙ୍କୁଚି, ଥରେ ଥରେ ନାସ[୩] ଟିପେ ଟିପେ ସୁଙ୍ଘୁଚି। ଆଉ ଅଉଂ ବଉଂ ବ୍ୟାଂ ଡ୍ୟାଂ କରି ଶୋଳକ ବୋଲୁଛି। ତା' ଦେହରେ ଗୋଟିଏ ସହସ୍ର ଗଣ୍ଠିଆ ଛିଣ୍ଡା କବଚା, ଏଡ଼େ ମସିଆ ଯେ, କିଜାଣି ବରଷେ ହେଲା ଧୋବାଘର ମୁହଁ ଦେଖି ନାହିଁ; କାନ୍ଧରେ ତେଲ ଚିକିଟା ଚିରା ଗାମୁଛା; ତାର ବି ସେଇ ଦଶା; ବୁଢ଼ା ଏତେ ପାନ ଖାଇଚି। ସେ ଓଠ, ଏ ମୁଣ୍ଡ ସେ ମୁଣ୍ଡ ପାଚି, କଳା ପଡ଼ି, ଥୋଡ଼ିଯାକେ ନାଲି ବୋହି ପଡ଼ିଛି।

ଦାମା ବାରିକ, ଭଣରୀ ଟୋକା ବଗୁଲିଆ, ସେ ବୁଢ଼ାକୁ ବକୁଚି, ଗାଳି ଦଉଚି, କହୁଚି, ଚଞ୍ଚଳ ଚାଲ ହେ ଅଛା ଉଛୁର ହେଲାଣି, ବର ଗଲାଣି ଭାରି ଆଗ।

ଦାମା ବାରିକ ସ୍ୱର ଶୁଣି, ଲୋକା ପଚାରିଲା– ତୁ କୁଆଡ଼େ; ଦାମା ଅଣ୍ଟା ଖୋସଣୀରୁ ଖଣ୍ଡେ ମସିଆ କାଗଜ ବାହାର କରି, କହିଲା, ଏଇ ଭାଷା ଜମିଦାର ବାବୁ ଦେଇଚିନି, ଭିକାରିଆ ପୁଅ ଫକିରାକୁ ପଠେଇଚିନି, ତମ ଅତନୀ ନାନୀକି ବା' ହବ। ଏଇ ନାହାକ, ଉଆ ବାହ୍ମଣହରିକା, ପାଲିଙ୍କିହରିକା ପଛରେ ଆଉଚି, ସଞ୍ଜଠେଇଁକି ଆସି ପହଞ୍ଚିବେ, ଆଗ ଖଡ଼ି ପକେଇ ଛାତିକ ସୁଙ୍ଗ[୪]!

ଲୋକା ତ କାବା! ମାଗିଖିଆ ବୁଲା ଫକିରଟାକୁ ବାବୁ ବରକରି ପଠେଇଛନ୍ତି। ଭାଷା ବି ପଢ଼ିଲେ। ହାକିମତ! ତାଙ୍କୁ ସୂରଯ ଚନ୍ଦର ଡରିବେ। ମଣିଷ କଥା କଣ! ଗେଲ୍ହା ଏ

(୧) ବଂଶବୁଢ଼ା, (୨) ଉପସ୍ଥିତ, ପହଂଚିବା, (୩) ଧୂଆଁପତ୍ର, (୪) ସୁଝିବା, ଛାତକ ଦେଖି ଶୁଭାଶୁଭ ସ୍ଥିରକରିବା

କଥା ଶୁଣି ଭାରି ଖପା[1] ! ସେ ପାଟି କରି ଜମିଦାରବାବୁଙ୍କୁ ଖୁବ ଶୋଧିଲା। ଲୋକା ଖାଲି ତା' ଗୋଡ଼ ଧରୁଥାଏ, ମାଉସି, ତୁନି ହ' ! ମୋ' ଚାକିରୀଟା ଛଡ଼ା ନାଁ। ଏ ଦାମା ସବୁ ଯାଇ ମୁନିବ କାନରେ କହିବ। ସଂସାର କରିଥିଲେ ଛାତିରେ ପଥର ପଡ଼ଲେ ସହି। କଥାରେ କହନ୍ତି– ଯେତେ ଭାଇ ସେତେ ଘର, ଯେତେ କନିଆ ସେତେ ବର। ବରଟା ଏବେ କ'ଣ ଅସୁନ୍ଦର ହେଇଚି କି ଖଣ୍ଡିଆ ନାଁ, କଣା, କୁଜା। ଖାଲି ବର୍ଣ୍ଣଟା ମସିଆ। ଆଉ ସଂସାରରେ ମର୍ଦ୍ଦପୁଅର ରଙ୍ଗ କିଏ ବାଛୁଥାଏ। ବାବୁ ଜମି ୧୦ ମାଣ ଦେବେ, ଘର କରିଦେବେ। ତୋ' ନାଗି ମୁଁ ଛାତିପାଟକରୁ ଅନ୍ତର ହେଇଚି। ସବୁ କଥା ଜାଣୁ; ପୁଣି ଏଡ଼େ ଅବୁଝ।

ଲୋକା ରତନୀ ମାଁକୁ ବୁଝଉଛି। ଏଣେ ଦୁଆରେ ତାଙ୍କର ତାମସା ଲାଗିଚି। ଯାତ୍ରା ଦେଖିବାକୁ ଯେମିତି ଲୋକେ ମାଡ଼ି ଆସନ୍ତି, ସେମିତି ଲୋକ ଜମିଗଲେଣି। ନ ଜାଣିବା ଲୋକେ ନାହାକକୁ ପଚାରୁଛନ୍ତି, "ହଇକିଏ ମଉସା, ଏ ବାୟାଟା କିଏ !" ମଉସା ସେଥିରେ ନାକକୁଞ୍ଚି, କପାଳ କୁଞ୍ଚି ଥରେ ଛିଙ୍କି କହିଲେ, "ଭଲ ରାଇଜକୁ ଅଇଲି, ଏ ତମ ଘର କୁଆଁଇ ଚିହ୍ନିବ, ଆରେ ମୋଇଲା କଣ ନାଁ– ସେଠୁ ସ୍ୱର ବାହାରିଲା–

ପଦିଁଆ ନାତୁଁଣୀ ବିଦିଁଆ ଝିଅଁ ଖେରଣୀ ନଁ ତୁଣ୍ଡା
ରଁତନୀ ବରଁ, ଧୋଁଇ ଧାଁଇ କିଁରି ଘଁରକୁ ନିଅଁ
ସିଧାଁ ଦେଇଁ ମୌଁତେ ବିଦାଁୟ କରଃ।–

ଆଁ କଣ ବୋଇଲା– ଆଁ ରେ ଆଣ, ଆଣ ନଁଡ଼ିଆ. ଆଣ ଆଣ ସଗୁଁ ଚୁଡ଼ାଁ ଦୌଁପାଗିଁ ଉଖୁଁଡ଼ା– ଏଁ ଆଣ ଆଣ ଧୋଁତୀ ଚାଁଦର। ଆଜି ମୂଳ ନକ୍ଷେତ୍ରେ ବାହାଘର। ବର ନାଁଚି ଫକିଁରା। ଯା କହୁ କହୁ ସେହିକ୍ଷଣି ଲୋକା ପିଣ୍ଡାରେ ଖଡ଼ି ପଇଲା। ନାହାକ ଆଙ୍ଗୁଳି ଗଣି କହିଲା – "ବୃଶ୍ଚିକ କଁକଡ଼ା ମୀନଷ୍ୟ ବିପ୍ରା" – ଆରେ ଫକିରା– ନାଁରୁ ହଉଛି, କକଁଡ଼ାରାଶି, ପୂରୁଁବା ଆଷଡ଼ା ନଇଖତ୍ର–କନିଆଁ ନାଁଟା, ରତନାଁ ଦେଇଁ – ହଉଛି, ମୂର୍ଚ୍ଛିକଁ, କରକଟ ମୀନସ୍ୟ ବିପ୍ରା – ଏଁ ହଁଉଚି, ମଘାଁ ସିଁହ। ରାଶିଁକିଁ ସୁଝୁଁଚି, ଏ ବୋଲେ ବିନାଁ – "ଆପଣାଁ ଉଦଁର ପୂରିଁଲେ ତୋଷ; କୋରଧୀ ମାଁସ ଲୌଁଭୀ ଅଟେ ବିଶେଁଷ, ବନ୍ଧୁଁ ମେକେଁ ତାରଁ ନ ଥାଇଁ ମନ, କଟା ଚଇଁଧୁ, ଇଚ୍ଛେଁ ବନଗମଁନ ! ଏଁ ତକ ପୁଣ ସିଂହ ରଶିଁର। କେତେ ଲୋକ ନାହାକ ଆଉଚି ଦେଖି ଆବୁଝି ପଇଲେ[2], କିଏ ହାତ ଦେଖେଇଲା, କିଏ ରାଶି ଗଣେଇଲା। ନାହାକ ସଭିଙ୍କି ପଚାରୁ ଥାଏ, ଗୋଁଟାଏ ଫଳଁ ନାଁ କହିଲଁ? ଉରରରେ ଜଣେ କହିଲା ଡାଳିମ୍ବ। ନାହାକ ତାକୁ ଗଣି ଗାର କାଟି ବଡ଼ ବଡ଼ କରି ସଂସ୍କୃତ ପଢ଼ି ଉରର କଲା।

ସେଣେ ବର କ'ଣ କରିଛି ନାଁ, ସୁଆଙ୍ଗ କରୁଚି। ପରସ୍ତେ[3] ନାଚି ଯାଉଚି, ପରସ୍ତେ ବୁଲି ପଡୁଚି, ହାତରେ ତାଳି ମାରୁଚି, ଆଉ ଗାଉଚି –

(୧) ରାଗିଯିବା, (୨) ଉପରେ ପଡ଼ିଲେ, (୩) ଥରେ

ବାଇଧରର ଅପାର ଗୁଣ –
ପଖାଳ ଭାତରେ ନ ଖାଏ ନୁଣ –
ପଦିଆ ଉଦିଆ ଏକମାଁଆର
ବାଇଧର ଭାଇ ବିଦିଆଧର
ବାଇଧରର ଅପାର ଗୁଣ ।–
ଭାଇ ଭାଉଜଙ୍କୁ ଘରୁ କାଢ଼ିଲା
ପଟା ପାଉଟିକି ଚିରି ପୋଡ଼ିଲା
ବାଇଧରର ଅପାର ଗୁଣ –
ତପତି ସାଥିକି ନାହିଁ ତୁଲଣା –

ବାଇଧର ପୁଅ ବଟୁ ଶୁଣୁଥିଲା। ତା' ବାପ ନାଁରେ ଗୀତ ଶୁଣି ସେ ଲୋକଟାକୁ ଧାଇଁ ଆସି ଚାପୁଡ଼ାଏ କଷିଦେଲା। ଲୋକେ ସବୁ ମିଶିଗଲେ। କିଏ ବାୟାପକ୍ଷ, କିଏ ବଟୁପକ୍ଷ। ସେଠି ଲାଗିଲା କଳିକନ୍ଦଳ, ଗୋଳମାଳ। ବାୟାକୁ ନେଇ ସେମାନେ ଗଲେ ବାଇଧର କତିକି।

ସେତେବେଳକୁ ଦିନ ଦି'ପହର। ବାଇଧର ଘରେ ବିଶ୍ରାମ କରୁଥାଏ। ସେ ବି ଆସି ଦୁଆରେ ପଚାରିଲା, କଣ କଥା, ବଟୁ ତାକୁ ସବୁ କହିଲା। ବାବୁ ଆଇଲେ, ଦେଖ ଝରକା ବାଟେ ଚାହିଁଲେ। ବାୟା ଗୀତ ଗାଉଛି।

ବାଇଧରର ଅପାର ଗୁଣ, ବଡ଼ କୃପଣ
ପଖାଳ ଭାତକୁ ନ ଖାଏ ନୁଣ।–

ବାଇଧରର ଭାରି ରାଗହେଲା। ସେ ତାକୁ ଧରିଆଣିବାକୁ ହୁକୁମ ଦେଲା। ବାୟା ଆସି ନମ୍ରଦଣ୍ଡା ତାଙ୍କ ଗୋଡ଼ ତଳେ ପଡ଼ିଗଲା। ବାଇଧର ପଚାରିଲା, ''ତୁ କିଏ ?'' ସେ ବଡ଼ ପାଟିରେ ହସି କହିଲା, ମୋତେ ଚିହ୍ନ ନାଁ– ମୁଁ ପରା ସରଦେଇପୁରୁ ଗାଁ ଫକିରା ଓଲୁ! ମୋ' ନାଁଟି ଫକିରା, ମୋ' ବାପ ନାଁଟି ଭିକାରିଆ, ତାଡ଼ ବାପ ନାଁଟି ଭରତିଆ, ତା ବାପ ନାଁଟି ଆରତିଆ, ତା' ବାପ ନାଁଟି ସାରତିଆ। ବାଇଧର ଦେଖିଲା – ତୁଚ୍ଛା ବାୟା। ରାଗିକିନି ଘର ଭିତରକୁ ଗଲେ। ଦେଖ ଝରକା ବାଟେ ଅନେଇଛନ୍ତି। ବାୟା ତାଙ୍କୁ ଦେଖି ଆଉ ଗୋଟିଏ ସ୍ୱର ବାହାର କଲା –

''ଆଲୋ ଫଟା ସୁଦୁରୀ ଲୋ, ଫଟା, ସୁଦୁରୀ; ଫଟା ସୁଦରୀ, ଅପଣାମାନେ ମୁଁ ଆପେ ସୁନ୍ଦରୀ ଲୋ, କଳି ଦୁନ୍ଦରୀ ଲୋ, ବୁଢ଼ୀ ବାନ୍ଦରୀ[୨]। ତୋଳିକ ଚାଉଳ ଓଳିଏ ଖାଉ ଶାଶୂ ପଚାରିଲେ ମୁହଁ ଶୁଖାଉ, ଗୁରସ୍ତ ଆଗରେ ଖଚ ମିଛ କହୁ, ମନ ଭଙ୍ଗାଉ, ଆଲୋ ଫଟା ସୁଦୁରୀ ଲୋ, କୋଦିଂ[୧] ଗୋଦରୀ– ଫଟା ସୁଦୁରୀ।–

(୧) ଗୋଡ଼ର ପାଦ ଓ ଗଣ୍ଠି ଫୁଲି ଯାଇଥିବା, (୨) ମାଂକଡ଼ୀ।

# ବ୍ରହ୍ମକୃପାହି କେବଳମ୍

## ''ପାଞ୍ଚ କଥା''

ରିତନୀର ବାହାଘର ହବ। କନିଆ ତ ରତନୀ, ବର ତ ଫକୀରା ବାୟା। ତାଙ୍କ ବାହାଘରେ ପୁଣି କି ରୋଷଣୀ କି ଝାମଝମକ। ଗହଣା ଭିତରେ ପିତଳ ଖଡୁ ମୁଠାଏ। ଲୁଗା ଭିତରେ ରଙ୍ଗ ସୁରୁବଲୀ ଶାଢ଼ି, କାନି ଝଉତୁଛ କିଛିନାହିଁ। ନାକକୁ କାନକୁ କିଛି ନାହିଁ, ବେକକୁ ଗୋଡ଼କୁ କିଛି ନାହିଁ। ଲୋକନାଥ ତ ଏକଘରକିଆ, ପୁଣି ସେ ଜାତିରେ ଦରଜି, ଏମାନେ ଚଷା। କୁଟୁମ୍ବ ସଙ୍ଖୋଳା ନାହିଁ, କି ଖାନାଭୋଜି ନାହିଁ।

ରାତି ଦଶଘଡ଼ି ହେଲା। ବର ଆଇଲା। କେହି ଜାଣିଲେ ନାହିଁ ଯେ ବର ଆଇଲା ବୋଲି। ସୋର ଶବଦ କିଛି ନାହିଁ। ଗୋଟିଏ ଦଦରା ପଲିଙ୍କିରେ ଆସିଥାଏ। ବର, ଆଉ ଆଇଥାନ୍ତି ପଞ୍ଚାଏ ଗଉଡ଼, ଜଣେ ତୁରୁଥୁରିଆ ବ୍ରାହ୍ମଣ, ସେଇ ପୁରୋହିତ। କନ୍ୟାକୁ ଘୋରି ପୋରି ଆଣି ପିଢ଼ାରେ ବସେଇଲେ। ଏଣେ ବର ବେଦିରେ ବସିଲା। ହାତଗଣ୍ଠି ପଇଲା। ସାଙ୍ଗେ ସାଙ୍ଗେ ପାଲିଙ୍କିରେ ବସି ବର କନିଆ ବିଦା ହେଲେ। ବିଧି ନାହିଁ କି ବରତ ନାହିଁ; ସବୁ ଅଦଭୂତ ଢ଼ଙ୍ଗର।

ପାଲିଙ୍କିଟା ବଡ଼ ଦଦରା। ସେଥିରେ ପୁଣି ଦିଜଣ ବସିଲେଣି। ଗଉଡ଼ କାନ୍ଧେଇ ହୁମୁରା ଭାଇରେ ୨ କହି ଦଉଡୁଛନ୍ତି।

ସେତେବେଳକୁ ରାତି ଗୋଟାଏ। ହଟାତ୍କିନା ପାଲିଙ୍କିର ପଟାଟା ଛାଡ଼ି ପଇଲା[୧]। ବଡ଼ ହଟହେଟା[୨] କଥା; ଗଉଡ଼ ପାଲିଙ୍କି ତଳେ ଥୋଇଦେଲେ। ଏବେ ଯିବେ କେମିତି; ଆସି ପାଏ[୩] ବାଟରେ ହେଲେଣି। ଚାରିଆଡ଼େ ଘୋର ଜଙ୍ଗଲ। ଗାଁ ଗଣ୍ଡା କିଛି ଦୃଶୁ ନାହିଁ। ନିଶା ସାଇଁ ୨ ଗରଜୁଚି। ବରଟା ଡେଇଁ ପଡ଼ିଲା, କନିଆକୁ ଟାଣି ଆଣି ବାହାରେ ଛିଡ଼ା କରି ଦେଲା। ରତନୀ ଏତେବେଳଯାଏ ଘୋରିପୋରି ହେଇ ବସିଥିଲା। ଏ ବିପଦରେ ପଡ଼ି ତା' ଲାଜ କୁଆଡ଼େ ଗଲା। ସେ ମୁହଁରୁ ଓଢ଼ଣା କାଢ଼ି କହିଲା ''ମଲା ମୋର! ଏଇ ଦଦରା[୪] ପାଲିଙ୍କିଟା ତେତେ ମିଳିଥିଲା। ଏବେ କ'ଣ କରିବୁ କର୍। ମୁଁ ଯାଉଚି, ତୁ ଥା'। ଫକୀରା ତ ବାୟା। କନିଆ କଥା ଶୁଣି କହିଲା, କିଲୋ କୁଆଡ଼େ ଯିବୁ, ମୁଁ ତେତେ ଏଇ ଛିଣ୍ଡିକା ବା ହେଲି, ହାତଗଣ୍ଠି ଗଇଲା, ତୁ ନୂଆ ଭୂଆଶୁଣିଟା। ତୁ ମୋ' ହାତ ମୁଠାରୁ ପଳେଇବୁ। ଦେଖରେ ମଉସା! ଆରେ କଣ୍ଡୁରି ମଉସା ଦେଖିଲୁ ଏ କନିଆର ଢଙ୍ଗଢ଼ାଙ୍ଗ[୫]! ଗଉଡ଼ କଣ୍ଡୁରିଆ କହିଲା, ''ହଁରେ ପୁଅ ଏବକାଳ ମାଇପଙ୍କୁ ପାରିବ କିଏ! ଆଛା ଦି'ପାହାର ଥୋ! ମାଡ଼କୁ ମହାଦେବ ଡରେ! କିବା ଛାର ଟୋକୀଟା!'' ରତନୀ ତା' କଥା ଶୁଣି କହିଲା– କୋଉଠି ଥିଲୁରେ

---

(୧) ଖସି ପଡ଼ିଲା, (୨) ଅପମାନ ଓ ହଇରାଣ, (୩) ଚାରିଭାଗ, (୪) ପୋରିହା, ଦରଭଙ୍ଗା, (୫) ଆଚରଣ, ବ୍ୟବହାର।

ମୁଣ୍ଡପୋଡ଼ା, ନିଆଁନଗାଟା ! ମେତେ କହୁଚି ଫେଣେ[୧] ମାର୍, ମୁଁ ତୋ' ଖପୁରୀ ଉଡ଼େଇ ଦେବି ନାହିଁ । ଖଡ୍ଗମୁଷା ଦେଖିଚୁ !'' କଣ୍ଢୁରିଆ କହିଲା, ''ଆମେ କିଆଁ କହିବୁ ଲୋ ! ତମ ଭଲକୁ କହୁଥାଇ ! ରହ ବା ଯା', ତୋତେ ଯେ ବା ହେଉଛି ଏବେ ଆମ ମୂଲ ଦେଇପକାଅ । ଗିରସ୍ତ ଭାରିଯା ଯେଉଠି ଇଚ୍ଛା ସେଠିକି ଯାଅ । ଦିଅ ଆମକୁ ଯା ଚୁକୁଡି[୨] କରିଥିଲ ।'' ଆଉ ଗଉଡ଼ଟା କହିଲା, ''ତମ ପାଲିକି ଭାଙ୍ଗିଲା, ଆମର ସେଥେରେ ଯାଏକେତେ, ଆସେ କେତେ ? ଆମକୁ ଦି'ଟଙ୍କା ଢବାବ କରିଚ, ଦି'ଟଙ୍କା ଦିଅ । ଆମେ ଭଲରେ ଘରକୁ ଯାଉ । ମଣିଷ କି ହଟହଟାରେ ପଇଲା ରେ । ମୁଁ ଏତେ ବାହାଘରେ ବରଯାତ୍ରୀରେ ଯାଇଚି, ହେଲେ ଏମିତି ଦଦରା ପାଲିକି କେବେ ମୋ' ବୋପାକାଳେ ଦେଖିନାହିଁ । ଆଉ ଜଣେ କହିଲା, ହଁ ରେ ମଧୁଭାଇ ଯାହା କହିଲୁଟି ସତ, ଆମ ମୂଲ ଘିନି ଆମେ ଯିବା ।

ଫକିରା କହିଲା– ବ' ବେଶ୍ କଥାଟି । ତୋ' କଥାଟି ତେତେ ସୁନ୍ଦର, ମୋ ମଥାଟା ମେତେ ସୁନ୍ଦର । ଆରେ ଆମେ ଘରେ ପହଞ୍ଚି ମୂଲ ଦବୁଁ । ଟଙ୍କା କଣ ଗଛରେ ଫଳୁଛି ତମକୁ ଦମୁଁ । ଖଣ୍ଡେ ବାଟ ଯାଇଁ ନାଁ, ପାଲିକି ଭାଙ୍ଗିଲା । ସଉରିଆ କହିଲା– ଆମେ ପାଲିକି ଭାଙ୍ଗିଲୁ । ଗିରସ୍ତ ଭାରିଯା ଦି'ଟାଯାକ ଗୋଟାଏ ପାଲିକିରେ ପସିଲ, ବେଶି ଖରଚ ହବ ବୋଲି ଦଦରା ପାଲିକିଟା କୋଉଠୁ ମାଗି ଆଣିଥିଲା ! ଏବେ ଆମ ଦୋଷ ହେଲା । ତେମେ ଚଢ଼ିଲ, ଆମେ କାନ୍ଧେଇଲୁ ! ''ମୋଟ ହେଇଚ ଯେ ମଲେ ବିଲୁଆ ଛମାସରେ ଖାଇବ ।'' ଏଥର ରତନୀ କହିଲା– ମଲା, କି କଥା କହୁଚୁରେ, ଆମ ଗୋଡ଼ରେ କ'ଣ ପଟି ବନ୍ଧା ହେଇଚି, ନାଁ ବେଡ଼ି ପଡ଼ିଛି । ମୁଁ ତ ଏଇ ରାତିକା ରାତି ଦଶ କୋଶ ଚାଲି ଯିବି । ଆମକୁ ମାରିବୁ କିଆଁ କହୁଚୁ । ତୁ ମରୁନୁଁ । ଫକିରା କହିଲା, ''ହଉ ତେବେ ଚାଲ୍, ଆଉ ବସିବା କିଆଁ । ରତନୀ କହିଲା– ''ଏମାନେ ସେ ମୂଲ ମାଗୁଛନ୍ତି ?''

ଫକିରା କହିଲା, ହଉ ହଉ ତମକୁ ଦିଆଯିବ । ସେହି ଭଙ୍ଗା ପାଲିକିଟା ବହି ନିଅ । ଗଉଡ଼ତକ ପାଲିଙ୍ଗି ବହି ଆଗେ ଆଗେ ଗଲେ । ବର କନିଆ ଗଲେ ପଛେ ପଛେ, ବାଟ ପାଏ ଖଣ୍ଡେ ଯାଇଛନ୍ତି, ''ଫକିରା କହିଲା, ମେତେ ବଡ଼ ମଇଦାନି[୩] ମାଡ଼ିଲାଣି । ତୁ ଏଇଠି ଠିଆ ହ'କି, ମୁଁ ଆଉଚି ।'' ଆଉଚି ବୋଲି ଅଧ ଘଣ୍ଟା । ରତନୀ ରାଗରେ ଜଳି ପୋଡ଼ି ଅନ୍ଧାରରେ ଠିଆ ହେଇଥାଏ । ଆସିଲା ମାତ୍ରେ କହିଲା, ''ଏତେବେଳଯାଏ କୁଆଡ଼େ ମରିବାକୁ ଗଲୁ ? ''ଫକିରା କହିଲା, ''ହଇଲୋ ଅରିଖିତିଆଣି, ଜାଣୁନୁଁ ପାଣି ଖୋଜୁଥିଲି ।'' ରତନୀ କହିଲା, ''ମଲା ତୋ'ପେଇଁ ବଣରେ କିଏ କୂଅ ଖୋଳିଚି କି ? ନିଆଁ ନଗାଟାକୁ ଏତିକି ବେଳେ ମଇଦାନ ମାଡ଼ିଲା । ନିଦରେ ମଣିଷର ଦିହ କଣ ହେଲାଣି । ଏମେତେ ରାତି ଯାକ ଜଗେଇବ ଦେଖୁଚି'' । ''ଫକିରା କହିଲା, ଚିଡ଼ିଲୁ କିଲୋ ! ହଉ ନିଦ ମାଡୁଛି ତ ଏଇନେ

---

(୧) ପୁଣି, ଆହୁରି, (୨) ମୁଲଚାଲ କରି କଥା ପକ୍‌କା କରିବା, (୩) ଝାଡ଼ା

କାନି ପାରି ଦେଲି ଶୋ'। ଘଣ୍ଟାକ ପରେ ଯିବା, ଆମ ଗାଁ ତ ହେଇ ଦୁଉଛି। ରତନୀ କହିଲା– ''ହଇରେ ହୁଣ୍ଡା! ବଣରେ ବାଘ ଭାଲୁ, ଏଠି କୋଉ ନୋକଟା ଶୋଇବ।

ଫକିରା ବାଘ ଭାଲୁ ନାଁ ଶୁଣି ଅତର୍ଚ୍ଚ ହେଇ ଗୋଟାଏ ଆମ୍ବ ଗଛରେ ଚଢ଼ିଗଲା। ରତନୀ ଦେଖି କାବା! ଗଛ ଉପରୁ ଫକିରା ତାକୁ ଡାକୁଚି। ''ଆଇଲା କିଲୋ। ଦେଖ୍ ଦେଖ୍ ମୋତେ ଯେମିତି ନ ଖାଏଟି! ତୋ'ରାଣ୍ ମେତେ ଯେମିତି ନ ଖାଏଟି। ମୁଁ ମୋ' ମାଁର ଏକଇର ବାଳା ବିଁଶିକେଶନ।'' ''ରତନୀ ତାକୁ ଖୁବ୍ ଶୋଧି ଶୋଧି କହିଲା ''ଓଲା, ତତେ ଏକା ବାଘ ଭାଲୁ ଆଉଚି, ବଣରେ ରାତି ଅଧରେ ନାଟ କରୁଚି ମୁଣ୍ଡପୋଡ଼ାଟା।'' ''ହଇଲୋ ଗାଳି ଦଉଚ'' କହି ଫକିରା ତଳକୁ ଆସି ରତନୀ ପିଠି ଆଉଁସିଦେଇ କହିଲା, ଚାଲ୍ ଯିବା। ପୁଣି ଖଣ୍ଡେଦୂର ଚାଲିଲେ। ଫକିରା ଗୋଡ଼ରେ ଗୋଟାଏ କଣ୍ଟା ପଶିଲା। ଏବେ ଉପାୟ କ'ଣ। ଛୋଟେଇ ଛୋଟେଇ ବସି ପଡ଼ଇଲା। ''ଇଲୋ ମୋ' ଗୋଡ଼ ଗଲା ଲୋ, କହି ମାଟି ଉପରେ ଶୋଇ ପଡ଼ଇଲା।'' ରତନୀକି କହିଲା– ମତେ ଆଉଁସ୍। ରତନୀ କହିଲା, ''ତୋ ବେଲିଂ, ତୋ ସୁଆଙ୍ଗ ରଖି ଦେଇଥା। ମୁଁ ତତେ ଆଉଁସି ପାରିବିନାହିଁ। ବାଟଯାକ ନାଟ କରୁଚି, ''କହି ଖଡ଼ୁମୁଷାରେ ପାହାରେ ପିଟିଲା। ''ଇଲୋ ମାରି ପକାଇଲା ଲୋ, ଇଲୋ ମାରି ପକାଇଲା ଲୋ, କହି ବାୟାଟା ତ ଭୂତପରି ଠିଆ ହେଲା। ପୁଣି ଚାଲିଲେ। ବାୟା ଛୋଟଉ ଥାଏ, ବସୁଥାଏ, ଉଠୁଥାଏ, ଏଇମିତି ହଉହଉ ସକାଳ ପାଇଲା, ଗାଁ ଗଣ୍ଡା ଦୁଶିଲା। ବାୟା ରତନୀକି କହିଲା ''ଦେଖ୍ ଗାଁ ଦୁଶିଲାଣି, ଶଶୁର, ମଳାଶୁର ବିଲରେ ଥିବେ, ମୁଣ୍ଡରେ ଓଢ଼ଣା ଟାଣ। ନଇଲେ କହିବେ ବଡ଼ ଅଲାଜୁକ ଘର ଝୁଅ! ତାକୁ ନିଆଜ[2] ସରମ ଅଛି, ନାଁ ତାର ତଙ୍ଗତପ[3] ଅଛି। ଆଲୋ ମାଧିଆ ମା ମୁଣ୍ଡରେ ଓଢ଼ଣା ଟାଣ।'' ରତନୀ ଏ କଥାରେ ଭାରି ଚିଡ଼ି ଉଠିଲା। ରାତିଯାକ ତ ଯୋଉ ନାଟ ସୁଆଙ୍ଗ ହେଲାଣି। ସେ ବି କହିଲା ''ମଲା ତୋ ନିଆନଗା ଶଶୁର ମଳାଶୁରକୁ ମୁଁ କିଆଁ ଡରିବି।'' ଫକିରା ପାଟିକରି କହିଲା, ''ହଁ, ଅଲ୍‌ବତ୍ ଡରିବୁ, ମୋ' ଶଶୁର ମଳାଶୁରକୁ ଡରିବୁଁନୁ!'' ବାଟରେ ମାଇକିନାଁ ପଞ୍ଚାଏ ଗାଧୋଇ ଯାଉଥିଲେ, ଫକିରା ତାଙ୍କ କତିକି ଦଉଡ଼ିଗଲା। ଡାକି ଡାକି କହିଲା– ଆଲୋ ମାଉସି, ଆଲୋ ଅପା, ଶୁଣ ଲୋ, ମୋ' ବୋହୂଟା ନୂଆ ଭୁଆସୁଣୀଟା କହୁଛି ଶଶୁର ମଳାଶୁରଙ୍କୁ ଗୋଇଠା ମାରିବ, ତେମେ ନିଷାପ[4] କର। ମାଇପେ ତ କାବା! ଦଣ୍ଡେ ଫକିରାକୁ ଅନଉଥାନ୍ତି, ଦଣ୍ଡେ ରତନୀକି ଅନଉଥାନ୍ତି। ଶେଷକୁ ବୁଢ଼ୀଟିଏ କହିଲା ''ହଇରେ ପୁଅ, ଏ କିଏ?'' ଫକିରା କହିଲା, ''ତେମେ ଚିହ୍ନିବ? ଏ ପରା ମୋ ଶାଶୂ ଶଶୁର ଝିଅ! ଏ ପରା ମୋ' ବୋପାର ବୋହୂ, ଏ ପରା ମୋ' ଭାରିଯା ସାଆନ୍ତାଣୀ, ନଅତୁଣ୍ଡୀ।'' ବୁଢ଼ୀଟା ଖପା ହେଇ କହିଲା, ''ତୁ ବାୟାଟା କିରେ! ଯା' ଯା' ତୋ' ବାଟରେ ଯା।'' ''ସେମାନେ ଗଲେ ଗାଧୋଇ। ଯାଙ୍କ କାଣ୍ଡ ଦେଖି, ତାଙ୍କ ଭିତରୁ ଟୋକୀଗୁଡ଼ିକ ହସି ହସି ନୋତରା କୋତରା ହେଉଥାନ୍ତି।[5]

(୧) ଥଟା ପରିହାସ, (୨) ଲାଜ, (୩) ଆଦବକାଇଦା, (୪) ଭୁଲ ଠିକ୍ ବିଚାର, (୫) ଫାଟିପଡ଼ିବା, ଅତିଶୟ ବିହ୍ୱଳ ଭାବ

ରତନୀ ଚିଡ଼ିଭିଡ଼ି ହଉଥାଏ, ଫକିରା କିଆଁ ମାନିବ, ତାକୁ ନେଇ ସେ ଗାଁ ବଡ଼ ଦାଣ୍ଡର ଗୋଟାଏ କୋଠା କତିରେ[୧] ଆଣି ଛିଡ଼ାକଲା। କହିଲା ଏଇ ମୋ' ଘର। ରତନୀ ଦେଖିଲା– ସତକୁ ସତ ଭଙ୍ଗା ପାଲିକିଟା ଅଣି ଗଉଡ଼ମାନେ ସେଇଠି ଛିଡ଼ା ହେଇଚନ୍ତି। କୋଠାର ଏଇଟା ପଛପଟ। ଗୋଟାଏ ସାନ ଦୁଆର ଥାଏ। ବାୟା ତାକୁ ସେଇଠି ଠିଆ କରି ଦେଇ କହିଲା– ଈଶରା ମା ତତେ ଆସି ଘିନିଯିବ, ତୁ ଏଇଠି ଠିଆ ହୋଇଥା, ମୁଁ ବଜାରୁ ଆସେ। ଏଇକ୍ଷଣି ଆସିବି, ନେଇ ଯିବି, ଯା କହି ଚଲ୍। ଈଶରା ମା ଆସିବବୋଲି ରତନୀ ଠିଆ ହେଇଛି, ଈଶରା ମା ନା ଫିସରା ମା। କାହାରି ଦେଖା ଦରଶନ ନାହିଁ। ଫକିରା ବି ଫେରି ନାହିଁ। ତାକୁ ବଡ଼ ବିରକ୍ତ ଲାଗିଲା। ସେ ଗୋଟାଏ ଗଉଡ଼କୁ ପଚାରିଲା, ହଇ ହେ ମଉସା, ଏ ଘର କାହାର?''

ଗଉଡ଼ କହିଲା, ''ଏଇଟା ବାବୁ ସାଆନ୍ତଙ୍କ ଘର।'' ରତନୀ ବୁଝିପାରି ତୁନି ହେଲା। ତା' ଇଚ୍ଛାଥିଲା କାହାକୁ ଡାକନ୍ତା। ବାବୁ ସାଆନ୍ତ ନାଁ ଶୁଣି ଟିକେ ଭୟହେଲା। ଆଉ ବା ଡାକିବ କାହାକୁ? କେହି ତ କୁଆଡ଼େ ଦେଖାନାହିଁ। ଖାଲି ଗଉଡ଼ ଚାରିଟା, ଆଉ ସେ ଏକାଟିଆ। ଗଉଡ଼ ଭିତରୁ ଜଣେ ଦୟାକରି ପଚାରିଲା, ''ହଇଏ! ତୁମକୁ ତ କେହି ଡାକୁନାହାନ୍ତି, କେତେ ଆଉ ଖରାରେ ଠିଆହବ, ଏ ପାଲିଙ୍କିଟା ପଡ଼ିଚି, ବସିଥାଅ।'' ରତନୀ ଭାବିଲା, ଗୋଡ଼ ଭାଙ୍ଗି ଛିଡ଼ାହବା ଅପେକ୍ଷା କଣରେ ଆଉଜି ବସିଲେ ଭଲ। ରାତିଯାକ ଚେଇଁଚି, ବାଟ ଚାଲିଚି, ନିଦରେ ଆଖିପତା ବୁଜିହେଇ ଆସୁଚି। ଯାଇ ପାଲିଙ୍କି ଭିତରେ ଆଉଜି ବସିଗଲା। ଚାହୁଁ ଚାହୁଁ ନିଦ ମାଡ଼ିଆଇଲା।

ହଠାତ୍ ବଡ଼ ଗୋଳମାଳ ପାଟିରେ ତା' ନିଦ ଭାଙ୍ଗିଗଲା। ଛାତିଟା ଦାଉଁକିନି[୨] ହୋଇଗଲା। ରତନୀ ବାହାରକୁ ଅନେଇବ କଣ, ଦେଖିଲା, ଗୋଟାଏ ପାଞ୍ଚହାତ ଡେଙ୍ଗା ଧୋବଧାଉଳିଆ ମଣିଷ, ବେତ ଖଣ୍ଡେ ଧରି ଗଉଡ଼ଙ୍କୁ ପିଟିନାଗିଚି। ଗଉଡ଼ ବିକଳ ହେଇ ପାଟିକରି ତା' ଗୋଡ଼ତଳେ ପଡୁଛନ୍ତି, ହାତତଳେ ପଡୁଛନ୍ତି। ''ସାଆନ୍ତେ ଆଉ ମାରନାଁ, ଆଉ ପଇସା କଥା ମୁହଁରେ ଧରିବୁନୁଁ, ତମର ଶହେବରଷ ଗୋଲାମୀ ଖଟିବୁ। ତମ ଗୋଡ଼ ଧରୁଛୁ, ଦାନ୍ତରେ କୁଟା ହଉଚୁ।'' ସାଆନ୍ତେ କାହିଁକି ମାନିବେ। କହିଲେ, ''ପଇସା ମାଗୁଚି, ପଇସା ଧୋଇ ପାଣିଦେବି, ମୋ' ରାଇଜରେ ରହିଲ, ସୁଖରେ ଘରକଲ, ବୋଲବାଣିଟା କରିଦେଲ, ପୁଣି ପଇସା ମାଗୁଚି।'' ଯା କହି ତାଙ୍କୁ ଗୋଡ଼େଇ ଗୋଡ଼େଇ ପିଟିଲେ। ତାଙ୍କ ମାଡ଼ ଦେଖି ରତନୀର ହଲକ ଶୁଖିଗଲା। ସେ ପାଲିକି କଣରେ ଯାକଯୁକି ହୋଇ ବସିଲା। କିନ୍ତୁ କଣହବ। ସାଆନ୍ତ ତାକୁ ଦେଖିସାଇଲେଣି। ଘଡ଼ିଏ ବେଳ କଟମଟେଇ ଅନେଇ କହିଲେ, ''ତୁ କିଏ?'' ରତନୀ କହିଲା, ''ମୁ–ମୁଁ–ରତନୀ।'' ''ଏଠିକି କେମିତି ଆଇଲୁ?'' ରତନୀ କହିବ କ'ଣ? ଘଡ଼ିଏ ଭାବି କହିଲା– ସାଆନ୍ତଙ୍କ ବେହେରା ଫକିରି ସ୍ୱାଇଁ ମୋତେ ଆଣିଛି।'' ସାଆନ୍ତ କାବା ହେଇ କହିଲେ, ''ଏଠିତ ମୋ' ବେହେରା ଫକିରି ସ୍ୱାଇଁ କେହି ନାହିଁ।''

(୧) ହଠାତ୍ ଚମକିପଡ଼ିବା, (୨) ନେହୁରାହେବା

ରତନୀ ବୁଦ୍ଧିକରି କହିଲା, ''ଲୋକି ମହାରଣାଙ୍କୁ କହିଲେ ଜାଣିବେ, ସେ ମୋ' ଧରମଭାଇ।'' ସାଆନ୍ତେ ପୁଣି କହିଲେ, ''ଏଠି ତ ଲୋକି ମହାରଣା କେଇନାହିଁ।'' ଏଥର ରତନୀ ଆଉ କାହା ନାଁ କହିବ, କହିଲା, ଶଶରା ମା ଜାଣେ। ''ସାଆନ୍ତେ କହିଲେ, ''ଶଶରା ମା କିଏ ?'' ଆଉ ଏ କଥାକୁ ରତନୀ ଜବାବ ନ ଦେଇ ତୁନି ହେଲା। ଫକିରା ଉପରେ ତା' ହାଡ଼ କଡ଼କଡ଼ ଡାକୁଥାଏ। ଆସୁ, ଆସିଲେ ସିନା ତା' ମଜା ବୁଝିବ ? ସାଆନ୍ତେ ତା'ଠୁ କଥାର ଉତ୍ତର ନପାଇ ଘର ଭିତରକୁ ଗଲେ। ଦଣ୍ଡେ ଛାଡ଼ି ଆଇଲା ଗୋଟାଏ ମାଇପି ଲୋକ। ରତନୀ ଭାରି ଖୁସି ହେଇଗଲା। ଭାବିଲା ଶଶରା ମା ଆଇଛି, ଏଥର ତାକୁ ଘରକୁ ନବ। ମାଇପି ଲୋକଟି ସିଧା ପାଲିଙ୍କି କତିକି ଆଇଲା, କହିଲା, ''ଝିଅଲୋ, କାହୁଁ ଅଇଲୁ? ରତନୀର ମହାରାଗ[୧] ହେଲା। କହିଲା– କିଛି ଜାଣିନାହିଁ ଯେମିତି, କହିଲା କାହୁଁ ଅଇଲୁ, ନଙ୍କାରୁ ଆଇଲି।'' ତା' କଥା ଶୁଣି ସେତ ମାର ମୁସ୍କିଲ୍। କହିଲା– କଥାପଦକୁ କାମୁଡ଼ି ଗୋଡଉଚୁ, ଘରେ ନ ପଶୁଣୁ ଚାଳ ବାଜିଲାଣି। ଏ ପୁଣି କି ଘର କରିବ, ତା ପାଟିରେ ଆଉ ଗୋଟାଏ ମାଇକିନାଁ ଭିତରୁ ବାହାରିପଡ଼ି କହିଲା, ହଇଲୋ ଧଡ଼ିଆବୋହୂ, କାହାସାଙ୍ଗେ ନଢୁଚୁ[୨]? ଧଡ଼ିଆବୋହୂ ସେତେବେଳକୁ ଅଗ୍ନିମୂର୍ତ୍ତି[୩]! ସେ ତାକୁ ବି ଶୋଧିଦେଲା। ରତନୀ ପାଲିଙ୍କି ଭିତରୁ ବାହାରିପଡ଼ି କହିଲା, ଦେଖିଲୁ ମାଉସି, ତୁଚ୍ଛେଇଟାକୁ ମୋ' ସାଙ୍ଗେ ନଗେଇଚି। ମୁଁ ଭଲା ତାକୁ କିଛି କହିଥାନ୍ତି। ମୁଁ ପଚାରିଲି ତୁ ଶଶରା ମାଁ କି ?'' ଆରଜଣକ ତାକୁ କହିଲା, ''ମୁଁ ଶଶରା ମା। ତୁ ଫକିରା ବୋହୂକିଲୋ! ଆ'ଆ' ଘରଭିତରକୁ ଆ', ମତେ ଫକିରା କୋଉକାଳୁ କହିଲାଣିଟି। ଏ ନିଆଁନଗା ମନକୁ କଣ କହିବିଟି। ଟୋକାଟା ଏଇକ୍ଷିଣି ବଜାରରୁ ଅସିବ। ଆଉ ତୁ ବାହାରେ ବଇଚୁ। ହଇଲୋ, ତୋ' ପାଟିରେ କଣ ବେଙ୍ଗ ବନ୍ଧାହୋଇଥିଲା। ମତେ ଡାକଟାଏ ଦେଲୁନାହିଁ। ଆ' ଆ'।''

ରତନୀ ଆଶ୍ରାପାଇ ବଡ଼ ଖୁସିରେ ଘର ଭିତରକୁ ଗଲା। ଦେଖିଲା, ଖଟ ପଡ଼ିଛି, ମେଜ ଥୁଆ ହେଇଚି, ଚଉକି ସଜା ହେଇଚି, କାନ୍ଥରେ ମାଳ ଅଇନା ଆଉ ଚିତ୍ର। ଖଟରେ ଶୋଇଛନ୍ତି ସାଆନ୍ତେ। ଟୋକାଟିଏ ଗୋଡ଼ ଘସୁଚି। ଶଶରା ମା ଘରକୁ ପଶିଯିବ କ'ଣ, ତା' ମୁଣ୍ଡ ବାଜି କାଚର ଗୋଟାଏ ବଡ଼ ଅଇନା ଧୁମ୍‌କିନା ତଳେପଡ଼ି ଚୂନଭୂତ। ସାଆନ୍ତଙ୍କର ତ ନିଦ ଲାଗିଆସୁଥିଲା, ଏ ଶବଦରେ ଉଠିପଡ଼ି ଆଗ ଦି'ଚାପୁଡ଼ା ଦେଲେ ଭଣ୍ଡାରୀ ଟୋକାକୁ, ସେଠୁ ଦି' ଦି' ବେତ ଦେଲେ ଏ ତିନିଜଣଙ୍କୁ। ହଠାତ୍ ଘରେ ପଶି ଅକାରଣେ ମାଡ଼ଖାଇ ରତନୀର ରାଗରେ ବୁଦ୍ଧି ହଜିଗଲା। ସେ ଆଉ ସମାଳି ନପାରି କହିଲା, ''ଏଇଟା କାହିଁକି ମତେ ମାଇଲା ଲୋ! ଶଶରା ମା ଆରସି ଭାଙ୍ଗିଲା, ମୁଁ ଖାଇଲି ମାଡ଼।'' ସାଆନ୍ତେ ଭାରି ରାଗିଯାଇ କହିଲେ, ବେଶି ବକ୍‌ବକ୍ କରନା। ଏଠି ଚାକିରାଣୀ ଯେମିତି, ସାଆନ୍ତାଣୀ ସେମିତି, ଦୋଷକଲେ ମାଡ଼, ସାଆନ୍ତାଣୀ ହେଇଚ ବୋଲି କଣ ମୁଣ୍ଡ କିଣିଚ ? ଉଠ, ଯାଇ ଭଙ୍ଗା କାଚତକ ଗୋଟେଇ ଗଦା କର। ରତନୀ ଆଖିପୋଛି ଯାଇ କାଚତକ ଗୋଟେଇ ଗଦାକଲା[୪]।

(୧) ବଡ଼ରାଗ, (୨) କଳି କରିବା, ଯୁଦ୍ଧ କରିବା, (୩) ରାଗରେ ପାଚିଯିବା, (୪) ଏକାଠି କରିବା

ବାବୁ ବାହାରକୁ ଚାଲିଗଲେ। ଭଣ୍ଡାରୀ ଟୋକାଟାବି ଆସି ସାଙ୍ଗରେ ମିଶିଗଲା। କାଚ ଗୋଟେଉ ୨ କହିଲା, ଦେଖିଲ ମା' ସାଆନ୍ତାଣି, ସାଆନ୍ତେ ଆମର ଭାରି ଚିଡ଼ଲ[୧] ମଣିଷ। ଯେମିତି ନଙ୍କାମରିଚଟି ତ! ତାଙ୍କ ସଭାବ[୨] ବୁଝି ଚଳିବ। ତେମେ ନୂଆ ଲୋକ ବୋଲି କହି ରଖିଲି। ରତନୀ ସୁଯୋଗ ପାଇ ପଚାରିଲା, ହଇରେ, ତୋ ନା କ'ଣ? ଟୋକା କହିଲା– ମୋ' ନା ଦାମା। ମୁଁ ବାବୁଙ୍କର ଗୋଡ଼ ଘସେ, ପଙ୍ଖା ଟାଣେ, ବୋଲହାକ କରେ। ''ରତନୀ କହିଲା, ଆଉ ଫକିରା କଣ କରେ? ଦାମା କହିଲା, କିଏ? ରତନୀ କହିଲା ଏଠି ପରା ସେ ଥାଏ।'' ଦାମା କହିଲା– ଏଠି ତ ଫକିରା ବୋଲି କେହି ନାହିଁ। ରତନୀକି ତ ଭାରି ଆଷ୍ଚର୍ଯ୍ୟ ଲାଗିଲା। ସେତେବେଳକୁ ଈଶରା ମାଁ ଆସି ଡାକିଲା, ଆଲୋ ବୋହୂ ଗାଧେଇବୁଆ। ରତନୀ ଉଠିକରି ଗଲା। ଈଶରା ମାଁ ତାକୁ ନେଇ ପୋଖରୀ ତୁଠରେ ବସିଲା। ମୁଣ୍ଡାଏ ସାବିନି, ଗିନାଏ ବାସନା ତେଲ ଧରି ବସିଥାଏ। ଅଇନା ପାନିଆ ସବୁ ଆଣିଥାଏ।

ପୋଖରୀ ତୁଠରେ ଭାରି ନିର୍ଜନ, ଚାରିଆଡ଼େ ପାଚେରି ବନ୍ଧା। ପକ୍କା ବେଦୀ, ତୁଳସୀ ଚଉରା, ବାଡ଼ିଟା ଭାରି ସୁନ୍ଦର, ଫୁଲଗଛ ମାଳମାଳ, ନଡ଼ିଆଗଛ, ଆମ୍ବଗଛ, କଦଳୀଗଛ ପଣସଗଛ ମାଳ ମାଳ। ରତନୀ ଏ ସବୁ ଦେଖି ତା' ଆଖି ଖୋସି ହୋଇଗଲା[୩]। ସେ ଘଡ଼ିଏ ସବୁଆଡ଼େ ଚାହିଁଲା।

ଈଶରା ମା ଟିକେ କଡ଼ାସ୍ୱରରେ କହିଲା, କ'ଣ ବଲବଲ[୪] କରି ଅନଉଚୁ, ଗର ବାରି କଣ କେବେ ଦେଖିନୁଁ। ତୋରି ସାଆନ୍ତର ତ। ଏଠି ରାଣୀ ହେଇ ରହିବୁ। ଭଲ ଗୁଣକଲେ କପୁର ଚୁରିବୁ। ଆମେ ତ ଚାକରବାକର ଲୋକ। ''ରତନୀ ଟାଣିହେଇ କହିଲା, ''ମୋର କଣ ମନ୍ଦଗୁଣ ଦେଖିଲୁକି? ଈଶରା ମା କହିଲା, ସାଆନ୍ତେ କହୁଥିଲେ, ତୁ କୁଆଡ଼େ ପକ୍କା କଜିଆଖୋରଣୀଟା।'' ଆପଣା ନିନ୍ଦା ଶୁଣି ରତନୀ ଖପା ହେଇ କହିଲା, ''ମୁଁ ପକ୍କା କଜିୟାଖୋରଣୀ, ଆଉ ତୋ' ସାଆନ୍ତଟା ଭାରି ଭଲ। ସେଇଟା କିଆଁ ମୋ' ସାଙ୍ଗେ ନାଗିଚି, ମତେ ସଖୀଙ୍କୁ ବି' ପାହାର ବାଡ଼େଇଲାଣି। ହଇଲୋ, ତେମେସବୁ ଏଠି କେମିତି ଚଳ? ଈଶରା ମା ବଡ଼ ଦୁଃଖରେ କହିଲା ''ମାଡ଼ ଗାଳି ଖାଇ ଚଳୁ। ମାଡ଼ ଖାଇ ଖାଇ ହାଡ଼ ଭାଙ୍ଗିଲା। ସାଆନ୍ତେ ଭାରି ପ୍ରତାପୀ; ଏବେ ତମ ହାତରେ ଆମ ଚୁଟି। ମାଇଲେ ଧଇଲେ ଯିବୁଁ କୁଆଡ଼ିକି/ ଭମି ଧରିଚୁ।'' ଯା କହି ଟାଣିନେଇ ରତନୀକି ତଳେ ବସେଇଲା। ପିଉଳ ଖଡୁତକ ତାର ବଡ଼ ହୁଗୁଳା ତିଆରି ହେଇଥାଏ। ହାତରେ ସୂତା ପଟେ ବାନ୍ଧି ଗୋଟି ସବୁ କାଢ଼ିଲା। ରତନୀ ତା' କାଣ୍ଡ ଦେଖି କହିଲା ''ମତେ ଛାଡ଼, ଏ ରଙ୍ଗ ରଖିଦେ, ମତେ ରାଣ୍ଡ କରିବୁ କିଲୋ। କାଲି ବାହା ହେଇଚି।'' କଥାଶୁଣି ଈଶରା ମା ହସି ହସି କହିଲା, ଆଲୋ ଅଲଖେଣୀଘରଝିଅ, ହେଇ ଦେଖ୍। ଆଉ ଗୋଟାଏ ପେଡ଼ି ଫିଟେଇ ଆଗକୁ ଥୋଇଦେଲା। ରତନୀର ତ ଆଖି ବୁଜି ହେଇଗଲା। ଈଶରା ମାଁ ଦେହ ଦୁଲୁକେଇ କହିଲା ''ପିଉଳ ଖଡୁ ପିନ୍ଧିବା ଦିନ ଗଲା। ତୋ' ଭାଗ୍ୟରେ ତ ଅଛି ସୁନା, ହୀରା, ନୀଳା, ତୁ ପିନ୍ଧିବୁ କିଆ ପିଉଳ କଂସା? ''ରତନୀ ଆଉ କିଛି କହିଲା ନାହିଁ। ଥିରିହେଇ ଗାଧେଇଗଲା।

(୧) ଛୋଟ ଛୋଟ କଥାରେ ରାଗି ଉଠୁଥିବା, ବିରକ୍ତ ହେଉଥିବା, (୨) ସ୍ୱଭାବ, ଚରିତ୍ର, (୩) ଆଶ୍ଚର୍ଯ୍ୟ, (୪) ଆଷ୍ଚର୍ଯ୍ୟ ଭାବ

ପ୍ରାୟ ବି' ଘଣ୍ଟାକାଳ ବୁଢ଼ୀ ତାକୁ ମାଜିଘସି ଗାଧୋଇ ଦେଇ ଆଣି ସବୁ ଅଳଙ୍କାରରେ ସଜବାଜ କରେଇ ପାଟଲୁଗା ପିନ୍ଧେଇ ଅଇନାଟି ଆଣି ତା' ହାତରେ ଦେଲା। ରତନୀ ଅଇନାରେ ନିଜ ମୁହଁ ଦେଖି ଲାଜରେ ମରିଗଲା, ସେ କଣ ଆଉ ସେ ରତନୀ ଅଛି ? ଏବେ ରୂପଟି ଦୁଶିଲା ପରୀ-ଦେରେ[୧]। ଈଶରା ମା ବୁଢ଼ୀ ତାକୁ ସେଠୁ ନେଇ ରୋଷେଇଶାଳକୁ ଗଲା।

ରାଧି ମାଁ ବାହ୍ମଣୀ ଆଣି ଛ'ଭଜା ନ'ତୁଣ ପରଶି ଦେଲା। ତାକୁ ବି ଭାରି ଭୋକ କରୁଥିଲା। ଆଉ ଏନେ[୨] ବଢ଼ିଆ ଜିନିଷ ସେ କେବେ ଖାଇ ନଥିଲା, ଖାଇ ପିଇ ସାରିଲାରୁ ଈଶରା ମାଁ ନେଇ ତାକୁ ପଲଙ୍କରେ ବିଛଣା କରି ଶୁଆଇଦେଲା। ସେ ପୁଣି ହଁସୁଲୀତୁଳୀ, ଭାରି ନରମ। ରାଣୀ ମାଁ ବସି ପଙ୍ଖାକଲା। ହୁରୁଷି ମାଁ ଆଣି ବାସନା ପାନ ଦେଲା।

ଲୁଗା, ଗହଣା ପିନ୍ଧି ଖାଇପିଇ ରତନୀ ଭାରି ତୋଷ[୩]। ତାକୁ ନିଦମାଡ଼ିଆଇଲା। ଯେତେବେଳେ ତା' ନିଦ ଭାଙ୍ଗିଲା, ସେତେବେଳକୁ ମୁହଁ ସଞ୍ଜ। ଘରେ କେହି ନାହାନ୍ତି, ସାଆନ୍ତେ ଆସି ତା' ଖଟରେ ବଇଚନ୍ତି। ରତନୀ ତାଙ୍କୁ ଦେଖିଲା ମାତ୍ରେ ଧଡ଼ପଡ଼[୪] ଖଟରୁ ଉଠି ପଇଲା।

ସାଆନ୍ତେ ତାକୁ ଏକ ଦୃଷ୍ଟିରେ ଅନେଇ ଅନେଇ କହିଲେ, ''ଏ ଗହଣା ଲୁଗା କିଏ ଦେଲା ?'' ରତନୀ କହିଲା-ଈଶରା ମାଁ। ସେହିକ୍ଷଣି ଈଶରା ମାଁକୁ ଡାକ ପଇଲା, ସାଆନ୍ତେ ରାଗିଯାଇ କହିଲେ, ଈଶରା ମାଁ-ତୋତେ କିଏ କହିଲା ଯାକୁ ଆଇ ଅଳଙ୍କାରରେ ସଜ କରିବାକୁ ? ଈସରା ମାଁ ନିଭନ ହୋଇ କହିଲା, ସାଆନ୍ତେ ଆପଣ ଆଜ୍ଞା କରିଥିଲେ।'' ସାଆନ୍ତେ କହିଲେ– ହଉ, ମୁଁ ହୁକୁମ ଦଉଚି-ଯାଙ୍କର ସବୁ ଗହଣା କାଢ଼ିଦିଅ, ପଟେ ପଟେ ଶଙ୍ଖା; ଆଉ ଖଦି ଖଣ୍ଡେ ପିନ୍ଧେଇ ଛାଡ଼ିଦିଅ। ଯାକୁ ଏଗୁଡ଼ା ମାନୁନାହିଁ। ଯାହାକୁ ଯେମିତି। ଯାହା ଦିହକୁ ଖଦି ମାନିବ, ତା' ଦିହରେ ପୁଣି ବିଶାଏ[୫] ଅଳଙ୍କାର।'' ହଉ ଆଜ୍ଞା, କହି ସେହିକ୍ଷଣି ତିନିଟା ଚାକିରାଣୀ ମିଶି ତା' ଗହଣାତକ କାଢ଼ିଦେଲେ। ରତନୀକି ଭାରି ଲାଜବି ମାଡ଼ିଲା, ଭାରି କାନ୍ଦବି ମାଡ଼ିଲା। ହେଲେ ସାଆନ୍ତେ କତିରେ ବସିଥିଲେ। ଭରସି କରି ପାଟି ଫିଟେଇ ପାରିଲା ନାହିଁ।

ସେତେବେଳକୁ ସଞ୍ଜ ବଳିତା ଲାଗିଲାଣି। ସାଆନ୍ତେ ରତନୀକି ଚାହିଁ କହିଲେ, ଆଜି ତୁମେ ମୋ' ପାଇଁ ରାନ୍ଧ।'' ଯା କହି ବାହାରକୁ ଗଲେ। ତାଙ୍କ ଗଲା ପରେ ଚିନ୍ତା ମାଁ କହିଲା, ''ଆଚ୍ଛା ମନିଷଟି, ତୁଆଏ ପିନ୍ଧ, ତୁଆଏ[୬] କାଢ଼। ଗହଣା ଦବାକୁ କିଏ କହିଲା, କାଢ଼ିବାକୁ କିଏ କହିଲା। ଗରିବ ଘର ଝିଅ ତ ଜାଣି ଶୁଣି ବାହାହେଲ। ଏବେ ତାକୁ ଏତେ ଦୁଃଖ ଦେଲେ ଚଳିବ ?'' ତା' କଥା ଶୁଣି ରତନୀ ଆଖିରୁ ଟପ ଟପ ଲୁହ ଗଡ଼ିଗଲା। ଘଣ୍ଟାକ ଆଗର ଗହଣା ପିନ୍ଧି ଯୋଉ ସୁଖ, ଶୂନ୍ୟରେ ମିଶିଗଲା। ଆଉ ତାର ଭାବନାର ବେଳ ନଥିଲା। ବଡ଼ ବଡ଼ କଅଁନ ଥାଳିରେ କି ଜାଣି ୨୫ ଲୋକର ରାନ୍ଧିବା ଦରବ ଘିନି ଚାରିଟା ପୁଝାରୀ ଆସି ହାଜର। ରତନୀକି ହୁକୁମ ଦେଇଛି ରାନ୍ଧିବ ବୋଲି। ତା' ଛାତି ଥର ଥର। ସେ କି ରନ୍ଧା ଜାଣେ ? ଯା' ହଉ, ରନ୍ଧା ଘରକୁ ଗଲା। ଜିନିଷପତ୍ର ଥୋଇଦେଇ ପୁଝାରୀ

(୧) ପରୀପରି, (୨) ଏତେ, ଏପରି, (୩) ସଂତୁଷ୍ଟ, ଖୁସି, (୪) ଶୀଘ୍ର, ଡେରି ନକରିବା, (୫) ପାଂଚସେରେ, ବହୁତ, (୬) ଥରକୁ

ବାହାରିଗଲା। ରତନୀ ବୁଦ୍ଧିକରି ଚୁଲି ଜଳେଇଲା, ଭାତ ଫୁଟେଇଲା। ସାଗଟା ଖରଡ଼ିଲା, ଡାଲିଟା କଲା। ବଡ଼ ମାଛକୁ ବେସର କରିଦେଲା। ଆଉ ତ କିଛି ଜାଣିନାହିଁ। ପୁଣି ଭାବିଚିନ୍ତି ସନ୍ତୁଳାଟା କଲା। ଆଉ ସବୁ ଜିନିଷ ପଡ଼ିଥାଏ। ସେକି ଜାଣେ ଖିରିମୋହନଭୋଗ, ଆଉ କଲିଆ କୁରୁମା!

ରାତି ନଅଟାକୁ ବାବୁ ଆସି ପିଣ୍ଡାରେ ବସିଲେ। ରତନୀକି କହିଲେ; ଭାତ ବାଢ଼। ତା' ହଲକ ଶୁଖିଗଲା[୧]। ଏଡ଼େବଡ଼ ଲୋକକୁ କେମିତି ଭାତଦବ; କଣ କରିବ। କେହି ସାହାଯ୍ୟ କଲେନାହିଁ। କଷ୍ଟେମଷ୍ଟେ ଥାଳିରେ, ଥାଳିଆରେ ଭାତ ତିଅଣ ପରଶିଲା। ସାଆନ୍ତେ ଖାଇ ବସିଲେ। କହିଲେ ଭାରି ସୁଆଦ ହେଇଚି। ରତନୀ ମନ କୁଣ୍ଢେ। ଡାକିଲେ, ''ଆସ ଖାଇବ''। ରତନୀକି ଭାରି ଲାଜ ମାଡ଼ିଲା। ତୁନିହେଇ ରହିଲା। ସାଆନ୍ତେ ପୁଣି ଡାକିଲେ, ନ ଶୁଣିଲାରୁ ରାଗ ହେଇ ଉଠିଲେ। ଥାଳି, ଥାଳିଆ, ଗିଲାସ, ବାସନ, ଭାତ ତରକାରୀ ସବୁ ଫୋପାଡ଼ି ଦେଲେ। କହିଲେ, କଣ ମୋ' କଥା ଅମାନିଆ[୨]।'' ସାଆନ୍ତର କାଣ୍ଡ[୩] ଦେଖି ରତନୀର ଛାତିରୁ ଅଧେ ରକ୍ତ ଶୁଖିଗଲା। ସେହିକ୍ଷଣି ଈଶରା ମାଁକୁ ଡକରା ହେଲା। ସାଆନ୍ତ ରାଗରେ ତମତମ ହେଇ କହିଲେ, ଏ ମୋ' କଥା ଅମାନିଆ କରିଛି, ଯାକୁ ପଖାଳଭାତ ପିତାଶାଗ ଏହିକ୍ଷଣି ଆଣିଦିଅ।'' ସେହିକ୍ଷଣି ପଖାଳଭାତ ପିତାଶାଗ ଖରଡ଼ା ଆସିଲା। ସାଆନ୍ତ କହିଲେ, ''ବସ୍ ଖାଇବାକୁ।'' ରତନୀ ଉୟରେ ଖାଇବସିଲା। ସାଆନ୍ତ କରେଇ କରେଇ ଭାତ ତାଟିଆକୁ ଅନେଇଁ ଥାନ୍ତି। ପୁଣି ରାଗରେ କହିଲେ ''ହଇଲୋ ଈଶରା ମା, ହାଣ୍ଡିଏ ଗୋରୁ ତୋରାଣୀ ବାଢ଼ି ଦେଇନ୍ଥ। ଏତେ ଖାଇବ ସେ! ଫୋପାଡ୍, ସେହିକ୍ଷଣି ଈଶରା ମାଁ ସବୁ ଅଜାଡ଼ିଦେଲା, ରହିଲା ଖାଲି ଶାମୁକାଏ ତୋରାଣୀ। ସାଆନ୍ତେ କହିଲେ, ଏଇ ତୋରାଣୀ, ଆଉ ପିତାସାଗ, ମୋ' କଥା ଅମାନିଆ କଲେ ଏଇ ଖାଇବାର ମିଳିବ। ରତନୀ ଲୁହ ପୋଛୁଥାଏ, ଖାଉଥାଏ, ତା' କଇଁ କଇଁ ସ୍ୱର ଶୁଣି ସାଆନ୍ତେ ଝଟ୍ ତା ପିଠିରେ ବେତଟିଏ ବଜେଇଲେ। କହିଲେ ''କାନ୍ଦିଲେ ଏ ଶାସ୍ତି। ରତନୀ ତୁନିହେଇ ସେତକ ଖାଇଲା।''

ଖାଇ ଉଠିଲାମାତ୍ରେ ସାଆନ୍ତେ ଗଲେ ଆଉ ପିଣ୍ଡାକୁ; ସେଠି ଚଟେଇ, ସତରଞ୍ଜି ପଡ଼ିଲା। ହାରମୋନିଅମ୍, ସିତାର ଥୁଆଗଲା। ବାବୁ ବସିଲେ, ବାଜା ବଜେଇ ଗୋଟିଏ ଗୀତ ଗାଇଲେ। ତାଙ୍କ କଣ୍ଠ ଭାରି ମଧୁର, ରତନୀ ଶୁଣୁଥାଏ। ସାଆନ୍ତେ କହିଲେ, ''ଆସ, ବାଜା ବଜେଇବ।'' ଆଉ ସେ କିଛି ଉତ୍ତର ନ ଦେଇ କତିକି ଗଲା। ବାବୁ ତାକୁ ବାଜା ଶିଖେଇ ବସିଲେ। ସେ ବୁଝୁ ନ ବୁଝୁ ହୁଁ ହାଁ ମାରୁଥାଏ। ଘଣ୍ଟାଏ ଗଲା, ସାଆନ୍ତେ କହିଲେ-ଚାଲ ଶୋଇବା। ଖରାଦିନ, ବଡ଼ ଗରମ, ପିଣ୍ଡାରେ ବିଛଣା ହେଲା। ଦିବ୍ୟସୁନ୍ଦର ବିଛଣା, ଗଦି, ତୋଷକ, ଲେପ, ତକିଆ, ପୁଣି ମଲ୍ଲିଫୁଲ ମାଳ। ସାଆନ୍ତେ ଶୋଇଲେ। ଦଣ୍ଡେ ଯାଇନାହିଁ, ସାପ ମାଇଲାପରି ଉଠିଲେ। ବିଛଣା ବଡ଼ କାଟିଲା। କଥା କ'ଣ, ରାମା ବେହେରା, ଦାମା ବାରିକ ଦଉଡ଼ି ଆଇଲେ। ବାବୁ ସବୁ ବିଛଣା ଅଗଣାରେ ଫୋପାଡ଼ି ଦେଲେ। କଥା କଣ,

---

(୧) ସାହସ ହଟିଯିବା, କାକୁସ୍ଥ ଭାବ, (୨) ଅମାନ୍ୟ, (୩) ଆଚରଣ

ଖୋଜଖୋଜ ସାତ ପରସ୍ତ ଗଦିତଳେ ଗୋଟିଏ ଖଡ଼ିକା। ଏଗଟା କାଟୁଥିଲା। ବାବୁ ଖଡ଼ିକାଟି ପାଇ ସେହିକ୍ଷଣି ରାମା ବେହେରାକୁ ଦି'ବିଧା, ଦାମା ବାରିକକୁ ଦି' ଚଟକଣା ବସେଇଲେ। କହିଲେ, ଆଣ ଖଜୁରୀପଟ। ତାଙ୍କ କଥାମତେ[୧] ଗୋଟିଏ ସାତଛିଣ୍ଡା ଖଜୁରୀପଟି ଆସି ପଡ଼ିଲା। ପିଢ଼ା ଗୋଟିଏ ମୁଣ୍ଡତଳେ ଦେଇ ସାଆନ୍ତେ ଶୋଇଲେ। ରତନୀକୁ ଡାକିଲେ ଗୋଡ଼ ଘସି। ତାଙ୍କ କାଣ୍ଡଦେଖି ରତନୀର ପିଳେହୀ ପାଣି। କିଛି ଉତ୍ତର ନ ଦେଇ ଗଲା, ଗୋଡ଼ ଟିପିଲା।

ମୁଠାଏ ଦି'ମୁଠା ନ ଦଉଣୁ ସାଆନ୍ତେ ଏମିତି ଗୋଇଠାଟିଏ ଦେଲେ ଯେ, ଛାଟିହେଇ ଖଣ୍ଡେ ଦୂରରେ ପଡ଼ିଲା ''ଆଲୋ ବୋପାଲୋ'' ହେଇ କାନ୍ଦିଉଠିଲା। ସତେ ଯେମିତି କିଛି ଜାଣି ନାହାନ୍ତି, ସାଆନ୍ତେ ଧଡ଼ପଡ ଉଠିଯାଇ କଅଁଳେଇ କହିଲେ, ''ଆହା କାଟିଲା କିଓ! ହଉ ଆସ, ଘସା ଥାଉ, ଶୋଇ ପଡ଼, ରାତି ବାରଟା ହେଲାଣି। ଭୟରେ ରତନୀ ଗୋଟାଏ କୋଣରେ ଶୋଇଥାଏ। ତା' ଆଖିକି ନିଦ ନାହିଁ। ସାତପାଞ୍ଚ ଭାବୁଥାଏ। ମାଁ କଥା ମନେ ପକେଇ ଆଖିରୁ ଲୁହ ଗଡ଼ିଯାଉଥାଏ। ଲୋକାଭାଇର ଛଳକଥା ଚିନ୍ତି ତା'ବୁକୁ ଫାଟି ପଡୁଥାଏ। ଏ କଣ ହେଲା, କୁଆଡ଼େ ଥିଲା, କୁଆଡ଼ିକି ଆଇଲା। ଫକିରା କିଏ, ଏ ସାଆନ୍ତେ କିଏ, ଏମାନେ ଯାକୁ ନେଇ ଏତେ ରଙ୍ଗ[୩] କିଆଁ କରୁଛନ୍ତି, କିଛି ବୁଝିପାରିଲା ନାହିଁ। ଉଠିବସି ସୁଉଁ ସୁଉଁ ହେଇ ଅନେକବେଳ କାନ୍ଦିଲା। ତା' ସୁଉଁ ସୁଁରେ ସାଆନ୍ତର ନିଦ ଭାଙ୍ଗିଲା। ବିରକ୍ତ ହେଇ କହିଲେ– କଣ ରାତି ଗୋଟାକ ଶୁଆଇ ଦବନାହିଁ ? କହ ! କାହିଁକି କାନ୍ଦୁଛ ?'' ଏଥର ରତନୀ ସମାଳି ନପାରି ଆହୁରି ବଡ଼ ପାଟିକରି କାନ୍ଦିଉଠିଲା। ସାଆନ୍ତ ତାର କତିକି ଯାଇ ଠିଆହେଇ କହିଲେ, ''କଅଣ, କାହିଁକି କାନ୍ଦୁଛ ମତେ କୁହ। ଆପଣା ସ୍ୱାମୀକି ନ କହିବ ତ ଆଉ ଦୁଃଖକଥା କହିବ କାହାକୁ?'' ସାଆନ୍ତ କଥାରେ ରତନୀର ଗୋଡ଼ଠୁ ମୁଣ୍ଡଯାକେ ଜଳି ଉଠିଲା। ଭାବିଲା, ମଲେ ମରିବି ପଛେ ପଦେ କହିବି। ଝଟ ଉଠିଯାଇ କହିଲା, ''ମଲାମୋର ତେତେ କୋଉଦିନ ବାହା ହେଲି? ଫକିରା ମଲାନାହିଁ, ମତେ ଆଣି ଏଠି ଏତେ ରଙ୍ଗ କରାଉଛି, ଲୋକା ମଲାନାହିଁ, ମତେ ପୂରେଇ ଏଠି ନାଟ ଦେଖୁଛି।'' ଏହା କହି ଦୁମ୍‌କିନା ତଳେ କଚାଡ଼ି ହେଇ ପଡ଼ି ମୁଣ୍ଡ ବାଡ଼େଇଲା। ସାଆନ୍ତେ ମହା ବ୍ୟସ୍ତହେଇ ତାକୁ ଟାଣି ଓଟାରି ସେଠୁ ଉଠେଇଲେ, ଅନେକ ବୁଝେଇ ସୁଝେଇ ତୁନିକଲେ। ହେଲେ ରତନୀ ମୋଟେ ତୁନି ହେଉ ନଥାଏ। ଖାଲି କାନ୍ଦୁଥାଏ, କହୁଥାଏ– ଏ ଜୀବନ ଆଉ ରଖିବି ନାହିଁ। କାଲି ସକାଳେ ପୋଖରୀକୁ ଡେଇଁପଡ଼ିବି। ଅଖିତ ଜୀବନ ଏଡ଼େ ହୀନସ୍ତା ହେଲା। ଜଣେ ବାହା ହେଲା, ଆଉଜଣେ କହିଲା ସ୍ୱାମୀ! ମୁଁ ମୂଲିଆ ମୁଣ୍ଡର ଝୁଅବୋଲି କଣ ମୋର ଇଜ୍ଜତ ମହତ ନାହିଁ। ତମ ଘରେ ବାରପାଇଟି କରିବି ବୋଲି କଣ ମୋ ମାନ ମହତ ଗଲା। ମୁଁ ପଛେ ଗଳାରେ ଦଉଡ଼ି ଦେବି।''

ଆଉ ବେଶି ବଢ଼ିବାର ନୁହେଁ ଦେଖି ସାଆନ୍ତେ ଆପେ ଆସି କତିରେ ବସିଲେ। ପ୍ରବୋଧ[୨] ଦେଇ କହିଲେ, ''ଆରେ ଶୁଣୁ, ମହାପୁରୁ ସାକ୍ଷୀ, ଦିଅଁ ଦେବତା ସାକ୍ଷୀ, ମୁଁ ତୁମକୁ ବାହାହେଇଚି, ଫକୀରା କେହି ନୁହେଁ। ମିଛରେ ମିଛରେ ସେତକ ଭେଳିକି[୩] ହୋଇଥିଲା। ତୁମେ କଳିଆଖୋରଣୀ ବୋଲି ତୁମକୁ ଏ ଦଣ୍ଡ।''

(୧) ନିର୍ଦ୍ଦେଶ ଅନୁସାରେ, (୨) ସାନ୍ତ୍ୱନା, (୩) ଛଳନା, ରହସ୍ୟ

ରତନୀ ଟିକେ ଥଣ୍ଡା ହେଲାରୁ ସାଆନ୍ତେ କହିଲେ, ଥିରହେଇଁ ଶୁଣ ! ମୁଁ ଆଗରୁ ଲୋକାକତିରୁ ଶୁଣିଥିଲି ତୁମେ ଭାରି ଖୋରଣୀ, ଭାରି ସାହସୀ। ଦିନେ ମନେଥିବ ତମର, ମୁଁ ଯାଇଥିଲି ତମ ଗାଁକୁ ମାଛମାରି, ସେ ଆଜିକି ପାଞ୍ଚ ବରଷ କଥା। ସେଦିନ ତୁମର ଯୋଉ ସାହସ ଦେଖିଲି, ମୋ' ମନ ମାନିଗଲା। ମୁଁ ସାହସକୁ ଭାରି ସୁଖପାଏ। ହେଲେ ତମ ଖୋରଣୀପଣଟା ଛଡ଼େଇବା ସକାଶେ ଏତକ ଭିଆଣ[୧] କରି ବାହାହେଲି। ଏଥର ମନ ମାନିଲା।''

''ରତନୀ ଏତକ ଶୁଣି ଗୋଡ଼ତଳେ ପଡ଼ିଗଲା। ସାଆନ୍ତେ ଆଦରରେ ପାଖରେ ବସେଇ କହିଲେ– ଏଥର ରତନୀ ନଅତୁଣ୍ଡୀ ହେଲ, ରତ୍ନାବତୀ ଦେଈ, ମଙ୍ଗଳା ଚଣ୍ଡୀ।'' ରତନୀ ମୁହଁରେ ଆଉ କଥାନାହିଁ।



## 'ଛ କଥା'

ଆରଦିନ ଦିନ ୯ ଘଡ଼ି ହେଇଚି, ସାଆନ୍ତେ କଚିରୀଠାଇଁ ଅଛନ୍ତି, ରତନୀ ବଇଚି ମଝିଘରେ, ଛଣରା ମାଁ ଭଣ୍ଡାରୁଣୀ ତା' ଗୋଡ଼ରେ ଅଳିତା ଦଉଚି, ଆଇଲା ଫକୀରା ବାୟା। ତା' ହାତରେ ପତର ଠୁଙ୍ଗାଟି।

ଫକୀରାକୁ ଅନେଇଦେଇ ରତନୀର ଗୋଡ଼ଠୁ ମୁଣ୍ଡଯାକେ ଥରିଗଲା। ଏଇନାଁ ସାଆନ୍ତ କହିଥିଲେ ଫକୀରା ବୋଲି କେହି ନାହିଁ, ଏ ପୁଣି ଜୀଅନ୍ତା ଫକୀରା କାହୁଁ ଅଇଲା ? ତେବେ ସାଆନ୍ତବି ମିଛ କହିଲେ ? ଏ କଣ ମାୟାପୁରି ?'' ଫକୀରା ଘଡ଼ିଏ ଖଣ୍ଡେ ରତନୀକି ଅନେଇ କହିଲା, ''ମଲୁନୁ ପୋଡ଼ାମୁହିଁ, ମୁଁ ଏ ବଜାର ସେ ବଜାର, ଏ ଗାଁ ସେ ଗାଁ, ଏ ବିଲ ସେ ବିଲ, ତେତେ ଖୋଜିଲିଣି, ଆସି ତୁ ସାଆନ୍ତଙ୍କ ଉଆସରେ ପଶିଲୁଣି ! କହନ୍ତିନେଇଁ କଥାରେ, କାହା କପାଳରେ ଖିରିଖିରିଷା, କାହା କପାଳରେ ନଡ୍ଡୁ, ଆରେ ଏ ପୋଡ଼ା ଫକିରା କପାଳରେ ଖାରିଆ ଖଡ଼ା ଚୋବେଇ ଚୋବେଇ ମରୁ।'' ତୁ ଏଠି ନଅ ତୁଅଣ, ତେର ଭଜା, ପନ୍ଦର ପିଠା, ଦଶ ଗଇଁଠା ଖାଇ ମଉଜ କରୁଚୁ, ଆଉ ଫକୀରା ଓଲୁ ତେତେ ମାଜଣା ମଙ୍ଗଳପୁର ବୋଲି ଖୋଜି ଅଇଲାଣି। ଚାଲ ଘରକୁ ଯିବୁ। ଶାଶୂ ଅନେଇଥିବ, ଶଶୁର ଅନେଇଥିବ, ଅନେଇଥିବ ମାଧିଆ, ମାଧିଆ ବୋପା ତ ଘରେ ବଇଚି, ମାଧିଆ ମାଁକୁ ନେଲା କିଲୋ ଗଧିଆ ! ''ଚାଲ୍ ଚାଲ୍, ଆଲୋ ଉଠୁଚୁ ?'' ଏହା କହି ତା' ବାହାଧରି ଝିଙ୍କି ପକେଇଲା। ରତନୀ ଅକର୍ତ୍ତବ୍ୟ ହେଇଁ ଉଠି ଠିଆ ହେଇ ଆଗେ ତାକୁ ଗୋଡ଼ଠୁଁ ମୁଣ୍ଡଯାକେ ଅନେଇଲା। ଇଲୋ ସେ ବାୟା ତ। ସାଆନ୍ତ କଥା ମନେକରି ତାର କଲିଜା ଦୁହିଁ ହେଇଗଲା[୨]। ସେ କଣ କରିବ କିଛି ବୁଝି ନପାରି କାଠପରି ଛିନା[୩] ହେଇ ରହିଲା। ଛଣରା ମା କହିଲା, ''ଇଲୋ ଯାଆଲୋ, ଡାକୁଚି ! ଶାଶୂ ଶଶୁର ଅନେଇଥିବେ, ପାଞ୍ଚପାଇଟି ପଡ଼ିଥିବ। ଆପଣା ଘରକୁ

(୧) ଆଚରଣ, ସୃଷ୍ଟି, (୨) ମନ ମରିଗଲା, (୩) ଠିଆ

ଯିବାକୁ ଏତେ ହାତଧରା, ଗୋଡ଼ଧରା[୧] !'' ଏଥର ରତନୀର ପାଟି ଫିଟିଲା। ଈଶରା ମାଁକୁ ବହେ ଶୋଧି ମୁଣ୍ଡ ବାଡ଼େଇ କାନ୍ଦିବସିଲା। ସେତେବେଳକୁ ସାଆନ୍ତ ଆସି ହାଜର। ସାଆନ୍ତକୁ ଦେଖି ସରମରେ ରତନୀ ମାଟିରେ ମିଶିଗଲାଣି। ତାଙ୍କ କଳିଆ ଗୋଳ ଦେଖି ସାଆନ୍ତ କହିଲେ, 'ଫକିରା, ଫକିରାଚରଣ, ଆମ ଉଆସ ଭିତରେ ଏତେ ଗଣ୍ଡଗୋଳ କିଆଁ ଲଗେଇଚ ?'' ସାଆନ୍ତ କଥା ଶୁଣି ଫକିରା ଟିକେ କାନ୍ଦି ପକେଇଲା, ଟିକେ ନୁହ ପୋଛି ପକେଇଲା, କହିଲା– ସାଆନ୍ତେ, ହଜୁର ନିଶାପ କର। ପଅରଦିନ ରାତିରେ ବାହା ହେଲି, କାଲି ସଖାଳେ ଗାଁକୁ ଅଇଲି, କନିଆଁକୁ ଈଶରା ମାଁ କତିରେ ଛାଡ଼ି, ଗଲି ବଜାରକୁ, ଏଣେ କନିଆଟି ତମ ଘର ପିଠା ସୁଆଦ ପାଇ ଆମ ଗରିବିଗୁରୁବା, ମୂଲିଆ ମୁଣର ପଖାଳ ଭାତ, ପିତା ଶୁଖୁଆ ମଣୋହିରେ ଆଉ ରାଜି ନୁହନ୍ତି। ଆଉ ଠା'ରୁ ଉଠୁନାହାନ୍ତି। ଏ ଈଶରା ମାଁ ଭଣ୍ଡାରୁଣୀ, ତାକୁ ଭଲା ସୁଆଦ ଚଖେଇଲା। କିଲୋ, ତୋ ସାଆନ୍ତ ଘର ଖିରି ଖିରିଷା ତେତେ ବଡ଼, ଆମ ହଳିଆ ମୂଲିଆଙ୍କ ପେଜ ତୋରାଣୀ ଆମକୁ ବଡ଼। କିଲୋ, ଜାତି ଭଣ୍ଡାରୁଣୀ ଗୁଣ ପ୍ରକାଶ କରୁଚୁକି ? ରଖି ଦେଇଥା ସୁଆଗ ତୋ' ସାଆନ୍ତ ଘରେ। ''ଈଶରା ମାଁ ବି ଛାଡ଼ିଲାବାଲୀ ନୁହେଁ।'' ସେ କହିଲା, ''ଆରେ ନିଆଁନଗା, ମୁଣ୍ଡପୋଡ଼ା, ସାଆନ୍ତ ବୋହୂକୁ କୁଆଡ଼େ ନବାକୁ ବଇଚୁ ? ହାଣି ଦେବିଟି ତେତେ ?'' ହଣା ନାଁରେ ବାୟା ଚପିଗଲା[୨]। କାନ୍ଦି ପକେଇ କହିଲା, ''ଆଲୋ ଈଶରାମାଁ ଲୋ, ହାଣ୍ନାଁ ଲୋ, ଦାନ୍ତରେ କୁଟା ହଉଚି, ଗୋଡ଼ ଧରୁଚି, ହାତ ଧରୁଚି, ହାଣ୍ନାଁ ଲୋ, ଖୁର[୩] ଘସନାଁ ଲୋ ! ମୁ ପରା ମୋ' ବୋପା ମାଁର ଏକଇରବଳା ବିଶିକେଶନ। ନେ ନେ ମିଠେଇ ମଧୁରା ଖା !'' ଯା କହି ମିଠେଇ ଠୁଙ୍ଗାଟା ଈଶରା ମା ଉପରକୁ ଅଜାଡ଼ି ଦେଲା। ଈଶରା ମା ତାକୁ ଦି' ଚଟକଣା ବସେଇ ଦେଲା।'' ବାୟା ପୁଣି କାନ୍ଦିପକେଇ ସାଆନ୍ତ ଗୋଡ଼ତଳେ ପଡ଼ିଗଲା। କହିଲା– ଦେଖିଲେ ସାଆନ୍ତ, ଈଶରା ମା ଗୁଣ ! କହନ୍ତି ନେଇଁ ଜାତି ଭଣ୍ଡାରୁଣୀ, ନହୁରୁଣୀରେ[୪] ଖୋବେ ଦବ ! ତାକୁ କି ବିଶ୍ୱାସ ! ଏବେ ନିଶାପ କର ! ଭଲରେ ଭଲରେ ଆମକୁ ବିଦା ଦିଅ।

''ବିଦା ନବୁକିରେ !'' ଏହା କହି ଦାମା ବାରିକ ପଛାଡୁ ଆସି ଫକୀରା ପିଠିରେ ଦି'ବିଧା କସିଦେଲା। ଯେମିତି ହାଡ଼ ଭାଙ୍ଗିଗଲେ ଲୋକେ ଛଟେଇ ହୁଅନ୍ତି, ଫକିରା ଠିକ୍ ସେଇପରି ହେଇ ତଳେ ପଡ଼ିଯାଇ କହିଲା, ''ଇଲୋ ମଲି ଲୋ, ମଲି ଲୋ, ମୋ' ହାଡ଼ ଭାଙ୍ଗିଲା, ମୋ' ଜୀବ ଛାଡ଼ିଗଲା'' ଯା କହି ମୋହଗଲା[୫]।

ରତନୀର ଆଉ ସହ୍ୟ ହେଲାନାହିଁ। ଈଶରା ମାଁକୁ କହିଲା, ''ମଲା, ଲୋକଟାର ଚେତା ବୁଡ଼ିଗଲାଣି, ମୁହଁରେ ପାଣି ଛାଟି ଦେ ! ଇଲୋ ଏ କଣ ହଉଚମ ସବୁ।'' ସାଆନ୍ତେ ଦାମାକୁ କହିଲେ, ଆଣରେ ଦାମା ପାଣି ତାଳେ। ଦାମା ଗରାଏ ପାଣି ଆଣି ରତନୀ ଗୋଡ଼ କତିରେ ଦୁମକିନା ଜଚିଦେଲା। ଈଶରା ମାଁ ଥିଲା ଥିଲା, ପାଣି ଗରାକ ଉଠେଇ ଫକୀରା ମୁଣ୍ଡରେ ଓଜାଡ଼ି ଦେଲା।'' ଆରେ ସାଇଲେ ସାଇଲେ କହି ଫକୀରା ଉଠି ପଡ଼ି ମୁଣ୍ଡଟା

(୧) ନେହୁରା, ଅନୁନୟ, (୨) ଚୁପ୍ ହୋଇଯିବା, ଦବିଯିବା, (୩) ଦାଢ଼ି ନିଶ କଟା ଧାରୁଆ ପାତ, (୪) ନଖକଟା ଲୁହାପାତ, (୫) ମୂର୍ଚ୍ଛାଯିବା, ବେହୋସ ହେବା,

ଏଡ଼େ ଯୋରେ ଝାଡ଼ି ଦେଲା ଯେ, ପରଚୁଳଟା[1] ତା' ମୁଣ୍ଡରୁ ଖସି ହାତେ ଦୂରରେ ପଡ଼ିଲା। ସାଆନ୍ତେ ହୋ' ହୋ' ହେଇ ହସ କହିଲେ, ''ଏଥର ଧରା ପଡ଼ିଲୁ ଗୁରୁଚରଣ!'' ଗୁରୁଚରଣ ଟିକେ ଅପ୍ରସ୍ତୁତ ହେଇ କହିଲା, ଆଉ ଏ ଶଶରା ମାଁଟା ମୋ' ଚୁଟି ଝିଙ୍କି ଦେଲା।

ରତନୀ ତା' କାଣ୍ଡ ଦେଖି ହସିବ କି କାନ୍ଦିବ, କିଛି ବୁଝି ପାରିଲା ନାହିଁ।

ସେଠୁ ସାଆନ୍ତେ, ଗୁରୁଚରଣ, ଦାମା ବାରିକହରିକା ଗଲେ ପୋଖରୀକି ଗାଧୋଇ।

ଢେଁ ରାଧାଁ କୃଷ୍ଣ କିଁ ଢେଁ–ଏଁ–ଏଁ ବଡ଼ ପାଟିରେ ଡାକି ଡାକି ଦୁଆରକୁ ଆସିଲା ଗୋଟିଏ ନାହାକ। ଶଶରା ମାଁ ଯାଇ ତାକୁ ଭିତର ଅଗଣାକୁ ଘିନିଆସିଲା। କହିଲା, ''ନାହାକେ ଖଡ଼ି ପକେଇଲ? ନାହାକ କାଶି କାଶି ଘଣ୍ଟାଏ କଲା। ରତନୀ ଅନେଇଲା, ଦେଖିଲା– ଅଗଣାରେ ବଇଚି ଗୋଟାଏ ସତୁରି ବରଷର ବୁଢ଼ା ମଣିଷଟି, ତା' ବାଳ ଝୋଟପରି, ତା' ନାକ ଆଗକୁ ଗୋଟାଏ ବଡ଼ ପ୍ରଚକ୍ଷୁ[2]। କାଖରେ ବିଡ଼ାଏ ତାଳପତ୍ର, ଫଟା ପାଞ୍ଜି ଗଣ୍ଡାଏ। ତା' ରୂପ ଭେକ ଠିକ ଯେମିତି ଗୋଟିଏ ପାଠିମାଙ୍କଡ଼ପରି। ବୁଢ଼ା ଖାଲି ଥରୁଚି, କାସୁଚି, ଛିଙ୍କୁଚି, ହାଇ ମାରୁଚି, ଥରେ ଥରେ ଗଳାଖଙ୍କାରୁଚି। ତା' ଢଙ୍ଗ ଦେଖି ରତନୀକି ଭାରି ଚିଡ଼ି ମାଡ଼ିଲା। ସେ କହିଲା, ''ଶଶରା ମାଁ, ଏଇ ଥୁରୁଥୁରୁଆ ନାହାକଟାକୁ କିଆଁ ଡାକି ଆଣିଲୁ?'' ଚାଉଳ ଦେ, ସେ ଯାଉ।'' ରତନୀ କଥା ନାହାକ କାନରେ ପଡ଼ିଲା କ୍ଷିଣି ସେ ଉଠି ପଡ଼ି କହିଲା, ''କିଁଲୋ ପଦିଆଁ ନାତୁଣୀ, ବିଦିଆଁ ଝୁଅଁ। ତୋଗିଁ ଏଡ଼େଁ ଚାଟଁର। ବାହାଁ ସାହାଁ ହେଲୁଁ। ଜାତକଁ ସୁଝେଁଇଥିଲିଁ, ଖଡ଼ି ପକେଁଇଥିଲିଁ, ଆମଁ ସିଦ୍ଧା ଖଣ୍ଡାଁକ ମାଁରିବୁ କିଲୋ? ଆଁଣେ ଆଣେଁ ସଗୁଁଚୂଡ଼ା, ଦୋପଁଖି ଉଖୁଁଡ଼ା, ନଡ଼ିଆଁ ପଞ୍ଚଁପୁଞ୍ଜାଁ, ମନକୁଁ ବୁଝାଁ; ଆଁରେ ବୋଇଁଲା କିନାଁ– କନିଁଆ ରତଁନୀ ନଁଅତୁଣ୍ଡା, କଳିଁହୁଡ଼ିଁ ଉଗୁରଁଚଣ୍ଡୀଁ– ବଗଁନା କୃଷ୍ଣଁଚନ୍ଦ୍ରଁ ରାଉତୁରା, ଛାତିଁ ଥୁଗୁଁ ଥୁଗୁଁ ହେସଁ ହଗୁଁରା।'' ବିଲେଇଁ ଦେଖିଲେଁ ବୋଲିଁଇ ବାଘ, ଖାଏଁ କୁଣ୍ଡାପିଠାଁ କଳଁସସାଗଁ, ତାଳୁଅଁ ଚାଉଁଳ କୋଳିଁଥ ଡାଲିଁ, ପିନ୍ଧେଁ ଛିଣ୍ଡାଁକନ୍ଥାଁ ସହସ୍ରେଁ ଟାଁଳି।''

ଗୀତ ଗାଇସାରି ନାହାକ ବସି ପାଞ୍ଜି ଫିଟେଇଲେ। ଆଙ୍ଗୁଠି ଗଣିଲେ। ''ମେଷ, ବୃରୁଷଁ, ମିଥୁନଁ, କଁରକଁଟ, ସିହ, କନିଆଁ, ତୁଳାଁ, ବୁରୁଁଛିକ, ଧନୁଁ, ମକର, କୁମ୍ଭଁ, ମୀନଁ। ଆରେଁ ବୋଇଲାଁ କନଁ ବୁଁଛିକ କର୍କଟ ମୀନସ୍ୟ ବିପ୍ରଃ, କନିଆଁ ନାଁ ରତନୀ ଏଁ– ମେଷଁ, ବୃରୁଁଷ, ମିଥୁନଁ, କକଁଡ଼ା, ସିଂହ, କନିଆଁ–କନ୍ୟାଁ ରାଶି– ନକ୍ଷତର ଏଁ ଅଶ୍ୱିଁନୀ ଦୁଇପାଁ, କୁରୁତିଁକା, ରୋହିଣୀଁ, ମୁରୁଗଶିଁରା, ଆରେଦ୍ରାଁ– ଏଁ ବୋଇଲାକିନାଁ କନ୍ୟାଁ ରାଶିଁ ଅଶ୍ୱିନୀଁ ନେଁକ୍ଷେତ୍ର। ଫଳହେଲା – କନ୍ୟାଁ ସୁଲକ୍ଷଣୀଁ ପୁତ୍ରକନ୍ୟାଁ, ଧନ ଧାନ୍ୟଁ, ପୁରୁନା, ଡାହାଁଣଯାଏଁ ଲକ୍ଷ୍ମୀଁ ବାଁ ଯାଏଁ ହତଁଶିରାଁ। ଗୁରସ୍ତଁମାରୀ, ପୁଅଁକଚାଡ଼ିଁ।

ନାହାକଙ୍କର ଗଣା ଶେଷ ନୋହୁଣୁ ସାଆନ୍ତେ, ଗୁରୁଚରଣ ଗାଧେଇ ଆସିଲେ। ଗୁରୁଚରଣ ନାହାକ କତିରେ ବସିଗଲା, କହିଲା, ଅବଧାନେ[3] ମୋ' ରାଶି କହିବଟି। ନାହାକ

(୧) ନକଲି କେଶଗୁଚ୍ଛ, (୨) ଚଷମା, (୩) ଜ୍ୟୋତିଷ, ନାହାକ

ପ୍ରଚକ୍ଷୁ ଟେକି ତା' ମୁହଁକୁ ଚାହିଁଲା କହିଲା, ''ତମ ନାଁ କହଁ।'' ଗୁରୁଚରଣ କହିଲା ''ମୋ' ନାଁଟି ଫକୀରା, ମୋ' ବୋପା ନାଁଟି ଭିକାରିଆଁ, ମୋ' ଜେଜେ ବୋପା ନାଁଟି ଭରତିଆ, ମୋ' ଅଣଜେଜେ ବାପା ନାଁଟି ଆରତିଆ, ମୋ' ପଣଜେଜି ବାପା ନାଁଟି ସାରତିଆ। ଯା କହି ଦଉଡ଼ିଯାଇ ନାହାକର ଚୁଟି ଟାଣି ଦେଲା। ସେତ ପରଚୂଳା ଉପୁଡ଼ିପଡ଼ିଲା। ନାହାକ ଭିତରୁ ହରି ବାହାରିପଡ଼ି ରତନୀ ଗୋଡ଼ତଳେ ପଡ଼ିଯାଇ କହିଲା, ବୋହୂ ସାଆନ୍ତାଣୀ କ୍ଷେମା କର, ବାଳକ କଥାରେ ଦୋଷ ନଧର। ଆମେ ପିଲାଜାତି ଅତି ଅବୁଝା, ତୋଷ ଆମକୁ ଦେଇ ଉଖୁଡ଼ା ଚୁଡ଼ାଭୁଜା।''

ସେଦିନ ତାଙ୍କ ଘରେ ହେଲା ଭାରି ହସ। ହସି ହସି ସଭିଙ୍କର ପେଟ ପରାସ[୧] ହେଲା।

ସଞ୍ଜବତୀ ଲାଗିଲା। ରତନୀ ବସି ପାନ ଭାଙ୍ଗୁଥିଲା। ଗୁରୁଚରଣ ଆସି କହିଲା, ଆସ ଘରକୁ ଯିବ, ''ଅନାଇଁ ଥିବେ ଶାଶୂ ଶଶୁର।'' ରତନୀ ଉଠିପଡ଼ି ଧାଇଁ ଯାଇ ମଝି ପିଠିରେ ଦୁମ୍‌କିନା ବିଧାଟିଏ ଦେଲା। ଗୁରୁଚରଣ ହସି ହସି ଦାଣ୍ଡକୁ ପଳାଇଗଲା। ସେହିଦିନୁ ଗୁରୁଚରଣ ଆଉ ହରି ତା' ସାଙ୍ଗେ ବଢ଼ନ୍ତି ନାହିଁ। ସାଆନ୍ତଙ୍କ ଶିକ୍ଷାରେ ନଅତୁଣ୍ଡୀ ଭାରି ବଦଳିଗଲା। ଆଗ ମଣିଷ ଆଉ ସେ ନୁହଁ। ଯେମିତି ସଭ୍ୟ, ସେମିତି ଭଲ। ତା' ଖୋରଣୀପଣ କୁଆଡ଼େ ଗଲା। ସାଆନ୍ତେ ତା' ପାଇଁ ଗୋଟାଏ ମାଷ୍ଟିରାଣୀ ଆଣିଲେ। ଛମାସରେ ସେ ସବୁ ପଢ଼ି ପକେଇଲା। ତାର ଭାରି ବୁଦ୍ଧି, ଯାହା ଧରୁଥାଏ ତା' ଶିଖୁଥାଏ। ସାଆନ୍ତେ ଘର ପାଖରୁ ଭଲ ସୁଆର[୨] ମଗେଇ ତାକୁ ଅନେକ ଅନେକ ପ୍ରକାର ରନ୍ଧାବଢ଼ା ପିଠା ପଣା ଶିଖେଇଲେ। ନିଜେ ଗାଉଣା ବାଜଣା[୩] ଶିଖେଇଲେ। ଅରଟରେ ସେ ଏମିତି ସରୁସୂତା କାଟି ଶିଖିଲା ଯେ, ସେ ଗାଁରେ ତା'ଠୁ ବଳି ଆଉ ଭଲ ସୁତା କେହି କାଟି ପାରୁ ନଥିଲେ। ସେ ଦୁଃଖୀ ଘର ଝିଅ, ଏଠି ସୁଖରେ ରହିଲା, ବାର ଚିଜ ପିନ୍ଧିଲା। ଆଉ ସ୍ୱାମୀଟିଏ ଦିଅଁ ଲେଖା[୪]। କି କଥାକୁ ତାକୁ ଦୁଃଖ।

କଥା ଲୁଚି ରହିଲା ନାହିଁ। ପୁତୁରା ଆଉ ଘରକୁ ବେଶି ଆସୁନାହିଁ। ଘରେ ତାର ପରା ବୋହୂ। ନାରେଣୀ ଦେଈ ବଡ଼ ମନ ଦୁଃଖରେ କାଳ କାଟନ୍ତି। କୃଷ୍ଣକୁ ବୋହୂ କଥା କହିଲେ, କୃଷ୍ଣ ମୁହଁ ମୋଡ଼ନ୍ତି, କହନ୍ତି ତୋ ମନ ଇଚ୍ଛା ବୋହୂ କରିଛୁ। ତୋ' ଘର ଆଲୁଅ କରି ବସିଥାଉ। ଯେ ସ୍ୱାମୀକୁ ମାନିଲା ନାହିଁ ସେ କି ସ୍ତିରୀ। ଘରେ ପାଟ ପଟନୀ ପେଡ଼ିରେ ଖୁନ୍ଦା ହେଉଚି, ସିନ୍ଦୁକରେ ସନ୍ଦୁକେ ଅଳଂକାର। ପୋଇଲୀ ପରିବାରୀ ଅଛନ୍ତି ଖଟିବାକୁ। କୋଉ ସୁଖରେ ଊଣା ଯେ, ସ୍ୱାମୀ ନ ହେଲେ ଚିନ୍ତା କଣ ?

ଉମା ସୁନ୍ଦରୀ ଭାରି ଅଭିମାନୀ। ଅଭିମାନ ଆହୁରି ଗଉଁ ଧରି ବସନ୍ତି। ସେ ବଡ଼ଘର ଝିଅ; ଟିକେ କଥା ହେଲେ କହନ୍ତି– ମୋତେ ଛାଡ଼ିଦିଅ, ମୁଁ ବାପ ଘରକୁ ଯିବି। ଏଠି ବାର ଲୋକର ବାର ବୋଲଣା[୫] ସହି ପାରିବି ନାହିଁ। ମଲା ମୋର, ମୋ' ବାପରେ କିସର ଅଭାବ ଯେ, ଏଠି ପଡ଼ି ପୋଇଲୀଙ୍କ ହାଉଳି[୬] କଥା ଶୁଣିବ ?

---

(୧) ଦରଜ, (୨) ରୋଷେଇଆ, ବ୍ରାହ୍ମଣ, (୩) ଗୀତବାଜା, (୪) ପରି, (୫) ଗାଳି, ଉଘାଣ, (୬) ଏଣୁତେଣୁ

ଥରେ କୃଷ୍ଣ ତା' କଥାରେ ଭାରି ଖପାହୋଇ[1] ବାପ ଘରକୁ ପଠେଇ ଦେଲେ। ସେହିଦିନୁ ଆସି ଦେଢ଼ ବରଷ ହେଲା, ଉମା ବାପ ଘରେ। ଏହି ଭିତରେ ସାଆନ୍ତେ କାହାକୁ ନକହି, ନ ବିଚାରି ରତନୀକି ବିଭା ହେଲେ। ହେଲେ କଥାଟା ଲୁଚିବ କୁଆନୁ। ବିଭା ହବାର ଛ ମାସ ନ ଯାଉଣୁ ଉମା ବାପଘର ଖବର ପାଇଲେ। ଉମା ଏ କଥା ଶୁଣି ପହିଲି ତା' ମନଟା କେମିତି ହେଇଗଲା, ପରେ କହିଲା, ହ ଯେତଟା ବାହା ହେଲେ ମୋ' ଗୋଡ଼ ତଳକୁ ତ। ଉମା ମାଁ ସଂସାରି ମଣିଷ। ସେ ଭାରି ଦୁଃଖରେ ନାରେଣୀ ଦେଈଙ୍କ ଖବର ପଠେଇଲେ। ନାରେଣୀ ଦେଈ ଏ କଥା ଶୁଣି ତାଙ୍କ ମୁଣ୍ଡରେ ଆକାଶ ଛିଣ୍ଡି ପଡ଼ିଲା। ସେ ସେହିକ୍ଷଣି ସୁଆରୀରେ ବସି, ଆରଦିନ ସକାଳେ ସରଦେଇପୁରରେ ହାଜର।

ଘରେ ଗୋଡ଼ ଦେଲାମାତ୍ରେ ରତନୀକି ଦେଖି ଆଗେ ବହେ ଗାଳିଦେଲେ। ରତନୀ ଆଗ ଶାଶୁର ଚର୍ଚ୍ଚା– ବୁଝିଲା। ସେ କିନ୍ତୁ କାହାରି ପାଣି ଛୁଇଁଲେନାହିଁ। କହିଲେ ତୁ କି ଘରବୋଲି କି ଘର ଝିଅ, ତୋ' ହାତରୁ ପାଣି ଛୁଇଁବି।'' ଏ ଅନ୍ୟାୟ କଥା ବରଦାସ୍ତ କରିବା ଭଳି ପ୍ରକୃତି ରତନୀଠି ନଥିଲା। ସେ କହିଲା, ''ମୋତେ ମିଛକୁ ଗାଳି ଦିଅନାଁ, ତମ ପୁତୁରାକୁ ପଚାର।'' ସାଆନ୍ତେ ଘରେ ନଥିଲେ। ଆସି ଶୁଣିଲେ, ଅପା ଆସିଛି। ପୁତୁରାକୁ ଦେଖିଲା ମାତ୍ରେ ନାରେଣୀ ଦେଈ ଆହୁରି ପାଟିକଲେ। କହିଲେ– ମୋତେ ନ ବିଚାରି, ନ ପଚାରି ଗୋଟାଏ ଅଇଁଠାଖାଇ ଘର ଝିଅକୁ ଆଣି ଆମ ବଂଶରେ ପୂରେଇଲୁ। ଆମ ଇଜ୍ଜତ ମହତ ଗଲା; ଆଉ ତୋ' ହାତରୁ କିଏ ପାଣି ଛୁଇଁବ। ତୁ ପୁଣି ମୋତେ ମୁହଁ ଦେଖାଉଛୁ।'' ପୁତୁରା ତା' କଥାରେ ପାଟି ନ ଫିଟେଇ କହିଲେ, ହଉ ବଜାରକୁ ସରବା ଯିବ, ଜଳଖିଆ ଆଣିଦେବ ଖା'। ବୁଢ଼ୀ କହିଲା– ନାଁ, ମୁଁ ତୋ' ମୁହଁ ଚାହିଁବିନାହିଁ, ଆଗେ ବତା'[2] ଏ ଅଲକ୍ଷଣୀକି କୋଉଠୁ ଆଣିଛୁ। ତାରପରା ବୋହୂ ତୋତେ ପସନ୍ଦ ହେଲାନାହିଁ, ଏଇ ଚେପିଟିନାକୀ, ଉଚ୍ଚୁକପାଳୀ ଥନ୍ତଲପେଟୀ ତୋର ପସନ୍ଦ ହେଲା। ଆଜି-କାଲିକା ପିଲାଏ ପରା ଭାରି ଅବାଧ। ଆମ ବଶରେ[3] ଅଛନ୍ତି ଯେ ଆମେ କହିମୁଁ ବୋଲିମୁଁ।'' ଏହା କହି ବଡ଼ ପାଟିରେ କାନ୍ଦିବାକୁ ଆରମ୍ଭ କଲେ। ତାଙ୍କ ବ୍ୟସ୍ତରେ କୃଷ୍ଣ ତାଙ୍କ ଗୋଡ଼ତଳେ ପଡ଼ିଗଲେ, କହିଲେ– ମାଁ ତୁ, ଅପା ତୁ, ମାଇଲେ ମାର୍, ଜିଆଇଲେ ଜିଆ। ହେଲେ କଥାଟା ବୁଝ! ତୁ କହୁଛୁ ତାକୁ ସେ କି ଘର, ହଉ ଆଗକରି କହ ମୁଁ କି ଘର ବୋହୂ, ମୋ' ପିଉସା ଦନାର୍ଦ୍ଦନ ଛୋଟରା' ମାଇଁଶା ମଙ୍ଗଳପୁର ବାଇଧର ଜେନାର ମାମୁ ପୁଅ ଭାଇଟି। ଆଉ ଏ ବୋହୂ ତାରି ନିଜ ଝିଆରୀ। ପଦନ ଜେନା, ଉଦୟ ଜେନା ଏକା ମାଁର ଦି'ପୁଅଟି। ଏ ବୋହୂ ପଦନର ପୁଅ, ବିଦିଆର ଝିଅ।

ବୁଢ଼ୀ ଏତକ ଶୁଣି ଟିକେ ନରମ ହେଲା। ରତନୀ ଆସି ଗୋଡ଼ତଳେ ପଡ଼ି, ହାତଧରି ଉଠେଇଲା। ବାରରକମ ଆଣି କତିରେ ବସି ଶାଶୂକୁ ଖୁଆଇଲା। ଶୋଇଲାରୁ ନିଜେ ଯାଇ ଗୋଡ଼ ଘସି-ଦେଲା। ତା ଶିଷ୍ଟାଚାରରେ ବୁଢ଼ି କ୍ରୋଧ ଭୁଲିଗଲା। ଟିକେ ପ୍ରେମ ହେଇଗଲାରୁ କହିଲା, ଯା ପିଉସାର ବାପ, ଆଉ ତୋ' କକେଇ ବାଇଧର ମାଁ, ଏକା ମାଁ ପେଟର ଭାଇ

(୧) ରାଗିଯାଇ, (୨) ସ୍ପଷ୍ଟଭାବରେ ବୁଝେଇଦେବା, (୩) କଥାରେ, ଅଧୀନ

ଭଉଣୀ। ସେଇ ଲେଖାରେ ତୋ' ବାପ, ମୋ' ଦିଅର। କୃଷ୍ଣ ବାହାହେଲା, ଭଲକଲା। ହେଲେ ମୋତେ ଟିକେ ବିଚାରିଥାନ୍ତା, କି ଲୋଡ଼ିଥାନ୍ତା।

ଏତିକିବେଳକୁ ହରି ଘର ଭିତରକୁ ପଶି ଆସୁଥିଲା। ଅପା କଥା ତା' କାନରେ ପଡ଼ିବାରୁ ସେ କହିଲା, ''ତୋତେ ବିଚାରିଥିଲେ ଆମ ବାହାଘରଟା ଆଉ ଉଠିଥାନ୍ତା? ବୋହୂକୁ ସମାନ ବୁଝିବୁ ପରା କଜିଆଖୋରଣୀ, ନଅଦୁଣୀ। ରତନୀ ଲାଜରେ ମୁହଁ ତଳକୁ ପୋତିଲା।

ଚାରିଟାବେଳେ ରତନୀ ଗଲା ରୋଷେଇଶାଳକୁ ରାନ୍ଧି, ଅଉ ଗୁରୁଚରଣ, ହରି ବସି ଅପା ଆଗରେ ବାହାଘରର ସବୁ କାରଖାନା ଗୋଟି ଗୋଟି ବୟନା(୧) କଲେ। ବୁଢ଼ୀ ଶୁଣି ହସି ହସି ତା'ପେଟ ପରାସ। ଝରକାବାଟେ ରତନୀ ଚାହିଁଲା, ଶାଶୂ ଭାରି ହସୁଛନ୍ତି। ଦାମା ଆସି କହିଲା ''ଢାଉଁଇ ସାଆନ୍ତାଣି, ଅପାସାଆନ୍ତାଣୀଙ୍କ ଆଗରେ ସାନ ସାଆନ୍ତେ ଆଉ ଗୁରୁଚରଣ ନାନା ବାହାଘରର ସବୁ କଥା ବୟାନ କଲେଣି। ରତନୀକି ଶୁଣି ଆହୁରି ଲାଜ ମାଡ଼ିଲା।

ପୁତୁରା କତିରେ ବୁଢ଼ୀ ରହିଲେ, ଦି'ମାସ। ବୋହୂର ଗୁଣକ୍ରିୟାରେ ପହିଲି ପହିଲି ଚିଡୁଥିଲେ। ତାଙ୍କର ଚିଡ଼ିବାର କାରଣ, ରତନୀ ବେଶି ଲାଜ କରୁ ନଥିଲା। ସମସ୍ତଙ୍କ ସାଙ୍ଗରେ ମିଳାମିଶା କରୁଥିଲା। କିନ୍ତୁ ଦେଖିଲେ, ସେ କାମରେ ଭାରି ଫୁର୍ତ୍ତି, ସ୍ୱାମୀର କଥାରୁ ପାଦେ ଟଳେ ନାହିଁ(୨)। ନିଜ ହାତରେ ନ ତିଅଣ, ଦଶ ଭଜା କରି ସ୍ୱାମୀ, ଶାଶୂଙ୍କୁ ପରଶୁଛି, ସମସ୍ତେ ଖାଇ ସାରିଲେ, ଆପେ ଖାଇବସୁଛି। ଚାକରଙ୍କ ଖିଆପିଆ ପ୍ରତି ତାର ଭାରି ଆଖି। କେହି ତା' କଥାକୁ ବାହାର ନୁହେ। ଘର ଗୋଟାକ ଚଳେଇ ଏଣେ ଦି'ପହରିଆ ବସି ପାଠପଢୁଛି। ନିତି ଘଣ୍ଟାଏ ଅରଟରେ ସୂତା କାଟୁଛି, କଳ ଘରଘର କରି, ଜାମା ଜୋଡ଼ ସିଲେଇ କରି ପକଉଛି। କାଁଇଶି ତାଲା ସିଉଁଚି, ଚିତ୍ର ଆଙ୍କୁଚି। କୋଉ କଥାରେ ଊଣା ନୁହେ। ତା'ଠି ପୁଣି ଫେସନ କିଛି ନାହିଁ। ସ୍ୱାମୀର ଇଚ୍ଛା ଯାହା, ତା' ଇଚ୍ଛା ତା'ହି। ତାଠି ଦେଖିବ ନାହିଁ ସରୁଲୁଗା, ବାସନା ତେଲ, ଅତର। ତାଠି ଦେଖିବ ନାହିଁ ଅଳସପଣ।

ଦିନେ ସଞ୍ଜୁଆ ପିଇସୀ, ପୁତୁରା ପିଣ୍ଡାରେ ବସି ଦୁଃଖସୁଖ ହେଉଛନ୍ତି, ରତନୀ କଥା ପକେଇ ବୁଢ଼ୀ କହିଲେ ''ତୋ' ବୋହୂନାଁ ରତନୀ, ତା' ଗୁଣ ରତନ।'' ପରେ ଦୀର୍ଘଶ୍ୱାସ ପକେଇ କହିଲେ, ଉମା ଏଇଉଳି ତୋ କଥା ମାନିଥିଲେ ଆଜି କପୂର ଚୂରିଥାନ୍ତା। ହେଲେ ସେ କଣ ଶୁଣିଲା? ଆଗ ପଛ ବିଚାରିଲା?

କୃଷ୍ଣ ଦୁଃଖରେ କହିଲେ– ବଣର ବାଘକୁ ଆଣି ବଶ କଲି। ସେ ବଡ଼ଘର ଝିଅ ହେଇ କୁବୁଦ୍ଧି ଧରିଲା! ହେଲେ ତାକୁ ମୁଁ ଛାଡ଼ି ଦେଇ ନାହିଁ, ଟିକେ ଚେତୁ, ତେବେ ଆଣିବି। ନୋହିଲେ ପରଙ୍କୁ ଆମେ କିଆଁ ଉପଦେଶ ଦବୁଁ? ଆମ ଘରସୁନା ତ ଭେଣ୍ଡି, ଆମେ ପରକୁ ତିଆରିବୁଁ, ତମେ ଭଲହୁଅ, ସଉକି ଛାଡ଼, ଆପଣା ଦେଶର ମହତରଖ। ସେଦିନୁ କହିଥିଲେ ଲୋ ଅପା, ବଡ଼ଘର ଝିଅ ଆଣିବ ନାହିଁ। ବଡ଼ଘରେ ଝୁଅ ଦବ। ବଡ଼ଘର ଝୁଅ ଆଣି ଏ

(୧) ବର୍ଣ୍ଣନା, (୨) ଅସ୍ୱୀକାର ନ କରିବା

ହଟହଟା[୧], ସେ ନା ସ୍ୱାମୀ କି ମାନିଲା, ନାଁ ଶାଶୂକୁ ମାନିଲା। ତାକୁ କି ସ୍ତିରୀ କହିବ ? ସେ ନିତାନ୍ତ ଅଲକ୍ଷ୍ମୀ। ଅଲକ୍ଷ୍ମୀ ପୁରୁଷ ପୁଅକୁ ଆଶ୍ରୟ କଲେ, ପୁରୁଷ ପୁଅ ସଉଲା। ଆମ ଦେଶର ଆଉ ଏଡ଼େ ଦୁର୍ଗତି କାହିଁକି ? ଝିଅଯାକ ଗୃହଲକ୍ଷ୍ମୀ ହବା ଦୂରେ ଥାଉ, ଅଲକ୍ଷ୍ମୀ ହେଲେଣି। ସ୍ୱାମୀଭକ୍ତି ଗଲାଣି। ତାଙ୍କର ଚୁଲ୍ଲିରେ, ଗହଣା ଲୁଗା ହେଲାଣି ସାର ପଦାର୍ଥ। ମୁଁ ଉମାକୁ ଏଇ ଶିକ୍ଷା ଦେବା ମାନସରେ ଯା କଲି। କହିଲି ତ ହେଲା ନାହିଁ। ବୋଲିଲି ତ ନାହିଁ। ପଦେ କହିଲେ– ଗଳାରେ ଦଉଡ଼ି ଦବାକୁ ଗଲା। ଟିକେ ଅସନ୍ତୋଷ ହେଲେ, ବାପ ଘରକୁ ଦାଗିଲା[୨]। ମୁଁ ଏବେ ମର୍ଦ୍ଦପୁଅ, କାହାଁତକ ଜନାଞ୍ଜଳି ହେବି। ସେହି ଯୋଗୁଁ ଗରିବ ଘର ଝୁଅ ଟିଏ ବାହାହେଲି। ସେ ହେଲେ ଘର ଗରିବ। ଆମେ ହେଲୁ ଗାଁ ଜମିଦାର। ଆମ ଘରେ ଆମ ବୋହୂମାନେ ଆମକୁ ଅମାନ୍ୟା କରିବେ, ଆଉ ପରଜାଏ ଆମଠୁ ଦେଖି ଶିଖିବେତ। ପ୍ରଜାଙ୍କ ଲାଗି ବିନା ଦୋଷରେ ଜାନକୀ ପରା ସତୀଭାର୍ଯ୍ୟାକୁ ଶ୍ରୀରାମ ବଣକୁ ପଠେଇଲେ। ସ୍ତିରୀ ଆମଠୁ ହାତେ ବଡ଼ିଲେ। ଆଉ ଧର୍ମ ରହିବ ?

ନାରେଣୀ କହିଲେ, ''ହଁରେ ପୁଅ, ଏବେ ବୁଝିଚି, ମୁଁଇ ତାକୁ ମୁହଁଦେଇ ସର୍ବନାଶ ବାଟରେ ନେଇଚି, ସେତେବେଳେ ମୋଠୁ ମୁହଁ ପାଇ ନ ଥିଲେ, କିଜାଣି ଅବା ତୋ' କଥା ମାନିଥାନ୍ତା। ମୁଁ ତା' ପକ୍ଷ ହେଲାରୁ ସେ ତ ସମସ୍ତଙ୍କୁ ଗୋଡ଼ରେ ଦଳିଲା[୩]। ଏଇଟା ମୋର ବଡ଼ ଭୁଲ୍।

କୃଷ୍ଣ କହିଲେ- ଯା' ହବାର ହେଇଚି, ନେଡ଼ି ଗୁଡ଼ କହୁଣାକି ବୋହି ଗଲାଣି। ହେଲେ ସେ ବି ବୋହୂ। ମୁଁ ତାକୁ ଫୋପାଡ଼ି ଦେବିନାହିଁ। ଯେତେ ଦିନ ରାଗରେ ବାପ ଘରେ ଅଛି, ଥାଉ। ରାଗ ଭାଙ୍ଗିଲେ ଆସିବ। ନାରେଣୀ ଦେଇ ଦୁଃଖରେ ଦୀର୍ଘଶ୍ୱାସଟିଏ ପକେଇ କହିଲେ– ଆଉ ରାଗ କଣ ସଦାଦିନ ରହିବ। ମୁଁ ବୁଢ଼ୀ ହେଲିଣି, ଆଜି ଅଛି କାଲି ନ ଥିବି, ହେଲେ ମୋ' ରାଣ, ତାକୁ ମୋଟେ ଫୋପାଡ଼ିଦବୁ ନାହିଁ। ପାତର ଅନ୍ତର କରିବୁ ନାହିଁ। ତା' ମାଫିକେ[୪] ତାକୁ ଚଳେଇବୁ। କୃଷ୍ଣ ହଁ ଭରିଲେ। ବୁଢ଼ୀ ତୋଷ[୫] ହୋଇ ଜପ କରିବାକୁ ଉଠିଗଲେ। ରତନୀ ଶାଶୂର ଜପକରିବା ଥାନଟି ଆପଣା ହାତରେ ପରିଷ୍କାର କରି, କୋଥଳୀ ଥୋଇ, ଫୁଲ ତୁଳସୀ ପତ୍ର ସଜାଡ଼ି ରଖିଥିଲା। ବୁଢ଼ୀ ତାର ଭକ୍ତି ଦେଖି କହିଲେ– ମୁଁ କଲ୍ୟାଣ କରୁଚି, ତୁ ଯେମିତି ସଭିଙ୍କ ମନ ନେଇଚୁ, ପରିମେଶ୍ୱର ସେମିତି ଏକା ତୋତେ ଉତ୍ତମ ସୁନ୍ଦର ବାଳକ ଦିଅନ୍ତୁ।''

ଏମିତି ଯାଙ୍କ ଦିନ କଟିଲା। ହେଲେ ଗେଲହୀ ଖବର କ'ଣ ବୁଝିବା। ରତନୀ ବାହାଦିନୁ ଗେଲହୀ ମନ ସୁଖ ନଥାଏ। ଦିନ ରାତି ଲୋକାକୁ ଶୋଧୁଥାଏ। କଜିଆ କରୁଥାଏ, ଆଉ କାନ୍ଦୁଥାଏ। ଲୋକା ଭାବିଲା– ଆଉ ନୁଚେଇବା ଭଲ ନୁହେଁ। ଗୋଟିଏ ସୁଆରୀ ବନ୍ଦୋବସ୍ତ କଲା। କହିଲା, ମାଉସୀ ଚାଲ୍, ତୋ' ଝିଅକୁ ଦେଖି ଆସିବୁ। ଗେଲହୀ ପହିଲି ପହିଲି ନାହିଁ କଲା। ମୋ' ଝିଅ ମଲାଣି କହି ଗାଳିଦେଲା। ହେଲେ ଲୋକା ବଳାତ୍କାରି[୬] କରି ନେଇଗଲା। ପାଲିଙ୍କି ପହଞ୍ଚିଲା ସିଧା ଜମିଦାର ଓଆସରେ। ଗେଲହୀ କୋଠାବାଡ଼ି ଦେଖି

(୧) ହଇରାଣ, (୨) ପଳେଇବା, (୩) ବେଖାତିର କରିବା, (୪) ଅଧିକାରମତେ, (୫) ଖୁସି, ତୃପ୍ତ, (୬) ବାଧ

କହିଲା, ''ହଇରେ ଏଠି କୋଉଠି ଆଇଲୁଁ? ଏଠି ରତନୀ ଅଛି? ଲୋକ କହିଲା– ଏଇଠି ଅଛି'', , ସବୁ କୋଠାବାଡ଼ି ତାର। ଗେଲ୍‌ହୀ ତ ଅବାକ୍[୧]। ମଝି ଅଗଣାକୁ ପଶିଗଲା ମାତ୍ରେ ଦେଖିଲା, ରତନୀ ଖଣ୍ଡେ ମଠାଲୁଗା ପିନ୍ଧି ଚଉରା ମୂଳେ ପୂଜା କରୁଛି। ତା' ଦେହରେ ସୁନା ରୂପା ଅଳଙ୍କାର ପୂରିରହିଛି। ହାତରେ ମୁଠାଏ ସୁନା ଚୁଡ଼ି, ଖଡୁ, କାନରେ ସୁନା ଫୁଲ, ବେକରେ ସୁନା ମାଳ, ଗୋଡ଼ରେ ମଲ, ଅଣ୍ଟାରେ ସରୁ ତାଗାହାର। ସେତେ ଢ଼ଙ୍ଗର ଅଳଂକାର ବି କେବେ ଦେଖି ନଥିଲା। ତା' ଆଖି ଖସି ପଡ଼ିଲା। ମାଁକୁ ଅନେଇ ଦେଇ ରତନୀର ଛାତି କୁଣ୍ଢେ ହେଲା। ଜମିଦାର ଜୁଆଁଇ ପାଇ ଗେଲ୍‌ହୀ ମହା ଆନନ୍ଦ। ହେଲେ ବେଶି ଦିନ ଝିଅ କତିରେ ରହିଲା ନାହିଁ। ସେହିଟା ଦାଣ୍ଡକୁ ଅଶୋଭା[୨] ଭାବି କୃଷ୍ଣଚନ୍ଦ୍ର ନିଜେ ତା'ପାଇଁ ଲୋକା ଘର କତିରେ କୋଠା ଦି'ବଖରା କରିଦେଲେ। ପରମା ଆଉ ସତିଆ ମାଙ୍କୁ ସାଙ୍ଗରେ ଦେଲେ। ବୁଢ଼ୀ ସୁଖରେ ବସିଖାଇଲା। ତା' ଖୋରଣୀପଣ ତୁଟିଗଲା। ବାଇଧର ଘର ଏ ଖବର ପାଇଲେ। ଏତେ ଦିନ ଗେଲ୍‌ହୀକି ପଚାରୁ ନଥିଲେ। ଏଥର ତା' ଝିଅ ଜମିଦାରକୁ ବିଭାହୋଇଛି ଶୁଣି, ବଳେ ବଳେ ଯାଇ ତା' ସଙ୍ଗେ ମିଶିଲେ। ଗେଲ୍‌ହୀ ମଧ ପୂର୍ବରାଗ ଭୁଲିଗଲା।

ସେତେବେଳକୁ ବାଇଧରର ଉତ୍ତମା ବୋଲି ଷୋଳ ବରଷର ଭାରି ସୁନ୍ଦରୀ ଝିଅଟିଏ ଥାଏ। ଗେଲ୍‌ହୀ ଠିକଣା କରି, ଝିଅକୁ ପଟେଇ[୩] ଶେଷକୁ ତାକୁ, ହରିକି ହାତକୁ ଦି'ହାତ କଲେ। ଗୁରୁଚରଣକୁ ବି ଗୋଟାଏ ବାହା କରିଦେଲେ। ତା' ଭାରିଯା ନାଁଟି ମଞ୍ଜୁଳା। ଭାରି ସୁନ୍ଦରୀ। ବାହାଘର ହେଲା। ଭାରି ଆନନ୍ଦ ହେଲା। ଏକା ଏଇଟା ପୁଣି ତାଙ୍କ ବଂଅଶର ଶେଷ ବାହାଘର। ବାହାଘରେ କଣ କରିବେ, ବଳେ ବଳେ ବଡ଼ ବୋହୂ ଉମାସୁନ୍ଦରୀଙ୍କି ଆଣିଲେ। ଉପା ସାନ ସଉତୁଣୀକି ଦେଖି ପହିଲି ଭାରି ବିରସ ହେଲା। ପରେ ରତନୀ ତାକୁ ଆଦର କରି ବଡ଼ ଭଉଣୀପରି ମାନ୍ୟ ଯତ୍ନକରି କତିରେ ରଖିଲା। ତାର ବି ମତିଗତି[୪] ଫେରିଲା।

କିଛିଦିନ ପରେ ରତନୀର ପୁଅଟିଏ ହେଲା। ବଡ଼ ଆଦର କରି ନାଁ ଦେଲେ ହେମଚନ୍ଦ୍ର। ସୁଖର ସୀମା ରହିଲା ନାହିଁ। ଦି' ସଉତୁଣୀ ସ୍ୱାମୀର ମନ ଯହିଁରେ ସୁଖ ହବ, ସେହି କଥା କରି ଚଳିଲେ। କୃଷ୍ଣ ବି ପାତର ଅନ୍ତର କଲେନାହିଁ, ଦୁହିଁଙ୍କର ପିଲାପିଲିରେ ଘର ପୂରିଲା।



## ''ସାତ କଥା''

ଆଗରୁ ଶୁଣିଛ, କୃଷ୍ଣବାବୁଙ୍କ ବାପ ଯଦୁମଣିଙ୍କର ଦୁଇ ସଂସାର ଥିଲା। ସେ ମଲାବେଳେ ବଡ଼ ଭାରିଯା ପୁଅକୁ ଜ୍ୟେଷ୍ଠଭାଗ, ସାନ ଭାରିଯା ପୁଅକୁ ସାନଭାଗ ଦେଇ ଯାଇଥିଲେ। ବଡ଼ ପୁଅ ଶିବ ସବୁ ବୁଝୁଥିଲେ। ଶିବଙ୍କର କାଳ ହେଇଗଲା। ତାଙ୍କ ବୋହୂ

(୧) ଆଶ୍ଚର୍ଯ୍ୟ, (୨) ଅସୁନ୍ଦର, (୩) ହାତକରି, ନିଜର କରି, (୪) ମନ, ଆଚରଣ।

ଯାଇ ବାପଘରେ ଉଠିଲେ। ତାଙ୍କର ପିଲାପିଲି ନଥିଲା। ସେହି ସଙ୍କାଶୁ ଶାଶୂ ମୋଟେ ତାଙ୍କୁ ଦେଖିପାରୁ ନଥିଲେ। ନବୀନ ତ ସନ୍ନ୍ୟାସୀ ହେଇ କୁଆଡ଼େ ଗଲେ ତା' ଠିକଣା ନାହିଁ। ବଡ଼ ଭାଗତକ ଦି' ବାଣ୍ଟ ହେଇ ଗୋବିନ୍ଦ ଆଉ ବୀର ପାଇଲେ। ସାନଭାଗ ବାଣ୍ଟ ବଖରା ହେଲାନାହିଁ। କୃଷ୍ଣ ହେଲେ ଜମିଦାର, ହରି ବଡ଼ ଭାଇଙ୍କି ମାନି ଚଳିଲେ। ତାଙ୍କ କଚେରୀ ହେଲା ଶରଦେଈପୁର। ସେଠି, ଉପା, ରତନୀ ଆଉ ଉରମା ରହିଲେ, ସୁଖରେ ଘର କଲେ।

କୃଷ୍ଣବାବୁ ଭାରି ଦେଶଭକ୍ତ। କେମିତି ଆମ ଦେଶର ଭଲ ହେବ, ଏଇଟା ତାଙ୍କର ଭାରି ଭାଳେଣି[୧] ଥାଏ। ସେ ଆପଣା ରାଜ୍ୟର ଭାରି ଉନ୍ନତି କଲେ। ଠା' ଠା' କୂଅ ଖୋଳେଇଲେ, ଠା' ଠା' ପୋଖରୀ ଖୋଳେଇଲେ, ଠା' ଠା' ବାଗ୍‌ବଗିଚା କଲେ, ନୂଆ ନୂଆ ନଡ଼ିଆମାଳ, ଗୁଆମାଳ, ଆମ୍ବତୋଟା ସବୁହେଲା। ତାଙ୍କର ହୁକୁମ୍‌ଥିଲା, ତାଙ୍କ ଇଲାକାର ଧାନ ଚାଉଳ ଅନ୍ୟଆଡ଼େ ଯିବନାହିଁ। ତେବେ ଯଦି ଧାନ ମହଙ୍ଗା ହେଲା, ଗରିବ ପ୍ରଜାଙ୍କ ଖଜଣା ମାଫି[୨] କଲେ, କୋଠରୁ ଧାନ ଦେଇ ତାଙ୍କ ପରିବାର ପୋଷିଲେ। ତାଙ୍କ ରାଇଜର ଛତିଶପାଟକ ଜାତି ଏକାଠି ମିଳିମିଶି ରହିଲେ। ହେଲେ ଏକଥା ସବୁ ଏକା ଦିନକରେ ହେଇ ନଥିଲା। ଅନେକ ଟଙ୍କା ଖରଚ, ଅନେକ ପରିଶ୍ରମ ପରେ ହେଲା। ପହିଲି କ'ଣ ହେଲା ଶୁଣ। ସାଆନ୍ତେ ଦେଖିଲେ ପ୍ରଜାଏ ବଡ଼ ମୂର୍ଖ। ଯାଙ୍କୁ ବିଦ୍ୟା ନ ଦେଲେ ତ, ଯାଙ୍କୁ ଯେତେ ମାଠୁଥିବ ମାଠ, ସେହି ଦରପୋଡ଼ା କାଠ, ହେଇଁ ରହିବେ। ଯା ଭାବି ଆପଣା ଇଲାକରେ ଚାହାଳିଗୁଡ଼ିଏ[୩] ବସେଇ ଦେଲେ। ଅବଧାନ ସବୁ ରହିଲେ। ସେଠି ଓଡ଼ିଆ ପାଠ, ଅଙ୍କ, ପଟା ପାଉଡି ପଢ଼ିବା, ଏଇ ସବୁ ଶିକ୍ଷାହୁଏ। ଆଉ ଗାଁଯାକ ହୁକୁମ୍[୪] ଦେଲେ– ସଭିଏଁ ମାଗଣାରେ ଆପଣା ପିଲାଙ୍କୁ ସେଠି ପାଠ ପଢ଼ିବାକୁ ଛାଡ଼ିବେ। ନୋହିଲେ ଜୋରିମାନା। ଅବଧାନଙ୍କୁ କୋଠରୁ ଦରମା ମିଳିଲା। ଏହିପରି ପନ୍ଦରଟା ଷୋଳଟା ଚାହାଳୀ ବସିଲା। ପୁଅ ଝିଅ ସେଠି ସଭିଏଁ ଏକାଠି ପଢ଼ନ୍ତି। ପଢ଼ା ଖାଲି ଦୁଇ ଚାରି ବର୍ଷଯାକ। କିଲାସ ଉଠିଲେ, କାଗଜ ନାହିଁ କି ସାର୍ଟିଫିକେଟ୍ ନାହିଁ। ବାବୁଙ୍କ ମତରେ ପାଠ ଘୋଷି ପରୀକ୍ଷାରେ ଲେଖି ଦେଇ ଗୋଟାଏ କାଗଜ ପାଇଲେ କିଛି ଦିଗଜ[୫] ପଣ୍ଡିତ ହବନାହିଁ। ପେଟରେ ପାଠଥିଲେ ଗଲା। ଓଡ଼ିଆଙ୍କୁ ଏ ପାଠ ବଡ଼ ଆରେଇଲା[୬]। କେତେଟା ବରଷ ପରେ ତାଙ୍କ ରାଇଜରେ ଆଉ କେହି ନିରକ୍ଷର ରହିଲେନାହିଁ। ତାଡ଼ି ଖଟି ସବୁ ଉଠିଗଲା। ଗାଁ ଗାଁ ଭାଗବତ ଘର ବସିଲା। ସେଠି ନିତି ସନ୍ଧ୍ୟାରେ ବାହ୍ମଣ ପୋଥି ବୋଲିଲେ। ଗାଁବାଲା ଆସି ଶୁଣିଲେ। ଆଗ କାଳର ରାମ ଲକ୍ଷ୍ମଣ, ପଞ୍ଚୁପାଣ୍ଡବ ଆଦି କଥା ଶୁଣି ତାଙ୍କ ମନ ବି ଭଲ ହେଲା। ଭାଗବତ ଶୁଣିବାକୁ ବୁଢ଼ାମାନେ ବି ମେଳ ହେଲେ। ବାହ୍ମଣଙ୍କୁ କୋଠରୁ ଖଞ୍ଜା, ଆଉ ବରତନ[୭] ମିଳିଲା। ସେହିଠି ପାଞ୍ଚ ପଞ୍ଚୁ ନ୍ୟାୟ ନିଷାପ କଲେ।

ସେମିତି ପଠାଣସାହିମାନଙ୍କରେ ଗୋଟିଏ ଲେଖା ପଠାଣୀ ମୋଖତବ୍[୮] ବସିଲା। ସେଠି ପଠାଣ ପିଲାଏ ମୌଲବି ପାଖରେ ଉର୍ଦ୍ଦୁ, ଆରବୀ ପଢ଼ିଲେ। ସେହି ମୌଲବି ପୁଣି ତାଙ୍କୁ କୋରାଣ[୯] ପଢ଼ି ଶୁଣାଇଁଲେ।

---

(୧) ଚିନ୍ତା, (୨) ଛାଡ଼, (୩) ସ୍କୁଲ, (୪) ଆଦେଶ, (୫) ଜଗତ ବିଖ୍ୟାତ, (୬) ମନକୁ ପାଇବ, (୭) ବେତନ, (୮) ସ୍କୁଲ, (୯) କୋରାନ, ମୁସଲମାନଙ୍କର ଧର୍ମଗ୍ରନ୍ଥ।

ପ୍ରତି ଗାଁରେ ଗୋଟିଏ ଖେଳ ଆଖଡ଼ା ହେଲା, ସେଠି ଶନିବାର ରବିବାର ଗାଁ ପିଲାଏ ଖେଳ ଦେଖେଇଲେ। କୁସ୍ତି ନଡ଼ିଲେ। ଜମିଦାର ପ୍ରଜାଙ୍କ ମନ ନବାଗ୍ଭ, ପ୍ରଜା ବି ପାଞ୍ଚ କାମରେ ତାଙ୍କ ସାହାପକ୍ଷ[୧] ହେଲେ। ସାଆନ୍ତେ ଗାଁ ଗାଁରେ ଗୋଟିଏ ସାଧାରଣ ଚାନ୍ଦା ଖାତାଖୋଲି ସେ ଗାଁର ପାଞ୍ଚଭଲଲୋକ ହାତରେ ସମର୍ପି ଦେଲେ। ସେଥିରେ ସେ ଗାଁର ଉନ୍ନତି ସକାଶେ ଯେ ଯାହା ସ୍ୱଚ୍ଛମନରେ ଦେଲା, ସେହି ପାଞ୍ଚ ପଇସା ରହିଲା। ଗାଁରେ କୂଅ ଖୋଳା ହଉ, ଗରିବ ଦୁଃଖୀ ସକାଶେ ହଉ, ରୋଗ ଚ୍ଛଇରାଗ ସକାଶେ ହଉ, ସେଇ ପାଣ୍ଠିରୁ ଖରଚ ହଉଥିଲା। କାହା ଘରେ ନିଆଁ ଲାଗିଗଲା। ତାର ସର୍ବସ୍ୱ ପୋଡ଼ି ଜଳିଗଲା। ସେ ସେହିଥିରୁ ଘର ବନେଇବାକୁ ଟଙ୍କା ସାହାଯ୍ୟ ପାଇଲା। ଗାଁ ଗାଁ ପୁଣି ଅରଟଘର ବସିଲା। ଲୋକେ ସେଠି ସୂତାକାଟି ଶିଖିଲେ। ଖାଲି ଏତିକି ନୁହଁ, ମାଇପି ଲୋକେ କେମିତି ଭଲ ହେବେ, ଏ କଥାରେ ସାଆନ୍ତଙ୍କର ଭାରି ଚିନ୍ତା ଥାଏ। ହିନ୍ଦୁଘରେ, ପଠାଣ ଘରେତ ଭାରି ପରଦା। ସେ ତ ପଦାକୁ ବାହାରି ପାରିବେ ନାହିଁ। ଦେଶଚିନ୍ତା ତାଙ୍କୁ ପୁଣି କିଆଁ ଲାଗିବ ? ହେଲେ ସାଆନ୍ତେ ଗୋଟାଏ ଉପାୟ କଲେ। ଭାବିଲେ, ନାହିଁ ମାମୁଁରୁ କଣା ମାମୁଁ ଭଲ। ଦିନେ ରତନୀକି ପାଖରେ ବସେଇ ମନକଥା କହିଲେ। କହିଲେ– ଦେଖ, ମୁଁ ସିନା ମରଦ ପୁଅଙ୍କ ସକାଶେ ବାର କଥା କରିବି। ଝିଅଙ୍କ କଥା ତମ ଦିହିକି ଲାଗିଲା। ତେମେ ସବୁ ଗାଁ ସ୍ତିରୀଙ୍କି ଆପଣା ଉଆସକୁ ପାଲିଙ୍କି ପଠେଇ, ସମିଏ ସମିଏ ଆଣି, ତାଙ୍କ ସାଙ୍ଗେ କଥା ଭାଷା ହୁଅ। ଗ୍ରାମୋଫୋନ୍ ବଜେଇ ତାଙ୍କୁ ଶୁଣାଅ, ପୁଣ୍ୟ ପର୍ବଦିନ ବଡ଼ଘର ବୋହୂ ଝିଅଙ୍କୁ ନିମନ୍ତଣ କର। ତାଙ୍କ ସାଙ୍ଗେ ପାଞ୍ଚ କଥା ହୁଅ। ସେହିମାନେ ଭଲ ହେଲେ, ଆମ ଦେଶଟା ଭଲ ହବ।''

ବାବୁଙ୍କ କଥାରେ ରତନୀ ମହା ଆନନ୍ଦ ହେଲା। ସେଠି ସେ, ଉମା ଆଉ ଉରମା ମିଶି ନିତି ସନ୍ଧ୍ୟାରେ ଗାଁ ସ୍ତିରୀଙ୍କି ଆଣି ଗ୍ରାମୋଫୋନ୍ ଶୁଣେଇଲେ। ସେଠୁ ବସି ପାଞ୍ଚକଥା ପକେଇଲେ। କଥା ଭିତରେ ତାଙ୍କୁ ନାନାଶିକ୍ଷା ଦେଲେ। ଆପଣା ଦେଶ କେମିତି ଭଲ ହବ, ଲୋକେ ଆପଣା ଦେଶ, ନିଜ ବେଭାର କଲେ କ'ଣ ଫଳହବ, ସେ ସବୁ କହିଲେ।

ଦିନେ ମହାପାତ୍ର ଘର ବୋହୂ ଝିଅ ଆସିଥାନ୍ତି ଗ୍ରାମୋଫୋନ୍ ଶୁଣି। ସେମାନେ ଭାରି ବଡ଼ଲୋକ। ଜାତିରେ ବାହ୍ମଣ। ଆଉ ତାଙ୍କ ଘରପୁଅମାନେ ବଡ଼ ଚାକିରିଆ। ସେମାନେ କୃଷ୍ଣବାବୁ ଘରକୁ ଚଷାବୋଲି ପଛାଡ଼େ ଟାପରା[୨] କରନ୍ତି। ସେଦିନ ତାଙ୍କ ବୋହୂମାନଙ୍କୁ ଦେଖି ଆଗ ଖୁବ ଗୋଟାଏ ହସିଲେ। ଏ ତାର, ସେ ତାର ଆଖି ଠରାଠରି ହେଲେ। କଥା କ'ଣ ନାଁ, ଏମାନେ କେଡ଼େ ଭେସେଡ଼ା[୩], ମୋଟରା ଖଦିଲୁଗା ସବୁ ପିନ୍ଧିଛନ୍ତି। ''ତାଙ୍କ ହସ, ତାଙ୍କ ଢ଼ଙ୍ଗରେ ରତନୀ ମନେ ମନେ ଦୁଃଖହୋଇ କହିଲା, ''ମାଉସି, କି କଥା ଦେଖି ହସିଲ ?'' ମାଉସୀ ହଉଛନ୍ତି ମହାପାତ୍ରଙ୍କ ଭାରିଯା। ସେ କହିଲେ, ''ତେମେ ସବୁ ଯୋଉ ଅଖା[୪] ପିନ୍ଧିଚ, ତାଙ୍କୁ ଦେଖି ଆମେ ହସିଲୁ। ଯାକୁ କେମିତି ବୋହିବ, ଚମ ଛିଣ୍ଡି ଯାଉଥିବ, ଅଣ୍ଟା କାଟି ହୁଏନାହିଁ ?'' ରତନୀ ସରଳ, ସେ କହିଲା, ଆମେ ଜାତି ଚଷା, ଆମ ଚଉଦ

(୧) ପଟ, ତରଫ, ସାହାଯ୍ୟ କରିବା, (୨) ପରିହାସ, (୩) ବେଲଜ୍ୟା, (୪) ବସ୍ତା, ମୋଟା ଲୁଗା।

ପୁରୁଷ ମୋଟ ଖଦି ପିନ୍ଧିଆସିଛନ୍ତି। ଏ ହେଲା ଆମ ବାରି କପାରୁ ତିଆରି। ମୁଁ ନିଜେ କାଟିଚି। ଆମେ ଲାଜ ଘୋଡ଼େଇବାପାଇଁ ପର ଦୁଆରକୁ ଯିମୁଁ କିଆଁ?

ମାଉସୀ ବଦୂପରେ ହସିଦେଇ କହିଲେ, ''ଏବେ ବୁଝିଲି, ତେମେ ସବୁ ନନାଙ୍କ ଅପରସନ[୧] ହେଇଚ। ହେଲେ ମୁଣ୍ଡବାଡ଼େଇ ଦେଲେ ବି ଆମ ଦି' ହାତରେ ଏ ମୋଟ ଖଦି ଚଳିବ ନାହିଁ। ମାଁ ଲୋ, ଦେହ ଲସେଇ[୨] ପଡ଼ିବ।''

ଉମା ଥିରଭାବରେ କହିଲା, ''ମୁଁ ବି ଆଗରେ ସେହିକଥା କହୁଥିଲି ମାଉସି, ହେଲେ ଆଜିକାଲି ସୁଖରେ ମୋଟା ପିନ୍ଧୁଛି। ବିଲାତୀ ଲୁଗା ଖଣ୍ଡେ ମୋ ପେଡ଼ିରେ ପକାଇବ ନାହିଁ।''

ଉମା ଭାରି ଖାନଦାନ ଘର ଝିଅ। କଥା ଶୁଣି ମାଉସୀ ଆଉ କିଛି କହିଲେ ନାହିଁ।

ସେମିତି ସେଦିନ ପଟ୍ଟନାୟକ ଘର ଆସିଥାନ୍ତି। ତାଙ୍କ ଘର ସ୍ତ୍ରୀମାନେ ପରଚର୍ଚ୍ଚା, ପରନିନ୍ଦାକୁ ସମ୍ବଳକରି ବୁଲନ୍ତି। ଯୋଉଠି ବସିଲେ ସେଠି ପରଚର୍ଚ୍ଚା, ପରଘରର ପଞ୍ଚକଥା। ଗଲା ଝିଅରୁ ବୋହୂରୁ, ଶାଶୂ ପର୍ଯ୍ୟନ୍ତେ; କେହି କାହାକୁ ଊଣା ନୁହନ୍ତି। ସେମାନେ ଭାବିଥିଲେ, ଯାଙ୍କ ଘରବି ସେହିପରି ହେଇଥିବେ। କଥା ପଡୁପଡୁ ପଟ୍ଟନାୟକ ଭାରିଯା ସୁଲକ୍ଷଣା କହିଲେ– ହଇକିଏ ଶୁଣିଚ, ତେମେସବୁ ଦୋପଟି[୩] ଜଗମୋହନ ଝିଅ କଥା! ସେପରା ରାତିରାତି ଲୁଚି ଶାଶୂଘରୁ ପଳେଇଆସିଚି।'' ରତନୀ ଉତ୍ତର କଲା, ଆମଚିନ୍ତା ଆମକୁ ଗରୁ, ପରଘର ଚିନ୍ତାରେ ଆମକୁ କିସ ମିଳିବ। ମୁଁ ଶୁଣିଯାଏ ନାଁ। ସେ ସବୁକଥା ଶୁଣି ସୁଲକ୍ଷଣା ଟିକେ ଅପ୍ରସ୍ତୁତ ହେଇ କହିଲେ, ''ତମର ସବୁ କି ଚିନ୍ତା ବା! ପୋଲାରେ[୪] ଖାଇ ମେଲାରେ ଶୋଉଚ। ଅଣ୍ଡିରାଙ୍କ ପରି ବାହାରେ ବୁଲୁଚ, ବାଜଣା ବଜଉଚ, ନାଟ ତାମାସା କରୁଚ।'' ରତନୀ ଏକଥା ଶୁଣି ମନେ ମନେ ବିରକ୍ତ ହେଲା। ହେଲେ ଆପଣାକୁ ସମାଳି ନେଇ[୫] କହିଲା– "ନାନି! ଆମେ ଅଣ୍ଡିରାଙ୍କ ପରି ପଦାକୁ ବାହାରୁ ସତ, ସେଥିରେ ପଞ୍ଚ ଭଲ କାମ ହଉଚି। ଗରିବଗୁରୁବା ଘରକୁ ଯାଇ ରୋଗୀ ଦୁଃଖୀଙ୍କି ଦେଖୁ, ପ୍ରଜାଙ୍କ ହାନିଲାଭ ବୁଝୁ, ହେଲେ ଘରେ ବସି ପରଚର୍ଚ୍ଚା ଆମକୁ ପୋଷାଏ ନାହିଁ। ପର ପରିମେଶ୍ୱର କହନ୍ତି ନେଇଁ– ପରନିନ୍ଦା କଲେ ନରକେବାସ। କାହାରେ ଭଲ କହିବୁଁ। ହଁ ଶୁଣିଲା ବାଲା ଦୋଷି, କହିଲା ବାଲା ଦୋଷି।'' ପଟ୍ଟନାୟକ ଭଉଣୀ କଳାବତୀ, ରତନୀ କଥାଶୁଣି ବାଆଁରେଇ ହେଇ କହିଲେ, ''ହଁ ସେ କଥାରୁ କି ଖାଇବ। ଏ ବୋହୂଟା ବଡ଼ ସରଳିଆ, ତା' ପେଟରେ କଥାରହେ। ତାର ଜାଗା ଅଜାଗା ନାହିଁ। ଛାଡ଼ ଛାଡ଼ ସେ କଥା। ହଇକିଏ ହେମବୋଉ, ତମଘରେ କୁଆଡ଼େ ଆପଣା ହାତରେ ସୂତା କାଟୁଚ ସବୁ। ଏତେ ସୂତା କଣକର? ରତନୀ ହସି ହସି କହିଲା– ସୁଖଲାଗେ କାଟୁ, ତନ୍ତିକି ଦେଇ ଲୁଗାବୁଣେଇ ପିନ୍ଧୁ; ଖଦି ଭଣ୍ଡାରମାନଙ୍କୁ ଆମର ସୂତାଚାନ୍ଦା ଯାଏ।'' ପଟ୍ଟନାୟକ ମାଁ ବୁଢ଼ୀ ଯଶୋଦାମଣି କହିଲେ, ''ହ, ଏଇ ମୋଟ ନୁଗାରେ ଏକା ଗାନ୍ଧି ମହାତ୍ମା ଦେଶ ଉଦ୍ଧାର କରି ପକେଇବେ। ମୋର ବିଶ୍ୱାସ ନାହିଁ। ଯୋଉଁ ଅଖାଦେରେ[୬] ହେଇଚି, କେମିତି ସମାଳିବ ଆଗ।''

---

(୧) ନନ-ନୋଅପରେସନ, ଅସହଯୋଗ, (୨) ଘୋଳେଇ ହେବା, (୩) ଡିପୋଟି, ବଡ଼ ଅଫିସର, (୪) ମାଗଣା, ବିନା ପରିଶ୍ରମ, (୫) ସବୁଜାଣି ଗୁରୁତ୍ୱ ନ ଦେବାପରି ଛଳନା କରିବା, (୬) ଅଖା ପରି

ଉରମା କହିଲା, ଆମର ଅଭ୍ୟାସ ହେଲାଣି, ଅଖାହଉ, କଥାହଉ, ଆମ ଦେଶରେ ଯେତେବେଳେ ସରୁ ଲୁଗା ନାହିଁ। ଆମେ କୋଉଠୁ ଆଣିମୁଁ "ଯେ ଦେଶ ଯାଇ, ସେ ଫଳ ଖାଇ।" ପଟ୍ଟନାୟକ ସାନଝିଅ ଚନ୍ଦ୍ରାବତୀ ଆଶ୍ଚର୍ଯ୍ୟ ହେଇଁ କହିଁଲା, "କିଆଁ, ଏଇ ମୁଁ ତ ସରୁନୁଗା ପିନ୍ଧିଚି, ଦୋକାନରେ ଯାହାକୁ ଯେତେ। " ଉମା କହିଲା, ସେ କଣ ଆମଦେଶ ନୁଗା? ସେତ ଅନ୍ୟ ଦେଶରୁ ଆଉଚି, ଆମ ପେଡ଼ି ପଇସାରେ ଆମେ କିଆଁ ପରଲୁଗା କିଣିମୁଁ? ରମା କହିଲା– ସେଥିରେ ହେଲା କଣ, ନୁଗା ତ ପିନ୍ଧିବ, ଆମଦେଶ କଣ, ତମ ଦେଶ କଣ? ଆମ ଦେଶର ନୁଗାରେ କଣ ପଇସା ଖର୍ଚ୍ଚ ନୁହଁ?

ରତନୀ କହିଲା– ଖଦିରେ ତ ବେଶି ଖରଚ। ଖରଚ ସକାଶେ କିଛି କଥାନାହିଁ। ପଇସାଟା ଆମ ଦେଶରୁ ଯାଇ ବିଦେଶରେ ରହୁଛି। ଆମେ ପରା ଦରିଦ୍ର ହଉଚେଁ, ଓଳିଏ ଖାଇବାକୁ ପାଇଲେ, ଆଉ ଓଳିକି ଦାନା ନାହିଁ। ଖାଲି କଣ ନୁଗା ? କାଚକୁହ, ସିନ୍ଦୂର କୁହ, ଚିନିକୁହ, ନୁଣକୁହ, ଛୁରୀକୁହ, କଇଁଚିକୁହ, ନିଆଁକାଠି[୧] ଆଦିକରି ଆମକୁ ପରା ପର ଦୁଆରେ ହାତପତେଇ ଆଣିବାକୁ ହଉଚି। ହାତ ପତେଇଲାଠୁ ହୀନ ଅଛି? ଆମ ବାବୁଙ୍କର ଏ ସବୁ ଶିକ୍ଷା।

ବୁଢ଼ୀ ଯଶୋଦାମଣି କହିଲେ, "ତମ ପାଠ ତେମେ ବୁଝ, ହେଉ ଲୋ ମାଁ, ତେମେ ଏକା ଦେଶ ଉଦ୍ଧାରକରି ସ୍ୱରଗ ଯିବ, ଆମେ ନରକରେ ପଡ଼ି ଘାଣ୍ଟି ହମୁଁ।"

ତାଙ୍କ ପଣ୍ଡିତ କଥାଶୁଣି, ତାଙ୍କ ଝିଅ ଗୁଲବଦନୀ କହିଲା, "ବାବା ଗାନ୍ଧି ନୁହନ୍ତି, କି ଦିଅ ଦେବତା ନୁହନ୍ତି, ଆମେ କଥାଟା ଭଲ ବୋଲି ମାନିମୁଁ ସତ, ହେଲେ ଏତିକି ମୋଟରା କନ୍ଥା ଦିହରେ ଦେଇ ସମାଳି ପାଇଲେ ତ ହବ। ମୁଁ ତ ଗରମରେ ମୂର୍ଚ୍ଛାଯିବି। ମୋ ଦି' ହାଡିରେ[୨] ତା' ଚଳିବ ନାହିଁ। ତା' କଥା ଶୁଣି ଏମାନେ ତୁନି[୩]। ଆଉ କହିବେ କ'ଣ?

ଏମିତି କିଛିଦିନ ଗଲା। ପଠାଣଙ୍କ ଇଦ ପଇଲା। ସେଥର ପଠାଣ ସାହିରେ ସଭିଏଁ ଗୋରୁ କୋରବାଣି କରିବାଲାଗି ଠିକଣା କରିଥାନ୍ତି। ହିନ୍ଦୁ ଟୋକାଙ୍କ କାନରେ ଏ କଥା ପଡ଼ିଗଲା। ପଠାଣ ଯେତେବେଳେ ଗାଈ ବେକରେ ଫୁଲମାଳହାରିକା ପକେଇ ମହାମଉଛବ କରି କୋରବାଣି ଥାନକୁ ଯାଉଛନ୍ତି, ଭେଟିଲେ ତ ତାଙ୍କୁ ଏ ପଞ୍ଚାକ। ସେଠୁ ଲାଗିଲା ଦି' ପକ୍ଷର ଭାରି ପିଟାପିଟି। ମାଡ଼ଗୋଳ। ତାଙ୍କ ହୋହା ଘୋଘାରେ ଦାଣ୍ଡ କମ୍ପି ଯାଉଥାଏ। ମାଇପେ ତରସ୍ତ[୪] ହେଇ ଘର କୋଣରେ ଲୁଚିଥାନ୍ତି। ସାଆନ୍ତେ ଗାଁଆରେ ନ ଥାନ୍ତି। ହରି ଆଉ ଗୁରୁଚରଣ ଘଟଣା ଯାଗାକୁ ଗଲେ। ସେତେବେଳକୁ ଲୋକେ ଆଟପଟାଳ। ହୋ ହାରେ କିଏ କାହା କଥା ଶୁଣୁଚି, କିଏ ଧରିଚି ଠେଙ୍ଗା, କିଏ ଧରିଚି ବାଡ଼ି, କାହା ହାତରେ ଅଛି ଟାଙ୍ଗିଆ। କିଏ ପୁଣି ବିଲରୁ ନଙ୍ଗଳ ଫାଳ ଘିନି ଦଉଡିଛି। ପୁଲିଶ ଆସି ଠିଆ ହେଲେଣି। ଧରାଧରି ଲାଗିଲାଣି।

---

(୧) ଦିଆସିଲ, (୨) ଦେହରେ, (୩) ନିରବ, (୪) ଭୟଭୀତ, ଆତଙ୍କିତ।

ହରି ଆଉ ଗୁରୁଚରଣ ଜୀବନର ମାୟା ନ ରଖି ମଝିରେ ପଶିଲେ। ପାଟି କରି ଡାକିଲେ "ଥିର ହୁଅ, ଥିର ହୁଅ। ସାଆନ୍ତଘର ଲୋକ ଦେଖି ପ୍ରଜାମାନେ ଟିକେ ଚପିଂ ଗଲେ। ଯାହାକୁ ଯେମିତି ବୋଧବାଧ ଦେଇ ବଡ଼ କଷ୍ଟରେ ଦଙ୍ଗା ହେଙ୍ଗାମା ଭାଙ୍ଗିଲେ। ସେ ଦିନଟା ଗଲା। ଆର ଦିନ ଆଖଡ଼ା ପଡ଼ିଆରେ ବସିଲା ସଭା। ସାଆନ୍ତ ବି ଏ ଖବର ପାଇ କଟକରୁ ସେହି ରାତି ରାତି ପଳେଇ ଆଇଲେ। ସଭାରେ ସାଆନ୍ତେ ଠିଆ ହେଇ ହାତଯୋଡ଼ି କହିଲେ, "ଭାଇମାନେ, କିବା କଥାକୁ ତମେ ସବୁ ଏନେ କାଣ୍ଡଟା କରି ବସିଲ। ଟିକେ ଥୟ ଧରି ଭାବ। ଗାଈ ଆମ ହିନ୍ଦୁ ଶାଆସ୍ତ ମତରେ ଗୋମାତା ସତ, କିନ୍ତୁ ମଣିଷ ଜୀବନ ସବୁଠୁ ବଡ଼। ଗୋମାତାଙ୍କୁ ରକ୍ଷା କରିବାକୁ ଯାଇଁ ଯେ ତେମେ ଭଗବାନଙ୍କ ପିଲାଙ୍କୁ, ଦେଶମାତାଙ୍କ ପୁଅଙ୍କୁ ମରାମରି କଟାକଟି କଲ। ଯେଝା ଶାସ୍ତ୍ରମତେ ଯେ ଚଳିବେ। ତା' ବୋଲି ଧର୍ମ ନାଁରେ କଳିଗୋଳ, ମାଡ଼ ପିଟାପିଟି, ମୁଣ୍ଡ ଫଟାଫଟି, କଣ ଭାରି ବାହାଦୁରି?" ତାଙ୍କର କଥା ପଦେ ନ ସରୁଣୁ ସଭା ଭିତରୁ ଜଣେ ଉଗ୍ରମୂର୍ତ୍ତି ହିନ୍ଦୁ ଲୋକ ବାହାରିପଡ଼ି କହିଲା, "କିଆଁ, ଗୋବଧଠୁ ବଳି ପାପ ନାହିଁ। ପଠାଣ ଗୋରୁ ମାରିବେ, ଆମେ ଅନେଇ ଦେଖୁଥିବୁଁ। ତା କଥା ଶୁଣି ପଠାଣ ପଞ୍ଚାଏ ଉଠି ଠିଆ ହେଇଗଲେ। ସଭା ଥଳରେ ଯୁଦ୍ଧ ଲାଗିଯିବ ପରା। ଯା ଭାବି ପୁଣି ସାଆନ୍ତେ ବଡ଼ ପାଟିରେ କହିଲେ, ଭଗବାନ ନାମରେ ଥିରହୁଅ, ଥିରହୁଅ। ଗୋବଧ ହିନ୍ଦୁଧର୍ମ ମତରେ ଭାରି, କିନ୍ତୁ ହିଁସା ସହସ୍ର ଗୋବଧଠୁ ବଳି। ତେମେ ମଣିଷ ମଣିଷ ହିଁସାହିସିଁ ହେଇ ଭଗବାନଙ୍କ ରାଇଜକୁ ଲହୁ ରକତରେ ବୁଡ଼ାଅ ନାହିଁ, ମୁଁ ହାତଯୋଡ଼ି କହୁଚି, ଭଲରେ ଭାବି ଦେଖ, ହିନ୍ଦୁ କିଏ, ମୁଷଲମାନ କିଏ, ଏକା ମାଁଆଙ୍କର ଦୋଟି ପୁଅ। ଜଣକ କଷ୍ଟରେ ଆର ଜଣଙ୍କର କଷ୍ଟ। ଦିଗୋଡ଼ରୁ ଗୋଟାଏ ଛୋଟା ହେଲେ ଆଉ ଚାଲି ହବ ତ? ଦି'ଆଖିରୁ ଗୋଟାଏ କଣା ହେଲେ କେତେ କଷ୍ଟ। ଆଗ ପଛ ଭାବି ଦେଖ। ଆମ ଦେଶ କଳିଆ ଦଙ୍ଗାରେ ଛାରଖାର[2] ହେଲା। ରାଇଜରୁ ଧରମ ପଳେଇଲା। ଭାଇ ଭାଇ, ଏକା ନାହିଁ ଦି'ଖଣ୍ଡ। ଏପରି କଳିକଳିଆ କରି ଗୋରାଙ୍କ ଆଗରେ ଆପଣା ଛୋଟପଣିଆ ଦେଖେଇଲଟି। ଦଉଡ଼ିଟା ଛିଣ୍ଡେଇବା ଶକତ କଥା, ସୂତା କେରାକ ଫୁଟୁକିନା ଛିଣ୍ଡିଯିବ। ଏ ସବୁ ଭାବିବ, ଚିନ୍ତିବ, ତେବେ ଯାଇ ଦେଶର ମଙ୍ଗଳ ହବ। ହିନ୍ଦୁ କଣ ଛେଳି ମଇଁଷି ବଳି ଦଉନାହାନ୍ତି? ଧରମ ସକାଶେ ଆପଣା ଭାଇର ତ୍ରୁଟି[3] ସହିବା କ'ଣ ତମ ପକ୍ଷରେ ଭଲ ନୁହଁ କି? ଖାଇବା ସକାଶେ ଗୋରୁ ହାଣିଲେ ମହାପାପ। ମୁଁ ସେହିଟାରେ ହିଁ ଭରିବି ନାହିଁ। କାହିଁକି ନା ଆମେ ତା ଦୁଧ ଖାଉଚୁ। ଦୁଧ ପରି ବଳିଷ୍ଠ ଚିଜ କ'ଣ ଅଛି? ଘିଅ ପରି ଶ୍ରେଷ୍ଠ ଜିନିଷ ଆଉ କ'ଣ ଅଛି? ଆମ ପିଲାଏ ପିଲାଦିନୁ ଘିଅଦୁଧ ଖାଇ ତାଜା[4] ହେବେ। ଗୋରୁ ମାରିଲେ ଘିଅଦୁଧ ପାଇବୁ କୋଉଠୁ? ହେଲେ ଧରମ କଥାଟା। ଦିନକ ସକାଶେ ତମକୁ ଭଗବାନଙ୍କ ମୁହଁ ଚାହିଁ ଦେଶର ହିତ ଚିନ୍ତି ସହ୍ୟ କରିବାକୁ ପଡ଼ିବ। ନୋହିଲେ ଗୋଟାଏ ଗୋରୁ ବଦଳି ଚାରିଟା ମଣିଷ ପ୍ରାଣଯିବ। ଜାତି ଜାତି ଭିତରେ, ଭାଇ ଭାଇ ଭିତରେ ହିଁସାହିଁସି, ରେଷାରେଷି ଲାଗି ଦେଶ ଉଚ୍ଛନ୍ନ ଯିବ। ଏଇଟା କ'ଣ ଭଲ?

---

(୧) ଚୁପ୍ ହୋଇଯିବା, ଦବିଯିବା, (୨) ନଷ୍ଟ, (୩) କ୍ଷତ. (୪) ସତେଜ

ସେ ଦନ ସଭା ସରୁ ସରୁ ରାତି ୯ଟା ହେଲା। ସାଆନ୍ତ ବଡ଼ ଟକାସିଁ ହେଇ ଘରକୁ ଗଲେ। ରାତିରେ ତାଙ୍କୁ ପଙ୍ଖା ବିଞ୍ଚୁ ବିଞ୍ଚୁ, ଗୋଡ଼ ଚିପୁ ଚିପୁ ରତନୀ ଆଉ ଉମା ସବୁ ହାଲ ପଚାରିଲେ। ସାଆନ୍ତ ତାଙ୍କୁ ଗୋଟି ଗୋଟି କରି ସବୁ କହିଲେ। ଶୁଣି ସେମାନେ ଭାରି ଦୁଃଖ କଲେ।

ଉମା କହିଲା "ମଲା, ଏମାନେ ମଣିଷ ମାରି ଧରମ ଅରଜୁଛନ୍ତି। ସାଆନ୍ତେ କହିଲେ– ଦେଖୁଛ ତ ହାଲ। ବୁଝେଇ ବୁଝେଇ ଥକିଲିଣି। ବୁଝିଲେ କି ନାହିଁ କିଏ ଜାଣେ?

ହେଲେ ସେହିଦିନୁ ଆଉ ସେ ଅଞ୍ଚଳରେ ହିନ୍ଦୁ ମୁସଲମାନ ଦଙ୍ଗା ହେଙ୍ଗମା କଥା ଶୁଣା ନାହିଁ। ବେଶ୍ ମିଳିମିଶି ଚଳିଲାଗିଲେ। ଆରବର୍ଷ ଇଦ ବେଳେ ଯେତେବେଳେ ମୁସଲମାନ ଛେଳି ଘେନି କୋରବାଣି କଲେ, ହିନ୍ଦୁମାନେ ମିଶି ତାଙ୍କୁ ଧନ୍ୟ ଧନ୍ୟ କହିଲେ। ସାଆନ୍ତେ ଗୋଟିଏ ସଭାକରି ତାଙ୍କୁ ଭାରି ପ୍ରଶଂସାକଲେ।

ସାଆନ୍ତଙ୍କ ସବୁ ହେଇ ତିନିପୁଅ, ଚାରି ଝିଅ ହେଲେ। ରତନୀର ଦି' ପୁଅ ଦି' ଝିଅ। ବଡ଼ ନାଁ ହେମଚନ୍ଦ୍ର, ସାନ ନାଁ ପ୍ରେମଚନ୍ଦ୍ର। ଉମା ପୁଅ ନାଁ ସୁଧୀରଚନ୍ଦ୍ର। ଉରମାର ଏକାକେ ଚାରିପୁଅ ଆଉ ଝିଅଟି। ତା' ପୁଅଙ୍କ ନାଁ ହେଲା ବସନ୍ତ, ଶରତ, ହେମନ୍ତ, ଶିଶିର, ଆଉ ଝିଅମାନଙ୍କ ନାଁ ଦେଲେ ଉରମା, ଝିଅ ନାଁ ପ୍ରିୟତମା; ଉମା ଝିଅ ନାଁ ସୁଷମା, ରତନୀ ଝିଅ ନାଁ ଶ୍ୟାମା, ସରମା! ଏତେଗୁଡ଼ିଏ ପିଲାଙ୍କୁ ମାଁମାନେ ଭାରି ଯାବତାରେ² ରଖିଥିଲେ।

ମାଁମାନେ ଦି'ଅକ୍ଷରେ ଜାଣନ୍ତି। ପିଲାଙ୍କୁ ଧରି, ପିଲାଟିଦିନୁ ବିଦ୍ୟା ପଢ଼େଇଲେ, ଖେଳ ଶିଖେଇଲେ, ଧର୍ମ କଥା କହିଲେ। ଗାଆଣା ବାଢଣା ଶିଖେଇଲେ। ଜମିଦାର ଘର ପିଲା ହେଲେ ମଧ ମୋଟଖିଆ, ମୋଟପିନ୍ଧାରେ ତାଙ୍କୁ ପିଲାଟି ଦିନୁ ଚଳେଇଲେ।

ଦିନେ ବ୍ରଜବନ୍ଧୁ ମାଁହିରିକା ବୁଲି ଆସିଥିଲେ। ପିଲାଏ ଚାହାଳୀରୁ ଆସି ଖାଇ ବସିଲେ। ତାଙ୍କୁ ଦିଆଗଲା ପଖାଳଭାତ, ଆଳୁ ବାଇଗଣ ଭରତା। ତାଙ୍କ ଖିଆ ଦେଖି ବ୍ରଜମା ଚମକି ପଡ଼ି ଉମାକୁ କହିଲେ, ଏ ଦେଇ, ତମ ପିଲାଏ ବେଶ ସୁଧୀରା। ଯା ଧରି ଯେ ଭାତ ଘିନୁଛନ୍ତି, ଆମ ପିଲାଙ୍କୁ ତ ଖଜା ରସଗୋଲା ଦେଲେ ବି ଅବୁଝା। ଉରମା ଜିଭ କାମୁଡ଼ି କହିଲା, "ନାନି ତମେ ପିଲାଙ୍କୁ ବଜାର ଜଳଖିଆ ଖୁଆ।"

ବ୍ରଜମାଁ ହସି ହସି କହିଲେ, "ମଲା, କଣ ହେଲା, ରାଇଜ ଲୋକ ଖାଉଚନ୍ତି, ଆମର ଏତେ କିଏ ବାଟିବ, ଘଷିବ, ପିଠାପଣା କରିବ? ଉମା କହିଲା, "ଆଛା ତମର କି କାମଟି! ନିତିନାଁ ତାସ ପଶାପାଲି ଖେଳୁଚ, ଆଉ ପିଲାଙ୍କୁ ବଜାର ଜଳଖିଆ ଖୁଆଉଛ। ଏଥିରେ ଦେହ ଭଲ ରହେତ? ବ୍ରଜ ମା ଗର୍ବରେ ଫୁଲି କହିଲା, "ଆମ ଘରେ ନିତି ବଇଦ, ନିତି ଡାକତର। ଆମ ବାବୁ, ପିଲାଙ୍କ ଦିହ ଟିକେ ଇସ୍‌ଜିନା ହେଲେ ବଡ଼ ଡାକତରଙ୍କୁ ଘିନିଯିବେ। ଆମ ପିଲାଏ ବଡ଼ ସୁକୁମାରିଆ। ରତନୀ କହିଲା, "ପିଲାଟି ଦିନୁ ସୁକୁମାରିଆ³ କରୁଚ, ବଡ଼ ଦିନକୁ କୋଉ କାମର ଯୋଗ୍ୟ ହେବେ ନାହିଁ।" ତାଳେ ପାଣି ତ କାଢ଼ି ପାରିବେ ନାହିଁ।

(୧) କ୍ଲାନ୍ତ, ଅବଶ, (୨) ଯତନ, (୩) ଗେହ୍ଲା, କର୍ମକୁଂଠ

ବ୍ରଜ ମା ବାହାଦୁରି ଦେଖେଇ କହିଲା, ''ମଲା, ବାବୁଘର ପିଲାଏ ପାଣି କିଆଁ କାଢ଼ିବେ, କାଠ କିଆଁ ହାଣିବେ। ସେ କଣ ଆଉ ହଳ କରିବେ, ନାଁ ନଙ୍ଗଳ ଧରିବେ। ତାଙ୍କ ଗୋଡ଼ତଳକୁ କେତେ ଚାକର। ବାପ ଯେତେ ହେଲେ ଡିପୋଟି! ନାଁ ଗାଁ ତ ପଡ଼ିଛି।''

ତାଙ୍କ କଥାରେ ଉମା, ଉରମା ଭରସି କିଛି ଉତ୍ତର ଦେଲେ ନାହିଁ। ହେଲେ ରତନୀ ଛାଡ଼ିଲା ନୁହେ, ସେ କହିଲା, ''ଅଳସୁଆ ହେଇ ମେଜ, ଚଉକିରେ ହାତ ଗୋଡ଼ ଯୋଡ଼ି ବସିଲେ ମଣିଷ ମଣିଷ ହୁଏନାହିଁ।'' ଏଥର ବ୍ରଜ ମା ରାଗି କହିଲା, ''ଆମେ ତ ବାହ୍ମଣ, ଚଷା ନୋହୁ ଯେ ପଖାଳ କଂସାଏ ଖାଇ ବିଲକୁ ଯିବୁଁ।

ରତନୀ କହିଲା, ''ସତ କଥା, ଯାହାର ନାହିଁ ଚାଷ, ତାହାର ନାହିଁ ବାସ। ହାତେ ଅରଜିବୁଁ, ହାତେ ଖାଇବୁଁ। ଗୋଡ଼ହାତ ବାନ୍ଧି କାଠ ମୁଣ୍ଡିଆପରି ବସିବାଟା ମଣିଷଙ୍କୁ ଅଶୋଭା। ସେଥିରେ ମଣିଷପଣିଆ ନଷ୍ଟ ହୁଏ।

ବ୍ରଜମା ଆଉ ପାଟି ଫିଟେଇଲେ ନାହିଁ। ରତନୀହରିକା ତାଙ୍କୁ ସରସ ଦେଖି କହିଲେ, ଆସ ନାନି, ଗ୍ରାମୋଫୋନ ଶୁଣିବା। ତାଙ୍କ ସାଙ୍ଗେ ମୁଁ ବି ଟିକେ ଶୁଣି ଅଇଲି। ଗ୍ରାମୋଫୋନ ଗାଇଲା।

ଉଠ ଉଠ ହେ ତିରିଶ କୋଟି
ଏକମନେ ଏକ ପରାଣେ,
ଏକା ମାଁଆର କୁମର ସଭିଏଁ
ରହିଥାଉ ସଦା ଧିଆନେ !
ଲାଗୁ ହେ ତୁମକୁ ତୁମ ଦେଶଚିନ୍ତା,
ଛାଡ଼ କଳି ଗୋଳ ଅନିଷ୍ଟ ଅହନ୍ତା
ସ୍ୱରଗ ହୁଅନ୍ତା ଏ ଭାରତଭୂଇଁ
ମିଶିଲେ ତୋହରି ସନ୍ତାନେ। ।୧।
ଏକା ଆମ ରକ୍ତ, ଏକା ଆମ ସ୍ୱାର୍ଥ
ମିଛ ହିଂସା ଦ୍ୱେଷ କରୁଛି ବିଅର୍ଥ,
ଛାଡ଼ ନିଜ ସ୍ୱାର୍ଥ ଲୋଡ଼ ହେ ପରାର୍ଥ
ମିଶ ହେ ଭାରତ ସାନ୍ତନେ।
ହିମାଳୟଠାରୁ କୁମାରିକା ଯାଏ
ଉଡୁ ଦେଶେ ଦେଶେ ପତାକା ପରାଏ
ଭାରତର ଜୟ, ଜନନୀର ଜୟ
ଲୟରଖି ଶ୍ରୀ ଭଗବାନେ। ।୨।

ମୁଁ ଗୀତଶୁଣି ଘରକୁ ଅଇଲି। ମନରେ ହେଲା, ଏଇ ନଅତୁଣ୍ଡୀ କଳିଆଖୋରଣୀ ରତନୀ, ନାଁ ଓଡ଼ିଆ କୁଳରତନ ଗୁଣସାଗରୀ। କଥାଟି ସଇଲା ଫୁଲ ଗଛଟି ମଲା। ହଇଲୋ ଫୁଲ ଗଛ, ତୁ କିଆଁ ମଲୁ, ତେତେ ଏତେ ଯତନ କରି ପାଣିଦେଇ ବଢ଼େଇଥିଲି। ଫୁଲଗଛ କହିଲା– ମୋ ଦୋଷ କ'ଣ, ମେତେ ପରା କାଳିଗାଈ ଖାଇଲା। ହଇଲୋ କାଳୀ ଗାଈ, ତୋତେ ପାଳଗଦା ବି ଅଣ୍ଟିଲା ନାହିଁ, କୁଣ୍ଡା ତୋରାଣି ଅଣ୍ଟିଲା ନାହିଁ। ତୁ ଗଲୁ, ମୋର ଏଡ଼େ ଶରଧାର ଫୁଲଗଛ ଖାଇଲୁ। କାଳୀଗାଈ କହିଲା– ସାଆନ୍ତାଣୀ ମୋ ଦୋଷ କଣ। ମେତେ ପରା ମାଧିଆ ଗଉଡ଼ ଜଗିଲା ନାହିଁ। ହଇରେ ଗଉଡ଼ ଟୋକା, ତୁ କିଆଁ ଜଗିଲୁ ନାହିଁ। ଗଉଡ଼ ଟୋକା କହିଲା, ମେତେ ପରା ରତନୀ ସାଆନ୍ତାଣୀ ପଖାଳ ଭାତ କଁସାକ ଦେଲେ ନାହିଁ। ହଇଲୋ ରତନୀ! ତୋର ଏଡ଼େ ଚାତର। ସାଆନ୍ତ ଘରକୁ ଆସି ସାଆନ୍ତାଣୀ ହେଲୁ, ଖଟ ପଲଙ୍କରେ ବସିଲୁଁ। ରତନୀ କହିଲା– ମୋ ଦୋଷ କଣ, ମୋ ପିଲା ପ୍ରେମା ପରା କାନ୍ଦିଲା। ହଇରେ ପ୍ରେମା ତୁ କିଆଁ କାନ୍ଦିଲୁ। ପ୍ରେମା କହିଲା, ମୋ ଦୋଷ କଣ, ମୋତେ ପରା ଧୂଳିଆ ଜନ୍ଦା କାମୋଡ଼ିଲା। ହଇରେ ଧୂଳିଆ ଜନ୍ଦା, ତୁ କିଆଁ ଆମ ପ୍ରେମା ବାବୁକୁ କାମୋଡ଼ିଲୁ। ଧୂଳିଆ ଜନ୍ଦା କହିଲା– ମୋତେ କି ସାମାନ୍ୟ ବୁଝିଛ। ମୁଁ ଧୂଳିରେ ଥାଏଁ, କଅଁଳ ମାଉଁଶ ଟିକିଏ ପାଇଲେ ଗୁଟୁ କିନାଁ କାମୋଡ଼ି ଦିଏ। ମେତେ କଣ ଭଣା ସମଜିଚ। ମୁଁ ପରା ସଂସାର ଠାକୁର ନାଁ ଦେଇଚି ବିଷ୍ଣୁ ଗୁପୁତ। ଧୂଳିରେ ମୋ ଦିହ ଘୋରିପୋରି ହେଇ, କଅଁଳ ମାଉଁଶ ଟିକିଏ ପାଇଲେ ଗୁଟୁକିନା କାମୋଡ଼ି। ହଇରେ ଧୂଳିଆ ଜନ୍ଦା, ବିଷ୍ଣୁ ଗୁପୁତ, ତେତେ ମୋର କୋଟି ଦଣ୍ଡବତ୍।



## (୧)

# ଏ ସୁନ୍ଦରୀଟି କିଏ

ସଞ୍ଜବେଳେ ପୋଖରୀ ହୁଡ଼ାରେ ଗାଲରେ ହାତ ଦେଇ ବସି ଭାବୁଛି, ଏ ସୁନ୍ଦରୀଟି କିଏ ? ଆକାଶରେ ତାରା ଉଇଁଲେଣି, ବାରିରେ ମଲ୍ଲି ଫୁଟିଲେଣି, ଗଛରେ ବାଦୁଡ଼ି ଲାଗିଲେଣି, ଗୁହାଳରେ ଗୋରୁ ପଶିଲେଣି, ହଳିଆ ମୂଲିଆ କ୍ଷେତକାମ ସାରି ବସାକୁ ବାହୁଡ଼ିଲେଣି, କୂଳବଧୂମାନେ ଜଳପୂର୍ଣ୍ଣ କଳସ ଘେନି ଗାଁକୁ ନେଉଟିଲେଣି, ଅଥଚ, ନିଦ ଭାଙ୍ଗୁନାହିଁ, ଏକା ଯାଉ ? ମାଠିଆ ମଙ୍ଗଟି ହାତରେ ଧରି, ପାଣିତୁଠକୁ ଗୋଡ଼ ପାରି, ଗାଲରେ ହାତଦେଇ ବସି ଭାବୁଛି, ଏ କିଏ ? ଏହାର ନୀଳେନ୍ଦିବର-ନୟନରୁ ଉଷ୍ଣ ଅଶ୍ରୁଧାର କିପାଁ ବହୁଛି ? ପାଠକ ! ଏ ଜଣେ ବାଲ୍ୟବିଧବା। ଏହାର ନାମ ଲକ୍ଷ୍ମୀ।

ଅନେକ ଜପତପ, ଦାନଧ୍ୟାନ, ତୀର୍ଥଦର୍ଶନ ପରେ ବିବାହର ଅଠର ବର୍ଷ ବାଦ, ଯେତେବେଳେ କମଳାର ଗୋଟିଏ ସନ୍ତାନ ଜାତ ହେଲା, ସେ ଝିଅ ହେଲେ ମଧ ଆନନ୍ଦରେ ମିଶ୍ରଙ୍କର ଘର ଫାଟି ପଡ଼ିଲା। ମିଶ୍ରେ ଧନୀ, ମହାଜନ; ଧାନ, ଚାଉଳ, ନଡ଼ିଆ, ଗୁଆ, ପୋଲାଙ୍ଗ, ଆମ୍ବ, ପଣସ, ଆଖୁ ଇତ୍ୟାଦି ବଡ଼ ବଡ଼ କାରବାରରେ[1] ବାର୍ଷିକ ଲକ୍ଷାଧିକ ଟଙ୍କା ଆମଦାନି ହୁଏ। ବାଟି[2] ଦି ବାଟି ଧାନ ଜମିରେ ତ ସୁନା ଫଳେ, ଗୁହାଳରେ ଅସଂଖ୍ୟ ଗାଈ ବାଛୁରୀ, ଘିଅଦୁଧରେ ଘର ଭାସୁଛି। ଦାସ, ଦାସୀ, ପୋଇଲି ପରିବାର, ହଳିଆ, ମୂଲିଆର ଅଭାବ ନାହିଁ; କିନ୍ତୁ ସବୁ ଥାଇ ନଥିଲା ଗୋଟିଏ କଥା। ଅର୍ଥାତ୍ ମିଶ୍ରେ ନିଃସନ୍ତାନ। ମିଶ୍ରଙ୍କର ଚାରି ବିବାହ, କିନ୍ତୁ କାହାରି ଅଦ୍ୟାବଧି ସନ୍ତାନ ସୌଭାଗ୍ୟ ଲାଭ ଘଟିନାହିଁ। ଶେଷକୁ ବିବାହର ଅଠର ବର୍ଷ ପରେ ମଧମା ପତ୍ନୀ କମଳାଙ୍କର କନ୍ୟାଟି ଲାଭ। ସେ ପରିବାର ପକ୍ଷରେ କିପରି ମହା ଆନନ୍ଦର ବିଷୟ, ଏହା ସହଜରେ ବୁଝାପଡୁଥିବ। ମିଶ୍ରେ ମହା ସମାରୋହରେ କନ୍ୟାର ଜାତକର୍ମାଦି କଲେ। ତଦୁତ୍ତାରେ ସପ୍ତମ ବର୍ଷରେ ପଦାର୍ପଣ ନ କରୁଣୁ ସର୍ବସୁଲକ୍ଷଣବନ୍ତ ପୀତାମ୍ବର ନାମକ ୧୦ ବର୍ଷ ବୟସ୍କ ବ୍ରାହ୍ମଣ କୁମାର ସହିତ କନ୍ୟାର ବିବାହ କରାଇଦେଲେ। ଲକ୍ଷ୍ମୀ ଚାରି ମାଁର ଅତି ଆଦରର ଦୁଲଣୀ। ପିତାର ନୟନମଣି କହିଲେ ଅତ୍ୟୁକ୍ତି ହେବନାହିଁ। କିନ୍ତୁ ଲକ୍ଷ୍ମୀର କପାଳ ଫାଟିଲା। ଦଶ ବର୍ଷ ବୟସରେ ଲକ୍ଷ୍ମୀ ବିଧବା ହେଲା। ଅତୁଳ ସମ୍ପତ୍ତି,

---

(୧) ବ୍ୟବସାୟ, (୨) କୋଡ଼ିଏ ଏକର

ସ୍ୱାମୀ ସଦାନନ୍ଦ ଓ କୃଷ୍ଣଚନ୍ଦ୍ରଙ୍କର ଉତ୍ସାହରେ ଏବଂ ଶାନ୍ତିର ଯତ୍ନରେ ତାହାର ରଚନା ଦିନୁଁଦିନ ଉନ୍ନତି ଆଡ଼କୁ ଅଗ୍ରସର ହେଲା। ଲୋକେ ଧନ୍ୟ ଧନ୍ୟ କହିଲେ।

କିନ୍ତୁ ଲକ୍ଷ୍ମୀ ଗର୍ବିତା ହେଲା ନାହିଁ। ଶାନ୍ତି କୁଟୀରର ବିଧବା ଆଶ୍ରମରେ ଥାଇ ବିଧବାମାନଙ୍କର ରନ୍ଧାବଢ଼ାଠାରୁ ଘରଲିପା ପର୍ଯ୍ୟନ୍ତ, ସେ ନିଜ ହାତରେ କରୁଥିଲା। ସେ ଯେ ମହାପାପିନୀ, ଜନ୍ମଜନ୍ମାନ୍ତର ପାପକରି ଆଜି ଏପରି ତାହାର ଅବସ୍ଥା-ବିପର୍ଯ୍ୟୟ, ଏହାଭାବି ସେ କର୍ମଫଳ କ୍ଷୟ ସକାଶେ କାର୍ଯ୍ୟ କରିବାକୁ ଲାଗିଲା। ଧର୍ମ ଭାବରେ ତାହାର ହୃଦୟ ପୂର୍ଣ୍ଣ। ନମ୍ରତା, ବିନୟ, ସୌଜନ୍ୟରେ ତାହାର ସର୍ବାଙ୍ଗରେ ଗୋଟିଏ କୋମଳ ସୌନ୍ଦର୍ଯ୍ୟ ଫୁଟି ପଡୁଥିଲା। ଆଉ ତାହାହିଁ ହେଲା ଶାନ୍ତିର ତା'ପ୍ରତି ଅସୀମ ବାତ୍ସଲ୍ୟର ହେତୁ।

ଶାନ୍ତିର ପୁଅବୋହୂ ଥିଲେ, ସ୍ୱାମୀନଣନ୍ଦଙ୍କର ସ୍ନେହ ସୌହାର୍ଦ୍ଦ୍ୟ ସବୁ ସେ ଲାଭ କରିଥିଲେ। କିନ୍ତୁ ବିଧାତା ତାଙ୍କୁ ଦେଇ ନ ଥିଲେ କେବଳ ଗୋଟିଏ କନ୍ୟା। ଆଜି ଲକ୍ଷ୍ମୀ ସେ ଅଭାବ ପୂରଣ କରିଛି। ନିଜର ଆଦର୍ଶରେ, ନିଜର ଶିକ୍ଷାରେ ଗଢ଼ି ନେବାକୁ ଗୋଟିଏ ଝିଅ ଯେପରି ବିଧାତାଙ୍କୁ ଦାନକଲେ। ଶାନ୍ତି ପରମାଦରରେ ସେ ଝିଅଟିକୁ ମଣିଷ କରୁଥିଲେ। ସେତ ତାଙ୍କର ପ୍ରାଣର ଲକ୍ଷ୍ମୀ।

ଘରେ ସଞ୍ଜ ବଳିତା ଜାଳି ଲକ୍ଷ୍ମୀ ଯେତେବେଳେ ଉପାସନା କରିବସିଲା, ଶାନ୍ତି ଆସି ଯୋଗଦେଲେ। ଉଭୟେ ପରମାଦରରେ ଗୀତା ପାଠ ସମାପ୍ତ କଲାପରେ ଲକ୍ଷ୍ମୀ କାନ୍ଦି କାନ୍ଦି ପଚାରିଲା ''ମାଁ ମଣିଷ ଯେ ଯାହା କର୍ମକରେ, ତାହାରି ଫଳ ଭୋଗକରେ; ସେଥିପାଇଁ କଣ ଜଗତରେ ଏତେ ଦୁଃଖ, ଏତେ ଯନ୍ତ୍ରଣା। ମଣିଷ କଣ ନିଜ ଇଚ୍ଛାରେ କର୍ମକରେ? ଭଗବାନ୍ ପରା ସବୁର ନିୟନ୍ତା।'' ଶାନ୍ତି ଲକ୍ଷ୍ମୀର ପ୍ରଶ୍ନର ଗୂଢ଼ାର୍ଥ ବୁଝିଲେ, ତାଙ୍କ ଆଖିକି ପାଣିଆସିଲା। ସେ କୋମଳ କଣ୍ଠରେ କହିଲେ, ''ମା, ତୁ ଯାହା ପଚାରିଛୁ, ସେ ବଡ଼ କଠିନ ପ୍ରଶ୍ନ। ବଡ଼ ବଡ଼ ପଣ୍ଡିତ, ବଡ଼ ବଡ଼ ଜ୍ଞାନୀ ତାହାର ସଦୁତ୍ତର ଦେଇ ପାରି ନାହାନ୍ତି। ମୁଁ ତ ମୂର୍ଖ। କିନ୍ତୁ ମୋ ମନରେ ହୁଏ ମା, ଭଗବାନଙ୍କ ଇଚ୍ଛାରେ ଏକା ଏ ଦୁଃଖକଷ୍ଟ ଜଗତରେ ପୂର୍ଣ୍ଣ। ଆଉ ଏତେ ଦୁଃଖକଷ୍ଟ ଦେଖିଲେ ହଠାତ୍ ମନରେ ହୁଏ, ଭଗବାନ କେଡ଼େ ନିଷ୍ଠୁର। କିନ୍ତୁ ଯେତେବେଳେ ମନରେ ହୁଏ ଜୀବନଟା କେବଳ ୫୦/୬୦ ବର୍ଷର ନୁହେଁ, ସହସ୍ର ଲୋକ ବ୍ୟାପୀ, ସେତେବେଳେ ମନର କଣ ଯେ ହୋଇଯାଏ। ଏ ଦୁଃଖ ଯାତନା ଯେ ଆମକୁ ତାଙ୍କରି କତିକୁ ଟାଣୁଛି। ଏକାବେଳେ ସୁଖରେ ଥିଲେ ଦିନେ ଈଶ୍ୱର ବୋଲି ନାମ ଧରି ଥାଆନ୍ତୁ।

ଲକ୍ଷ୍ମୀ ଏଥର ସତକୁ ସତ କାନ୍ଦିପକାଇଲା। ଆଖି ପୋଛୁ ପୋଛୁ କହିଲା, ''ମାଁ, ମୁଁ ସର୍ବଦା ଭାବେ, ମୋ' ଜୀବନଟା ବ୍ୟର୍ଥ। ଜଗତର ଅକାରଣ ବୋଝ, ମୁଁ ଯେମିତି ଗୋଟିଏ ଜଞ୍ଜାଳପରି ସମାଜରେ ପଡ଼ି ରହିଛି। କିନ୍ତୁ ତମକଥା ଶୁଣି ଭାବୁଛି, ମୋ ଜୀବନର ମଧ ଉଦ୍ଦେଶ୍ୟ ଅଛି। କେଉଁ ଘରେ, କେଉଁ ସମାଜରେ ଜନ୍ମ ହୋଇଥିଲି, ଆଉ ଆଜି ଆସିଲି କେଉଁଠିକି। ଏ କଣ ପ୍ରଭୁଙ୍କର ମାୟା ନୁହେଁ?

ଶାନ୍ତି ଭକ୍ତିଭରେ କହିଲେ ''ଏତ ପ୍ରଭୁଙ୍କର କୃପା। ତୋଦ୍ୱାରା ଓଡ଼ିଶାର ଉପକାର କରିବାକୁ ପ୍ରଭୁ ତୋତେ ଏତେ ଦୁଃଖ ମଧରେ ଏଠିକି ଟାଣିଆଣିଲେ।

ଲକ୍ଷ୍ମୀ– ''ନୋହିଲେ ଯମୁନା ଜଳରେ ମୋହର ଦେହ ପଚି ସାରନ୍ତାଣି । ଆତ୍ମହତ୍ୟା ମହାପାପ, କିନ୍ତୁ ଅସହ୍ୟ ଯନ୍ତ୍ରଣା ନ ହେଲେ କଣ କେହି ଆତ୍ମହତ୍ୟା କରିବାକୁ ଯାଏ । ଓହୋଃ, ଜୀବନରେ ମଣିଷର କେଡ଼େ ମାୟା ।'' ଶାନ୍ତି କିଛିକ୍ଷଣ କ'ଣ ଭାବିଲେ, ତା'ପରେ ଦୀର୍ଘନିଃଶ୍ୱାସ ସହି କହିଲେ, ''ମାଁ! ଓଡ଼ିଆ ଘରେ କଣ ଝିଅ ନାହାନ୍ତି ? ଦେଶରେ ଝିଅଙ୍କ ସକାଶେ ହଜାର ହଜାର କାମ ପଡ଼ିଛି, କିନ୍ତୁ ସମାଜରେ ଆଜି ଝିଅଙ୍କର କି ଦୁର୍ଦ୍ଦଶା । କିଏ ସମାଜର ଦୁଃଖ ସହି ନପାରି ଆତ୍ମହତ୍ୟା କରିବାକୁ ଯାଉଛି, କିଏ କୁଳତ୍ୟାଗ କରୁଛି, ପୁଣି କେଉଁଠାରେ ଅନୁପଯୁକ୍ତ ଶିକ୍ଷା ଫଳରେ ନାରୀର ନାରୀତ୍ୱ ବିଳାସିତାର ଚରମରେ ପରିଣତ ହେଉଛି । କିଏ ଆପଣା ଦୁଃଖରେ ବିଭୋରା; କିଏ ଆପଣା ପଥରେ ଅନ୍ତଃସାରଶୂନ୍ୟା ! ଏ ଦୁଇ ଆଦର୍ଶର କୌଣସିଟା ହେଲେ ନାରୀ ଜାତିର ଉନ୍ନତିକର ନୁହେଁ । ଲକ୍ଷ୍ମୀ ! ତୁ ମାଁ ! ନାରୀର ଆଦର୍ଶ ହେବୁ । ସମାଜ-ସେବିକା ହେବୁ, ମୋହର ଏହି ଆଶୀର୍ବାଦ ।''

ଲକ୍ଷ୍ମୀ ନୀରବରେ ଆଶୀର୍ବାଦ ଗ୍ରହଣକରି କହିଲା ''ମାଁ, ସେହି ଶିକ୍ଷା ମୋତେ ଦିଅ । ମୁଁ ଯେପରି ତୁମର ଆଦର୍ଶ କନ୍ୟା ହେବି ।

ସେହିଦିନୁଁ ଲକ୍ଷ୍ମୀର ଚରିତ୍ର ଆହୁରି ଉନ୍ନତ ହେଲା । ସେ ବୁଝିଲା, ତାହାର ଜୀବନ ବ୍ୟର୍ଥ ନୁହେଁ । ସେ ସଂସାରର ଅସାର ଅଳିଆ ନୁହେଁ । ଭଗବାନ ତାହାର ଜୀବନରେ ଓଡ଼ିଶାର ନାରୀ-ସମାଜର ଉନ୍ନତି ସକାଶେ କାର୍ଯ୍ୟକରିବା ଶକ୍ତି ଦେଇଛନ୍ତି ।

ଅହା ଆଜି ଲକ୍ଷ୍ମୀର କି ସୁଦିନ ! ଏଡ଼େ ବଡ଼ ସତ୍ୟ ! ସେ ସମାଜ ସେବିକା । ଓଡ଼ିଶାର ନାରୀ ସମାଜ ତାହାକୁ ଚାହେଁ । ତାହାର ସେବା, ତାହାର ରଚନା, ତାହାର ଜ୍ଞାନ, ତାହାର ସାଧନା ଓଡ଼ିଶାର ବିକାଶ ସକାଶେ ଦେବାପାଇଁ ସେ ଜନ୍ମ । ଆଜି ସେ ଭାଗ୍ୟବତୀ । ଲକ୍ଷ୍ମୀ ଆପଣାର ଦୁଃଖ ଭୁଲିଲା । ନିଜର ବୈଧବ୍ୟବିମୁକ୍ତ ହେଲା । ଜୀବନର ପୂର୍ବ ଘଟନାସବୁ ମନରୁ ପୋଛିବାକୁ ହେଲା । ସେତ ସାମୟିକ ଅନୁଭୂତି । ଓଡ଼ିଶାର ମଙ୍ଗଳ, ଓଡ଼ିଶାର କଲ୍ୟାଣ ହେଲା ତାହାର ଜପାମାଳି । ତାହାପାଇଁ ସେ ଜୀବନ ଢ଼ାଳିବ । କର୍ତ୍ତବ୍ୟ କର୍ମରେ ଆତ୍ମସମର୍ପଣ କରି ଆତ୍ମପ୍ରସାଦ ଲାଭକରିବ । ଏଥିରେ କଣ ତାହାର ନାରୀତ୍ୱ ସଫଳ ହେବନାହିଁ । ଅନ୍ୟର ସନ୍ତାନକୁ ନିଜର ସନ୍ତାନ ଭାବିଲେ କ'ଣ ତାହାର ମାତୃତ୍ୱ ଆକାଂକ୍ଷା ପୂର୍ଣ୍ଣ ହେବନାହିଁ ? ସେ କିପାଁ ଭାବିବ, ସେ ବିଧବା, ସେ ସର୍ବସ୍ୱ ବଞ୍ଚିତା ।

ଲକ୍ଷ୍ମୀ ପରମ ଉତ୍ସାହରେ କାର୍ଯ୍ୟରେ ବ୍ରତୀ ହେଲା । ଶାନ୍ତି କୁଟୀରର ପ୍ରତ୍ୟେକ ବିଭାଗରେ ତାହାର ମଙ୍ଗଳମୟ ସ୍ପର୍ଶ ଯେଉଁ ନବଜୀବନ ଢ଼ାଳିଦେଲା, ବାଳିକାମାନେ ତାହାର ଶିକ୍ଷାରେ ଉନ୍ନତ ହେଲେ, ବିଧବାମାନେ ତାହାର ସାଧନାରେ ପ୍ରବିଷ୍ଟ ହେଲେ । ଶାନ୍ତି କୁଟୀରର ଚତୁର୍ଦ୍ଦିଗ ଶାନ୍ତିରେ ପୂର୍ଣ୍ଣ ହୋଇଗଲା । ସେବାରେ, ଶିଳ୍ପରେ, ଶିକ୍ଷାରେ ଶତ ଶତ ନାରୀ ଜୀବନ ଧନ୍ୟହେଲା ।

ଆର୍ତ୍ତର ସହାୟ, ଅନାଥର ମାତା, ଦୁଃଖୀର ସାନ୍ତ୍ୱନାଦାତ୍ରୀ ଲକ୍ଷ୍ମୀର ଜୀବନ ଆଜି ପୁଣ୍ୟମୟ, ଆଜି ଧନ୍ୟ ।

ସ୍ୱାମୀ ସଦାନନ୍ଦଙ୍କର ଭାବନା ବଢ଼ିଲା । ଏପରି ନାରୀଦ୍ୱାରା ଓଡ଼ିଶାର କଣ କରି ପାରିବେ, ଏହାହିଁ ଥିଲା ତାଙ୍କର ଭାବନାର ପ୍ରଧାନ ବିଷୟ ।



## (୧୨)

## କାଳୀବୋହୂ

ଆଜି ସମଗ୍ର ଓଡ଼ିଶାରେ ମହାହୁଲୁସ୍ଥୁଲ ପଡ଼ି ଯାଇଅଛି। ରକ୍ଷଣଶୀଳ ହିନ୍ଦୁଦଳ ଶତ ମୁଖରେ ସ୍ୱାମୀ ସଦାନନ୍ଦ, ଦ୍ୱାରିକାନାଥ ଓ କୃଷ୍ଣଚନ୍ଦ୍ରଙ୍କର ସମାଲୋଚନା କରୁଛନ୍ତି। ଖବର କାଗଜମାନଙ୍କରେ ବିଦ୍ରୂପପୂର୍ଣ୍ଣ ଶତ ଶତ କବିତା, ପ୍ରବନ୍ଧ ଓ କଥୋପକଥନ ଛଳରେ ଚନ୍ଦ୍ରୋଦୟର ନିନ୍ଦା ଭାସି ଯାଉଛି। କାରଣ, ଏକ କରଣ କୁଳର ଯୋଗ୍ୟ ପିତାର ଯୋଗ୍ୟ ପୁତ୍ର ହୋଇ, ଭଣ୍ଡ ତପସ୍ୱୀ ସଦାନନ୍ଦ ଓ ବହୁରୂପା ଦ୍ୱାରିକାନାଥ ଓ କୃଷ୍ଣଚନ୍ଦ୍ରଙ୍କ ପ୍ରରୋଚନାରେ ପଡ଼ି ସେ ଗୋଟିଏ ଅଜ୍ଞାତ କୁଳଶୀଳ ଯୁବତୀ ବିଧବାର ପାଣିଗ୍ରହଣ କରିଅଛନ୍ତି। ଶାସ୍ତି ସ୍ୱରୂପ ସେ ଗୃହରୁ ବିତାଡ଼ିତ, ପିତୃସ୍ନେହରୁ ବଞ୍ଚିତ ଏବଂ ଜାତିଚ୍ୟୁତ। ଗୈରିକ ବସନ ଧାରଣ କରି, ଚନ୍ଦ୍ରୋଦୟ ଗୈରିକ ବସନା, କାଚ, ସିନ୍ଦୂର ମାତ୍ର ଭୂଷା ଲକ୍ଷ୍ମୀ ସହିତ ଯେତେବେଳେ ଇନ୍ଦିରାଙ୍କ ଗୃହରେ ପ୍ରବେଶ କଲେ, ଇନ୍ଦିରା ପରମସ୍ନେହରେ ଲକ୍ଷ୍ମୀକୁ କୋଳକୁ ଟାଣିନେଲେ। ତାଙ୍କ କନ୍ୟାଦ୍ୱୟ ମୀରା ଓ ଧୀରା ପ୍ରଫୁଲ୍ଲ ପୁଷ୍ପରେ ଭ୍ରମର ତୁଲ୍ୟ ନବାଗତା କୃଷ୍ଣସୁନ୍ଦରୀର ଅନିନ୍ଦ୍ୟ ମୁଖମଣ୍ଡଳର ସୌନ୍ଦର୍ଯ୍ୟ ପାନକରିବାକୁ ଲାଗିଲେ। ଚନ୍ଦ୍ରୋଦୟଙ୍କୁ ସୁନ୍ଦର ସମ୍ଭାଷଣ କଲାପରେ ଲକ୍ଷ୍ମୀକୁ ଉଦ୍ଦେଶ୍ୟ କରି ଇନ୍ଦିରା କହିଲେ, ''ମାଁ, ତୁମେ ମୋ କାଳୀବୋହୂ। ତୁମେ ଲକ୍ଷ୍ମୀ, ଆଜି କହୁଛି ଓଡ଼ିଆ ଘରର ଲକ୍ଷ୍ମୀ ହୁଅ।'' ଦ୍ୱାରିକାନାଥ ହସି କହିଲେ, ''ଆଉ ଆମ ପୁତ୍ର ଚନ୍ଦ୍ରୋଦୟ ଓଡ଼ିଶାର ଅନ୍ଧାର ଆକାଶର ନବ ଚନ୍ଦ୍ରୋଦୟ! ଆଶୀର୍ବାଦ କରୁଛି– ଦୁଇଜଣ ଦୀର୍ଘଜୀବୀ ହୁଅ। ଦେଶର ହିତରେ ବ୍ରତୀ ହୁଅ। ଜାତିଭେଦ, କୁସଂସ୍କାର, ନାରୀ ନିର୍ଯ୍ୟାତନ ଇତ୍ୟାଦି ଆତ୍ମବଳରେ ଜୟକରି ଓଡ଼ିଶାରେ ନବଯୁଗର ସୂଚନା କର।''

ଶାନ୍ତିକୁଟୀରରେ ସମଗ୍ରବାଳିକା ଓ ବିଧବାମାନଙ୍କର ତତ୍ତ୍ୱାବଧାନରେ ଲକ୍ଷ୍ମୀର ଦିନ ପରମାନନ୍ଦରେ ଅତିବାହିତ ହେଲା। ନାରୀତ୍ୱର ମହତ୍ୱ, ପତିର ଦେବତ୍ୱ, ନାରୀର ଅପୂର୍ବ ତ୍ୟାଗର ମହିମା ଲକ୍ଷ୍ମୀର ଜୀବନକୁ ଉଜ୍ଜ୍ୱଳ କଲା। ସେ ଜୀବନରେ ବହୁ ଦୁଃଖ ଭୋଗ କରିଥିଲା, ବହୁଦେଶ ବୁଲିଥିଲା, ବହୁତ ଶିକ୍ଷା ମଧ୍ୟ ପାଇଥିଲା। ଚନ୍ଦ୍ରୋଦୟ ତୁଲ୍ୟ ମହାପୁରୁଷଙ୍କୁ ସ୍ୱାମୀରୂପେ ଲାଭକରି ସବୁ ଦୁଃଖ ସାର୍ଥକ ମଣିଲା ଓ ଭଗବାନଙ୍କୁ ଧନ୍ୟବାଦ, ଓଡ଼ିଶାର ନାରୀଜାତିର ଉନ୍ନତି ସକାଶେ ନିଜର ସମୁଦାୟ ଢ଼ାଳି ଦେବାକୁ ସୁଦ୍ଧା ତାହାର ବାସନା ହେଉଥିଲା। ଦେବତାର ଚରଣ ପୂଜାକରି ଆଜି ତାହାର ଜୀବନ ଆର୍ଯ୍ୟ ନାରୀର ଆଦର୍ଶ ପାଳନ କରି ସେ ଧନ୍ୟା ହୋଇ ମାତୃତ୍ୱର ପରମ ଗୌରବରେ ତାହାର ହୃଦୟ ପରିପୂର୍ଣ୍ଣ। ଆଜି ବାସ୍ତବରେ ସେ ଲକ୍ଷ୍ମୀ।

ସ୍ୱାମୀ ସଦାନନ୍ଦଙ୍କ ସାହାଯ୍ୟରେ ଇଚ୍ଛାପୁରରେ ବାଳକମାନଙ୍କ ଜାତୀୟ ବିଦ୍ୟାଳୟର ତତ୍ତ୍ୱାବଧାନ କରି ଚନ୍ଦ୍ରୋଦୟ ନିଜ ଜୀବନ ସଫଳ ଜ୍ଞାନ କଲେ। ନୈମିଷ୍ୟାରଣ୍ୟର ଶିକ୍ଷା ଓ ସାଧନା ଭାରନିଷକୁ ଫେରାଇ ଆଣିବାକୁ ସମସ୍ତେ ପ୍ରାଣପଣେ ଚେଷ୍ଟା କଲେ।

ଶ୍ରୀକ୍ଷେତ୍ରରେ ସ୍ୱାମୀ ସଦାନନ୍ଦଙ୍କ ମୃତ୍ୟୁଶଯ୍ୟା ନିକଟରେ ଆଜି ସମସ୍ତେ ଉପବିଷ୍ଟ। ଇନ୍ଦିରା ଓ ସରସ୍ୱତୀଙ୍କ ଆଖିରୁ ଲୁହ ଝରୁଛି। ଲକ୍ଷ୍ମୀ ମହାଶୋକରେ ପାଷାଣ ପାଲଟି ଗଲାଣି। ବିପିନିବାବୁ, ଦ୍ୱାରିକାନାଥ, କୃଷ୍ଣଚନ୍ଦ୍ର ଓ ଚନ୍ଦ୍ରୋଦୟ ତାଙ୍କର ସେବା ଶୁଶ୍ରୂଷାରେ ଲାଗିଛନ୍ତି। କିଛିକ୍ଷଣପରେ ସଂଜ୍ଞା ଲାଭକରି ନିଜର ପ୍ରାଣ ପ୍ରତିମ ଶିଷ୍ୟବର୍ଗଙ୍କୁ ଅନାଇ ସ୍ୱାମୀଜୀଙ୍କ ଚକ୍ଷୁଲୋତକପୂର୍ଣ୍ଣ ହେଲା। କିନ୍ତୁ କିଛିକ୍ଷଣପରେ ସ୍ଥିର ହୋଇ ବିପିନିବାବୁଙ୍କୁ ଅନାଇ କ୍ଷୀଣ କଣ୍ଠରେ କହିଲେ– ''ବାବା! ମୁଁ କିଏ, ଅନେକଥର ତୁମ୍ଭେମାନେ ମୋତେ ପଚାରିଛ, କିନ୍ତୁ ମୁଁ କହିନାହିଁ, ଜୀବନର ଶେଷ ମୁହୂର୍ତ୍ତରେ କହିବି ବୋଲି ବାସନା କରିଥିଲି, ଆଜି ସେ ମୁହୂର୍ତ୍ତ ଉପସ୍ଥିତ। ବିସ୍ମିତ ହୁଅନାହିଁ, ମୁଁ ଜଣେ ରାଜପୁତ୍ର। ମୋହର ପ୍ରକୃତ ନାମ ଗଜପତି ନରସିଂହ ଜଗଦେବ ହରିଚନ୍ଦନ। ଅନଙ୍ଗଭୀମ, ପୁରୁଷୋତ୍ତମ, ପ୍ରତାପରୁଦ୍ର ଯେଉଁ-ବଂଶ ଅଳଙ୍କୃତ କରିଥିଲେ ମୁଁ ସେହି ବଂଶର ଗୋଟିଏ ହୀନ ପଲ୍ଲବ। କହୁଁ କହୁଁ ତାଙ୍କର କଣ୍ଠରୁଦ୍ଧ ହେଲା, ସମସ୍ତେ ସ୍ତମ୍ଭୀଭୂତ ହେଲେ। କିଛିକ୍ଷଣ ଆକାଶକୁ ଅନାଇ ଅଲେଖ ନିରଞ୍ଜନଙ୍କୁ ଧ୍ୟାନ କରୁକରୁ ପୁଣି କହିଲେ– ''ଗୁରୁ କୃପାରେ ନବୀନ ବୟସରେ ସନ୍ନ୍ୟାସ ଗ୍ରହଣ କରି ଓଡ଼ିଶାର ହିତ ସାଧନାରେ ମନପ୍ରାଣ ଢ଼ାଳି ଦେଇଥିଲି। ମୋର ଗୁରୁ ସ୍ୱାମୀ ସଚ୍ଚିଦାନନ୍ଦ ଅଲେଖ ଧର୍ମବାଦୀ ଥିଲେ। ତାଙ୍କର ଶିକ୍ଷାଫଳରେ ମୁଁ ଚିର ଜୀବନ ଏକ ଈଶ୍ୱରଙ୍କୁ ଉପାସନା କରି ଆର୍ଯ୍ୟ ଜାତିର ସମୁଦାୟ ପୁରାତନ ରୀତିନୀତି ଲୋକଙ୍କୁ ଶିକ୍ଷା ଦେଇଛି। ତୁମ୍ଭେମାନେ ଭଗବାନଙ୍କର ସ୍ତବଗାନକର। ଆଉ ମୋହର ଆରବ୍ଧ କାର୍ଯ୍ୟ ଏକାନ୍ତ ଚିତ୍ତରେ ପୂର୍ଣ୍ଣ କର।'' ସଦାନନ୍ଦ ନୀରବରେ ମନ୍ତ୍ରୋଚାରଣ ଆରମ୍ଭ କଲେ।

ସମସ୍ତେ ଭଗବାନଙ୍କର ସ୍ତବ କରୁ କରୁ ଅନାଇ ଦେଖିଲେ, ସଦାନନ୍ଦଙ୍କ ନୟନଦ୍ୱୟ ଉଜ୍ଜ୍ୱଳ ହୋଇଉଠିଲା। ସ୍ୱାମୀ ଧ୍ୟାନସ୍ଥ ହୋଇ ଦେହତ୍ୟାଗ କଲେ। କ୍ରନ୍ଦନର ରୋଳରେ ଗୃହ ପୂର୍ଣ୍ଣହେଲା।

ସ୍ୱାମୀଙ୍କର ଯଥାବିଧି ସତ୍କାର କରି ସମସ୍ତେ ସ୍ୱ ସ୍ୱ ଗୃହକୁ ଫେରିଗଲେ। ଆଜି ସେମାନେ ଉପଯୁକ୍ତ ନେତା, ପରମସ୍ନେହୀ ପିତା ଆଉ ଧର୍ମଗୁରୁର ଅଭାବ ତୀବ୍ରଭାବରେ ଅନୁଭବ କରୁଥିଲେ।

ଚନ୍ଦ୍ରୋଦୟ ଓ ଲକ୍ଷ୍ମୀର ହୃଦୟରେ ସଦାନନ୍ଦଙ୍କର ମୃତ୍ୟୁ କଠିନ ଆଘାତ କରିଥିଲା। କିଛିଦିନ ସେମାନେ କେବଳ ଶୋକ କରି ବୁଲିଲେ। ପରେ ସ୍ୱାମୀଙ୍କର ଶେଷ ବାକ୍ୟ ସ୍ମରଣ କରି ତାଙ୍କର ଆରବ୍ଧ କାର୍ଯ୍ୟ ସଫଳାର୍ଥେ ମନପ୍ରାଣ ଢାଳିଦେଲେ। ସ୍ୱାମୀଜୀଙ୍କ ସ୍ମରଣାର୍ଥେ ଲକ୍ଷ୍ମୀ ଆପଣାର ଗୋଟିଏ ପୁତ୍ରର ନାମ ସଦାନନ୍ଦ, ଅନ୍ୟଟିର ନାମ ଅଲେଖ ଓ କନ୍ୟାର ନାମ ନିରଞ୍ଜନା ଦେଲା।

× × ×

ବର୍ତ୍ତମାନ କାଳୀବୋହୂ ସମସ୍ତଙ୍କଠାରୁ ମେଲାଣି ମାଗୁଛି। ତାହାକୁ ବିଧାତା କାଳୀ କରି ସୃଷ୍ଟି କରିଅଛନ୍ତି। ଆଶାକରେ ପାଠକପାଠିକାବର୍ଗ ଗାଳଦ୍ୱାରା ତାକୁ ଅଧିକ କାଳୀ କରିବେ ନାହିଁ।

## ପ୍ରଥମ ଅଧ୍ୟାୟ

ଆସନ୍ତା କାଲି ରଜ। ରଘୁର ଜକେଇ ହୃଷୀକେଶ କଟକରୁ ଆସିଛନ୍ତି ---- ଜାମ ଦେଖିବା କଥା।

ଆଜି ବଡ଼ ଅନ୍ଧାରୁ ଟପର ଟପର ଝଡ଼ି[୧] କରିଛି, ବେଳ ଦଶ ଘଡ଼ି ହେଲାଣି। ଛାଡ଼ିବାକୁ ନାହିଁ, ଆକାଶ ଅନ୍ଧାରକରି କଳାହାଣ୍ଡିଆ ମେଘ ଉଠେଇଛି। କାନ୍ଥରେ ଗୋବର ଗାରଟା ମୋଟକେରି ଟାଣିଦେଇ ଗୋବର ହାଣ୍ଡି ରଖୁରଖୁ ରସକଳା ରଘୁକୁ ଅନାଇ କହିଲା, ''ପୁଅ, ଏ ବର୍ଷ କଣ କେଲୁଣୀ ହାତରେ ଅଡ଼ା[୨]?''

''ହଁ ଖୁଡ଼ି, ପାଳକ ଭଲ ହବ। ବାପୁ ଅବଧାନେ ଖଡ଼ି ପକଉଥିଲେ[୩], ଚମର ଏଥର ଧାନ ଭଲହବ।''

''ମହାପୁରୁଙ୍କ ଦୟା। ବାପ ତମେ ବର୍ଷାରେ ତିନ୍ତ ନା, ଜର ହବ; ହାତ ଧୋଇ ଆସ, ଜକେଇ ସାଙ୍ଗରେ ବସିଯିବ।''

ନିଜେ ହାତଗୋଡ଼ ଧୋଇ ଲୁଗାପାଲଟି ଠାକରି ସ୍ୱାମୀଙ୍କ ସକାଶେ ଭାତ ପରଶି ରସକଳା ରୋଷେଇଶାଳ ପିଣ୍ଡାରେ ପାନବଟା ଘେନି ପାନଭାଙ୍ଗିବସିଲା। ହୃଷୀକେଶ ଭାତ ଖାଉଖାଉ ରଘୁକୁ ଲକ୍ଷ୍ୟକରି କହିଲେ, ହଇହେ, ଯାକୁ କିଆଁ ତଡ଼ିଦେଉ ନା– ଜାଣୁ ଜାଣୁ କଣ ବିଷ-ବୀଜ ରୋଉଚ, ଫଳ ଶେଷକୁ କଣ ହେବ ଜାଣ ତ?''

ରସକଳା ସ୍ୱାମୀଙ୍କ କଥା ଶୁଣି କି ଉତ୍ତର ଦବ ବୁଝିପାରିଲା ନାହିଁ। ନୀରବରେ ପାନଖିଲ ବସି ମୋଡ଼ିଲା। ସେ ଟିକିଏ ଚିନ୍ତିତ; ମୃତଯାଆର ସ୍ନେହ, ସଦ୍‌ବ୍ୟବହାର ଓ ମିଷ୍ଟଭାଷା ମନେପଡ଼ିଲା, ହୃଦୟ ଦୁଃଖରେ ପୂର୍ଣ୍ଣହେଲା। ସେ ରଘୁନାଥର କରୁଣ ମୁଖକୁ ଚାହିଁ ସ୍ୱାମୀଙ୍କ ତିରସ୍କାରର ତୀକ୍ଷ୍ଣତା ନୀରବରେ ସହ୍ୟ କଲା, କିନ୍ତୁ ତାହାର ଏପରି ନୀରବ ଭାବ ହୃଷୀକେଶଙ୍କୁ ଆଦୌ ଭଲ ଲାଗିଲା ନାହିଁ। ସେ ଟିକିଏ ବିରକ୍ତହୋଇ କହିଲା– ''ଭଲ କଥା କହିଲେ ଲୋକ କାନକୁ ପଶେ ନାହିଁ, ପରେ ସବୁ ବୁଝିବ ଯେ। ଭଲାଗେ ପିଲା ହେଉଚି, ଖୁଡ଼ୀ ସୁଆଗଲାଗିଚି। ଯେତେବେଳେ ମୁଣ୍ଡକୁ ହାତପାଇବ, ସେତେବେଳେ କି ଖୁଡ଼ୀ କି ଖୁଡୁତା। ପିଲାଦିନୁ ପୋଷିପୋଷି ମଣିଷକଲି; ରାଣ୍ଡ ଅରକ୍ଷିତିଆଣୀ ତ ନିଜେ ମଲା, ଏ ଜଳଜଳାକୁ[୪]

---

(୧) ଲାଗିରହିଥିବା ମେଘ ଓ ପବନ, (୨) କେଲୁଣୀ ହାତରେ ଅଡ଼ାଥିଲେ ଭଲ ଫସଲ ହେବାର ଲୋକ ବିଶ୍ୱାସ ରହିଛି, (୩) ମାଟି ଉପରେ ଖଡ଼ିରେ ଗାର ପକେଇ ଶୁଭାଶୁଭ ଗଣନା କରିବା, (୪) ଏକ ପ୍ରକାର ଗାଳି।

କିଆଁ ଛାଡ଼ିଗଲା କେଜାଣି ?'' କକେଇର କଥା ରଘୁର କର୍ଣ୍ଣରେ ପଶି ମର୍ମରେ ବାଜିଗଲା, ମୃତ ଜନନୀର ମୃତ୍ୟୁକାଳୀନ ଦୃଶ୍ୟ ମନେପଡ଼ିଲା– ବଡ଼ବଡ଼ ଦୁଇ ଟୋପା ଲୁହ କଳାଭ୍ରମର ସଦୃଶ ତା ଆଖି କୋଣରେ ଛଳଛଳ[୧] ହେଲା। ରଘୁ ତଳକୁ ମୁଣ୍ଡପୋତି ଭାତଥାଳୀକୁ ଅନାଇରହିଲା। ଗୁଣ୍ଡା ବଳି ମୁହଁକୁ ନେବାକୁ ସାହସ ହେଲା ନାହିଁ। ରସକଳା ତାହାର ବିପନ୍ନ ଭାବ ଲକ୍ଷ୍ୟକରି ସ୍ୱାମୀଙ୍କୁ ତିରସ୍କାର ଛଳରେ କହିଲା, ''କେତେ ଉଘେଇ[୨] ହୁଅ। କରିଚ ତ କରିବ, ଦାଣ୍ଡରେ ଗାଇଲେ ହବ। ନିଜ ଭାଇ ଭାଉଜଙ୍କୁ ପଚାରିଛ ତ, କିଛି ପର ପୋଷି ନାହିଁ।''

ହୃଷୀକେଶ ରସକଳାର କଥା ନ ସରୁଣୁ ଅତି ଉଚ୍ଚସ୍ୱରରେ କହିଲା, ''ବକ୍‌ବକ୍ ହ'ନା, ଦୟାଧର୍ମପଣ ରଖିଦେ। ମୋପରି ହାଡ଼ଭାଙ୍ଗି ରୋଜଗାର କରୁଥିଲେ ବୁଝନ୍ତୁ। କଟକ ପରା ସହରରେ ପିଲାଟିଏ ପୋଷିବା ନୁହେ ଯେ, ହାତୀଟିଏ ପୋଷିଲା ପରି। ଭାତ ଖରଚଠୁ, ଲୁଗା ଖରଚଠୁ, ଧୋବା ଭଣ୍ଡାରୀ ଖରଚଠୁ ସବୁ ଗୋଟିଗୋଟି ଦବାକୁହବ – ଏତେ କିଏ ସମ୍ଭାଳିବ ! ଯାକୁ ପାଳିଲେ ମୋ କୁଳରେ ପାଣିଦବ ପରା – ମୋ କୁଳ ଉଜ୍ଜ୍ୱଳକରିବ ? ଛେଉଣ୍ଡ ଅର୍କ୍ଷିତଟା[୩] ଯେମିତି ଭାତପାଣି ଖାଇ ପଡ଼ିରହିଛି, ରହୁ, ଏଥର ଭୀମା ବାରିକକୁ କାଢ଼ିଦିଅ। ଦଶ ବର୍ଷର ଟୋକା ହେଲାଣି, ସବୁ କରିବ। ମୁଣ୍ଡ ଝାଳ ତୁଣ୍ଡରେ ମାଇଲେ ଭାତପାଣି ମିଳିବ ସିନା। ଆଉ ବସିବସି ବାବୁ ପରି ଖୁଡ଼ୀ ଖୁଡୁତାଙ୍କ ରୋଜଗାର ଖାଇଲେ ତ ହବ ନାହିଁ।''

ରଘୁ ଆଖିରୁ ଟପଟପ ହୋଇ ଲୁହ ଭାତଥାଳିରେ ପଡ଼ିଲା, ଛାତି ଭିତର କୋହରେ ଫାଟିଗଲା। ସେ ନୀରବରେ ମୁହଁହାତ ଧୋଇ ଉଠିଗଲା। ବାରି ପିଣ୍ଡା ଓଳିତଳେ ବସି ଜନନୀକୁ ସ୍ମରଣକରି ଅନେକ କାନ୍ଦିଲା। ଆଜି ତା ସଂସାରରେ କେହି ନାହିଁ– ସେ ଅରକ୍ଷିତ। ତାର ପ୍ରାଣ ବିଦୀର୍ଣ୍ଣ ହେବାକୁ ଲାଗିଲା।

ଦିବା ଦ୍ୱିପ୍ରହର। ମେଘ ଛାଡ଼ିଯାଇ ଆକାଶ ପରିଷ୍କାର ହୋଇଗଲାଣି। କିନ୍ତୁ ଗଛପତ୍ର ଦେହରୁ ପାଣି ଏବେ ସୁଦ୍ଧା ଝରିଝରି ଭୂଇଁରେ ପଡୁଛି। ଓଳିତଳେ ସାନ ନାଳରେ ଅଳପ ଅଳପ ପାଣି ଉପରେ ଖରା ପଡ଼ି ଚକ୍‌ଚକ୍ ଦିଶୁଛି। ଗୋଟିଏ ଦିଓଟି କାଉ ଗହଳ ଆମ୍ବଗଛ ପତ୍ର ଉହାଡ଼ରେ ବସି ନୀର-ସିକ୍ତ ପକ୍ଷ ଝାଡ଼ିଦେଉଛନ୍ତି, ମଝିରେ ମଝିରେ କା' କା' କହି ରାବିଉଠୁଛନ୍ତି। କୋମଳ ଘାସ, ଆଉ ଶ୍ୱେତପୁରୁଣି ଦଳରେ ପାଣିବିନ୍ଦୁଗୁଡ଼ିକ ଖରା ତେଜରେ ମୁକ୍ତାପରି ଝକଝକ ଦିଶୁଛି। ବାଳକ ଏ ସବୁକୁ ଅନାଇଛି, କିନ୍ତୁ ତାହାର ଦୃଷ୍ଟି ଶୂନ୍ୟ, ଉଦାସ- ତାହାର ମନ ଜଗତଠାରୁ ଯାଇଁ କେଉଁ ଦୂର ଦୂରାନ୍ତର ରାଜ୍ୟରେ ନିବିଷ୍ଟ। ସେଠାରେ ତାର ମାତା, ପିତା, ସ୍ନେହର ନାନୀ ରତନୀ ବିଦ୍ୟମାନ। ଆହା ! ତିନି ଜଣଯାକ ତାକୁ ଛାଡ଼ି କୁଆଡ଼େ ଗଲେ ! ସେ ତ ସେମାନଙ୍କର କୋଟିନିଧି ଥିଲା, ରତନୀ ନାନୀ ଦଣ୍ଡେ ତାକୁ କୋଳରୁ ଅନ୍ତର କରୁ ନଥିଲା। ରତନୀ ନାନୀ ମଲା, ବାପା ମଲେ, ବୋଉ ମଲା, ଆଉ ରହିଲା ରଘୁ ! ତାର

(୧) ଡ଼ଳଡ଼ଳ, (୨) ଉଲୁଗୁଣା ଦେବା, (୩) ବାପା ମା' ନଥିବା

ଜୀବନ ଏଡ଼େ ଟାଣ ! କକେଇର କଥା ସହିବାକୁ ଠାକୁର ତାକୁ ଏ ଦଶା ଦେଲେ ସିନା ! ବାଳକ କେତେ ଜଣ ଭାବିଭାବି ସେହିଠାରେ ଶୋଇ ପଡ଼ିଲା ।

ରସକଳା ରଘୁକୁ ଏ ଘର ସେ ଘର ଖୋଜିଖୋଜି ବାରିଆଡ଼େ ମାଇଁ ଦେଖିଲା– ଓଳିତଳ ପିଣ୍ଡାରେ ରଘୁ ଶୋଇଛି । ପିଣ୍ଡାଟି ଉଜ୍ଜ୍ୱଳ କରି କିଏ ଯେପରି ସୁନା ଫୁଲଗୁଡ଼ିଏ ପାରିଦେଇଛି । ଦଣ୍ଡେ, ଦୁଇ ଦଣ୍ଡ, ରସକଳା ଚାହୁଁଚାହୁଁ ସ୍ନେହରେ ଦ୍ରବୀଭୂତହେଲା । ଏହି ବାଳକକୁ କାହିଁକି କେଜାଣି, ତାର ସ୍ୱାମୀର ଶତ ତିରସ୍କାର ସତ୍ତ୍ୱେ ଏ ବାଳକଟିକୁ ସେ ଏତେ ଭଲପାଏ, ତାହାର ପ୍ରତ୍ୟେକ ଅବୟବର ଅନୁପମ ଲାଳିତ୍ୟରେ ମୁଗ୍ଧହୁଏ । କଞ୍ଚା ସୁନାପରି ବର୍ଣ୍ଣ, ଅଳତାଗୋଳାପରି ହାତପାଦ, ଜବା ଫୁଲପରି ଓଠ, ଧନୁପରି ଭ୍ରୂଲତା, ନୀଳ ପଦ୍ମପାଖୁଡ଼ାପରି ବଡ଼ବଡ଼ ଭସାଭସା ଆଖି ଯୋଡିକି, କଜ୍ଜ୍ୱଳ-କାଳିଆ ଭାଙ୍ଗଭାଙ୍ଗ କେଶ କପାଳ ଉପରେ, ପଟାପରି କପାଳ, ଆଖିପତାରେ କିଏ କଜ୍ଜ୍ୱଳ ମାଖିଦେଇଛି ପରା । ଖଣ୍ଡାପରି ନାକଟି, ଆଉ ସରଳ ସୁମଳ ଅବୟବ ଗୋଟିକୁ ଗୋଟିଏ ସାଜିଛି । ଏଡ଼େ ସୁନ୍ଦର, ଏଡ଼େ ବୋଲକରା, ଏଡ଼େ ଧୀର ପିଲାଟି ପୁଣି ତା କକେଇର ବି ଆଖିର ବିଷ । ହା ଦଇବ ! ଏଡ଼େ ହୀନ କପାଳ ! ପରମ ସ୍ନେହରେ ରସକଳା ବାଳକ ଦେହରେ ହାତ ବୁଲାଇଲା, ଆଖିରୁ ଝର ଝର ଲୁହ ବୋହିଗଲା– ସ୍ୱାମୀ ସହିତ ଘଡ଼ିକ ଆଗର କଳହ ମନେପଡ଼ିଲା । କାହା ସକାଶେ ସ୍ୱାମୀ ତାକୁ ଏତେ ତିରସ୍କାରକଲା- କେବଳ ରଘୁନାଥ ! ରଘୁନାଥ ତାର କିଏ ? ପୁଅ ନୁହେ- ପୁତୁରା, କିନ୍ତୁ ତାପାଇଁ ପେଟ ଭିତର ପୋଡ଼ିଉଠୁଛି କାହିଁକି ? ତାକୁ ପଦେ କିଏ କହିଲେ ରସକଳା ଦଶ ପଦ ଶୁଣାଇବାକୁ ଛାଡ଼େ ନାହିଁ କାହିଁକି ? ରଘୁ ତାର ପୁତୁରା- ନା, ନା, ରଘୁ ତାର ପୁଅ । ସେ ତ ଖୁଡ଼ୀ; ମା ଆଉ ଖୁଡ଼ୀରେ ଭିନ୍ନ କ'ଣ ? ରଘୁ ତାକୁ ମା ଭିନ୍ନ ଅନ୍ୟ ଭାବେ ନାହିଁ । ତାରି ପଣତରେ ମୁହଁ ଲୁଚାଇ ଆପଣାର ସବୁ ସୁଖଦୁଃଖ କହିବାକୁ କୁଣ୍ଠିତ ହୁଏନାହିଁ । ରଘୁ ତାର ଗଣ୍ଠିଧନ; ହେଲେ ବା ସେ ବଡ଼ ଲୋକ, ଆଉ ରଘୁ ଦରିଦ୍ର । ତା ବୋଲି ଚାକର କାମରେ ତାକୁ ଖଟାଇବ ? ନା, ରସକଳା ତା ପାରିବ ନାହିଁ । ରଘୁର କୋମଳ ଅଙ୍ଗର ସାମାନ୍ୟ ପୀଡ଼ା ତା ଛାତିରେ ଛୁରିପରି ବାଜିଯାଏ । ସେ ରଘୁକୁ ଅନ୍ତର କରିପାରିବ ନାହିଁ । ସ୍ୱାମୀ କହିଲେ କ'ଣ ହେଲା, ଦିଅଁ ଦେବତା କହିଲେ କ'ଣ ହେଲା ! ଖୁଡ଼ୀର ସ୍ନେହସ୍ପର୍ଶରେ ରଘୁର ନିଦ୍ରା ଭଗ୍ନହେଲା । ସେ ଆଖିମଳି ସ୍ନେହଦୃଷ୍ଟିରେ ଖୁଡ଼ୀକୁ ଅନାଇଲା । ଖୁଡ଼ୀ ମଧୁର କଣ୍ଠରେ କହିଲା, "ବାପ, ମାଟିରେ କାହିଁକି ଶୋଇଲ, ଘରେ ଶେଯ ପାରି ଶୋଇଲ ନାହିଁ ?"

ରଘୁନାଥ ଦୁଃଖପୂର୍ଣ୍ଣ କଣ୍ଠରେ କହିଲା "ଖୁଡ଼ି, ମୁଁ ଅର୍କ୍ଷିତଟା, ମୋର ଶେଯ ଯା, ମାଟି ତା; ଯାହାର ବାପ ମା ନାହାନ୍ତି ତାର–"

ବାଳକ ଆଉ କହିପାରିଲା ନାହିଁ, ଖାଲି କଇଁକଇଁହୋଇ କାନ୍ଦିଲା । ଖୁଡ଼ୀ ପଣତ କାନିରେ ଲୁହ ପୋଛିଦେଇ ଗଭୀର ସ୍ନେହରେ କହିଲେ, "ବାପ, ତମେ ପରା ମୋ ପୁଅ- ମୁଁ ତମ ମା ।"

ରଘୁ ଉତ୍ତର କଲା – "ଖୁଡ଼ି, ତମେ ବନାର ମା, ଗଉରୀର ମା। ମୋ ମା ନ ଥିଲାରୁ ସିନା କକେଇର ଏତେକଥା ସହୁଚି!" ବାଳକ ପୁଣି କାନ୍ଦିଲା।

ଖୁଡ଼ୀ ସାନ୍ତ୍ୱନା ଛଳରେ କହିଲେ, "ବାୟା ହେଲ ପୁଅ! ସେ କକେଇ– ସେ ମାରିବେ, ସେ ତାରିବେ। ତମେ ପୁଅ, ବଡ଼ଙ୍କର ଦି କଥା ସହିଲେ ଠାକୁର ତମର ଭଲ କରିବେ। ତମେ ପରା ପିଲା!"

ରଘୁ ଆଶ୍ୱସ୍ତହେଲା। ଖୁଡ଼ୀ ପିଠି ଉପରେ ହାତଟି ଲଦିଦେଇ ଆନନ୍ଦରେ ଖୁଡ଼ୀ କାନର ଘଣ୍ଟିଆ ପରୀକ୍ଷା କରୁକରୁ କହିଲା, "ଖୁଡ଼ି, ବଡ଼ ସୁନ୍ଦର ଦିଶୁଚି ଏକା। କଟକ କାମ କି ନା! ଏଥର କକେଇଙ୍କୁ କହ, ହାର କରିଆଣିଦେବେ। ସୁରୁଯି ଆଇ ବେକରେ ଯେଉଁ ହାର ଅଛି ସିମିତିକା, ତମକୁ ମାନିବ।"

ଖୁଡ଼ୀ କିଛି ନ କହି ଅଳ୍ପ ହସିଦେଇ ଘର ଭିତରକୁ ଗଲେ। ରଘୁ ଉଠି 'ସୋମି', 'ପାଟ', ଆଉ 'ଦୁଲଣୀ'କୁ ବାନ୍ଧିବାକୁ ଗୁହାଳକୁ ଗଲା। ସଞ୍ଜ ବୁଡ଼ି ଆସୁଥିଲା। ରସକଳା ସଞ୍ଜବଳିତା ଜାଳି ପିଣ୍ଡାରେ ଥୋଇଦେଲା।

ପରଦିନ ଉଷାଲୋକ ସଙ୍ଗେସଙ୍ଗେ ଗାଁ ଶତପଥୀଙ୍କ ଘରେ ମଙ୍ଗଳମହୁରୀ ବାଜି ଉଠି, 'ରଜ' ଉତ୍ସବର ଶୁଭାଗମନ ଜଣାଇଦେଲା। ଗାଁ ସ୍ତ୍ରୀଲୋକ ପାଟଲୁଗା, ଗହଣାଗଣ୍ଠିରେ ସଜବାଜ ହୋଇ ଧାଡ଼ିଧାଡ଼ି ଆସି ଶତପଥୀଙ୍କ ବୃହତ୍ ଅଗଣାରେ ପଶିଗଲେ। ଆଜି ମହାନନ୍ଦର ଦିନ!

ରଜ ପାନ ବାଣ୍ଟୁବାଣ୍ଟୁ ପରିଆ ନାନୀ ରସକଳାକୁ ଲକ୍ଷ୍ୟକରି କହିଲା, "ଏ ବୋହୂ! ତୋର ସବୁଦିନେ ଏ କି କଥା! କାଲି ଭାଇନା କହୁଥିଲେ- ତୁ ତାଙ୍କ ସଙ୍ଗେ କଳିକରିଚୁ, ଏ ସବୁ କି କଥା!" ରସକଳା ନିତାନ୍ତ ତାଚ୍ଛଲ୍ୟ ଭାବରେ କହିଲା, "କରିବି ନାହିଁ ଛାଡ଼ିଦେବି, ପୁତୁରାକୁ ଗଣ୍ଡେ ଭାତଦବ ଯେ, ଗାଁଯାକ ଗାଇବ। ଉଠ ମ, ମତେ ସେ ସବୁ ଭଲ ଲାଗେ ନା। ପୁଅ କିଏ ପୁତୁରା କିଏ- ଏକା ନାହି ଦିଖଣ୍ଡ।"

"ଏକାଳରେ ଏତେ ଦୟାଧର୍ମ କିଏ କରୁଚି? 'ମୋ ଆଳିଆ ଲେଖାକୁ ବାଳିଆ ବନ୍ଧୁ, ପାଳଦଉଡ଼ିକୁ କେତେ ବାନ୍ଧୁ!' ଗୋପୀନାଥ ଆଉ ହୁରୁଷୀ ତ ଏକା ମା'ଙ୍କର ନୁହନ୍ତି?"

"ତମେ ତମ ଭାଇ ଆଡ଼କୁ[୧] ଲଢ଼ିକହିବ। ରଘୁର ପିଉସୀ ଥିଲେ, ସେ ସିମିତି ତା ପୁତୁରା ଆଡ଼ିକି କହନ୍ତା। ବାପ ତ ଏକା; ଆମ ଘର ବିଲବାଡ଼ିରେ କଣ ଟୋକାଟାର ଭାଗ[୨] ନାହିଁକି? ତାକୁ ମୁଠାଏ ଭାତ ଦେଲେ ଆମର ଦୟାଧର୍ମ କିଆଁ ହବ? ହକ[୩] ତାର ମାଲ ସେ ଖାଇବ। ସେଥିରେ ପାଞ୍ଚ ଭଲ୍ଲୋକ[୪] ପଶିବା ଦରକାର କ'ଣ? କିଏ କଣ ଗଣ୍ଡାଏ ପୁଞ୍ଜାଏ ଦେବେ ନା, ହାତେ ଦିହାତ ଦେବେ– ଏତେ ଛାତି ଫାଟିଯାଏ କିଆଁ?"

(୧) ପକ୍ଷ, ପଟ, (୨) ଅଂଶ, ହିସା, (୩) ଅଧିକାର, ପ୍ରାପ୍ୟ, (୪) ବିଚାରକ।

ପରିଆ ନାନୀ ରସକଳା କଥାର ମମ ବୁଝିପାରି କହିଲା, ''ତୁ ଦଉଥା, ତୋର ସବୁ ନାହିଁ- ଚାଳିଆ ଉପରେ ଆଟୁ[1] ବାନ୍ଧିଲୁଣି; ଆମେ ତ ଗରିବ ଲୋକ, ଆମ ପେଟକୁ ନିଅଣ୍ଟ, ଦୟାଧର୍ମ କରି ଫୁଲେଇହବୁ କୋଉଠୁଁ?'' ରସକଳା ମଧ୍ୟ ଉପଯୁକ୍ତ ପ୍ରତିଉତ୍ତର ଦେଇ ଆସି ମସିଣା ଉପରେ ବସିଲା। ରଘୁ ଗଉରାକୁ ଗାଁଯାକ ବୁଲାଇ ଆଣି, ଏବେ କାନ୍ଦିବାରୁ ମା କତିରେ ଛାଡ଼ିବାକୁ ଆସିଲା। ତା ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ଗର୍ବିତା ଶତପଥୀଙ୍କ ଗୃହିଣୀ ସୂର୍ଯ୍ୟମୁଖୀ ଓରଫେ ସୂର୍ଯମାଇଁ ରସକଳାକୁ ଉଦ୍ଦେଶକରି କହିଲା, ''ହଇ ହେ ବନା ବୋଉ! ଏ ତମ ସଙ୍ଗ ଧଇଲାଣି କି? ତମର ଏକା ବଡ଼ ଦୟାଧର୍ମ। ଲୋକେ କହନ୍ତି ପରା– 'ହୃରୁଷୀ ବୋହୂ ପରି ଆମ ସାହିରେ ବୋହୂ ନାହାନ୍ତି।' ଆଉ ଯା ମା, ଗଲାଣି ତ ଅର୍କ୍ଷିତିଆଣୀ ମରି ପୋଡ଼ି ଜଳିଜାଳି ଗଲାଣି। ବାପ ଲୋ, ତା ଗରବ କହିଲେ କାହାଣେ ଛପଣ। ବଡ଼ ଲୋକ ଝିଅ ଦେଖେଇ ହଉଥିଲା। ଯେମିତି ଗରବ, ସେମିତି ଫଳ। ଏକା ପିଲାଟାକୁ ଅରକ୍ଷିତ କରି ଏକା ଝାଡ଼ାକଇରେ ମା ଝିଅ ଗଲେ ତ! କହନ୍ତି ନାହିଁ– 'ଦୁଧ ଉତୁରିଲେ ଚୁଲିରେ ପଡ଼େ, ମଣିଷ ଉତୁରିଲେ ଗାତରେ ପଡ଼େ।' ଏତେ ଟାଣ କି ଦଇବ ସହେ।''

ରଘୁନାଥ ସୂର୍ଯି ଆଈ କଥାରେ ଲଜ୍ଜିତହୋଇ ମୁହଁତଳକୁ କଲା। ସେ ଅରକ୍ଷିତ, ଏ କଥା କଣ ପୃଥିବୀଯାକ ତାକୁ ତୁହାଇ[3] ତୁହାଇ କହିବେ? କକେଇ କହିଲା ହେଲା ନାହିଁ, ପୁଣି ମାତାର ଚିର ଶତ୍ରୁ ସୂର୍ଯି ଆଈ କହିଲା– ମା ଉଉଣୀ ନାଁ ଧରି; ଏତେ ଲୋକଙ୍କ ଆଗରେ ଏପରି କଥା, ତାହାର ପ୍ରାଣରେ କଣ୍ଟା ଫୁଟିଲାପରି ବଡ଼ ବ୍ୟଥାହେଲା। ଖୁଡ଼ୀତ, ମୁହଁକୁ ଅନାଇଲା। ସହାନୁଭୂତିରେ ଅତି ଧୀରେ କହିଲା ''ତୁନି ଥା, ବଡ଼ କଳିହୁଡ଼ୀଟା।''

ଏହା କହି ରୋଦନପରାୟଣ ଗୌରୀକୁ ତୁନି କରୁକରୁ କହିଲା, ''ଯାଉଚି ହେ– ବସିପାରିବି ନାହିଁ, ଟୋକୀଟାକୁ ନିଦ ଅଇଲାଣି।'' ତା ପଛେପଛେ ଶାମବୋଉ ଓ ତାରିଣୀ ପହଞ୍ଚିଗଲେ। ସମସ୍ତେ କଉଡ଼ି ଖେଳର ପ୍ରସ୍ତାବକଲେ।

ଏଥର ଦୁଇ ପଙ୍କ୍ତା ହୋଇ ବୁଢ଼ୀ ଆଉ ଯୁବତୀମାନେ ବସିଗଲେ। କଉଡ଼ି ଖେଳ, ପାନଖିଆ ସଙ୍ଗେସଙ୍ଗେ ଶତସହସ୍ର ପରଚର୍ଚ୍ଚା, ପରନିନ୍ଦା ଆରମ୍ଭ ହେଲା। ହୃରୁଷୀ ପରିବାରର ଚର୍ଚ୍ଚାରେ ବ୍ୟସ୍ତ ତାରିଣୀ ସୂର୍ଯି ମାଉସୀଙ୍କୁ ଅନାଇଁ ଲଳିତ ସ୍ୱରରେ କହିଲା, ''ଏ ମାଉସି, ଦେଖିଲୁ ରସମାଈ କି? ଏଥର କଟକରୁ ନୂଆ ଗଣ୍ଡିଆ ହଳେ, କଣ୍ଟାକଡ଼ି ହଳେ କରି ଆଣିଚି– ବଡ଼ ସୁନ୍ଦର ଏକା! ଆମ ଗାଁରେ ଆଉ କାହା କାନରେ ସମିତି ନାହିଁ। ଆଜିକାଲି ଯାଙ୍କ ହାତରେ ଦି ପଇସା ଥିବାରୁ ଏମାନେ ମଣିଷ ଚିହ୍ନୁଛନ୍ତି! ହୃରୁଷୀ ମାମୁର ଯେଉଁ ଗରବ!'' ସୂର୍ଯି ମାଉସୀ ଯୋଗ ଦେଇ କହିଲା– ''ତା ପଚାରୁଚୁ ଲୋ ଝିଅ, ହୃରୁଷିଆର ଯେଉଁ ଚାତର[4]! ହେଲେ ତାଙ୍କ ଚଉଦପୁରୁଷ ଖବର ମତେ ଜଣା। ଏ ଆଗେ ଖାଉଥିଲେ ପେଜ, ଏବେ

(୧) ଘରର ଛପର ତଳେ, ଚାରିକାନ୍ଥ ଉପରକୁ ଲଗାଇ କାଠ ବାଉଁଶ ଓ କାଦୁଅରେ ତିଆରି ମୋଟା ଆସ୍ତରଣ, (୨) ହଇଚା, (୩) ଦୋହରାଇ, ବାରମ୍ବାର, (୪) ଛଳ, ଚାଲାକି।

ଆଣ୍ଟିଏ ବହଳ ଶେଯ।' ମୁଁ ବୁଢ଼ୀ ହେଲିଣି ପରା, ହୁରୁଷିଆ ପରି ଢଳିଆଂ, ତଣ୍ଟିକଟା କାହାକୁ ଦେଖି ନାହିଁ; ଏଡ଼ିକି ଲୋଭ- ଭାଇର ସବୁ ଖାଇଲା, ଭାଉଜର ସବୁ ଗହଣା ବିକିବାକି ଭାରିଯା ପାଇଁ ଗହଣା ଗଢ଼ିଚି। ଏ ରସକଳାକୁ ସମାନ ବୁଝିଚୁ- ବଡ଼ ଭିତରମାରୁ।''

ଚନ୍ଦ୍ରମଣି ପିଉସୀ ମିଶିଯାଇ କହିଲା- ''ହଁ ଲୋ ଖୁଡ଼ି, ରଘୁକୁ ତ ଏଇମାନେ ଦାଣ୍ଡରେ ବସେଇଲେ। ଖୁଡ଼ୀଟା ବଡ଼ ମଉନମୁହାଁ[୨] ଚତୁରୀ ଏକା।'' ଶାମା ବୋଉ କଉଡ଼ି ଦାନ ପକଉପକଉ କହିଲା- ''ରସକଳା ବିଚାରୀ ଏ ସବୁରେ ନ ଥାଏ- ସବୁ ହୁରୁଷିଆର ଫନ୍ଦି'। ଆଲୋ ବୋଉ ଲୋ! ସେ କଥା ପରା ମୁଁ ଭୁଲିବି ନହିଁ, ଦିନ ଦି'ପହରଟାରେ ଭାଉଜକୁ ଘରୁ କାଢ଼ିଲା! ତା ମା ଏକା ବଡ଼ ବୋହୂକୁ ଦି ଆଖିରେ ଦେଖିପାରୁନଥିଲା!''

ତାରିଣୀ- କିମିତି ଦେଖିବ ! ବଡ଼ଘର ଝିଅ, ଅଲିଅଳ[୩] ହେଇ ବଢ଼ିଥିଲା। ଯାଙ୍କ ଘରକୁ ଦି'କଡ଼ାର କେଲା। ଯେ ଗୋପୀନାଥ ମାମୁ କିରାଣି କାମ କରୁ ନ ଥାନ୍ତା, ସେବତୀର ଅଚା ଝିଅ ନ ଦିଅନ୍ତା। ଗାଁଲୋକ ବି କହିଥିଲେ। ସେ କାହା କଥା ଶୁଣିଲା କି? ମାଈଟା ବଡ଼ ହୁଣ୍ଡୀ ଥିଲା। ରସ ମାଈଁ ସଙ୍ଗେମିଶି ଗୋପୀନାଥ ମାମୁ ମଲାପରେ ସବୁ ଦିଅର ହାତରେ ସମିଦେଲା। ମୁଁ ଯାଙ୍କୁ ପରା ଦି ଆଖିରେ ଦେଖିପାରେନାହିଁ। ଏବେ ରସ ମାଈଁ କହେ, କୁଆଡ଼େ ରଘୁକୁ କଟକ ପଠେଇବ।''

ଶାମାବୋଉ- ମତେ ବିଶ୍ୱାସ ହଉ ନାହିଁ। ହୁରୁଷିଆ ରଘୁକୁ ବସାଠାଇଁକି ନବ ? ତାକୁ ଏଠି ତ ଦି ଆଖିରେ ଦେଖିପାରେନାହିଁ। ହେଇଥିବ, କିଏ ଜାଣେ ଲୋ ମା!

ଗୋଟି ପାଚିଲାଣି କି ନାହିଁ, ଦେଖୁ ଦେଖୁ ଚମ୍ପା ମୁରୁକି ହସାଦେଇ କହିଲା, ''ସତ ତ ନବ! ଯାର ଦରମା ବଢ଼ିଚି- ଆଠ ଟଙ୍କାରୁ କୋଡ଼ିଏ ଟଙ୍କା ହେଇଚି, ତା ସାଆନ୍ତ ତାକୁ ବଡ଼ ସୁଖପାଆନ୍ତି, ଆଉ ସାଇକୁ କୋଠାକରିବ।''

ଗ୍ରାମ ମଧ୍ୟରେ ସୂର୍ଯ୍ୟ ଓରଫେ ଶତପଥୀଙ୍କ ଗୃହିଣୀର କୋଠା ଛଡ଼ା ଆଉ କାହାରି କୋଠା ନାହିଁ। ସେ ଶେଷୋକ୍ତ କଥା ଶୁଣି ଈର୍ଷାରେ କହିଲା- ''କରୁ କୋଠା, ପରତଣ୍ଟି ଚିପି କୋଠା କଲେ ଏକାଦିନକେ ଭୁଷୁଡ଼ିପଡ଼ିବ ନାହିଁକି? ଦେଖିବ ଥାଅ, ମୁଁ ତ ଗରବ କରି କହୁଚି- ଲକ୍ଷିଆ ବାପ ପରି ସଚ୍ଚାଲୋକ[୪] ଏ ଖଣ୍ଡକରେ ନାହାନ୍ତି। ଆମର ମହାଜନୀ କାରବାର ସତ, ଆମେ ଏଡ଼ିକି ତଣ୍ଟିଚିପା[୫] ନୋହୁଁ।''

ଚମ୍ପା ଓ ଶାମାବୋଉ ମୁହଁରେ କିଛି କହିଲେ ନାହିଁ, ମାତ୍ର ମନେମନେ ଭାବିଲେ, ସୁଦ ଖାଇଖାଇ ତମ ଦିନଗଲା, ପୁଣି ସଚ୍ଚା।

ଏଣେ ରସକଳା ଓ ରଘୁ ଘରେ ବସି ପିଠାପଣା ଭୋଜନରେ ବ୍ୟସ୍ତ। ଇତ୍ୟବସରରେ ଆମ୍ଭେମାନେ ତାଙ୍କ ଘରଟି ଦେଖିନବା। ଗାଁ ମଝି ଦାଣ୍ଡକୁ ଘର। ଚାଳ ଛପର, କିନ୍ତୁ ଭିତରେ ଶକ୍ତ ମଉଡ଼ମରା ଆଟୁ ତିନି ବଖରା। ମଝିରେ ବଡ଼ ଅଗଣା, ବାରି ପଟକୁ ଦି ସରି ଛୋଟ ଛୋଟ ନାହାଚାଳିଆ ଘର ଚାରି ବଖରା। ଗୋଟିକରେ ଗାଈ ଗୋରୁ ରହନ୍ତି ଆଉଟି ଢେଙ୍କିଶାଳ।

---

(୧) କପଟାଚାରୀ, ଅନ୍ୟକୁ ହଇରାଣ ହରକତ କରୁଥିବା, (୨) ଉପରେ କିଛି ନ କହି ଭିତରେ ଭିତରେ ଅନ୍ୟର କ୍ଷତି କରୁଥିବା, (୩) ଗେହ୍ଲା, (୪) ମହତ, ଖାଣ୍ଟି, (୫) ଶୋଷକ।

ତା କତି ଘରଟି ରୋଷେଇଶାଳ। ଆଉ ଆରପାଖ ଘର ନାନା ଆଳିମାଳିକାରେ ପୂର୍ଣ୍ଣ। ଅଗଣା ମଝିରେ ଗୋଟିଏ ସୁନ୍ଦର ସଜନା ଗଛ– ଫଳରେ ନଇଁ ପଡ଼ିଛି। ପିଢ଼ା ଓଳିତଳେ ମନ୍ଦା କରି ଲାଉ, କଖାରୁ ମଞ୍ଜି ପୋତାହୋଇଛି। ରସକଳା ଶାଗ ବଡ଼ ସୁଖପାଏ। ରୋଷେଇଶାଳ ପିଢ଼ାରେ ପୋଇଲଟା ଗହଳହୋଇ ମାଡ଼ିଛି। ଅଗଣା ପାଖକେ ମରିଚ[୧] ତଳି, ପାଖକେ ବାଇଗଣ ତଳି ଗୁଆ ସରିଲାଣି। ଖଡ଼ା, ଲେଉଟିଆ, କୋଶଳା-ପଟାଳି, ବାରିଆଡ଼େ ହଣାମରା ହେଲାଣି।

ଘରେ ଭୀମା ବାରିକ ଛଡ଼ା ଆଉ କେହି ଦାସଦାସୀ ନାହାନ୍ତି। ରସକଳା ଏକାଏକା ସବୁ ପାଇଟିକିରେ। ତାଙ୍କୁ ଶୋଇବାର, ବସିବାର କେହି କେବେ ଦେଖି ନାହିଁ– ବଡ଼ି ଅନ୍ଧାରୁ ଉଠି ରାତି ନଅଟାଯାଏ କାମରେ ଲାଗିଥାଏ। ରନ୍ଧାବଢ଼ାଠାରୁ ଆରମ୍ଭକରି ଢ଼େଙ୍କିକୁଟା, ଧାନଉଁସା ପର୍ଯ୍ୟନ୍ତ ସେ ଅନାୟାସରେ କରିପାରେ।

ଅଳ୍ପଭାଷିଣୀ, ସଦା ପ୍ରଫୁଲ୍ଲମୁଖୀ ରସକଳା ରଘୁନାଥକୁ ସନ୍ତାନାଧିକ ସ୍ନେହକରେ। ରଘୁ ଦୁଇ ବର୍ଷ ବୟସରୁ ପିତୃହୀନ। ପ୍ରାୟ ଏକ ବର୍ଷ ହେଲା, ଏକମାତ୍ର ଭଗିନୀ ରତ୍ନମଣି ଏବଂ ମାତା ସୁଲକ୍ଷଣା ବିସୂଚିକାରେ କାଳ ଗ୍ରାସରେ ପତିତ ହୋଇଅଛନ୍ତି। ଗ୍ରାମର ଲୋକେ ତାଙ୍କୁ ବେଶ୍ ଭଲପାନ୍ତି, କାରଣ ସେ ବଡ଼ ବାଧ୍ୟ[୨] ଯେ ଯେଉଁ କାମଟି କହେ, ଲାଗି ପଡ଼ି କରେ। ଗାଁ ପିଲାଙ୍କୁ କାଖେଇ କାଖେଇ ତା ଦିନ ଯାଏ; ପୁଣି ଗାଁ ଚାହାଳୀରେ ବାସୁ ଅବଧାନ କତିରେ ସେ ଅନେକ ପାଠପଢ଼ିଛି। ତାହାର ପ୍ରଖର ସ୍ମୃତିଶକ୍ତି ବଳରେ ସେ ନାନା ଛାନ୍ଦଗୀତ ମୁଖସ୍ଥ କରି ମଧୁର କଣ୍ଠରେ ଗାଏ, କିନ୍ତୁ ତାଙ୍କୁ ସବୁଠାରୁ ବେଶି ସୁଖ ପାଏ ତାହାର ଖୁଡ଼ୀ ରସକଳା।

ତାହାର ଖୁଡୁତା[୩] ହୃଷୀକେଶ ବର୍ଷକେ ଦୁଇ ଥର ଘରକୁ ଆସେ, ଥରେ ଧାନରୁଆବେଳେ, ଥରେ ଅମଳବେଳେ। କଟକର ଶେଖର ଚଉଧୁରୀଙ୍କର ସେ ଜଣେ ବଡ଼ ଗୁମାସ୍ତା।



## ଦ୍ୱିତୀୟ ଅଧ୍ୟାୟ

ମହାନଦୀକୂଳକୁ ଯେଉଁ ବଡ଼ କାଠଗୋଲାଟି ଦିଶୁଚି, ତାହା ଶ୍ରୀ ଚନ୍ଦ୍ରଶେଖର ଚୌଧୁରୀଙ୍କର। ଗୋଲାକୁ ଛାଡ଼ି ସଡ଼କ ମଧ ପାରିର ବଡ଼ ଆମ୍ବତୋଟା ପଛକୁ ଯେଉଁ ସୁନ୍ଦର ଏକତଳବିଶିଷ୍ଟ ଚଉସରିଆ କୋଠାଟି, ତାହା ତାଙ୍କର ବାସଭବନ; ଦୂରଛଡ଼ା ଖଣ୍ଡି କେତେ ଘର ଗୁମାସ୍ତାମାନଙ୍କର ବାସଗୃହ, ବଢ଼େଇଶାଳ, ଧାନଗୋଦାମ ଓ ଗୋରୁଗୁହାଳ।

ଜମିର ଆୟତନ ଓ କାରବାରର ବିସ୍ତାର[୪] ଦେଖିଲେ ଚୌଧୁରୀଏ ଯେ ଛଣା ଲୋକ ନୁହନ୍ତି, ଏହା ସହଜରେ ବୁଝାଯାଏ। ଲୋକେ କହନ୍ତି, ଚୌଧୁରୀଏ ଲକ୍ଷପତି,ଜମିଦାରୀ କରି ଗଲେଣି। ଦେଶରେ[୫] ତାଙ୍କର ଗୁଆ, ନଡ଼ିଆମାଳ, ପୋଲାଙ୍ଗ, କରଞ୍ଜ ତୋଟାମାନ ଅଛି।

(୧) ଲଙ୍କା, (୨) ବିଶ୍ୱସ୍ତ, (୩) କକେଇ, ବାପାଙ୍କ ସାନଭାଇ, (୪) ବ୍ୟାପ୍ତି,ପ୍ରସାର
(୫) ଗାଁରେ

ଆଜି ତାଙ୍କ ଘରେ ମହୋତ୍ସବ। କୁମାରପୂର୍ଣ୍ଣିମାରେ କୁମାର-କୁମାରୀଙ୍କର ଆନନ୍ଦ-ସମ୍ମେଳନ।

ଆକାଶରେ ରୂପାଥାଳୀଟି ପରି ବଡ଼ ଉଜ୍ଜ୍ୱଳ ଜହ୍ନ ଉଇଁଛି– ସନ୍ଧ୍ୟା ଛ ଘଡ଼ି ହେଲାଣି, ମାତ୍ର ଆଜି ଅନ୍ଧାର ଲେଶମାତ୍ର ନାହିଁ। ଚୌଧୁରୀଙ୍କ ବାସଭବନର ବଡ଼ ଆମ୍ବତୋଟା ଉପରେ, ସଡ଼କ ସେପାରି ମହାନଦୀର ବିସ୍ତାରିତ ଜଳବକ୍ଷ ଉପରେ ଚାନ୍ଦଆଲୁଅ ନାଚୁଛି। ନାଉରିମାନେ କୂଳକୁ ନା'ଭିଡ଼ିଲେଣି। ଅନେକ ଯୁବକ ଓ ବାବୁ ସଡ଼କରେ ସଞ୍ଜ ପବନ ଖାଇ ବୁଲୁଅଛନ୍ତି। ଆଜି କୋଜାଗର[୧] ପୂର୍ଣ୍ଣିମା– ଆନନ୍ଦର ଚୂଡ଼ାନ୍ତ ଲୀଳା। ଆକାଶରେ ଆନନ୍ଦର ଖେଳ। ତାରାମାନେ ଜହ୍ନ ଆଲୁଅରେ ଲୁଚକାଳି ଖେଳୁଛନ୍ତି; ଖଣ୍ଡ ଖଣ୍ଡ ଧଳା ମେଘ ରୂପାଦରଟିମାନ ପରି ଆକାଶରେ ପରା ହୋଇଛି, ତାହାରି ଭିତରେ ତାରାଗୁଡ଼ିକ ଲୁଚିଲୁଚି ଖେଳୁଛନ୍ତି; ଆଉ ଚାନ୍ଦ ଖେଳୁଛି ନଦୀ ସଙ୍ଗରେ। ମହାନଦୀଟି ବଡ଼ ଆରସି[୨] ପରି ଦିଶୁଛି। ଜ୍ୟୋତ୍ସ୍ନାରେ ଜଳହିଲ୍ଲୋଳ ଚକଚକ ଝକଝକ, ଠାଏଠାଏ ତାରା ଆଲୁଅ, ଠାଏଠାଏ ଭଉଁରୀଚକ୍ର; ଅଇନା କାଚ ଉପରେ ଡାଳ, ଫୁଲ, ପତ୍ର, ଚିତ୍ର ପରି ଦିଶୁଛି; ଆଉ ଦୁଇ କୂଳର ଗଛପତ୍ର, ଦୂର ପର୍ବତରେଖା, ଦୂର କୁଡ଼ିଆମାନ ଓ ସଞ୍ଜ-ଦୀପର ଦୂରାଗତ ସୁବର୍ଣ୍ଣ-ରଶ୍ମି, ଅଇନାର ବିଚିତ୍ର ବେଢ଼ଣୀ। ସେ ଦର୍ପଣଟିରେ ମୁହଁ ଦେଖିବାକୁ ବ୍ୟସ୍ତ ଚାନ୍ଦ ଆଉ ତାରାମାନେ। ଚାନ୍ଦ ନିଜର ପରମ ସୁନ୍ଦର ରୂପ ଦେଖି ଆନନ୍ଦରେ ଆତ୍ମହରା। ସବୁ ଅମୃତ ଠୁଳକରି ଦେବତାଏ ନାମ ଦେଲେ ଅମୃତାଂଶ, ସୁଧାକର, ଆଉ ଆଜି ସତକୁ ସତ ସେ ପୂର୍ଣ୍ଣ ସୁଧାମୟ! ସମଗ୍ର ବିଶ୍ୱରେ ଆଜି ତା ପରି ସୁନ୍ଦର କିଏ? ସେ ସୌନ୍ଦର୍ଯ୍ୟ ରାଜ୍ୟର ଛାତ୍ରପତି ସମ୍ରାଟ୍ ଆଜି! କତିରେ କ୍ଷୁଦ୍ର ଜହ୍ନିଫୁଲ ପରି ତାରାଗୁଡ଼ିକ ବଡ଼ ମଳିନ, ବଡ଼ ଲଜାକୁଳ- ନିଜ ଭିକାରୀ ବେଶକୁ ମେଘ-ଓଢ଼ଣା ଆଢୁଆଳରେ ଲୁଚାଇବାରେ ତତ୍‌ପର।

ଆନନ୍ଦରେ ମଉ କୁମାର କୁମାରୀମାନେ! ଆମ୍ବତୋଟା ପତ୍ରଗହଳ ପଛାଡ଼ୁ ସେମାନଙ୍କର ଆନନ୍ଦ-କୋଳାହଳ ଶୁଭୁଛି। ଥାଳି ସଜାଡ଼ି ଚାନ୍ଦକୁ ବନ୍ଦାପନା କରି ପିଲାମାନେ ଗାଇ ଉଠିଲେ –

''ଜହ୍ନ ରେ ଜହ୍ନ! ନିର୍ମଳ ଜହ୍ନ!
ଏହି ଜହ୍ନ ସଙ୍ଗେ ଖେଳିବାକୁ ମନ।
ଜହ୍ନ ଯେ ଆମର ମାଆର ଭାଇ,
ଘାଟ ଛାଡ଼ିଦିଅ ଘାଟୁଆ ଭାଇ।
ମୁଁ ତ ଯିବି ସୋଲରୀ ଘାଟ,
ସୋଲରୀ ଘାଟରେ ଟିକି ବୋଇତ,
ଟିକି ବୋଇତ କି ମୁଦି ବୋଇତ,
ଡାଳି ପୋହଳାକୁ ବାଛି ଆଣିବି, ରାଜକୁମାରୀକି ବାଛି ଆଣିବି!

---
(୧) କୁମାର ପୂର୍ଣ୍ଣିମା, (୨) ଆଇନା, ଦର୍ପଣ

ତହିଁରେ ଚୌଧୁରୀଙ୍କ ସାନ ଝିଅ ସୀତା ଯୋଗଦେଲା–

‘ଆରେ ଜହ୍ନ ମାମୁଁ ଶରଦ ଶଶୀ,

ମୋ କାହ୍ନୁ ହାତରେ ପଡ଼ରେ ଖସି।’

ପିଲାମାନଙ୍କ ନିର୍ମଳ ଆନନ୍ଦରେ ସର୍ବାନ୍ତଃକରଣରେ ଯୋଗ ଦେଇ, ସେମାନଙ୍କୁ ପରିତୋଷକରି ମିଠେଇ, ଭୁଜା, ଉଖୁଡ଼ା ଓ ନଡ଼ିଆ ଖଣ୍ଡ ବାଣ୍ଟୁ ବାଣ୍ଟୁ ଚୌଧୁରୀଙ୍କ ଗୃହିଣୀ ସରସ୍ୱତୀ ଭିତର ଅଗଣାକୁ ଗଲେ। ତାଙ୍କୁ ଦେଖି ପ୍ରଫୁଲ୍ଲ ଚିତ୍ତରେ ଓ ଆନନ୍ଦ ସ୍ୱରରେ ପିତେଇ ନାନୀ ଗାଇଉଠିଲା –

‘ବନ୍ଧାପନା ଥାଳୀ ସଜାଡ଼ି ସଙ୍ଗାତେ

ଆସ ଲୋ ଖେଳିବା ଖେଳ,

ଫୁଲସଞ୍ଜବେଳେ କାଳିନ୍ଦୀର କୂଳେ

କୋଜାଗର ନିଶି ମେଳ।’

ପିତେଇ ନାନୀର ଗୀତ ଶୁଣି ସରସ୍ୱତୀଙ୍କ ଶିଶୁପୁତ୍ର ‘ବାବୁ’ ଦଉଡ଼ିଆସିଲା, କହିଲା, ‘ନାନି! ଆଉ ଥରେ ଗା, ତୋର ଭାରି ସୁନ୍ଦର ସ୍ୱର।’ ବାବୁ କଥା ଶେଷ ହୋଇନାହିଁ, ହଠାତ୍ ଅପରିଚିତ ବାଳକଟିଏ ଭିତର ଅଗଣା ପଶିଆସିଲା। କରିଆ ‘ହାଁ’ ‘ହାଁ’ ପାଟି କରି ଦଉଡ଼ିଗଲା। ସରସ୍ୱତୀ ରନ୍ଧାଘର ଦୁଆରମୁହଁରେ ଛିଡ଼ାହୋଇଥିଲେ। ‘କଣ ହେଲା’, ‘କଣ ହେଲା’ କହି ସେ ମଧ୍ୟ ସେଠାକୁ ଚାଲିଆସିଲେ। ସୀତା ଓ ବାବୁ ମା ପାଟି ଶୁଣି ଧାଇଁଗଲେ। କାହାକୁ ନ କହି ପିଲାଟି ଘର ଭିତରକୁ ପଶିଆସିଛି। ବେଶଭୂଷାରୁ ସେ ନିତାନ୍ତ ନିରୀହ ଗାଉଁଲୀ ପିଲାପରି ଦିଶୁଛି, କିନ୍ତୁ କାନ୍ଧରେ ପଇତା। ସରସ୍ୱତୀ ବୁଝିଲେ, ସେ ବ୍ରାହ୍ମଣସନ୍ତାନ। ହଠାତ୍ ଚୋରିକରି ଧରାପଡ଼ିବାରୁ ବାଳକ ଚୋରପରି ଥରୁଥାଏ। ସରସ୍ୱତୀ କରିଆକୁ ତାହାର ହାତ ଛାଡ଼ିଦେବାକୁ କହିଲେ; ଭାବିଲେ, ପିଲାଟି ପଳାଇବ। କିନ୍ତୁ ସେ ମୁହଁ ଟେକି ତାଙ୍କ ମୁହଁକୁ ଚାହିଁଲା। ସେ ଦେଖିଲେ, ପିଲାଟି ଅନିନ୍ଦ୍ୟସୁନ୍ଦର। ତାହାର ବଡ଼ ବଡ଼ ଉଜ୍ଜ୍ୱଳ ନୀଳ ଆଖି, ଚମ୍ପାଫୁଲ ପରି ବର୍ଣ୍ଣ, ମୁଖର ଅପୂର୍ବ ଲାଳିତ୍ୟରେ ତାଙ୍କର ମାତୃହୃଦୟ ମୁଗ୍ଧହେଲା। ପିଲାଟି ମଧ୍ୟ ତାଙ୍କର ମୁଖମଣ୍ଡଳରେ କଣ ଦେଖିଲା କେଜାଣି, ତାହାର ଭୟ ଛାଡ଼ିଗଲା। ସେ ଅପେକ୍ଷାକୃତ ଦୃଢ଼ହୋଇ ଛିଡ଼ାହେଲା। ସରସ୍ୱତୀ ସଦୟ ଭାବରେ ପଚାରିଲେ– ‘‘ହଇରେ, ତୋ ନାଁ କଣ?’’

‘‘ମୋ ନାଁ ରଘୁ, ମୁଁ ହୁରୁଷୀ କଳେଇ ବସାରୁ ଅଇଲି। କଳେଇ ମତେ ପଠେଇ ଦେଲା।’’

‘‘ଆମ ଗୁମାସ୍ତା! ତୁ ତା ପୁଅ?’’

‘‘ପୁତୁରା।’’

''ତୁ କଣ ନୂଆ କାଟକ ଆସିଚୁ ?''

''ହଁ।''

''ତୋର ବାପ ମା ଅଛନ୍ତି ?''

''ବୋଉ ଆଉ ରତନୀ ନାନୀ ମରିଗେଲେ, ମୁଁ ଖୁଡ଼ୀ କତିରେ ଥିଲି। କକେଇ ସଙ୍ଗେ କଟକ ବାହାରି ଅଇଲି।''

''ତୋ ଖୁଡ଼ୀ, ଖୁଡ଼ୁତା ତତେ ସୁଖପାନ୍ତି ?''

''ହଁ।''

''ଏଠି କଣ କରୁ ?''

''ଗଣ୍ଡେ ରୋଷେଇ କରେଁ, ଆଉ କିଛି ନାହିଁ।''

ସରସ୍ୱତୀ ବାଳକଟିର ସରଳତାରେ ମୁଗ୍ଧହୋଇ ତାକୁ ଅନେକ କଥା ପଚାରିଲେ। ବାଳକଟି ଅନାଥ ବ୍ରାହ୍ମଣସନ୍ତାନ, ଏ କଥା ଭାବି ତାଙ୍କର କରୁଣା ଉଚ୍ଛୁଳିଉଠିଲା। ପାଖରେ ବସାଇ ସେ ତାହାର ପିତାମାତା ବିଷୟ ସବୁ ଶୁଣିଲେ ଏବଂ ତାକୁ ନୂଆ ଲୁଗାଟିଏ ପିନ୍ଧାଇ ଅତି ଯତ୍ନରେ ଭୋଜନକରାଇ ଗଲାବେଳେ କହିଲେ, ''ପାଖରେ ତ ଅଛୁ, ଥରେ ଅଧେ ଆସିବୁ।''

ସୀତା ଓ ବାବୁ, ମା କତିରେ ବସି ସବୁ ଶୁଣିଲେ। ରଘୁ ହୁରୁଷୀ ଗୁମାସ୍ତାର ପୁତୁରା; ପାଖରେ ଅଛି। ନଈ କୂଳରେ ତାଙ୍କ ଖେଳସଙ୍ଗୀ କେହି ନାହିଁ। ଏଥର ନିତି ଆସିବ, ସେମାନେ କେତେ ଖେଳ ଖେଳିବେ– ଏହା ଭାବି ଆନନ୍ଦହେଲେ। ରଘୁ ଗଲାବେଳେ ବାବୁ କହିଲା– ''କାଲି ଆସିବୁ, ଆମର ଖେଳିବା।'' ସୀତା ମଧ୍ୟ ଅତି ଶରଧାରେ ଦରଫିଟା ପାନଖିଲଟିଏ ଦେଇ କହିଲା – ''ତୁ ନିଶ୍ଚେ କାଲି ଆସିବୁ, ଆମର ଚୋରିଚୋରିକା ଖେଳିବା, ନଇଲେ ଆମେ ତୋ ଘରକୁ ଯିବା।''

ସୀତା ଓ ବାବୁର ଏତେ ସ୍ନେହ ! ରଘୁନାଥ ତାହାହିଁ ଭାବୁଭାବୁ ଘରକୁଗଲା। କକେଇ ସହିତ କଟକ ଆସିଲା ଦିନୁଁ ତା କପାଳ ଫାଟିଛି। ରନ୍ଧାବଢ଼ା, ବାସନମଜା, ଘରର ଅନ୍ୟାନ୍ୟ ସବୁ ପାଇଟି ତାକୁ ଏକୁଟିଆ କରିବାକୁ ପଡ଼େ। ସେଥିରେ ପୁଣି କକେଇର ନିତି କଟୁକଥା, ନିତି ଅସନ୍ତୋଷ ଏବଂ ଉତ୍ତମ ମଧ୍ୟମ ପ୍ରହାର[୧]। ରଘୁର ଖବର କିଏ ବୁଝେ ? ଗଣ୍ଡାଏ ଭାତ ତୋରାଣି କରି ଦିନରାତିରେ ଦୁଇଥର ହେଲେ ବହୁତ। ତହିଁରେ ପୁଣି କକେଇର ସବୁ ପଦାର୍ଥକୁ ବଡ଼ ଆଖି[୨]– ତେଲ ବେଶି ସରିବ ନାହିଁ, ସୋରିଷ ତେଲ ବଡ଼ ଦାମ୍– ସେଇ ଆଠଣା, ଦଶଣା। ରଘୁ ନୁଖୁରା[୩] ଗାଧାଏ, ପାନଗୁଣ୍ଡି ମହରଗ– ଛୁଇଁବାର ସାଧ ନାହିଁ, ଲୁଗା ବୋଇଲେ ଦୁଇଖଣ୍ଡି ମୋଟ ଗାମୁଛା–ଧୋଇଶୁଖାଇ ପିନ୍ଧେ, ଏଠି ତାର ପାଠର ନାଁ ଗାଁ ନାହିଁ। କକେଇର ଅତ୍ୟାଚାରରେ ହାତ ପିଠିରେ ଲୁହ ପୋଛୁପୋଛୁ ତା ଦିନଯାଉଛି। ବାଳକ ଦିନରାତ ଖୁଡ଼ୀକୁ

(୧) ବାଡ଼ି/ବେତରେ ମାଡ଼, (୨) ଲୋଭ, (୩) ତେଲ ଲଗାଇ

ମନେକରେ। ଖୁଡ଼ୀର ସ୍ନେହ ଓ ଖୁଡୁତାର ବ୍ୟବହାର ମଧ୍ୟରେ ଯେ କେତେ ଯୋଜନ ବ୍ୟବଧାନ, ତାହା ରଘୁନାଥ ବୁଝିଛି।

ଜହ୍ନ ଆଲୁଅ ପଡ଼ିଥିବା ଦାଣ୍ଡରେ ଚାଲୁଚାଲୁ ସରସ୍ୱତୀର ପ୍ରେମବ୍ୟବହାର ମନେ କରି ବାଳକର ହୃଦୟରେ ବହୁଦିନର ପୁରୁଣା, ଅଥଚ ଚିର ନୂତନ ଗୋଟିଏ ମୁଖଛବି ଜାଗ୍ରତ ହେଲା– ସେ ତାର ଜନନୀ। ଆଜି ଯଦି ତାର ମା' ଥାନ୍ତା, ସେ ଏପରି ହୀନସ୍ତା ହୋଇ, କକେଇର ଗାଳିମାଡ଼ ଖାଇ କଟକରେ ପଡ଼ିଥାନ୍ତା? ଯାହା ଦେହରେ ଟିକିଏ ଧୂଳି ଲାଗିଲେ ମା ପଣତ କାନିରେ ପୋଛୁଥିଲା, ଯାହା ସକାଶେ ମା ଯାର ତାର ପାଉଟି କରି ବୁଲୁଥିଲା, ସେହି ରଘୁର ସବୁ ମାୟା କାଟି ମା କେଉଁ ଆଡ଼େ ଅଛି? ଖୁଡ଼ୀ କହେ, ତା ମା ଚାଲି ଯାଇଛି। ଏଡ଼େ ନିର୍ଦ୍ଦୟା ତା ମା! କଣ ଦିନେ ରଘୁକୁ ମନେପକାଏ ନାହିଁ ? ତାର ଏତେ କଷ୍ଟ ହେଲାଣି, ଏତେ ଦୁଃଖ ହେଲାଣି– ସେ ଦିନେ ଆସି ଦେଖାଦେବ ନାହିଁ? ଆହା, ସେ ତ ମରିଯାଇଛି– ମଲେ ଆଉ ଆସିବ! ବାଳକ ଆତ୍ମଚିନ୍ତାରେ ବିଭୋଳ। ଧୀର ପଦବିକ୍ଷେପରେ ସେ ଆସି ଅନ୍ଧାରୁଆ ଛୋଟ ଅଗଣାଟିରେ ପଶିଗଲା। ଘର ଭିତରେ ପଶିବ କ'ଣ– ଜକେଇ ଭୀଷଣ ମୂର୍ତ୍ତି ହୋଇ ବାଡ଼ିଟିଏ ଘେନି ଦୁଆରେ ଛିଡ଼ା। ସପ୍ ସପ୍ ସପ୍ ପାହାର ବସିଗଲା। ରଘୁନାଥ 'ବୋଉ ଲୋ' କହି କାନ୍ଦି ପିଠି ଆଉଁସିପକାଇଲା।

''ହଇରେ ଅର୍କ୍ଷିତ! ରାତି ଅଧଯାଏ କୁଆଡ଼େ ମରିବାକୁ ଯାଇଥିଲୁ? ତୁ ଏକା ଭୋଜି ଖାଇ ଯାଇଥିଲୁ, ନା ଗାଁ ଗୋଟିକର ପିଲା ଆସିଥିଲେ? ବାବୁ, ଗିଳିବାକୁ ଗଲୁ ତ, ରୋଷେଇଶାଳ ମେଲାକରି ଗଲୁ କିଆଁ? ତୋ ବିଲେଇ ବୋପାପାଇଁ କଣ ଭାତ ତିଅଣ[୧] ସଜାଡ଼ି ଥୋଇଥିଲୁ? ଅଲକ୍ଷଣା, ମୁଁ ହାଡ଼ଭାଙ୍ଗି ପୋଷିବାରୁ ଘରେ ବସି ନବରଙ୍ଗ[୨]! ସୁଆଗ[୩] ଛଡ଼ାଇଦେବି ଯେ। ମୁଁ ତୋ ଖୁଡ଼ୀ ସାକୁଲେଇ ନୁହେଁ– ମୁଁ ହୁରୁଷିଆ, ଜାଣଥା। ହାଡ଼ଭାଙ୍ଗି ଚୂନାକରିଦେବି।''

ରଘୁ କଣ ବା କହିବ! ସତକୁ ସତ ସେ ଭୁଲରେ ରୋଷେଇଶାଳ ମେଲାକରି ଯାଇଥିଲା। ବସାର ବାଘରଙ୍ଗିଆ ଭୁଆଁ[୪] ଉପରେ ତା'ର କ୍ରୋଧାଗ୍ନି ପ୍ରଜ୍ୱଳିତ ହୋଇଉଠିଲା। ସେ ତ ସବୁ ସର୍ବନାଶର ମୂଳ। ମନେମନେ ତାକୁ ସହସ୍ର ଗାଳିଦେଇ ନୀରବରେ ବସି କାନ୍ଦିବାକୁଲାଗିଲା। କକେଇ ମନଇଚ୍ଛା ବକି ବକି[୫] ଶୋଇବା ଘରକୁ ଗଲା। ରଘୁ ମଧ୍ୟ ତୁନିତୁନି ପଛେପଛେ ଗଲା। ଦୀପ ଆଲୁଅରେ ଏତେବେଳକୁ ହୁରୁଷିଆର ଦୃଷ୍ଟି ପଡ଼ିଲା– ବାଃ, ରଘୁତ ବେଶ୍ ନାଲିଧଡ଼ି ପାତଳ ଧୋତିଟିଏ ପିନ୍ଧି ଆସିଛି। ଏ ପୁରସ୍କାର ଯେ କାହାର ଦତ୍ତ, ତାହା ବୁଝିବାକୁ ବିଳମ୍ବ ହେଲା ନାହିଁ। ତାହାର ଚକ୍ଷୁ ମୁଖ ହଠାତ୍ ପ୍ରସନ୍ନହେଲା। ସେ ରଘୁକୁ ପାଖକୁ ଟାଣିଆଣି ପିଠି ଆଉଁସିଦେଲା। କୋମଳ ସ୍ୱରରେ କହିଲା, ''ହଉ, ପିଲାଲୋକ, ଦୋଷକଲୁ, ମାଡ଼ଖାଇଲୁ। ଦେ ଦେ, ମୁହଁଧୋଇ ଯା ଶୋ ଯା। ଆଛା, ପୁଅ! ତୋତେ ସେ ଲୁଗାଖଣ୍ଡ କିଏ ଦେଲା?''

---

(୧) ତରକାରି, (୨) ଅୟସ, ବିଳାସ, (୩) ସ୍ନେହ, ଶ୍ରଦ୍ଧା, (୪) ଅଣ୍ଡିରା ବିଲେଇ,
(୫) ରାଗ ଅଭିମାନରେ ଗାରୁ ଗାରୁ ହେବା

କକେଇର ସ୍ନେହରେ ରଘୁର ମାନ, ଦୁଃଖ ଭୁଲିଗଲା। ଲୁଗାଖଣ୍ଡ କିଏ ଦେଇଥିଲା, ଚଉଧୁରୀଙ୍କ ସ୍ତ୍ରୀ କିପରି ଆଦର କରିଥିଲେ, ତାହା କକେଇ ଆଗରେ ସବିସ୍ତାରେ ବର୍ଣ୍ଣନା କଲା ପରେ କହିଲା– "ସାଆନ୍ତାଣି, ବାବୁ, ଆଉ ସୀତା କହିଛନ୍ତି ମଝିରେ ମଝିରେ ଯିବାକୁ।" କକେଇ ମଧ୍ୟ ସହାନୁଭୂତି ପ୍ରକାଶକରି କହିଲା– "ହ. ସେ ବଡ଼ଲୋକ, ତାଙ୍କ ଘରକୁ ଯିବୁ ନାହିଁ ତ, ଆଉ କାହା ଘରକୁ ଯିବୁ। ହଉ ଦେ– ଲୁଗାଖଣ୍ଡ ମସିଆ ହେଇଯିବ, ପେଡ଼ିରେ ରଖିଦିଏଁ।" କକେଇର କଥାରେ ରଘୁ ଲୁଗାଟି ପାଲଟିଦେଲା। କକେଇ ନେଇ ନିଜ ସିନ୍ଧୁକରେ ବନ୍ଦକଲା।

ରଘୁର ଆଉ ଦୁଃଖ ନାହିଁ। ସାଆନ୍ତାଣୀ, ବାବୁ ଓ ସୀତା କଥା ଭାବୁଭାବୁ ସେ ଶୋଇବାକୁଗଲା। ଗାଁରୁ ଆସିଲା ପରେ ତାକୁ ସ୍ନେହ କରି କେହି ପଦେ କହିନାହାନ୍ତି। ସରସ୍ୱତୀଙ୍କ ଆଦରରେ ସେ ଆଜି ପୂର୍ଣ୍ଣପ୍ରାଣ। ଆଉ ବାବୁ ଓ ସୀତା, ସେମାନଙ୍କୁ ସ୍ୱପ୍ନରେ ସୁଦ୍ଧା ରଘୁ ଦେଖିଲା। ସେ ଦରିଦ୍ର, ସେମାନେ ବଡ଼ଲୋକ, ଏହା ତାହାର ମନେ ହେଲାନାହିଁ, କିନ୍ତୁ ସେମାନେ ତାହାର ପ୍ରିୟ, ସେମାନେ ତାହାର ଆତ୍ମୀୟ– ଏହାହିଁ ଭାବୁଭାବୁ ସୁଖରେ ନିଦ୍ରାଗଲା।

ସଞ୍ଜବେଳ- ଆମ୍ବତୋଟା ପଛାଡ଼େ ସୂର୍ଯ୍ୟ ବୁଡ଼ିଯାଉଛି। ଅସ୍ତକାଳୀନ କିରଣରାଗରେ ଖଣ୍ଡ ଖଣ୍ଡ ମେଘଗୁଡ଼ିକ ଚିତ୍ରବିଚିତ୍ର– ଫାଳକେ ଅନ୍ଧାର, ଫାଳକେ ଆଲୁଅ। ଆକାଶର ଗୋଟିଏ ପ୍ରାନ୍ତରେ ବଡ଼ ସଞ୍ଜତାରାଟି ଚକ୍‌ଚକ୍ ହସୁଛି। ସୀତା ଥରେ ତାକୁ ଅନାଇଲା; ଦେଖିଲା, ଆକାଶରେ ପଲେପଲେ ବାଦୁଡ଼ି ଉଡ଼ିଯାଉଛନ୍ତି। ରାତିଚରଗୁଡ଼ିକ ଅନ୍ଧାର କୋଠରୀରୁ ବାହାରିଲେ ପରା ତାଙ୍କୁ ରାତିରେ ଦିଶେ! ଦାଣ୍ଡରେ ପଲ ପଲ ଗୋରୁ ଆସୁଛନ୍ତି। ମଙ୍ଗୁଳିଆ ବାଛୁରୀଟା ତ ଦିଶୁ ନାହିଁ। ପୁଣି ସେ ଅନାଇଲା, ଝରକା ଭିତରୁ ଭଲକରି ଦିଶିଲା ନାହିଁ– ରଘୁ କକେଇର ଚାଳଘର। ଦୃଷ୍ଟିପଡ଼ିଲା ଯାଇ ପୋଖରୀ ଉପରେ। ଫୁଟି ଆସୁଥିବା କଇଁ କଡ଼ଟିକୁ ଅନାଇଁ ସୀତାର ଆଖି ଆନନ୍ଦରେ ଉଜ୍ଜ୍ୱଳ ହୋଇଉଠିଲା। କଡ଼ଟି ଫୁଟୁ, ସୀତା ପହଁରିଯାଇଁ ତୋଳି ଆଣିବ। ତୋଳିଆଣି ଦବ କାହାକୁ? ବୋଉକୁ, ବାବୁକୁ, ନା ପିତେଇ ନାନୀକି? ଆଉ ରଘୁକୁ? ରଘୁକଥା ମନେକରି ସୀତାର କ୍ଷୁଦ୍ର ହୃଦୟଟି ଆନନ୍ଦରେ ପୂର୍ଣ୍ଣ ହେଲା। ଆଜି ରଘୁ ଆସିବ– ସଞ୍ଜ ଆଗରୁ ଆସିବ କହିଛି; ଆଜି କେତେ ଗୀତ ଗାଇବ, କି ସୁନ୍ଦର ରଘୁର ସ୍ୱର! ଏପରି ସ୍ୱର ତ ସୀତା କାହାରି ଶୁଣି ନାହିଁ।

ଆଗୋ କଷି କାକୁଡ଼ି, ମୁଁ ତ ଯାଉଛି ଛାଡ଼ି,
ମନେ କରୁଥିବ ମତେ ଘଡ଼ିକି ଘଡ଼ି।

ରଘୁଠାରୁ ଶିକ୍ଷା କରିଥିବା ଗୀତପଦକ ଗୁଣୁଗୁଣୁ ସ୍ୱରରେ ଗାଉଗାଉ ସୀତା କେତେ କଥା ମନେ କରିପକାଇଲା। ରଘୁ ଭଲା ତାଙ୍କ ଘରେ ଥାନ୍ତା– ସେ, ବାବୁ ଦୁହେଁ ଏକାଠି

ପଢ଼ନ୍ତେ, ଏକାଠି ଖେଳନ୍ତେ, ଏକାଠି ଗୀତ ଗାଆନ୍ତେ; ଅଶୋକ ଚଉତୁରା ମୂଳେ ପୁଚି, ବାଘ ବକରି, ଲୁଚକାଳି, ଟିକିମୂଷି ଇତ୍ୟାଦି କେତେ ଖେଳ ଖେଳି ଖେଳି ତାଙ୍କ ଦିନ ଯାନ୍ତା? ରଘୁ ଆସୁ, ସୀତା କହିବ। ଆଉ କାହିଁକି ତା କକେଇ ଘରେ ରହିବ ସେ? ସେଠି ଦିନ ରାତି ରନ୍ଧାବଢ଼ା, କଂସାମଜା ପାଇଟି କରୁଥିବ, ପୁଣି ଗୁଣ୍ଡାଏ ଭାତରେ ଖୁନ୍ଦାଏ। ସୀତାର ସହ୍ୟ ହେଲାନାହିଁ। ନୀରବରେ ଦୀର୍ଘନିଃଶ୍ୱାସଟିଏ ପକାଇଲା।

ତାହାର ରଘୁ ପ୍ରତି ବଡ଼ ଶ୍ରଦ୍ଧା-ବସିଲେ, ଉଠିଲେ, ଖେଳିଲେ, ବୁଲିଲେ, ଶୋଇଥିଲେ, ଖାଉଥିଲେ ରଘୁ ମନେ ପଡ଼େ। ରାତିରେ ସ୍ୱପ୍ନରେ ସୁଦ୍ଧା ଦେଖେ, ରଘୁ ତାଙ୍କ ସଙ୍ଗେ ଖେଳୁଛି। ସୀତାର ଏତେ ଯେ ସ୍ନେହ, ତାହା ବ୍ୟର୍ଥ ନୁହେଁ- ରଘୁ ତାହା ବୁଝେ। ରଘୁ ମଧ ସୀତାଙ୍କୁ ସେହିପରି ସ୍ନେହ କରେ। ଆହା, ରଘୁର ଭଲା ବାବୁ ପରି ଲୁଗା ଥାନ୍ତା, କୁରୁତା[୧] ଥାନ୍ତା- ରଘୁ ତ ବାବୁଟିଏ ହୋଇଯାନ୍ତା। ପିତେଈ ନାନୀ କହୁଥିଲା- 'ରଘୁଟି ରଜାପୁଅ ପରି'। ସତେ କଣ ରଜାପୁଅମାନେ ରଘୁ ପରି ଗୋରା? ପିତେଈ ନାନୀ କହେ, 'ରଘୁ ଭାରି ସୁନ୍ଦର। ତାର ଆଖି କଳା।' ଏହିକ୍ଷଣି ରଘୁ ଆସିବ ପରା! କିନ୍ତୁ ସନ୍ଧ୍ୟା ହେଲା, ରଘୁ ଆସିଲା ନାହିଁ। ସୀତା ଟିକିଏ ବ୍ୟସ୍ତ ହୋଇ କୋଠା ଛାତ ଉପରକୁ ଗଲା। ଛାତ ଉପରୁ ହୃଷୀକେଶ ଗୁମାସ୍ତାର ଚାଳଘର ଭଲ ଦେଖାଯାଏ। ଦାଣ୍ଡରେ ରଘୁ ବୁଲୁଥିଲେ ସୀତା ଓ ବାବୁ ତାକୁ ଦେଖିପାରନ୍ତି, ତିନିଜଣ ପରସ୍ପରକୁ ଚାହାଁନ୍ତି। ସେଥିରେ ସେମାନଙ୍କର ପରମ ଆନନ୍ଦ। ଦିନବେଳେ କେତେ ଥର ସେମାନେ ଯାଇ ରଘୁର ରନ୍ଧାଘରେ ବସନ୍ତି। ସୀତା ରଘୁର ଏ କାମ, ସେ କାମ କରିଦିଏ। ରଘୁ ଭାତ ରାନ୍ଧୁଥିଲେ ସୀତା ତିଅଣ ସଜାଡ଼ିଦିଏ। ବାବୁ ଓ ସେ ଦୁହେଁ ଘରୁ ପାନ, ଭୁଜା, ଉଖୁଡ଼ା ଆଣି ରଘୁ ସଙ୍ଗେ ଭାଗହୋଇ ଖାନ୍ତି। ଜହ୍ନରାତିରେ, ଜହ୍ନ ଆଲୁଅରେ ରଘୁ ବୁଲୁଥିଲେ, ଦୁଇ ଜଣ ତାକୁ ହାତଠାରି ଡାକନ୍ତି। ସେଥିରେ ତାଙ୍କର ହରଷ ଉଛୁଳିଉଠେ। ଧନୀ ସନ୍ତାନ ବାବୁ ଓ ସୀତା ଏବଂ ନିର୍ଦ୍ଧନ ରଘୁନାଥ ମଧରେ ଧନ ସକାଶେ କିଛି ବାଧା ବିଘ୍ନ ନାହିଁ- ସ୍ନେହ କତିରେ ଧନ ତୁଚ୍ଛ। ସୀତା, ବାବୁ, ସରସ୍ୱତୀ ଓ ପିତେଈ ନାନୀର ରଘୁ ବଡ଼ ପ୍ରିୟ।

ସରସ୍ୱତୀ ରଘୁକୁ ପୁତ୍ରାଧିକ ସ୍ନେହକରନ୍ତି। ଦିନେ ପିତେଈ ନାନୀ କତିରେ ବସି ରଘୁ ମିଷ୍ଟ ସ୍ୱରରେ ଗାଉଥିଲା- 'ହନୁ ତୁ କାହୁଁ ଅଇଲୁ, ଶ୍ରୀରାମ ନାମ ଧଇଲୁ।' ସରସ୍ୱତୀ ଶୁଣି ପାରି ମଧେମଧେ ତାକୁ ଗୀତଗାଇବାକୁ ଡାକନ୍ତି। ସେ ମଧ ଭିତର ପିଣ୍ଡାରେ ବସି ମିଷ୍ଟ ସ୍ୱରରେ ନାନାବିଧ ଛାନ୍ଦ, ଗୀତ, ଚଉତିଶା ଗାଏ। ପୁରସ୍କାରସ୍ୱରୂପ ସରସ୍ୱତୀ ତାକୁ ସୁଉକିଟିଏ[୨], ଅଧୁଲିଟିଏ[୩] ଦେଉଥାନ୍ତି। ରଘୁ ତାହା ନେଇ କକେଇକୁ ଦିଏ। ତଥାପି କକେଇ ତାହାପ୍ରତି ସଦୟ ହେବା ଦୂରେଥାଉ, ସାମାନ୍ୟ ଦୋଷରେ ଗାଳି ମାଡ଼ ଦେବାକୁ ଛାଡ଼େ ନାହିଁ। ମାତ୍ର ଚଉଧୁରୀ ଘରକୁ ଯିବାପାଇଁ ତାହାର ବାରଣ ନାହିଁ। ସେଠିକାର ଉପୁରି ପଇସାରେ ତାଙ୍କ ବସାର ବଜାର ଖର୍ଚ୍ଚ ଚଳିଯାଏ।

(୧) ସାର୍ଟ, ଜାମା, (୨) ଚାରିଅଣା, (୩) ଏକ ପଇସାର ଚାରିଭାଗରୁ ଏକଭାଗ।

ସୀତା ଛାତ ଉପରେ ବୁଲୁବୁଲୁ ଅନ୍ଧାର ହୋଇଗଲା, ମାତ୍ର ରଘୁର ଦେଖାନାହିଁ। ଅନ୍ୟ ଦିନ ଏତେବେଳକୁ ସେ ହସିହସି ଆସୁଥାଏ, ଆଜି କାହିଁକି ଆସିଲା ନାହିଁ? ନିରାଶ ଚିତ୍ତରେ ଭାବୁଭାବୁ, ଦଣ୍ଡେ ଘଡ଼ିଏ ଚାହୁଁଚାହୁଁ ସୀତା ତଳକୁ ଓହ୍ଲାଇଗଲା। ତାହାର ଆଜି ବଡ଼ ମନଦୁଃଖ, କିନ୍ତୁ ତାହାର କାରଣ କଣ ସେ ବୁଝିପାରୁ ନାହିଁ। ତଥାପି ରଘୁ ଉପରେ ତାହାର ଆଜି ବଡ଼ ଅଭିମାନ– ରଘୁ ଆସୁ, ସେ ତାକୁ କେତେ ଗାଳିଦେବ, କେତେ ରୁଷିବ, ଆଉ କଥା କହିବ ନାହିଁ। ଭାବୁଭାବୁ ସୀତା ତଳକୁ ଗଲା। ଗୋଟିଏ ନିରାଶ ଦୀର୍ଘନିଃଶ୍ୱାସ ତାର କ୍ଷୁଦ୍ର ହୃଦୟରୁ ଉତ୍‌ଥିତହୋଇ ସନ୍ଧ୍ୟାର କ୍ରମଶଃ ଘନୀଭୂତ ଅନ୍ଧକାରରାଶି ଭେଦକରି ବଙ୍କିମ ଚନ୍ଦ୍ର ଓ କୋଟି ତାରା ଖଚିତ ଅସୀମ ନୀଳାମ୍ବରରେ ମିଶିଗଲା।

. ସନ୍ଧ୍ୟାର ଆରତି ପରେ ବାବୁ ଆଉ ସୀତା ଦୁଇ ଜଣ ବାଡ଼ି ପୋଖରୀ ତୁଠ ଅଶୋକ ଚଉତୁରାମୂଳେ। ବାବୁ ଠିଆହୋଇ ମନେମନେ ଗୁଣୁଗୁଣୁ ହେଉଛି। ତାହାର ସ୍ୱର ଭଲ ନୁହେଁ, ମାତ୍ର ଗୀତ ଗାଇବାର ଅଭିଳାଷ ପ୍ରବଳ। ଆଉ ସୀତା ଫୁଲ ତୋଳୁଛି– ବିବିଧ ବର୍ଣ୍ଣର ହିରାଗୋଲ, କାଣିକଉଡ଼ିଆ, ଆଉ ଦିଓଟି ଗୋଲାପଫୁଲ ଘେନି ଅତି ସୁନ୍ଦର ତୋଡ଼ା ତିଆରି କରିଛି। ହରଗଉରା ଫୁଲଗୁଡ଼ିକ ଅଣ୍ଟିରେ ପୂରାଇ ପାଚିଆରେ ତୋଡ଼ାଟି ଥୋଉ ଥୋଉ ହଠାତ୍ କାନରେ ପଶିଲା– 'ବାବୁ'। ଏ ତ ରଘୁର ସ୍ୱର! ସୀତା ଫୁଲଗୁଡ଼ିକ ଫୋପାଡ଼ି ଠିଆ ହୋଇପଡ଼ିଲା। ବାବୁ ଗୀତ ବନ୍ଦକରି ଉତ୍ତରଦେଲା– ''କିଏ, ରଘୁ?''

ରଘୁ ଉତ୍ତର ଦେଲା ନାହିଁ; ସଁ ସଁ ହୋଇ କାନ୍ଦୁକାନ୍ଦୁ ତାଙ୍କ ସମ୍ମୁଖରେ ଠିଆହେଲା। ତାହାର ସୁନ୍ଦର ମୁହଁ ଲୁହ ସିଙ୍ଗାଣିରେ ସୁଡ଼ବୁଡ଼। ସେମାନେ ଚମକି ପଡ଼ିଲେ– ''କଣ କି ରେ ରଘୁ? ଏଁ, କାନ୍ଦୁଚୁ କାହିଁକି?''

''ଆଉ ବଞ୍ଚିବି ନାହିଁ, ବାବୁ! ତୋ ଆଗରେ ଏଇ ପୋଖରୀରେ ବୁଡ଼ିମରିବି। ମୋ ପରି ଅର୍କ୍ଷିତର ବଞ୍ଚିବାଠୁଁ ମରିବା ଭଲ।'' ଏହା କହି କାନ୍ଦିକାନ୍ଦି ରଘୁ ବସିପଡ଼ିଲା।ଦୁଇ ଧାରରେ ଅବିରଳ ଅଶ୍ରୁ ବହିଲା। ବାବୁ ଓ ସୀତା ସ୍ତମ୍ଭିତ। ରଘୁର ଏ କି ଦୁଃଖ! ସୀତ ପଣତକାନିରେ ତାର ମୁହଁ ପୋଛିବାକୁ ଅଗ୍ରସରହେଲା। କିନ୍ତୁ ରଘୁ ତାହାର ହାତ ଠେଲି ନିଜ ଲୁଗାରେ ମୁହଁ ପୋଛିପକାଇଲା। ତାହାର ବିପୁଳ ଶୋକୋଚ୍ଛ୍ୱାସ ଯେପରି ହଠାତ୍ ପ୍ରଶମିତ ହେଲା। ବାବୁ ପଚାରିଲା– ''ହଇରେ, କଣ ହେଇଚି କିରେ? ଆମକୁ କହିବୁ ନାହିଁ?''

ରଘୁ କିଛିକ୍ଷଣ ନୀରବରେ ଭାବିଲା– ସେ କହିବ– ଲଜ୍ଜାର କଥା ତାଙ୍କୁ କହିବ? ରଘୁକୁ ନୀରବ ଦେଖି ସୀତା ତା କତିକି ଘୁଞ୍ଚିଆସି କହିଲା– ''କହୁ ନାହୁଁ କାହିଁକି? କଣ ହେଇଚି? ତୋତେ ତୋ ଜେଜେଇ ମାଇଲା?''

ରଘୁ ଏଥର ଢଇଁକଇଁ ହୋଇ କାନ୍ଦି ପକାଇଲା– ''ବୋଉ ଲୋ, ତୁ କୁଆଡ଼େ ଗଲୁ! ମୋ ବୋଉ ଲୋ!'' ତୁମେ ଜାଣିନାଁ ରେ, ବାବୁ! ଜେଜେଇ ଖାଲି ଟି'କ କଥାରେ ମତେ

ମାରଚି– ତଣ୍ଟିଆଂ ଦଉଚି। ମୋର ଆଜି କପାଳ ବଡ଼ ମନ୍ଦ– କା ମୁହଁ ଦେଖି ଉଠିଥିଲି କି। ସକାଳୁ ଘଡ଼ିଏ ତେଲ ଢ଼ାଳିଲି; ମାଛ ବାଛୁବାଛୁ ବିଲେଇ ଓଟାରିନେଲା। କକେଇ ଘରେ ନ ଥିଲା। ମୁଁ ସତିଆକୁ ଯୋଡ଼ିଏ ପଇସା ଦେଇ ମାଛ ସକାଶେ ପଠାଇଲି– ତମେ ମତେ ଯୋଉଁ ପଇସା ଦେଇଥିଲ, ସେ ପଇସା। ଭାତ କରି ବସିଲି, ଭାତ ଗାଳୁଗାଳୁ ପଲମଟା କିମିତି ହାଣ୍ଡି ଦିଅଗୁ ଖସିଗଲା; ଆଉ ତ ପେଜ ପଡ଼ି ମୋ ହାତ ଗୋଡ଼ ଫୋଟକା। ମୁଁ 'ବୋଉ ଲୋ' ହେଇ ପଲମ ଛାଡ଼ିଦେଲି– ଭାତହାଣ୍ଡି ଝିଙ୍କାଗୁ ଗଡ଼ିପଡ଼ି ନବଚୂନା। କକେଇ ଘରଠିକି ଆସି ଆଜି ଯେତକ ମତେ ବାଡ଼େଇଲା– ବାଡ଼େଇ ବାଡ଼େଇ ବାହୁ ଖଣ୍ଡିଆ କରି ପକେଇଲା। ଦେଖରେ ବାବୁ! ପିଠାଖଡ଼ିକାରେ ଚୋଟେ ଦେଇ ମୋ ବାହୁରୁ ପୁଳାଏ ମାଉଁସ ଛିଣ୍ଡେଇ ପକେଇଚି। ମତେ କହୁଚି– "ମର ଅଲକ୍ଷଣା ଅର୍ଷିତ; ଜଳଜଳାକୁ ଆଣି ନିତି ଲୋକସାନି'! ଏଁ ଏଁ –" ରଘୁ ଆଉ କହି ପାରିଲା ନାହିଁ – ଦୁଇ ହାତରେ ମୁହଁ ଚିପି ଧରି ସଁ ସଁ ହୋଇ କାନ୍ଦିବାକୁ ଲାଗିଲା।

ବାବୁ ଆଉ ସୀତା କଣ କହିବେ! ତାଙ୍କର କଣ ହୋଇଗଲା। ରଘୁର ଗୋଡ଼ରେ ବଡ଼ ବଡ଼ ଫୋଟକା, ପୋଡ଼ାଘା, ବାହୁର କଟାଘା, ଆଉ ପିଠି ଓ ଗୋଡ଼ ହାତରେ ନୋଳା[୩] ବସିଥିବାର ଦେଖି ଧୈର୍ଯ୍ୟ ଧରିପାରିଲେ ନାହିଁ। ସେମାନେ ମଧ୍ୟ କାନ୍ଦିପକାଇଲେ। ରଘୁର ଲୁହ ଝରଝର ବୋହୁଛି, ଅନେକ ଚେଷ୍ଟାକରି ସୁଦ୍ଧା ମୁହଁରୁ କଥାଟିଏ ବାହାରିପାରୁନାହିଁ। କିନ୍ତୁ ତାଙ୍କର କାନ୍ଦ ଦେଖି ରଘୁ ସମ୍ଭାଳି ଗଲା; ଆଖିପୋଛି କହିଲା- "ଆଜି ନ'ଟାକୁ ଗଣ୍ଡିଏ ବାସି ପଖାଳ ଖାଇଥିଲି। ଆଉ କକେଇ କିଛି ଖାଇବାକୁ ଦେଲା ନାହିଁ। ମତେ ହାଣ୍ଡିଶାଳ ଦୁଆର ମାଡ଼ିବାକୁ ମନାକରିଚି, କହିଚି, ଗୋଡ଼ ହାଣିପକେଇବ। ମୁଁ ଆଜି ଆଉ କିଛି ଖାଇ ନାହିଁ।"

ତାଙ୍କର ଆଉ ସହ୍ୟ ହେଲା ନାହିଁ, ଝଟ୍ ଉଠି ରଘୁକୁ ଘରକୁ ଟାଣିନେଲେ। "ତୁ ଉପାସ, ଆ ଖାଇବୁ, ବୋଉ ଶୁଣିଲେ କଣ କହିବ ?"

ବୋଉ ରନ୍ଧାଘର ଦୁଆର ମୁହଁରେ ବସି ପିତେଇ ନାନୀ ସହିତ କଥାବାର୍ତ୍ତା ହେଉଥିଲେ। ଭାଇ ଭଉଣୀ ସେଠି ପହଞ୍ଚି କହିଲେ, "ବୋଉ ଲୋ! ଦେଖ, ଦେଖ– ରଘୁର କକେଇ ତାକୁ କଣ କରିଚି। ବାହୁରୁ ପୁଳାଏ ମାଉଁସ ଛିଣ୍ଡେଇଚି। ଭାତ ଗାଳୁଗାଳୁ ପେଜପଡ଼ି ତା ହାତଗୋଡ଼ ଫୋଟକା, ପୁଣି ସକାଳୁ ତା ଭାତ ବନ୍ଦ।"

କଥା ଶୁଣି ସରସ୍ୱତୀ ଆଶ୍ଚର୍ଯ୍ୟ ହୋଇଗଲେ। ରଘୁର ଅଶ୍ରୁମଳିନ କାତର ମୁଖ, ହାତ ଗୋଡ଼ ଫୋଟକା, ବାହୁର ଘା, ଦେହଯାକର ନୋଳାଫଟା, ଆଉ ଅତି କଦର୍ଯ୍ୟ ବେଶ ଦେଖି ଚମ୍ପାବୋଉ ଓ ପିତେଇ ନାନୀ ଉଠିଆସିଲେ। ଗାନ୍ଧୁଣୀ ବୁଢ଼ୀଟି ସ୍ନେହର ସାଗର। ନିଜେ ସନ୍ତାନହୀନା ଓ ଯୌବନରେ ବିଧବା, ସେଥିପାଇଁ ସମସ୍ତଙ୍କ ପିଲାଙ୍କୁ ସ୍ନେହକରିଥାଏ। ରଘୁର

(୧) ଗଳାରେ ଧକ୍କା ଦେବା, (୨) କ୍ଷତି, (୩) ଆଘାତ ଜନିତ ଚିହ୍ନ

ଗୀତ ଶୁଣିଲେ ତା ଆଖିରୁ ଲୁହ ଝରଝର ବହେ; ମନେକରେ– ସତେ ସେ ସାକ୍ଷାତ୍ ବାଳକୃଷ୍ଣ। ବୁଢ଼ୀ ରଘୁକୁ ଦୁଇ ହାତରେ କୁଣ୍ଢାଇ ପକାଇ ପଣତରେ ମୁହଁ ପୋଛିଦେଲା; ଟାଣି ଟାଣି ରନ୍ଧାଘର ପିଣ୍ଡାକୁ ନେଲା; ମୁହଁ ଧୁଆଇ ଜଳଖିଆ କାଢ଼ିବସିଲା। ସରସ୍ୱତୀ ରଘୁ ପିଠିରେ ସ୍ନେହରେ ହାତ ବୁଲାଇ କତିରେ ବସିଲେ। ମଣ୍ଡା, କାକରା ପିଠା ଇତ୍ୟାଦି ଦୁଇ ତିନି ପ୍ରକାର ଜଳଖିଆ ପେଟ ପୂରାଇ ଖାଇ ରଘୁ ନିଜର ସବୁ ଦୁଃଖ ଭୁଲିଗଲା। ତାହାର ହାତଧରି ସରସ୍ୱତୀ ମଝିଘରକୁ ନେଲେ; କତିରେ[୧] ବସାଇ ତାହାର ସବୁ ଦୁଃଖକାହାଣୀ ଶୁଣିଲେ। ତାଙ୍କର ଆଖିରୁ ଲୁହ ବୋହିଗଲା। ରଘୁର ଅସାକ୍ଷାତରେ[୨] ତାହା ପୋଛିଦେଇ କହିଲେ– "ବାପ, ତୁ ଏଠି ଥା, କକେଇ ବସାକୁ ଯା ନା।"

ରଘୁର ଭୟହେଲା। ସେ କହିଲା, "ନ ଗଲେ କକେଇ ମାରିବ।" ସରସ୍ୱତୀ ଆଶ୍ୱାସଦେଇ କହିଲେ, "ଆଉ ମାରିପାରିବ ନାହିଁ, ମୁଁ ସେ କଥା ବୁଝିବି।"

ରଘୁ ସରସ୍ୱତୀଙ୍କ କଥାରେ ନିଶ୍ଚିନ୍ତ ହୋଇ ବାବୁ ଓ ସୀତା ସଙ୍ଗରେ ବସି ଖେଳିଲା।



## ତୃତୀୟ ଅଧ୍ୟାୟ

ରାତି ଏଗାରଟାକ୍ କଚେରି ସାର ଚୌଧୁରୀଏ ଘରକୁ ବିଜେହେଲେ। ଚର୍ଚ୍ଚାର ହୁରି ପଡ଼ିଗଲା। ଆସନ, ପାଣି, ଭାତ, ତିଅଣ ସଜାଡ଼ି ଥୁଆହେଲା ପରେ ଚୌଧୁରୀଏ ମଣୋହିରେ[୩] ବସିଲେ।

ଆସନରେ ଚଉଧୁରୀଏ ଚକାପାଜି ବସିଛନ୍ତି। ଶରୀରଟି ବିଶାଳ, ବର୍ଣ୍ଣ ମସିଆ, ବୟସ ଦି କୋଡ଼ି ଉପରେ। ପରିଧାନରେ ମୋଟ ଗାମୁଛା, ଅଣ୍ଟାରେ ଦି'ସରି ରୂପାସୁତାରେ ଗୋଛାଏ କୁଞ୍ଚିକାଠି। ଚଉଧୁରୀଏ କୁଞ୍ଚିକାଠିଟି କେବେ ହସ୍ତାନ୍ତର କରନ୍ତି ନାହିଁ; ସ୍ତ୍ରୀଙ୍କି ସୁଦ୍ଧା ଦେବାକୁ ଭରଷି ପାରନ୍ତି ନାହିଁ। ବାଁ କାନ୍ଧରେ ପଇତା, ଗଳାରେ ତୁଳସୀମାଳ ସହିତ ଗୁଚ୍ଛା ସୁନାର ସରୁ ଧାନମାଳି, କାନରେ ବଡ଼ ବଡ଼ ଯାଉଁଳି ନୋଳି, କପାଳ ଓ ଛାତିରେ ତିନିପଟା ଚନ୍ଦନ ତିଳକ ଯତ୍ନରେ କଟା ହୋଇଛି; ମୁଣ୍ଡରେ ବିଡ଼ାଏ ଚୁଟି, ଚୁଟି ଅଗକୁ ଗଣ୍ଠିଟିଏ। ଚଉଧୁରୀଏ ସେକାଳିଆ ପୁରୁଣା ଲୋକ, କଲିକତୀ ଫେସନରେ ବାଳ କଟାଇବା ଦି' ଆଖିରେ ଦେଖି ପାରନ୍ତି ନାହିଁ। ଆଜିକାଲିକା ଢ଼ଙ୍ଗର ସେ ପକ୍ଷପାତୀ ନୁହନ୍ତି। ଦଶ ତିଅଣ ନ' ଭଜା ସୁଖ ପାନ୍ତି ନାହିଁ। ବେଶୀ ଖରଚ ହେଉଛି କହି ସ୍ତ୍ରୀଙ୍କ ଉପରେ କଟକଟ[୪] ହୁଅନ୍ତି। ତଥାପି ସରସ୍ୱତୀ ନିତି ନ' ତିଅଣ ତେର ଭଜା କରି ସ୍ୱାମୀଙ୍କୁ ପରଶିବାରେ ଅଭ୍ୟସ୍ତା– ସ୍ୱାମୀଙ୍କ ତିରସ୍କାର ହସିହସି ଉଡ଼ାଇଦିଅନ୍ତି। ଘରଖର୍ଚ୍ଚ ପାଇଁ ଚଉଧୁରୀଏ ମାସକୁ କୋଡ଼ିଏ ଟଙ୍କା ଦିଅନ୍ତି, ସେଥିରେ ନିଅଣ୍ଟ ହୁଏ। ତେଣୁ ସରସ୍ୱତୀଙ୍କୁ ନାନା ଉପାୟରେ ଘରଟି ଚଳାଇବାକୁ ପଡ଼େ।

---

(୧) ପାଖ, (୨) ଅଜାଣତରେ, (୩) ଖାଇ, (୪) ବିରକ୍ତ

ତାଙ୍କ ଗୁହାଳରେ ଗୁହାଳେ ଗାଈ। ପିତେଈ ନାନୀ ଓ ଚମ୍ପାବୋଉ ଗାଈଙ୍କ ସେବା କରନ୍ତି, ଚମ୍ପାବୋଉର ପୁଅ ମହନା ଚରାବୁଲା କଥା ବୁଝେ। ଘରେ କୋଡ଼ିଏ ପଚିଶି ସେର ଦୁଧ ହୁଏ। ଘରଖର୍ଚ୍ଚ ଯାଇ ବାକି ନିରୋଳା[୧] ଦୁଧତକ ବିକ୍ରୀ ହୁଏ। ଘର ପଛପଟ ବିସ୍ତୃତ ବାଡ଼ିରେ ପରିବା ଫସଲ ବାର ମାସ। ନରିଆ, ହରିଆ ଦି ଭାଇ, ଜାତିରେ ଖଣ୍ଡେଇତ- ବାଡ଼ି ବଗିଚା କାମ ବଡ଼ ସୁନ୍ଦର କରନ୍ତି। ଆମଦାନି ବିକ୍ରୀ କାରବାର ବରାବର ଲାଗିଥାଏ। ବାଗି ପଛପଟକୁ ଯୋଡ଼ିଏ ପୋଖରୀ। ଟେଣ୍ଡା[୨] ମାରି ବଗିଚାରେ ପାଣି ମଡ଼ାଇବା ଛଡ଼ା ପୋଖରୀରେ ବର୍ଷକୁ ବର୍ଷ ଜାଆଁଳ ଛଡ଼ା ହୁଏ।

ଏ ସବୁରେ ସରସ୍ୱତୀଙ୍କର ବିଶେଷ ଲାଭ। ଘରଖର୍ଚ୍ଚ ତୁଲେଇ ବଳକା ଟଙ୍କାରେ ସଞ୍ଜା[୩] ଲଗାଇ, ଜମି ବନ୍ଧା ରଖି, ଆମ୍ବ, କରଞ୍ଜ, ପୋଲଙ୍ଗ ତୋଟା କୋତ[୪] ନେଇ ବିଶେଷ ଅର୍ଥାଗମ ହୁଏ। ଚାକର ଚାକରାଣୀ ତାଙ୍କୁ ବଡ଼ ଭୟ ଓ ଭକ୍ତି କରନ୍ତି। ସର୍ବଦା ନିରଳସ ଏବଂ ପ୍ରଫୁଲ୍ଲସ୍ୱଭାବ ସରସ୍ୱତୀ ସ୍ୱାମୀଙ୍କର ସବୁ ସେବା ନିଜେ କରନ୍ତି।

ଚୌଧୁରୀଙ୍କର ଭୋଜନ ହେଉଛି। ସରସ୍ୱତୀ ବିଞ୍ଚଣା ଧରି ଗରମ ଭାତ ବିଞ୍ଚୁ ବିଞ୍ଚୁ 'ଏଇଟା ଖାଅ', 'ସେଇଟା ଖାଅ' କହି ସ୍ୱାମୀଙ୍କର ଭୋଜନ ଚର୍ଚ୍ଚା କରୁଛନ୍ତି। କିନ୍ତୁ ଚଉଧୁରିଏ ଭାବୁଛନ୍ତି ଅନ୍ୟ କଥା। ''ହଇ ହେ, ସାବୀବୋଉ, ଏ କଣ ତମର? 'ଏଇଟା ଖାଅ', 'ସେଇଟା ଖାଅ' କେତେ କହୁଚ? ଦଶ ତିଅଣ, ନ' ଭଜା କଲେ ଏକାପାଟିକେ କେତେ ଖାଇବି?''

''କଣ ଦଶ ତିଅଣ ହେଇଚି? ମାଛ ତିଅଣଟା ତ ହେଇଚି। ଆଉ ଏ ମୁଗ ପଇତି, ବାଇଗଣ ଭଜା, ଆଉ ଗୋଟିଏ ସନ୍ତୁଳା— ଏଇ ଦଶ ତିଅଣ, ନ' ଭଜା?''

''ମୁଁ କହେଁ, ଭାତ ଖାଇଲେ ଦିହରେ ବଳ। ମୁଗ ପଇତି, କଖାରୁ ସନ୍ତୁଳା, ବାଇଗଣ ଭଜା ଖାଇଲେ ତ ଦିହରେ ବଳ ଆସିବ ନାହିଁ। ଏ ଖାଲି ତହଖରଚ[୫], ସଉକି ଖିଆ— ଏ ବଡ଼ ଲୋକଙ୍କୁ ସାଜେ। ଆମ ପରି ଦୁଃଖୀ ଗରିବ ଏପରି ଖାଇ କୋଉଠୁଁ ଚଳିବେ ହେ? ଏ କଣ ତମର-ଆଜି ବଡ଼ ମାଛ କୋଉଁଠୁଁ ପାଇଲ? ମାଛ ସେର ଆଠଣା ଦଶଣା, ନରିଆ କଣ ବଜାର କରି ଶିଖୁଚି କି? ଦି ପଇସାର ଚୂନା ଚିଙ୍ଗୁଡ଼ି ଆଣି ବେସର ପାଣିଚେ କରି ଦେଇଥିଲେ ହେଇ ନ ଥାନ୍ତା? ଏଇ ତ ତହଖରଚ! ମାଛ ଖାଇବ, ବଡ଼ ଖାଇଲେ ଯାହା, ଚୂନା ଖାଇଲେ ତାହା— ଏକା ସୁଆଦ; ପୁଣି କବିରାଜି ଶାହାସ୍ତରରେ[୬] କହନ୍ତି – 'ଚୂନା ମାଛ ଦିହକୁ ହିତ ପଥ୍ୟ[୭], ବଡ଼ମାଛ ଗରିଷ୍ଠ[୮]'।''

''ବଜାରରୁ ଆସି ନାହିଁ— ପୋଖରୀରୁ ମରିଚି। ମୁଁ ପରା ଆର ସାଲ ଜାଆଁଳ ଛାଡ଼ିଥିଲି। ଆଜି ପଚିଶ ସେର ମାଛ ବିକିଲି। କି କି ରୋହିମାଛ, କି କି ମିରିକାଳି, ଭାକୁର, କିଆକେରଣ୍ଡା, ଆଉ ବଡ଼ ବଡ଼ ଚୁଙ୍ଗୁଡ଼ି। ତମେ କଟିରିଠେଇଁ ଥିଲ।''

(୧) ଖାଂଟି, (୨) ପାଣି ବୋହିବା ଉପକରଣ, (୩) ସୁଧ, (୪) ନିଲାମ, (୫) ବଦ ଖରଚ, ଅନାବଶ୍ୟକ ଖର୍ଚ୍ଚ, (୬) ଶାସ୍ତ୍ର, (୭) ଔଷଧ, (୮) ବଦ ହଜମି

ଚଉଧୁରୀଏ ଈଷତ୍ ହସି କହିଲେ, ''ମୁଁ ଦେଖୁଚି, ତମେ ବଡ଼ ମହାଜନ ହେଉଚ। ପଇସା କେତେ ପାଇଲ ?''

ସରସ୍ୱତୀ ମଧ ଆହ୍ଲାଦରେ କହିଲେ, ''ସେ ପଇସାରେ ତମର କ'ଣ ? ହେଉଚି ଆଠ ଦଶ ଟଙ୍କା। ଆଉ ଚାରି ସେର କଟା ମାଛ ରହିଥିଲି।''

''ଏଇ କଥା ତ ତମର କାଳକ ନ ଗଲା ! ଯାକୁ ଖୁଆ, ତାକୁ ଖୁଆ, ଏଥିରେ ଆମର ପେଟ ପୂରିବ ?''

''ଆଉ ଆମେ କଣ ଏକା ଖାଇବଁୁ ? ଆମକୁ ପ୍ରାପ୍ତହେବ କିଆଁ ?''

''ପ୍ରାପ୍ତ ହବ ନାହିଁ ? ନାହିଁ ବୋଲି କଙ୍ଗାଳି, ଫକୀର, ଭିକାରୀ– ଯାଙ୍କୁ ବାଣ୍ଟୁଥିବ, ତେବେ ପ୍ରାପ୍ତହବ ! 'ଯେଡ଼େ ବାଉଁଶ, ସେଡ଼େ ପୋଲା, ଆମେ ଦି ପଇସାର ମୁଣ୍ଡ, ଦାନ ଧ୍ୟାନ କରିବୁଁ ଚାରି ପଇସା– ଏଥିରେ ନାହିଁ ବୋଇଲେ ଦରିଦ୍ରତା ଆସିବ। ଫେର୍ ଆଉ କିଛି କାହାକୁ ବାଣ୍ଟିଚ ?''

''ତମ ଗୁମାସ୍ତାମାନଙ୍କ ଘରକୁ ଜଣକେ ଅଧ ସେର ଲେଖାଏଁ କଟାମାଛ ପଠେଇଥିଲି, ଆଉ ହୋତାଙ୍କ ଘରକୁ ଦି ସେର।''

''ତମର ଯେମିତି ବୁଦ୍ଧି- ପାଏ ପାଏ ଚୂନାମାଛ ପଠେଇ ଦେଇଥିଲେ ହେଇ ନ ଥାନ୍ତା ? କଟାରୋହି ମାଛ କେଡ଼େ ମହରଗ !''

''ସେର ଦଶଣା।''

''ତେବେ ତମେ ପାଞ୍ଚ ଟଙ୍କାର ମାଛ ଦାନ ଧ୍ୟାନରେ ସାଇଲ।'' ଏହା କହି ଦୀର୍ଘନିଃଶ୍ୱାସଟିଏ ପକାଇ ରୁକ୍ଷକଣ୍ଠରେ କହିଲେ– ''ଏମିତି ଆଉ କର ନା। ଏ ଥର ବାଡ଼ି ପୋଖରୀରୁ ମାଛ ଧଇଲେ, ପାଏ ପାଏ ଚୂନା ମାଛ ପକେଇବ। ରୋହି ମାଛରେ କି ଦାନ ଧ୍ୟାନ ! ପାଞ୍ଚ ଟଙ୍କାର ମାଛ ବାଣ୍ଟିଲ, ତମକୁ କଣ ଟଙ୍କା ପିତା ଲାଗୁଚି କି ?''

ସରସ୍ୱତୀ ନୀରବରେ ପାନ ଭାଙ୍ଗିବାକୁ ଉଠିଗଲେ। ଚୌଧୁରୀଏ ହାତଧୋଇ ଖଟରେ ବସି ପାନ ଚୋବାଉ ଚୋବାଉ ସ୍ତ୍ରୀଙ୍କୁ ଉଦ୍ଦେଶ୍ୟ କରି କହିଲେ– ''ହଇ ହେ ! ପିଣ୍ଡାରେ ଦେଖିଲି ରଘୁଆ ଖେଳୁଚି। ସେ ତ ହୁରୁଷୀ ପୁତୁରା। ଛୋଟଲୋକ[୧]ଙ୍କ ପିଲାକୁ ଘରେ ପୂରାଇବାର ନୁହେଁ, କାଲେ କଣ ଚୋରି କରି ନେଇଯିବ !''

''ସେ ସେମିତି ନୁହେ– ତା ପରି ପିଲା କୋଟିକରେ ଗୋଟିଏ। ସେ ବାପ ମା ହୀନ ଅନାଥ– ତା କକାଟା ତାକୁ ବଡ଼ ଦୁଃଖ ଦଉଚି। ତମେ ଟିକିଏ ମନାକରି ଦିଅନ୍ତ। ମୋ ଦିହ ସହୁ ନାହିଁ; ପିଲାଟାକୁ ଆଜି କେତେ ମାରିଚି !'' ''ଯାର କଣ ଗୁଣ ଥିବ। ଶୁଖିଲାରେ କଣ ମାଇଲା ?''

(୧) ଗରିବ ଓ ନୀଚଜାତି

''ଭାତହାଣ୍ଡିଟା ଭାଙ୍ଗି ଦେଇଥିଲା ତ, ଆଉ କଣ କରିଚି କି?''

''ଯା କୁହ। ହାଣ୍ଡି ଗୋଟାକ ଚାରି ପଇସା। ଯାହାର ପଇସାଏ କମେଇବାର ଶକ୍ତି ନାହିଁ, ସେ ଚାରି ପଇସା ଲୋକସାନ[୧] କଲେ କି, ସହିବ?''

''ତା ବୋଲି ହାତ ଗୋଡ଼ ଚୂନା କରିବ? ତମେ ଟିକିଏ ତାକୁ କହିବ।''

''ମୁଁ ତାକୁ କିଆଁ କହିବି? ସେ ପର ପିଲା। ତା କକେଇ ତାକୁ ମାରୁ, ହାଣୁ, କାଟୁ– ମୋର ସେଥିରେ କ'ଣ?''

''ପିଲାରେ କି ପର – ପିଲାତ ସଭିଙ୍କର। ମୋ ରାଣ, ତମେ ତାକୁ ଯବତ୍[୨] କରିଦବ। ହୁରୁଷିଆ ବଡ଼ ଦୁଷ୍ଟ ଲୋକ। ଚୋରଟା! ଏତେ ଟଙ୍କା ମାରିଖାଉଚି[୩], ତମେ ତାକୁ ଶାସନ କର।''

''ତମେ ମାଇପି ଲୋକ ବୁଝନା। ସେ ହେଲା ଗୁମାସ୍ତା– ମୋ ଡାହାଣ ହାତ। ଏ ପିଲାଟା କଥା ନେଇ ମୁଁ ତା ସଙ୍ଗେ କଳି କରିବାକୁ ଯିବି? ତା ନିଜ ପିଲା– ସେ ମାଇଲେ କେତେ, ଧଇଲେ କେତେ।''

ସରସ୍ୱତୀ କାତର ହୋଇ କହିଲେ, ''ତମେ ନ ବୁଝିଲେ ବୁଝିବ କିଏ? ପିଲାଟି ମା ବାପ ଛେଉଣ - ଅକ୍ଷିତ[୪]।''

ଚନ୍ଦ୍ରଶେଖର କିଛି ନ ଶୁଣି, ଉଠି ଶୋଇବା ଘରକୁ ଗଲେ। 'ଶିବ' 'ଶିବ' ଶୁଭୁଥାଏ। ପିଣ୍ଡା ଆରପଟରେ ଠିଆ ହୋଇ ରଘୁନାଥ ସବୁ ଶୁଣିଲା। ସେ ଅକ୍ଷିତ, ଏହି କଥାର ତୀବ୍ର ଯାତନା ମୁହୂର୍ତ୍ତ ମଧ୍ୟରେ ବାଣଟି ପରି ତାର ଛାତିରେ ବାଜିଗଲା। ତା' ଆଖିରୁ ବଡ଼ ବଡ଼ ଦୁଇ ଟୋପା ଲୁହ ଭୂଇଁରେ ପଡ଼ିଗଲା। ସୀତା ନିକଟରେ ଠିଆ ହୋଇଥିଲା। ରଘୁକୁ କାନ୍ଦିବାର ଦେଖି ମା ପାଖକୁ ଦଉଡ଼ି ଯାଇ ବିକଳ ସ୍ୱରରେ କହିଲା, ''ବୋଉ ଲୋ, ରଘୁ କାନ୍ଦୁଚି।''

ସରସ୍ୱତୀ କିଛି ଉତ୍ତର ଦେଲେ ନାହିଁ, କଣ ବା ଉତ୍ତର ଦେବେ। ଭାବନାରେ ରାତିରେ ନିଦ ହେଲା ନାହିଁ– ରଘୁନାଥର କଣ କରିବେ। କେତେ ଭାବୁ ଭାବୁ ଶେଷକୁ ମନେ ପଡ଼ିଲା 'ଅଳେଇଚ' କଥା। ସରସ୍ୱତୀ ସୁଖରେ ନିଦ୍ରା ଗଲେ।

ସକାଳେ ହୁରୁଷିଆ କାହା ମୁହଁ ଦେଖି ଉଠିଥିଲା କି, ରାତିରେ ରଘୁ କେଉଁ ଆଡ଼େ ଗଲା– ଖୋଜି ଖୋଜି ପାଇଲା ନାହିଁ। ଭାବିଲା, ମାଡ଼ ଖାଇଚି ବୋଲି ଲୁଚିଚି। ରାଗରେ ନିଜେ ଖାଇ ପିଇ ଶୋଇଲା। ଚୌଧୁରୀ ଘରୁ ମାଛ ଆସିଥିଲା। ସେ ଆଉ ସତିଆ– ସେ ମଧ୍ୟ ହୁରୁଷିଆ ତଳ ଗୁମାସ୍ତା, ଦୁଇ ଜଣଯାକ ଆମ୍ବୁଲ ଫଡ଼ା ଦେଇ ବଡ଼ମାଛ ଝୋଳକରି ଖାଇଲେ। ହୁରୁଷିଆ ଆନନ୍ଦରେ ଭଙ୍ଗା ଭାତହାଣ୍ଡି କଥା ଭୁଲିଲା, କିନ୍ତୁ ସତିଆ ଥରେ ଥରେ କହୁଥାଏ– 'ଆହା, ପିଲାଟା ଥାନ୍ତା କି, ଗଣ୍ଡିଏ ଖାଇଥାନ୍ତା।' ସତିଆ ରଘୁକୁ ସୁଖପାଏ।

---

(୧) କ୍ଷତି, ନଷ୍ଟ, (୨) ସତର୍କ, (୩) ଠକି ନେବା, ଅନ୍ୟାୟରେ ନିଜର କରିବା, (୪) ବାପାମା' ନଥିବା

ବଡ଼ିଭୋରୁ ଦାନ୍ତପତ୍ର କରି[୧] ହୁରୁଷିଆ କଚେରିଠି ପହଞ୍ଚିଲା ବେଳକୁ ଦେଖିଲା, ଚୌଧୁରୀଏ ଆଗରୁ ଆସି ବସି ହିସାବ ଖାତା ଦେଖୁଛନ୍ତି। ଭାବରୁ ବୁଝିଲା, ସାଆନ୍ତେ ଆଜି ଅପ୍ରସନ୍ନ। କେଜାଣି ଦିଅଁ ଦେବତା ଅପ୍ରସନ୍ନ ହେଲେ ସେ ଏତେ ବିଚଳିତ ହୁଅନ୍ତା ନାହିଁ। ନଈକୂଳରୁ କାଠ ଆଣି ଏଥର ଟଙ୍କାକେ ଦୁଇ ଅଣା ଯାଗାରେ ଚାରି ଅଣା ଲାଭ କରିଛି– ଧରା ପଡ଼ିଲା କି? ତାହାର ଭୟ ହେଲା, କିନ୍ତୁ ସେ ଭାବ ଗୋପନ କରି କହିଲା– ''ସାଆନ୍ତେ, ଆଜି ଭୋରରୁ ଅଇଲଣି?'' ସାଆନ୍ତ ହୁରୁଷିଆ କଥାରେ ବିରକ୍ତ ହୋଇ କହିଲେ. ''ଆଉ ମୁଁ ତ ଗଞ୍ଜେଇ ଆପୁ ଖାଏ ନା ଯେ, ଦିନ ଦି ପହର ସରିକି ପହଡ଼ ଭାଙ୍ଗିବ[୨]! ତମ ପରି ଲୋଟା ଚୋର ନୁହେଁ। ମୋର ସବୁ ଖାଇଗଲେ ହେ– ମତେ ବୁଡ଼ାଇ ମାଇଲେ ହେ। ଏ ଗୁମାସ୍ତାଗୁଡ଼ାକ ଟଙ୍କିକଟା ଚୋର।'' ଏହା କହି ସେ ଚିତ୍‌କାର କରି ସେମାନଙ୍କର ଚତୁର୍ଦ୍ଦଶ ପୁରୁଷ ପର୍ଯ୍ୟନ୍ତ ପିତୃ ପିତାମହଙ୍କ ଉଦ୍ଦେଶ୍ୟରେ ନାନା ସୁବାକ୍ୟ ସାଳଙ୍କାରରେ ପ୍ରୟୋଗ କରୁ କରୁ ଗର୍ଜନ କରି ଉଠିଲେ– ''ହଇବେ, ତତେ କହିଥିଲି ସେ ରାଣ୍ଡ ବ୍ରାହ୍ମଣୀର ଦି ମାଣ ବନ୍ଧା ଜମିର ସୁଦ ମୂଳ କଷି ଥୋଇବାକୁ। କିଆଁ କରି ନାହୁଁ? ଜାଣ ତମେ– ସେ ଦୋକଟା[୩] ଭଲ ଜମି, ପାଣି ନଷ୍ଟ ନାହିଁ; ଏ'ପରା ଜମି ହାତରୁ ଛାଡ଼ିବ? ଦି ପଇସା ଯାଗାରେ ଠାଏ ଠାଏ ଅଢ଼େଇ ପଇସା ବସେଇବ। ହଇରେ ବିଚିତ୍ରା, ତୁ ଶାଳ, ପିଆଶାଳ, କୁର୍ମ ସବୁ ଅଲଗା ଅଲଗା ହିସାବ ନ କରି ଏକାଠି ଗୋଳେଇ ପୋଳେଇଚୁ କିଆଁ? ସବୁ ତମ ପଇସା ଖାଇବା ଫନ୍ଦି। ଟଙ୍କିଚିପାଗୁଡ଼ାକ, ତିନି ଦିନ ସମୟ ଦେଲି। ଭଲରେ ଭଲରେ ହିସାବ ନିକାସି ଦବ, ନହିଲେ ବରତନ[୪] କାଟିବି।''

ଏତିକିବେଳେ ହରିହର ଜେନା ପହଞ୍ଚିଲେ। ସାଆନ୍ତେ ତାହା ସହିତ କଥାରେ ଲାଗିଗଲେ। ହୁରୁଷିଆ ପ୍ରଭୁଙ୍କ କୋପରୁ ନିସ୍ତାର ପାଇ' ଝଟ[୫] ହିସାବ ଖାତାଟି କାଢ଼ିଆଣି ମିଛ ଯୋଡ଼ିବାକୁ ବସିଗଲା। ସେତେବେଳେ ରଘୁନାଥ କଥା ତାର ଆଦୌ ମନେ ନଥାଏ। ହେଲେ, 'ଅର୍କ୍ଷିତକୁ ଦୈବ ସାହା'।

ସେଦିନ ଉପର ଓଳି ରାଣୀହାଟ ଶଗଡ଼ିଆସାହିରେ ଆପଣା ଘରର ବାରି ପିଣ୍ଡାରେ ବସି ସଞ୍ଜ ବଖତର[୬] ଚାଉଳ ବାଛୁଥିଲେ ତାରାମଣି। ତାରାମଣି ସରସ୍ୱତୀଙ୍କର 'ଅଳେଇଚ'। ତାଙ୍କ ସ୍ୱାମୀ ଜଗନ୍ନାଥ କବିରାଜ। କବିରାଜୀ କଲା ଦିନୁ ଜଗନ୍ନାଥ ଗ୍ରାମ ଛାଡ଼ି କଟକରେ ଅଛନ୍ତି; ନିଜ ଅର୍ଜନରେ ସାନ ଖଣ୍ଡିଏ ପକାଘର ତିଆରି କରିଛନ୍ତି। ଚାହାଳୀଟିଏ ଖୋଲି ଗାଁର ସାନ ସାନ ପିଲାଙ୍କୁ ମଧ ଦି ଅକ୍ଷର ପଢ଼ାନ୍ତି। ସେ ବାହାରେ ଥିଲେ ତାରାମଣି ତାଙ୍କ କାମଟା ତୁଲାନ୍ତି। ସ୍କୁଲରେ ପଢ଼ି ନ ଥିଲେ ସୁଦ୍ଧା ସେ ପାଠ ପଢ଼ିଥିଲେ– ବିଶେଷତଃ, ଓଡ଼ିଆ ଆଉ ସଂସ୍କୃତ। ପୁଣି ସ୍ୱାମୀଙ୍କଠାରୁ ଶିକ୍ଷାକରି ନାନା ଔଷଧ ମୌଷଧି ତିଆରି କରି ଜାଣିଥିଲେ। ତେଣୁ ପିଲାପିଲିଙ୍କ ଦେହ କିଛି ହେଲାକ୍ଷଣି ତାଙ୍କ ଦୁଆରେ ଗାଁ ସ୍ତ୍ରୀଲୋକେ ଆସି ଧାରଣା ଦେଉଥିଲେ। ଗାଁ ଗଣ୍ଡାକର ସୁଖ ଦୁଃଖ ସବୁଥିରେ ଥିଲେ ଏ ପରିବାର ଭାଗିଦାର।

(୧) ଦାନ୍ତଘସି ଓ ଜଳଖିଆ ଖାଇ, (୨) ନିଦ ଭାଙ୍ଗିବା, (୩) ଦୋଫସଲି, (୪) ବେତନ, ଦରମା, (୫) ଶୀଘ୍ର, (୬) ବକ୍ତ, ଖାଇବା ଥର

ମାସକ ତଳେ ଗଉଡ଼ ଚୁଇଁଆ ବେହେରା ଝାଡ଼ାଜଇରେ ମରିଥିଲା। ଘର କତିରେ ଘର, ପୁଣି ଚୁଇଁଆ ଭାରିଯା ଚକରମା ତାରାମଣିର ଭାରି ପ୍ରିୟ। ସେଥିପାଇଁ ସେ ପ୍ରାୟ ଶେଷାବଧି ସେଠି ଥିଲେ। ଜଗନ୍ନାଥ ନିଜେ ଅନେକ ଔଷଧ ଦେଲେ, ଶେଷକୁ ଡାକ୍ତରଖାନା ପଠେଇଲେ; ମାତ୍ର ତାର ପରମାୟୁ ପୂରିଥିଲା- ଡାକ୍ତରଖାନାରେ ଚୁଇଁଆ ବେହେରା ଶେଷ ନିଃଶ୍ୱାସ ନେଲା। ତାହାର ଶ୍ରାଦ୍ଧ ଅନ୍ତେ ଚକରାମା ତାରାମଣି କତିରେ ପଡ଼ିଛି। ତାର କଣ ବ୍ୟବସ୍ଥା କରିବେ, ସେହି ଚିନ୍ତାରେ ସେ ବ୍ୟସ୍ତ। ଏହି ସମୟରେ ଜଗନ୍ନାଥଙ୍କ ପାଟି ଶୁଭିଲା। ତାରାମଣି ଉଠି ଦାଣ୍ଡକୁ ଚାହିଁଲେ। ଜଗନ୍ନାଥ ଭିତରକୁ ପଶି ଆସିଲେ। ତାଙ୍କ ମୁହଁକୁ ଚାହିଁ ତାରାମଣି କହିଲେ, ''ତମେ 'ଅଜୈଇଚ' ଘରକୁ ଯାଇଥିଲ? ଚକରାମା ଆସି ବସିଚି, କଣ କରିବା?'' ଜଗନ୍ନାଥ ପିଣ୍ଡାରେ ବସି ପଡ଼ିଲେ। ତାଙ୍କର ଗୋଡ଼ ଧୋଇବାପାଇଁ ଢ଼ାଳେ ପାଣି ଆଣିଦେଇ ପୁନଶ୍ଚ ତାରାମଣି କହିଲେ, ''ତେମ ତ ଜାଣ, ଚକରାମାର ପିଲାଗୁଡ଼ିଏ ସବିଏଁ ବରଷିକିଆ, କୋଳ ପିଲାକୁ ତ ମୋଟେ ଦି ମାସ। ଘରେ ଶାଶୂ ବୁଢ଼ୀ ଛଡ଼ା ଅନ୍ୟ ମଣିଷ ନାହାନ୍ତି। ସେଥିରେ ପୁଣି ସ୍ୱାମୀଟି ଗଲା। ଧନ ସମ୍ପତ୍ତି ଭଲା ଥାନ୍ତା! ଚଇଁଆ ତ ସାହେବ କୋଠିରେ ମାସି ଆଠ ଟଙ୍କାରେ କାମ କରୁଥିଲା, କଣ ରଖି ଯାଇଚି ଯେ! ଅଭିକା[୧] ପାଞ୍ଚପାଞ୍ଚୁଟା ପିଲା, ପୁଣି ଶାଶୂ ବୁଢ଼ୀକି ନେଇ ବିଚାରା କ'ଣ କରିବ? ମୁଁ ଦି ଦିନ ହେଲା ଭାବି ଭାବି କିଛି ଠିକଣା[୨] କରି ପାରୁନାହିଁ। ଘରେ ତ କଂସା ଖଣ୍ଡିକେତେ, ପୁଣି ଚକରାମାର ଗହଣା କେତୋଟି ସୁଦ୍ଧା ବନ୍ଧା ପଡ଼ିଚି।''

''ଆହା, ମୁଁ ପରା ତା ଭାବୁଚି। ଗରିବ ବିଧବାଟିର କଣ କରି ପାରିବା କୁହ ତ?''

''ମୁଁ କାଲି ତାକୁ ଦେଢ଼ ସେର ଚାଉଳ, ଦି ଅଣା ପଇସା ଦେଇଥିଲି। ଛ, ସାତ ପେଟକୁ ସେତିକି ଅଣ୍ଟିବ? ଚକରାମା ଦି ମାସର ଦୁଧଖିଆ ଛୁଆକୁ ଘେନି କା ଘରେ ପାଇଟି[୩] କରିବ? ହରି ସାହୁ ଘରେ ବୁଝନ୍ତ କି?''

''ମୁଁ କହୁଚି ଶୁଣ– ତମେ ତା ପିଲାଟିକି ଦେଖିଲେ, ମୁଁ ତାକୁ କାହା ଘରେ କାମ ଧରାଇଦିଅନ୍ତି; ଆଉ ଚକରାକୁ କମାରଶାଳରେ ଦିନ ମଜୁରିରେ ଭର୍ତ୍ତି କରିଦିଅନ୍ତି।''

''ମୁଁ ସେ ପିଲାକୁ ରଖି ପାରିବି ଯେ।''

''ଆଉ ଶିବରାକୁ ରାଜଙ୍କ ସଙ୍ଗେ ମାଟି ବୁହାରେ ଲଗେଇଦେବି। ବାକି ସୁଲଭ, ଦୁଲଭ ଭଉଣୀ ଦିହେଁ ତମ ପାଖରେ ରହିବେ– ପିଲାକୁ ଦେଖିବେ। ତା ଶାଶୂକୁ ଏଥର ଖଣ୍ଡେ କମଳ କିଣିଦେବି। ଶୁଣିଚ ହେ, ତମ 'ଅଜୈଇଚ ତମ କତିକି ପୁଅଟିଏ ପଠେଇଚନ୍ତି।''

''ମତେ ମହନା ମା ଆସି କହୁଥିଲା। ମୁଁ ତ ଖୋଜୁଥିଲି। ଆଲୋ ରେବ, ତୋର ଭାଇଟିଏ ଆସିଚି।''

---

(୧) ଏବେ, (୨) ସ୍ଥିର, ନିଶ୍ଚିତ, (୩) କାମ

ରେବତୀ କୌତୂହଳୀ ହୋଇ କହିଲା, "କୋଉଁ ଭାଇ, ବୋଉ। ସେ ଯେ ମରିଯାଇଥିଲା ?"

"ନା, ଆଉ ଗୋଟିଏ।"

"କୁଆଡ଼େ ଥିଲା ? କିଣି ଆଣିଲୁ ? କେଉଁଠି ଅଛି ? କେବେ ଆସିବ ?"

"ରହ, ଯା ଖେଳ" କହି ତାରାମଣି ରନ୍ଧା ଘରକୁ ଗଲେ। ଚୁଲିରୁ ଦୁଧହାଣ୍ଡିଟି ଓହ୍ଲାଇ, ଗିଲାସେ ଦୁଧ ରାମ ହାତରେ ଦେଇ ନବୀନା ମା କତିକି ପଠେଇ ଦେଲେ। ସଙ୍ଗେ ସଙ୍ଗେ ଜଗନ୍ନାଥ ବଟୁଆରୁ ଦିଓଟି ବଟିକା ଆଉ ପଳାଏ ମହୁ ଦେଇ କହିଲେ, "କହିଦବୁ, ମହୁ, ଅଦାରସରେ ଗୋଟିଏ ସଞ୍ଜେ, ଗୋଟିଏ ସକାଳେ ଖାଲି ଖାଇବ। ମୁଁ କାଲି ଦଶଟାକୁ ଯିବି। ତାକୁ ବିଛଣାରୁ ଉଠାଇବାକୁ ମନା କରିବୁ।"

ତାରାମଣି ସ୍ୱାମୀଙ୍କ ସକାଶେ ଜଳଖିଆ ପରଶି, ବାରିକୁ ଶାଗ କେରାଏ ତୋଳି ଯାଇଥିଲେ। ହଠାତ୍ ଅପରିଚିତ ବାଳକଟିର କଣ୍ଠସ୍ୱର କର୍ଣ୍ଣରେ ବାଜିବାରୁ ଉଠିପଡ଼ି ଭିତରକୁ ଧାଇଁ ଆସିଲେ; "ଆହା! ଏଇ ପୁଅଟି!" କହି କମ୍ପିତ କଳେବର ରଘୁକୁ ପାଖାକୁ ଟାଣି ଆଣିଲେ। ରଘୁ ତାରାମଣିର ସ୍ନେହାଞ୍ଚଳ ଆଶ୍ରୟ କରି ମାତୃଶୋକ ପାସୋରିଲା। ତାରାମଣି ଓ ଜଗନ୍ନାଥ, ପୁତ୍ର ଯଦୁମଣି ଓ ନୀଳମଣିର ମୃତ୍ୟୁଶୋକ ପାସୋରିଲେ। ଆଉ ବେଶି ଖୁସି ହେଲା ରେବତୀ। ତାର ନାନୀ ଦିହେଁ ଶାଶୁଘରକୁ ଗଲାଦିନୁ ବସାରେ ସେ ଜାଣି ଏକୁଟିଆ। ରଘୁ, ରେବତୀ ଶୀଘ୍ର ପରସ୍ପରର ଅକୃତ୍ରିମ ଭାଇ ଭଉଣୀ ହୋଇଗଲେ।

ଏହାର କିଛି ଦିନ ପରେ ଦିନ ସରସ୍ୱତୀ 'ଅଳେଇଚ' ଘରକୁ ବୁଲି ଅଇଲେ। "ଏ ଅଳେଇଚ, ମତେ ଦେଖି କିଆଁ ପଳେଇଚ ହେ ?" କହି ସାହସ୍ୟବଦନା ସରସ୍ୱତୀ ପ୍ରଫୁଲ୍ଲମୁଖୀ ତାରାମଣିଙ୍କ ଖଟ ଉପରେ ବସିପଡ଼ିଲେ। ରେବତୀ ମାଉସୀଙ୍କ ଦେହରେ ଲଥକରି ନିଜର କ୍ଷୁଦ୍ର ଦେହଭାର ନିକ୍ଷେପ ପୂର୍ବକ ଆନନ୍ଦ ପ୍ରକାଶ କରିବାକୁ ଲାଗିଲା।

"କି ରେ ରଘୁ, ଭଲ ଅଛୁ ବାପ ?"– ଏହା ପଚାରିବା ମାତ୍ରେ ରଘୁ ଆନନ୍ଦ-ଉଜ୍ଜ୍ୱଳ ବଦନରେ 'ହଁ' କହି ବାବୁର ହାତ ଟାଣି ପିଣ୍ଡାକୁ ଚାଲିଗଲା। ଆଜି ତାଙ୍କ ଦୁଇ ଜଣଙ୍କର ଅନେକ ଦିନ ପରେ ଦେଖା। କେତେ କଥା ଅଛି, ନିର୍ଜନ ନ ହେଲେ କି ସେ ସବୁ କହିହେବ ! କିନ୍ତୁ ତାଙ୍କ ନିର୍ଜନତା ଭାଗକରି ଆସି ଉପସ୍ଥିତ ହେଲା ସୀତା। ବାବୁ ବିରକ୍ତ ହୋଇ କହିଲା, "ଯା ନା– ରେବ ସଙ୍ଗେ କଥା କହିବୁ, ତୋର ଆମଠି କଣ ଅଛି ?"

"କଣ କଥା କହିବ, ମୁଁ ଶୁଣିବି।"

"ହଁ ତତେ ଶୁଣିବାକୁ ଦେବୁ, ଯା– ଚାଲିଯା।"

"ଏତେ କାହିଁକି ତଡୁଚ[୧] ମ ? ଦେଖାରେ ରଘୁ।"

(୧) ପାଖରୁ ବାଧକରି ଦୂରେଇଦେବା।

ରଘୁ କିନ୍ତୁ ବାବୁର ପକ୍ଷ ନେଇ କହିଲା– ''ତୁ ଯା, ତୋ ସାଙ୍ଗ ସଙ୍ଗେ କଥା କହିବୁ; ଆମକୁ ବିରକତ[୧] କରୁଛୁ କିଆଁ? ଆମେ କଣ ତତେ ଡାକୁଚୁଁ?'' ଏଥର ସୀତାର ଅଭିମାନ ହେଲା। ସେ ମୁହଁ ଫୁଲାଇ କହିଲା, ''ଇସ୍, ରେବଟା କାହିଁକି ମୋ ସାଙ୍ଗ ହବ ମ! ରେବ ତମ ସାଙ୍ଗ। ରଘୁ ଅଭିମାନିନୀକୁ ଆଦର କରି କହିଲା– ''ହଉ ହଉ, ତୁ ଆମ ସାଙ୍ଗ; କିନ୍ତୁ ତୁ ଯେ ଖଣ୍ଡିଆଦାନ୍ତୀ।'' ସୀତା ଅଧିକତର ଅଭିମାନ ଓ ରାଗରେ କହିଲା – ''ରହ ରେ ରଘୁ, ତତେ ଦେଖିବି।'' ତାହାର ବଡ଼ ବଡ଼ ଆଖିଯୋଡ଼ିକ ଅଶ୍ରୁରେ ଛଳଛଳ ହୋଇଗଲା। ରଘୁ ସ୍ନେହାଦରବ୍ୟଞ୍ଜକ ସ୍ୱରରେ ଅଭିମାନିନୀକୁ ଶାନ୍ତ କରି କହିଲା– ''ଗେଲରେ୨ କହିଲି ପରା, ତୁ ତ ସୁନାଲାଖୀ।'' ସୀତା ତହୁଁ ଆଶ୍ୱସ୍ତ ହେଲା।

ଘର ଭିତରେ ତାରାମଣି ଓ ସରସ୍ୱତୀ ସୁଖଦୁଃଖର ଅନେକ କଥା ପକାଇଲେ। କଥା ପଡୁ ପଡୁ ତାରାମଣି କହିଲେ– ''ତମେ ତ ଜାଣ ଅଳେଇଚ, ଯଦୁ ନନା କିମିତି ଗରିବଗୁରୁବାଙ୍କୁ ବିନା ପଇସାରେ ଓଷଦ ଦିଅନ୍ତି? ତାଙ୍କଠାରେ ବାରଣ ଅବାରଣ ନାହିଁ। ସେ ଦିନ ଦୁଲେଇ ହାଡ଼ିଆଣୀକି ଜର ହୋଇଥିଲା। ତା ଘରକୁ ଯାଇ ତାକୁ ଛୁଇଁ ଓଷଦ ଦେଇ ଆସିଲେ। ଘରକୁ ଅଇଲାକୁ ସଞ୍ଜ ହେଇଥିଲା। ମୁଁ କହିଲି, 'ହାଡ଼ିଆଣୀକି ଛୁଇଁଲ, ଗାଧୁଅ।' ସେ ଟିକିଏ ହସିଦେଇ କହିଲେ, 'ମଣିଷକୁ ଛୁଇଁଲେ ଯଦି ମଣିଷ ଛୁଆଁ ହେଉଥାନ୍ତେ, ପୃଥ୍ୱୀ ରହନ୍ତା ନାହିଁ। ମୁଁ ଚିକିତ୍ସକ, ମୋ ପାଖରେ ହାଡୀ ପାଣ କ'ଣ?' ଏଥର ତାଙ୍କ ଭାଇନା ଆସି କେତେ ଗାଳି ଦେଇ ଯାଇଚନ୍ତି। କହିଲେ, 'ମାଣେ ଦି'ମାଣେ ଜମି କର। କୋଠାବାଡ଼ି କର। କବିରାଜୀ କଲୁ, ଏତେ ପଇସା କମେଇଲୁ, ସବୁ ପରପିଛାରେ[୨] ସାରୁଚୁ। ଭାଇଙ୍କି ପରା ସେ କହିଲେ, 'ମୋର ତିନିଟା ଝିଅରୁ ଦି'ଟା ବାହା ଦେଲିଣି। ସାନଟିକି ଉଠେଇ ଦେଲେ ତ ପାଇଟି[୩] ସଇଲା। ହାତ ଗୋଡ଼ ଥିବାଯାଏ ଖାଇବୁଁ, ଖୁଆଇବୁଁ।''

''ଏମିତି କଲେ ବୁଢ଼ା କାଳକୁ କଣ କରିବ? ମୁଁ ଦେଖୁଚି, ତମେ ତାଙ୍କ ସାଙ୍ଗକୁ ଯୋଡ଼ି ମିଳିବ। ଏମିତି କର ନା– ଦି' ପଇସା ଆଗକୁ ସଞ୍ଚି ରଖ।''

''ଯଦି ଆଜି ମରିଯିବୁ'', ପଇସା ଭୂତ ଖାଇବ ତ! ତା ଅପେକ୍ଷା ସେ କହନ୍ତି, 'ଏମିତି ସଞ୍ଚିବି, କେହି ଚୋରି ଦଗାବାଜି କରି ନେବେ ନାହିଁ। ସୁଧ ମୂଳ କଷି ନେବି।' ଭାଇନା କହିଲେ, 'କୋଉଠି ଯମା କରୁଚୁ?' ଯଦୁନନା କହିଲେ, ଠାକୁରଙ୍କ କତିରେ; ତାଙ୍କ ଗନ୍ତାଘରୁ କିଏ କାଢ଼ିନେବ?' ତାଙ୍କୁ କିଏ ବୁଝାଇବ।''

ସରସ୍ୱତୀ ଶ୍ରଦ୍ଧାରେ କହିଲେ, ''ସେଇଆଙ୍କୁ କହନ୍ତି ମହତ। ଭଉଣି, ତମର ବଡ଼ ଭାଗ୍ୟ– ଗୋଟିଏ ଦେବତା ପାଇଚ। ଦେବୀ ନ ହେଇଥିଲେ କି ଦେବତାର ସଙ୍ଗିନୀ ହେଇଥାନ୍ତ।''

ତାରାମଣି ଧୀରେ କହିଲେ, ''ହଁ ଭଉଣି, ସେ ଦେବତା! କିନ୍ତୁ ମୁଁ ତାଙ୍କ ଗୋଡ଼ ତଳକୁ ସରି ନୁହେଁ। ଦଶ ବର୍ଷ ବେଳେ ବିଭା ହେଇ ଆସିଥିଲି। ସେ ବର୍ଷ ମୋ ନନା

(୧) ବିରକ୍ତ, ଚିଡ଼ିଚିଡ଼ା ଭାବ (୨) ଅନ୍ୟପାଇଁ, (୩) କାମ, ଦାୟିତ୍ୱ

ମରିଗଲେ। ଶାଶୂଙ୍କ ବାରଣ ନ ମାନି ମତେ ସେ ନିଜେ ପରିଶ୍ରମ କରି ଓଡ଼ିଆ ପଢ଼େଇଲେ। ଶାଶୂ କେତେ ମନା କଲେ, ଭୟ ଦେଖାଇଲେ; କହିଲେ– 'ଅକାର୍ଯ୍ୟ କରୁଚୁ।' ଶୁଣିଲେ ନାହିଁ, କହିଲେ ପରା– 'ଭାତ ରାନ୍ଧି ପାରିଲେ ତମ ବୋହୂର ପାଇଟି ସରିବ ନାହିଁ। ମୁଁ ତାକୁ ମଣିଷ ଗଢ଼ିବି।' ଶାଶୂ ଚିଡ଼ିକରି କହିଥିଲେ– 'ମଣିଷ ଗଢୁଚୁ, କି ମାଙ୍କଡ଼ ଗଢୁଚୁ, ଗଢୁଥା।' ବଡ଼ ଯାଆଙ୍କର କେତେ ଥଟା ପରିହାସ ଶୁଣିଚି।''

''କହିବା ଲୋକ ବଡ଼ ନୁହେ– ସହିବା ଲୋକ ବଡ଼।''

ସନ୍ଧ୍ୟାକୁ ସରସ୍ୱତୀ, ବାବୁ ଓ ସୀତା ଚାଲିଗଲେ। ରଘୁ ଲଜ୍ଜା-ସଂକୋଚ ଜଡ଼ିତ ଭାବରେ ଅଧୁଲି ଯୋଡ଼ିଏ ଓ ଦଶ ଟଙ୍କାର ଖଣ୍ଡିଏ ନୋଟ ତାରାମଣିଙ୍କ ହାତରେ ଗୁଞ୍ଜି ଦେଇ ଧୀର ସ୍ୱରରେ କହିଲା– ''ସାଆନ୍ତାଣି, ସୀତା ଓ ବାବୁ ଦେଇଚନ୍ତି।''

ତାରାମଣି ସିନ୍ଦୁକ ଫିଟାଇ ଥୋଇ ଥୋଇ ଭାବିଲେ– କିଏ କହେ, ତୁ ଅର୍କ୍ଷିତ, ତୋର ତ ସଂସାରଯାକ ବନ୍ଧୁ! ଛେଉଣ୍ଡ ପିଲାଟିକି ମହାପୁରୁ ଏହିପରି ଚାହିଁଥାନ୍ତୁ।



## ଚତୁର୍ଥ ଅଧ୍ୟାୟ

ଦିନ ଦି'ପହର। ପୋଖରୀ ତୁଠ କତି ଚେକା ମାଙ୍କଡ଼ା ପଥର ଉପରେ ବସି ଗିନାଏ ହଳଦି ଓ ସୋରିଷତେଲ ନିଜ ଗୋଡ଼ ହାତରେ ମାଲିସ କରୁ କରୁ ଚମ୍ପାବୋଉ ଧରମୀ ଆଈକି ଉଦ୍ଦେଶ କରି କହିଲା– ''କି ଲୋ ନାନି, ଦିନ ଦି'ପହର ବେଳେ ଶାଗ କେରାକ ସକାଶେ ଏପଟ ସେପଟ ହଉଚୁ, କଣ ରୋଷେଇ ବାସ ସରି[୧] ନାହିଁ?''

''କାହୁଁ ସରିବ ଲୋ ମା! ଗରିବର ଦୁଃଖ କଥା ଭଲ ପଚାରୁଚୁ। ମୋର ତ 'ଅଇରୀ ଖପରା, ବଇରୀ ବାଆ'। ବେଳ ବାର ଘଡ଼ିକି ତାଙ୍କ ଘରେ ପାଇଟି ସାରିଲେ ତେବେ ମତେ ଛୁଟି; ପୁଣି ଖାଆଣ ପିଆଣ[୨] କଥା କିଏ ପଚାରେ? ଘଣ୍ଟାରେ ତିନିଟା ନ ବାଜୁଣୁ ହାଜର ହବା କଥା। ଖଟି ଖଟି ହାଡ଼ରୁ ମାଉଁସ ଝଡୁଚି! ଟଙ୍କା ଚାରିଟାକୁ କିଏ ଏତେ ଖଟିବ ଲୋ? ସେଥିରେ ପୁଣି ସାଆନ୍ତାଣୀର ଆମର ନିତି କଟର କଟର[୩]। ତା ଜାଳାରେ[୪] ମାସକୁ କୋଡ଼ିଏ ଟାକର ବାହାରୁଚନ୍ତି। ମୁଁ ବୋଲି ତିନି ବର୍ଷ ବିତେଇଲିଣି। ତୋର ଭାଗ୍ୟ ଭାରି ଭଲ ଲୋ।''

ଚମ୍ପା ବୋଉ ମୁରୁକି ହସା ଦେଇ ଅଣ୍ଟାଏ ପାଣିକି ଓହ୍ଲାଇ ଯାଇ ପଥର ଉପରେ ଗୋଡ଼ ଥୋଇ ଘଷୁ ଘଷୁ କହିଲା– ''ସତ କହିଚୁ ଲୋ ନାନି, ଆମ ସାଆନ୍ତାଣୀ ପରା ହୀରାଟିଏ। ମୋ ଦିହାତିରେ କଷ୍ଟ ବୋଲି କଣ ଜାଣେ ନା। ସେଇକ୍ଷଣି ଗାଳି ଦେବେ, ସେଇକ୍ଷଣି ପିଠି ଆଉଁସିବେ। ଚଢ଼େଇ ଛୁଆଟିଏ ପେଟବଥା ଜାଣିବେ। ଇମିତି ମଣିଷ କୋଟିକରେ ଗୋଟିଏ।''

---

(୧) ଶେଷ ହେବା, (୨) ଖାଇବା ପିଇବା, (୩) ବିରକ୍ତ, ଚିଡ଼ିଚିଡ଼ି ଭାବ, (୪) ପ୍ରତାପ, କୋପ

ଅପଆ ମା ପହଞ୍ଚିଗଲା। ଦାନ୍ତକାଠି ଚୋବାଉ ଚୋବାଉ ଯେଉଁ ପାଣିରେ କୁଳିକଲା, ସେଇଠି ଛେପ ଖଙ୍କାର ମଞ୍ଝାଏ ପକାଇଦେଇ ପୁଣି କଳେ ପାଟିରେ ଘେନୁ ଘେନୁ ଚମ୍ପା ବୋଉକୁ ଚାହିଁ କହିଲା– ''ତୋ ସାଆନ୍ତ ଝିଅ ସିତିଆ ନାଗି ପରା ବରଘର ହେଇଚି ? କୋଉଁଠି, ଶୁଣେ ?''

''କଣ କହିବି ଲୋ ସେ କଥା ! ତାଙ୍କୁ ଏକା ସାଜେ[୧]। ଏ ଦଶ ବର୍ଷ ଛୁଆଟା ବର କରିଚନ୍ତି ବାଷଠୀ ବର୍ଷର ବୁଢ଼ା ବୁରୁନ୍ଦାବନକୁ– ଭୁବନେଶ୍ୱର ଆଡ଼େ ପୁଅକୁ ହଉ ହଉ ବାପକୁ ହବା କଥା ହେଲା।''

ଏଥର ସ୍ତ୍ରୀଲୋକେ ମେଳ ହୋଇ ପଡ଼ିଲେ। ପ୍ରାୟ କୋଡ଼ିଏ ଜଣ ସ୍ତ୍ରୀଲୋକ-ବୃଦ୍ଧା, ମଧ୍ୟବୟସୀ, ଯୁବତୀ, ବାଳିକା, ଅଧିକାଂଶ ହାଟୁଆକୁଳର[୨] । ଜଣେ ଦୁଇ ଜଣ ମାହାନ୍ତିଆଣୀ ମିଶି ଗୋଟିଏ କ୍ଷୁଦ୍ର ସଭା ବସିଗଲା। କିଏ ବେକେ ପାଣିରେ, କିଏ ଅଣ୍ଟାଏ ପାଣିରେ, କିଏ କୂଳରେ, କିଏ ତୁଠରେ ନାନା ଅପରିଷ୍କାର ବସ୍ତ୍ରାଦି ଧୋଉଚନ୍ତି, କେହି କେହି ଦାନ୍ତ ଘଷୁଚନ୍ତି, ଜଣେ ଦି'ଜଣ ପିତଳ ଓ ରସଖଣ୍ଡ୍ୟ, ମୁଠା ମାଜିବାରେ ଲାଗିଚନ୍ତି। କିନ୍ତୁ ସମସ୍ତଙ୍କ କାନ ଚମ୍ପାବୋଉ କଥାରେ– ତାହାର ପ୍ରତ୍ୟେକ ବର୍ଣ୍ଣ ଯେପରି ମାଧୁରୀପୂର୍ଣ୍ଣ। ବକ୍ତୃତା କରୁ କରୁ ଚମ୍ପାବୋଉକୁ ପ୍ରାୟ ଦି'ଟା ବାଜିଗଲା। ବକ୍ତୃତାର ସାରାଂଶ ଏହିପରି –

ତା' ସାଆନ୍ତ ଚନ୍ଦ୍ରଶେଖର ଚୌଧୁରୀଙ୍କ ଅସଲ ଘର ଭୁବନେଶ୍ୱର ଆଡ଼େ। ପିତାଙ୍କ ନାମ ଶଶିଶେଖର ଶତପଥୀ। ଶତପଥୀଙ୍କ ସଂସାର ଅତି ଦରିଦ୍ର ଥିଲା। ଅନ୍ନବସ୍ତ୍ର ଅଭାବରେ କେବଳ ଗୁଡ଼ାଏ ଶ୍ଳୋକ ମୁଖସ୍ଥ କରି ଏ ଦୁଆର, ସେ ଦୁଆର ବୁଲି ତାଙ୍କ ପେଟ ପୂରିଲା ନାହିଁ। ବ୍ରାହ୍ମଣୀ ମଧ ଶିଶୁପୁତ୍ର ଚନ୍ଦ୍ରଶେଖର ଓ କନ୍ୟା ଲବଣୀକୁ ରଖି ଇହଧାମ ଛାଡ଼ି ଚାଲିଗଲେ। ପ୍ରୌଢ଼ ଶତପଥୀଏ ଟଙ୍କା ଅଭାବରେ ଦଶ ବର୍ଷର ନୂଆ ବୋହୂଟିଏ ଆଣି ପାରିଲେ ନାହିଁ। ମନ ଦୁଃଖ ମନରେ ମାରି ରହିଲେ। ଲବଣୀର ବିବାହବୟସ ହେଲା। ଶତପଥୀ କନ୍ୟାପଣରେ ପଚାଶ ଟଙ୍କା ପାଇ ଦୋକାନ କରି ବସିଲେ। ଦୋକାନ କରୁ କରୁ ହାତରେ ଦି'ପଇସା ହେଲା। ତହୁଁ ବାପ ପୁଅ କଟକ ବାହାରି ଆସି ଧାନ ଚାଉଳ ଦଣ୍ଡିଦାରୀ[୩] ଆରମ୍ଭ କଲେ। ଲକ୍ଷ୍ମୀ ପ୍ରସନ୍ନ ହେଲେ। ହାତରେ କିଛି ଟଙ୍କା ହେଲା। ଅତି କଷ୍ଟରେ ଚଳି ସେ କଟକରେ ଦୋକାନଟିଏ ବସାଇଲେ। ଏହିପରି କରୁ କରୁ ବୁଦ୍ଧିବଳରେ ଚନ୍ଦ୍ରଶେଖର କ୍ରମେ କ୍ରମେ ଜମିବାନ ଓ କାଠ କାରବାର[୪] ଆରମ୍ଭ କଲେ। ମହାନଦୀକୂଳରେ କୋଠା ତିଆରି ହେଲା। ତା'ପରେ ସେ ଧନି ଝିଅ ସରସ୍ୱତୀଙ୍କୁ ଗୁଡ଼ିଏ ପଣ[୫] ଘେନି ବିଭା ହେଲେ। କହନ୍ତି, ସ୍ତ୍ରୀ ପାଦରେ ଲକ୍ଷ୍ମୀ। ସତକୁ ସତ, ସରସ୍ୱତୀ ଘରେ ଗୋଡ଼ ଦେଲା ମାତ୍ରେ କାହୁଁ କାହୁଁ ଧନ ମାଡ଼ି ଆସିଲା। କାଳକ୍ରମେ ସାବିତ୍ରୀ, ସାରଳାର ଜନ୍ମ ହେଲା। ପୁଅ ନ ହେବାରୁ ସରସ୍ୱତୀ ନାନା ବାର ବ୍ରତ ଓ ପୂଜା ମାନସିକ କଲେ। ଶେଷକୁ ଠାକୁରେ ଦୟା କରି ଆଠ ବର୍ଷ ପରେ ପୁଅଟିଏ ଦେଲେ। ସେହି ବର୍ଷ ପିତେଇ ବୁଢ଼ୀ ଆସି ତାଙ୍କ ଘରେ ରହିଲା।

---

(୧) ଶୋଭାପାଏ, (୨) ବେପାରୀ, (୩) ବଡ଼ଧରଣର ବେପାର, ଦଣ୍ଡିଧରା କାମ, (୪) ବ୍ୟବସାୟ, (୫) କନ୍ୟାସୁନା, କୌଣସି ପଦାର୍ଥ ନିଜର କରିବାପାଇଁ ପ୍ରଦତ୍ତ ଅଫେରନ୍ତ ଅର୍ଥ।

କିନ୍ତୁ 'ଯେତେ ମାଠିବୁ ମାଠ, ସେହି ଦରପୋଡ଼ା କାଠ' – ସମ୍ପତ୍ତି ନ ଥିଲାବେଳେ ଚଉଧୁରୀଏ ଯେମିତି ଚଳୁଥିଲେ, ଆଜି ମଧ ସେହିତା[୧]। ପଇସାପତରକୁ ତାଙ୍କର ବଡ଼ ଆଖି– ମୋଟ ଖଦି ଛଡ଼ା ବିଲାତି ଧୋତି, କି ସରୁ ଚାଦର କେବେ ପିନ୍ଧନ୍ତି ନାହିଁ; ସୋରିଷତେଲ ନେଡ଼ିଏ ଛଡ଼ା ସାବିନି[୨] ଦି ଆଖିରେ ଦେଖି ପାରନ୍ତି ନାହିଁ। ତାଙ୍କର ଗୁମାସ୍ତା ଚାରି ଜଣ– ହୁରୁଷିଆ, ସଡିଆ, ଦାନା ଓ ବିଚିତ୍ରା। ତାଙ୍କ ଭିତରୁ କେହି କେବେ ଧୋବ ଧାବଳିଆ ଦେଖିଲେ ଟୁଛାକୁ ତା' ଉପରେ ସେ ଗରଗର ଖରଖର[୩] ହୁଅନ୍ତି। ଚାକର ଚାକରାଣୀଙ୍କୁ ତ ଦି' ଆଖିରେ ଦେଖି ପାରନ୍ତି ନିହଁ। "କିଆଁ, ଖଦିଟା ପିନ୍ଧିଲେ ଯେଉଁ ମଣିଷ, ଦଶହାତ ଲମ୍ବ, ପାଞ୍ଚ ହାତ ଓସାର ଧୋବଧାଉଳିଆ ପିନ୍ଧିଲେ ବି ସେଇ ମଣିଷ। ଆମେ ଓଡ଼ିଆ, ଆମର ଏ କଣ– ଗୋଟିଏ କୋଟ୍, କାମିଜ୍, କୁଞ୍ଚଫେର!" ତାଙ୍କ ଆଗରେ ଚାକର ଚାକରାଣୀ ପାଟି ଫିଟାନ୍ତି ନାହିଁ। ଘଡ଼ିକ ଘରେ ଥିଲେ, ସବୁଆଡ଼େ ଚୁନ୍‌ଚାନ୍[୪] ଥାଏ– ଛୁଞ୍ଚିଟିଏ ପଡ଼ିଲେ ଶବଦ ହେବ। ଭାରିଯା ଆଉ ପିଲାଏ ତାଙ୍କୁ ହାତେ ଡରିଥାନ୍ତି। ସାଆନ୍ତେ ଭଲ ଖିଆପିଆ ଦେଖିପାରନ୍ତି ନାହିଁ। ଖଡ଼ା ସନ୍ତୁଳା, ଶାଗ ଦିକେରା ଖରଡ଼ା ହେଲେ, ଟିକେ ମୁଗମଇତିଟା, ଟିକେ ସାରୁ ଶୁଖୁଆ ବେସରଟା ହେଲେ ତାଙ୍କର ଭାରି ଆନନ୍ଦ; କିନ୍ତୁ ସାଆନ୍ତାଣୀ ଓ ପିଲାଏ ତା ଦେଇ ଭାତ ଘେନି ପାରନ୍ତି ନାହିଁ। ଖିଆପିଆ ଘେନି ପ୍ରାୟ ପ୍ରତିଦିନ ସାଆନ୍ତାଣୀଙ୍କି ଟିକେ ବୋଲଣା[୫] ବାଜେ। ତାଙ୍କ ଛାତି ବି ପଥର ହେଲାଣି। ସେ ହସି ହସି ଉଡ଼େଇ ଦିଅନ୍ତି। ପିନ୍ଧାପିନ୍ଧିରେ ଆଖି ପଡ଼ିଗଲେ ଚଉଧୁରୀ ଥରେ ଥରେ ଚିଡ଼ି ଉଠନ୍ତି। ମାଣିଆବନ୍ଧୀ, ବିଲାତି ମଖମଲ ଧଡ଼ି, ପାଟ ପିତାମ୍ବର ଅନ୍ୟ କେହି ପିନ୍ଧିବା ଦୂରେ ଥାଉ, ପୁଣ୍ୟପର୍ବ ହେଲେ ଅକାଳେ ସକାଳେ ସାଆନ୍ତାଣୀ ଆଉ ସୀତିଆ ଲୁଚିଛପି ପିନ୍ଧନ୍ତି। ଦାନଧାନ ବାରବ୍ରତ ସବୁ ଲୁଚେଇ ଲୁଚେଇ ହୁଏ, କିନ୍ତୁ ସାଆନ୍ତାଣୀଙ୍କର ବଡ଼ କଅଁଳ ମନଟି। ବୁଢ଼ା ମହଜନୀ କରନ୍ତି। ଅନେକ ଗହଣା ବନ୍ଧକ ରଖନ୍ତି। ଲୋକେ ଆସି ହାରି ଗୁହାରି କଲେ, ସାଆନ୍ତାଣୀ କତିରେ କାନ୍ଦିଲେ, ସାଆନ୍ତାଣୀ ଦୁଃଖ ସହି ନ ପାରି ଗୁପତେ ଗୁପତେ[୬] ହାତରୁ ସୁଧ ଦେଇ ମୁକୁଳେଇ ଦିଅନ୍ତି। ସଭିଏଁ ତାଙ୍କରି ଗୁଣରେ ବଶ। ନୋହିଲେ ଚଉଧୁରୀଙ୍କୁ କେହି ଭଲପାଇବା ଦୂରେ ଥାଉ, ତାଙ୍କ ନାଁ ଧଇଲେ ସେ ଦିନ ଭାତ ମିଳିବା କଷ୍ଟ।

ଭିତରେ ତ ଇମିତି, କିନ୍ତୁ ବାହାର ବେଶଟି ବେଶ୍ ଅଛି। ନିତି ତିନି ସନ୍ଧ୍ୟା ପୂଜା ନ କଲେ ସେ ପାଣି ଛୁଅଁନ୍ତି ନାହିଁ। କପାଳରେ, ଛାତିରେ ପଟାଏ ପଟାଏ ଚନ୍ଦନ ତିଳକ କାଟିଥାନ୍ତି; କଥା ପଦକେ 'ହରି ଶିବ'। ତଣ୍ଟି ଚିପି, ଅଧାନର ଦାନା କାଟି ଅନାଥ ଛେଉଣ୍ଡଙ୍କ ଜମି ମାଣେ ହେଉ ପଛେ, ଚକ୍ରବାଡ଼ି[୭] ପକାଇ ଉଡ଼େଇ ନବାଟି ସେ ଭଲକରି ଜାଣନ୍ତି।

ଚଉଧୁରୀଏ ବଡ଼ ଝିଅକୁ ବିଭା ଦେଇଛନ୍ତି ମାହାଙ୍ଗାରେ। ବରଟି ଦୋତୋଲା[୮]। ବୟସ ହୋଇଥିଲା ଦି' କୋଡ଼ି। ଟଙ୍କା ତିନିଶ ପଣି ଦେଇ ଦିବ୍ୟସୁନ୍ଦର ଝିଅଟି ବୋହୂ କରିନେଲେ। ସୁଖ ବୋଲି ସାବିତ୍ରୀ କିଛି ଜାଣି ନାହାନ୍ତି। ତାଙ୍କ ଘରେ ଖିଆ ପିଆ ନିଅଣ୍ଟ ନାହିଁ। ପାଞ୍ଚ

(୧) ସେହିପରି, (୨) ସାବୁନ, (୩) ବିରକ୍ତ, (୪) ନିରବ, (୫) ଗାଳି, କଡ଼ା କଥା, (୬) ଗୋପନ ରଖି, (୭) ଚକ୍ରବୃଦ୍ଧି, (୮) ଦ୍ୱିତୀୟ ବିବାହ।

ପଚିଶ ବାଲା; ହେଲେ, ଶାଶୂ ବୋହୂଟିକି ଦେଖି ପାରନ୍ତି ନାହିଁ। ବଡ଼ଲୋକ ଘର ଝିଅ, କେତେ ସୁଖରେ ବଢ଼ିଥିଲା। ସେଠି ତାର ପଣତ କାନିରେ ଲୁହ ପୋଛୁ ପୋଛୁ ଦିନଯାଏ। ତହିଁରେ ପୁଣି ବୋଝ ଉପରେ ନଳିତା ବିଡ଼ା– ସଉତୁଣୀର ତିନିଟା ପୁଅ। ଦିବାରାତ୍ର ସାବତ ମା'ର ଦୋଷ ଖୋଜି ବୁଲି ଗୋସେଇଁମାଆଙ୍କୁ[୧] ଜଣେଇବା ତାଙ୍କ ପାଇଟି। ବୋହୂ ପିଠି ସକାଶେ ଶାଶୁଙ୍କର ଖଡ୍ଗମୁଠା ରଣଝଣ ବାଜି ଉଠେ। ଦୋଷରେ ଅଦୋଷରେ ଗାଳି ମାଡ଼। ସ୍ୱାମୀ ତ କିଛି ବୁଝନ୍ତି ନାହିଁ। ମା ସାଆନ୍ତାଣୀ ଝିଅକୁ ଘରକୁ ଆଣିବାକୁ ମନ କଲେ ସୁଦ୍ଧା, ସ୍ୱାମୀଙ୍କ ଭୟରେ ଆଣି ପାରନ୍ତି ନାହିଁ। ''ଦେଲୁଁ ନାରୀ, ହେଲୁଁ ପାରି, ପୁଣି ଝିଅ ଆଣିବ କଣ?'' ଏହା କହି ସାଆନ୍ତେ ଭଙ୍ଗାନ୍ତି, କିନ୍ତୁ ମା ମନ ମାନେ ନାହିଁ। ସେ ଥର ସାବୀର ପିଲା ହେଲାବେଳେ ଆଣିଥିଲେ ଯେ, ଲୁଗାପଟା ନିରସ ହେଲା, ବେଭାରଟା ଭଲ ହେଲାନାହିଁ– ଏହିପରି ଗୁଡ଼ାଏ ମିଛ କହି ତାଙ୍କ ଶାଶୂ ବୋହୂର ଚଉଦ ପୁରୁଷ ଜୀଅନ୍ତା ଯମପୁରୀକୁ ପଠେଇଥିଲେ। ଭୟରେ ସାବୀ ଆଉ ସେଦିନୁ ବାପଘର ଆସିବା ମନକରେ ନାହିଁ। ସାଆନ୍ତେ ଊଣା ଲୋକ ନୁହନ୍ତି। ଏ କଥା ଖବର ପାଇ ସେହି ଦିନୁ ଆଉ ଝିଅକୁ 'ଶାଶୂଘରୁ ଆଣିବି ନାହିଁ' ବୋଲି କଣ୍ଟ[୨] କରି ବସିଚନ୍ତି। ସାଆନ୍ତାଣୀ କାନ୍ଦିଲେ, ବୋବେଇଲେ[୩] ସେ କହନ୍ତି – ''ଏତେ ଖରଚ କରି ଯଶ ନାହିଁ, ମୁଁ ଆଉ ସେ ଝିଅ ମୁହଁ ଚାହିଁବି ନାହିଁ।''

ସୁଖରେ ଅଛି ସାରଳା; ଜଗନ୍ନାଥ କବିରାଜଙ୍କ ପୁତୁରା କାହ୍ନୁ ଚରଣକୁ ବାନ୍ଧା ହୋଇଚି। ଜୋଇଁଟିର ବୟସ ଅଳ୍ପ-ବେଶ ସୁଢ଼ଳ। ଧନୀ ନୁହେ, କିନ୍ତୁ ପଚାଶ ଷାଠିଏ ଟଙ୍କାରେ କୋଉଁ ସ୍କୁଲରେ କାମ କରେ। ହେଲେ, ଜୁଆଇଁ ଶଶୁରଙ୍କର ଥରେ ବେଶ୍ ଦିପଟା ଲାଗିଯାଇଛି[୪]। ସାରଳା ତାଙ୍କ ଜୁଆଇଁ, ଆଉ ପିଲା ଚାରିଟି ସଭିଏଁ ଏଠିକି ଆସିଥିଲେ। ପନ୍ଦର ଦିନ ରହିଛନ୍ତି କି ନାହିଁ, ସାଆନ୍ତେ 'ବଡ଼ ଖରଚ ହଉଚି! ବାପଘରକୁ ଆସିବ ବୋଲି ପିଲା ପରିବାର ସଭିଙ୍କି ନେଇ ଆସିବ– ଏ କେଉଁ ଗାଁ କଥା?' ଏମିତି କହି ସାଆନ୍ତାଣୀ ସଙ୍ଗେ କଜିଆ ଲଗେଇଲେ। କଥା କାନକୁ ଦି କାନ ହେଲା। ଝିଅ ଜୁଆଇଁ ସମସ୍ତେ ଜାଣିଲେ। ଶେଷକୁ ଶଶୁର ଜୁଆଇଁଙ୍କର ଆଚ୍ଛା କଜିଆଟାଏ ହୋଇଗଲା। ସେହିଦିନୁ ସାରଳା ବାପଘର ଏରୁଣ୍ଡି ବନ୍ଧ ମାଡ଼ନ୍ତି ନାହିଁ।

ଏଥର ସୀତିଆ ଲାଗି ବର କରିଚନ୍ତି ବୃନ୍ଦାବନକୁ। ପାକଲା ବୁଢ଼ା। ବୟସ ଷାଠିଏ ଆଖ ପାଖ। କେଉଁ କାଳୁ ଭାର୍ଯ୍ୟା ମରିଥିଲା, ପୁଅ ପାଇଁ କନିଆଁ ଠିକଣା କରି ଆସିଥିଲେ। ବୋହୂ କରିବେ କଣ, ଦି'ଗୁଣା ପଣ ଦେଇ ନିଜ ସକାଶେ କରି ବସିଲେ।

ଅବଶ୍ୟ ଏଥିରେ ଅନେକ ଅତିରଞ୍ଜିତ କଥା ଥିଲା। ତଥାପି ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଖୁବ୍ ଥୋଡ଼ାଏ ହସ ହୋଇଗଲା। ''ବେଳ ଉଛୁର ହେଉଚି, ଅନ୍ୟ ଦିନ ଆଉ ବାକି କଥା କହିବି' କହି ସ୍ତ୍ରୀଲୋକମାନଙ୍କର ଟିପା ଟିପ୍‌ପଣୀ ପ୍ରତି ମନୋଯୋଗ ନକରି ଓଦା ଲୁଗା ଚିପୁଡ଼ି ଚମ୍ପାବୋଉ ଘରକୁ ବାହାରି ଗଲା। ସାଆନ୍ତ ପରିବାର ବିଷୟରେ ନାନା ଚର୍ଚ୍ଚା କରୁ କରୁ ସ୍ତ୍ରୀଲୋକମାନେ ଯେଝା ଘରକୁ ଗଲେ।

---

(୧) ଢେଙ୍କା, (୨) ନିଶ୍ଚିତ, (୩) ବଡ଼ପାଟିରେ କାନ୍ଦିବା, ଚିତ୍କାର କରିବା, (୪) କଳିହେବା

ପରଦିନ ରଘୁ ସକାଳୁ ଉଠି ସାଆନ୍ତ ଘର ଅଭିମୁଖରେ ଯାତ୍ରାକଲା। ଆଜି ସମସ୍ତ ଆକାଶ ମେଘାଚ୍ଛନ୍ନ। ବୃକ୍ଷ ଲତାପତ୍ରର କୋମଳ ମର୍ମର ସହିତ ଅଳ୍ପ ଅଳ୍ପ ବାରିପତନର ଶବ୍ଦ ମିଶିଯାଇଛି। ବେଳ ପ୍ରାୟ ସାତ ଘଡ଼ି, କିନ୍ତୁ ଖରାର ଦେଖା ନାହିଁ– ବଡ଼ି ପାହାନ୍ତା ପରି ଜଣାଯାଉଛି।

''ବାପା, ବର୍ଷାରେ ତିନ୍ତ ନା, ଛତା ଘେନି ଯାଅ''– ଏହା କହିଦେଇ ତାରାମଣି ହରିଜନ୍ମର[୧] ଉତ୍ସାହ ଆୟୋଜନରେ ଲାଗିଗଲେ।

ସାଆନ୍ତ ଘରେ ଆଜି ଉତ୍ସବର ପୂର୍ଣ୍ଣ ଆୟୋଜନ। ଗୃହ ପ୍ରାଙ୍ଗଣରେ ତାଳପତ୍ର ପୋଥି ହାତରେ ଘେନି ମଝିରେ ବସିଛନ୍ତି ପୁରୋହିତ ବାମଦେବ। ବୃଦ୍ଧା ପିତେଇ ନାନୀ ଓ ସରସ୍ୱତୀ ଭକ୍ତିଗଦ୍‌ଗଦ ଚିତ୍ତରେ ପୋଥି ଶୁଣୁଛନ୍ତି। ବାବୁ, ସୀତା ଓ ରଘୁ ନିକଟରେ ଠିଆହୋଇ ସ୍ଥିର ମନରେ ପୋଥି ବୋଲା ଶୁଣୁଛନ୍ତି। କିନ୍ତୁ ମଧ୍ୟେ ମଧ୍ୟେ ଭୋଗର ସମାଲୋଚନା ମଧ୍ୟ ହେଉଛି।

ଅନେକ ପ୍ରକାର ପିଠା, ଖଜା, ମଣ୍ଡା, କାକରା, କଦଳୀ, ନଡ଼ିଆ ଇତ୍ୟାଦି ସ୍ତରେ ସ୍ତରେ ସଜ୍ଜିତ। ସୀତା ଅତି ଧୀରେ ରଘୁକୁ କହିଲା– ''ଆଜି ଏଠି ରହିବୁ?'' ରଘୁ ମୁଣ୍ଡ ଟୁଙ୍ଗାରି ଦେଲା। ପୋଥିବୋଲା ଶେଷହେଲା। ଭୋଗ ବଣ୍ଟାଗଲା। ପିଲା ତିନିଜଣ ଖାଉ ଖାଉ ଦାଣ୍ଡକୁ ଗଲେ। ଦାଣ୍ଡରେ ଦେଖିଲେ– କଦଳୀ, ନଡ଼ିଆ, ଛେନା, ଦହି ଇତ୍ୟାଦି ଭାର ନେଇ ଚାରି ଜଣ ଭାରୁଆ ସଦର ଦୁଆର ନିକଟରେ ଠିଆ ହୋଇଛନ୍ତି। ରଘୁ କୌତୂହଳୀ ହୋଇ ପଚାରିଲା – ''ଏମାନେ କୋଉଁଠୁ ଆସିଚନ୍ତି?''

''ସଦେଇ ଚଉଧୁରୀ ଘରୁ'' – ଏହା କହିବାକୁ କାନେ କାନେ ଅତି ଧୀରେ କହିଲା, ''ଶୁଣି ନାହୁଁ, ଆମ ସୀତାର ସେଠେଇଁ ବରଘର ହବ। ବୃନ୍ଦାବନ ଚଉଧୁରୀ –।''

ସୀତା, ବାଳକଦ୍ୱୟଙ୍କ କଥା ଶେଷ ନ ହେଉଣୁ, ଘର ଭିତରକୁ ଚାଲିଗଲା। ବାବୁ କଥାବାର୍ତ୍ତା କରୁ କରୁ ରଘୁକୁ ଟାଣିନେଇ କଚେରି ବୁଲିଗଲା। କିନ୍ତୁ ରଘୁ ଆଜି ଆଗ ପରି ପ୍ରଫୁଲ୍ଲ ଭାବରେ ତା ସହିତ ଖେଳି ପାରିଲା ନାହିଁ। କାହିଁକି ଅଜ୍ଞାତ ଦୁଃଖର ବେଦନାରେ ତାହାର କ୍ଷୁଦ୍ର ପ୍ରାଣଟି କାନ୍ଦିଉଠିଲା।

ରଘୁ ସୀତାର କଥା ରକ୍ଷା ନକରି ଘରକୁ ଫେରିଗଲା। ସୀତା ଆଉ ଥରେ ଦାଣ୍ଡକୁ ଆସି ଦେଖିଲା, ରଘୁ ନାହିଁ। ସେ ମଧ୍ୟ ଦୁଃଖିତ ହେଲା। ରଘୁ ତାହାକୁ ଆଶା ଦେଇ ନିରାଶ କରି ଚାଲିଗଲା– ଏହି କଥା ତା ମନକୁ ବଡ଼ ବାଧିଲା। ସେ ରଘୁପାଇଁ ଅନେକ ପଦାର୍ଥ ସଞ୍ଚି[୨] ରଖିଥିଲା, କିନ୍ତୁ ସେ ସବୁ ନ ନେଇ ରଘୁ ଚାଲିଗଲା। ଦୀର୍ଘ ଚାରି ବର୍ଷ ମଧ୍ୟରେ ରଘୁଠାରୁ ଏପରି ବ୍ୟବହାର ସେ କେବେହେଁ ପାଇ ନାହିଁ। ଉତ୍ସବ ଆନନ୍ଦ ଆଉ ତାକୁ ଭଲ ଲାଗିଲା ନାହିଁ। ପିଠାପଣାରେ କେତେ ଶରଧାରେ ଯୋଗ ଦେଇଥିଲା। ସବୁରେ ନିରାଶ ହୋଇ ସୀତା ନୀରବରେ ଘର କୋଣରେ ବସିରହିଲା।

(୧) ଜନ୍ମାଷ୍ଟମୀ, ଭାଦ୍ରବ ମାସ କୃଷ୍ଣପକ୍ଷ ଅଷ୍ଟମୀ; (୨) ସଂଚୟ, ସାଇତି।

ଆକାଶ ଅନ୍ଧକାର। କିନ୍ତୁ ମେଘ ଆଢୁଆଳରୁ ଅସଂଖ୍ୟ ତାରକା ସୁନାଖଣ୍ଡ ପରି ଝକ ଝକ ଦିଶୁଛନ୍ତି। ଦୂର ଆମ୍ବତୋଟାରେ ଦଳେ ଦଳେ ଜୁଳୁଜୁଳିଆ ପୋକ ଝଟକ ଝଟକ ଜଳୁଛନ୍ତି। ଧୀରେ ଧୀରେ ଶୀତଳ ପବନ ବହି ଆସୁଛି। ବାରି ପଟେ ଯୁଇ ଓ ଗଙ୍ଗଶିଉଳି ଗଛରେ ଫୁଟନ୍ତା ଫୁଲର ବାସନାରେ ପ୍ରାଣ ମନ ଉଲ୍ଲସିତ ହୋଇଉଠୁଛି। ପ୍ରେମର ଆତ୍ମବଳିଦାନ– ଫୁଲର ପବନ କତିରେ, ପବନର ମାନବ କତିରେ, ନାରୀର ପୁରୁଷ କତିରେ, ପୁରୁଷର ଜଗତ କତିରେ। ଚତୁର୍ଦ୍ଦିଗ ନୀରବ, ମାତ୍ର ଥରେ ଥରେ ନୀରବତା ଭଙ୍ଗ କରି କାହାର ଦୁଆର ମୁଣ୍ଡରେ କୁକୁରଟି, କାହା କ୍ଷେତରେ ବିଲୁଆଟି ଚିତ୍‌କାର କରି ଉଠୁଛି। ଗଛ ପତରରେ ପକ୍ଷୀ ପକ୍ଷ ଝାଡ଼ି ଦେଉଛି, ପରକ୍ଷଣରେ ପୁଣି ସମସ୍ତ ନୀରବ।

ପିଣ୍ଡାରେ ବସି ରଘୁନାଥ ନୀରବ ନୟନରେ ଆକାଶ ପ୍ରତି ଅନାଇ କଣ ଭାବିଲା। ଯେ ସ୍ନେହ କରେ, ସେ କଣ ଛାଡ଼ିଯାଏ ? ବୋଉ କହୁଥିଲା, 'ନନା ତାକୁ ବଡ଼ ଭଲ ପାଉଥିଲେ, ମଲାଦିନ ସୁଦ୍ଧା ତା କଥା ଭାବି କାନ୍ଦିଥିଲେ; ଆଉ ସ୍ନେହମୟୀ ରତନୀ ନାନୀ ! ରଘୁର ଆଜି ରତନୀ ନାନୀ କଥା ବାରଂବାର ମନେପଡ଼ି ହୃଦୟ ଅସ୍ଥିର ହୋଇଉଠିଲା ! କି ସୁନ୍ଦର ତାର ରତନୀ ନାନୀ, କି ମଧୁର ତାର ସ୍ନେହ ! ରଘୁ ମନେକଲା, ସୀତା ତାକୁ ସ୍ନେହକରେ। ଦୀର୍ଘ ଚାରି ବର୍ଷ ମଧରେ ରଘୁ କଣ ସୀତାକୁ ଚିହ୍ନି ନାହିଁ ? ସେ ଆଉ ସୀତା ଯେ ଏକ ପ୍ରାଣ– କିନ୍ତୁ ଆଜି କଣ ଶୁଣିଲା ? ସୀତା ବିଭା ହୋଇ ଚାଲିଯିବ ? ସୀତାର ଭାବୀ ବିଚ୍ଛେଦରେ ବାଳକ କାତର ହେଲା। ତାହାର ଇଚ୍ଛାହେଲା, ସୀତାକୁ ଧରି ରଖନ୍ତା; କିନ୍ତୁ ବାଳକର କି ଅଧିକାର ଅଛି ? ସେ ଅଧିକ ଭାବି ପାରିଲା ନାହିଁ। ବାରମ୍ବାର ସୀତାର ମୁଖଟି ତାହା ଆଗରେ ନାଚି ଉଠିଲା। ଦଶ ବର୍ଷର କ୍ଷୁଦ୍ର ଲବଣୀ ପିତୁଳାତୁଲ୍ୟ ବାଳିକାଟି, ଆଉ ତାର ବର ପ୍ରୌଢ଼ ବୃନ୍ଦାବନ; କିନ୍ତୁ ସୀତା ଜମିଦାର ଘରର ବୋହୂ ହେବ– ଏହା ଭାବି ବାଳକ କିଞ୍ଚିତ୍ ଆଶ୍ୱସ୍ତ ହେଲା।

'ହରି, ହରି' କହି ଜଗନ୍ନାଥ ପିଣ୍ଡାରେ ବସିଲେ, ତାରାମଣି ପାନଖିଲଟି ସ୍ୱାମୀଙ୍କୁ ଦେଉ ଦେଉ କହିଲେ– ''ଶୁଣିଚ ହେ। ସୀତା ବାହାହେବ ବୃନ୍ଦାବନକୁ ? ଆଜି ପରା ଅଳେଇଚ କଦଳୀ ନଡ଼ିଆ ହେରିକା ପଠେଇଥିଲେ।''

''କଣ କହୁଚ ? ମୁଁ ଶୁଣିଥିଲି, ସଦେଇକି ଦେବେ ପରା ! ପୁଅକୁ ଠିକଣା କରୁ କରୁ ବାପକୁ ଦଉଚନ୍ତି।''

''ଅଳେଇଚଙ୍କର କଣ ଏ ଇଚ୍ଛା କି ? କନିଆ ଦେଖି ଅସିଥିଲେ ଚଉଧୁରୀଏ। ତାଙ୍କ ମନକୁ ପାଇଗଲା। ପୁଅପାଇଁ ଦେଖି ଆସିଥିଲେ, ପରେ ଖବର ଦେଲେ ନିଜପାଇଁ କରିବେ। ଅଳେଇଚ ନାହିଁ କରି ବସୁଥିଲେ। ସୀତାବାପ କହିଲେ, 'ଦବା'। ପଣ ତ କିଛି ଭଣା ଦେବେ ନାହିଁ। ସୀତାବାପ ପୁଅକୁ ଦେଇଥିଲେ ଯାହା ଘିନିଥାନ୍ତେ, ତାହାର ଦି'ଗୁଣ ନେବେ। ସେଥିରେ ସେମାନେ ରାଜି।''

''ଜଗନ୍ନାଥ ନିସ୍ତବଧ ହୋଇ ସବୁ ଶୁଣିଲେ; ମନ ମଧ୍ୟରେ ଚାଞ୍ଚଲ୍ୟ ଅନୁଭବ କରେ। ''ବାଡ଼ିଟା ଦେବଟି ହୋ ମୁଁ ଯାଏଁ। ଶେଖରଙ୍କର ଏ କି ବାୟା କଥା– ବୁଢ଼ା ହେଲେଣି, ସାବୀକି ଭସେଇ ଦେଲେ, ପୁଣି ସୀତାକୁ ଭସେଇ ଦେବେ କି?''

''ତୁମେ ତୁନି ଥାଅ, ଅସୁଖ[୧] ବାଗି ପାରନ୍ତି। କିଆଁ ସବୁ କଥାରେ ଆବୁଡ଼ା[୨] ପଡ଼ିବ– ଭଲ ଥାଏ, ମନ୍ଦ ଥାଏ।

ଜଗନ୍ନାଥ ବାଡ଼ିଟି ଧରି ଠିଆ ହୋଇ କହିଲେ, ''ସାବୀର ଦୁଃଖ ଦେଖିବ ତ? ଗୋଟାଏ ଝିଅ ଲାଗି ତ କାନ୍ଦି କାନ୍ଦି ତମ ଅଳେଇଚ ହାଡ଼ କଣ୍ଟା ହେଲେଣି, ପୁଣି ସୀତାକୁ ଦେଇ ଏ ଦୁଃଖରୁ ସେ ଦୁଃଖ ଚଳିବ ନାହିଁ କି? ଅସୁଖ ସୁଖ ଏଥିରେ କଣ ହେ?''

ତାରାମଣି ପୁନର୍ବାର ନିଷେଧ କରି କହିଲେ, ''ବୁଝିସୁଝି କାର୍ଯ୍ୟକର– ସେ ପର କଥା, ବଡ଼ ଅଡୁଆ। ନଇଲେ ସଦେଇ ନନାଙ୍କୁ ଚିଠି ଲେଖିଲେ? ଲେଖ, ସଦାଶିବକୁ ବାହା କରନ୍ତୁ। ବୁଢ଼ାକାଳେ ପିଲା କନିଆଁଟିକୁ କଣ କରିବେ! ପୁଅବୋହୂ ଘରକୁ ସାଜିବେ।''

''ତମେ ଶେଖରଙ୍କୁ ଜାଣି ନାହଁ। ଦବଟି ମୋର ବଟୁଆ? ବାଟେ ବାଟେ ଦନେଇ ଘର ହେଇ ଆସିବି। ବିଚରା ଶ୍ୱାସରେ ବଡ଼ କଷ୍ଟ ପାଉଛି। ତାକୁ ଦେଖି ଆସିବି।''

''ଦେଖ, ବେଶି ରାତି କରିବ ନାହିଁ!'' କହି ତାରାମଣି ଓ ରତନି ଘର ଭିତରକୁ ଗଲେ। × × ×

ପ୍ରାୟ ରାତି ଦଶଟାକୁ ଜଗନ୍ନାଥ ଘରକୁ ଫେରିଲେ; ନିରୁତ୍ସାହ କଣ୍ଠରେ କହିଲେ, ''ଶେଖର ଚଉଧୁରୀ ଟଳିବା ପାତ୍ର ନୁହନ୍ତି। ସେ ସଫା କହିଲେ, 'ମୋର ପୁଅକୁ ଦେଲେ ଯାହା, ବାପକୁ ଦେଲେ ତାହା। ପୁଅ ତ କେବେ ଜମିଦାର ହେବ। ବାପ ତ ନଗଦ ଜମିଦାର, ପୁଣି ପଣ ଦେବ ଅତିରିକ୍ତ। ମୁଁ ଏ ପାତ୍ର ଛାଡ଼ିବି କିଆଁ?' ମୁଁ କହିଲି, ସୀତାକୁ ଦଶ ବର୍ଷ, ବୃନ୍ଦାବନର ପ୍ରାୟ ପଚାଶ। ସେଥିରେ କହିଲେ ପରା 'ପୁରୁଷ ଲୋକର ବୟସ ଧରିବାର ନୁହେଁ। ବୃନ୍ଦାବନ ଏବେ ମଧ୍ୟ ଯୁବକ ପରି ଅଛନ୍ତି।' ଆଉ ଏ କଥାକୁ ବାଟ କାହିଁ?''

''ସେମାନେ ଯାହା କରନ୍ତୁ, ମୁଁ ସେ କଥାକୁ ପାଟି ଫିଟେଇବି ନାହିଁ। ପୁଣି ଶୁଣିଲି, ବୃନ୍ଦାବନ କହୁଛନ୍ତି, ପୁଅକୁ ଆଗ ବାହା କରିବେ। ସଦେଇକି ମଙ୍ଗଳପୁରର ନୀଳାମଣିଙ୍କ ଝିଅ ହୀରା ସଙ୍ଗେ ବାହାଦେଇ ପରେ ବାପ ବାହାହେବେ ସୀତାକୁ। ଆଉ ଏଇ ସାଥିରେ ଶେଖର ମଧ ବାବୁକୁ ବାହା କରିବେ କହୁଥିଲେ। ପୁଣି କହିଲେ, ବାବୁର ଷୋଳ ବରଷରେ ମାରକ[୨] ଅଛି; ସେଇଟା କଟିଲେ ସତର ଆଡ଼ିକି ବାହା କରିବେ। ତାଙ୍କର କୋଉ କଥା ଠିକଣା, ମୁଁ ବୁଝି ପାରୁନାହିଁ। ଯେଉଁ ଘରେ ଆଜି ବାଦ[୩], କାଲି ବହୂ ଆସିବ, ସେ ଘରେ ଦଶ ବର୍ଷର ଝିଅ ଶାଶୂପଣିଆ କରିବ– ଏ କଥା ଭାବିଲା ବେଳକୁ ମୋତେ ଅସୁଖ ଲାଗୁଛି।....... ରେବ କଥା କଣ ହେବ?''

(୧) ଖରାପ, (୨) ଆଗଡୁରା, (୩) ପରେ।

''ଆମ ରେବକୁ ତ ନଅ ପୂରିଲାଣି। ସେ ନ କଲେ ଅନ୍ୟ ଆଡ଼େ ଦବା।''

''ମୋର କଥା ଗୋଟାଏ, ଆଉ ଦି'ବର୍ଷ ଯାଉ। ମୁଁ ବାବୁ ଭିନ୍ନ ଅନ୍ୟ କାହାକୁ ଦେବି ନାହିଁ। ବାବୁଟି ମା ପରି ଗୋଟାପଣି। ବଡ଼ ସୁନ୍ଦର ଚରିତ୍ର, ବଡ଼ ଧୀର ପିଲାଟି! ବର ଦେଖି ଝିଅ ଦବା। ପୁଣି ଶାଶୂ ତ ଅତି ଉତ୍ତମ ଲୋକ।''

ସ୍ୱାମୀ ସ୍ତ୍ରୀ ସେ ଦିନ କଥାବାର୍ତ୍ତା ହେଲେ, ମାତ୍ର କୌଣସି ଉପାୟରେ ସୀତାର ଭାଗ୍ୟ ପରିବର୍ତ୍ତନ କରିବା ସମ୍ଭବ ବୋଧହେଲା ନାହିଁ।

'ଯାହା କରିବେ ଭଗବାନ୍' କହି ଜଗନ୍ନାଥ ନୀରବ ହେଲେ।



## ପଞ୍ଚମ ଅଧ୍ୟାୟ

ହୁରୁଷା ପୁଅର ଏକୋଇଶିଆ– ପୁଣି ଦଶହରା ନିକଟ। 'ଆର ଦିନ ବଡ଼ି ସକାଳୁ ରଘୁ ଗାଁକୁ ଯିବ, ପୁଣି ପନ୍ଦର ଦିନ ରହିବ'– ଏ କଥା ଶୁଣିଲା ବେଳୁ କାହିଁକି କେଜାଣି ସୀତା ମନ ଭଲ ନାହିଁ। ସତେ ଯେପରି ରଘୁ ପନ୍ଦର ବର୍ଷ ସକାଶେ ଚାଲିଯାଉଛି।

ସୀତାର ଏକାନ୍ତ ଇଚ୍ଛା, ରଘୁକୁ ଜଣାଇବ ତାହାର ମନ କିପରି ଦୁଃଖିତ। ରଘୁ ଓ ତାହାର କେବେ ବିଚ୍ଛେଦ ହୋଇ ନାହିଁ– ଏହି ପ୍ରଥମ। ଏହା ଯେ ତାହା ପକ୍ଷରେ କିପରି କଷ୍ଟକର, ତାହା ବାଳିକା ବସି ଚିନ୍ତା କରୁଥିଲା। ସେ କର୍ମରେ ନିଯୁକ୍ତ। ରାତି ତରକାରିପାଇଁ ଜହ୍ନି ଆଉ ସାରୁ, ଆଳୁ ହେରିକା ଗଦାକରି ପନିକିରେ ଚୋପା ଛଡ଼ାଉ ଛଡ଼ାଉ ସୀତା ଘନ ଘନ ସେହି କଥା ମନେ ମନେ ଆନ୍ଦୋଳନ କରୁଛି– ଯଦି ରଘୁ ଚାଲିଯାଏ, ଫେରି ନ ଆସେ; ପୁଣି ପରକ୍ଷଣରେ ମନେ କରୁଛି– ସେ ତ ସ୍କୁଲ ଛାତ୍ର, କେତେ ଦିନ ବା ଗାଁରେ ରହିବ? ତଥାପି ମନ ଭିତର ପୋଡ଼ିଉଠୁଛି। ଦଶହରା ଆଉ ପାଞ୍ଚଦିନ। ଏତେ ବଡ଼ ପର୍ବଦିନରେ ରଘୁ ଚାଲିଯିବ!

ଆର ଘରୁ ରଘୁର ସ୍ୱର ଶୁଭିଲା। ସୀତା ଆଳୁଟିର ଚୋପା ଛଡ଼ାଉ ଛଡ଼ାଉ ଉଠି ପଡ଼ିଲା; ଅଲକ୍ଷ୍ୟରେ ବାହାରକୁ ବାହାରି ପଡ଼ି ଅନାଇଁଲା– ପିତେଇ ନାନୀ ତାକୁ ଲକ୍ଷ୍ୟ କରି ଦୀର୍ଘ ଶ୍ୱାସଟିଏ ପକାଇଲା।

ପରକ୍ଷଣରେ ହସହସ ମୁଖ ରଘୁ ଆସି ଘର ଦୁଆର ମୁହଁରେ ଛିଡ଼ା ହୋଇ ଡାକିଲା– ''କଣ ରାନ୍ଧୁଚୁ ଲୋ ପିତେଇ ନାନି! ଗଣ୍ଡିଏ ଖାଇବାକୁ ଦବୁ?''

''ଆ, ବସ ରେ ବାପ!'' କହି ପିତେଇ ନାନୀ ପିଢ଼ା ଖଣ୍ଡିକ ପକାଇ ଦେଲା। ସୀତା ମୁଣ୍ଡରେ ଲୁଗା ଟାଣିଦେଇ ପରବା କଟାରେ ଲାଗିଗଲା। ରଘୁନାଥ ଓ ପିତେଇ ନାନୀର ଦୁଃଖସୁଖ କଥା ଅରମ୍ଭ ହେଲା। ପିତେଇ ନାନୀ ପଚାରିଲା, ''କେତେ ଦିନ ଗାଁକୁ ଯାଉଚୁ?''

''ପନ୍ଦର ଦିନ ସକାଶେ । କକେଇ, ମୁଁ ସାଙ୍ଗ ହେଇ ଯାଉଚୁଁ, ସାଙ୍ଗ ହୋଇ ଆସିବୁଁ ।''

''ଏଥର ଦଶହରା ଗାଁରେ କରିବୁ, ନା ?''

ବାବୁ ଅନ୍ୟ ଘର ଆଡୁ ବାହାରି ଆସ ରଘୁନାଥ ପିଠିରେ ସ୍ନେହରେ ହାତଟି ପକାଇ ଦେଇ କହିଲା, ''ତୁ ଚାଲିଗଲେ ଆମକୁ ଭଲ ଲାଗିବ ନାହିଁ । କାହିଁକି ଯାଉଚୁ ମିଛଟାକୁ । ଅମେ ତ ଗାଁକୁ ଯାଉ ନା ।''

ସୀତା ସୁଯୋଗ ବୁଝି କାହିଲା, ''ହଁ, ସତେ– ଏଇଠି ରହନ୍ତୁ, ଦଶରାଟା ଏଇଠି ହେଲେ କଣ ଭଲ ହୁଅନ୍ତା ନାହିଁ ?''

''ଖୁଡ଼ୀର ପୁଅଟିଏ ହୋଇଛି, ଏକୋଇଶିଆ ହବ । ଅନେକ ଦିନୁ ଖୁଡ଼ୀକି ଦେଖି ନାହିଁ– ଖୁଡ଼ୀ ପରା ମତେ ଭାରି ସୁଖ ପାଏ ।''

ସୀତା ସଲଜ୍ଜ ଭାବରେ କହିଲା, ''ଆମେ କଣ ସୁକ[୧] ପାଉ ନା ? ଆମେ ତ ତତେ ନ ଦେଖିଲେ ରହି ପାରୁନା, ତୁ ଏକାବେଳେ ପନ୍ଦର ଦିନ ଚାଲିଯିବୁ ! ବାଟ ତ ହେଇ–''

ସୀତା ଆଉ ବୁଝାଇ କହି ନପାରି କଥା ଶେଷ ନ କରୁଣୁ ନୀରବ ହେଲା । ବାବୁ ତାହା କଥାରେ ଖିଅ ଧରି କହିଲା, ''ହଁ ରେ, ପୂଜା ସଇଲେ ଚାଲି ଆସିବୁ ?'' ବାଳକ ଦ୍ୱୟ ଦାଣ୍ଡକୁ ଗଲେ, ସୀତା ଅନେକ କ୍ଷଣ ଅନାଇରହି ମନେ ମନେ କଣ ଭାବିଲା ! ଶେଷକୁ ଗୋଟିଏ ଗଭୀର ଦୀର୍ଘଶ୍ୱାସ ସହ ମୁଖ ତଳକୁ କଲା । ଆଜି ତାହାର ଚକ୍ଷୁରେ ଅଶ୍ରୁ ।

ସନ୍ଧ୍ୟା ପରେ ସୀତା ଯାଇ ଛାତର ଗୋଟିଏ କୋଣରେ ନୀରବରେ ବସିଲା । ଗୋଟିଏ ଗଭୀର ଦୁଃଖର ବେଦନା ତାହାର କ୍ଷୁଦ୍ର ପ୍ରାଣଟିକୁ କ୍ଷଣେ କ୍ଷଣେ ଆଘାତ କରୁଥିଲା । କ୍ଷୁଦ୍ର ବାଳିକା ତାହା ସମ୍ୟକ୍ ଧାରଣା[୨] କରି ପାରୁ ନଥିଲେ ହେଁ, ସେ ଦୁଃଖ ତା ପ୍ରତି ଅସହ୍ୟ ହୋଇଥିଲା । ସୀତା ନୀରବରେ ଆକାଶକୁ ଚାହିଁଲା । ଆକାଶ ଅନ୍ଧକାର– ଏଣେ ତେଣେ ଗୋଟିଏ ଗୋଟିଏ ତାରା, କିନ୍ତୁ ସୀତା ମନ ତାହା ଅପେକ୍ଷା ଅଧିକ ଅନ୍ଧକାର । ସୀତା ଜାଣେ, ଜୀବନର ପରିବର୍ତ୍ତନ ଲାଗି ଆଉ ତାହାର ବେଶି ଦିନ ନାହିଁ । ଆଉ ପ୍ରାୟ ଛ ମାସ । ବୃନ୍ଦାବନ– ପିତୃବୟସ୍କ ବୃନ୍ଦାବନ ସହିତ ନିଜର ବିବାହ କଥା ସେ ଶୁଣିଛି । ବାଳିକା ବିବାହର ଗୁରୁତ୍ୱ ବୁଝି ପାରି ନାହିଁ । ତାହାର ମନୋଦୁଃଖ ଅନ୍ୟପ୍ରକାର । ସେ ଜଣକୁ ଭଲ ପାଏ, ତାକୁ ଦଣ୍ଡେ ନ ଦେଖିଲେ ତାହାର ପ୍ରାଣ କାନ୍ଦିଉଠେ । ତାହାର ଦୀର୍ଘକାଳ ବ୍ୟାପୀ ଆଦର୍ଶ ସକାଶେ ବ୍ୟାକୁଳ !

ସୀତା ମନ ମଧ୍ୟରେ ଜାଣେ, ରଘୁନାଥ ତାହାର ଏକାନ୍ତ ପ୍ରିୟ– ବାବୁ ଓ ରଘୁ ମଧ୍ୟରେ ପାର୍ଥକ୍ୟ ସେ ଦେଖି ପାରି ନାହିଁ । ସେ ଦୁହିଁଙ୍କ ଆଦରର ସୀତା– ଦୁଇଜଣଯାକ ତାକୁ ବିଶେଷ ସ୍ନେହ କରନ୍ତି । କିନ୍ତୁ ତଥାପି ସେ ଜାଣେ, ସେ ବାବୁ ଅପେକ୍ଷା ରଘୁର ପକ୍ଷପାତୀ । ପ୍ରତ୍ୟେକ ଦିନ ରଘୁ ତାଙ୍କ ଘରକୁ ଆସେ । ବଡ଼ ଉତ୍ସୁକ ନେତ୍ରରେ ସୀତା ରଘୁର ବାଟ ଚାହିଁଥାଏ– କେତେବେଳେ ସ୍କୁଲ ଛୁଟି ହେବ, କେତେବେଳେ ରଘୁ ଆସିବ । ତାହାର ବିଶାଳ ନୟନ

(୧) ସୁଖ, ଭଲ, (୨) ଆକଳନ, ଜାଣିବା

ହୃଦୟରେ ସୀତା ଯେ ଅପୂର୍ବ ମାଧୁରୀ ଦେଖିଛି, ସେ ମାଧୁରୀ ସେ ପୃଥିବୀର ଅନ୍ୟ କେଉଁଠାରେ ଦେଖି ନାହିଁ। ତାହାର କପାଳ ଉପରେ ତରଙ୍ଗାୟିତ କେଶଗୁଚ୍ଛ, ସର୍ବାଙ୍ଗର ସୁବର୍ଣ୍ଣ ତୁଲ୍ୟ କାନ୍ତିର ମଧୁର ସୌନ୍ଦର୍ଯ୍ୟ, ସୀତା ନେତ୍ରସାର୍ଥକ କରି ନିରୀକ୍ଷଣ କରିଛି। ରଘୁନାଥ ବଡ଼ ସୁନ୍ଦର। ବାଳିକା ରଘୁନାଥକୁ କେବଳ ସୁନ୍ଦର ଦେଖିଛି ତାହା ନୁହେଁ– ତାହା ଦୃଷ୍ଟିରେ ରଘୁ ବଡ଼ ମହତ୍। ସୀତା ଜାଣେ, ରଘୁ ଦରିଦ୍ର, କିନ୍ତୁ ସେହି ପରାନ୍ନପାଳିତ ରଘୁ ଭିତରେ ସେ ଏପରି କିଛି ଦେଖିଛି, ଯହିଁରେ ସେ ମୁଗ୍ଧା। ରଘୁର ଗୁଣ, ରଘୁର ବିଦ୍ୟାଳୟରେ ସୁନାମ, ରଘୁର ସରଳତା, ବିନୟ ମଧୁର ସ୍ୱଭାବ, ସର୍ବସହିଷ୍ଣୁଭାବ ସୀତା ଦୃଷ୍ଟିରେ ବଡ଼ ସୁନ୍ଦର! ରଘୁ ଦିନେ ତା ମନରେ କଷ୍ଟ ଦିଏନାହିଁ, ସୀତାକୁ ସନ୍ତୁଷ୍ଟ କରିବାକୁ ରଘୁର ମଧ ଏକାନ୍ତ ଯତ୍ନ। ସୀତା ଗୋଟି ଗୋଟି କରି ସବୁ ମନେରଖିଛି।

ଦଶହରାକୁ ରଘୁ ଗ୍ରାମକୁ ଯିବ, ଏତେ ଦିନ ସକାଶେ ଚାଲିଯିବ, ତାହାର ମନରେ କଷ୍ଟ ଦେବ– ରଘୁର ଏ ନିଷ୍ଠୁରତା ସେ କ୍ଷମା କରିପାରିଲା ନାହିଁ; ମନେ ମନେ ତାହା ଉପରେ ବିରକ୍ତହେଲା ଏବଂ ଗାଳିଦେଲା।

ରଘୁ ଆସି ନିକଟରେ ଛିଡ଼ା ହେଲା; ଅନ୍ଧାରରେ ବସିଥିଲା ସୀତାର ମୂର୍ତ୍ତିକୁ ଚାହିଁ ତାକୁ ଭୟ ଦେଖାଇବାର ପ୍ରଲୋଭନ ଛାଡ଼ିପାରିଲା ନାହିଁ। କିନ୍ତୁ ସେ କୌଣସି ଉପାୟ ଉଦ୍ଭାବନ କରିବା ପୂର୍ବରୁ ସୀତା ତାକୁ ଚିହ୍ନିପକାଇ କହିଲା– 'ହଉ, କାଲି ସକାଳେ ପରା ଚାଲିଯିବୁ?' ସୀତାର କାନ୍ଦ କାନ୍ଦ ସ୍ୱର। ରଘୁ ହଠାତ୍ କଣ ଉତ୍ତର ଦେବ, କିଛି ଠିକ୍ କରି ନପାରି କହିଲା– "କାହିଁକି, ମୁଁ କଣ ସବୁ ଦିନେ ଥିଲି?" ରଘୁର ସ୍ୱସ୍ୱର ସୀତା କାନରେ ବଡ଼ କଠୋର ଶୁଭିଲା। ସେ କିଛି ଉତ୍ତର ନ ଦେଇ କେବଳ ନୀରବରେ ଚାହିଁ ରହିଲା। ରଘୁ ତା କତିକି ଘୁଞ୍ଚି ଆସି ଅପରାଧୀ ପରି କହିଲା– "ସୀତା, କାନ୍ଦ ନା, ମୁଁ ତତେ ଛାଡ଼ି ଯିବି ନାହିଁ– ଏକୋଇଶିୟା ବାଦେ[୧] ଚାଲିଆସିବି।" ସୀତା କିନ୍ତୁ କାନ୍ଦିଲା। ରଘୁର ଅସହ୍ୟ ହେଲା। ସେ ଅଧିକତର ସ୍ନେହକୋମଳ କଣ୍ଠରେ କହିଲା, "ଛି କାନ୍ଦନା। ମୁଁ ତ ଦି'ଦିନ ପରେ ଚାଲି ଆସିବି। ବୋଉ କଣ କହିବେ?" ସୀତାର ଲଜ୍ଜାହେଲା। ରଘୁନାଥ ମୁହଁକୁ ଚାହିଁ ସେ ହସିଲା ଓ ଆଦରରେ କହିଲା, "ମୁଁ କାନ୍ଦୁ ନାହିଁ। ଛିଃ, ତୁ ଯିବୁ ଚାଲି, ମୁଁ କିଆଁ କାନ୍ଦିବି– ମୋ ଗରଜ[୨]!"

"ଆଉ ତୁ ଗଲେ ମୁଁ କାନ୍ଦିବି, ସେ ଦିନ କଣ କହିବୁ?"

ସୀତା ବୁଝି ପାରିଲା। ଲଜ୍ଜାରେ ତାହାର ଛାତି ଭିତର ଥରି ଉଠିଲା; କିନ୍ତୁ କିଛି କହିପାରିଲା ନାହିଁ। ଉଇଁ ଆସୁଥିବା ଚତୁର୍ଥୀ ଚାନ୍ଦକୁ ଅନାଇଁ ସୀତା ଗୋଟିଏ ଦୀର୍ଘନିଃଶ୍ୱାସ ନିକ୍ଷେପ କଲା। ରଘୁନାଥ ପୁନର୍ବାର କହିଲା, "ସୀତା, ମୁଁ ପାଶ୍ କରି ଭୁବନେଶ୍ୱର ଯିବି। ତୋ ଜମିଦାରୀରେ ଖଣ୍ଡିଏ ଚାକିରି ଦବୁ? ମୁଁ ତୋ ଗୁମାସ୍ତା କାମ କରିବି।"

---

(୧) ପରେ, (୨) ଗୁରୁତ୍ୱ ନ ଦେବା ମାନସିକତା

ପଛରେ ଥାଉ ବାବୁ କହିଲା– ''ଯଦି ତହବିଲ ତୋଷରଫ୍[୧] କରୁ ?''

ପିତେଇ ନାନୀ ଯୋଗ ଦେଇ କହିଲା– ''ସେହିକ୍ଷଣି ଜେଲଖାନା।''

ରଘୁନାଥ ପ୍ରତ୍ୟୁତ୍ତରରେ କହିଲା– ''ନାନି, ତା ନାଁ ପରା ମାମୁଘର[୨]।''

ବାବୁ ପୁଣି କହିଲା– ''ଆଉ ମାଇଁ କଣ ପିତେଇ ନାନୀ ?''

ପାହାନ୍ତାରୁ ଉଠି ରଘୁନାଥ କକେଇ ସହିତ ଯିବାକୁ ପ୍ରସ୍ତୁତହେଲା। ସୀତା ବଡ଼ ଯତ୍ନରେ ବାଟ ସକାଶେ କୋଡ଼ିଏ ଖଣ୍ଡ ପାନ ଭାଙ୍ଗି ରଘୁର ବଟୁଆରେ ସଜାଡ଼ି ଦେଲା ଓ ଚୁଡ଼ା, ମୁଢ଼ି, ରସଗୋଲ୍ଲା ଗାମୁଛାରେ ବାନ୍ଧିଦେଲା। ସୀତାର ଅପୂର୍ବ କର୍ମତତ୍ପରତା ଦର୍ଶନ କରି କୌତୁକପ୍ରିୟ ରଘୁନାଥ କହିଲା, ''ଆଉ କଣ ମୁଁ ମାସେ ନ କରି ଗାଁରୁ ଫେରୁଚି ?'' ସୀତା ଧୀର କଣ୍ଠରେ କହିଲା, ''ପନ୍ଦର ଦିନ ଆଗରୁ ଆସିବୁ ପଛେ, ପରେ ନୁହେ– ତୋର ଛୁଟି କାହିଁ ଯେ ?''

ରଘୁନାଥ ମଧ ବିଦ୍ରୂପ ତ୍ୟାଗକରି କହିଲା, ''ଯାଆନ୍ତି ନାହିଁ। ଖୁଡ଼ୀ ଆଉ ନୂଆ ପୁଅକୁ ଦେଖିବାକୁ ଇଚ୍ଛା। ନୋହିଲେ, ତୁ ଆଉ ବାବୁ ଛଡ଼ା ମତେ କେଉଁଠି ଭଲ ଲାଗିବ ନାହିଁ।''

ସୀତା ଆଶ୍ୱସ୍ତ ହେଲା। ପ୍ରଫୁଲ୍ଲ ନୟନରେ ରଘୁନାଥକୁ ଅନାଇଲା। ରଘୁନାଥ ଦେଖିଲା, ସେ ଦୃଷ୍ଟି ନିର୍ମଳ, ସ୍ନେହପୂର୍ଣ୍ଣ ଓ ମଧୁର। ରଘୁ ମଧ ଆଶ୍ୱସ୍ତ ହୋଇ କକେଇର ବସା ଅଭିମୁଖରେ ପ୍ରସ୍ଥାନ କଲା। ଛାତ ଉପରୁ ସୀତା ଚାହିଁ ଦେଖିଲା, ଗେରୁ ରଙ୍ଗର ସଡ଼କ ଉପର ଦେଇ ହୃଷୀ ଆଉ ରଘୁନାଥ ଗ୍ରାମକୁ ଯାତ୍ରାକଲେ। କାନ୍ଧରେ ଗାମୁଛାରେ ବନ୍ଧା ପୁଟୁଳିଟିମାନ। ସେମାନେ ଦୃଷ୍ଟି ବହିର୍ଭୂତ ନ ହେବାଯାଏ ସୀତା ଅନାଇଥାଏ। କ୍ରମେ ସେମାନେ ଅଦୃଶ୍ୟ ହେଲେ। ବଡ଼ ବଡ଼ ଲୁହ ଦି'ଟୋପା ତାହାର କଳା ଆଖିକୋଣରେ ଟଳମଳ ହୋଇ ଉଠିଲା। ସୀତା ତଳକୁ ଓହ୍ଲାଇଗଲା।

× × × ×

ଏତେ ଦିନ ପରେ ରଘୁର ମନେ ପଡ଼ିଲା ? ଯେଉଁ ଖୁଡ଼ୀକି ଦଣ୍ଡେ ନ ଦେଖିଲେ ସେ ବାୟା ହେଉଥିଲା, ସେହି ଖୁଡ଼ୀକି ସେ ପାଞ୍ଚ ବର୍ଷ କେମିତି ଭୁଲିଲା ? ଖୁଡ଼ୀ ରସକଳା ମନେ ମନେ ଏହା ଭାବିଲେ। ମାତୃସୁଲଭ ଅଭିମାନରେ ତାଙ୍କ ଆଖି ଦିଓଟି ଛଳଛଳ ହେଲା; କିନ୍ତୁ ତାକୁ ଦେଖିଲା ମାତ୍ରେ, ତାହାର ନଇଁ ପଡ଼ିଥିବା ମୁଣ୍ଡରେ ହାତ ବୁଲାଇଲା ମାତ୍ରେ, ସବୁ ପାସୋର ଗଲା। ପରମ ସ୍ନେହରେ କିଶୋର ସନ୍ତାନକୁ ଜନନୀ କୋଳକୁ ନେଲେ। ଖୁଡ଼ୀର ସ୍ନେହାଞ୍ଚଳରେ ରଘୁନାଥ ପାଞ୍ଚ ବର୍ଷର ବ୍ୟବଧାନ ଭୁଲି, ସେହି ଦଶ ବର୍ଷର ପିଲାଟି ପରି କୋଳରେ ମୁଣ୍ଡ ଲଦିଦେଲା।

---

(୧) ଆତ୍ମସାତ୍, (୨) ଜେଲଖାନା

ଖୁଡ଼ୀ ପୁତୁରା ଅନେକ କଥାବାର୍ତ୍ତା ହେଲେ। ପଞ୍ଚ ବର୍ଷର ସଞ୍ଚିତ ସମସ୍ତ କଥା କହିବାକୁ ରଘୁନାଥକୁ ଓଳି ଗୋଟାଏ ଲାଗିଗଲା। ତାହାର ଖୁଡ଼ୁତାର ନିଷ୍ଠୁରତାରେ ଯେ ସେ ଏତେଦିନ ଗ୍ରାମକୁ ଆସି ପାରିଲା ନାହିଁ। ଖୁଡ଼ୀ ପୁତୁରା ମୁହଁ ଚାହାଁ ଚାହିଁ ହେବେ ନାହିଁ, କକେଇର ଏ ପ୍ରତିଜ୍ଞା କଥା ସେ ଯେତେ ଥର ଖୁଡ଼ୀ ଆଗରେ କହିଲା, ଖୁଡ଼ୀର ଲୁହ ଝରିଲା। ତାହାର ଆଖି ମଧ ଅଶ୍ରୁପୂର୍ଣ୍ଣ ହେଲା, କିନ୍ତୁ ସ୍ନେହର ଜୟ ହେଲା। ହୃଷୀକେଶ ଟାଣ ମନ କ୍ରମେ କଅଁଳ ହେଲା। ଶୀତ ଗଲା, ଗ୍ରୀଷ୍ମ ଗଲା, ବର୍ଷା ଗଲା, ବସନ୍ତ ଗଲା, ଚାରି ବର୍ଷର ଦୋଳ ଦଶହରା ଗଲା– ଆଉ କେତେ ଦିନ? ରସକଳାର ରଘୁ ପ୍ରତି ବାତ୍ସଲ୍ୟଜନିତ ଅପରାଧ-କ୍ଷମାର ସମୟ ଆସିଲା। ଶୁଭ ଦିନରେ ତାହାର ପୁଅଟିଏ ହେଲା। ନବଜାତ ପୁତ୍ରର ଆନନ୍ଦରେ ହୃଷୀକେଶ ଦଶହରାକୁ ଦୀର୍ଘ ଛୁଟି ଘେନି ଘରକୁ ଆସିଲା। ରଘୁକୁ ମଧ ସଙ୍ଗରେ ଆଣିଲା। ସେଥିପାଇଁ ଦୀର୍ଘ ପଞ୍ଚବର୍ଷ ପରେ ଖୁଡ଼ୀ ପୁତୁରାର ମିଳନ!

ଖୁଡ଼ୀ ପୁତୁରା ମଝିଘରେ ବସି ନୂଆ ପୁଅର ପାଇଟିରେ ନ୍ୟସ୍ତ! ରସକଳା ପିଲା ଦେହରେ ସୋରିଷ ତେଲ ଓ ହଳଦି ଗୋଳାଇ ଲଗାଇବାପାଇଁ ଆଣ୍ଠୁ ଯାକେ ଲୁଗା ଟେକି ଗୋଡ଼ପାରି ବସିଛି। ରଘୁନାଥ ଶିଶୁଟିକି କୋଳରୁ ଥିରିକରି ଖୁଡ଼ୀ ଗୋଡ଼ରେ ଶୁଆଇ ହଳଦି ଲଗା ଦେଖିବାକୁ ବସିଲା। ଆଜି ପୁଅର ଏକୋଇଶିଆ– ସେ ଗାଧୋଇବ, ସନ୍ଧ୍ୟାବେଳେ ପୁରୋହିତ ଆସି ପୂଜା କରିବ, ପୁଅର ନାଁ ଦିଆଯିବ। କିଏ କେତେ ନାଁ ବାଛିଛନ୍ତି, ରଘୁ ମଧ ନାଁ ବାଛିଛି। ରସକଳାର ଏକମାତ୍ର ପୁତ୍ରର ନାମ ବନମାଳୀ। ସେଥିପାଇଁ କେହି କେହି ପୁତ୍ରର ନାମ ବଳଭଦ୍ର, ବାଞ୍ଛାନିଧି ଇତ୍ୟାଦି ରଖିବାକୁ କହିଥିଲେ ସୁଦ୍ଧା ଖୁଡ଼ୀର ଶରଧା, ରଘୁନାଥ କଣ ନାମ ଦେବ ଶୁଣିବା ଲାଗି। ରଘୁ ଧୀରେ କହିଲା, ''ଖୁଡ଼ି, ମୁଁ ତମର ବଡ଼ ପୁଅ, ମୋ ନାଁ ରଘୁନାଥ। ମୋ ନାଁ ସାଙ୍ଗକୁ ପକେଇ ତା ନାଁ ଦିଅ ଶ୍ରୀନାଥ।'' ଖୁଡ଼ୀର ମନ ଆନନ୍ଦିତ ହେଲା, ପ୍ରଫୁଲ୍ଲ ହୃଦୟରେ ନୂଆ ପୁଅକୁ ଗେଲକରି କହିଲା– ''ହଇରେ ଶ୍ରୀନାଥ! ତୁ ଶ୍ରୀନାଥ?'' ରଘୁ ଆନନ୍ଦରେ ଆର ଘରକୁ ଦୁଡ଼ିଗଲା, ପେଡ଼ି ଫିଟେଇ ଗୋଟିଏ ଡିବିଆ ବାହାର କରି ଆଣି ଖୁଡ଼ୀ ଗୋଡ଼ତଳେ ଥୋଇ ଦେଲା। ଖୁଡ଼ୀ ଡିବାଟି ନ ଫିଟାଉଣୁ ଲାଜରେ ତା ମୁହଁଟି ନାଲି ହୋଇଗଲା। ଖୁଡ଼ୀ ତାହା ଫିଟେଇ ହଠାତ୍ ଚମକି ପଡ଼ିଲା– ଡିବା ଭିତରେ ଗୋଟିଏ ଅତି ସୁନ୍ଦର କଟକୀ ସୁନାର ହାର, ଆଉ ହଳେ ସାନ ପୁଅର ରୂପା ଖଡୁ; ପ୍ରାୟ ଶହେ ଟଙ୍କାର ପଦାର୍ଥ। ତାଙ୍କ ଆଖି ଖୋସି ହୋଇଗଲା, ସେ ଟିକିଏ ବଡ଼ ପାଟିରେ କହି ଉଠିଲେ– ''ହଇରେ ରଘୁ! ଏ ପଦାର୍ଥ କାହୁଁ ପାଇଲୁ? ଏତେ ଟଙ୍କା କାହୁଁ ଆଣିଲୁ?'' ରଘୁ କୁଣ୍ଠିତ ହୋଇ କହିଲା, ''କଟକର ବଣିଆ ଦୋକାନରୁ କିଣି ଆଣିଚି। ହାରଟା ତମେ ନାଇବ, ଖଡୁ ନୂଆ ପୁଅର।''

''ସତ କହିଲୁ ବାପ, ତତେ ଏତେ ଟଙ୍କା କିଏ ଦେଲା?''

''ଏ ଇମିତି କିବା ଟଙ୍କା ଯେ–''

''ନା, ସତେ କହ କେତେ ଟଙ୍କା ?''

''ସବୁ ମିଶି ପାଞ୍ଚକୋଡ଼ି ଦଶ ଟଙ୍କା। ଏଇ ତ– ଏ ବା କଣ ବେଶି ?'' ଖୁଡ଼ୀ ଜିଭ କାମୁଡ଼ି କହିଲା, ''ତୋତେ ପାଞ୍ଚ କୋଡ଼ି ଦଶ ଟଙ୍କା କିଏ ଦେଲା ?'' ରଘୁ ବଡ଼ ସଂକୁଚିତ ହେଲା। କିଏ ଦେଲା ! କେମିତି କହିବ– କିଏ ଦେଲା ? ଅବଶ୍ୟ ଜଣେ ଦେଇଛି– ବହୁତ ଦିନରୁ ଜଣେ ତାକୁ ଦେଇ ଆସୁଛି; କିନ୍ତୁ ତା ନାଁଟା କହିବାକୁ ଖୁଡ଼ୀ ଆଗରେ ସୁଦ୍ଧା ରଘୁର ଜିଭ ଲେଉଟିଲା ନାହିଁ। ତା ନାଁ କଣ କହି ନାହିଁ ? ସକାଳେ ତ କହିଛି, କାଲି ତ କହିଥିଲା। କଥା ପ୍ରସଙ୍ଗରେ ଅନେକ ଥର ତା ନାଁ କହିଛି, ହେଲେ ତା ସାଥିରେ ନିଜର ଘନିଷ୍ଠତା କଥାଟିକକ ବଡ଼ ଯତ୍ନରେ ଲୁଚେଇଛି। ଖୁଡ଼ୀ ବୁଝିଲା, ରଘୁ ତାଙ୍କୁ କିଛି କଥା ଗୋପନ କରୁଛି। ସ୍ତ୍ରୀଲୋକେ ସାଧାରଣତଃ ବଡ଼ କୌତୁହଳି। ସେ ଏଥର ନିର୍ବନ୍ଧ ଧଇଲା[୧]– ''କହ ନା ପୁଅ ! ମୁଁ କଣ କାହା ଆଗରେ କହିବି ? କଣ ଉଧାର କରି ଆଣିଚୁ ? ନା ନୂଆ ମାଙ୍କଠାରୁ ଆଣିଚୁ ?'' ରଘୁର ଆଖି ଟଳମଳ ହେଲା। ''ଖୁଡ଼ି, ମୁଁ କଣ ଚୋର ?'' ଅଭିମାନରେ ଏତକ କହି ସେ କିଛିକ୍ଷଣ ରହିଗଲା; ଶେଷକୁ କହିଲା, ''ଖୁଡ଼ି, ତମ ଆଗରେ କଣ କିଛି ମୋର ଲୁଚା ଚୋରା ? ସାଆନ୍ତଙ୍କ ଝିଅ ମତେ ନିତି ପଇସାପତ୍ର ଦିଏ। ସେଇ ପଇସା ସଞ୍ଚି ସଞ୍ଚି ଦେଢ଼ଶ ଟଙ୍କା ହେଇଥିଲା। ଏତକ ଆଣିଚି, ଲୁଗାପଟା ବି ଆଣିଚି; ନଗଦ ତିରିଶ ଟଙ୍କା ଆଣିଚି ତମପାଇଁ।''

ଖୁଡ଼ୀ ବିସ୍ମିତ ହୋଇ କହିଲେ, ''ସୀତା ତୋତେ ଏତେ ପଇସା ଦିଏ ? ତା ବାପ ମା ଅଜାଣତରେ ତୁ ତାଠଉଁ ଏତେ ପଇସା କିମିତି ନେଉ ? ତା ବାପ ପରା ଭାରି ରଙ୍କୁଣା ?''

ରଘୁର କଥା କହିବାର ସାଧ ରହିଲା ନାହିଁ। ସେ ନିଜକୁ ଦୋଷୀ ଭାବି କିଛିକ୍ଷଣ ମୁଣ୍ଡ ତଳକୁ ପୋତିଲା। ସୀତାର କମନୀୟ ମୁଖଟି ମନେ ପଡ଼ିଗଲା। ସେ ସୁନ୍ଦର ଆଖିର ଚାହାଣି, ତାହାର କ୍ଷୁଦ୍ର ହସ୍ତର ଗୁପ୍ତଦାନ– ସବୁ ମନେ ପଡ଼ିଲା। ମନେ ମନେ ସାହସ ଆସିଲା। କୋମଳ ସ୍ୱରରେ କିହଲା, ''ଖୁଡ଼ି ତମେ ଭାବୁଥିବ, ମୁଁ ସୀତା ଆଉ ବାବୁକୁ ପଟାପଟି[୨] କରି ତାଙ୍କଠଉଁ ପଇସା ନିଏଁ ? ତା ନୁହେଁ। ସେମାନେ ମୋତେ ଭାରି ଭଲ ପାନ୍ତି। ମୁଁ ବି ତାଙ୍କୁ ପ୍ରାଣରୁ ଅଧିକ ଭଲ ପାଏଁ। ମା ସାଆନ୍ତାଣୀ ମତେ ନିତି ନ ଦେଖିଲେ ହୁଏ ନାହିଁ। ଏତେ ତାଙ୍କର ଶ୍ରଦ୍ଧା !'' ଖୁଡ଼ୀର ଛାତିଟା ଦାଉଁକିନି ହୋଇଗଲା। ସହଜଜ୍ଞାନୀ, ସରଳ ବିଶ୍ୱାସୀ ନାରୀ ମାତ୍ରେ ଯାହା ଭାବି ନିଅନ୍ତି, ହଠାତ୍ ରସକଳା ତାହା ଠଉରାଇ ଉଜ୍ଜ୍ୱଳ ଚାହାଣିରେ ହସି ପକେଇଲେ; ପଛନ୍ତେ[୩] କୋମଳ କଣ୍ଠରେ କହିଲେ– 'ସାଆନ୍ତେ ତୋତେ ଜ୍ୱାଇଁ କରିବେ କି ପୁଅ ?'' ଏଥର ରଘୁ ଲାଜରେ ବୁଡ଼ିଗଲା। ସେ ସୀତାକୁ ବିଭା ହେବ, ଏ କଥା ମୁହୂର୍ତ୍ତକେ ମନେପଡ଼ି ସୁଦ୍ଧା ତାକୁ କଣକରିପକାଇଲା। ସେ ମହଁ ବୁଲେଇ ମୁରୁକି ହସି ତୁନି ହୋଇ ବସି ରହିଲା। ପରକ୍ଷଣରେ ମନେ ପଡ଼ିଲା– ବୃନ୍ଦାବନ ଚଉଧୁରୀ ! ଗଭୀର ଦୀର୍ଘ

---

(୧) ବାଧ୍ୟକରିବା, ନଛୋଡ଼ବନ୍ଧା, (୨) ମିଛ ସତ କଥା କହି, (୩) ପଛରେ, ପରେ

ନିଃଶ୍ୱାସଟିଏ ମାରି ସେ ବକ୍ଷବେଦନା ଦୂର କଲା; କିଛି କହିଲା ନାହିଁ। ଖୁଡ଼ୀ ଉଠିଗଲେ ଗାଧୋଇବାକୁ। ଆଜି ପୁତୁରାର ଭାବୀ ସୌଭାଗ୍ୟରେ ସେ ପରମ ଆନନ୍ଦିତା।

ତାଙ୍କର ସଂସାରରେ ଯଥେଷ୍ଟ ଅଭିଜ୍ଞତା ହୋଇଛି। ଦେହର ବିବାହ ଯେ ବିବାହ ନୁହେଁ, ଏହା ସେ ବୁଝି ପାରିଛନ୍ତି। ତାଙ୍କର ସ୍ୱାମୀଙ୍କ ଘରେ କଣ ଅଭାବ, କଣ ଦୁଃଖ? ତଥାପି ରସକଳା ତ ସୁଖୀ ହୋଇ ନାହାନ୍ତି– ସୁନା ଗହଣା, ପାଟଲୁଗା ପିନ୍ଧି ସୁଖୀ ହୋଇ ନାହାନ୍ତି। ଦଶ ବର୍ଷଦିନୁଁ ବିଭାହୋଇ ଆସି ତିରିଶ ବର୍ଷ ବୟସ ହେଲା। ତଥାପି ସ୍ୱାମୀଙ୍କ ପ୍ରେମ ସେ ପାଇଲେ ନାହିଁ। ବାର ବର୍ଷରୁ କୋଡ଼ିଏ ବର୍ଷ ବୟସଯାକେ ସନ୍ତାନର ମୁଖ ଦେଖି ନ ଥିଲେ, ସେଥିପାଇଁ ସେ ଶାଶୂ, ନଣନ୍ଦ ଓ ସ୍ୱାମୀଙ୍କର ଅଶେଷ ଗଞ୍ଜଣ[୧] ସହିଛନ୍ତି। ସ୍ୱାମୀ ଦ୍ୱିତୀୟ ବିଭାଘର ପ୍ରସ୍ତାବ ସୁଦ୍ଧା କରି ବସିଥିଲେ। ହେଲେ, ନାରାୟଣଙ୍କ କୃପାରୁ ସେବର୍ଷ ବନାର ଜନ୍ମ ହେଲା। ଆଜି ସୁଦ୍ଧା ତାକୁ ଅନାଇଲେ ରସକଳାର ସବୁ ପୂର୍ବକଥା ମନେ ପଡ଼ିଯାଏ। କେତେ ପିଠିରେ ମାଡ଼ ସହିଛି, କେତେ ପଣତକାନିରେ ଲୁହ ପୋଛିଛି, ବାରିପଟ କୂଅ ମୂଳ ଅମ୍ବଗଛ ଛାଇରେ ବସି ସାରା ଦି'ପହର କେତେ ଦିଅଁ ଦେବତା ଡାକିଛି, ତୁଳସୀଚଉରା ମୂଳେ ସଞ୍ଜଦୀପ ଦେଉ ଦେଉ ମା ବୃନ୍ଦାବତୀଙ୍କୁ କେତେ ଜଣାଇଛି। ହଟକେଶର, ଭୁବନେଶ୍ୱର, ପୁରୀ– କେଉଁଠିକି ବା ସେ ଯାଇ ନାହିଁ। ସେ ବାଂଝ[୨] ବୋଲି ସ୍ୱାମୀ କେତେ ଲାଞ୍ଛନା[୩] କରି ନାହାନ୍ତି? ଇଏ କଣ ଦାମ୍ପତ୍ୟ ପ୍ରେମ? ଇଏ କଣ ସ୍ୱାମୀ ସ୍ତ୍ରୀ ଉପରେ କର୍ତ୍ତୃତ୍ୱ? ଭାତ ଗଣ୍ଡାଏ, ଲୁଗା ଖଣ୍ଡିଏ ଦେବେ ବୋଲି ଘର ପାଇଟି[୪] ଠାରୁ ପୁଅ ଝିଅ ସରିକି କଡ଼ାଗଣ୍ଡାରେ[୫] ଆଦାୟ କରିବେ? ଏ କେଉଁ ରାଜ୍ୟର ନ୍ୟାୟ ନିଶାପ? ମହାପ୍ରଭୁ ତ ପୁରୁଷ ସ୍ତ୍ରୀ ଦୁହିଁଙ୍କି ଏକା ହାତ ଗୋଡ଼, ଆଖି କାନ ଦେଇ ସୃଷ୍ଟିକଲେ; ତେବେ ସ୍ତ୍ରୀ କପାଳ ପଥର ତଳେ, ପୁରୁଷକପାଳ ପତ୍ର ତଳେ କାହିଁକି? ରସକଳା ଏହାର ସଦୁତ୍ତର ଯୋଗାଇ ପାରିଲା ନାହିଁ। ଭାବିଲା କର୍ମଫଳ- ପୂର୍ବ ଜନ୍ମରେ ପାପ କଲେ ଏ ଜନ୍ମରେ ସ୍ତ୍ରୀ ହୁଅନ୍ତି। ରଘୁନାଥ କିନ୍ତୁ ଯଦି ସୀତାକୁ ବିବାହ ହୁଏ, ତେବେ ସୀତାର କୋଟି ପୁଣ୍ୟ ଫଳ– ରଘୁନାଥ ପରି ସ୍ୱାମୀ।

ଖୁଡ଼ୀର ଭାବନାରେ ବାଧା ପଡ଼ିଲା। ମହା ଧୁମଧାମରେ[୬] ଏକୋଇଶିଆ ପୂଜା ବସିଲା। ଦୁଇ ଝିଅରେ ଏ ପୁଅଟି। ହୃଷୀକେଶର ଆଜିକାଲି କଣ ନାହିଁ! ଆଜି ପିଲାମାନେ ବଡ଼ ସୁଖୀ। ବଡ଼ ଭାଇକୁ ପାଇ ବନମାଳୀ ଓ ଗୌରୀ ବଡ଼ ଆନନ୍ଦ, କିନ୍ତୁ କିଶୋରୀ ରଘୁନାଥକୁ ମୋଟେ ଦେଖି ନଥିଲା। ତାକୁ ବର୍ତ୍ତମାନ ତିନି ବର୍ଷ। ସେଥିପାଇଁ ନୂଆ ଭାଇନା କାଖରେ ସେ ଗେଲବସର ହୋଇ ଚଢ଼ି ଗାଁ ବୁଲିଗଲା। ରଘୁନାଥ ସହିତ ଅନେକ ଲୋକ ଦେଖାହେଲେ। ଅନାଥ ଅରକ୍ଷିତ ରଘୁନାଥର ଏବଂବିଧ ଅବସ୍ଥା ପରିବର୍ତ୍ତନ ଯେ ସମସ୍ତଙ୍କୁ ଭଲ ଲାଗିଲା, ଏହା କହିଲେ ମିଛ ହେବ; ବରଂ ଅନେକ ମନେ ମନେ ବିଶେଷ ଈର୍ଷାନ୍ୱିତ ହେଲେ। କିନ୍ତୁ

(୧) ଧିକ୍କାର ଓ ମାଡ଼ଗାଳି, (୨) ବନ୍ଧ୍ୟା, ପୁଅଝିଅ ନଥିବା, ନିଃସନ୍ତାନ, (୩) ଧିକ୍କାର, ନିନ୍ଦା, ବୋଲଣା, (୪) କାମ, (୫) ଟିକିନିଖି, (୬) ଆନନ୍ଦ ଉଲ୍ଲା. ଯାକଯମକ।

ରଘୁନାଥର ସେଥିରେ ଭ୍ରକ୍ଷେପ ନାହିଁ। ଆହୂତ ଅନାହୂତ ଭାବରେ ସେ ପ୍ରତ୍ୟେକଙ୍କ ଘରକୁ ଯାଇ ଦେଖାଦେଲା।

ଗାଁର ବଡ଼ଲୋକ ଶ୍ରୀ ବାଞ୍ଛାନିଧି ଶତପଥୀ ରଘୁନାଥକୁ ଦେଖି ପରମ ପ୍ରୀତ ହେଲେ। ରଘୁନାଥ ଏଣ୍ଟ୍ରାନ୍ସ ଥାର୍ଡ଼ କ୍ଲାସରେ ପଢୁଛି– ବିଚକ୍ଷଣ ବୁଦ୍ଧି, ସୁନ୍ଦର ରୂପ ଏବଂ କୁଳୀନବଂଶଜ। ହୃଷୀକେଶର ଅବସ୍ଥା ଆଜିକାଲି ବଡ଼ ଭଲ ହେଲାଣି– କୋଠାବାଡ଼ି, ଜମିଜମା କଲାଣି। ଏପରି ଘରେ 'ରମା', 'କ୍ଷେମା', 'ଉମା' 'ବାମା'ଙ୍କ ଭିତରୁ ଗୋଟିଏ କାହାରିକି ଠେଲି ନ ଦେଲେ ଆଉ ସୁପାତ୍ରପାଇଁ କଣ ପୃଥିବୀ ଅଣ୍ଡାଳିବେ ? ରଘୁନାଥ ଆଉ ବନମାଳୀ, ଏ ଦିଓଟିଙ୍କୁ ଯଦି ପାଆନ୍ତେ, ଆଉ କଥା ରହନ୍ତା !

ସେଦିନ ସନ୍ଧ୍ୟାବେଳେ ଶତପଥୀଙ୍କ ଗୃହିଣୀ ରସକଳା କତିରେ ଉପସ୍ଥିତ ! ଦରିଦ୍ର ବଡ଼ ଲୋକଙ୍କ ଶ୍ରୀପାଦଧୂଳି ପାଇବା କାଠିକର ପାଠ ! ଆଜିକାଲି ସୁରୂଯୀ ମାଇଁ ଆଉ ରସ ଖୁଡ଼ୀର କାନ୍ଧକୁ କାନ୍ଧ ପାଇଲାଣି ଦେଖି ରଘୁନାଥ ଏବଂ ଗାଁ ଲୋକେ ଅବାକ୍। ପଇସା କଣ ନ କରେ ? ଚତୁର ହୁରୁଷୀ ବୁଝିଛି, ପଇସା ଥିଲେ ଚମାଗୋରୀ ଗଉରୀ ଲକ୍ଷିଆର ହାତ ଧରିବାକୁ ଅବା କେତେ ?

ମନ କଥା ମନରେ ରହିଲା। ଖୁଡ଼ୀ ପୁତୁରା ଚିରକାଳର ଅଭ୍ୟାସବଶତଃ ବଡ଼ ଗେଲରେ କଥା ହୁଅନ୍ତି। ରସକଳା ତ ରଘୁକୁ ପୁତୁରା ଭାବନ୍ତି ନାହିଁ– ମନେ କରନ୍ତି, ଯେମିତି ନିଜର ବଡ଼ପୁଅ। ଚୁଲୀମୁଣ୍ଡରେ ଦୁଇଜଣ ବସିଛନ୍ତି। ଖୁଡ଼ୀ ଗେଲରେ ଗେଲରେ କଥାଟା ବାହାର କଲେ। ରଘୁ ଲଜ୍ଜାରେ ଝାଉଁଳି ପଡ଼ି କହିଲା, ''ଖୁଡ଼ି, ମତେ ବିଭା କଥା କୁହ ନାହିଁ। ମୁଁ ଆଗେ ପାଶ୍ କରେଁ, ଚାକିରି କରେଁ– ତମ ଗୋଡ଼ ତଳକୁ କେତେ ଦାସୀ ଆସିବେ।''

''ଦାସୀ କାହିଁକି ପୁଅ ? ଶତପଥୀ ଘର ଝିଅ କଣ ଦାସୀ ପୋଇଲୀ ହେବେ ? ରମାର ନନା ତ ତତେ ଘରଜୁଆଇଁ କରିବେ।''

ହଠାତ୍ ଘୃଣାରେ ରଘୁନାଥର ମୁହଁ ବିବର୍ଣ୍ଣ ହୋଇଗଲା। ସେ ନିଜକୁ ସମ୍ଭାଳି ନ ପାରି କହିଲା, ''ଖୁଡ଼ି, ସୁରୁଯୀ ମାଇଁ ନାଁ ଧର ନାହିଁ। ମନେ ନାହିଁ ମୋ ବୋଉ, ମୋ ନାନୀକି ସେମାନେ କେତେ ଦୁଃଖ ଦେଇଚନ୍ତି। ମୁଁ ଅନାଥ ଅର୍କ୍ଷିତ, ତାଙ୍କର ମୋ ଉପ୍ରରେ ଏଡ଼େ ଶରଧା କୋଉଁ କାଳୁ ହେଲାଣି ମ ? ରାଜକନ୍ୟା ହେଲେ ବି ତାଙ୍କ ଘର ଝିଅ ଆମ ଘରକୁ ଆସିବ ନାହିଁ।'' ହଠାତ୍ ଏତେଗୁଡ଼ାଏ କଥା କହିପକାଇ ପୁଣି ଖୁଡ଼ୀ ଆଗରେ ରଘୁ ଲଜ୍ଜାରେ ଆଖି ପୋଛିପକାଇଲା। ଖୁଡ଼ୀ ପୂର୍ବ କଥା ମନେକରି ଗୋଟିଏ ଦୀର୍ଘଶ୍ୱାସ ପକାଇଲେ। ପରେ, ଧୀର କଣ୍ଠରେ କହିଲେ, ''ମୋର ତ ବୋହୂ ରାଜକନ୍ୟା ହେବ, ଦେଖିବୁ ରହ। ସାଆନ୍ତ ତତେ ଝିଅ ବିଭାଦେବେ।''

ରଘୁ ଦାଣ୍ଡକୁ ପଳାଇଲା। ଆକାଶ ସେତେବେଳେ ଅନ୍ଧକାର– ଗୋଟିଏ ଯୋଡ଼ିଏ ତାରା ଦପ୍‌ଦପ୍ ହେଉଚନ୍ତି। ବିଲ ପାଖ ବନ୍ଧ ଉପରେ ବସି ରଘୁ ଦୂର ଆକାଶକୁ ଚାହିଁଲା।

ସତେ ଆଜି ତାର ବଡ଼ ଇଚ୍ଛା ହେଲା– ଖୁଡ଼ୀର କଥା ସହି ହୁଅନ୍ତା କି ? ରଘୁନାଥ କିଶୋର ବାଳକ– ହୃଦୟରେ ବାସନାର ପ୍ରଥମ ରେଖା ଫୁଟିଲାଣି[୧]। ନୀରବ ନିର୍ଜନ ରାତିରେ ପଲ୍ଲୀ ପ୍ରାନ୍ତରେ ସେ ରେଖାଟି ତାଙ୍କୁ ହୃଦୟରେ ଆହୁରି ସ୍ପଷ୍ଟ ହୋଇଉଠିଲା। କିନ୍ତୁ ପରକ୍ଷଣରେ ମନେ ପଡ଼ିଲା ବୃନ୍ଦାବନ ଚଉଧୁରୀ। ବାଳକ ଦି' ଟୋପା ଲୁହରେ ଗାଲ ତିନ୍ତାଇ ଘରକୁ ଗଲା। ମାତ୍ର ହୃଦୟର ସ୍ପନ୍ଦନରେ ସୀତା–ସୀତା–ସୀତା।

ରଘୁନାଥର ହୃଦୟରେ ମାନବର ପ୍ରଥମ ପ୍ରଣୟର ମଧୁର ଢେଉଖେଳ, ସେଥିରେ ବିରହବେଦନା ଅପେକ୍ଷା ଅନୁଭବର ଆନନ୍ଦ ଅଧିକ। ବିବାହର ଆକାଂକ୍ଷା ଅପେକ୍ଷା ପ୍ରେମର ପ୍ରତିଦାନ ଆକାଙ୍କ୍ଷା ଅଧିକ। ବିଧିନିର୍ବନ୍ଧର ଖେଳ ବହୁ ଗର୍ଭରେ– ସେତେବେଳେ ଶିଶୁ ମାନବ ପ୍ରକୃତିର ମୁକ୍ତ ରାଜ୍ୟରେ ବିବାହ ବନ୍ଧନର ଗୁରୁତ୍ୱ କାହୁଁ ବୁଝିବ ? ସେଥିପାଇଁ ରଘୁ ଭାବିଲା– ସୀତା ମତେ ପ୍ରେମକରେ ! ଏହା ଭାବି ଆଶ୍ୱସ୍ତହେଲା।



## ଷଷ୍ଠ ଅଧ୍ୟାୟ

ସୀତା ଆସି ଖଟରେ ଶୋଇ ପଡ଼ିଲା। ତାହାର ଜୀବନରେ ଯେ କୌଣସି ଗୁରୁତର ପରିବର୍ତ୍ତନ ଘଟିଛି, କ୍ଷୁଦ୍ରା ବାଳିକା ତାହା ସ୍ପଷ୍ଟ ଜାଣି ନ ପାରିଲେ ମଧ୍ୟ ଆଂଶିକ ବୁଝି ପାରୁଥିଲା। ଗୋଟାଏ ଗଭୀର ନୈରଶ୍ୟ ତାହାର ହୃଦୟରାଜ୍ୟ ଅଧିକାର କରିଛି; କିନ୍ତୁ ତାହା କଣ, ସେ ଭଲ ବୁଝି ପାରୁନାହିଁ। ରହି ରହି ତାର ମନେ ପଡୁଥାଏ ରଘୁନାଥ– ଆଉ ଦୁଇ ଘଣ୍ଟା ପରେ ରଘୁନାଥ ଆସିବ। କିନ୍ତୁ ସୀତା ଆଜି ବଡ଼ ବିମର୍ଷ। ଦୁଇ ଦିନ ହେଲା ବୃନ୍ଦାବନ ସହିତ ସୀତାର ନିର୍ବନ୍ଧ ହୋଇ ଯାଇଛି – ଯଥାରୀତି ତୁଳସୀ–ମାଳ ଟେକା ହୋଇ ସତ୍ୟ ହୋଇଛି, ପଣ' କଥା ଛିଣ୍ଡିଛି। ବୃନ୍ଦାବନ ଜମିଦାର, ପଣ ଦେବେ ତିନିଶ ପଚାଶ ଟଙ୍କା। ତାହା ଉପରେ ପୁଣି ଜମିଦାରିର ଅନେକ କାରବାର କଥା ଅଛି। ବୃନ୍ଦାବନଙ୍କର ଯଥେଷ୍ଟ ଭୂସମ୍ପତ୍ତି ଏବଂ ସୀତାର ପିତା ଚନ୍ଦ୍ରଶେଖର ମଧ୍ୟ ତାଙ୍କ ଜମିଦାରି ଇଲାକାରେ ଅନେକ ଜମି ନେଇଛନ୍ତି। ଜମିଦାର ଜୁଆଁଇ ହେଲେ ପ୍ରାୟ କୋଡ଼ିଏ ବାଟି ଜମିର ଖଜଣାରୁ ନିଷ୍କୃତି ମିଳିବା ସମ୍ଭବ; ମଧ୍ୟ ବୃନ୍ଦାବନଙ୍କୁ ହାତରେ ରଖିବା ବିଶେଷ କଷ୍ଟକର ହେବ ନାହିଁ। ନିଜର ଲାଭ ଲୋକସାନି[୩] କଷି ନେଇ ଚଉଧୁରିଏ ଝିଅଟିର ବର ଘର ଠିକଣା କରିଛନ୍ତି। କିନ୍ତୁ ସରସ୍ୱତୀ ଏଥିରେ ବିଶେଷ ଅସୁଖୀ। ଏହା ଚଉଧୁରିଏ ବୁଝିବା ସତ୍ତ୍ୱେ 'ସ୍ତ୍ରୀବୁଦ୍ଧି ପ୍ରଳୟଙ୍କରୀ' ଭାବି, ସ୍ତ୍ରୀଙ୍କ ସହିତ ଏ ସବୁ ବିଷୟର ପରାମର୍ଶ ନ କରି କାର୍ଯ୍ୟ ଶେଷ କରିଛନ୍ତି।

"ବୟସ ଆସି ହେଲା ପଇଁଚାଳିଶ ଉପରେ। ଏ କାଳେ ପୁଣି ବାହ ହେବେ ?" କହି ପରମାନନ୍ଦ ଚଉଧୁରିଙ୍କ କତିରେ ବସି ପଡ଼ିଲେ। ଦୁଇଜଣ କଥାବାର୍ତ୍ତା ହେଉଁ ହେଉଁ

---

(୧) ପ୍ରକାଶିତ ହେବା, (୨) ଦବାନବା ସଂକ୍ରାନ୍ତ ରାଜିନାମା, (୩) କ୍ଷତି

ଦାଣ୍ଡରୁ ଆସିଲେ। ହରିଆ ପାନ ଗୁଣ୍ଡି ଥୋଇଗଲା। ଥାଳିଆରୁ ପାନଖିଲଟି ଉଠାଇ ତାହାର ସଦ୍‌ବ୍ୟବହାର କରୁ କରୁ ପରମାନନ୍ଦ ପୁଣି ପଚାରିଲେ, "ହଇ ହେ, ନିର୍ବନ୍ଧ[୧] କରି ପକେଇଲ, ଆମକୁ ପଚାରିଲ ନାହିଁ? ଆମ ଗାଁରେ ଶଙ୍କର ବାବୁଙ୍କ ପୁଅ ଗିରିଧାରୀ ଏହି ବର୍ଷ ପରା ଏଣ୍ଟ୍ରାନ୍‌ସ ପାଶ୍ କଲା– କଲେଜରେ ପଢୁଚି। ଆମ ଝିଅଟି ତ ଦିବ୍ୟ ସୁନ୍ଦର। ମୁଁ ବର ଘରଟି କରି ଦେଇଥାନ୍ତି।"

ଚଉଧୁରିଏ ଅଳ୍ପ ହସି କହିଲେ, "ମୁଁ ଶଙ୍କରଙ୍କୁ ଜାଣେ। ଚାକିରି ଖଣ୍ଡକ ଛଡ଼ା ତାର ଆଉ କଣ ଅଛି? ପୁଅଟା ପାଶ୍ କଲେ ହେଲା? ଘରେ ଖାଇବାକୁ ଅଛି କି ନା, ଦେଖି କରି ଝିଅ ଦବା କଥା।"

"ତେବେ ଜନାର୍ଦ୍ଦନ ଘରେ ଭିତିରିଆ ବୁଝିଲ ନାହିଁ? ତାଙ୍କ ଘର ବେଶ୍ ଥିଲାବାଲା।"

"ହେଲେ, ବୃନ୍ଦାବନ ଘରକୁ ଲାଗେ[୨] ନାହିଁ– ସେ ଜମିଦାର।"

"କିନ୍ତୁ ଏଡ଼େ ବୁଢ଼ାବରକୁ ଦେଇ କିଆଁ? ଝିଅର ତ କିଛି ସୁଖ ହବାର ନାହିଁ। ସଦାଶିବକୁ ଦେଇଥିଲେ ଭଲ ହୋଇଥାନ୍ତା।"

"ପହିଲେ ସେହି କଥା ଘଟଣା ହଉ ହଉ ତ ଏଇୟା ହେଲା। ଏଥିରେ ଆମର କିଛି ତ୍ରୁଟି[୩] ହୋଇନାହିଁ। ସଦାଶିବ ମଙ୍ଗଳପୁରରେ ବାହା ହବ। ମୋ ଝିଅ ସକାଶେ ମୁଁ ବୁଢ଼ାଠଉଁ ଅଧା ସମ୍ପତ୍ତି ଲେଖେଇ ନେବି, ଦେଖ। ସେ କଣ ମତେ ଫାଙ୍କି ଦେବ? ତୁମେ ଜାଣ ନା– ପରମାନନ୍ଦ, ସାଡିଆ ସେ ଘରେ ବିଭା ହେଲେ ଆମର ବଡ଼ ଲାଭ। ସେ ଆମର ଜମିଦାର। ମୋର କୋଡ଼ିଏ ବାଟି ବିଲର ଖଜଣା ଦାଉଟା[୩] ଯିବ। ଆଉ ଆମର ଯେଉଁ ବଡ଼ ବଡ଼ ଆଠଟା ତୋଟା ଅଛି, ସେ ସବୁରେ ତାଙ୍କର ଅଧେ ଭାଗ। ମୁଁ ଠିକ୍ ଠିକଣା କରି ସବୁ ହସ୍ତାନ୍ତର କରିନେବି। ତୁମେ ଭାବିଚ, ମୁଁ ଚୁଲ୍ଲାକୁ ବୁଢ଼ା ବରକୁ ଝିଅ ଦେବି– କିଛି ଲାଭର ବାଟ ନ ରଖି?"

"ସୀତା, କଣ କରୁଚି?" କହି ପରମାନନ୍ଦ ଘର ଭିତରକୁ ଗଲେ। ଭାଣିଜୀର କାତର ମଳିନ ମୁଖ ଦେଖି ହଠାତ୍ ତାଙ୍କର 'ପ୍ରାଣଟି କାନ୍ଦି ଉଠିଲା। ତେବେ କଣ ଏଡ଼େ କ୍ଷୁଦ୍ର ବାଳିକା ନିଜର ଭାବୀ ଦୁର୍ଭାଗ୍ୟ ବୁଝି ପାରିଛି? "ତୋ ବୋଉ କାହିଁ?"

"ବାରିଆଡ଼େ" କହି ସୀତା ଉଠି ରନ୍ଧାଘରକୁ ଗଲା। ପରମାନନ୍ଦ ଭଗିନୀର ଉଦ୍ଦେଶ୍ୟରେ ବାରିଆଡ଼କୁ ଗଲେ।

ସରସ୍ୱତୀ ବାରିଆଡ଼ର ରଞ୍ଜା[୫] ହଣାଇ ବାଡ଼ ବୁଜାଉଥିଲେ। ଭାଇକୁ ଦେଖି କହିଲେ, "ବୁଝିଲୁ ତ? ମୁଁ ମିଛ କହୁଥିଲି?"

"ଛାଡ଼, ଯା ହେବାର ହେଲାଣି। 'ନେଡ଼ି ଗୁଣ କହୁଣୀକି ଗଲେ ଆଉ ଫେରିବ?' ଯାହା କପାଳ ଯୋଉଁଠି।"

---

(୧) ବିବାହପାଇଁ ଦେବତାଙ୍କ ନାମ ନେଇ ବରକନ୍ୟା ଉଭୟପକ୍ଷ ମଧ୍ୟରେ ରାଜିନାମା, (୨) ପାଇବା, ସମାସ୍ୱନ୍ଧ, (୩) କ୍ଷତି, (୪) ଅଧିକାର, ପ୍ରତାପ, (୫) ଇତାମଡ଼ାଇବା ପାଇଁ ବ୍ୟବହୃତ ଝଟା ବା ଅବଲମ୍ୱନ।

''ହଁ, ଯାହା ହାଣ୍ଡିରେ ଯେ ଚାଉଳ ପକେଇଚି। ଆମେ ମା ବାପା ହେବୁ, କଣ କରିବୁଁ?''

''ବୁଢ଼ା ବରକୁ ଦେଇ କହିବ– 'ଯାହା ହାଣ୍ଡିରେ ଯେ ଚାଉଳ ପକେଇଚି।' ଭିଣେଇ ତ ଦେଖିଲେ ଟଙ୍କା! ଝିଅ ପୁଅଙ୍କୁ କଣ ତାଙ୍କର ମାୟା ଅଛି?''

''ସିମିତି କହ ନା, ତୋ ଭିଣେଇ ଶୁଣିଲେ ଦୁଃଖ କରିବେ। ପୁରୁଷ ଲୋକର କି ବୟସ? ହେଇ ହେଇ ଚାଳିଶ ହବ ତ? ମାଇକିନା ଝିଅ! ଦେଖୁଁ ଦେଖୁଁ।''

ବାଧା ଦେଇ ପରମାନନ୍ଦ କହିଲେ, ''ଯା ଲୋ ନାନି! ଏଡ଼େ ସୁନ୍ଦର ଝିଅକୁ ଭସେଇ ଦଉଚ ସିନା?''

ସରସ୍ୱତୀ ଦୀର୍ଘନିଃଶ୍ୱାସଟିଏ ପକେଇ କହିଲେ, ''ମୁଁ କଣ କରିବି ରେ ପରିଆ! ସବୁ କପାଳ କଥା। ନୋହିଲେ, ସଦେଇ ପାଇଁ ହଉ ହଉ ବାପ ପାଇଁ ହୁଅନ୍ତା? ଆମେ ମାଇପି ଲୋକ। ଆମ କଥା କିଏ ଶୁଣେ? ଜାଣୁ ତ, ତୋ ଭିଣେଇ କୋଉଁ କଥା ମତେ ପଚାରି କରନ୍ତି ନାହିଁ। ତାଙ୍କ ନିଜ ମନକୁ ଯାହା ସୁନ୍ଦର ଦିଶେ, ତା କରିଯାନ୍ତି।''

''ଏଇଟା ତାଙ୍କର ଭାରି ଅନ୍ୟାୟ।''

''କିଜାଣି, ଆମ ମାଇପି ଲୋକର ଏତେ କଥାରେ କି ଯାଏ! ନ୍ୟାୟ ଅନ୍ୟାୟ ସେ ବୁଝନ୍ତି।''

''କେବେ ବାହାଦବ?''

''ଆସନ୍ତା ବଇଶାଖକୁ।''

ରଘୁ ଆସି ପଛାଡ଼େ ଠିଆ ହୋଇ ସବୁ ଶୁଣିଲା; ସୀତାର ଭାଗ୍ୟ ବିଷୟ ଚିନ୍ତା କରୁ କରୁ ଘରକୁ ଗଲା। ସୀତା ରଘୁକୁ ଦେଖି ବାହାରକୁ ଆସିଲା। ରଘୁ କାହାକୁ କିଛି ନ କହି ଘରକୁ ଚାଲିଯିବା ଦେଖି ସୀତାର ମନଟି ଦୁଃଖରେ ପୂରିଗଲା।

ଦାଣ୍ଡପଟ ପିଜୁଳି ଗଛ ମୂଳେ ବସି ରଘୁ ନୀରବରେ ଚିନ୍ତା କଲା। ବୃଦ୍ଧ ବୃନ୍ଦାବନର ଅର୍ଦ୍ଧକୃଷ୍ଣ, ଅର୍ଦ୍ଧଶୁକ୍ଳ କେଶମଣ୍ଡିତ ମସ୍ତକ, ପ୍ରୌଢ଼ ମୁଖ, ଶିଥିଳ ଶରୀର, ସବୁ ଗୋଟି ଗୋଟି ହୋଇ ତାହାର ଆଖି ଆଗରେ ଚିତ୍ର ପରି ଦିଶିଲା। ଏଡ଼େ ବୁଢ଼ା, ଆଉ ସୀତା କେଡ଼େ ସାନ– କେଡ଼େ ସୁନ୍ଦର! ଏପରି ଅଜା ନାତୁଣୀ ବାହାଘର ସୀତା ସୁଖୀ ହବ? ରଘୁ କେତେ ଚିନ୍ତା କଲା। ଯଦି ବୁଢ଼ାର କାଳ ହୁଏ। ତତ୍‌ପରେ ଆଉ ସେ ଭାବି ପାରିଲା ନାହିଁ। ପିତେଈ ନାନୀର ନିର୍ଜଳା ଏକାଦଶୀ ସେ ଦେଖିଥିଲା। ବାଳକର କଳା ଆଖିଯୋଡ଼ିକ ପାଣିରେ ପୂରିଗଲା। ରଘୁନାଥ ଧୀରେ ଧୀରେ ଉଠି ଘରକୁ ଗଲା। ତାରାମଣି ବ୍ୟସ୍ତ ହୋଇ କହିଲେ, ''ଯାଅ ତ ରଘୁ, ବାପା, ଶତ୍ରୁଘ୍ନ କେଉଟ ଘରେ କଣ କରୁଚନ୍ତି ଦେଖିବୁ। ଦିନ ଦି'ଟା ହେଲଣି– ଗାଧୁଆ

ନାହିଁ, ଖିଆ ନାହିଁ।'' ରଘୁ ଶତୁରା କେଉଟ ଘରକୁ ଗଲା। ଶତୁରା କେଉଟର ଘର ତେଲଙ୍ଗାବଜାରର ଅପରିଚ୍ଛନ୍ନ ଆବର୍ଜନାପୂର୍ଣ୍ଣ ଗଳି ଭିତରେ। କାନ୍ଥକୁ କାନ୍ଥ ଲାଗି ପ୍ରାୟ କୋଡ଼ିଏ ଘର। ମଝିରେ ହାତେ ଓସାର ମାଟିରାସ୍ତା। ଭିତରେ ପଶି ରଘୁ ଦେଖିଲା, ବାପା ଖଣ୍ଡେ ଛିଣ୍ଡା ଅଖା ଉପରେ ବସିଛନ୍ତି। ନିକଟରେ ଅତି ମଳିନ ଶଯ୍ୟାରେ ଶାୟିତ ଗୋଟିଏ ଷୋଳ ସତର ବର୍ଷର ଯୁବକ। ତାହାର ଶେଷ ସମୟ ନିକଟ ପ୍ରାୟ– ହାତ ଗୋଡ଼ କଳାକାଠ, ମୁହଁ କଳା ଖପରା, ନିଃଶ୍ୱାସ ଘଡ଼ ଘଡ଼ ଶୁଭୁଛି। ରଘୁନାଥର ଅତିଶୟ ଭୟ ହେଲା। ଅନ୍ୟ କୋଠରୀରୁ ସ୍ତ୍ରୀ ଲୋକମାନଙ୍କ କ୍ରନ୍ଦନର କ୍ଷୀଣ ଶବ୍ଦ ତାହାର କାନରେ ପଶିଲା। ହଠାତ୍ ଦାଣ୍ଡଦ୍ୱାର ଠେଲି ଭିତରେ ପଶିଗଲା ଶତୁରା; ଲମ୍ବ ହୋଇ କବିରାଜଙ୍କ ଗୋଡ଼ତଳେ ପଡ଼ିଗଲା। ତାହାର ମୁହଁରୁ ଅନେକକ୍ଷଣ କିଛି ମାତ୍ର କଥା ବାହାରିଲା ନାହିଁ। ପରେ ଅତି କଷ୍ଟରେ, କ୍ଷୀଣ କଣ୍ଠରେ କହିଲା– ''କବିରାଜେ, ମା ବାପା, ରକ୍ଷା କର, ଜୀବନ ଦିଅ। ଏତେ ତ କରିଚ, ସେ ପରା ମୋର ଗୋଟିଏ ସଙ୍ଖାଳି।'' ଜଗନ୍ନାଥଙ୍କ ହୃଦୟ ବିଦୀର୍ଣ୍ଣ କରି ଗୋଟିଏ ଦୀର୍ଘଶ୍ୱାସ ବହିଗଲା। ସେ ଧୀର ଅଥଚ ଦୃଢ଼ କଣ୍ଠରେ କହିଲେ– ''ବାବା, ଜୀବନ ଦାନ କରିବାର ଶକ୍ତି ମୋର ଥିଲେ ସ୍ୱୟଂ ଈଶ୍ୱର ହୋଇଥାନ୍ତି। ଭଗବାନଙ୍କୁ ଡାକ– ଭଗବାନଙ୍କୁ ଡାକ। ତାଙ୍କୁ ଧଇଲେ ସେ ସାହା ହେବେ। ଯାହା କର୍ମଫଳ ଘେନି ଆସିଥାଇଁ, ତା ଭୋଗିବା ସିନା?'' ପରକ୍ଷଣରେ ରୋଗୀର ନାଡ଼ି ଦେଖିଲେ। ରଘୁ ବାହାରେ ଯାଇଁ ଠିଆ ହେଲା। ଭିତରୁ ସ୍ତ୍ରୀ କଣ୍ଠରେ ଜଣେ କହିଲା– ''କବିରାଜେ, ପାହାନ୍ତାରୁ ଆସି ବସିଚ ଗରିବ ଘରେ। ତମର ଏତେ ଦୟା କାହୁଁ ସୁଝିବୁଁ ଆମେ ନିରିମାଖୀ ଲୋକ। ଆମ କପାଳରେ ଯା' ଥିଲା ବୋଲି କିଏ କହିବ?'' କିଛି କ୍ଷଣ ପରେ କେବଳ କ୍ରନ୍ଦନଧ୍ୱନି ମାତ୍ର ଶୁଭିଲା। ଜଗନ୍ନାଥ ବାରଂବାର ରୋଗୀର ନାଡ଼ି ଦେଖୁଥାନ୍ତି ଏବଂ ଔଷଧ ଖଲି କପାଳରେ ପାଦରେ ମାଲିଶ୍ କରାଉଥାନ୍ତି।

ରଘୁ ପଛାଡୁ ଡାକିଲା 'ବାପା'।

ଜଗନ୍ନାଥ ମୁହଁ ଫେରାଇ ଉତ୍ତର ଦେଲେ, ''ବାପ, ଘରକୁ ଯା। ଆଉ ଘଣ୍ଟାକ ପରେ ଯିବି।'' ରଘୁ ଫେରି ଆସିଲା।

ପ୍ରାୟ ଚାରିଟା ବେଳକୁ କ୍ଳାନ୍ତ ଦେହରେ ଜଗନ୍ନାଥ ଘରକୁ ଆସିଲେ। ସ୍ନାନ ଭୋଜନ ସାରି ଦୀର୍ଘ ଚାରିଘଣ୍ଟା କାଳ ବିଶ୍ରାମକଲେ। ରାତି ଆଠ ଘଡ଼ିକି ପୁଣି ବାହାରିଲେ। ତାରାମଣି ଅନୁନୟ କରି କରିଲେ– ''ଆଉ ରାତିରେ ଯାଅ ନାହିଁ।'' ''ଏଇକ୍ଷଣି ଆସିବି'' କହି ଜଗନ୍ନାଥ ଚାଲିଗଲେ। ଦେବତା ବରଣରେ ସ୍ୱାମୀ ଏବଂ ରୋଗୀର ସହସ୍ର ମଙ୍ଗଳ କାମନା କରୁ କରୁ ତାରାମଣି ରେବତୀ କତିରେ ଶୋଇ ଦୀପାଲୋକରେ ରାମାୟଣ ପାଠ କରିବାକୁ ଲାଗିଲେ।

× × × ×

ସୀତା କୂଅମୂଳେ ବସି ଗୁଣୁ ଗୁଣୁ ସ୍ୱରରେ ଗୀତ ଗାଉଛି। ଆଜି ସେ ଭାରି ଅନ୍ୟମନା। ଚାହୁଁ ଚାହୁଁ ତା ଜୀବନର ପ୍ରାୟ ଦଶଟି ବର୍ଷ କଟି ଯାଇଛି। ଆସନ୍ତା ମଙ୍ଗଳବାର ତାହାର ବିଭାଘର। କିନ୍ତୁ ବିବାହ କଣ, ସେହି ଦରବୁଢ଼ା ଲୋକ ତାହାର ବର ହେବ। ସେ ଲୋକର ତିନି ପୁଅ, ଦୁଇ ଝିଅ। ସେ ଘରେ ତାରି ସାଙ୍ଗକୁ ବୋହୂ ଆସିବ; ସୀତା ତାହାର ଶାଶୂ ହେବ। ଏ ସବୁ ଭାବି ଭାବି ସୀତାର ଲଜ୍ଜାବୋଧ ହେଲା; କିନ୍ତୁ ସେଥିରେ ତାହାର କ୍ଷତି ବା ଲାଭ କଣ, ସେ ବୁଝି ପାରିଲା ନାହିଁ। ସେ କେବଳ ଭାବିଲା– ଏଡ଼େ ବୁଢ଼ା ବରକୁ ବାହା ହେବି ? ଲୋକେ ତ ଥଟା କରିବେ। ପରକ୍ଷଣରେ ତାହାର ସେ ଚିନ୍ତା ଦୂରୀଭୂତ ହେଲା– ଗୋଟିଏ ସୁନ୍ଦର ମୁଖ ଚିନ୍ତାର ସ୍ଥାନ ଅଧିକାର କଲା।

ହସି ହସି ରଘୁ ଆସି କତିରେ ବସିଲା। ତା ହାତରେ ଗୋଟିଏ ଫୁଟନ୍ତା ଗୋଲାପ। ''ନେ'' କହି ରଘୁ ସୀତା ଆଡ଼କୁ ହାତ ବଢ଼େଇଦେଲା। ସୀତା ଆଗ୍ରହରେ ଫୁଲଟି ନେଇ ମୁଣ୍ଡରେ ଖୋସିଲା। ରଘୁ ନୀରବରେ ଅନାଇ ରହିଥାଏ।

ଦିବା ଦ୍ୱିପ୍ରହର, ଚତୁର୍ଦ୍ଦିଗ ନୀରବ। 'ଗୁଡ଼ଫ୍ରାଇଡ଼େ' ଛୁଟି ସକାଶେ ସ୍କୁଲ କଚେରି ବନ୍ଦ। ବାବୁ ନିମନ୍ତ୍ରଣରେ ମାମୁଘରକୁ ଯାଇଛି। ବାବୁର ମଧ୍ୟ ଏ ସପ୍ତାହରେ ବିବାହ; କିନ୍ତୁ ବିବାହ ନାହିଁ ଜଣକର– ସେ ରଘୁନାଥ। ଦରିଦ୍ର ରଘୁନାଥ ଏତେ ଦିନ ପରେ ନିଜର ବିଶେଷତ୍ୱ ଟିକକ ବୁଝି ପାରିଛି। ବାବୁ ଓ ରେବତୀର ବିବାହ, ସୀତାର ବିବାହ; କିନ୍ତୁ ସେମାନଙ୍କର ଚିରସଙ୍ଗୀ– ତାହାର ବିବାହ ହେଲା ନାହିଁ କିଆଁ ? ହେଲେ, ସେଥିରେ ତାର ଦୁଃଖର କାରଣ କଣ ? ତଥାପି ସେ ଦୁଃଖିତ। ସୀତାର ମୁଖକୁ ଚାହିଁ ତାହାର ଦୁଃଖ ଉଚ୍ଛୁଳି ପଡୁଛି। ଆଉ ଦୁଇ ଦିନ ପରେ ସୀତା ଯେ କାହାର ହେବ, ଏହା ଭାବିଲାବେଳକୁ ତାହାର ଛାତି କୋହରେ ଫାଟିଯାଉଛି। ସୀତା ଯେତେବେଳେ ତାହାର ସୀତା, ତାହାର ସମଗ୍ର ସ୍ନେହ ଯେ ସୀତାର– ତାହାର ସର୍ବସ୍ୱ ଦେଇ ସେ ସୀତାକୁ ଆପଣାର କରିଛି। ସେ ସୀତା ପରଘରକୁ ଚାଲିଯିବ। କିନ୍ତୁ ଝିଅ ମାତ୍ରେ ପରଘରକୁ ଯାନ୍ତି, ଏହା ଜାଣିବା ସତ୍ତ୍ୱେ, ସେ ଏଡ଼େ ଦୁଃଖିତ କାହିଁକି ?

ରଘୁନାଥ କଣ ଭାବିବ ? ଭାବିବାର ଶକ୍ତି ତାହାର ନାହିଁ। କେବଳ ନୀରବରେ ସେ ସୀତାର ମୁହଁକୁ ଅନାଇ ରହିଲା। ତାହାର ଅଜ୍ଞାତ ସାରରେ ଲୁହ ଆଖିପତା ତଳକୁ ଗଡ଼ିଗଲା। ସୀତା ମଧ୍ୟ ନୀରବରେ ଅନାଇଲା। ତାହାର ଚକ୍ଷୁ ମଧ୍ୟ ପୂରି ଉଠିଲା। ସୀତା କାନ୍ଦିଲା– ଆଜି ଜୀବନର ସବୁ ଦୁଃଖ ଅଶ୍ରୁରେ ପରିଣତ ହୋଇ ଝରିପଡ଼ିଲା। କିଏ କହେ, ସୀତା ବୁଝି ନାହିଁ ?

ରଘୁ କୋମଳ କଣ୍ଠରେ ସାନ୍ତ୍ୱନା ଦେଇ କହିଲା, ''ଛି, କାନ୍ଦୁଚୁ ? ତୋର କଣ ହେଇଚି କି ?''

ସୀତାର କଣ ହୋଇଛି, ସେ ତାହା କହି ପାରିଲା ନାହିଁ; କେବଳ କାତର[୧] ଦୃଷ୍ଟିରେ ରଘୁକୁ ଅନାଇ ରହିଲା। ରଘୁ ବୁଝିଲା– ଗଭୀର ଦୀର୍ଘଶ୍ୱାସରେ ତାହାର ବକ୍ଷଃସ୍ଥଳ ବିଦୀର୍ଣ୍ଣ ହେଲା। ସେ ପୁଣି କାନ୍ଦିଲା।

''ସୀତା! ସୀତା!''

ପିତେଇ ନାନୀର ଡାକ ଶୁଣି ସୀତା ଘରକୁ ଦଉଡ଼ିଗଲା। ରଘୁ ଏକାକି ବସି ଅନେକ ଚିନ୍ତା କଲା– ସୀତା ତାର କିଏ? ତାହାର ସମଗ୍ର ଜୀବନର ସଞ୍ଚିତ ବାସନା, ସଞ୍ଚିତ ପ୍ରେମର ଅଧିକାରିଣୀ ସୀତା– ତାର କିଏ? ସୀତା ତ ବୃନ୍ଦାବନକୁ ବଧୂ, ତାର ସେ କିଏ? କାହିଁକି ପ୍ରତିମୁହୂର୍ତ୍ତ ସେ କେବଳ ସୀତା କଥା ଭାବୁଛି। ସତ, ଭାବନାର ଅନେକ କାରଣ ଅଛି। ବିଭା ତ ସମସ୍ତେ ହେଉଛନ୍ତି, କିନ୍ତୁ ଏପରି ବୁଢ଼ା ବରକୁ କିଏ ବିଭା ହେଉଛି? ସୀତା ସକାଶେ କଣ ବିଧାତା ଭଲବର ସୃଷ୍ଟିକରି ନାହାନ୍ତି? ସୀତା କଣ ଏପରି ପୋଡ଼ାକପାଳୀ! ଯଦି ବୃନ୍ଦାବନ ମରିଯାଏ, ସୀତା– ଏଡ଼େ ସୁକୁମାରୀ ସୀତା କିପରି ଏକାଦଶୀ କରିବ– ବୈଧବ୍ୟ ଯନ୍ତ୍ରଣା ସୀତା କିପରି ସହିବ? ପଚାଶ ବର୍ଷର ବୁଢ଼ା ଆଗେ ନ ମରି ସୀତା କଣ ଆଗେ ମରିବ? ପୁଣି ରଘୁନାଥ ଚିନ୍ତାକଲା, ସୀତା-ସ୍ତ୍ରୀ ସୀତା-ବୋହୂ ବୁଆଇଙ୍କର ଶାଶୂ, ପୁଣି ପଞ୍ଚ ପିଲାର ମା ହେବ? ଏପରି ବିଷଦୃଶ ଘଟଣା କଣ କେବେ ଘଟିଛି? ରଘୁନାଥ ବୁଦ୍ଧିମାନ୍। ସୀତାର ଭାବୀ ଦୁର୍ଦ୍ଦଶା କଥା ଭାବୁ ଭାବୁ ତାହାର କୋମଳ ପ୍ରାଣ ବିଦୀର୍ଣ୍ଣ ହେଲା। ସେ କେବଳ ନୀରବରେ ବସି ରହିଲା।

ରଘୁ ଦୂର ଆକାଶକୁ ଅନାଇ କେତେ କଥା ଚିନ୍ତାକଲା। ତାହାର ବୟସ ବର୍ତ୍ତମାନ ଷୋଳ ବର୍ଷ, ତଥାପି ସେ ନିତାନ୍ତ ବାଳକ-ସଂସାର-ଅନଭିଜ୍ଞ। ଜଗନ୍ନାଥ ଓ ତାରାମଣିଙ୍କ ନିକଟରେ ଲାଳିତ ପାଳିତ ସୁଶୀଳ, ସ୍ଫଟିକ ତୁଲ୍ୟ ନିର୍ମଳ ଚରିତ୍ର ରଘୁ କେବଳ ଆବାଲ୍ୟସଙ୍ଗିନୀ ସୀତାର ଦୁଃଖରେ ଅତ୍ୟନ୍ତ କାତର ହୋଇ ପଡ଼ିଲା। ସୀତା ତାହାର ପ୍ରାଣ ସର୍ବସ୍ୱ, ଏହା ସେ ବୁଝିଥିଲା; ମାତ୍ର ସେତିକି– ତହୁଁ ବଳି ଆଉ କିଛି କେବେ ସେ ଭାବି ନାହିଁ। ଭାବିଲେ ମଧ ତାହାର ମୂଲ୍ୟ କଣ? ସେ ତ ଅନାଥ ଅରକ୍ଷିତଟା।

ଆଜି ରବିବାର, ବିବାହ ଦୁଇ ଦିନ ଆଉ ବାକି। ହଠାତ୍ ଖବର ଆସିଲା, ବୃନ୍ଦାବନ ଚଉଧୁରୀ ଶକ୍ତ ପୀଡ଼ିତ। ବିବାହର ଦିନ ଘୁଞ୍ଚିଗଲା। ସରସ୍ୱତୀ ବଜ୍ରାହତ ପରି କାନ୍ଥକୁ ଆଉଜି ବସି ପଡ଼ିଲେ। କନ୍ୟାର ଦୁର୍ଭାଗ୍ୟକୁ ନିନ୍ଦା କରୁ କରୁ ଚଉଧୁରୀଏ କଚେରିକୁ ଗଲେ। ବୃନ୍ଦାବନଙ୍କ ରୋଗ ଶାନ୍ତି ସକାଶେ ନାନା ଦେବଦେବୀଙ୍କ ନିକଟରେ ଭୋଗ ମାନସିକ[୨] ହେଲା। ପିତେଇ ନାନୀ ଆଖିରେ ଲୁଗାକାନି ଦେଇ ପାଇଟିରେ[୩] ଲାଗିଲା।

ଯଥାବିଧି ବାବୁର ବିବାହ ହେଲା। ଝିଅକୁ ଗାଳି ଦେଉ ଦେଉ ପୁଅକୁ ଘେନି ଚୌଧୁରୀଏ ବିବାହ ଦେବାପାଇଁ ସାରଙ୍ଗପୁର ଗଲେ। ସୀତା ଘର କଣରେ ବସି ନବବଧୂର

---

(୧) କରୁଣ, ଭୀତ, (୨) ଇଚ୍ଛାପୂରଣପାଇଁ କୌଣସି ଦେବତା ପାଖରେ ପ୍ରତିଜ୍ଞା କରିବା, (୩) କାମ।

ପ୍ରତୀକ୍ଷାରେ ରହିଲା। ନବବଧୂ ଆଉ କେହି ନୁହେ– ଜଗନ୍ନାଥ କବିରାଜଙ୍କ କନ୍ୟା ରେବତୀ।

ରେବତୀର ବୟସ ଦଶ ବର୍ଷ। କ୍ଷୁଦ୍ର ମୁଣ୍ଡରେ ସିନ୍ଦୂର ପିନ୍ଧି, କପାଳରେ ଚନ୍ଦନରଚନା ଘେନି, ସର୍ବାଙ୍ଗରେ ଅଳଂକାରମଣ୍ଡିତା ହୋଇ ଦଶମବର୍ଷୀୟା ବଧୂ ଆସି ସରସ୍ୱତୀଙ୍କ ପାଦତଳେ ପ୍ରଣାମ କଲା। କନ୍ୟାର ଦୁର୍ଭାଗ୍ୟ ଭୁଲି ସରସ୍ୱତୀ ସେହି ଅର୍ଦ୍ଧଚନ୍ଦ୍ରଟିକି କୋଳକୁ ନେଲେ। ରେବତୀର ଉଜ୍ଜ୍ୱଳ, ମନୋହର ମୁଖ ଦେଖି ଷୋଡ଼ଶବର୍ଷବୟସ୍କ ବାବୁର ଜୀବନରେ ଏକ ନୂତନ ନାଟକର ଅଭିନୟ ଆରମ୍ଭହେଲା। ବିବାହର କିଛି ଦିନ ପରେ ରେବତୀ ପୁନର୍ବାର ପିତୃଗୃହକୁ ଚାଲିଗଲା, କିନ୍ତୁ ଅତି ନିକଟରେ ଶଶୁର ଘର ଥିବାରୁ ବାବୁ ପ୍ରାୟ ରଘୁ ସହିତ ଯାଏ। ତାହାର ସ୍କୁଲ ପାଠରେ ଆଉ ମନ ଲାଗିଲା ନାହିଁ।

କ୍ରମେ ଆଷାଢ଼ ଗଲା, ଶ୍ରାବଣ ଗଲା, ଭାଦ୍ର, ଆଶ୍ୱିନ ଗଲା। କଠିନ ବାତ ରୋଗରେ ଶଯ୍ୟାଶାୟୀ ବୃନ୍ଦାବନ ଆଉ ଉଠିଲେ ନାହିଁ– ଆତ୍ମୀୟ କୁଟୁମ୍ବଙ୍କୁ କନ୍ଦାଇ, ଶେଖର ଚଉଧୁରୀଙ୍କ ପଣ ଆଶା ବିଫଳ କରି କାର୍ତ୍ତିକ ଏକାଦଶୀ ଦିନ ସ୍ୱର୍ଗଧାମକୁ ଚାଲିଗଲେ। ଚଉଧୁରୀଙ୍କ ଘର ହାହାକାରରେ ପୂର୍ଣ୍ଣ ହେଲା। ଅଲକ୍ଷଣୀ ସୀତାକୁ ମନ ଇଚ୍ଛା ବକି ବକି ଶେଖର ଚୌଧୁରୀଏ ପିଣ୍ଡାରେ ବସିଲେ। ସୀତା ଅଭିମାନରେ, ଶୋକରେ ମର୍ମାହତା ହୋଇ ଖଟରେ ପଡ଼ି ପଡ଼ି କାନ୍ଦିଲା। ବୃନ୍ଦାବନ ମରିଯାଇଛି, କିନ୍ତୁ ସେଥିରେ ତାର ଦୋଷ କଣ? ସେ ତ ତାହାର ଭାଗ୍ୟବିଧାତା ନୁହେଁ। ତଥାପି ସେ ଅଲକ୍ଷଣୀ, ହତଭାଗିନୀ ବୋଲି ପିତା କହିଲେ। କେବଳ ତାହାରି ପୋଡ଼ା କପାଳଯୋଗୁଁ ସେ ଏଡ଼େ ବଡ଼ ଜମିଦାର ଘରର ବୋହୂ ହୋଇପାରିଲା ନାହିଁ। ଗ୍ରାମର ସ୍ତ୍ରୀମାନେ କଟା ଘାଆରେ ଲୁଣଛିଟା ପରି ଟାହି ଟାପରା[୧] କଲେ– ''ବେଦିରେ ନ ବସୁଣୁ ବରକୁ ଖାଇଲା। ମା ଲୋ, କି ଅଲକ୍ଷଣୀ! ରୂପ ସୁନ୍ଦର ହେଲେ କି ହେବ– ବିଧବା ଲକ୍ଷଣ ଦିହଯାକ ଭରା!'' କିନ୍ତୁ ସରସ୍ୱତୀଙ୍କ ଭୟରେ ମୁହଁରେ କେହି କିଛି କହି ପାରିଲେ ନାହିଁ। କେବଳ କହିଲା ଜଣେ, ସେ ସରସ୍ୱତୀଙ୍କ ବଡ଼ ଯାଆ- ଚୌଧୁରୀଙ୍କ ଖୁଡ଼ୁତାପୁଅ ଭାଇ ନବଘନଙ୍କ ସ୍ତ୍ରୀ- ରାଧାମଣି।

ରାଧାମଣି ନିତାନ୍ତ କଳିହୁଡ଼ୀ। ତାହାର ବାକ୍ୟଜ୍ୱାଳାରେ[୨] ନବଘନ କେବେ ହେଲେ ଦିନେ ସୁଖୀ ହୋଇ ନାହାନ୍ତି। ଶାଶୂ ଶଶୁର କାହାରିକୁ ମାନ୍ୟ କରି କଥା କହିବା ତା ଜାତକରେ ନଥିଲା। ବାବୁର ବିବାହ ଉପଲକ୍ଷରେ କଟକ ଆସି ସେ ସାନ ଯାଆ ଘରେ ରହିଥିଲେ। ତାଙ୍କର ଦୁଃଖୀଘର, କିନ୍ତୁ ସରସ୍ୱତୀ ବଡ଼ଲୋକ; ସେଥିପାଇଁ ସେ ମନେ ମନେ ହିଂସାରେ ମରିଯାଏ। ସୀତାଙ୍କ ବର ମରିଯାଇଛି ଶୁଣିଲା ମାତ୍ରେ ରାଧାମଣି ଆଉ ସ୍ଥିର ହୋଇ ରହି ପାରିଲା ନାହିଁ। ପଞ୍ଚମ ସ୍ୱରରେ ଆରମ୍ଭ କଲା– ''ଛି, ଆଲୋ ଅଲକ୍ଷଣି, ଗୋଡ଼ାକପାଳି, ବରଗୁଡ଼ିମୁହିଁ, ତୁ ପୁଣି ସ୍ୱାମୀ ଧରି ଘର କରିବୁ? ତୋଠେଇଁ ସଧବା ଲକ୍ଷଣ ଅଛି?'' ସ୍ୱର

(୧) ଉପହାସ, (୨) ଟାଣକଥା

ପଞ୍ଚମରୁ ସପ୍ତମକୁ ଉଠିଲା। ସରସ୍ୱତୀ ବଡ଼ ଯାଆର କଥାରେ ନିତାନ୍ତ ବିରକ୍ତ ହୋଇ ପ୍ରତିବାଦ ଆରମ୍ଭ କଲେ। ସେ ଦିନ ତାଙ୍କ ଘରେ ଭୀଷଣ କଳହହେଲା। ତାଙ୍କ ପାଟିରେ ଗ୍ରାମର ସ୍ତ୍ରୀଲୋକେ ଧାଇଁ ଆସିଲେ। ଦିନ ଦି'ପହରରେ ଗାଡ଼ିକରି ରାଧାମଣି ରାଗରେ ଘରକୁ ବାହାରିଲେ; କିନ୍ତୁ ଯିବା ପୂର୍ବରୁ ରଘୁ ଓ ସୀତା ନାମରେ କେତେଗୁଡ଼ିଏ ରଞ୍ଜିତ କଥା କହିବାକୁ ଭୁଲିଲେ ନାହିଁ। ସମବେତ ସ୍ତ୍ରୀମଣ୍ଡଳୀ ଯେ ଯାହା ଇଚ୍ଛା, ସେସବୁ କଥାର ସମାଲୋଚନା କରି ଘରକୁ ଗଲେ।

ରାଗରେ, ଦୁଃଖରେ ସୀତାର ନିତାନ୍ତ ଦୁର୍ଭାଗ୍ୟ କଥା ଭାବି ସରସ୍ୱତୀ ଗୋପନରେ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ। ଭାତ ଥାଳିରେ ବଢ଼ା ହୋଇ ଶୁଖିଲା। ପିତେଇ ନାନୀ ଡାକି ଡାକି ଥକିଗଲା, କିନ୍ତୁ ସେ ଶୁଣିଲେ ନାହିଁ। ଶେଷକୁ ପିତେଇ ନାନୀ ରାଗରେ ଅଭିମାନରେ କହିଲା– ''ତୁ ଏତେ କାନ୍ଦିଲେ ହବ? ଯେ ଯାହା ନିନ୍ଦାକଲେ କଣ ସୁନାରେ କଳଙ୍କ ଲାଗିବ? ହେଲା ଏବେ, ସେ ତ ବାହ୍ମଣପୁଅ; ସେଇଆକୁ ବାହା କରିବେ। ସେ ପୋଡ଼ାମୁହାଁଟା କଥାରେ ଏତେ ଦୁଃଖ!'' ଏହା କହି ବୁଢ଼ୀ କ୍ରୋଧରେ ରାଧାମଣିର ଚୌଦ ପୁରୁଷର ଶ୍ରାଦ୍ଧକରି ସରସ୍ୱତୀଙ୍କୁ ଟାଣି ଟାଣି ଭୋଜନସ୍ଥାନକୁ ଘେନିଗଲା। ସରସ୍ୱତୀ କିନ୍ତୁ ପଦେ ପାଟିଫିଟାଇ ବଡ଼ ଯାଆଙ୍କୁ କିଛି କହି ନାହାନ୍ତି। ଚୌଧୁରୀ ଏ ସବୁ କଥାରେ ଭାଉଜକୁ ଯଥେଷ୍ଟ ଅପମାନ କଲେ। ସେ ବଡ଼ ଭାଉଜ, ଗୁରୁଜନ– ଏହା କହି ସରସ୍ୱତୀ ତାଙ୍କୁ ନିବୃତ୍ତ କରିବାକୁ ଚେଷ୍ଟାକଲେ। ଚଉଧୁରୀ ତାଙ୍କ କଥା କାହିଁକି ଶୁଣିବେ? ସେମାନଙ୍କ ବିଦାୟ ନ କରି ସେ ସ୍ଥିରହୋଇ ରହିପାରିଲେ ନାହିଁ। ଗ୍ରାମରେ ରାଷ୍ଟ୍ର ହେଲା, ସରସ୍ୱତୀ ଧନଗର୍ବରେ ବଡ଼ ଯାଆଙ୍କୁ ଦିନ ଦି'ପହରେ ଘରୁ କାଢ଼ିଦେଲା।

ବିପଦ ଗୁଡ଼େଇ ତୁଡ଼େଇ[୧] ହୋଇ ଆସେ। ଚୈତ୍ର ମାସରେ ସରସ୍ୱତୀଙ୍କର ଗୋଟିଏ ଅକାଳଜାତ ସନ୍ତାନ ହୋଇ ସେ ମରୁ ମରୁ ବଞ୍ଚିଲେ। ତାଙ୍କର ବିଛଣାରୁ ଉଠୁ ଉଠୁ ଦୁଇ ମାସ ଲାଗିଗଲା। ସେ ଟିକିଏ ଭଲ ହେଉଁ ହେଉଁ ପୁଣି ବାବୁ ଦେହ ବେରାମ[୨] ହେଲା। ଏକୋଇଶ ଦିନ ବିଷମ ସାନ୍ନିପାତିକ ଜ୍ୱର ଭୋଗିବାକୁ ନିତାନ୍ତ ଶୀର୍ଣ୍ଣ ଦେହରେ ଉଠି ଠିଆ ହେଲା। ରୋଗୀର ଶୁଶ୍ରୂଷା କରୁ କରୁ ପ୍ରାୟ ଛଅ ମାସ କଟିଗଲା। ସ୍ୱାମୀର ପୀଡ଼ା ସମୟରେ ରେବତୀ ଶ୍ୱଶୁରଘରକୁ ଆସିଲା। ତାହାର ବୟସ ବାର ବର୍ଷ। କିନ୍ତୁ ସୀତା ଅରକ୍ଷଣୀୟା ପରି ଘରେ ପଡ଼ି ରହିଥାଏ। ଚଉଧୁରୀ ସ୍ଥାନେ ସ୍ଥାନେ ବର ଖୋଜିଲେ– କେଉଁଠି ଠିକଣା ହେଲା ନାହିଁ। ସେ ବେଦିରେ ନ ବସୁଣୁ ତାହାର ବର ମରିଛି, ତାଠେଇଁ ପୂରା ବିଧବା ଲକ୍ଷଣ। ସେ ବଡ଼ ଅଲକ୍ଷଣୀ ଇତ୍ୟାଦି ବିଶେଷଣରେ ବିଶେଷିତା ହୋଇ ସୀତା ପିତୃଗୃହରେ କାଳ କଟାଇବାକୁ ଲାଗିଲା। କେହି ବା ବର ଘଟିଲେ, ସେ ବିନା ପଣରେ ବିବାହ ପ୍ରାର୍ଥନା କରିବାକୁ ଚଉଧୁରୀଏ ରାଗି ଯାଇ ସେ ପାତ୍ର ତ୍ୟାଗକରନ୍ତି।



(୧) ଛନ୍ଦାଛନ୍ଦି, (୨) ଅସୁସ୍ଥ

## ସପ୍ତମ ଅଧ୍ୟାୟ

ଦିନ ପାଣି ପରି ବହିଯାଏ। ଚାହୁଁ ଚାହୁଁ ସୀତାର ଏଗାର ପୂରିଲା– ନବୀନ ଯୌବନପ୍ରଭାରେ ଅଙ୍ଗ ପ୍ରତ୍ୟଙ୍ଗ ସୁଶୋଭିତ ହେଲା। ଏଣିକି ସୀତା ଅରକ୍ଷଣୀୟା। ସେ ଖର୍ବାକୃତି, କିନ୍ତୁ ବଡ଼ ସୁନ୍ଦରୀ। ଏତେ ବଡ଼ ଝିଅ ଘରେ ଥିଲେ ପିତା ମାତାଙ୍କୁ ସ୍ୱଜାତୀୟମାନେ ଦଣ୍ଡିତ କରି ପାରନ୍ତି, ଏହି ଭୟରେ ସୀତାର ବାହାରକୁ ବାହାରିବା ଏକାବେଳେ ନିଷେଧ ହେଲା। ସେ ଦିବାରାତ୍ର ଘରକୋଣରେ ବସି ରହିଲା।

ଆଉ ସେ ପୋଖରୀତୁଠବୁଲୀ, ହସହସମୁହାଁ ସୀତା ନାହିଁ- ଆଜିକାଲି ସେ ବଡ଼ ଗମ୍ଭୀରା- ଏକାକିନୀ ବସେ, ନୋହିଲେ ଭାଉଜ ସହିତ ବସି ଗପକରେ; କେବେ କେବେ ରନ୍ଧାଘରେ ପିତେଇ ନାନୀ ସହିତ ରାନ୍ଧିବସେ। ସୀତା ପିଲାଦିନେ ସିଲେଇ ଶିଖିଛି, ଉଲ୍ କାମ କରି ଶିଖିଛି, ଓଡ଼ିଆ ବଙ୍ଗଳା ମଧ୍ୟ ପଢ଼ିଛି। ଇଚ୍ଛା ହେଲେ ସିଲେଇ କରେ, କେବେ ବା ପୁସ୍ତକ ଧରି ପଢ଼େ; କିନ୍ତୁ ଆଜିକାଲି ସେ ସବୁବେଳେ ଉଦାସୀନା। 'ସେ ହତଭାଗିନୀ'– ଏତିକି ମାତ୍ର ସେ ଜାଣେ। ତାହାର ବଡ଼ ମା କହିଛି, 'ସେ କଳଙ୍କିନୀ, ଅଲକ୍ଷଣୀ'; ପିତା ମଧ୍ୟ କହିଛନ୍ତି, ''ସେ ପୋଡ଼ାକପାଳୀ''; ମାତା ମଧ୍ୟ କହିଲେ, ପିତେଇ ନାନୀ ମଧ୍ୟ କହିଲା, 'ସେ ଦୁର୍ଭାଗ୍ୟବତୀ।' ତା ପାଇଁ ପୃଥିବୀରେ ବର ନାହିଁ, ତା ପାଇଁ ସବୁଆଡୁ ବାଧା ବିପଦ- ଯେଉଁ ଡାଳ ଧଇଲେ ସେ ଡାଳ ଛିଡ଼ିଲା। କାହିଁକି ଏପରି ହେଲା ?

ତାହାର ଅନେକ ଲୁଗା, ଅନେକ ଗହଣା ଅଛି; କିନ୍ତୁ ସେ କିଛି ପିନ୍ଧେ ନାହିଁ। ବୋଉ ଓ ପିତେଇ ନାନୀ ବଳତ୍କାର କଲେ ମଧ୍ୟ ପିନ୍ଧିବାକୁ ସେ ସୁଖ ପାଏ ନାହିଁ- ଗହଣା, ଲୁଗାରେ ସେ ସୁଖୀ ନୁହେ। କିନ୍ତୁ ତେବେ ମଧ୍ୟ ସୀତାର ସୁଖ ଅଛି। କେବଳ ଜଣକୁ ଦେଖିଲେ ସେ ସୁଖୀ- ଦୂରରୁ ଚାହିଁଦେଲେ ମଧ୍ୟ ସୁଖୀ। ସୀତା ଜାଣିଛି, ତାହାର ଓ ସେ ଜଣକର ଜୀବନ ଅଚ୍ଛିନ୍ନ, ଅଭିନ୍ନ। ତଥାପି ସେ ଆସିଲେ ସୀତା ବେଶି କଥା କହେ ନାହିଁ। ଦୂରକୁ ଚାଲିଯାଏ। ଯେପରି ନୀରବ ଅଭିମାନରେ ତାହାର ପ୍ରାଣ ପୂରିଉଠେ। ସୀତାର ମର୍ମ ବୁଝେ, ଜଣେ- ଭଗିନୀଠାରୁ ଅଧିକ ସ୍ନେହଶାଳିନୀ ସେହି ସାନ ବୋହୂଟି- ରେବତୀ। ରେବତୀ ସୀତାର ସମବୟସୀ, ପୁଣି ବାବୁର ଆଦରିଣୀ ସ୍ତ୍ରୀ, ସରସ୍ୱତୀଙ୍କର ନୟନମଣି। ରେବତୀ ନଣନ୍ଦର ସମସ୍ତ ମନୋଭାବ ଜାଣେ। ତାହାର ନଣନ୍ଦ ଯେ କିପରି, ତାହା ରେବତୀ ଚିନ୍ତାକରେ। ସୀତା ରଘୁନାଥକୁ-ରେବତୀର ପ୍ରାଣ ସମଭ୍ରାତାକୁ ସ୍ନେହ କରେ; ଏଥିରେ ସେ ସୁଖୀ ଭିନ୍ନ ଦୁଃଖୀ ନୁହେଁ।

ଦିନ ଦି'ଟା ହେଲାଣି, ଖରାଦିନ, ଦୀର୍ଘ ଦ୍ୱିପ୍ରହର। ସମସ୍ତେ ନୀରବରେ ବିଶ୍ରାମକକ୍ଷରେ-କେହି ସଉପ ପାରି, କେହି ଖାଲି ଚଟାଣ ଉପରେ କାନି ବିଛାଇ ଶୋଇଛନ୍ତି। ''ରେବ ! ରେବ !'' ଡାକି ଜଗନ୍ନାଥ ଭିତର ଅଗଣାକୁ ଆସିଲେ। ତାଙ୍କ ଡାକରେ

ସରସ୍ୱତୀଙ୍କର ନିଦ୍ରାଭଙ୍ଗ ହେଲା। ସେ ଝଟ୍ ଅଳସ ଭାଙ୍ଗି ମୁହଁ ଧୋଇ ସମୁଦୀଙ୍କୁ ଘର ଭିତରକୁ ଡାକି ନେଲେ। ସେ ଦିନ ସମୁଦୀ, ସମୁଦୁଣୀଙ୍କର ଅନେକ କଥା ହେଲା। ସରସ୍ୱତୀଙ୍କ ବିଷାଦମଳିନ ମୁଖରେ ହାସ୍ୟ ଦେଖାଗଲା। ଅନେକ ଦିନରେ ମଲୁ ଶେଯରୁ ଉଠିଲା ପରି ସରସ୍ୱତୀ ବଳପାଇ ଠିଆ ହେଲେ। ମେଘନିର୍ମୁକ୍ତ ଶରଦାକାଶର ଚନ୍ଦ୍ରପରି ତାଙ୍କ ମୁହଁଟି ପ୍ରସନ୍ନ।

ସମୁଦୀ ବିଦାୟ ନେଇ ଘରକୁ ଗଲେ। ସନ୍ଧ୍ୟା ପରେ ପିତେଇ ନାନୀ ଓ ସରସ୍ୱତୀ ଛାତ ପରେ ବସି ଅନେକ କଥାବାର୍ତ୍ତା ହେଲେ। ଆଜି ଉଭୟେ ଅକୂଳ ସମୁଦ୍ରରେ କୂଳ ପାଇଲା ପରି ଆନନ୍ଦରେ ବିହ୍ୱଳ।

କଥାଟା ଲୁଚି ରହିଲା ନାହିଁ- ପିତେଇ ନାନୀ କହିଲା ବୋହୂକୁ, ବୋହୂ କହିଲା ନଣନ୍ଦକୁ। ତହିଁ ଆରଦିନ ଯେତେବେଳେ ବାବୁ ସହିତ ରଘୁ ଭିତର ଅଗଣାକୁ ପଶିଗଲା, ସୀତା ମୁଣ୍ଡରେ ଓଢ଼ଣାଟି ଟାଣିଦେଇ ଗୋଦାମଘରେ ପଶିଗଲା। ରଘୁ ସୀତାର ଏବଂବିଧ ବ୍ୟବହାରରେ ଆଶ୍ଚର୍ଯ୍ୟ ହୋଇ ରନ୍ଧାଘର ଆଡ଼କୁ ଗଲା। ପିତେଇ ନାନୀ ସ୍ମିତ ମୁଖରେ ହସି ହସି କହିଲା- ''କି ରାମଚନ୍ଦ୍ର, ମିଥିଳାକୁ ଅଇଲ? ଧନୁ ଭାଙ୍ଗି ସୀତିଆକୁ ନିଅ।'' ରଘୁ ଲଜ୍ଜାମଳିନ ମୁଖରେ ଦାଣ୍ଡକୁ ପଳାଇଲା; ବୋହୂ ହସହସ ମୁହଁଟି ନୁଆଁଇ ପରିବା ବନାରେ[୧] ମନଦେଲା। ଭାଇକୁ ଭଉଣୀ ସାମନାରେ ଅପଦସ୍ଥ କରିବାକୁ ସେ ପିତେଇ ନାନୀକୁ ଗୋଟିଏ ଦିଓଟି ଚମୁଟିବାକୁ ମଧ ଭୁଲିଲା ନାହିଁ। ପିତେଇ ନାନୀ ମଧ ଉପଯୁକ୍ତ ଉତ୍ତର ଦେଇ ସଞ୍ଜ-ବଳିତା ଜାଳିବାକୁ ଗଲା।

ରଘୁ ଭାବି ଭାବି ଘରକୁ ଗଲା। ସେ ଦିନ ରାତିରେ ତାହାର ଭଲ ନିଦ ହେଲାନାହିଁ। ଆଜି ହଠାତ୍ ପିତେଇ ନାନୀର କଥାରେ କାହିଁକି କେଜାଣି ତାର ଜୀବନରେ ଗୋଟିଏ ନବୀନ ପଟପରିବର୍ତ୍ତନ ହୋଇଛି। ବର୍ତ୍ତମାନ ତାହାର ବୟସ ଅଠର ବର୍ଷ- ସେ ଯୁବକ; ସ୍କୁଲ ପାଠ ଶେଷ କରି ପ୍ରବେଶିକା ପରୀକ୍ଷାରେ ପ୍ରଶଂସାର ସହିତ ଉତ୍ତୀର୍ଣ୍ଣ ହୋଇ ବୃତ୍ତିପାଇ କଲେଜରେ ପଢୁଛି। ବୟସ ସହିତ ତାହାର ସୁନ୍ଦର ରୂପ ଅଧିକ ସୁନ୍ଦର ହୋଇଛି- ନବ ଯୌବନର ସୁଷମାରେ ସର୍ବାଙ୍ଗ ଦୀପ୍ତ! ହୃଦୟ ମଧ ପରିବର୍ତ୍ତିତ ହୋଇଛି। ସେ ଆଜୀବନ ଯେଉଁ ବାଳିକାକୁ ସ୍ନେହ କରି ଆସିଛି, ଯୌବନର ସଙ୍ଗେ ସଙ୍ଗେ ସେ ସ୍ନେହ ଗାଢ଼ରୁ ଗାଢ଼ତର ହେଲାଣି। ଆଜି ପିତେଇ ନାନୀର କଥାରେ ସେ ସ୍ନେହନଦୀରେ ବନ୍ୟା ଆସିଲା ପରା! ରଘୁନାଥ ଶେଯରେ ଶୋଇ କେବଳ ତାହାହିଁ ଭାବୁଛି। ସତେ ସୀତା ତାହାର ହେବ? ସେ ଆକାଶକୁସୁମ[୨] ଫୁଟିବ[୩]? ଆଉ ସେ ଅଧିକ ଭାବି ପାରିଲା ନାହିଁ। ପ୍ରବଳ ପ୍ରେମରେ ବିବେଚନା ବୁଡ଼ିଗଲା। ସୀତା ତାହାର। ସୀତାର ବ୍ୟବହାର, ପିତେଇ ନାନୀର ପ୍ରଚ୍ଛନ୍ନ ପରିହାସୋକ୍ତିର ସେ କେତେ ମଧୁର ଅର୍ଥ କରିପକାଇଲା। ତଥାପି ନିଜର ଏକାନ୍ତ ହୀନାବସ୍ଥା ସ୍ମରଣ କରି ବାଳକ ଲଜ୍ଜିତ ହେଲା।

(୧) କାଟିବା, (୨) କଳ୍ପନା, (୩) ବାସ୍ତବ ହେବ।

ସୀତା ମଧ୍ୟ ଭାବିଲା; ଭାବି ଭାବି ଆନନ୍ଦରେ ବିହ୍ୱଳ ହେଲା। ରଘୁର ଭାବନା ସନ୍ଦେହଜଡ଼ିତ ଶ୍ରାବଣର ମେଘାଚ୍ଛନ୍ନ ଆକାଶ, କିନ୍ତୁ ସୀତାର ହୃଦୟ ସନ୍ଦେହଶୂନ୍ୟ। ରେବତୀ କହିଛି, ଜଗନ୍ନାଥ ମଉସା ଆସି କଥା ଠିକଣା କରିଛନ୍ତି। ବୋଉ ଓ ପିତେଇ ନାନୀର ପ୍ରଫୁଲ୍ଲ ବଦନ ସୀତାର ପ୍ରେମାକୁଳ ହୃଦୟର ସବୁ ସନ୍ଦେହ ବେଦନା ଦୂରକଲା।

ଦୁଇ ଦିନ ଗଲା, ପୁଣି ରଘୁନାଥ ଆସିଲା। ସୀତା କଥା କହି ପାରିଲା ନାହିଁ। ରଘୁନାଥ ମଧ୍ୟ କଥା କହି ପାରିଲା ନାହିଁ- ପ୍ରଚ୍ଛନ୍ନ ଲଜ୍ଜାଭାବ ଉଭୟଙ୍କୁ ଆକ୍ରମଣ କରି ପୃଥକ୍ ରଖିଲା। କିନ୍ତୁ ଏତେ ପାର୍ଥକ୍ୟ ମଧ୍ୟରେ ସୁଦ୍ଧା ଉଭୟ ହୃଦୟ ଯେ ଏକ, ଏହା ସେମାନେ ବୁଝିଥିଲେ। ଉଭୟେ ପରସ୍ପରର ଅପାର ସ୍ନେହରେ ବନ୍ଧା, ପରସ୍ପରର ଦର୍ଶନରେ ପୁଲକିତ, ସ୍ୱରଶ୍ରବଣରେ ଆନନ୍ଦିତ, ପରସ୍ପରକୁ ସନ୍ତୁଷ୍ଟ କରିବାପାଇଁ ସଦା ପ୍ରୟାସୀ। ସୀତା ଗୀତ ଭଲ ପାଏ, ପୁଣି ରଘୁନାଥର ଚମତ୍କାର କଣ୍ଠ। ସେ ସୀତାକୁ ସନ୍ତୁଷ୍ଟକରିବା ସକାଶେ ସଂଗୀତ, ହାରମୋନିୟମ୍ ଶିକ୍ଷା କରିଛି। ମାଛ ଧରା, ପହଁରା, ଫୁଟବଲ ଖେଳ- ସବୁଥିରେ ରଘୁ ଅଦ୍ୱିତୀୟ। ସୀତା ଫୁଲ ଭଲ ପାଏ; ସେଥିପାଇଁ ରଘୁନାଥର ଫୁଲ ଗଛରେ ସଉକ। ନିଜ ହାତରେ ଗୋଲାପ ମଲ୍ଲୀ ଗଛ ରୋଇ ପାଣିଦେଇ ବଢ଼ାଏ; ଫୁଲ ଫୁଟିଲେ ସୀତାକୁ ଆଣି ଦିଏ।

ରଘୁନାଥ କଣ ଭଲ ପାଏ, ତାହା ମଧ୍ୟ ସୀତା ଜାଣେ। ସୀତା ପରିଷ୍କାର ପରିଚ୍ଛନ୍ନ। ଅଳଙ୍କାର ବ୍ରୋଞ୍ଜ, କଦର୍ଯ୍ୟ ପୋଷାକକୁ ରଘୁନାଥ ଘୃଣାକରେ; ସେଥିପାଇଁ ସୀତା ସେସବୁରୁ ବିରତ। ସେ 'ବୋଧୋଦୟ'ରେ ପଢ଼ିଥିଲା 'ସର୍ବଗୁଣାଳଙ୍କୃତା ସୀତା'। ଆହା, ସେ କଣ ନିଜେ ସେପରି ସର୍ବଗୁଣାଳଙ୍କୃତା। କେତେ କଥା ତା ମନରେ ହୁଏ- ରନ୍ଧାଘରେ ରାନ୍ଧି ବସିଲେ ଜଣକୁ ରାନ୍ଧି ଖୁଆଇବାକୁ ତାହାର ଶରଧା ବଳେ, ପାନ ଭାଙ୍ଗି ବସିଲେ ଜଣକୁ ପାନବଟାରେ ପାନ ସଜାଡ଼ି ଦେବାକୁ ମନହୁଏ, ମାଆର ଗୋଡ଼ ଘଷି ଦେଉଥିଲେ ସଞ୍ଜବେଳର ଜହ୍ନ ଆଲୁଅବୋଳା ଦର ଦର ଅନ୍ଧାର ନୀଳାକାଶର ଫୁଟନ୍ତା ଗୋଟିଏ ଯୋଡ଼ିଏ ତାରାକୁ ଚାହିଁ ସୀତା ନିଜର ଭବିଷ୍ୟତ୍ କୁଟୀର ବିଷୟ ଚିନ୍ତାକରେ। ଏହିପରି ଜହ୍ନ ଆଲୁଅ ମିଶା ଅନ୍ଧାର, ଏହିପରି ପିଣ୍ଡାରେ ମସିଣା ଉପରେ ଶୋଇଥିବେ। ଆଉ ସୀତା ପଦତଳେ ବସି ପଦ ମାର୍ଜନା କରୁଥିବ, ଏହାଠାରୁ ବଳି ଭାଗ୍ୟ ନାରୀର ଆଉ ଅଛି କଣ? ସୀତା ଗଭୀର ପ୍ରେମରେ ଦୀର୍ଘଶ୍ୱାସଟିଏ ପକାଏ ମନକଥା ମନେ ମନେ ରହେ। ଆଖିପତା ତିନ୍ତାଇ ଲୁହଟୋପାପୋଡ଼ିକ ଖାଲରେ ଗଡ଼ିପଡ଼େ। ସୀତା ଧୀରେ ଧୀରେ ଅନ୍ୟର ଅଲକ୍ଷ୍ୟରେ ତାକୁ ପଣତକାନିରେ ପୋଛେ।

ଆଜିକାଲି ସାଆନ୍ତାଣୀ ଓ ରାହୁଣୀ ଏକାନ୍ତରେ ବସି ଅନେକ କଥାବାର୍ତ୍ତା ହୁଅନ୍ତି। ଏକ ନବୀନ ସୁଖସୃଷ୍ଟିରେ ସେମାନେ ଆତ୍ମହରା! ଏକ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ-ରାଜ୍ୟର ନିବାସୀ! ଏକ ମଧୁର ଆମୋଦମଦିରାମତ୍ତ, ଆଉ ଭବିଷ୍ୟତର ଉଜ୍ଜ୍ୱଳ, ଅତି ମଧୁର ମୋହନ ଶାନ୍ତିମୟ ସ୍ୱପ୍ନରେ ବିହ୍ୱଳ।

ସୀତା ରଘୁନାଥର ମିଳନ ? କିପରି ହେବ ? ସରସ୍ୱତୀ ଅନେକ ଭାବନ୍ତି, ମନେ ମନେ ଭାବନ୍ତି-ଇନ୍ଦ୍ରଙ୍କୁ ଶଚୀ, ବିଷ୍ଣୁଙ୍କୁ ଲକ୍ଷ୍ମୀ, ଅବା ଶିବଙ୍କୁ ପାର୍ବତୀ। ଥରେ ଥରେ ପିତେଈ ନାନୀ ଆଗରେ ମନକଥା କହି ପକାନ୍ତି। ପିତେଈ ନାନୀ ପରିହାସଛଳରେ କହେ– ''ନାହିଁ ହ, ଏତ ଆମର ରାମ ସୀତିଆ!'' କେବଳ ଏତିକି କହି ସନ୍ତୁଷ୍ଟ ହୁଏ ନାହିଁ, ରଘୁକୁ ଥଟ୍ଟା କରେ- ରାମ ଅଇଲେ ବୋଲି ଡାକି କହେ। ରଘୁ ପିତେଈ ନାନୀ ଭୟରେ ରୋଷାଇଶାଳ ଖଞ୍ଜା ଆଡ଼େ ଯିବାକୁ ସାହସ କରେ ନାହିଁ।

ସୀତା ସବୁ ଶୁଣେ। ବୁଢ଼ୀର ଇଙ୍ଗିତ ବୁଝି ପାରି କାହିଁକି କେଜାଣି ତାହାର ହୃଦୟ ପ୍ରଫୁଲ୍ଲ ହୋଇଉଠେ। କିନ୍ତୁ ବୁଢ଼ୀ କଥାରେ ପ୍ରତ୍ୟୁତ୍ତର ଦେବାକୁ ତାହାର ସାହସ ହୁଏନାହିଁ। ବୁଢ଼ୀ ବଡ଼ ବିଷମ।

ଏଡ଼େ ବଡ଼ ଝିଅ ଘରେ ଅଛି। ଚଉଧୁରୀଏ ଭାବନାରେ ଅସ୍ଥିର ହୋଇ ଏଣେ ତେଣେ ପାତ୍ର ଅନ୍ୱେଷଣ କରୁଛନ୍ତି। କିନ୍ତୁ ବିହି କୂଟ କିଏ ବୁଝେ ? ହଠାତ୍ ଚଉଧୁରୀଙ୍କୁ କଠିନ ଆଣ୍ଠୁଗଣ୍ଠି ବାତ ଧରିଲା। ସେ ଶଯ୍ୟାଶାୟୀ ହେଲେ; ଜଗନ୍ନାଥ କବିରାଜ ଚିକିତ୍ସା କରିବାକୁ ଲାଗିଲେ।

ତାଙ୍କ ଆୟୁଷବଳରେ ହେଉ, କି ସରସ୍ୱତୀଙ୍କ ପୁଣ୍ୟବଳରେ ହେଉ, ପ୍ରାୟ ଚାରି ମାସ ପରେ ସେ ଏକ ପ୍ରକାର ବଞ୍ଚିଉଠିଲେ। ସେହି ସମୟରେ ବଡ଼ ଉପକାର କଲା ରଘୁନାଥ।

ରେବତୀ ଅନ୍ତଃସତ୍ତ୍ୱା। ପିତୃଗୃହକୁ ଚାଲି ଯାଇଥିଲା। ଦୁର୍ବଳ ବାବୁ ଓ ସରସ୍ୱତୀଙ୍କର ଇଚ୍ଛା ଥିଲେ ମଧ୍ୟ ରଘୁନାଥ ବଳପୂର୍ବକ ସେମାନଙ୍କ ସ୍ଥାନ ଅଧିକାର କରି, ଲାଗିପଡ଼ି ରାତି ରାତି ଜଗି ଚଉଧୁରୀଙ୍କ ସେବା କରିବାକୁ ଲାଗିଲା। ସୀତା ମଧ୍ୟ ଅଣ୍ଟାଭିଡ଼ି ମୁମୂର୍ଷୁ ପିତାଙ୍କ ସେବା ଶୁଶ୍ରୂଷାରେ ଲାଗିଥାଏ।

ସେ ଦିନ ସନ୍ଧ୍ୟାକୁ ପିତାଙ୍କୁ ଗୋଟିଏ ବଟିକା ଖାଲି ସେବନ କରିବାକୁ ଦେଇ ସୀତା ବାହାରି ଆସୁଛି, ଦୁଆର ମୁଣ୍ଡରେ ରଘୁନାଥ ସହିତ ଦେଖାହେଲା। ସେ ମୁଣ୍ଡରେ ଲୁଗା ଦେଇ ପାଖେଇ ଗଲା, କିନ୍ତୁ ରଘୁନାଥ ଅନ୍ୟ ଦିନ ପରି ଚାଲିଗଲା ନାହିଁ- ସୀତାକୁ ଅନାଇଲା, ଆଦରରେ ଡାକିଲା ''ସୀତା!''

ସୀତା ଉତ୍ତର ଦେଇ ପାରିଲା ନାହିଁ- ମୁହୂର୍ତ୍ତକେ ତାହାର ସର୍ବାଙ୍ଗ ପୁଲକରେ ପୂର୍ଣ୍ଣ ହୋଇ ଉଠିଲା, ଏକ ନିମିଷରେ ସେ ଆତ୍ମହରା ହେଲା, ତାହାର ହୃଦୟ କମ୍ପି ଉଠିଲା। ପୁଣି ରଘୁନାଥ ଡାକିଲା- 'ସୀତା, କଥା କହିବୁ ନାହିଁ?'' ଏଥର ରଘୁନାଥର ସ୍ୱର ସ୍ୱାଭାବିକ। ସୀତା ନିଜକୁ ସମ୍ଭାଳି ନେଇ କହିଲା– ''କଣ ?''

''ନନା କେମିତି ?''

''ଭଲ ଅଛନ୍ତି''– କହି ସୀତା ଦ୍ରୁତ ଗତିରେ ଚାଲିଗଲା। ରଘୁନାଥ ଅନେକ କ୍ଷଣ ସେହିଠାରେ ନିଷ୍ପନ୍ଦ ଭାବରେ ଛିଡ଼ାହୋଇ ରହିଲା। ସୀତାର କମନୀୟ ମୂର୍ତ୍ତି ତାହାର ହୃଦୟ ପୂର୍ଣ୍ଣ କରିଛି। ତାହାର ଅପୂର୍ବ ମାଧୁରିରେ ଆଜି ସେ ଆତ୍ମବିସ୍ମୃତ!

ଆଜି ସୀତା ବୁଝିଲା-ଜୀବନଟାକରୁ ଗୋଟିଏ ନବୀନ ଅଙ୍କ ତାହାର ଆଖି ସାମନାରୁ ପରଦା ଟେକି କେହି ଦେଖାଇଲା ପରା। ସେ ଆଜି ରଘୁନାଥକୁ ଚିହ୍ନିଲା। ଏତେ ଦିନ କଣ ଚିହ୍ନି ନଥିଲା? କିନ୍ତୁ ସେଥିରେ ସଂଶୟ ଥିଲା। ରଘୁନାଥର ମନୋହର ମୂର୍ତ୍ତି ସେ ବାରମ୍ବାର ଧ୍ୟାନ କଲା। ହାୟ ସୀତା! ରଘୁନାଥ ତୋର କିଏ?

ରଘୁନାଥ ତାର କିଏ? ସେ ଏ ପ୍ରଶ୍ନର ଉତ୍ତର ଦେବାକୁ ବସିଲା। କିନ୍ତୁ ଲଜ୍ଜା ତାହାର ବାକ୍‌ରୋଧ କଲା। ନିଭୃତ କକ୍ଷରେ ସୀତା ବସି ଅଙ୍ଗୁଳି ଚାଳନା କରୁଥିଲା- ଲେଖନୀ ନାହିଁ, ମସୀ ନାହିଁ, କାଗଜ ନାହିଁ; ତଥାପି ସେ ଭୂଇଁରେ ନୀରବରେ ଲେଖିଲା– ''ରଘୁନାଥ।'' ପୁଣି ନୀରବରେ ନିଭାଇଲା। ସେ ଅକ୍ଷରର ରୂପ ନାହିଁ- ତାହା କାଳେ କିଏ ପଢ଼ିବ ପରା!

ସୀତା ଅନ୍ୟମନସ୍କା। ବାବୁ ତାକୁ ଡାକି କହିଲା- ''କଣ କରୁଚୁ?''

ସେ ଅନ୍ୟମନସ୍କ ଭାବରେ ଉତ୍ତର ଦେଲା- ''ଗଲେଣି?''

ବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା- ''କିଏ?''

ଏଥର ସୀତାର ଆତ୍ମଜ୍ଞାନ ହେଲା; ଲଜ୍ଜାରେ କହିଲା, ''ଭାଇନା, କଣ କହୁଥିଲୁ? ମୁଁ ପରା ତତେ ଖୋଜୁଥିଲି?''

''ମୁଁ ଆଉ ରଘୁ ରାଣୀହାଟ ଯାଇଥିଲୁ। ଆଜି ଆମେ ଅନେକ ଶିଙ୍ଗ ଜିନିଷ କିଣିଚୁଁ। ରଘୁ ବୋଉପାଇଁ ପାନିଆ କିଣୁଥିଲା। ଆଉ ଦେଖ-ତୋ ପାଇଁ କଣ ପଠେଇଚି?''

ସୀତା ଆଗ୍ରହାତିଶଯ୍ୟରେ କଥା କହି ପରିଲା ନାହିଁ; ଭାଇ ହାତରୁ ରଘୁନାଥ ଦେଇଥିବା ପଦାର୍ଥମାନ ନେଇ ରଖିଲା। ପର ମୁହୂର୍ତ୍ତରେ ଭାଇ ଗଲାରୁ ସେ ଦେଖିଲା, ଜିନିଷ ତିନୋଟି- ଗୋଟିଏ ଶିଙ୍ଗ ଖୋସା ପାନିଆଁ, ଗୋଟିଏ ସିନ୍ଦୂର ଡିବା, ଆଉ ହଳେ ଶିଙ୍ଗ ଚୁଡ଼ି। ଚତୁରୀ ବୁଝି ପାରିଲା; ପଦାର୍ଥ ତିନୋଟିର ଏପଟ, ସେପଟ ଲେଉଟାଇଲା; ଦେଖିଲା, ମୁଣ୍ଡ ପାନିଆଁରେ ବଙ୍ଗଳାରେ ଲେଖା ଅଛି- 'ପତି ପରମ ଗୁରୁ'।

\+ + + +

ଆଜିକି ଦଶ ଦିନ ହେଲାଣି ରଘୁନାଥ ସୀତାଘରକୁ ବୁଲି ଆସି ନାହିଁ। ତାହାର ମନ ଦୁଃଖରେ ପୂର୍ଣ୍ଣ। ସେ ବାବୁଠାରୁ ଶୁଣିଛି, ରଘୁନାଥକୁ ଜ୍ୱର ହୋଇଛି। କିନ୍ତୁ ତାର ମନ ମାନୁ ନାହିଁ– ଛାତି ବିଦାରି ହେଉଛି। ହାୟ, ସେ କିପାଁ ଝିଅ ହେଲା! ସେ ଯଦି ବାବୁ ପରି ପୁଅଟିଏ ହୋଇଥାନ୍ତା! ବାବୁ ରଘୁନାଥକୁ ଦେଖିବାକୁ ଯାଏ, କିନ୍ତୁ ତାହାର ଦାଣ୍ଡଦୁଆରକୁ ବାହାରିବାର କଷ୍ଟ।

କିପରି କାହା ଆଗରେ ସୀତା ମନ କଥା କହିବ ? ସେ ଭିତରେ ଭିତରେ ମରୁଛି- ରୁଦ୍ଧ ଯନ୍ତ୍ରଣାର ଜ୍ୱାଳାରେ ତାହାର ମର୍ମ ବିଦୀର୍ଣ୍ଣ। ସେ ଉଦାସ ମନରେ ଏକାକୀ ପୋଖରୀକୂଳରେ ବସି କାନ୍ଦେ- ସଞ୍ଜ ବୁଡ଼ିଯାଏ, ଉଠେ ନାହିଁ। ତୁଳସୀ ଚଉରା ମୂଳରେ ମା ବୃନ୍ଦାବତୀଙ୍କ କତିରେ ସଞ୍ଜ ବଳିତା ଜାଳିବାବେଳେ ମନେ ମନେ କେତେ ଠାକୁରଙ୍କୁ ଡାକେ।

ଆଜି ମଧ କୁମାରପୂର୍ଣ୍ଣିମା; କିନ୍ତୁ ସେ ଦିନ, ଆଉ ଏ ଦିନ କେତେ ଭିନ୍ନ; ଆଜି ମଧ ସେହି ହୃଦୟ-ଉନ୍ମାଦକାରୀ ଚନ୍ଦ୍ରରାତି; କିନ୍ତୁ ସେ ରାତି, ଆଉ ଏ ରାତି କେତେ ଭିନ୍ନ। ସେତେବେଳେ ରଘୁନାଥ କ୍ଷୁଦ୍ର ବାଳକ, ସୀତା ଶିଶୁ; ଆଜି ରଘୁନାଥ ଯୁବକ, ଆଉ ସୀତା ? ସାତ ବରଷର ନିବିଡ଼ ଘନିଷ୍ଠତା, ଅଗାଧ ଅକୃତ୍ରିମ ସ୍ନେହ, ଅଦ୍‌ଭୁତ ରୂପ ଗୁଣର ସମ୍ମିଳନ ସୀତା ଓ ରଘୁନାଥଙ୍କୁ ଏକାତ୍ମା କରିଦେଇଛି। ସୀତା ଜାଣେ, ରଘୁନାଥ ଜାଣେ- ସେମାନେ ପରସ୍ପରର କଣ ? ସେମାନଙ୍କ ହୃଦୟର ଯୋଗ ଯେପରି ବଜ୍ରଗଣ୍ଠିରେ ବନ୍ଧା, ଏହା ଉଭୟ ଜାଣନ୍ତି। ଆଉ ଜାଣନ୍ତି ସରସ୍ୱତୀ, ବାବୁ, ରେବତୀ ଓ ପିତେଇ ନାନୀ।

ସୀତା ବସିଛି ଅଶୋକ ଚଉତୁରା ମୂଳେ; କତିରେ ପିତେଇ ନାନୀ- ସେ କାନ୍ଦୁଛି। ଆକାଶରେ ପୂର୍ଣ୍ଣିମା ଚନ୍ଦ୍ର ହସି ହସି ଭାସି ଯାଉଛି; ତରଳ ଜ୍ୟୋତ୍ସ୍ନା ପୋଖରୀ ପାଣିରେ ନାଚୁଛି, ବଡ଼ କଇଁଫୁଲଟିମାନ ଧୀର ପବନରେ ଦୋହଲି ପଡୁଛନ୍ତି; ବାରି ପଛପଟର ଗଙ୍ଗଶିଉଳୀ, ମାଳତୀ, କରବୀର ଗଛରୁ ଫୁଲର ସୁବାସ ବହି ଆସୁଛି; ଚାନ୍ଦ ପାଖରେ ଗୋଟିଏ ଛୋଟ ତାରାଟି ଚକଚକ ହେଉଛି। ସୀତା ସେ ସବୁକୁ ଚାହିଁଛି। ତାହା ମନରେ କେତେ କଥା। ଚାନ୍ଦପୂଜା ସରିଛି, କିନ୍ତୁ ତାହାର ଉତ୍ସାହ ନାହିଁ-ଆମୋଦ ନାହିଁ। ଏଭଳିଆ ଦିନରେ ରଘୁନାଥ ନାହିଁ, ବିଛଣାରେ ଜରରେ ପଡ଼ିଛି। ଆଉ ସେ କି ଆନନ୍ଦରେ ଯାଇ ଚାନ୍ଦ ବନ୍ଦେଇବ। ଧିକ୍ ଜୀବନ ତାର।

ରଘୁନାଥ କିଏ ? ସେ ଅନାଥ ଦରିଦ୍ର ଯୁବକ- ସୀତାର କିଏ ସେ ? ସାତ ବରଷର ପ୍ରଗାଢ଼ ପ୍ରେମ କି ତାହା କହି ଦେଇ ନାହିଁ ? ଯାହାକୁ ଦଣ୍ଡେ ନ ଦେଖିଲେ ପ୍ରାଣ ଅଥୟ ହୁଏ, ଯାହାର ଅବ୍ୟକ୍ତ ବେଦନାରେ ସୁନ୍ଧା ହୃଦୟ କାନ୍ଦିଉଠେ, ଯାହା ଗୋଡ଼ରେ କଣ୍ଟାଟିଏ ଫୁଟିଲେ, ତା ଛାତିରେ ବାଣଟିଏ ପରି ବାଜେ। ଯହାର ଅତୁଲ୍ୟ ରୂପରାଶିକୁ ସେ ଚାତକୀ ପରି ପାନକରେ, ଯାହାର ଛାୟା ମଧ ତାର ସୁପରିଚିତ- ସେ ରଘୁନାଥ ତାର କିଏ ସେ ? ରଘୁନାଥ ତା ପ୍ରାଣର ଦେବତା, ହୃଦୟର ରାଜା, ଜୀବନର ଜୀବନ। କେବଳ ଏତିକି ? ରଘୁନାଥ ତାଙ୍କ ମସ୍ତକର ମଣି, ହୃଦୟର ଧନ, ପ୍ରାଣର ପ୍ରାଣ। କେବଳ ଏତିକି ? ନା ନା, ଆହୁରି ଅଛି ରଘୁନାଥ ସୀତାର ବନ୍ଧୁ, ଅନ୍ତରର ବନ୍ଧୁ, ଜୀବନର ସଖା। କେବଳ ଏତିକି ? ନା, ରଘୁନାଥ ତାହାର ତେବେ କଣ ? ରଘୁନାଥ ସବୁ- କିଏ ନୁହେଁ, ହୋଇ ନାହିଁ କଣ ? କଣ ସେ ଚାହେଁ, କିପାଁ ତାହାର ହୃଦୟ କାନ୍ଦି ଉଠୁଛି ? ହିନ୍ଦୁ ବାଳିକା ବିବାହ ବିଷୟ ମୁହଁରେ

କହିପାରେ କି ? ହିନ୍ଦୁ ଦୁହିତା ବ୍ରାହ୍ମଣର କୁଳକନ୍ୟା- ବିବାହ ବିଷୟରେ ଆତ୍ମକଥା ନିବେଦନ କରି ପାରେ କି ? ଦେଶାଚାର, ସମାଜଚାର ସେ ପଥଟି ରୁଦ୍ଧ କରିଛି। ବିଦୂଷୀ ସେ କଥା ଜାଣେ। କଣ ହେବ ତାର କପାଳରେ, କିଏ ଜାଣେ ? କାହା କର୍ମ ସେ ଭୁଞ୍ଜିବ, କିଏ କହିପାରେ ? କିନ୍ତୁ ତଥାପି ଚଞ୍ଚଳମନ ! ସେ ତ ରଘୁନାଥଙ୍କୁ ଭଲ ପାଏ- ପିତାର ଧନୈଶ୍ୱର୍ଯ୍ୟ ପାସୋରି ଦରିଦ୍ର ରଘୁନାଥଙ୍କୁ ହୃଦୟ ଦାନକରିଛି। ସୀତା, ଏ କ'ଣ ?

ନା, ନା, ତାହାର ଅନ୍ତର କହୁଛି, ସେ କିଛି ଦୋଷ କରି ନାହିଁ। ରଘୁନାଥର ନାହିଁ କଣ ? ଧନ ? ସେ ତ ତୁଚ୍ଛ ! ସମ୍ପତ୍ତି ? ସେ ତ ଅଳୀକ। କିନ୍ତୁ ଅଛି ରଘୁନାଥର ଗୁଣ– ଅତୁଲ୍ୟ ଅମୂଲ୍ୟ ଅପାର ଅଶେଷ ଗୁଣ, ଅଛି ପ୍ରତିଟି, ଅଛି ବିଦ୍ୟା, ଅଛି ଗନ୍ଧର୍ବ ତୁଲ୍ୟ ରୂପ। ଶକୁନ୍ତଳା ଯେ ଦୁଷ୍ମନ୍ତକୁ ବରଣ କରିଥିଲା– କାହା ଅନୁମତି ଘେନି ! ସାବିତ୍ରୀ ଯେ ସତ୍ୟବାନଙ୍କୁ- ଦରିଦ୍ର ବନବାସୀ ବରଣ କରିଥିଲା। ତେବେ, ଆର୍ଯ୍ୟକୁମାରୀ ସୀତା ରଘୁନାଥଙ୍କୁ ହୃଦୟ ସମର୍ପଣ କରିଛି, ସେଥିରେ ଦୋଷ।

ନା, ନା, ଏ ଦୋଷ ନୁହେ– ଶାସ୍ତ୍ର କହେ, ଏ ଦୋଷ ନୁହେଁ। ସେ କଳଙ୍କିନୀ ନୁହେଁ– ସେ ରଘୁଗତପ୍ରାଣା- ରଘୁହୀନ ଜୀବନ ତାର ଅସାର। ସୀତା ରଘୁନାଥର, ରଘୁନାଥ ସୀତାର- ଏହା ବିଧିନିର୍ବନ୍ଧ। ନୋହିଲେ, କାହିଁ ରଘୁନାଥ- କାହିଁ ସୀତା ! ଏପରି ମିଳନର କାରଣ କ'ଣ ? ଏତେ ବିବାହ ସମ୍ବନ୍ଧ ଛିନ୍ନ ହେବାର କାରଣ କଣ ?

ଯେ ଦିନରାତି କରନ୍ତି, ଯାହାଙ୍କ ଇଚ୍ଛାରେ ସୂର୍ଯ୍ୟ ଦଣ୍ଡେ ବିଳମ୍ବରେ ଉଠିପାରେ ନାହିଁ, ଚାନ୍ଦ ଘଡ଼ିଏ ଛାଡ଼ି ଆସି ପାରେନାହିଁ, ଏତ ତାଙ୍କରି ଲୀଳା– 'ସୀତା ରଘୁନାଥର, ରଘୁନାଥ ସୀତାର'। ଶାସ୍ତ୍ର କହୁଛି ? ହୃଦୟ-ଶାସ୍ତ୍ର ଦେଖ; ଧର୍ମର ଦୁହାଇ ଦେଉଛି ? ପ୍ରକୃତିର ଧର୍ମ ଦେଖ। ନଦୀ ପର୍ବତ କନ୍ଦରରେ ଜନ୍ମି ସାଗରଗାମିନୀ, କଇଁ ପୋଖରୀରେ ଫୁଟି ଚନ୍ଦ୍ରମୁଖୀ- ଏ ତ ସ୍ୱାଭାବିକ। ଏହା ସକାଶେ ଶାସ୍ତ୍ର, ପୋଥି, ପାଞ୍ଜି କଣ ଖୋଜୁଛ ? ସୁଭଦ୍ରା ପାର୍ଥ ବେଳକୁ ପୋଥି ଖୋଜାପଡ଼ିଥିଲା କି, ନା କୃଷ୍ଣ ରୁକ୍ମିଣୀ ବେଳକୁ ପଞ୍ଜିକାର ଲୋଡ଼ା ହୋଇଥିଲା ? ସବୁ କେବଳ ଅଭାଗୀ ସୀତାପାଇଁ ?

ହୃଦୟାବେଗ ସହ୍ୟ ହେଲା ନାହିଁ- ସେ କଁ କଁ ହୋଇ କାନ୍ଦି ଉଠିଲା। ''ଏ କଣ ? ଏ କଣ ? କିଆଁ କାନ୍ଦିଲୁ ଲୋ ଝିଅ ?'' କହି ପିତେଇ ନାନୀ ତାକୁ କୋଳକୁ ଟାଣି ଆଣିଲା। ଦୁଃଖୀ ଦୁଃଖୀର ବେଦନା ବୁଝେ। ଦିନେ ଏହିପରି ହୋଇଥିଲା। ବେଣୁଧର ରୋଗଶଯ୍ୟାରେ ପଡ଼ି ଛଟପଟ ହେଉଥିଲା। ସେବା କରୁଥିଲା ପିତେଇ, କାନ୍ଦୁଥିଲା ପିତେଇ, ଦେବତା କତିରେ ମୁଣ୍ଡ କୋଡୁଥିଲା ପିତେଇ, କିନ୍ତୁ ସେ ମୁଣ୍ଡ କୋଡ଼ାର ଫଳ କଣ ହେଲା ? ପିତେଇ କାଚ କାଢ଼ିଛି- ସିନ୍ଦୂର ପୋଛି ବସିଛି। ଯୌବନର ଆକୁଳ ଆକାଙ୍କ୍ଷା, ହୃଦୟପୂର୍ଣ୍ଣ ପ୍ରେମ, ଅବ୍ୟକ୍ତ ବେଦନାର ତୀବ୍ରତା ସବୁ ସହିଛି ପିତେଇ। ଛାତିକି ପଥର କରି ଦିନେ ନୁହେଁ, ଦୁଇ ଦିନ

ନୁହେଁ- ଅଠର ବର୍ଷକାଳ ସହିଛି ପିତେଇ। ସେ ନାମାବଳୀ ଘେନିଛି, ମାଳା ନେଇଛି, କିନ୍ତୁ ବେଣୁଧରର ନାମ ଭିନ୍ନ ଆଉ କିଛି ଜପକରି ନାହିଁ। ତାହାର ଜଗତ୍ ବେଣୁଧରମୟ। ସେ ପିତେଇ ବୁଝେ ନାହିଁ- ସେ ଦୁଃଖର ଚିରପରିଚିତା ପିତେଇ ବୁଝେ ନାହିଁ, ସୀତାର ବେଦନା।

ପିତେଉ ସୀତାକୁ କୋଳକୁ ଟାଣି ନେଇ ସାନ୍ତ୍ୱନାଦେଇ କହିଲା- ''କାଲି ଯିବା, ସାଆନ୍ତାଣୀ, ତୋର ମୋର ରାମଚନ୍ଦ୍ରକୁ ଦେଖିଆସିବା।''

ସୀତା ହସିଲା, ଦୁଃଖରେ ତାହାର ହସ ଆସିଲା। କାହିଁ ରଘୁନାଥ, କାହିଁ ସୀତା। ତଥାପି ବୁଢ଼ୀ କହେ, ''ରାମଚନ୍ଦ୍ର! କାହିଁ ଧନୀକନ୍ୟା ସୀତା, କାହିଁ ନିର୍ଦ୍ଧନ ରଘୁନାଥ। ଯାହା ହେବାର ନୁହେଁ।''

''ରାମଚନ୍ଦ୍ର କିଏ ସେ? ରାମଚନ୍ଦ୍ରକୁ ତ ମୁଁ ଚିହ୍ନି ନାହିଁ।''

''ଆପଣାକୁ ଚିହ୍ନିଚୁ? ସାଆନ୍ତାଣୀ କହୁଥିଲେ, ଆଉ ଦି'ମାସ ଗଲେ ଯା ହବ। ତୁ କାନ୍ଦି କାନ୍ଦି କଳା ହୁଅ ନାଁ। ମୁଁ ଶୁଣିଚି, ତାକୁ ଘରଜୋଇଁଆ କରିବେ। ଠିକ୍, ଠିକ୍ ଠିକ୍।'' 'ସତ୍-ସତ୍', କାହୁଁ ଗୋଟିଏ ଝିଟିପିଟି ଏତିକିବେଳକୁ ଟିକି ଟିକି କରି ବୋବାଇ ଉଠିଲା।

ସୀତା ମୁହଁ ତଳକୁ ପୋତିଲା। କିନ୍ତୁ ମନ ଆନନ୍ଦରେ ପୂର୍ଣ୍ଣ। ପଥର ବୋଝ ଛାତିରୁ ଖସିଲା କି?



## ଅଷ୍ଟମ ଅଧ୍ୟାୟ

''ଏତେଦିନ ରହୁଲୁ? ଗରିବଙ୍କୁ ସଭିଏଁ ପାସୋରୀ ପକାନ୍ତି। କାହିଁଥିଲୁ ନାନି!'' ପିତେଇ ନାନୀକୁ ଉଦ୍ଦେଶ୍ୟ କରି ଆଉ ଜଣକୁ କହିଲା ରଘୁନାଥ। ସେ ଜଣକ ନୀରବ।

ଆଜି ତାହାର କକ୍ଷରେ ସରସ୍ୱତୀ, ପିତେଇ ନାନୀ ଓ ସୀତାର ଆଗମନ। କକ୍ଷଟି କ୍ଷୁଦ୍ର। ଗୋଟିଏ ପାଖରେ ମେଜଟିଏ, ମେଜ ଉପରେ ରଘୁନାଥର ପୁସ୍ତକଗୁଡ଼ିକ। ସେ ଏଥର ଆଇ.ଏ.ପରୀକ୍ଷା ଦେଇଛି। ପରୀକ୍ଷା ସମୟରେ ଅତିରିକ୍ତ ପରିଶ୍ରମ ଓ ଚଉଧୁରୀଙ୍କ ଘରେ ରାତ୍ରିଜାଗରଣ ସକାଶେ ସେ ଅସୁସ୍ଥ ହୋଇ ପଡ଼ିଲା। ଛାଡ଼ ସେ କଥା। ମେଜତଳେ ଲୁଗା ସିନ୍ଧୁକ, ଗୋଟିଏ ପଟକୁ ଖଟ, ଆରପଟକୁ ପାଣି ସୋରେଇ, ଦୀପଟିଏ। କାନ୍ଥରେ ଯୋଗରତ ଶିବ, ତାଙ୍କ ପଛପଟେ ଠିଆ ହୋଇଥିବା ପାର୍ବତୀଙ୍କ ଛବି; ରାମ, ସୀତା, ଲକ୍ଷ୍ମଣଙ୍କର ବନ ଗମନ ଚିତ୍ର ଏବଂ ଜଗନ୍ନାଥଙ୍କ ଚିତ୍ରପଟ। ତା'ଉପରେ ଶୁଖିଲା ବଉଳମାଳ ଅର୍ଦ୍ଧ ଲମ୍ବିତ। ରଘୁନାଥ ଛବିଟି ପୂଜା କରେ। ଆଉ ଗୋଟିଏ ସୁନ୍ଦର ଫ୍ରେମ୍‌ରେ ବନ୍ଧା ତାହାର ନିଜର ଫୋଟୋ।

ଅନ୍ୟର ଅଲକ୍ଷ୍ୟରେ ସୀତା ସବୁ ଦେଖିଲା, ଜଗନ୍ନାଥଙ୍କ ଚିତ୍ରକୁ ଶତଷତ୍ ମୁଣ୍ଡ ଛୁଆଁଇ ପ୍ରମାଣ କଲା; କିନ୍ତୁ ଆଖି ଲାଗିରହିଲା ରଘୁନାଥର ଫୋଟୋରେ। ପିତେଇ ନାନୀ ବୁଝିପାରି କାନ୍ଥରୁ ଛବିଟି ଖସେଇ ଆଣିଲା। ସରସ୍ୱତୀ ବଡ଼ ଆଗ୍ରହରେ ନିରୀକ୍ଷଣ କଲେ ରଘୁନାଥକୁ। ଅନାଥ ହୃଦୟ ପୂରିଉଠିଲା। କି ସୁନ୍ଦର ରୂପ! ଏଣେ ସୀତାକୁ ଚାହିଁଲେ। ଏ କଣ? ଏ କଣ? ଏତ ବିଧାତାଙ୍କ ସୃଷ୍ଟି! ଏମାନେ ତ ପରସ୍ପରର- ଏ କଣ ଖରାରେ ବରଷା, ନା ମେଘରେ ବିଜୁଳି, ବା ପତର କୋଣରେ ଫୁଲ। ସତେ ଅବା ମହାପ୍ରଭୁ ଦୁହିଁଙ୍କୁ ଦୁହିଙ୍କଲାଗି ଗଢ଼ିଛନ୍ତି। କାନ୍ଥକୁ ଅନାଇଲେ ଶିବପାର୍ବତୀ, ସୀତାରାମ; ତଳକୁ ଅନାଇଁଲେ ରଘୁନାଥ ଓ ସୀତା। କେଉଁ ଛବି ସୁନ୍ଦର? କାନ୍ଥର ନା ହୃଦୟର? ଅତୀତର ନା ବର୍ତ୍ତମାନର?

ମାଉସୀକୁ ଧ୍ୟାନମଗ୍ନ ଦେଖି ସୁଯୋଗ ବୁଝି ତାରାମଣୀ ସୀତା ହାତଟାଣି ରହିଲା। ଦୁହେଁ ବାରିଆଡ଼କୁ ଗଲେ। ତାରାମଣୀ ଅଳ୍ପଦିନ ହେଲା ଶାଶୁ ଘରୁ ଆସିଛି, କେତେ କଥା ଅଛି। ସେ, ରେବ, ଆଉ ସୀତା ସାଙ୍ଗ ହୋଇ ବସିଲେ। ତାହାର ଟିକି ନଣନ୍ଦ ଦୁଲଣା ମଧ୍ୟ କତିରେ ବସିଲା। ପିତେଇ ନାନୀ, ସରସ୍ୱତୀ ଆଉ ତାରାମଣି ସୁଖ ଦୁଃଖ ହଉ ହଉ ମଝିଘରେ ବସିଲେ। ରଘୁନାଥ ଆଉ ବାବୁ ଯାଙ୍କ ମେଳରେ ବସିବା ଅନୁଚିତ ଭାବି ପୋଖରୀକୂଳକୁ ଗଲେ। ଦୁଇ ଜଣ ସଙ୍ଗାତ ଦି'ପହରିଆ ଗଛ ଛାଇରେ ବସି ମାଛ ମାରିବାରେ ଲାଗିଗଲେ। ଗଲାବର୍ଷ ଦୁଇ ଜଣ ଏକତ୍ର ପରୀକ୍ଷା ଦେଇଥିଲେ– ଜଣେ ପାଶ କରିଛି, ଆଉ ଜଣକ ଫେଲ ହୋଇଛି। ପାଶ କିଏ କରିଛି, ପାଠକେ ଜାଣନ୍ତି।

ରଘୁନାଥ ପାଶ୍ କରିଛି ପ୍ରଥମ ଶ୍ରେଣୀରେ; ବୃତ୍ତି ପାଇ କଲେଜରେ ପଢ଼େ। ବିଚରା ବାବୁଟି ରୋଗଶଯ୍ୟାରୁ ଉଠି ଦୁର୍ବଳ ଦେହରେ ପରୀକ୍ଷା ଦେଇଥିଲା। ତେଣୁ ଫେଲ ହୋଇଛି; କିନ୍ତୁ ବାବୁ ମନେ ମନେ ଜାଣେ, ତାହାର ଫେଲର କାରଣ ଅନ୍ୟ। ବିଭା ହେଲା ଦୁନ୍ଁ ପାଠ ହେଲା ତାର ବିଷ। ସେ ସେଥିପାଇଁ ଦୁଃଖିତ ନୁହେଁ। ବାପର ସେ ଗୋଟିଏ ବୋଲି ପୁଅ, ପୁଣି ସତର ବର୍ଷରେ ପୁଅର ବାପ। ବାବୁର ପ୍ରକୃତ ନାମ ବିଷ୍ଣୁପ୍ରସାଦ। ପୁଅଟିର ନାମ ବାପ ନାମକୁ ଚାହିଁ ଲକ୍ଷ୍ମୀପ୍ରସାଦ ଦିଆ ହୋଇଛି। ନୂଆ ନାତିକୁ ପାଇ ଚଉଧୁରୀ ମହାଖୁସି! ପୁଅ ପାଶ ନ କଲେ ସୁଦ୍ଧା ବିରକ୍ତିର ଚିହ୍ନ ନାହିଁ। ଏକମାତ୍ର କୁଳାଙ୍କୁର, ଏତେ ଧନ କିଏ ଖାଇବ? ପୁଅ କଣ ଆଉ ଚାକିରି କରିବ? ସେଥିପାଇଁ ପାଶ୍‌କରି ରଘୁନାଥର ଯେଉଁ ଆନନ୍ଦ, ଫେଲ୍ ହୋଇ ବାବୁର ମଧ୍ୟ ସେହି ଆନନ୍ଦ, ଦୁହେଁ ନିଜ ନିଜ ସୁଖରେ ବିହ୍ୱଳ। ରେବତୀର ପୁଣି ସନ୍ତାନର ସମ୍ଭାବନା। ଏଥିରେ ବାବୁର ଆନନ୍ଦ! ସୀତାଲାଭ ଆଶାରେ ରଘୁନାଥର ବି ଆନନ୍ଦ!

ପୋଖରୀଟି ବିଶେଷ ବଡ଼ ନୁହେଁ ବା ବିଶେଷ ସାନ ନୁହେଁ, କିନ୍ତୁ ଭାରୀ ଗଭୀର। ଦକ୍ଷିଣ ଦିଗରେ ତୁଠ-ଚାରି ପାଞ୍ଚଟା। ଚେକା ଚେକା ମାଙ୍କଡ଼ା ପଥର ପରସ୍ପର ବିନ୍ୟସ୍ତ; ଦୁଇ କରକୁ କ୍ଷୁଦ୍ର କ୍ଷୁଦ୍ର ଭାଲୁକୁଣି ଲତାମାଳା, ତୁଠ କତିରେ ପ୍ରାୟ ପାଞ୍ଚ ଛ ହାତ ନିର୍ମଳ ପାଣି,

ଅନ୍ୟ ପାଖ ଗହଳ କଳମ ଲଟା, ପାଣି ଶିଉଳି ଓ ବିଲାତି ଦଳରେ ପୂର୍ଣ୍ଣ। ପୋଖରୀ ହୁଡ଼ାରେ ତୁଠ କତିକି[୧] ଦୁଇଟା ବଡ଼ ନିମ୍ବ ଗଛ, ଆଉ ଗୋଟିଏ ଆମ୍ବଗଛ; ଅନ୍ୟ କରକୁ[୨] ଠାଏଁ ଠାଏଁ କେତୋଟି ଆମ୍ବ ଗଛ, ଗୋଟିଏ ଗିରିଙ୍ଗା, ଗୋଟିଏ ଢନ୍ଦାଖାଇ ଓ ଗୋଟିଏ ଜାମୁକୋଳି ଗଛ ପରସ୍ପରକୁ ଈଷତ୍ ଲଗାଲଗି ହୋଇ ପୋଖରୀକୁ ଛାୟାଦାନ କରୁଛନ୍ତି। ପୁଣି ସେଗୁଡ଼ିକ ମଧ୍ୟରେ ବାଡ଼ବୁଜିଲା ପରି ଭୁତିଆରି ଗଛଗୁଡ଼ିକ ନାନାରଙ୍ଗ ଫୁଲମାନଙ୍କରେ ବିଚିତ୍ର ହୋଇ ବଡ଼ ସୁନ୍ଦର ଦିଶୁଛି। ପୋଖରୀ ତୁଠଟି ବେଶ୍ ନିର୍ଜନ। ସେଥିପାଇଁ ବାବୁର ରଘୁନାଥର ଏହି ସ୍ଥାନଟି ବଡ଼ ପ୍ରିୟ। ଥରେ ଥରେ ଛୁଟି ଦିନରେ ସାଙ୍ଗ ଦୁଇଜଣ ଏଠାକୁ ମାଛ ମାରି ଆସନ୍ତି; ନିରୋଳରେ ବସି କେତେ ଆତ୍ମକଥା କହନ୍ତି। ବାବୁ ଆଉ ରଘୁନାଥ ଏକପ୍ରାଣ। ଧନୀ ସନ୍ତାନ ବାବୁ, ଆଉ ନିର୍ଦ୍ଧନ ରଘୁନାଥ ମଧ୍ୟରେ ତିଳେମାତ୍ର ଅପ୍ରେମ କେହି କେବେ ଦେଖି ନାହିଁ। ସମ୍ବନ୍ଧରେ ପୁଣି ରଘୁନାଥ ରେବତୀର ଭାଇ। ବିବାହ ପରେ ରେବତୀ ଯେତେବେଳେ ପିତୃଗୃହରେ, ରଘୁନାଥ ହାତରେ ବାବୁର ଡାକଘର ଥିଲା। ଏ ଘନିଷ୍ଠତାର ଏକ ପ୍ରଧାନ କାରଣ। ଆଉ କିଏ ବା ନାହିଁ କରିବ, ଭବିଷ୍ୟତରେ ବାବୁ ଓ ରଘୁନାଥର ସମ୍ବନ୍ଧ ପରିବର୍ତ୍ତିତ ନ ହେବ ? କିଏ କାହାକୁ ଭାଇ ଡାକିବ, ଏ ଘେନି ଦୁଇ ଜଣ କୃତ୍ରିମ କଳିକରନ୍ତି।

ବାବୁର ସ୍ୱଭାବ ଧୀର, ସୀତା ପରି ବିନୟ, ନମ୍ର, ସୀତା ପରି ସ୍ନେହ–ସରସ। ଭାଇ ଭଉଣୀ ପରସ୍ପରର ପ୍ରତିରୂପ, ଅଥବା କହିବାକୁ ଗଲେ ଜଣକର ଛାୟାଚିତ୍ର[୩] -ସେ ଜଣକ ମାତା ସରସ୍ୱତୀ।

ପୋଖରୀ କୂଳରୁ ଢିଆମାନ ଖୋଳି, ମଇଦା ଇତ୍ୟାଦିରେ ଉତ୍କୃଷ୍ଟ ଚାରାଗୁଳି ଦୁଇ ସାଙ୍ଗଯାକ ବନିଶୀରେ ମାଛମାରି ବସିଛନ୍ତି, ହଠାତ୍ ବଡ଼ ମାଛଟିଏ ଆସିଲା। ଚାହୁଁ ଚାହୁଁ ବାବୁର ଥୋପ ଗିଳିଲା। ମୁହୂର୍ତ୍ତକେ ବାବୁ ଟାଣି ଆଣିବ, ପୁଟ୍‌କିନା ଡୋ଼ର ଛିଣ୍ଡିଗଲା। ମାଛ ତିଆଁଟାଏ ମାରି ପଳାଇଲା। ଦୁଃଖରେ, ରାଗରେ ବାବୁର ଆଖି ଲାଲ ହୋଇଗଲା। ମାଛକୁ ଗାଳି ଦେଇ ସେ ଡୋରରେ ଭଲ କଣ୍ଟାଟିଏ ପିନ୍ଧେଇ ପୁଣି ବସିଲା।

ଏଣେ ରଘୁନାଥ ଚାହିଁଛି– ଡବ୍ ଡବ୍ ଡବ୍ ଡେରଣ୍ଡା ବୁଡ଼ିଲା। ବଡ଼ ମାଛଟା ପରା ! ରଘୁନାଥ ଆନନ୍ଦରେ ରାଜ୍ୟ ଜିଣିଲା ପରି ସବୁ ବଳ ଦେଇ ଖେଳେଇ ଖେଳେଇ କୂଳକୁ ଓଟାରି ଆଣିଲା। ଯୁବକଦ୍ୱୟଙ୍କ ବକ୍ଷ ସ୍ଫୀତ। ପ୍ରାୟ ଅଢ଼େଇ ସେରିଆ ରୋହିଟିଏ। ଯତ୍ନରେ ସାଇତି ଥୋଇଲେ- ମା'ମାନେ ଦେଖିବେ; ସୀତା, ରେବତୀ ଦେଖିବେ; ପିତେଇ ନାନୀ, ନରିଆ ହେରିକା[୪] ଦେଖିବେ। ସଙ୍ଗୀଦ୍ୱୟର ଆନନ୍ଦ ପ୍ରଫୁଲ୍ଲ ମୁଖକାନ୍ତିରେ ସୂର୍ଯ୍ୟକିରଣ ପଡ଼ି ବଡ଼ ସୁନ୍ଦର ଦିଶୁଥିଲା।

ବାବୁ ରଘୁନାଥ ଅଣ୍ଟାରୁ ପାନଖିଲିଟି କାଢ଼ି ତା ମୁହଁରେ ପୂରାଇ କହିଲା– ''ଭାଇ, ତୁ ବଡ଼ ବାହାଦୂର; ସବୁଥିରେ ମତେ ଟପିଲୁ- ପଢ଼ାରେ, ଗୀତରେ, ବାଜାରେ, ଖେଳରେ, ସବୁଥିରେ ତୁ ତ ହେଲୁ ଫାଷ୍ଟ।''

---

(୧) ପାଖ, (୨) ଏପାଖ, (୩) ଫଟୋକପି, (୪) ଇତ୍ୟାଦି।

ରଘୁନାଥ ରହସ୍ୟ କରି କହିଲା, ''ଆଉ ତୁ ଯେ ଗୋଟାଏ ବିଷୟରେ ମୋଠୁଁ ଫାଷ୍ଟ।'' ବାବୁ ଲାଜରେ ମୁହଁ ରଙ୍ଗିଆକରି ତଳକୁ କଲା, କିନ୍ତୁ ରଘୁନାଥ ପିଠିରେ ଗୋଟିଏ ବିଧା କଷିବାକୁ ଭୁଲିଲା ନାହିଁ: ରଘୁ ହସି ହସି କହିଲା, ''ଭଉଣୀ ପିଠିରେ ଶୁଝେଇବି। ନୂଆ ପୁଅ ହଉ, ଦେଖିବି ମଜା।''

ଏଥର ବାବୁ ଗମ୍ଭୀର ହୋଇ କହିଲା– ''କିନ୍ତୁ ଯାହା କହ ଭାଇ, ପିଲା ବୟସରେ ବିଭାହେଲେ, ପାଠଶାଠରେ ଆଉ ମନବସେ ? ମୋର ସେହିଯୋଗୁଁ ପାଠ ହେଲାନାହିଁ। ଥରେ ଥରେ ଭାବେ, ଏ ବୟସରୁ ତ ପିଲାର ଚିନ୍ତା, ବୁଢ଼ାଦିନେ କଣ ନ ହବ ?''

ରଘୁ ଉପେକ୍ଷା କରି କହିଲା, ''ଖାଇବାକୁ କଣ ନାହିଁ? ଯାହାର ଘରେ ଖାଇବାର ନାହିଁ, ତାର ସିନା ଭାବନା ?''

''ନନା ଲକ୍ଷିଆକୁ କୋଟିନିଧି କରିଛନ୍ତି। ନାତିକି ଦଣ୍ଡେ ନ ଦେଖିଲେ ତାଙ୍କୁ ଅନ୍ଧାର ଦିଶେ। ପିଲାଟା ବଡ଼ ଦୁର୍ବଳିଆ। ମା ଦେହ ଭଲ ଥିଲେ ତ –''

ରଘୁନାଥ, ବାବୁକୁ ସଂସାରଚିନ୍ତାରେ କାତର ଦେଖି ଟିକିଏ ହସିଲା। ତାହା ମୁହଁରୁ ବାହାରି ପଡ଼ିଲା– ''ଏ ବୟସରେ ଏତେ ସଂସାରଚିନ୍ତା।'' ବାବୁ ଅନ୍ୟମନସ୍କ; କିଛି ଉତର ଦେଇ ପାରିଲା ନାହିଁ। ଅଠର ବର୍ଷ ବୟସରେ ଯାହାକୁ ସ୍ତ୍ରୀ, ପୁତ୍ରଚିନ୍ତା, ସେ ଭବିଷ୍ୟତରେ କଣ ହେବ ଭାବି ରଘୁନାଥ ବାବୁ ପ୍ରତି ଟିକିଏ କୃପାଦୃଷ୍ଟିରେ ଚାହିଁଲା। ମନେ ମନେ ଭାବିଲା, ପୂର୍ଣ୍ଣ ଯୁବକ ହୋଇ ଉପାୟକ୍ଷମ ନ ହେଲେ, ନିଜେ ସଂସାର କରିବ ନାହିଁ, ଦୀର୍ଘଶ୍ୱାସଟିଏ ଘେନି ମନକଥା ମନରେ ରଖିଲା। ସଂସାରୀ ବାବୁକୁ ତାହାର ଯୁକ୍ତିଯୁକ୍ତ ଆଦର୍ଶର କଥା କହି ଲାଭ କଣ ?

ସନ୍ଧ୍ୟା ଲାଗୁ ଲାଗୁ ରଘୁନାଥ ଓ ବାବୁ ଘରେ ପହଞ୍ଚିଲେ। ପ୍ରାୟ ଚାରି ସେର ମାଛ ଧରିଛନ୍ତି। ରଘୁନାଥ ଧରିଥିବା ବଡ଼ ରୋହିଟି ଦେଖି ସମସ୍ତେ ସୁଖୀହେଲେ। ରଘୁନାଥର କୃତିତ୍ୱ ଭାବି ସୀତାର ହୃଦୟ ଅନୁରାଗ ଓ ଗର୍ବରେ ଫୁଲିଉଠିଲା।

ସେ ଦିନ ରାତ୍ରିରେ ସେହି ରୋହି ମାଛ ରାନ୍ଧି ସୀତା ବାବୁ, ଆଉ ରଘୁନାଥକୁ ପରଶିଲା। ରନ୍ଧା ଉତ୍କୃଷ୍ଟ ଓ ସୁସ୍ୱାଦୁ ହୋଇଥିଲା। ଦ୍ୱାରମୁହଁଠିକି ବସିଥିବା ସୀତା ଆଉ ରେବତୀକି ଲକ୍ଷ୍ୟ କରି ରଘୁନାଥ ଓ ବାବୁ ତିଅଣର ଅନେକ ପ୍ରକାର ନିନ୍ଦାକଲେ। ଇଚ୍ଛା, ପରସ୍ପରର ଭଉଣୀକୁ ଭାଇ ଆଗରେ ଲଜ୍ଜାଦେବା। ବାବୁ ନାସିକା କୁଞ୍ଚିତ କରି କହିଲା- ''ଇସ୍, ରାଗ ଗରଗର, ଭଉଣୀକି ଏଇ ରନ୍ଧା ଶିଖେଇଥିଲ ? ଖାଇଲେ ପେଟ ଥଣ୍ଡା- ବରଫ ତ।

ରଘୁନାଥ ତହୁଁ କହିଲା, ''ତମ ରାଇଜରେ ଲୁଣ ଭାରି ମହରଗ। ଆଉ ମୋଣ୍ଟିଏ ଲୁଣ ଦେଲ ନାହିଁ?'' ଉଭୟେ ପୁଣି ନ ଜାଣିଲା ପରି ପଚାରିଲେ- ''ହଇ ଲୋ ପିତେଇ

ନାନ, ତୁ ତ କେବେ ଇମିତି ରାନ୍ଧୁନାଁ। ଆଜି କଣ ତତେ ଭୁତ ଲାଗିଲା କି? ଆମେ ଏଡ଼େ କଷ୍ଟକରି ମାଛ ମାରି ଆଣିଲୁଁ–''। ପିତେଶନାନୀ ରାନ୍ଧୁଣୀ ପକ୍ଷ ନେଇ କହିଲା, ''ବଡ଼ ତ ଚାତର ତମର- ପତର ପଛେ ଚଟା ସଇଲାଣି, ତିଅଣ ବାନ୍ଧୁନା ଲାଗିଚି ! ଆଉ ନବ?'' ଏହା କହିଲାରୁ ରେବତୀ ପରଶି ଦେଲା। ନାହିଁ କରୁ କରୁ ଦୁଇଜଣ ପୁଣି ଦୁଇ ଥାଳିଆ ଶେଷକଲେ।

ଅର୍ଦ୍ଧରାତ୍ର, ଜଗତ୍ ସୁପ୍ତ। ବର୍ଷା, କଳାମେଘ, ମେଘରେ ବିଜୁଳି ବେଳେ ବେଳେ ଝକମକ। ପରକ୍ଷଣରେ ପୁଣି ସବୁ ଅନ୍ଧାର, କିନ୍ତୁ ଗାଢ଼ ନିସ୍ତବ୍ଧତା ଭଙ୍ଗ କରି ଶୁଭୁଛି ଭେକର ଡାକ, ଆଉ ଶୁଭୁଛି ଝିଲ୍ଲିସ୍ୱନ। ସାଇଁ ସାଇଁ ନିଶା ଗର୍ଜୁଛି; ଟପର ଟକର ମେଘରୁ ପାଣି ପଡ଼ୁଛି, ପୁଣି ବନ୍ଦ। ସନ୍ଧ୍ୟା ପରେ ଅସରାଏ ହୋଇ ଛାଡ଼ିଥିଲା। ଏତେବେଳେ ଟିକେ ଟିକେ ପୁଣି ବରଷୁଛି। ଆଷାଢ଼ କୃଷ୍ଣ ପକ୍ଷର କାଳିମାବୋଳା ଆକାଶ, ଆଉ ଆକାଶକୁ ଚାହିଁ ରଘୁନାଥ।

ରଘୁନାଥର ଆଜି ନିଦ୍ରା ନାହିଁ। କ୍ଷୁଦ୍ର ଝରକା କଡିରେ ବସି ସେ ଚିନ୍ତାମଗ୍ନ। ଆକାଶରେ ଘନ କଳା ମେଘ, ଆଉ ରଘୁନାଥର ହୃଦୟାକାଶରେ ଘନ ଭାବନା। ମେଘ ଜଳରେ ପୂର୍ଣ୍ଣ, ଆଉ ରଘୁନାଥର ଭାବନାରେ ପୂର୍ଣ୍ଣ ଜଣେ।

ରଘୁନାଥ ଭାବୁଛି। କଣ ଭାବୁଛି? ସମସ୍ତ ଭାବନାକୁ କେନ୍ଦ୍ରକରି ଭାବୁଛି ଜଣକୁ– ସମଗ୍ର ଚିନ୍ତା ଭାରକରି ଭାବୁଛି ଜଣକୁ। ସେ ଜଣକ ଯେ ନିଜର ଅପାର ସ୍ନେହରେ ତାକୁ ବଶୀଭୂତ କରିଛି, ନିଜର ଅମୂଲ୍ୟ ହୃଦୟ ତାକୁ ବିନା ମୂଲ୍ୟରେ ବିକିଛି। ରୂପର ପଟାନ୍ତର ନାହିଁ, ଗୁଣର ତୁଳନା ନାହିଁ, ସୌନ୍ଦର୍ଯ୍ୟର ସମଷ୍ଟି, ମାଧୁର୍ଯ୍ୟର ମୂର୍ତ୍ତି, ଲାଳିତ୍ୟର ପରାକାଷ୍ଠା, ସୁନ୍ଦର, ମଧୁର, ଉଜ୍ୱଳ, ନିର୍ମଳ। ବିଜୁଳିର ଝଟକ, ମେଘର ଗାଢ଼ତା, ବରଷାର ପ୍ରେମଧାରା, ଆଉ ଏ ରଜନୀର ଗାମ୍ଭୀର୍ଯ୍ୟ-ସବୁ ସେ।

ରଘୁନାଥ ଆଖି ବୁଜିଲା। ମନ ଭିତରେ ସେ ମୂର୍ତ୍ତିଟି ଜାଗ୍ରତ ହେଲା। ତହୁଁ ସେ ହସି ଉଠିଲା। ତାହାର ମନେ ହେଲା, ଚାନ୍ଦର ଜ୍ୟୋତ୍ସ୍ନା, ଫୁଲର ହାସ, ସୂର୍ଯ୍ୟର ଆଭା, ଆକାଶର ନୀଳିମା, ମୂର୍ତ୍ତିମନ୍ତ ହେଲେ କି ଆଉ?

ମୁହୂର୍ତ୍ତକେ ରଘୁନାଥ ଜଗତ୍ ଭୁଲିଲା; ଦେଖିଲା, ଜଗତ୍‌ମୟ ସୀତା। ଯେଉଁ ଆଡ଼େ ଚାହେଁ ସୀତା। ରଘୁନାଥ ପୁଣି ଆକାଶକୁ ଚାହିଁଲା। ସୀତା ଆକାଶରେ, ଆକାଶର ମେଘରେ, ମେଘର ବିଜୁଳିରେ, ଆଉ ସୀତାର ପ୍ରେମ ବରଷାର ଧାରାରେ।

ରଘୁନାଥ ହୃଦୟକୁ ଚାହିଁଲା- ସେଠାରେ ମଧ ସୀତା। ହୃଦୟର ଧନ, ପ୍ରାଣର ସ୍ପନ୍ଦନ, ନୟନର ତାରା, ପ୍ରତି ରକ୍ତବିନ୍ଦୁ 'ସୀତା', 'ସୀତା' ଘୋଷୁଛି। ପ୍ରତି ଅଣୁ ପରମାଣୁର ସୀତାର ନାମ। ସୀତା ତାହାର– କି ଦାବିରେ?

ହାୟ ରଘୁନାଥ! ଧନହୀନ, ପିତୃମାତୃହୀନ, ଅନାଥ, ନିଃସମ୍ବଳ ନିଃସହାୟ। ସୀତାର ମାତୃକୃପାରେ ପାଳିତ। ସେହି ରଘୁନାଥ କି ସାହସରେ ଆଶ୍ରୟଦାତ୍ରୀ ସ୍ନେହଦାତ୍ରୀର କନ୍ୟାକୁ

ପତ୍ନୀରୂପେ ବରଣ କରି ପାରେ ? କଣ ଅଛି ତାର ଯୋଗ୍ୟତା, କଣ ଅଛି ତାର କ୍ଷମତା– ଲକ୍ଷପତିର କନ୍ୟା ସୀତାଙ୍କୁ ସେ ସହଧର୍ମିଣୀ କରିବ। ସୀତାର ପାଦତଳକୁ ଯେ ଅଯୋଗ୍ୟ, କି ଦାବିରେ ସେ ସୀତାକୁ ଆପଣାର କହିବ ?

କିନ୍ତୁ ରଘୁନାଥ ସୀତାକୁ ବରଣ କଲା– ସୀତା ଉଦ୍ଦେଶ୍ୟରେ ଆପଣାର ସର୍ବସ୍ୱ ଅର୍ପଣ କଲା। ରଘୁନାଥର ରୂପ-ସେ ତ ସୀତାର, ତାହାର ବିଦ୍ୟା– ସେ ତ ସୀତାର, ତାହାର ପ୍ରତିଭା– ସେ ତ ସୀତାର; ରଘୁନାଥ ସୀତାର, ସୀତା ରଘୁନାଥର- ତାହାରି ସ୍ନେହମୟୀ, ମଧୁମୟୀ, ସୌନ୍ଦର୍ଯ୍ୟମୟୀ ଦେବୀ; ଜୀବନର ସଂଜୀବନୀ, ପ୍ରାଣର ପ୍ରାଣ, ଅନ୍ତରର ଅମୃତ, ନୟନର ଆଲୋକ, ଆଶାକାଶର ପ୍ରଭାତୀ ତାରା।

କିପାଁ ନ ହେବ ? ପିତେଈ ନାନୀ କହିଛି, ସରସ୍ୱତୀ ଓ ବାବୁର ବ୍ୟବହାରରେ ପ୍ରକାଶ ପାଇଛି, ସୀତାର ଭାବ ବୁଝାଇଛି। ସରସ୍ୱତୀର ଏତେ ସ୍ନେହର କି କିଛି ଗୂଢ଼ ଅର୍ଥ ନାହିଁ ? ପିତେଈ ନାନୀର ରାମଚନ୍ଦ୍ର ଡାକ କି ନିରର୍ଥକ ? ବାବୁର ଥଟା ପରିହାସ କି ଅବାନ୍ତର ? ଏ ସବୁ ଯେ ମୁଖ ନ ଥାଇ ବାଚାଳ।

ସୀତା ତାର- ନିଶ୍ଚୟ ତାର, ଆଉ କାହାରି ହୋଇପାରେ ନାହିଁ। ସୀତା ତାହାରି ହୃଦୟର ରାଣୀ- ତାହାରି ପ୍ରେମକୁଞ୍ଜବାସିନୀ। 'ସୀତା ସୁନ୍ଦରୀ' ଅସ୍ଫୁଟ ସ୍ୱରରେ ଆବୃତ୍ତି କରୁ କରୁ ରଘୁନାଥ ଶଯ୍ୟା ଗ୍ରହଣକଲା।



# ନବମ ଅଧ୍ୟାୟ

ସେଦିନ ସନ୍ଧ୍ୟା ହେଲାଣି। କଚେରିର ଲୋକଗହଳି ଭାଙ୍ଗି ଗଲାଣି। ଗୁମାସ୍ତାମାନେ ମଧ୍ୟ ଖାତାପତ୍ର ଘେନି ଘରକୁ ଗଲେଣି! ବେଳ କାଳ ଦେଖି ଚଉଧୁରୀଙ୍କ ସଙ୍ଗେ ଦେଖା କରିବାକୁ ଅଇଲେ କାର୍ତ୍ତିକ ନନ୍ଦ, ସୋମନାଥ ରଥ, ମଣ୍ଡଳେଶ୍ୱର ଦାଶ, ଆଉ ଦୀନବନ୍ଧୁ ତିହାଡ଼ୀ।

ମଣ୍ଡଳେଶ୍ୱର ଦାଶ ରୋଡ଼ସେସ୍ ଇଲାକାରେ ତିରିଶ ଟଙ୍କାରେ କିରାଣି କାମ କରନ୍ତି। ତାଙ୍କ ପୁଅ ନବକିଶୋର ଦାଶ ଏ ବର୍ଷ ବି.ଏ. ପାଶ୍‌କରି ଘରେ ବସିଛି। ଦାଶଙ୍କ ଅବସ୍ଥା ସ୍ୱଚ୍ଛଳ ନୁହେଁ- ଯାହା ଜମି ଦଶ ବାର ମାଣ ଥିଲା, ପୁଅର କଲେଜ ପଢ଼ାବେଳେ ସେ ବିକି ସାରିଛନ୍ତି, କିନ୍ତୁ ପୁଅର ଚାକିରି ହେଲେ ଅବସ୍ଥା ବଦଳିଯିବାର ଆଶା। ବି.ଏ. ପାଶ୍ - ଡିପୋଟି ଗୋଟିଏ ନିଶ୍ଚୟ ହେବ, ଏ ଆଶାରେ ବୁଢ଼ାଙ୍କୁ ରାତିରେ ଭଲ ନିଦ ହେଉନାହିଁ। ପୁଅର ଦରମା ପାଞ୍ଚଶ, ସାତଶର ସ୍ୱପ୍ନ ଦେଖନ୍ତି; ଉଠି, ବ୍ରାହ୍ମଣୀକୁ କହନ୍ତି– "ହଇ ହେ ନବାବୋଉ, ନବାର ଆମର ପାଞ୍ଚଶ ଟଙ୍କାରେ ଚାକିରି ହେଲାଣି। ଠାକୁରେ ମତେ ସପନେଇଚନ୍ତି।" ନବା

ବୋଉ ପାନବୋଳରଙ୍ଗା ଅଧରରେ ହସର ଢେଉ ଖେଳେଇ ଦେଇକହନ୍ତି, ''ତା ହେଲେ ତ ଆଗ ଧରମା ସାଉର ଦି'ଶହ ଟଙ୍କା ଶୁଝା ହୁଅନ୍ତା। ତା ବଂଶରେ ନିଆଁ ଲାଗୁ–ପୁଅର ମୋର ପରୀକ୍ଷାବେଳକୁ ପଚାଶ ଟଙ୍କା ଦେଇ ଚାରି ବର୍ଷରେ ଆଣି ଦି'ଶହରେ ଥୋଇଲାଣି। ମହାପୁରୁ ଭଲେ ଭଲେ ଚାକିରଟାଏ ଯୋଗାନ୍ତୁ। ଏ.ସାଲ[୧] କରଜ ଶୁଝିବି, ଆର ସାଲ କୋଠା କରିବି।'' କଥାରେ କଥାରେ ପୁଅର ବିଭାକଥା ପଡ଼େ। ଚୌଧୁରୀ ଘର ସୀତାଟି ବଡ଼ ସୁନ୍ଦରୀ। ଧନ ଖୁବ୍ ଅଛି, ଆଉ ଏ ଗୋଟିକ ଝିଅ। ତାଙ୍କ ପୁଅ ଏଡ଼େ ବଡ଼ ପାଶଟାଏ କରିଛି– ସେମାନେ କଣ ଝିଅଦେବେ ନାହିଁ?

ଆଗ ଭିତିରିଆ[୨] ବୁଝାଶୁଝା ହେଲା; ପୁଣି ଜାତକ ଆଣି ଶୁଝେଇଲେ[୩]। ଏ କଥା ଚଉଧୁରୀଙ୍କ ଛଡ଼ା ଘରେ ଆଉ କାହାରିକି ଜଣା ନାହିଁ। ନବକିଶୋରଟି ଦେଖିବାକୁ ସୁନ୍ଦର–ଦୋପଟି[୪] ହବାର ଆଶା। ଆଉ ଚଉଧୁରୀଙ୍କର ବିଶ୍ୱାସ, ମଣ୍ଡଳେଶ୍ୱରର ଜମିବାଡ଼ି ଅଛି। ନୋହିଲେ, ପୁଅଟାକୁ ଏଡ଼େ ଯୋଗ୍ୟର କାହୁଁ କରନ୍ତା? ନାହାକ ଘଟକ[୫] ଲାଗି କଥାଟା ଛିଣ୍ଡିବା ଉପରେ। ତେଣୁ ପକା[୬] ଜବାବ ନେବାକୁ ଆଜି ଏମାନଙ୍କର ଆଗମନ। କାର୍ତ୍ତିକ ନନ୍ଦ ଚଉଧୁରୀଙ୍କୁ କହିଛନ୍ତି- ମଣ୍ଡଳେଶ୍ୱର ଖୁବ୍ ଥିଲାବାଲା। ସୋମନାଥ ରଥଙ୍କର ଚଉଧୁରୀଙ୍କ ସାଙ୍ଗରେ ବ୍ୟବସାୟଗତ ଆଳାପ ବହୁଦିନୁ ଅଛି। ଦୀନବନ୍ଧୁ ତିହାଡ଼ୀ ତ ସହଜେ ଏପଟେ ଥାନ୍ତି, ସେ ପଟେ ଥାନ୍ତି।

ଯଥାରୀତି କଥା ଆରମ୍ଭ ହେଲା। ଦେବା ନେବା କଥା ପଡ଼ିଲା। ପହିଲେ ଅନେକ ଯୁକ୍ତିତର୍କ ହେଲା ପରେ ଶେଷକୁ ମଣ୍ଡଳେଶ୍ୱର ପଚିଶି ଟଙ୍କାରୁ ଊର୍ଦ୍ଧ୍ୱକୁ ଉଠିଲେ ନାହିଁ। ତାଙ୍କ ପୁଅର ବି.ଏ. ପାଶ୍- ଆଜି ବୋଇଲେ କାଲି ଦୋପଟି ହବ। ଚଉଧୁରୀଙ୍କର ବହୁ ଭାଗ୍ୟରେ ଏପରି ଜୁଆଇଁ ମିଳିବା କଥା। ସେଥିରେ ପୁଣି ପଣ ବଳେଇଲେ ଚଳିବ? ବିଶେଷତଃ ଝିଅର ଆସି ବୟସ ହେଲାଣି! ଦାଶଙ୍କ କଥାରେ ହଠାତ୍ ଚଉଧୁରୀଙ୍କର ରାଗହେଲା। ସେ ବଡ଼ ପାଟିରେ କହିଲେ, ''କିଏ କହିଲା ମୋ ଝିଅର ବେଶି ବୟସ? ନଅ ବରଷର ଝିଅ ମୋର-ହାତରେ ଭାତ ଖାଇ ଶିଖି ନାହିଁ।''

କାର୍ତ୍ତିକ ନନ୍ଦ ବଡ଼ ଖାରା[୭] ଲୋକ। ସେ ଚଉଧୁରୀଙ୍କ କଥାରେ ଅବିଶ୍ୱାସ କରି ହସି ପକେଇ କହିଲେ, ''ସୀତା ତ ଆମ ଗଣେଶ ସାଙ୍ଗର। ଗଣେଶକୁ ଏଇକ୍ଷଣି ଚଉଦ ବର୍ଷ; ଛାଡ଼, ସେଥିରୁ କଣ ପାଇବ। ଆମ କୁଳରେ ତ ଏଥର –''

ତାଙ୍କ କଥାରେ ଚଉଧୁରୀଏ ବାଧା ଦେଇ ବଡ଼ ବଡ଼ ଆଖିକରି କହିଲେ– ''ଚଉଦ ବର୍ଷ? ମୋ ଝିଅ ନାଁରେ କଳଙ୍କ ରଟେଇବ[୮] କିହେ! ମତେ ଏକ ଘରିଆ କରିବା ବିଚାରରେ ଆସିଚ କି?'' ତାଙ୍କ ରାଗ ଦେଖି କାର୍ତ୍ତିକ ନନ୍ଦ ରାଗିଯାଇ କହିଲେ, ''ଏକି ଅପବାଦ--- '' ତାଙ୍କୁ ତୁନିତାନି କରି ସୋମନାଥ ରଥ କହିଲେ– ''ଥାଉ, ଯା, ଛାଡ଼ ସେ କଥାରୁ କି ମିଳିବ? ବର୍ତ୍ତମାନ ଯାହା କହିବାର କୁହ।'' ହେଲେ, ତାଙ୍କ କଥା କିଏ ଶୁଣୁଛି? ଚଉଧୁରୀଏ

(୧) ବର୍ଷ, (୨) ପ୍ରଘଟ ନକରି, ଗୋପନରେ, ଅନ୍ୟମାନଙ୍କ ଅଜାଣତରେ, (୩) ଶୁଭାଶୁଭ ବିଚାର, ମେଳ, (୪) ଡେପୁଟି, ହାକିମ ଚାକିରି, (୫) ଜୋଟକ, (୬) ନିର୍ଦ୍ଦିଷ୍ଟ, ସ୍ପଷ୍ଟ, (୭) ଖର, ରାଗି, (୮) ଅପମାନ ସୂଚକ ଓ ନିନ୍ଦା କଥା କହିବୁଲିବା।

ରାଗରେ ଫୁଲିଉଠି କହିଲେ, ''ପଚିଶିଟା ଟଙ୍କାକୁ ଝିଅ ବିକିବି ? ନାହିଁ ନ ଥିଲା– ଘଙ୍କ ଘର ଝିଅ ହେଇଚି, ନଈ ପୋଖରୀକି ଡେଇଁ ପଡୁଚି ? ମଲା ମୋର ଦୋପଟି, ପେଟରେ ଓଦାକନାଦିଆ ପାଠୁଆ ବର ତ ହାଟରେ ପଡ଼ି ଦାଣ୍ଡରେ ଗଡ଼ ଗଡ଼ଉଛନ୍ତି।''

ଏହି ସୁଦୀର୍ଘ ମନ୍ତବ୍ୟଟା କିନ୍ତୁ ଦାଶଙ୍କୁ ବଡ଼ ବାଧିଥିଲା। ସେ ଉଠିପଡ଼ି ଦୀନବନ୍ଧୁଙ୍କୁ ଭିଡ଼ି କହିଲେ– ''ଚାଲ, ଚାଲ, ଏ କଳି କରିବା ଠାନ[୧] ନୁହେ। ଆମେ ଅଇଲେ ଭଲେ ଭଲେ, ଏବେ ଏ କି କଥା କାଢୁଛନ୍ତି ?'' କିନ୍ତୁ ତାଙ୍କ କଥାକୁ କାନଉଛି[୨] କିଏ ? ଚଉଧୁରୀଙ୍କ କଥାରେ କାର୍ତ୍ତିକ ନନ୍ଦେ କହିଲେ, ''ହଇକିଏ ଚଉଧୁରିଏ, ଏଡ଼େ ଟାଣ କାହା ଆଗରେ ? ଚଉଦ ପୁରୁଷର ଖବର ମତେ ଜଣା। ଝିଅ ଦବ କହି ଜାତକ ଖଡ଼ି ଶୁଝେଇ ଏବେ ଟଙ୍କାରେ କଥା ଛିଣ୍ଡାଉଚ ? ପାଁଶ ଟଙ୍କା ଦେବୁଁ, ଝିଅ ନବୁଁ- ଭଲା କଥା !''

ଏଥର ଚଉଧୁରୀଙ୍କ ମୁହଁରୁ ଆଳଙ୍କାରିକ ବଚନ ବାହାରିଲା। ସେଥିରେ ସଭିଏଁ ମିଶିଗଲେ। ବୃଥା ଘର ଆଡ଼ର ନିରୀହ ବ୍ୟକ୍ତିମାନଙ୍କୁ ନାନା କୁତ୍ସାକରି ବ୍ରାହ୍ମଣର ମହତ୍ତ୍ୱ ଦେଖାଇ ଖୁବ ଝଟାପଟା ଲାଗିଲା। ମଣ୍ଡଳେଶ୍ୱର ତିରିଶି ଟଙ୍କିଆ କିରାନି। ତାଙ୍କୁ ବାଛୁନି ଚଉଧୁରୀଏ କପଟ ହାସ୍ୟରେ କହିଲେ, ''କିରାଣି ବାବୁଙ୍କ ପୁଅକୁ ଜୁଆଇଁ କରିବି ? ସାତ ପୁରୁଷରେ ମାଣେ ବିଲ ନାହିଁ। ନା ଅଛି ଘରେ କନା, ନା ଅଛି ଦାନା ! ସେ ପୁଣି ଦବ ପାଁଶ ଟଙ୍କା।'' ମଣ୍ଡଳେଶ୍ୱର ବି ଭଣା ନୁହନ୍ତି। ସେ ଉତ୍ତେଜିତ ହୋଇ କହିଲେ, ''ଚଉଦ ପୁରୁଷର ଖବର ଜଣା ରେ ଶିକରା। ଅଦାବିକା, ସାରୁବିକା ବ୍ରାହ୍ମଣ, ଝିଅ ବିକି ସମ୍ପତ୍ତି କରିଚୁ; କିଏ ତମ ଘରେ ପାଣି ଛୁଏଁ ? ପାଁଆଶ ଟଙ୍କା ଦେଇ ବୋହୂ କରିବି ? ଆମ ଗରଜ ? ମୋ ପୁଅ ଗୋଡ଼ ତଳକୁ ଗଣ୍ଡା ଗଣ୍ଡା କନ୍ୟା।''

''ମୁଁ – ମୁଁ ଝିଅ ବିକିଚି ?'' କହି ଚଉଧୁରୀଏ ରାଗରେ ଦାନ୍ତଭିଡ଼ି ଉଠିପଡ଼ି ମଣ୍ଡଳେଶ୍ୱରଙ୍କୁ ହାତ ଚଳେଇବାକୁ[୩] ବାହାରି ପଡ଼ିଲେ। କଳହ ତୁମୁଳ ଆକାର ଧାରଣ କଲା ଦେଖି ସୋମନାଥ ଦୁଇ ପକ୍ଷକୁ ଶାନ୍ତ କରି କହିଲେ- ''ଆଛା, ଦାଶେ ! ଏ ତମର କଣ ଗୋଟାଏ ହେ ! ଆମକୁ ଭଲଲୋକ କରି ଆଣି ଏବେ ପାଇକଛା ଭିଡ଼ିଲଣି ଯେ।''

ମଣ୍ଡଳେଶ୍ୱର ରାଗରେ ସଁ ସଁ ହୋଇ କହିଲେ– ''ହାଟ ମଝିରେ ବ୍ରହ୍ମଜ୍ଞାନୀ ଚଉଧୁରୀ ବୋଲେଇଚି–'' ଏହା ପରେ ନାନା ଅଶ୍ରାବ୍ୟ ଭାଷାରେ ଉଦ୍‌ଗାର କରି କହିଲେ, ''କିଏ କାହାର ଖାଏ, ନା ଧାରେ ? ତମେ ସିନା ତାଙ୍କ କତିରେ ଦି'ମାଣ ଜମି ବନ୍ଧା ପକେଇଚ, ତମେ ଡରିବ ? ଆରେ ମୁଁ କିଆଁ ଡରିବି– କାହା ବାପ ଅଦ୍ଧାର ଖଞ୍ଜା[୪] ଖାଏ କି ? ଯା' ଝିଅକୁ ପାଆଁଶ ଟଙ୍କା ଦେବି ? ଆଉ ମିଳିବେ ନାହିଁ- ସଂସାରରେ ଝିଅ ନାହାନ୍ତି। ଏଠି ଏତେ ଅପମାନ !'' ଏଥର ରଥେ ରାଗିଲେ– ''କଣ, ମୋ ଜମି ଦି'ମାଣ ବନ୍ଧା[୫] ତମେ ମୁକୁଳେଇବ କି ହେ ? ଯେମିତି ଦି'ମାଣ ବନ୍ଧା, ସିମିତି କୋଡ଼ିଏ ମାଣ ମହଜୁଦ୍ ଅଛି;

(୧) ଥାନ, ସ୍ଥାନ,ଜାଗା, (୨) ଶୁଣୁଛି, (୩) ମାରିବାକୁ, (୪) ଦାନ, (୫) ବନ୍ଧକ, କୌଣସି ବ୍ୟକ୍ତି ପାଖରୁ ଋଣ ଆଣି ପରିଶୋଧ ନକରିବା, ନିଜର ସମ୍ପତ୍ତି ଭୋଗ କରିବାପାଇଁ ଦେବା

ଆଉ ତମ ପରି ଦିନ ଦି'ପହରେ କଂସା ଥାଳି ବନ୍ଧା ପକେଇ ନାହିଁ ତ? ତମ ମୁହଁ ଦିଶେ–ପାଅାଁଶ ଟଙ୍କା ଦବ?''

ଚଉଧୁରୀଏ କହିଲେ ''ଏ ବାମନ ହେଇ ଚାନ୍ଦକୁ ହାତ। ଆମ ସଙ୍ଗେ ବନ୍ଧୁତା କରିବାକୁ ଅଇଲେ। କାହିଁ ଥିଲେ ନଳ, ନୀଳ, ସୁଗ୍ରୀବ-କାର୍ତ୍ତିକ ନନ୍ଦେ ମତେ ଭସାଉଥିଲେ। କି କପଟ! କି କପଟ!''

''ଆରେ ଯା ରେ ଝିଅବିକା, ଛୋଟ ଲୋକ। ପଇସା ଦେଖେଇ ହଉଚୁ?'' ଏହା କହି କାର୍ତ୍ତିକ ନନ୍ଦ ମିଶିଗଲେ। ବହୁ କଷ୍ଟରେ ସମସ୍ତଙ୍କୁ ତୁନିତାନି କରି ଦୀନବନ୍ଧୁ ବନ୍ଧୁମାନଙ୍କ ସଙ୍ଗରେ ଘରକୁ ଫେରିଲେ। ଚଉଧୁରୀଏ ମୁହଁ ହାଣ୍ଡିକରି ଅନ୍ତଃପୁରକୁ ଗଲେ। ବାଟଯାକ ତାଙ୍କ ପାଟି ଶୁଭୁଥାଏ।

କିଛି ଦିନ ଗଲା। ଚଉଧୁରୀଏ ଭାତ ଖାଇ ବସିଛନ୍ତି, ସୁନା ନାଁ --- ବିଲେଇଟିକି ବିଞ୍ଚଣାବାଡ଼ିରେ ତଡ଼ିଦେଇ ସରସ୍ୱତୀ ବେଳବୁଝି କଥାଟା କହି ବସିଲେ– ''ହଇହେ, କଣ କଲ? ସୀତା ଏତେ ବଡ଼ ହେଲା, ବାହା ସାହା କଥା ମନକଲ ନାହିଁ? ଏ କିମିତି କଥା? କୁଳକୁ କଳଙ୍କ– ଦାଣ୍ଡକୁ ଲାଜ! ଏ ଥର ଭଲା ହାତକୁ ଦି'ହାତ କରିଦିଅ।''

ଚଉଧୁରୀ ରୁକ୍ଷଭାବରେ କହିଲେ, ''ମୁଁ ତ ଦିନରାତି ଚେଷ୍ଟାରେ ଅଛି। ଆମର ଏ ଦଶା ହେଇ ନ ଥିଲେ, ସୀତାକୁ ତ କେଉଁ କାଳୁ ହାତକୁ ଦି'ହାତ କରିସାରନ୍ତିଣି। ଯେଉଁଟା ବୁଝୁଛି, ଅଲକ୍ଷଣୀ କପାଳକୁ ସେଇଟା ମନ୍ଦ। ଟଙ୍କା ତ ଠିକଣା ମଳୁନାହିଁ।''

''କେତେ, କେତେ କହୁଚ?''

''ତମେ କେତେ କହୁଚ, କହନା''

ପାନଖିଲଟିଏ ମୋଡୁ ମୋଡୁ ସରସ୍ୱତୀ କହିଲେ, ''ମୋ କଥାରେ କଣ କଥା? ଟଙ୍କା ଦୁଇଶ ଖଣ୍ଡେ ହେଲେ ହବ ନା?''

ଚଉଧୁରୀ ଭାତଗୁଣ୍ଡାଟା ହାତରେ ଧରିଥିଲେ। ଟଙ୍କା ଦୁଇଶ କଥା ଶୁଣି ରାଗିଯାଇ ଥାଳିରେ ଛିଞ୍ଚାଡ଼ି ଦେଲେ। କହିଲେ, ''ସୀତିଆକୁ ଦୁଇଶ ଟଙ୍କା ଜମାଦେଇ ହାତଗୋଡ଼ ବାନ୍ଧି ମହାନଦୀରେ ଭସେଇ ଦେଇ ଆସ। ବାପ ଲକ୍ଷପତି, ନାଁ ହବ– ଦି'ଶଟା ଟଙ୍କାରେ ଝିଅ ବିକିଚି। ଧିକ୍ ଧିକ୍, ବିନା ଚାରିଶ ଛ'ଶ ନ ହେଲେ ତ ମୁଁ ଆଦୌ ଦେବି ନାହିଁ। ମନେ ନାହିଁ କି' ସାବି ବାହାବେଳକୁ ବରକୁ କିମିତି ଦିପଟା ହରବର କରିଥିଲି? ତିନିଶ ଟଙ୍କା ନଗଦ ଥୋଇଲା। ତେବେ ବରଣ କରିଦେଲି। ତମେ ମାଇପି ଲୋକ କଣ ବୁଝିବ? ଆମର ବାହ୍ମଣିଆ ଘର– ଯେତେ ଟଙ୍କା ପଣ, ଝିଅର ସେତିକି ମୂଲ। ଖୁଆଇ ପିଆଇ କଣ ମିଛରେ ଏଡ଼େଇ ଏଡ଼େଟା କଲି? କଡ଼ାଗଣ୍ଡା ବୁଝିନେବି।'' ଏହା କହି ଗର୍ବୋଲ୍ଲାସରେ ହସ ପକାଇଲେ,

ପରେ କହିଲେ- ''ସେ ଦିନ କାର୍ତ୍ତିକ ମଣ୍ଡଳାଙ୍କୁ ଗଣା ଶୋଧିଚି ? ତାଙ୍କ ଦିହାନ୍ତିରେ ସେ ଭୁଲିବେଟିକି ?''

ସରସ୍ୱତୀଙ୍କ ଛାତି ଭିତର ଦାଉଁକିନି ହୋଇଉଠିଲା। ତାଙ୍କର ଆଶା ସଫଳ ହେବ କି ? ଆଖି ଆଗରେ ଗୋଟିଏ ଅତି ସୁନ୍ଦର ଯୁବକ ମୂର୍ତ୍ତି ଭାସିଉଠିଲା। ମୁହୂର୍ତ୍ତେ, ଦୁଇ ମୁହୂର୍ତ୍ତ କଳ୍ପନାବଳରେ ଯୁବକ ପାର୍ଶ୍ୱରେ ଦରଫୁଟା ଫୁଲ ତୁଲ୍ୟ ସୀତା ମୂର୍ତ୍ତିଟି ଠିଆହେଲା। ଏ କଣ ? ଏମାନେ କିଏ ? ଏମାନେ ଦେବଲୋକର, ନା ଗନ୍ଧର୍ବଲୋକର ? ନା, ନା, ଏମାନେ ମର୍ତ୍ତ୍ୟ ରାଜ୍ୟର ସୀତା ଓ ରଘୁନାଥ।

ସରସ୍ୱତୀ ମୁଗ୍ଧ ହେଲେ, ଅତି ଧୀର ସ୍ୱରରେ କହିଲେ, ''ରଘୁନାଥକୁ ଦେଖିବ ?''

ଚଉଧୁରୀ ଟିକିଏ କାଶିଉଠି କହିଲେ, ''ତାକୁ ଆଉ ଦେଖି ନାହିଁ ? ଆମ ବାଧିକା ସମୟରେ ପିଲାଟା ବଡ଼ ଖଟିଚି। ତା କଥା କାହିଁକି ବୋଇଲ କହିଲ ?''

''ଅଳେଇଚ ଆମର ତାକୁ ପୁଅ କରିଚନ୍ତି, ଜାଣିଚ ତ ? ସେ ଗଲାବର୍ଷ ପାଶ କରି ପ୍ରଥମ ହୋଇଚି। କଲେଜରେ ପରୀକ୍ଷା ଦେଇଚି।''

ରଘୁନାଥର ପ୍ରଶଂସାରେ ବାଧାଦେଇ ଚଉଧୁରୀଏ କହିଲେ– ''ସବୁ ଜାଣେ– ତା ବଂଶ ଭଲ, ପିଲାଟା ଚଲାକ ଚତୁର, ସବୁ। ଏକା ତାହାର କିଏ ଅଛି ? ପର ଓଳିରେ ଦିନ ଯାଉଚି, ପୁଣି ଆମ ଗୁମାସ୍ତାର ପୁତୁରା।''

''ନା ନା, ଜଗନ୍ନାଥ ତାକୁ ପୁଅ କରିଚନ୍ତି। ତାଙ୍କର ଆଉ କିଏ ଅଛି ? କବିରାଜି କରି ଗୁଡ଼ାଏ ସଂପରି କଲେଣି। ଗାଁରେ କୋଠାବାଡ଼ି କରିଚନ୍ତି। ରଘୁନାଥର ହୃଷୀକେଶଙ୍କ ସଙ୍ଗେ ସମ୍ପର୍କ କଣ ? ଯାହାର ବାପ ମା ନାହିଁ, ତାର ଆଉ କିଏ ଅଛି ?''

ଚଉଧୁରୀ ଟିକିଏ ମୁରୁକି ହସାଦେଇ କହିଲେ– ''ତମ ଇଛାଟା ମୁଁ ବୁଝିଚି, ଦେଖାଯିବ। ଏତ ହାତକତି କଥା, ପୁଣି ଆମର ବୋହୂର ଭାଇଘର, କ୍ଷତି କଣ ? ଜଗନ୍ନାଥ ଆଗରୁ ସମ୍ମୁଦୀ–''

ସରସ୍ୱତୀଙ୍କ ମନ ଆନନ୍ଦରେ ପୂରିଗଲା, ଭାବିଲେ ସ୍ୱାମୀର ସମ୍ମତି ପାଇଗଲେ। ବହୁକାଳ ଆଗରୁ ସେ ନାହାକ ଡକେଇ ଖଡ଼ିପାଠ କରିଥିଲେ। ସେଥିରେ ସତ ହଉ ମିଛ ହଉ, ନାହାକ ସବୁ ଭଲ କହିଥିଲା। ସୀତା ଅହ୍ୟରାଣୀ, ଭାରି ସୁଲକ୍ଷଣୀ, ପୁଣି ତାର ରାଶି ନକ୍ଷତ୍ର ଭାର କିଛି ଭଲ। ରଘୁନାଥର ତ କଥା ଛାଡ଼– ରାଜପୁତ୍ରର ଲକ୍ଷଣ। ତାଠି ଟିକିଏ ଜନ୍ମକାଳରେ ଅଶୁଭ ଥିଲା– ଚନ୍ଦ୍ର ଟିକିଏ ଅଶୁଭରେ ଥିଲେ; ତେଣୁ ଏତେ ଦୁଃଖ ଘଟିଲା। ଏଣିକି ସବୁ ଭଲ। ଏହିପରି ସତ ହଉ, ମିଛ ହଉ ଅଗଣି ନାହାକ ନାନା ଶ୍ଳୋକ ପାଞ୍ଜି ବିଡ଼ାକରୁ ଗାଇ ନିଜ କଥାକୁ ପ୍ରମାଣ କରିଥିଲେ।

ଏଣେ ସୀତାର ବୟସ ଆଉ କେତେ ଲୁଚେଇବେ। ଚଉଦ ବର୍ଷକୁ ବା କେତେ ନଅ ଦଶ କହି ଜାତିଙ୍କ ଆଖିରେ ଧୂଳିଦେବେ? ବାପ ମା ତ ସବୁ ଜାଣନ୍ତି।

ରଘୁନାଥ ବି.ଏ. ପାଶ କରିବ, ଓକାଲତି ପଢ଼ିବ, ଘରଜୁଆଁଇଁ ହେବ। ସେତେବେଳେ ଆଉ କିଏ ଗୁମାସ୍ତାର ପୁତୁରା ବୋଲି କହିବ? ଓକିଲଟାଏ ହେଲେ ଏତେ ବିଷୟ ସମ୍ପତ୍ତି ବୁଝିବ। ବାବୁ ତ ଏକପ୍ରକାର ଅଯୋଗ୍ୟ। ଗୋଟିଏ ବୋଲି ପୁଅ, ଗେଲବସରରେ ବଢ଼ିଛି- ଜମିଦାରୀର ହିସାବ ପତ୍ର ତା ମୁଣ୍ଡରେ କୋଉଁଠି ପଶୁଛି? ପୁଣି ବୁଢ଼ାଙ୍କର ନାତି ହେଲାଣି- ଲକ୍ଷ୍ମୀପ୍ରସାଦ ତାଙ୍କ ନୟନର ମଣି। ସାତ ପାଞ୍ଚ କଥା ଭାବି ଜଗନ୍ନାଥଙ୍କ ପ୍ରସ୍ତାବରେ ବୁଢ଼ାର ଆପତ୍ତିର କାରଣ ବିଶେଷ କିଛି ଦେଖାଗଲା ନାହିଁ। ସମ୍ବନ୍ଧରେ ଟଙ୍କା କଥା ବି ଉଠିଲା ନାହିଁ। ତଥାପି ଜଗନ୍ନାଥ ଟଙ୍କା ଦୁଇଶ ଖଣ୍ଡେ ଦେବେ ଶୁଣି ମହାନ୍ ଖୁସିଟାଏ ହୋଇଗଲେ।

କଥାଟା ଗୁପ୍ତ ରହିଲା ନାହିଁ। ସରସ୍ୱତୀ କହିଲେ ପିତେଇ ନାନୀକୁ। ପିତେଇ ନାନୀ ପରିହାସ ରହସ୍ୟରେ ଭାବୀ ବର କନ୍ୟାଙ୍କୁ ଜଣାଇଦେଲା। କଥାଟା ପ୍ରଚାର ହୋଇଗଲା ନବ ଆଶା, ନବ ଆନନ୍ଦରେ ଉତ୍‌ଫୁଲ୍ଲ ସୀତା ଓ ରଘୁନାଥର ଦିନ କୁଆଡ଼େ ବହି ଯାଉଥିଲା କିଏ ଜାଣେ?

ସେ ଆନନ୍ଦରେ ଭାଗୀ ଥିଲେ ଦୁଇଜଣ- ସରସ୍ୱତୀ ଓ ପିତେଇ ନାନୀ। ସରସ୍ୱତୀ ମା। ମାର ପ୍ରାଣ କଣ ପିଲାର ମର୍ମବେଦନା ବୁଝେ ନାହିଁ? ସରସ୍ୱତୀ ସୀତାର ମର୍ମଟିକକ ବୁଝିଥିଲେ। ସୀତା କହୁ ନ କହୁ। ଆଖିରେ ତାର ପ୍ରକାଶ ପାଉ ନପାଉ, କାର୍ଯ୍ୟରେ ତାର ଜଣା ପଡୁ ନ ପଡୁ, ସୀତା ଯେ ରଘୁନାଥ ପ୍ରତି ଏକାନ୍ତ ଅନୁରକ୍ତା, ଏ କଥା ଭାବିଲେ ସୁଦ୍ଧା ସରସ୍ୱତୀଙ୍କର ଆନନ୍ଦ ହେଉଥିଲା। ସେ ଉଭୟର ଭାବୀ ଜୀବନର ସୁଖ, କଳ୍ପନା ନୟନରେ ଦେଖୁଥିଲେ।

ଆଉ ଦେଖୁଥିଲା ପିତେଇ ନାନୀ। ସନ୍ତାନହୀନା ପିତେଇ ନାନୀ ରଘୁନାଥ ଗତପ୍ରାଣା। ରଘୁନାଥ ଯଦି ତାହାରି ଗର୍ଭରୁ ଜନ୍ମ ପାଇଥାନ୍ତା, ସେ କଣ ଏଥୁଁ ବଳି ପ୍ରେମ କରୁଥାନ୍ତା? ବନ୍ଧ୍ୟାର ମାତୃତ୍ୱ-ତୃଷ୍ଣା ମେଣ୍ଟାଇବାକୁ ସତେ ଯେପରି ରଘୁନାଥର ଜନ୍ମ। ଦିନେ ରସକଳା ରଘୁକୁ କୋଳରେ ଧରି ପୁତ୍ରସୁଖ ପାଉଥିଲେ। ଆଜି ପିତେଇ ନାନୀ ସେ ସୁଖରେ ସୁଖୀ। ରସକଳା ଥିଲେ ସଧବା। ସନ୍ତାନର ସମ୍ଭାବନା ଥିଲା, ସେ ମଧ ଚାରି ସନ୍ତାନର ମା ହୋଇଥିଲେ। କିନ୍ତୁ ପ୍ରୌଢ଼ ବିଧବା ପିତେଇ ନାନୀର ରଘୁନାଥ ଏକମାତ୍ର ବାତ୍ସଲ୍ୟର ପାତ୍ର। ସେ ମୁହଁରେ ଯାହା ନ କହିଛି, କାର୍ଯ୍ୟରେ ତାହା ଜଣା ପଡ଼ିଛି। ହାଣ୍ଡିଶାଳ କଣରେ ଛୋଟ ପାଚିଆରେ ଭୁଜା ଉଖୁଡ଼ା, ସାନ ରେକାବିଟିରେ ପିଠା, ଦୁଧସର, ପାଚା କଦଳୀ ଯେ ନିତି ଗୋଟିଏ ସ୍ନେହମୟ ବାଳକର ଆକାଙ୍‌କ୍ଷିତ ଆଗମନପାଇଁ ଭୋଗପରି ଥୁଆହୋଇଥାଏ, ସେ କଣ ବୃଥା? ରଘୁନାଥ ସବୁ ବୁଝେ। ସେ ଥରେ ସତ୍ୟବାଦୀ ଯାଇଥିଲା। ବୁଢ଼ୀପାଇଁ ତୁଳସୀ

ମାଳଟିଏ ଆଣିଥିଲା। ତା ହାତରେ ଦେଲାବେଳେ ବୁଢ଼ୀ ତାକୁ କୋଟି ପରମାୟୁର ଆଶୀର୍ବାଦ କରୁ କରୁ ଆନନ୍ଦରେ କାନ୍ଦିପକେଇଲା। ସୀତା ଓ ବାବୁ କତିରେ ଠିଆ ହୋଇଥିଲେ, ହସି ହସି ପକେଇଲେ। ବୁଢ଼ୀ ତାକୁ ପରିହାସରେ ପଦେ କହିବାକୁ ଛାଡ଼ିଲା ନାହିଁ। ରଘୁନାଥ ସେ ପରିହାସ ଶୁଣି ଦାଣ୍ଡଘରକୁ ପଳାଇଲା। ସେ ପିଠେଇ ନାନୀ ଆଜି ସୀତା ଓ ରଘୁନାଥର ଭାବୀ ମିଳନ ଆଶାରେ ସୁଖୀ ହେବ ନାହିଁ ତ, ଆଉ ହେବ କିଏ? ଏହି ମିଳନ-ନାଟକ ଯେ ସେହି ନିଜେ ଅଧେ ରଚନାକରିଛି।



## ଦଶମ ଅଧ୍ୟାୟ

ଦିବାକର ମିଶ୍ର ପଦ୍ମପୁର ଗାଁର ଜମିଦାର। ପଦ୍ମପୁର, ହରିପୁର, ମାହାଙ୍ଗା, ଅସୁରେଶ୍ୱର, କାଠାହାର, ବହୁକୁଦରେ କିଏ ନ ଜାଣେ ବୋଲି ଏପରି ନାହିଁ। ତାଙ୍କର ମର୍ହଟୀ[୧] ଅମଳର କୋଠଗାଁ ସେ ମୁଣ୍ଡକୁ ଦିଶେ। ବଡ ଖାନ୍‌ଦାନ ଘର-ଚଉଦ୍ ପୁରୁଷ ଜମିଦାର। ଏବକାଳକୁ ତ କେତେ ଊଣା ହେଲାଣି। ସମୟରେ ଷାଠିଏ କୋଶର ମାଲିକ ଥିଲେ। ଘର ଚଳୁଥିଲା ରଜାଘର ଲାଖେ[୨]। ଦାନ ଧ୍ୟାନରେ ତାଙ୍କ ବଂଶର ବିଶେଷ ଖ୍ୟାତି ପୂର୍ବାପର ଅଛି। ଲୋକେ ତାଙ୍କର ନାଁ ଶୁଣିଲେ ଧନ୍ୟ ଧନ୍ୟ କହନ୍ତି। ଆଜିକାଲି ସେ ବଂଶରେ ତିନି ଶାଖା ହୋଇଛି; ବଡ଼ ଶାଖାରେ ପିତା ତ୍ରିଲୋଚନ ମିଶ୍ରଙ୍କର ଯୋଡିଏ ପୁଅ, ଆଉ ଗୋଟିଏ ଝିଅ। ସାନ ପୁଅ ସୁଧାକର ଯୁବାକାଳେ ମରିଛନ୍ତି। ଜ୍ୟେଷ୍ଠାଂଶରେ ଏବେ କେବଳ ଦିବାକର, ତାଙ୍କ କକେଇ ଯୋଡିକ ଭିତରୁ ଜଣେ ନିଃସନ୍ତାନ। ସେ ସୁଧାକରକୁ ପୁଅ କରି ନେଇଥିଲେ। ସେ ବି ଗଲେ, ସୁଧାକର ବି ଗଲେ। ତାଙ୍କ ବାଣ୍ଟତକ[୩] ଦିବାକର ନେଇଛନ୍ତି। ସାନ କକେଇ ଲକ୍ଷ୍ମଣଙ୍କର ଏକାକେ ଚାରି ପୁଅ, ହେଲେ ତାଙ୍କର ଯାଙ୍କର ଚାହାଁଚାହିଁ[୪] ନାହିଁ। ଅତଏବ ସାମନ୍ତ ଶ୍ରୀ ଲୋକନାଥ ମିଶ୍ରଙ୍କର ଉତ୍ତରାଧିକାରିରୂପେ ଦିବାକର ମିଶ୍ର ସବୁଆଡେ ପରିଚିତ।

ତାଙ୍କ ପିତାଙ୍କର ଆଧୁନିକ ରୁଚି ପ୍ରତି ବଡ ଆଦର ଥିଲା। ତେଣୁ ପୁଅ ଦିହିଁଙ୍କୁ ସେ ଅନେକ ପାଠ ପଢେଇଥିଲେ। ଦିବାକର ଏମ.ଏ.ପାଶ କରିଛନ୍ତି। ସେ କଲିକତାର ଇଉନିଭରସିଟି କଲେଜରେ ପଢୁଥିଲେ। ତାଙ୍କପାଇଁ ସାହେବ ମାଷ୍ଟର ଥିଲେ। ଲୋକେ କହନ୍ତି, ସେଠି ପଠାଣ ବବର୍ଚ୍ଚି ମଧ ଥିଲା। ସେ କଥା ସତ କି ମିଛ, ଜଣା ନାହିଁ, କିନ୍ତୁ ଜମିଦାର ବାବୁ ପୂରା ଆଧୁନିକ। ତାଙ୍କର କଥା ପଦ ପଦକେ ଇଂରାଜୀ। ଓଡିଆ କହିଲାବେଳେ ଅଧାବଙ୍ଗଳା। ପାଟିରୁ ବାହରି ପଡେ। ସେ ଅଧିକାଂଶ ସମୟ କଟକ, ପୁରୀ, କଲିକତା, କାଶୀରେ କଟାନ୍ତି। ତାଙ୍କର ବର୍ତ୍ତମାନ ବୟସ ମୋଟେ ତିରିଶ ବର୍ଷ। ଏଥିମଧରେ ଦୁଇ ଥର ବିବାହ କରିସାରି ତୃତୀୟ ବିବାହରେ ମନ ବଳାଇଛନ୍ତି। ଶୁଣାଯାଏ, ପ୍ରଥମ ସ୍ତ୍ରୀ ତାଙ୍କର ମୃତା, ଦ୍ୱିତୀୟା ରୋଗିଣୀ, ଅତଏବ ତତୀୟ ବିବାହରେ କି ଆପତ୍ତି?

(୧) ପୁରୁଣା, ମରହଟ୍ଟା ଶାସନ କାଳୀନ, (୨) ପରି, ସଦୃଶ, (୩) ଭାଗ, (୪) ସୁସଂପର୍କ

ପରିବାର ମଧ୍ୟରେ ବର୍ତ୍ତମାନ ମା ବୁଢ଼ୀଟି, ବିଧବା ଭଉଣୀ 'ମଞ୍ଜୁରୀ' ନିଜେ ଦିବାକର ମିଶ୍ର ଓ ତାଙ୍କର ପତ୍ନ ଭାର୍ଯ୍ୟା ଶଙ୍କରୀ, ପାଠରେ ପଚାରି ପାରନ୍ତି ସନ୍ତାନ ? ସେ ଆଶା ଆପଣଙ୍କର ବୃଥା। ମିଶ୍ରଙ୍କର ପ୍ରଥମ ପତ୍ନୀ ଚନ୍ଦ୍ରାବଳୀଙ୍କର ଦିଓଟି ଅକାଳଜାତ ସନ୍ତାନ ଛଡା ମିଶ୍ରଙ୍କ ପିତୃଦ୍ୱର ସୁଖଦେବୀ ସକାଶେ, ତାଙ୍କର ବିଶାଳ ପ୍ରାଙ୍ଗଣ ଆଲୁଅ କରିବା ସକାଶେ ଆଉ କୌଣସି ପିଲାପିଲିର ଆବିର୍ଭାବ ହୋଇନାହିଁ ।

ପ୍ରଥମ ପତ୍ନୀ ବର୍ତ୍ତମାନ ସ୍ୱର୍ଗରେ। ଲୋକେ କହିବାରେ ଶୁଣାଯାଏ, "ଆଗ ସାଆନ୍ତାଣୀ ରୂପରେ ଅପ୍‌ସରୀଟି ଥିଲେ।" ତାଙ୍କୁ ଯେ ଦେଖିଛନ୍ତି, ସେ କହନ୍ତି, ବୋହୂଟି ଲକ୍ଷ୍ମୀପ୍ରତିମା- ତାଙ୍କ ମୃତ୍ୟୁରେ ଜମିଦାର ଉଆସରୁ ଲକ୍ଷ୍ମୀ ଛାଡି ଗ୍ରାମର ଗୋବରୀ ଆଈ, ଦୁଲଣା ମା, ବାସୁଆ ମାଉସୀ ଏ କଥା ବିଶ୍ୱାସ କରିବାକୁ ନାରାଜ। ତାଙ୍କ ମତରେ ସେ ସ୍ୱାମୀର କଦାଚରଣ ଲାଗି ଦୁଃଖରେ ଆତ୍ମହତ୍ୟା କରି ମରିଛନ୍ତି। ଯଦି ଏ କଥା ସତ୍ୟ ହୋଇଥାଏ, କାହିଁ ତାଙ୍କ ମୃତ୍ୟୁରେ ଦିବାକରଙ୍କର ତ କୌଣସି ଅନୁଶୋଚନାର ସୂଚନା ମିଳେ ନାହିଁ; ବରଂ ତାଙ୍କ ମୃତ୍ୟୁର ଚାରି ମାସ ପରେ ସେ କୋଠଦେଶର ରାହାଙ୍ଗ ପ୍ରଗଣାରୁ ହରିଚରଣ କରଙ୍କର ସାନ ଝିଅ ଶଙ୍କରୀକୁ ବିବାହ କରି ଘେନି ଆସିଲେ।

ଶଙ୍କରୀ ଶ୍ୟାମଙ୍ଗୀ, ସୁନ୍ଦର ଗଠନ, ବଡ କୋମଳ ପ୍ରକୃତି, ଆଉ ଭୀରୁ। ଦୁଃଖୀ ଘର ଝିଅ। ସ୍ୱାମୀ ଶାଶୂଙ୍କୁ ହାଡ଼େ ଡରିଥାନ୍ତି। ତାଙ୍କଠାରେ ପୂର୍ବରୁ କିଛି ରୋଗ ନ ଥିଲା। ଘର କରିବାର[1] ବର୍ଷକ ମଧ୍ୟରେ ନାନା ରୋଗ ବାହାରି ପଡିଲା। ଡାକ୍ତର କବିରାଜ ଡାକି ଡାକି କଟକ କଲିକତା ନିଆନେଇ କରି ଦିବାକରଙ୍କ ମନ ଛାଡିଗଲା। ରୋଗଶୀର୍ଣ୍ଣ ନାରୀର ପାଣ୍ଡୁର ମୁଖ ତାଙ୍କୁ ଆଉ ଭଲ ଲାଗିଲା ନାହିଁ। ସେହି ଦିନୁଁ ହାତପତ୍ର ନ ହେଲେ ମଧ, ତାଙ୍କର ଏବଂ ଶଙ୍କରୀ ମଧ୍ୟରେ ବ୍ୟବଧାନ କ୍ରମେ ବହୁଦୂର ହୋଇଗଲା। ଏହିପରି ତିନି ବର୍ଷ ଗଲା। ଦିବାକର ଅନ୍ୟବିବାହ କଥା କେବେଁ ମନରେ ସ୍ଥାନ ଦେଇ ନ ଥିଲେ। କାରଣ, ବିବାହରେ ତାଙ୍କର ପ୍ରୟୋଜନ ନ ଥିଲା। ଗୃହ ଦାସଦାସୀରେ ପୂର୍ଣ୍ଣ, ସେବାକରିବାକୁ ମା ଭଉଣୀ ବର୍ତ୍ତମାନ[2], କଟକରେ 'ସହାସୀ', କଲିକତାରେ 'ଅମିୟ', 'ଅଙ୍ଗୁରବାଲା'ର ଯତ୍ନରେ ପତ୍ନୀବିଚ୍ଛେଦର କଷ୍ଟ ସେ କଦାପି ଅନୁଭବ କରି ନ ଥିଲେ।

ଅଙ୍ଗୁରବାଲା ବିଖ୍ୟାତ ନର୍ତ୍ତକୀ-ମଧୁରକଣ୍ଠ-ରୂପରେ ଉର୍ବଶୀ ମେନକା ନ ହେଲେ ମଧ୍ୟ ମର୍ତ୍ତ-ମାନବୀ ମଧ୍ୟରେ ସେ ରୂପ ଦୁର୍ଲ୍ଲଭ। ପୁଣି ରୂପ କିପରି ରଖିବାକୁ ହୁଏ, ରୂପାଜୀବା ତାହା ଭଲରୂପେ ଜାଣନ୍ତି। ସେଥିପାଇଁ ଅଙ୍ଗୁରବାଲାର ମୋହରେ ଦିବାକର ଅଧିକାଂଶ ସମୟ କଲିକତାରେ ଥାଆନ୍ତି। ତାଙ୍କ ଇଚ୍ଛା, କିପରି ତାହାକୁ କଟକ ଘେନି ଆସିବେ। ମାତ୍ର ସେ ଥିଏଟରର ଅଭିନେତ୍ରୀ, ସେ କାହିଁକି ବା କଲିକତାର ମୋହ, ବିଳାସିତ ଛାଡି ଓଡିଆ ଦେଶକୁ ଆସିବ ? ବିଫଳମନୋରଥ ହୋଇ ଦିବାକର ଅବଶେଷରେ ବରଷକରୁ ଛ ମାସ କଲିକତାରେ କଟାନ୍ତି।

---

(୧) ବିବାହ କରିବା, (୨) ଜୀବିତ

ତାଙ୍କ କତିରେ ପରିବାର ମଧ୍ୟରୁ କେହି ରହନ୍ତି ନାହିଁ; କେବଳ ମନ ମଉଜିଆ ପିଲାଦିନରୁ ପାଖଲଗା[୧] ବୟସ୍ୟ-ଲୋକେ କହନ୍ତି, ବାରବୁଲା ନନ୍ଦିଆ। ନନ୍ଦିଆ ସଆନ୍ତଙ୍କର ବଡ ପ୍ରିୟ, ଅନୁଗତ; ଭୃତ୍ୟ କହିଲେ ଅପାର ହେବ, ଅର୍ଥାତ୍ ନନ୍ଦିଆ ସେହିକ୍ଷଣି ଅଣ୍ଟାଭିଡି, ପାଭକଛା ମାରି ତୁମ ସହିତ କଜିଆ କରିବ-ବେଳ ପଡିଲେ ହାତ ଚଲାଇଦେବ[୨]। ଏଣେ ସଙ୍ଗାତ କହିଲେ ଅପମାନ ହେବ ମିଶ୍ରଙ୍କର; ଅର୍ଥାତ୍ ଏଡେ ବଡଲୋକର ଗୋଟିଏ କହିବା ଭଲ-ଅର୍ଥାତ୍ ଜମିଦାରଙ୍କ ପାଖ ଲୋକ। କି ଉପାୟରେ କହିଲେ, ଜମିଦାର ମନ ଯୋଗାଇ ପାରିବ, ଏହା ନନ୍ଦିଆକୁ ଭଲ ଜଣା।

ସଆନ୍ତେ ସୁଖାସନରେ ବସିଛନ୍ତି, ନନ୍ଦିଆ ହାଜର। ସେତେବେଳେ ସାଆନ୍ତଙ୍କର ସର୍ବସନ୍ତାପହାରୀଣୀ ସିଗ୍ରେଟ ଧୂଆଁ ମଗଜରେ ପଶି ସବୁ ଦୁଃଖ ସନ୍ତାପ ହରଣ କରିସାରିଲାଣି। ଅର୍ଦ୍ଧନିମୀଳିତ ଚକ୍ଷୁରେ ସାଆନ୍ତେ ସହସ୍ର ସୁଖ ସ୍ୱପ୍ନ ଦେଖିଲେଣି। ଆଙ୍କାଣିଆ[୩] ପାନେ ଦୁଇ ପାନ ମଧ ଉଦରସ୍ଥ ହୋଇ ସାରିଛି। କଚେରିଘରେ ସୁଦୃଶ୍ୟ ହାତିଦାନ୍ତ-ପଲଙ୍କରେ ବହୁମୂଲ୍ୟ ବିଛଣାରେ ଅର୍ଦ୍ଧଶାୟିତ ଅବସ୍ଥାରେ ସଆନ୍ତେ ଆସୀନ। କତିରେ ଛୋଟ ଅବଲସ୍ କାଠର ଟେବୁଲ ଉପରେ ଲେଶ[୪] ଚାଦର ବିଛା ହୋଇଛି। ତାହା ଉପରେ ରୂପା କେସ୍‌ରେ ସିଗ୍ରେଟ, ରୁପା ରେକାବିରେ ପାନ ଏବଂ କାଚ ଗିଲାସ ଓ ଲାଲ୍ ରଙ୍ଗର ବ୍ରାଣ୍ଡି ବୋତଲ। ଏ ବ୍ରାଣ୍ଡି ଖାସ କଲିକତାରୁ ମଗାଯାଏ। ସାଆନ୍ତେ ମୁହଁରେ ସାହେବ ଢଙ୍ଗିଆ ପାଇପ୍ ଲଗାଇ ମନ ଖୁସିରେ ଥରେ ଅଧେ ଟାଣିଦେଇ ଧୂଆଁ ଛାଡୁଛନ୍ତି। ଭସ୍ ଭସ୍ ଚକ୍ରାକାର ଧୂଆଁଟା ଉପରକୁ ଉଠିଯାଉଛି। ସେତେବେଳକୁ ସନ୍ଧ୍ୟା ମଉଳି ଆସିଲାଣି, ଝାଡ୍ ଓ ଲଣ୍ଠନରେ ଆଲୁଅ ଲାଗିଲାଣି; ତାହାର ଉଜ୍ଜ୍ୱଳ ରଶ୍ମି ଦିବାକର ମୁଖରେ ପଡି ପାଠକଙ୍କୁ ଗୋଟିଏ ତିରିଶି ବତିଶି ବର୍ଷର ଗୌରସୁନ୍ଦର ଆଧୁନିକ ଯୁବକମୂର୍ତ୍ତି ଦେଖାଇ ଦେଉଛି। ଆଧୁନିକ କହିବାର ଅନେକ କାରଣ ଅଛି। ମୁଣ୍ଡର ବାଳକଟାଠାରୁ ଗୋଡର ତାଳିଆ ମଖମଲ ପମ୍ ପର୍ଯ୍ୟନ୍ତ ସବୁ ଆଧୁନିକ। ଢାକେଇ ଧୋତି, ସେଣ୍ଟଦିଆ ରୁମାଲ, ଲାଲିମ୍ଲି ବନିୟନ ଉପରେ ଚୁଡିଦାର ପଞ୍ଜାବି, ଆଖିରେ ସୁନାଚଷମା, ବାମହାତରେ ସୁନା ଓୟେଷ୍ଟ ଏଣ୍ଡ ରିଷ୍ଟ ଉଆଚ୍, ମୁହଁରେ ସିଗ୍ରେଟ ପାଇପ ଦେଖିଲେ, ସେ ଓଡ଼ିଆରୂପୀ ବଙ୍ଗାଳୀ ବା ବଙ୍ଗାଳିରୂପୀ ଓଡିଆ, କିଛି ବୁଝାଯାଏ ନାହିଁ। ତଥାପି ଆମେ ଭଲରୂପେ ଜାଣୁ, ସେ ଖାଣ୍ଟି ଓଡିଆ ବ୍ରାହ୍ମଣସନ୍ତାନ। ତାଙ୍କର ନାମ ଦିବାକର ମିଶ୍ର, କିନ୍ତୁ ସେ ସର୍ବଦା ନିଜକୁ ମିଷ୍ଟର ଡି. ମିଶ୍ରର ଛଡା ଦିବାକର ବୋଲି କହିବାକୁ ନାରାଜ। ଅତଏବ ଆମେ ତାଙ୍କୁ ଏଥର ମିଷ୍ଟର ମିଶର୍ ବୋଲି କହିବୁ।

ମିଷ୍ଟର ମିଶର କିଛିକ୍ଷଣ ଧୂମ ପାନକଲା ପରେ କହି ଉଠିଲେ, 'ଓ ମାଇଁ ଡିୟର, ଯାତ ବେଲା ହଲ? ଆରେ ନନ୍ଦରାଜ, ତୁମ୍ ହାମ୍‌କୋ କାହେ ନେହି ବୋଲା? ବେଟା କାର୍ତ୍ତିକା ଯେ ଆସିବାର କଥା ଥିଲା।'

(୧) ନିକଟତମ, ବୋଲକରା, (୩) ମାଡ଼ଦେବ, (୩) ମଦ, (୪) ଉପରେ ସୁଚିକାମ, ଏମ୍ବ୍ରୋଡୋରି ହୋଇଥିବା।

ନଦିଆ ଜୁହାର କରି କହିଲା, "ଆଜ୍ଞା, ବେଟା କାର୍ତ୍ତିକା ଅନେକ ବେଳୁ ଦାଣ୍ଡଘରେ ବସିଚି। ହୁକୁମ ହେଲେ ଭିତରକୁ ଆସିବା।" ବାବୁ କାର୍ତ୍ତିକା ନାମ ଶୁଣି ଉଠି ବସିଲେ। "ଆରେ, ଏସବୁ ନେଇ ଯା। ଆମର ବାହ୍ମଣିଆ ଘର, ବେଟା କିଛି ନ ଜାଣୁ।

ତାଙ୍କ କଥାମତେ ମେଜ ଖାଲି ହେଲା, ସେଥିରେ ଏଣୁ ତେଣୁ ଗୁଡ଼ିଏ ବହି ଓ କାଗଜ ଥୁଆ ଗଲା। ବାବୁ ଦୈନିକ 'ଆନନ୍ଦବଜାର' ପତ୍ରିକା ଖଣ୍ଡେ ଟେକି ଆଣି ଆଖି ଆଗରେ ଧଇଲେ। ସତେ ଯେପରି ପାଠମଗ୍ନ!

ତତ୍ପରେ ଆମର ପୂର୍ବପରିଚିତ କାର୍ତ୍ତିକ ନନ୍ଦ ଗୃହରେ ପ୍ରବେଶ କଲେ; କାନ୍ଥ ଚାରିଆଡକୁ ଚାହିଁଲେ। କାନ୍ଥରେ ଛବିର ବିଚିତ୍ର ସମାବେଶ-ଶିବ, ଦୁର୍ଗା, କାଳୀଙ୍କଠାରୁ ଆରମ୍ଭ କରି ବୁଦ୍ଧଦେବ, ଚୈତନ୍ୟ, ନାନକ, ଯୀଶୁ ଖ୍ରୀଷ୍ଟ, ଶିବାଜୀ, ରାଣା ପ୍ରତାପ, ବିବେକାନନ୍ଦ ସମସ୍ତଙ୍କର ବହୁମୂଲ୍ୟ ତୈଳଚିତ୍ର। ହଠାତ୍ ତାଙ୍କର ମନେହେଲା,-ଯାହା ଶୁଣଚି ତାହା ତ ନୁହେ। ଏ ତ ଜଣେ ମହତ୍ ଲୋକ; ତେବେ କଣ ସୀତାର ଭାଗ୍ୟ ଭଲ?

ନନ୍ଦରାଜା ଭାରି ମାନ୍ୟ କଲେ। ବେତର ଗଦିଦିଆ ଚୌକିଟି ଟାଣି ବସାଇଲେ। ଭୃତ୍ୟ ଦୟା ତାମ୍ବୁଳାଦି ମୁଖରାଗ ଆଣି ଦେଲା। ଆଦର, ଅଭ୍ୟର୍ଥନାରେ ଆପ୍ୟାୟିତ ହୋଇ କାର୍ତ୍ତିକ ନନ୍ଦେ କଥା ଆରମ୍ଭକଲେ। ଅସଲ କଥା ପଡିଲା ବହୁ ବଳମ୍ୱରେ। ଆଗ ପଡିଲା ଦେଶ ବିଦେଶର କଥା। କାର୍ତ୍ତିକ ନନ୍ଦ ଜ୍ଞାନୀ ଲୋକ, ପୁଣି ଓକିଲର ମୋହରିର। ଲୋକଙ୍କ କିଣା ବିକା ତାଙ୍କର ବ୍ୟବସାୟ। ଦେଶ ବିଦେଶର ଚୁଟକି ଖବର ଅନ୍ତର ନିତି ରଖିଥାନ୍ତି। କାରଣ, ଲୁହା ଜାଣି ପାଣି ଦେବାକୁ ତ ହେବ? ବାବୁଙ୍କ ଖବରକାଗଜ ପଢାକୁ ଲକ୍ଷ୍ୟକରି କହିଲେ, "ମୁଁ ଶୁଣୁଚି, ଦକ୍ଷିଣରେ ଏ ବର୍ଷ ବଡ ଦୁର୍ଭିକ୍ଷ-ହଜାର ହଜାର ଲୋକ ମଲେଣି, ହଜାର ହଜାର ଲୋକ ଘରଦ୍ୱାର ଛାଡି ପଳେଇଲେଣି। ଆର ସପ୍ତାହରେ କଟକରେ ଗୋଟିଏ ସଭା ହୋଇଥିଲା।

ବାବୁ ମୁରକି ହସା ଦେଇ କହିଲେ, "ସେଥିରେ ଆମର ଏକାକୀ ଫାଇଭ୍ ହଣ୍ଡ୍ରେଡ- ପାଞ୍ଚଶ ଟଙ୍କା ସବ୍‌ସ୍କ୍ରିପ୍‌ନ ଅର୍ଥାତ୍ ଚାନ୍ଦାଦିଆ ହୋଇଛି। ଆମେ ଯଦି ଅନ୍ୟ ପ୍ରଭିନ୍‌ସକୁ ହେଲ୍ପ ନ କରିବୁଁ, ଆମର ମଦର କଣ୍ଟ୍ରିକୁ ବେଳ ପଡିଲେ କିଏ ହେଲ୍ପ କରିବ।"

କାର୍ତ୍ତିକ ନନ୍ଦ ଚକ୍ଷୁ ବିସ୍ଫାରିତକରି ବାବୁଙ୍କ ବଦନ୍ୟତାର ଶତ ଶତ ସ୍ତୁତିବାଦ କରୁ କରୁ ତାଙ୍କୁ ସ୍ୱର୍ଗରେ ଚଢେଇଦେଇ କହିଲେ, "ଆପଣ ଏକା ଓଡିଶାର ଅନ୍ଧକରମୟ ଆକାଶରେ ପ୍ରଭାତୀ ନକ୍ଷତ୍ର। ଦେଶସେବା କହନ୍ତୁ, ଯୋଗ ଧ୍ୟାନ କହନ୍ତୁ, କଳିକାଳରେ ଆପଣଙ୍କ ପରି ଦେବତା ନ ଥିଲେ, ଲେକେ ଏ କଳିରୁ ତ୍ରାହି ପାଆନ୍ତେ?"

ବାବୁ ବିନୟ-ବିନମ୍ର ସ୍ୱରରେ କହିଲେ, "ମୁଁ କ୍ଷୁଦାଦପି କ୍ଷୁଦ୍ର, ନିତାନ୍ତ ଇନ୍‌ସିଗ୍ନିଫିକାଣ୍ଟ। ମୋର କ୍ଷୁଦ୍ର ଚେଷ୍ଟାରେ ଯାହା କରିପାରେ, ତାହା କରେ। ଆପଣମାନେ ପାଞ୍ଚଜଣ ମୋର ଭରସା।"

"ନା ମହାଶୟ, ଆପଣ କ୍ଷୁଦ୍ର ? ଆପଣ ଦାନବୀର, କର୍ମବୀର, ଦେଶଦଶର ନେତା । ଆପଣଙ୍କ ନାମ ଶୁଣି ନାହିଁ, ଓଡିଶାରେ ଏପରି କିଏ ଅଛି ? ମୋହର ବହୁ ଭାଗ୍ୟ ଯେ, ଆପଣଙ୍କ ଶ୍ରୀଚରଣ ଦର୍ଶନ ପାଇଲି ।

କ୍ରମେ କଥା ଜମିଲା । ଏଣୁ ତେଣୁ ସହସ୍ର କଥା ପରେ ଶେଖର ଚୌଧୁରୀଙ୍କ ଅବିବାହିତ ଯୁବତୀ କନ୍ୟା ସୀତାର ରୂପଲାବଣ୍ୟର ପ୍ରଶଂସା ପ୍ରସଙ୍ଗ ପଡିଲା । ଶେଖର ଚୌଧୁରୀ ଯେ ଷୋଡଶୀ ଯୁବତୀ କନ୍ୟାର ବିବାହପାଇଁ ଏତେ ଚିନ୍ତିତ, ତାହା ନୁହେଁ; କାରଣ, ସେ ଧନବାନ୍, ବାଲ୍ୟବିବାହର ବିରୋଧୀ । ଓଡିଶାରେ ନବ ଆଦର୍ଶ ସ୍ଥାପନର ପ୍ରୟାସୀ ଯୋଗ୍ୟ ଗୁଣବାନ୍ ଜାମାତା ପାଇଲେ ଷୋଡଶୀ କନ୍ୟା ପ୍ରଦାନକରି କୃତାର୍ଥ ହୁଅନ୍ତେ । ହେଲେ, କନ୍ୟା ପରମା ସୁନ୍ଦର କି ନା, ପୁଣି ଆଧୁନିକ ରୁଚିରେ ବିଦ୍ୟାଶିକ୍ଷା କରିଛି-ପିଆନୋ, ହାରମୋନିୟମ ବଜାଇ ପାରେ, ଜୋତାମାଡି ବ୍ରାହ୍ମିକା[1] ପରି ଲୁଗାପିନ୍ଧି ଦାଣ୍ଡକୁ ବାହାରି ପାରେ, ଅତିଥି ଅଭ୍ୟାଗତ ଆସିଲେ ଅଭ୍ୟର୍ଥନା କରିପାରେ । ଅତଏବ ପୂରା ହଜାରଟି ଟଙ୍କା ନ ପାଇଲେ ଏପରି ଦୁର୍ଲଭ କନ୍ୟାରନ୍ ସେ କାହାରିକୁ ଦେବେନାହିଁ । ତାଙ୍କ ଝିଅକୁ ଘରେ ମାଷ୍ଟର ରହି ପାଠପଢାଉଛି । ନ ହେଲା, ସେ ବାହାର ଛାତ୍ରୀରୂପେ ଏଣ୍ଟ୍ରାନ୍‌ସ ପରୀକ୍ଷା ଦେବ । ଓଡିଶାରେ ବିଶେଷତଃ ବ୍ରାହ୍ମଣକୁଳରେ ନବ ଆଦର୍ଶ ସ୍ଥାପନ ତ ପ୍ରୟୋଜନ ? ମିସ୍ ସୀତା ଶତପଥୀ ଆଧୁନିକ ଯୁଗର କନ୍ୟା । ସେ କଣ ଯେ ସେ ଲୋକର ପାଣିଗ୍ରହଣ କରିପାରନ୍ତି ?

ଶୁଣି ଶୁଣି ମିଷ୍ଟର ମିଶ୍ରର ବିଚଳିତ ହେଲେ । ଅଧିକ କହିବା ଅନାବଶ୍ୟକ-ମିସ୍ ସୀତାଙ୍କୁ ଲାଭ କରିବାକୁ ହଜାର ଛାଡି ଦୁଇ ହଜାର ଟଙ୍କା ଦେବାକୁ ସେ ରାଜିହୋଇଗଲେ ।

କାର୍ତ୍ତିକ ନନ୍ଦ ଘରୁ ବହାରିଲା ବେଳେ ମନେ କହିଲେ, "ଶେଖର ମତେ ଅପମାନ କରିଛୁ । ଏ ପାଷଣ୍ଡ, ମଦ୍ୟପାୟୀ, ଚରିତ୍ରହୀନ ହାତରେ ଯଦି ତୋର ସୀତାକୁ ନ ହାବୁଡାଏ, ମୁଁ କାର୍ତ୍ତିକ ନନ୍ଦ ନୁହେଁ ।"

କିନ୍ତୁ ମିଷ୍ଟର ମିଶ୍ରଙ୍କ ଭାବନା ଅନ୍ୟରୂପ । ଏଥର ତାଙ୍କର ଅଜନ୍ମସଞ୍ଚିତ ଆଶା ପୂର୍ଣ୍ଣ ହେବ ପରା ! ହାଉସ ସ୍କର୍ଟ ଫେଶନ ପିନ୍ଧା ଲେଡି, ହାଇହିଲ ଜୋତା ପିନ୍ଧି, ଓଭରକୋଟ ଲଗାଇ ତାଙ୍କ ସହିତ ମୋଟରେ ଚଢି ବୁଲିବ-ଓଡିଆ ମୁଲକରେ, ଏହା ଅଭିନବ ବ୍ୟାପାର ହେବ । ଦେଶବାସୀ ଦେଖି ସ୍ତମ୍ଭିତ ହେବେ । ସମାଜସଂସ୍କାରକ ମଧ୍ୟରେ ସେ ଅଗ୍ରଗଣ୍ୟରୂପେ ଯୁଗଯୁଗାନ୍ତର ପୂଜା ପାଇବେ ।

ଏ ଥର ନିତି କାର୍ତ୍ତିକ ନନ୍ଦ ଆସିବା ଆରମ୍ଭକଲେ । ଦିବାକର ଶେଷକୁ ତାଙ୍କୁ ମନକଥା କହିଲେ ଏବଂ ନାନା ମଧୁର କଥାରେ ଓ କବିତାରେ ଲିପି ରଚନାକରି ସୀତାଙ୍କ ନିକଟକୁ ପଠାଇଲେ । ସୀତାଙ୍କଠାରୁ ଯଥାସମୟରେ ପ୍ରତିଲିପି ପାଇ ସେ ଆନନ୍ଦରେ ବିହ୍ୱଳ ହୋଇଗଲେ ।

(୧) ବ୍ରାହ୍ମଧର୍ମ ଗ୍ରହଣ କରିଥିବା ନାରୀ

କାର୍ତ୍ତିକ ନନ୍ଦଙ୍କ ପୁତୁରା ସୌରୀନ୍ଦ୍ରନାଥ ଭାରି ଚଲାଖ। ତାର ହସ୍ତାକ୍ଷର ମୁକ୍ତା ପରି। ସୀତା ବଦଳରେ ମିଷ୍ଟର ମିଶ୍ରଙ୍କ ପତ୍ରର ଉତ୍ତର ସେହି ରଚନାକରି ପଠାଇବାକୁ ଲାଗିଲେ। କକେଇ ପୁତୁରା ଦିନାକେତେ ଜମିଦାର ବାବୁଙ୍କଠୁଁ ବେଶ ଦି ପଇସା ଛାଣିନେଲେ-ପାଞ୍ଚ ଛ ମାଣ ଜମି କିଣି ବର୍ଷକର ଭାତର ଯୋଗାଡ କରିପକାଇଲେ।



## ଏକାଦଶ ଅଧ୍ୟାୟ

ସରସ୍ୱତୀ ଭାତ ଖାଇ ବସିଛନ୍ତି; ତାଙ୍କ ଆଖିରୁ ଝର ଝର ବହି ଯାଉଛି; ହୃଦୟ କୋହରେ 'ଫାଟି ପଡୁଛି- "କିହା ଶେଷକୁ ଯା କଲ?... ମହାପୁରୁ! ସୀତା କପାଳରେ ଏହା ଲେଖିଥିଲ?" ତଥାପି ମୁହଁ ଖୋଲି ପ୍ରତିବାଦ କରିବାକୁ ତାଙ୍କର ସାହସ ହେଲା ନାହିଁ,-ଯୁଗଯୁଗାନ୍ତରର ଦାସୀତ୍ୱ, ତାଙ୍କ ଜାତିକୁ ଜଡ କରିଦେଇଛି। ସ୍ୱାମୀଙ୍କ କଥାରେ ପ୍ରତିବାଦ! କିନ୍ତୁ ଯାହା ସତ୍ୟ, ଯାହା ନ୍ୟାୟ, ତାହା ପାଇଁ ବି ପଦେ କହି ପାରିବେ ନାହିଁ? କହନ୍ତେ କହିଲେ ଲାଭ କଅଣ? ଚୌଧୁରୀ ତ ଟଳିବା ଲୋକ ନୁହନ୍ତି। ତାଙ୍କର ଏତେ ବଡ ଆଶା ହଠାତ୍ ଅଜଣା ଭାବରେ ଭାଙ୍ଗିଯିବ ବୋଲି ତ ସେ ଜାଣି ନ ଥିଲେ। ସରସ୍ୱତୀ ଆଜୀବନ ସ୍ୱାମୀର ଚରଣସେବା କରିଆସିଛନ୍ତି-ଆଜୀବନ ସ୍ୱାମୀ ଛଡ଼ା ଅନ୍ୟ ଦେବତା ଜାଣନ୍ତି ନାହିଁ, ସ୍ୱାମୀର ସୁଖରେ ସୁଖୀ, ଦୁଃଖରେ ଦୁଃଖୀ, ସ୍ୱାମୀ ବାକ୍ୟକୁ ବେଦବାକ୍ୟ ତୁଲ୍ୟ ମଣନ୍ତି। କିନ୍ତୁ ଆଜି ଏପରି ବିପର୍ଯ୍ୟୟ ହେବ ବୋଲି ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ। ସ୍ୱାମୀ ତାଙ୍କର ଦେବତା-ଏହାହିଁ ତାଙ୍କ ଧାରଣ ଥିଲା। ହେଲେ, ଆଜି ଏ କଅଣ? ତାଙ୍କ ଆଖି ସାମନାରୁ ପରଦାଟି କିଏ କାଢିନେଲା। ସରସ୍ୱତୀ ରୁଦ୍ଧ ବେଦନାର ଦାରୁଣ ଜ୍ୱାଳା ସହି ପରିବେ ନାହିଁ-ହୃଦୟରେ ସମୁଦାୟ ଶକ୍ତି ସଞ୍ଚୟକରି ସ୍ୱାମୀଙ୍କ ନିକଟକୁ ଗଲେ, କହିଲେ "ହେ, ମୋ କଥା ନାହିଁ। ସୀତାଟିକି ମୋ ଇଛାରେ ବିଭା ଦିଅ। ତମ ଗୋଡ ଧରୁଚି, ଟିକେ ବୁଝ,-ମଦୁଆ ଦିବାକରକୁ ଝିଅ ଦିଅନା, ମୋ ପିଲା ମରିଯିବ। ଟିକେ ଭାବି ଚିନ୍ତି ଦେଖ।" ଏହା କହି ଗୋଡ ଧରିପକାଇଲେ।

ଚୌଧୁରୀଙ୍କର ରାଗ ହେଲା; କିନ୍ତୁ ସମ୍ଭାଳି ନେଇ କହିଲେ, "ତମେ ମାଇପୀ ଲୋକ; ବୁଝ ନା -ଦିବାକରର ଟିକେ ଚରିତ୍ରଦୋଷ ଅଛି, ମୁଁ ଜାଣେ। କିନ୍ତୁ ମାନ ଥାନ, ତା ଖାନ୍ଦାନ୍ କଥାଟା ଭାବନା। ବିଦ୍ୟା ତ ପଢିଛି ଅସୁମାରି, ରୂପରେ ତ କାର୍ତ୍ତିକ, -ରଜାପୁଅ ସେ; ତାର ସାମାନ୍ୟ ଚରିତ୍ରଦୋଷଟା ଧରିବ ନା? ଏମିତି ଜୁଆଇଁ ପାଇବାହିଁ ଆମ ଭାଗ୍ୟ। ଆଉ ରଘୁଆ ମା-ବାପ-ଛେଉଣ୍ଡି ଅନାଥ ଅର୍କ୍ଷିତ-ପରଓଳିରେ ମୁଣ୍ଡ ଗୁଞ୍ଜିଚି। ତାକୁ ଝିଅ ଦେବି?

ସରସ୍ୱତୀ ଲୁହ ଟପ ଟପ ବୁହାଇ କହିଲେ, "ଜଗନ୍ନାଥ ପୁଅ କରିଚିନ୍ତିତ, ସେ କଣ ଭାବିବେ?"

ଚୌଧୁରୀ ଟିକେ ଉତ୍ତେଜିତ ହୋଇ କହିଲେ, "କଣ ତାଙ୍କ ଭାବିବା ଲାଗି ମୁଁ ସୁନା ଝିଅକୁ ଭସେଇଦେବି ? ତାଙ୍କ ଘରୁ ନ ହେଲା ଗୋଟାଏ ବୋହୂ ଆଣିଚି; ସେଇ ତୁମକୁ ଏତେ ପାଠ ଶିଖେଇଚନ୍ତି।" ଏହା କହି ପାଟିରୁ ଗାଳି ବାହାର କରୁଥିଲେ, ସରସ୍ୱତୀ ଭୀତା ହୋଇ କହିଲେ, "ତୁନି ହୁଅ, ତୁନି ହୁଅ। ସେ କିଛି କହି ନାହାନ୍ତି। ଅକାରଣ ନିର୍ଦ୍ଦୋଷ ଲୋକକୁ ଗାଳିଦିଅ ନା।"

ଚୌଧୁରୀ ଯାହା କହି ଆସୁଥିଲେ, ତାହା ନ କହି ରାଗରେ କହିଲେ, "ଦେଖ, 'ପୋଷା ପୁଅ, ଗୁଞ୍ଜା ଗୁଅ'-ତାର ଏତେ ଚାତର୍! ମୋ ହାତ ତଳିଆ ଗୁମାସ୍ତାର ପୁତୁରା। ପିମ୍ପୁଡି ଦୀପଗୁଖା ଉପରକୁ ଚଢିଲାଣି-ସେ ପୁଣି ମୋ ଜୁଆଇଁ ହେବାକୁ ବସିଚି। ତମକୁ ଦିବାକର ପସନ୍ଦ ହଉ ନାହିଁ-ଗାଁ ଦଶଗଣ୍ଡାର ଜମିଦାର-କଟକ, କଲିକତା, କାଶୀ, ଗୟା, ବୃନ୍ଦାବନରେ କିଏ ତାକୁ ନ ଚିହ୍ନେ ? ତାକୁ ତ ଦଣ୍ଡବତ ହେଇ ଝିଅ ଦେବା କଥା। ଓଲଟି ସେ ବି' ହଜାର ଟଙ୍କା ଥୋଇ ନବ-କିଛି ମାଗଣ ତମ ଝିଅକୁ ମାଗୁ ନାହିଁ। ଅର୍ଦ୍ଧଶିକ୍ଷିତ, ପର ଦୁଆର ଗୋଲାମ, ତା କାଣି ଅଙ୍ଗୁଠିକି ସରି ? ତା ପାଦ ଧୂଳିକି ଲାଗେ ?"

ସରସ୍ୱତୀ ଧୀରେ କହିଲେ, "ସେ ଭାରି ମଦ ଖାଏ, ତାର ଭାରିଯା ଅଛି, ମୁ ତମ ଗୋଡ ଧରୁଛି।"

ଏଥର ଚୌଧୁରୀ ସମ୍ଭାଳି ନ ପାରି କହିଲେ, "ଦେଖ, ବକ୍ ବକ୍ କର ନା; ତୁ ମାଇପୀଟା ହେଇ ଆମ କଥା ଉପରେ କଥା କହୁଚୁ। ଛେଳି ଗୋଡରେ ଧାନ ମଳା ହେଲେ ବଳଦ ଲୋଡା ହୁଅନ୍ତା ? ତେମେ ନାକ ନ ଥିଲେ ଗୁହ ଖାଆନ୍ତ; ତେମେ ଆମ କଥାରେ କଥା କହିବ ? ଖାଲି ଆଖି ଆଗରେ ଦେଖୁଚୁ ଢଅସ ଚିକ୍‌କଣ ରଘୁଆକୁ। ମା ନାହିଁ, ବୋପା ନାହିଁ, ଖାତର ନାହିଁ, ମର୍ଯ୍ୟାଦା ନାହିଁ, ମୂଲିଆ ମୁଣ୍ଡ, -ମା ଧାନ କୁଟୁଥିଲା, କକେଇ ମୋରି ବୋଝ ବୋହି ଭାତ ଖାଉଚି! ସେ ପୁଣି ଆସିବ, ଆମ ସରି ହବ ? ଦିବାକର ତମକୁ ଗନ୍ଧଉଚି ? ହଜାର ବାଟି ଧାନ ଜମି, ପେଡ଼ି ପେଡି ସୁନା ରୂପା ଅଳଙ୍କାର ଘରେ ଖୁନ୍ଦା ହୋଇଚି; ଝିଅ ପାଟରାଣୀ ହବ, ମା'ର ବାହୁନା ଲାଗିଚି ! ତା ପରି ଦାତା କିଏ, ତା ପରି ପାଠୁଆ କିଏ, ତା ପରି ମର୍ଯ୍ୟାଦାବନ୍ତ କିଏ ? କଉଁଠି ଟିକେ ମଦ ଖାଏ, କଉଁଠି ଟିକେ କାହାକୁ ଚାହେଁ-ଏଇ ସବୁରେ ଗଣ୍ଠି ପଡିଚି ? ଏଇ ସବୁ ଧରି ତମେ ସଂସାର କରିବ ? ରାଜା ଘରେ ପାଞ୍ଚ ପଚିଶି ପୋଇଲି ନାହାନ୍ତି ? ସେଥିରେ କଣ ରଜାର ମାନ ଥାନ ଊଣା ହୁଏ ?"

ତଥାପି ସରସ୍ୱତୀଙ୍କ ମନ ମାନିଲା ନାହିଁ। ସେ କଇଁ କଇଁ ହୋଇ କାନ୍ଦିଲେ; କହିଲେ, "ତମେ ସେ ଘରେ ସୀତାକୁ ଦେଲେ ସତ କହୁଚି, ମୁଁ ଜହର ଖାଇ ମରିବି-ମୁଁ ନଈ ପୋଖରୀକି ଡେଇଁ ପଡିବି।"

ଚୌଧୁରୀ ତାଚ୍ଛଲ୍ୟ ଭାବରେ କହିଲେ, "ଯା, ଯା, ଇଲାଗେ ତୁନି ପଡିଯା, ତୋ କଥା ମୁଁ ଶୁଣିବି ନାହିଁ। ମୁଁ ସେଇଠି ସୀତାକୁ ଦେବି, ଏହା ସତ୍ୟ-ସତ୍ୟ-ସତ୍ୟ। ତୋ ପରି ମାଇକିନା କଥା ଶୁଣି ମୁଁ ବାରବୁଲା ମାଗିଖିଆ ଟୋକାଟାକୁ ଝିଅ ଦେବି ନାହିଁ। ମନା କରିଦବୁ ସେ ଟୋକାଟାକୁ ଆମ ଦୁଆର ମାଡିବାକୁ। ତୋତେ ଲାଜ ନାହିଁ-ଯୁବା ଅଭିଅଡା ଝିଅପାଇଁ

ସ୍ୱୟମ୍ବର ଯୋଗାଡ଼ି ରଖିଚୁ। ମା, ପୁଅ, ଝିଅ-ତିନିଙ୍କର ଏକାରାକି, ଏକାଚିଦ୍। ମୁଁ ବାପଭୋଇରେ ନୁହଁ, ଭଣ୍ଡାର ନୁହଁ। ମରୁନା ସବୁ ଜହର ଖାଇ।" ଏହା କହି ସ୍ତ୍ରୀକୁ ଅକଥ୍ୟ ଭାଷାରେ ଅନେକ ଗାଳି ଦେବାକୁ ଲାଗିଲେ। କି କାର୍ଯ୍ୟବଶତଃ ବାବୁ ସେ ଘର ଦୁଆର ବାଟେ ଯାଉଥିଲେ। ପିତାଙ୍କର କ୍ରୋଧବାକ୍ୟ ତା କର୍ଣ୍ଣରେ ବାଜିଗଲା। ଅଭିମାନୀ ପୁତ୍ର ଘର ଭିତରକୁ ପଶିଯାଇ ମାତା ନିକଟରେ ଠିଆ ହେଲା; ଗୁଢ଼ ଅଭିମାନବ୍ୟଞ୍ଜକ ସ୍ୱରରେ କହିଲା, "ବୋଉ ! ସୀତା ମରୁ, ତୁ ତୁନି ହ; ଲୋକେ ଶୁଣିବେ, କାହିଁକି କାନ୍ଦୁଚୁ ? ଦିନେ କାଳେ ଦେଖା ନାହିଁ, ଆଜି ତୋ କପାଳରେ ଯା ଥିଲା।"

ବାବୁକୁ ଦେଖି ଚୌଧୁରୀଙ୍କ କ୍ରୋଧ ଦି'ଗୁଣ ହେଲା। ସେ ରାଗରେ ହିସାବ ଖାତାଟା ଫୋପାଡି ତାକୁ ମାଇଲେ, ଅତିପ୍ରିୟ ପୁତ୍ରକୁ ସୁଦ୍ଧା ମମତା ହେଲା ନାହିଁ। ବାବୁ 'ବୋଉ ଲୋ' କହି ସେଠାରେ ବସି ପଡିଲା। ସୀତା ଆଉ ଘରୁ ଦଉଡି ଆସିଲା। ମା ଓ ଭାଇର ଦଶା ଦେଖି ତା ହୃଦୟ କୋହରେ ପୂରିଗଲା। କିନ୍ତୁ ଚୌଧୁରୀ ଦେଖିଲେ ନାହିଁ; -ନିତାନ୍ତ ନିଷ୍ଠୁର ଭାବରେ ... କୁତ୍ସିତ ବାକ୍ୟରେ ତିନି ଜଣଙ୍କ ତିରସ୍କାର କରୁଁ କରୁଁ ଶୋଇବା ଘରକୁ ଗଲେ।

ଟଙ୍କାର କି ନିଶା। ଦିବାଙ୍କାର ପଣ ଦୁଇ ହଜାର ଟଙ୍କା। ଏହା କି ଚୌଧୁରୀ ଛାଡିବେ ? ମୂର୍ଖସ୍ତ୍ରୀ ସରସ୍ୱତୀ, ଅପରିଣାମଦର୍ଶୀ ବାବୁର କଥାରେ କି ସେ ଟଳିବା ଲୋକ ?

ଓଡିଶାଯାକରେ ବିଖ୍ୟାତ ସାମନ୍ତ ଶ୍ରୀ ଲୋକନାଥ ମିଶ୍ର ପରି ଜମିଦାରର ଘରେ ବନ୍ଧୁ ବାନ୍ଧିବାକୁ କେଉଁ ବ୍ରାହ୍ମଣକୁଳ ପଛେଇବ ? ଚୌଧୁରୀଙ୍କ ଛାତି କୁଣ୍ଢେ ମୋଟ ! ଗୁଣୁ ଗୁଣୁ ହୋଇ ରଘୁନାଥର ପରଲୋକଗତ ପିତୃପିତାମହ ଉଦ୍ଦେଶ୍ୟରେ ଅମୃତ ବାକ୍ୟ ବର୍ଷଣ କରୁ କରୁ ଚୌଧୁରୀ ଶେଯରେ ଶୋଇ ପଡିଲେ। ସରସ୍ୱତୀ ସେଠାରୁ ଉଠି ଆସି ସ୍ୱାମୀଙ୍କ ପଦସେବାରେ ଲାଗିଲେ। ସୀତାର ବିବାହ ବିଷୟରେ ସ୍ୱାମୀସ୍ତ୍ରୀ ପୁଣି ଅନେକ ବେଳଯାଏ ବହୁତ କଥାବାର୍ତ୍ତା ହେଲେ। ସରସ୍ୱତୀ ଖୁବ୍ କନ୍ଦାକଟା କଲେ, ମାତ୍ର ଚୌଧୁରୀଙ୍କର ପାଷାଣ ମନ ଟଳିଲା ନାହିଁ। ଶେଷକୁ ସରସ୍ୱତୀ ରଘୁନାଥର ଆଶା ତ୍ୟାଗକରି ବସିଲେ।

ସେତେବେଳକୁ ରାତି ତିନିଟା। ଛାତ ଉପରେ ସରସ୍ୱତୀ ଓ ପିଡେଣ ନାନୀ ବସି ଗୁଡାଏ ବେଳ କାନ୍ଦିଲେ। ବଇଶାଖ ମାସର ଜହ୍ନ ଆକାଶରେ ଗୋଟିଏ କୋଣରେ ବୁଡୁ ବୁଡୁ ହେଲାଣି, ଗଛ ପତ୍ରର 'ଫାଙ୍କେ 'ଫାଙ୍କେ ଅନ୍ଧାର,- 'ଫାଙ୍କେ 'ଫାଙ୍କେ ଆଲୋକରଞ୍ଜିତ, ଚାରିଆଡ ନିସ୍ତବ୍ଧ-କ୍ୱଚିତ୍ ବୃକ୍ଷକୋଟରରୁ ଚଢେଇଟିଏ ପକ୍ଷ ଝାଡି ଦେଉଛି, କ୍ୱଚିତ୍ ପତ୍ରଟିଏ ଖଡ୍ ଖଡ୍ ଯାଉଛି।

ପାର୍ଶ୍ୱରେ ନିଦ୍ରିତା ସୀତାକୁ ଅନାଇ ଛାତି ଫାଟିଗଲା। ପନ୍ଦର ଦିନ ଭିତରେ ସୀତାର ରୂପ ବଦଳି ଗଲାଣି, ମୁହଁର ହସ ମଉଳି ଗଲାଣି, କନକ ଚମ୍ପାରଙ୍ଗ କଳାକାଠ ପଡିଲାଣି; ସେ ଖାଉ ନାହିଁ, ପିଉନାହିଁ- ଖାଲି ଲୁଚି ଲୁଚି ବୁଲୁଛି, କାନ୍ଦି କାନ୍ଦି ଆଖି 'ଫୁଲାଉଛି-ସତେ ଯେପରି ମରିଯିବ, କିନ୍ତୁ ମୁହଁରେ କଥାଟିଏ ନାହିଁ।

ଆଉ ବାବୁ? ତାହାର କାହିଁରେ ସୁଖ ନାହିଁ। ସେ ଓ ରେବତୀ ଗୋପନରେ ଅନେକ ପରାମର୍ଶ କରନ୍ତି। ବାବୁର ଇଚ୍ଛା, ଜବରାଣରେ ସୀତାକୁ ରଘୁନାଥ ସହିତ ବିଭା ଦେବ; କିନ୍ତୁ ରେବତୀ ସେଥିରେ ଭୟରେ ପଛଘୁଞ୍ଚା ଦେଉଛି, ଶ୍ୱଶୁର ବୁଢ଼ା କାଳେ କିଛି ଶାପ ଦେବେ। ନିଜର ପୁଅ ଝିଅ ଯୋଡ଼ିଏ, ମା ମନ ସଦା ଶଙ୍କିତ।

ଆଉ ରଘୁନାଥ? ସରସ୍ୱତୀ ରଘୁନାଥକୁ ଆଉ ଦେଖି ନାହାନ୍ତି। ସେହି ଭୀଷଣ କଥା ଶୁଣିଲା ଦିନୁ ଚୌଧୁରୀଙ୍କ ଘର ଦୁଆର ମାଡ଼ି ନାହିଁ।

ଏ କି ଲୀଳା ବିଧାତାର? ଦିଓଟି ପ୍ରାଣକୁ ଏକା କରିଦେଇ, ଦିଓଟି ଆତ୍ମାକୁ ସଙ୍ଗୀ କରିଦେଇ, ଏବେ ପୁଣି ଜଣକଠାରୁ ଜଣକୁ ଛଡ଼ାଇ ନେଉଛି। କିଏ କହି ପାରେ, ଏହା ଭିତରେ କି ଉଦ୍ଦେଶ୍ୟ ଅଛି। ସରସ୍ୱତୀ ଦୁଃଖରେ ଥରେ ଆକାଶକୁ ଅନାଇଲେ; ମନ କୋହରେ ପୂରିଗଲା। ଠାକୁରେ, ଏଇୟା କଲ। ସୀତା ଭାସିଲା ଶେଷକୁ?

ଆକାଶରେ ଚନ୍ଦ୍ର ତାରା ସରସ୍ୱତୀଙ୍କ ମୁହଁକୁ ଅନାଇଲେ। ଯେପରି ତାରା କହିଲା- "ଛି, ସରସ୍ୱତୀ, ଠାକୁରଙ୍କୁ ଦୋଷ ଦେଉଛୁ? ଠାକୁରେ କଲେ, ନା ତୋ ସ୍ୱାମୀ କଲା? ଯେ ସୀତାକୁ ଜନ୍ମ ଦେଇଛି, ସେହି କଲା? ହାୟ, ଜନ୍ମଦାତା ହୋଇ ଏଡେ ନିଷ୍ଠୁର।" ଚାନ୍ଦ ତା ସଙ୍ଗେ ମିଶିଯାଇ କହିଲା, "ସୀତା ଭାସିଲା କାହା ଦୋଷରୁ? ତୋ ସ୍ୱାମୀଦୋଷରୁ ନୁହେଁ କି? ଆଗ କଥା ଦେଲା ରଘୁନାଥକୁ, ପରେ ଟଙ୍କା ଲୋଭରେ ଅନ୍ୟକୁ ବିକୁଚି। ଏ ବିବାହରେ ବାଧା ଦେବାକୁ ତୋର ତିଳେ ଶକ୍ତ ନାହିଁ। ତୁ ପୁଣି ସୀତାର ମା-ଗର୍ଭଧାରିଣୀ। ଛି, ଛି।"

ସରସ୍ୱତୀ ଆକୁଳ ହେଲେ-କାନ୍ଦି ଉଠିଲେ। ପଡେଶ ନାନୀ ଅଞ୍ଚଳରେ[୧] ଆଖି ପୋଛି କହିଲା, "କିଆଁ କାନ୍ଦୁଚୁ ଲୋ ଭଉଣି, ସବୁ ସେ ତାଙ୍କର ଭିଆଣ, ସେହି ଜଗନ୍ନାଥ ମହାପ୍ରଭୁଙ୍କ ଲୀଳା।"

ସରସ୍ୱତୀ ଦୃଢ଼ଭାବରେ କହିଲେ, "ସତ କହିଲୁ ଏକା ନାନି। ଯେଉଁଠି ବାପ ଝିଅକୁ ବଳି ଦେଉଛି[୨], ବଅଁଶଯାକର କଥା ନ ଶୁଣି ଟଙ୍କାଲୋଭରେ ଝିଅକୁ ବିକୁଛି ସେଠି-"

ବାଧା ଦେଇ ପିଡେଶ ନାନୀ କହିଲା, "ତୁନି ହ, ତୁନି ହ, ସ୍ୱାମୀନିନ୍ଦା ମହାପାପ।"

ସରସ୍ୱତୀ ଅଧିକତର ଦୃଢ଼ଭାବରେ କହିଲେ, "ଭଲ କହିଲୁ ଲୋ ନାନି, ସ୍ୱାମିନିନ୍ଦା ନାଁ ଆଉ କଅଣ? ମୋ ବୁକୁ ଫାଟି ଯାଉଚି। ଦିବାକରକୁ ସୀତା ସଙ୍ଗେ ବିଭା ନ ଦେଇ ମହାନଦୀରେ ଭସେଇ ଦେଲେ ତ ଭଲ ହୁଅନ୍ତା। ମୋ ପ୍ରାଣ ଯା ହଉଚି-ଶେଷକୁ ରଘୁନାଥର ଆଶା ସରିଲା; ଆଉ ମୋ ଝିଅଟି ବୁଡ଼ିଲା। ବାପ ହେଇ ଝିଅକୁ ଯା କରିବେ? ଦି'ହଜାର ଟଙ୍କାରେ ଝିଅ ବିକିବେ? କି ଅଲକ୍ଷଣୀ ମୁଁ ତାକୁ ପେଟରେ ଧଇଲି। ବାବୁ କଣ କହିଚି ଜାଣୁ? ସୀତା ବାହା ଦିନ ସେ କଟକରେ ନ ଥିବ, କୁଆଡେ ପଳେଇବ; ତେବେ ତା ବାପ ଚେତିବ।"

(୧) ଲୁଗା କାନି, (୨) ମାରିଦେବା

ପିତେଈ ନାନୀ ହୋଇ କହିଲା, "ତମେ ସବୁ ଯାହା କର ପଛେ, ଦିବାକର ଛଡ଼ା ସେ କାହାକୁ ଝିଅ ଦେବେ ନାହିଁ। ଯା ଭିତରେ କାର୍ତ୍ତିକ ନନ୍ଦ ଭିରିରିଆ ପଇଚି ଜାଣୁ?"

ସରସ୍ୱତୀ ଦୀର୍ଘନିଃଶ୍ୱାସ ପକାଇ କହିଲେ, "ତାର କଅଣ ପୁଅ ଝିଅ ନାହାନ୍ତି? ମୋ ପିଲାକୁ ଇମିତି କଲା?"

"ଛାଏଁ[1] କରୁଥିଲା? ସାବୀ, ନନା ତା ସଙ୍ଗେ ପଟାଏ ଯୁଝିଥିଲେ। ନବକିଶୋରର ବିଭା କଥା ଘେନି। ମନେ ଅଛି ନା, ପାସୋରି ଗଲାଣି?"

"ଓ ହୋ, ନିଜର ହେଇ ଏତେ ହିଂସା-ସ୍ୱଜାତି ଏତେ ହିଂସ୍ରକ? ହା କପାଳ! ରଘୁ, ସୀତାର ମୁଁ ସର୍ବନାଶ କଲି! ମୁଁ ଯଦି ଜାଣିଥାନ୍ତି ଯା ହବ-"

ପିତେଈ ତାଙ୍କୁ ସାନ୍ତ୍ୱନା ଦେଇ କହିଲା, "ଆଲୋ, ଆଲୋ, ତୁ ତ ମନ୍ଦ ପାଇଁ କାମ କରି ନ ଥିଲୁ-ଚୌଧୁରୀ ନିଜେ ହଁ କରିଥିଲେ। ଏବେ ଏମତି ଚକୁଳି ପିଠା ପରି ନେଉଟି ପଡ଼ିବେ[2] ବୋଲି ତ କେହି କାକ-ଚରିତ ପଢ଼ି ନ ଥିଲା? ଆଉ ଗଲା କଥା ଭାବିଲେ କଅଣ ହବ?" ଏହା କହି ପୁଣି ସେ କାନ୍ଦିଲା- ହା ଲୋ ସୀତିଆ! ଏତେରୁ ଏତେଟା କଲି। ଶରଧାରେ ରଘୁଆର ବୋହୂ ହୋଇ ଥାଆନ୍ତା। ଝିଅ ଜୁଆଇଁ ଘରଟି ଉଜ୍ଜ୍ୱଳ କରି ଥାଅନ୍ତେ।

ସରସ୍ୱତୀ ବ୍ୟଥିତ ଶ୍ୱାସଟାଣି କହିଲେ, "ଟୋକା କଲିଜିରେ ପଢୁଚି। ମୁଁ ତାକୁ ଓକିଲାତି ପଢେଇ ଥାଆନ୍ତି; ଝିଅ ଜୁଆଇଁ ଘରେ ରଖି ତାଙ୍କ ସ୍ନେହ, ତାଙ୍କ ସୁଖଟା ଦେଖି ଥଆନ୍ତି। ଏ କି ଅଲକ୍ଷଣା ଦିବାକରଟା କାହୁଁ ଜୁଟିଲା, ମୋ ଚାନ୍ଦଟିକି ରାହୁ ଗିରାସିଲା, ମୋ ସୁନା ଘରଟା ଚୂନା ହେଲା। ନାନି ଲୋ! ସଉତୁଣୀ ଉପରେ ଝିଅ ଦେବାକୁ କି ମା ମଙ୍ଗେ?"

ପୀତେଇ କହିଲା, "ପୁଣି ଦିବାକରର ଯଉଁ ମା ଭଉଣୀ ଲୋ ବାପ! ତାଙ୍କ କଥା ମୁଁ ଭଲରୂପେ ଜାଣେ। ଅନେକ ଦିନ କଟକରେ ଥିଲେ। ତାଙ୍କ ଘରେ ମୁଁ ଦିନାକେତେ ଥିଲି। ସେ ଯେଉଁ ଫୁଲ ଲୋ ମା! ତୋ ଝିଅର ନଣନ୍ଦ ହେବ-ତା ପରି ନାଲଗାଲୀ, ତା ପରି ଦୁଷ୍ଟା ସ୍ତ୍ରୀ ସଂସାରରେ ନାହାନ୍ତି। ତାଙ୍କ ଘରେ କଅଣ ଭଣା? ଦାଣ୍ଡକୁ ସିନା ଦିଶୁ ନାହିଁ- ଭିତରେ ଭିତରେ ଲଙ୍କାକାଣ୍ଡ!"

ଦୀର୍ଘନିଃଶ୍ୱାସ ସହ ସରସ୍ୱତୀ କହିଲେ, "ରଘୁନାଥକୁ ଦେଇଥିଲେ କଣ ଭଣା ହୋଇଥାନ୍ତା? ଶାଶୂ ନାହିଁ, ନଣନ୍ଦ ନାହିଁ, ଜୁଆଇଁ ଝିଅ ଘରେ ରହିଥାନ୍ତେ। ଜଗନ୍ନାଥଙ୍କର ତାକୁ ଏତେ ଶରଧା! ହଇଲୋ ସୀତା, କଣ କରିବୁ ତୁ? ନାନି ତୁ ତ ଜାଣୁ, ସେ କିମିତି ପିଲା?"

ପିତେଈ ବ୍ୟଥିତ ଚିତ୍ତରେ କହିଲା, "ରଘୁନାଥର ସୀତା ଉପରେ ଭାରି ମାୟା[3]। ସେ, ବାବୁ, ସୀତା, ଏ ବୋହୂ-ଏମାନେ ଯେମିତି ଗୋଟାଏ ପ୍ରାଣ। ଯାଙ୍କ ମେଳ ଯେ ଭାଙ୍ଗିଲା ତାକୁ ବିଧାତା ଦଣ୍ଡିବ। କାର୍ତ୍ତିକାର କେତେ ଦଶା ହେବ, ଦେଖିବ।"

---

(୧) ନିଜେ, ଆପେ; (୨) ବିପରୀତ, (୩) ଲୋଭ, ଅସକ୍ତି

ସରସ୍ୱତୀ କହିଲେ, "ଛାଡ ନାନି, ସେ କଥା। ମୋ ଅଦୃଷ୍ଟ ମନ୍ଦ-ତିନି ତିନିଟା ଝିଅ ଜନ୍ମ କଲି, ସଭିଏଁ ମତେ କନ୍ଦେଇଲେ। ସାବୀର ଦୁଃଖରେ ତ କାନ୍ଦି କାନ୍ଦି ହାଡରେ ମାଉଁସ ନାହିଁ; ସରଳା ତ ଥାଇ ନ ଥିଲା ପରି; ଏବେ ସୀତାକୁ ହରେଇଲି ସିନା। ମଦୁଆ ସ୍ୱାମୀ କଅଣ ଭାରିଯାର ମର୍ଯ୍ୟାଦା ବୁଝିବ ?- ଯାହାର ବାରଆଡେ ଏତେ ନଟ ! ଟଙ୍କା ତମର କିଏ ଖାଇବ ? ହାରେ ଦଇବ !"

ପୁଣି ଦୁଇ ଜଣ କାନ୍ଦିଲେ; କନ୍ଦାକଟା ଓ କଥାବାର୍ତ୍ତାରେ ସକାଳ ପାହିଗଲା। ମନ ଦୁଃଖ ମନରେ ମାରି ସମସ୍ତେ ଠୁଳି ହେଲେ। ଜଗତରେ ଆଉ ଗୋଟିଏ କର୍ମମୟ ଦିବସ ପ୍ରବେଶ କଲା।

ଏହାପରେ ନିତାନ୍ତ ଅନିଚ୍ଛା, ଅତ୍ୟନ୍ତ ମନୋବ୍ୟଥା ସତ୍ତ୍ୱେ ସରସ୍ୱତୀ କନ୍ୟାର ବିବାହ ଆୟୋଜନରେ ଲାଗି ପଡିଲେ। ବିବାହ ପୁଣ୍ୟ କାର୍ଯ୍ୟ ସତରେ, କିନ୍ତୁ କିଏ ଜାଣେ - ଏ ବିବାହଟି ପୁଣ୍ୟ କାର୍ଯ୍ୟ, ନା ପଣ୍ୟବିକ୍ରୟ !



## ଦ୍ୱାଦଶ ଅଧ୍ୟାୟ

ମଝିଘରେ ମୋଟ ମସିଣା ଉପରେ ଚକାପାରି ବସିଛନ୍ତି ଶେଖର ଚୌଧୁରୀ; ତାଙ୍କ ସମ୍ମୁଖରେ ଖଣ୍ଡେ ସପ ଉପରେ ବସିଛନ୍ତି ଜଗନ୍ନାଥ। ସେମାନେ ଯେ ଅତ୍ୟନ୍ତ ଗୁରୁତର କଥାପ୍ରସଙ୍ଗରେ ବ୍ୟାପୃତ, ତାହା ଭାବରୁ ବୁଝାପାଉଛି। ସମ୍ମୁଖରେ ଥିବା ପାନଥାଳିଆରୁ ପାନଖିଲଟିଏ ନେଇ ଚିନ୍ତିତଭାବରେ ଜଗନ୍ନାଥ କହିଲେ, "ଆପଣଙ୍କୁ ଏ ବିଚାର କିଏ ଦେଲା ? ଆପଣ ତ ଭଲରୁପେ ଜାଣନ୍ତି-ଦିବକାର ଚରିତ୍ରହୀନ, ପୁଣି ଘୋର ମଦ୍ୟପାୟୀ !"

ଚୌଧୁରୀ ନଖରେ ମୁଣ୍ଡ କୁଣ୍ଡାଇ କୁଣ୍ଡାଇ କଅଣ ଉତ୍ତର ଦେବେ, ଠିକ୍ କରି ନ ପାରି କହିଲେ, "ଆମକୁ ସବୁ ଜଣା; ହେଲେ, ସେ କିଛି ନୁହ। ସେ ବୟସରେ ତୁମେ ଆମେ ସବୁ କଅଣ ନ କରିଥାଉଁ? ଯୁବାବୟସ, ସେଥିରେ ପୁଣି ଅଭିଭାବକ କେହି ନାହିଁ, ତେର ସମ୍ପତ୍ତି।"

ଜଗନ୍ନାଥ କହିଲେ, "କିନ୍ତୁ ଭାଇ, ଆପଣଙ୍କୁ ମୁଁ ପଦେ କଥା କହିବି, ବିରକ୍ତ ହେବେ ନାହିଁ। ମୁଁ କଦାପି ମୋ ଝିଅକୁ ଜଣେ କୁଚରିତ୍ର ମଦୁଆହାତରେ ଦିଅନ୍ତି ନାହିଁ। ଲକ୍ଷେ ସମ୍ପତ୍ତି ଥିଲେ ଯାହା, ନ ଥିଲେ ତାହା। ଏପରି ନରଦେହଧାରୀ ପଶୁ-"

ବାଧା ଦେଇ ଚୌଧୁରୀ କହିଲେ, "ଆପଣ ମୁହଁରେ ଏତେ କହୁଛନ୍ତି ସିନା ! ହେଲେ ଦେଖିଛନ୍ତି କି ? ଆଜିକାଲି ପୁରୁଷ ପିଲାଙ୍କ ଚରିତ୍ର କିଏ ପଚାରେ ? ଆଜିକାଲି ତ ଶହେରେ ଗଣ୍ଡାଏ ଭଲ ମିଳିବା ଦୁଷ୍କର।"

ଜଗନ୍ନାଥ ଅପ୍ରସନ୍ନ ଭାବରେ କହିଲେ, "ଯା ମୁଁ ମାନିବି ନାହିଁ; ଭଲ ମନ୍ଦ ଦୁଇ ଅଛନ୍ତି। ଜାଣୁ ଜାଣୁ ସାବିତ୍ରୀକୁ ଅପାତ୍ରରେ ଦେଲେ, ଏବେ ଜାଣୁ ଜାଣୁ ପୁଣି ସୀତାକୁ ଅପାତ୍ରରେ ଦେବେ।"

ଚୌଧୁରୀ ଉତ୍ତେଜିତ ହୋଇ କହିଲେ, "ଦିବକାର ଅପାତ୍ର? ଗାଁ ଦଶଗଣ୍ଡାର ଜମିଦାର, ଦଶଲାଖ୧ ଟଙ୍କାର ସମ୍ପତ୍ତି, ଯାନ ବାହନ, ମଟରକାର, ସୁନାରୂପାର ଅଳଙ୍କାର ଘରେ ଖନ୍ଦା। ଦିବାକର ଅପାତ୍ର? ଆପଣ କେମିତି କହୁଛନ୍ତି? ଅପଣଙ୍କ ଝିଅକୁ ମାଗିଥିଲେ ଆପଣ ନାହିଁ କରନ୍ତେଟି? ମୋ ଭାଗ୍ୟଭଲ, ନୋହିଲେ ମୋ ସୀତାପାଇଁ ବିଧାତା ଏମିତି ବର ଘଟନା କରିଥାନ୍ତେ।"

ତାଙ୍କ ଗର୍ବିତ କଥାରେ କ୍ଷୁବ୍ଧ ହୋଇ ଜଗନ୍ନାଥ କହିଲେ, "ଏହି ସମ୍ପତ୍ତି ଥିଲେ ସୁଦ୍ଧା ଏପରି ଚରିତ୍ରହୀନ ନିଶାଖୋରକୁ ଜଗନ୍ନାଥ ଝିଅ ଦବନାହିଁ। ଶାନ୍ତିରେ ଶାକାନ୍ନ୨ ଭଲ।"

ଚୌଧୁରୀ ମାତି ବସି କହିଲେ, "କାରଣ ଆପଣ ଜମିଦାର ଘରମାନଙ୍କରେ ବନ୍ଧୁ ବାନ୍ଧିଛନ୍ତି। ଆପଣଙ୍କ ବଡ ଜୁଆଇଁ ସ୍କୁଲ-ସବ୍‌ଇନ୍‌ସପେକ୍ଟର, ମଝି ଜୁଆଇଁ ପୋଷ୍ଟମାଷ୍ଟର, ସାନ ଜୁଆଇଁ ମୋର ଏକମାତ୍ର ପୁତ୍ର। ଏଥିରେ ଆଉରି ମୋତେ ଉପଦେଶ ଦଉଛନ୍ତି, ମା-ବାପା ଛେଉଣ୍ଡ ବାରବୁଲା ଅର୍କ୍ଷିତ ରଘୁନାଥକୁ ଝିଅ ଦେବାକୁ। ଦିବାକରଠୁଁ ବଳି ତାର କଣ ଯୋଗ୍ୟତା ଅଛି, ଗୁଣେ, ବିଦ୍ୟାରେ, ନା ଧନରେ, ନା କୁଳରେ, ନା ରୂପରେ?"

ଏପରି ଦୀର୍ଘ ଚଉପଦୀଦ୍ୱାରା ଯେ ଜଗନ୍ନାଥଙ୍କୁ ଅତ୍ୟନ୍ତ ବାଧିବ, ଏ କଥା ଚୌଧୁରୀ ବୁଝିଥିଲେ କଦାପି କହି ନ ଥାନ୍ତେ। କିନ୍ତୁ ସହିଷ୍ଣୁ ଜଗନ୍ନାଥ ଧୀର ଗମ୍ଭୀର ସ୍ୱରରେ କହିଲେ, "ଆପଣ ବଡ ଅନ୍ୟାୟ ଭାବରେ ମୋତେ ଦୋଷୀ କରୁଚନ୍ତି। ରଘୁନାଥ ମା-ବାପା-ଛେଉଣ୍ଡ, ଅନାଥ ଅର୍କ୍ଷିତ ହୋଇପାରେ, କିନ୍ତୁ ମଣିଷପଣିଆରେ ଶହେଟା ଦିବାକର ଅପେକ୍ଷା ରଘୁନାଥ ବଡ। ମଣିଷ-ଦେବପୁତ୍ର। ଆଉ ଆପଣ ଜାଣନ୍ତି, ନା ଜାଣନ୍ତି ନାହିଁ, ଆପଣଙ୍କ କନ୍ୟା ରଘୁନାଥଗତପ୍ରାଣା?"

ଶେଷ କଥାରେ ଚୌଧୁରୀଙ୍କର କ୍ରୋଧହେଲା। ସେ ଚକ୍ଷୁ ବିସ୍ତାରୀତ କରି କହିଲେ, "ମୋର କନ୍ୟା ରଘୁନାଥଗତପ୍ରାଣା? ଆପଣ ମୋତେ ଭାଗବତ ଦଶ ଅଧ୍ୟାୟ ଶୁଣାଇବାକୁ ଆସିଚନ୍ତି? ଆରେ, ମୋର ଧର୍ମ ଗଲା! ମୋର କୁମାରୀ କନ୍ୟା ବାପର ଇଚ୍ଛା ବିରୁଦ୍ଧରେ ଅନ୍ୟକୁ ବିବାହ କରିବକୁ ବସିଛି, ଆଉ ଆପଣ ମତେ ସେହି କଥା ଶୁଣାଇବାକୁ ଆସିଛନ୍ତି?" ଚୌଧୁରୀ ଆଖିରୁ ଉତ୍ତେଜନାରେ ଲୁହ ଦିଟୋପା ଗଡିଗଲା। ଜଗନ୍ନାଥ ମଧ ଉତ୍ତେଜିତ ହୋଇ କହିଲେ, "ଆପଣ ବିଧାତାର ବିଧି ବରୁଦ୍ଧରେ ଠିଆ ହେଉଚନ୍ତି। ସୀତା ନିରପରାଧା, ରଘୁନାଥ ନିର୍ଦ୍ଦୋଷ। କେବଳ ଟଙ୍କା ଦୁଇ ହଜାର ଲାଗି ଆପଣ ସମୁଦ୍ରରେ ଝିଅଟିକୁ ଭସେଇବାକୁ୩ ବିଚାର କରିଚନ୍ତି।"

ଉତ୍‌ଥିତ କ୍ରୋଧକୁ ଗୋପନକରି ଚୌଧୁରୀ କହିଲେ, "ଆଜ୍ଞା, ସେ କଥା ଆପାଣ ମତେ କହିବେ ନାହିଁ, -ମୁଁ ଟଙ୍କା ଦି'ହଜାର ଛାଡି ଦଶ ହଜାରରେ ନୁହଁ। ମୁଁ ଆପଣଙ୍କ ପରି

(୧) ଲକ୍ଷ, (୨) ଶାଗଭାତ, (୩) ନଷ୍ଟକରିବା।

ଦାତା କର୍ଣ୍ଣ ନୁହେ ଯେ, କୁଆଁରମାନଙ୍କୁ ବିନା ପଣରେ କନ୍ୟାଦାନ କରିବି। ମୁଁ ହୋଇଥିଲେ ଚତୁର୍ଭୁଜ, ସନାତନ ଖାଲି ହାତରେ ଆସି ବିଭା ହୋଇ ନ ଥାନ୍ତେ। ମୁଁ ତାଙ୍କୁ ପାଣି ପିଆଇ ଛାଡିଥାନ୍ତି।" ଏହା କହି ସେ ସଗର୍ବରେ ଅର୍ଦ୍ଧଲମ୍ଫରେ ଉଠି ତତ୍‌କ୍ଷଣାତ୍ ହାତ ବାକ୍‌ସ ଫିଟାଇ ଭାବୀ ଜାମାତାର ଚିଠି କାଢିଲେ ଏବଂ କହିଲେ, "ହେଇ ଦେଖ, ଦିବାକର ବାବୁ ଲେଖିଚନ୍ତି- 'ଆପଣଙ୍କ ସୁନ୍ଦରୀ ଗୁଣବତୀ କନ୍ୟାକୁ ଦୁଇ ହଜାର କଣ, ଦଶ ହଜାର ଟଙ୍କା ପଣ ଦେଇ ବିବାହ କରିପାରେ'।" ଜଗନ୍ନାଥ ବିରକ୍ତ ହୋଇ କହିଲେ, "ଭାବୀ ଶ୍ୱଶୁରଙ୍କୁ ଯେ ଏପରି ଚିଠି ଲେଖିପାରେ, କାଲି ସକାଳେ ସେ ଆଉ କଅଣ ନ କରିବ ? ହଉ, ଆପଣଙ୍କ ଇଚ୍ଛା; କିନ୍ତୁ ସୀତା କାଦାଚ ସୁଖୀ ହେବ ନାହିଁ।"

"ହଉ ଦେଖାଯିବ" ସ୍ପର୍ଦ୍ଧିତ ସ୍ୱରରେ ଏହା କହି ଚୌଧୁରୀ ହାତବାକ୍‌ସ ବନ୍ଦକଲେ। ଜଗନ୍ନାଥ ବିରସ ବଦନରେ ବିଦ୍ାୟନେଲେ।

ତାଙ୍କ ପଛେ ପଛେ କାର୍ତ୍ତିକ ନନ୍ଦେ ପହଞ୍ଚିଲେ। ଆଜିକାଲି ଚୌଧୁରୀଙ୍କ ସହିତ ତାଙ୍କର ପୂର୍ବ କଳହ ବଦଳରେ ଅତିଶୟ ସୌହାର୍ଦ୍ଦ୍ୟ ହୋଇଛି। ସେ ଚୌଧୁରୀଙ୍କର ଅଯଥା ଉତ୍ତେଜିତ ଭାବ ଲକ୍ଷ୍ୟକରି କହିଲେ, "କିହ, କଣପାଇଁ ଏତେ ଢମଢମ-କାହାକୁ ଯିମିତି ଶୂଳିରେ ଦବ ?"

ଚୌଧୁରୀ ମୁହଁ ବୁଲାଇ କହିଲେ, "ନାହିଁ ହେ, ଦେଖ ଜଗନ୍ନାଥଙ୍କ କଥା। ଲେକେ ପର ବେଳକୁ ଉପଦେଶ ଦିଅନ୍ତି, ଘର ବେଳକୁ -"

"କିହ, କଣ, କଥା କଣ।" ଏହା କହି କାର୍ତ୍ତିକ ନନ୍ଦ ମସିଣାରେ ବସିପଡି ପାନଖିଲେ ମଳି ପାଟିରେ ଯାକିଲେ। ଚୌଧୁରୀଏ ଅଣ୍ଟାରୁ ନାସଦାନିଟା କାଢି ନାକରେ ମୋଞ୍ଚାଏ ନାସ ଭର୍ତ୍ତିକରି, ବଡ ଛିଙ୍କଟାଏ ଛିଙ୍କି ଗଳା ଖଙ୍କାରି କହିଲେ, "ଯାଃ, ଯାଃ, ଦିବାକରକୁ ବାଉନା ଲାଗିଚି। ମୁଁ ବଡଲୋକ କୁଆଁର କରିଚି ବୋଲି ଲେକେ ଦେଖିସହି ପାରୁନାହାନ୍ତି। କହୁଚନ୍ତି- ଚରିତ୍ରହୀନ, ନିଶାଖୋର।"

କାର୍ତ୍ତିକ ନନ୍ଦ ବଡ ପାଟିରେ କହିଲେ, "କାହା ନନା ଚଉଦ ପୁରୁଷରେ କିଏ ସବୁ ସାଧୁ ସଇନ୍ୟାସୀ[୨] ଅଛନ୍ତି, ଶୁଣେ ? ବଡଲୋକ ପୁଅ-ଜମିଦାର, ଟିକିଏ ମଦ ଫଦ ଖାଏ- ସେ ତ ସଉକି କଥା, ଦିଇଟା ଗୋଟାଏ କଉଁଠି ରଖିଚି-ସେ ତ ଅଲିଅରପଣ[୩]। ଏ ଗୋଟାଏ କଥା ଧରିବାର ? ତେମେ ବୁଡାଟି ହେଇ ବାଳ ପଚେଇ, ଏଇ ଅଲିହା[୪] କଥାରେ କ୍ରୋଧ କରୁଚ ? କହିଲ ଭଲା, ଟଙ୍କା ଦି'ହଜାର କଣ ମାଗଣା ? ଏତେ ଟଙ୍କା ଆଜିକାଲି କିଏ ଦିଏ ? ଓଲିଟି ଟଙ୍କା ଦେଇ ବରଂ କିଣିବାକୁ ପଡେପରା।" ଚୌଧୁରୀଏ ଟିକିଏ ଶାନ୍ତହୋଇ ଅନ୍ୟ କଥା ଆରମ୍ଭକଲେ।

ଏଣେ ଜଗନ୍ନାଥ ଦୁଇ ଚରୋଟି ରୋଗୀ ଦେଖି ସନ୍ଧ୍ୟା ସମୟରେ ଯେତେବେଳେ ଘରକୁ ଫେରିଲେ, ଦୁଆରମୁଣ୍ଡରେ ତାଙ୍କୁ ଭେଟିଲେ ତାରାମଣି। ତାଳିହାଣ୍ଡିରେ ଜାଳ ମୁହାଣି

(୧) କାଳ, (୨) ସନ୍ୟାସୀ, ଗୃହତ୍ୟାଗୀ ସାଧକ, (୩) ଅଲିଅଳ, ଗେହ୍ଲା, (୪) ମାଖୁନା, ମୂଲ୍ୟହୀନ।

ଦେଇ ଆସି ସେ ସ୍ୱାମୀଙ୍କ ଅପେକ୍ଷାରେ ଦାଣ୍ଡ ଦୁଆରକୁ ଚାହିଁଥିଲେ। ସକାଳ ପହରୁ ଗଲେଣି, ଆସି ସଞ୍ଜ ଗଡିଲାଣି, ଦେଖା ନାହିଁ। ଛାତି ଭିତରୁ ଦକଦକ ହେଉଥାଏ-କାଳେ ସୀତାର ଭାଗ୍ୟ ଲେଉଟିଥିବ, କାଳେ ଚୌଧୁରୀଏ ପ୍ରସନ୍ନ ହୋଇଥିବେ; କିନ୍ତୁ ତାଙ୍କୁ ନିରାଶ ହେବାକୁ ହେବ। ସ୍ୱାମୀର ବରସ ବଦନରୁ ସେ ସବୁ ବୁଝିନେଲେ, ତଥାପି ମୁହଁକୁ ଚାହିଁ ରହିଲେ। ତାଙ୍କର ଭାବ ବୁଝିପାରି ଜଗନ୍ନାଥ କହିଲେ, "କିଛି ଫଳ ହେଲା ନାହିଁ, ପ୍ରବଳ ଅର୍ଥଲୋଭ!"

ତରାମଣି ରଘୁନାଥର ଭବିଷ୍ୟତ୍ ଚିନ୍ତାକରି ଆଖିରୁ ଲୁହଟୋପାଏ ଗଡେଇଲେ; ତଥାପି ଆଶା କହିଲା- "ଥରେ କଣ ସରସ୍ୱତୀଙ୍କୁ କହିଲେ ହେବ ନାହିଁ?" ଏପରି ଉଦାରପ୍ରାଣ ଯାହାର, ସେ କଣ ଅର୍ଥଲୋଭରେ ଭୁଲି ସତ୍ୟ ଲଙ୍ଘନ କରିବେ?

ପରଦିନ ଦି'ପହରେ ଗାଡି କରି ତାରାମଣି 'ଅଳେଇଚ' ଅର୍ଥାତ୍ ସମୁଦୁଣୀଙ୍କୁ ଭେଟିବାକୁ ଗଲେ। ସରସ୍ୱତୀଙ୍କ ମୁହଁକୁ ଅନେଇ ତାଙ୍କ ମନ ବିକଳ ହୋଇଉଠିଲା। ଏ କି ଅଦ୍ଭୁତ ପରିବର୍ତ୍ତନ! ସେ ହସହସ ମୁହଁ ଶୁଖି କଳାକାଠ। ସୀତା ଆଉ ଘରୁ ପାନଭାଙ୍ଗି ଆଣି ଦେଇ, ମୁଣ୍ଡରେ ଲୁଗାଦେଇ କବାଟ ପଛ ଆଡେ ଠିଆହେଲା। ତରାମଣି ସ୍ନେହଦୃଷ୍ଟିରେ ଅନାଇ ଧୀରେ ଧୀରେ ସରସ୍ୱତୀଙ୍କୁ କହିଲେ, "ଏ ପରା ଝିଅକୁ ଉସେଇ ଦେଉଚ,। ସରସ୍ୱତୀଙ୍କର ରୁଦ୍ଧ ବେଦନା ଉଛୁଳି ପଡିଲା-ଆଖିରୁ ଝର ଝର ଲୁହ ଝରିଲା-ନାରୀର ସମବେଦନାରେ ସହାନୁଭୂତିରେ ନାରୀପ୍ରାଣ ପୂର୍ଣ୍ଣହେଲା। ତାରାମଣି ସରସ୍ୱତୀଙ୍କି କୁଣ୍ଢାଇ ପକାଇଲେ-ଦୁଇ ଜଣ କାନ୍ଦିଲେ; କଣ କହିବେ ବାଟ ଖୋଜି ପାଇଲେ ନାହିଁ। ଅସହାୟ ଆର୍ତ୍ତର କାନ୍ଦଣା। ଏ ବନ୍ଦିନୀ ନାରୀ, ଅତ୍ୟାଚାରପୀଡିତ ପ୍ରାଣର ବ୍ୟଥା ଏ। ବହୁକ୍ଷଣ ପରେ ସରସ୍ୱତୀ ଆଖି ପୋଛି କହିଲେ, "ଭଉଣି, ମୋର ଭଲା ମରଣ ହୁଅନ୍ତା-ଏ ଅନର୍ଥ ଦେଖିବାକୁ ମୁଁ ବଞ୍ଚିଥିଲି?"

ତାଙ୍କ ସାନ୍ତ୍ୱନା ଦେଇ ତାରାମଣି କହିଲେ, "ତାଙ୍କୁ କହ!"

"ତୁମେ କଣ ବାୟା ହେଉଚ? ସେ ମୋ କଥା ଶୁଣିବେ?"

"ସେ ସ୍ୱାମୀ-ସେ ଶୁଣିବେ ନାହିଁ, ଆଉ ଶୁଣିବ କିଏ?"

"ଦିଅଁ ଦେବତା କହିଲେ ତ ଚୌଧୁରୀ ଶୁଣିବେ ନାହିଁ" କହି ପିଡେଇ ନାନୀ ଚଟେଇ ପାରିଦେଲା। ତାରାମଣି କହିଲେ, "ତୁମେ କଣ କହି ଦେଖିଚ?"

ଲୁହ ଛଳଛଳ ଆଖିରେ ସରସ୍ୱତୀ କହିଲେ, "ଗୋଡ ଧରିଚି, କାନ୍ଦିଚି, ମୁଣ୍ଡ କୋଡିଚି। ସେଥିରେ ଓଲଟି ମୋତେ ଗାଳି, ପୁଅ ଝିଅଙ୍କୁ ଭର୍ତ୍ସନା! କଣ କହିବି, ସ୍ୱାମୀ, ତାଙ୍କ ନିନ୍ଦା ମହାପାପ; କିନ୍ତୁ ଆଉଁ ଜାଣିଲି, ସ୍ୱାମୀ ନୁହନ୍ତି ସେ-"

ତାଙ୍କୁ ବାଧା ଦେଇ ପାଖେଇ ନାନୀ ରୁକ୍ଷସ୍ୱରରେ କହିଲା, "ଏ କଣ ତୋର। କଣ ବାୟାଣୀ ହେଲୁଣି! କଣ ବୋଲି କଣ କହୁଚୁ?"

"ଆଲୋ, ମୋ ମନ ପୋଡୁଚି-ମୋ ହିଆଟା ଚିରି ଯଦି କେହି ଦେଖନ୍ତା। ଝିଅ ଜନ୍ମକଲେ ଏତିକି ଦୁଃଖ। ଭଉଣି, ତୁ ଏକା ସୌଭାଗ୍ୟବତୀ, ମୁଁ ଅଲକ୍ଷଣୀ କାହୁଁ ସେ ଅଧିକାର ପାଇବି? ଦରବୁଢୀ ହେଲି-ବାଳ ପାଚିଲା, ଏବେ ବୁଝିଲି.-ହଜାର ପାଟମଠା ପିନ୍ଧ,

(୧) ଆଜି, ଏବେ, (୨) କେମିତି

ହଜାର କ୍ଷିରୀ ଖିରିଶା ଖାଅ, ସ୍ୱାମୀଘରେ ହଜାର ରାଣୀ ହେଇ ଦାସୀ ପୋଇଲୀ ଖଟୁଥାନ୍ତୁ, ଆମେ ପଦେ କଥାକୁ ଭାଜନ ନୋହୁ-ଦାସୀଙ୍କ ହାଲିକି¹ ଆମ ଦୁର୍ଦ୍ଦଶା ବଳେ। ଦାସୀଙ୍କର ହେଲେ ଭଲ ମନ୍ଦରେ ପଦେ କହିବାର କୁ² ଅଛି, ଆଉ ଆମେ ଖଟ– ସାଆନ୍ତାଣୀ, ରୋଷେଇଶାଳର ଠାକୁରାଣୀ; ଆମଠି ଯେ ବୁଦ୍ଧି ବିଚାର ଅଛି, ଯା କିଏ ଭାବେ? କଉଁ କଥା କିଏ ଆମକୁ ପଚାରେ? ଏବେ ମୋ ଆଖି ଫିଟିଲା, ସବୁ ବୁଝିଲି ସଂସାରଲୀଳା।”

ଏହା କହି ସରସ୍ୱତୀ ଗୁଡାଏ କାନ୍ଦିଲେ। ପିତେଇ ନାନା ସାନ୍ତ୍ୱନା ଦେଇ କହିଲେ, “ତୁନିହ, ତନିହ, ଭଉଣି। ସୀତା ଆମର ପଦୁକଥା ମାନି ସୁଲକ୍ଷଣୀ ଅଦ୍ୟରାଣୀ ହେବ। ପିତୃସତ୍ୟ ଲାଗି ରାମଚନ୍ଦ୍ର ବନବାସ କଲେ। ଏ କିବା କଥା। ତୁ ଏତେ ଲୁହ ଝରା ନା; ଦେଖିବୁ, ଶେଷକୁ ସବୁ ଭଲ ହେବ। ଠାକୁରେ ଯାହା କରନ୍ତି ମଙ୍ଗଳ ପାଇଁ।

ଆର ଘରେ ଥାଇ ସୀତା ସବୁ ଶୁଣିଲା। ତାର ଆଖିରୁ ଉଷ୍ଣଧାର ବହୁଥିଲା। ଠାକୁରେ ଏମିତି ମଙ୍ଗଳ କରିନ୍ତି। ସୀତାର ହୃଦୟ ଠାକୁର ଉପରେ କ୍ରୋଧରେ ପୂରିଗଲା। ନିଃସହାୟ ମୃଗୁଣୀ ପରି ସେ ଦାବାନଳରେ ପୋଡି ମରୁଛି। ଠାକୁରେ ଥିଲେ କଣ ଦେଖନ୍ତେ ନାହିଁ? କତିରେ ଠିଆ ହୋଇ ରେବତୀ ନଣନ୍ଦର ଲୁହଧାରା କାନିରେ ପୋଛୁଥିଲା, ଆଉ ନିଜେ ମଧ କାନ୍ଦୁଥିଲେ। ରେବତୀ ଯୁବତୀ, ନଣନ୍ଦର ମନବ୍ୟଥା ଭଲରୂପେ ବୁଝେ। ସେ ଭାବୁଥିଲା, ତା ସ୍ୱାମୀ କଣ ଏଥିରେ ହାତଦେଲେ ହୁଅନ୍ତା ନାହିଁ। ବାପରେ ଗୋଟିଏ ବୋଲି ପୁଅ। ସେ ଅଡି ବସିଲେ³ ବାପ କଅଣ ସହଜେ ଏ ବିଭାଘର କରି ପାରନ୍ତେ? ଠିକ୍ ସେତିକିବେଳକୁ ବାବୁ ଘର ଭିତରକୁ ପଶି ଆସୁଥିଲେ। ସୀତା ଓ ରେବକୁ ଏକାଠି ଦେଖି ଫେରିଯିବାକୁ ବସିଲା। ରେବ ସାହସ କରି ହାତଠାରି ଡାକିଲା। ବାବୁ ଘର ଭିତରକୁ ଗଲା। ରୁକ୍ଷସ୍ୱରରେ ରେବତୀ କହିଲା “ଜାଣୁ ଜାଣୁ କଣ ଭଉଣୀକୁ ଶୂଳୀରେ ଦେବ?”

“ମୁଁ କଣ କରିବି?”

“କୁହ ନନାଙ୍କୁ, ଏ ସମ୍ବନ୍ଧ ଭାଙ୍ଗି ଦିଅନ୍ତୁ। ନେହିଲେ ସେଥିରେ ଅନର୍ଥ ହେବ। ତୁମେ ଭିନ୍ନ ହେବାର ଭୟ ଦେଖାଅ, ମତେ ବାପଘରକୁ ପଠେଇ ଦିଅ।”

ବାବୁ ଶୁଖିଲା ହସ ହସି କହିଲା, “ସ୍ତ୍ରୀ ବୁଦ୍ଧି ମତେ ବତାଉଚ? ମୋ ପରି କୋଡିଏଟା ପୁଅ ଭିନ୍ନ ହେଲେ ମଧ ନନା ଟଙ୍କାଲୋଭ ଛାଡି ପାରିବେ ଭାବୁଚ? ନଗଦ ଦୁଇ ହଜାର ଟଙ୍କା! ଦୁଇ ହଜାର ଟଙ୍କା ଶୁଣିଲା ଦିନ ବୁଢାର ବୁଦ୍ଧି ହଜିଗଲାଣି।”

ସ୍ୱାମୀର ବିଦ୍ରୂପ ବାକ୍ୟ ଶୁଣି ରେବତୀ କହିଲା, “ତେବେ ଉପାୟ କଅଣ?” ବାବୁ କହିଲା, “ମୁଁ ଯାହା କହୁଚି, କରିବ? ମୁଁ ସବୁ ଯୋଗାଡ଼ କରି ଛାଏଁ ରଘୁନାଥକୁ ଆଣି- ବେଦିରେ ବସେଇଦେବି? ଏଥିରେ ତମେ ରାଜି ତ? ତେଣେ ଦିବାକର ଦି'ହଜାର ଟଙ୍କା ଦେଇ ମୁଣ୍ଡ ବାଡଉଥାଉ।”

(୧) ଠାରୁ, ତୁଳନାରେ, (୨) ସାମର୍ଥ୍ୟ, ଅଧିକାର, (୩) ଜିଦ୍‌ଧରିବା

ସୀତାର ନୟନ କ୍ଷଣତ୍ ପ୍ରଫୁଲ୍ଲ ହେଲା। ସେ ଧୀରେ ଧୀରେ ଆଉ ଘରକୁ ଚାଲିଗଲା। ସ୍ୱାମୀ ସ୍ତ୍ରୀ ବିବାହ-ବିଭ୍ରାଟର ପରାମର୍ଶ କରିବାକୁ ବସିଗଲେ।



## ତ୍ରୟୋଦଶ ଅଧ୍ୟାୟ

ଜଗତ୍ ନିସ୍ତବ୍ଧ-ପ୍ରକୃତି ସୁପ୍ତ। ଆକାଶରେ ଜାଗ୍ରତ୍ କେବଳ ଚନ୍ଦ୍ର, କେବଳ ତାରା। ପୃଥିବୀରେ ପଶୁପକ୍ଷୀ ନିସ୍ତବ୍ଧ, ଚରାଚର ସୁପ୍ତ; ଜାଗ୍ରତ୍ କେବଳ ପତ୍ରାନ୍ତରାଳରେ ମଲ୍ଲିକା-ପ୍ରାଣର ଅପୂର୍ବ ପ୍ରୀତି, ଅନୁପମ ପବିତ୍ରତା ଘେନି ଜାଗ୍ରତ କେବଳ ମଲ୍ଲିକା, ଆଉ ଜାଗ୍ରତ୍ ଗୋଲାପ-ପ୍ରାଣର ଆକୁଳ ପ୍ରଣୟ, ହୃଦୟର ଅମୂଲ୍ୟ ସୌନ୍ଦର୍ଯ୍ୟ ଘେନି ଜାଗ୍ରତ କେବଳ ଗୋଲାପ।

ଆଉ ଜାଗ୍ରତ ତୁଠ କତି ଅଶୋକ ଚଉତରା ଉପରେ ସୀତା, କତିରେ ପୀତେଈ ନାନୀ। ସୀତାର ରାତି ପାହିଲେ ବିବାହ। ସୀତା ଜାଣୁଛି-ତାହାର ସର୍ବଜଗତ୍ ଶୂନ୍ୟ, ତାହାର ଭବିଷ୍ୟତର ସମୁଦାୟ ଆଶା ଭଗ୍ନ। ଠିକ୍ ମାସକ ତଳେ ସୀତା କେତେ ସୁଖୀ ଥିଲା, - ମାସକ ତଳେ ସୀତା ରଘୁନାଥର ଥିଲା। ହଠାତ୍ ଦିନ ଦୁଇପ୍ରହର ବେଳେ ବିନାମେଘରେ ବଜ୍ର ପଡିଲା-ଉଇଁ ଆସୁଥିବା ସୂର୍ଯ୍ୟକୁ ରାହୁ ଗ୍ରାସକଲା। ସେ ଶୁଣିଲା, ଦିବାକର ସହିତ ତାହାର ବିବାହ। ଆହା! ସେହି ଦିନ ତାହାର ମରଣ ହେଲାନାହିଁ। ସେ ପଥର ପରି ଠିଆହୋଇ ଶୁଣିଲା, ପିତା ତାର ସମ୍ବନ୍ଧ ଭାଙ୍ଗିଲେ-ରଘୁନାଥଠୁଁ ଛଡାଇଲେ। ସେ ଆଉ ଭାବି ପାରିଲା ନାହିଁ, ଛାତି ବିଦାରି ଦୀର୍ଘଶ୍ୱାସମାନ ବହିଲା-ସେ କଇଁ କଇଁ ହୋଇ କାନ୍ଦିଲା।

ନିକଟରେ ସ୍ନେହମୟୀ ପୀତେଈ ନାନୀ। ତାହାର ଲୁହ ଝର ଝର ବହି ଯାଉଛି। କଅଣ କହି ସୀତାକୁ ସାନ୍ତ୍ୱନା ଦେବ, ସ୍ଥିର କରି ପାରୁନାହିଁ; ତଥାପି ମନ ଆଣ୍ଟକରି[୧] କହିଲା, "ମା, ବାୟାଣୀ ହେଲୁ? କୁଳରେ କଳଙ୍କ ଦେବୁ? ବୁଡି ମରିବୁ? ମା, ସଂସାର କେଇ ଦିନର, ଆମେ ଏଠି ନାଟୁଆ ପରି ନାଟ ସୁଆଙ୍ଗ କରି ଯାଉଥାଇଁ ସିନା! ଯାହା କର୍ମଫଳ ଘିନି ଆସିଚୁଁ, ତାହା ଭୋଗିବୁ!"

ସୀତା ସଅଁ ସଅଁ ହୋଇ ଭଗ୍ନସ୍ୱରରେ କହିଲା, "ଧିକ୍ କର୍ମଫଳ। ଧିକ୍ ଜନ୍ମ। ପଶୁଜନ୍ମ ପାଇଲି ନାହିଁ। ଠାକୁରଙ୍କର କଣ ଏଇ ବିଚାର। ଦୌପତୀର[୨] ଇଚ୍ଛା ପରା ସେଇ ରଖିଥିଲେ, ଅହଲ୍ୟା ପରା ତାଙ୍କରି ପାଦସ୍ପର୍ଶରେ ମାନବୀ ହୋଇଥିଲା, ଆଉ ମୋରି ବେଳକୁ। ସୀତା କହି ପାରିଲାନାହିଁ। ଦାରୁଣ କୋହରେ ତାହାର ଛାତି ଫାଟିଗଲା। ସେ ତାହାର ସମୁଦାୟ ବଳ ଏକତ୍ର କରି ପୀତେଈ ନାନୀକୁ କୁଣ୍ଢେଇକୁ ଧରିଲା। ହଠାତ୍ ବିକଟ ଭାଙ୍ଗୀରେ ଅସ୍ୱାଭାବିକ ତେଜରେ ତାହାର ଆଖି ଜଳିଉଠିଲା। କ୍ଷୀଣ ଚନ୍ଦ୍ରାଲୋକରେ ସୁଦ୍ଧା ତାହା ଦେଖି ପୀତେଈ ପ୍ରମାଦ ଗଣିଲା। ଆପଣାର ଦୃଢ ବାହୁବନ୍ଧନ ମଧ୍ୟରେ ସେ ତାହାକୁ ଚିପି ଧରି କହିଲା,

(୧) ଦୃଢ଼କରି, ଟାଣକରି, (୨) ଦ୍ରୌପଦୀର

"ଦେଖ୍! ମୋ ରାଣ, ମୋ ରାଣ, ପକା, ପକା, ଏ କୁକର୍ମ କରନା।" ଏହା କହି ସେ ସୀତାର ଦୃଢବଦ୍ଧ ମୁଷ୍ଟି ଖୋଲିବାକୁ ଚେଷ୍ଟାକଲା, କିନ୍ତୁ ପାରିଲା ନାହିଁ। ଅସ୍ୱାଭାବିକ ଉତ୍ତେଜନାରେ ସୀତାର ବଳ ଆଜି ଦୁଇଗୁଣ ବଢିଯାଇଚି। ସେ ମରିବ, ସେ ଦୃଢପ୍ରତିଜ୍ଞ- ସେ ମରିବ, ବିଷ ଖାଇବାଉ, ପାଣିରେ ବୁଡି ହଉ, -ସେ ନିଶ୍ଚୟ ମରିବ। ସେଥିପାଇଁ ନରିଆ ବୁଢାର ଅଫିମ ଡିବାରୁ ଟୋକାଏ ଅଫିମ ଚୋରି କରିଚି। ଏତିକି ଖାଇଲେ କଣ ତାଙ୍କ ପ୍ରାଣ ଯିବନାହିଁ? ହଁ, ଅବଶ୍ୟ ଯିବ; ତେବେ ସମସ୍ତେ ଚେତିବେ- ତେବେ ବୁଝିବେ, କନ୍ୟାର ଇଚ୍ଛା ବରୁଦ୍ଧରେ ବିବାହର ଫଳ କଣ? ରାଗରେ, ଦୁଃଖରେ ସୀତା ତାହା ଖାଇ ସାରନ୍ତାଣି; କିନ୍ତୁ ହଠାତ୍ ଶନି ପରି ପୀତେଇ ନାନୀ ହାବୋଡି ଗଲା। ପୀତେଇର ଦୃଷ୍ଟି ସର୍ବଦା ସୀତା ଉପରେ। ଏ କେତେ ଦିନ ମଧରେ ତାର ମତିଗତିରୁ ସେ ତାହାର ମନ କଳି(୧) ନେଇଛି। ପୀତେଇ ବୁକୁରେ କାଢେ ପାଣ(୨), ସେ ସୀତାକୁ କାନି ଗଣ୍ଠେଇ ରଖିଛି।

ରଘୁନାଥ ଏତିକି ବେଳେ ଆସି ପୀତେଇ ନାନୀ କତିରେ ଠିଆହେଲା। ସୀତା ରଘୁନାଥକୁ ଦେଖି ମୁହଁ ତଳକୁ କଲା; ପଣନ୍ତ କାନିରେ ଢାଙ୍କିହେଲା; ତାହାର ଦୃଢବଦ୍ଧ ମୁଷ୍ଟି ନିମେଷ ମଧରେ ଶିଥିଳ ହୋଇଗଲା। ପୀତେଇ ନାନୀ ତାହା ହାତରୁ ଅଫିମଟୋକାଟି ଛଡେଇ ରଘୁନାଥକୁ ଦେଖାଇ ଛାତିରେ ବାଡେଇ ହେଲା-ହା ରେ ରଘୁନାଥ! ଏଇ ମୋ ସୁଲକ୍ଷଣୀ କପାଳରେ ଥିଲା। ଏଇ ମୋର କନକହୀରା କପାଳରେ ଥିଲା। ହା ରେ ରଘୁନାଥ! ଯା ହବ ବୋଲି  କିଏ ଜାଣିଥିଲା ରେ। ଅକାତ ପାଣିରେ ମୋ ସୀତିଆ ଭାସିବ।"

ରଘୁନାଥର ଆଖି ପାଣିରେ ପୂରିଗଲା। ସେ କଣ କହିବ, କଣ ସାନ୍ତ୍ୱନା ଦେବ? ଇଚ୍ଛା ହେଲା, ବୁକୁ ଚିରି ସୀତାକୁ ସ୍ଥାନଦିଅନ୍ତା, ଛାତି ବିଦାରି, ରକ୍ତଢାଳି ସୀତାକୁ ଉଦ୍ଧାର କରନ୍ତା। ରତି ପାହିଲେ ସୀତାର ବିବାହ; ଆଉ ବିବାହର ପାତ୍ରୀ ମରିବାକୁ ପ୍ରସ୍ତୁତ। ରଘୁନାଥ! ଧୈର୍ଯ୍ୟ ଧର, ନା ସେ ଧୈର୍ଯ୍ୟ ଧରିପାରିଲା ନାହିଁ। ଉପରକୁ, ଆକାଶକୁ ଚାହିଁଲା। ଆକାଶରେ ଚନ୍ଦ୍ର, ତାରା, ଅଷ୍ଟଦିଗପାଳ ଏମାନେ କଣ କେହି ରକ୍ଷା କରିପାରିବେ ନାହିଁ? ତେତ୍ରିଶକୋଟି ଦେବତା ଭିତରୁ କେହି କି ଜଣେ ଆସି ସୀତାର ଦୁଃଖ ମୋଚନ କରି ପାରିବେ ନାହିଁ। ରଘୁନାଥ ନିରାଶ ହେଲା। ସବୁ ଶୂନ୍ୟ, ସବୁ ନିସ୍ତବ୍ଧ। ପୁଣି ଅନାଇଲା ପୋଖରୀରେ ପାଣି, ପାଣିରେ ପ୍ରସ୍ଫୁଟିତା କୁମୁଦିନୀ। ଲକ୍ଷ ଯୋଜନ ଦୂରର ଚନ୍ଦ୍ର ପ୍ରତି ଚାହିଁ ରହିଛି। ରଘୁନାଥର ମନରେ ହେଲା- 'ଯେ ଯାହାର ସେ ତାହାର।' ସୁଦୀର୍ଘ ଶ୍ୱାସ ସହ ରଘୁନାଥ ସୀତାକୁ ଅନାଇଲା। ପୁଣି ମନରେ ହେଲା- 'ଯେ ଯାହାର ସେ ତାହାର।' ସୀତା ତାର-ସୀତା ତାର। ହାୟ ଧନହୀନ, ବଳହୀନ ରଘୁନାଥ! ତୋର ସୀତା 'ତୋର ସୀତା!' ତାହାର ନିଜ ହୃଦୟ ଯେପରି ତାକୁ ପରହାସରେ ପଚାରିଲା 'ତୋର ସୀତା?'

(୧) କଳନା କରିବା, ଅନୁମାନ କରିବା, ଜାଣିଯିବା, (୨) ବଳ

ରଘୁନାଥର ଆଖି ପୂର୍ଣ୍ଣ ହୋଇ ଝରି ପଡିଲା। ନିଜର ଏକାନ୍ତ ଅକର୍ମଣ୍ୟତା ଆଜି ତା ଆତ୍ମାକୁ ବଡ ବାଧିଲା। ସେ ଉତ୍ତେଜନାରେ, ଦୁଃଖରେ ସୀତା କତିକି ଘୁଞ୍ଚିଆସିଲା। ଆପଣାକୁ ସମ୍ଭାଳି ନ ପାରି ସୀତା କତିକି ଘୁଞ୍ଚି ଆସିଲା।

ସୀତାର ବାହ୍ୟଜ୍ଞାନ ନ ଥିଲା। ସେ କୋମଳ ବାହୁଲତାରେ ରଘୁନାଥର ଚରଣ ବେଷ୍ଟନ କରି ପକାଇଲା। ଆଜି ସବୁ ଲୁହ, ସବୁ ଲହୁ ସେ ଢାଳି ଦେବ ଏହି ଚରଣରେ, ସବୁ ଅଭିମାନ ସେ ଅଜାଡି ଦେବ ଏହି ପାଦରେ। ନିଷ୍ଠୁର, କିପରି ତାକୁ ତ୍ୟାଗ କରୁଛି ? ଆଶ୍ରୟପ୍ରାର୍ଥିନୀ ଅଭାଗୀ ଏକାନ୍ତ ଅନୁରକ୍ତାକୁ କିପରି ତ୍ୟାଗ କରୁଛି ? ବାପଭାଇ ସିନା ବୁଝିଲେ ନାହିଁ-ମନର କଥା, ମନର ଯେ ଦେବତା, ହୃଦୟର ଯେ ଅଧିଷ୍ଠାତା, ସେ ବୁଝି ନାହିଁ ? ସୀତା ଜାଣେ, ସେ ବୁଝିଛି। ସେ ତ ତାରି ପରି ଦୁଃଖୀ, ସେ ତ ତାରି ପରି ହତଭାଗା। ସୀତା କଇଁ କଇଁ ହୋଇ କାନ୍ଦିଲା।

ଆଜି ଜୀବନରେ ପ୍ରଥମ ପୂର୍ଣ୍ଣ ମିଳନ। ପୂର୍ଣ୍ଣ ମିଳନରେ ଦାରୁଣ ବିଚ୍ଛେଦ, ଘଡିକ ସକାଶେ, ଦିନକ ସକାଶେ ନୁହେଁ, ଚିରଦିନ ସକାଶେ ବିଚ୍ଛେଦ। ଏ ବିଚ୍ଛେଦର ଜ୍ୱାଳା କି ଆଉ ଲିଭିବାର ! ମୃତ୍ୟୁପଥଯାତ୍ରୀ ପରି ସୀତା ଆଜି ରଘୁନାଥଠୁଁ ବିଦାୟ ନେଉଛି। ପୃଥିବୀର ଏ ପାରିରେ ଆଉ ଦେଖାହେବ ନାହିଁ ପରା !

ନୀରବ, ନସ୍ତବ୍ଧ ଯାମିନୀରେ ସେହି ଅଶୋକ ଚଉତରା ମୂଳେ ଅର୍ଦ୍ଧାନ୍ଧକାର ଚନ୍ଦ୍ରାଲୋକରେ ସୀତା ଓ ରଘୁନାଥ କାନ୍ଦିଲେ, ଆଉ କାନ୍ଦିଲା ପିତେଇ ନାନୀ। କିଏ କହେ, ରଘୁନାଥ ସୀତାର ନୁହେଁ ? ସଂସାର ସହସ୍ର ବାଧାବିଘ୍ନ ସେମାନଙ୍କ ମଝିରେ ଥୋଇଲେ ସୁଦ୍ଧା ସେମାନେ ତ ପରସ୍ପରର। ଏ କଣ ଆଜିର ସମ୍ବନ୍ଧ ? ଏ କଣ ଦୁଇ ଦିନର ଦେଖାଣିଆ ସମ୍ପର୍କ ? ଜନ୍ମଜନ୍ମାନ୍ତରରୁ ତ ସେମାନେ ପରସ୍ପରର। ଆଜି ସଙ୍କୋଚର ସବୁ ବାଧା, ଲାଜର ସବୁ ମୋହ ତୁଟିଗଲା। ଆତ୍ମାର ସଙ୍ଗୀ କତିରେ କି ଲାଜ ସରମ ? ଆଜି ସୀତା କାନ୍ଦିଲା, ରଘୁନାଥ କାନ୍ଦିଲା। ଏପରି କାନ୍ଦ ସେମାନେ କେବେ କାନ୍ଦି ନାହାନ୍ତି। ଏ ମରଣର କାନ୍ଦଣା, ଏ ଚିର ବିସର୍ଜନର କାନ୍ଦଣା। ଏଠି କଥାର ସ୍ଥାନ ନାହିଁ-ଏଠି ପ୍ରାଣର ପୂର୍ଣ୍ଣ ଅନୁଭୂତି।

ଧୀରେ ଧୀରେ କୁଆତାରା ଉଇଁ ଆସିଲା, ମଲ୍ଲୀ ଫୁଲିଆ ପବନ ଧୀରେ ଧୀରେ ତାଙ୍କୁ ଛୁଇଁଗଲା, ଧୀରେ ଧୀରେ କୋହର ବେଗଟା ଶାନ୍ତ ହୋଇ ଅଛି। ଆଖିପୋଛି ସୀତା ରଘୁନାଥକୁ ଅନାଇଲା, ରଘୁନାଥ ମଧ ତାକୁ ଅନାଇ ଅତି ଧୀରେ ଧୀରେ ସୀତା ବେକରୁ ସୁନା ସୂତାକେରାକ କାଢିଲା। ରଘୁନାଥ ବାରଣ କରିବା ପୂର୍ବରୁ ତାହା ତା ବେକରେ ଗଳାଇଦେଲା। ରଘୁନାଥ ପରକରି ପାରିଲା ନାହିଁ - "କାହିଁକି ?"

ନୀରବରେ ରଘୁନାଥ ଉଠି ଠିଆହେଲା। ବିଦାୟର ସମ୍ଭାଷଣ କେହି କାହାକୁ ଦେଲେ ନାହିଁ, ପରସ୍ପର ଅପଣା ବାଟରେ ଗଲେ। କିନ୍ତୁ ଆତ୍ମା ଭିତରେ ରହିଲା ବନ୍ଧନ-ସେଇ ସୂତା କେରାକ।

ସେଠୁଁ ରଘୁନାଥ ଆସି ଆପଣା କେଠରିରେ ଛୋଟ କବାଟ୍‌ଟି ବନ୍ଦକରି ଶୋଇଲା। ଆଜିକି ଦୁଇ ଦିନ ଦୁଇ ରାତି ହେଲା ସେ ନିଦ କଣ ଜାଣି ନାହିଁ। ଉତ୍ତେଜନାର ତାପରେ, ଯନ୍ତ୍ରଣାରେ ଆତିଶଯ୍ୟରେ ତାହାର ମର୍ମ ବିଦୀର୍ଣ୍ଣ। ସେ ମହାବିସର୍ଜନ କରିଛି। ବିସର୍ଜନ ପର୍ଯ୍ୟନ୍ତ ତାହାର ମନରେ ବଳ ଥିଲା, ଆତ୍ମାରେ ସାହସ ଥିଲା; କିନ୍ତୁ ବିଦାୟର ଶେଷ ମୁହୂର୍ତ୍ତ ପରେ ସେ ବଳହୀନ, ଅଚେତନ, ଅଜ୍ଞାନ,-ତାର ହୃଦୟର ଡୋର ଛିଣ୍ଡି ଯାଇଛି। ଆଉ କାହା ସକାଶେ ଜୀବନ, -ଆଉ କାହା ସକାଶେ ଆଶା ଆକାଂକ୍ଷା? ଜୀବନକୁ କେନ୍ଦ୍ରକରି ଯେଉଁ ଦେବୀ-ମୂର୍ତ୍ତି ପ୍ରତିଷ୍ଠିତ ଥିଲା, ତାର ଅନ୍ତର୍ଦ୍ଧାନରେ ଆଉ କିବା ଆୟୋଜନ? ଆଜି ରଘୁନାଥ ସର୍ବସ୍ୱହରା। ସର୍ବସ୍ୱହରାର ଦୁଃଖ ବେଦନାବୋଧ ସାମୟିକ ଲୁପ୍ତହୁଏ ପରା। ସେହିପରି ଲୁପ୍ତଚେତନାଭାବରେ ରଘୁନାଥ ଆସି ଖଟରେ ପଡିଗଲା। ତା ମୁଣ୍ଡ ଘୁରୁଥିଲା, ତା ଆଖିକି ଅନ୍ଧାର ଦିଶୁଥିଲା; କଣ କରୁଛି, ବା କଣ କରିବ, କିଛି ଜାଣି ପରିଲା ନାହିଁ, -କେବଳ ସଂଜ୍ଞାହୀନ ପରି ଆସି ବିଛଣାରେ ପଡିଗଲା। କେତେବେଳେ ଏ କର ସେ କର ହେଲାପରେ, ସର୍ବଶ୍ରାନ୍ତିହାରିଣୀ ନିଦ୍ରା ତାହାର ଆଖିପତା କ୍ରମଶଃ ଢାଙ୍କି ପକାଇଲା।

କବାଟ ପାଖରେ ଆସି ତାରାମଣି ଯେତେବେଳେ ଦିନ ନଅଟା ବେଳେ ଡାକିଲେ, ସେତେବେଳେ ରଘୁନାଥ ଗାଢ ନିଦ୍ରାଭିଭୂତ ବାଳକଟିର ଆଶା ନୈରାଶ୍ୟ, ଏହା ମାତୃହୃଦୟା ତାରାମଣି ଭଲରୂପେ ବୁଝି ପାରିଥିଲେ; ସେଥିରେ ସେ ଆଉ ତାକୁ ଉଠାଇଲେ ନାହିଁ।

କ୍ରମେ କ୍ରମେ ସାରା ଦିନଟି ଗଲା। ସେ ଦିନ ଜଗନ୍ନାଥ ଘରେ ନ ଥିଲେ। ଗ୍ରାମକୁ ଯାଇଥିଲେ। ସୀତାର ବିବାହ ଅଡୁଆରେ ରହିବାର ସେ ଆଦୌ ଉଚିତ ବିବେଚନା କଲେ ନାହିଁ। ଦାରୁଣ ଉତ୍କଣ୍ଠାଭରା ସାରା ଦିନଟା କଟାଇ ରାତି ଆସିଲାବେଳକୁ ତାରାମଣି ତୁଳସୀଚଉଁରା କତିରେ ସଞ୍ଜଦୀପଟି ଦେଇ କବାଟରେ ହାତ ମାରିଲେ। କଥା କଣ? କବାଟ ଭିତରୁ ବନ୍ଦ, ତାଙ୍କ ମନରେ ବଡ ପାପ ଛୁଇଁଲା। ନାନା ଆଶଙ୍କା ମନେ କରି ସେ ବଡପାଟିରେ ଡାକିଲେ- 'ରଘୁନାଥ'! ତାଙ୍କ ସ୍ୱର କ୍ରନ୍ଦନମିଶ୍ରିତ। ଭିତରୁ କଣ୍ଠରେ ଉତ୍ତର ଆସିଲା- 'ମା! ଆଶ୍ୱସ୍ତା ହୋଇ ତାରାମଣି କହିଲେ, 'ଦୁଆର ଫିଟା।' ରଘୁନାଥର ସେତିକିବେଳକୁ ନିଦ ଭାଙ୍ଗି ଆସିଥିଲା; ଆଖି ମଳି ମଳି ଉଠି ଆସି କବାଟ ଫଟାଇଲା। ତାରାମଣି ଭିତରକୁ ଗଲେ।

"ମା, ମୁଁ କେତେବେଳଯାକେ ଶୋଇ ପଡିଲି। ମତେ ଥରେ ଡାକି ଦେଲ ନାହିଁ?"

"ଶୋଇଲୁ ଭଲ କଲୁ ବାପ"! କହି ତାରାମଣି ଆସି ଖଟର ମୁଣ୍ଡ ପାଖରେ ବସି ପଡିଲେ; ଗୋଟିଏ ହାତରେ ପୁଅର ପିଠି ଆଉଁସୁ ଆଉଁସୁ କହିଲେ, "ବାପା! ତୁ କିବା କଥାକୁ ଦୁଃଖ କରି, ନ ଖାଇ ନ ପିଇ ପଡିଚୁ କହିଲୁ? ସଂସାରରେ କେତେ ଦୁର୍ଘଟଣା ଘଟୁଚି; ତୁ କଣ ନିଜେ ଅଙ୍ଗେ ନିଭେଇ ନାହୁଁ? ବାଳୁତକାଳୁ ଯେ ତୋର ଜନ୍ମଦାତା ବାପ ମା ମରିଗଲେ, ତାଙ୍କ ଅଭାବରେ ତୁ ମଣିଷ ହେଲୁଚି? ଏ କିବା ଛାର? କପାଳରେ ନ ଥିଲେ ଗୋପାଳ ଦିଅନ୍ତି ନାହିଁ। ତୁ ଏତେ ବୁଦ୍ଧିମାନ୍ ପିଲା ହେଇ ପଥ ହୁଡୁଚୁ?"

ରଘୁନାଥ କରୁଣ ଦୃଷ୍ଟିରେ ମା ମୁହଁକୁ ଅନାଇଲା। ଏ ତ ସେହି ସ୍ନେହମୟୀ ପାଳୟିତ୍ରୀ, ଯାହାର ସ୍ନେହବାହୁଚ୍ଛାୟାତଳେ ସେ ଦଶ ବର୍ଷ କାଟିଲାଣି, ଯାହାର ଅକ୍ଳାନ୍ତ ସ୍ନେହଯତ୍ନରେ ଦୁଃଖ ବୋଲି କଣ ସେ ଜାଣେ ନାହିଁ-ଅଭାବ ବୋଲି କଣ କେବେ ଭୋଗି ନାହିଁ। ରଘୁନାଥ ସେହି ପରମ ସ୍ନେହମୟୀଙ୍କୁ ଏକାନ୍ତ ଦୃଷ୍ଟିରେ କ୍ଷଣକାଳ ଚାହିଁରହି ଅତ୍ୟନ୍ତ ବିଷାଦମିଶ୍ରିତ ସ୍ୱରରେ କହିଲା, "ମା।" ମାର ଆଖିରୁ ବଡ ବଡ ଦୁଇ ଟୋପା ଲୁହ ପଡିଗଲା। ରଘୁନାଥର ସେତେବେଳକୁ ଦୁଇ ଆଖି ଲୁହରେ ବହି ତକିଆ ଭିଜି ଗଲାଣି। କେହି କାହାକୁ ଆଉ କିଛି କହି ପାରିଲେ ନାହିଁ। ତାରାମଣି ସେଠୁଁ ଉଠିଯାଇ ରନ୍ଧାଘରକୁ ଗଲେ; ରଘୁନାଥପାଇଁ ଖାଇବା ଦ୍ରବ୍ୟ ସଜାଡି ରଖି ତାକୁ ବିଛଣାରୁ ଉଠେଇଲେ; ବହୁତ ବୁଝାବୁଝି କରି ଆଣି ଭାତପାଖରେ ବସାଇଲେ। ମାତାର ଆଦରରେ ରଘୁନାଥ ସମୁଦାୟ ଦୁଃଖ ଭୁଲି ଭୋଜନରେ ଲାଗିଗଲା।

ବାହାରରୁ କିଏ ଡାକିଲା "ରଘୁ, ଘରେ ଅଛୁ?" ଏତ ବାବୁର ସ୍ୱର! ତାରାମଣି ମୁଣ୍ଡରେ ଲୁଗା ଦେଇ ଦ୍ୱାରା ଖୋଲିଦେଲେ। ରଘୁନାଥ ଖାଇସାରି ଦାଣ୍ଡଘରକୁ ଗଲା। ବାବୁ ଆସିଥିଲା ଗୁରୁତର ପରାମର୍ଶ ପାଇଁ, ଅର୍ଥାତ୍ ବିବାହବିଭ୍ରାଟ। ଏକ ମୁହୂର୍ତ୍ତରେ ସବୁ ଘଟିଯାନ୍ତା, ବେଦିରେ ବସିପଡି ରଘୁନାଥ ସୀତାକୁ ବିବାହ ହୋଇଯାନ୍ତା, ତେଣେ ଦିବାକର କାନ ମୁଣ୍ଡ ଆଉଁସି ଘରକୁ ଯାଆନ୍ତେ। ହଠାତ୍ ନବ ଆଶାରେ ରଘୁନାଥର ମନ ଚଞ୍ଚଳ ହୋଇଉଠିଲା। ବାବୁ ଯିବାର ବହୁକ୍ଷଣ ସେ ବିଛଣାରେ ମଲାଙ୍କ ଭଳି ପଡିରହିଲା। ସତେ ସମ୍ଭବ ହେବ? ତେବେ? ମୁହୂର୍ତ୍ତକ ସକାଶେ ସୁଦ୍ଧା ସୀତାକୁ ନିଜର ସହଧର୍ମିଣୀ କଳ୍ପନାକରି ରଘୁନାଥର ଆଖି ଆନନ୍ଦୋଜ୍ଜ୍ୱଳ ହୋଇଉଠିଲା। ତହିଁରେ ଆନୁଷଙ୍ଗିକ ସମୁଦାୟ ସୁଖ ମୂର୍ତ୍ତି ପରିଗ୍ରହକରି ଆଖି ଆଗରେ ଭାସିଉଠିଲା। କିନ୍ତୁ ପରକ୍ଷଣରେ ଭାବିଲା, "କି ପ୍ରବଞ୍ଚନା! ଏ ପ୍ରବଞ୍ଚନା ସଂସାରଦୃଷ୍ଟିରେ କିପରି? ଏହାର ବିଷମୟ ଫଳ କଣ?" ରଘୁନାଥ ତାହା କଳ୍ପନା କରି ସୁଦ୍ଧା ତାର ସର୍ବାଙ୍ଗ ଶରୀର ସଙ୍କୁଚିତ ହୋଇଗଲା। ବିବାହ ପରେ ଦିବାକର ଓ ଚନ୍ଦ୍ରଶେଖର କଣ କରିବେ, ଜଗନ୍ନାଥ କଣ କହିବେ, ସରସ୍ୱତୀ ଓ ତାରାମଣି କଣ ଭାବିବେ, ଏହି ଚିନ୍ତାରେ ତାହାର ବଡ ଲଜ୍ଜାହେଲା। ସମସ୍ତଙ୍କ ଆଖିରେ ଧୂଳି ଦେଇ ସେ କିପରି ବିଭାହେବ? ମନ କହିଲା, "ହେଲେ ତାର ସେଥିରେ ଦୋଷ କଣ? ବରଂ ତହିଁରେ ଚୌଧୁରୀ ଛଡା ଆଉ ସମସ୍ତେ ସୁଖୀ ହେବେ।" କିନ୍ତୁ ବିବେକ କହିଲା "ଏ କଣ ମର୍ଯ୍ୟାଦାଜ୍ଞାନ? ଯଦ୍ୱାରା ସୀତାର ପିତୃକୁଳ ଜଗତରେ ମୁହଁ ଦେଖାଇ ପାରିବେଟି? ନିଜର ଅତ୍ମସମ୍ମାନ ଭାରି ବଡ ଦିଶିଲା। ମନ ଭିତରେ ଅନେକ ଆନ୍ଦୋଳନ, ଅନେକ ଯୁକ୍ତିତର୍କ କରି ସେ କଟକ ଛାଡି କିଛି ଦିନ ଅନ୍ୟତ୍ର ଯିବାହିଁ ଶ୍ରେୟ ମନେକରି ତାରାମଣିଙ୍କୁ ସବୁକଥା ଖୋଲିକହିଲା। ବାବୁର ଅଦ୍ଭୁତ କଳ୍ପନା ଶୁଣି ତାରାମଣି ଅବାକ୍ ହୋଇଗଲେ, କିଛି କ୍ଷଣ ତୁନି ରହି କହିଲେ, "ପୋଡିଗଲା ତିଅଣରେ ସୁଆଦ କଅଣ। କାଳକାଳକୁ ନିନ୍ଦା, କଳହ, ଅପମାନପାଇଁ କଣ ଯା କରିବ? ଆଜି ଏହିଟା ବାହାଦୂରି ଜଣାଯିବ, କିନ୍ତୁ କାଲିକି ଆଉ ସେ ଆନନ୍ଦ ନ ଥିବ। ବାବ୍ ପିଲା ଲୋକ, ତାର



ଆଖି ପୋଛି ସୀତା ରଘୁନାଥକୁ ଅନାଇଲା × × × ଧୀରେ ଧୀରେ ବେକରୁ ସୁନା ସୂତାକେରାକ କାଢ଼ିଲା ।

ସଂସାରର ବୁଦ୍ଧି କେତେ ? ସେ ଠୁଁ ରଘୁନାଥ ଗ୍ରାମକୁ ଯିବାର ପ୍ରସ୍ତାବ କଲା । ଉପସ୍ଥିତ ବିପଦ। ରକ୍ଷା ପାଇବା ମାନସରେ ଅଗତ୍ୟା ତାରାମଣି ସେଥିରେ ହିଁ ଭରିଲେ । ଯିବାବେଳେ ରଘୁନାଥ ଥରେ ଲୁଚି ପୀତେଈ ନାନୀ ସହିତ ଦେଖାକରି ଆସିଲା ଉଭୟେ ଉଭୟଙ୍କୁ ଧରି ବହୁତ କାନ୍ଦିଲେ । ଆଉ ରଘୁନାଥ ପୀତେଈ ହାତରେ ଦେଇ ଆସିଲା ନିଜର ସେହି ସୁନ୍ଦର ଫ୍ରେମବନ୍ଧା ଫୋଟୋ। ବହୁତ ଇଚ୍ଛାଥିଲେ ମଧ ସୀତା ଓ ସରସ୍ୱତୀଙ୍କ ସହିତ ଦେଖାକଲା ନାହିଁ । ସେହି ଦିନ କଅଁଳ ଗାଧୁଆ ବେଳକୁ ରଘୁନାଥ ଗ୍ରାମକୁ ବହାରିଗଲା ।

ଯଥାସମୟରେ ଦାଣ୍ଡ ଆଲୁଅ କରି, ବାଇଦ ବଜେଇ ରୋଶଣି ଚମକେଇ, ଭାରି ଜାକଜମକରେ ଦିବାକର ସୀତାକୁ ବିଭା ହେବାପାଇଁ ଆସିବେ । କିନ୍ତୁ ତାହାର ଦୁଇ ଦିନ ପୂର୍ବରୁ ସୀତାର ବିବାହ ହୋଇଯାଇଥିଲା ଆଉ ଜଣଙ୍କ ସଙ୍ଗରେ । ସେ ବିବାହର ସାକ୍ଷୀ ଥିଲେ ଭଗବାନ୍ । ଆଉ ଏ ବିବାହ ! ଏହା ସୀତାକୁ ଶୂଳିରେ ଚଢେଇବା ଅପେକ୍ଷା ଅଧିକ ଯନ୍ତ୍ରଣାଦାୟକ । କାରଣ ଶୂଳିରେ ଚଢି ସେ ମରିଯାନ୍ତା, କିନ୍ତୁ ଯଥାନିୟମରେ ମନ୍ତ୍ରପାଠ, କୁଶବନ୍ଧନ, ସୃନ୍ଦୁରଗ୍ରହଣ ପରେ ମଧ ସୀତା ଜୀବିତରହିଲା । ସେ ଦିନ ସେ ପଥର । ତାର ଆତ୍ମା ତା ଭିତରେ ଥିଲା କି ନାହିଁ ସନ୍ଦେହ । କେବଳ ଜଣକର ନିର୍ଦ୍ଦେଶରେ ଓ ଇଙ୍ଗିତରେ ସେ ନିଜକୁ ଯଜ୍ଞରେ ବଳି ଦେଉଥିଲା । ଯେତେବେଳେ ତାହାର ପ୍ରାଣଶୂନ୍ୟ ହାତ ଉପରେ ଦିବାକର ବାସନାମୟ ଉଷ୍ଣହସ୍ତ ରଖିଲା, ପୁରୋହିତ କୁଶଗ୍ରନ୍ଥି ଦେଲେ, ସେତେବେଳେ ତା ଦେହରୁ ହାତଟା ଖସିଲାପରି ମନେହେଲା । ଯନ୍ତ୍ରଚାଳିତବତ୍ ସୀତା ସବୁ କରିଗଲା, ସବୁ ଅନୁଷ୍ଠାନରେ ମିଶିଲା । ହାଣ କଟୁରୀ କତିରେ ଦଉଡିବନ୍ଧା ଛେଳିଛୁଆର ଚାରା କ'ଣ ? ଚାହିଁ ରହିଲେ ପୀତେଈ ନାନୀ, ଆଉ ସରସ୍ୱତୀ । ଯୁବତୀ ବଧୂ ରେବତୀ ନଣନ୍ଦର ଏ ଆତ୍ମତ୍ୟାଗର ଦୃଢତାରେ ବିସ୍ମିତ ଲୋତକ ଚକ୍ଷୁରୁ ବୁହାଇଦେଲା, ତଥାପି ନିୟତି ତା କାମ କରି ଚାଲିଗଲା ।

ବିବାହର ଗୋଳମାଳ ସରିଲା । ଉଦାସିନୀ ସୀତା ଅର୍ଥହୀନ ଜୀବନରେ ଅନ୍ତରରେ ଅନନ୍ତ ବ୍ୟଥା ଅନ୍ତରରେ ମାରି ପ୍ରତୀକ୍ଷା କରିରହିଲା ସେ ଦିନପାଇଁ, ଯେଉଁ ଦିନ ବିବାହଠୁଁ ବଳି ଆତ୍ମତ୍ୟାଗ ତାକୁ କରିବାକୁ ହେବ । କିନ୍ତୁ ତା ପୂର୍ବରୁ କଣ ତାର ମୃତ୍ୟୁ ହେଲେ ଭଲ ହୁଅନ୍ତା ନାହିଁ ? ଦିନେ ସେ ପୀତେଈ ନାନୀ ନକଟରେ ଆବିଷ୍କାର କଲା ଗୋଟିଏ ଅମୂଲ୍ୟ ପଦାର୍ଥ ।

ଏକାନ୍ତରେ ଦିନ ଦି ପହରେ ପୀତେଈ ନାନୀ ନିଜର ସାନ କୋଠରିରେ ଶୋଇଥିଲା । ଧୀର ପଦବିକ୍ଷେପରେ ସୀତା ସେ ଘରେ ପଶିଲା; ଦେଖିଲା, ବୁଢୀ ଗାଢ ନିଦ୍ରାଭିଭୂତ । ଆସ୍ତେ ତା ମୁଣ୍ଡ ତଳୁ କୁଞ୍ଚକାଠି ନେଲା, ବାକ୍ସ 'ଫିଟାଇ ରଘୁନାଥର ଫୋଟୋ କାଢିଲା । ତା ଉପରେ ତା ଆଖିରୁ ଅଜସ୍ର ଧାରରେ ଲୁହ ବହିଗଲା । ବାକ୍ସ ଫିଟା ଶବ୍ଦରେ ପୀତେଈ ନାନୀର ନିଦ ଭାଙ୍ଗି ଯାଇଥିଲା । ସେ ଚାହିଁ ଦେଖିଲା, ସୀତା ନୀରବ ନିଷ୍ପଳ ଭାବରେ ରଘୁନାଥର ଫଟୋଖଣ୍ଡିକ ଧରି କାନ୍ଦୁଛି । ଗୋଟିଏ ଗଭୀର ଦୀର୍ଘଶ୍ୱାସ ସହ ଚିରାଚରିତ ସାସ୍ତ୍ୱରବଶରେ ସେ କହିଲା, "ଅଲକ୍ଷଣି ! କଣ ବାହୁଁଚୁ, ଥୋଇ ଦେ, ଯାହା ଗଲାଣି, ଗଲାଣି । ଆଉ ପାପ ଅରଜ ନା ।"

ସୀତା ଆଖିପୋଛି ଫୋଟୋଟି ଧରି କହିଲା, "କି ପାପ!" ତା ସ୍ୱରରେ ଅସମ୍ଭବ ଦୃଢତା ଥିଲା। ପାତେଣି ନାନୀ ଚପିଯାଇ କହିଲା, "ଆଉ କାହିଁକି ଦେଖୁଚୁ ଲୋ ପୋଡା କପାଳି? ଦେଖିଲେ ଲାଭ କଣ? କାନ୍ଦଣା ସାର।" ସୀତା ଦୃଢକଣ୍ଠରେ କହିଲା, "କାନ୍ଦଣା ସାର ହେଉ, ଚିର ଜୀବନ କାନ୍ଦିବି ସେଇ ଜଣକ ଲାଗି, ଚିର ଜୀବନ କାନ୍ଦିବି। କିନ୍ତୁ ବାପ ଟଙ୍କା ନେଇ ଯାହା ବିକିଚି, ସେ ମୋର କେହି ନୁହେ-କିଛି ନୁହେଁ। ଏଇ ମୋର ସାର, ଏଇ ମୋର ସ୍ୱାମୀ।" ପାତେଣି ନାନୀ ଝଟ(୧) ତା ମୁହଁରେ ହାତ ଦେଇଦେଲା। ସୀତା ବୁଢୀର ହାତ ଛଡାଇ କହିଲା, "ମନେ ନାହିଁ ନାନି, ପୋଖରୀକୂଳରେ ଈଶ୍ୱରଙ୍କୁ ସାକ୍ଷୀ କରି ଗଳାରୁ ହାର କାଢି ଦେଇଥିଲି। ସେ ତ ଗ୍ରହଣ କଲେ, ସେଇ ମୋର ବିଭା। ତା ପରେ ତମେମାନେ ଯାହା କଲ, ସେ ସବୁ ଭେଲିକି(୨)-ଦାଣ୍ଡକୁ ଦେଖେଇବା ନାଟ, ମୋ ଆତ୍ମା ତା ଭିତରେ ନାହିଁ। ବାପମାଙ୍କର ଦେହ ଉପରେ ଦାବି ସିନା, ମୋ ମନ ତ ମୋର।"

ଏହା କହି ରୁଦ୍ଧ ଅଭିମାନର ତୀବ୍ରତାରେ କିଛି କ୍ଷଣ ରହି କହିଲା, "ଏ ଖଣ୍ଡିକ ମୁଁ ନେଉଚି।" ପାତେଣି ତା ହାତରୁ ଛଡାଇ ବସିଲା, କିନ୍ତୁ ସୀତା ତାହା ଅଣ୍ଟିରେ ଚାପିଧରି କହିଲା, "ନାନୀ ତୁ ମୋର ନାନୀ ନୋହୁ। ସେ ପରା ଥିଲା ତୋର ପୁଅ, ତୁ ମୋର ମା, -ତୁ କାହିଁକି ମୋତେ ଦୁଃଖ ଦେଉଚୁ? ସବୁ ଜାଣୁ, ସବୁ ବୁଝୁ, ଦଶ ବର୍ଷ ଯେଉଁ ମନ ଜଣକୁ ଦେଉଚି, ସେ କି ଆଉ କାହାର-?

ପାତେଣି ନାନୀ ସୀତାର ଅଦ୍ଭୁତ ବାକ୍ ଚାତୁରୀରେ ହତବୁଦ୍ଧି ହେଲା। ସୀତା ଯେ ସର୍ବଦା ଶାନ୍ତ, ସେ ଆଜି ଓକିଲଙ୍କ ପରି ଜେରା କରୁଛି। ପ୍ରବଳ ଦୁଃଖରେ ସେ ଏତେ ମୁଖରା(୩) ହେଲା କି?

ସୀତା କଥା କହୁଁ କହୁଁ କାନ୍ଦରେ ଭାସିଗଲା। ମର୍ମପୀଡିତା ପାତେଣି ନାନୀ ଆଉ କିଛି ତାକୁ କହି ପାରିଲା ନାହିଁ। ତା ନିଜ ଆତ୍ମା ଯେ କାନ୍ଦୁଛି, ସେ ସୀତାକୁ କହିବ କଅଣ? ସେହି ଦିନୁ ସେ 'ଫୋଟୋ' ଖଣ୍ଡିକ ହେଲା ସୀତାର ପୂଜା ସାମଗ୍ରୀ। ସୀତା ସେହି ଫୋଟୋ ଧ୍ୟାନରେ ଦିନ କାଟିଲା, ମରି ପାରିଲାନାହିଁ।



## ଚତୁର୍ଦ୍ଦଶ ଅଧ୍ୟାୟ

ରଘୁନାଥର ନକେଇ ସାଆନ୍ତଙ୍କ ଝିଅ ବିଭାଘରେ ବ୍ୟସ୍ତଥିଲେ। ତାଙ୍କୁ ନ କହି ରଘୁନାଥ ଗ୍ରାମକୁ ବହାରିଗଲା। ସାତ ବରଷର କିଶୋରୀ ଯେତେବେଳେ ଦଉଡି ଯାଇ ମାକୁ କହିଲା, "ବୋଉ ଲୋ, ଆମ ଘରକୁ କିଏ ଆଇଚନି, ଦେଖିଲୁ", ତାହାର ମା ବ୍ୟସ୍ତ ହୋଇ ମୁଣ୍ଡରେ ଓଢଣା ଦଉଁ ଦଉଁ ରଘୁନାଥ ଆସି ତାଙ୍କ ଗୋଡ ତଳେ ପଡିଗଲା। ଦଣ୍ଡେ ଖୁଡୀ ପୁତୁରା ଦୁହେଁ ଚାହାଁ ଚାହିଁ ହେଲେ। ପୁତୁରା ମୁହଁରେ ଖୁଡୀ କଅଣ ଦେଖିଲା କେଜାଣି, ତାହାର

(୧) ତତ୍‌କ୍ଷଣାତ, ସଙ୍ଗେ ସଙ୍ଗେ, (୨) କିମିଆ, ଛଳନା, ଅଭିନୟ, (୩) ସ୍ପଷ୍ଟବାଦିତା

ହୃଦୟ ବ୍ୟଥିତ ହୋଇ ଉଠିଲା। ମନର ଦୁଃଖ ଗଭୀର ଦୀର୍ଘନିଃଶ୍ୱାସରେ ଜଣାଇ ଖୁଡ଼ୀ ରଘୁର ଚର୍ଚ୍ଚା ବୁଝିବାକୁ ଗଲା।

ଆଜି ବହୁ ଦିନ ପରେ ଆସିଛି, ଗାଁରେ ସମସ୍ତେ ତାକୁ ଦେଖିବାକୁ ଉତ୍ସୁକ; କିନ୍ତୁ ଏଥର ସେ କାହାରି ଘରକୁ ଗଲା ନାହିଁ। ନୀରବ, ନିଶ୍ଚଳରେ ଖୁଡ଼ୀ ନିକଟରେ ଦିନ କଟାଇବାକୁ ଲାଗିଲା। ତାହାର କାହିଁରେ ହର୍ଷ ଓ ଉତ୍ସାହ ନାହିଁ-ଗୋଟିଏ ନିରାନନ୍ଦର ମେଘ ଯେପରି କି ତାର ପ୍ରସନ୍ନ ମୁଖଚନ୍ଦ୍ରକୁ ଢାଙ୍କି ପକାଇଛି। ରଘୁର ଏପରି ପରିବର୍ତ୍ତନ ଦେଖି ଖୁଡ଼ୀ ବିସ୍ମିତ ହେଲେ; ତୁହାଇ ତୁହାଇ ଅନେକ କଥା ପଚାରି ବସିଲେ; କିନ୍ତୁ ଗୋଟିକର ସୁଦ୍ଧା ଉତ୍ତର ପାଇଲେ ନାହିଁ। ସେ ମଧ ଗୋପନରେ କାନ୍ଦିଲେ।

ହଠାତ୍ ତାଙ୍କର ମନରେ ହେଲା, ଏଥର ପୁଅ ବଡ ହେଲାଣି, ହାତକୁ ଦିହାତ କରିବା କଥା। ସେହି ଦୁଃଖରେ କଣ ରଘୁ ମନମାରିଛି କି? ସାଆନ୍ତ ଝିଅ କଥାଟି ତାଙ୍କ ମନରେ ଖେଳିଗଲା। ସେହି କଥା କଣ ଠିକଣା କରିବାକୁ ରଘୁ ଗାଁକୁ ଆସିଛି କି?

ସଞ୍ଜବେଳେ ବାରି ପିଣ୍ଡାରେ ମଶିଣା ପାରି ଖୁଡ଼ୀ ପୁତୁରା ବସିଲେ। କୂଅମୂଳର ଫୁଟନ୍ତା ମଲ୍ଲୀ ଫୁଲର ବାସନାରେ ଅଗଣାଖଣ୍ଡିକ ମହକି ଉଠୁଥାଏ, ଅନ୍ଧାର କ୍ରମେ କ୍ରମେ ଗାଢତର ହେଲାଣି, ଜହ୍ନ ତ ଘଡି ମାଇଲାଣି, ଚାନ୍ଦ ଆଲୁଅ କାହୁଁ ଆସନ୍ତା, ଚାନ୍ଦ ଆଲୁଅରେ ସିନା ଖେଳର ଆନନ୍ଦ। କିଶୋରୀ, ଗଉରୀ ଦି ଭଉଣୀ। ସେଥିଯୋଗୁଁ ଘରକୋଣରେ ପଶିଛନ୍ତି। ବନା ନଣ୍ଡାକୁ ଘେନି ଗାଁ ବୁଲି ଯାଇଛି।

ଖୁଡ଼ୀ ରଘୁକୁ ପାଖକୁ ଟାଣିଆଣି ପିଠି ଆଉଁସି ଆଉଁସି କହିଲେ, "ବାପା, ଏବେ ବଡ଼ ହେଲ, ବୁଦ୍ଧିଶିଦ୍ଧି ହେଲା; କିନ୍ତୁ ଆମ ଆଗରେ ତମେ ଯେଉଁ ପିଲାକୁ ସେଇ ପିଲା। ତମ ଭଲ ମନ୍ଦ ଆମକୁ ଲାଗେ। ଏହି ଜ୍ୟୈଷ୍ଠ ମାସ ଆଡିକି ବନାର ନାନା ଆଇଲେ ତାର ଆଉ ଗଉରୀର ବିଭାଘର କଥା ପଡିବ।"

"ବନା କେଉଁଠି ବାହା ହେବ କି?"

"ବନା ପରା ନିତେଇ ମିଶ୍ର ବରଜାକୁ ବିଭା ହେବ। ଆଉ ଲଖିଆ ସାଙ୍ଗରେ ତ ଗଉରୀର କଥା ଛିଡିଚି।"

"ତାହା ହେଲେ ସୂରୁଯୀ ଆଇ ତାର ଶାଶୂ ହବ। ସେ ତ ନିହାତି କଳିହୁଡୀ-ଗଉରୀକି ରଖି ଥୋଇ ଦବଟି?"

"ଦେଖୁଚି, ତମର ସୂରୁଯୀ ଆଇ ପ୍ରତି ଆଦୌ ସଦ୍ଭାବ ହେଲା ନାହିଁ। ସେଇଟା ମୁହଁଖୋରଣୀ ସିନା, ତା ପେଟରେ କିଛି ନ ଥାଏ। ପିଲା ପିଚିକା ବଡ ଚାହେଁ, ଆଉ ଲଖିଆ ପରି କୁଆଁଙ୍ଗ ଏ କାଳରେ ମିଳିଲେ ତ? ତା କକେଇପୁଅ ଭାଇ ନବଘନ ସାଙ୍ଗରେ କିଶୋରୀକି ବାହା ଦେବି ଭାବିଚି, ଜାତକ ସୁଝିଲେ ହୁଏ। ହେଲେ ଗୋଟିଏ କଥା କହିବି, ତମେ ଚିଡିବ ନାହିଁ ତ? "କୁହ" ତମେ ଚିଡିବ ନାହିଁ?"

ରଘୁ ହସି ହସି କହିଲା, "ମ୍ ଜାଣେ ଯେ - ଆଗରୁ ଜାଣିଚି।"

ଖୁଡୀ କୌତୁହଳୀ ହୋଇ କହିଲା, "କଣ ଜାଣ?"

ରଘୁ କହିଲା, "ତମେ କହୁ ନାହଁ?"

"ଉମାକୁ ମୁଁ ବୋହୂ କରିବି, ତମ ଇଚ୍ଛାଟା କଣ ? ଭାରି ଗୁଣର ପିଲା ଏକା-ଦିବ୍ୟସୁନ୍ଦରୀ।"

ହଠାତ୍ ରଘୁନାଥ ଗମ୍ଭୀର ହୋଇ ବସିଲା, କେତେବେଳଯାଏ କିଛି କହିଲା ନାହିଁ। ଖୁଡୀ ପୁତୁରାର ମଉନ ଭାବ ଲକ୍ଷ୍ୟକରି କହିଲେ, "ତୁମର କଅଣ ଗୋଟାଏ ସ୍ୱଭାବ। ସୂରୁଯୀ ଆଇ ଉପରେ ତମର କଅଣ ସବୁ ଦିନ ରାଗ ଥିବ?"

ସେତେବେଳେ ବାରି ପଟଟା ଅନ୍ଧାର ଥିଲା; ନୋହିଲେ ଖୁଡ଼ୀ ଦେଖିଥାନ୍ତେ ରଘୁନାଥ ଆଖିରେ ଅଶ୍ରୁ। ରଘୁନାଥ ଉଦ୍ଗତ ଶୋକର ଆବେଗ ପ୍ରବଳଭାବରେ ଦମନ କରବାକୁ ଚେଷ୍ଟା କରୁଥିଲା, ସେଥିପାଇଁ କଥା କହିପାରିଲା ନାହିଁ। ଖୁଡୀ ବୁଝି ନ ପାରି ପୁଣି କହିଲେ, "ପୁଅ, ଘର ଦେଖି ବନ୍ଧୁ ବାନ୍ଧିବ ଠା ଦେଖି ବସିବ; ସୂରୁଯୀ ଆଇ ଘର ଆମ କାନ୍ଧକୁ କାନ୍ଧ ପଡିବ। ଆପଣ ଲକ୍ଷ୍ୟଥାନରେ ବଚନ ହାରିବା ସିନା।"

ଏ ଅବସରରେ ରଘୁ ନିଜ ଆୟତ୍ତକୁ ଆସିଗଲା। ସେ ଧୀରେ କଣ୍ଠରେ କଣ ଗୁଡାଏ, କହିଲା, ଖୁଡୀ କାନକୁ ଶୁଭିଲା ନାହିଁ। ଖୁଡୀ ତା କତିକି ଟିକେ ଘୁଞ୍ଚି ଆସି କହିଲେ, "କଣ କହୁଚ, ବାପ?"

ରଘୁ ଏଥର ପରିଷ୍କାର ଭାବରେ କହିଲା, "ଖୁଡି, ସୂରୁଯୀ ଆଇ ଉପରେ ମୋର କି ରାଗ?-ମୋ କପାଳ ଉପରେ ରାଗ। ଭାତ ପତରରୁ ଭୋଖିଲା ଲୋକ ଉଠିଗଲେ କେମିତି ଲାଗେ? ମୋ କପାଳରେ ଆଉ କି ସୁଖ? ନେଡି ଗୁଡ କହୁଣୀକି ବହି ଯାଇଚି!"

ଖୁଡୀ ଏ ପ୍ରହେଳିକାର ଅର୍ଥ ବୁଝି ନ ପାରି କହିଲେ, "ଫିଟେଇ କରି କହୁ ନାହଁ କାହିଁକି?"

ରଘୁନାଥ ଫିଟେଇ କରି କହିବ, ପୁଣି ଖୁଡୀ ଆଗରେ? ଦାରୁଣ ଲଜ୍ଜାରେ ତାର ସ୍ୱର ବନ୍ଦ ହୋଇଆସିଲା, ସେ ଖଙ୍କାର ମାରି, ଗଳା ସଫାକରିବାକୁ ଲାଗିଲା। ସେ ପ୍ରଥମେ କେଉଁ ଶବ୍ଦଟା କହିବ, ତାହା ଚିନ୍ତା କରୁଥିଲା। ସୀତା ସହିତ ତାର ପ୍ରେମ, ତାର ବିବାହର ଆଶା, ଏ ସବୁ ଖୁଡୀ ଆଗରେ କଣ କହିବା କଥା?

କିନ୍ତୁ ଖୁଡୀ ନିଜେ ସେ ବାଟ ସହଜ କରିଦେଲେ; ହଠାତ୍ ପଚାରିଲେ, "ସାଆନ୍ତ ଝିଅ ବିଭା ହେଲାଣି, ନା ଅଭିଆଡା ଅଛି?" ରଘୁଠୁଁ କଥା ନେବାପାଇଁ ଖୁଡୀର ଏ କୌଶଳ। ରଘୁ କଥାର ଖିଅ ପାଇଲା; କହିଲା, "ସେ ବିଭା ହେଲାଣି।" ଖୁଡୀ ବିସ୍ମିତ ହୋଇ କହିଲେ, "କେବେ ମ ! କାହାକୁ ବାହାହେଲା? ମୋ ମନେ ମନେ ସେ ତମକୁ ଲାଗିଥିଲା। କିନ୍ତୁ ରଘୁ ଏଥିର ଉତ୍ତର ଦେଇ ପାରିଲା ନାହିଁ, ସେ ପରା ଗୁରୁଜନ।

ରଘୁନାଥ ଏଥର ବର୍ଣ୍ଣନା କଲା- ନିଜ କଥା ଯଥାସମ୍ଭବ ଲୁଚାଇ ସୀତା ବିବାହର ଦୁଃଖମୟ ପ୍ରସଙ୍ଗ ସହଜ ସରଳ କରି କହିଲା; କିନ୍ତୁ ଖୁଡ଼ୀ ତାର ଗୋଟିଏ କଥାକୁ କୋଟିଏ କରି ବୁଝିଲେ। ରଘୁନାଥ କଥା ଶେଷକଲା, ସେତେବେଳକୁ ଖୁଡ଼ୀର ଆଖିରେ ପାଣି। ପଣନ୍ତକାନି ଖସଖସରେ ସେ ବୁଝିଲା, ଖୁଡ଼ୀ କାନ୍ଦୁଛନ୍ତି। ସହାନୁଭୂତିରେ ବିଗଳିତ ହୋଇ ସେ ମଧ କନ୍ଦିଲା। ସେ ପୁରୁଷ ପିଲା ବୋଲି କଣ ତା ପ୍ରାଣ ପଥର ?

ଏଥର ଖୁଡ଼ୀ ଆରମ୍ଭ କଲେ, କହିଲେ, "ବାପ, ତମ ଦୁଃଖ ବୁଝିଲି ! ସଂସାର କରି ଆସି ବୁଢ଼ୀ ହେଲି। କଣ ମୋ ପିଲାଝିଲାର ମନ କଥା ମୋତେ ଅଛପା ? ଖାଲି ଏତିକି ମୋ ମନରେ ହଉଚି, ଚୌଧୁରୀଟା କେତେ ଅନ୍ୟାୟ କଲା- ସୁନାଝିଅକୁ ଭସେଇ ଦେଲା। ତଣ୍ଟି ଚିପି ମହାନଦୀକି ପେଲି ଦେଇଥିଲେ ଯାଇଥାନ୍ତା। ତମ ଶରଧା, ତମ ସୁଖ ସେ ଭାଙ୍ଗିଲା। ଲକ୍ଷ ଲକ୍ଷ ଟଙ୍କା ସେ ବି ମାରି ରଖିଚି, ଟଙ୍କା ଦି ହଜାରକୁ ଝିଅ ବିକିଲା ? ଛି, ଛି ! ଏ ଅନ୍ୟାୟ ସହି ମା ବସୁନ୍ଧରା ଫାଟି ଯାଉ ନାହାନ୍ତି, ପାପୀଗୁଡ଼ାକ ପାତାଳକୁ ଧଷିଁ[1] ଯାଆନ୍ତେ !"

ରଘୁନାଥ ଖୁଡ଼ୀର ଜ୍ୱଳାମୟୀ ବକ୍ତୃତାରେ କହିଲା, "ଖୁଡ଼ି, ମୁଁ ପୁଣି ଅର୍କ୍ଷିତ[2], ମୋତେ ସେ ଝିଅ ଦେଇଥାନ୍ତେ ? ମୁଁ କେଉଁ କତାରେ ଗଣାଏ !"

ଖୁଡ଼ୀ ଆହୁରି ଉତ୍ତେଜିତ ହୋଇ କହିଲେ, "କଥା ତ ଦେଇଥିଲି, ପକେଇଲା ଛେପକୁ ତ ଚୋକିଲି। ଏତେ ଧନ ଥାଇଁ ଯାହାର ବଚନ ସତ ନାହିଁ, ସେଇଟା କି ମଣିଷ। ତମେ ବୁଝ ନା ପୁଅ, -ଆମେ ତାର ମୂଇ ଲାଗୁଁ - ଯେତେ ହେଲେ, ସେ ଆମଠୁଁ ଢେର୍ ଛୋଟ ଜାତି। ଆଜିକାଲି ସିନା ଦୁଃଖପାଇଛି ବୋଲି ତୋର ନନା, କଟେଇ ଚାକିରି କରି ବାହାରିଲେ। ସେଇଟା କଣ ଆମ କୁଳଧର୍ମ କି ? ଆମେ ପୁରୋହିତ ବଂଶ। ଆଜି କପାଳ ପଡ଼ିଲା ଯେ, ଅନ୍ୟର ଖଟିଲୁ[3] - 'ପେଟ ପୋଷ୍ ନାହିଁ ଦୋଷ୍। କିନ୍ତୁ ସେ ଚୌଧୁରୀଟା ଅମଠୁଁ ଜାତିରେ ହୀନ। ତାଙ୍କ ଘରଝିଅ ଆମ ହାଣ୍ଡିଶାଳେ ପଶିବଟି ? ଆମ ପାଗ ଛୁଇଁଲେ ଆମେ ଭକ୍ଷିବୁଟି ?"

ରଘୁନାଥ ବାଧା ଦେଇ କହିଲା, "ଝୁଡ଼ି, ତମେ ଯଦି ଥରେ ସୀତାକୁ ଦେଖିଥାନ୍ତ, ତେବେ କହିଥାଆନ୍ତ-ମା ସାଆନ୍ତାଣୀ, ସୀତା, ଏମାନେ ଜଗତର ମଣିଷ ନୁହନ୍ତି-"

ଆଉ କହି ପାରିଲେ ନାହିଁ। ସେତେବେଳେ ସୀତାର ପ୍ରେମମୟୀ ମୂର୍ତ୍ତି, ବିଶେଷତଃ ପୋଖରୀ ତୁଠରେ ସେହି ଶେଷ ଦେଖା ତାର ହୃଦୟରେ ନାଚୁଥିଲା। ତାର ସୀତା-ତାର ସ୍ନେହର ସର୍ବସ୍ୱ-ତାର ହୃଦୟର ରାଣୀ ଆଜି ଦିବାକର ବ୍ୟାଧର କରକବଳିତ। ସୀତାର ଭବିଷ୍ୟତ୍ ଜୀବନ ଭାବି ତା ଛାତି ଥରିଉଠିଲା। ଆହା, ସେ ଯେ କେତେ ଅସହାୟ ! କିନ୍ତୁ ନଛେ ତ ମର୍ଦ୍ଦପୁଅ। ସୀତା ସିନା କୁଳାଚାର, ସାମାଜାଚାର ଠେଲି ନ ପାରି ବାଧ ହୋଇ ବିବାହକଲା; ସେ କଣ କରିବ। ସୀତାଲାଗି ସେ ଚିରକୁମାର ରହିବ, ସୀତାଲାଗି ସେ ବୈରାଗୀ ସାଜିବ। ବିବାହ-ଆଉ ନୁହେ, ଏ ଜୀବନରେ ନୁହେ। ସୀତା, ସୀତା। କଣ ସେ ଜନ୍ମାନ୍ତରରେ ପାଇବ

(୧) ଖସିଯିବା, (୨) ଯାହାର କେହିନଥାନ୍ତି, (୩) ଜାମକଲୁ

ନାହିଁ ? ଆହା, ତାଙ୍କୁ କଣ ସେ ପାଇନାହିଁ ? ମନରେ ତ ପାଇଛି। ଦେହରେ ପାଇବା ଅପେକ୍ଷା ମନରେ ପାଇବା କଣ ସବୁ ନୁହେଁ।

ରଘୁନାଥ ଚନ୍ତାରେ ନମଗ୍ନ। ଖୁଡ଼ୀ ତାର ପିଠିରେ ସ୍ନେହରେ ହାତ ବୁଲାଉଛନ୍ତି। ସେହିଥିରେ ତାର ଦୁଃଖ ହରି ଯାଉଛି ପରା। ଆଜି କେବଳ ଖୁଡ଼ୀ ନୁହେଁ-ଆଜି ସେ ପରମ ବନ୍ଧୁ। ରଘୁନାଥ ଖୁଡ଼ୀର ସ୍ନେହରେ ଆଜି ମୁଗ୍ଧ ! ଜଗତରେ ଏତେ ସ୍ନେହ ନ ଥିଲେ କିଏ ବଞ୍ଚନ୍ତା ? ଦାରୁଣ ସଂସାର ସଂଗ୍ରାମରେ କିଏ ଥୟ ପାଆନ୍ତା ?

ରଘୁନାଥ ତାହାହିଁ ଭାବୁ ଭାବୁ ଘର ଭିତରକୁ ଗଲା।

ପ୍ରାୟ ପନ୍ଦର ଦିନ ଘରେ ରହି ତା ମନ କେତେକ ସୁସ୍ଥ ହେଲା, ସେଠୁଁ ସେ ପୁଣି କଟକ ବାହାରି ଆସିଲା। ବାଟରେ ଆସୁଁ ଆସୁଁ ଅନ୍ୟ ଚିନ୍ତା ପଶିଲା। ମନଟା ଭଲ କରିବାକୁ କିଛି ଦିନ ଆଉ କୁଆଡେ ବୁଲି ଆସିଲେ ହେବ ନାହିଁ ? ସେତେବେଳେ ସେ ବାୟାଙ୍କ ପରି 'କୁଆଡେ ଯିବ, କଣ କରିବ, କିଛି ଥୟ[୧] କରି ପାରିଲା ନାହିଁ। ଭାବିଲା, କଲିକତା ଗଲେ ହୁଅନ୍ତା। ସ୍କୁଲସଙ୍ଗୀ ନିମାଇଁ ଘର କଲିକତାରେ, ସେଠି କିଛି ଦିନ ରହି ପୁଣି ଆସିବ। କଲିକତାର ଧାରଣା ତା'ର ବିଶେଷ ନ ଥିଲା, ନିମାଇ ଘର ଠିକଣା ମଧ ମନରେ ନ ଥିଲା। ଭାବିଲା, ଓକିଲ ସୁରେଶ ବାବୁଙ୍କ ପୁଅ-ଏତେ ବଡ଼ ଲୋକର ଠିକଣା କିଏ ବା ଜାଣି ନ ଥିବ ?

ଭାବି ଭାବି ରଘୁ ରେଲଷ୍ଟେସନକୁ ଗଲା। ସେତେବେଳକୁ ସମୟ ହୋଇ ନ ଥିଲା; ତେଣୁ ଓୟେଟିଂ ରୁମ୍‌ର ସାମନା ବେଞ୍ଚ ଉପରେ ବସି ରହିଲା। ତା ପାଖରେ ଜିନିଷ ମଧରେ ଗୋଟିଏ ମସିଆ ଲୁଗାପୁଟୁଳି, ସେଥିରେ ଖୁଡ଼ୀ ବଡ ଯତ୍ନରେ ଚୁଡ଼ା, ଗୁଡ଼, ପାକଲା ଆମ୍ବ, କେତକୀ ଖଇର ଇତ୍ୟାଦି ପଲ୍ଲୀସୁଲଭ ପଦାର୍ଥମାନ ବାନ୍ଧି ଦେଇଥିଲେ।

କଟକ ଷ୍ଟେସନ, କେତେ ଜାତିର କେତେ ଲୋକ ଯିବା ଆସିବା କରୁଛନ୍ତି; ରଘୁ କୌତୁହଳ ଦୃଷ୍ଟିରେ ତାହାହିଁ ଦେଖୁଥିଲା। ବିଶେଷତଃ ଦୁଇ ଜଣ ଲୋକଙ୍କ ଉପରେ ତାହାର ଦୃଷ୍ଟି ପଡିଲା। ଜଣେ ନାତିଦୀର୍ଘ, ନାତିସ୍ଥୁଳ, ହାଫ୍ ପ୍ୟାଣ୍ଟ ପିନ୍ଧା, ଚଷମାଧାରୀ ଶ୍ୟାମଳବର୍ଣ୍ଣ ଯୁବକ-ଆକାର ପ୍ରକାରରୁ ବଙ୍ଗାଳୀ ବାବୁ ପରି ଦେଖା ଯାଉଥିଲେ। ରଘୁ ମନେ ମନେ ଭାବିଲା- ଦେଶୀୟ ଖ୍ରୀଷ୍ଟିୟାନ ମଧ ହୋଇପାରନ୍ତି। ତାଙ୍କ ସଙ୍ଗରେ ଥିଲା ଗୋଟିଏ ପନ୍ଦର ଷୋଳ ବର୍ଷର ଧୀରକାନ୍ତ ବାଳକ। ଉଭୟେ ଘନ ଘନ ରଘୁନାଥ ଆଡକୁ ଦୃଷ୍ଟି କରୁଥିଲେ। ତାଙ୍କର ଦୃଷ୍ଟିରୁ ଅବ୍ୟାହତ ପାଇବାପାଇଁ ରଘୁ ମୁହଁ ତଳକୁ କଲା। କିଛିକ୍ଷଣ ରେ ଦେଖିଲା, ପୁଣି ଚାହିଁଛନ୍ତି। ଏଥର ତାଙ୍କ ଦୃଷ୍ଟି ବିଶେଷ କୌତୁହଳପୂର୍ଣ୍ଣ। ରଘୁ ସେ ସ୍ଥାନରୁ ଉଠିଯାଇ ପୁଟୁଳାଟି[୨] ହାତରେ ଧରି ଷ୍ଟେସନର ଏ ପାଖ, ସେ ପାଖ ବୁଲିବାକୁ ଲାଗିଲା। ହଠାତ୍ ତା ପିଠିରେ କିଏ ହାତ ମାରିଲା। ରଘୁ ଚମକି ପଡି ପଛ ଆଡକୁ ଅନାଇ ଦେଖିଲା, ସେହି ପୂର୍ବୋକ୍ତ ଯୁବକ। ଯୁବକ ତାର ସଙ୍କୋଚ ଭାବ ଲକ୍ଷ୍ୟକରି ହସି ହସି ବଙ୍ଗଳାରେ କହିଲେ, "ମହାଶୟ, ମନା କରିବେ

(୧) ସ୍ଥିର, ସିଦ୍ଧାନ୍ତ, (୨) ପୁଟୁଳା

ନାହିଁ। ଆମେ ବିଦେଶୀ, ଦୁଇଦିନପାଇଁ ଆପଣଙ୍କ ଦେଶକୁ ଆସିଛୁ; ଦ୍ରଷ୍ଟବ୍ୟ ସ୍ଥାନସବୁ ଦେଖି ବୁଲିବୁଲି ଚାଲିଯିବୁ। ଶୁଣିଛୁ, ଓଡିଶା ପରି ପ୍ରାକୃତିକ ଦୃଶ୍ୟ ଅନ୍ୟତ୍ର ଦୁର୍ଲଭ।"

ରଘୁନାଥ ତାଙ୍କ କଥାରେ ଆକୃଷ୍ଟ ହୋଇ ବଙ୍ଗଳାରେ ଉତ୍ତର ଦେଲା- "ବେଶ୍ କଥା।"

ଯୁବକ ରଘୁନାଥର କଥା ନ ସରୁଣୁ କହିଲେ, " ଶୁଣୁଛି, ଦକ୍ଷିଣ ଗଞ୍ଜାମ ଅଞ୍ଚଳର ଦୃଶ୍ୟ ସବୁଠାରୁ ସୁନ୍ଦର। ମୁଁ କଲିକତା ଆର୍ଟ କଲେଜର ଜଣେ ଅଧ୍ୟାପକ, ଆଉ ଏ ମୋର ଛାତ୍ର ସୁଶୀଳକୁମାର। ଆସ ସୁଶୀଳ ବାବୁ, ଯାଙ୍କ ସହିତ ପରିଚିତ କର।" ଏହା କହି ସଙ୍କୁଚିତ ସୁଶୀଳକୁ ସାମନାକୁ ଟାଣି ଆଣି କହିଲେ, "ମୋ ନାମ ନରେଣ୍ଦ୍ର ବାନାର୍ଜୀ, ଆଉ ଯାଙ୍କର ନାମ ସୁଶୀଳକୁମାର ଭଟ୍ଟାଚାର୍ଯ୍ୟ, ଆମେ ଉଭୟେ ବ୍ରାହ୍ମଣ। ଆମର ଗୁରୁଶିଷ୍ୟସମ୍ପର୍କ। ଗ୍ରୀଷ୍ମାବକାଶରେ କିଛି ଦିନ ସ୍ଫୁର୍ତ୍ତି କରିବାକୁ, ଆଉ ବିଚିତ୍ର ଦୃଶ୍ୟରାଜି ଉପଭୋଗ କରିବାକୁ ଓଡିଶାକୁ ଆସିଛୁଁ। ମହାଶୟ, ଆପଣ ବଙ୍ଗାଳୀପରା ! ନାମଟି କଣ ପଚାରି ପାରେଁ କି ?

ରଘୁନାଥ ସଲ୍ଲଜ କହିଲା, "ନା ମହାଶୟ, ମୁଁ ବଙ୍ଗାଳୀ ନୁହେ-ଓଡିଆ ବ୍ରାହ୍ମଣ। ମୋର ନାମ ରଘୁନାଥ ମହାପତ୍ର; ମୁଁ ଏ ବର୍ଷ ଏଫ. ଏ. ପାଶ କରିଚି, ଗ୍ରୀଷ୍ମଛୁଟି ହେବାରୁ କଲିକତା ବୁଲି ଯାଉଚି।

ଲୋକଟି ରଘୁନାଥକୁ ତୀକ୍ଷ୍ଣ ଦୃଷ୍ଟିରେ କ୍ଷଣିକ ଚାହିଁଗଲେ। ଏ ପିଲା ଏଫ୍,ଏ ପାଶ କରଚି,-ହାତରେ ଗୋଟାଏ ମସିଆ ପୁଟୁଳି ଧରି କଲିକତା ବୁଲି ବାହାରିଚି ! ନିଜର ଭାବ ଗୋପନ କରି ସାନନ୍ଦରେ କହିଲେ, "ତେବେ ଭଲ କଥା, ଆପଣ ମଧ ଆମରି ପରି ଆରାମ ଉପଭୋଗପାଇଁ ବୁଲି ବାହାରିଛନ୍ତି ! ଦକ୍ଷିଣ ମୂଲକ ଦେଖିଛନ୍ତି ?"

ରଘୁନାଥ କହିଲା, "ନା, ମୁଁ ଦେଖି ନାହିଁ।"

ଯୁବକ ଅଧିକତର ଉତ୍ସାହ ଦେଖାଇ କହିଲେ, "ତେବେ ଆସନ୍ତୁ ନା, ପ୍ରଥମେ ଦକ୍ଷିଣକୁ ବୁଲିଯିବା। ଦଶ ପନ୍ଦର ଦିନ ପରେ ମୁଁ ଫେରିବି, ଆପଣଙ୍କୁ ସଙ୍ଗରେ ନେଇଯିବି। ଆପଣ ଏ ଦେଶର ଲୋକ, ମୁଁ ଆପଣଙ୍କୁ କଲିକତା ଏକଦିନରେ ବୁଲାଇ ଦେଖାଇ ଆଣିବି।" ଆପଣ କଣ ଦେଖିବାକୁ ଚାହାଁନ୍ତି ? ଚିଡିଆଖାନା, ଯାଦୁଘର, ନା ଇଡେନ ଗାର୍ଡେନ, ଡାୟମଣ୍ଡ ହାରବର୍ ?-

ରଘୁନାଥ କହିଲା, "ମହାଶୟ, ମୋଠି ତ ଏତେ ଟଙ୍କା ନାହିଁ।"

ତାହାର ସରଳତାରେ ଯୁବକ ମୁଗଧ୍ ହୋଇ କହିଲେ, "ଟଙ୍କାର ଭାବନା ? ମୁଁ ସାଥିରେ ଅଛି, ଆପଣ ସେଥିପାଇଁ ଭାବିବେ ନାହିଁ। ଦୁଃଖର ବିଷୟ, ଆପଣ ମୋତେ ଚିହ୍ନିନ୍ତି ନାହିଁ। ମୋର ପିତା କଲିକତାର ବିଖ୍ୟାତ ଡ଼ାକ୍ତର ଏସ.ସି. ବାନାର୍ଜୀ, ଏଫ, ଆର. ସି. ଏସ, ଡି. (ଲଣ୍ଡନ)। ଆମର ଭାରି ବଡ ଡାକ୍ତରଖାନା; ଆଉ ମୁଁ ନଜେ ଆମେରିକାଫେରନ୍ତା। ବୋଷ୍ଟନ, ନିଉୟର୍କ, ସିକାଗୋ, ଲଣ୍ଡନ, ମୁଁ ସବୁ ଦେଖିଚି; ହେଲେ, ଓଡିଶାଟାକୁ ଦେଖି ନ

ଥିଲି। ମୋର ଇଚ୍ଛା, ମେଡ୍ରାସ ପର୍ଯ୍ୟନ୍ତ ଯିବି, ସେଠୁ ଦେଶକୁ ଫେରିବି। ଆପଣ ଟଙ୍କାର ଚିନ୍ତା କରିବେ ନାହିଁ। ଆଜିଠୁ ମୋର ବନ୍ଧୁ।" କହି ରଘୁନାଥ ସହିତ 'ହ୍ୟାଣ୍ଡସେକ୍' କରି ପକାଇଲେ।

ରଘୁନାଥ ଯୁବକଙ୍କ କଥାର ଚାକଚକ୍ୟ ଓ ପୋଷାକର ଆଡମ୍ବର ଦେଖି ଭୁଲିଗଲା; ତାଙ୍କ ସହିତ ଯିବାର ଠିକ୍‌କଲା।

ଯୁବକ ରଘୁନାଥର ହାତଧରି ହୋଟେଲ ଭିତରକୁ ଗଲେ। ଖାନ୍‌ସମାକୁ ହୁକୁମ କଲା ମାତ୍ରକେ ଦିବ୍ୟ ଭୋଜନ ପାନୀୟ ପହଞ୍ଚିଗଲା। ଯୁବକ ଓ ବାଳକ ସେଥିର ସଦ୍‌ବ୍ୟବହାର କଲେ। ରଘୁକୁ ତକିବାରୁ ସେ ସରମରେ ପଛଘୁଞ୍ଚା ଦେଲା। ଯୁବକ ଗ୍ଲାସେ କଫି ମୁହଁ କିତିକି ଟେକି କହିଲେ, 'ମୋପରି ଦେଶ ବିଦେଶ ବୁଲିଥିଲେ ଆପଣଙ୍କର ଜାତିର 'ବାଛ ବିଚାର' ନ ଥାନ୍ତା? ହଉ, ହଉ, ଆପଣଙ୍କ 'ସେଣ୍ଟିମେଣ୍ଟ' (ସଂସ୍କାର) ଉପରେ ମୁଁ ବାଧା ଦେବି ନାହିଁ।

ଠିକ୍ ସେହି ସମୟରେ କଲିକତା ଗାଡି ସୋଁ ସୋଁ କରି ଷ୍ଟେସନ ଚମକାଇ ପଶି ଆସିଲା। ରଘୁ ତା ଜୀବନରେ ରେଲରେ ଥରେ ଅଧେ ବସିଛି। ସେ ନୀରବ ନୟନରେ ଗାଡିକି ଚାହିଁ ରହିଲା। ତାରି ସାମନାରେ ଗାଡି ଚାଲିଗଲା, ତାର ଚେତନା ନ ଥିଲା। ସେ ଭାବୁଥିଲା—ତାହାର ଜୀବନର ବା ଉଦ୍ଦେଶ୍ୟ କଅଣ? ସେହିଯୋଗୁ ଆଜି ହଠାତ୍ ବିଦେଶୀ ବିଜାତି ସହିତ ବିଦେଶ ଯିବାପାଇଁ ସେ ପ୍ରସ୍ତୁତ। ସେ ଜଗତର ବା କେଉଁ କାର୍ଯ୍ୟରେ ଲାଗିବ? ଏହିପରି ତ ବୁଲି ବୁଲି ତାର ଦିନ କଟିବ। ଜୀବନରେ ଲକ୍ଷ୍ୟଭ୍ରଷ୍ଟ ସେ, ଜୀବନ ଥାଇ ବା କି ପ୍ରୟୋଜନ?

ଯେତେବେଳେ ନରେଶ ବାବୁ ତାକୁ ଡାକିଲେ, ସେତେବେଳେ ତାର ଚେତନା ହେଲା। "ଗାଡି ଆସିଲା ପରା, ମୁଁ ଟିକଟ ଆଣିଚି, ଆମେ ଆଗେ ଯିବୁଁ ଖୋର୍ଦ୍ଧାରୋଡ, ସେଠି କିଛିଦିନ ରହି ଦକ୍ଷିଣକୁ ଯିବା। ଗାଁ ଗାଁ ଭିତର ବୁଲି ଭଲରୂପେ ଚିଲିକାଟା ଦେଖିବା। ମୁଁ ଶୁଣିଚି, ଚିଲିକାର ଦୃଶ୍ୟ ଅତି ମନୋହର।"

ତାଙ୍କ କଥା ନ ସରୁଣୁ ଗାଡି ଆସି ପହଞ୍ଚିଗଲା। ତିନିଜଣଯାକ ସେକେଣ୍ଡ କ୍ଲାସରେ ଯାଇ ବସିଲେ। ରଘୁନାଥ ଭାବିଲା, ନିଶ୍ଚୟ ବଡଲୋକ, -ନୋହିଲେ, ସେକେଣ୍ଡ କ୍ଲାସରେ ଯାଆନ୍ତେ।

ଗାଡି ଯେତେବେଳେ କଟକ ଷ୍ଟେସନ ଛାଡିଲା, ବିଜୁଳି ପରି ଗୋଟିଏ ସୁନ୍ଦର ମୁହଁ ରଘୁନାଥର ମନରେ ପଡିଗଲା। ସେ ଯଦି ତାର ହୋଇଥାନ୍ତା, ସେ କି ଆଜି କଟକ ଛାଡି ଯାଆନ୍ତା। ତାହାର ହୃଦୟ ବିଦୀର୍ଣ୍ଣ ହୋଇ ଗୋଟିଏ ବଡ କୋହ ଉଠିଲା। ସେହି ଆବେଗ-ଉତ୍‌ଥିତ ଦୀର୍ଘଶ୍ୱାସ ଯୁବକର ତୀକ୍ଷ୍ଣ ଦୃଷ୍ଟିର ଅଗୋଚର ରହିଲା ନାହିଁ।

ଗାଡି ଶବ୍ଦ କରି ହଲି ଦୋହଲି ଚାଲିଲା; ଦୂରର ଗଛପତ୍ର ସବୁ ଦଉଡିଲା ପରି ଦିଶିଲା। ଗୋଟିଏ ଝରକାରେ ମୁଣ୍ଡ ଗଳାଇ ପଛକରି ବସିରହିଲା ସୁଶୀଳକୁମାର। ଇଚ୍ଛା, ରଘୁନାଥର ଦୃଷ୍ଟି ଯେପରି ତା ଉପରେ ନ ପଡୁ।

କିନ୍ତୁ ରଘୁନାଥ ବାହ୍ୟଜ୍ଞାନଶୂନ୍ୟ। ନରେଶ ବାବୁ ସିଗ୍ରେଟ ଗୋଟିଏ ଲଗାଇ ଧୂମପାନ କରୁଁ କରୁଁ ପସରା ମେଲି ବସିଲେ।



## ପଞ୍ଚଦଶ ଅଧ୍ୟାୟ

ନରେଶ ବାବୁ ଗଳ୍ପ କରୁଥିଲେ। ରଘୁନାଥ ବିଶେଷ ମନୋଯୋଗ ନ କରିବାରୁ ନିଜର ହାତବ୍ୟାଗ ଫିଟାଇ ଖଣ୍ଡେ ଖବରକାଗଜ ମେଲାଇ ବସିଲେ। ଧାଡିଏ ଦିଧାଡି ପଢି ରଘୁ ଆଡିକି କାଗଜଟି ବଢାଇ ଦେଇ କହିଲେ, " ଦେଖନ୍ତୁ ମହାଶୟ! ଏ ଆମେରିକାର କଳା-ବିଦ୍ୟାର ପ୍ରଧାନ ପେପର, ଆପଣ ଛବି ଦେଖିବାକୁ ଭଲପଆନ୍ତି, ନା ନାହିଁ।

ରଘୁନାଥ ମୁଣ୍ଡ ଟୁଙ୍ଗାରି ହିଁ ଜବାବ ଦେଲା। ନରେଶ ବାବୁ କାଗଜଟି ମୋଡି ବ୍ୟାଗ୍ ଭିତରେ ରଖି ତୈଳଚିତ୍ରଟିଏ ବାହାର କଲେ, ସେଥିରେ ଗୋଟିଏ ଅର୍ଦ୍ଧୋଲ୍ଲଙ୍ଗ ନାରୀମୂର୍ତ୍ତି ଅଙ୍କିତ। ରଘୁନାଥ ତାକୁ ନ ଅନାଇ ମୁହଁ ବୁଲାଇ ଦେଲା। ନରେଶ ବାବୁ ହସି ହସି କହିଲେ, "ଆପଣ ବଡ ରୁଚିପ୍ରିୟ ଦେଖୁଚି, କିନ୍ତୁ ଏଥିରେ ଆର୍ଟର ସୁନ୍ଦର ବୈଚିତ୍ୟ ଅଛି, ଏହି ଦେଖନ୍ତୁ- ଅବୟକ-ଗୁଡିକର କି କମନୀୟତା, ଠିକ୍ କୁନ୍ଦିଲା ପରି; ଆଖି, କାନ, ନାକର ଗଠନଶ୍ରୀ କି ଆଭା ସଦୃଶ। ଆର୍ଟିଷ୍ଟମାନେ ପ୍ରକାରାନ୍ତରରେ କବି ଯେ! ଏ ମୋର ସ୍ୱହସ୍ତାଙ୍କିତ ଚିତ୍ର, ଯା ପାଇଁ ମୁଁ ହଜାରେ ଟଙ୍କା ପୁରସ୍କାର ପାଇଥିଲି, କାହିଁକି ନ ପାଆନ୍ତି? ଏ ଛବିର ମୁହଁରେ ଆଖିକୋଣରେ ଯେଉଁ ମଧୁର ହସଟିଏ ପ୍ରସ୍ଫୁଟିତ କରିପାରିଚି, ଦୂରରୁ କାହାକୁ ଯେପରି ଦେଖି ଲଜ୍ୟା ଓ ଆନନ୍ଦରେ ସୁନ୍ଦରୀର ଗାଲ ଦିଓଟି ଲାଲ ହୋଇଉଠିଚି, ଏହି ଚିତ୍ର କରିବା କଣ ସହଜ କଥା। ଆଉ ଏ ତମାଳଲତାଁର ବେଷ୍ଟନୀ ଭିତରେ ତାହାର କମ୍ପିତ ବକ୍ଷଃସ୍ଥଳର ଯେଉଁ ପୀନୋନ୍ନତଭାବ।"

ନରେଶ ବାବୁଙ୍କ ବକ୍ତୃତାରେ ଆକୃଷ୍ଟ ହୋଇ ସୁଶୀଳ ଛବି ଆଡକୁ ମୁହଁ ବୁଲାଇଲା। କକ୍ଷରେ ଆଉ କେହି ନ ଥିଲେ ସୁଦ୍ଧା ସୁଶୀଳପରି ବାଳକ ଏବଂ ନରେଶ ବାବୁଙ୍କ ପରି ଅଗ୍ରଜସ୍ଥାନୀୟ ବ୍ୟକ୍ତିଙ୍କ ସମକ୍ଷରେ ଏପରି ଛବି ଦେଖିବାକୁ ରଘୁନାଥ ମନ ବଳାଇଲା ନାହିଁ। କହିଲା, "ଆପଣ ଛବି ରଖି ଦିଅନ୍ତୁ, ବଡ କଦର୍ଯ୍ୟ ଛବି, ଏପରି ଛବି କାହିଁକି ଆଙ୍କୁଚନ୍ତି? ପ୍ରାକୃତିକ ଦୃଶ୍ୟ ଆଙ୍କୁନାହାନ୍ତି?" ନରେଶ ବାବୁ ଛବିଟି ରଖିଦେଇ କହିଲେ, "ପ୍ରାକୃତିକ ଦୃଶ୍ୟ କଣ କମ ଆଙ୍କିଚି?" ଏହା କହି ଆଉ ଯୋଡିଏ ଛବି ବାହାର କରି ଦେଖାଇଲେ, "ଏହି ଦେଖନ୍ତୁ, ଏହା ଆଗ୍ରାର ତାଜମହଲ, ଓଃ! କି ବିଚିତ୍ର ଦୃଶ୍ୟ। ଆପଣ ଥରେ ଦେଖିଲେ

ବୁଝନ୍ତେ। ଶୁଣିଚି, ଏହା ନିର୍ମାଣ କରିବାପାଇଁ ଆପଣଙ୍କ ଦେଶରୁ ଶିଳ୍ପୀମାନେ ଯାଇଥିଲେ। ହାୟ, ଆମର ପୂର୍ବପୁରୁଷ କଣ ନ ଥିଲେ। କି ତାଙ୍କର ଶିଳ୍ପ, କି ତାଙ୍କର ପ୍ରତିଭା।-ପଥରରେ ଜୀବନ୍ତ କବିତା ଲେଖି ଯାଇଛନ୍ତି। ଗୋଟିଏ ଗୋଟିଏ ଖିଲାଣ, ଗୋଟିଏ ଗୋଟିଏ ପଥରରେ ତିଆରି। ସେ ଯେଉଁ ଦେବାନିଖାସ୍, ଦେବାନିଆମ୍,-ସେ ଘରସବୁର କି କାରୁକାର୍ଯ୍ୟ। ସେମାନେ ଏପରି ବିଳାସୀ ଥିଲେ। ଦେଶଟା ସୁନା, ରୂପା, ମୋତି, ମାଣିକ୍ୟରେ ଏପରି ଭାସୁଥିଲା। ତାଙ୍କର ଯେଉଁ ସୁନାର ଛାତ। ସେ ପତର ସବୁ ବିଦେଶୀୟମାନେ କାଢ଼ି ନେଇ ଗିଲିଟି ଜିନିଷମାନ ବସାଇ ଦେଇଛନ୍ତି, ଆଉ ଲେଖି ଦେଇଚନ୍ତି, ଏଇ ସ୍ଥାନମାନଙ୍କରେ ସୁନାପତର ଥିଲା। ଗଛଡାଳ, ଫୁଲ ଦେହରେ ଯେଉଁଠି ଯେଉଁ ରଙ୍ଗ, ସେଠି ସେହିପରି ରଙ୍ଗର ପଥର ବସିଥିଲା, ତାହା ମଧ ସେ ସ୍ଥାନମାନଙ୍କରୁ କାଢ଼ି ନେଇ ନକଲି ପଥରମାନ ବସାଇ ଦେଇଚନ୍ତି। ଏଇମାନେ ଆମକୁ ସାଇଲେ। ଆମର ତ ସବୁ ଗଲା, ଆଉ ଅଛି କଣ କି? ଆମେ ଭୀରୁ, କାପୁରୁଷ, ପୂର୍ବପୁରୁଷର କୀର୍ତ୍ତିରକ୍ଷାପାଇଁ ସୁଦ୍ଧା ଆମର ଶକ୍ତି ନାହିଁ। ଆମେ ପୁଣି ଗର୍ବ କରୁଁ ସଭ୍ୟଜାତି!" କଥା କହୁ କହୁ ନରେଶ ବାବୁଙ୍କ ଚକ୍ଷୁ ଉଜ୍ଜ୍ୱଳ ହୋଇଗଲା, ତାଙ୍କ ନୟନକୋଣରୁ ଦେଶପ୍ରୀତିର ବହ୍ନି ବାହାରୁ ଥିଲା; ରଘୁନାଥ ମୁଗ୍ଧ ହୋଇ ଚାହିଁ ରହିଲା। ଆଉ ଛବିଟି ସେ ମେଲାଇ ଧରିଲେ, ଏହା ସୁନ୍ଦରବନର ଗୋଟିଏ ଦୃଶ୍ୟ। ରଘୁ ଏକାନ୍ତ ଚିତ୍ତରେ ତତ୍‌ପ୍ରତି ଲକ୍ଷ୍ୟ କରୁଥିବାର ଦେଖି ସେ କହିଲେ, "ଏହା ବଙ୍ଗଳାହତାର ସୁନ୍ଦରବନ- ଏପରି ସୁନ୍ଦର ଯେ, ତାର ନାମ ସୁନ୍ଦରବନ। ସୁନ୍ଦରବନର ରଏଲ 'ଟାଇଗର'-।'

ରଘୁନାଥ କହିଲା, "ମହାବଳ ବାଘ ନା?"

"ହଁ ମହାବଳ। ଏତେ ବଳ ଏକା ଆଫ୍ରିକାର ସିଂହ ଛଡା ଆଉ କାହାରି ଅଛି କି ନା ସନ୍ଦେହ; ଲମ୍ବରେ ୧୨ କି ୧୮ଫୁଟ ହୁଅନ୍ତି, ପ୍ରକାଣ୍ଡ ବାଘ। ମୋର ସାଆନ୍ତବାପା ବିଖ୍ୟାତ ଶିକାରୀ। ସେ ତାଙ୍କ ଜୀବନରେ ଯେ କେତେ ମହାବଳ ବାଘ ଶିକାର କରିଚନ୍ତି, ତାର ସୀମା ନାହିଁ। ମୁଁ ସେତେବେଳେ ଆର୍ଟ କଲେଜରେ ପଢୁଥିଲି। ସାଆନ୍ତବାପା ଶିକାର କରିବାକୁ ଯିବାସମୟରେ ମୁଁ ତାଙ୍କ ସଙ୍ଗରେ ଥିଲି। ସେହି ସମୟରେ ଏ ଛବି ମୁଁ ଅଙ୍କିଥିଲି। ଆମେ ଥରେ ବାଘ ହାବୁଡାରେ ପଡି ଅତି କଷ୍ଟରେ ପ୍ରାଣରକ୍ଷା କରିଥିଲୁ। ରୁହ, ମୁଁ ତମକୁ ସେ ଗଳ୍ପଟା କହେଁ।"

ଏତେବେଳକୁ ଟ୍ରେନର ଗତି ମନ୍ଥର ହୋଇଆସୁଥିଲା। ଷ୍ଟେସନ ନିକଟବର୍ତ୍ତୀ ଭାବି ନରେଶ ବାବୁ ଛବିଗୁଡ଼ିକ ମୋଡି ବ୍ୟାଗରେ ଭର୍ତ୍ତିକଲେ। ଗାଡି ଆସି ଭୁବନେଶ୍ୱର ଷ୍ଟେସନରେ ଛିଡାହେଲା। ସେ ସୁଶୀଳକୁମାରଙ୍କୁ ଉଠାଇ ତଳକୁ ଓହ୍ଲାଇବାକୁ ବାହାରିଲେ ଓ ରଘୁକୁ ଓହ୍ଲାଇବାକୁ ଇଙ୍ଗିତରେ କହିଲେ, - "କ୍ଷମା କରିବେ ମହାଶୟ, ଓଡିଶାକୁ, ମୁଁ ଭୁଲରେ ଖୋର୍ଦ୍ଧାରୋଡ କଥା କହିଥିଲି। ଆମେ ହିନ୍ଦୁ, ଓଡିଶାକୁ ଆସି ଭୁବନେଶ୍ୱର ନ ଦେଖି କଣ ଯିବୁଁ? ଶୁଣାଯାଏ, ଭୁବନେଶ୍ୱର ଓ ପୁରୀର ଖୋଦିତ ଶିଳ୍ପ ହିନ୍ଦୁର ଗୌରବ-ସମ୍ପତ୍ତି। ହିନ୍ଦୁର

ଗୌରବରେ ଆମର ଗର୍ବ।" ଏହା କହି ସେ ସୁଶୀଳର ହାତ ଧରି ଟ୍ରେନରୁ ଓହ୍ଲାଇଲେ ଏବଂ ପଦାକୁ ଆସି ଗାଡ଼ି ସନ୍ଧାନ କରିବାକୁ ଲାଗିଲେ। ଷ୍ଟେସନରେ ବଳଦଗାଡ଼ି ଛଡା ଅନ୍ୟ ଗାଡ଼ି ନ ଥିଲା। ନରେଶ ବାବୁ ନାସିକାକୁଞ୍ଚନ କରି କହିଲେ, "ଛେ, ଛେ, ଗୋଟିଏ ସୁଦ୍ଧା ଭଲ ଗାଡ଼ି ନାହିଁ।" ଅଗତ୍ୟା ସେମାନେ ଗୋଟିଏ ଗୋରୁ ଗାଡ଼ିର ଆଶ୍ରୟ ନେଲେ। ଗୋରୁଙ୍କୁ ଦେଖି ସୁଶୀଳ ଭୟରେ ପଛକୁ ହଟିଗଲା, ଗାଡ଼ି ନିକଟକୁ ଯିବାକୁ ସାହସ କଲାନାହିଁ। ରଘୁନାଥ ତାହାର ହାତ ଧରି ବସାଇବାକୁ ଯାଉଁ ଯାଉଁ, ନରେଶ ବାବୁ ସୁଶୀଳକୁ ଧରି ଟେକିନେଇ ଗାଡ଼ିରେ ବସାଇଦେଲେ। ନରେଶ ବାବୁଙ୍କର ଦୈହିକ ବଳ ଦେଖି ରଘୁନାଥ ଆଶ୍ଚର୍ଯ୍ୟ ହେଲା। ତାହାର ସେ ଭାବ ଲକ୍ଷ୍ୟକରି କହିଲେ, "ମୁଁ ପିଲାକାଳୁଁ କସରତ୍ କରେ; ମୋ ଦେହରେ ଅସମ୍ଭବ ବଳ, ମୋର ଚାଲିବାର୍ ମଧ ଖୁବ୍ ଅଭ୍ୟାସ ଅଛି। ତେବେ ଅପରିଚିତ ସ୍ଥାନ, ଗାଡ଼ିରେ ଯିବା ଭଲ। ଆପଣ ମଧ ଏ ସ୍ଥାନଟା ଦେଖି ନାହାନ୍ତି।"

ଏହା କହି ଗାଡ଼ି ଭିତରେ ବସିଲେ। ତାଙ୍କର ଆଜ୍ଞାମତେ ଗାଡ଼ିବାଲା ବଡ଼ ବଜାର ଭିତରକୁ ଘେନିଗଲା। ସେଠି ଗୋଟିଏ ବଖରା ଘରଭଡା ମଧ ମିଳିଗଲା। କୁଲି ଓ ଗାଡ଼ିବାଲା ସମସ୍ତେ ଅତିରିକ୍ତ ବକ୍‌ସିସ୍ ପାଇ ବାବୁଙ୍କ ଦୀର୍ଘ ଜୀବନ କାମନା କରୁଁ କରୁଁ ଚାଲିଗଲେ।

ଏଥର ସାହେବୀ ପୋଷାକ କାଢ଼ିଦେଇ ନରେଶ ବାବୁ ପୂରା ବଙ୍ଗାଳୀ ସାଜିଲେ। ସୁଶୀଳ ଓ ରଘୁନାଥର ବେଶ ବଦଳାଇବା ପ୍ରୟୋଜନ ଯୋଗାଡରେ ବ୍ୟସ୍ତ ହେଲେ। ଏଠି ଶୋଇବାଟା ସମ୍ପୂର୍ଣ୍ଣ ଦେଶୀ ଧରଣରେ ହେଲା। ଆରଦିନ ସକାଳ ପର୍ଯ୍ୟନ୍ତ ଏହି ଘରେ ରହି, ବଡଭୋରୁ ଉଠି ସମସ୍ତେ ଭୁବନେଶ୍ୱରର ଶିବମନ୍ଦିର, ଲିଙ୍ଗରାଜ, ଏକାମ୍ରକାନନ, ବିନ୍ଦୁସରୋବର ଓ କେଦାରଗୌରୀ ଇତ୍ୟାଦି ଦେଖିବାକୁ ବାହାରିଲେ।

ଆପଣା ପୂର୍ବପୁରୁଷର କୀର୍ତ୍ତିକଳାପ ଦେଖୁଁ ଦେଖୁଁ ରଘୁନାଥ ବିସ୍ମିତ ହୋଇଗଲା, ତା ମନରେ ନିଜ ଜାତିର ବର୍ତ୍ତମାନ ହୀନବସ୍ଥା କଥା ଉଦିତ ହୋଇ ଅତ୍ୟନ୍ତ କଷ୍ଟହେଲା। ଏହି ଓଡ଼ିଆ ଜାତି- ଏ ସବୁ ମନ୍ଦିର, ଉଦ୍ୟାନ, ପୁଷ୍କରିଣୀର ପ୍ରତିଷ୍ଠାତା। ଏହି ଭୀରୁ, ଦୁର୍ବଳ, ଅନୁନ୍ନତ ଜଡ ଜାତି! ଲକ୍ଷେ ଲକ୍ଷେ ଜୋତା ମାଇଲେ ସୁଦ୍ଧା ମୁହଁଖୋଲି ପଦେ କହିବାର କ୍ଷମତା ନାହିଁ। ଏହି ଓଡିଶାର ପୂର୍ବପୁରୁଷ ଏ ସବୁ ସ୍ମରଣାତୀତ କାଳରୁ ଗଢ଼ି ରଖିଛନ୍ତି... ଯୁଗ ଯୁଗ ରହିଗଲେ ସୁଦ୍ଧା ପଥରଗୁଡିକ ଜୀବନ୍ତ ମୂର୍ତ୍ତି ପରି ଠିଆ ହୋଇଅଛନ୍ତି- ଏହା ଭାବି ରଘୁର ହୃଦୟ ଅବସନ୍ନ ହେଲା। ନରେଶ ବାବୁ କହିଲେ, "ଧନ୍ୟ ଓଡିଶା! ଏପରି କାରୁକଳା ଯେ ପାଷାଣଫଳକରେ ଅଙ୍କିପାରେ, ସେ ଧନ୍ୟ। ସେ କେତେ ବଡ ଜାତି ନୁହେଁ। କିନ୍ତୁ ଜଗତରେ ତାହାର ଆସନ ବର୍ତ୍ତମାନ କେଉଁଠି ମହାଶୟ, ରାଗିବେ ନାହିଁ, ମୁଁ ପଦେ କହିବି। ଆଜିକାଲିର ଓଡିଆମାନଙ୍କୁ ଦେଖିଲେ କିଏ ଭାବିପାରିବ ଯେ, ଏମାନେ ଭୁବନେଶ୍ୱର ମନ୍ଦିର ତିଆରି କରିଚନ୍ତି? ଏହି ଚଟିଆ, ତେଲିଆ, ନୋଳିଆ, ବଟୁଆଧାରୀ ଓଡିଆଙ୍କୁ-ଯାହା କି ସାତ ଜାବୁଡ଼ା ଦେଲେ 'ହୁଁ' ବୋଲି ପଦେକଥା ପାଟିରୁ ବାହାରେ ନା, ତାଙ୍କପ୍ରତି କାହାର ଭକ୍ତି, ଶ୍ରଦ୍ଧା ହେବ, କହିଲ?"

ରଘୁ ଦୁଃଖିତ ହେଇ କହିଲା, "ସମୟରେ ସବୁଥିର ପତନ ହୋଇଥାଏ, -ଚିର କାଳ ଚକର ଗତି ଗୋଟିଏ ସ୍ଥାନରେ ନ ଥାଏ। ଥରେ ଓଡିଆ ଉଠିଥିଲା, ଏବେ ପଡିଚି, ପୁଣି ଉଠିବ। ଯେ ଥରେ ଉଠିଚି, ସେ ଯେ ଆଉ ଥରେ ଉଠିଚ, ଏ ବିଶ୍ୱାସ ଅନ୍ତତଃ ମୋର ଅଛି।" ନରେଶ ବାବୁ କହିଲେ, "ଆପଣ ଭଲ କହିଚନ୍ତି, ଏହି ମଣିଷର କଥା। ଆମେ ଭାରତବାସୀ ପଡିଯାଇଚୁଁ ବୋଲି ଯେ ଆଉ ଉଠି ନାହିଁ, ଏହା ତ ଅତି ଅପସନ୍ଦ କଥା। ଦିନେ ତ କପାଳ ଫେରିବ ? କଣ କହୁଚ ସୁଶୀଳ ?" ଏହା କହି ସୁଶୀଳ ଉପରେ ବକ୍ର କଟାକ୍ଷପାତ କଲେ। ସୁଶୀଳ ଲାଜରେ ମୁଣ୍ଡ ପୋତିଦେଲା। ନରେଶ ବାବୁ ଚକ୍ଷୁର ଭାବ ପରିବର୍ତ୍ତନ କରି କହିଲେ, "ସୁଶୀଳ, ତୁମେ ବଡ ଲଜ୍ଜାଳୁ; ତୁମକୁ ଆସି ପନ୍ଦର ବର୍ଷ ହେଲା, ସବୁବେଳେ ମୁହଁଚୋରା ହେଲେ ହେବ ? କ୍ରମେ ଜଗତରେ ମଣିଷ ହେବା ଆବଶ୍ୟକ।"

ଭୁବନେଶ୍ୱରରେ ସେମାନେ ପ୍ରାୟ ଆଠଦିନ କଟେଇଲେ। କ୍ରମେ ନରେଶ ବାବୁଙ୍କ ପ୍ରତି ରଘୁନାଥର ପ୍ରଗାଢ ଭକ୍ତି ଓ ଶ୍ରଦ୍ଧା ଜାତହେଲା। ଏ ଥର ନରେଶ ବାବୁଙ୍କ ଆପଣା ବଡଭାଇ ପରି ଜ୍ଞାନ କରିବାକୁ ଲାଗିଲା। ଘର କଥା ପଡୁଁ ପଡୁଁ ରଘୁ କହିଲା, "ଆପଣ ମୋତେ ଆଉ ମହାଶୟ ବୋଲି ନ ଡାକି, ମୋ ନାମ ଧରି ଡାକିବେ। ମୁଁ ଆପଣଙ୍କଠୁଁ ସାନ; ଆପଣଙ୍କୁ ଦାଦା ବୋଲି ଡାକିବି। ଆପଣ ମୋତେ ରଘୁନାଥ ବୋଲି ଡାକନ୍ତୁ; ମୁଁ ସେଥିରେ ଭାରି ଖୁସି ହେବି।"

ନରେଶ ବାବୁ ହସିହସି କହିଲେ, "ଆଚ୍ଛା, ତାହାହିଁ ହେବ। ସୁଶୀଳ ଏ ଥର ତୁମେ ୟାଙ୍କୁ 'ରଘୁଦା' ବୋଲି ଡାକିବ। ଆଉ ଦେଖ ରଘୁନାଥ, ଏବେ ଆମେ ପୁରୀ ଯିବାକୁ ଭାବିଚୁଁ; ତମର ମତ କଣ ? ପୁରୀ କେବେ ଦେଖିଚ ? ରଘୁ କହିଲା, "ମୁଁ ପୁରୀ ଦେଖି ନାହିଁ। ନରେଶବାବୁ ଅତି ବିସ୍ମିତ ହୋଇ କହିଲେ କଣ ? ଓଡିଶାର ଲୋକ ହୋଇ ତମେ ପୁରୀ ଦେଖି ନାହିଁ ? ଆଉ ଆମେ ଦୁର ଦେଶରୁ ଟଙ୍କା ଖରଚ କରି ଆସି ତମ ଦେଶ ଦେଖି ଯାଉଚୁଁ। ଏଇଠି ତୁମେ ଦେଖ ଓଡିଶାବାସିଙ୍କ ଅଯୋଗ୍ୟପଣିଆ। ଆପଣା ଦେଶର ମାଟିକୁ, ଆପଣା ଦେଶର ଦ୍ରବ୍ୟକୁ ଯେ ଭଲରୂପେ ଚିହ୍ନ ନ ପାରିଲା, ସେ କି ସ୍ୱଦେଶମାତାର ଯୋଗ୍ୟପୁତ୍ର ? ତୁମେ ଦେଖୁଚ, ମୁଁ କାହିଁ ବିଲାତ, କାହିଁ ଆମେରିକା ଦେଖି ଆସିଚି; ଭାରତବର୍ଷ ମଧ୍ୟ କମ୍ ବୁଲିନାହିଁ; ଆଗ୍ରାର ତାଜମହଲ, ନର୍ମଦାର ପ୍ରପାତ, ଆଦି ନାରାୟଣ ତୀର୍ଥ, ଅମୃତସରର ଶିଖମାନଙ୍କ ସୁବର୍ଣ୍ଣମନ୍ଦିରଠୁ ଆରମ୍ଭ କରି ତମାମ୍ ରାଜପୁତନା ଓ ବମ୍ବେ ପର୍ଯ୍ୟନ୍ତ ଯାଇଚି। ମୁଁ ଓଡ଼ିଶା ଦେଖି ନାହିଁ ବୋଲି ତାହା ଦେଖିବାକୁ ଆସିଚି; ଆଉ ତମ ଗୋଡତଳର ଜିନିଷ ତମେ ଦେଖି ନାହିଁ ? ରଥବେଳକୁ ବି ଥରେ ପୁରୀ ଆସିନାହିଁ।

ରଘୁନାଥ ଲଜ୍ଜିତ ହୋଇ କହିଲା, "ପିଲାବେଳେ ଯଦି ଆସିଥିବି, କିନ୍ତୁ ମୋ ମନରେ ତ ପଡୁ ନାହିଁ। ହଉ, ଆପଣଙ୍କ ଅନୁଗ୍ରହରୁ ଏଥର ଦେଖିବି।"

ତା ପରଦିନ ସେମାନେ ପୁରୀରେ ଆସି ପହଞ୍ଚିଲେ। ନରେଶ ବାବୁ ରଘୁନାଥକୁ କହିଲେ, "ପୁରୀ ଅଜବ ସହର ବାବା। ଯା କଥା ମୁଁ ଅନେକ ପଢିଚି,-ବିଦେଶଙ୍କପାଇଁ ଏ

ବଡ ଭୟାନକ ସ୍ଥାନ। ବିଶେଷତଃ ଏଠିକାର ଯେଉଁ ରକ୍ତଶୋଷଣକାରୀ ପଣ୍ଡାମାନେ। ପଣ୍ଡା ନୁହନ୍ତି ଯେ, ଦଳେ ଜୋକ ତ। ତମଠୁଁ ପଇସା ଛାଣି ଛାଣି ତମକୁ କାଙ୍ଗାଳ କରିଦେବେ। ମୁଁ ବି ତାର ଉପାୟ ପାଞ୍ଚି ରଖିଚି। ଏଠି ପୋଲିସବେଶରେ ରହିବା ସବୁଠୁଁ ଭଲ। 'ଲାଲ ପଗଡିକି କିଏ ନ ଡରେ।' ଏହା କହି ସେ ହୋ ହୋ ହସି କହିଲେ, "ମୋର ଗୋଟିଏ ଭାଇ ପୋଲିସ ସର୍ଜେଣ୍ଟ, ତାଙ୍କ ନିକଟରେ ଅନେକ ପ୍ରକାର ପୋଲିସ ପୋଷାକ; ମୁଁ ଖଣ୍ଡେ ଦିଖଣ୍ଡ ସାଙ୍ଗରେ ଆଣିଚି।" ଅଳ୍ପ କ୍ଷଣ ମଧ୍ୟରେ ସେ ପୁଲିସ୍ ଇନ୍‌ସପେକ୍‌ଟର ବେଶ ସାଜି ରଘୁନାଥକୁ 'କନେଷ୍ଟେବଲ' ଓ ସୁଶୀଳକୁ ବୟସ୍କାଉଟ୍ (ବାଳଚର) ବେଶରେ ସଜାଇଦେଲେ। ବେଶଭୂଷା ମଧ୍ୟରେ ବଦଳିବାରେ ତାଙ୍କର ଦକ୍ଷତା ଦେଖି ରଘୁନାଥ ଚମତ୍କୃତ ହେଲା। ମୁହୂର୍ତ୍ତକ ମଧ୍ୟରେ ସେମାନେ ପୁଲିସ ପାଲଟି ଗଲେ। ନରେଶ ବାବୁ ରଘୁନାଥକୁ ପୋଲିସ୍ ସମ୍ବନ୍ଧରେ ଦିଇ ଚାରି କଥା ଶିଖାଇ କହିଲେ, "ମୁଁ ବାଟରେ ଗଲାବେଳେ ମୋତେ ମନ୍‌ସି ହେବ ବୋଲି କହିବ, ଏବଂ ପୁଲିସଙ୍କ ପରି ସଲାମ ଦେବ। ଭୁଲରେ ଯେପରି ନମସ୍କାର ନ କରୁ।"

ଏହି କହି ତିନି ଜଣ ବୁଲି ବାହାରିଲେ। ସେ ଦିନ ବୁଲି ବୁଲି ସନ୍ଧ୍ୟା ହୋଇଥିବାରୁ ରଘୁନାଥ ବସାକୁ ଆସି ଅଚେତ ଭାବରେ ଶୋଇପଡ଼ିଲା। ସକାଳୁ ଉଠି ଦେଖିଲା, ଯେଉଁ ବସାରେ ସେ ରାତିରେ ଶୋଇଥିଲା, ବସାରେ ନାହିଁ। ମନେକଲା ଚକ୍ଷୁର ଭ୍ରମ; ଉଠି ଏଣେ ତେଣେ ବୁଲି ଦେଖିଲା, ପ୍ରକୃତରେ ଏହା ଅନ୍ୟ ବସା।

ନରେଶ ବାବୁ ବସି ଖବରକାଗଜ ପଢୁଥିଲେ; ରଘୁନାଥକୁ ହସି ହସି କହିଲେ, "କାଲି ଖବ୍ ଶୋଇଲ ଭାଇ। ରାତି ଦଶଟାବେଳେ ହଠାତ୍ ଘରବାଲା ଆସି ଘର ଖାଲି କରିବାକୁ କହିଲା। ତାର କିଏ କୁଣିଆ ପହଞ୍ଚିଗଲେ। ଏ ମଧ ତାର ବସା। ମୁଁ ତୁମକୁ ନ ଉଠାଇ କାନ୍ଧରେ ପକାଇ ନେଇ ଆସିଚି। ଏଥିରୁ ବୁଝିବ ମୁଁ କିପରି ପହିଲ୍‌ମାନ। ତୁମେ ଗାଡିରେ ପୁଣି ଶୋଇ ପଡିଲ ମୁଁ ଓ ସୁଶୀଳ ତୁମକୁ ଏଠି ଆଣି ଶୁଆଇଲୁଁ।"

ରଘୁନାଥ ଆବାକ୍ ହେଇଗଲା। ତାର ତ ନିଦ ଗାଢ ନୁହେଁ-ସାମାନ୍ୟ ଶବ୍ଦରେ ତା ନିଦ ଭାଙ୍ଗିଯାଏ। ବୋଧହୁଏ, ଏ କେତେ ଦିନର ଚିନ୍ତାରେ ତାହାର ଏପରି ଶାରୀରିକ ପରିବର୍ତ୍ତନ ଘଟିଅଛି। ତା ମୁଣ୍ଡ ବଡ ଝିମିଝିମି ହେଉଥିଲା। ସେ ଦାନ୍ତ ଘଷି କିଛି ଜଳଖିଆ କଲା। ପୁଣି ବାନ୍ତି ଦେଖାଇବାରୁ ବିଛଣାରେ ଶୋଇଲା। ନରେଶ ବାବୁ ସସ୍ନେହେଁରେ ପଚାରିଲେ, "ଦେହ କଣ ହଉଚି କି? ରଘୁ କହିଲା, "ମୁଣ୍ଡ ଘୂରେଇ ବାନ୍ତି ଲାଗୁଚି।" ନରେଶ ବାବୁ କହିଲେ "ପୁରୀ ବିଷମ ସ୍ଥାନ-ଏଠି ନିତି କଲେରା। ଆଚ୍ଛା, ମୋ ନିକଟରେ ଔଷଧ ଅଛି, ଖାଇ ଚୁପ୍‌ହୋଇ ଶୋଇପଡ, ଆଜି ମୁଁ ଏକା ବୁଲିଯିବି।"

ରଘୁ ଔଷଧ ଖାଇ ଶୋଇ ପଡିଲା। ଧୀରେ ଧୀରେ ଗାଢନିଦ ହୋଇଗଲା। ଯେତେବେଳେ ନିଦ ଭାଙ୍ଗିଲା, ସେତେବେଳେ ରାତି ଆସି ହେଲାଣି, ନରେଶ ବାବୁ, ସୁଶୀଳ ବୁଲିଆସି ଲୁଗା ପାଲଟିଲେ। ସେ ଉଠି ଦାଣ୍ଡକୁ ଗଲା। ନରେଶ ବବୁଙ୍କୁ କହିଲା, "ଆପଣ

ଯେ ଔଷଧ ଦେଲେ, ସେଥରେ ମୋର ଉପକାର ହେଲା। ପାନକରେ ମୁଁ ସମ୍ପୂର୍ଣ୍ଣ ଭଲ ହୋଇଗଲି।" ନରେଶ ବାବୁ ହସି ହସି କହିଲେ, "ଆଉ କଣ ମିଛରେ ଡାକ୍ତରର ପୁଅ ମୁଁ। ଡାକ୍ତରୀ ପଢି କେତେ ଡ଼ାକ୍ତରଙ୍କ କାନ କାଟିବି। ସବୁ ବିଦ୍ୟା ମୋତେ କିଛି କିଛି ଜଣା ଆଜିକାଲି ଚୌପାଠିଆ(୧) ନ ହେଲେ ଭଦ୍ରଲୋକ ବୋଲାଇବା ଅସମ୍ଭବ।"

ସେମାନେ ବେଶପରିବର୍ତ୍ତନ ପରେ ପୁଣି ବାହାରିଲେ। ନରେଶ ବାବୁ ରଘୁନାଥକୁ ସଙ୍ଗରେ ଘେନି ଗୋଟିଏ ଦରଜି ଦୋକାନରେ ତା ପାଇଁ ତିନି ହଳ ପୋଷାକର ମାପ ଦେଲେ। ରଘୁ ମନା କରୁଥିବା ସତ୍ତ୍ୱେ ସେ ପକେଟରୁ ଝଟପଟ କରି ଟଙ୍କା ବାହାରକରି ତାପାଇଁ ଆଧୁନିକ ଜଣେ ଭଦ୍ରଲୋକ-ଉପଯୋଗୀ ସମୁଦାୟ ଦ୍ରବ୍ୟ କିଣିପକାଇଲେ।

ଘରେ ଜିନିଷାଦି ଥୋଇ ଯେତେବେଳେ ସେମାନେ ସମୁଦ୍ରକୂଳରେ ଜହ୍ନ ଆଲୁଅରେ ବୁଲୁଥିଲେ, ନରେଶ ବାବୁଙ୍କୁ ଚାହିଁ ରଘୁର ମନେ ହେଲା, ଏ ଜଣେ ମାନବବେଶୀ ଦେବତା। ପରପାଇଁ ଏପରି କେହି କରିଥାଏ କି?

ସେହିକ୍ଷଣି ତାହାର ମନେ ପଡିଲା-ଚୌଧୁରୀ ଦିନେ ତାକୁ କହିଥିଲା, "ସେ ଅର୍କ୍ଷିତ"। ତାହ କକେଇ ମଧ କହିଥିଲା, "ସେ ଅର୍କ୍ଷିତ"। ବାସ୍ତବିକ ସେ ଅର୍କ୍ଷିତ। ତାର ଅଛି କଣ? କିନ୍ତୁ ପରକ୍ଷଣରେ ଭାବିଲା, ଯାହାପାଇଁ ଜଗତରେ ଏତେ ସ୍ନେହ, ଏତେ ଲୋକ ଯାହାକୁ ଆଦର କରନ୍ତି, ସେ କଣ ଅର୍କ୍ଷିତ? ଅବା ଭଗବାନଙ୍କର ଅର୍କ୍ଷିତ ପିଲାପାଇଁ ସଭିଙ୍କ ଦ୍ୱାର ମେଲା।

ରଘୁ କୃତଜ୍ଞ ଅନ୍ତରରେ ଭଗବାନଙ୍କୁ ନମସ୍କାର କରି ବସାକୁ ଫେରିଲା।

ପୁରୀରେ ଦର୍ଶନୀୟ ଯାହା କିଛି ଦେଖିବାକୁ ପନ୍ଦର ଦିନ ବିତିଗଲା। ଯେଉଁ ଦିନ ସେମାନେ ବଡ଼ଦେଉଳରେ ଆଳତି ଦେଖିବାକୁ ଗଲେ, ନୀଳାଚଳନାଥ କାଳିଆ ଠାକୁରଙ୍କୁ ଚାହିଁ ଚାହିଁ ନରେଶ ବାବୁଙ୍କ ଆଖି ଅଶ୍ରୁରେ ପୂରିଗଲା। ସେ ଭକ୍ତିତଦ୍‌ଗତ ଚିତ୍ତରେ ବାରମ୍ବାର ନମସ୍କାର କରି କରି ଫେରିଲେ। ତାଙ୍କର ଦେବ ଦ୍ୱିଜ ଉପରେ ଏପରି ଭକ୍ତି ଦେଖି ରଘୁନାଥ ଆଶ୍ଚର୍ଯ୍ୟ ହୋଇଗଲା। ଚିରକାଳ ତାର ଧାରଣା ଥିଲା, ଶିକ୍ଷିତଙ୍କର ଧର୍ମ, ଭକ୍ତି ନାହିଁ; ପୁଣି ବିଶେଷତଃ ଯେ ବିଲାତ୍ ମାଟି ଛୁଇଁଚି, ସେ କଣ ମୂର୍ଖ ଅଶିକ୍ଷିତଙ୍କ ପରି କାଠ-ପଥର-ମୂର୍ତ୍ତିଙ୍କି ମୁଣ୍ଡିଆ ମାରିପାରେ? ମାତ୍ର ନରେଶ ବାବୁଙ୍କ ବ୍ୟବହାରରେ ସେ ବିସ୍ମିତ ହୋଇଗଲା। ନରେଶ ବାବୁ ସୁଶୀଳକୁ ଉଦ୍ଦେଶ୍ୟ କରି କହିଲେ, "ବାବା ସୁଶୀଳ, ଦେଖିଲ ତ, କି ଅସାଧାରଣ କାରୁକଳା, କି ଅସାଧାରଣ ବିଗ୍ରହ। ଏଠି ଯେ ମନ ସ୍ୱତଃ ନଇଁପଡେ, ଆଖିରୁ ସ୍ୱତଃ ଅଶ୍ରୁଧାର ବହିଯାଏ। ରଘୁନାଥ, ମୁଁ ତୁମକୁ ଧନ୍ୟବାଦ ଦେଉଚି ଯେ, ତୁମେ ଏ ଜାତିର ସନ୍ତାନ। ତୁମେ ହଜାର ହୀନ ହୁଅ, ତୁମ ବାପା ଦାଦାଙ୍କ କୀର୍ତ୍ତିରେ ଓଡ଼ିଶାରେ ସବୁ ଅଯୋଗ୍ୟତା ଢାଙ୍କି ପଡୁଚି।

ରଘୁ ସଙ୍କୁଚିତ ହୋଇ କହିଲା, "ନରେଶଦା, ଆପଣଙ୍କର ଭକ୍ତି ଦେଖି ମୁଁ ବଡ ଆଶ୍ଚର୍ଯ୍ୟ। ଲୋକେ କେମିତି ମିଛରେ କହନ୍ତି ଯେ, ବିଲାତ ଫେରନ୍ତାଙ୍କଠି ଧର୍ମ ନାହିଁ, - ଅଖାଦ୍ୟ ଭୋଜନ କରନ୍ତି, ତାଙ୍କଠି ବାଛ ବିଚାର କିଛି ନାହିଁ।"

---

(୧) ଚାରିବିଦ୍ୟା, ସକଳ ପ୍ରକାର ପାଠ।

ନରେଶ ବାବୁ ମୁରକି ହସି କହିଲେ, "ଯା ଶୁଣିଚ ତା ମିଛ ନୁହେଁ, ତେବେ ସମସ୍ତେ ଏକ ଛାଞ୍ଚରେ ଗଢା କୁହନ୍ତି। ହଁ, ମୋଠି ବାଛ ବିଚାର ନାହିଁ -ସମୟ ଅସମୟରେ ଅଖାଦ୍ୟ ମଧ ଅସୁବିଧାରେ ପଡି ଖାଇଚି; ତଥାପି ଅନ୍ତରରେ ଭକ୍ତି କୁଆଡେ ଯିବ? ଏ ଯେ ଆମର କୂଳଦେବତା; ଆମେ ହଜାର ପାଠ ପଢୁଁ, ବିଲାତ କିମ୍ବା ଆମେରିକା ଯାଉଁ, -ଆମେ ହିନ୍ଦୁ, ଆମର ଧର୍ମ... ଆମର ପ୍ରାଣ।



## ଷୋଡଶ ଅଧ୍ୟାୟ

ନବ ଫାଲ୍‌ଗନର ମଧୁର ବାସନ୍ତୀ ସନ୍ଧ୍ୟାରେ ସୁମଧୁର ଦକ୍ଷିଣା ପବନ ବିସ୍ତୃତ କୁସୁମୋଦ୍ୟାନରୁ ଶତ କୁସୁମଗନ୍ଧ-ନନ୍ଦିତ ହୋଇ ବହିଆସୁଥିଲା। ତାହାର ମଧୁର ସ୍ପର୍ଶରେ ପ୍ରେମିକ ଦିବାକରର ସୁଖସ୍ୱପ୍ନବିହ୍ୱଳ ହୃଦୟ ନାଚି ଉଠୁଥିଲା, ମିଳନର ସେହି ପ୍ରଥମ ମୁହୂର୍ତ୍ତ ଲାଗି। ଆଜି ସୀତାର ନବବଧୂବେଶରେ ପ୍ରଥମ ଆଗମନର ଦିନ। ଏ ଦିନଟି ଲାଗି ସେ କିପରି ଲାଳାୟିତ ହୋଇ, କି ରଙ୍ଗିଆ, କି ଭାବବିନୋଦିଆ ପତ୍ରାବଳୀ ଲେଖି ନ ଥିଲା। ଆଜି ସେ ପାଖରେ।

ଉଇଁ ଆସୁଥିବା ବାସନ୍ତୀ ଜହ୍ନକୁ ଚାହିଁ ସେ ବିସ୍ତୃତ। ପିଣ୍ଡାରେ ସୁଖାସନରେ ବସି, ଅର୍ଦ୍ଧନିମୀଳିତ ନେତ୍ରରେ ନିଜର ମନୋହର ଆଙ୍ଗୁଳିଦାମରେ ସୁସ୍ୱରମୟୀ ଫ୍ଲୁଟ୍-ହୋରମୋନିୟମର ପର୍ଦ୍ଦା ଟିକି ସୁଲଳିତ କଣ୍ଠରେ ଦିବାକର ଗୀତଗାୟନ ନିରତ!

ଦିନେ ସତେ ତୋତେ ଦେଖିବି ଲୋ ସହି,
 ମୋ ପ୍ରାଣ-କୁସୁମ-କୁଞ୍ଜେ?
ଆଶ-ପଥ ଚାହିଁ ବିସିଛି ଆକୁଳେ ସକାଳେ ସଞ୍ଜେ;
 ଧ୍ୟାନ ମୋର ପଦ-କୁଞ୍ଜେ।
କେବେ ତୁ ଆସିବାକୁ ମୋ ଚିର ତୋଷିକୁ
 ପ୍ରେମ-ପାରିଜାତ-ପୁଞ୍ଜେ;
ସହିଲୋ, କେତେ ଥିବି ତୋ ବିରହ ସହି ଲୋ।

ଗୀତର ତାଳେ ତାଳେ ହୃଦୟରେ ଭାବର ଲହରୀ ଖେଳି ଯାଉଥିଲା। ପ୍ରକୃତରେ ପ୍ରତି ମୁହୂର୍ତ୍ତରେ ସେ ଜଣକର ଆଗମନ ବାଟ ଚାହିଁଥିଲେ। ସେ କେତେ ଦିନ, କେତେ ରାତି? ବିବାହର ପ୍ରାୟ ଆଠ ନଅ ମାସ ହେଲା। କୁଳାଚାର ଅନୁସାରେ ଯୁବତୀ ସୀତାକୁ ମଧ ବାଳିକା ଚାର କରିବାକୁ ପଡିଥିଲା। ଦିବାକର ତାକୁ ଜାଣନ୍ତି, କିନ୍ତୁ ସେ ସୀତାପ୍ରେମରେ ଭୋଳ, ତାର ମିଳନ ଲାଗି ତାଙ୍କର ହୃଦୟ ତୃଷାରେ ପୂରିଗଲା। ଏ କଣ କେବଳ ରୂପତୃଷା?

ରୂପଦୃଷ୍ଟା କଣ ଚନ୍ଦ୍ରାବଳୀଠାରେ ପୂରି ନ ଥିଲା ? ଅମୀୟା, ଅଙ୍ଗୁରବାଳାଠୁଁ କଣ ସୀତା ଅଧିକ ସୁନ୍ଦରୀ ? ଦିବାକର ସୀତାକୁ ଥରେ ମାତ୍ର ଦେଖିଥିଲେ, ତାହା ସେହି ବିବାହ ଦିନ। ପ୍ରକୃତରେ ସୀତା ସୁନ୍ଦରୀ, କିନ୍ତୁ ଦିବାକରର କେବଳ ସୌନ୍ଦର୍ଯ୍ୟ ଲାଗି ବିବାହ ନୁହେଁ-କେବଳ ସୌନ୍ଦର୍ଯ୍ୟ ଲାଗି ସେ ଟଙ୍କା ବିଞ୍ଚିଦେଇ ଏ ବିବାହ କରି ନାହାଁନ୍ତି। ଏଥିରେ ତାଙ୍କର ଚିରଦିନର ଆଶା ପୂର୍ଣ୍ଣ ହେବ ପରା। କଳ୍ପନା-ନୟନରେ ସେ ଦେଖୁଛନ୍ତି, -ତାଙ୍କର ନବ୍ୟଶିକ୍ଷିତା ପତ୍ନୀ ମିସେସ୍ ମିଶ୍ର ସଦୃଶ ବ୍ରାହ୍ମିକା[୧] ପୋଷାକ ପିନ୍ଧି ତାଙ୍କ କଡିରେ ଠିଆ। ସେ ତାହାର ବାହୁରେ ବାହୁ ଛନ୍ଦିଆଣି ମୋଟରରେ ବସାଉଛନ୍ତି; ସୁନ୍ଦରୀ ଲଜ୍ଜାସଙ୍କୁଚିତା ହୋଇ ରୁମାଲ ମୁହଁରେ ଦେଇ ତାଙ୍କରି ନିକଟରେ ବସି ପଡୁଛନ୍ତି; କେତେବେଳେ ଅବା କୃତ୍ରିମ ଶିଷ୍ଟାଚାରର ଅଭିନୟ କରି ମଧ୍ୟେ ମଧ୍ୟେ କ୍ଷମା ଚାହୁଁଛନ୍ତି। ଏପରି ନ ହେଲେ କି ପତ୍ନୀ ! ପତ୍ନୀ ଯେ, ସେ ସହଧର୍ମିଣୀ, ସହକର୍ମିଣୀ ହେବ; କେବଳ ଓଢଣୀ ଭିତରୁ ଚାହିଁଲେ ତାହାର ପତ୍ନୀର କର୍ତ୍ତବ୍ୟ ଶେଷହୁଏ ନାହିଁ,-କେବଳ ଅଳତା ସିନ୍ଦୂର ଲଗାଇ, ପାନବୋଳରେ ଓଠ ପଚାଇ, ହାତେ ଓଢ଼ଣୀ ଟାଣି ବସିଲେ ତାହାର ସ୍ୱାମୀପ୍ରତି କୃତ୍ୟ ଶେଷହୁଏ ନାହିଁ। ଦିବାକର ମର୍ହଟା[୨] ଫେଶନକୁ ବଡ ଘୃଣା କରନ୍ତି। ଯେଉଁ ସ୍ତ୍ରୀ ବାଜା ବଜାଇପାରେ ନାହିଁ, ଗୀତ ଗାଇପାରେ ନାହିଁ, ମାନ ଅଭିମାନର ଔପନ୍ୟାସିକ ଅଭିନୟ କରିପାରେ ନାହିଁ, ସେ କି ସ୍ତ୍ରୀ। ସେଥିପାଇଁ ଚନ୍ଦ୍ରାବଳୀ, ଶଙ୍କରୀ ତାଙ୍କର ମନଃପୂତ ହୋଇ ନ ଥିଲେ- ସେଥିପାଇଁ ବେଶ୍ୟା ହେଲେ ସୁଦ୍ଧା ଅଙ୍ଗୁରବାଳା ବିନୟରେ ସୁଦ୍ଧା ତାଙ୍କର କଥା ମାନିଲା ନାହିଁ। ଏ ଥର ତାର ଗର୍ବ ଚୂର୍ଣ୍ଣହେବ, -ସେ ସୀତାକୁ ନେଇ ତାକୁ ଦେଖାଇବେ, ତାଙ୍କ ବାମ ପାର୍ଶ୍ୱରେ ସୀତା ସୁନ୍ଦରୀକୁ ଦେଖି ଅଙ୍ଗୁରବାଳା ହିଂସାରେ ଜଳି ମରିବ, ଆପେ ଆପେ ଗୋଡ ଧରି ଶରଣ ପଶିବ; କିନ୍ତୁ ସେତେବେଳେ ସେ ଆଉ ତାକୁ ଫେରି ଚାହିଁବେ ନାହିଁ।

ଭାବାବେଶରେ ଦିବାକରଙ୍କର ଅଙ୍ଗୁଳିଟିପ ହାରମୋନିୟମ ପରଦାରୁ ଛାଡି ଛାଡି ଯାଉଥିଲା। ସେ ହାରମୋନିୟମ ଚାବି ବନ୍ଦକରି ବେହେରାଭୁ ଡକାଇ ପଠାଇଲେ। ଅନ୍ତଃପୁରକୁ ଖବର ଗଲା-ନୂଆ ସାନ୍ତାଣୀକୁ ବାବୁ ଡକାଇ ପଠାଇଛନ୍ତି। ବାବୁଙ୍କର ହୁକୁମ ଅନ୍ୟଥା ହେବାର ନୁହେଁ। ଲାଜ ଭୟରେ ଥରି ଥରି ସଙ୍କୁଚିତ ଲାଜକୁଳୀଲତା ପରି ସର୍ବାଙ୍ଗ ବସନାବୃତା ହୋଇ ସୀତା ଯାଇ ସ୍ୱାମୀପାର୍ଶ୍ୱରେ ଠିଆହେଲା। ତାହାର ମୁଣ୍ଡରେ ହାତେ ଓଢଣୀ। ଦିବାକର ଭାବିଲେ, ଏହା କେବଳ ସୀତା ପକ୍ଷରେ କୁଳାଚାରର ଅଭିନୟ। ସେଠାରେ କେହି ନ ଥିଲେ। ଦିବାକର ଉଲ୍ଲସିତ କଣ୍ଠରେ ଇଂରାଜୀରେ କହି ପକାଇଲେ "ଏ ଫେଶନ୍ ଆଉ କାହିଁକି, ପ୍ରୟତମେ ? ଏ ସବୁ ତ୍ୟାଗକର, ମୁଁ ତ ତୁମର କିଣା କିଙ୍କର।" କିନ୍ତୁ ସୀତା ଇଂରାଜୀର ଏକବର୍ଣ୍ଣ ସୁଦ୍ଧା ବୁଝିଲା ନାହିଁ; କାନ୍ଥ ବାଡକୁ ଆଉଜି ଠିଆହେଲା। ଦିବାକରଙ୍କର ଅସହ୍ୟହେଲା। ସେ ତାହାକୁ କୋଳକୁ ଟାଣିନେଲେ। ବାତାହତ କଦଳୀବୃକ୍ଷ ପରି ସୀତା ସେଇଠାରେ ପଡି ମୂର୍ଚ୍ଛିତା

(୧) ବ୍ରାହ୍ମ ଧର୍ମଗ୍ରହଣ କରିଥିବା ନାରୀ, ଆଧୁନିକା, (୨) ପୁରୁଣାକାଳିଆ।

ହୋଇଗଲା। ସେ ଆଉ କେତେ ସହନ୍ତା -ନଅ ମାସ କାଳ ଯେ କାନ୍ଦି କାନ୍ଦି ମରିଛି, ତିଳ ତିଳ କରି ଯେ ନିଜ ପ୍ରାଣ ବିସର୍ଜନ ଦେଇଛି, ସେ କେତେ ସହନ୍ତା!

ହଠାତ୍ ସୀତାକୁ ମୂର୍ଚ୍ଛିତା ଦେଖି ଦୀବାକର ବ୍ୟସ୍ତ ହୋଇପଡିଲେ। ଦାସୀମାନେ ଆସି ନବବଧୂକୁ ଶଯ୍ୟାରେ ଶୁଆଇ ପଙ୍ଖାରେ ବିଞ୍ଚିବାକୁ ଲାଗିଲେ। ବହୁକ୍ଷଣ ପରେ ସୀତାର ଚେତନା ହେଲା, ଶାଶୂ ଅନେକ ବଳାଇଲେ ସୁଦ୍ଧା ରାତିରେ ଆଉ ସେ କିଛି ଖାଇଲା ନାହିଁ। ନାନା କଥା ଭାବୁ ଭାବୁ ତାହାକୁ ନିଦ୍ରା ଆକର୍ଷଣ କଲା। ନିଦ୍ରାରେ ସେ ସ୍ୱପ୍ନ ଦେଖିଲା- ତାହାର ପାର୍ଶ୍ୱରେ ରଘୁନାଥ। ଯେତେବେଳେ ନିଦ ଭାଙ୍ଗିଲା, ସେ ସ୍ୱପ୍ନକୁ ସତ୍ୟ ମନେକରି ଏଣେ ତେଣେ ଚାହିଁଲା, କିନ୍ତୁ ତାହାର ଭ୍ରମ ଦୂରହେଲା ଦିବାକରଙ୍କୁ ଦେଖି। ଦିବାକର ସେତେବେଳେ ଉଠି ବାରନ୍ଦାରେ ବୁଲୁଥିଲେ। ସୀତାକୁ ଜାଗ୍ରତ ଦେଖି ସେ ତା ନିକଟକୁ ଆସି ଅଭିମାନର ଅଭିନୟକରି କେତେକଥା କହିଲେ, କଣ ଲଜ୍ଜାର ବାହାନା କରି ମୂର୍ଚ୍ଛା ଯାଉଛନ୍ତି? ତାଙ୍କୁ ବଡ ହସ ମାଡ଼ିଲା। ସେ ଆସି ସୀତାକୁ କୋଳକୁ ନେଇ କୋମଳ କଣ୍ଠରେ କହିଲେ, "ଚିଠିରେ ଏତେ କଥା ଲେଖିଥିଲ, ମୁହୂର୍ତ୍ତରେ ସବୁ ବଦଳିଗଲା! ଭୟ କର ନାହିଁ, ଆମଘରେ ଦେଶୀ ଧାରାର ବିଚାର କିଛି ନାହିଁ। ସବୁ ତୁମରି ଘରପରି, ମୋର ଭଉଣୀ ଖୁବ୍ ଶିକ୍ଷିତା, ଆଧୁନିକ–ରୁଚିପ୍ରିୟା, ତୁମେ କୟକର ନାହିଁ, ମା ମଧ କିଛି କହିବେ ନାହିଁ।"

ସୀତା କିଛି ଉତ୍ତର ନ ଦେଲାରୁ ପୁଣି କହିଲେ, "ଆମ ପଡା ଯୋଗୁଁ ସବୁ ବଦଳି ଯାଇଛି।" ବଡ଼ ପାଟିରେ ହସିହସି କହିଲେ, "ନାଁକୁ ଆମେ ବ୍ରାହ୍ମଣ ବୋଲାଉଁ ସିନା, କଲିକତା ଗଲେ ଫାଷ୍ଟ୍ କ୍ଲାସ ହୋଟେଲରେ ଖାନାଖାଉଁ।

ସୀତା ତଥାପି ଜବାବ ଦେଲା ନାହିଁ। ପୁଣି ଅଶ୍ୱାସ ଦେଇ ଦିବାକର କହିଲେ, "ଲଜ୍ଜା ତ୍ୟାଗକର, ମୋ ସହିତ ଆସ।" ଏହା କହି ତାହା ହାତ ଧରି କିଛି ନିଜର ଖାସ ଘରମାନ ତାକୁ ଦେଖାଇବାକୁ ଲାଗିଲେ। କହିବା ବହୁଲ୍ୟ, ଜଣେ ଉଚ୍ଚ ଶିକ୍ଷିତା, ଆଧୁନିକା ମହିଳାର ଚିଳିବା ଭଳି ସମୁଦାୟ ଆସବାବପତ୍ରରେ ଗୃହଗୁଡିକ ସୁସଜ୍ଜିତ। ପୁଣି କଲିକତାରୁ ଆଗତା ଗଭର୍ଣ୍ଣେସ୍ ମିସ୍ ଯୂଥିକା ମିତ୍ରଙ୍କର ତତ୍ତ୍ୱାବଧାନରେ ସୀତାର ସେ ଦିନର ଯାବତୀୟ ସାଜସଜ୍ଜା ବ୍ୟାପାରରେ ଆୟୋଜନ ହୋଇଥିଲା। ନୂତନ ସ୍ଥାନକୁ ଆସି, ତାହାର ଏ ନୂତନ ଅନୁଭୂତି ତାର ଜୀବନର ପନ୍ଦର ବର୍ଷ ଭିତରେ ସେ କଦାପି କୌଣସି ବ୍ରାହ୍ମଣ ଘରେ ଆଚାର ଦେଖି ନ ଥିଲା। କେବଳ ଭୟରେ ନୀରବ ଥାଇ ସେ ଯୂଥିକା ମିତ୍ରଙ୍କ ନିର୍ଦ୍ଦେଶନୁଯାୟୀ ସାଜ ପୋଷାକ ପିନ୍ଧିଲା। ଏ ସବୁ ବିଷୟରେ ତାହାକୁ ଏକ ଅଶିକ୍ଷିତା ଦେଖି ଯୂଥିକା ବାରମ୍ବାର ନାସିକା କୁଞ୍ଚନ କରି କହୁଥିଲା, "ହାୟ ହାୟ! ମେୟେଟା ନିତାନ୍ତ ଅଶିକ୍ଷିତ।" ତାହାର କଥା ଶୁଣି ଫୁଲ୍ଲମଞ୍ଜରୀ ଅବାକ୍ ହୋଇ କହିଲେ, "ଦାଦା କହୁଥିଲେ ଏଣ୍ଟ୍ରାନ୍ସ୍ ପାଶ କରିଚି, ଅଶିକ୍ଷିତା। ବଡ ପାଟିରେ ହସି ହସି ଯୂଥିକା କହିଲା, "ଏଣ୍ଟ୍ରାନ୍ସରେ ଏ ଅକ୍ଷର ଜାନ୍‌ତ; କିଛି ଜାନେନା, କିଛୁ ଜାନେନା, ଓରା ତୋମାଦେର ଠକିୟେଚେ।"

ସେହି ଦିନ ସୀତାର ଅଶିକ୍ଷିତା ବିଷୟ ବାହାରି ପଡିଲା। ଦିବାକର ରାଗରେ ପ୍ରଚଣ୍ଡ ମୂର୍ତ୍ତି ଧାରଣ କଲେ। ଯୂଥିକା ଯେତେବେଳେ ବଙ୍କିମ ଗ୍ରୀବାରେ କମନୀୟ ନେତ୍ରନର୍ତ୍ତନଭଙ୍ଗୀରେ ତାଙ୍କୁ ହସି ହସି କହିଲା- "ହୟେଛେ ହୟେଛେ! ଆପନି ଠକେଛେନ୍", ସେତେବେଳେ କ୍ରୋଧରେ ଦିଗ୍‌ବିଦିଗ ଜ୍ଞାନଶୂନ୍ୟହୋଇ ସେ କାର୍ତ୍ତିକ ନନ୍ଦଙ୍କୁ ଡକାଇ ପଠାଇଲେ। କାର୍ତ୍ତିକ ନନ୍ଦ ପୂର୍ବରୁ ଜାଣନ୍ତି, ଫଳ କଅଣ ହେବ, ସେ ମଧ୍ୟ ପ୍ରସ୍ତୁତ ହୋଇ ଆସିଥିଲେ। ଆଗ ଜମିଦାର ବାବୁଙ୍କ ଠାରୁ ବୋଝେ ଗାଳିଖାଇ, ପରେ ବିନୀତ କଣ୍ଠରେ କହିଲେ, "ମହାଶୟ ମୁଁ ବି ବଡ ଠକିଗଲି, ଏ ସବୁର ମୂଳ ସେହି ଶିକରା, ତାର ପନ୍ଦର ଷୋଳ ବର୍ଷର ଝିଅକୁ ଉଠେଇବାପାଇଁ ଏ ଫନ୍ଦି କରୁଥିଲା। ମୁଁ ତ ମୂର୍ଖ ମଫସଲିଆ, ଆପଣ ଜମିଦାର ବାବୁ ହୋଇ, ଜ୍ଞାନୀ ହୋଇ ଠକିଗଲେ, ମୁଁ କିବା ଛାର। ଆପଣ ତ ନିଜେ କହୁଥିଲେ- 'ମା ସାନ୍ତାଣୀ ଭାରି ଶିକ୍ଷିତା। ତାଙ୍କର ସ୍ୱହସ୍ତ ଲିଖିତ ପତ୍ର ତ ତାହାର ପ୍ରମାଣ।

ଦିବାକରଙ୍କ କତିରେ ସେତେବେଳେ ଯୁକ୍ତିତର୍କର ସମୟ ନ ଥିଲା। ନାନା କୁତ୍ସିତ ଗାଳିରେ କୁକୁରକୁ ତଡିଲା ପରି କାର୍ତ୍ତିକ ନନ୍ଦଙ୍କୁ ତଡିଦେଲା। ରାଗରେ ଦାଣ୍ଡଘରେ ବସି ସେ ଖଣ୍ଡେ 'ନଭେଲ' ପାଠରେ ମନୋନିବେଶ କଲେ, କିନ୍ତୁ ମନ ଲାଗିଲା ନାହିଁ। ଭାବିଲେ ସବୁ ଗଲା -ସବୁ ଆଶା ଚୂନାହେଲା। ଦୁଇ ହଜାର ଟଙ୍କା ଦେଇ ଏଇ ଗଧଟିଏ କିଣିଲି। ଆଉ ବନ୍ଧୁ ମହଲରେ ମୁହଁ କଣ ଦେଖାଇବି ? ପୁଣି ଭାବିଲେ, କଣ ଏବେ ତାଲିମ୍ ହୋଇ ପାରିବ ନାହିଁ। ମନରେ ଉଦୟ ହେଉଁ ହେଉଁ ଯୂଥିକାକୁ ଡକାଇ କହିଲେ। ଯୂଥିକା ଛ ମାସ ମଧ୍ୟରେ ସୀତାକୁ ଉପଯୁକ୍ତା କରିବାର ଆଶା ଦେଇ ନୂତନ ଛାତ୍ରୀର ଭାର ଗ୍ରହଣକଲେ।

ଯୂଥିକା ଜଣେ ବଙ୍ଗୀୟା ନାରୀ। ସେ ବେଶ୍ ଶିକ୍ଷିତା, ଚତୁରୀ, ମଧ୍ୟବୟସୀ; କଲିକତାରେ ବାବୁ ଥିବାବେଳେ ତାଙ୍କ ସହିତ ପରିଚିତ ହୋଇଥିଲା। ପରିଚୟ ପ୍ରେମରେ ମଧ୍ୟ ପରିଣତ ହୋଇଥିଲା। ଦେଖିବାକୁ ବିଶେଷ ସୁନ୍ଦରୀ ନ ହେଲେ ମଧ୍ୟ ସେ ବେଶଭୂଷାରେ ଅଦ୍ୱିତୀୟା, ଗୀତବାଦ୍ୟରେ ତାଙ୍କର ବିଶେଷ ପଟୁତା। ଦିବାକର ତାଙ୍କୁ ଆଣି ନିଜ ଆବାସ ମଧ୍ୟରେ ଶଙ୍କରୀର ପରିଚର୍ଯ୍ୟାଲାଗି ରଖିଥିଲେ। ଶଙ୍କରୀକୁ ଶିକ୍ଷିତା କରିବା ଦୂରେ ଥାଉ, ସେ ନିଜର ହାବଭାବ ଏବଂ ବେଶଭୂଷାଦି ମୋହରେ ଦିବାକରଙ୍କ ମନୋହରଣରେ ବ୍ୟସ୍ତ ରହିଲେ। ଶଙ୍କରୀ ମଧ୍ୟ ସର୍ବଦା ବେମାର ହେବାକୁ ପାଠଶାଠ ତାଙ୍କର ହେଲା ନାହିଁ। କିନ୍ତୁ ଯୂଥିକାର ଓ ଫୁଲ୍ଲମଞ୍ଜରୀର ଅଭେଦ ପ୍ରଣୟ ହୋଇଗଲା।

ଫୁଲ୍ଲମଞ୍ଜରୀର ବୟସ କୋଡିଏ-ରୂପରେ ସୁନ୍ଦରୀ। ବିଧବା ହେଲେ ମଧ୍ୟ କୌଣସି ଆଚାର ବିଚାର ପ୍ରତି ତାଙ୍କର ଲକ୍ଷ୍ୟ ନ ଥିଲା। ଯଦ୍ୟପି ସେ ସ୍ୱଦେଶରେ ସଧବାର ଆଚରଣ କରନ୍ତି ନାହିଁ, ତଥାପି ବେଶ୍ 'ସୌଖିନ୍' ଥିଲେ। ଭାଇଙ୍କ ସହିତ ଅଧିକାଂଶ ସମୟ କଟକ ଓ କଲିକତାରେ କଟାଉଥିଲେ। ବଙ୍ଗାଳୀ ଫେଶନ ଏବଂ ରୁଚି ପ୍ରତି ତାଙ୍କର ଅସାଧାରଣ ମୋହ। ଯାହା ଜାଣି ନ ଥିଲେ, ଶିଖି ନ ଥିଲେ, ଯୂଥିକା ତାଙ୍କୁ ସେ ସବୁ ଶିଖାଇଲେଣି।

ବର୍ତ୍ତମାନ ସୀତାଙ୍କର ଭାର ତାଙ୍କ ଉପରେ। ଫୁଲ୍ଲମଞ୍ଜରୀକୁ ସେ ଯେତେ ସହଜରେ ସବୁ ଶିଖାଇଥିଲେ, ଭାବିଥିଲେ, ସୀତା ମଧ୍ୟ ତଦ୍ରୂପ ଶିଖିପାରିବ। କିନ୍ତୁ ତାହା ହେଲା ନାହିଁ ଦେଖି, ବାବୁଙ୍କ ଆଗରେ ସୀତା ନାମରେ ଖଟମିଛ ଲଗାଇ, ସୀତା ଉପରୁ ବାବୁଙ୍କର ମନ ଉଙ୍ଗାଇବାର ଚେଷ୍ଟାରେ ଲାଗିଲେ। 'ପୋତା ତିଅଣରେ ସୁଅଦ' ପରି ବୈବାହିକ ଜୀବନରେ ପ୍ରଥମ ମିଳନରେ ବିଭ୍ରାଟରେ ଦିବାକରଙ୍କର ମନ ବୀତଶ୍ରଦ୍ଧା ହୋଇଗଲା। ସୀତା ପଢୁଛି କି ନାହିଁ, ତହିଁର କିଛି ତତ୍ତ୍ୱ ନେଲେ ନାହିଁ। ସେ ଯେ ବର୍ତ୍ତମାନ ପ୍ରେମର ପ୍ରତ୍ୟାଶୀ।

କିନ୍ତୁ ସୀତାକୁ ଶଙ୍କରୀର ସପତ୍ନୀ ଦେଖି, ଆତ୍ମା ଘୋର ଯାତନାରେ କାତର ହୋଇ ଉଠିଲା। ଏଇ ସେ ସୀତା ସନ୍ଦରୀ, ଯାରି ରୂପର ସିଂହାସନରେ ଆଜିଠାରୁ ତାର ସ୍ୱାମୀର ଅଭିଷେକ। ନିଜ ଘର ଝରକା ଆର ପଟରେ ଠିଆହୋଇ ସୀତାକୁ ଚାହିଁ ଶଙ୍କରୀ ଆଖିରୁ ଝରଝର ଲୁହ ବହିଯାଏ। ହଜାର ଅମ୍ରୀଯା, ହଜାର ଅଙ୍ଗୁରବାଲା ଥିଲେ ସୁଦ୍ଧା ସେମାନେ ତ ତା ଆଖି ଆଗରେ ନ ଥାନ୍ତି। ତା ଛାତି ଉପରେ-ତା ରାଜ୍ୟରେ ରାଣୀ ହୋଇଆସିଛି ଆଉ ଜଣେ, ରୂପର ପସରା ମେଲି ଯୌବନରେ ଝଳମଳ ଦେଖାଇ-ତା ସ୍ୱାମୀ, ତାରି ପ୍ରେମରେ ମଜିବେ, ତାରି କୋଳରେ ଦିନ କଟାଇବେ, ଆଉ ସେ ଅଭାଗିନୀ ସର୍ବସ୍ୱଚ୍ୟୁତା। ଗଭୀର ଶ୍ୱାସରେ ତା ଛାତି ଫାଟିଯାଏ। ସୀତା କେବେ ଯଦି ତା ସହିତ କଥା କହେ, ସେ ହିଂସାର ପୂର୍ଣ୍ଣ ହୋଇ ଟାଉଁଟାଉଁ ଜବାବ ଦିଏ। ଅଲକ୍ଷ୍ୟରେ ସୀତାର ଆଖିରୁ ଲୁହ ଝରିପଡେ। ଅକାରଣ ନିର୍ଦ୍ଦୋଷ ପ୍ରାଣୀକୁ ଆଘାତ ଦେଇଛି ମନେକରି, ଘରେ କବାଟ କିଳି ଶଙ୍କରୀ ମଧ୍ୟ କେତେ କାନ୍ଦେ। ତା କାନ୍ଦରେ ସହାନୁଭୂତି କରେ ଫୁଲ। ଯେଉଁ ଫୁଲ ଆଗେ ତା ଶୀରୀ ଦେଖି ପାରୁ ନ ଥିଲା, ସେ ବର୍ତ୍ତମାନ ତା ପାଇଁ ସହାନୁଭୂତିରେ ବୁଡିଯାଏ। ଫୁଲ ଯେ ପ୍ରେମର ବେଦନା କଣ ଜାଣେ।

କିନ୍ତୁ ଯାହା ଲାଗି ଏତେ ଇର୍ଷା, ଏତେ ରାଗ, ଏତେ ମାନଅଭିମାନ, ସୁଆଙ୍ଗ, ସେ ତ କାହିଁକି କାହିଁରେ ମିଶିଲା ନାହିଁ। ସୀତା ସର୍ବଦା ବିଷାଦିତା, ସର୍ବଦା ନୀରବ। ଏହାହିଁ ହେଲା ସମସ୍ତଙ୍କ ନିକଟରେ ଅବୋଧ। ହଜାର ସୀତା ଅଶିକ୍ଷିତ ହେଉ, ସେ ତ ନାରୀ। ତାଠି କଣ ନାରୀର ହୃଦୟ ନାହିଁ? ସେ କାହିଁକି ନିଜର ସ୍ୱାମୀଠାରୁ ଭୟ ଓ ସଙ୍କୋଚରେ ଦୂରରେ ରହିଛି? କାହିଁକି ତାହାର ଆନନ୍ଦ ନାହିଁ! ଷୋଡଶୀ ଯବୁତୀର ଏ ଭାବ। ହୋଇପାରେ, ଅଶିକ୍ଷିତ ପିତାମାତାଙ୍କୁ ଛାଡି ଆସିଛି, ସେଥିପାଇଁ ଏ ଲଜ୍ଜା, ଏ ଦୁଃଖ। ଶାଶୂ ବୁଢ଼ୀ ତାହାହିଁ ଭାବି ତୃପ୍ତହେଲେ। କିନ୍ତୁ ଦିବାକର ତ ତହିଁରେ ଆଦୌ ସନ୍ତୁଷ୍ଟ ହେଲେ ନାହିଁ। ସେ ଦୁଇ ଦୁଇଟା ବିବାହ କରିଛନ୍ତି। ଶଙ୍କରୀଠାରୁ ସୀତା ଅଧିକ ଅଶିକ୍ଷିତ ନୁହେଁ। ତଥାପି ତାହାର ଏ ବିଷଣ୍ଣ ଭାବ। ସ୍ୱାମୀ କତିରେ ଥିବାବେଳେ ସେ ଯେପରି ଶୂଳିଆପଦାରେ ଥିଲା ପରି ମନେକରେ। ଏହାର ଅର୍ଥ କଅଣ?

ନବପରିଣୀତାର ମନ ଭୁଲାଇବାପାଇଁ ଦିବାକର ଯଥେଷ୍ଟ ଆୟୋଜନ କଲେ। କେତେ ଦିନ ଯୂଥିକଠାରୁ ସୀତାକୁ ଅବ୍ୟାହିତ ଦେଇ ସର୍ବଦା ପାଖେ ପାଖେ ରଖିଲେ। ଫୁଲମଞ୍ଜରୀ

ତାଙ୍କୁ କହିଥିଲା, "ନୂଆବୋହୂ ସର୍ବଦା ତୁନି ତୁନି କାନ୍ଦେ।" ଦିବାକର ଭାବିଲେ, ବାପ ମାଉ କୋଳପୋଛା ଝିଅ। ତାଙ୍କୁ ମନେକରି କାନ୍ଦୁଛି। ସେଥିପାଇଁ ସେ ସନ୍ଧ୍ୟାବେଳେ ତାଙ୍କୁ ନିଜ କତିରେ ଆଦରକରି ବସାଇ ନାରୀମନୋହାରୀ ଅନେକ କଥା କହିଲେ। କିନ୍ତୁ ସୀତା ଲଜ୍ଜାରେ ମୁଣ୍ଡପୋତି ରହିଲା।

ସେତେବେଳେ ପ୍ରାୟ ରାତି ଆଠଟା। ଅନ୍ତଃପୁରରେ ଭିତରେ ପିଣ୍ଡାରେ ବିସ୍ତୃତ ଆସ୍ତରଣ ଉପରେ ବାବୁ ବସି ଗୀତବାଦ୍ୟରେ ଲାଗିଥିଲେ, ସୀତାକୁ ଡକାଇ ଆଣି କତିରେ ବସାଇଲେ। ହାରମୋନିୟମ୍ ଶିଖାଇବାର ପ୍ରସ୍ତାବ କଲେ। ସୀତା ପ୍ରଶାନ୍ତ କଣ୍ଠରେ କହିଲା, "ମୁଁ ଶିଖିବି ନାହିଁ।" ସୀତା ଏପରି ଗମ୍ଭୀର ଭାବରେ କଥା କହିପାରେ, ଏହା ଦେଖି ଦିବାକର ଆଶ୍ଚର୍ଯ୍ୟ ହେଲେ। ପୁଣି ପଚାରିଲେ, "କାହିଁକି ଶିଖିବ ନାହିଁ।" ସୀତା ପୂର୍ବବତ୍ କହିଲେ "ମୋର ଇଚ୍ଛା ନାହିଁ।" ଦିବାକର ଈଷତ୍ ଉତ୍ତେଜିତ ହୋଇ କହିଲେ, "ତୁମର ଇଚ୍ଛା ଗୋଟିଏ କଣ ? ମୋର ଇଚ୍ଛା, ତୁମକୁ ଶିଖିବାକୁ ହେବ।" ସୀତା ପୁନର୍ବାର କହିଲା, "ମୁଁ ଶିଖିବି ନାହିଁ।" ବିରକ୍ତ ହୋଇ ଦିବାକର ତୁନିହେଲେ। ତାଙ୍କ ହୃଦୟ ଅଭିମାନରେ ପୂରିଗଲା। ସୀତା ଯେ ସର୍ବଦା ତାଙ୍କଠୁଁ ଦୂରେ ଦୂରେ ରହିବାକୁ ଚାହେଁ-ତାଙ୍କର କୌଣସି କଥା ମାନିବାକୁ ଚାହେଁ ନାହିଁ, ଏହି ଦୁଃଖରେ ବ୍ୟଥିତ ହୋଇ କିଛିକ୍ଷଣ ଆକାଶକୁ ଅର୍ଥହୀନ ଭାବରେ ଚାହିଁ ପୁଣି କହିଲେ, "ସୀତା, ଆଜିକି ତୁମେ ପନ୍ଦର ଦିନ ହେଲା ଏଠାକୁ ଆସିଲ, ମୁଁ ଏତେ ସାଧ ସାଧନା କଲି, ଆଜିକି ତୁମେ ପଦେ ମିଠାକଥା କହିଲ ନାହିଁ। ମୁଁ ଯାପାଇଁ କେତେ ଦୁଃଖିତ ଜାଣ ?" ସୀତା କିଛି ଉତ୍ତର ନ ଦେଇ ବୁଡି ଯାଉଥିବା ଚନ୍ଦ୍ରକୁ ଅନାଇରହିଲା। ତାହାର ଦୁଇ ଆଖିରୁ ପ୍ରବଳ ବେଗରେ ଅଶ୍ରୁ ଝରୁଥିଲା, ଅନ୍ଧକାରଯୋଗୁଁ ଦିବାକର ତାହା ଦେଖି ନ ଥିଲେ। ହଠାତ୍ ତାହାର କୋହ ଶୁଣି ତାଙ୍କର ଚେତନା ହେଲା। "ଏ କଣ, ତୁମେ କାନ୍ଦୁଚ କାହିଁକି ?" କହି କୋଳକୁ ଟାଣି ଆଣି ପ୍ରଗାଢ ଆଲିଙ୍ଗନରେ ତାହାକୁ ଆବଦ୍ଧକଲେ। ସୀତା ତୁନି ନ ହୋଇ ଅଧିକ ବ୍ୟାକୁଳ ଭାବରେ କାନ୍ଦିବାକୁ ଲାଗିଲା। ଦିବାକର ଭାବିଲେ କି, ପିଲାଲୋକ। ମନେକଲେ, କ୍ରମଶଃ ସେ ଭାବ ଭାଙ୍ଗିଯିବ। ହେଲେ, ମାସେ ଗଲା, ଦେଢ ମାସ ଗଲା, କିଛିରେହିଁ ସୀତାକୁ ସେ ଚିହ୍ନିପାରିଲେ ନାହିଁ।

ଅଭାଗୀ ଯେ ଆଜିସୁଦ୍ଧା ରଘୁନାଥକୁ ଭୁଲି ପାରିନାହିଁ। ଆଜିକି ପ୍ରାୟ ଦଶ ମାସ ହେଲା ଯା'ଠୁଁ ବିଚ୍ଛିନ୍ନ ହୋଇଛି, ନବସ୍ୱାମୀର ପ୍ରେମରେ କାହିଁକି ସୀତା ତାହାକୁ ଭୁଲିପାରୁ ନାହିଁ। ସୀତା ଭୁଲିଥାନ୍ତା-ମାନବହୃଦୟ ପରିବର୍ତ୍ତନଶୀଳ। ଜୀବନର ନଅ ବର୍ଷ ଯେ ସଙ୍ଗୀ ହୋଇଥିଲା, ଆବାଲ୍ୟ ଯାହା ସହିତ ସେ କଟାଇଛି, ତାକୁ ବି ସେ ଭୁଲି ପାରିଥାନ୍ତା-ଯଦି ତାହାର ସ୍ୱାମୀ ତିଳେମାତ୍ର ସୁଚରିତ୍ର ହୋଇଥାନ୍ତେ। ସୀତା ପ୍ରତି ତାଙ୍କର ଯଥେଷ୍ଟ ପ୍ରେମାଭିନୟ ସତ୍ତ୍ୱେ ଉଆସର ଦାସୀ ଜେମାଠାରୁ ଆରମ୍ଭ କରି ଯୂଥିକା ପର୍ଯ୍ୟନ୍ତ ସମସ୍ତଙ୍କ ସହିତ ଯାହାର ପ୍ରେମାଳାପ, ବୋତଲ ମଦ ଓ ଅଭକ୍ଷ୍ୟ ଯେ ଉଦରସ୍ଥ କରେ, ଯାହାର ପରିବାରରେ ସୀତାର ରୁଚି ଅନୁଯାୟୀ ଗୋଟିଏ

ସୁନ୍ଦା ବ୍ୟକ୍ତି ନାହାନ୍ତି, ସେ ପରିବାର, ସେ ସ୍ୱାମୀ ପ୍ରତି ଯୁବତୀ ସୀତାର ଅନ୍ୟାର୍ପିତ ହୃଦୟ ବା କିପରି ଆକୃଷ୍ଟ ହୁଅନ୍ତା।

ସୀତା ସର୍ବଦା ବିମର୍ଷା। ସେ ବିମର୍ଷଭାବ ଭଗ୍ନ କରିବାକୁ ଦିବାକରଙ୍କର ଅପରିମିତ ଚେଷ୍ଟା, ମାତ୍ର ସବୁ ଅବାଟରେ। ଦିନେ ରାତିରେ ଶଯ୍ୟାଶାୟିତ ଦିବାକର ମଧୁର କଣ୍ଠରେ ପତ୍ନୀକୁ କହିଲେ, "ପ୍ରିୟତମେ, ମୁଁ କେତେ ଦିନ, କେତେ ରାତି ବିରହାକୁଳ ହୋଇ ଜାଗିଥିଲି, ଆଜି ଏ ମଧୁର ମିଳନରେ କଣ ତୁମେ ସୁଖୀ ନୁହ ?" କଥା କହୁଁ କହୁଁ ତାଙ୍କ ମୁଖରୁ ବିଲାତୀ ସୁରାର ତୀବ୍ର ମଧୁର ଗନ୍ଧ ବାହାରି ପଡିଲା। ସୀତା ସଙ୍କୁଚିତା ହୋଇ ଦୂରକୁ ଘୁଞ୍ଚିଗଲା। ଏ ଅଭିନୟ ଭିତରେ ତା ପ୍ରାଣ ମୋଟେ ମିଶୁ ନ ଥିଲା, ସେ ମୁଣ୍ଡ ପୋତି ପଲଙ୍କ ବାଡକୁ ଧରି ବସିରହିଲା। ଦିବାକର ଶଯ୍ୟାରୁ ଉଠିଆସି ତା ହାତ ଧରିଲେ। ସୀତା ବିଫଳ ପ୍ରୟାସରେ ହାତ ଛଡାଇ ନେବାର ଚେଷ୍ଟାକଲା, ପାରିଲା ନାହିଁ। ଖଟ ସନ୍ଧିକି ଯାକିଯୁକି ହୋଇ ବସିଲା। କୃତ୍ରିମ ଅଭିମାନରେ ଦିବାକର ବିଛଣାରେ ଶୋଇପଡିଲେ, ଭାବିଲେ-ସୀତା ଆସି ଡ଼ାକିବ। କିନ୍ତୁ ତାଙ୍କ କାନକୁ ଶୁଭିଲା ଗୋଟିଏ ବ୍ୟଥିତ କ୍ରନ୍ଦନର ସ୍ୱର। ଏ କଣ ପୁଣି କାନ୍ଦଣା? ଦିବାକର ବିଚଳିତ ହୋଇ ଶଯ୍ୟାରୁ ଉଠିଆସି ସୀତାକୁ ପାଖକୁ ଟାଣିଆଣି କହିଲେ, "ମୁଁ କଣ ତୁମକୁ କଷ୍ଟଦେଲି ?" ସୀତା କଥା କହିପାରିଲା ନାହିଁ, କେବଳ କାନ୍ଦିଲା। ଅଜସ୍ର ଧାରରେ ତା ଆଖିରୁ କେବଳ ଅଶ୍ରୁ ବହିବାକୁ ଲାଗିଲା। ଦିବାକର କିଛିରେ ହିଁ ତାକୁ ତୁନିକରି ପାରିଲେ ନାହିଁ; ଅବଶେଷରେ ଅତ୍ୟନ୍ତ ବିରକ୍ତିରେ ଆସି ଶଯ୍ୟାରେ ପଡ଼ିଲେ। ତାଙ୍କ ଆଖି ସାମ୍ନାକୁ କିଏ ଗୋଟିଏ ପର୍ଦ୍ଦା କାଟିଦେଲା ପରା। ସୀତାର ଏ ମର୍ମସ୍ପର୍ଶୀ କାନ୍ଦଣା କଣ ପାଇଁ? ପିତୃମାତୃବିଚ୍ଛେଦ ? ଦଶ ବାର ମାସ ହେଲା ବିବାହ ହେଲାଣି, ବୟସରେ କିଛି ସାନ ପିଲା ନୁହେଁ, ଷୋଡଶୀ ଯୁବତୀ କଣ ବାସର-ଶଯ୍ୟାଦିନ କାନ୍ଦିମରେ ? ନବପରିଣୀତ ସ୍ୱାମୀ ମଧୁର ମିଳନ ଅପେକ୍ଷାର କଣ ପତୃଗୃହ ଯୁବତୀ ପକ୍ଷରେ ବେଶି ଲୋଭନୀୟ। ଦିବାକର ଆଉ କିଛି ଜାଣନ୍ତୁ ନ ଜାଣନ୍ତୁ, ନାରୀଚରିତ୍ର ଭଲରୂପେ ବୁଝିଥିଲେ। ସୀତା ଶିକ୍ଷିତା, ସୁରୁଚିସମ୍ପନ୍ନା, ଆଧୁନିକା ନ ହୋଇଥିଲେ ସୁନ୍ଦା ନାରୀ ତ ! ତାର କ୍ରନ୍ଦନ କୃତ୍ରିମ ? ତାହାର ନିତ୍ୟ ମର୍ମଦାହୀବ ଅଶ୍ରୁଧାରାର ନିଶ୍ଚୟ କିଛି ହେଲେ ରହସ୍ୟ ଅଛି। ମହା ଅଶାନ୍ତିରେ ତାଙ୍କର ହୃଦୟ ପୂର୍ଣ୍ଣହୋଇ ଉଠିଲା। ତଥାପି କାଳେ ନିଜର ଭୁଲ ହୋଇଥିବ ଭାବି, ଦିବାକର ସୀତାକୁ କଷ୍ଟ ଦେଲେ ନାହିଁ। ସେ ତ ଆଉ ହୃଦୟହୀନ ପଶୁ ନୁହନ୍ତି ?

ଦିନ ପରେ ଦିନ ଗଲା। ଦିବାକର କେତେ ଅପେକ୍ଷା କଲେ, କେତେ ଚେଷ୍ଟାକଲେ; ତଥାପି ସେ ସୀତାକୁ ଆପଣାର କରିପାରିଲେ ନାହିଁ। ଯେଉଁ ଆଶା, ଯେଉଁ ବିଶ୍ୱାସରେ ସେ ବିଭା ହୋଇଥିଲେ, ସେ ସବୁ ତ ଯାଇଥିଲା, ତଥା ସୀତାର ଏ ଅଭିନବ ରହସ୍ୟାଭିନୟ ତାଙ୍କର ମହାପୀଡାର କାରଣ ହେଲା। ସୀତାର ହୃଦୟ ଯେ କୌଣସି ଗୁପ୍ତ ଦୁଃଖଯାତନାରେ ପୂର୍ଣ୍ଣ, ଏହା ବୁଝିବାକୁ ବିଳମ୍ବ ହେଲା ନାହିଁ। ସୀତା ତାଙ୍କ ପ୍ରତି ପତ୍ନୀର ସମସ୍ତ କର୍ତ୍ତବ୍ୟ କରିବା ସତ୍ତ୍ୱେ ଯେ ତାଙ୍କଠାରୁ ଶତ ଯୋଜନ ବ୍ୟାବଧାନରେ, ଏହା ଚତୁର ଦିବାକର ବୁଝିଲେ।

ଯେ ତାଙ୍କ ଭଲପାଏ ନାହିଁ, ନିଜର ବୋଲି ମନେକଲେ ନାହିଁ-ନିତାନ୍ତ ପର ବୋଲି ଭାବେ, ଯାହାକୁ ବିବାହ କରି ସୁଦ୍ଧା ଟିକିଏ ମଧ୍ୟ ସ୍ନେହର ଦାବି ତାଙ୍କର ହେଲା ନାହିଁ, ତା ସହିତ ଏକତ୍ର ବାସ? ଦିବାକର ପ୍ରତି କ୍ରମେ ସୀତା ଅସହ୍ୟ ହୋଇଉଠିଲା, ସୀତାର ରୂପଜନିତ ମୋହ ବେଶି ଦିନ ରହିଲା ନାହିଁ, -କ୍ରମେ ସୀତା ପ୍ରତି ତାଙ୍କ ଅବହେଳା ପ୍ରକାଶ ପାଇଲା।

ସେ ଦିନ ରାତ୍ରି ପ୍ରାୟ ଦଶ ଘଣ୍ଟା। ଦିବାକର ଶଯ୍ୟାଶାୟିତ, ପାର୍ଶ୍ବରେ ସୀତା ଉପବିଷ୍ଟା। ଧୀରେ କଣ୍ଠରେ ସୀତା କହିଲା, "ତୁମର ଗୋଡ ଘଷିଦେବି?"

ଦିବାକର ଦୁଃଖିତ ହୋଇ କହିଲେ, "ସୀତା, ମୋ ପ୍ରତି ସର୍ବଦା ତୁମର ଏ କି ବ୍ୟବହାର, କହିଲ? ମୁଁ କଣ ତୁମର ପର?"

ସୀତା ହଁ କି ନାହିଁ କିଛି ଉତ୍ତର ନାହିଁ। ଦିବାକର ବାରମ୍ବାର ଗୋଟିଏ ପ୍ରଶ୍ନ କରି ବିରକ୍ତି ହୋଇ କହିଲେ- "ଦେଖ, ତୁମର ଏ କରଛଡା ବିମର୍ଷଭାବ ମୋତେ ଆଉ ଭଲ ଲାଗୁ ନାହିଁ। ତୁମର କଣ ହୋଇଚି, ମୋତେ ସ୍ପଷ୍ଟ କୁହ? ଯଦି କିଛି ବେମାର ହେଇଚି, ମୁଁ ଡାକ୍ତର ଆଣି ଚିକିତ୍ସା କରାଇବି; ନୋହିଲେ ତୁମକୁ କଟକ ନେଇଯିବି। ତୁମେ କଣ ତୁମ ବାପଘରକୁ ଯିବାକୁ ଚାହଁ?" ସୀତା ଶେଷୋକ୍ତ କଥାରେ କ୍ଷୁଦ୍ର "ହଁ" ଟିଏ ଭରିଲା। ଏଥିରେ ଦିବାକର ରାଗାନ୍ୱିତ ହୋଇ ତାକୁ ଗୋଡରେ ପେଲିଦେଲେ, କହିଲେ, "ଯଦି ବାପଘର ଯୋଗୁଁ ଝରି ମରୁଚୁ, ତେବେ ମୋତେ ବିଭାହେଲୁ କାହିଁକି?" ମିନିଟକ ମଧ୍ୟରେ ତାଙ୍କର ଏ ପରିବର୍ତ୍ତନ ଦେଖି ସୀତା ଭୀତିପୂର୍ଣ୍ଣ ହୃଦୟରେ ଗୋଡ କତିରୁ ଘୁଞ୍ଚିଗଲା। କ୍ରମେ କ୍ରମେ ଦିବାକରଙ୍କ ନିଶା ଚଢି ଆସୁଥିଲା। ସେ ସୀତାକୁ ଆପଣା କତିରୁ ଘୁଞ୍ଚିଯିବାର ଦେଖି, ଉଠି ପଡି ତାକୁ ଗୋଇଠାମାରି ତଳକୁ ଫୋପାଡିଦେଲେ।'ବୋଉ ଲୋ' କହି ସୀତା ଦୁଇ ହାତ ଉଚ୍ଚ ଖଟରୁ ତଳେ ପଡିଗଲା। ତା ମୁଣ୍ଡରେ ଖଟବାଡ ବାଜିଲା। ଦିବାକର ତହିଁ ପ୍ରତି ଲକ୍ଷ୍ୟ ନ କରି ତାକୁ ନାନା ପ୍ରକାର ଗାଳିଦେଇ ଉଠି ପିଣ୍ଡାରେ ବୁଲିଲେ। ବସିବା ଘରେ ମଦ ବୋତଲ ଥୁଆ ହୋଇଗଲା। ସେଥିରୁ ଗ୍ଲାସେ ଗ୍ଲାସେ ଉଦରସ୍ଥ କରି ଆସି ସୀତା ସହିତ ଜବାବ ସବାଲ[୧] କରି, ତାର ଦୁଃଖରେ କାରଣ ବୁଝି ବସିଲେ। କିନ୍ତୁ ସେ ପଦେ କଥାରେ ଜବାବ[୨] ଦେଲା ନାହିଁ। ସେ ଦିନ ସୀତାକୁ ଦାରୁଣ ପ୍ରହାର କରି ଶେଷକୁ ନିଶାରେ ଅଚେତନ ହୋଇ ସେ ପିଣ୍ଡାରେ ପଡିଗଲେ। ନିଜର କର୍ମ ବାହୁନି, କାନ୍ଦି କାନ୍ଦି ସୀତା ଘରର ଗୋଟିଏ କୋଣରେ ପଡିରହିଲା

ରାତ୍ରିର ଘଟଣା ଶାଶୂ ନଣନ୍ଦ ସବୁ ଶୁଣିଲେ। ସେଥିପାଇଁ ପୁଅକୁ ଦୋଷୀ ନ କରି କେବଳ ସୀତାକୁ ଦୋଷ ଦେଇ ଓରମାନ[୩] ମେଣ୍ଟେଇ ନେଲେ। ଗଭୀର ବିଷାଦରେ ସୀତା ଜୀବନ୍ମୃତ ଭାବରେ ପଡି ରହିଲା। ଦିବାକର ତାକୁ କଟକ ପଠାଇଦେଲେ।



(୧) ପ୍ରଶ୍ନର ଉତ୍ତର, (୨) ଉତ୍ତର, (୩) ପ୍ରତିଶୋଧଭାବ

# ସପ୍ତଦଶ ଅଧ୍ୟାୟ

ପ୍ରାୟ ଦୁଇ ମାସ କାଳ ରଘୁନାଥ, ନରେଶ ବାବୁ ଓ ସୁଶୀଳାକୁମାର ସହିତ ବୁଲିଲା। ଚିଲିକା ଦେଖି ଗଞ୍ଜାମ ଅଞ୍ଚଳରେ ପାରଳାଖେମୁଣ୍ଡି, ମୁଞ୍ଜାସା, ବିଜୟନଗର ବୁଲି ବୁଲି ଦୁଇ ମାସ ପରେ ନରେଶ ବାବୁ କଲିକତା ଫେରିଲେ।

ସଞ୍ଜ ଗାଡ଼ିରେ ଯେତେବେଳେ ରଘୁନାଥ ବସି ଜନ୍ମଭୂମିକୁ ବିଦାୟଦେଇ କଲିକତା ଅଭିମୁଖରେ ବାହରିଲା, ସେତେବେଳେ ତା ମନ ଘନ ଭାବନାରେ ପୂର୍ଣ୍ଣ। ଦୁଇମାସ କାଳ ସେ ଘର ଛାଡ଼ିଛି, ଅପରିଚିତ ବିଦେଶୀ ଲୋକ ସହିତ ବୁଲୁଛି; କିନ୍ତୁ ଦିନେ ହେଲେ ସେ କଷ୍ଟ କଣ ଜାଣି ନାହିଁ। ଅର୍ଥର ଅଭାବ କଣ ବୁଝି ନାହିଁ–ପରମାନନ୍ଦରେ ଦେଶ ବିଦେଶ ବୁଲି ଦେଖିଛି। ତାର ଏତେ ବଡ଼ ଦୁଃଖ ପରେ ଯେ ଅକସ୍ମାତ୍ ଏ ପରିବର୍ତ୍ତନ ଘଟିବ, ତାହା ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା। ସୀତା ବିଭା ହୋଇଗଲା–ତା ଜୀବନସୂତ୍ର ମଧ ଛିଡ଼ିଗଲା। କିନ୍ତୁ ଦୈବାତ୍ ଏ ନରେଶ ବାବୁ କାହୁଁ ଆସିଲେ? ଆପଣା ବାପ ଭାଇ କଣ ଯାଙ୍କୁଠୁଁ ବଳି ଯତ୍ନ କରିବେ? ନରେଶ ବାବୁଙ୍କ ପ୍ରତି ରଘୁନାଥର ହୃଦୟ ଶ୍ରଦ୍ଧା ଓ ଭକ୍ତିରେ ପୂର୍ଣ୍ଣ ହୋଇଗଲା। ସେ ସାନ ଭାଇ ପରି ତାଙ୍କର ଉପଦେଶ ଓ ଆଦେଶମାନି ଚଳୁଥିଲା। ନରେଶ ବାବୁଙ୍କର କି ଅସୀମ ଜ୍ଞାନ, କି ଆସାଧାରଣ ବିଦ୍ୟା, କି ଅପୂର୍ବ ବକ୍ତୃତାଶକ୍ତି, କି ମହାନ୍ ଦେଶପ୍ରେମ, ଉଦାରତା। ରଘୁନାଥ ଯେତେ ତାଙ୍କ କଥା ଭାବିଲା, ସେତେ ତାଙ୍କ ପ୍ରତି ଆକୃଷ୍ଟ ହେଲା। ସେ ଜନ୍ମଭୂମି, ଆତ୍ମୀୟ ସ୍ୱଜନ ଛାଡ଼ିଥିଲେ ସୁଦ୍ଧା, ତାହାର ବିଶେଷ ଦୁଃଖ ନାହିଁ। କଥା ପ୍ରସଙ୍ଗରେ ସେ ନରେଶ ବାବୁଙ୍କୁ ନିଜର ସମୁଦାୟ ଇତିହାସ କହିଛି, ସହାନୁଭୂତି ମଧ ଲାଭ କରିଛି, ସାନ୍ତ୍ୱନା ମଧ ପାଇଛି। ବିଦେଶୀ, ବିଜାତି ଏତେ ଆପଣାର ହୋଇ ପାରନ୍ତି? ରଘୁନାଥ ନୀରବରେ ସାନ୍ଧ୍ୟ ଗଗନକୁ ରେଲ୍ ଝରକାବାଟେ ଅନାଇ ଏହାହିଁ ଭାବୁଥିଲା; ପୁଣି ଭାବୁଥିଲା ସୁଶୀଳ କଥା। ସୁଶୀଳ ଯେପରି ଧୀର, ସେହିପରି ଶାନ୍ତ ଓ ଲଜ୍ଜାଶୀଳ। କଥା ପଦେ ସେ ମୁହଁ ଉଠାଇ କହେ ନାହିଁ। କେଡ଼େ ସୁନ୍ଦର ତାର ମଧୁର ସ୍ୱଭାବ; ଆଉ ଅପୂର୍ବ ସୌନ୍ଦର୍ଯ୍ୟ! ସେ ଅନେକ ପିଲା ଦେଖିଛି, କିନ୍ତୁ ସୁଶୀଳ ପରି କ୍ୱଚିତ୍ ଦେଖିଛି। ତାହାର ଆଖିଯୋଡ଼ିକ ଦୀର୍ଘାୟତ, କୃଷ୍ଣତାରକାବିଶିଷ୍ଟ, କଳା କଇଁଫୁଲ ପରି ଢ଼ଳଢ଼ଳ। ସେ ଆଖିର ମଧୁର ଚାହାଣି ଏତେ ସୁନ୍ଦର ଯେ, ଏକ ସୀତା ଆଖି ଛଡ଼ା ସେ ଅନ୍ୟତ୍ର ଏପରି ସୁନ୍ଦା ଆଖି ଦେଖି ନାହିଁ। ତଥାପି ସତ କହିବାକୁ ଗଲେ, ସୁଶୀଳର ଆଖି ସୀତାଠୁଁ ବି ସୁନ୍ଦର! ସୁଶୀଳ ଲମ୍ବା, ପତଳା; କିନ୍ତୁ ଅବୟବର ଗଠନ ଏଡ଼େ ସୁନ୍ଦର ଯେ, ଯେ ଚାହିଁବ, ଯେ ଘଡ଼ିଏ ଖଣ୍ଡେ ଦେଖିବ। ତାର ସେ ଯେଉଁ ହସ, ମୋତିପରି ଦାନ୍ତ। ରଘୁନାଥ ଭାବିଲା, ଆହା ସୁଶୀଳ ଭଲା ଝିଅ ହୋଇଥାନ୍ତା। ଏତେ ରୂପ ବାଳକର?

ହଠାତ୍ ତା ଭାବନାରେ ବାଧା ପଡ଼ିଲା। ଗାଡ଼ି ଗୋଟିଏ ଷ୍ଟେସନରେ ଛିଡ଼ା ହେଲା। ସେମାନେ ସେକେଣ୍ଡକ୍ଲାସ କାମରାରେ ବସିଥିଲେ। ତାହାର ଦ୍ୱାର ଠେଲି ଗୋଟିଏ ଇଂରାଜ ଭଦ୍ରଲୋକ ଭିତରକୁ ପଶି ଆସିଲେ। ତାଙ୍କ ସଙ୍ଗରେ ତାଙ୍କର ସ୍ତ୍ରୀ ଓ ପିଲା ଦିଓଟି। ରଘୁନାଥ, ନରେଶବାବୁ ଓ ସୁଶୀଳ ସମସ୍ତେ ଇଂରାଜୀ ପରିଚ୍ଛଦ-ଭୂଷିତ। କ୍ରମେ ଭଦ୍ରଲୋକଟି ସେମାନଙ୍କର ସହିତ ଆଳାପ ପରିଚୟ ଆରମ୍ଭକଲେ। ନରେଶ ବାବୁ ଭଦ୍ରଲୋକଟିର କଥାରେ ଆପ୍ୟାୟିତ ହୋଇ ତାଙ୍କ ସହିତ ଗଳ୍ପ କରୁଁ କରୁଁ ପ୍ରାୟ ରାତ୍ର ନଅଟା ବାଜିଲା। ଗାଡ଼ି କ୍ରମେ କଟକ ଷ୍ଟେସନ ଅଭିମୁଖରେ ଚାଲିଲା। ରଘୁନାଥର ଛାତି ଦାଉଁ ଦାଉଁ ହୋଇ ଉଠିଲା। ଏଇ କଟକ! ଏଇ କଟକକୁ ସେ ଛାଡ଼ି ଯାଉଛି! ଏଇ କଟକରେ ତାହାର ପ୍ରାଣର ସୀତା ବର୍ତ୍ତମାନ! ସେ କଣ ଆଉ ତା କଥା ଚିନ୍ତା କରୁଥିବ? ସରସ୍ୱତୀ, ତାରାମଣି ଓ ପାଠେଇ ନାନୀ, କେହି କଣ ତାକୁ ମନେ ପକୋଉ ନ ଥିବେ? ବାପା ରୋଗୀ ଦେଖି ଫେରିବେଣି। ଚିନ୍ତାର ଗାଢ଼ତାରେ ସେ ଲକ୍ଷ୍ୟ କରି ପାରିଲା ନାହିଁ ଯେ, ସାହେବ ଓ ମେମ୍ ଉତୁରି ଗଲେଣି[୧]।

ସହସା ତା ଚମକ ଭାଙ୍ଗିଲା, ଭାରି ବୁଟ୍‌ର ମଚ୍ ମଚ୍ ଶବ୍ଦ ଶୁଣି। ଜଣେ ଦୀର୍ଘକାୟ ଶ୍ୱେତାଙ୍ଗ ଟଳି ଟଳି ତାକୁ ପ୍ରାୟ ଠେଲିଦେଇ ତାରି କତିରେ ଜାଗା ମାଡ଼ିବସିଲା। ତା ମୁହଁରେ ମଦର ତୀବ୍ର ଗନ୍ଧ। ସେ କଟମଟ କରି ରଘୁକୁ ଅନାଇ 'ଡ୍ୟାମ୍' ନିଗର ନେଟିଭ'' କହି ପେଲିଦେଲା। ରଘୁନାଥ ନିର୍ବିବାଦରେ ଉଠିଯିବା ଦେଖି ନରେଶ ବାବୁ ତାକୁ ବାଧାଦେଇ ସାହେବକୁ ଗାଳି ଦେବାକୁ ଉଦ୍ୟତ ହେବାରୁ ରଘୁନାଥ କହିଲା, ''ଥାଉ ନରେଶ ଦାଦା, ବହୁତ ମଦ ଖାଇଚି, ମୁଁ ତ ଅନ୍ୟପାଖେ ବସିଚି, ଥାଉ, ଥାଉ।'' ନରେଶ ବାବୁ ପଦେ ଦୁଇ ପଦ କହି ବସିପଡ଼ିଲେ। ଗାଡ଼ି କଟକ ଷ୍ଟେସନ ଛାଡ଼ିଦେଲା। ମହାନଦୀ ପୋଲ ଉପରେ ଘୁ ଘୁ ହୋଇ ଚାଲିଲା ବେଳେ ଅନ୍ଧାରରେ ସୁଦ୍ଧା ରଘୁ ଅନେଇଲା–ସେହି ନଦୀର ଦୂର ପ୍ରାନ୍ତସ୍ଥିତ କାଠ-ଗୋଲାଘରୁ କାଳେ ଦୀପରଶ୍ମି ରେଖାଟିଏ ପାଣିରେ ପଡ଼ିଥିବ; କାଳେ କାହାର କଳା ଆଖିଯୋଡ଼ିକ ତାକୁ ଚାହିଁଥିବ; କିନ୍ତୁ ତାହାର ଆଶା ବିଫଳହେଲା। କେବଳ ନୌକାମାନଙ୍କରୁ କ୍ଷୁଦ୍ର କ୍ଷୁଦ୍ର ଆଲୋକ ଶିଖା ଠାଏଁ ଠାଏଁ ପାଣିରେ ପଡ଼ି ଅନ୍ଧାକାରରେ ଚିରଗୁଣୀ ଆଲୁଅ ପରି ଦିଶି ଯାଉଥିଲା। ଗାଡ଼ି ପୋଲ ପାରିହୋଇଗଲା। ସେ ଝରକା କତିରୁ ମୁହଁ ବୁଲାଇ ଭିତରକୁ ଚାହିଁଲା, ଦେଖିଲା, ମଦୁଆ ସାହେବ ଗୋଟିଏ ବେଞ୍ଚ ଉପରେ ପଡ଼ି ନିଶାରେ ଗଁ ଗଁ ହେଉଛି। ସୁଶୀଳ ତା ଭୟରେ ନରେଶ ବାବୁଙ୍କ ଦେହରେ ଲାଖିଯାଇଥିଲା। ନରେଶ କୋଳରେ ସୁଶୀଳର ମୁହଁକୁ ଚାହିଁ ରଘୁନାଥର ମନେ ହେଲା, ଯେପରି ଷୋଡ଼ଶୀ ସୁନ୍ଦରୀ! କିନ୍ତୁ ମସ୍ତକର କେଶ ଓ ବେଶଭୂଷା ଦେଖି ପରକ୍ଷଣରେ ସେ ଭ୍ରମ ଦୂରହେଲା। ନରେଶ ବାବୁଙ୍କ ଆଖି ନିଦରେ ବୁଜିହୋଇ ଆସୁଥିଲା, ସେ ସୁଶୀଳକୁ ଜଗିବାକୁ କହି, କର ଲେଉଟାଇ ଶୋଇ ପଡ଼ିଲେ। କିଛି କ୍ଷଣ ପରେ ତାଙ୍କର ଘୁଙ୍ଗୁଡ଼ି ଶୁଭିଲା। ସୁଶୀଳ କିଛିକ୍ଷଣ ପରେ ଅବଶେଷରେ ନରେଶ ବାବୁଙ୍କ ଉପରେ ଢଳେଇ ପଡ଼ିଲା। ଝରକା କତିରେ ମୁଣ୍ଡ ପୋତିଥିଲେ ସୁଦ୍ଧା ରଘୁନାଥ

(୧) ଓହ୍ଲେଇଯିବା, (୨) ଛୋଟଲୋକ, ଦେଶୀ

ଚେଇଁଥିଲା–ସେ ଦେଖିଲା, ହଠାତ୍ ଗୋରାଟା ଉଠିଲା, ପକେଟରୁ ଏକପ୍ରକାର ଚଷମା କାଢ଼ି ଆଖିରେ ପିନ୍ଧିଲା, ଧୀରେ ଧୀରେ ଉଠି ନିଦ୍ରିତ ନରେଶ ଓ ସୁଶୀଳଙ୍କୁ ବହୁତ ବେଳଯାଏ ନିରୀକ୍ଷଣକରି ଚାହିଁଲା। ରଘୁନାଥ ଚେଇଁ ସବୁ ଦେଖୁଥାଏ, ଭୟରେ ତାର ପାଟି ସେତେବେଳେଯାଏ ପଡ଼ିଯାଇଥାଏ। ସେ ମଲାଙ୍କ ପରି ବସିଥାଏ। ଡାଆଣୀ ସୁଙ୍ଘିଲା ପରି ଗୋରାଟା ଦୁଇଜଣଙ୍କୁ ଦେଖିସାରି କ୍ରମେ ତା କତିକି ଅଗ୍ରସର ହେଲା। ରଘୁ ଭୟରେ ଚିତ୍କାର କରି ଉଠିଲା। ନରେଶ ବାବୁ ଉଠିବସିଲେ। ଗୋରାଟା ମଦୁଆଙ୍କ ଭଳି ଟଳି ଟଳି ବସିଗଲା। ସେତେବେଳେକୁ ତା ଆଖିରେ ଆଉ ସେ ଚଷମା ନାହିଁ। ନରେଶ ବାବୁ ଉଠି ଇଂରାଜୀରେ ଶ୍ୱେତାଙ୍ଗକୁ ଭର୍ତ୍ସନା କରି କହିଲେ, ''କିରେ ମାତଲାମି କରିବାକୁ ଜାଗା ମିଳିଲା ନାହିଁ? ନିରୀହ ଭଦ୍ରଲୋକଙ୍କ ଉପରେ ଅତ୍ୟାଚାର!'' ଏହା କହି ତାକୁ ପୋଲିସ୍ ଡାକିବା ଭୟ ମଧ ଦେଖାଇଲେ। ଗୋରା ଭଲ ଆଚରଣ କରିବାଲାଗି ବାରମ୍ବାର ପ୍ରତିଜ୍ଞା କରି ସ୍ୱସ୍ଥାନରେ ବସି ଗୋଟିଏ ଅଶ୍ଳୀଳ ଇଂରାଜୀ ଗୀତ ଗାଇବାକୁ ଲାଗିଲା। ତା ରଙ୍ଗଢଙ୍ଗ ଦେଖି ରଘୁନାଥ ହତବୁଦ୍ଧି ହୋଇଥିଲା। ତାହାକୁ ଆଶ୍ୱାସ ଦେଇ ନରେଶ ବାବୁ କହିଲେ, ''ଭୟ କରନାହିଁ, ରଘୁନାଥ! ଏ ଜାତିର ଏପରି ଦୃଶ୍ୟ। ସୁଲଭ ମଦ ଖାଇଲେ ଯାଙ୍କର ଜ୍ଞାନ ରହେ ନାହିଁ। ମୁଁ ବିଲାତ ବୁଲିଚି। ତୁମେ ଏ ପୁରୁଷକୁ ଦେଖି ଏପରି ଆଶ୍ଚର୍ଯ୍ୟ ହେଉଚ? ଯାଙ୍କ ଦେଶରେ ସ୍ତ୍ରୀମାନେ ମଦ ଖାଇ ଯେଉଁ କାଣ୍ଡ କରନ୍ତି,–ଛାଡ଼।''

ଗାଡ଼ି ଅଗ୍ରସର ହେଲା, କ୍ରମେ ରାତି ପାହିବା ଉପରେ। ଗୋରା ଆପଣା ମନକୁ ଗୀତ ଗାଇ ଗାଇ ବକର ବକର ହୋଇ ଶୋଇପଡ଼ିଲା। ପାହାନ୍ତି ପବନର ଶୀତଳ ସ୍ପର୍ଶରେ ତା ନିଶା ଛାଡ଼ି ଆସିଲା। ଚାହୁଁ ଚାହୁଁ ଗାଡ଼ିର ଗତି କ୍ରମେ ମନ୍ଥର ହେଲା, ସେ ଗୋଟାଏ ବଡ଼ ଘର ଭିତରେ ପଶିଗଲା। ସେତେବେଳେ ପରିଷ୍କାର ଫର୍ଚ୍ଚା ହେଲାଣି। ଜନକୋଳାହଳରେ ଫେରିବାଲା ଓ କୁଲିଙ୍କ ଚିତ୍କାରରେ ରଘୁ ବିସ୍ମିତ, ନିର୍ନିମେଷ ନୟନରେ ଚାହିଁ ରହିଲା। ନରେଶ ବାବୁ ଓ ସୁଶୀଳ ଉଠି ପ୍ରସ୍ତୁତ ହେଲେ। ଷ୍ଟେସନ, ଏଠି ଓହ୍ଲେଇବାକୁ ହେବ। ମାୟାପୁରୀ କଲିକତା ନଗରୀରେ ଆଜି ରଘୁନାଥର ପ୍ରଥମ ପଦାର୍ପଣ। କଲିକତା ଯେ ଏଡ଼େ ବଡ଼, ଏପରି ଅଜବ ସହର, ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିପାରି ନଥିଲା। ସେ ଏକା ଏଠାକୁ ଆସିଥିଲେ ତାର କି ଦୁର୍ଦ୍ଦଶା ହୋଇଥାନ୍ତା! କେମିତି ଯେ ସେମାନେ ଗାଡ଼ିରୁ ଓହ୍ଲେଇଲେ, ଟ୍ୟାକ୍‌ସିରେ ବସିଲେ–ତାର ସେ ସବୁ ହେଜ[୧] ନ ଥିଲା। ସେ କେବଳ ବଲ୍‌ବଲ୍[୨] କରି ଉଲୁଆଙ୍କ[୩] ଭଳି ଚାରିଆଡ଼କୁ ଚାହୁଁଥାଏ। ଏପରି ସମୟରେ ହଠାତ୍ ଦେଖିଲା, ପୂର୍ବୋକ୍ତ ଗୋରା ଦଳେ ପୋଲିସ୍ ଘେନି ହାଜର। ପକେଟରୁ ଓ୍ୟାରେଣ୍ଟ ବାହାର କରି ନରେଶ ଓ ସୁଶୀଳ ହାତରେ ହାତକଡ଼ି ପିନ୍ଧାଇ ତା ଆଡ଼କୁ ଅଗ୍ରସର ହେଲା। ସେ ଭୟରେ ମୂର୍ଚ୍ଛିତ ପରି ହେଲା। ନରେଶ ବାବୁ କିନ୍ତୁ ଧୀର ସ୍ଥିର ଭାବରେ କହିଲେ, ''ସେ ନିର୍ଦ୍ଦୋଷ, ତାକୁ ଛାଡ଼ିଦିଅ।'' ''ଚୁପ୍ ରହୋ''

(୧) ମନ, ଚେତନ, (୨) ବିସ୍ମିତ ଭାବ, (୩) ନିର୍ବୋଧ

କହି ଜଣେ ପୋଲିସ ରଘୁନାଥ ହାତରେ ହାତକଡ଼ି ଦେଲା। ମୋଟର ଟ୍ୟାକ୍‌ସିରେ ବସି ଗୋରାଲୋକଟି ପରିଷ୍କାର ବଙ୍ଗଳାରେ କହିଲା, ''ମୋତେ ଚିହ୍ନି ପାରୁଚ ମନିରୁଦ୍ଦୀନ!''

ଏଥର ନରେଶ ବାବୁ ଓରଫେ ମନିରୁଦ୍ଦିନ କହିଲେ, ''ତୁମକୁ ଚିହ୍ନିପାରୁ ନାହିଁ ନରେଶ ଦାଦା!''

ନରେଶ ଦାଦା ମୁରୁକି ହସି କହିଲେ, ''ମୋ ନାମ ନେଇ ବେଶ୍ ଦେଶ ଦେଶ ବୁଲିଲ, ହିନ୍ଦୁଆନିର ଚୂଡ଼ାନ୍ତ କଲ, ତିନି ଥର ମୋ ଆଖିରେ ଧୂଳିଦେଲ। ତୁମ ସାଙ୍ଗରେ ମତିଆ ବିବି ନ ଥିଲେ ମୁଁ ତମକୁ କେଉଁ କାଳୁ ପୁରୀରେ ଧରିଥାନ୍ତି! କି ବିବି ସାହେବ, ସୁଶୀଳକୁମାର ସାଜିଚ। ନରେଶ ଦାଦାଙ୍କୁ ମନେ ପଡେ ତ? ଏକାଠି ପରା ଗୋଲାପୀ ସରାବ, ସର୍ବତ୍ ଖାଇଥିଲୁ?''

ନରେଶ ଦାଦାର କଥାରେ ସୁଶୀଳକୁମାରର ସୁନ୍ଦର ମୁହଁ ଶୁଖି କଳାପଡ଼ିଗଲା। ରଘୁନାଥ ଅକସ୍ମାତ୍ ଏ ଅଦ୍ଭୁତ ପରିବର୍ତ୍ତନରେ ପଥର ପାଲଟିଗଲା। ଏତେ ଦିନ ସେ ନରେଶ ଦାଦା ସହିତ ରହିଛି, କିନ୍ତୁ ସେ ଯେ ଜଣେ ମୁସଲମାନ ଓ ସୁଶୀଳ ଯେ ଜଣେ ସ୍ତ୍ରୀ ଲୋକ, ଏହା ସେ ଘୁଣାକ୍ଷରେ[୧] ଜାଣି ପାରି ନାହିଁ। ତାର ନିଜ ଆଖିକି ବିଶ୍ୱାସ ହେଲା ନାହିଁ। ଦିନେ ନୁହେଁ, ଅଧେ ନୁହେଁ, ଦୁଇ ମାସ କାଳ କି ପ୍ରତାରଣା ମଧ୍ୟରେ ସେ ବାସ କରିଛି! ଏ ସବୁ ତାକୁ ଭେଲିକି[୨] ପରି ଲାଗିଲା। ଏସବୁ ସତ, ନା ସେ ସ୍ୱପ୍ନ ଦେଖୁଛି! କିନ୍ତୁ ତାକୁ ଭାବିବାକୁ ସମୟ ନ ଦେଇ ଟ୍ୟାକ୍‌ସି ଯାଇ ଗୋଟିଏ ସ୍ଥାନରେ ଛିଡ଼ା ହେଲା। ସେ ଅନୁମାନରୁ ବୁଝିଲା, ତାହା ଥାନା। ସେଠି ସେ ଶୁଣିଲା, ତାହାର ଶ୍ରଦ୍ଧେୟ ନରେଶ ଦାଦା ଜଣେ ଖୁଣି ଆସାମୀ। ତାଙ୍କର ପ୍ରକୃତ ନାମ ମହମ୍ମଦ ମନିରୁଦ୍ଦୀନ; ସୁଶୀଳକୁମାର ମତିଆ ବିବି ନାମ୍ନୀ ଜଣେ ବାରାଙ୍ଗନା; ଉଭୟେ ଗିରିଧାରୀ ମଲ୍ଲ ମାରୁଆଡ଼ିକୁ ଖୁନ୍ କରି, ପ୍ରାୟ ଲକ୍ଷାଧିକ ଟଙ୍କାର ସମ୍ପତ୍ତି ହସ୍ତଗତ କରି ଦେଶତ୍ୟାଗୀ ହୋଇଥିଲେ। ଆଉ, ସେ ମଦୁଆ ଗୋରା ଜଣକ କଲିକତାର ବିଖ୍ୟାତ ଡ଼ିକେଟ୍‌ଟିଭ' ନରେଶ୍ଚନ୍ଦ୍ର ମିତ୍ର। କିନ୍ତୁ ଏତେବେଳେ ବୁଝି ଲାଭ କଅଣ? ରଘୁନାଥ ପୋଲିସଙ୍କ ହାତରେ ଉତ୍ତମ ମଧ୍ୟମ[୩] ପାଇ ଯେତେବେଳେ ତାଙ୍କ ହାବୁଡ଼ରୁ ନିର୍ଦ୍ଦୋଷ ବୋଲି ଖଲାସ ପାଇଲା, ସେତେବେଳେ ପ୍ରାୟ ଦିନ ଚାରିଟା। ଦିନସାରା ସେ କିଛି ଖାଇ ନାହିଁ, ତା ହାତରେ ଛଦାମ[୪] କଉଡ଼ି ନାହିଁ, ପୁଣି ଏ ଅପୂର୍ବ ସହରରେ ପାଦଦେଲା ମାତ୍ରେ ଏ ବିଚିତ୍ର ଘଟଣା! ଆହା, ନରେଶ ଦାଦା ତାର ଖୁଣୀ ଆସାମୀ। ତାହା ହେଲେ ତ ସେ ଫାଶି ଯିବେ। ଆପଣାର ନିତାନ୍ତ ନିଃସହାୟ ଅବସ୍ଥାରେ ସୁଦ୍ଧା ସେ ଭାବିଲେ ନରେଶ ଦାଦା କଥା। ସେ ନରେଶ ଦାଦା ଏଡ଼େ ସରଳ, ଏଡ଼େ ଉଦାର। କିନ୍ତୁ ବିଜୁଳି ଖେଳିଲା ପରି[୫] ପୁରୀରେ ଗୋଟିଏ ଘଟଣା ତାହା ମନରେ ପଡ଼ିଗଲା। ସେହି ବସା ବଦଳି କଥା। ନରେଶ ଦାଦା କାହିଁକି ତାକୁ ନ ଉଠାଇ ତରବର ବସା ବଦଳେଇଲେ? ମନରେ ବଡ଼ ଭୟ ହେଲା, କଣ ଖୁଆଇ ଦେଇ ଥିଲେ ତ! ନୋହିଲେ ସେ ଏପରି ଅଚେତନ ହୋଇ ଶୋଇଥାନ୍ତା କି? ଦେଶ ଛାଡ଼ି ଆସି

(୧) ଭୁଲରେ, ଭ୍ରମରେ, (୨) କିମିଆ, (୩) ମାଡ଼, (୪) ଆଦୌ, (୫) ହଠାତ୍

ନିଜ ମୂର୍ଖତାରେ ଏହି ବିପଦରେ ପଡ଼ିଥିବାରୁ ମନେ ମନେ ନିଜକୁ ଶତ ଶତ ଧିକ୍କାର ଦେଇ ସେ ଆସି ଫୁଟପାଥ୍ ଉପରେ ବସିଲା। ସେ ବର୍ତ୍ତମାନ କୁଆଡ଼େ ଯିବ ? ଏଡ଼େ ବଡ଼ ସହର, ଅସଂଖ୍ୟ ଜନସ୍ରୋତ, ଅସୁମାରି ଯାନବାହନ, ମୋଟର, ଟ୍ରାମ, ଟ୍ୟାକ୍‌ସି ଘୋଡ଼ାଗାଡ଼ିମାନ ଚାଲିଛି। ଯେଉଁ ଆଡ଼କୁ ଚାହିଁ, କୋଠା ମାଳମାଳ–ଦେତାଲା, ଚଉତାଲା, ପାଞ୍ଚତାଲା, ଛତାଲା। କେଉଁ ବାଟେ ଗଲେ କେଉଁଠି ପହଞ୍ଚିବ, ପୁଣି କିଏ ଧରିବ, ତାର ଠିକ୍ ନାହିଁ–ଏହା ସେ ଭାବି ଭାବି ଅବସନ୍ନ ହୋଇ ପଡ଼ିଲା। ବସୁଁ ବସୁଁ ତାକୁ ନିଦ ଆସିଲା। ଏପରି ଅବସ୍ଥାରେ ଏବଂ ଅସହାୟ ସ୍ଥାନରେ ବି ନିଦ ହୁଏ! ଯେତେବେଳେ ତାର ନିଦ ଭାଙ୍ଗିଲା, ସେତେବେଳକୁ ରାତି,–ଚାରିଆଡ଼େ ବିଜୁଳି ଆଲୁଅରେ ସହର ଉଜ୍ଜ୍ୱଳ। ବାଟରେ ହଜାର ହଜାର ଯୁବକ, ବାବୁମାନେ ବୁଲି ବାହାରିଛନ୍ତି, ଚାରିଆଡ଼େ ଦୋକାନ ବଜାର ଖୋଲା ରହିଛି, ବିଜୁଳି ଆଲୁଅରେ ବଡ଼ ବଡ଼ ଅକ୍ଷରସବୁ ଦୋକାନ ମୁଣ୍ଡ ଉପରେ ଝକ୍‌ଝକ୍ କରୁଛି। ଗୋଟିଏ ସ୍ଥାନରେ ସେ ପଢ଼ିଲା, ଲେଖାଅଛି–'ହ୍ୱାଇଟ୍ ଓୟେ ଲେଡ୍‌ଲ କୋମ୍ପାନୀ।'' ତେବେ ଏଇ ସେ ନାମଯାଦା ଦେକାନ। କିନ୍ତୁ ଏ ସବୁ ଦେଖି ତାର ଲାଭ କଣ ? ଏହିପରି କଣ ସେ ବାଟେ ବାଟେ ବୁଲିମରିବ ? ନିଜ ଦେହକୁ ଅନେଇଲା। ନରେଶ ଦାଦାଙ୍କ ଦର ଚକଚକିଆ ପୋଷାକ ଛଡ଼ା ଆଉ କିଛି ନାହିଁ। ପରେ ଦରାଣ୍ଡି ଗୋଟିଏ ଅଧଲା ବି ପାଇଲା ନାହିଁ। ସେ କରିବ କଣ ? ବଡ଼ ବିକଳ ହୋଇ ଭଗବାନ୍ ଛଡ଼ା ଆଉ କାହାକୁ ଡାକିପାରେ ନାହିଁ। ସେ ଭଗବାନ୍‌ଙ୍କୁ ଡାକି ଡାକି ଚାଲିଲା, କେତେ ବାଟ ପାରିହେଲା। ହେଲେ, ଭଗବାନ୍ ତାହାର ଡାକ ଶୁଣିଲେ। ଗୋଟିଏ ବୁଢ଼ୀ ସେ ବାଟରେ ଯାଇଁ ଯାଉଁ ଅକସ୍ମାତ୍ ତାହାର ଦୃଷ୍ଟି ରଘୁନାଥ ଉପରେ ପଡ଼ିଲା। ସେ ଯେଉଁଠାରେ ଠିଆ ହୋଇଥିଲା, ସେଠାରେ ଗୋଟିଏ ଗହଳ ଦେବଦାରୁ ଗଛ ଥିଲା। ସେହି ଯୋଗୁଁ 'ଫୁଟ ପାଥ'ରେ ସେ ଅଂଶ ଅନ୍ଧାରୁଆ ହୋଇଥିଲା। 'ଫୁଟ୍‌ପାଥ କରକୁ ମସ୍ତବଡ଼ ଚଉତାଲା କୋଠା। ବୁଢ଼ୀଟି ରଘୁନାଥକୁ ଦେବଦାରୁ ଗଛ ତଳେ ଠିଆ ହୋଇଥିବାର ଦେଖି କହିଲା, ''ବାବା, ଏପରି ପରିତ୍ୟାଗ କଲେ ଚଳିବ ନା ? ମୋର ଝିଅ ଯେ ତିନି ଦିନ ତିନି ରାତି ଉପାସ କରି ତୁମ ବାଟ ଚାହିଁଛି। ସେ କଣ ଏହିପରି ମରିବ, ଆଉ ତୁମର ନିଷ୍ଠୁର ପ୍ରାଣରେ ଟିକେ ଦୟା ହେବ ନାହିଁ ?''

ରଘୁନାଥ ବଡ଼ ବିବ୍ରତ ହେଲା। ଏ କିଏ ପୁଣି ? ସେ ବୁଢ଼ୀକି ଯେତେ ବୁଝେଇଲା ଯେ, ସେ ଯାହାକୁ ଖୋଜୁଚି, ସେ ଲୋକ ସେ ନୁହେଁ, ବୁଢ଼ୀ ସେତିକି ସାକୁଲାଇ[୧] ହୋଇ, କାନ୍ଦି କାନ୍ଦି ତାକୁ ଆପଣା ସଙ୍ଗରେ ଯିବାକୁ ବିନତି କଲା[୨]। ଶେଷକୁ ରଘୁନାଥ ଭାବିଲା, ବୁଢ଼ୀ କଣ ପାଗଳ ! ତଥାପି ସ୍ତ୍ରୀ ଲୋକ, ପୁଣି ବୁଢ଼ୀ ଦେଖି ତାର ଦୟାହେଲା। ହଉ, ଥରେ ଯାଇ ଦେଖେ, କ୍ଷତି କଣ ? ପୁନଶ୍ଚ ମନରେ ଭୟ ହେଲା, ଏ ବୁଢ଼ୀ ଛଦ୍ମବେଶୀ ନୁହେଁ ତ ? ଯାହା ହେଉ, ସେ କିଛି ସ୍ଥିର କରି ନ ପାର ବୁଢ଼ୀ ସହିତ ଗଲା। ଅନେକ ବଙ୍କା, ଟେଢ଼ା ଗଳି ହେଇ, ବୁଢ଼ୀ ରଘୁନାଥକୁ ନେଇ ଗୋଟିଏ ବୃହତ୍ କୋଠାଘରେ ପଶିଲା। ରଘୁନାଥ

(୧) ଅତି ବିନୟଭାବ, (୨) ନେହୁରା ହେବା

ଶିଡ଼ି ଦେଇ ଉପରକୁ ଉଠିବା ସମୟରେ ତା କାନରେ କାମିନୀକଣ୍ଠନିଃସୃତ କଳହାସ୍ୟଧ୍ୱନି ଏବଂ ଏସରାଜ୍‌ର ମଧୁର ସ୍ୱର ପଶିଲା। ଏ ପୁଣି କି ମାୟାବିନୀ! ରଘୁନାଥ ଭିତରକୁ ପଶିଯାଇ ଦେଖିଲା, ସାକ୍ଷାତ୍ ଇନ୍ଦ୍ରଭୁବନ, ଆଉ ଅପ୍‌ସରାତୁଲ୍ୟ ରୂପସୀ, ଦଳେ ଯୁବତୀ ବିବିଧ ବେଶଭୂଷା ହୋଇ ସେ ଘରେ ଅଛନ୍ତି। ଜଣେ ବସ୍ତୃତ ଧୋବଫରାଶ ଉପରେ ଗୋଟିଏ କାରୁକାର୍ଯ୍ୟମଣ୍ଡିତ ତକିଆରେ ଆଉଜି ଏସ୍‌ରାଜ୍ ବଜାଉଛି, ଆଉ ଜଣେ ଗୋଟିଏ ଅତି ସୁନ୍ଦର ପଲଙ୍କ ଉପରେ ଅର୍ଦ୍ଧଶାୟିତା। ଦୁଇ ଜଣ ବସି ଫୁଲହାର ଗୁନ୍ଥୁଛନ୍ତି। ଜଣେ ବାରଣ୍ଡାରେ ବୁଲୁଛି, ଜଣେ ଅଇନା କତିରେ ନିଜ ମୁହଁ ଦେଖୁଛି। ସେ ଏତେଗୁଡ଼ିଏ ସୁନ୍ଦରୀ ଦଳରେ ହଠାତ୍ ପଶିଯାଇ ହତବୁଦ୍ଧି ହୋଇଗଲା। ଏମାନେ କିଏ? ପୁଣି କାହିଁକି ତାକୁ ଡାକିଲେ? ସେ କିଛି ବୁଝି ନ ପାରି କାବାଁ[1] ହୋଇ ତାଙ୍କ ମୁହଁକୁ ଚାହିଁ ରହିଲା। ବୁଢ଼ୀଟି ଇତିମଧ୍ୟରେ ଅନ୍ତର୍ହିତ ହୋଇଥିଲା। ଯୁବତୀମାନଙ୍କ ମଧ୍ୟରୁ ଜଣେ ଆସି ତା ବେକରେ ଗୋଟିଏ ଫୁଲମାଳ ପକାଇଦେବାରୁ ଅନ୍ୟମାନେ ନାନାପ୍ରକାର ହାସ୍ୟ ପରିହାସ କରି ତା ସହିତ କଥାବାର୍ତ୍ତା ଆରମ୍ଭ କଲେ। ରଘୁନାଥ ସେମାନଙ୍କର କାରବାର[2] ଦେଖି ଭାବିଲା, ଏମାନେ ବେଶ୍ୟା ନୁହନ୍ତି ତ? କଲିକତାର ବେଶ୍ୟାଳୟରେ ସେ, ଏହା ଭାବିଲା ମାତ୍ରେ ତା ଛାତି କମ୍ପି ଉଠିଲା। ସେ ସେହି ସ୍ଥାନରେ ଭକୁଆଙ୍କ[3] ଭଳି ବସି ପଡ଼ିଲା। ଯୁବତୀମାନେ ତା ବ୍ୟବହାରରେ ରୁଷ୍ଟ ହୋଇ ଏଥର ତା ପ୍ରତି ନିର୍ଯ୍ୟାତନା ଆରମ୍ଭ କଲେ। ତାଙ୍କ ଭିତରୁ ଜଣେ ନିଶାରେ ଟଳି ଟଳି ପଡୁଥିଲା। ସେ ରଘୁନାଥକୁ ନାନା ଅଭଦ୍ର ଭାଷାରେ ଗାଳି ଦେଇ, ମଦବୋତଲ ଉଠାଇ ତା ମୁହଁକୁ ଫୋପାଡ଼ିଲା। ଟିକକରେ ରଘୁନାଥ ମୁଣ୍ଡରେ ବୋତଲଟା ବାଜିଥାନ୍ତା, କିନ୍ତୁ ତାହା ନ ହୋଇ ଦୁଆରରେ ବାଜି ଚୂନା ହୋଇଗଲା। ସେ ଶବ୍ଦରେ ଆର[4] କୋଠରିରୁ ଜଣେ ଦୀର୍ଘାକୃତି ଗୌରସୁନ୍ଦର ଯୁବକ ବାହାରି ଆସିଲା। ସେ ରଘୁନାଥକୁ ଦେଖି ଭ୍ରୂକୁଟି କରି ଅନେକ ବକି ବକି ତା ଆଡ଼କୁ ଅଗ୍ରସର ହେଲା। ରଘୁନାଥ ଦେଖିଲା, ସେତେବେଳେ ନିଶାରେ ଲୋକଟିର ଚେତନା ଲୁପ୍ତପ୍ରାପ୍ତ। ସେ ମଧ୍ୟ ପାଇକଛା ଭିଡ଼ି ତାକୁ ମାରିବାକୁ ପ୍ରସ୍ତୁତ ହେଲା। ଏହି ସମୟରେ ଦୁଇଜଣ ଯୁବତୀ ତାକୁ ଟାଣିଆଣି ଗୋଟାଏ ଘରେ ଭର୍ତ୍ତି କରିଦେଲେ। ସେ ଶୁଣି ପାରିଲା, ବାହାରୁ ଦୁଆରରେ ତାଲା ପଡ଼ିଲା।

କୋଠରିଟି ଛୋଟ ଓ ଘୋର ଅନ୍ଧକାରମୟ। ରଘୁନାଥ ସେଇଠି ବସି ଆପଣା କପାଳ କଥା ଚିନ୍ତା କରୁଁ କରୁଁ ଶୋଇପଡ଼ିଲା।

ଗୋଟାଏ ଭୟଙ୍କର ଗୋଳମାଳରେ ତା ନିଦ ଭାଙ୍ଗିଗଲା। ଭିତରେ ଥାଇଁ ଶୁଣିଲା, ଉଚ୍ଚ କଣ୍ଠଧ୍ୱନିରେ କିଏ ଚିତ୍କାର କରି କାନ୍ଦୁଛି, ପୁଣି ଅନେକ ଲୋକଙ୍କର ପାଦଶବ୍ଦ:–ଯେପରି ବାହାରୁ କିଏ ତାଲା ଖୋଲିଲା। ଦେଖିଲା, ମୂର୍ତ୍ତିମାନ ଯମପରି ଗୋଟିଏ ବିଶାଳକାୟ ପୋଲିସ ଦାରୋଗା। ତା ସହିତ ଅନେକ ପୋଲିଶ ଫୌଜ, ସେମାନେ ତାକୁ ଟାଣି ବାହାର କଲେ। ପୁଣି ଥରେ ସେ ଥାନାରେ ହାଜର ହେଲା। କିପରି କଣ ହେଲା, କିଛି ବୁଝି ପାରିଲା ନାହିଁ,

(୧) ଆଶ୍ଚର୍ଯ୍ୟ, (୨) ବ୍ୟବହାର, ଆଚରଣ, (୩) ନିର୍ବୋଧ, (୪) ଅନ୍ୟ

କେବଳ ଉପସ୍ଥିତ ଜଣେ ବ୍ୟକ୍ତି ତା ସହିତ ଆଳାପ କରିବାରୁ ତାଠାରୁ ବୁଝିଲା ଯେ, ସେ ରାତ୍ରରେ ସେହ ବେଶ୍ୟାଘରେ ଗୋଟିଏ ଭୟଙ୍କର ଖୁଣ୍ ହୋଇଅଛି। ଖୁଣ୍ ହୋଇଥିବା ଲୋକର ଶବ ଆସିଲା, ରଘୁନାଥ ମଧ ସାକ୍ଷିରେ ନିଆଗଲା। ସେ ଶବ ଦେଖିଲା ମାତ୍ରେ ଚିହ୍ନିଲା, ଚିତ୍କାର କରି ଦଶ ହାତ ପଛକୁ ଘୁଞ୍ଚିଗଲା। ହାୟ, ହାୟ, ଏ ତାହାର ସେ 'ନରେଶ ଦାଦା' ମହମ୍ମଦ ମନିରୁଦ୍ଦୀନ। ଏଡ଼େ ଶୀଘ୍ର ହାଜତରୁ ମୁକୁଳି ପୁଣି କେମିତି ବେଶ୍ୟାଘରେ ପଶି ଅବଶେଷରେ ଖୁଣ୍ ହେଲେ।

ରଘୁନାଥ ଏଥର ହାଜତରେ ରହିଲା। ମୋକଦ୍ଦମା ପଡୁ ପଡୁ ଅନେକ ଦିନ ଗଲା। ପୋଲିଶ ଇନ୍‌ସପେକ୍ଟର ବିନୋଦବିହାରୀ ଦେ ତା ସହିତ ଇତି ମଧରେ ବିଶେଷ ପରିଚିତ ହେଲେ।

ମୋକଦ୍ଦମାର ବିଚାର ଶେଷ ହେଲା। 'ସୁଶୀଳକୁମାର' ଓରଫ ମତିଆ ବିବୀକୁ ଯାବଜ୍ଜୀବନ ଦ୍ୱିପାନ୍ତରବାସରେ ଦଣ୍ଡାଜ୍ଞା ହେଲା। ସେହି ମତିଆ ବିବୀ ବୁଢ଼ୀବେଶ ଧରି ରଘୁନାଥକୁ ବାଟରୁ ଧରି ନେଇ ଯାଇଥିଲା। ପୂର୍ବେ ଘଟଣା ପରେ ମନିରୁଦ୍ଦୀନ ଓ ମତିଆ ହାଜତରୁ କଳକୌଶଳରେ ମୁକୁଳି ଉଭୟେ ସେହି ରାତ୍ରିରେ ବେଶ୍ୟାପଲ୍ଲୀରେ ଗୋପନରେ ଆଶ୍ରୟ ନେଇଥିଲେ; ରଘୁନାଥକୁ ମଧ ରାସ୍ତାରେ ଚିହ୍ନି ଭୁଲାଇ ନେଇଥିଲେ। ସେହି ରାତ୍ରିରେ ସେଠାରେ ଭୟଙ୍କର ଗୋଳମାଳ ହେଲା—ମତିଆ ବିବି ସହିତ ପିଆରୀ ବାଈର ବହୁକାଳରୁ ହିଂସା ଥିଲା ଏବଂ ପ୍ରତିହିଂସା ନେବାପାଇଁ ଅନେକ ଦିନରୁ ସେ ଉପାୟ ଖୋଜୁଥିଲା। ଏ ସୁଯୋଗ ତ୍ୟାଗ ନ କରି ମନିରୁଦ୍ଦୀନକୁ ସେ ହତ୍ୟା କଲା। ତାର ମଧ ଦ୍ୱିପାନ୍ତର ଦଣ୍ଡହେଲା। ରଘୁନାଥ ତାକୁ ଦେଖିଲା ମାତ୍ରେ ଚିହ୍ନିଲା, ସେହି ପିଆରୀ ତାକୁ ବୋତଲ ଫୋପାଡ଼ି ମାରିଥିଲା— ଏବେ ସେ ତାର ରାଗର କାରଣ ବେଶ ବୁଝିପାରିଲା। ସେ ନିଶାରେ ରଘୁନାଥକୁ ହିଁ ମହମ୍ମଦ ମନିରୁଦ୍ଦୀନ ବୋଲି ଠଉରାଇ ନେଇଥିଲା, ସେଥିପାଇଁ ତାହାର ପ୍ରାଣ ନେବାପାଇଁ ଚେଷ୍ଟା କରିଥିଲା। ଭାଗ୍ୟକୁ ସେ ବଞ୍ଚିଗଲା। ଦଣ୍ଡାଜ୍ଞା ପରେ ମତିଆ ବିବୀର କାତର ନୟନ ରଘୁନାଥ ଭୁଲି ପାରିଲା ନାହିଁ। ଏଡ଼େ ସେ ସୁନ୍ଦରୀ! ଶେଷକୁ ତା କପାଳରେ ଏହା ଥିଲା।



## ଅଷ୍ଟାଦଶ ଅଧ୍ୟାୟ

ବାରି ପିଣ୍ଡାରେ ବସି ପିତେଇ ନାନୀ ଦାନ୍ତ ଘସୁଥିଲା। ସେତେବେଳେ ସକାଳ ଆଠଟା ହେଲାଣି। ଆଜି ତା ମନ ଜମାରୁ ଭଲ ନାହିଁ, ଭଲ କିପରି ହୁଅନ୍ତା? ଯେଉଁମାନଙ୍କୁ କୋଳରେ କାଖରେ ପୂରାଇ ମଣିଷ କରିଥିଲା, ସେମାନେ ଗୋଟିଏ ଗୋଟିଏ ତାକୁ ଛାଡ଼ିଗଲେ; ସେ ସୁଖୀ ହେବ କିପରି? ବିଶେଷତଃ ସୀତା ଗଲାଦିନୁଁ ତା ଆଖି ଅନ୍ଧାର ହୋଇଛି। ଲଖିଆ, ସେବତୀ, ଶିବ ତା କୋଳ କାଖକୁ ସୁନ୍ଦର ଦିଶୁଥିଲେ ସୁଦ୍ଧା ସୀତା ଓ ରଘୁନାଥ ପରି ଶ୍ରଦ୍ଧା

ତାଙ୍କଠି ନାହିଁ। ସୀତା ତାରି ହାତରେ ଜନ୍ମ। ତା ସୁଖ, ତା ଭାଗ୍ୟଟା ସେ ଦେଖିଥାନ୍ତା,– ରଘୁର ଭାରିଯା ହୋଇ ଘର ଆଲୁଅକରି ବସିଥାନ୍ତା। ରଘୁନାଥକୁ ମନେକରି ବୁଢ଼ୀର ଛାତି ରାମ୍ପି ବିଦାରି[1] ହୋଇଗଲା। ସେ ଦାନ୍ତ ଘଷିବ କଣ, ଶୂନ୍ୟକୁ ଚାହିଁ ରହିଲା। ଟୋକାଟା କୁଆଡ଼େ ଗଲା ? ସେଇ ସଞ୍ଜ ଘଡ଼ିକରେ ଯେ ଆସିଥିଲା, ବାରିପଟେ ଆସି ତୁନି ତୁନି ତାକୁ ଡାକିଲା, କୁଣ୍ଢେଇ କେତେ କାନ୍ଦିଲା, ଛବିଟି ଦେଇ କହିଲା–''ଆଜିଠୁଁ ମଣିବୁ, ଏଇ ତୋର ରଘୁ, ଆଉ ମୁଁ ମଲିଣି। ପୀତେଈର ଘନଘନ କୋହଉଠିଲା। ଲଖିଆ ଆସି ତା ପିଠିରେ ଲଦି ହେବାରୁ ତାକୁ ସୁଖ ଲାଗିଲା ନାହିଁ; ବିରକ୍ତି ହୋଇ ତାକୁ ଖସେଇଦେଇ ଉଠି ହାଣ୍ଡିଶାଳକୁ ଗଲା। ହଠାତ୍ ସରସ୍ୱତୀଙ୍କର କ୍ରନ୍ଦନ ସ୍ୱର ତା କାନରେ ବାଜିଗଲା। ବ୍ୟସ୍ତ ହୋଇ ମଝି ଅଗଣାକୁ ଧାଇଁ ଆସି ଦେଖିଲା–ସୀତାକୁ କୁଣ୍ଢେଇ ସରସ୍ୱତୀ କାନ୍ଦୁଛନ୍ତି !

ଏ ସୀତା–ଏ ! ପୀତେଈ ଛାତିରେ ବାଡ଼େଇ ହୋଇ ତାକୁ କୋଳକୁ ନେଲା। ତା ବାହୁନାରେ ଅଗଣା ଉଛୁଳିପଡ଼ିଲା। ସୀତା ଆଉ ସେ କନକ ପ୍ରତିମା ନୁହେଁ–ଅସ୍ଥି କଙ୍କାଳସାର, ଆଖି ଭିତରକୁ ପଶିଗଲାଣି, ମୁଣ୍ଡରେ ଟୋପିଏ ତେଲ ଯେପରି ବହୁକାଳ ହେଲା ବାଜି ନାହିଁ, ଗାଲ ଦିଓଟି ଠାକରାହୋଇ ହାଡ଼ରେ ମିଶିଯାଇଛି, ଦେହରେ ସୁନା ରୂପା ମଶାଏ ନାହିଁ–କେବଳ ଦିଟା କାଚ ଚୁଡ଼ି ହାତରେ ଝୁଲୁଛି, ପରିଧାନରେ ସରୁ ଦେଶୀ ଲୁଗାଟିଏ।

ଏ କି କଥା ! ଜଣାନାହିଁ, ଶୁଣାନାହିଁ, ଖବର ଅନ୍ତର ନାହିଁ–ଏମିତି ହୋଇ କିଆଁ ସୀତା ସ୍ୱାମୀଘରୁ ଆସିଛି ? ରେବତୀ ଓ ବାବୁ ଅବାକ୍ ହେଲେ ଠିଆହେଲେ, ଚୌଧୁରୀଙ୍କ ପାଖକୁ ଖବରଗଲା। ସେ ବ୍ୟସ୍ତ ହୋଇ ଆସିଲେ।

ବାରିକଠୁଁ ଚିଠି ପଢ଼ି ସବୁ ହାଲ ବୁଝି ତାଙ୍କ ମନରେ ହେଲା, ସେହି ପାଲିଙ୍କିରେ ସେ ସୀତାକୁ ଫେରି ପଠାନ୍ତେ; କିନ୍ତୁ ସରସ୍ୱତୀ ଗୋଡ଼ତଳେ ପଡ଼ିଗଲେ, ପୀତେଈ ନାନୀ ଭିଡ଼ିନେଇ ଭିତରକୁ ଗଲା। ମନରାଗ ମନରେ ମାରି ଦରକାରି କାର୍ଯ୍ୟଲାଗି ଚୌଧୁରୀ କଚେରିକୁ ଗଲେ। ତାଙ୍କ ମୂର୍ତ୍ତି ସେ ଦିନ ଭୟଙ୍କର।

ଦିବାକର ସୀତାକୁ ଅରଖିତିଆଣୀ ପରି ବାପଘରକୁ ପଠାଇ ଦେଲେ। ସଙ୍ଗେ ସଙ୍ଗେ ଶ୍ୱଶୁରଙ୍କୁ ବହୁ କଟୁକ୍ତିପୂର୍ଣ୍ଣ ବୀଭତ୍ସ[2] ପତ୍ର ଲେଖି ପଠାଇଥିଲେ। ସୀତାର ଯୌତୁକରେ ତାଙ୍କର ଦୁଇହଜାର ଟଙ୍କା ସୁଝି ଯାଇଛି, ଏହା ମଧ୍ୟ ଉଲ୍ଲେଖ କରିବାକୁ ତ୍ରୁଟି କରିନାହାନ୍ତି। ହାତ ଗୋଡ଼ ଲଙ୍ଗଳା, କଙ୍କାଳସାର, ମାନମୁଖୀ କନ୍ୟାକୁ ଦେଖି ଚୌଧୁରୀଙ୍କର ଚୈତନ୍ୟୋଦୟ ହେଲା। ଫଳ ଯେ ଏପରି ବିଷମୟ ହେବ, ଏହା ଭାବି ନ ଥିଲେ। ଆଜୀବନ କନ୍ୟାକୁ ପୋଷିବାକୁ ହେବ, ଏ କଥା ଭାବିଲାବେଳକୁ ତାଙ୍କ ଛାତିରେ ରାଗର ନିଆଁ ଦାଉ ଦାଉ ଜଳି ଉଠୁଥିଲା; ପୁଣି ତହିଁ ଉପରେ ଦିବାକର ସୀତା ନାମରେ କଳଙ୍କ ଆରୋପ କରିଛନ୍ତି–ଏହିଟା ତାଙ୍କୁ ବେଶି ବାଧିଲା। ଟଙ୍କା ପଇସା ଗଲା, ଇଜ୍ଜତ୍ ମହତ ଗଲା, ଏହ ଜୁଇଁଟା ସେ କଲେ ! ଏଡ଼େ ତୁକାର[3] ଭାଷା କେଉଁ ଜୁଆଇଁ ଶ୍ୱଶୁରକୁ ଲେଖେ ?

---

(୧) କଷ୍ଟପାଇବା, (୨) କୁତ୍ସିତ, (୩) ଅସମ୍ମାନଜନକ

ସେ ଜଗନ୍ନାଥଙ୍କୁ ଡକାଇ ପଠାଇଲେ। କ୍ରୋଧରେ ବଡ଼ ପାଟିରେ ଦିବାକରଙ୍କୁ ଯମାଳୟକୁ ପ୍ରେରଣର ଆଶୀର୍ବାଦ କରି ତା ନାମରେ 'ମୋକଦ୍ଦମା' କରିବା ଲାଗି ପରାମର୍ଶ ଖୋଜି ବସିଲେ। ଦିବାକର ଚିଠି ପଢ଼ି, ଘଟଣା ଶୁଣି ଜଗନ୍ନାଥ ମୁଣ୍ଡରେ ହାତଦେଇ ବସିଲେ। ଏବେ ଉପାୟ ? ସେ କିଛିକ୍ଷଣ ତୁନି ରହି ଭାବିଚିନ୍ତି କହିଲେ–"ମୋ ମତରେ ଦିନାକେତେ ତୁନି ପଡ଼। ସ୍ୱାମୀ ସ୍ତ୍ରୀର କଳି ସଞ୍ଜକୁ ନ ଥାଏ। ଦିବାକର କେତେଦିନ ନିଜ ସ୍ତ୍ରୀକୁ ତ୍ୟାଗ କରିବ ? ଦେଖିବ, ସେ ବଳେ ବଳେ ଆସି ତାକୁ ଘେନିଯିବ। ତୁନି ଥାଅ।"

କିନ୍ତୁ ଚୌଧୁରୀ ତୁନି ରହିବା ବ୍ୟକ୍ତି ନୁହନ୍ତି। ସେ ରାଗରେ କହିଲେ, ମୁଁ କଣ ମଲା ମୂଷା, ତୁନି ରହିବି ? ଦେଖିବ ଗୁହ, ତା ଜମିଦାରପଣିଆ ମୁଁ ଛଡ଼ାଇଦେବି।"

ଜଗନ୍ନାଥ ଭାବି ଭାବି ଘରକୁ ଗଲେ। ତାରାମଣି ସମୁଦାୟ ବିବରଣ ଶୁଣି ସୀତା ଲାଗି ହାୟ ହାୟ କରିବାକୁ ଲାଗିଲେ। ଚୌଧୁରୀଏ ନିରଞ୍ଜନ ବାବୁଙ୍କୁ ଡକାଇ ପରାମର୍ଶ କରି ବସିଲେ।

ସରସ୍ୱତୀ ଓ ପୀତେଈ ନାନୀ ଏଣେ ଲାଗିଗଲେ କନ୍ୟାର ପରିଚର୍ଯ୍ୟାରେ। ଜ୍ୱାଁଇ ଉପରେ ତାଙ୍କର ଯେତେ ରାଗ ହେଲା ନାହିଁ, ସେତେ ହେଲା ଚୌଧୁରୀ ଉପରେ। ତଥାପି ଘରର ମୁରବୀ ସେ। ତାଙ୍କୁ କଣ କହିବେ ଭାବି ତୁନିହୋଇ ରହିଲେ। ତାଙ୍କର ସୁକୁମାରୀ ହରିଣୀ ଶିଶୁ ଯେ ନିଷ୍ଠୁର ବ୍ୟାଧ ହାତରେ ପଡ଼ିଛି, ଏହା ଭାବି ସରସ୍ୱତୀଙ୍କୁ ଭାତପାଣି[୧] ରୁଚିଲା ନାହିଁ। ଦିବାକାର ମଧ୍ୟ ଯଥା ସମୟରେ ଶ୍ୱଶୁରଙ୍କଠାରୁ ଓକିଲର ଚିଠି ଇତ୍ୟାଦି ପାଇଲେ ଏବଂ ତାହାକୁ ଉପଯୁକ୍ତ ଉତ୍ତର ଦେଇ ନିଶ୍ଚିନ୍ତହେଲେ। ସୀତାକୁ ଯେ ଆଉ ଥରେ ତାଙ୍କର ଏଗୁଣ୍ଠି ବନ୍ଧ ମାଡ଼ିବାକୁ ହେବ, ଏହା ସେ ମନରୁ ପୋଛି ପକାଇଲେ। ଏଥର ତାଙ୍କର ମନତୁଷ୍ଟିରେ ବ୍ୟସ୍ତ ହେଲେ ଶଙ୍କରୀ।

ଶଙ୍କରୀ ଦିନେ ସ୍ୱାମୀଙ୍କର ପ୍ରିୟା ହୋଇଥିଲା। ତାହାର କେତେ ସେବା ସେ କରି ନାହାନ୍ତି–ତାର ବେମାରି ବେଳେ କଟକ କଲିକତା ଘେନାଘେନି କରି କେତେ କଷ୍ଟ ସେ ଭୋଗି ନାହାନ୍ତି; କିନ୍ତୁ ଅଙ୍ଗୁରବାଳା ତାଙ୍କର ସର୍ବନାଶ କଲା। ସେହି ଅଭିମାନରେ ଶଙ୍କରୀ ସ୍ୱାମୀର କରଛଡ଼ା ହୋଇପଡ଼ିଲା। ମାତ୍ର ସୀତାର ବିବାହଦିନୁ ସେ ଚିନ୍ତାରେ ଚିତାରେ[୨] ଜଳୁଥିଲେ। ଆପଣା ସ୍ୱାମୀଙ୍କ ପରହସ୍ତଗତ[୩] ଦେଖି କେଉଁ ଯୁବତୀ ବ୍ୟଥିତ ହୁଏ ନାହିଁ ? କିନ୍ତୁ ତାଙ୍କ ବ୍ୟଥା ବୁଝୁଛି କିଏ ? ନବପରିଣୀତାର ପ୍ରେମରେ ଯେ ଦିବାକର ବିଭୋଳ! ସେସବୁ ଚିନ୍ତାରେ ସେ ଯେତେ ଜଳି ମରୁଥିଲେ ତା ଉପରେ ସୀତାର ରୂପ–ସୀତା ତାଠାରୁ ସୁନ୍ଦରୀ। ଏ ରୂପମୋହରେ ଯେ ତାହାର ସ୍ୱାମୀ ବଶୀଭୂତ ହେବେ, ଏହା କଣ ଦେହ ସହେ ?

ମାତ୍ର ସବୁ ଯେତେବେଳେ ବୃଥାକରି ସୀତା ବାପଘରକୁ ଗଲା, ଶଙ୍କରୀ ଛାତି କୁଣ୍ଢେମୋଟ ହୋଇଗଲା[୪]। ସେ ନବ ତମାଳଲତାପରି ନବ ଜୀବନରେ ଛେଇଁ ଉଠିଲା; ବଳେ ପଶି ପୁଣି ଦିବାକରଙ୍କର ସେବାରେ ଲାଗିଗଲେ। ଦିବାକରଙ୍କର ଅଙ୍କଲକ୍ଷ୍ମୀ ଆସନ ଦଖଲକଲା।

(୧) ଖାଦ୍ୟ, (୨) ମଶାଣିର ନିଆଁ, (୩) ଅନ୍ୟର ଅଧିକାରଭୁକ୍ତ, (୪) ଅତିଖୁସି, ଆନନ୍ଦଭାବ

ସୀତାର ଆସନ୍ନ ବିଚ୍ଛେଦ ଦିବାକରଙ୍କର ପ୍ରତି ତୀବ୍ର ଯନ୍ତଣାଦାୟକ ହୋଇଥିଲା। ତଦୁପରି ଶ୍ୱଶୁର କୁଆଁଙ୍କର କଳହ। ସେ ବିସ୍ମୃତି-ସାଗରରେ ସୀତାକୁ ବୁଡ଼ାଇ ଦେଇ, ପୁରୁଣା ଦେଉଳ ସଜାଡ଼ିବା ଭଳି ଶଙ୍କରୀକୁ ପୁଣି ସେବାଧିକାରର ନିଯୁକ୍ତକଲେ।

ଏଥିରେ ଉଆସର ଦାସୀ ହେମାଦେଈର ପ୍ରାଣରେ ଦାରୁଣ ଅନଳ ଜଳିଉଠିଲା। ହେମା ଦାସୀ ହେଲେ ମଧ ପରମସୁନ୍ଦରୀ। ପିଲାଦିନୁ ସେ ବାପଘରେ ଗେଲବସରରେ ବଢ଼ିଥିଲା। କର୍ମକୁ ସ୍ୱାମୀ ପାଇଲା ଡକେଇତ। ସ୍ୱାମୀ ଚୋରି ଅପରାଧରେ ଧରାପଡ଼ି ସାତବର୍ଷ ଜେଲ ଭୋଗିଲା। ହେମା ଚରିତ୍ର ହରାଇ ଗ୍ରାମରୁ ବାହାରି ଅଇଲା। ଦୁଃଖିଘର ହେଲେ ସୁଦ୍ଧା ସେ କରଣଘର ଝିଅ। କାମ ପାଇଟି ଖୋଜୁଁ ଖୋଜୁଁ ଜମିଦାର ଘର ଭେଟିଲା। ସେତେବେଳେ ଶଙ୍କରୀ ମରଣ ସଙ୍କଟ ପୀଡ଼ାରେ ଶଯ୍ୟାଗତା। ତାରି ଶୁଶ୍ରୂଷା ଲାଗି ସେ ଚାକିରି ପାଇଲା। ତାହାର ମୃଦୁ ମଧୁର ହାସ୍ୟ, ଅଙ୍ଗ ପ୍ରତ୍ୟଙ୍ଗର କାଞ୍ଚନପ୍ରଭା ଦିବାକରଙ୍କର ମନୋହରଣ କଲା। ନିବାକର ତାକୁ ପାଖଲଗା ପୋଇଲୀ କରିନେଲେ। କ୍ରମେ ତାହାର ଆଧିପତ୍ୟ ବଢ଼ିଲା। ତା ମୁଣ୍ଡରେ ସିନ୍ଦୂର, ଗୋଡ଼ରେ ଅଳତା ଉଜ୍ଜ୍ୱଳ ହୋଇଉଠିଲା; ପାନବୋଳରେ ଓଠ ବିମ୍ବଫଳକୁ ବଳିଲା। ଚିକଣ କଳା ମଖମଲ ଧଡ଼ି ବିଲାତି ଶାଢ଼ୀ ତାର ଗୌରଦେହ ଉପରେ ସୁନାପଦ୍ମକୁ କଳାନାଗ ବେଢ଼ିଲା ପରି ଶୋଭାପାଇଲା। ଆଉ ସେ ବଦନଶତଦଳର ଭ୍ରମର ହେଲେ ଦିବାକର। ସେ ଦୃଶ୍ୟରେ ପୋଡ଼ି ମରୁଥିଲା ଶଙ୍କରୀ। ମାତ୍ର ଅନ୍ତଃପୁରକୁ ସୀତାର ଆଗମନ ଦିନୁ ସଭିଙ୍କ ସୁଖ କନ୍ଦରରେ ବାଲି ମିଶିଲା। ଶଙ୍କରୀ ତ ଆଗରୁ ପାଖଛଡ଼ା ହୋଇଥିଲା। ଏବେ ହେମା ଆଡ଼େଇଗଲା। ପୁଣି ସୀତାର ଅନ୍ତର୍ଦ୍ଧାନରେ ଦୁହେଁ ଶୂନ୍ୟ ସିଂହାସନ ମାଡ଼ି ବସିଲେ। ଏକଆଡ଼େ ନବଚୂତଲତା—ଅନ୍ୟ ଆଡ଼େ ବିକଶିତ ଚମ୍ପକ; ଜଣେ ସ୍ତ୍ରୀ,-ଜଣେ ଦାସୀ; ଦୁଇ ପ୍ରିୟବତୀର ଜ୍ୱାଳାରେ ଅଥୟ ହେଲେ ଦିବାକର। କିନ୍ତୁ ଯାହାକୁ ତଡ଼ିଦେଲେ, ତାହାରି କତିରେ ତାଙ୍କର ମନ ପଡ଼ିରହିଲା। ସୀତାକୁ ବାପଘରକୁ ପଠାଇ ନିଜ ଜୀବନକୁ ସେ ଯେ କିପରି ଶୂନ୍ୟ କରିଛନ୍ତି, ତାହା ସେ ବର୍ତ୍ତମାନ ବେଶ୍ ବୁଝିପାରିଲେ।

ଦିନ ଦୁଇ ପହରରେ ଅନ୍ଦରମହଲରେ ସେ ବିଶ୍ରାମ କରୁଥିଲେ, ହାତ କତିରେ ଛୋଟ ମେଜ ଉପରେ ଏଣୁ ତେଣୁ ଗୁଡ଼ାଏ କାଗଜ ପଡ଼ିଥିଲା। ସେଥିରୁ ଖଣ୍ଡେ ଗଳ୍ପ ପୁସ୍ତକ ବାଛିଆଣି ସେ ପାଠରେ ମଗ୍ନ ହେଲେ। ଶଙ୍କରୀ ତାଙ୍କର ଗୋଡ଼ କତିରେ ଦରଆଉଜା ହୋଇ ଦୋହଲି ପଡ଼ିଥିଲା। ହେମାଦେଈ ରେକାବୀ ପୂର୍ଣ୍ଣ କରି ବାସନା ପାନ ଭାଙ୍ଗିଆଣି ତାଙ୍କ ମୁଣ୍ଡ କତିରେ ଠିଆହେଲା। ଦିବାକର ହାତବଢ଼ାଇ ପାନଖଣ୍ଡେ ନେଲେ। ହେମାଦେଈକୁ ଟାଣିଆଣି କତିରେ ବସାଇଲେ। ଶଙ୍କରୀର ଏହା ଦେଖି ଦେହରେ ଛୁରି ଚାଲିଗଲା। ସେ ହଠାତ୍ ହେମାକୁ ତିରସ୍କାର କରିବାକୁ ଲାଗିଲା।

ସେଦିନ ଦୁହିଁଙ୍କର ତୁମୁଳ କଳହ ହେଲା। ଦିବାକର ଦୁଇ ପକ୍ଷକୁ ଶାନ୍ତ କରି ନ ପାରି ଦାଣ୍ଡ ମହଲରେ ରହିଲେ। ଶଙ୍କରୀ ତାଙ୍କର ଦର୍ଶନ ସୁଦ୍ଧା ପାଇପାରିଲେ ନାହିଁ।

ବିଜୟଗର୍ବସ୍ଫୀତା ହେମାଦେଈ ଏଥର ବାବୁ ଉପରେ ଆଧିପତ୍ୟ ବିସ୍ତାର କରି ଉଆସର ରାଣୀ ହେବାକୁ ଚେଷ୍ଟାକଲା। ଏଥିରେ ଫୁଲର କ୍ରୋଧର ସୀମା ରହିଲା ନାହିଁ। ଫୁଲ ସେଦିନ ତାକୁ ଘରୁ କାଢ଼ିବାକୁ ବ୍ୟବସ୍ଥା କଲା। ହେମା ଯେତେ ହେଲେ ଦାସୀ-ସାଆନ୍ତାଣୀର ଅଧିକାର ତାର ନ ଥିଲା। ସେ ଭାଗ୍ୟକୁ ଆଦରି ବୁଡ଼ୀମା ସାଆନ୍ତାଣୀଙ୍କ ସହିତ ବଦ୍ରୀକୁଦ ଯାତ୍ରା କଲା। ଶଙ୍କରୀର ଜୟ-ଆହ୍ଲାଦରେ ମାଟିରେ ଗୋଡ଼ପଡ଼ିଲା ନାହିଁ। ସେ ମୋତିକୁ, ଫୁଲକୁ ବେଢ଼ି ବସି ଗଳ୍ପ କଲା। ପୋଇଲୀଟାର ଟାଣ ସେ ସହିବ ? କିନ୍ତୁ ନଈ ଅତଡ଼ାରେ ଯେ ନିଜେ ଠିଆ ହୋଇଥିଲା, ତାହା ସେତେବେଳେ ସୁଦ୍ଧା ଜାଣି ପାରିନଥିଲା; ଭାବିଲା-ସୀତା ଗଲା, ହେମା ଗଲା, ଏବେ ସେ ଚକ୍ରବର୍ତ୍ତିନୀ ସାମ୍ରାଜ୍ଞୀ ହେଲେ, ସ୍ୱାମୀ ମୁହଁକୁ ଚାହିଁ ସେ ସୁଖ ଆଶା ତାଙ୍କର ଉଡ଼ିଗଲା। ସ୍ୱାମୀ ନନ୍ଦିଆ ହାତରେ ଖବର ଦେଇ ପଠାଇଲେ, ସେହି ରାତିରେ ସେ କଲିକତା ଯାଉଛନ୍ତି, ପବନରେ ଗବଗଛ ଭାଙ୍ଗିପଡ଼ିଲା ପରି ଶଙ୍କରୀର ଧୈର୍ଯ୍ୟ ଭାଙ୍ଗିପଡ଼ିଲା। ସେ ପୁଣି ଅନାଥିନୀ ପରି କାଳ କାଟିବାକୁ ଲାଗିଲା।

ଦିବାକର କଲିକତାକୁ ଆସି ଅମୀୟାର ଶରଣ ପଶିଲେ। ଦୈବ ଯୋଗକୁ ଅମୀୟା ତାଙ୍କୁ ଆଡ଼ନେତ୍ରରେ ସୁଦ୍ଧା ଚାହିଁଲା ନାହିଁ। ଅର୍ଥପ୍ରିୟ ଦିବାକରଠାରୁ ବଳି ଜଣେ ମହାଧନୀ, ବର୍ତ୍ତମାନ ତାର କାନିପୁଟୁଳିରେ। ସେ ଦୁନିଚାନ୍ଦ ଆଗରେ ଦିବାକର ? ଯାହର ପିତାର ଗହଣାଦୋକାନ-ହୀରା, ନୀଳା, ମୋତି, ମାଣିକ୍ୟର କାରବାର କଲିକତା, ବୋମ୍ବାଇ, ପଞ୍ଜାବ ଓ ରାଜପୁତନା ବ୍ୟାପିଛି, ସେ କୋଟିପତିର ସନ୍ତାନ କତିରେ ସାମାନ୍ୟ ଜମିଦାର ଦିବାକର ଅମୀୟା କତିରୁ ଏକ ପ୍ରକାର ତଡ଼ାଖାଇ ନିଜର ପୁରୁଣା ପ୍ରେୟସୀ ଅଙ୍ଗୁରବାଲାକୁ ଖୋଜିବସିଲେ। ତାଙ୍କର ଅଙ୍ଗୁର-ତାଙ୍କ ପ୍ରାଣର ଅଙ୍ଗୁରବାଲା କ'ଣ ତାଙ୍କୁ ଏ ଦୁଃସମୟରେ ତ୍ୟାଗକରିବ ? ତା ପରି ମନୋମୋହିନୀ, ଗୁଣବତୀକୁ ତାଙ୍କୁ ଅଖାତର କରିବ ? ମିନର୍ଭା ଥିଏଟରର ସେ ମଧୁର ରାତ୍ରିମାନ ମନେପଡ଼ିଲା। ଅଙ୍ଗୁରବାଳାର ସେହି ପ୍ରାଣସ୍ପର୍ଶୀ 'ଲୟଲା'ର ଅଭିନୟ ! ସେହି 'ଯୁଲେଖା' ଆତ୍ମତ୍ୟାଗ ଚରିତ୍ର ! ସେ କଣ ରକ୍ତମାଂସ ଶରୀର ନୁହେ ! ଯେ ଏପରି ସୁନ୍ଦର ଅଭିନୟ କରିପାରେ, ତା ପ୍ରାଣ କଣ ପାଷାଣ ! ଦିବାକରକୁ ସେ କି ଭୁଲିଥିବ ?

ଦିବାକର ସହସ୍ର ଆଶାସ୍ୱପ୍ନ ରଚନା କରି, ଉତ୍କୃଷ୍ଟ ଉପହାର ଘେନି ସୁବେଶମଣ୍ଡିତ ହୋଇ ଅଙ୍ଗୁରବାଳାର ଭବନରେ ଉପସ୍ଥିତ ହେଲେ। ଅଙ୍ଗୁରବାଳା ବଡ଼ ଆଦର କରି ତାଙ୍କୁ ଗ୍ରହଣକଲା। କେତେ ଦିନ ତାହାର ସାହଚର୍ଯ୍ୟ ଲାଭକରି ଦିବାକର ସବୁ ଭୁଲିଗଲେ-ସୀତା, ଶଙ୍କରୀ, ହେମାଦେଈ ମନେ ପଡ଼ିଲେ ନାହିଁ। ନିତି ଥିଏଟର ଦେଖା, ମଦ୍ୟପାନ, ମୋଟରବୁଲାରେ ଜୀବନ ଆରାମରେ କଟିବାକୁ ଲାଗିଲା।

ଦିନେ ସେ ଓ ଅଙ୍ଗୁରବାଳା ଖିଦିରିପୁର ଡକ୍‌କୁ ବୁଲି ଯାଇଥିଲେ। ଆସୁ ଆସୁ ରାତ୍ରି ହୋଇଗଲା। ସେ ଦିନ ଦିବାକର ଅତ୍ୟନ୍ତ ମଦ ଖାଇଥିଲେ। ହଠାତ୍ ବାଟରେ ଗୁଣ୍ଡାଦଳ ଉଭୟଙ୍କୁ ଆକ୍ରମଣକରି ସର୍ବସ୍ୱ ଛଡ଼ାଇନେଇ ପଳାଇଲେ। ଯେତେବେଳେ ଦିବାକରଙ୍କର

ଚେତନା ହେଲା, ସେତେବେଳେ ସେ କ୍ୟାମ୍ବେଲ ଡାକ୍ତରଖାନାରେ। ତାଙ୍କର ମୁଣ୍ଡରେ ଗୋଟିଏ ସ୍ଥାନରେ ଆଘାତଲାଗି ଫାଟିଯାଇଥିଲା। ରକ୍ତସ୍ରାବରେ ସେ ମୂର୍ଚ୍ଛା ଯାଇଥିଲା। ଘଟଣା ତାଙ୍କ ସ୍ୱପ୍ନପରି ମନେହେଲା।

ତା ପରଦିନ ଡାକ୍ତରଖାନାରେ, ନନ୍ଦିଆ ଜ୍ୟୋତିଷ ଡାକ୍ତରଙ୍କୁ ଘେନି ପହଞ୍ଚିଲା। ଡାକ୍ତର ବାବୁ ତାଙ୍କୁ ଦେଖି ବିସ୍ମିତିହେଲେ। ଦିବାକର ବନ୍ଧୁ କତିରେ ସମୁଦାୟ ଦୁଃଖ ହାଲ କହିଗଲେ। ଜ୍ୟୋତିଷ ବାବୁ କିଛିକ୍ଷଣ ଭାବି କହିଲେ, ''ସର୍ବନାଶ! ଅଙ୍ଗୁରବାଳା ଫାନ୍ଦରେ ପଡ଼ିଗଲ। ତୁମ୍ଭଠାରୁ ପ୍ରତିଶୋଧ ନେବାକୁ ସେ ବସିଥିଲା, ଏହା ମୁଁ ଜାଣେ।'' କିନ୍ତୁ ଦିବାକର ସେ କଥା ବିଶ୍ୱାସକଲେ ନାହିଁ। ସେ ଦୁଇଦିନ ପରେ ପୁନର୍ବାର ଅଙ୍ଗୁରବାଳା ନିକଟରେ ଉପସ୍ଥିତ ହେଲେ। ଅଙ୍ଗୁରବାଳା ତାଙ୍କୁ ଦେଖି ପ୍ରଥମେ ଚମକିଗଲା, ପରେ କାନ୍ଦି ପକାଇଲା–ଗୁଣ୍ଡାଦଳର ନିଷ୍ଠୁରତା ବର୍ଣ୍ଣନାକରି ବହୁତ ଶୋକ ପ୍ରକାଶକଲା। ନିଜର ମଧ ସେ ରାତ୍ରିରେ ଗୁରୁତର ଆଘାତ ହୋଇଥିବା ବିଷୟ ବର୍ଣ୍ଣନାକଲା। ଦିବାକର ତାହା କଥାରେ ମୁଗ୍ଧହୋଇ କହିଲେ ''ଅଙ୍ଗୁରବାଳା! ତୁମେ ଏକା ସ୍ତ୍ରୀ ରତ୍ନ, ମୋର ସୁଖଦୁଃଖ ସବୁଥିରେ ତୁମର ସହାନୁଭୂତି। ମୋ ଲାଗି ତୁମେ ଗୁଣ୍ଡାଙ୍କ ହାତରେ ମାଡ଼ ବି ଖାଇଲ! କିନ୍ତୁ ମୁଁ ନରାଧମ-ତୁମକୁ ତ୍ୟାଗ କରି ଯାହା ବିବାହକଲା।'' ଦିବାକର କ୍ଷମାଭିକ୍ଷା କରି, ତାହାର ଗୋଡ଼ ଧରିପକାଇଲେ। ଅଙ୍ଗୁରବାଳା ଗଭୀର ସ୍ନେହରେ କହିଲା, ''ତୁମକୁ କ୍ଷମା କରିବି ପ୍ରିୟତମ, ତୁମ ଲାଗି ଯେ ମୁଁ ଜୀବନ ଦେଇପାରେ। ତୁମର ଦଶଟା ସ୍ତ୍ରୀ ଥାଆନ୍ତୁ, କିନ୍ତୁ ମୋ ପରି କେହି ହେବେ ନାହିଁ। ତୁମ ଲାଗି ମୁଁ ମିନର୍ଭା ଥିଏଟର ଛାଡ଼ିଲି।'' ଦିବାକର ମୋହିତ ହୋଇଗଲେ। ଜ୍ୟୋତିଷ ଡାକ୍ତର ଯେ ଅଙ୍ଗୁରବାଳା ନାମରେ ମିଥ୍ୟା ଅପବାଦ ଦେଇଛନ୍ତି, ଏହା ଭାବି ତାଙ୍କର ରାଗ ହେଲା। ସେ ସେଠାରୁ ବସା ଉଠାଇ 'ଗ୍ରାଣ୍ଡ ହେଟେଲ'ରେ ରହିଲେ।

ଅଙ୍ଗୁରବାଳାର ମନୋବାଞ୍ଛା ପୂର୍ଣ୍ଣହେଲା। ଏ ଥର ଦିବାକରଙ୍କୁ ସଂପୂର୍ଣ୍ଣରୂପେ ଆୟର କରି, ତାଙ୍କୁ ଦେଶଛଡ଼ା କରିବାର ଉପାୟ ସ୍ଥିରକଲା। ତାହାର ବୟସ ହୋଇ ଆସିଥିଲା; କ୍ରମେ ରୂପର ମୋହ ତୁଟୁଥିଲା, ଥିଏଟରରୁ ତଡ଼ାଖାଇ ପୁଣି ସେଠାକୁ ଯିବାର ଆଉ ସାହସ ନ ଥିଲା। ଅତିରିକ୍ତ ବିଳାସିତାର ଖରଚ ଯୋଗାଇବା ପାଇଁ ଭାବନା[୧] ପଡ଼ିଥିଲା। ଏତିକିବେଳେ ଦିବାକର ହାତମୁଠାରେ ପଡ଼ିଯିବାର[୨] ତାହାର ପରମ ଆନନ୍ଦହେଲା।

ଏତେ ଦିନ ପରେ ଦିବାକର ଯାହା ଚାହିଁଥିଲା, ତାହା ଘଟିଲା। ଅଙ୍ଗୁର ତାଙ୍କ ସହିତ କଟକ ଯିବାକୁ ରାଜିହେଲା। ଦିବାକର ହାତ ବଢ଼ାଇ ସ୍ୱର୍ଗଚାନ୍ଦ ପାଇଲେ! କଟକ କାଠଯୋଡ଼ି କୂଳରେ ବିଶାଳ ଭବନ ଭଡ଼ାକରି ତାଙ୍କୁ ରଖିଲେ। ଅଙ୍ଗୁରବାଳା ଜମିଦାରର ଗୃହଣୀ ହୋଇ ଇନ୍ଦ୍ରାଣୀ ସୁଖ ଲାଭକଲା ପରା! ଦିବାକର ନିଜ ବାଲୁବଜାର ବସାରେ ରହିଲେ। ଯଥାସମୟରେ ଶ୍ୱଶୁର ଘରେ ସବୁ ଖବର ପହଞ୍ଚିଲା। ପ୍ରଥମେ ସୀତା ଏ କଥା କାନକୁ ଘେନିଲା[୩] ନାହିଁ। କିନ୍ତୁ କେଜାଣି କାହିଁକି ଅନପେକ୍ଷିତ ଈର୍ଷାରେ ତା ଛାତି ଗୁଗୁ ଗୁଗୁ ହେଲା। ମନର ଅକାରଣ

(୧) ଚିନ୍ତା, ସମସ୍ୟା, (୨) ଆୟତ୍ତ, (୩) ଗୁରୁତ୍ୱ ନ ଦେବା

ଭାନ୍ତି ଭାବି ଯେ ନିଜକୁ ବୋଧ ଦେବାକୁ ଲାଗିଲା। ସନ୍ଧ୍ୟାବେଳେ ଅଶୋକ ଚଉତରା ମୂଳେ ବସି ପୀତେଇ ନାନୀ ଓ ସରସ୍ୱତୀ ଯେତେବେଳେ ଏ କଥା କାଢ଼ିଲେ, ରାଗ ଓ ଲଜ୍ଜାରେ ସେ ମର୍ମେ ମର୍ମେ ପୋଡ଼ିଗଲା।

ସାତ ମାସ ହେଲା ବାପଘରକୁ ଆସିଲାଣି। ସ୍ୱାମୀ ବନ୍ଧନର ମୁକ୍ତି ପାଇ କେତେଦିନ ସେ ଉନ୍ମୁକ୍ତା ବିହଙ୍ଗିନୀ ପରି ଉଡିବୁଲିଲା। ତା ମନରେ ହୋଇ ଚିରକାଳ ବାପଘରେ ରହିଲେ ମଧ, ତାର କିଛି କଷ୍ଟହେବ ନାହିଁ। ରଘୁନାଥ 'ଫୋଟୋ' ଖଣ୍ଡିକ ହେଲା ତାହର ଜ୍ଞାନ ଧ୍ୟାନ,-ସେ ସେଥିରେ ଫୁଲ ଚନ୍ଦନ ଦେଇ ପୂଜା କରିବାକୁ ଲାଗିଲା। ତାହାର ସାକ୍ଷାତ୍ ଦେବତା ଯେ ସେଥିରେ ଚିତ୍ରିତ। ରଘୁନାଥକୁ କଣ ସେ ଏତେ ସହଜରେ ଭୁଲି ପାରିବ? ଶତ ଶତ ନୀରବ ଯାମିନୀରେ ରଘୁନାଥକୁ ମନେପକାଇ ତାହାର ଆଖିପତା ପଡ଼ି ନାହିଁ। ଶତ ଦିବଲୋକରେ ପ୍ରଭାତ-ସୂର୍ଯ୍ୟକୁ ନମସ୍କାର କଲାବେଳେ ସେ ଆଗ ରଘୁନାଥକୁ ନମସ୍କାର କରିଛି। ରଘୁନାଥ ଯେ ତାହାର ପ୍ରାଣର ଠାକୁର। ସେ ଜାଣେ, ତାଙ୍କୁ ଆଉ ପାଇବ ନାହିଁ, କିନ୍ତୁ ସେ ତ ତାଙ୍କୁ ପାଇସାରିଛି। ଏହି ଅଶୋକ ଚଉତରା ତାହାର ଓ ରଘୁନାଥର ମିଳନର ସାକ୍ଷୀ।

କିନ୍ତୁ ଏ ପୁଣି କଣ? ବେଳେ ବେଳେ ମନ କାହିଁକି ବିଦ୍ରୋହୀ ହୁଏ। ବେଳେବେଳେ କାହିଁକି ଦିବାକରଙ୍କର ମନୋହର ମୂର୍ତ୍ତି ତାହାର ଆଖି ଆଗରେ ନାଚି ଉଠେ? ସେ ହଜାର ଚେଷ୍ଟାକଲେ ସୁଦ୍ଧା ଶାଶୂଘରକୁ ଭୁଲି ପାରୁ ନାହିଁ। ଦିବାକରଙ୍କର ଅନେକ କଥା ତାର କାନରେ ବାଜିଯାଏ। କେତେଥର ସେ ବ୍ୟାକୁଳଭାବରେ ତା ନିକଟରେ ପ୍ରେମ ଭିକ୍ଷା କରିଛନ୍ତି, କିନ୍ତୁ ସେ ଅନାଦର କରି ଉପେକ୍ଷାକରିଛି; କେତେ ଥର ସେ ତାଙ୍କୁ ସ୍ନେହରେ କତିକି ଟାଣି ନେଇଛନ୍ତି, ସେ ରାଗରେ ଦୂରକୁ ପଳାଇଛି; ସେଥିପାଇଁ ସିନା ଆଜି ତାର ଏ ଦଶା, ନୋହିଲେ, ସେ କଣ ବାପଘରେ ଥାଆନ୍ତା-ଆଉ ତାର ସ୍ୱାମୀ ଗୋଟିଏ ଛାର ବେଶ୍ୟାକୁ ନେଇ ରହନ୍ତେ! ସୀତା ଦିବାକରଙ୍କୁ ନିଜର ସ୍ୱାମୀ ବୋଲି ମନେ ମନେ ଭାବିସାରିଲାଣି। ଦିବାକରର ଦୋଷ କଅଣ? ସେ ମନ୍ଦ, ସେ ମଦୁଆ ସତ; କିନ୍ତୁ କେବେ କି ସୀତା ତାଙ୍କୁ ଭଲ ବାଟକୁ ଆଣିବାପାଇଁ ଯତ୍ନକରିଛି। ଏହି କଣ ସ୍ତ୍ରୀର ସ୍ୱାମୀ ପ୍ରତି କର୍ତ୍ତବ୍ୟ? ବୁଦ୍ଧିମତୀ ସୀତା ବୁଝିଲା, ତାହାର ବିବେକ ତାଙ୍କୁ ଦଂଶନକରୁଛି, ତାହର ହୃଦୟ ଭିତର କହୁଛି-'ସୀତା, ତୁ ପାପ କରୁଛୁ। ନିର୍ଦ୍ଦୋଷ ସ୍ୱାମୀଙ୍କୁ ଅକାରଣ ପରିତ୍ୟାଗ କରିଛୁ। ବାପ ସିନା ଟଙ୍କା ଲୋଭରେ ତତେ ବିକିଛି, ଦିବାକର ତ ତୋର ମନ୍ଦ ପାଞ୍ଚୁ ନ ଥିଲା? ତୁ ତାର ହୋଇଥିଲେ ସେ କଣ ଆଉ ଅଙ୍ଗୁରବାଳାକୁ ଘେନି ଥାଆନ୍ତା?'' କିନ୍ତୁ ପରକ୍ଷଣରେ ରଘୁନାଥର ଚିନ୍ତା ସବୁ ବିଚାର ବିବେଚନାକୁ ବୁଡ଼େଇଦିଏ। ସେ କେଉଁ ବାଟରେ ଯିବ, ଠିକ୍ କରି ନ ପାରି କାନ୍ଦିମରେ।

ହେଲେ ଆଜି ମା ଓ ପୀତେଇ ନାନୀ କଥାରେ ତାର ମନ କଣ ହୋଇଗଲା। ତା ମନରେ ହେଲା, ତାରି ଦୋଷଯୋଗୁଁ ବର୍ତ୍ତମାନ ଦିବାକରର ଏ ଦୁର୍ଗତି। ସ୍ୱାମୀଙ୍କୁ ଆପଣାର

କରିଥିଲେ ସେ କଣ ବାଟକୁ ଆସି ନ ଥାନ୍ତେ ? ବାବୁ ଓ ରେବତୀର ଦାମ୍ପତ୍ୟ ଜୀବନ କି ସୁନ୍ଦର, କି ମଧୁମୟ-ଗୋଟାଏ ଡାଳରେ ଯୋଡ଼ାଏ ଗୋଲପ ପରି ଫୁଟିରହିଛନ୍ତି। ତାଙ୍କର ପରସ୍ପରର ପ୍ରେମ ଓ ସୌହାର୍ଦ୍ଦ୍ୟ କି ଲୋଭନୀୟ ! ସେ କଣ ଏପରି ହୋଇପାରି ନ ଥାନ୍ତା ? ସେ କଣ ଦିବାକରର ମନ ଭୁଲାଇ, ତାକୁ ହାତମୁଠାରେ ରଖିପାରି ନ ଥାନ୍ତା। ହାୟ, ସେ କିଛି କଲା ନାହିଁ।

ରାତିରେ ଶେଯରେ ଶୋଇ ସେ ଭାବନାରେ ବୁଡ଼ିଗଲା। ପରଦିନ ବଡ଼ିଭୋରୁ ସେ ଭିତର ପିଣ୍ଡାରେ ଠିଆ ହୋଇଥିଲା। ଚୌଧୁରୀଏ ଉଠି ଦାଣ୍ଡକୁ ଗଲେ। ସୀତାକୁ ଚାହିଁ ତାଙ୍କର କେଜାଣି କାହିଁକି ଭାରି ରାଗହେଲା। ସେ ସ୍ତ୍ରୀକୁ ଉଦ୍ଦେଶ୍ୟ କରି କନ୍ୟାକୁ ମର୍ମଭେଦୀ କଥାଗୁଡ଼ିଏ ଶୁଣେଇଦେଲେ। ସୀତା ଛାତିରେ ଦାରୁଣ ଶର ବିନ୍ଧହେଲା। ସତେ ତ, ସେ ଏ ଘରେ ପର ! ବାପ ଭାଇର କମେଇ[୧] ଖାଇବାର ତାର ଆଉ କି ଅଧିକାର ? ଦିନେ ତ ନନା ଏହିପରି କହିଥିବାରୁ ବଡ଼ନାନୀ ଏ ଦୁଆର ମାଡ଼େ ନାହିଁ। ସେ ପୁଣି କି ଅଲାଜୁକପଣରେ ଆସି ସାତ ଆଠ ମାସ ବସି କାଳ କାଟିଲାଣି ! ଧିକ୍ ତା ଜୀବନ-ତା ସ୍ୱାମୀ ଥାଉଁ ଥାଉଁ ସେ ଏ ଝିଙ୍ଗାସ[୨] ଶୁଣିଲା ! ସେ ଅଭିମାନରେ ଓପାସ ଭୋକରେ ଶୋଇ ରହିଲା-ମା, ଭାଉଜ, ପାଟେଣ ନାନୀ ଯେତେ ଡାକିଲେ, ଶୁଣିଲା ନାହିଁ। ସେ ଶୁଖି ମରିବ ପଛକେ, ଆଉ ବାପଘରେ ପାଣି ଛୁଇଁବ ନାହିଁ-ଏହି ହେଲା ତାର ସାର[୩] ବିଚାର।

କିନ୍ତୁ ସେ ଯିବ କୁଆଡ଼େ? ଦିବାକର ? ତାକୁ ସେ ଯେ ତ୍ୟାଗ କରିଛି। ସେ ସେଠାକୁ ତ ବଳେ ପଶିଯାଇ ପାରିବ ନାହିଁ ? ନା, ନା, ସେ କୁଆଡ଼େ ଯିବ ନାହିଁ-ଏ ଥର ନିଶ୍ଚେ ମରିବ।

ସଞ୍ଜ ବୁଡ଼ି ଆସୁଥିଲା। ଚୌଧୁରୀଏ କଚେରିଠାରୁ ଖବର ପାଇଲେ, ସୀତା ଓପାସ୍ କରି ବସିଛି। ତାଙ୍କ ମନ କଣ ହୋଇଗଲା। ସେ କାମ ଦାମ ଛାଡ଼ି ବାହାରି ଆସିଲେ; ଆସି ଯେଉଁ ଘରେ ଶୋଇଥିଲା, ସେ ଘର ଦୁଆରେ ଡାକିଲେ ,- ''ମା'', ସୀତାର ମନ ତରଳି ଗଲା। ବାପ ଉପରେ ଅଭିମାନ ! ସୀତା ସାନପିଲା ପରି କାନ୍ଦି ପକାଇଲା। ଚୌଧୁରୀଏ ଆସି ଶେଯ କଡ଼ରେ ବସିଲେ। କରୁଣ କଣ୍ଠରେ କହିଲେ-''ଛି ମା, ତୁ ମୋ ଉପରେ ରାଗିଲୁ ! ମୁଁ ତୋ ବାପ, ମାରିବି, ତାରିବି। ତତେ ପଦେ କଥା କହିଲି, ତୁ ସହିଲୁ ନାହିଁ, ଆଉ ସହିବୁ କଣ ?''

ସୀତା ଉତ୍ତର ଦେଇ ପାରିଲା ନାହିଁ। ବାପାର କର୍କଶ ମୂର୍ତ୍ତି ଭିତରେ ଯେ ଏତେ ସ୍ନେହ ଅଛି, ଏ କଥା ସେ ଆଜି ପ୍ରଥମ ଜାଣିଲା। ଚୌଧୁରୀଏ ତା ମୁଣ୍ଡ କୋଳକୁ ନେଲେ। ତାଙ୍କ ଆଖି ତିନ୍ତିଗଲା। ସେ ଗଭୀର ବ୍ୟାକୁଳ ସ୍ୱରରେ କହିଲେ-''ମଣିଷ ଭଲ ଭାବି ସବୁ କରେ, କର୍ମକୁ ମନ୍ଦ ଫଳେ। ଦିବାକରର ହାତଧରି ତୁ ରାଜରାଣୀ ହେବୁ, ଏହି ତ ଥିଲା ମୋ ବାଞ୍ଛା। ସେ ଦୁଷ୍ଟ ଯେ ତୋତେ ତ୍ୟାଗକରିବ, କିଏ ଜାଣିଥିଲା ? ତାହାର ଭଦ୍ରତାରେ

(୧) ରୋଜଗାର, (୨) ମୁହଁଛିଂଚଡ଼ା କଥା, ମର୍ମଦାହି କଥା, (୩) ସ୍ପଷ୍ଟ

ଯେ ମୁଁ ଭୁଲିଗଲି।'' ସରସ୍ୱତୀ ନିକଟରେ ଠିଆ ହୋଇ ଏ ଦୃଶ୍ୟ ଦେଖିଲେ। ଯେଉଁ ସ୍ୱାମୀକୁ ସେ କେବଳ ପିଶାଚ ବୋଲି ଭାବି ଏତେ କଷ୍ଟ ପାଉଥିଲେ, ତାଙ୍କର ଏ ବ୍ୟବହାର ଦେଖି ମନଟା ବଦଳି ଗଲା। ବାପ କଣ ଝିଅର ଅମଙ୍ଗଳ ଚାହାନ୍ତା ?

ସୀତା ଉଠି ଭୋଜନରେ ବସିଲା। କିନ୍ତୁ ସେଦିନ ସେ ସ୍ୱାମୀଘରକୁ ଯିବାପାଇଁ ଉଦ୍‌ଗ୍ରୀବ ହୋଇ ରହିଲା। ଏହି ସମୟରେ ତା'ର ମାମୁଁ ପରମାନନ୍ଦ ଆସି ତାକୁ ଅଜାଘରକୁ ଘେନିଗଲା। ମାଇଁ କୌଶଲ୍ୟାର ଆଦର ଯତ୍ନ ଓ ମାମୁଁ ଝିଅ ଭଉଣୀ ଅହଲ୍ୟାର ସଙ୍ଗ ପାଇ ସେ ପୁଣି ସ୍ୱାମୀଘରକୁ ଯିବ କଥା ପଛକୁ ପକେଇଦେଲା। ପୋଡ଼ିଗଲା ତିଅଣର କି ସୁଆଦ-ଗଲେ କଣ ଆଉ ସେ ଆଦର ପାଇବ ? ଅହଲ୍ୟା ମଧ ଭଉଣୀକୁ ସେହି ଶିକ୍ଷାଦେଲା।

ଅହଲ୍ୟା ସୀତାଠାରୁ ବଡ଼। ପୁଅ ଝିଅ ଯୋଡ଼ିକର ମା, ସ୍ୱାମୀ ତାଙ୍କ ମୋହରିର କାମ କରନ୍ତି। ସେଥିରେ ନଣନ୍ଦ, ଦିଅର ଗୋଛାଏ। ସ୍ୱାମୀର ଦାରିଦ୍ର୍ୟ ହେତୁ ସେ ବରଷରେ ଛ ମାସ ବାପଘରେ କଟାଏ। ସେଥିପାଇଁ ଶାଶୂ ଓ ସ୍ୱାମୀ ପ୍ରତି ତାର ଅଭକ୍ତି ଓ ଅଶ୍ରଦ୍ଧାର ସୀମା ନ ଥିଲା। ତାହାର ନିରୀହ ସ୍ୱାମୀ ଅର୍ଜୁନ ତାକୁ ପଦେ ହେଲେ ପାଟି ଫିଟାନ୍ତି ନାହିଁ। ସ୍ୱାମୀ ଉପରେ ନିଜ କର୍ତ୍ତୃତ୍ୱ ବିଷୟ ବର୍ଣ୍ଣନାକରି ସୀତାକୁ ମଧ ସେଥିରେ ଦୀକ୍ଷା ଦେବାକୁ ଅହଲ୍ୟା ଯତ୍ନବାନ ହେଲା।

ଅହଲ୍ୟାଠାରୁ ଶିକ୍ଷାପାଇ, ସୀତାହୀନତା ଅଙ୍ଗୀକାର କରି ସ୍ୱାମୀ ଓ ଶାଶୂ କତିକି ଫେରିଯିବାପାଇଁ ଆଉ ଗୋଡ଼ ଟେକିଲା ନାହିଁ।



## ଊନବିଂଶ ଅଧ୍ୟାୟ

ପୋଲିସ ଇନ୍‌ସପେକ୍ଟର ବିନୋଦବିହାରୀ ବାବୁଙ୍କର ସାନ ଭାଇ ରାସବିହାରୀ ସହିତ ରଘୁନାଥର ବନ୍ଧୁତ୍ୱ କ୍ରମେ ଘନିଷ୍ଠତାରେ ପରିଣତ ହେବାକୁ ଲାଗିଲା।

ରଘୁନାଥ ରାସୁ ବାବୁଙ୍କ ସହିତ ସାରା କଲିକତା ବୁଲିଲା। ବସି ବସି ପରର ଅନ୍ନ ଧ୍ୱଂସ କରିବା ତାର ଇଚ୍ଛା ନ ଥିଲା; କିନ୍ତୁ ସହଜରେ କେଉଁଠି ଚାକିରି ମିଳିଲା ନାହିଁ। ଖଣ୍ଡେ ଚାକିରି ଯେଉଁଠି, ସେଠି ଶହେ ଶହେ ଲୋକ-କିଏ ବି.ଏ., କିଏ ଏମ୍.ଏ.; ପୁଣି ସମସ୍ତେ ବଙ୍ଗାଳୀ ବାବୁ, ରଘୁକୁ ପଚାରେ କିଏ ? ଶେଷକୁ ସେ ବଡ଼ ଚାକିରିରୁ ନିରାଶ ହୋଇ ଦୋକାନରେ ଗୁମାସ୍ତା କାମ ଖଣ୍ଡିଏ ଖୋଜିବସିଲା। ତହିଁରେ ମଧ ନିରାଶ ହେବାକୁ ପଡ଼ିଲା। ଅବଶେଷରେ ରାସୁ ବାବୁଙ୍କର ବନ୍ଧୁ ଗିରୀଶ ଦତ୍ତଙ୍କର ପିତା ଉମେଶ ବାବୁ ଦୟା କରି ତାକୁ 'ଦେଶେର କଥା' ଅଫିସରେ ଗୋଟିଏ ସାନ କିରାଣୀ କାମ ଦେଲେ। ରଘୁନାଥ ତିରିଶ ଟଙ୍କା ଦରମାରେ ସେଠି ଭର୍ତ୍ତିହେଲା।

ଉମେଶ ବାବୁ 'ଦେଶର କଥା' ପତ୍ରିକାର ସଂପାଦକ। ତାହା ବିଶ୍ୱକୋଷ ପ୍ରେସରୁ ପ୍ରକାଶିତ ହୁଏ। ସେ ପ୍ରେସର ସ୍ୱତ୍ୱାଧିକାରୀ କେବଳକୃଷ୍ଣ ହାଲଦାର। ସେ ପୂର୍ବେ ଜାତିରେ ଥିଲେ କୈବର୍ତ୍ତ, ବର୍ତ୍ତମାନ ନବବିଧାନୀ ବ୍ରାହ୍ମ।

କେବଳକୃଷ୍ଣ ବାବୁଙ୍କର ପିତା ଶ୍ରୀ ରାମକୃଷ୍ଣ ମାଛର ବ୍ୟବସାୟ କରି ଲକ୍ଷାଧିପତି। କଲିକତାରେ 'ନର୍ସ ରସା ରୋଡ୍' ୯ ନମ୍ବରରେ ତାଙ୍କର ବିଶାଳ ସୁଦୃଶ୍ୟ ବାସଭବନ। ତାଙ୍କର ତିନି ପୁଅ-ଶିବକୃଷ୍ଣ, ବଟକୃଷ୍ଣ ଓ କେବଳକୃଷ୍ଣ। ଯେତେବେଳେ କେବଳକୃଷ୍ଣର ବୟସ ୩ ବର୍ଷ, ସେତେବେଳେ ସେ କେଶବଚନ୍ଦ୍ର ସେନଙ୍କ ବକ୍ତୃତାରେ ଆକୃଷ୍ଟ ହୋଇ ସପରିବାର ବ୍ରାହ୍ମ ହୋଇଥିଲେ।

ଶିବକୃଷ୍ଣ ପୈତୃକ ବ୍ୟବସାୟ ବୁଝନ୍ତି। ଓଡ଼ିଶାରେ ଚିଲିକା ଅଞ୍ଚଳରୁ କଲିକତାକୁ ମାଛ ଆମଦାନି କରି ବାର୍ଷିକ ଲକ୍ଷ ଲକ୍ଷ ଟଙ୍କା ଆୟକରନ୍ତି। ବଟକୃଷ୍ଣ ବିଲାତଫେରନ୍ତା ବାରିଷ୍ଟର। ଆଉ କେବଳକୃଷ୍ଣ ବିଶ୍ୱସେବା ପ୍ରେସର ଅଧିକାରୀ। ତିନି ଭାଇଙ୍କ ପରିବାର ଏକତ୍ର ଥାଆନ୍ତି।

ବିଶ୍ୱସେବା ବୃହତ୍ ପ୍ରେସ, ତହିଁର ନାନା ବିଭାଗ ମଧ୍ୟରୁ 'ଦେଶର କଥା' ଅଫିସ ଗୋଟିଏ ଛୋଟ ବିଭାଗ, ପୁଣି ସେ ବିଭାଗରେ ରଘୁନାଥ ତିରିଶ ଟଙ୍କିଆ କିରାଣୀ। ତଥାପି ପ୍ରେସର ସ୍ୱତ୍ୱାଧିକାରୀ କେବଳକୃଷ୍ଣଙ୍କର ସୁଦୃଷ୍ଟି ରଘୁନାଥ ଉପରେ ପଡ଼ିଲା, ଏଥିରେ ଆଶ୍ଚର୍ଯ୍ୟ ହେବାର କଥା, କିନ୍ତୁ ଜଗତ ବିଧାତାଙ୍କର ଲୀଳାଭୂମି।

ପାଠକେ ପୂର୍ବରୁ ଜାଣନ୍ତି, ରଘୁନାଥର ରୂପ ଅତି ସୁନ୍ଦର। ତାହା ଚେହେରାର ବିଶେଷତ୍ୱ ପାଇଁ ହଠାତ୍ ସେ ସମସ୍ତଙ୍କ ଭିତରେ ବାରିହୋଇପଡ଼େ। ତାହାର ଆଖି ଦିଓଟିର ଅପୂର୍ବ ଜ୍ୟୋତି ଓ ସୁନ୍ଦର ଚାହାଣିରେ ମୋହିନୀ ଶକ୍ତି ଥିଲା କିଜାଣି, ତାହା ମାୟାର ଦୃଷ୍ଟି ଆକର୍ଷଣ କଲା। ମାୟା ଦେବୀ କେବଳବାବୁଙ୍କର ଜ୍ୟେଷ୍ଠା କନ୍ୟା। ସେ ବେଥୁନ କଲେଜରୁ ବି.ଏ ପାଶ କରିଥିଲା। ସେ ଭାରୀ ବୁଦ୍ଧିମତୀ ଓ ସାହିତ୍ୟପ୍ରବୀଣା, ସେଥିପାଇଁ ସେ ପିତାଙ୍କ ସମୁଦାୟ କାର୍ଯ୍ୟ ନିଜେ କରୁଥିଲା। 'ଦେଶେର କଥା'ର ମହିଳା ଜାଗରଣ ବିଭାଗର ସେ ଥିଲା ସଂପାଦିକା। ସେଥିପାଇଁ ସମୟ ସମୟରେ ତାକୁ ପ୍ରେସ ଆସିବାକୁ ହେଉଥିଲା। 'ଦେଶେର କଥା' ଅଫିସରେ ତାହାର ଗୋଟିଏ ନିର୍ଦ୍ଦିଷ୍ଟ କକ୍ଷ ଥାଏ। ସେ କକ୍ଷଟିରେ ବସି ଅନେକ ସମୟରେ ଲେଖାଲେଖି କରେ।

ନିବନିଯୁକ୍ତ କିରାଣୀ ବାବୁର କକ୍ଷ ଠିକ୍ ତା କୋଠରିର ବିପରୀତ ଦିଗରେ। ଝରକା ବାଟେ ସେ ରଘୁନାଥକୁ ଭଲ ଦେଖିପାରେ, କିନ୍ତୁ ରଘୁନାଥ ତାକୁ ଦେଖିପାରେ ନାହିଁ।

ଲୋକଟି କିଏ, ଏ କଥା ଜାଣିବାକୁ ଅବଶ୍ୟ ମାୟା ଦେବୀର ଅତ୍ୟନ୍ତ କୌତୂହଳ ହେଲା; କିନ୍ତୁ ସେ ଯୁବତୀ। ବୃଦ୍ଧ ବିଶ୍ୱାସୀ ଉମେଶ ବାବୁ କିମ୍ବା ପ୍ରେସର ଅନ୍ୟାନ୍ୟ କର୍ମଚାରୀଙ୍କ

ସହିତ ତାହାର କୌଣସି ସମ୍ପର୍କ ଥାଏନାହିଁ। ତେଣୁ ଗୋଟିଏ ଛୋଟିଆ ମୋଟିଆ କିରାଣୀ ସହିତ ପରିଚିତା ହେବାର ଲଘୁତା ନାହିଁ, ଏହା ସେ ସ୍ୱୀକାର କରିପାରିଲା ନାହିଁ। ତାହାର କଥା ସୁଦ୍ଧା ପଚାରିବାକୁ ସଙ୍କୋଚ ବୋଧକଲା।

ହେଲେ, ଗୋଟିଏ ସୁଯୋଗ ଘଟିଲା। ରେଲରୁ ସେଦିନ କେତେଗୁଡ଼ିଏ 'ପ୍ୟାକେଟ୍' ଆସିଥିଲା। ତାହା ଯେଉଁ କିରାନୀର ଚାର୍ଜରେ ଥିଲା, ସେ ଚାରି ଦିନ ଛୁଟି ନେଇ ଗ୍ରାମକୁ ଯାଇଥିଲା। ଉମେଶ ବାବୁ ମାୟା ଦେବୀଙ୍କର ପଦାର୍ଥକୁ ରଘୁନାଥ ହାତରେ ତାଙ୍କ ନିକଟକୁ ପଠାଇଦେଲେ।

ରଘୁନାଥ ପୁଲିନ୍ଦାଗୁଡ଼ିକୁ[୧] ନେଇ ମାୟା ଦେବୀଙ୍କ କକ୍ଷକୁ ଗଲା। ବିନୀତ ନମ୍ର ଭାବରେ ନମସ୍କାର କରି ସେଗୁଡ଼ିକ ଦେଇ ଫେରିବାକୁ ଉଦ୍ୟତହେବା ସମୟରେ, ମାୟା ଦେବୀ ତାଙ୍କୁ ପଚାରିଲେ, ''ଆପଣ କଣ ଏଠାକୁ ନୂଆ ଆସିଛନ୍ତି ?'' ରଘୁନାଥ ମୁଣ୍ଡ ନୁଆଁଇ କହିଲା, ''ଆଜ୍ଞା।''

''ଆପଣଙ୍କ ନାମ ?''

''ରଘୁନାଥ ମହାପାତ୍ର।''

''ନିବାସ ?''

ରଘୁନାଥ ଇତସ୍ତତଃ ହୋଇ କହିଲେ, ''ଓଡ଼ିଶା।''

''ଓଃ, ଆପଣ ତେବେ ଓଡ଼ିଶାର ଲୋକ ? ଏଠି କିପରି ଚାକିରୀ କଲେ ?''

ମାୟା ଦେବୀଙ୍କର ଶେଷକଥା ତାହାର ନିଜ କାନକୁ ବଡ଼ ଅସୁନ୍ଦର ଶୁଭିଲା ଏବଂ ତାଙ୍କ ସାମନାରେ ଏତେବେଳଯାଏ ଛିଡ଼ା ହେବାକୁ ରଘୁନାଥ ମଧ ବଡ଼ ସଙ୍କୋଚ ବୋଧ କଲା। ଶେଷକଥାର କଣ ଉତ୍ତର ଦେବ, କିଛି ଠିକ୍ କରି ନ ପାରି କେବଳ ସଂକ୍ଷେପରେ କହିଲା, ''ଆଜ୍ଞା, ଅନ୍ୟ ଉପାୟ ନ ଥିବାରୁ।''

ରଘୁନାଥ ଚାଲିଗଲା, କିନ୍ତୁ ରଘୁନାଥର ସୁନ୍ଦର ମୁହଁ ମାୟାର କୋମଳ ମନରେ ଅଙ୍କିତ ହୋଇଗଲା। ଏପରି ସରଳ, ସୁନ୍ଦର ମୁଖ ସେ ପୂର୍ବେ କେବେ ଦେଖିଛି ବୋଲି ମନେ ହେଲା ନାହିଁ। ଓଡ଼ିଆଙ୍କ ବିଷୟରେ ତାହାର କିମ୍ଭୂତକିମାମାର[୨] ଧାରଣା! ସେ ଭାବିଥିଲା- ଓଡ଼ିଆ ମାତ୍ରେ କାଳିଆ, ତୁଟିଆ, ତେଲଚିକିଟିଆ, ଆଉ କଡ଼ା କରି କଥା କହନ୍ତି; ମାତ୍ର ରଘୁନାଥକୁ ଦେଖି ଓ ତାହାର ସରଳ ଭଦ୍ର ବ୍ୟବହାରରେ ସେ ଏତେଦୂର ବିସ୍ମିତ ହେଲା ଯେ, ତା ବିଷୟ ଅଧିକରୁ ଅଧିକ ଜାଣିବାକୁ ଇଚ୍ଛାହେଲା। ପ୍ରେସକୁ ସେ ସବୁଦିନେ ଆସେ ନାହିଁ, ଆସିଲେ ମଧ ଘଣ୍ଟାଏ ଦି ଘଣ୍ଟା ମାତ୍ର ରହେ ଏବଂ ନିଜ କାର୍ଯ୍ୟରେ ବ୍ୟସ୍ତ ଥାଏ। ନିଜର ମାନ, ପ୍ରତିପତ୍ତି ବିଚାର କଲେ, ସେ ଓ ରଘୁନାଥ ମଧରେ ଆକାଶପାତାଳ ପ୍ରଭେଦ। ଏପରି ଅବସ୍ଥାରେ ରଘୁନାଥ ସହିତ ପରିଚିତା ହେବାକୁ ଇଚ୍ଛାଥିଲେ ମଧ, ତାହାର ସୁବିଧା ନ ଥିଲା।

---

(୧) ପ୍ୟାକେଟ, (୨) ବିଚିତ୍ର।

ମନ ଥିଲେ, ବାଟ ଥାଏ। ମାୟାର ସାନ ଭାଇ ଅମୃତାଭ ମାୟାର ବଡ଼ ବାଧ୍ୟ। ତାକୁ ସେ ଡାକି ଦିନେ ରଘୁନାଥର ପରିଚୟ ନେବାକୁ କହିଲା। ଅମୃତା ରଘୁନାଥର ବିଷୟ ବୁଝି ତାକୁ ସମସ୍ତ କହିଲା। ପିତାଙ୍କ ସଙ୍ଗେ କଥା କହୁଁ କହୁଁ ମାୟା ତାଙ୍କୁ କଥାଛଳରେ ପଚାରିଲା, ''ବାବା, ଆମ ପ୍ରେସରେ ଗୋଟିଏ ନୂଆ ଲୋକ ଭର୍ତ୍ତି ହୋଇଚି। ସେ ପିଲାଟି ଓଡ଼ିଆ, ବିଚାରା ପିତୃମାତୃହୀନ ଅନାଥ। କଣପାଇଁ ଏ ଦୂର ଦେଶକୁ ସେ ଆସିଚି, ଥରେ ଆପଣ ବୁଝିଲେ ହୁଅନ୍ତା।''

କନ୍ୟାର କଥା ଶୁଣି, ବିଶେଷତଃ ରଘୁନାଥ ପିତୃମାତୃହୀନ ବୋଲି ଜାଣିପାରି କେବଳବାବୁଙ୍କ ମନରେ ଅତିଶୟ ଦୟାହେଲା। ଦିନେ ସେ ତାକୁ ଘରକୁ ଡକାଇ ପଠାଇଲେ। କେବଳକୃଷ୍ଣ ବାବୁ ଡକାଇ ପଠାଇଛନ୍ତି ଶୁଣି· ରଘୁନାଥର ପ୍ରଥମେ ବଡ଼ ଭୟହେଲା। ସେ ଦୁଇ ମାସ ପ୍ରେସରେ ଚାକିରି କଲାଣି, କଦାପି କୌଣସି କର୍ମଚାରୀକୁ କେବଳ ବାବୁ ଏପରି ଡକାଇବାର ସେ ତ ଶୁଣି ନାହିଁ। ପ୍ରେସର ସବୁଦାୟ ଭାରଥିଲା ଉମେଶ ବାବୁ ଉପରେ। ସେ ତାକୁ ଏ ସମ୍ବାଦ ଦେଲେ। କପାଳରେ କଣ ଅଛି-ହୁଏତ ଚାକିରୀଖଣ୍ଡ ଯିବ ପରା! ଏହି ଭୟରେ ତାକୁ ବଡ଼ ଅସ୍ୱଚ୍ଛନ୍ଦ ବୋଧହେଲା।

ଆଜିକାଲି ତା ଅବସ୍ଥା ଶୋଚନୀୟ। ପର ଘରେ ତ ସବୁଦିନେ ରହନ୍ତା ନହିଁ। କଲିକତା ସହର, ସେଥିରେ ପୁଣି ତିରିଶଟା ଟଙ୍କା। ସେ ଆପଣା ଅବସ୍ଥାନୁଯାୟୀ ଗୋଟିଏ ମେସ୍‌ରେ ଛୋଟ ବଖରାଟିଏ ଭଡ଼ା ନେଇଥାଏ। ଆପଣାର ସବୁ କାମ ହାତେ କରି, ମେସ୍ ଚାର୍ଜ ଦେଇ ଯାହା ବଳେ, ଅତି କଷ୍ଟରେ ସେଥିରେ ଲୁଗାପଟା, ହାତ ଖର୍ଚ୍ଚକରି ଏକ ପ୍ରକାର ଦିନ ଗୁଜୁରାଣ କରେ। ହଠାତ୍ କେବଳ ବାବୁ ଡକାଇବାରୁ ତାହାର ବଡ଼ ଚିନ୍ତା ହେଲା-ଯଦି ଚାକିରି ଖଣ୍ଡ ଯାଏ, ପୁଣି ଏ ଦୂର ବିଦେଶରେ ତାର ଦଶା କଣ ହେବ? ଏଠି ତ ତାହାର ବନ୍ଧୁବାନ୍ଧବ କେହି ନାହିଁ, ସ୍ୱଦେଶ ନୁହେଁ ଯେ, କାହା ଓଳିତଳେ ଦିନେ ଅଧେ ରହିଯିବ! ଏହିପରି ସାତ ପାଞ୍ଚ ଭାବି ସେ ତାହାର ପ୍ରଭୁଙ୍କ ସହିତ ଦେଖାକରିବାକୁ ଗଲା।

କେବଳ ବାବୁଙ୍କର ବିଶାଳ ଭବନର ମନୋହର ଦୃଶ୍ୟ ଦେଖି ସେ ଆଶ୍ଚର୍ଯ୍ୟାନ୍ୱିତ ହେଲା। ପ୍ରଥମେ ଭରସି କଣ କହିବ, ତାହା ସେ ସ୍ଥିରକରି ପାରି ନାହିଁ। ଦୁଇମାସ ମଧ୍ୟରେ ସେ ତାଙ୍କୁ ଦିନେ ସୁଦ୍ଧା ଦେଖି ନାହିଁ। ଏଡ଼େ ବଡ଼ ଲୋକ, କେଜାଣି କିପରି ଉଦ୍ଧତ ହୋଇଥିବେ-ଏହା ଚିନ୍ତା କରୁ କରୁ ଦରବାନ ତାକୁ ନେଇ ବାବୁଙ୍କର ବସିବା କୋଠରୀରେ ହାଜରକରି ଘଣ୍ଟାଦେଇ ଚାଲିଗଲା।

ଜଣେ ଶ୍ୟାମଳବର୍ଣ୍ଣ, ଧୋତି ଓ ପଞ୍ଜାବି ପିନ୍ଧା ଦୀର୍ଘଶ୍ମଶ୍ରୁ ଶୋଭିତ ଉନ୍ନତକାୟ ବ୍ୟକ୍ତି ଘର ଭିତରକୁ ଆସିଲେ। ରଘୁନାଥ ଦଣ୍ଡବତ କରି, ଉଠି ଠିଆ ହେଲା। କେବଳ ବାବୁ ରଘୁକୁ ଅନାଇ ଯେପରି ବିସ୍ମିତ ହେଲେ, ରଘୁ ବି ତାଙ୍କୁ ଦେଖି ସେହିପରି ଆଶ୍ଚର୍ଯ୍ୟ ହେଲା। ରଘୁ ଭାବିଥିଲା, କୋଟପ୍ୟାଣ୍ଟ ପିନ୍ଧିଥିବା ଜଣେ ପୂରା ବଦ୍‌ରାଗୀ ଦେଶୀ ସାହେବ ସହିତ ଦେଖା

ହେବ; କିନ୍ତୁ ଏ ତ ଉଦାର ମୂର୍ତ୍ତି ! ଯାଙ୍କ ଭିତରେ ଯେ କ୍ରୋଧ ଓ ଅନ୍ୟାୟ ଥିବ, ଏହା ସେ ଭାବିପାରିଲା ନାହିଁ। ସେ ଏକପାର୍ଶ୍ୱରେ ଠିଆହେଲା। କେବଳ ବାବୁ ତାକୁ ଦଣ୍ଡେ ଚାହିଁଲେ, ତାହାର ଅପୂର୍ବ ଲାବଣ୍ୟମଣ୍ଡିତ ଉଜ୍ଜ୍ୱଳ ରକ୍ତଗୌର ସୁଶ୍ରୀ ମୁଖକାନ୍ତି ଓ ରୂପ ଲାବନ୍ୟ ଦେଖି ମନେ କଲେ-ଏ ନିଶ୍ଚୟ ଉଚ୍ଚଜାତିର ପିଲା। ତତ୍ପରେ ତାକୁ ପ୍ରଶ୍ନ ଉପରେ ପ୍ରଶ୍ନ କଲେ। ସେ କିଏ, ତା ଘର କେଉଁଠି, ତାର କିଏ ଅଛନ୍ତି, ସେ କାହିଁକି କଲିକତା ଆସିଲା, ଇତ୍ୟାଦି ଶତ ଶତ ପ୍ରଶ୍ନର ଉତ୍ତର ଦେଇ ରଘୁନାଥ ଭାବିଲା-ଏ ପୁଣି କଣ ? ସେ ଦିନ କୋର୍ଟରେ ତାକୁ ଏହିପରି ଜେରା ହୋଇଥିଲା। କିନ୍ତୁ ସେ ଜେରା ସର୍କାରୀ ଓକିଲଦ୍ୱାରା-ତାହା ନୀରସ ଓ ଶୁଷ୍କ; ମାତ୍ର ଏ ଜେରାରେ ପ୍ରତିପଦ ସହାନୁଭୂତିପୂର୍ଣ୍ଣ।

ରଘୁନାଥଠାରୁ ସମୁଦାୟ ବିଷୟ ଶୁଣିବା ପରେ, ତାକୁ ବାବୁ ଘର ଭିତରକୁ ଡାକିନେଲେ। ଆତ୍ମୀୟତା ପ୍ରକାଶ ପୂର୍ବକ ସ୍ତ୍ରୀ ଏବଂ ପିଲାପିଲିଙ୍କ ସହିତ ପରିଚୟ କରାଇ, ସ୍ତ୍ରୀଙ୍କ  ଉଦ୍ଦେଶକରି କହିଲେ, ''ଆଜି ଠାରୁ ଏ ତୁମର ପୁଅ।'' ତାଙ୍କ ସ୍ତ୍ରୀ ମଧ୍ୟ ରଘୁନାଥକୁ ନିରୀକ୍ଷଣ କରି ଚାହିଁଲେ। ତାଙ୍କର ପରିବାରର କ୍ଷୁଦ୍ର ବୃହତ୍, ସମସ୍ତେ ତାକୁ ଘେରି ପକାଇଲେ। ସେ ବ୍ରାହ୍ମଣସନ୍ତାନ, ପିତୃମାତୃହୀନ, ପୁଣି ଦୂର କଟକରୁ ଆସି ନାନା ବିପଦରେ ପଡ଼ି ବର୍ତ୍ତମାନ ଏ ସ୍ଥାନରେ କିରାନୀ ଚାକିରୀ କରୁଛି-ଏ ସବୁ ମୁହୂର୍ତ୍ତକ ମଧ୍ୟରେ ତାଙ୍କର ବିଶାଳ ପରିବାରରେ ରାଷ୍ଟ୍ର ହୋଇଗଲା। ଯେଉଁମାନେ ଏତେ ଶୀଘ୍ର ପରକୁ ଆପଣାର କରିପାରନ୍ତି, ସେମାନେ ଯେ କି ଉପାଦାନରେ ଗଠିତ, ଏହା ରଘୁ ଭାବୁ ଭାବୁ ସେ ଦିନ ବସାକୁ ଗଲା। କେବଳ ବାବୁଙ୍କ ଗୃହିଣୀଦତ୍ତ ଉପାଦେୟ ଜଳଖିଆ ପରେ ସେ ରାତିରେ ଆଉ ତାର ଖାଇବାର ଇଚ୍ଛା ହେଲା ନାହିଁ।

ଯଦିବା କେବଳ ବାବୁ ତାକୁ ଘରକୁ ମଧ୍ୟେ ମଧ୍ୟେ ଆସିବାକୁ କହିଥିଲେ, ତଥାପି ସେ ଲାଜରେ ଆଉ ତାଙ୍କ ଘରକୁ ଯାଇନାହିଁ। ଏହିପରି ଅନେକ ଦିନ କଟିଗଲା। ଯେଉଁ ଦିନ ମାୟା ରଘୁନାଥର ପୂର୍ଣ୍ଣ ପରିଚୟ ପାଇଛି, ସେହିଦିନ ତାର ମନରେ ଅନ୍ୟ ଚିନ୍ତା ଉପସ୍ଥିତ ହୋଇଛି। ରଘୁନାଥ ରୂପବାନ୍, ଶିକ୍ଷିତ ବ୍ରାହ୍ମଣସନ୍ତାନ, ପୁଣି ଅବିବାହିତ। ତା ବିଷୟ ଚିନ୍ତା କରେ ଜଣେ ଶିକ୍ଷିତା । ଅବିବାହିତା ଯୁବତୀ !

ମାୟା ଯେତେ ରଘୁନାଥକୁ ଭୁଲିବାକୁ ଚେଷ୍ଟା କରେ, ସେ ସେତିକି ମନେପଡ଼େ। ପ୍ରେସକୁ ଗଲା ମାତ୍ରେ ତାର ମନ ଚଞ୍ଚଳହୋଇଉଠେ। ଆପଣା କୋଠରୀରେ ପଶିଲାକ୍ଷଣି ଅଲକ୍ଷ୍ୟରେ ସୁଦ୍ଧା ସେ ଝରକାବାଟେ ଥରେ ଚାହିଁଦିଏ-କାଳେ ରଘୁନାଥ ଟିକେ ଦିଶିଯିବ, କାଳେ ତା ଆଡ଼କୁ ଟିକେ ଚାହିଁଦେବ; କିନ୍ତୁ ରଘୁନାଥ କାହାରିକୁ ଅନାଏ ନାହିଁ-ମୁଣ୍ଡ ପୋତି ଆପଣା କାମ କରୁଥାଏ। ମାୟା ଦିନେ ହେଲେ ତାହାର ସାକ୍ଷାତ୍ ନ ପାଇ, ଦୂରରୁ ଅନାଇ ଘରକୁ ଫେରିଯାଏ। ଆପଣା ମନକୁ ଶାନ୍ତି ଦିଏ ଯେ, ସେ ଗରିବ ଅନାଥର ତତ୍ତ୍ୱ ନେଉଛି; କିନ୍ତୁ ବବେକ ତାକୁ ଦୋଷୀକରି କହେ, ''ଗରିବ ଅନାଥ ପାଇଁ ତୁ କରିଚୁ କଣ ? କେବଳ

ଲୁଚି ଲୁଚି ଚାହିଁବା ଛଡ଼ା ତୁ କରିଚୁ କଣ ? ଏଇ କଣ ତାର ଗରିବ ଅନାଥକୁ ଦୟା ? ଏ ତ ଦୟା ନୁହେଁ-ଏଥିରେ ଆଉ କିଛି .......।

ବିବେକର ତାଡ଼ନାରେ ମାୟା ଅସ୍ଥିର ହେଲା। ଯେ ପନ୍ଦର ଷୋଳ ବର୍ଷ ଦିନୁ ପିତାଙ୍କ ସହିତ ମିଶି କାର୍ଯ୍ୟ କରୁଛି, ଯେ ସଭ୍ୟ ସମାଜରେ ଆଜନ୍ମ ବଢ଼ିଛି, ଶତ ଶତ ଯୁବକ ସହିତ ଅବାଧରେ ମିଶିଛି, ଦିନେ ତା ମନରେ କିଛି ହୋଇ ନାହିଁ, ସେ ସାମାନ୍ୟ ନଗଣ୍ୟ ରଘୁନାଥ ପ୍ରତି ଆକୃଷ୍ଟ ? ଏହା ଭାବିଲା ବେଳକୁ ତାହାର ଲଜ୍ଜାହେଲା। ଏଥର ସେ ନିଜ ମନକୁ ସ୍ୱବଶରେ ଆଣିବାକୁ ଚେଷ୍ଟାକଲା।

ପୂଜାଛୁଟି ଉପଲକ୍ଷରେ ସେମାନେ ଦାର୍ଜିଲିଂ ବୁଲି ବାହାରିଲେ। କେବଳ ବାବୁ ସ୍ୱତଃପ୍ରବୃତ୍ତ ହୋଇ ରଘୁନାଥକୁ ସଙ୍ଗରେ ନେବାପାଇଁ ପ୍ରସ୍ତାବକଲେ। ରଘୁନାଥ ଏଡ଼େ ବଡ଼ଲୋକର ପରିବାର ସହିତ ମିଶିବାକୁ ଅନିଚ୍ଛୁକ ଥିଲେ ମଧ, ମୁନିବର ଆଜ୍ଞା ଅବହେଳା ନ କରି ଦାର୍ଜିଲିଂ ବାହାରିଲା।

ପ୍ରଥମ ଚାରିଦିନ ମଧରେ ସେ ବୁଝିଲା, କେବଳ ବାବୁ ତାକୁ ତାଙ୍କର ବଡ଼ପୁଅ ଅମିତାଭ ତୁଲ୍ୟ ସ୍ନେହକରନ୍ତି, ସଙ୍ଗରେ ଖୁଆନ୍ତି, ପାଖରେ ବସାନ୍ତି, ସର୍ବଦା ସସ୍ନେହରେ କଥାବାର୍ତ୍ତା କରନ୍ତି। ଏହା ରଘୁନାଥକୁ ପ୍ରଥମେ ବଡ଼ ଅଡୁଆ ବୋଧହେଲା। ସେ କୌଣସି ମତେ ଆପଣାକୁ ଏମାନଙ୍କର ସମାନସ୍କନ୍ଧ ଭାବିପାରିଲା ନାହିଁ। କିନ୍ତୁ ଯେଉଁଦିନ ସେମାନେ ଦାର୍ଜିଲିଂରେ ଗୋଡ଼ଦେଲେ, ସେ ଦିନ ବାରଟା ବେଳେ କେବଳ ବାବୁ ମଧୁର ହାସ୍ୟମୁଖରେ ରଘୁନାଥକୁ କହିଲେ, ''ବାବା, ଏହି ଯେ ଛୁଟିରେ ଆସିଚ, ଏଥିରେ ତୁମର ପ୍ରେସ ଚାକିରି ଶେଷ ହେଲା।'' ରଘୁନାଥର ଛାତି ଥରି ଉଠିଲା। କେବଳ ବାବୁ ତାହା ଲକ୍ଷ୍ୟକରି କହିଲେ, ''ତୁମକୁ ଗୋଟିଏ ବଡ଼ ଚାକିରୀ ଦେବି, କିନ୍ତୁ ତାହା ପୂର୍ବରୁ ତୁମକୁ ଏମ୍.ଏ. ପାଶ କରିବାକୁ ହେବ।'' ରଘୁନାଥର ନୟନଦ୍ୱୟ ଆନନ୍ଦରେ ଉଜ୍ଜ୍ୱଳ ହୋଇଉଠିଲା। ସେ ଏଫ୍.ଏ. ପାଶ କରିଛି; ସରସ୍ୱତୀଙ୍କ କୃପାରେ ତାଙ୍କ କପାଳରେ ଏତେ ବିଦ୍ୟା ଅଛି ଯେ, ଏଠି ପୁଣି ତାର ପାଠର ଯୋଗାଡ଼ ହେଲାଣି !

ସେମାନେ ଦାର୍ଜିଲିଂରେ ପନ୍ଦର ଦିନ ରହିଲେ, ବହୁତ ବୁଲାବୁଲି କଲେ, ସେହି ଦିନୁ ଅମିତାଭ, ଅମୃତାଭ, ମାୟା ଓ ଛାୟା-ଏ ଚାରି ଭାଇ ଭଉଣୀ ରଘୁନାଥକୁ ନିଜର ପରିବାରର ଲୋକପରି ମଣିଲେ।

ଦାର୍ଜିଲିଂ ଫେରନ୍ତି ଯେଉଁ ଦିନ ରଘୁନାଥ କେବଳ ବାବୁଙ୍କ ଘରେ ବାସକଲା, ସେଦିନ ତା ବିଷୟ କଥାବାର୍ତ୍ତା କରୁଁ କରୁଁ କେବଳ ବାବୁ ଉମେଶ ବାବୁଙ୍କୁ କହିଲେ, ''ଜାଣିଲେ ମହାଶୟ, ପିଲାଟିର ଭବିଷ୍ୟତ୍ ଉଜ୍ଜ୍ୱଳ। ଯେପରି ବୁଦ୍ଧିରେ ବିଚକ୍ଷଣ, ସେହପରି ସ୍ୱଭାବରେ ହୀରାଟିଏ।'' ଉମେଶ ବାବୁ କହିଲେ ''ବ୍ରାହ୍ମଣ ପିଲା ପରା, ଓଡ଼ିଆ ହେଲେ କଣ ହେଲା।''

କେବଳ ବାବୁ କହିଲେ, ''ଓଡ଼ିଆମାନେ ବେଶ୍ ସଭ୍ୟ ଜାତି। ମୁଁ ଶୁଣିଚି, ଦାଦା କହୁଥିଲେ-'ଓଡ଼ିଆ ବଡ଼ ସୁନ୍ଦର ଦେଶ, ଥରେ ଦେଖି ଆସିବା'।''

କେବଳ ବାବୁଙ୍କ ଆଦେଶାନୁଯାୟୀ ରଘୁନାଥ ଆସି ତାଙ୍କ ଘରେ ରହିଲା। ତାପାଇଁ ଅଲଗା ଗୋଟିଏ କୋଠରି ବନ୍ଦୋବସ୍ତ ହେଲା। ଏଥର ଆଉ ଥରେ, ଦୀର୍ଘ ଛ ମାସ ପରେ ପୁଣି ତାର ଛାତ୍ରଜୀବନ ଆରମ୍ଭହେଲା। ତା ଜୀବନର ଯେ କି ଉଦ୍ଦେଶ୍ୟ, ଏହା ସେ ସ୍ଥିର କରିପାରିଲା ନାହିଁ; ତଥାପି ଭାବିଲା, ଭଗବାନ୍ ନିଶ୍ଚୟ ତାକୁ କୌଣସି ଉଦ୍ଦେଶ୍ୟ ଲାଗି ଏପରି ବିଚିତ୍ର ବାଟରେ ଟାଣିଓଟାରି ଆଣିଛନ୍ତି। ଯେତେ ଥର ସେ ଲକ୍ଷ୍ୟଭ୍ରଷ୍ଟ ହୋଇଛି, ସେତେ ଥର ତାକୁ ନୂଆ ନୂଆ ଲକ୍ଷ୍ୟ ମିଳିଛି, ଅପରିଚିତ ସ୍ଥାନମାନଙ୍କରେ ଅପରିଚିତ ଲୋକେ ତାକୁ ଆଦର କରି ଆପଣାର କରିଛନ୍ତି, ଏ କଣ ଆଶ୍ଚର୍ଯ୍ୟ ନୁହେଁ?

ଛ ମାସ ତଳେ ସେ ଥିଲା ଖାଣ୍ଟି ଓଡ଼ିଆ, ବର୍ତ୍ତମାନ ସେ ଅଧା ବଙ୍ଗାଳୀ। ନରେଶ ବାବୁ ସହତ ବୁଲିଲା ଦିନୁ ଆହାର, ବିହାରରେ ବାଛ ବିଚାର ଢ଼ିଲା ହୋଇଥିଲା। ପରେ ଯେତେବେଳେ ଜାଣିଲା, ନରେଶ ବାବୁ ମୁସଲମାନ ଓ ସୁଶୀଳାକୁମାର ବେଶ୍ୟା, ସେଦିନ ତାହାର ସଂସ୍କାରର ଡୋରି ଛିଣ୍ଡିଗଲା। ଆଉ ଜାତିରେ କଣ ଅଛି ଯେ ଭାବନା? ଏ ବିଚିତ୍ର ସହର, ଏଠି ବା ଜାତିପତି ବିଚାରି ଚଳନ୍ତା କିପରି? ସେଥିପାଇଁ କେବଳ ବାବୁଙ୍କୁ ସେ କୈବର୍ତ୍ତ ଜାଣିବା ସତ୍ତ୍ୱେ ଦ୍ୱିଧା ନ କରି ତାଙ୍କ ଘରେ ରହିଲା। ଏପରି ସଭ୍ୟ ଓ ସୁରୁଚିସମ୍ପନ୍ନ ଯେଉଁ ପରିବାର, ତାଙ୍କୁ ସେ ବା ଘୃଣାକରିବ କେଉଁ ଅହଙ୍କାରରେ?

ସବୁ ହେଲା, କିନ୍ତୁ ସେ ସୀତାକୁ ଭୁଲି ନ ଥିଲା। ଛ ମାସ ଭିତରେ ସେ ସୀତାକୁ କିମିତି ଭୁଲନ୍ତା? ମୋଟେ ଛ ମାସ ତଳେ ଯାହା ସହିତ ତାର ବିବାହର ପୂର୍ଣ୍ଣ ସମ୍ଭାବନା ଥିଲା, ସେ ପ୍ରିୟତମାକୁ ସେ କିପରି ପାସୋରି ପାରନ୍ତା! ରଘୁନାଥ ସବୁ ସାରିଛି, ସବୁ ଛାଡ଼ିଛି, କିନ୍ତୁ ଛାଡ଼ି ନାହିଁ ଜଣକୁ-ଭୁଲି ନାହିଁ ଜଣକର ସ୍ମୃତି। ସୀତା ହୃଦୟରେ ଉଜ୍ଜ୍ୱଳ ମୂର୍ତ୍ତି ଧରି ଶୋଭା ପାଉଥିଲା, ତାକୁ ସ୍ମରଣ କରି ସେ ଦିନ କାଟୁଥିଲା, ଆଉ ଗଳାରେ ହାତ ବୁଲାଇ ଦେଖୁଥିଲା-ସେହି ସୁନାସୂତା କେରାକ, ଯାହା ସେ ଏତେ ବିପଦରେ ସୁଦ୍ଧା ହଜାଇ ନାହିଁ-ଏତେ ଦୁଃଖରେ ସୁଦ୍ଧା ବିକି ନାହିଁ। ସେଇ ସୁନାସୂତାକେରାକ ହୃଦୟରେ ଥୋଇ ସେ ପ୍ରତିରାତ୍ର ନିବିଡ଼ ଭାବରେ ଚୁମ୍ବନ କରେ, ଆଉ ଅଶ୍ରୁରେ ତାର ଉପାଧାନ ତିନ୍ତିଯାଏ। ତଥାପି ସେ ତାହାର କର୍ତ୍ତବ୍ୟ କରେ, କାରଣ ଜଗତରେ ବଞ୍ଚିବାକୁ ହେଲେ ଖାଇବାକୁ, ପିନ୍ଧିବାକୁ ତ ହେବ? ପେଟ ଚାଖଣ୍ଡ ତ ଆଉ ସୁଖଦୁଃଖ ଆଦରିବ ନାହିଁ? କେବଳ ବାବୁ ଆଶା ଦେଇଛନ୍ତି ଏମ୍.ଏ. ପାଶ କଲେ ବଡ଼ ଚାକିରି ଦେବେ। ସେ ତାଙ୍କୁ କିପାଁ ନିରାଶ କରିବ? ସେ ଲୋକଙ୍କଠାରୁ ଶୁଣିଛି, ବର୍ମାରେ କେବଳକୃଷ୍ଣ ବାବୁଙ୍କର ଅନେକ ବିଷୟ ସମ୍ପତ୍ତି[୧] ଅଛି। ତାହାର ତତ୍ତ୍ୱାବଧାନ ଲାଗି ବୋଧହୁଏ ସେ ତାକୁ ମଣିଷ କରୁଛନ୍ତି। କାରଣ ଅମିତାଭ ଓ ଅମୃତାଭ ବିଲାତ ଯିବାର ବନ୍ଦୋବସ୍ତ ହେଲାଣି।

---

(୧) ଧନସଂପତ୍ତି

ତାହାର ଏତେ ସୁଖ ସୁବିଧା ହୋଇ ସୁଦ୍ଧା ତାକୁ ଅସ୍ୱଚ୍ଛନ୍ଦ ବୋଧ ହେଉଥିଲା। ଆଶ୍ରୟଦାତା ଓ ଆଶ୍ରିତର ବ୍ୟବଧାନ ଟିକକ ସୃଷ୍ଟିକରି, ସେ ନିଜେ ଅଲଗା ହୋଇ ଚଳିବାକୁ ଚେଷ୍ଟାକଲେ ମଧ୍ୟ ପାରୁ ନ ଥିଲା; ଘରର ପିଲାମାନେ ରାତିଦିନ 'ଦାଦା, ଦାଦା' କହି ଅସ୍ଥିର କରନ୍ତି। ଏପରି ଆଦର, ସ୍ନେହ, ପ୍ରେମରେ ସେ ବା ନିତାନ୍ତ ଆପଣାର ନ ହୋଇ ଯିବ କୁଆଡ଼େ? ଘରର ଛୋଟ ଛୋଟ ଝିଅ ଛାୟା, ସୁଲେଖା, ତୃପ୍ତି-ଏମାନେ ତ ତାର ନିତ୍ୟ ସହଚରୀ; ପୁଣି ଅମିତାଭ, ଅମୃତାଭ, ଦୀଲିପ, ଧୀରେନ୍ଦ୍ର ତାର କାନିଧରା। ସମସ୍ତଙ୍କର ସେ 'ରଘୁ ଦାଦା', କାହାକୁ ବା ସେ ଛାଡ଼ି ଚଳିବ? ଏତେ ଭାଇ ଭଉଣୀ ମେଳରେ, ଏତେ ମା ମାଉସୀ ମେଳରେ ତାର ଏକା ରହିବା ଆଶାଟା ପରାଜିତ ହେଲା। ଏଥିରୁ ଅବଶ୍ୟ ମନୁଷ୍ୟର ଆନନ୍ଦ ହେବାର କଥା; କିନ୍ତୁ ତାର ବିଷାଦର ଗୋଟାଏ କାରଣ ଥିଲା। ସେ ବୁଝି ପାରିଲା– ଏତେ ସୁଖ, ଏତେ ଆନନ୍ଦ, ଏତେ ଆତ୍ମୀୟତା ଭିତରେ ସୁଦ୍ଧା କିଛି ଗୂଢ଼ ରହସ୍ୟ ଅଛି। ସେ ରହସ୍ୟ ଟିକିଏ ଜାଣିବାକୁ ତାର ବେଶି ବିଳମ୍ବ ହେଲା ନାହିଁ। ସେହି ଦିନୁ କିପରି ସେଥିରୁ ମୁକ୍ତି ପାଇବ, ତହିଁର ଉପାୟ ଖୋଜିବସିଲା, ମାତ୍ର କିଛି ଉପାୟ ମିଳିଲା ନାହିଁ, ତଥାପି ସେ ମନ ଦୃଢ଼କରି ଆପଣା ପାଠରେ ଲାଗିଲା। ତାର ଜୀବନର ବ୍ରତ, ସେ କୁମାର ରହିବ; ତାର ଆଶା ଓ ଆନନ୍ଦ କେବଳ ସୀତାକୁ ଧ୍ୟାନକରି ଜୀବନକାଟିବ, କିନ୍ତୁ ଏଠି ଯୋଡ଼ିଏ ପ୍ରେମମୟ ଆଖି ତାର ମନୋମୃଗକୁ ଧରିବାର ସର୍ବଦା ଫାନ୍ଦ ମେଲିବସିଲେ। ନିରୂପାୟ ରଘୁନାଥ ଗୋଡ଼େ ଗୋଡ଼େ ସେ ପ୍ରେମରେ ଜାଲଦେଖି କଣ କରିବ, ଏହାହିଁ ଭାବି ନିତି ବ୍ୟସ୍ତହେଲା। ସେ ମୂର୍ଖ ପରି ଦେଶ ଛାଡ଼ିଆସିଛି, ସେଥିପାଇଁ ଅନୁତାପରେ ତାର ଛାତି ବିଦୀର୍ଣ୍ଣ ହୋଇଗଲା। ଘରେ ଥିଲେ ତ ସେହି ବିବାହର ପ୍ରସ୍ତାବ। ଏଠି ତ ସେ ଏକ ପ୍ରକାର ସ୍ୱାଧୀନ। ତଥାପି ମାୟାମୟୀର ଗୁପ୍ତ ଅଭିମାନ ଓ ପ୍ରେମଧାରା ଅନ୍ତଃସଲୀଳ ଫଲ୍‌ଗୁ ପରି ତା ମନରେ ଆସି ବହମାନ ହେଲା; ନିଜକୁ ନିଷ୍ଠୁର ମନେକରି ଉପାୟହୀନ ରଘୁନାଥ ତୁନିହୋଇ ରହିଲା। ଥରେ ଥରେ ଭାବିଲା-ପିତାର ଅନ୍ନଦାସ ହୋଇ ତାକୁ ବିବାହ! ଛି, ସେ ପୁଣି କୈବର୍ତ୍ତ କନ୍ୟା!

ପୁଣି ଆଉ ଥରେ ମନରେ ହେଲା-କିଏ ବା ତୋତେ ବିବାହ କରିବାକୁ ଚାହେଁ? ମନେ ମନେ ଅକାରଣ ସନ୍ଦେହ, ଏତେ ବଡ଼ ପାପ! ଏପରି ସୁଶୀଳ, ସୁଚରିତ୍ର, ବିଦ୍ୟାବତୀକୁ ସନ୍ଦେହ? ଯାହାର ଗୋଡ଼ କାଣିଆଙ୍ଗୁଳିକୁ ତୁ ସରି ନୋହୁ। ପରକ୍ଷଣରେ ପୁରୁଷର ଅଭିମାନ ମନରେ ଜାଗିଲା। ନିଜେ ଯେତେବେଳେ ମାୟାକୁ ଆଦର କରିବାକୁ ମନକଲା, ପର ମୁହୂର୍ତ୍ତରେ ଲଜ୍ଜା ଆସି ସେ କଳ୍ପନାକୁ ଗ୍ରାସକଲା।

ସତେ କଣ ମାୟା ତାକୁ ଭଲପାଏ? ମାୟା ତ ଦିନେ ତାକୁ କୌଣସି ବ୍ୟବହାରଦ୍ୱାରା ତାହା ଜଣାଇ ନାହିଁ, ସେ ତ ତା ସହିତ ଆଦୌ ମିଶେ ନାହିଁ, ଅତି ଦରକାର ନ ଥିଲେ କଥା ସୁଦ୍ଧା କହେ ନାହିଁ, ଦୁଇ ଚାରି ଦିନରେ ତା ସହିତ ସାକ୍ଷାତ୍ ମଧ୍ୟ ହୁଏ ନାହିଁ। ପରିବାରର

ସମସ୍ତେ ଅବାଧରେ ତା ସଂଗେ ମିଶନ୍ତି, କେବଳ ମାୟା ଛଡ଼ା। ତେବେ କଣ ମାୟା ନିତାନ୍ତ ଅହଙ୍କାରିଣୀ ? ହଁ, ବଡ଼ ଲୋକର ଝିଅ, ବି.ଏ. ପାଶ କରିଛି, ଭାରି ସୁଖ୍ୟାତି, କାହିଁକି ଗର୍ବିତା ନ ହେବ ? ସେଥିରେ ତାର କଣ ? ତଥାପି ରଘୁନାଥ ଭାବିଲା, ସତେ ସେ କେଡ଼େ ଗର୍ବିତା ? ତାର ପିତାର ଅନ୍ନଦାସ ବୋଲି କଣ ତାକୁ ସେ ଘୃଣାକରେ ? ମାୟା ତାକୁ ଘୃଣାକରେ, ଏ ଭାବନା ତାର ଅସହ୍ୟ ବୋଧହେଲା। କେବଳ ବାବୁଙ୍କ ପ୍ରସ୍ତାବରେ ପଢ଼ିବାକୁ ସମ୍ମତ ହୋଇଥିବାରୁ ବଡ଼ ଆତ୍ମଧିକ୍କାର ବୋଧକଲା, କିନ୍ତୁ ଆଦୌ ସେ ବୁଝି ପାରିଲା ନାହିଁ ମାୟାର ଅକୃତ୍ରିମ ମନୋଭାବ।

ମାୟା ଦେଖିବାକୁ ଯେ ଦିବ୍ୟସୁନ୍ଦରୀ ତା ନୁହେଁ -ବର୍ଣ୍ଣ ଉଜ୍ଜ୍ୱଳ ଶ୍ୟାମଳ, କିନ୍ତୁ ସୁସ୍ଥ ସବଳ-ମୋଟ ଉପରେ ଅତି ରୂପସୀ କହିବା ଉଚିତ୍ ନୁହେଁ। ତାର ସ୍ୱଭାବ-କେଡ଼େ ସେ ଗମ୍ଭୀର ! ଏତେ ଲୋକ ସହିତ ମିଶେ, ଏତେ କାମ କରେ, ତଥାପି ସେ କିପରି ସଂଯତ ! ତା ଭିତରେ ଗୋଟିଏ ବି ଆଧିପତ୍ୟର ଭାବ ! ତାର ସ୍ୱର ମିଷ୍ଟ, କଥା ଧୀର, ଶାନ୍ତ-ତହିଁରେ ସର୍ବଦା ଆତ୍ମସମ୍ମାନର ଜ୍ଞାନ ପ୍ରଚ୍ଛନ୍ନଭାବରେ ଥାଏ। ବେଶଭୂଷା ବ୍ୟବହାର ବେଶ୍ ସଭ୍ୟ, ସେ କିପରି ସୁରୁଚିପ୍ରିୟା ବୁଦ୍ଧିମତୀ, ଏ ବିଷୟ ରଘୁନାଥ ଅନେକ ଥର ଭାବେ; ଭାବି ବିସ୍ମିତ ହୁଏ। ମାୟାର ବୟସ ୨୧ କିମ୍ବା ୨୨ ହେବ-ପ୍ରାୟ ତାର ସମବୟସୀ, ପୁଣି ସ୍ତ୍ରୀ ଲୋକ। ତାହାର ସ୍ୱଭାବ ଏପରି କିମିତି ହେଲା, ଏହା ରଘୁନାଥ ବହୁତ ଭାବେ। ଯେତେ ଭାବେ, ସେତେ ଭୟ ହୁଏ-ନିଜର ପ୍ରତିଜ୍ଞା ଶିଥିଳ ହେବ ପରା। ସେ ସୀତାକୁ ସର୍ବଦା ସ୍ମରଣ କରେ, ସୁନାସୂତାଟିକୁ ଚାହେଁ-ତା ଯେପରି ତାହାର ଅଷ୍ଟବଜ୍ରକବଚ। କେବେ କେବେ, ମନେ ମନେ ହସେ, ନିଜର ଅକାରଣ ସତର୍କତା ଲାଗି ନିଜକୁ ପରିହାସ କରେ-ପିମ୍ପୁଡ଼ି ଦୀପରୁଖା ଉପରକୁ ଉଠିଲା ପରା ! ମାୟା କିଏ, ସେ କିଏ-ମାୟାର ସ୍ଥାନ କେଉଁଠି, ତାର ସ୍ଥାନ କେଉଁଠି ! ସାମାନ୍ୟ ଅର୍କ୍ଷିତ, ଅନାଥ ହୋଇ, ପରଦୁଆରେ ମୁଣ୍ଡ ଗୁଞ୍ଜି ଲକ୍ଷାଧିପତି କନ୍ୟାର ପ୍ରେମଲାଳସା ! ଏ କଣ ବାତୁଳତା ନୁହେଁ? ପୁଣି ନିଜକୁ କହେ-ସେ ତ ଖୋଜେ ନାହିଁ, ବରଂଚ ଦୂରରେ ରହିବାକୁ ତାର ଚେଷ୍ଟା !

କ୍ରମେ ମାୟା ବିଷୟ ତା ଆଖି ଆଗରେ ସୁଲଭ ହୋଇଉଠିଲା। ସେ ଆଉ ସେ ବିଷୟ ବେଶି ଚିନ୍ତା ନ କରି ନିକଟବର୍ତ୍ତୀ ପରୀକ୍ଷାଲାଗି ପ୍ରସ୍ତୁତହୋଇ 'ଅନର୍ସ' ସହିତ ବି.ଏ. ପାଶ କଲା। କେବଳକୃଷ୍ଣ ବାବୁ ଆନନ୍ଦରେ ତାଙ୍କୁ ଅନେକଗୁଡ଼ିଏ ପୁରସ୍କାର ଦେଲେ, ଘରର ପିଲାମାନେ ମଧ୍ୟ କିଛି କିଛି ଉପହାର ଦେଲେ-କିଏ ଦେଲା ଘଡ଼ି, କିଏ ଦେଲା ଛବି, ବହି ଓ ସୌଖୀନ ଜିନିଷ, କିନ୍ତୁ କିଛି ଦେଲା ନାହିଁ ମାୟା। ଏତେ ସାମାନ୍ୟ କଥା, ତଥାପି ରଘୁନାଥ ମନରେ ତାହା ଲାଗି ରହିଲା। ତା ଛାତି ଉପରେ ଅଭିମାନର ପଥର ବୋଝଟିଏ କିଏ ଲଦିଦେଲା ପରା !

ଅମୃତାଭ, ଅମିତାଭ ଓ ଅଜିତ୍ ବିଲାତ ଯାତ୍ରାକଲେ। କେବଳ ବାବୁ ମାୟାକୁ ମଧ୍ୟ ପଠାଇବାପାଇଁ ଭାବିଥିଲେ, କାରଣ ସେ ସେତେବେଳେ ଏମ.ଏ. ପାସ୍ କରି ସାରିଥିଲା। ମାୟା ବିନୟ, ନମ୍ର ଭାବରେ ତହିଁରେ ପ୍ରତିବାଦ ନ କରି ଚାକିରୀ ଘେନି ଦାର୍ଜିଲିଂ ଚାଲିଗଲା।

ରଘୁନାଥ ମାୟା ସମ୍ବନ୍ଧରେ ନିଜର ଭ୍ରାନ୍ତ ଧାରଣା ବିଷୟ ଚିନ୍ତାକରି ପ୍ରଥମେ ହସିଲା, ପରେ ଅନୁତାପ କଲା। ଶେଷକୁ ସବୁ ମନରୁ ବିଦାୟଦେଇ ପାଠରେ ମନୋଯୋଗୀ ହେବାକୁ ସ୍ଥିର କରି ପ୍ରଗାଢ଼ ଅଧ୍ୟବସାୟ ସହିତ ଏମ.ଏ. ପଢ଼ିବାକୁ ଲାଗିଲା।



## ବିଂଶ ଅଧ୍ୟାୟ

ଅହଲ୍ୟାର ଦିଅର ବିଷ୍ଣୁ ଆଜି ପାହାନ୍ତାରୁ ଆସି ଖବର କରିଛି, ଅର୍ଜୁନ ଶକ୍ତ ବେମାର-କତରାରୁ ଉଠିବାର କ୍ଷମତା ନାହିଁ। ଅହଲ୍ୟାର ଆଖି ଅନ୍ଧାର କରି ଘନ ଅଶ୍ରୁ ବହିଯାଉଛି, ଆଉ ସେ ଯିବାଲାଗି ପୁଟୁଳାପୁଟୁଳି ବାନ୍ଧି ବସିଛି। ସୀତା ତାହାହିଁ ନିରୀକ୍ଷଣ କରୁଁ କରୁଁ ଭଉଣୀ ଲାଗି ବାଟପାଇଁ ପାନ ଭାଙ୍ଗୁଛି, ତା କାନ୍ଧରେ ଅହଲ୍ୟାର କୋଳପୁଅ ଗୁରୁବାରିଆ ଝୁଲୁଛି। ଅହଲ୍ୟାର ଆକୁଳତା ଓ ବ୍ୟସ୍ତତା ସୀତାଦୃଷ୍ଟିରେ ଅଭିନବ ବୋଧହେଲା। ଯେଉଁ ଅହଲ୍ୟା ଦିନରାତି ସ୍ୱାମୀ ସହିତ କଳି କରେ, କଟୁ କଥା କହି ବାପଘରକୁ ପଳାଇ ଆସେ, ଆଉ ସବୁବେଳେ ପ୍ରତିଜ୍ଞାକରେ ଯେ, ସ୍ୱାମୀ ମୁହଁ ଚାହିଁବ ନାହିଁ, ସେ ପୁଣି କିପରି ହଠାତ୍ ବଦଳି ଗଲା ? ସଂସାର ଜ୍ଞାନହୀନା ସୀତା ଅହଲ୍ୟାର ସ୍ୱାମୀ ପ୍ରତି ପ୍ରକାଶ୍ୟ ଅନାଦରକୁ ବାସ୍ତବ ଧରି ନେଇଥିଲା। ତାହାର ମନେ ହୋଇଥିଲା, ଅହଲ୍ୟା ବାସ୍ତବିକ ଅର୍ଜୁନଙ୍କୁ ଭୟଙ୍କର ଘୃଣାକରେ। ତେଣୁ ସେ ବିସ୍ମୟବିମୂଢ଼ ହୋଇ ନାନା କଥା ଭାବୁଥିଲା।

ଅହଲ୍ୟା କାନ୍ଦି କାନ୍ଦି ତା ଠାରୁ ବିଦାୟ ନେଇ ଚାଲିଗଲା। ସୀତା ଥକା ହୋଇ ଦୁଆରବନ୍ଧକୁ ଆଉଜି ଛିଡ଼ା ହୋଇ ରହିଲା। ସ୍ୱାମୀ କି ପଦାର୍ଥ, ଆଜି ସେ ତାହାହିଁ ଭାବୁଥିଲା। ଅହଲ୍ୟାର ଶେଷ କଥା ମନେ ମନେ ସେ ଗୁଣି ହେଉଥିଲା-''ମୋ ପାଇଁ ଠାକୁରଙ୍କୁ ଡାକ, କାଚ ଦିପଟ ମୋର ବଜ୍ର ହେଉ।'' ସତେ ସ୍ୱାମୀ ସହିତ ସ୍ତ୍ରୀର ଏତେ ଦୃଢ଼ ସମ୍ବନ୍ଧ, ସ୍ୱାମୀର ବିପଦ ଆଶଙ୍କାରେ ସ୍ତ୍ରୀ ଏତେଦୂର ବ୍ୟାକୁଳତା ହୁଏ ! ଆଉ ସୀତା କଣ କରୁଚି ? ଦିନେ ତ ସ୍ୱାମୀକୁ ମନେ କରି ନାହିଁ। ଯାହା ଲାଗି କାଚ ସିନ୍ଦୂର ନାଇଚି, ସେ ମଲା କି ଗଲା, ଦିନେ ତ ସେ ଖବର ନିଏ ନାହିଁ। ସୀତା ବିହ୍ୱଳ ଦୃଷ୍ଟିରେ ଆକାଶକୁ ଚାହିଁ ନିଜ ଜୀବନକଥା ଭାବିବାକୁ ଲାଗିଲା। ଆଜି ତା ଆଖି ଆଗରେ ସଂସାର-ରଙ୍ଗମଞ୍ଚରେ ନୂତନ ଦୃଶ୍ୟ। ସେ ଦୃଶ୍ୟର ଅଭିନୟ ଚାଲିଛି-ସେ ନବଜୀବନ ପ୍ରବାହରେ ବସିବାକୁ ବସିଛି। ଏହି ସମୟରେ ଗାଁ ଡାକହରକରା କେଳୁ ହାତରେ ଖଣ୍ଡେ ଚିଠି ଦେଇଗଲା। କେଳୁ ତା ଉପରେ ସୀତାର ନାମ ଲେଖା ଦେଖି ଦଉଡ଼ି ଆସ ଚିଠିଖଣ୍ଡ ତାକୁ ଦେଇଗଲା। ପରିଚିତ ହସ୍ତାକ୍ଷର ଦେଖି ସୀତାର ଛାତି ଦୁମ୍

ଦୁମ୍ ପଡ଼ିବାକୁ ଲାଗିଲା। ସେ ଚିଠିଖଣ୍ଡିକ ଧରି ବାରି ପିଣ୍ଡାକୁ ଚାଲିଗଲା। ଚିଠି ଲେଖିଥିଲା ଦିବାକର। ଏତେ ଦିନ ପରେ ତାଙ୍କର ମନେ ପଡ଼ିଲା? ସେ ଏତେ ହୀନସ୍ତା ହେଲା ପରେ ଦିବାକର ତାକୁ ଆଣିବାକୁ ଇଚ୍ଛା କଲେ? ବେଶ୍ୟାକୁ ଘେନି ଯେ ସୁଖରେ ରହିଥିଲେ, ତାଙ୍କର ସ୍ତ୍ରୀଠାରେ କି ପ୍ରୟୋଜନ? ଅଭିମାନ ଓ କୋହରେ ତାର ଛାତିପଞ୍ଜରା ଫାଟିଗଲା। ସ୍ୱାମୀ ଲାଗି ସେ ଯେ କେବଳ ନିନ୍ଦା ସହିଛି- ଯେଉଁଆଡ଼େ ଯାଇଛି, ସମସ୍ତେ କହିଛନ୍ତି 'ସ୍ୱାମୀଛାଡ଼ୀ'। ......କି ଦୁଃଖରେ ଯେ ସେ ସ୍ୱାମୀ ଛାଡ଼ିଲା, ଏ କଥା କି କେହି କେବେ ବିଚାରକରେ? ସମସ୍ତେ କଟୁକଥା କହିଜାଣନ୍ତି, ହେଲେ, ପେଟର ବଥାଟା[୧] କିଏ ବୁଝେ! ଦିବାକରଙ୍କର ଏବେ ଗରଜ[୨] ପଡ଼ିଛି ବୋଲି ସେ ଚିଠି ଲେଖିଛନ୍ତି ସିନା, ନୋହିଲେ, ବର୍ଷେ ହେଲା, ସେ ମଲା କି ଗଲା ବୁଝିଥିଲେ କି? ଏହିଥିପାଇଁ ସେ ହାତଧରି ବିଭା ହୋଇଥିଲେ? ଘରକୁ ଘେନି କଣ ବା ସୁଖ ଦେଇଛନ୍ତି, ସୀତାର ସେହି ରାତି କଥା ମନେପଡ଼ିଲା-ସେହି ନିଷ୍ଠୁର ଗୋଇଠା ମାଡ଼, ସେହି ବୋତଲ ବୋତଲ ମଦ୍ୟପାନ! ତା ଦେହରେ କଣ ରକ୍ତ ମାଂସ ନାହିଁ, ଏପରି ନରାଧମ ପଶୁର ଘର, ସେ ପୁଣି କେଉଁ ଅଲାଜୁକ ମୁହଁରେ କରିବାକୁ ଯିବ? ତାଠୁଁ ବାପଘରର ଗଞ୍ଜଣା ତ ସହସ୍ର ଗୁଣେ ଭଲ। ସୀତା ମ୍ଳାନମୁଖ ତଳକୁ ପୋତି ବସିଲା।

ଦିବାକର ଚିଠିରେ ଅନେକ କଥା ଲେଖିଥିଲେ। ଅଙ୍ଗୁରବାଲା ତାଙ୍କର କିପରି ସର୍ବନାଶ କରିଛି, ତା ମଧ୍ୟ ଲେଖା ଥିଲା। କିନ୍ତୁ ତାହା ଯେ କେବଳ ସୀତାଯୋଗୁଁ। ସେ ଯଦି ମଣିଷ ହୋଇଥାନ୍ତା, ଅଙ୍ଗୁରବାଳା କିଏ, ସେ କିଏ? ସୀତାଯୋଗୁଁ ତାଙ୍କର ଏ ସର୍ବନାଶ, ଲୋକନିନ୍ଦା, ଦୁଃଖ ଓ ଋଣଚିନ୍ତା!

ସେ ଦୁଇ ଥର, ତିନି ଥର, ଚାରିଥର ଚିଠିଟା ପଢ଼ିଲା। ରାଗରେ ତାହାର ସର୍ବାଙ୍ଗ ଜଳିଗଲା। କଣ ଏଡ଼େ ବଡ଼ କଥା! ତାରି ଯୋଗୁଁ ସର୍ବନାଶ। ଚିରକାଳ ଦୁଷ୍ଚରିତ୍ର, ସେ ତା ମୁଣ୍ଡରେ ଏବେ ଅଠା ବୋଳୁଛନ୍ତି? ଚିଠିର ଗୋଟିଏ ଧାଡ଼ି ଉପରେ ତା ଆଖି ରହିଲା- "ସୀତା, ତୁମେ ଯଦି ମୋର ହୋଇଥାନ୍ତ, ତା ହେଲେ ମୁଁ ସୁଖୀ ହୋଇଥାନ୍ତି-ମୋର ସ୍ୱଭାବ ବଦଳିଥାନ୍ତା, ଆଉ ତମେ ବି ସୁଖୀ ହୋଇଥାନ୍ତ।" ସୀତା ଭାବିଲା, ତାର ସୁଖ! ତା ଜୀବନରେ ସୁଖ ବୋଲି ଆଉ ଅଛି ବା କଣ? ରଘୁନାଥ ସହିତ ସବୁ ତ ଯାଇଛି, ଖାଲି ପଡ଼ିଛି ତାର ଧଡ଼[୩] ଖଣ୍ଡିକ। ଏହି ମଲା ଧଡ଼କୁ ନେଇ ସେ ବା କାହାକୁ ଶାନ୍ତି ଦେବାକୁ ଯିବ? ବିଶେଷତଃ ଦିବାକର ପରି ସ୍ୱାମୀ-ଚରିତ୍ରହୀନ, ନିଶାଖୋର। ଦିବାକର ଲେଖିଛନ୍ତି, ତାଙ୍କର ଅନେକ କ୍ଷତି ହୋଇଛି, ବହୁତ ଅର୍ଥ ଅପବ୍ୟୟ ହୋଇଛି, ଜମିଦାର ଋଣଗ୍ରସ୍ତ, ଆଉ ନିଜେ ସେ ବାତୁଳ[୪] ପ୍ରାୟ। ସମୟରେ ଯଦି ଘରର ଘରଣୀ ନ ସମ୍ଭାଳେ, ତେବେ କିଏ ସମ୍ଭାଳିବ? ଘରଣୀ ସୀତା ତହିଁର ଅର୍ଥ ବୁଝିପାରି ନାହିଁ। ଦିବାକରଙ୍କର କ୍ଷତି ହୋଇଛି, କି ଲୋକସାନ ହୋଇଛି, ସେ ତ ତାଙ୍କ ଗୁଣରୁ, ମଣିଷକୁ କଲାକର୍ମର ଫଳ ତ ଭୋଗିବାକୁ ହେବ, ସେ ବା କଣ

(୧) ଯଂତ୍ରଣା, (୨) ଆବଶ୍ୟକତା, (୩) ପଂଜରା, କଙ୍କାଳ, (୪) ପାଗଳ।

କରିପାରେ ? ଯେ ତାର ଚିର ଜୀବନ ମାଟି କରିଛି, ସବୁ ସୁଖରେ ନିଆଁ ଢାଳିଛି, ସେ ବ୍ୟକ୍ତି ପୁଣି ତାହାଠୁଁ ସହାନୁଭୂତି ଆଶାକରେ ! ଅସହ୍ୟ !- ସେ ଆଉ ଭାବି ପାରିଲା ନାହିଁ। ତାର କେବଳ ମନେପଡ଼ିଲା ପୂର୍ବର ଦାରୁଣ ସ୍ମୃତିଗୁଡ଼ିକ। ତଥାପି ମନେ ହେଲା, ସେ ତ ସ୍ୱାମୀ !

ଦିବାକରଙ୍କ ଚିଠି ପଢ଼ି ତା ମନ ଅଥୟ ହେଉଥିଲା, ରାଗ ମଧ ହେଉଥିଲା-ହେବାର କଥା। ସକାଳୁ ଅହଲ୍ୟାର ଭାବଭଙ୍ଗୀ ତା ପ୍ରାଣରେ ଖୁବ୍ ଆଘାତ କରିଛି। ଯେ ତାକୁ ଶିଖାଏ-ଯେ ତାକୁ ସ୍ୱାମୀର ଅବାଧ ହେବାକୁ ପରାମର୍ଶ ଦିଏ, ସେ ପୁଣି ସ୍ୱାମୀଲାଗି ବାୟାଣୀପରି ଧାଇଁ ଯାଉଛି। ତା ହେଲେ ନିଜ ସ୍ୱାମୀ ଉପରେ ଅହଲ୍ୟାର ଷୋଳମାୟା; ମୁହଁରେ କେବଳ ସେ ଝାଡ଼ୁ ପାହାର ଦିଏ। ତେବେ ସେ କାହିଁକି ପରକୁ ଏପରି ଶିକ୍ଷା ଦେଉଥିଲା ? ସୀତା ବସି ଆଗପଛ ସବୁ ଭାବୁଥିଲା। ଦିବାକରଙ୍କ ଚିଠି ତା କୋଳରେ ପଡ଼ିଥିଲା। ମାଇଁ ତାକୁ ଏ ଘର, ସେ ଘର ଖୋଜିଆସି ସେହିଠି ପହଞ୍ଚିଲେ; ଦେଖିଲେ-ସୀତା କାନ୍ଦୁଛି। କତିରେ ବସି ସାନ୍ତ୍ୱନା ଦେଇ କାରଣ ପଚାରିଲେ। ସୀତା କିଛି କହିପାରିଲା ନାହିଁ। ନିରକ୍ଷରା କୌଶଲ୍ୟା ଚିଠିଟା ବା କେମିତି ପଢ଼ନ୍ତେ ? ଭାବରୁ ବୁଝିଲେ, ସ୍ୱାମୀର ପତ୍ର। ବୋଧହୁଏ, ସ୍ୱାମୀ ଘର ଲାଗି ଝିଅର ମନ ଉଛନ୍ନ ହେଲାଣି। ସେ ତ ମା, ପୁଣି ସଂସାରୀ-ଜଣ ଏତିକ ବୁଝିପାରିବେ ନାହିଁ ?

ସେହି ଦିନ ମାମୁଁମାଇଁ ଗୁପ୍ତରେ ପରାମର୍ଶ କଲେ। ସୀତାକୁ ଶାଶୂଘରକୁ ପଠାଇବାର ସ୍ଥିରହେଲା। କାଳେ ସୀତାର ପିତା ଏଥିରେ ବାଧା ଦିଅନ୍ତି, ସେଥିପାଇଁ ସେମାନେ ଭଉଣୀ ଭିଣୋଇଙ୍କୁ ଘୁଣାକ୍ଷରେ ସୁଦ୍ଧା ଜାଣିବାକୁ ଦେଲେ ନାହିଁ।

ଯଥା ସମୟରେ ଦିବାକର ପରମାନନ୍ଦର ପତ୍ର ପାଇଲେ। ସୀତା ଯେ ଏତେ ଦିନ ପରେ ନିଜ ଘରକୁ ଆସିବାକୁ ମଙ୍ଗିଛି, ସେ କଥା ଭାବି ତାଙ୍କୁ ଆଉ ରାତିରେ ନିଦ ହେଲା ନାହିଁ। ସେ ସକାଳୁ ନନ୍ଦିଆକୁ ଘେନି ମଉଳାଶ୍ୱର ଘରକୁ ଯାତ୍ରାକଲେ !

ମଉଳାଶ୍ୱର ଘରେ ଆଦର ମର୍ଯ୍ୟାଦାର ଅଭାବ ହେଲା ନାହିଁ। ଶଳା, ଶାଳୀ ଦିଓଟି ଭିଣୋଇଙ୍କୁ ଘେନି ନାନାରଙ୍ଗ କଲେ। ମାତ୍ର ଯାହା ସକାଶେ ଦିବାକର ଆକୁଳ ହୋଇ ଧାଇଁ ଆସିଥିଲେ, କାହିଁ ତାର୍ ତ ଆଦର ପାଇଲେ ନାହିଁ ?-ପୂର୍ବରୁ ସେ ଯାହା, ବର୍ତ୍ତମାନ ମଧ ତାହା। ସ୍ୱାମୀ ଘରକୁ ଯିବାର ସୀତାର ଭୟାନକ ଆପତ୍ତି, କିନ୍ତୁ ମାମୁଁମାଇଁ ଶୁଣିଲେ ନାହିଁ-ବଳାତ୍କାର କରି ପଠାଇଦେଲେ। ସେ କାନ୍ଦି କାନ୍ଦି ବିଦାୟ ନେଲା। ଦିବାକର ତାକୁ ଘେନି କଟକ ଆସଲେ। ସେ ଆଶା କରିଥିଲେ, ଏ ଥର ସେ ଭଲ ହୋଇଗଲା, ମାତ୍ର ଫଳରେ ବୁଝିଲେ, ବିପରୀତ। ସୀତା ଆଜିକାଲି ଆଗ ପରି ଶାନ୍ତ ନୁହେଁ। ଅହଲ୍ୟାଠାରୁ ଶିକ୍ଷା ପାଇଲା ଦିନୁ ତା ସ୍ୱଭାବ କଠୋର ହୋଇଛି-ସେ ସ୍ୱାମୀକୁ ତୁଚ୍ଛ ତାଚ୍ଛଲ୍ୟ କରିବାଟା ଶିଖିଛି। ଦିବାକର

ଦେଖିଲେ-ବିଷମ ବିପଦ, ଦିନରାତି କଳି ତାଙ୍କୁ ଭଲ ଲଗିଲା ନାହିଁ। ତେଣେ ସୀତା ଆସିବାର ଦେଖି ଅଙ୍ଗୁରବାଳାର ମନ ବିକ୍ଷେଇଗଲା। ସେ ଦିବାକରର ସର୍ବନାଶ ପନ୍ଥା ଖୋଜିବୁଲିଲା।

ପଦ୍ମନାଭ ମହାନ୍ତି ତାଙ୍କ ଜମିଦାରର ନାଏବ-ଯେପରି ଚତୁର, ସେହିପରି କାର୍ଯ୍ୟଦକ୍ଷ। ଦିବାକର ପଦ୍ମନାଭକୁ ଭାରି ବିଶ୍ୱାସ କରନ୍ତି, ସେଥିପାଇଁ ଅଙ୍ଗୁରବାଳାର ଯାବତୀୟ ଭାର ଦେଇଥାନ୍ତି ତା ଉପରେ। ଅଙ୍ଗୁରବାଳା ଘରେ ତାଙ୍କୁ ଅବାରିତ ଦ୍ୱାର।

ସୀତାକୁ ଆଠ ଦିନ ତଳେ ବାପଘରକୁ ବିଦାୟ କରିଦେଇ, ମନ ଖରାପ ହେବାରୁ ଦିବାକର ଗ୍ରାମକୁ ଯାଇଥିଲେ। ଇଚ୍ଛା ଥିଲା, ଶଙ୍କରୀକୁ ଘେନି ଆସିବେ, କେମା ମଧ୍ୟ କଟକ ଆସିବାକୁ ଗୋଡ଼ଟେକି ବସିଥିଲା। ସାରା ଦିନଟା ଉଆସ ଭିତରେ ବନ୍ଧାଛନ୍ଦା ଲାଗିଥିଲା, ଆନନ୍ଦରେ ଶଙ୍କରୀର ଗୋଡ଼ତଳେ ପଡୁନଥାଏ। ତାର ଚିରଶତ୍ରୁ ସୀତା ଯେ ଆସନଚ୍ୟୁତ ହୋଇଛି, ଏ କଥା ଭାବି ତା ଛାତି ଫୁଲି ଉଠୁଥିଲା। ହଠାତ୍ କଟକରୁ ଡାକ୍ତା ଆସି ପହଞ୍ଚିଲା-ଅଣି ହଜାର ଟଙ୍କା ନେଇ ଅଙ୍ଗୁରବାଳା ଓ ପଦ୍ମନାଭ ଅନ୍ତର୍ଦ୍ଧାନ। ରାଗରେ, ଦୁଃଖରେ, ଦିବାକର ଜ୍ଞାନ ହଜିଗଲା। ସେ ରାତି ରାତି କଟକ ପଳାଇ ଆସିଲେ। ମୁଣ୍ଡରେ ଆକାଶ ଭାଙ୍ଗି ପଡ଼ିଲା ପରା!

ଚୌଧୁରାଏ ଜୁଆଁଇର ବିପଦବାର୍ତ୍ତା ପାଇଲେ। ସାହାଯ୍ୟ କରିବା ଦୂରର କଥା ଥାଉ, 'ଦୈବ ଦଣ୍ଡିଲା' କହି ଖୁସିରେ ହେଣ୍ଡିମାରିଲେ। ସରସ୍ୱତୀ ଓ ପାଟେଇନାନୀ ଏ ଖବର ପାଇ ଗାଲରେ ହାତଦେଇ ବସିଲେ। ଯେତେ ହେଲେ ଜୁଆଁଇ ଲୋକ, କିନ୍ତୁ ସୀତା ବୁଝି ନ ବୁଝିଲା ପରି ରହିଲା। ତଥାପି ଏ ଥର ତାର କପାଳ ଫାଟିଲା। ତାର ବାପଘରେ ଆଉ ଆଦର ନାହିଁ। ଯେଉଁ ବାପା ମା, ଭାଇ ଭାଉଜର ନୟନମଣି ହୋଇଥିଲା, ସେହିମାନେ ତାକୁ ଛି ଛି କରୁଛନ୍ତି। ସ୍ୱାମୀ ସହିତ ତାର ବ୍ୟବହାର ଯେ ଜଗତଛଡ଼ା, ଏ କଥା ପଡ଼ିଶା ପଡୁଶୁଣୀଠାରୁ ଦାଣ୍ଡ ହାଟ ସଭିଏଁ କହୁଛନ୍ତି। ବିଶେଷତଃ ଚୌଧୁରୀ ଏ ଥର ତା' ଉପରେ ଦିଗୁଣ ଚିଡ଼ିଛନ୍ତି ''ନିଜେ ସେ ବାପ ଘରକୁ ପଳେଇ ଆସିଛି ବସି ଖାଇବ ବୋଲି, ଅଥଚ ସଂପତ୍ତି ଅନ୍ୟ ଲୋକ ଘେନି ପଳାଉଛି''-ଏ କଥା ଶୁଣି ଶୁଣି ତା କାନ ବଧିରା ହେଲାଣି। ଏତେ ଅପମାନରେ ସେ କେମତି ବଞ୍ଚିରହିଛି?

ହେଲେ ଜାଣେ, ତା ଦୁଃଖ ବୁଝେ ଜଣେ, ତା ପ୍ରତି ଭାରି ସହାନୁଭୂତି କରେ। ତାର କେମିତି ମଙ୍ଗଳ ହେବ, ସେ କେମିତି ଭଲରେ ଭଲରେ ତା ସଂଗେ ମିଶିବ-ଏ କଥା ଚିନ୍ତାକରେ ନରିଆ-ପିଲାକାଳଠୁଁ ଯେ ତାକୁ କାଖରେ ପିଠିରେ ପକେଇ ମଣିଷ କରିଛି, ସେହି ନରିଆ।

ନରିଆ ସୀତା ଘରର ବୃଦ୍ଧ ଦାସ। ବହୁକାଳୁଁ ସେ ଘରେ ପାଇଟି କଲାଣି। ତା ନିଜ ଘରଦ୍ୱାର, ପିଲପିଚିକା ଉପରେ ତାର ଯେତେ ମାୟା ନ ଥିଲା, ସରସ୍ୱତୀ ଘର ଉପରେ

ଥିଲା ତାଠୁଁ ବେଶି। ମା ସାଆନ୍ତାଣୀଙ୍କ ସୁଖରେ ତାର ସୁଖ, ଦୁଃଖରେ ଦୁଃଖ। ସୀତା ଲାଗି ତାଙ୍କର କଷ୍ଟ ସେ ଦେଖିପାରୁ ନଥିଲେ। ଟୋକୀଟା ଭଲଘର, ବର ପାଇଥିଲା, ଭଲରେ ଘର କରିଥାନ୍ତା, ତେବେ ସିନା ସଂସାରକୁ ସୁନ୍ଦର ଦିଶିଥାନ୍ତା। ଏ ପୁଣି କି ଅଭିଆଣ କଥା? ଏହାର ପ୍ରତିକାର ବୁଢ଼ା ମନେ ମନେ ଚିନ୍ତା କରୁଥିଲା। ସଞ୍ଜବେଳେ ଯେତେବେଳେ ଅଫିମ ନିଶାରେ ତା ମୁଣ୍ଡ ଝାଙ୍କିଦେଉଥିଲା, ସେତେବେଳେ ସେ ବେଶି ଭାବିଥିଲା ସୀତା କଥା ଓ ମା ସାଆନ୍ତାଣୀଙ୍କ ଦୁଃଖ। କେମିତି ସେ ତାହା ଦୂର କରିବ, ଏହି ଥିଲା ତାର ପ୍ରଧାନ ଚିନ୍ତା।

ବାଲୁବଜାରରେ ଦିବାକର ବାବୁଙ୍କ ଘର ସେ ଜାଣେ। ଅନେକ ଥର ସେ ସେଠିକି ଯିବା ଆସିବା କରେ, ଥରେ ଅଧେ ବାବୁଙ୍କ ଦୃଷ୍ଟିରେ ପଡ଼ିଛି ମଧ। ଦୋଳ ଦଶହରାରେ କେବେ କେବେ 'ବକ୍‌ସିସ୍ ମାଗିନିଏ ମଧ। ଦିନେ ସେ, ଆଉ ବାବୁଙ୍କ ଭଣ୍ଡାରୀ କୁରୁପା କଥାଭାଷା ହେଉଥିଲେ, ବାବୁ ବସିଥିଲେ ଭିତର ପିଣ୍ଡାରେ। କୁରୁପା ପିଣ୍ଡା ଆରପଟେ ପଙ୍ଖା ଟାଣୁଥିଲା। ନରିଆ ଗୋଟିଏ ମୋଟ ପିକା ଲଗେଇ ବସିଥିଲା ସଙ୍ଗୀ କତିରେ, ଆଉ ଗଳ୍ପ କରୁଥିଲା ଆପଣା ସାଆନ୍ତ ଘରକଥା। ଦିବାକର ଖଣ୍ଡିଏ ବହି ପଢୁଥିଲେ ସୁଦ୍ଧା ସେଥିରେ ବେଶି ମନୋଯୋଗ ଦେଇ ନଥିଲେ। କୁରୁପା, ଆଉ ନରିଆର କଥାଭାଷାର ପଦେ ଅଧେ ତାଙ୍କ କାନରେ ବାଜି ଯାଉଥିଲା। ଯେ ଜାଣନ୍ତି, ବୁଢ଼ାଟା ନିତିପ୍ରତି ଏଠିକି ଆସେ; ଚାକରବାକର ଲୋକ ତ, ଚାକରିଆଙ୍କ ସଂଗରେ ଗପକରେ। ତା ଗପରେ ବା କଣ ବିଶେଷତ୍ୱ ଥିବ? ମାତ୍ର ହଠାତ୍ ତା କଥାରେ ସୀତା ନାଁଟା ତାଙ୍କ କାନରେ ବାଜିଗଲା। ସେ ଟିକେ କାନପାରି ଶୁଣିଲେ; କଥାଭାଷାରୁ ବୁଝିଲେ, ପ୍ରକୃତରେ ତାଙ୍କରି ସ୍ତ୍ରୀ କଥା ପଡ଼ିଛି। ତାଙ୍କରି ଭାରି ରାଗହେଲା; ପାଟି କରି କୁରୁପାକୁ ଡାକଟାଏ ଦେଲେ। କୁରୁପା ଥରି ଥରି ହାଜର। ବାବୁ ରାଗରେ ଆଖିକାଢ଼ି କହିଲେ, ''ସେ ବୁଢ଼ାଟା କିଏ ରେ?''

କୁରୁପା ହାତ ଯୋଡ଼ି 'ଆଜ୍ଞା', 'ଆଜ୍ଞା' ହୋଇ କହିଲା, ''ସେ ସାନ ସାଆନ୍ତାଣୀ ଘରର ଚାକିରିଆ।''

''ଏଠିକି କିଆଁ ଆସେ?''

''ଆମ ମାହାର୍ଦ୍ଦ ବନ୍ଧୁ-ଧରମଭାଇ।''[୧]

ବାବୁର ରାଗ ଟିକେ ଊଣାହେଲା। ସେ ନରିଆକୁ ଡକେଇଲେ' ସେହି ଦିନୁ ତା ସହିତ ତାଙ୍କର ପରିଚୟ। କଥାରେ ଲୋକଙ୍କୁ କେମିତି ବଶ କରିବାକୁ ହୁଏ, ନରିଆକୁ ତା ଭଲ ଜଣା, ନୋହିଲେ, ଚୌଧୁରୀଙ୍କ ପରି ଟାଣୁଆ ମୁନିବର କତିରେ ତା ଦିହାତ କଟି ନ ଥାନ୍ତା! ଦାଣ୍ଡକୁ ସେ ଭାରି ମୂର୍ଖ-ଟଙ୍କାକର ପଇସା ଗଣି ଜାଣେ ନାହିଁ ସତ, ମାତ୍ର ଭିତରେ ସେ ପଣ୍ଡିତଙ୍କ କାନ କାଟି ପାରେ। କ୍ରମେ ନରିଆ ବାବୁଙ୍କ ପ୍ରୀତିପାତ୍ର ହେଲା। ବାବୁ ନରିଆଠୁଁ ସୀତାର ଖବର ଅନ୍ତର ବୁଝନ୍ତି। ଯାହା ସତ, ତାର ଚାରିପଟା କରି ନରିଆ ବାବୁଙ୍କୁ କହେ।

(୧) ମହାପ୍ରସାଦ ଦେଇ ଧର୍ମ-ସଂପର୍କ ସ୍ଥାପନ।

ଦିନେ ସେ କାନ୍ଦୁଣି ମାନ୍ଦୁଣି ହୋଇ କହିଲା, ''ସାନ ନାନୀ ଆମର ଆପଣଙ୍କ ଚିନ୍ତାରେ କଳା କାଠ ହେଲେଣି। କିଆଁ ତାଙ୍କୁ ଘେନି ଆସୁ ନାହିଁ? କେତେଦିନ ଆଉ ସେ ଏତେ କଷ୍ଟ ଅଙ୍ଗେ ନିଭେଇବେ?'' ତେଣେ ସୀତା କତିରେ ଦିବାକରଙ୍କର ନାନା କଥା ବଡ଼ ଚକଚକିଆ କରି ବର୍ଣ୍ଣନାକଲେ।

ରେବତୀର ପିଲା ହୋଇଛି। ସେ ଅନ୍ତୁଡ଼ିଶାଳରେ ଅଛି। ପୀତେଇ ନାନୀ ତା ସହିତ ଛୁଆଁ ହୋଇଛି। ସେହି ଯୋଗୁଁ ସୀତାକୁ ରୋଷେଇ ଘର ପାଇଟିସବୁ ସାରିବାକୁହୁଏ। ସରସ୍ୱତୀଙ୍କର ଦେହ ପାରୁ ନାହିଁ। ସେ ଦିନ ସଞ୍ଜ ବୁଡୁ ବୁଡୁ ''ସୀତା ସବୁକାମ ସାରି ଆସି ପୋଖରୀକୂଳରେ ଦାନ୍ତ ଘସି ବସିଲା। ସେତେବେଳେ ଆକାଶ ସଂପୂର୍ଣ୍ଣ ଅନ୍ଧାର, ଗୋଟାଏ ଯୋଡ଼ାଏ ତାରା ଫୁଟିଲେଣି। ଅନ୍ଧାର ପକ୍ଷ, ତେଣୁ ଚାନ୍ଦ ଉଠି ନାହିଁ। ସୀତା ଅନ୍ଧାରରେ ଏକାକିନୀ ଦାନ୍ତ ଘଷୁ ଘଷୁ ଅନେକ ବେଳଯାଏ ବହୁତ କାନ୍ଦିଲା। ତା ମନରେ ସ୍ୱାମୀଚିନ୍ତା ଆଜି କାଲି ବଡ଼ ପ୍ରବଳ। ବାସ୍ତବିକ ନରିଆ କଥା ଶୁଣିଲା ଦିନୁଁ ତା ମନ କେମିତି କେମିତି ଘାଣ୍ଟି ଗୋଳେଇ ହେଉଛି। ଯେତେ ହେଲେ ହାତ ଧରିଛି! ସେ ଏକା କଣ ଭୋଗୁଛନ୍ତି, ଚିନ୍ତାରେ ଶଯ୍ୟାଶାୟୀ ହୋଇ ରହିଛନ୍ତି, ସର୍ବଦା ତାଙ୍କୁ ସ୍ମରଣ କରୁଛନ୍ତି, ତା ବିନା ଆଉ ତାଙ୍କର କାହିଁରେ ସୁଖ ଶାନ୍ତି ନାହିଁ। ହାୟ! କି ସୀତା ପରା ସ୍ୱାମୀକୁ ଛାଡ଼ିଛି? ସ୍ୱାମୀ ଦୁଷ୍ଟ ହେଉ, ଭଲ ହେଉ, ସେ ତ ଧର୍ମରେ ସ୍ୱାମୀ। ସୀତାର ସ୍ୱାମୀ ଉପରୁ ଅଭିମାନ ଚାଲିଯାଇଛି। ତା ମନରେ ହେଉ, ଏଥର ଡାକିଲେ ନିଶ୍ଚେ ଯିବି।

ସେତିକି ବେଳେ କିଏ ଜଣେ ଆସି ତା ପଛଆଡ଼େ ଛିଡ଼ାହେଲା। ସୀତା ଚମକି ପଡ଼ି ପଛକି ଚାହିଁଦେଲା। ତାର ନିଜ ଆଖିକି ବିଶ୍ୱାସ ହେଲା ନାହିଁ। ସାକ୍ଷାତ୍ ଦିବାକର ସେଠି ଉପସ୍ଥିତ। ସୀତା ମୁଣ୍ଡରେ ଲୁଗା ଟାଣି ପାହାଚ ତଳକୁ ଓହ୍ଲାଇଗଲା। ଦିବାକର ଡାକିଲେ, ''ଆସ।'' ସୀତା ଉପରକୁ ଆସିଲା, ଦିବାକର ତାକୁ କତିକି ଟାଣିଆଣିଲେ। ପ୍ରଗାଢ଼ ପ୍ରେମରେ ବାହୁ ପାଶରେ ବେଷ୍ଟନ କରିପକାଇଲେ। ସୀତା ପୂର୍ବପରି ବିରକ୍ତ ହେଲା ନାହିଁ, ବରଂ ସ୍ୱାମୀ କୋଳରେ ଆଉଜି ପଡ଼ିଲା। ଦିବାକର ତାର କାନ କତିକି ମୁହଁଦେଇ କୋମଳ ମଧୁର କଣ୍ଠରେ କହିଲେ, ''ମୁଁ ତୁମକୁ ନେବାକୁ ଆସିଚି, ଏଥର ଯିବ ତ?'' ସୀତା ହଁ କି ନାହିଁ କିଛି ଉତ୍ତର ଦେଲା ନାହିଁ। ମାତ୍ର ତାର ଭାବରୁ ଦିବାକର ସବୁ ବୁଝିନେଲା। ସେ ଦିନ ତାଙ୍କ ଜୀବନର ଏକ ଅପୂର୍ବ ମୁହୂର୍ତ୍ତ। ସେ ବିହ୍ୱଳ ହୋଇ ଆକାଶକୁ ଚାହିଁ ରହିଲେ। ସତେ ସୀତା ତାଙ୍କର ହେବ, ଏ ବିଶ୍ୱାସ ନ ଥିଲା। ସେ ସେହି ପକା ଚଉତରା ଉପରେ ବସି ପଡ଼ିଲେ। କୋଳରେ ସୀତା! ସୀତାର ଅଭିମାନ ଭାଙ୍ଗିଗଲା। ସେ ସ୍ୱାମୀ କୋଳରେ ମୁହଁ ମାଡ଼ି କଇଁ କଇଁ ହୋଇ କାନ୍ଦିଲା। ଦିବାକର ମଧ କାନ୍ଦିଲେ। ବହୁଦିନର ବିଚ୍ଛେଦ ପରେ ଏ ମର୍ମସ୍ପର୍ଶୀ ମିଳନ। ଉଭୟେ ଆଜି ଉଭୟକୁ ଚିହ୍ନିଲେ ପରା– ଦୁହେଁ ଦୁହିଁକୁ ପ୍ରାଣରେ ବରଣ କଲେ ପରା! ପରସ୍ପର ପରସ୍ପରକୁ ଦୁଃଖ ଦେଇଥିଲେ, ଉଭୟର ଅବିଚାରରେ ଉଭୟେ କଷ୍ଟ

ପାଇଥିଲେ। ଦିବାକର ଓ ସୀତା ଦୁଇ ଜଣ ବୁଝିଲେ, ପରସ୍ପରର କି ସମ୍ବନ୍ଧ। ଯେଉଁ ସମ୍ବନ୍ଧରେ ସୂର୍ଯ୍ୟ ଓ ପୃଥିବୀ ପରସ୍ପର ସମ୍ବନ୍ଧ, ବୃକ୍ଷଲତା ପରସ୍ପର ଆବଦ୍ଧ, ସରିତ୍ ଓ ସାଗର ପରସ୍ପର ତରଙ୍ଗରେ ନିତ୍ୟ ଆଲିଙ୍ଗିତ, ସେହି ମହାଗଭୀର ଅତ୍ୟୁଚ୍ଚ ଅନୁପମ ସମ୍ବନ୍ଧ ଦୁହିଁଙ୍କ ହୃଦୟର ଅନ୍ତରତମ ପ୍ରଦେଶରେ ବର୍ତ୍ତମାନ ନିହିତ। ଉଭୟେ ସେହି ମୁହୂର୍ତ୍ତରେ ଉଭୟଙ୍କୁ କ୍ଷମା ଦେଲେ। ଅନୁଭୂତିର ଗଭୀରତାରେ କେହି କଥା କହି ପାରିଲେ ନାହିଁ। ସୀତା ମନେ କଲା, "ତୁମଯୋଗୁଁ ମୁଁ ଏ କଷ୍ଟ ପାଇଲି।" ଆଉ ଦିବାକର ଭାବିଲେ, "ତୁ ଯଦି ମୋର ହୋଇଥାନ୍ତୁ–"

ସେ ଦିନ ଆକାଶରେ ତାରାଗୁଡ଼ିକ ବଡ଼ ଉଜ୍ଜ୍ୱଳ ଦିଶିଲେ, ପବନ ବଡ଼ ମଧୁର ବୋଧହେଲା, ଫୁଲର ଗନ୍ଧ ବଡ଼ ପ୍ରୀତିକର ଲାଗିଲା।

ସରସ୍ୱତୀ ଓ ପାତେଇ ନାନୀ ଏତେଟା ଆଶା କରି ନ ଥିଲେ। ଜୁଆଇଁ ବରଣକରି ମହାନନ୍ଦରେ ଝିଅ ଜୁଆଇଁକି ନୂଆ ନାତୁଣୀର ଏକୋଇଶା ବାସିଦିନ ବିଦାୟ କଲେ। ସୀତା ଯେ ଏଥର ସୁଖ ଶାନ୍ତିରେ ଘର କରିବ, ଏହି ଆନନ୍ଦରେ ଦୁଇଟି ନାରୀପ୍ରାଣ ପୂର୍ଣ୍ଣହେଲା। ସୀତା ମଧ ବୁଝିଲା, ମା ଭାଉଜର କଟୁ ବ୍ୟବହାର ଭିତରେ କେତେଦୂର ପ୍ରେମ ଓ ମଙ୍ଗଳ ବାଞ୍ଛା ବିଦ୍ୟମାନ ଥିଲା।



## ଏକବିଂଶ ଅଧ୍ୟାୟ

ମାୟା ଯିବାର ଅନେକ ଦିନ ହୋଇଗଲାଣି। ପ୍ରଥମେ ପ୍ରଥମେ ରଘୁନାଥ ଭାବିଲା– ଯାଉ, ଆପଦ ଗଲା; ଏ ଥର ମନରୁ ସବୁ ଚିନ୍ତା, ସବୁ ଗ୍ଳାନି ଦୂର କରି ସେ ପାଠରେ ମନ ଦେବ। ଫଳ ହେଲା ଠିକ୍ ବିପରୀତ। ମାୟାବିନୀ ତାକୁ କେବଳ ବିଶାଳ ଭବନ ହତଶ୍ରୀ ଓ ଶୂନ୍ୟ ବୋଧହେଲା। ସେ ଘରେ ଛାୟା, ତୃପ୍ତି, ସୁଲେଖା ପ୍ରଭୃତି ପନ୍ଦର କୋଡ଼ିଏ ପିଲା, ସାନ ସାନ ପିଲା ମଧ ଗୋଛାଏ, ସମସ୍ତେ ତାକୁ ଚାରି ପାଖରେ ଘେରି ବ୍ୟସ୍ତକରନ୍ତି। କେବଳବାବୁ ତାକୁ ନିଜର ପୁତ୍ରତୁଲ୍ୟ ସ୍ନେହ କରନ୍ତି। ଏଠି ତାର ଅଭାବ କଣ? କେବଳ ବାପ ପୁଅ ଦୁଇଟିଙ୍କୁ ବିଲାତକୁ ପଠାଇ ଦେଇ ଅଶ୍ରୁଗଦ୍‌ଗଦ୍ କଣ୍ଠରେ ତାକୁ କହିଲେ, "ବାବା ରଘୁନାଥ, ଅମୀ, ଅମ ଓ ମାୟା ମୋତେ ତ ଛାଡ଼ିଗଲେ। ତୁମେ ଏ ଥର ମୋ ସାହା ଭରଷା, ତୁମେ ଆଉ ମୋତେ ହେଳା କରିବ ନାହିଁ।" ହାୟ ହାୟ, ରଘୁନାଥ ପୁଣି କେବଳବାବୁଙ୍କ ସାହା ଭରସା! ଘର ଯାହାର ଦାସଦାସୀରେ ପୂର୍ଣ୍ଣ, ଯାହାଙ୍କର ସ୍ତ୍ରୀ ସାକ୍ଷାତ୍ ଲକ୍ଷ୍ମୀସ୍ୱରୂପା, ପୁଅଝିଅ ପୁତୁରାଝିଆରୀ ସର୍ବଦା ଆଜ୍ଞାଧୀନ, ସେ କେବଳବାବୁ ସାନପିଲାପରି ରଘୁନାଥକୁ ଏଭଳି କହନ୍ତି? ରଘୁନାଥ ବୁଝିଲା, ଏହା କୃତ୍ରିମ ନୁହେଁ, କେବଳବାବୁ ବାସ୍ତବିକ ତାକୁ ସ୍ନେହରେ ବୁଡ଼ାଇ ରଖିଛନ୍ତି। ଦୁଇବର୍ଷ ହେଲା ଏଠି ସେ ଅଛି, ଦିନେ ହେଲେ ତାଙ୍କ ସ୍ନେହରେ ତ୍ରୁଟି ସେ ଦେଖି ନାହିଁ। ତାହାର ପାଠ ପଢ଼ିବାଲାଗି ସେ ଅଜସ୍ର ଖରଚ କରନ୍ତି; ତାହାର ଲୁଗାପଟା,

ଖାଇବା, ପିଇବା ସମସ୍ତ ବିଷୟ ତନ୍ନ ତନ୍ନ କରି ବୁଝନ୍ତି-ତାଙ୍କର ସ୍ନେହ ଅତୁଳନୀୟ। ଆଜିକାଲି ସେ ଗୋଟିଏ ନୂଆ କାମ ପାଇଛି। 'ରେନିସାନ୍‌ସ' ନାମକ ଗୋଟିଏ ଇଂରାଜୀ ପତ୍ରିକା କେବଳବାବୁ ବାହାର କରି ତହିଁର ସଂପାଦନଭାର ତା ଉପରେ ଦେଇଅଛନ୍ତି। କେବଳ ବାବୁ ତହିଁର ନାମମାତ୍ର ସମ୍ପାଦକ।

ରଘୁନାଥ ଆଉ ପୂର୍ବର ରଘୁନାଥ ନୁହେ। ଦେଶର କଥା ସେ ଚିନ୍ତା କରେ-ଦେଶର ଅଜ୍ଞାନ, କୁସଂସ୍କାର, ଦାରିଦ୍ର୍ୟ, ଦୁର୍ଦ୍ଦଶା ତା ହୃଦୟରେ ଆଘାତ ଦି'ଏ। ଦେଶରେ କିପରି ନବ– ଜୀବନ ଆସିବ, ସାମଜରେ କିପରି ନବଜାଗରଣ ଉପସ୍ଥିତ ହେବ, ଏ ସବୁ ଆଜିକାଲି ତାର ଭାବନାକୁ କେନ୍ଦ୍ରୀଭୂତ କରିଅଛି। ସେ ଆଜିକାଲି ଓଡ଼ିଆ-ବଙ୍ଗାଳୀ-ବିଦ୍ୱେଷୀ ନୁହେଁ- ନିଜକୁ ସଂପୂର୍ଣ୍ଣ ରୂପରେ ଭିନ୍ନଜାତୀୟ ଜାଣି ସୁଦ୍ଧା, ବଙ୍ଗାଳୀକୁ ଆଉ ଘୃଣାଦୃଷ୍ଟିରେ ଦେଖେ ନାହିଁ। ସେମାନେ  ମଧ ତାକୁ ନିଜର ଆତ୍ମୀୟ ସଦୃଶ ଜ୍ଞାନକରନ୍ତି। ପ୍ରେମ ବିଶ୍ୱଜୟୀ। ରଘୁନାଥର କେବଳବାବୁଙ୍କ ପ୍ରତି ଗଭୀର ଶ୍ରଦ୍ଧା ତାହାକୁ ଜାତିର ଉଚ୍ଚତା ନୀଚତା ଲୁଚାଇ ସାରିଲାଣି। ସେ ଜଣେ ବ୍ରାହ୍ମଣ, ଆଉ ଏ ପରିବାର ଯେ ଅସ୍ପୃଶ୍ୟ କୈବର୍ତ୍ତ-ଏ କଥା ଦିନେ ହେଲେ ତାର ମନେ ପଡ଼େ ନାହିଁ। ଜାତିରେ ଯେ ମନୁଷ୍ୟ ବଡ଼ ହୁଏ ନାହିଁ-ମନୁଷ୍ୟତ୍ୱରେ ବଡ଼ ହୁଏ, ଏହା ସେ ବେଶ୍ ବୁଝିଲାଣି; ସେଥିପାଇଁ ତାର ପୂର୍ବତନ ଧର୍ମସଂସ୍କାର ମଧ ଢିଲା ହୋଇଗଲାଣି। ଯଦ୍ୟପି ସେ ପ୍ରକାଶ୍ୟରେ ଧର୍ମାନ୍ତର ଗ୍ରହଣକରି ନାହିଁ। ତଥାପି ସେ ଆଉ ଲକ୍ଷଣଶୀଳ ଦଳର ସଂକୀର୍ଣ୍ଣ ଗଣ୍ଡି ଭିତରେ ନାହିଁ, ଏହା ମଧ ବୁଝିଲାଣି।

କେବେ କେବେ ତାର ଦେଶକଥା ଭାରି ମନେ ପଡ଼େ-ଖୁଡ଼ୀ, ସରସ୍ୱତୀ, ପୀତେଇ ନାନୀ, ତାରାମଣି, ସମସ୍ତେ ତା ଆଖି ଆଗରେ ନାଚିଉଠନ୍ତି। ସେମାନଙ୍କୁ ଦେଖିବାକୁ ମଧ ତାର ପ୍ରବଳ ଆକାଂକ୍ଷା ହୁଏ, ମାତ୍ର ବିବାହଭୟରେ ସେ ଦେଶମୁହାଁ ହୋଇ ନାହିଁ। ଆଉ ଦ୍ୱିତୀୟ ଭୟ, ଆଜିକାଲି ତାକୁ ବା ଜାତିରେ କିଏ ପୂରାଇବ? ଏ ସବୁ ନାନା କଥା ଭାବି ସେ ଦେଶକୁ ଯାଏ ନାହିଁ। ସମୟ ସମୟରେ ଆପଣା ଠିକଣା ନ ଦେଇ ଖୁଡ଼ୀ ଓ ତାରାମଣିଙ୍କଠାକୁ ଚିଠିରେ ନିଜର କୁଶଳ ସଂବାଦ ପଠାଏ। କଲିକତାରେ ଜଣେ ବଡ଼ଲୋକ ଘରେ ଥାଇ ଏମ୍.ଏ. ପଢୁଛି, ଏହା ମଧ ସେ ଜଣାଇଛି। ଖୁଡ଼ୀ ଓ ତାରାମଣିଙ୍କ ଲାଗି ସେ କଲିକତା ଲୁଗା ଓ ମନୋହାରୀ ଜିନିଷ ମଧ ପଠାଇଥିଲା; ତଥାପି ନିଜର ପ୍ରକୃତ ଠିକଣା ଦେଇନାହିଁ। ବରଂ ପୋଲିସ୍ ଇନସପେକ୍ଟରର ରାସବିହାରୀ ଦେବଙ୍କର ଠିକଣା ଦେଇଥିଲା।

ଦେଶରୁ ଅନେକ ଅଭିମାନପୂର୍ଣ୍ଣ ଚିଠିମାନ ଆସିଲା। ଖୁଡ଼ୀ ଓ ତାରାମଣୀ ତାକୁ ଦେଶକୁ ଫେରିଯିବାକୁ ଅନୁରୋଧ କରନ୍ତି, ମାତ୍ର ସେ ଯେ ଏତେ ଆଶା କରିଥିଲା ଜଣକର ପଦେ ଖବର ପାଇବାଲାଗି, ସେତକ ତ ମିଳିଲା ନାହିଁ। ସୀତା ଓ ସରସ୍ୱତୀ କାହାରି ସମ୍ବାଦ ତାରାମଣି ବୋଧ ହୁଏ ଇଚ୍ଛାପୂର୍ବକ ତାକୁ ଦେଲେ ନାହିଁ, ବରଂ ରେବତୀର ଯାଁଳା ପୁଅ ହୋଇ ସେ ମରୁଁ ମରୁଁ ବଞ୍ଚିଲା ଏବଂ ଚୌଧୁରୀଙ୍କର ଏକଅଙ୍ଗୀବାତ କଥା ଲେଖାଥିଲା। ଚୌଧୁରୀଏ

ବର୍ଷେ ହେଲା ଶଯ୍ୟାଶାୟୀ, ଅକ୍ଷମ ହୋଇ ବଡ଼ କଷ୍ଟ ପାଉଛନ୍ତି, ରଘୁନାଥ ଯେତେବେଳେ, ସମ୍ବାଦଟି ପାଇଲା, ତା ମନଟା ଅତ୍ୟନ୍ତ ଆହ୍ଲାଦିତ ହେଲା। ଏହା ତାହାର ପ୍ରାପ୍ୟ, ଏ କଥା ଜାଣି ସୁଦ୍ଧା, ସେ ତାହାର ପ୍ରବୃତ୍ତିକୁ ଦମନ କରିପାରିଲା ନାହିଁ। ତାର ଅଭିଶାପରେ ଯେ ଚୌଧୁରୀଙ୍କୁ ଏ ଦଣ୍ଡ ଘଟିଲା, ଏ କଥା ଭାବି ସେ ଟିକେ ସ୍ୱସ୍ତି ଅନୁଭବକଲା। ତାର ହୃଦୟ ଏଡ଼େ ମହତ୍ ହୋଇଥିବା ସତ୍ତ୍ୱେ ଚୌଧୁରୀ ପ୍ରତି ହିଂସାର ଭାବ ଏବେ ସୁଦ୍ଧା ପାଉଁଶ ଘୋଡ଼ା ନିଆଁ ପରି ତା ପେଟ ଭିତରେ ଲୁଚିରହିଥିଲା। ମନେ ମନେ ଭଗବାନଙ୍କୁ ଧନ୍ୟବାଦ ଦେଇ ସେ ଭାବିଲା– ଯେପରି କର୍ମ, ସେପରି ଫଳ। ଯେଉଁ ହାତରେ ସେ ଅନାଥ ଅର୍କ୍ଷିତଙ୍କର ଦାନା କାଟିଛି, ଯେଉଁ ହାତରେ ସେ ଗରିବର ତଣ୍ଟିଚିପି ପଇସା ମୁଠେଇଛି, ସେହି ହାତ- ସେହି ଅଙ୍ଗକୁ ଭଗବାନ୍ ଅବଶକରି ଶିରାଛଡ଼େଇଲେ, ଏ କଥା ଚିନ୍ତା କରି ସେ ପ୍ରଫୁଲ୍ଲ ହୋଇ ଉଠିଲା। ପରକ୍ଷଣରେ ଭାବିଲା-ହାୟ ସରସ୍ୱତୀ। ଏପରି ଦୟାବତୀ, ଏପରି ସ୍ନେହଶୀଳା, ଏଡ଼େ ଧାର୍ମିକ। ଯଦି ଚୌଧୁରୀ ମରିଯାଏ ସେ ଯେ ବିଧବା ହେବେ-ଚାରିକୁଳକୁ ଯିବେ! ଭଗବାନ୍, ଚୌଧୁରୀଙ୍କୁ ଭଲକରିଦିଅ। ସେ ଛୋଟ ନେଙ୍ଗଡ଼ା ହୋଇ ବଞ୍ଚିଥାଉ, ଆଉ ମା ସାଆନ୍ତାଣୀଙ୍କ ମୁଣ୍ଡରେ ସିନ୍ଦୂରଟିପା ବିରାଜୁଥାଉ।

ସେଥିପାଇଁ ସେ ଯେତେବେଳେ ଜଗନ୍ନାଥଙ୍କ କତିକି ଚିଠି ଲେଖିବସିଲା, ଚୌଧୁରୀ ବୁଢ଼ାଙ୍କୁ ଭଲ ଔଷଧ ଦେଇ ଭଲ କରିବାକୁ ଅନୁରୋଧକଲା। ତାର ବାପାଙ୍କ ଔଷଧରେ ଭାରି ବିଶ୍ୱାସ। ଆଉ ବଡ଼ କଷ୍ଟରେ ଅଶ୍ରୁପାତକରି ଖଣ୍ଡେ ପତ୍ର ମା ସାଆନ୍ତାଣୀଙ୍କ କତିକି ଲେଖିଲା, କିନ୍ତୁ ସେଥିରେ ସୀତା ବିଷୟ ଲଜ୍ଜାରେ ଉଲ୍ଲେଖ କରିପାରିଲା ନାହିଁ। ସେ ପତ୍ରଖଣ୍ଡିକ ଡାକରେ ଦେଇଆସି ସେ ମାୟା କଥା ଭାବିଲା। ସତେ କଣ ମାୟା ତାକୁ ଭଲପାଏ? ସେଥିପାଇଁ କଣ ଏତେ ଦୂରେ ଦୂରେ ରହେ? ସେ ସୀତାକୁ ଭଲ ପାଏ ବୋଲି ସିନା ତା କଥା ଚିଠିରେ ପଦେ ଉଲ୍ଲେଖ କରିବାକୁ ଲଜ୍ଜାବୋଧକଲା। ତେବେ ମାୟାର କିପାଁ ସେପରି ସ୍ନେହ ସଙ୍କୋଚ ଭାବ ନ ହେବ? ଏହା ତ ସ୍ୱାଭାବିକ, ମାତ୍ର ସେ ଚାକିରି କରିବାକୁ ଦୂର ଦେଶକୁ ଗଲା କାହିଁକି? ଯଦି ରଘୁନାଥକୁ ସେ ଏତେ ଭଲ ପାଆନ୍ତା, ତେବେ ତାକୁ ଛାଡ଼ି ସୁଦୂର ହିମାଳୟକୁ ଯାଆନ୍ତା କି? କଦାପି ନୁହେଁ। ସେ ଚାକିରି କରିବାକୁ ଗଲା କାହିଁକି? ତାର କଣ ଅଭାବ? ଧନକୁବେରର କନ୍ୟା ସେ, ସେ କାହିଁକି ପୁଣି ମିଶନ ଚାକିରି କରିବାକୁ ଗଲା?

ସେ କାହିଁକି ଚାକିରିକୁ ଗଲା-ଏ କଥାର ସଦୁତ୍ତର ରଘୁନାଥ ଦେଖିପାରିଲା ନାହିଁ ସତ, ମାୟା ମଧ୍ୟ ତାହାର ଉତ୍ତର ଦେଇପାରିଲା ନାହିଁ। କାହିଁକି ସେ ଦୂର ବିଦେଶକୁ ପିତା ମାତାଙ୍କ ଇଚ୍ଛା ବିରୁଦ୍ଧରେ ଚାକିରିକରିବାକୁ ଆସିଲା, ସେ କେଉଁ ଅଭିମାନର ଆଘାତରେ, ତାହା ଯେ ମାୟାର ମନ ବୁଝି ନାହିଁ, ସେ ବୁଝିପାରିବ ନାହିଁ। ମାୟା ବାହାରକୁ ବଡ଼ ଗମ୍ଭୀର,

ବଡ଼ ସଂଯତ, ବଡ଼ ଆତ୍ମସମାନପ୍ରିୟ ହେଲେ ମଧ, ତାର ଅନ୍ତରଟା ତ ପ୍ରେମଶୂନ୍ୟ ନ ଥିଲା। ପ୍ରେମକୁ ସେ କଥା ବା କାର୍ଯ୍ୟ କାହିଁରେ ପ୍ରକାଶକରିପାରିଲା ନାହିଁ। ତରଳତା ତା ସ୍ୱଭାବରେ ଆଦୌ ନ ଥିଲା, ସେ ନିଜେ କାହାକୁ ନିଜର ହୃଦୟ ବୁଝାଇବାକୁ ଚାହୁଁ ନଥିଲା; କିନ୍ତୁ ଅନ୍ୟ ଜଣେ ସ୍ୱତଃପ୍ରବୃତ୍ତ ହୋଇ ବୁଝୁ, ଏ ଆଶା ସେ ନିତି କରୁଥିଲା। ସେ ନିଜର ହୃଦୟକୁ ଯଥାସାଧ୍ୟ ଗୋପନକରି ଚଳୁଥିଲା।

କିନ୍ତୁ ରଘୁନାଥ ତ ବୁଝିଲା ନାହିଁ-ରଘୁନାଥ ତ ଦିନେ ହେଲେ ତାର ତତ୍ତ୍ୱ ନେଲା ନାହିଁ। ଯାହା ଯୋଗୁଁ ସେ ସବୁ ସୁଖ, ସବୁ ସୌଭାଗ୍ୟ ପାଇଲା, ତା କଥା ତ ଦିନେ ଭାବିଲା ନାହିଁ। ସେ କଣ ଏଡ଼େ ହୃଦୟହୀନ, ଏଡ଼େ ଉଦାର ମନା, ସେ କଣ କେବେ ପଥର ହୋଇପାରେ? ସାମାନ୍ୟ ଉପକାରଲାଗି ସେ ତାର ପ୍ରେମ କିଣିବାକୁ ଚାହେଁ, ଏଡ଼େ ହୀନ ତାର ହୃଦୟ! ମାୟା ନିଜକୁ ତିରସ୍କାର କରି ନୀରବ ହେଲା, ମନ ତାର ରଘୁନାଥ କତିରେ ପଡ଼ିରହିଲା। ସେ ଅକାରଣ ଅଭିମାନକରି ଦେଶ ଛାଡ଼ିଆସିଲା। ଏହା ତାର ମୂର୍ଖତା ବୋଲି ବୋଧହେଲା। ରଘୁନାଥ କିଏ ସେ? ସେ ସାମାନ୍ୟ ବ୍ୟକ୍ତି। ତାର କି ମାନ ସମ୍ମାନ ଅଛି ଯେ, ସେ ତାକୁ ବିବାହ କରିବ! ବିଲାତଫେରତା ସୁରେନ୍ କଣ ତାର ଉପଯୁକ୍ତ ପାତ୍ର ନୁହେଁ? ସୁରେନ୍ ତ ସର୍ବଦା ତା ନିକଟରେ ପ୍ରେମର ପ୍ରସ୍ତାବ କରିଛି, ଆଉ ସେ ଘୃଣାରେ ଉପେକ୍ଷା କରିଛି। ଏହା କଣ ଠିକ୍ ହୋଇଛି? ଛି, ଛି, ସୁରେନ୍ ମଦ ଖାଏ-ଚରିତ୍ରହୀନ; ତାର ହଜାର ଧନ ଥାଉ, ହଜାର ସମ୍ମାନ ଥାଉ, ସେ କଣ ଆଉ ମଦୁଆକୁ ବିଭା ହୁଅନ୍ତା? ମାୟା ଅନେକ ଥର ଭାବିଲା-ସେ କଲିକତା ଫେରିଯିବ, ଅବିନାଶକୁ ବିଭା ହେବ। ସେ ଜଣେ ନାମଜାଦା ଓକିଲ ଓ ବିଖ୍ୟାତ ଲୋକର ପୁଅ,-ମଣି କାଞ୍ଚନର ସଂଯୋଗ ଘଟିବ। ବିବାହ ପରେ ଦୁଇଜଣ ବିଲାତ ଯିବେ-ଅବିନାଶ ବାରିଷ୍ଟରି ପଢ଼ିବ, ଆଉ ସେ ଏ ଦେଶ ସେ ଦେଶ ବୁଲି ଦେଖିବ। ହାୟ! ହାୟ! ଏହା ହିଁ ସୁନ୍ଦର ହୋଇଥାନ୍ତା। ହଠାତ୍ କେଉଁଠୁ ରଘୁନାଥ ଆସି ତା ଜୀବନ ମାଟିକଲା, ତାର ସବୁ ଭବିଷ୍ୟତ ସ୍ୱପ୍ନ ଭାଙ୍ଗିଦେଲା। ମାୟା ସେହି କଥା ଭାବି ସେଦିନ ଶରତକାଳର ଆସନ୍ନ ସନ୍ଧ୍ୟାଚ୍ଛନ୍ନ ଆକାଶକୁ ଚାହିଁଥିଲା। ଖିଡ଼ିକିବାଟେ ଅଳ୍ପ ଦୂରରୁ ପର୍ବତର ଶୃଙ୍ଗମାଳା ବରଫରେ ଧୋବଫରଫର ଦିଶୁଥିଲା, କେଉଁଠି ଧୂଆଁଳିଆ ହୋଇ ଆକାଶରେ ମିଶିଗଲା ପରି ବୋଧହେଉଥିଲା, ଧୀରେ ସନ୍ଧ୍ୟାର ଅନ୍ଧକାର ଗାଢ଼ରୁ ଗାଢ଼ତର ହୋଇଗଲା, ଧୀରେ ଧୀରେ ଧଳା ଜିନିଷ ସବୁ ଧୂସରା ଦିଶିଲା, ସଞ୍ଜପବନର ସୁମଧୁର ସ୍ପର୍ଶରେ ତାହାର ଦୈହିକ କ୍ଳାନ୍ତି ହଜିଗଲା। ସେ ଦାସୀକୁ ଦୀପ ଜାଳିବାକୁ କହି ତଳକୁ ଓହ୍ଲାଇଗଲା।

ତଳ ଘରେ ବସି ଶୁଭା ବହିଟିଏ ପଢୁଥିଲା। ସେ ତାର ସଂଗିନୀ, ଶିକ୍ଷୟିତ୍ରୀ। ଉଭୟେ ସାମାନ୍ୟ ଜଳଯୋଗ କରି ବୁଲି ବାହାରିଲେ। ସେତେବେଳେ ଜହ୍ନ ଆଲୁଅ ପଡ଼ି ଆସୁଥିଲା, ତୁଷାରୋଜ୍ଜ୍ୱଳ ଶୃଙ୍ଗମାଳା ଚାନ୍ଦିନୀବୋଳ ହୋଇ ରଜତସମୁଦ୍ରରେ ଢେଉ ଉଠିଲା

ପରି ଦିଶୁଥିଲା। ଆଖପାଖରେ ଅସଂଖ୍ୟ ଫୁଲ ଫୁଟି ଘାଟ ବାଟ ଆମୋଦିତ କରୁଥିଲା। ସେ ଓ ଶୁଭା ଦୁହେଁ ଯାକ ଫୁଲ ବଗିଚାରେ ଗୋଟିଏ ଚିକଣ ପଥର ଉପରେ ବସିଲେ। ଏହି ଚିକଣ ପଥର ମାୟାର ବଡ଼ ପ୍ରିୟ! ଅନେକ ଥର ସଞ୍ଜବେଳେ ନୀରବ ନିର୍ଜନରେ ଏ ସ୍ଥାନରେ ସେ ଉପାସନା କରେ, କାତର ପ୍ରାଣରେ ଭଗବାନଙ୍କୁ ଡାକେ, ଆଉ ରଘୁନାଥଙ୍କୁ ସ୍ମରଣକରେ, କେବେ କେବେ କାନ୍ଦି କାନ୍ଦି ରୁମାଲ ତିନ୍ତାଏ। ଅନେକ ସମୟରେ ସେ ଓ ଶୁଭ ଦୁହେଁ ବସି ସେ ସ୍ଥାନରେ ଗଳ୍ପକରନ୍ତି ଓ ପରସ୍ପରର ମନକଥା କହନ୍ତି। ଉଭୟେ ଯେପରି ଏକପ୍ରାଣ। ମାୟା ଧୀର ଗମ୍ଭୀର, ମାତ୍ର ଶୁଭ ସର୍ବଦା ହାସ୍ୟମୟୀ ଓ ଚଞ୍ଚଳା। ସେଥିପାଇଁ ତାର ସାହଚର୍ଯ୍ୟରେ ମାୟା ସବୁ ଦୁଃଖ ପାସୋରି ପକାଏ। ସେଦିନ ରଘୁନାଥ କଥା ବିଶେଷରୂପେ ତା ମନରେ ପଡ଼ି ଘାଣ୍ଟି ହେବାରୁ ସେ ନିର୍ଜନରେ ସଖୀ କତିରେ ନିଜ ଦୁଃଖକଥା କହିବାକୁ ବେଳ ଖୋଜୁଥିଲା। ସମସ୍ତ ଦିନଟି କେବଳ ପଢ଼ା ଓ ସ୍କୁଲର କାର୍ଯ୍ୟରେ କଟିଗଲା, ସନ୍ଧ୍ୟାଲାଗି ତା ପ୍ରାଣ ଆତୁର ହୋଇଉଠିଲା। କିନ୍ତୁ ସନ୍ଧ୍ୟା ପୂର୍ବରୁ ହଠାତ୍ ଅନେକଗୁଡ଼ିଏ ଜରୁରି କାମ ଆସି ପହଞ୍ଚିଲା, ସେ ସବୁ ସାରୁଁ ସାରୁଁ ରାତି ହୋଇଗଲା। ସେ ଶ୍ରାନ୍ତ କଳେବର ଘେନି ଦଣ୍ଡେ ବିଶ୍ରାମ ନେବାକୁ ବୁଲି ବାହାରିଲା।

ଉଭୟେ ଯେତେବେଳେ ସ୍ଥିରହୋଇ ବସିଲେ, ସେତେବେଳେ ଶୁଭା ପହିଲି କଥା ଆରମ୍ଭ କଲା–''ଆଚ୍ଛା, ତୁ ଏତେ ଚିନ୍ତା କରୁ କାହିଁକି ? ଆଜିକାଲି ତୁ ବଡ଼ ଶୁଖିଲା ଦିଶୁଚୁ। ମିସ୍ ମାକ୍‌ଲେଟ୍ ସେ କଥା ଲକ୍ଷ୍ୟ କରିଛନ୍ତି। ସେ କହୁଥିଲେ, ତୋର ବୋଧହୁଏ ସ୍ୱାସ୍ଥ୍ୟ କିଛି ଖରାପ ହେଲାଣି।''

ମାୟା ବାଷ୍ପରୁଦ୍ଧ କଣ୍ଠରେ କହିଲା, ''ଶୁଭା, ଚିନ୍ତା ନ କରି ଯିବି କୁଆଡ଼େ ? ଯେ ପାପକରେ, ସେଇ ଚିନ୍ତାକରେ।''

ଶୁଭା ହସି ହସି କହିଲା, ''ଭାରି ତ ଗୋଟାଏ ପାପ କରିଛି। ଜଣକୁ ଭଲ ପାଇବା କଣ ପାପ ?''

ମାୟା ବ୍ୟଥିତ ହୋଇ କହିଲା, '' ସେ ଜଣକ ଯଦି ଭଲ ନ ପାଏ ?''

ଶୁଭା ଆହୁରି ହସି କହିଲା, ''ତୁ କଣ ଭବିଷ୍ୟତ୍‌ବକ୍ତ୍ରୀ ? ତୁ ଜାଣିଲୁ କିମିତି ? ଯେ ଭଲ ପାଏ, ସେ କଣ କହିହୁଏ ?''

''ଅନ୍ତତଃ ତା ଭାବଟା ତ କହିଦିଏ ?''

''ତୋ ଭାବଟା କଣ କହି ଦେଇଥିଲା ? ତୁ କଣ ଦିନେ ତାଙ୍କୁ ଜଣେଇଚୁ ଯେ, ତୁ ତାଙ୍କୁ ଭଲ ପାଉ ? ବରଂ ସର୍ବଦା ତାଠୁଁ ଦୂରରେ ରହିଚୁ। ଏହି ଦୂର ହିମାୟଳରେ ବସି ଯଦି ତୁ କହୁ, ମୁଁ ତାଙ୍କୁ ଭଲ ପାଏ, କଣ ଏ କାନ୍ଥବାଡ଼ ଶୁଣିବ, ନା ଏ ଧଳା ପାହାଡ଼ ମୁଣ୍ଡିଆ ଶୁଣିବ ?''

ମାୟା କେବଳ ଗୋଟିଏ ଦୀର୍ଘଶ୍ୱାସ ଗ୍ରହଣକଲା। ବାସ୍ତବିକ୍ ପ୍ରେମକରି କିପରି ଦେଖାଇବାକୁ ହଏ, ସେ ଜାଣେ ନାହିଁ। କିନ୍ତୁ ସେ ନିଜେ କାହିଁକି ନ ବୁଝିଛି ? ସେ ମଣିଷ ହୋଇ ଏତିକି କଣ ତାର କ୍ଷମତା ନାହିଁ ? ପ୍ରକାଶ୍ୟରେ କହିଲା-''କଣ କରିବି ଶୁଭା, ମୁଁ ନିତାନ୍ତ ଅପଦାର୍ଥ-ଏକ ଭାବି ଅନ୍ୟ କରିବସେଁ। ଯେଉଁମାନେ ଦିନରାତି ମୋର ଗୋଡ଼ତଳେ ପଡ଼ି ଲୋଟୁଛନ୍ତି, ମୁଁ ତାଙ୍କୁ ଆଡ଼ ଆଖିରେ ଅନେଇ ନାହିଁ। ପ୍ରେମ ଯେ କିମିତି କରିବାକୁ ହୁଏ, ମୁଁ ଜାଣେ ନାହିଁ। ଏଇ ରଘୁନାଥ କୁଆଡ଼େ ଥିଲା, କୁଆଡୁ ଆଇଲା, ଯେଉଁ ଦିନ ପ୍ରଥମେ ତାଙ୍କୁ ଦେଖିଚି-''

ତାର କଥା ଗଳାରେ ଅଟକି ଗଲା। ଶୁଭା ପ୍ରଫୁଲ୍ଲଭାବରେ କହିଲା, ''ସେଇ ଦିନଠୁଁ ତ ମରିଚୁ। ଯେମିତି ବାବୁ ଦର୍ଶନଦେଲେ, ସେମିତି ମନଟା କାଢ଼ିନେଲେ। ମୁଁ ହେଲେ କାନମୋଡ଼ି ପଚାରିଥାନ୍ତି, ଏ ଅନଧିକାର ଚର୍ଚ୍ଚା ତାଙ୍କର କାହିଁକି ?''

''ଶୁଭା, ତୁ କଣ କହୁ ତୋ ପରି-''

''ଆଉ ମୋ ପରି କଣ ? ତୋର ସର୍ବଦା ସେହି ଗମ୍ଭୀର ମହାରାଣୀ ମୂର୍ତ୍ତି ଦେଖିଲେ ତତେ କେଉଁ ମଣିଷ ଭଲପାଇବ, କହିଲୁ। ଯେମିତି ସାବିତ୍ରୀର ଅବତାର, ଅବା ଅଗ୍ନି ଦେବତାର ସହଧର୍ମିଣୀ !''

ମାୟା ଟିକେ ବିରକ୍ତ ହୋଇ କହିଲା, ''ତୋତେ କିଏ ମନକଥା କହି ଶାନ୍ତି ପାଇବ ? ସବୁଥିରେ ତୁ ଥଟ୍ଟା କରିବୁ।'' ଏହା କହି ତୁନି ହେଲା। ମାୟା ତା ଉପରେ ରାଗିବା ଦେଖି ଶୁଭା ତା ପିଠିରେ ଆଉଜି ପଡ଼ି କହିଲା, ''ଭଉଣି, ରାଗିଲୁ ? ମୁଁ ପରା ତୋର ଟିକି ଭଉଣୀଟି, ମୋ କଥାରେ ରାଗ ! ସତେ ତୋପାଇଁ ମୋର ବଡ଼ ଦୁଃଖ ହୁଏ। ତୁ କାହିଁକି ଏଠି ପଡ଼ିଚୁ ? ତୁ ଯା, ତାରି କତିରେ ରହିବୁ। ତତେ ନିତି ଦେଖିଲେ କିଜାଣି ସେ ତତେ ବିଭା ହେବାକୁ ରାଜିହେବ।''

ବିଭା କଥାରେ ମାୟ ଲାଜରେ ମରିଗଲା। ''ଛି, ତୁ ଭାରି ଅଭଦ୍ର, ତୋ ମୁହଁରେ କିଛି ବାରଣ ନାହିଁ।'' କହି ସେ ଉଠି ଯାଉଥିଲା। ଶୁଭା ତ ହାତ ଟାଣି ତାକୁ ବସେଇ କହିଲା-''ଆଚ୍ଛା, ସତ କହ, ତୁ ତାକୁ ବିଭା ହେବାକୁ ଚାହୁଁ, କି ନା ?''

ମାୟା ତାକୁ ବାଁ କହୁଣିରେ ଠେଲିଦେଇ କହିଲା, ''ତୁ କେମିତି କଣ କହୁ ? ସେ କିଏ, ମୁଁ କିଏ ? ସେ ଗୋଟିଏ ବ୍ରାହ୍ମଣ ପିଲା, ଆମେ ବ୍ରାହ୍ମ, ସେ ପୁଣି ମତେ ବିଭାହେବ ?''

''କାହିଁକି ନ ହେବ ? ଆଉ ସେ ବ୍ରାହ୍ମଣ ଅଛି ? ତୁ ଯେ ତାର ଜାତି ନେଲୁଣି !''

ମାୟା ଲାଜରେ ସଢ଼ିଗଲା। ଯଦି ସେଠି ଆଲୁଅ ଥାଆନ୍ତା, ଶୁଭା ଦେଖିଥାନ୍ତା ଯେ, ମାୟାର ମୁହଁ କିପରି କଳାକାଠ ପଡ଼ିଯାଇଥିଲା। ସେ ବହୁ ବେଳଯାକେ କିଛି କହି ପାରିଲା

ନାହିଁ; ଶେଷକୁ ଅର୍ଦ୍ଧସ୍ଫୁଟ ସ୍ୱରରେ କହିଲା, ''ବାସ୍ତବିକ୍ ମୁଁ ବଡ଼ ଅନ୍ୟାୟ କରିଚି। ମୁଁ କାହିଁକି ତାକୁ ଆଣି ଆମ ପରିବାରରେ ପୂରେଇଲି!''

ଶୁଭା ଗେଲରେ ଯାହା କହିଥିଲା, ମାୟାର ମନରେ ତାହା ଲାଖିରହିଲା। ତାର ମନେ ହେଲା, ବାସ୍ତବିକ ସେ ରଘୁନାଥର ଜାତିକୁଳ ସାରିଛି, ତାର ସର୍ବନାଶ କରିଛି। ହିନ୍ଦୁର ଜାତି ଗଲେ ଆଉ ରହିଲା କଣ? ନିରୀହ ସରଳ ଯୁବକ ସହିତ ସେ ଏଇ ବ୍ୟବହାର କରିଛି? ପରକ୍ଷଣରେ ମନେ ହେଲା, ସେ ନିଜେ ସମ୍ମତ ହୋଇଆସିଛି, ସେ ତ ନିଜେ ଦେଶତ୍ୟାଗ କରିଛି, କିନ୍ତୁ କାହିଁକି ସେ ଦେଶତ୍ୟାଗ କଲା? କାହିଁକି ସେ ତାହାର ଆଶ୍ରୟଦାତା ପିତାଙ୍କ ଆବାସ ଛାଡ଼ିଲା? ସେମାନେ ତ ତାକୁ ବଡ଼ ଭଲ ପାଉଥିଲେ। ନିଶ୍ଚୟ ଏଥିରେ କିଛି କଥା ଅଛି। ବୋଧ ହୁଏ, ଯେ ଯାହା କହିଛି, ସବୁ ମିଛ। ସେ ବ୍ରାହ୍ମଣ ନୁହେଁ-କୌଣସି ଚୋର ଡକାୟତ ହୋଇଥିବ! ପୁଣି ଭାବିଲା, କି ବାୟା ସେ ! ଚୋର ଡାକାୟତ ପରି ରଘୁନାଥ ଦିଶିଛି ନା? ପିତୃମାତୃହୀନା ପିଲା। ସେ କେତେବେଳେ ରାଗରେ ବା ତାଚ୍ଛଲ୍ୟରେ କଣ କହିଥିବ, ସେଥିପାଇଁ ମନଦୁଃଖରେ ଦେଶାନ୍ତରୀ ହୋଇଛି! ଯେ ଏଡ଼େ ସୁନ୍ଦର, ସେ କି ଅପରାଧୀ ହୋଇପାରେ?

କ୍ରମେ ପୂଜାଛୁଟି ଆସିଲା। ମାୟା ବାଧ୍ୟ ହୋଇ କଲିକତା ଯାତ୍ରାକଲା। ପୁଣି ଦୀର୍ଘ ଚାରିମାସ ପରେ ରଘୁନାଥକୁ ଦେଖି ତା ମନ ଚାକିରିରୁ ଏକାବେଳକେ ଛାଡ଼ିଗଲା। ବାପା ମା ମଧ ନାହିଁ କଲେ। ସେ ଚାକିରିରୁ ଇସ୍ତଫା ଦେଇ ଘରେ ରହିଲା। କେବଳବାବୁ ତାକୁ 'ରେନିସାନ୍‌ସ'ରେ ନିୟମିତ ରୂପେ ପ୍ରବନ୍ଧ ଲେଖି ରଘୁନାଥକୁ ସାହାଯ୍ୟ କରିବାର ଭାର ଦେଲେ। ସେ ଯେଉଁ ବିପଦରେ ପଡ଼ିବ ବୋଲି ଭୟକରୁଥିଲା, ସେହି ବିପଦରେ ପଡ଼ିଲା। ଏଥର ରଘୁନାଥ ଓ ତାହା ଜୀବନ ଘନିଷ୍ଠ ଭାବରେ ଏକତ୍ର ହେବାର ସୁଯୋଗ ଘଟିଲା। ମାୟା ଏ ଘଟଣା ଅନୁମାନ କଲା, ସମ୍ଭବତଃ ତାହାର ପିତାମାତା ରଘୁନାଥ ସହିତ ତାର ଘନିଷ୍ଠତା ପସନ୍ଦ କରନ୍ତି। ଏକଥା ଭାବି ତାର ବଡ଼ ଆନନ୍ଦ ହେଲା। ପିତାମାତାଙ୍କର ଯଦି ଏଥିରେ ନୀରବ ସମର୍ଥନ ଅଛି, ସେ କାହିଁକି ରଘୁନାଥ ସହିତ ନ ମିଶିବ?

ସେ ଆଉ ପୂର୍ବପରି ଦୂରେ ଦୂରେ ରହିବାର ଚେଷ୍ଟା ନ କରି ସହଜ, ସରଳ ଭାବରେ ରଘୁନାଥ ସହିତ କଥାବାର୍ତ୍ତା ଓ ବ୍ୟବହାର କରିବାକୁ ଆରମ୍ଭକଲା। ମାୟାର ଏ ଆକସ୍ମିକ ପରିବର୍ତ୍ତନର ଅର୍ଥ ଓଲଟା ବୁଝିଲା ରଘୁନାଥ।

ତାଙ୍କ ଘରକୁ ଅବିନାଶ ସର୍ବଦା ଯିବା ଆସିବା କରେ। ସେ ସୁନ୍ଦର ଯୁବକ, ଧନୀର ପୁତ୍ର, ତାର ପିତା ବିଖ୍ୟାତ ଓକିଲ, ସେ ନିଜେ ମଧ ବାରିଷ୍ଟରି ପଢ଼ିବାପାଇଁ ବିଲାତ ଯିବ। ରଘୁ କେବଳବାବୁଙ୍କ ଘରକୁ ଆସିବା ଦିନୁ ଶୁଣିଛି, ଅବିନାଶ ମାୟାର ପାଣିପ୍ରାର୍ଥୀ। ମାୟା ମଧ ତା ସହିତ କଥାବର୍ତ୍ତା କରେ। 'ଅବିନ୍‌ଦା','ଅବିନ୍‌ଦା' କହି ପିଲାମାନେ ବହୁତ ଥର ତା ସାଙ୍ଗରେ ବୁଲି ଯାଇଛନ୍ତି। ପ୍ରକାଶ୍ୟ 'ଏନଗେଜ୍‌ମେଣ୍ଟ' ନ ହେଲେ ମଧ ସମସ୍ତେ ପ୍ରାୟ

ଜାଣନ୍ତି, ମାୟା ସହିତ ଅବିନାଶର ବିବାହହେବ, କିନ୍ତୁ କେବଳ ମାୟା ସେ ବିଷୟ କେବେ ହେଲେ କହି ନାହିଁ।

ଏ ଥର ତାର ବ୍ୟବହାରରୁ ରଘୁନାଥ ମନେକଲା, ବୋଧହୁଏ ଅବିନାଶ ସହିତ ବିବାହର ଚୁକ୍ତି ସ୍ଥିର ହୋଇସାରିଛି। ଏ କଥାର ପ୍ରମାଣ ସ୍ୱରୂପ ଅବିନାଶ ମଧ ଘନ ଘନ ଯିବା ଆସିବା କଲା। ସେ ଦୁଇ ଜଣଙ୍କର ଢ଼ଙ୍ଗରଙ୍ଗ ଦେଖି ରଘୁନାଥ ହାଡ଼େ ହାଡ଼େ ଜଳିଗଲା, ତାର ହୃଦୟରେ ହଠାତ୍ ଦାରୁଣ ଅଭିମାନ ଘନୀଭୂତ ହେଲା। ସର୍ବଦା ମନେହେଲା, ସେ କି ମୂର୍ଖ। ମାୟା ପୁଣି ତାକୁ ଭଲପାଏ ? କି ଆସ୍ପର୍ଦ୍ଧା ତାର ! ଚିରକୁମାର ରହିବାର ପ୍ରତିଜ୍ଞା କରି ସୁଦ୍ଧା ରଘୁନାଥ କି ଜାଣି କାହିଁକି ମାୟା ପ୍ରଣୟି କି ଦି ଆଖିରେ ଦେଖିପାରିଲା ନାହିଁ। ଅବିନାଶ ଯେତେ ଥର ଆସେ, ସେ ଦାଣ୍ଡଘରେ ବସି ଗଳ୍ପକରେ। ମାୟା ସୁନ୍ଦର ପିଆନୋ ବଜାଇପାରେ। ଅବିନାଶ ବଡ଼ ସଂଗୀତପ୍ରିୟ, ସେ ମାୟାକୁ ଗୀତ ଗାଇବାକୁ ଅନୁରୋଧକରେ। ମାୟା ଲଳିତ କଣ୍ଠରେ ଗୀତଗାଏ। ଭୁଲକ୍ରମେ ରଘୁନାଥ ସେ ଘରକୁ ଆସିଲେ, ତା ହାତ ଥରି ଉଠେ, ସ୍ୱର ଭୁଲହୋଇଯାଏ। ରଘୁନାଥ ଈର୍ଷାନ୍ୱିତ ହୋଇ ତାର ଏ ଅଭିନୟ ଦେଖେ। ଅବିନାଶ ମୋଟରେ ନେଇ ଆସିବା ମାତ୍ରେ ଭାଇ ଭଉଣୀ ସଜ ହୋଇ ବୁଲି ବାହାରନ୍ତି, କିନ୍ତୁ ରଘୁନାଥ ସହିତ କଥା ପଦେ କହିବାକୁ ମାୟା ଗାମ୍ଭୀର୍ଯ୍ୟର ଚୂଡ଼ାନ୍ତ ଅଭିନୟକରେ। ତାହା ଲକ୍ଷ୍ୟକରି ସେ କେତେ ହସେ, ଥରେ ଥରେ ରାଗରେ ତା ଛାତି ଜଳିଯାଏ। କାହିଁକି ଯେ ବୃଥା ରାଗ, ସେ ବୁଝି ପାରେ ନାହିଁ। ଅବିନାଶକୁ ଦେଖିଲାକ୍ଷଣି ତାର କିଜାଣି ବିତୃଷ୍ଣା ହୁଏ। ଅବିନାଶ ଅତି ଭଲ ମଣିଷଟି ପରି ତାକୁ ଖୋସାମୋଦ କରେ।

କ୍ରମେ ତାହାର ସଙ୍ଗିମହଲରେ ରାଷ୍ଟ୍ର ହେଲା, ଅବିନାଶ ବାବୁ ଶୀଘ୍ର କେବଳବାବୁଙ୍କ ଜ୍ୱାଇଁ ହେବେ। ଘରେ ମଧ ଫୁସ୍‌ଫାସ୍ ହେଲେ। ଦାରୁଣ ଅଭିମାନରେ ରଘୁନାଥ ଛାତି କୋରି ହୋଇଗଲା। ସେ ଆଉ ନିଜର ଭାବ ଗୋପନ କରିପାରିଲା ନାହିଁ।

ସେ ଦିନ ଦି'ପହରେ ମାୟା 'ରେନିସେନ୍‌ସ' ଲାଗି ଯେଉଁ ପ୍ରବନ୍ଧ ଲେଖିଥିଲା, ତାହା ଆଣି ରଘୁନାଥକୁ ଦେଇ କହିଲା, ''ଏଇଟା ଦେଖି ଠିକ୍ କରିଦେବେ। ବୋଧହୁଏ, ମୋର ଠାଏଁ ଠାଏଁ ଭୁଲଥିବ।'' ମାୟା ସ୍ୱଭାବତଃ ସହଜ ଗମ୍ଭୀର। ରଘୁନାଥ ଅନ୍ୟ ଆଡ଼କୁ ଚାହିଁ କହିଲା, ''ଆପଣଙ୍କର ପ୍ରବନ୍ଧ ମୁଁ କଣ ଠିକ୍ କରିବି, ମୋର ବା କଣ ବିଦ୍ୟାବୁଦ୍ଧି !''

ମାୟା ଦୁଃଖିତ ହୋଇ କହିଲା, ''ଆପଣ ତ ସର୍ବଦା ଠିକ୍ କରିଦିଅନ୍ତି, ବାବା ତ କହିଛନ୍ତି, ଆପଣଙ୍କୁ ଦେଖାଇବାକୁ।''

ରଘୁନାଥ ଟିକେ ରୁକ୍ଷଭାବରେ କହଲା, ''ବେଶ୍, ରଖିଦେଇ ଯାଆନ୍ତୁ, ମୁଁ ପରେ ଦେଖିବି।''

ମାୟା ଚାଲିଆସିଲା। ସେତେବେଳେ ତା ଆଖି ଅଶ୍ରୁରେ ଟଳମଳ, ସବୁବେଳେ ଏଇ ଉପେକ୍ଷା। ସେ ଆପଣା ଘରର କବାଟ କିଳି ବହୁତ ବେଳଯାଏ କାନ୍ଦିଲା। ଚାରିଟା

ବେଳେ ତାକୁ ଜଳଖିଆ ସ୍ଥାନରେ ଅନୁପସ୍ଥିତ ଦେଖି ଛାୟା ତା ସନ୍ଧାନରେ ତା କୋଠରିକୁ ଗଲା। ଦୁଆର ଭିତରୁ କିଳାହୋଇଛି ଦେଖି ତା କବାଟରେ ହାତମାରିଲା। ମାୟା ଉଠି ଫିଟେଇଦେଲା। ସେତେବେଳେ କାନ୍ଦି କାନ୍ଦି ତା ଆଖି ଲାଲ ହୋଇଯାଇଥିଲା। ଛାୟା ଦିଦୀର ସବୁ କଥା ଜାଣେ। ତା ସହାନୁଭୂତିରେ ତା ମୁହଁ ପୋଛିଦେଇ କହିଲା, ''ଏତେ କାହିଁକି କାନ୍ଦୁଛୁ, ଦିନେ ସେ ନିଜେ ବୁଝିବ। କାନ୍ଦି କାନ୍ଦି କଣ ମରିବୁ? ଅବିନ୍‌ଦା ଆସିଲେଣି ବୁଲିଯିବୁ?''

''ତୁ ବୁଲି ଯା'' କହି ସେ ନୀରବରେ ବସି ରହିଲା। ସେହି ଦିନ ପ୍ରଥମେ ରଘୁନାଥ ଦେଖିଲା, ମାୟା ଅବିନାଶ ସହିତ ବୁଲି ଯାଇ ନାହିଁ। ତାର କୌତୂହଳ ହେଲା। ପଢ଼ାଘରେ ମାୟାକୁ ଦୀପାଲୋକରେ ଚାହିଁଦେଇ ତା ମନ କଣହୋଇଗଲା। ଏ କଣ? ତା ଆଖି ଫୁଲି ଯାଇଛି। ସେ କଣ କାନ୍ଦୁଥିଲା? ଦ୍ୱିପହରର ବ୍ୟବହାରଲାଗି ତାର ବଡ଼ ଲଜ୍ଜା ହେଲା। ସେ ନିଜେ ଯାଇ କିଜାଣି କିପାଁ ହଠାତ୍ କହିଦେଲା, ''ମାୟା, ତୁମେ କଣ ମୋ ଉପରେ ରାଗିଚ? ଯଦି ତୁମକୁ କିଛି ଟାଣକରି କହିଥାଏଁ, ତାହା ହେଲେ ମୋତେ କ୍ଷମାକର।''

ମାୟାର ଅଭୂତପୂର୍ବ ଏ ଆକସ୍ମିକ ଆନନ୍ଦ ଦେଖି ସେ ସହ୍ୟ କରିପାରିଲା ନାହିଁ। ଅଭିମାନିନୀ ହଠାତ୍ ଅସମ୍ଭାଳୀ ହୋଇ ଝର ଝର କାନ୍ଦି ପକାଇଲା। ଚଉକିଟା ଥିଲା, ଟାଣି ଆଣି ବସି ପଡ଼ିଲା, ଟେବୁଲ ଉପରେ ମୁଣ୍ଡରଖି ବ୍ୟାକୁଳ ଭାବରେ ଅନେକ କାନ୍ଦିଲା।

କୋମଳହୃଦୟ ରଘୁନାଥ ଏ ଦୃଶ୍ୟ ସହିପାରିଲା ନାହିଁ। ସେ ସଙ୍କୋଚ ନ କରି ତା ମୁଣ୍ଡ ଟେକି ଧରିଲା, ଲୁଗାକାନିରେ ତା ଲୁହ ପୋଛିଦେଲା। ଆଜି ସତେ ଯେପରି ସେ ମାୟାର ପରମ ଆତ୍ମୀୟ।

ମାୟା ଶାନ୍ତ ହୋଇ ଉଠି ଛାତ ଉପରକୁ ଗଲା। ସେତେବେଳେ ପ୍ରାୟ ସଞ୍ଜ। ଆକାଶରେ ଗୋଟିଏ ଯୋଡ଼ିଏ ତାରା ଦେଖାଦେଇଥିଲା। ମାୟା ତାକୁ ଚାହିଁ ଆନନ୍ଦରେ ବୁଡ଼ିଗଲା। ଆଜି ରଘୁନାଥର ପ୍ରଥମ ସ୍ପର୍ଶ ସେ ପାଇଛି, ରଘୁନାଥର ହୃଦୟରେ ପ୍ରଥମ ରେଖା ଆଙ୍କିଛି; କିନ୍ତୁ ଏଇଟା କଣ ସ୍ଥାୟୀ? ତଥାପି ଚିରଉପବାସୀର ଖୁଦକାଉ ମୁନ୍ଦାଏ ଅମୃତ ଟାଣିଆ ପରି, ତାକୁ ଏହି ସାମାନ୍ୟ ଘଟଣା ଆନନ୍ଦରେ ବିହ୍ୱଳ କରିପକାଇଲା। ସେ ଭବିଷ୍ୟତରେ ଶତ ଶତ ଉଜ୍ଜ୍ୱଳ ଆଶାଚିତ୍ର ମନେ ମନେ ଆଙ୍କି ମୋହିତହେଲା।

ଆଉ ରଘୁନାଥ? ନିଜର ପ୍ରଥମ ଦୁର୍ବଳତା ସ୍ମରଣକରି ତାକୁ ଆଉ ସେ ଦିନ ପଢ଼ାପଢ଼ି ଭଲ ଲାଗିଲା ନାହିଁ। ମାୟା ତାକୁ କଣ ସତେ ମାୟାଜାଲରେ ଛନ୍ଦୁଛି; ଆଉ ନିରୀହ ମୀନ ପରି ସେ ଜାଣିଶୁଣି ସେହି ଜାଲରେ ପଡୁଛି? ନିଜ ଉପରେ ତାର ବିଷମ ଘୃଣା ହେଲା। ସେ ଏଥର ଅଧିକ ସାବଧାନ ହେବାପାଇଁ ସ୍ଥିର ପ୍ରତିଜ୍ଞାନେଲା।



# ଦ୍ୱାବିଂଶ ଅଧ୍ୟାୟ

ଦିନ ସବୁରି ସମାନ ଯାଏ ନାହିଁ। ସବୁ ଦିନେ ମନ ଏକା ପରି ନ ଥାଏ। ଏ ଥର ବାପଘରୁ ଫେରିଆସି ସୀତାର ହୃଦୟରେ ସ୍ୱାମୀପ୍ରେମ ଉଚ୍ଛୁଳି ଉଠିଲା। ଯେ ସର୍ବଦା କତିରେ, ଯେ ପ୍ରତି ମୁହୂର୍ତ୍ତର ସଂଗୀ, ସେ ଯେତେ ଦୁଷ୍ଟ ହେଲେ ମଧ ମନୁଷ୍ୟ ସ୍ୱାଭାବିକ ସ୍ନେହ ବୃତ୍ତି ବଶତଃ ତାକୁ ନିଶ୍ଚୟ ଭଲପାଏ। ପୋଷା କୁକୁର, ବିଲେଇକି ମନୁଷ୍ୟର ଏତେ ସ୍ନେହ! ଦିବାକର ତ ସୀତାର ସ୍ୱାମୀ। ଧୀରେ ଧୀରେ ଅଜ୍ଞାତଭାବରେ ତା ହୃଦୟରେ ଦିବାକର ଆସନ ଲାଭକରି ବସିଲେ। ସେ ମଦ ଖାଇଲେ ମଧ–ଉଚ୍ଛୃଙ୍ଖଳ ପ୍ରକୃତି ହେଲେ ସୁଦ୍ଧା ସେହି ପ୍ରଥମ ମୋହର ଆବେଶରୁ କିଜାଣି କାହିଁକି ତାଙ୍କର ସୀତା ଉପରେ ଆନ୍ତରିକ ପ୍ରେମ ଜାତ ହୋଇଥିଲା। ଚନ୍ଦ୍ରାବଳୀ ତାଙ୍କର ପ୍ରଥମା ପତ୍ନୀ, ପରମରୂପସୀ ମଧ; କିନ୍ତୁ ଚନ୍ଦ୍ରାବଳୀକୁ ତ ସେ ଏତେ ପ୍ରେମ କରି ନ ଥିଲେ। ସୀତାର କରଛଡ଼ା ସ୍ୱଭାବ, ସର୍ବଦା ମ୍ଳାନମୁଖ ଓ ଦୂର ଦୂର ବ୍ୟବହାର ଭିତରେ କି ଆକର୍ଷଣ ଥିଲା କେଜାଣି, ସେଥିରେ ଦିବାକର ପାଗଳ ହୋଇଥିଲା। ସୀତା ତାଙ୍କର କଳ୍ପନା ଅନୁଯାୟୀ ଶିକ୍ଷିତା ନ ଥିଲା ସତ୍ୟ, କିନ୍ତୁ କ୍ରମେ ସେ ଜାଣି ପାରିଲେ– ସେ ପ୍ରଖର ବୁଦ୍ଧିମତୀ, ଗଭୀର ଚିନ୍ତାଶୀଳା ଓ ଅତ୍ୟନ୍ତ ଗମ୍ଭୀରପ୍ରକୃତି। ତାହା ହୃଦୟର ଏ ଗୁଣଟିକର ସନ୍ଧାନପାଇଁ ପୁଷ୍ପମଧୁଲୋଭୀ ଭ୍ରମର ପରି ସେ ତା ମନ ସହିତ ନିଜ ମନ ମିଳାଇବାକୁ ଲାଗିଲେ। ମିଳନର ପ୍ରଥମ ମୁହୂର୍ତ୍ତରେ ଯଦି ସେ ଢ଼ଳି ପଡ଼ିଥାନ୍ତା, ବୋଧହୁଏ, କିଛି ଦିନ ପରେ ତାଙ୍କପ୍ରତି ପ୍ରୀତ ହୋଇଥାନ୍ତା। କିନ୍ତୁ ତାହା ତ ହେଲା ନାହିଁ। ବିଭାଗଣ୍ଠିରୁ ସେ ଦିବାକରଙ୍କଠାରୁ ଆପଣାକୁ ଦୂରରେ ରଖିବା ପାଇଁ ଚେଷ୍ଟା କଲା–ପ୍ରଥମ ମିଳନ ମୁହୂର୍ତ୍ତରୁ ଉପେକ୍ଷାକଲା। ତାଙ୍କର ଉଦ୍ଦାମ ପ୍ରକୃତି ସାମାନ୍ୟ ବାଳିକାର ଏ ଉପେକ୍ଷା ସହ୍ୟ କରିପାରିଲା ନାହିଁ। ତାହାର ହୃଦୟରେ ସ୍ଥାନ ପାଇବାପାଇଁ ତାଙ୍କର ଆକାଂକ୍ଷା ପ୍ରବଳତର ହେଲା। ଅନେକ ପ୍ରକାର ଚେଷ୍ଟା, ଅନେକ ପ୍ରକାର ପ୍ରଲୋଭନରେ ଯହୁଁ ସୀତା କରଗତ ନ ହେଲା, ଶେଷକୁ ତାକୁ ଅବହେଳାଦ୍ୱାରା ବଶ କରିବାକୁ ଚେଷ୍ଟାକଲେ–ମାଡ଼ ମାଇଲେ, ବାପଘରକୁ ପଠାଇଲେ। କିନ୍ତୁ ସେଥିରେ ମଧ କିଛି ହେଲା ନାହିଁ। ଦେଢ଼ ବର୍ଷ ମାନସିକ ଅଶାନ୍ତି ଓ ନାନା ଅବସ୍ଥା–ବିପର୍ଯ୍ୟୟ ପରେ ପୁଣି ଦିବାକର ସ୍ତ୍ରୀକୁ ଘେନି ଆସିଲେ। ଏଥର ସେ ପ୍ରତିଜ୍ଞା କଲେ, ସେ ଯାହା ଇଚ୍ଛା, ତାହା କରୁ।

କ୍ରମେ ତାଙ୍କ ଘରେ ସୀତାର ଆଧିପତ୍ୟ ବଢ଼ିଲା। ଫୁଲମଞ୍ଜରୀ ଓ ଯୂଥିକାର କୌଣସି କଥା ତାହାର ସ୍ୱାମୀ କାନକୁ ଘେନିଲେ ନାହିଁ। ବରଂ ତାକୁ ପ୍ରକାରାନ୍ତରରେ ଉଆସର ରାଣୀ କରି ରଖିଲେ। ସୀତା ଯାହା ଚାହିଁଲା, ତାହା ହିଁ କଲା। ସାମାନ୍ୟ ଦାସୀଠାରୁ ଯୂଥିକା ପର୍ଯ୍ୟନ୍ତ କ୍ରମେ ତାହାର ହାତମୁଠାରେ ରହିଲେ। ଏତେ ଅଧିକାର ଯେ ଦେଲା, ଏତେ ପ୍ରେମ ଯେ କଲା, ସେ କଣ ତାକୁ ହୃଦୟରେ ସ୍ଥାନ ଦିଅନ୍ତା ନାହିଁ? ସେ ପୁଣି ସ୍ୱାମୀ। ସେ କ୍ରମେ ତାଙ୍କ

ପ୍ରତି ଆକୃଷ୍ଟ ହେଲା। ଏଣିକି ସେ ଅଧିକ ରାତ୍ରିରେ ଘରକୁ ଫେରିଲେ, ତାହାଙ୍କୁ ଦୁଃଖ ବୋଧ ହେଲା।

ଦିନେ ରାତି ଦଶଟାବେଳେ ଗବାକ୍ଷ ଦ୍ୱାରରେ ଠିଆହୋଇ ସୀତା ତାଙ୍କୁ ଚାହିଁ ରହିଥିଲା, କେତେବେଳେ ଆସିବେ ! ବାହାର ଅଗଣାରେ ଗୀତର ମଜଲିସ୍ ଚାଲିଥିଲା, କିନ୍ତୁ କାହିଁକି କିଜାଣି ଦିବାକରଙ୍କୁ ସେ ଦିନ ଆଉ ଭଲ ଲାଗିଲା ନାହିଁ। ସେ ଉଠି ଅନ୍ତଃପୁରକୁ ବାହାରି ଆସିଲେ।

ଅନ୍ତଃପୁରର ବିସ୍ତୃତ ପିଣ୍ଡା ଅନ୍ଧକାରମୟ; ଶୟନଗୃହର ଯେଉଁ କୋଠରିର ଝରକା ନିକଟରେ ସୀତା ଠିଆ ହୋଇଥିଲା, ତାହା ମଧ୍ୟ ଗାଢ଼ ଅନ୍ଧକାରମୟ-ଆଲୁଅ ଯେପରି ତାକୁ ଭଲ ଲାଗୁନଥିଲା। ସେ ଦୀପ ନିଭାଇ ଦେଇଥିଲା। ନୀରବ ଅନ୍ଧକାରରେ, ନୀରବ ଗୃହତଳରେ ନୀରବ ଆକାଶକୁ ଚାହିଁ ଠିଆ ହୋଇଥିଲା ସୀତା ସୁନ୍ଦରୀ। ଆକାଶର ଗୋଟିଏ ତାରାକୁ ଚାହିଁ ସେ କେତେକଥା ଭାବୁଥିଲା–ଭାବୁଥିଲା ଅତୀତ, ବର୍ତ୍ତମାନ; ଅତୀତର ପିତୃଗୃହ, ଅତୀତର ରଘୁନାଥ। ସବୁ ତା ହୃଦୟରେ ଅସ୍ପଷ୍ଟ ହୋଇ ଆସିଥିଲେ, କିନ୍ତୁ ବର୍ତ୍ତମାନ ସ୍ୱାମୀଗୃହ, ବର୍ତ୍ତମାନ ଦିବାକର ତା ଆଖିରେ ଆଜି ବଡ଼ ସୁନ୍ଦର ! ଦିବାକରଙ୍କ ଦୀର୍ଘ ଗୌର ତନୁ, ରାଜପୁତ୍ର ପରି ମୂର୍ତ୍ତି, ମାର୍ଜିତ ଭଙ୍ଗୀରେ କଥାବାର୍ତ୍ତା, ମଧୁର ପ୍ରେମାଳାପ ସୀତା ଦୃଷ୍ଟିରେ ଅତ୍ୟନ୍ତ ଆପଣାର ମନେହେଲା। ଏଡ଼େ ସୁନ୍ଦର ଦିବାକର-ଏଡ଼େ ସୁନ୍ଦର ତାର ସ୍ୱାମୀ-ଏତେ ମଧୁର ସେ ସୁଖରୁ ସ୍ୱର୍ଗ !

ହଠାତ୍ ପଛ ଆଡ଼େ କିଏ ଆସି ଠିଆ ହେଲା। ଲୁଗାର ଖସ୍‌ଖସ୍, ନିଃଶ୍ୱାସର ଶବ୍ଦରୁ ସୀତା ବୁଝିପାରିଲା ଦିବାକର। କି ଜାଣି କାହିଁକି ସେ ଆଜି ଲଜ୍ଜାହୀନ ଭାବରେ, ଭାବବେଶରେ ଆକୁଳ ହୋଇ କୋମଳ ବାହୁଲତାରେ ତାଙ୍କୁ ବେଷ୍ଟନ କରିପକାଇଲା। ମୁହୂର୍ତ୍ତକ ମଧ୍ୟରେ ଦିଓଟି ଆତ୍ମାର ଆଜି ଅପୂର୍ବ ମିଳନ ହୋଇଗଲା। ଦିବାକର ଯାହା ଚାହିଁଥିଲେ, ଆଜି ତା ଦୀର୍ଘ ଦେଢ଼ ବର୍ଷ ପରେ ପାଇଲେ-ପୂର୍ଣ୍ଣରୂପେ ପାଇଲେ। ତାଙ୍କର ହୃଦୟ ନାଚି ଉଠିଲା– ଅତର୍କିତ ଭାବରେ ତାଙ୍କ ମଧୁର କଣ୍ଠରୁ ବାହାରିଲା, ''ମୋର ସୀତା।'' ସୀତା ସ୍ୱାମୀ-ବକ୍ଷରେ ଢ଼ଳି ପଡ଼ିଲା। ଉଭୟେ ନୀରବ। ସେହି ଦିନରୁ ତାଙ୍କର ନବ ଜୀବନର ଆରମ୍ଭ। ଜୀବନର ଏ ଅପୂର୍ବ ବସ୍ତୁର ସ୍ୱାଦ ତ ସେ କେବେ ଆଗରୁ ପାଇ ନ ଥିଲେ–କାହାଠାରୁ ପାଇ ନଥିଲେ। ହୃତହୃଦୟ, ମଗ୍ନପ୍ରାଣ, ମୁଗ୍ଧ ଯୁବକ ପ୍ରେମମୟୀ ପତ୍ନୀକୁ ହୃଦୟରେ ଥୋଇ ପ୍ରଥମ ଆସ୍ୱାଦନ କଲେ ସେହି ପ୍ରେମ– ଯାହା ଜୀବନଙ୍କୁ ଜୀବନ ସହିତ ବାନ୍ଧିରଖିଛି, ସେହି ଆକର୍ଷଣ-ଯାହା ପ୍ରତ୍ୟେକ ଅଣୁକଣା ସହ ସଂଲଗ୍ନ ରହିଛି, ସେହି ସୁଧା-ଯାହା ଏ ବିଶ୍ୱର ପ୍ରାଣ। କେବଳ ଲାଳସା, କେବଳ ଆସକ୍ତି, କେବଳ ଚର୍ମର ସୌନ୍ଦର୍ଯରେ ତାହା ଆବଦ୍ଧ ନୁହେଁ, ତାହା ହୃଦୟର ଅମୂଲ୍ୟ ପଦାର୍ଥ-ତାହା ହୃଦୟ ସହିତ ହୃଦୟ ମିଳନର ସନ୍ଧି। ବହୁକାଳର ବିଚ୍ଛେଦ-ବନ୍ଧ ଭାଙ୍ଗିଗଲା, ପ୍ରେମନଦୀ ବଢ଼ି କୂଳ ଉଛୁଳିପଡ଼ିଲା। ପ୍ରେମବିହ୍ୱଳ ଦିଓଟି ପ୍ରାଣ, କେହି କାହାରିକୁ

କିଛ କହିପାରିଲେ ନାହିଁ। କିଛି କ୍ଷଣ ପରେ ସୀତାର ଚେତନା ହେଲା ଯେ ତାହାର ସ୍ୱାମୀ କିଛି ଖାଇ ନାହାନ୍ତି। ସେ ଉଠି ଆଲୁଅ ଜାଳି ନିଜେ ଅନ୍ନ ବ୍ୟଞ୍ଜନ ଆଣି ସ୍ୱାମୀଙ୍କ ପରସିଦେଲେ। ଦିବାକର କହିଲେ, ''ଆସ, ମୋ ସହିତ ଖାଇବ।'' ପ୍ରଗାଢ଼ ମିଳନରେ ଆଉ ଦ୍ୱିଧା ସଙ୍କୋଚ ନ ଥିଲା,- ଆଜି ହିଁ ନୂତନ ପଞ୍ଚଗ୍ରାସ ହେଲା-ଆଜି ହିଁ ନୂତନ ଆତ୍ମାର ବିବାହ। ସେ ଦିନର ମଧୁର ଅନୁଭୂତିରେ ଦିବାକର ପାଗଳ ହେଲେ। ଘରେ ଯେ ପ୍ରେମ ପାଏ, ଘରେ ଯେ ଆନନ୍ଦ ପାଏ, ସେ କଣ ବାହାରକୁ ଗୋଟାଇବାକୁ ଯାଏ? କ୍ରମେ ତାଙ୍କର ଅନେକ ମନ୍ଦ ଗୁଣ ଛାଡ଼ିଆସିଲା, କ୍ରମେ ମନ୍ଦ ସଂଗୀ ଗୋଟିଏ ଗୋଟିଏ ବିଦାୟ ନେଲେ, ନିଶା ପାଣି ମଧ ବହୁ ପରିମାଣରେ କମିଗଲା। ଏ ଥର ସେ ସୀତାହାତର କଣ୍ଢେଇ ହୋଇଗଲେ। ସୀତା ଅହଲ୍ୟା ଶିକ୍ଷା ଅନୁଯାୟୀ ସ୍ୱାମୀଙ୍କୁ ବଶ କରିପାରି ମହାନନ୍ଦ ଲାଭକଲା।

ଆଜି ସୁଭଦ୍ରା ଦେବୀଙ୍କର ଗୋଡ଼ ତଳେ ପଡ଼ିବାକୁ ନାହିଁ। ଆଜି ତାଙ୍କର ବିଶାଳ ପ୍ରାଙ୍ଗଣ ଆଲୋକମୟ କରି ଅମୂଲ୍ୟ ମୋହନର ଆଗମନ। ନବଜାତ ସୁକୁମାର ପୁତ୍ରକୁ ଚାହିଁ ସମସ୍ତେ ଆନନ୍ଦିତ। ହୁଳହୁଳି ଧ୍ୱନିରେ ଗ୍ରାମ ଦାଣ୍ଡ କମ୍ପିଉଠୁଛି, କେତେ ପ୍ରକାର ଯେ ମଙ୍ଗଳାଚରଣ ଲାଗିଛି, ତାହାର ସୀମା ନାହିଁ, ଦିବାକର ଜୀବନରେ ଯେ ଏପରି ଘଟଣା ହେବ, ଏହା ସେ ଭାବି ନ ଥିଲେ-ସୀତା ଯେ ତାଙ୍କୁ ପିତୃତ୍ୱର ସୁଖ ଦେଇ ଜୀବନ ସାର୍ଥକକରିବ, ଏହା ସେ ସ୍ୱପ୍ନରେ ସୁଦ୍ଧା ଭାବିପାରି ନ ଥିଲେ। ସାଧାରଣ ଘରେ ପୁତ୍ରଜନ୍ମରେ ଯଦି ଏତେ ଆନନ୍ଦ, ଜମିଦାରଙ୍କ ଘରେ କଣ ହୋଇ ନ ପାରେ! ହେଲେ, ଏତେ ଆନନ୍ଦ, ଏତେ ଉତ୍ସବ ମଧ୍ୟରେ ବିଷାଦରେ ବୁଡ଼ି ରହିଛି ଜଣେ-ସେ ସନ୍ତାନହୀନା ଶଙ୍କରୀ। ମୃତ୍ୟୁବାଣ ଯଦି ଛାତିରେ ଫୁଟିଥାନ୍ତା, ତଥାପି ତାହାର ଏତେ ପୀଡ଼ା ହୋଇ ନ ଥାନ୍ତା। ତାହାର ଆତ୍ମା ବ୍ୟକୁଳଭାବରେ ଭାଙ୍ଗି ପଡୁଥିଲା। ସେ ମଧ ଦିବାକରର ସ୍ତ୍ରୀ, କିନ୍ତୁ ସ୍ତ୍ରୀ ବୋଲାଇବାର ତାର ଅଛି କଣ? ସ୍ୱାମୀ ଥାଇ ସ୍ୱାମୀ ନାହିଁ-ଦଶ ଦିନରେ ଦିନେ ଦୂରରୁ ଦେଖିବା ସୌଭାଗ୍ୟ ଘଟେ କି ନାହିଁ ସନ୍ଦେହ। ସୀତାର ଅଗମନ ପୂର୍ବରୁ ମଧ ତାର ଏହି ଅବସ୍ଥା ଥିଲା। କିନ୍ତୁ ତା ଛାତି ଉପରେ ଦିବାକର ଆଜିକାଲି ଯେ ଏପରି ଗୋଟିଏ ରୂପଯୌବନସଂପନ୍ନ ପତ୍ନୀ ସହିତ କାଳ କଟାଉଛନ୍ତି, ତାହାରି ଅନ୍ତଃପୁରରେ ତାଙ୍କର ରାଜ୍ୟ-ତାରି ପ୍ରେମରେ ସେ ପାଗଳ। ତା ରୂପରେ ସେ ମୋହିତ, ପୁଣି ତାର ଗର୍ଭଜାତ ସନ୍ତାନର ସେ ଆଜି ପିତା, ଏହା ଭାବି ଭାବି ଶଙ୍କରୀର ଛାତି ହିଂସାରେ ବିଦୀର୍ଣ୍ଣହେଲା। ସେ ଆପଣା ଶେଯରେ ପଡ଼ି କାନ୍ଦିଲା; ଅନେକ ଦିନ, ଅନେକ ରାତି ଭାତ ତିଅଣ ଛୁଇଁଲା ନାହିଁ। ଦାସୀ ତାହା ଦେଖି ଫୁଲମଞ୍ଜରୀକୁ ଜଣାଇଲେ। କିନ୍ତୁ ଫୁଲମଞ୍ଜରୀ ସେତେବେଳେ ଲାଗିଥିଲା ନବ ଶିଶୁର ପରିଚର୍ଯ୍ୟାରେ।

କ୍ରମେ ଉଠିଆରି ଗଲା। ଏକୋଇଶା ପୂଜାରେ ନବଜାତ କୁମାରର ନାମ ଦିଆଗଲା ଅମୂଲ୍ୟମୋହନ। ଅଜାଘରୁ ବାବୁ ଆସି ନୂଆ ପୁଅକୁ ସୁନାଖଡୁ, ସୁନାହାର, ଲୁଗାପଟା ଦେଇଗଲା। ବିଧିପୂର୍ବକ ସବୁ ଦେଲା। ସୂତିକାଗୃହ ତ୍ୟାଗ ପରେ ସୀତା ପ୍ରଥମେ ନୂଆ ପୁଅକୁ

ଘେନି ଶଙ୍କରୀକୋଳରେ ଦେଲା; କହିଲା, ''ନାନି, ଏ ତୁମରି ପୁଅ-ଏ ମୋର ନୁହେଁ।'' କିନ୍ତୁ ଅଭିମାନ ରୋଷରେ ଶଙ୍କରୀ ମୁହଁ ବୁଲାଇବସିଲା। ତାହାର ଆଖି ଯୋଡ଼ିକରୁ ପ୍ରବଳ ବେଗରେ ଅଶ୍ରୁ ବହିଲା। ସେ ମନେ ମନେ ଭାବିଲା, ସବୁ ତ ନେଲୁ-ସବୁ ତ ଛଡ଼େଇଲୁ; ଏ କଣ ସୁଆଗ ଗୋଟାଏ।'' ପୁଣି ମୁହଁରେ କହିଲା, ''ହ, ବାଛାର କି ପୁଅ? ତମ ପୁଅ ତମେ ରଖ। ମୋ ଆଖି କାହିଁକି ପଡ଼ିବ।'' ତାହାର ସ୍ୱରରେ ଏପରି ଦ୍ୱେଷ ଓ ଅଭିମାନ ଫୁଟିଲା ଯେ, ସୀତା ସରମରେ ମରି ଫେରିଲା। ଦିବାକର ସବୁ ଶୁଣିଲେ; ଭାବିଲେ କୃତ କର୍ମରେ ଫଳ। ଶଙ୍କରୀ ଲାଗି ସହାନୁଭୂତିରେ ତାଙ୍କ ପ୍ରାଣ କାନ୍ଦିଉଠିଲା। ସୀତା କହିଲା, ''ନାନୀଙ୍କ ଘରକୁ ତୁମେ ଯାଅ ନା କାହିଁକି? ତାଙ୍କୁ ଏମିତି ହେଳାକରିବା ତୁମର ଉଚିତ କି? ସେ ବି ତ ତୁମର ହାତଧରଲା ସ୍ତ୍ରୀ!''

ଉଦାସ ଭାବରେ ଉପରକୁ ଚାହିଁ ଦିବାକର ଭାବିଲେ-ହାତ ଧରଲେ କଣ ସ୍ତ୍ରୀ ହୋଇଯାଏ? କିନ୍ତୁ ଆଉ କିଛି କହିଲେ ନାହିଁ। ସେତେବେଳକୁ ତାଙ୍କର ଦୃଷ୍ଟି ପଡ଼ିଥିଲା ନୂଆ ପୁଅ ଉପରେ। କି ସୁନ୍ଦର ମୁହଁ ତାର, କି ଲାବଣ୍ୟମୟ ଅବୟବଗୁଡ଼ିକ! ସ୍ୱାମୀ ମୁଗ୍ଧ ଦଷ୍ଟି ସନ୍ତାନ ଉପରେ ପଡ଼ିଥିବାର ଦେଖି ସୀତାର ମନ କୁଣ୍ଢେମୋଟ ହୋଇଗଲା, ସେ ମଧ ପୁଅକୁ ଅନାଇଲା। ହଠାତ୍, ବିଜୁଳି ପରି ଗୋଟିଏ ବହୁଦିବସର ପୁରୁଣା ମୁହଁ ତାର ମନେ ପଡ଼ିଗଲା,- ସେ ରଘୁନାଥର ମୁହଁ। ଅନାୟରରେ ତାହାର ଗୋଟିଏ ଦୀର୍ଘଶ୍ୱାସ ବହିଗଲା-ତାହାର ଆନନ୍ଦ ମଉଳିଗଲା। ବାସ୍ତବିକ କି ଜାଣି କାହିଁକି ରଘୁନାଥ ଲାଗି ତାହାର ହୃଦୟ ଆଜି ଉଚ୍ଛୁଳି ଉଠିଲା। ତା ସନ୍ତାନର ପିତା ରଘୁନାଥ ହୋଇଥାନ୍ତା-ଏହି ତ ଥିଲା ତାର କୁମାରୀ ଜୀବନର ଆକାଂକ୍ଷା। ସେ ଆଶା ପୂରିଲା କି? ଯଦି ଆଶା ପୂରୁଥାନ୍ତା, ତାହାହେଲେ ଜଗତରେ ଏତେ ଦୁଃଖକଷ୍ଟ ଥାନ୍ତା କି?

ସେହି ଦିନ ଉପରଓଳି ନିଜର ନିଭୃତ କକ୍ଷରେ ପେଡ଼ିରୁ କାଢ଼ି ରଘୁନାଥର ଫଟୋ ଖଣ୍ଡିକ ସୀତା ଏକାନ୍ତ ଦୃଷ୍ଟିରେ ଚାହିଁଲା। ଆଖି ପାଣିରେ ପୂରିଗଲା, ଛାତି କୋହରେ ଫାଟିଲା, ଶୈଶବର ଶତଶତ ସ୍ମୃତି ବକ୍ଷ ବିଦୀର୍ଣ୍ଣକଲା। ସେ ସ୍ଥାଣୁବତ୍ ବହୁକ୍ଷଣ ଶୂନ୍ୟକୁ ଚାହିଁ ରହିଲା। ସେ ଯେ କଣ କରୁଛି, କିଛି ବୁଝି ପାରିଲା ନାହିଁ। ମନେ କଲା-ଆଉ ରଘୁନାଥ କଥା ଭାବିଲେ ପାଗଳ ହେବ; କିନ୍ତୁ ସେହି ଅଲାଜୁକ ମନ ପୁଣି କହିଲା, ''ରଘୁନାଥ ମନେ ନ ପଡ଼ି କୁଆଡ଼େ ଯିବ? ସେ ତ ଦିନେ ସବୁଠୁଁ ଆପଣାର ଥିଲା, ତାକୁ କି ଏ ଜନ୍ମରେ ଭୁଲିହେବ?'' ଅଶ୍ରୁରେ ଆଚ୍ଛନ୍ନ ସୀତା ପୁଣି ଫୋଟୋ ଖଣ୍ଡିକ ସିନ୍ଦୁକରେ ଥୋଇଦେଲା। ସ୍ୱାମୀଠାରୁ ଏଖଣ୍ଡିକ ଗୁପ୍ତ, ଏ କଥା ଭାବି ତାର ଆତ୍ମାଧିକାର ଜନ୍ମିଲା; କିନ୍ତୁ ପରକ୍ଷଣରେ ମନର କୋହ ମନରେ ଚାପି ସେ ପିଲାକୁ କୋଳରେ ଘେନିବାକୁ ଉଠିଗଲା।

ଅମୂଲ୍ୟ ଯେତେବେଳେ ମାତୃକୋଳରେ ସ୍ତନ୍ୟ ପାନ କଲା, ଆନନ୍ଦରେ ତାହାର ପଦ୍ମପରି ଆଖି ଦିଓଟିରେ ହସି ହସି ମା ମୁହଁକୁ ଚାହିଁ ଦେଲା। ସୀତାର ସବୁ ଦୁଃଖ ଉଭେଇ

ଗଲା। ଘର ଭିତରେ ପଶି ଆସିଲେ ଦିବାକର। ମା, ପୁଅ, ବାପ, ଜଗତରେ ତିନ ଆତ୍ମା। ଈଶ୍ୱରଙ୍କ ସୃଷ୍ଟିର ରହସ୍ୟ ! ତିନି ଜଣ ପରସ୍ପରକୁ ଆପଣାର ଭାବି ବସିଲେ। ସେ ହାସ୍ୟ ଭିତରେ ଥିଲା ଗୁପ୍ତ ଆନନ୍ଦ-ସୃଷ୍ଟିର ସାର, ପରମ ଆନନ୍ଦ।

ଦୂରରୁ ସେହିଟା ଦେଖିଲା ଫୁଲମଞ୍ଜରୀ। ତାହାର ପ୍ରାଣ କାନ୍ଦିଉଠିଲା। ଯୌବନରୁ ବିଧବା ସେ। ସଂସାରର କଣ ସୁଖ ବା ସେ ପାଇଲା? ତାହାର ତରଙ୍ଗାୟିତ ଯୌବନ, ଢଳଢ଼ଳ ହୃଦୟପ୍ରସ୍ଫୁଟିତ ସୌନ୍ଦର୍ଯ୍ୟ କଣ ରାତିଦିନ କାନ୍ଦି କାନ୍ଦି ସେ ନଷ୍ଟ କରିବ? ପନ୍ଦର ବରଷରୁ ପିତୃଗୃହରେ ସୁଖରେ କାରାଗାରରେ ସେ ବନ୍ଦନୀ। ହଜାର ଖାଇବାକୁ ଥାଉ, ହଜାର ପିନ୍ଧିବାକୁ ଥାଉ-ସେ ଯେ ବିଧବା, ସେ ଯେ ସମାଜବକ୍ଷରେ ସବୁ କର୍ମରୁ ଉପେକ୍ଷିତା-ତାହାର କିଛି କାମ ନାହିଁ, ତାହାର ଗୃହସ୍ଥାଶ୍ରମରେ କିଛି ଅଧିକାର ନାହିଁ-ଯୌବନର ଉପଭୋଗରେ କିଛି ମାତ୍ର ଦାବି ନାହିଁ। ଅଛି କେବଳ ବିଧବାର ବ୍ରହ୍ମଚର୍ଯ୍ୟ। କିନ୍ତୁ କାହିଁକି? ଯେ ବ୍ରହ୍ମଚର୍ଯ୍ୟ କରି ନ ପାରେ, ତା ପାଇଁ ବ୍ରହ୍ମଚର୍ଯ୍ୟ! ସେ ଶରୀରକୁ ସ୍ୱବଶରେ ରଖିପାରେ ନାହିଁ, ତା ପାଇଁ ଉଦ୍ଦାମ ଯୌବନରେ ହବିଷ୍ୟାନ୍ନର ବ୍ୟବସ୍ଥା! ଲୁହ ଛଳ ଛଳ ଆଖିରେ ଦିପହରିଆ ଫୁଲ୍ଲମଞ୍ଜରୀ ବିଛଣାରେ ପଡ଼ି ପଡ଼ି କାନ୍ଦୁଥିଲା। ତାହାର ମନେହେଲା, ଆଉ ଏ ସମାଜରେ ରହିବ ନାହିଁ-ଏତେ ଲୁଚାଚୋରା, ଏତେ ଅପମାନର ଅଗ୍ନିରେ ଜଳିପୋଡ଼ି ସେ ଆଉ ରହିବ ନାହିଁ। ଯାହାକୁ ସେ ଅନ୍ତର ସହିତ ଭଲ ପାଏ, ଯାହା ଲାଗି ସେ କୁଳଧର୍ମରେ ଜଳାଞ୍ଜଳି ଦେଇଛି-ଯେ କୌଣସି ଉପାୟରେ ହେଉ, ତାହା ଘର କରିବ। କିଛି ଦିନ ତଳେ ସେ ବିଦ୍ୟାସାଗରଙ୍କ ବିଧବାବିବାହ ବିଷୟ ପୁସ୍ତିକାଦି ପାଠ କରୁଥିଲା। କଲିକତାର ବ୍ରାହ୍ମସମାଜରେ ବିଧବାବିବାହ ହୁଏ ନାହିଁ, ସେ ତା ଜଣେ। କେବଳ ମା ଭାଇ। ଏତେ ସଂସ୍କାର କଲେ, ଏତେ ଆଧୁନିକ ହେଲେ, କିନ୍ତୁ ଫୁଲମଞ୍ଜରୀ ବେଳକୁ କିଛି ନାହିଁ। ଏ କଥା ଆଜି ନୁହେଁ, ଗତ ଦୁଇ ବର୍ଷ ହେଲାଣି, ଫୁଲମଞ୍ଜରୀ ଭାବି ରଖିଥିଲା। ମଝିରେ ସୀତାର ବିବାହ ଆଦି ପଶି ସବୁ ମାଟି କରିଦେଲା। ସ୍ୱାର୍ଥର ସଂସାର ପରା! ମା, ଭାଇ କେବଳ ଆପଣା ସୁଖଟି ଦେଖିଲେ, ତାହାର ପ୍ରାଣରେ ଯେଉଁ ଅଗ୍ନି ଜଳୁଛି, ତାର ଖବର କିଏ ନେଲା? କାନ୍ଦି କାନ୍ଦି ବିଷାଦିନୀ ଫୁଲମଞ୍ଜରୀ ବାୟାଣୀ ହେଲା। କିଏ ବୁଝିଲା? ଡାକ୍ତର ଡାକି ମିଛେ ମିଛେ ଚିକିତ୍ସା କଲେ। ଡାକ୍ତର କହିଲା 'ହିଷ୍ଟିଆ' ହୋଇଛି। ହାୟ ହାୟ, ଫୁଲମଞ୍ଜରୀକୁ କି ରୋଗ, ତାହା ଡାକ୍ତରର କି ସାଧ୍ୟ ବୁଝିବ?

ଆଜି କିନ୍ତୁ ତାର ମନରେ ହେଲା-ଆଉ ନୁହେଁ, ଯଥେଷ୍ଟ ହେଲା, କି ସୁଖରେ ସେ ମା ଭାଇର ଦାସତ୍ୱ କରିବ? ଏ ଥର ନିଜ ଦେଖିଲା ପଥରେ ସେ ଯିବ-ମନ ଯାହା କହେ ତାହାହିଁ ଶୁଣିବ। ଆତ୍ମସୁଖ ପଥରେ କଣ୍ଟକ ମା ଭାଇଙ୍କ ମୁହଁକୁ ଚାହିଁ ଲାଭ କଣ? ଅନାଇ ଅନାଇ ଯେ ଚାରି ବର୍ଷ ହେଲା।

ସେ ଶଯ୍ୟାରେ ଉଠି ଏଣେ ତେଣେ ବୁଲିବାକୁ ଲାଗିଲା, ଅତି ପରିପାଟିରେ ବେଶ ଭୂଷା କଲା। କିନ୍ତୁ ହାୟ, ହାତରେ ଯେ ଅଳଙ୍କାର ନାହିଁ-ମୁଣ୍ଡରେ ଯେ ସିନ୍ଦୂର ନାହିଁ। ଏ

କଣ ମାନୁଚି-ଗଳାରେ ସୁନାହାର, କାନରେ କର୍ଣ୍ଣଫୁଲ, ଅଙ୍ଗୁଳିରେ ମୁଦି, ଛେଦା ରେଶମୀ ଲୁଗା, ଏ କଣ ମାନୁଚି ? ଗଭୀର ଦୀର୍ଘଶ୍ୱାସ ସହ ଅଭନା ନିକଟରେ ଠିଆହୋଇ ସେ ମନେ ମନେ ଭାବିଲା-ଏ କଣ ମାନୁଚି ? ଦାସୀ ଫୁଲମାଳ ରଚନା କରିଥିଲା। ମଧୁର ଗୋଧୂଳି ବେଳେ ସେହି ଫଳହାରଟି ହାତରେ ଗୁଡ଼ାଇ ଫୁଲମଞ୍ଜରୀ ଯାଇ ବିଶାଳ ଉଦ୍ୟାନରେ ବୁଲିବାକୁ ଲାଗିଲା। ସୂର୍ଯ୍ୟ ବୁଡ଼ି ବୁଡ଼ି ଆସୁଥିଲେ-ପଶ୍ଚିମ ଆକାଶ ଲାଲ ବର୍ଣ୍ଣ ଦିଶୁଥିଲା। ଆଜି ସଞ୍ଜ ଗୋଧୂଳିର ସେହି ମ୍ଳାନ ସିନ୍ଦୂର ଛଟାଟିକ ବୃକ୍ଷପତ୍ରରେ ଓ ତାହାର ହାତ ମୁହଁରେ ପଡ଼ି ବଡ଼ ସୁନ୍ଦର ଦିଶୁଥିଲା। ଆକାଶରେ ରଞ୍ଜିତ ମେଘମାଳ ଖଣ୍ଡ ଖଣ୍ଡ ଭାସୁଥିଲେ, ଦଳେ ଦଳେ ପକ୍ଷୀ ମଧୁର କାକଳି ସହ ଉଡ଼ି ଉଡ଼ି ଯାଉଥିଲେ, ମଧୁର କୁସୁମଗନ୍ଧରେ ପବନ ଚହଟି ଯାଉଥିଲା, ଆଉ ଫୁଲମଞ୍ଜରୀର ଯୁବତୀ ହୃଦୟ ପ୍ରେମରେ ଫାଟି ପଡୁଥିଲା। ଜଣକ ଲାଗି ସେ ଯେ ସର୍ବସ୍ୱ ଦେବାକୁ ବସିଛି-ଜାତି, କୂଳ, ମାନ ସବୁ-ସେ ପ୍ରିୟତମ କଣ ତାର ତ୍ୟାଗ ସ୍ୱୀକାର ବୁଝିପାରିବେ ? ସେ ଶ୍ୟାମସୁନ୍ଦର କଣ ତାର ହେବେ ? ତାଙ୍କରି ଅପେକ୍ଷାରେ ତ ସେ ବୁଲୁଛି, ତାଙ୍କର ଆଗମନପଥକୁ ତ ସେ ଚାତକିନୀ ପରି ଚାହିଁ ରହିଛି, ତାହା ଛାତି ଉଠୁଛି ପଡୁଛି। କ୍ରମେ ଅନ୍ଧକାର ଘୋଟି ଆସିଲା, ଆକାଶରେ ଦ୍ୱିତୀୟା ଚନ୍ଦ୍ର ଦେଖାଦେଲା। ଫୁଲମଞ୍ଜରୀ ଉଦ୍‌ବେଗ କ୍ରମେ ବଢ଼ିବାକୁ ଲାଗିଲା।

ପଛ ଆଡୁ କିଏ ଆସି ଫୁଲମଞ୍ଜରୀ ଆଖି ଚିପିଧରିଲା। କୋମଳ ସ୍ପର୍ଶରେ ଆଗନ୍ତୁକକୁ ଅନୁଭବ କରି ଫୁଲ କହିଲା, '' ପାନ, ତୁ ଏଠି'' ? ସେ କହିଲା, ''ଆଉ କଣ, ବୋଉ ହେଗିକା ଯେ ବୁଲି ଆଇଛନ୍ତି।'' ଧୀର ଦୀର୍ଘଶ୍ୱାସରେ ବକ୍ଷର ବେଦନାଟିକ ଲୁଚାଇ ଫୁଲମଞ୍ଜରୀ ପାନର ହାତଧରି ବୁଲିଲା। ଦୁଇ ଜଣ ପରସ୍ପରର ଆବାଲ୍ୟ ବନ୍ଧୁ-ଏକାଠି ଖେଳିଥିଲେ, ଚାହାଳିରେ ପାଠ ପଢ଼ିଥିଲେ ଏବଂ ଘନିଷ୍ଠତା ବଢ଼ିଲାରୁ 'ପାନ' ବସିଥିଲେ। ଶେଷକୁ ଏକ ମାସରେ ଦୁଇ ଜଣଙ୍କର ବିବାହହେଲା। ବହୁ ଆଶାର ଚିତ୍ର ମନରେ ଆଙ୍କି ଦୁହେଁ ସଂସାରରେ ପଶିଥିଲେ, କିନ୍ତୁ ହାୟ, ପାନ ପକ୍ଷରେ ଆଜି ସଂସାର ଯେପରି, ଫୁଲ ପକ୍ଷରେ ସେପରି କି ? ଗରିବ ପୁରୋହିତର ଝିଅ ପାନ, ତାହାର ସ୍ୱାମୀ ସଂସ୍କୃତ ଟୋଲରେ ପଣ୍ଡିତ। ଦ୍ୱିତୀୟ ପକ୍ଷର ବର, ଉଭୟଙ୍କ ବୟସ ମଧ୍ୟରେ ଦ୍ୱାଦଶ ବର୍ଷ ବ୍ୟବଧାନ, ତଥାପି ପାନଟି କି ସୁଖୀ ! ଆପଣା କୋଳରେ ପୁଅ ଝିଅ ଘେନି ମୁଣ୍ଡରେ ସୁନ୍ଦୂରଟୋପା ଘେନି ପାନଟି କି ସୁଖୀ ! ଆଉ ତାରି ସାଙ୍ଗ ଫୁଲମଞ୍ଜରୀ– ଧନୀ ଜମିଦାରର ଗୃହିଣୀ ହୋଇଥିଲା, କିନ୍ତୁ ପନ୍ଦର ବର୍ଷ ବୟସରେ ବିଧବା ହୋଇ, ତିନି କୂଳ ପୋଡ଼ି ବାପଘରେ ହବିଷ୍ୟ କରୁଛି। ଭଲା ସେତିକିରେ ସରିଥାନ୍ତା, ଏ ଯୌବନର ବହ୍ନି କଣ ଡାଙ୍କିବାର, ଏ ଉଦ୍ଦାମ ହୃଦୟ କଣ ଆଙ୍କୁଶି ମାନିପାରେ ? ଯେଉଁ ସୁଖ ସେ ପାଇଥିଲା, ଯେଉଁ ମଧୁ ସେ ଚାଖିଥିଲା, ତାହାରି ସ୍ୱାଦୁ ତ ତା ଜୀବନର ସର୍ବନାଶ କଲା। ତାହାର ସ୍ୱାମୀ ଶଶିକାନ୍ତ ସିନା ମରିଗଲେ, କିନ୍ତୁ ତାଙ୍କୁ ଯେଉଁ ସଂସାର ବାସନା ଚଖାଇଯାଇଥିଲେ, ଫୁଲମଞ୍ଜରୀ ତାହା ତ ଭୁଲିଲା ନାହିଁ। ଛଅ ମାସ କାନ୍ଦିଲା-ବର୍ଷେ ଦୁଃଖ

କଲା, ଧୀରେ ଧୀରେ ମନ ପଥର ପାଲଟିଗଲା। ଧୀରେ ଧୀରେ ହୃଦୟର ଶୋକାଗ୍ନି ନିଭି ଆସିଲା, ଧୀରେ ଧୀରେ ଯୌବନର ତୃଷା ଛାତି ଫଟେଇଲା। ହଠାତ୍ ଆଖି ଆଗରେ ପଡ଼ିଗଲା ସୁରଞ୍ଜନ।

ଉଭୟେ ଉଭୟର ଆଖିର ଭାଷା ବୁଝିଲେ, ପ୍ରାଣର ଆକୁଳତା ଅନୁଭବକଲେ। ଜଗତର ହଜାର ବାଧା ମୂର୍ତ୍ତିମତୀ ହୋଇ ତାଙ୍କ ଆଖି ଆଗରେ ବିଭୀଷଣ ଦେଖାଇବା ସତ୍ତ୍ୱେ ପ୍ରେମପଥର ଯାତ୍ରୀ ଯୋଡ଼ିଏ ଭୀତ ହେଲେ ନାହିଁ। ଉଭୟ ଉଭୟଠିଁ ମଜିଲେ। ସୁରଞ୍ଜନ ମିତ୍ର ବଙ୍ଗାଳୀ କାୟସ୍ଥ, ଖାନ୍ଦାନ ଘରର ପିଲା। ସେ ଏମ୍.ଏ. ପାଶ, ଆଉ ଫୁଲ?

ସବୁ ଫୁଲ ବୁଝେ। ସନ୍ଧ୍ୟାରେ ଅନ୍ଧକାର ଯେତେବେଳେ ତାର ଖିଆଲି ବାଟେ ତାରା-ର ଆଲୁଅ ନେଇ ଆସି ଚକ୍ଷୁ ସମକ୍ଷରେ ନୃତ୍ୟକଲା, ତାର ଚକ୍ଷୁ ଭାଙ୍ଗିଗଲା। ମନ କହିଲା- ଫୁଲ, ତୁ କଣ କରୁଚୁ? ସଂସାର-ଉଦ୍ୟାନରେ ଫୁଲ, ତୁ ପୁଣି କାହା ବେକରେ ମାଳୀ ହେବାକୁ ଆଶା କରିଚୁ? ତତେ କିଏ ପଚାରେ! ହେଇ ତ-ଏତେ କହି ଆଜି ଆସିଲା ନାହିଁ।

ଅଭିମାନରେ ଫୁଲ ଗଦାଏ ଲୁହରେ ଭାସିଗଲା। ଦାସୀ ଯେତେବେଳେ ତା ଘରେ ଦୀପ ଦେଇଗଲା, ସେତେବେଳେ ତା ଆଖି କାନ୍ଦି କାନ୍ଦି କୁମ୍ଭାଟୁଆ ପରି ଲାଲି ଟହଟହ ହୋଇଗଲାଣି। ମୋତି ତାହା ଲକ୍ଷ୍ୟକରି ଭାବିଲା-ବଡ଼ ଲୋକର ବଡ଼ କଥା।

କିନ୍ତୁ ତା ଅଣ୍ଟାଖୋଷଣିରେ ଥିବା ଦ୍ରବ୍ୟଟି ଯେ ଶ୍ରାବଣ ଆକାଶର କଳା ବଉଦରେ ଜ୍ୟୋସ୍ନା ଖେଳାଇ ପାରେ, ଏହା ଭାବି ସେ ଟିକେ ଆମୋଦିତ ହେଲା।

ଅକାରଣ ମୋତିକୁ ଠିଆ ହୋଇଥିବାର ଦେଖି ଫୁଲ ଟିକେ ବିରକ୍ତ ହୋଇ କହିଲା, "ତୁ ଯାଉନୁ, ଠିଆ ହୋଇ ବଲବଲ କରି ଚାହୁଁଚୁ?"

ମୋତି ଯିବାକୁ ଗୋଡ଼ ବଢ଼ାଇ ପୁଣି ହଠାତ୍ ରହିଗଲା, ପେଟ ସନ୍ଧିରେ ସେ ହାତ ପୂରାଇ କଣ ଗୋଟାଏ କାଢ଼ିଲା ଏବଂ ଅତି ସଂଗୋପନରେ ଖାଉନ୍ଦାଣୀ ହାତରେ କାଗଜ ବିଡ଼ାଟି ଦେଇ ବାହାରି ଗଲା। ଦୁଇ ଆଖି ହସରେ ପୂରାଇ ଦେଇ ଫୁଲମଞ୍ଜରୀ ଦୀପ କତିକି ଗଲା। କାଗଜ ବିଡ଼ାଟା ସୁର ବାବୁଙ୍କ ପତ୍ର।



## ତ୍ରୟୋବିଂଶ ଅଧ୍ୟାୟ

ମୋତି, ଖାଉନ୍ଦାଣୀ ହାତରେ ଚିଠିଟି ଦେଇ ବାହାରି ଗଲା ସତ, ମାତ୍ର ଦୁଆର ପଛଆଡ଼େ ଛିଡ଼ା ହୋଇ ଫୁଲ କଣ କରୁଛି ଦେଖୁଥିଲା। ଦୀପ କତିରେ ବସି ଫୁଲ ଚିଠି ପଢୁଥିଲା, କେତେବେଳେ ଶଶିକରମଣ୍ଡିତ ଶାରଦାକାଶ ପରି ତାର ସୁନ୍ଦର ମୁଖମଣ୍ଡଳ ଦୀପ୍ତିରେ ପୂରି ହସି ଉଠୁଥିଲା, କେତେବେଳେ ପୁଣି ଶ୍ରାବଣର ଘନଘଟାଛନ୍ନ ଶର୍ବରୀ ପରି ମୁହଁ ଭାରି

ହୋଇ ଆଖିରୁ ଲୁହ ଝରିପଡୁଥିଲା। ଅଭିମାନରେ, କୋହରେ ତାର ଛାତି ଉଠୁଥିଲା, ପଡୁଥିଲା। ତାର ସୁନ୍ଦର ମୁଖ ଆଜି ବେଶି ସୁନ୍ଦର ଦିଶୁଥିଲା, ଆଉ କୁଟିଳ ନୟନରେ ତା ଲକ୍ଷ୍ୟ କରୁଥିଲା ମୋତି।

ମୋତି ମଧ୍ୟ ଯୁବତୀ, ଦରିଦ୍ର ଘରର ଝିଅ, ହେଲେ ମଧ୍ୟ ଯୁବତୀହୃଦୟ ତା'ଠାରେ ଥିଲା। ସେ ଜାତିରେ ରାଜପୁତ। ବାଲ୍ୟକାଳରେ ତାର କୃଷ୍ଣପୁର ଗ୍ରାମରେ ତାରି ପିତା ମାତାଙ୍କ ଭଳି ଦୁଃଖିଘରେ ସେ ବିଭା ହୋଇଥିଲା। ନିତି ଧାନ କୁଟି ଭାତ ଖାଉଥିଲେ ମଧ୍ୟ ଆପଣା ସ୍ୱାମୀ, ବିଧବା ଶାଶୂ ବୁଢ଼ୀ ଓ ପିଲା ଦିଓଟିଙ୍କୁ ନେଇ ସେ ସୁଖରେ ଚଳୁଥିଲା। ମାଣେ କଣେ ଜମି ନ ଥିଲେ ସୁଦ୍ଧା-ଧାର ଉଧାର ମଧ୍ୟେ ମଧ୍ୟେ ହେଉଥିଲେ ହେଁ, ଚିରାଲୁଗା, ଛିଣ୍ଡା ମଣିଣାରେ ଦିନ କାଟୁଥିଲେ ମଧ୍ୟ ମୋତି ପାଖାଳଭାତ, ଶାଗ ଖରଡ଼ା ଖାଇ ସ୍ୱାମୀର ଚନ୍ଦ୍ରବଦନ ଚାହିଁ, ପୁଅ ଦିଓଟିଙ୍କୁ କୋଳରେ, କାଖରେ ଧରି ଅତି ସୁଖରେ ଥିଲା।

ସବୁ ଦିନେ କଣ ତା ସୁଖ ବିଧାତା ସହନ୍ତା? ଗାଁକୁ ତାଙ୍କର କୁଲିଧରା କୁଆଡୁ ଅଇଲା; ଭୁଲାଇ ତା ସ୍ୱାମୀ ଗଣେଶକୁ କେଉଁ ଦୂର ଦେଶକୁ ଘେନିଗଲା। ସେ ଦେଶ ନାଁ ସେ ଶୁଣିଥିଲା 'ରଙ୍ଗୁରାଇଜ'[୧]। ରଙ୍ଗୁରାଇଜକୁ ଗଲାଦିନଠାରୁ ଗଣେଶ ଦୁଇ ଥର ମାତ୍ର କୋଡ଼ିଏ ଟଙ୍କା ପଠାଇଥିଲା-ସେତିକି; ଆଉ କିଛି ଚିଠିପତ୍ର ନାହିଁ। ପୁଅଲାଗି ଝୁରି ଝୁରି ମା ବୁଢ଼ୀର କାଳ ହେଲା[୨]। ଗାଁରେ ଝାଡ଼ାବାନ୍ତି[୩] ଲାଗି ତା ବଡ଼ପୁଅ ଚାଲିଗଲା, ବାସୁଆ ତେଲିର ଅତ୍ୟାଚାରରେ ତା ଘରଡ଼ିହ ଖଣ୍ଡିକ ବି ଗଲା। ବାପବଂଶରେ କୁଳାଙ୍ଗାର ଭାଇ ଲଇଖଣ ଛଡ଼ା ଆଉ କେହି ନ ଥିଲେ। ସେ ଚାରି ବର୍ଷର ପୁଅ ଧରମାକୁ କୋଳରେ ଧରି ଆସି କଟକ ମୁକାମରେ ପହଞ୍ଚିଲା। ସେତେବେଳକୁ ଉପାସ ଭୋକରେ ତା ପ୍ରାଣ ଯାଏ-ଯାଏ। ବାଟ କଡ଼ରେ ତାକୁ ପଡ଼ିଥିବାର ଦେଖି ପୁଲିଶ ଗାଡ଼ିରେ ପକାଇ ତାକୁ ଡାକ୍ତରଖାନାରେ ଛାଡ଼ିଗଲେ। ତା ପୁଅ ତାରି କୋଳରେ ଡାକ୍ତରଖାନାର ସବୁଠୁଁ ଅଜଣା ଗରିବ..ୱାର୍ଡରେ ମଲା। ହାଡ଼ି ତାକୁ ଫୋପାଡ଼ି ଦେଲା। ସେ ନିଜେ ବହୁତ ଦିନ ଜ୍ୱର ଭୋଗି ଶେଷକୁ ଡାକ୍ତରଖାନାରୁ ଚୋରି ଅପରାଧରେ ତଡାଖାଇଲା। ସେ ଚୋରି କରି ନ ଥିଲା-ଆଉ ଜଣେ ଚୋରି କରିଥିଲା, କିନ୍ତୁ ସେଠି ବିଚାର କରୁଛି କିଏ? ପୁଣି ଆଉ ଥରେ ରାଇଜଦାଣ୍ଡକୁ ଆସି ସେ ଚାରିଆଡ଼ ଅନ୍ଧାର ଦେଖିଲା। ତାର ଶେଷ ସମ୍ବଳ ହେଲା ଭିକ୍ଷାବୃତ୍ତି।

ଆହା! ସେ କି ଶୁଭ ଦିନ-ଯେଉଁ ଦିନ ସେ ଅଜାଣତରେ ଆସି ଜମିଦାର ଘରେ ଭିଖ ମୁଠିଏ ମାଗିଲା। ଦାସୀ ଚେମୀ ତାକୁ ଭିଖ ଦେବାକୁ ଯାଉଥିଲା, ଦୋତାଲା ଉପରୁ ତାକୁ ଚାହିଁ କି ଜାଣି ଫୁଲମଞ୍ଜରୀ ମନରେ କଣ ହେଲା, ସେ ତଳକୁ ଓହ୍ଲାଇ ଆସିଲେ। ସେହି ଦିନର ସେ ପ୍ରଥମ ପରିଚୟ। ସେହି ଦିନୁ ସେ ଫୁଲମଞ୍ଜରୀ ବାହୁଚ୍ଛାୟାତଳେ। କ୍ରମେ ସେ ତାହାର ସେବାରେ ତୁଷ୍ଟହୋଇ ତାକୁ ଗ୍ରାମ ଘେନିଗଲେ। ବର୍ତ୍ତମାନ ସେ ତାଙ୍କର ଖାସ୍ ଦାସୀ-ତାଙ୍କପାଇଁ ସେ ପ୍ରାଣ ଦେଇପାରେ। ତାଙ୍କର ସେ କେବଳ ଦାସୀ, ତାହା ନୁହେଁ,

(୧) ରେଂଗୁନ୍ (ଅତୀତର ବର୍ମା, ବର୍ତ୍ତମାନ ମିଆଁମାର), (୨) ମରିଯିବା, (୩) ହଇଜା

ମନ୍ତ୍ରଣାଦାୟିନୀ ମଧ୍ୟ। ଜମିଦାର ଘରେ ରହି ସେ ଆଉ ପୂର୍ବର ମୋତି ନୁହେଁ-ସେ ସରଳା ପଲ୍ଲୀବାଳା ନୁହେଁ, ତାର ଅନେକ ପରିବର୍ତ୍ତନ ଘଟିଅଛି। ବର୍ତ୍ତମାନ ସେ ଫୁଲମଞ୍ଜରୀର ଦାସୀ ଓ ସହଚରୀ, ଏହା ଛଡ଼ା ଆହୁରି କିଛି; ସେ କଥା ପରେ।

ଫୁଲମଞ୍ଜରୀ ଚିଠିପଢ଼ା ସରିଲା, ସେ ଉଠି ବାହାରକୁ ଆସିଲା, ଏଣେ ତେଣେ ଚାହିଁ ଧୀର କଣ୍ଠରେ 'ମୋତି' 'ମୋତି' ବୋଲି ଦୁଇ ଥର ଡାକିଲା। ମୋତି ନିକଟରେ ଥିଲା, ଜବାବ ଦେଲା। ଫୁଲ ଆସ୍ତେ ଆସ୍ତେ ତା କାନରେ ଅନେକ କଥା କହିଗଲା। ମୋତି ହୁଁ ମାରି ସେଠୁଁ ବିଜୁଳିବେଗରେ ଚାଲିଲା।

ରାତି ବରଟା ହେଲା, ଜମିଦାର ଘର ଚାରିଆଡ଼ ନିସ୍ତବ୍ଧ, ଦାସଦାସୀ ସୁଦ୍ଧା ଖିଆ ପିଆ ସାରି ଯେ ଯୁଆଡ଼େ ଶୋଇଗଲେଣି। ଠିକ୍ ସେତିକିବେଳେ ଆପଣା କୋଠରିରେ ଉଜାଗର ହୋଇ ବସିଥିଲା ଫୁଲ-ଜଣକ ଅପେକ୍ଷାରେ। କିଛି କ୍ଷଣ ପରେ ଦୁଇ ଜଣ ପୁରୁଷ ତାହାର ପିଣ୍ଡାରେ ଦେଖା ଦେଲେ। ଜଣକୁ ପାଠକେ ଚିହ୍ନନ୍ତି, ସେ ନନ୍ଦରାଜ-ଜମିଦାରଙ୍କ ପାଖଲୋକ; ଆଉ ଆର ଜଣକୁ ନବୀନ ଯୁବକ। ଅନୁମାନରୁ ବୁଝିଥିବେ, ଏହି ସେ ସୁରଞ୍ଜନ ମିତ୍ର, ଘର ଭିତରକୁ ଗଲେ। ଘରର ଦ୍ୱାର ବନ୍ଦହେଲା। ଆଉ ଦାଣ୍ଡରେ ଜଗି ରହିଲେ ନନ୍ଦ ଓ ମୋତି।

ନନ୍ଦ ଓ ମୋତିର ଦୁଇ ବର୍ଷ ଭିତରେ ଦୁଇ ପ୍ରାଣ ଏକ ହୋଇଗଲାଣି। ସେଥିପାଇଁ ଅନ୍ଧାର ବାରଣ୍ଡାରେ ନନ୍ଦକୋଳରେ ଆଉଜି ପଡ଼ି ମୋତି ଅଭିମାନ ପୂର୍ଣ୍ଣ ସ୍ୱରରେ କହିଲା, ''ମୋ ନାନୀ ଯଦି ଯାଆନ୍ତି, ମୁଁ ବି ଯିବି; ତୁ ଯିବୁଟି ?'' ନନ୍ଦ ତାହାକୁ ଆଦର କରି କହିଲା, ''ନ ଯିବି ତ ଏଠି ଆଉ ଲାଭ କଣ। ବାବୁଙ୍କର ତ ମତଗତି ବଦଳିଗଲାଣି। ସେ ଆଗ ପରି ମୋତେ ଆଉ ସୁଖ ପାଉ ନାହାନ୍ତି। ଏହି ଯେଉଁ ନୂଆ ସାଆନ୍ତାଣୀ-ସବୁ ବିଗାଡ଼ିଲେ। ଏ ଥର ବାବୁ ବଇଷ୍ଣମ ହେଲେଣି।'' ମୋତି ବିରକ୍ତ ହୋଇ କହିଲା, ''ମୁଁ ସେ ସବୁ କଥା ପଚାରୁ ନାହିଁ। ତୁ କଲିକତା ଯିବୁ କି ନାହିଁ କହ ? ତୋ ବାହୁଣୀ ଗୋଦାରୀକି ଛାଡ଼ିବୁ କି ନାହିଁ ?'' ନନ୍ଦ ଟିକେ ଚିନ୍ତିତ ହୋଇ କହିଲା, ''ଆଉ ମୋର ଛୁଆଟିନୋଟିକୁ କଣ କରିବ ? ମର୍ଦ୍ଦପୁଅ ନୁହନ୍ତି କିଛି-''

ଏ ଥର କଥାରେ କଥାରେ ତାଙ୍କର ମିଠାକଡ଼ା ମାନ ଅଭିମାନର ଝଗଡ଼ା ଲାଗିଗଲା। ତେଣେ ଘର ଭିତରେ ବସି ସୁରଞ୍ଜନ ଓ ଫୁଲ ପରାମର୍ଶ କରୁଥିଲେ। ଫୁଲର ଇଚ୍ଛା, ସେ ଆଉ ପଦ୍ମପୁରରେ ରହିବ ନାହିଁ-କଲିକତା ଯିବ। ସୁରଞ୍ଜନର ମଧ୍ୟ ସେହି ଇଚ୍ଛା। ସୁରଞ୍ଜନ ଫୁଲକୁ ଅତ୍ୟନ୍ତ ଭଲ ପାଏ ସତ୍ୟ, କିନ୍ତୁ ସେ ତ ବାପ ମାର ଗୋଟଏ ବୋଲି ପୁଅ। ବଡ଼ ଆଶା କରି ତାହାର ଗରିବ ପିତା ତାକୁ ଏମ.ଏ. ପର୍ଯ୍ୟନ୍ତ ପଢ଼ାଇ ସର୍ବସ୍ୱାନ୍ତ ହୋଇଛନ୍ତି। ବୁଢ଼ାକାଳେ ସେ ହଠାତ୍ ଏପରି ବା କେମିତି କରିବେ ? ତାହାର ବାପା ସତରଞ୍ଜନ ବାବୁ ବାଗିଜମିଷ୍ଟୀ ଇଲାକାର କିରାନି, ମଧ୍ୟବିତ୍ତ ଶ୍ରେଣୀର ଲୋକ; ଯେପରି ଭଦ୍ର, ସରଳ, ସେହିପରି ଉଦାରମନା। ତାଙ୍କର ଚାରୋଟି ପିଲା ମରି ଏଖଣ୍ଡିକ ରହିଛି, ତାହାକୁ ଆଦରର ସୀମା ନାହିଁ।

ଦଶ ବର୍ଷ ତଳେ ମାତାର ମୃତ୍ୟୁ ହେଲାରୁ କେବଳ ପୁଅ ମୁହଁକୁ ଚାହିଁ ସେ ଆଉ ବିଭା ହେଲେ ନାହିଁ। ଆପଣାର ସବୁ ପଇସା କଉଡ଼ି ସାରି କଲିକତା ପଠାଇ ତାଙ୍କୁ ଏମ୍. ଏ. ପର୍ଯ୍ୟନ୍ତ ପଢ଼ାଇଲେ।

ତାଙ୍କ ଘର ପଦ୍ମପୁରରେ , ଦିବାକର ବାବୁ ତାଙ୍କର ଜମିଦାର। ସୁରଞ୍ଜନ ଜମିଦାରଙ୍କଠାରୁ ଚାରି ପାଞ୍ଚ ବର୍ଷ ସାନ। ସେ ତାଙ୍କୁ ଭାଇ ପରି ମଣନ୍ତି; ତାଙ୍କ ଘରେ ସୁରର ଅବାରିତ ଦ୍ୱାର। ସୁର ଯେବେ ଗାଁରେ ଥାଏ, ଜମିଦାର ଘରେ ତାର ଅଖଡ଼ା। ପିଲାଦିନୁ ସେ ଫୁଲମଞ୍ଜରୀକୁ ଜାଣେ- ତା ସହିତ କେତେ ଥର ଖେଳିଛି, ବୁଲିଛି; କିନ୍ତୁ ତାଙ୍କୁ ଦଶ ବର୍ଷ ବୟସରୁ ଆଉ ଦେଖି ନଥିଲା। ଠିକ୍ ସେ ବିଧବା ହେବାର ଦୁଇ ବର୍ଷ ପରେ ତାହା ସହିତ ପୁଣି ସାକ୍ଷାତହେଲା।

ଯେତେବେଳେ ଯୂଥିକା ଆସି ଜମିଦାର ଘରେ ଆଶ୍ରୟ ନେଲା, ଆଉ ଫୁଲମଞ୍ଜରୀ ସ୍ୱଭାବ ଚରିତ୍ରରେ ତା ଛାଇ ପଡ଼ିଲା, ସେହି ଦିନୁ ଫୁଲର ଆଖି ଏଣେ ତେଣେ ଧାଇଁଲା, ଆଉ ନବୀନ ଯୁବକ ସୁରଞ୍ଜନଙ୍କ ହୃଦୟରେ ସେ କଟାକ୍ଷ ବିନ୍ଧିଗଲା। ଫୁଲର ରୂପରେ, ଫୁଲର ବୈଧବ୍ୟର କରୁଣ ଦୃଶ୍ୟରେ ସେ ପାଗଳ ହେଲେ। ସେତେବେଳେ ସେ କଲିକତାରେ ପଢୁଥିଲେ। ଏକେ ନବଯୁବକ-ମନ ସର୍ବଦା ଚଞ୍ଚଳ, ସେଥିରେ ପୁଣି ଆଧୁନିକ ସଭ୍ୟତାର ପ୍ରଭାବ। ଦେଶର, ଦଶର ସଂସ୍କାରର ବଡ଼ ବଡ଼ ଚିତ୍ର ସେ ମନରେ, କଳ୍ପନାତୂଳିକାରେ ଆଙ୍କି ବସୁଥିଲେ। ତାଙ୍କର ସମାଜ ସଂସ୍କାରର ବଳବତୀ ବାସନାପୂରଣର ଯାତ୍ରୀ ରୂପେ ସେହି ସମୟରେ ଫୁଲମଞ୍ଜରୀ ତାଙ୍କ ଜୀବନ-ନାଟକରେ ଆସି ପହଞ୍ଚିଗଲା। ଫୁଲ ଏକେ ବିଧବା, ପୁରୀ ଉତ୍କଳ ବ୍ରାହ୍ମଣ ଘରର କନ୍ୟା। ସୁରଞ୍ଜନ ଉତ୍କଳୀୟ କାୟସ୍ଥ[୧], ଶିକ୍ଷିତ, ଅବିବାହିତ ଯୁବକ। ସେ ଭାବିଲେ-ଫୁଲକୁ ବିବାହ କରି ସମାଜରେ ତଥା ଓଡ଼ିଶାରେ ନବ ଆଦର୍ଶ ସ୍ଥାପନ କରିବେ, ସମାଜର ନିର୍ଯ୍ୟାତନ ଲଞ୍ଛନାକୁ ମୁଣ୍ଡ ପତାଇ[୨] ବରଣ କରିନେବେ। ଉତ୍କଳ ଦେଖିବ, ତାର ବକ୍ଷରେ ବୀର ପୁତ୍ରର ଆବିର୍ଭାବ ହୋଇଅଛି। ନବ-ଆଦର୍ଶ ସ୍ଥାପନ ନିଶାରେ ସେ ବୁଡ଼ିଗଲେ, ଆଉ ତାଙ୍କର ପ୍ରଧାନ ସହାୟ ହେଲା ଯୂଥିକା।

ଯୂଥିକା କିଏ ? ଯୂଥିକାର ପୂର୍ବ ପରିଚୟ ପାଠକମାନଙ୍କର ନିଶ୍ଚେ ମନେଥିବ। ବର୍ତ୍ତମାନ ତାହାର ବିଷୟ ଆଉ କିଛି କହିବା। ଯୂଥିକାର ପିତା ମାତା ଅଜ୍ଞାତ। ଅବୈଧ ପ୍ରଣୟର ଫଳସ୍ୱରୂପ ଅବିବାହିତା ମାତାର କନ୍ୟା ଯୂଥିକା କଲିକତାର ଗୋଟିଏ ଅନାଥଶ୍ରମରେ ପାଳିତା ହୋଇଥିଲା। ସେଠି ସେ ଏଣ୍ଟ୍ରାନ୍ସ ପାଶ କରି ବୁଗୁଡ଼ା ଜିଲ୍ଲାର ଗୋଟିଏ ବାଳକ ବିଦ୍ୟାଳୟରେ ଶିକ୍ଷୟିତ୍ରୀ କାର୍ଯ୍ୟ କରୁଥିଲା। ତାହାର ସେତେବେଳେ ନବୀନ ବୟସ[୩]। ବେଶଭୂଷାର ଚାକଚକ୍ୟରେ ଗ୍ରାମଖଣ୍ଡିକରେ ସୁନ୍ଦରୀଦଳର ପ୍ରଜାପତି ପରି ସେ ଏ ଫୁଲରୁ ସେ ଫୁଲକୁ ଉଡ଼ି ବୁଲୁଥିଲା। କୁକ୍ଷଣରେ ଜମିଦାର ପୁତ୍ର ଅବଦୁଲ ଲତିଫ୍ ସହିତ ତାହାର ପ୍ରଣୟ ହେଲା- ତାହାର କପାଳ ଫାଟିଲା। ତାର ପୂର୍ବ ପ୍ରଣୟୀ ସ୍କୁଲମାଷ୍ଟର ନରେନ୍ ବାବୁ ତାଙ୍କୁ ଲୋକ

---

(୧) କରଣ, (୨) ଦେଖାଇ, (୩) ପୁରଣ।

ସାକ୍ଷାତରେ ଅପଦସ୍ଥ କଲେ। ଚାକିରିରୁ ସେ ଡିସ୍‌ମିସ୍ ହୋଇ କଲିକତା ପଳାଇ ଗଲା। ସେଠି ଡାକ୍ତରଖାନାରେ ତାର ଅତି ସୁନ୍ଦର ପୁଅଟିଏ ହେଲା। ସେ ପୁଅକୁ ଘେନି ଜଗତରେ କିପରି ମୁହଁ ଦେଖାନ୍ତା? ତେଣୁ ଗୋପନରେ ପିଲାଟିର ତଣ୍ଟିଚିପି ବୋଝରୁ ରକ୍ଷାପାଇଲା।

ତାହାର ପରେ ଜ୍ୟୋତିଷ ବାବୁଙ୍କ କୃପାନେତ୍ରରେ ସେ ଅନୁଗୃହୀତା ହୋଇ ଘର ଭଡ଼ା ନେଇ ହାଡ଼କଟା ଲେନ୍‌ରେ କିଛି ଦିନ ରହିଲା। ଜ୍ୟୋତିଷ ବାବୁ ଜଣେ ନାମଜାଦା ଡାକ୍ତର। ତାଙ୍କ ଔଷଧ ରୋଗୀ ପକ୍ଷରେ ଅମୃତ ତୁଲ୍ୟ, ରୋଗୀମାନେ ତାଙ୍କୁ ଦେବତା ଜ୍ଞାନ କରୁଥିଲେ। ସେ ବିଲାତଫେରନ୍ତା ଏଫ୍.ଆର୍.ସି.ଏସ୍। ତାଙ୍କର ବୃହତ୍ ଡିସ୍‌ପେନ୍‌ସାରି ବାଗ ବଜାରର ଶୋଭା ବୃଦ୍ଧିକରୁଥିଲା। ସେଠି ଦିନରାତି ଲୋକ ଭିଡ଼, ତାଙ୍କୁ ଖାଇବାକୁ ବସିବାକୁ ସମୟ ନଥିଲା। ଚାରି ଛ ଗଣ୍ଡା କମ୍ପାଉଣ୍ଡର, ଦଶ ପନ୍ଦର ଗଣ୍ଡା ନର୍ସ ତାଙ୍କ ଡାକ୍ତରଖାନର ଅଳଙ୍କାର ଥିଲେ।

ତାଙ୍କର 'ମିଜାଜ' ଠିକ୍ ସାହେବୀ ଧରଣର। ଜାତିରେ ବଙ୍ଗାଳୀ ବ୍ରାହ୍ମଣ ହେଲେ ମଧ ଦୈନିକ ବିଲାତିଟିଣର ଗୋମାଂସ, ଘୁଷୁରିମାଂସ ଏବଂ ମଦ ନ ହେଲେ ତାଙ୍କ ଆହାରରେ ତୃପ୍ତି ହେଉ ନଥିଲା। ସେ ବିବାହ କରି ନ ଥିଲେ। ବିଲାତରେ ଥିଲାବେଳେ ଗୋଟିଏ ମେମ୍ ସହିତ ତାଙ୍କର ବିବାହର ଚୁକ୍ତି ହୋଇଥିଲା। ବିବାହ ପୂର୍ବରୁ ସେ ମେମ୍‌ର ଯୋଡ଼ିଏ ସନ୍ତାନ ହୋଇଥିଲେ। ଦେଶକୁ ଆସ ଜ୍ୟୋତିଷ ବାବୁ ମିସ୍ ହିଲା ପାର୍କରଙ୍କୁ ଏକାବେଳେ ଭୁଲିଗଲେ। କିନ୍ତୁ ସେ ନାଲିସ୍ କରି ତାଙ୍କଠାରୁ ଖୋରାକ୍ ପୋଷାକ ଆଦାୟ କରିନେଇଥିଲେ। ଏହି ଗୋଟିଏ ବିବାହ ବିପର୍ଯ୍ୟୟରେ ସେ ଏତେ ଦୂର ଦୁଃଖିତ ହୋଇଥିଲେ ଯେ, ଆଉ ସଂସାର-ଜ୍ୱାଳା ତାଙ୍କୁ ଭଲ ଲାଗିଲା ନାହିଁ। ହେଲେ ଦେଶୀ, ବିଦେଶୀ ଶତ ଶତ ବିଳସିନୀ ତାଙ୍କ ଜୀବନରେ ସହଚରୀ ଥିଲେ। ଯୂଥିକା ମଧ ସେହି ଦଳର ଗୋଟିଏ ସଂଖ୍ୟା ବୃଦ୍ଧିକଲା ମାତ୍ର।

ଜ୍ୟୋତିଷ ବାବୁ ଦିବାକର ବାବୁଙ୍କ ପାର୍ଶ୍ୱେନେଲ ଫ୍ରେଣ୍ଡ-ଅନ୍ତରଙ୍ଗ ବନ୍ଧୁ। ଦିବାକର କଲିକତାରେ ଥିବାବେଳେ ସେ ତାଙ୍କର ପାରିବାରିକ ଚିକିତ୍ସକ, ଥିଏଟର, ଓ ବ୍ୟଭିଚାର ପ୍ରଭୃତିରେ ପ୍ରଧାନ ସହଚର ଥିଲେ। ତାଙ୍କରି ପ୍ରସାଦରୁ ଅଙ୍ଗୁରବାଲା ଓ ଶେଷରେ ଯୂଥିକା ସହିତ ମିଷ୍ଟର ମିଶ୍ରଙ୍କର ଶୁଭ ପରିଚୟ ଘଟିଥିଲା।

ଯୂଥିକା ଜ୍ୟୋତିଷ ବାବୁଙ୍କ ନିକଟରେ ଦୁଇ ବର୍ଷ ରହି ଡାକ୍ତରୀ ବହି ଅନେକ ପଢ଼ିଥିଲା ଏବଂ ନିଜକୁ ପାଶକଲା ନର୍ସ ବୋଲି ପରିଚୟ ଦେଇଥିଲା। ଦିବାକରଙ୍କ ଭବନକୁ ଆସିଲା ପରେ ସେ ଫୁଲ ଓ ସୁରଞ୍ଜନଙ୍କର ପରମ ବନ୍ଧୁ ହୋଇଗଲା।

ଯୂଥିକା ପୂର୍ବ ଜୀବନ କଥା ସୁରଞ୍ଜନ ଓ ଫୁଲ ଘୁଣାକ୍ଷରେ ଜାଣି ନ ଥିଲେ। ସେମାନେ ଜାଣିଥିଲେ, ଯୂଥିକା ଉତ୍ତମ କାୟସ୍ଥକୁଳର କନ୍ୟା। ତା ପରି ସରଳ, ମିଷ୍ଟଭାଷିଣୀ, ମଧୁରପ୍ରକୃତିର ସ୍ତ୍ରୀ ଲୋକ ସହିତ କାହାର ବା ବନ୍ଧୁତ୍ୱ ନ ହେବ? ଯୂଥିକା ସର୍ବଦା ବଡ଼ ବଡ଼ ସ୍ୱପ୍ନ ଦେଖେ-ବଡ଼ ବଡ଼ କଥା କହେ। ଦୈନିକ ଖବରକାଗଜ ପଢ଼ିବା ତାର ଅଭ୍ୟାସ,

ଦେଶର ବର୍ତ୍ତମାନ ଦୁର୍ଦ୍ଦଶା କଥା ଭାବି ତା ଆଖିରେ ପାଣି ଜମିଯାଏ। ତାହାର ଖଣ୍ଡ ବକ୍ତୃତା ଶୁଣି ଶୁଣି ସୁରଞ୍ଜନ ଓ ଫୁଲମଞ୍ଜରୀ ତାଙ୍କୁ ଦେବୀଜ୍ଞାନରେ ପୂଜା କରୁଥିଲେ।

କ୍ରମେ ସୁରଞ୍ଜନ ଓ ଫୁଲର ପ୍ରଣୟ ଗାଢ଼ତର ହେଲା। ଫୁଲ ବିବାହ ଉପାୟ ଖୋଜି ବସିଲା। ସୁରଞ୍ଜନଙ୍କୁ ବିବାହ କରିବାଲାଗି ସେ ସର୍ବସ୍ୱ ତ୍ୟାଗକରିବାର ପଣକଲା, କିନ୍ତୁ ସେହି ସମୟରେ ସୁରଞ୍ଜନ ଧୀରେ ଧୀରେ ପଛଘୁଞ୍ଚା ଦେଲେ।

ଏହି ସମୟରେ ପାଠକେ ତାଙ୍କୁ ଦେଖୁଛନ୍ତି ଫୁଲମଞ୍ଜରୀଙ୍କ କାମରାରେ। କୋଠରୀଟି ବେଶି ବଡ଼ ନୁହେଁ, କିନ୍ତୁ ବେଶ ପରିପାଟିରେ ସଜ୍ଜିତ। ସେହି ବିଳାସକକ୍ଷରେ ଫୁଲମଞ୍ଜରୀ ଅଭିମାନାଶ୍ରୁରେ ପୂର୍ଣ୍ଣ। ଫୁଲର ଏକାକ୍ଷିଦ୍-ଯଦି ସୁର ତାଙ୍କୁ ବିଭା ନ ହୁଏ, ସେ ବିଷ ଖାଇ ମରିବ। ହାତରେ ତାହାର ଅଫିମ ଡ଼ିବା। ସୁର ବ୍ୟସ୍ତ ହୋଇପଡ଼ିଲେ, କିନ୍ତୁ କିଛି କହି ପାରିଲେ ନାହିଁ। ଫୁଲ ତାଙ୍କୁ ଶପଥ କରାଇନେଲା। ଏଥର କଲିକତା ଗଲେ ନିଶ୍ଚୟ ସେ ତାଙ୍କୁ ବିବାହକରିବେ।

ଦରମଲା ପରି ସୁର ଯେତେବେଳେ ଘରକୁ ଫେରିଲେ, ସେତେବେଳେ ରାତି ତିନିଟା, କିନ୍ତୁ ବିଛଣାରେ ପଡ଼ି ସୁଦ୍ଧା ଆଉ ତାଙ୍କୁ ନିଦ ହେଲା ନାହିଁ-କେବଳ ଥାଇ ଥାଇ ଫୁଲର ପ୍ରତିଜ୍ଞା ମନେପଡ଼ିଲା। ଫୁଲକୁ ସେ ବିବାହ କରିବେ କି? ନିଜର ଜାତି, କୁଳ, ମାନ, ସମ୍ଭ୍ରମ, ଡେପୁଟି ଚାକିରିର ଆଶା ତ୍ୟାଗକରି ସେ ଫୁଲକୁ ବିବାହକରିବେ କି? ଫୁଲ ଯେ ଏ ଥର ଆଉ ନ ଛାଡ଼େ। ଯଦି ଫୁଲକୁ ବିବାହ ନ କରିନ୍ତି, ତେବେ ସେ ବିଷ ଖାଇ ମରିବ-ଏହା କଣ ସୁରଞ୍ଜନ ସହିପାରିବେ? ଫୁଲ ଯେ ତାଙ୍କର ପ୍ରାଣାଧିକ ପ୍ରିୟ, ଜୀବନର ସଙ୍ଗିନୀ। ଫୁଲ ମରିବ-ଫୁଲ ତାଙ୍କଲାଗି ମରିବ! ଆଉ ସୁରଞ୍ଜନ ଡେପୁଟି ଚାକିରି ଆଶାରେ ସ୍ୱହସ୍ତରେ ତାହାର ଚିତା ପ୍ରସ୍ତୁତକରିବେ! ଫୁଲର ଦୋଷ କଣ? ସେ ତ ସରଳ, ପ୍ରେମମୟୀ-ସେ ତ ତାଙ୍କ ବିନା ଆଉ କିଛି ଜାଣେ ନାହିଁ। ଏପରି ଏକାନ୍ତ ଅନୁରାଗିଣୀକୁ ସେ ବିନାଦୋଷରେ କେବଳ ସମାଜଭୟରେ ତ୍ୟାଗକରିବେ? ମନ କହିଲା-କାହିଁକି ତ୍ୟାଗ କରିବ? କଲିକତା ଯାଇ ଧର୍ମ ତ୍ୟାଗକରି ବିଭା ହୋଇପଡ଼ିଲେ କଥା ସରିଲା, ସମାଜ ତେଣିକି କଣ କରିବ? କିନ୍ତୁ ବିବେକ ପଚାରିଲା- ବାପା ବେକରେ ଏପରି ଛୁରିଦେବୁ? ଏଇଥିପାଇଁ ସେ ତୋତେ ରକ୍ତ ପାଣିକରି, ରୋଜଗାର କରି ପଢ଼େଇ ଥିଲେ? ଆଉ ଏ ଦେଶରେ ତୋ ବାପ ମୁହଁ ଦେଖାଇ ପାରିବେଟି! ବୁଢ଼ାକାଳେ ତାଙ୍କ କପାଳରେ କଣ ଏଇଆ ଥିଲା? ପୁଣି ମନ କହଲା-ଆହା! ଫୁଲ ବିଚାରୀଟି କଣ କରିଛି ଯେ, ସେ ତାଙ୍କୁ ଭସେଇବ। ତାଙ୍କୁ ଗୋପନରେ ବିଭାହୋଇ କଲିକତାରେ ରଖିଲେ କଣ ହେବ ନାହିଁ? ବାପ କେମିତି ଜାଣିବେ? କିନ୍ତୁ ବାପ ଯଦି ତାଙ୍କୁ ବିଭା କରାଇବାକୁ ବସନ୍ତି, ସେତେବେଳେ-? ଓଃ, ସେତେବେଳେ କଥା ଦେଖାଯିବ। ଆଉ ଫୁଲ କଣ ମରିବ, ଏପରି ପ୍ରେମମୟୀ ସାଧ୍ୱୀ ସରଳାକୁ କଣ ସେ ଅକାଳରେ ମରିବାକୁ ଦେବେ?

ପ୍ରେମରେ ଅନ୍ଧ ଯୁବକ ବହୁକ୍ଷଣ ଚିନ୍ତାକଲେ, କିନ୍ତୁ କିଛି ଠିକ୍ କରିପାରିଲେ ନାହିଁ। ଫୁଲକୁ ଯେପରି ହେଉ ସେ ବିଭାହେବେ, ଏହି କଥା ମୂଳକରି ଅନେକ କ୍ଷଣ ବିଛଣାରେ ଏ କଡ଼ ସେ କଡ଼ ହେଉ ହେଉ ରାତି ପାହିଗଲା।

ସେ ଦିନ ଦଶଟା ବେଳକୁ ହଠାତ୍ କଟକରୁ ତାର ଆସିଲା-ତାଙ୍କର ପିତା ଶକ୍ତ ବେମାର, ଡବ୍‌ଲ ନେମୋନିୟା, ଡାକ୍ତରଖାନାରେ ପଡ଼ିଛନ୍ତି। ସେ ନିଜର ବିବାହସମସ୍ୟା ଭୁଲି ସେହି ଦିନ କଟକ ବାହାରିଗଲେ। ଯେତେବେଳେ ମୋତି ମୁହଁକୁ ଫୁଲ ଏ ଖବର ପାଇଲା, ସେ କାଠପିତୁଳା¹ ପରି କାନ୍ଥକୁ ଆଉଜି ଠିଆହେଲା। ଏତେ ବାଟକୁ ଆସି ଶେଷକୁ ଏହା ହେଲା ? ଭଗବାନ୍ କଣ ତାଙ୍କ ସୁଖ ଚାହାନ୍ତି ନାହିଁ ? ଭଗବାନଙ୍କ ଉପରେ ବ୍ୟର୍ଥ କ୍ରୋଧତକ ଅଛାଡ଼ି, କାନ୍ଦି କାନ୍ଦି ତାହାର ଆଖି ଫୁଲିଗଲା, କିନ୍ତୁ ଭଗବାନଙ୍କର ସିଂହାସନ ଟଳିଲା² କି ନାହିଁ, ସନ୍ଦେହ।



## ଚତୁର୍ବିଂଶ ଅଧ୍ୟାୟ

ରଘୁନାଥ ପ୍ରତିଜ୍ଞା କଲା, ସେ ମାୟା ସହିତ ମିଶିବ ନାହିଁ। ସେ ଏପରି ବ୍ୟବହାର କରିବ ଯେ, ମାୟା ଆପେ ତାକୁ ଲଜ୍ଜାରେ ଛାଡ଼ିଯିବ। ସେଥିପାଇଁ ସେ ଅତିଶୟ ଗମ୍ଭୀର ହେଲା, ତାହାର ପଢ଼ା ବହିତକ ଭାରି ପ୍ରାୟ ହୋଇପଡ଼ିଲେ। ଏ ଥର ସେ ଗ୍ରନ୍ଥକୀଟ ପାଲଟି ଗଲା, ସମସ୍ତ ଦିନ ପ୍ରାୟ ବାହାରେ ବାହାରେ କଟାଇଲା।

ରଘୁନାଥର ଏ କରଛଡ଼ା ଭାବ ମାୟାକୁ ବଡ଼ ବାଧିଲା। ମାୟା ସେ ଦିନର ଘଟଣାରୁ ଅନୁମାନ କରିଥିଲା, ରଘୁନାଥ ଏ ଥର ଟିକେ ଭିନ୍ନ ବ୍ୟବହାର କରିବ; କିନ୍ତୁ ସେ ଆହୁରି ନିଷ୍ଠୁର ହେଲା। ନିରୂପାୟ ମାୟା ମନେ ମନେ କାନ୍ଦିଲା, ଅଭିମାନ କଲା, ମାତ୍ର ତା ବାହାରେ ପ୍ରକାଶ ପାଇଲା ନାହିଁ। ଏ ଥର ସେ ଭଲ ଭଲ କାମର ଭାରନେଲା। ସାହିତ୍ୟ, ଦେଶସେବା ଓ ନାରୀ-ସମ୍ମିଳନୀ-ଏ ସବୁ ତାର ମୁଖ୍ୟ ବିଷୟ ହେଲା। 'ଦେଶର କଥା' ଓ 'ରେନାସେନ୍ସ' ତାର ଲେଖାରେ ପୂର୍ଣ୍ଣ ହୋଇଉଠିଲା। ସେ ନିତି ନୂତନ ଗୀତ ରଚନା କରି ସ୍ୱର ସଂଯୋଗ ପୂର୍ବକ ଘର ପିଲାମାନଙ୍କୁ ଶିଖାଇଲା। ବାଗ୍‌ବଜାରରେ ଛୋଟ ଘରଟିଏ ଭଡ଼ା ନେଇ ସେଠି ମହିଳା-ସମ୍ମିଳନୀର ଅଫିସ ଖୋଲିଲା। ବଙ୍ଗୀୟ ମହିଳାମାନଙ୍କର ଉନ୍ନତି ନିମନ୍ତେ ସେ ପ୍ରାଣ ଢାଳି ଦେବାକୁ ସ୍ଥିର ସଂକଳ୍ପକଲା। ଅନ୍ୟ କଥା ଚିନ୍ତା କିରବାକୁ ତାକୁ ଆଉ ତର କାହିଁ ?

ରଘୁନାଥ ସବୁଦେଖିଲା, ଦିନେ ଭଲ କି ମନ୍ଦ କୌଣସି ମନ୍ତବ୍ୟ ପ୍ରକାଶକଲା ନାହିଁ। ଅବିନାଶ, ସୁରେନ ଓ ଗିରିଶ ବାବୁ ସମସ୍ତେ ମାୟାର ଅଜସ୍ର ପ୍ରଶଂସାକଲେ। ତାହାର ପାଣିଗ୍ରହଣ ଲାଗି ତାଙ୍କ ମଧ୍ୟରେ ପ୍ରତିଯୋଗିତା ହେଲା। ହେଲେ, ରଘୁନାଥ ସବୁଥିରେ ନୀରବ। ମାୟା ହତାଶ ହୋଇ ଭାବିଲା, ରଘୁନାଥ ଅନ୍ଧ ନା ହୃଦୟହୀନ ? ଶେଷକୁ ସ୍ଥିର କଲା-ସେ

(୧) କାଠକଣ୍ଢେଇ, (୨) ଦୋହଲିବା, ହଲିବା

ଓଡ଼ିଆଟା, ତାହାର କଣ ମନୁଷ୍ୟର ମୂଲ ବୁଝିବାର କ୍ଷମତା ଅଛି ? ଏ ଥର ସେ ଅଭିମାନରେ ରଘୁନାଥକୁ ଅଖାତିର କରିବାକୁ ଚେଷ୍ଟାକଲା । ରଘୁନାଥ ତା ମଧ ଶୁଣିଲା, କିନ୍ତୁ ଦିନେ ସୁଦ୍ଧା ପ୍ରତିବାଦ କଲା ନାହିଁ । ମାୟା ମନେ ମନେ ହାରିଯାଇ ଆପଣା ଜ୍ୱାଳାରେ ଜଳି ପୋଡ଼ିଗଲା ।

ରଘୁନାଥ ସେ ବର୍ଷ ଏମ୍.ଏ. ପାଶ କଲା । କେବଳ ବାବୁ ତାଙ୍କୁ ଏକାନ୍ତରେ ଡାକି କହିଲେ, ''ପୁଅ, ତୁମେ ଏମ୍.ଏ ପାଶ କଲେ ତୁମକୁ ବଡ଼ ଚାକିରି ଦେବି କହିଥିଲି । ହେଇ ନିଅ, ଏ ବଡ଼ ଚାକିରି ।''-ଏହା କହି କାଗଜ ଖଣ୍ଡିଏ ତା ଆଡ଼କୁ ବଢ଼ାଇଦେଲେ । ରଘୁନାଥ ତାହା ଫିଟାଇ ଦେଖିଲା, ଆଖି ବୁଲାଇ ତା ହାତ ଥରି ଉଠିଲା । ସେ ବିଛା ମାଇଲା ପରି କାଗଜଟା ମେଜ ଉପରେ ରଖିଦେଇ କେବଳବାବୁଙ୍କ ଗୋଡ଼ତଳେ ପଡ଼ିଗଲା ଏବଂ କରୁଣ ସ୍ୱରରେ କହିଲା, ''ବାବା, ରକ୍ଷା କରନ୍ତୁ, ମୋ ପରି ଅଧମ ପୁତ୍ରକୁ ଏ ଦାନ ଦିଅନ୍ତୁ ନାହିଁ-ମୁଁ ଏ ଦାନର ସଂପୂର୍ଣ୍ଣ ଅଯୋଗ୍ୟ । କେବଳ ଖଣ୍ଡେ ଚାକିରି ଆଜ୍ଞା ହେଉ, ମୁଁ ଚିରଦିନ କୃତଜ୍ଞ ରହି ଆପଣଙ୍କ କାର୍ଯ୍ୟକରିବି ।'' କେବଳକୃଷ୍ଣ ବାବୁ ସ୍ନେହକର ପ୍ରସାରଣ କରି ରଘୁନାଥକୁ ଗୋଡ଼ତଳୁ ଉଠାଇଲେ, ପାଖକୁ ଆଉଜାଇନେଇ କହିଲେ, ''ବାପ, ଏ ମହତ୍ ହୃଦୟର ପରିଚୟ ତୁମର ପ୍ରଥମ ଦର୍ଶନ ମୁହୂର୍ତ୍ତରୁ ପାଇଛି । ମୁଁ ତ ସାମାନ୍ୟ ପଦାର୍ଥ ଦାନ କରୁଛି । ତୁମେ ନେଲେ ମୁଁ ଅତ୍ୟନ୍ତ ସୁଖୀ ହେବି । ପ୍ରତ୍ୟେକ ପିଲାଙ୍କ ପାଇଁ ମୁଁ ଭିନ୍ନ ଭିନ୍ନ ସଂପତ୍ତି କରିଛି, ତୁମେ ବି ମୋର ଗୋଟିଏ ପିଲା । ମୋଠୁଁ ନେବାରେ ତୁମର ଯଥେଷ୍ଟ ଅଧିକାର ଅଛି ।'' ରଘୁନାଥ ବିସ୍ମୟବିମୂଢ଼ ନୟନରେ ବହୁତ ବେଳଯାଏ କେବଳବାବୁଙ୍କର ପ୍ରଶାନ୍ତ ମୁଖମଣ୍ଡଳକୁ ଚାହିଁ ରହିଲା । ଦୁଇ ଲକ୍ଷ ଟଙ୍କାର ବିଷୟ ସଂପତ୍ତି ସେ କିପାଁ ଗୋଟିଏ ଗରିବ ଅନାଥ ବାଳକକୁ ବିନା ସର୍ତ୍ତରେ ଦେବାକୁ ବସିଛନ୍ତି, ଏ କଥା ରଘୁନାଥ ହୃଦୟଙ୍ଗମ କରିପାରିଲା ନାହିଁ । ସେ ଜାଣେ, କେବଳବାବୁ ମହାଜନ-ଲକ୍ଷ ଲକ୍ଷ ଟଙ୍କା ତାଙ୍କର ଆୟ, କିନ୍ତୁ ଧନ ଯାହାର, ଲୋଭ ତାହାର । ଏହି ନିର୍ଲୋଭ ପୁରୁଷ ତ ସେ କେଉଁଠି ଦେଖି ନାହିଁ । ଶେଷକୁ ସେ ବିନୟ ହୋଇ କହିଲା, ''ବାବା, ମୋତେ କେବଳ ସେହି ସଂପତ୍ତିର 'ମେନେଜରି' ଦିଅନ୍ତୁ, ଅଧିକ ଆଉ କିଛି ଗ୍ରହଣ କରିପାରିବି ନାହିଁ ।'' ଏହା କହି ନୀରବ ହେଲା କେବଳବାବୁ କହିଲେ, '' ହଉ'' ।

ଆହାରର ବେଳ ହୋଇଥିଲା । ସେ ଉଠି ସ୍ନାନ କରିବାକୁ ଗଲେ । ସ୍ତ୍ରୀ ସୁଧାମୟୀ ତାଙ୍କୁ ପଚାରିଲେ, ''ରଘୁନାଥ କଣ କହିଲା ?'' ସେ ସ୍ତ୍ରୀଙ୍କୁ ଅନାଇଁ କହିଲେ, ''ଅସୀମା, କଣ ଆଉ କହିବି, ମୂର୍ଖ ଟୋକାଟା କଥା । ବିଷୟ ସମ୍ପତି ଏକାବେଳକେ ନେବାକୁ ଅରାଜି । ଭଗବାନ ତାକୁ ଗୋଟାଟା ଧର୍ମ୍ମ ରୂପେ ଗଢ଼ିଛନ୍ତି । ସାତ ଜନ୍ମ ତପସ୍ୟା କଲେ ଏପରି ପୁତ୍ରରତ୍ନ କିଏ ପାଇବ କିନା, ସନ୍ଦେହ-ହୀରାଖଣ୍ଡିଏ ।'' ସୁଧାମୟୀ ବିସ୍ମିତ ହେଲେ । ମନେ ମନେ ରଘୁନାଥର ମଙ୍ଗଳ କାମନାକରି କହିଲେ, ''ତେବେ କରିବ କଣ ?''

''ତାକୁ ଆପାତତଃ ମେନେଜର କରି ପଠାଇବି, ଭବିଷ୍ୟତ ଈଶ୍ୱର ହାତରେ ।''

ଏଥିରେ କିଛି ଦିନ ପରେ ସେ ରଘୁନାଥକୁ ତାଙ୍କର ବର୍ମା କେମିକାଲ ଓ ସାଗୁଆନ କାଠ କୋମ୍ପାନି'ର ମେନେଜର କରି ରେଙ୍ଗୁନ ପଠାଇଦେଲା ।

ଏହା ପରେ ସେ ଝିଅ ଦିଓଟିର ବ୍ୟବସ୍ଥା କରି ବସିଲେ। ଛାୟା ବି.ଏ.ପାଶ କଲା। ତାର ବିଲାତ ଯବାର ପ୍ରବଳ ଇଚ୍ଛା ଦେଖି, ମହାସମାରୋହରେ ଅବିନାଶ ସରକାର ସହିତ ତାକୁ ବିବାହ ଦେଇ ତା ସହିତ ପଠାଇ ଦେଲେ। ଅବିନାଶ ଗଲା ବାରିଷ୍ଟରି ପଢ଼ିବାକୁ, ଘରେ ରହିଲା ଏକା ମାୟା।

ରେଙ୍ଗୁନରେ ଥାଇ ରଘୁନାଥ ଯେତେବେଳେ ଅବିନାଶ ଓ ଛାୟାର ବିବାହ ଖବର ପାଇଲା, ସେ ଥକା ହୋଇ ବସିଗଲା। ହାୟ, ହାୟ, ସେ ଅକାରଣରେ ମାୟାକୁ ଅବିନାଶର ପ୍ରଣୟିନୀ ଭାବି କେତେ ଅନାଦର କରିଛି ଏବଂ ଅବିନାଶକୁ ଘୃଣା କରିଛି। ଏହା କଣ ତାର ଉଚିତ୍ ହୋଇଛି ? ଦୀର୍ଘ ଚାରି ବର୍ଷ ଯେଉଁ ପରିବାର ତାକୁ ନିତାନ୍ତ ଆପଣାର କରିନେଇଛନ୍ତି, ତାଙ୍କୁ ଏପରି ହୀନଚକ୍ଷୁରେ ଦେଖିବା କି ଲଜ୍ଜାର ବିଷୟ ! ରଘୁନାଥ ମାୟା ବିଷୟ ବହୁତ ଚିନ୍ତାକଲା। ତା ପ୍ରତି ସେ ଯେ ଅକାରଣ ଅନ୍ୟାୟ କରିଛି, ଏ କଥା ଭାବି ତା ମନରେ ଅତ୍ୟନ୍ତ କଷ୍ଟ ହେଲା। କିନ୍ତୁ ବର୍ତ୍ତମାନ ସେ ପ୍ରତିକାରହୀନ-କେବଳ ଅନୁଶୋଚନା ଛଡ଼ା ଆଉ କିଛି ନାହିଁ।

ସେ କାମରେ ମନୋଯୋଗ ଦେଲା। ପୂର୍ବେ କେବଳକୃଷ୍ଣ ବାବୁ ଯାହା ଆୟ କରୁଥିଲେ, ଏ ଥର ତାର ତିନି ଗୁଣ ପାଇଲେ। ଚାରି ମାସ ମଧ୍ୟରେ ସେ କୋମ୍ପାନୀକୁ ସଂପୂର୍ଣ୍ଣ ସଜାଡ଼ିଦେଲା। ସେ ସର୍ବଦା ଅଫିସରେ ଥାଏ-ସେଇଠି ଖାଏ, ସେଇଠି ଶୁଏ, କର୍ମଚାରିଙ୍କର କାମ ତନ୍ନ ତନ୍ନ କରି ଦେଖେ। ଆଉ ସବୁବେଳେ ଭାବେ ନିଜର ଭବିଷ୍ୟତ। କ୍ରମେ କ୍ରମେ ସୀତାର ଚିନ୍ତା ଛାଡ଼ିଆସୁଥିଲା। ଆଜିକାଲି ସେ ବେଶି ଭାବେ ମାୟା କଥା। ମାୟା ପ୍ରକୃତରେ ତାକୁ ଭଲପାଏ। ଯଦି ସେ ତାକୁ ଭଲପାଉ ନ ଥାନ୍ତା, ସେ କଣ ବିଲାତ ଯାଇ ନ ଥାନ୍ତା ? ସେ ସେହିଯୋଗୁଁ ଚାକିରି ଘେନି ପଳାଇଲା, ଅବିନାଶକୁ କଣ ସେ ବିବାହ ହୋଇ ପାରିନଥାନ୍ତା ? ବାସ୍ତବିକ୍, ମାୟା ପରି ଗୁଣବତୀ ଯୁବତୀ କେତେଟା ମିଳନ୍ତି ? ପୁଣି ଭାବିଲା-ହାୟ ହାୟ, ବିଦେଶରେ ଆସି ଶେଷକୁ ବିଜାତୀୟା ବିଧର୍ମୀ ସ୍ତ୍ରୀ ବିଭାହେବା କପାଳରେ ଥିଲା। ତେବେ ସେ ଆପଣା ଦେଶରେ ବିଭା ହୋଇଥିଲେ ତ ଖୁଡ଼ୀ ଆଉ ତାରାମଣିଙ୍କ ଗୋଡ଼ତଳକୁ ଗୋଟିଏ ବୋହୂ ଆସିଥାନ୍ତା ! ଜଗନ୍ନାଥ କବିରାଜ ତା ପଛରେ ଏତେ ଲାଗିଲେ, ସବୁ ଅକାରଣ ହେଲା ସିନା-ଏହା ଭାବି ସେ ଅନୁତାପ କଲା। ସେ ମାସରୁ ଆପଣା ଦରମାରୁ ଅଧିକାଂଶ ଖୁଡ଼ୀ ଓ ତାରାମଣିଙ୍କ ନିକଟକୁ ପଠାଇଲା। କିନ୍ତୁ ମନ ତ ବୁଝିଲା ନାହିଁ। ପୀତେଇ ନାନୀ ଯେ ତାକୁ ଏତେ ଭଲ ପାଏ, ତାହା ପାଖକୁ ମଧ୍ୟ କିଛି ଟଙ୍କା ପଠାଇଲା। ସରସ୍ୱତୀଙ୍କୁ ଦେବ କଣ ? ବର୍ମାରେ କେଉଁ ଦ୍ରବ୍ୟ ଅପ୍ରାପ୍ୟ ? ରଘୁନାଥ ଅନେକ ଥର ନାନାପ୍ରକାର ପଦାର୍ଥମାନ ସମସ୍ତଙ୍କ କତିକି ପଠାଏ। ସମସ୍ତେ ତା ଉପରେ ଆଶୀର୍ବାଦ ଅଜାଡ଼ି, ତାକୁ ଦେଶକୁ ଫେରି ଆସିବାକୁ ଲେଖିଲେ, କିନ୍ତୁ ସେ ସେଥିରେ ସମ୍ମତ ହେଲା ନାହିଁ।

ଏହିପରି ସୀତାର ସ୍ମୃତି ସେ ଜୀବିତ ରଖିବାକୁ ଚେଷ୍ଟାକରେ। ମାୟା କଥା ମନେ କରି ଭାଳିବସେ ଯେ, ସେ ତାର କଣ କରିବ ? କିଛି ସ୍ଥିର କରିପାରେ ନାହିଁ, ତାକୁ ଚାରିଆଡ଼

ଅନ୍ଧାର ଦିଶେ। ମାୟାଙ୍କୁ ବିବାହ ! ଥରେ ଥରେ ବିବାହର ପ୍ରବଳ ବାସନା ହୁଏ। ସେ ବର୍ତ୍ତମାନ ୨୬/୨୭ ବର୍ଷର ଯୁବକ। ସେ ଯେ ବିବାହ କରି ସଂସାରୀ ହୋଇ ସୁଖୀହେବ, ଏଥିପାଇଁ ତା ମନ ବିଚଳିତ ହୋଇ ଉଠେ; ପୁଣି ପରକ୍ଷଣରେ ମନେ ପଡ଼େ ସୀତା ! ସୀତା କଥା ଭାବିଲାକ୍ଷଣି ବିବାହ ବାସନା କମିଯାଏ। ମାତ୍ର ଉଦ୍ଦାମ ଯୌବନରେ ଜଣକର ବାଲ୍ୟସ୍ମୃତି ସୁଅ ମୁହଁରେ ବାଲିବନ୍ଧ ପରି ବେଳେ ବେଳେ ଭାସିଯିବାର ଆଶଙ୍କା ହୁଏ-ତାର ପ୍ରାଣ ଦାମ୍ପତ୍ୟଜୀବନପାଇଁ ଝୁରିମରେ।

ଏ ସମୟରେ କେବଳ ବାବୁ ତାଙ୍କ ସ୍ତ୍ରୀ, ମାୟା ଓ ପୁତୁରା ଅଚିନ୍ତ୍ ଅଶୋକଙ୍କୁ ଘେନି ରେଙ୍ଗୁନ ବୁଲି ଆସିଲେ। ସେ କୋମ୍ପାନୀର କାର୍ଯ୍ୟ ଦେଖି ଭାରି ଖୁସିହେଲେ ଏବଂ କମ୍ପାନୀଠାରୁ ଅଳ୍ପ ଦୂରରେ ଗୋଟିଏ ବୃହତ୍ତ ବାସଭବନ ନିର୍ମାଣ କରିବାକୁ ଆୟୋଜନ କଲେ। ଉଦ୍ଦେଶ୍ୟ, ପରିବାରର ଲୋକେ ଚଳପ୍ରଚଳ ହେବେ।

କୋଠା କାମ ସରିଲାବେଳକୁ ବସନ୍ତକାଳ ହୋଇଥାଏ। କେବଳ ବାବୁ ନବନିର୍ମିତ ଭବନକୁ ବାସୋପଯୋଗୀ ବିବିଧ ଦ୍ରବ୍ୟରେ ସୁସଜ୍ଜିତ କରି ସ୍ତ୍ରୀଙ୍କୁ ଘେନି ବର୍ମାର ଠାଏ ଠାଏ ବୁଲି ଦେଖିବାକୁ ବାହାରିଗଲେ। ବିଶାଳ ଭବନରେ ତତ୍ତ୍ୱାବଧାନରେ ରହିଲେ ମାୟା, ଅଶୋକ ଓ ଅଚିନ୍ତ୍।

ସେ ଦିନ ଦୁଇପହର। ରଘୁନାଥ ମଝିଘରେ ଶଯ୍ୟାରେ ଶୋଇ ଖବରକାଗଜ ପଢ଼ୁ ପଢ଼ୁ ତାକୁ ନିଦ ଲାଗି ଆସୁଥାଏ। ଏପରି ସମୟରେ ଧୀରେ ପଦବିକ୍ଷେପରେ ମାୟା ଆସି ତା ମେଜ କତିରେ ଠିଆହେଲା। ନୀରବ ନୟନରେ ସେ ବହୁକ୍ଷଣ ରଘୁନାଥକୁ ଚାହିଁ ରହିଲା। ଏ ପରମ ସୁନ୍ଦର ଯୁବକଟି ଯେ ତାର ଭାବୀ ସ୍ୱାମୀ, ଏହି ଆନନ୍ଦରେ ତା ଛାତି ଥରିଉଠିଲା। ରଙ୍କର ଧନ ପରି ତାଙ୍କୁ ନିରୀକ୍ଷଣ କରୁ କରୁ ସେ ଅନ୍ୟମନସ୍କ ହୋଇପଡ଼ିଲା। ତା ହାତରେ ଥିଲା ଗୋଟିଏ ପୁଳିନ୍ଦା। ତାହା ଅସାବଧାନତାବଶତଃ ଖସି ଚଟାଣ ଉପରେ ପଡ଼ିଗଲା। ସେହି ଶବ୍ଦରେ ରଘୁନାଥର ଛାଇ ନିଦ ଭାଙ୍ଗିଗଲା, ସେ ଆଖି ମେଲାଇ ଚାହିଁଦେଲା। ମାୟା ତା ମେଜ କତିରେ ! ମାୟା ଲାଜରେ ଶୀଘ୍ର ନଇଁ ପଡ଼ି ପୁଳିନ୍ଦାଟା ଗୋଟେଇ ନେଲା। ରଘୁନାଥ ଈଷତ୍ ହାସ୍ୟ କରି ତାକୁ ଚାହିଁ କହିଲା, ''ଆଜି ଚୋର ଧରା ପଡ଼ିଚି, କଣ ଚୋରି କରୁଥିଲ କି ?'' ମାୟା ମୁଣ୍ଡ ତଳକୁ କଲା। ରଘୁନାଥ ଖଟରୁ ଉଠି ଆସି ମେଜ କତିରେ ଚୌକିରେ ବସିଲା। ମାୟା ଲଜ୍ଜାକମ୍ପିତ ହସ୍ତରେ ପୁଳିନ୍ଦାଟି ତା ହାତକୁ ବଢ଼େଇ ଦେଲା। ମାୟାର ସେହି ମୁହୂର୍ତ୍ତର ମଧୁର ମୂର୍ତ୍ତି ରଘୁନାଥର ଆଖିରେ ଭାରି ସୁନ୍ଦର ଦିଶିଲା। ସେ ପୁଳିନ୍ଦା ଫିଟାଇ ଦେଖିଲା-ଦାନପତ୍ର ! ସେହି ଦାନପତ୍ର-ସେ ତାକୁ ମୋଡ଼ି ପୁଣି ଲଫାପାରେ ଭର୍ତ୍ତି କଲା। କିନ୍ତୁ ଆହୁରି କିଛି ଲଫାପା ଭିତରେ ଥିଲା, ସେ ହାତ ପୂରାଇ କାଢ଼ିଲା, ତାହା ସୁନା-ପ୍ରେମବନ୍ଧା ମାୟାର ଅତି ସୁନ୍ଦର ଫଟୋ ଖଣ୍ଡେ। ସେଇଟା ତଳେ ପଡ଼ି ଏଡ଼େ ଶବ୍ଦ ହୋଇଥିଲା। ସେ ଫଟୋଟିକୁ ଆଖି କତିକି ଆଣି ବହୁତ ବେଳ ଚାହିଁଲି। ମାୟା ନିର୍ବାକ୍ ନିଷ୍ପନ୍ଦ ଭାବରେ ତଳକୁ ମୁହଁ ପୋତି ଠିଆହୋଇ ରହିଥାଏ।

ରଘୁନାଥ ଫଟୋଟିକୁ ହାତରେ ଧରି ଆସାମୀକୁ ଜେରା କଲା ପରି ପଚାରିଲା, ''ଯାର ଅର୍ଥ କଣ ମାୟା ?''

ମାୟାର ନାମ ଧରି ସେ କେବେ ଏପରି ଡାକେ ନାହିଁ। ମାୟା ଅତି ସଙ୍କୋଚରେ କହିଲା, ''ଏହା ଦାନପତ୍ର !''

ରଘୁନାଥ ରହସ୍ୟ କରି କହିଲା, ''ଏ ଦାନପତ୍ର ତୁମେ ମୋତେ ଦେବାକୁ ଆସିଚ ? ହେଇ ଦେଖ, ମୁଁ ନେଉଚି।'' କହି ତାକୁ ଚିରି ଟେବୁଲ୍ ତଳର କାଗଜଟୋକାଇରେ ପକାଇ ଦେଲା। କିନ୍ତୁ ଫଟୋଟା ଘେନି, ଉଠି ଆର କୋଠରିକୁ ଗଲା। ମାୟା ମୁଣ୍ଡରେ ବଜ୍ର ପଡ଼ିଥିଲେ ବି ସେ ଯେତେଦୂର ଅବଶ ଓ ହତାଶ ହୋଇ ନ ଥାନ୍ତା, ଏ ଘଟଣାରେ ସେ ତହୁଁ ବଳି ହତଜ୍ଞାନ ହୋଇଗଲା। ନିଜକୁ ଆଉ ସମ୍ଭାଳି ନ ପାରି ହଠାତ୍ ଚଟାଣ ଉପରେ ବସି ପଡ଼ିଲା। ତା ଛାତି ଫାଟି କାନ୍ଦଣାରେ ତେଉଉଠିଲା। ରଘୁନାଥ ଏଡ଼େ ନିଷ୍ଠୁର। ସେ ଆଉ କଳ୍ପନା କରିପାରିଲା ନାହିଁ।

ରାତି ସାତଟାକୁ ରଘୁନାଥ କାର୍ଯ୍ୟ ସାରି ବସାକୁ ଫେରିଲା। ଖାଇବା ସ୍ଥାନରେ ଦେଖିଲା, ମାୟାର ଆସନ ଶୂନ୍ୟ। ଚାକରାଣୀ କହିଲା-''ମିସ୍ ବାବାର ଦେହ ଭଲ ନାହିଁ। ସେ ତାଙ୍କ ଘରେ ସନ୍ଧ୍ୟାବେଳୁ ଶୋଇଛନ୍ତି।'' ରଘୁର ମନରେ ଭାରି କଷ୍ଟହେଲା। ସେ ଅତି କଷ୍ଟରେ ଦିଗୁଣ୍ଡା ଭାତ ଖାଇଦେଇ ଉଠିଆସିଲା। ଅଶୋକ ଓ ଅଜିତଙ୍କର ଖିଆ ସେତେବେଳକୁ ଶେଷ ହୋଇ ନାହିଁ। ତରତରରେ ହାତ ମୁହଁ ଧୋଇ ସେ ଧୀରେଧୀରେ ଆସିଲା ଉପର ମହଲାକୁ। ଉପରେ ମହଲା ସଂପୂର୍ଣ୍ଣ ଅନ୍ଧାକାରମୟ, କିନ୍ତୁ ଦେଖିଲା-ମାୟାର ଶୋଇବା ଘର କବାଟ ଖୋଲା। ସେ ଦ୍ୱାର ପାଖରେ ଅନ୍ଧକାରରେ ଠିଆହେଲା। କ୍ରନ୍ଦନର ଅସ୍ଫୁଟ ଶବ୍ଦ ତାର କାନକୁ ଶୁଭିଲା-ତା ମନ କଣ ହୋଇଗଲା। ସେ ମୋହାବିଷ୍ଟ ବାତୁଳ ପରି ଘର ଭିତରକୁ ପଶିଗଲା। ଶଯ୍ୟାରେ ପଡ଼ି ମାୟା କାନ୍ଦୁଥାଏ, ଆଉ ଡାକୁଥାଏ ଭଗବାନକୁ। ଭାଗବାନ୍ ଏଡ଼େ ନିଷ୍ଠୁର-ପଞ୍ଚବର୍ଷ ହେଲା ତା ପ୍ରାର୍ଥନା ଶୁଣିଲେ ନାହିଁ। ସେ କଣ କାଷ୍ଠ ପାଷାଣର ଦେବତାଠାରୁ ବଳି ନିଷ୍ଠୁର ? ସେ ପରା ସତ୍ୟ ଜୀବନ୍ତ ଭଗବାନଙ୍କୁ ପୂଜାକରେ। ସେ ସତ୍ୟ ଭଗବାନ୍ କଣ ବୋଲି ତାଙ୍କୁ ତ୍ୟାଗକଲେ ? ଭକ୍ତବତ୍ସଳ ପ୍ରଭୁ କଣ ବୋଲି ନିରୀହ ଅବଳାର ଜୀବନ ମାଟିକଲେ ? ଆଉ ସେ କେତେ ସହିବ ? ତାର ଆଉ ସହିବାର ଶକ୍ତି ନାହିଁ, ଏ ଥର ସେ ଭାଙ୍ଗି ପଡ଼ିବ-ଏ ଥର ସେ ମରିବ-ରଘୁନାଥକୁ ଭାବିଭାବି ମରିବ। ହାୟ ନିଷ୍ଠୁର ରଘୁନଥ ! ଏତେ ଦୂର ଉପେକ୍ଷା-ଏତେଦୂର ଲାଞ୍ଛନା-ଏତେ ତାଚ୍ଛଲ୍ୟ ? ଏଥିରେ କି ମନୁଷ୍ୟ ବଞ୍ଚିପାରେ ? ମାୟା ଗୋଟିଏ ଗୋଟିଏ ସବୁ ଭାବିଲା, ସବୁ ତା ପ୍ରତି ମରଣଯାତନାଠୁଁ ବଳିଗଲା। ସେ ଯାତନାର ଏକମାତ୍ର ଔଷଧ ଅଶ୍ରୁରେ ସେ ଭାସିଗଲା। ସେ ବହୁତ ବେଳ କାନ୍ଦିଲା, ଟିକେ ତୁନି ହେଲା, ପୁଣି କାନ୍ଦିଲା, ଏଇ କାନ୍ଦର ସୁଅରେ ତାର ଜୀବନ ତରୀ ଯେ ଆଜିଠୁଁ ଭାସିଲା।

ମାୟା ଅଧୈର୍ଯ୍ୟ ହୋଇ ଶଯ୍ୟାରେ ଛାଟିପିଟି ହେଲା। ତା ଛାତି ଭିତରେ ଆଗ୍ନେୟଗିରି ଅନ୍ତର୍ଦାହ, କିନ୍ତୁ ପ୍ରତିକାରର ଉପାୟ ନାହିଁ। କେବଳ ସେ ପୋଡ଼ିବ, କେବଳ ସେ ମରିବ। ଦୁଃଖ ଯାତନାରେ ସେ ଖାଇବା ପିଇବା ଭୁଲିଗଲା।

କ୍ରମେ ସଞ୍ଜ ମାଡ଼ି ଆସିଲା, ରାତି ହେଲା, ତଥାପି ମାୟା ଖଟରୁ ଉଠିଲା ନାହିଁ। ତାର ଆଜ୍ଞା ନ ପାଇବାରୁ ଚାକର ଚାକରାଣୀ ସୁଦ୍ଧା ସାହସକରି ଉପରକୁ ଗଲେ ନାହିଁ। ଥରେ ସାରଦା ଆସି ପଚାରି ଯାଇଥିଲା। ସେ ରାଗ ହେଲାରୁ ତାକୁ ଚାଲିଯିବାକୁ କହିଲା। ସେ ବାହ୍ୟଜ୍ଞାନଶୂନ୍ୟ, ତାର ମୁଣ୍ଡତଳ ତକିଆ ଓଦା ସରସର।

ଏତିକିବେଳେ ରଘୁନାଥ ଭିତରକୁ ଆସିଲା ଓ ଧୀରେ ପଦବିକ୍ଷେପରେ ଶଯ୍ୟାକତିକି ଆସି ମାୟାର ମୁଣ୍ଡ କତିରେ ଠିଆହେଲା। ସେତେବେଳେ ସମୁଦାୟ ଜଗତ୍ ତା ଆଖି ଆଗରୁ ଘୁଞ୍ଚି ଯାଇଥିଲା, ସେ ନଇଁ ପଡ଼ିଲା-ଦୃଢ଼ ବାହୁ ପରିବେଷ୍ଟନୀ ମଧ୍ୟରେ ମାୟାର କମ୍ପିତ ଦେହ ବକ୍ଷରେ କୁଣ୍ଢାଇ ଧଇଲା। ମାୟାର ଆନନ୍ଦରେ ମୂର୍ଚ୍ଛିତ ହୋଇଗଲା। କ୍ଷଣକ ପରେ ତାହାର ଚେତନା ହେଲା, ତାର ଲୁହରେ ରଘୁର ବକ୍ଷ ତିନ୍ତିଗଲା। ରଘୁ ବ୍ୟଥିତ ଅନ୍ତରରେ କହିଲା, ''ମାୟା ତୁନି ହୁଅ, ତୁନି ହୁଅ ! ମୋତେ ମାର-ମୋତେ ଶାସ୍ତି ଦିଅ, ଆଉ କାନ୍ଦ ନାହିଁ। ମୁଁ ବଡ଼ ଅପରାଧୀ।''ତଥାପି ମାୟା କାନ୍ଦିଲା-ଏ ଥର ଆନନ୍ଦରେ କାନ୍ଦିଲା ପରା ! ରଘୁନାଥ ପୁଣି କହିଲା, ''ମାୟା, ମୁଁ ଜାଣେ, ତୁମେ ମୋତେ ଭାରି ଭଲପାଅ; କିନ୍ତୁ ମୁଁ କଣ ତୁମର ଯୋଗ୍ୟ ? ଜୁଳୁଜୁଳିଆ ପୋକ ହୋଇ ମୁଁ ଚାନ୍ଦର ସମକକ୍ଷ ହୋଇପାରେ କି ? ମୁଁ-ମୁଁ !'' ମାୟା ରଘୁନାଥକୁ ଆଉ କୁହାଇ ଦେଲା ନାହିଁ। ପରସ୍ପରର ଆଲିଙ୍ଗନରେ ଉଭୟଙ୍କର ବାକ୍‌ଶକ୍ତି ରୁଦ୍ଧ ହୋଇଗଲା।

ଅନେକ ଖୋଷାମଦ କରି ମାୟାକୁ ଉଠାଇ ରଘୁନାଥ ଭୋଜନରେ ବସାଇଲେ। ଦୀପାଲୋକର ଉଜ୍ଜ୍ୱଳ ରଶ୍ମିରେ ମାୟାର ଅଶ୍ରୁ-ଅଙ୍କିତ ଶ୍ୟାମଳ ମୁଖଶ୍ରୀ ଅତି ସୁନ୍ଦର ଦିଶୁଥିଲା। ରଘୁନାଥ ତୃଷିତ ନୟନରେ ସେ ଅମୃତ ପାନକରିବାକୁ ଲାଗିଲା, କିନ୍ତୁ ଆଲୁଅରେ ରଘୁନାଥର ସେ କଟାକ୍ଷ ଦେଖି ମାୟା ଲାଜରେ ଝାଉଁଳିଗଲା।



## ପଞ୍ଚବିଂଶ ଅଧ୍ୟାୟ

ସେ ଦିନ ସକାଳୁ ଉଠି ଫୁଲମଞ୍ଜରୀ ବାଡ଼ି ପଛପଟ ଫୁଲ ବଗିଚାରେ ବୁଲିଲା। ସେତେବେଳେକୁ ପୂର୍ଣ୍ଣମୀ ଚାନ୍ଦର ମଧୁର ଜ୍ୟୋସ୍ନା ମଉଳି ଆସୁଥିଲା। ଆଉ ପୂର୍ବଦିଗ ଈଷଦ୍ ଗୋଲାପୀ ଦିଶୁଥିଲା, ଆକାଶର ଗୋଟାଏ କୋଣରେ ପ୍ରଭାତୀ ତାରାର ଜ୍ୟୋତି ମଳିନ ପଡ଼ି ଆସୁଥିଲା। ସବୁ ଆଡ଼ ନୀରବ, ନିସ୍ତବ୍‌ଧ; ଫୁଲଗୁଡ଼ିକ ନୀରବ ନୟନରେ ଚାନ୍ଦର ମେଲାଣି ପ୍ରତୀକ୍ଷା କରି ଶିଶିରପାତ ଛଳରେ କାନ୍ଦୁଥିଲେ ପରା ! ଆଉ କାନ୍ଦୁଥିଲା ଫୁଲମଞ୍ଜରୀ; ତାହାର ହୃଦୟ ଫାଟି ରକ୍ତଧାରା ବହୁଥିଲା। ବିଶ୍ୱାସଘାତକର ଚକ୍ରରେ ସେ ଆଜି ନିଷ୍ପେଷିତ, ତାହାର ସବୁ ଆଜି ଚୂର୍ଣ୍ଣ, ସକଳ ସୁଖସ୍ୱପ୍ନ ମିନେଇ ଯାଇଛି, ଭବିଷ୍ୟତର ଉଜ୍ଜ୍ୱଳ ଚିତ୍ରଗୁଡ଼ିକ ନିଭିଯାଇଛି। ତାହାର ପ୍ରାଣଧିକ ସୁରଞ୍ଜନ-ତାହାର ଆକାଶ ଧ୍ରୁବତାରା ଆଜି ଲୁଚିଯାଇଛି। ସୁରଞ୍ଜନ ତାକୁ ତ୍ୟାଗକରି ବିବାହ କରିଛି-ପିତାର ଆଦେଶ ଲଙ୍ଘନ କରି ନ ପାରି। କାପୁରୁଷ

କୁଚକ୍ରୀ ବିବାହ କରିଛି। ଫୁଲକୁ ଯେ ଏତେ ଆଶା ଦେଇ, ଏତେ ପ୍ରେମ ଦେଖାଇ, ତାହାର ସର୍ବସ୍ୱ ଶେଷକରି ସେ ଆଜି ଏହି ମୁହୂର୍ତ୍ତରେ ତାକୁ ତ୍ୟାଗକରି ବିଭା ହୋଇଗଲା–ଏ କଥା ଫୁଲ ଯେତେ ଭାବୁଛି, ସେତିକି ତାର ମୁଣ୍ଡ ଘୁରିଯାଉଛି। ସେ ଯେ କଣ ପ୍ରତିକାର କରିବ କିପରି ପ୍ରତିଶୋଧ ନେବ, କିଛି ଠିକ୍ କରିପାରୁ ନାହିଁ। କେବଳ ନିଃସହାୟ ନାରୀର ସମ୍ବଳ ଅଶ୍ରୁଧାରା ପ୍ରବଳ ବେଗରେ ତାହାର ଆଖି ଫିଟାଇ ବହିଯାଉଛି, ଆଉ ତା ହୃଦୟ ଭିତରରେ ଜଳୁଛି ବାଡ଼ବାନଳର ଶିଖା। ଏତେ ଅଶ୍ରୁ ତରଙ୍ଗ ତାହା ନିଭାଇ ପାରୁ ନାହିଁ। ଅଗ୍ନିର ଜ୍ୱାଳାରେ ସେ ଦିଗ୍‌ବିଦିର୍ଣ୍ଣ, ଜ୍ଞାନଶୂନ୍ୟା।

ରାତିଯାକ ତାକୁ ନିଦ ନାହିଁ। କାଲି ଦିନସାରା ସେ ଉପବାସୀ–ତା ଦେହ ଭାଙ୍ଗି ପଡ଼ିଲା ପରି। ସେ ଖଣ୍ଡେ ବଡ଼ ପଥର ଉପରେ ଆଉଜି ବସିଲା। ଭୂତ ଭବିଷ୍ୟତ ଚିନ୍ତାରେ ତାର ପ୍ରାଣ ଅବସନ୍ନ ହୋଇଗଲା। ବାସ୍ତବିକ ସେ କଣପାଇଁ ଏଡ଼େ ହୀନ କପାଳୀ–ଏ କଥାହିଁ ବାରମ୍ବାର ତାର ମନକୁ ଘାରି ପକାଉଥିଲା। ପିଲାଦିନୁ ବାପମାର ଗୋଟିଏ ଝିଅ, ବଡ଼ ଗେଲବସରରେ ବଢ଼ିଥିଲା, ବିବାହ ହୋଇଥିଲା ମଧ ସେହିପରି ଘରେ–ତାର ସ୍ୱାମୀ ଯେପରି ଗୁଣବାନ, ସେହିପରି ସୁନ୍ଦର ଓ ସୁପୁରୁଷ; କିନ୍ତୁ ସେ ତାକୁ ହରାଇବସିଲା। ସ୍ୱାମୀ ଥିଲେ ତାର କଣ ଏ ଦୁର୍ଦ୍ଦଶା ହୋଇଥାନ୍ତା? ଫୁଲର ଆଖି ଆଗରେ ସ୍ୱାମୀର ମୂର୍ତ୍ତି ଦିଶିଗଲା। ସେ ହିନ୍ଦୁ ପରିବାରର କନ୍ୟା, ସେ କଣ ନ କଲା! ବିଧବା ହେଲା ବୋଲି ଧର୍ମରେ ଜଳାଞ୍ଜଳି ଦେଲା–କୁଳଟା ହେଲା! ହେଲେ, କାହାଯୋଗୁଁ? ସୁରଞ୍ଜନ ଯୋଗୁଁ ନୁହେଁ କି? ସେହି ସୁରଞ୍ଜନ ତାକୁ ତ୍ୟାଗକଲା। ଗୋଟି ଗୋଟି ହୋଇ ସୁରଞ୍ଜନର ପୂର୍ବକଥାମାନ ତାହାର ମନେ ପଡ଼ିଲା– ସେ କଲିକତା ଯିବ, ଜାତି ତ୍ୟାଗକରିବ, ତାକୁ ବିଭାହେବ, ଦୁଇ ଜଣ ପତିପତ୍ନୀ ହୋଇ ପରମ ସୁଖରେ ରହିବେ। ହାୟ! ସେହି ସୁରଞ୍ଜନ ଏକ ମୁହୂର୍ତ୍ତରେ ବଦଳିଗଲା। ଏପରି ବିଶ୍ୱାସଘାତକତା କଣ ଏ ଜଗତରେ ସମ୍ଭବ? ବିଶେଷତଃ ଏପରି ଦେବତୁଲ୍ୟ ବ୍ୟକ୍ତି ପକ୍ଷରେ। ସୁରଞ୍ଜନକୁ ଫୁଲ ସର୍ବଦା ଦେବତା ପରି ମଣୁଥିଲା। ତାର ବୈଧବ୍ୟଜୀବନରେ ସେହି ତ ଥିଲା ଏକମାତ୍ର ସୁଖ, ଶାନ୍ତି। ସଂସାର ଯେତେବେଳେ ତାକୁ ଆଡ଼ ଆଖିରେ ଚାହିଁଲା ନାହିଁ, ସେତେବେଳେ ସେ ତ ଉଦାର ପ୍ରାଣରେ ତାକୁ କୋଳକୁ ଟାଣିନେଇଥିଲା। ସେ ଆଜି ଯା କଲା–ଜାଣି ଶୁଣି ତା ତଣ୍ଟିରେ ଛୁରିଦେଲା! ଫୁଲ ଆଉ ଭାବି ପାରିଲା ନାହିଁ। ସେତେବେଳେ ସୂର୍ଯ୍ୟ ଉଇଁ ଆସୁଥିଲେ, ସେ ଆସି କବାଟ କିଳି ଆପଣା ଘରେ ଶୋଇଲା–ମୋତି ଯେତେ ଡାକିଲା, ଶୁଣିଲା ନାହିଁ। ମା ବୁଢ଼ୀ ଆସି ଡାକିଲେ, ଫୁଲ ବାଧ ହୋଇ ଦ୍ୱାର ଫିଟାଇଲା। ମା ଦେଖିଲେ–ଝିଅର ରୂପ କଳାକାଠ, ମୁହଁ କାନ୍ଦି କାନ୍ଦି ଫୁଲିଯାଇଛି। ସେ ଅବାକ୍ ହୋଇ ତାକୁ ଘଡ଼ିଏ ଖଣ୍ଡେ ଚାହିଁଲେ। ମା ସେ, ପିଲାର ବେଦନା ବେଶ୍ ବୁଝନ୍ତି। ଏ ନବୀନ ବୟସରେ ସେ ଯେ ବୈରାଗିନୀ ପରି ଜୀବନ କାଟୁଛି, ଏ କଥା କଣ ସେ ମର୍ମେ ମର୍ମେ ଅନୁଭବ କରୁ ନାହାନ୍ତି। କିନ୍ତୁ ତାଙ୍କ ହାତରେ ଅଛି ବା କଅଣ? ସାମାଜିକ ନିୟମ ତ ତାଙ୍କୁ ଶୃଙ୍ଖଳାବଦ୍ଧ କରିରଖିଛି। ସେ ଦୁଃଖରେ କାତର ହୋଇ ଝିଅକୁ କୋଳକୁ ନେଲେ, ଅନେକ ବୁଝାଇ କତିରେ ବସାଇ ଖୁଆଇଲେ, ତା ମୁହଁକୁ ଆଉଁସି ଦେଇ କହିଲେ, ''ମା, ହୀନକପାଳ ତ ବିଧବା କରିଚି, ନୋହିଲେ ଝିଅ ମୋର କପୂର ଚୂରୁଥାନ୍ତା।'' ମା'ର ସହାନୁଭୂତିରେ ଫୁଲର ବେଦନା

ଅଧେ ଭଣାହୋଇଗଲା। ସେ ସେଠୁଁ ଉଠି ଆସି ଖଣ୍ଡେ ନଭେଲ ଧରି ବସିଲା, ପଢ଼ାରେ ମନ ଲାଗିଲା ନାହିଁ। ଯୂଥିକା ଆସି କତିରେ ଠିଆହେଲା, କିଛି ନ ଜାଣିଲା ପରି କହିଲା, "ଫୁଲ, ମୁଁ କଣ ଅପୂର୍ବ କଥା ଶୁଣୁଚି-ସୁର ବାବୁ ବିଭା ହୋଇ ସାରିଲେଣି?" ଛାତିଫଟା କୋହକୁ ଚାପି ରଖି ଫୁଲ ଯୂଥିକାକୁ ଟାଣି କତିରେ ବସାଇଲା। ତା କୋଳରେ ମୁହଁ ଲୁଚାଇ ନୟନର ଉଷ୍ଣ ଅଶ୍ରୁରାଶି ଢାଳିଦେଲା। ଯୂଥିକା ବହୁତ ମିଠା କଥାରେ ତାକୁ ସାନ୍ତ୍ୱନା ଦେଇ ତୁନି କରି କହିଲା, "ଭଉଣି, ଜଗତ୍ ଏହିପରି, ମୁଁ ଜଗତକୁ ହାଡ଼େ ହାଡ଼େ ଚିହ୍ନିଚି। ତୁ ଯେ ମତେ ସବୁବେଳେ କହୁ ଭଉଣି, 'ତୁ କାହିଁକି ସଂସାର କରୁ ନାହୁଁ? ବର୍ତ୍ତମାନ ତୁ ବୁଝୁଥିବୁ ସଂସାର କିପରି-ଠିକ୍ 'ଦିଲ୍ଲୀକା ଲଡୁ'। ଯେ ଖାଏ- ସେ ଝୁରେ, ଯେ ନ ଖାଏ- ସେ ବି ଝୁରେ। ତୁ ଖାଇ ମରୁଚୁ, ମୁଁ ନ ଖାଇ ଝୁରୁଚି।" ଏହା କହି ଦୀର୍ଘଶ୍ୱାସଟିଏ ଛାଡ଼ି ସେ ରୁଦ୍ଧ କଣ୍ଠରେ କହିଲା, ଭଉଣି, ତୋର ସାନ୍ତ୍ୱନାପାଇଁ କହୁଚି-ମୁଁ ବି ବଡ଼ ଘରର ଝିଅ ଥିଲି, ଗେଲବସରରେ ବଢ଼ିଥିଲି; ହେଲେ ତୋରିପରି ଦୁର୍ବୁଦ୍ଧି ହେଲା ଯେ, ମୁଁ ଜଣକୁ ଭଲପାଇଲି। ମାତ୍ର ସେ ମୋତେ ତ୍ୟାଗକଲା। ସେହିଦିନୁ ମୁଁ ସନ୍ନ୍ୟାସିନୀ-ସେହି ଦିନୁ ମୁଁ ସଂସାରସୁଖରେ ଜଳାଞ୍ଜଳି ଦେଇଚି। ବର୍ତ୍ତମାନ ମୋର ଲକ୍ଷ୍ୟ, ଯେତେଦୂର ସମ୍ଭବ କେବଳ ପରୋପକାର କରିବି। ସେଥିପାଇଁ ମୁଁ ସର୍ବଦା ସୁଖୀ, ମାତ୍ର ତୋପରି ମୁଁ ଅନେକ କାନ୍ଦିଚି।" ଫୁଲ ନିଜର ଦୁଃଖ ଭୁଲି ଯୂଥିକା ମୁହଁକୁ ଚାହିଁଲା। ଯୂଥିକାର ଏଡ଼େ ମହତ୍ ପ୍ରାଣ। ସେ ଉତ୍ସୁକ ହୋଇ ପଚାରିଲା, "କିଏ ସେ ଭଉଣୀ!" ଯୂଥିକା ଲାଜରେ ମଥା ନୁଆଁଇ କହିଲା, "ସେ ଜ୍ୟୋତିଷ ଡାକ୍ତର-ଯେ ତୁମ ଭାଇଙ୍କି ଭଲ କରିଥିଲେ। ହେଲେ, ତାଙ୍କର ଦୋଷ କଣ? ସେ ଉଦାର ପ୍ରାଣ, ତ୍ୟାଗୀ ପୁରୁଷ, କାମିନୀ କାଞ୍ଚନର ମୋହ ତାଙ୍କଠି ଆଦୌ ନାହିଁ। ତାଙ୍କ ଗୁଣରେ ଆକୃଷ୍ଟ ହୋଇ ମୁଁ ତାଙ୍କୁ ପ୍ରେମ କଲି, ପ୍ରଥମ ଦର୍ଶନ ଦିନୁ ମୋର ପ୍ରାଣ ବଳିଦେଲି, ମାତ୍ର ସେ ମୋତେ ଚାହିଁଲେ ନାହିଁ, ଏଡ଼େ ମହତ୍‌ମନା ସେ।"

ଫୁଲ ନିର୍ବାକ ବିସ୍ମୟରେ ଯୂଥିକା ମୁହଁକୁ ଚାହିଁ ରହିଲା। ଜ୍ୟୋତିଷ ଡାକ୍ତରର ନାମ ସେ ଭାଇଙ୍କ କତିରୁ ଅନେକ ଥର ଶୁଣିଛି, କିନ୍ତୁ ସେ ଯେ ଭଲ ଲୋକ-ଏ ବିଷୟରେ ଧାରଣା ନ ଥିଲା। ସେ ଭାଇଙ୍କର ଚରିତ୍ର ଜାଣେ, ଧୀର କଣ୍ଠରେ ଯୂଥିକାକୁ ପଚାରିଲା, "ମୁଁ ଶୁଣିଚି, ସେ ମଦ ଖାଆନ୍ତି?"

ଯୂଥିକା ହସିହସି କହିଲା, ତୁ ବାୟାଣୀ କି ଲୋ! ସେ ଡାକ୍ତର ଲୋକ, ବାରରକମ ରୋଗୀ ଘାଣ୍ଟନ୍ତି। କଲେରା, ପ୍ଲେଗ, ବସନ୍ତ-ଏ ସବୁ ରୋଗୀ କତିକି କଣ ମଣିଷ ଭରସି ଯାଇପାରେ? ସେଥିପାଇଁ ସେ ଥରେ ଅଧେ କେବେ ଖାଇଥିବେ, ତାକୁ କଣ ମଦଖିଆ କହନ୍ତି- ସେ ତ ଔଷଧ ପରି ବ୍ୟବହାର।"

ଫୁଲ ତୁନି ହୋଇ ଚିନ୍ତା କଲା। ସୁରଞ୍ଜନ କଥା ତା ପ୍ରାଣକୁ କୋରି(୧) ପକାଉଥିଲା। ସେ ଅଧୈର୍ଯ୍ୟ ହୋଇ କହିଲା, "ଯୂଥି, ମୋତେ ଉପାୟ କହ, ମୁଁ କେମିତି ବଞ୍ଚିବି? ମୁଁ ତ ଆଉ ସହି ପାରୁନାହିଁ।"

---

(୧) ବିଦାରି ପକାଇବା, କଷ୍ଟଦେବା।

ଯୂଥିକା କୋମଳ ସ୍ୱରରେ କହିଲା, ''ସହିବାକୁ ହେବ, ଭଉଣୀ !''

ଫୁଲ ବିରକ୍ତ ହୋଇ କହିଲା, ''ମୁଁ ସହି ପାରିବି ନାହିଁ, ନିଶ୍ଚେୟ ମରିଯିବି।''

ଯୂଥିକା ଅନୁଯୋଗ କରି କହିଲା, ''ଧୈର୍ଯ୍ୟ ଧର, ଧୈର୍ଯ୍ୟ ଧର। କଥାରେ କହିନ୍ତି- ''ଏଷା' ଦିନ ନେହି ରହେଗା'। ସବୁ ଦିନ କଣ ଅମାବାସ୍ୟା ଅନ୍ଧକାର ଥିବ ? ଦିନେ ତ ଜୋସ୍ନା-ରାତି ହେବା।''

ଫୁଲ ନିରାଶ ହୋଇ କହିଲା, ''ମୋର ଆଉ ଜ୍ୟୋସ୍ନାରାତି[୨] ନାହିଁ।''

ଯୂଥିକା କହିଲା, ''ଦେଖ, ତୋର ନିଶ୍ଚେ ଶୁଭ ଦିନ ଆସିବ, ତୁ ବି ବିଭା ହୋଇ ଘର ସଂସାର କରିବୁ। ଏପରି ଅସ୍ଥିର ହୁଅ ନା।''

ଫୁଲ ବିରକ୍ତି ବ୍ୟଞ୍ଜକ ସ୍ୱରରେ କହିଲା, ''ଆଉ ଛେନାଗୁଡ଼ ହବ ! ସେ ତ ବିଭା ହୋଇ ସୁଖରେ ଘରକଲା, ମୋର ପୁଣି କଣ ହବ ?''

ଯୂଥିକା କହିଲା, ''ଆଉ କଣ ପୃଥିବୀରେ ମଣିଷ ନାହାନ୍ତି ? ତୋର ଏତେ ରୂପ, ଏତେ ଗୁଣ ! ଏ ଓଡ଼ିଶା ବୋଲି-''

ଫୁଲ ଯୂଥିକାର ମୁହଁ ଚିପି ଧଇଲା, କହିଲା, ''ସେମିତି କହନା, ମୁଁ ବିଧବା ହେଲି ବୋଲି କଣ ବେଶ୍ୟା ! ମୁଁ ସେହି ଏକ ସୁରଞ୍ଜନକୁ ଭଲ ପାଏ। ସେହି ଏକା ମୋର ଜୀବନର ଧ୍ରୁବତାରା। ସେ ମୋତେ ତ୍ୟାଗକରିଚି, କରୁ, ମୁଁ ତାକୁ ତ୍ୟାଗ କରିପାରିବି ନାହିଁ, ତାରି ନାମ ମୋର ଜପାମାଳୀ।''

ଯୂଥିକା ହସି ହସି କହିଲା, ''ତେବେ ତୋର ଏତେ ଦୁଃଖ କାହିଁକି ? ମୋ ପରି ଧୈର୍ଯ୍ୟ ଧର, ଜଗତର ସେବାରେ ଜୀବନକୁ ଉତ୍ସର୍ଗକର, ଦେଖିବୁ ତୋର ମନରେ ଶାନ୍ତି ହେବ।''

ଫୁଲ ନୀରବ ରହିଲା। ସେ ଜଗତର ସେବା କରିବ ! ଜଗତମୟ ସୁରଞ୍ଜନର ରୂପ ଦେଖାଇବ-ଜଗତ୍‌ଯାକ ତାର ସୁରଞ୍ଜନ ପ୍ରେମରେ ସୁନ୍ଦର ହୋଇଉଠିବ। ତଥାପି ମନ ବ୍ୟଥିତ ହେଲା, ଥରେ ଥରେ ପ୍ରତିହିଂସାରେ କାନ୍ଦିଉଠିଲା। ସୁରଞ୍ଜନ ବିଭାହେଲା, ତାକୁ ଖଣ୍ଡେ ସୁଦ୍ଧା ଚିଠି ଦେଲା ନାହିଁ-ଏ ଦୁଃଖରେ ତାର ପ୍ରାଣ ପୋଡ଼ିଯାଉଥିଲା।

ଶଙ୍କରୀ ନଣନ୍ଦର ଭାବାନ୍ତର ଲକ୍ଷ୍ୟକରି ମନେ ମନେ ହସିଥିଲା। ଏ ପରିବାର ମଧ୍ୟରେ ସେହି ସବୁଠାରୁ ପଦଦଳିତା, ଉପେକ୍ଷିତା। ତାର ସ୍ୱାମୀ ସୀତାକୁ ନେଇ ବ୍ୟସ୍ତ; ଶାଶୂ, ପୁଅ, ଝିଅ ନାତିକୁ ଘେନି ବ୍ୟସ୍ତ; ତାର ଖବର ବୁଝିବାକୁ କେହି ନାହିଁ। ଖାଇବା ପିନ୍ଧିବାର ତାର ଅଭାବ ନାହିଁ ସତ, ହୃଦୟର ଅଭାବ କିଏ ବୁଝେ ? ସେ ଆଜିକାଲି ଗୁନ୍ଦବୀଳ ସର୍ପ ପରି ସର୍ବଦା ଫଣା ଟେକି ବସିଛି-ବେଳ ପାଇଲେ କାହାକୁ କାମୁଡ଼ିବ। ସେତିକିବେଳେ ଫୁଲ ଓ ସୁରଞ୍ଜନର ବିଚ୍ଛେଦ-ପାଲା ଆରମ୍ଭ ହେଲା। ଚତୁରା ଜେମା ସାଆନ୍ତାଣୀକୁ ସବୁ ଖବର

(୨) ଏହିପରି, (୨) ସୁଖ

ଆଣି ଦେଲା। ଜେମା ଉଆସର ଖାସ ଦାସୀ, ବାବୁଙ୍କର ଭାରି ପ୍ରିୟ, କିନ୍ତୁ ସୀତା ଆସିଲା ଦିନଠାରୁ ତା ଅଧିକାରଟ ଯାଇଛି। ସେ ମଧ ଦାଉ ସାଧିଲା। ସୀତା ଓ ବାବୁଙ୍କର କିଛି କରି ନ ପାରି ଫୁଲକୁ ବାଗରେ ପାଇ ଅନେକ ହଇରାଣ କଲା। ସୁରଞ୍ଜନର ଚିଠିସବୁ ଡାକ-ପିଆଦାଠାରୁ ଚୋରି କଲା।

କିନ୍ତୁ ସତ କଥା କହିବାକୁ ଗଲେ, ସୁରଞ୍ଜନ ଫୁଲକୁ ଠକେଇ ନ ଥିଲେ। ଫୁଲ ଯଦି ସେତିକି ଜାଣି ଥାଆନ୍ତା, ତା ଜୀବନ କେଡ଼େ ସୁଖମୟ ହୋଇଥାନ୍ତା। ମାତ୍ର ତା କପାଳରେ ସେତକ ହେଲା ନାହିଁ। ସୁରଞ୍ଜନ ଯେଉଁ ଦିନ ବାପ ପାଇଁ କାନ୍ଦି କାନ୍ଦି ଆସି ସଞ୍ଜବେଳେ କଟକ ଡାକ୍ତରଖାନାରେ ପହଞ୍ଚ, ସର୍ବତ୍ର ଖୋଜି ବାପାଙ୍କୁ ପାଇଲେ ନାହିଁ, ଘୋର ଦୁଃଖରେ ଆସି ସେ ହସ୍‌ପିଟାଲ ପିଣ୍ଡାରେ ବସିଗଲେ। କଣ, ବାପା ତାର ତେବେ ଆଉ ଇହଜଗତରେ ନାହାନ୍ତି ? ମୃତ୍ୟୁ ସମୟରେ ତାଙ୍କୁ ଟିକେ ଦେଖି ପାରିଲେ ନାହିଁ ? ଶୋକାବେଗରେ ତାଙ୍କ ହୃଦୟ ଫାଟିଗଲା। ସେହି ସମୟରେ ବିମଳା ବାବୁ ଆସି ହଠାତ୍ ତାଙ୍କୁ ଚମକାଇ ଦେଲେ।

ସୁରଞ୍ଜନଙ୍କଠାରୁ ସତ୍ୟରଞ୍ଜନ ବାବୁଙ୍କ ଖବର ଶୁଣି ସେହିକ୍ଷଣି ଦୁହେଁ ତାଙ୍କୁ ବସାରେ ଖୋଜିବାକୁ ଗଲେ। ଦେଖିଲେ, ବସାର ତାଲା ବନ୍ଦ। ସେ ସ୍ଥାନରେ ନିଧିଆ ବେହେରା କହିଲା, ''ବାବୁ ତଗରପଡ଼ାରେ ନଇ କୂଳର ଗୋଟିଏ ଘର ଭଡ଼ାନେଇ ଅଛନ୍ତି।'' ତାହାଠାରୁ ଠିକଣା ପାଇ ଦୁଇ ଜଣ ଆସି ତଗରପଡ଼ାରେ ଯାହା ଦେଖିଲେ, ତହିଁରେ ସେମନେଙ୍କ ଚକ୍ଷୁ ସ୍ଥିର। ସେଠି ଗୋଟିଏ ବଡ଼ ବିଭାଘରର ଆୟୋଜନ, ସତ୍ୟରଞ୍ଜନ ବାବୁ ବୁଲି ସବୁ ତତ୍ତ୍ୱ ନେଇ ଅଛନ୍ତି। ସୁରଞ୍ଜନ ଏ ସବୁ କାଣ୍ଡ ଦେଖି ଥକାହୋଇ ଆସି ବାପାଙ୍କୁ ପ୍ରଣାମକଲେ। ବିମଳାଙ୍କୁ ଦେଖି ସତ୍ୟରଞ୍ଜନ ବାବୁ ହସି ହସି କହିଲେ, ''ବିମଳା, ଆସ ଆସ, ମିଠା ମୁହଁ କରିଯାଅ; ଆଜି ପରା ତୁମ ବନ୍ଧୁର ବିଭାଘର।'' ଚାକରକୁ ଜଳଖିଆର ବରାଦ ଦେଇ ସତ୍ୟରଞ୍ଜନ ସୁରଞ୍ଜନଙ୍କୁ ଘେନି ଭିତର କୋଠରିକୁ ଗଲେ। ହଠାତ୍ ଜଜ୍ ସାହେବ କତିରେ ଅପରାଧୀ ଆସାମୀ ପରି ସୁରଞ୍ଜନ ପିତାଙ୍କ ରୋଷଦୃଷ୍ଟି ତଳେ ମୁହଁପୋତି ରହିଲେ। ସତ୍ୟରଞ୍ଜନ ବାବୁ ମିଠା କଡ଼ା ସ୍ୱରରେ ହୁକୁମ ଦେଲା ପରି କହିଲେ, ''ମୋର ମାନ ରକ୍ଷା କରିବାକୁ ହେବ– ଆଜି ରାତିରେ ବିଭା ନ ହୋଇ ତୁ କଟକ ଛାଡ଼ି ପାରିବୁ ନାହିଁ। ହେମଚନ୍ଦ୍ର ବାବୁଙ୍କ ଝିଅ କମଳଲତାକୁ ତୁ ଭଲରୂପେ ଜାଣୁ। ସେ ଯେପରି ସୁନ୍ଦରୀ, ସେହିପରି ଗୁଣବତୀ। ମୋ କଥା ନ ମାନି ଏଠୁ ଯଦି ପଳାଉ, ତେବେ ମୁଁ ଗଳାରେ ଛୁରୀ ଦେଇ ମରିବି।'' ସୁରଞ୍ଜନ କାଠ ପରି ଠିଆହୋଇ ବାପାଙ୍କ ଆଦେଶ ଶୁଣିଲେ। ବାପାଙ୍କ କଥାରେ ଭରସି ସେ କେବେ ଉତ୍ତର ଦିଅନ୍ତି ନାହିଁ। ତାଙ୍କର ଏତେ ବିଦ୍ୟା, ଏତେ ବୁଦ୍ଧି ସତ୍ତ୍ୱେ, ତାଙ୍କ କତିରେ ସେ ମଲା ମୂଷା। ସେ ଜାଣନ୍ତି ତାଙ୍କର ସ୍ୱଭାବ। ନୀରବ, ନିର୍ବିବାଦରେ ମନର ରାଗ ମନରେ ମାରି ସୁରଞ୍ଜନ ବିଭା ହୋଇ ଆସିଲେ। ପୁତ୍ରକୁ ଆଶୀର୍ବାଦ କରୁ କରୁ ସତ୍ୟରଞ୍ଜନ ବାବୁ କହିଲେ, ''ଏବେ ତୁ ମୋର ସୁପୁତ୍ର। ଏ ଥର ପୂର୍ବ ମନ୍ଦଗୁଣ ଛାଡ଼ି, ଲକ୍ଷ୍ମୀ ବହୂ ଘେନି ଘରକର, ବାପ ଦାଦିର ନାଁ ରଖ।'' ଏହା କହି ସେ ଚାଲିଗଲେ। ସୁରଞ୍ଜନ ବିସ୍ମିତ ହୋଇ ଭାବିଲେ, ତାହା ହେଲେ ବାପା ସବୁ ଜାଣନ୍ତି–କଳ କୌଶଳ କରି ଡକାଇ ବାନ୍ଧା କରାଇଦେଲେ। ରାଗରେ ସେ

କମ୍ପୁଥାନ୍ତି, ଫୁଲମଞ୍ଜରୀ ଲାଗି ଦୁଃଖରେ ତାଙ୍କ ହୃଦୟ କାନ୍ଦି ଉଠୁଥାଏ। ସେ ଅତ୍ୟନ୍ତ ମନୋଯାତନାରେ ଆତ୍ମଦୋଷ କ୍ଷାଳନକରି ତା ନିକଟକୁ ଖଣ୍ଡେ ପତ୍ରଲେଖି, ସେହି ଦିନ ଡାକରେ ପଠାଇଦେଲେ। କିନ୍ତୁ ଫୁଲମଞ୍ଜରୀ ସେ ଚିଠି ଆଦୌ ପାଇଲା ନାହିଁ–ତାହା ଶଙ୍କରୀର ବାକ୍‌ସରେ ଆଶ୍ରୟ କଲା। ଆଉ ନନ୍ଦିଆ ତାକୁ ଆସି ସୁରଞ୍ଜନଙ୍କ ବିଭାଘର କଥା ସବିସ୍ତାରେ ବର୍ଣ୍ଣନାକରି ଶୁଣାଇଦେଲା। ରାଗରେ, ଦୁଃଖରେ ଜଳି ପୋଡ଼ି ଫୁଲ ନିରୂପାୟ, ତପ୍ତ ସାପ ପରି ଫଁ ଫଁ ହୋଇ ବିଛଣାରେ ପଡ଼ିରହିଲା। ତା ଆଶାର ସଂସାର ଛାରଖାର ହେଲା। କାହିଁ ସେ କଲିକତା ଯାଇଥାନ୍ତା, ସୁରଞ୍ଜନଙ୍କୁ ବିଭା ହୋଇ ଘର କରିଥାନ୍ତା; ବିଶ୍ୱାସଘାତକ ତାର ଜୀବନ ମାଟିକରି, ପରମ ସୁଖରେ ବିଭା ହୋଇ ବସିଲା। ଏତେ ଅନ୍ୟାୟ ପୃଥିବୀ କେମିତି ସହିଲା–ଏତେ ଅତ୍ୟାଚାର, ନାରୀନିର୍ଯ୍ୟାତନ ଭଗବାନ୍ କେମିତି ଦେଖିଲା, ଏହା ଭାବି ଭାବି ଫୁଲ ହତଜ୍ଞାନ ହେଲା। ତାହାର ଇଚ୍ଛା ହେଉଥିଲା, ସେହିକ୍ଷଣି ସୁରଞ୍ଜନଙ୍କୁ ପାଇଲେ ତାଙ୍କ ଗୋଡ଼ତଳେ ଆତ୍ମହତ୍ୟା କରନ୍ତା। ମାତ୍ର ସେ ଆଉ ଆସିଲେ ନାହିଁ। ଫୁଲ ମନର ବିଷ ମନରେ ମାରି ଜହର ପାଲଟିଗଲା, ଜଗତ୍ ତା କତିରେ ବିରାଟ ଦସ୍ୟୁ, ତସ୍କରର ଲୀଳାଭୂମି ବୋଲି ପ୍ରତୀୟମାନ ହେଲା! କିନ୍ତୁ ଦିନ ବହି ଚାଲିଗଲା। ଫୁଲର ଦୁଃଖରେ ତାର ଯାଏ କେତେ, ଆସେ କେତେ ?

ସୀତାର କଲିକତା ଦେଖିବାକୁ ଭାରି ଇଚ୍ଛା। ପୁଅକୁ ଆସି ପାଞ୍ଚ ବର୍ଷ ହେଲା। ଦିବାକର ମାଆ-ପୁଅକୁ ନେଇ କଲିକତା ବାହାରିଲା। ପୁଅର ସେବା ଶୁଶ୍ରୁଷା ଛଳରେ ଫୁଲମଞ୍ଜରୀ ମଧ୍ୟ ତାଇ ସହିତ ବାହରିଲା। ମୋତି ଓ ଯୂଥିକା କିପାଁ ବାଦ ଯାଆନ୍ତେ ? ନନ୍ଦିଆ ମଧ୍ୟ ଗୋଦରୀ ବ୍ରାହ୍ମଣୀର ଅଞ୍ଚଳ ତ୍ୟାଗକରି ମହାସ୍ଫୂର୍ତ୍ତିରେ ବାହାରିଲା।

କଲିକତା ଅଜବ ସହର। ଦେଖି ଦେଖି ସୀତାର ମନ ପୂରିଲା ନାହିଁ, ସେ ମାସେ ଖଣ୍ଡେ କଲିକତାରେ ରହିବାକୁ ପାଞ୍ଚିଲେ। ସେତେବେଳେ ଜ୍ୟେଷ୍ଠମାସ, ଟାଣ ଖରା, ପଦ୍ମପୁର ଭାରି ଗରମ; ଦିବାକର ମଧ୍ୟ କଲିକତା ପସନ୍ଦକଲେ। ଏହି ସମୟରେ ପୁଅକୁ ଜ୍ୱର ହେଲା, ସୀତାର ଓ ଫୁଲର ଭାରି ଭାବନାହେଲା। ଦିବାକର ନିଜର ପ୍ରିୟ ଚିକିତ୍ସକ ଜ୍ୟୋତିଷ ବାବୁଙ୍କୁ ଘେନି ଆସିଲେ। ସେ ନିଜେ ତାଙ୍କ ଚିକିତ୍ସାରେ ଭଲ ହୋଇଥିଲେ, ସେଥିପାଇଁ ତାଙ୍କର ଜ୍ୟୋତିଷ ଡାକ୍ତର ଉପରେ ଅଗାଧ ବିଶ୍ୱାସ।

ଫୁଲ ପିଲାକୁ କୋଳରେ ଧରି ବସିଲା। ଅବୁଝା ପୁଅ ତା କୋଳରୁ ଯୂଥିକା କୋଳକୁ ଆଦୌ ଗଲା ନାହିଁ। ଜ୍ୟୋତିଷ ବାବୁ ଆସି ପୁଅ ଦେହରେ 'ଷ୍ଟେଥୋସକୋପ' ବସାଇଲେ। ହଠାତ୍ ତାଙ୍କର ଲୋଲୁପ ଦୃଷ୍ଟି ଫୁଲର ଗୌରସୁନ୍ଦର ମୁହଁ ଉପରେ ପଡ଼ିଗଲା। ସେ ମନେ ମନେ ଭାବିଲେ, କି ଚମତ୍କାର ରୂପ। ଦୁଇ ଓଳି ତାଙ୍କର ଯିବା ଆସିବା ହେଲା। ପୁଅ ଭଲ ହେଲା ପରେ ମଧ୍ୟ ବିନା ଫିସରେ ମଧ୍ୟେ ମଧ୍ୟେ ପୂରା ସାହେବୀ ବେଶରେ ସେ ମୋଟରକାରରେ ଚଢ଼ି ଆସନ୍ତି। ତାଙ୍କ ଚିକିତ୍ସାବଳରେ ପୁଅ ଭଲହୋଇଥିବାରୁ ସୀତା ଓ ଫୁଲ ତାଙ୍କ ଉପରେ ଭାରି ଖୁସି, ଶେଷକୁ ତାଙ୍କୁ ଖାଇବାର ନିମନ୍ତ୍ରଣ ହେଲା। ସେ ଏଡ଼େ ବଡ଼ ସାହେବ, ଓଡ଼ିଆ ଖାନା ଖାଇବେ କି ନାହିଁ; କିନ୍ତୁ ଜ୍ୟୋତିଷ ବାବୁ ଆନନ୍ଦରେ ସମ୍ମତି ଜଣାଇ

କହିଲେ, ଓଡ଼ିଆ ଝିଅଙ୍କଠୁଁ ଆଉ କିଏ ଭଲ ରାନ୍ଧେ ? ସତ କହୁଛି, ଭାଇ, ତୁମ ଦେଶର ଯେଉଁ ମଣ୍ଡା କାକରା, ବିଶେଷତଃ ଯେଉଁ ଚୁଡାଘଷା, ପୋଡ଼ପିଠା ମୁଁ ପୁରୀରେ ଥିଲାବେଳେ ଖାଇଥିଲି, 'କେକ୍', 'ବିସ୍କୁଟ' କହିଁକି ତା ସଙ୍ଗେ ସମାନ ହେବ ? ଓଡ଼ିଶା ବ୍ରାହ୍ମଣ ପରିବାରର କନ୍ୟାମାନେ ଯେପରି ରାନ୍ଧନ୍ତି, ସେହିପରି ଅତିଥିପ୍ରିୟ । ଭାରତରେ ଅନ୍ୟତ୍ର ଏପରି ମୁଁ ଦେଖି ନାହିଁ । ସେ ସ୍ଥାନଟା ହେଲା ଜଗନ୍ନାଥଙ୍କ ଲୀଳାଭୂମି, ମହାପ୍ରାସାଦର ଜନ୍ମସ୍ଥାନ, ସେଠି ନିଜେ ଲକ୍ଷ୍ମୀ ଠାକୁରାଣୀ ରାନ୍ଧନ୍ତି !

କଥାଗୁଡ଼ିକ ଫୁଲର କାନକୁ ବଡ଼ ମିଠା ଲାଗିଲା । ଅନେକ ଥର ଜ୍ୟୋତିଷ ବାବୁ ତାଙ୍କ ବକ୍ର ଚାହାଣୀରେ ଚାହିଁଛନ୍ତି, ତାଙ୍କର ସାହେବି ଚେହେରା ତା ଆଖି ଝଲସାଇ ଦେଇଛି । କି ଜାଣି କାହିଁକି, ତା ମନ ତାଙ୍କ ଉପରେ ଢଳି ପଡ଼ିଲା । ଯୂଥିକାଠୁଁ ସେ ତାଙ୍କର ହାଲଚାଲ ସବୁ ଶୁଣିଛି, ତାଙ୍କର ସ୍ୱଭାବ ଭାରି ଭଲ, ମଣିଷ ଭିତରେ ସେ ହୀରାଟିଏ, ତାଙ୍କର ଘର ସଂସାର କିଛି ନାହିଁ, ସେଥିଯୋଗୁଁ ବଡ଼ ଦୟାଳୁ, ସର୍ବଦା ମୁକ୍ତହସ୍ତ । ଦୁଃଖୀ, ରଙ୍କୀ, ଅନାଥ କେହି ତାଙ୍କ ଦୁଆରୁ ଫେରନ୍ତି ନାହିଁ । ଏ ସବୁ ଶୁଣି ଶୁଣି ଫୁଲମଞ୍ଜରୀର ଚଞ୍ଚଳ ହୃଦୟ ମୋହିତ ହୋଇଗଲା । ଏପରି ଗୁଣବାନ୍ ବ୍ୟକ୍ତିଙ୍କୁ ନିଜ ହାତରେ ଚର୍ଚ୍ଚା କରିବାକୁ ସୌଭାଗ୍ୟ ଲାଭକରି ସେ କୃତାର୍ଥହେଲା ।

ସେ ଦିନ ଜ୍ୟୋତିଷ ବାବୁ ପୂରା ବଙ୍ଗାଳୀ ବ୍ରାହ୍ମଣ ରୂପରେ ଦେଖାଦେଲେ । ପତର ପଡ଼ିଲା । ସେ ଆଉ ଦିବାକର ଭୋଜନରେ ବସିଲେ । ଆତ୍ମୀୟପରି ତାଙ୍କର ପରିଚର୍ଯ୍ୟା ହେଲା । ଗୃହାନ୍ତରାଳରୁ ଫୁଲର ଯୋଡ଼ିଏ ଆଖି ତୃଷିତ ଭାବରେ ତାଙ୍କୁ ଚାହିଁଥିଲା, ଅନ୍ୟର ଅଲକ୍ଷରେ ଜ୍ୟୋତିଷ ବାବୁ ତହିଁରେ ସନ୍ଧାନ ପାଇଲେ । ତାଙ୍କର ହୃଦୟ ନାଚି ଉଠିଲା । ଯୂଥିକା ଫୁଲ ଆଗରେ ଜ୍ୟୋତିଷ ବାବୁଙ୍କ କଥା ସବୁବେଳେ କହେ । ଫୁଲ କିଛି ନ କହିଲେ ସୁଦ୍ଧା ତା ଆଖି ହସରେ ପୂରିଯାଏ, ଯୂଥିକା ତାହା ଲକ୍ଷ୍ୟ କରେ ।

ଦିନେ ଦିବାକର ବାବୁ ଘରେ ନାହାନ୍ତି, ଏମନ୍ତ ସମୟରେ ଜ୍ୟୋତିଷ ବାବୁ ଆସି ପହଁଞ୍ଚିଲେ । ଯୂଥିକା ଓ ଫୁଲ ଦାଣ୍ଡଘରେ ବସି ଗଳ୍ପକରୁଥିଲେ । ଜ୍ୟୋତିଷ ବାବୁ ଘର ଭିତରକୁ ଆସିବାର ଦେଖି ଫୁଲ ମୁଣ୍ଡରେ ଲୁଗାଦେଇ ଆଡ଼େଇଗଲା । ସେ ନିଜେ ଚୌକି ଟାଣି ବସି ଫୁଲକୁ ଆଗତୁରା ନମସ୍କାରକଲେ । ଫୁଲ ମଧ୍ୟ ନମସ୍କାର କରି ଗୋଟିଏ କୋଣରେ ଠିଆହେଲା । ଜ୍ୟୋତିଷ ବାବୁ ଅଳ୍ପକ୍ଷଣ ରହି ନମସ୍କାରକରି ବିଦାୟନେଲେ ।

ତହିଁ ଆରଦିନ ଯୂଥିକା ତାକୁ ଖଣ୍ଡେ ଚିଠି ଦେଲା । ଚିଠି ଫିଟାଇ ସେ ପଢ଼ିଲା, ତାହା ଜ୍ୟୋତିଷ ବାବୁଙ୍କର, ଅତି ଭଦ୍ରଭାବରେ ଲେଖା ଏବଂ ତାହାର ପ୍ରଶଂସାରେ ପରିପୂର୍ଣ୍ଣ । ତାହାର ବୃହତ୍ ନୀଳୋତ୍ପଳ ଆଖିଯୋଡ଼ିକ ଉଜ୍ଜ୍ୱଳ ହୋଇଉଠିଲା । ଗୋପନରେ ସେ ଓ ଯୂଥିକା ବାରମ୍ବାର ତାହା ପାଠକଲେ । କ୍ରମେ ଦୁଇ ଖଣ୍ଡ, ଚାରି ଖଣ୍ଡ ଆସିଲା । ଅଭଦ୍ରତା ହେବ ବୋଲି ଫୁଲ ମଧ୍ୟ ଉତ୍ତରଦେଲା । ଅବଶେଷରେ ଜ୍ୟୋତିଷ ବାବୁ ମନକଥା ଖୋଲି ଲେଖିଲେ, ଫୁଲର ରୂପ ଗୁଣରେ ସେ ପାଗଳ, ଫୁଲ ବିନା ତାଙ୍କର ଜୀବନଧାରଣ ଅସମ୍ଭବ । ଫୁଲ ସେ ପତ୍ର

ପାଇ ଲଜ୍ଜିତହେଲା। ସାହସ କରି ଯୂଥିକାକୁ ମଧ ତାହା ଦେଖାଇ ପାରିଲା ନାହିଁ। ତା ଗୋଡ଼ ଯେ ଖସି ଖସି ଯାଉଥିଲା, ସେ ଏ ବିଷୟ ବେଶ୍ ଅନୁଭବ କରି ପାରିଥିଲା, କିନ୍ତୁ ସଳଖ ହୋଇ ଠିଆ ହେବାକୁ ତାହାର ବଳ ହେଲା ନାହିଁ। ଯୂଥିକା ତା ମନ କଥା କଳି ପାରିଲା।

ସେ ଦିନ ନୀରବ ଜ୍ୟୋତ୍ସ୍ନାରାତିରେ ଛାତ ଉପରେ ବୁଲୁ ବୁଲୁ ଯୂଥିକା ଜ୍ୟୋତିଷ ବାବୁଙ୍କ କଥା ପକାଇଲେ। ସେ ଆଶ୍ଚର୍ଯ୍ୟ ହେଲା ଯେ, ତାହାର ଏତେ ପ୍ରେମ ସତ୍ତ୍ୱେ ଜ୍ୟୋତିଷ ବାବୁ ତାକୁ ନ ଚାହିଁ, ଫୁଲକୁ ଭଲ ପାଇଲେ, ଫୁଲଲାଗି ବର୍ତ୍ତମାନ ତାଙ୍କର ବାବୁଙ୍କ ପକ୍ଷରେ ଯେ ନିତାନ୍ତ ମନ୍ଦ-ଏହାହିଁ ହେଲା ତାହାର ପ୍ରଧାନ ଆଶଙ୍କା। ଫୁଲ ଏହା ଶୁଣି ସହାନୁଭୂତିରେ ତରଳି ଗଲା। ସେ ଦିନ ରାତିରେ ତା ମନରେ ନାନା କଥାର ଉଦୟ ହେଲା–ତାହାର ପୂର୍ବଜୀବନ ତା ଆଖି ଆଗରେ ଭାସି ଉଠିଲା। ସ୍ୱାମୀ ଶଶିକାନ୍ତ, ପ୍ରେମିକ ସୁରଞ୍ଜନ, ଆଉ ଜ୍ୟୋତିଷ ବାବୁ, ଏ ତିନି ମୂର୍ତ୍ତି ମଧରେ ଜ୍ୟୋତିଷଙ୍କ ଉପରେ ତାହାର ଆସକ୍ତି ପ୍ରବଳହେଲା। ସ୍ୱାମୀ ପରଲୋକଗତ, ସୁରଞ୍ଜନ ବିଶ୍ୱାସଘାତକ, କିନ୍ତୁ ଜ୍ୟୋତିଷ? ଜ୍ୟୋତିଷ ତ ତା ଲାଗି ଆଜି ଉନ୍ମତ୍ତ! ତାର ଭୟହେଲା, କାଳେ ଜ୍ୟୋତିଷ ବାବୁ ସୁରଞ୍ଜନ ପରି ଦଗାଦେବେ[୧], କିନ୍ତୁ ତାଙ୍କର ପରମ ସୁନ୍ଦର ମୁଖଶ୍ରୀ ମନେପଡ଼ି ତାହର ଭୟ ଭ୍ରାନ୍ତି ଭାଙ୍ଗିଦେଲା। ଯେ ମନୁଷ୍ୟ ଭିତରେ ଏଡ଼େ ସୁନ୍ଦର, ତାଙ୍କୁ ସନ୍ଦେହ? ବିଶେଷତଃ ତା ଲାଗି ସେ ପାଗଳ। ଜ୍ୟୋତିଷ ବାବୁଙ୍କର କଣ ନାହିଁ? ଐଶ୍ୱର୍ଯ୍ୟ, ଦାସଦାସୀ, ଡାକ୍ତରଖାନା, ପାଞ୍ଚମହଲା ଘର, ଏଡ଼େ ବଡ଼ ନାମଜାଦା ଡାକ୍ତର, ପୁଣି ସେ ଅବିବାହିତ, ତାର ପୁଣି ପାଣିପ୍ରାର୍ଥୀ–ଏପରି ପାତ୍ର କଲିକତାରେ କଣ ନ ହୁଏ? ଏ ଅପୂର୍ବ ସ୍ଥାନ, ଏଇଠି ତ ବିଦ୍ୟାସାଗର[୨] ବିଧବାବିବାହ ପ୍ରଥା ଆରମ୍ଭକଲେ। ଜ୍ୟୋତିଷ ଜାଣନ୍ତି, ସେ ବିଧବା, ତଥାପି ସେ ତାକୁ ଚାହାନ୍ତି। ଏ ମାହେନ୍ଦ୍ର ସୁଯୋଗ ହେଳାରେ ତ୍ୟାଗକରିବ? ଆଉ ଶୂନ୍ୟ ହୃଦୟରେ କଟକ ଫେରିଯିବ? ପଦ୍ମପୁରର ସେ ଘର ତାକୁ କାରଗାର ବୋଲି ମନେହେଲା, ତଥାପି ମା ମୁହଁଟା ଛାତି ଭିତରେ ନାଚି ଉଠିଲା–ମାକୁ ସେ କେମିତି ଛାଡ଼ିବ? ପରକ୍ଷଣରେ ମନେ ହେଲା, ଝିଅମାନେ ଚିରକାଳ ମା-କୋଳରେ ନ ଥାନ୍ତି, ମାକୁ ଛାଡ଼ି ସେ ଶାଶୂଘରକୁ ଯାଇଥିଲା। ତାକୁ ଅନେକ ଦିନ ରାତ୍ରିରେ ନିଦ୍ରା ହେଲା ନାହିଁ, ଅହରହ ସେ ଜ୍ୟୋତିଷ ବାବୁଙ୍କ ଚିନ୍ତାରେ ବୁଡ଼ିରହିଲା।



## ଷଡ଼୍‌ବିଂଶ ଅଧ୍ୟାୟ

ରଜନୀ ଜ୍ୟୋତ୍ସ୍ନାମୟୀ। ତେତାଲାର ଛାତ ଉପର ବିବିଧ ଫୁଲକୁଣ୍ଡରେ ସଜ୍ଜିତ। ବସିବାର ଆସନ ଖଣ୍ଡେ ଅଧେ ପଡିଛି। ରଘୁନାଥ ଅଫିସର କାଗଜପତ୍ର ଦେଖି ନୀରବରେ ଚିନ୍ତା କରିବାକୁ ଆସି ସେହି ନିର୍ଜ୍ଜନ ସ୍ଥାନରେ ବସିଛି। ତାହାର ହୃଦୟ ଆଜି ଗଭୀର

(୧) ପ୍ରତାରଣା କରିବା, ଜାଣିବା, (୨) ଈଶ୍ୱର ଚିତ୍ର ବିଦ୍ୟାସାଗର, ସମାଜ ସଂସ୍କାରକ, ଶିକ୍ଷକ, ଭାରତରେ ନବଜାଗରଣର ସୂତ୍ରଧର।

ଭାବନାପୂର୍ଣ୍ଣ–ସେ ଯେ ଏକ ଭାବ ଆଜି ମାୟାର ପ୍ରେମରେ ବିହ୍ୱଳ ! ତାର ସେ ବାଲ୍ୟସଙ୍ଗିନୀ ସୀତାକୁ ଭୁଲିଲା ? ହାୟ, ଅବ୍ୟବସ୍ଥିତ-ହୃଦୟ ରଘୁନାଥ ! ଯାହାପାଇଁ ଦେଶାନ୍ତରୀ ହେଲୁ, ସମସ୍ତଙ୍କୁ ଛାଡ଼ିଲୁ, ପାଞ୍ଚ ବର୍ଷ ମଧ୍ୟରେ ତାକୁ ଏକାବେଳେ ପାସୋରି ଗଲୁ ? ରଘୁନାଥ ବିସ୍ମିତ ହୋଇ ନିଜର ପରିବର୍ତ୍ତନ ବିଷୟ ଚିନ୍ତାକଲା–ବାସ୍ତବିକ, ମାୟାକୁ ଯେ ସେ ପ୍ରେମ କରିଛି, ସେଥିରେ ତୋର କି ଦୋଷ ? ମାୟା ଯେ ଉପରେ ପଡ଼ି ତାକୁ ଭଲପାଇଲା, ଏଇଟା କଣ ତାର ଭଦ୍ରତା–ଏଇଟା କଣ ତାର ଉଚିତ ? ରଘୁନାଥ କଳ୍ପିତ କ୍ରୋଧରେ ଭାବିଲା, ବାସ୍ତବିକ ମାୟା ସବୁ ଅନିଷ୍ଟର ମୂଳ ! ସେ ଯେପରି କରିଛି, ସେହିପରି ଫଳ ଭୋଗୁ–ସେ କାହିଁକି ତାକୁ ବିଭାହେବ ? ତାର ଗରଜ ? ଏ ଥର ସେ ମନ ଦୃଢ଼କରିବ–ନିଶ୍ଚୟ ମାୟାର ସମ୍ପର୍କ ତ୍ୟାଗକରିବ । ମାୟର ସମ୍ପର୍କ ଯେ ପାପ ! ମାୟା ନିଶ୍ଚେ ମାୟାବିନୀ କୁହୁକିନୀ ! ନୋହିଲେ କି ତାର ଏଡ଼େ ଟାଣ ମନକୁ ସେ ଭାଙ୍ଗି ଚୂନାକରନ୍ତା–ଏପରି ଦୃଢ଼ ଲୋକକୁ ସେ କାନିଧରା କରନ୍ତା ! ବେଶ୍ ଭଲକଥା–ଏଥର ମଜା ବୁଝିବ । ସାମାନ୍ୟ ଟୋକୀଟାର ଏଡ଼େ ଗର୍ବ ? ପୁଣି ପରକ୍ଷଣରେ ଭାବିଲା–କି ଜଘନ୍ୟ ! କି ଭୟାନକ ? ସ୍ତ୍ରୀ ଲୋକକୁ ଏ ଅନ୍ୟାୟ ଦଣ୍ଡ-ଅକାରଣ ସରଳା ଅବଳା ବେକରେ ଛୁରୀ ! ପୁଣି ତା ବାପର ଖାଇ ।

ମାତ୍ର ସେହିକ୍ଷଣି ସୀତା କଥା ତା ମନରେ ଉଦୟହେଲା । ସେ ମନକୁ ପଥର କରି ଭାବିଲା–ହଁ, ତା ବାପର ଯେପରି ଖାଉଛି, ସେହିପରି ଖଟୁଛି । ତାପାଇଁ କଣ ସେ ତାର ଜୁଆଇଁ ହେବାକୁ ବାଧ୍ୟ ? ନା–କଦାପି ନୁହେଁ ! ମାୟା ଯେପରି ତାକୁ ଭଲପାଉଛି, ସେହିପରି ସେ ଚେତୁ । ତେବେ ସିନା ତାର ଶାସ୍ତିହେବ ।

ଏତିକିବେଳେ ରଘୁନାଥର ପଛଆଡ଼େ ଆସି ମାୟା ଠିଆହେଲା । ଜହ୍ନ ଆଲୁଅରେ ତାର ଛାଇ ଦେଖି ରଘୁନାଥ ବୁଲି ପଡ଼ି ତାକୁ ଡାକିଲା–ମାୟା, ଏ ପାଖକୁ ଆସ । ମାୟାର ମନଟା ହାକିମି ସ୍ୱର ଶୁଣି ଛୋଟ ହୋଇଗଲା । ସେ ଚୁପ୍‌ହୋଇ ସାମନାରେ ଛିଡ଼ାହେଲା । ରଘୁନାଥ ବିନୀତ ଭାବରେ କହିଲା, ''ମାୟା, ତୁମେ ସେ ଚୌକିରେ ବସ ।'' ମାୟା ରଘୁର ବ୍ୟବହାରରେ ଆଶ୍ଚର୍ଯ୍ୟ ହୋଇ ଚୌକିଟି ଟାଣିଆଣି ତାହାର ସମ୍ମୁଖରେ ବସିଲା । ରଘୁନାଥ ମନ ଦୃଢ଼ କରି ଆଜି ସବୁ କହିବ ବୋଲି ସ୍ଥିରକଲା । ମାତ୍ର ପ୍ରଥମେ କିପରି ଆରମ୍ଭ କରିବ, ଠିକ୍ କରିପାରିଲା ନାହିଁ । ତାହାର ସରଳ ମୁହଁକୁ ଚାହିଁ ସବୁ ଗୋଳେଇଗଲା । ସେ କିଛିକ୍ଷଣ ନୀରବ ରହି କହିଲା, ''ମାୟା, ତୁମେ ନିଶ୍ଚେ ମାୟାବିନୀ ! ନୋହିଲେ, ତୁମେ ମୋତେ କାହିଁକି ଭଲ ପାଇଲ ? ମୁଁ ତୁମର ଯୋଗ୍ୟ, ନା ଜାତିପତି ? ତୁମେ କଣ ଅବିନାଶ, କି ସୁରେନକୁ ବାହା ହୋଇଥିଲେ ହୋଇନଥାନ୍ତା ? ସେମାନେ ତୁମର ସମାନସ୍କନ୍ଧ, ମୁଁ ତୁଚ୍ଛା ଅର୍କ୍ଷିତ, ମୋତେ ଭଲପାଇ ଭୁଲକଲ ।''

ମାୟା ଗଭୀର ଦୀର୍ଘନିଃଶ୍ୱାସ ଗ୍ରହଣକରି କହିଲା, ''ମୋର ସାଧ୍ୟ କଣ ? ମୁଁ କଣ ଜାଣେ, କଣ କରିବି ?'' ତାର କଥା ଅସମ୍ବନ୍ଧ, ସେ ଠିକ୍ ଯାହା କହିବାକୁ ଚାହେଁ, ତାହା କହି ପାରିଲା ନାହିଁ–ହୁଣ୍ଡୀଙ୍କ ଭଳି ତୁନି ହୋଇଗଲା । ତା ମନ ଭିତରେ କଣ ହୋଇଗଲା ।

ରଘୁନାଥ କହିଲା, ''ତୁମେ କିଛି ଜାଣ ନାହିଁ, ଖାଲି ପରକୁ ଅନିଷ୍ଟ କରି ଜାଣ। ସୁରେନ ବିଚରାକୁ ଭଣ୍ଡିଲ, ଅବିନାଶକୁ ଆଶା ଦେଇ ବିଭା ହେଲ ନାହିଁ, ଗିରିଶକୁ ହତାଶ କଲ, ଆଉ ଶେଷରେ ମୋ ମୁଣ୍ଡ ଖାଇଲ।''

ମାୟା ଏତେଗୁଡ଼ିଏ ଅକାରଣ ଦୋଷାରୋପରେ ମର୍ମାହତ ହୋଇଗଲା। ସେ ଦୃଢ଼ ହୋଇ ଛିଡ଼ାହେଲା; ଗମ୍ଭୀରହୋଇ ରହିଲା, ''କିଏ କହିଲା! ସବୁ ମିଛ। ମୁଁ କାହାକୁ କେବେ କିଛି କହି ନାହିଁ, ସବୁ ମିଛ। ତୁମକୁ ଏ ମିଛକଥା ସବୁ କିଏ କହିଲା?''

ରଘୁନାଥ କହିଲା, ''ହଉ, ଧର ସେ ସବୁ ମିଛ, ସେଥିରେ ମୋର କିଛି ଯାଏ ଆସେ ନାହିଁ। ତୁମକୁ ମତେ ଭଲ ପାଇବାକୁ କିଏ କହିଲା?'' ମାୟା ଏହି ପ୍ରଶ୍ନର ଉତ୍ତର ଅବଶ୍ୟ ଦେଇପାରିଲା ନାହିଁ। ଭଲ ପାଇବାକୁ କିଏ କଣ କହେ? ତାର ସେ ଦିନ କଥା ମନେପଡ଼ିଲା–ଯେଉଁ ଦିନ ରଘୁନାଥକୁ ସେ ପ୍ରଥମେ ବିଶ୍ୱସେବା ପ୍ରେସର କିରାଣୀଖାନାରେ ଦେଖିଥିଲା। ସେ ଆଜିକି ପଞ୍ଚ ଛ ବର୍ଷ ତଳର କଥା–ସେ ରଘୁନାଥ, ଆଉ ଏ ରଘୁନାଥ ମଧ୍ୟରେ କେତେ ପ୍ରଭେଦ! ସେ ଧୀର ନମ୍ର ରଘୁନାଥ–ଯେ କି ତାକୁ ଆଜ୍ଞା ଆପଣ କହୁଥିଲା, ସେ ଆଜି ତାଙ୍କୁ ଅପରାଧୀ ପରି ଜେରାକରୁଛି। ସେ କିଛି ଉତ୍ତର ନ ଦେଇ ଠିଆହେଲା, ଭାବିଲା ଏ ବୋଧହୁଏ ଆଉ ଗୋଟିଏ ନୂତନ ଅଭିନୟ–ସମ୍ଭବତଃ ତା ମନ ବିଡ଼ିବାପାଇଁ।

ରଘୁନାଥ ତାଠାରୁ ଉତ୍ତର ନ ପାଇ କହିଲା, ''ଦେଖ, ମୋତେ ତୁମେ ଭଲ ପାଇ ବଡ଼ ଭୁଲକଲ। ମୁଁ ବିଦେଶୀ, ବିଜାତି, ମୋର ପୂର୍ବ ଜୀବନ ତୁମେ କିଛି ଜାଣ ନାହିଁ।''

''ମୋର ସେ ସବୁ ଜାଣି ଲାଭ କଣ?''

''ସେଥିରେ ତୁମର କି ଲାଭ ଶୁଣ। ତୁମେ କାହାର ଝିଅ, ତୁମର ମାନ ସମ୍ମାନ କଣ? ମୁଁ ଗୋଟିଏ ଅଜ୍ଞାତକୁଳଶୀଳ, ପୁଣି ଓଡ଼ିଆ, ଆଉ ହିନ୍ଦୁ; ନିତାନ୍ତ ଅନାଥ, ଅର୍କ୍ଷିତ ଓ ହୀନ।''

ମାୟା ଗଦ୍‌ଗଦ୍ କଣ୍ଠରେ କହିଲା, ''ତୁମେ ତ ମୋର ସବୁ, ମୋ ଜୀବନର ଜୀବନ। ମୁଁ ତୁମକୁ ଜାଣେ, ମୁଁ ଆଉ କିଛି ଜାଣିବାକୁ ଚାହେଁ ନାହିଁ। ତୁମେ ହାଡ଼ି ହେଲେ ମୁଁ ହାଡ଼ିଆଣୀ, ମୋଚି ହେଲେ ମୁଁ ମୋଚିଆଣୀ। ମୋର ତୁମଠି ଲୋଡ଼ା।''

ରଘୁନାଥ ପରାସ୍ତ ହେଲା, ନମ୍ର ଭାବରେ କହିଲା,–''କ୍ଷମା କର ମାୟା! ତୁମର ଏପରି ଟାଣ ମନ ମୁଁ ଜାଣି ନ ଥିଲି–''

ମାୟା ରଘୁନାଥର କଥା ଶେଷ ନୋହୁଣୁ ତା ପିଠିରେ ଆଉଜି ପଡ଼ିଲା। ରଘୁନାଥ ପୁଣି ଆଉ ଥରେ ଆତ୍ମବିସ୍ମୃତ ହୋଇ ତାକୁ ଆଲିଙ୍ଗନକଲା।

କିନ୍ତୁ ପରେ ପୁଣି ତା ମନ ଖରାପ ହେଲା। ଦିନେ ସ୍ପଷ୍ଟରୂପେ କହିଲା, ''ମୁଁ ତ ତୁମକୁ ବିଭା ହେବି ନାହିଁ, ମିଛରେ ମୋତେ ଆଶା କର ନାହିଁ।'' ମାୟା ପଥର ପରି ଏ

ନିଷ୍ଠୁର ବାକ୍ୟ ଶୁଣିଲା। ପରେ ଭାବିଲା–ବୋଧହୁଏ ଗେଲରେ କହୁଛନ୍ତି, କିନ୍ତୁ ରଘୁନାଥ ତାହା ପ୍ରକୃତରେ କହିଥିଲା। ଏ ଥର ମାୟାଠାରୁ ଦୂରଛଡ଼ା ହୋଇରହିଲା।

କୋମ୍ପାନିର କାମଯୋଗୁଁ ତାକୁ କିଛି ଦିନ ମୌଲମୀନ ଯିବାକୁ ହେଲା। ମାୟା ଭବିଲା, ସେ ତାକୁ ସଙ୍ଗରେ ଡାକିବ; ମାତ୍ର ରଘୁନାଥ ତାକୁ କିଛି ନ କହି ଚାଲିଗଲା। ସେ ଦୁଃଖରେ କାନ୍ଦି କାନ୍ଦି ରହିଲା। ଓଡ଼ିଆ ଜାତିର କଣ ସ୍ୱଭାବ ଏହପରି! ରଘୁନାଥର ଅବହେଳା ଯୋଗୁଁ ସେ ତାର ଜାତି ଉପରେ ଅଭିମାନତକ ଢାଳିଦେଲା।

କେବଳବାବୁ ଫେରି ଆସିଲେ। ରଘୁର ଅନୁପସ୍ଥିତିରେ ମାୟା ତାଙ୍କ ସହିତ କଲିକତା ଚାଲିଗଲା। ରଘୁ ଯେତେବେଳେ ରଙ୍ଗୁନ ଫେରିଆସିଲା, ଦେଖିଲା–ସେ ନାହିଁ, ତା ଶୋଇବା ଘରେ କେବଳ ମାୟାର ସେହି ସୁନା ଫ୍ରେମ ବନ୍ଧା ଫୋଟୋଟି। ରଘୁନାଥ କିଜାଣି କାହିଁକି ସେ ଦିନ ବଡ଼ ମନସ୍ତାପ କଲା। ମାୟାକୁ ଅକାରଣ କଷ୍ଟଦେଇ ବିଦାୟ ଦେଇଥିବାରୁ ତାକୁ ବଡ଼ ବାଧିଲା। ତେଣୁ ସେ ସରଳ ଭାବରେ ତାକୁ ସବୁ ବିଷୟ ଜଣାଇବାକୁ ପ୍ରସ୍ତୁତହେଲା। ସେ ରାତିରେ ତାକୁ ଆଉ ନଦ ହେଲା ନାହିଁ। ସେ ଦୀର୍ଘ ପତ୍ର ରଚନାକରି ନିଜର ଆନୁପୂର୍ବିକ ସମୁଦାୟ ଇତିହାସ ଲେଖି, ତାହା ନିକଟକୁ ପତ୍ରଦେଲା।

ସେ ଚିଠିର ଜବାବପାଇଁ ରଘୁ ହପ୍ତାଏ, ଦୁଇ ହପ୍ତା[୧], ମାସେ ଅପେକ୍ଷା କଲା; କିନ୍ତୁ କୌଣସି ଉତ୍ତର ନ ପାଇ ବ୍ୟସ୍ତ ହୋଇପଡ଼ିଲା। ତାହାକୁ ସେ ଯେ ଅକାରଣ ଦୁଃଖ ଦେଇଛି, ଏ କଥା ଭାବି ତାହାର ମନରେ କଷ୍ଟର ସୀମା ରହିଲା ନାହିଁ। ସେ ଦିନେ ଅତର୍କିତ ଭାବରେ ଆସି କଲିକତାରେ ଉପସ୍ଥିତ ହେଲା। କିନ୍ତୁ ମାୟାର ଦେଖା ମିଳିଲା ନାହିଁ। ସେତେବେଳେ ମାୟା କଲିକତାରେ ନ ଥିଲା। ରଘୁନାଥ ନିରାଶ ହୃଦୟରେ ବର୍ମା ଫେରିଗଲା। ତାହାର ମନେହେଲା, ଏପରି ହତଭାଗ୍ୟ ଜୀବନ ଥାଇ ଲାଭ କଅଣ? ଅକାରଣ ପରର କଷ୍ଟ! ଏ ଥର ମାୟା ଚିନ୍ତାରେ ସେ ବେଶି ବିବ୍ରତ ହେଲା। ମାୟା ତାକୁ ଏତେ ଭଲପାଏ–ଏତେ ପ୍ରେମରେ ପଥର ବି ପାଣି ହେଇଯାନ୍ତା[୨]! ନା, କେବଳ ସେ ଆପଣା ଜିଦ୍ ବଜାୟ ରଖୁଛି? ପାଞ୍ଚ ବର୍ଷ ହେଲା ଯେଉଁ ନାରୀ ତାକୁ ଭଲପାଏ, ସେହି ପ୍ରଥମ ଦର୍ଶନଦିନୁ ଯେ ତାର ଚରଣରେ ଆତ୍ମପ୍ରାଣ ବଳି ଦେଇଛି, ଯେ ତା ଲାଗି ସବୁ ତ୍ୟାଗକରିଛି, ଯେ ତାକୁ ଚରଣରେ ଆତ୍ମ, ପ୍ରାଣ ବଳିଦେଇଛି, ଯେ ତା ଲାଗି ସବୁ ତ୍ୟାଗକରିଛି, ସେ ନାରୀ ମାନବୀ ନ ଦେବୀ? ମାୟା ବିଦ୍ୟାବତୀ, ଧନ କୁବେରର କନ୍ୟା, ସଭ୍ୟ ମହିଳାଙ୍କର ଶିରୋମଣି, ରୂପରେ ଗୁଣରେ ତାହାର ତୁଳନା ଅସମ୍ଭବ; ସ୍ୱଭାବ ଏପରି ଧୀର, ଗମ୍ଭୀର, ଶାନ୍ତ ଓ ସଂଯତ ଯେ, ମର୍ମ[୩] ଫାଟିଲେ ସୁଦ୍ଧା ତା ତୁଣ୍ଡ ଫିଟେ ନାହିଁ–ଅନ୍ତର ପୋଡ଼ି ଜଳିଗଲେ ସୁଦ୍ଧା ଅଧର ତା ପ୍ରକାଶ କରେ ନାହିଁ। ଏପରି ମହିମାମୟୀ ଯେଉଁ ଯୁବତୀ, ତାହାର ସେ କଣ କରିଛି? କେବଳ ଅନିଷ୍ଟ, କେବଳ ଆଘାତ–ଆଘାତ ଉପରେ ଆଘାତ। ତାକୁ ଭାଙ୍ଗି ସେ ଚୂନା କରିଛି, ତାହାର ଅମୂଲ୍ୟ ଜୀବନକୁ ମାଟି କରିଛି। ପୁଣି କେବେ କେବେ ଭାବେ– ସେ କାହିଁକି ମାଟି କରିବ–

(୧) ସପ୍ତାହ, ସାତଦିନ, (୨) ତରଳିଯିବା ଅବସ୍ଥା, (୩) ମରମ, ହୃଦୟ।

ମାୟା ଛାଏଁ ତାକୁ ଭଲପାଇ ମାଟିହୋଇଛି। କଣ୍ଟା ବାଡ଼ରେ ଜଚାଡ଼ିହେଲେ କଣ କଣ୍ଟା ଫୋଡ଼ିହୁଏ ନାହିଁ? ତଥାପି ଯେତେ ଆତ୍ମଦୋଷ ପ୍ରକ୍ଷାଳନ କଲେ ସୁଦ୍ଧା ତାହାର ବିବେକ ସର୍ବଦା ତାକୁ ଦୋଷୀ କଲା–ସର୍ବଦା ତାକୁ ଅପରାଧୀ ପରି ଜେରାକଲା। ଖାଇଲେ, ବସିଲେ, ଶୋଇଲେ, ଉଠିଲେ ବିବେକ ତା ସଙ୍ଗେ କଳିକଲା–ତୁ କଣ କଲୁ, ତୁ କଣ କଲୁ! ଗୋଟାଏ ଅବଳାର ଜୀବନକୁ ସାଇଲୁ? ଏହି ପ୍ରତିଧ୍ୱନିରେ ତାର ଶାନ୍ତି, ସୁଖ ହଜିଗଲା। ସେ ନୀରବରେ କେତେବେଳେ ଚିନ୍ତାରେ ବୁଡି ରହିଲା, କେବେ ବା ରାଗରେ ବିବେକକୁ ଶାସନ କରିବାକୁ ଲାଗିଲା; ହେଲେ, ଶାନ୍ତି ପାଇଲା ନାହିଁ। ତା ମନରେ ସର୍ବଦା ମାୟାର ପ୍ରେମମୟୀ ମୂର୍ତ୍ତି ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୋଇ ପ୍ରତିଭାତହେଲା। ସେ ଯେତେ ଚେଷ୍ଟା କଲା ମାୟାକୁ ଭୁଲିବାକୁ, ମାୟା ସେତିକି ଦୃଢ଼ହୋଇ ତା ଅନ୍ତରରେ ଆସନ ପ୍ରତିଷ୍ଠାକଲା।

ଶେଷକୁ ରଘୁନାଥ ବୁଝିଲା, ସେ ମାୟାକୁ ହଜାର ଦୋଷ ଦେଲେ ସୁଦ୍ଧା ନିଜେ ତାକୁ ଅଜ୍ଞାତରେ ଅନେକ ଦିନୁ ଭଲପାଇଛି। ଏ ସତ୍ୟ ଯେଉଁ ଦିନ ସେ ଆବିଷ୍କାର କଲା, ସେ ଦିନ ବିସ୍ମୟ ଓ ଆନନ୍ଦ ଉଭୟେ ତାକୁ ଘେରିବସିଲେ। ସେ ଦୋଷ କରି ସୁଦ୍ଧା ଅପରାଧକୁ ଆତ୍ମଗ୍ଲାନିରୁ ତ୍ରାହି ପାଇବାପାଇଁ ପୁଣି ନିଜପକ୍ଷ ସମର୍ଥନର ଚିନ୍ତାରେ ବୁଡ଼ିଗଲା। ହଁ, ସେ ମାୟାକୁ ଭଲପାଏ, ତହିଁରେ ଦୋଷ କଣ? ସେ ସୀତାକୁ ଭଲପାଏ ବୋଲି କଣ ଆଉ କାହାକୁ ଭଲ ପାଇବାର ଅଧିକାର ନାହିଁ? ତାହା ହେଲେ ଲୋକେ ପ୍ରଥମା ପତ୍ନୀର ମୃତ୍ୟୁରେ ଦ୍ୱିତୀୟ ବିବାହ କରନ୍ତେ କାହିଁକି? ତାହା ତ ଦୋଷହୁଅନ୍ତା। କିନ୍ତୁ ପୁଣି ଭାବିଲା, ସେଠି ତ ବିବାହ ଗରଜର କଥା! ଏ ତ ଆଉ ତାହା ନୁହେଁ। ଏଠି ତ ସେ ଛାଏଁ ମଜିଛି। ଏ ଥର ତା ମନରେ ନାନା ଭାବର ଉଦୟ ହେଲା। ଥରେ ଯେତେବେଳେ ସେ ସୀତା ଛଡ଼ା ଅନ୍ୟ ସ୍ତ୍ରୀକୁ ଭଲ ପାଇଛି, ତାକୁ ବିବାହ କରିବାଟା କି ପାପ? ବରଂ ତାର ଜୀବନରକ୍ଷା। ସୀତା ତ ଯାହା ହେଉ, ସୁଖେ ଦୁଃଖେ ସଂସାର କରିଛି, ଆଉ ମାୟା ବିଚାରୀ ଯେ ଚାରିକୂଳରୁ ସରୁଛି। ମାୟା ମଧ ନାରୀ, ସେ କିପାଁ କୋମଳା ଅବଳାର ପ୍ରାଣରେ ଅଗି ଜାଳିବ? ସେ କିପାଁ ଅକାରଣ ତାକୁ ଶୂଳୀରେ ଦେବ? ଅନ୍ତତଃ ତାକୁ ବିବାହକରି ଯଦି ସେ ସୁଖୀ ହୋଇପାରେ, ତେବେ କଣ ତାର କର୍ତ୍ତବ୍ୟ ପୂର୍ଣ୍ଣହେବ ନାହିଁ?

ରଘୁନାଥ ବ୍ୟାକୁଳ ହୋଇ ସ୍ଥିରକଲା, ମାୟାକୁ ବିବାହ କରିବା ତାର କର୍ତ୍ତବ୍ୟ। ସେତେବେଳେ ମଧୁର ଗୋଧୂଳି ଆକାଶକୁ ଆଚ୍ଛନ୍ନ କରିଥିଲା। ରେଙ୍ଗୁନ ସହରର ସଡ଼କ ସବୁ ବିଜୁଳି ଅଲୋକମୟ ହେବା ଆରମ୍ଭ ହେଲାଣି। ସେ ବେଶଭୂଷା ହୋଇ ବୁଲି ବାହାରିଲା।

ବାଟରେ ଅସଂଖ୍ୟ ବର୍ମ୍ମୀ ସ୍ତ୍ରୀ ନାନାରଙ୍ଗର ଚକମକିଆ ରେଶମ ପୋଷାକ ପିନ୍ଧି, ମୁଣ୍ଡରେ ଚିକଣ ଚକ୍ରାକାର ଖୋଷାକରକୁ ଫୁଲ ପେନ୍ଥାମାନ ଖୋସି ମୁହଁରେ ସନାଖା (ଚନ୍ଦନା) ବୋଳି, ସୁନାରଙ୍ଗର ଝଲିରେ ଆଖି ଝଲସାଇ ଚାଲୁଥିଲେ। ସେମାନଙ୍କ ଗୋଡ଼ରେ ରେଶମୀ ଚଟି, ସୁନାର ପାଦବଳା, ହାତରେ ସୁନାର ମୋଡ଼ାଖଡୁ, କାନରେ ହୀରା ନଡ଼ାଉଁ (କର୍ଣ୍ଣଫୁଲ),

ବେକରେ ରଙ୍ଗିଆର ରେଶମୀ ପଣ୍ଟା (ଚାଦର), ଧଳା ଅଙ୍ଗିଛି(କରୁତା) ଉପରେ ସୁଶୋଭିତ। ପାନଖିଆ ବିମ୍ବାଧର ଲୋହିତ ବର୍ଣ୍ଣ। ରଘୁନାଥ ଏ ନାରୀମାନଙ୍କର କିନ୍ନରୀସୌନ୍ଦର୍ଯ୍ୟ ପ୍ରତି ଥରେ ଥରେ ଚାହୁଁଥିଲା, ଆଉ ଭାବୁଥିଲା, ଏ ସ୍ଥାନର ବିପଦ। ଏ ଦେଶ ଅଦ୍ଭୁତ–ଏଠି ବିବାହ ନାହିଁ, ବ୍ୟଭିଚାରରେ ଦୋଷ ମଧ ନାହିଁ। ଚାରିଆଡ଼େ ରୂପର ହାଟ–ରୂପର ପସରା ମେଲି ଅସଂଖ୍ୟ ଯୁବତୀ ପ୍ରତି ମୁହୂର୍ତ୍ତରେ ଯୁବକଙ୍କୁ ଫାନ୍ଦରେ ପକାଇବାକୁ ସତୃଷ୍ଣନୟନରେ ଚାହିଁଛନ୍ତି। ଏତେ ସୌନ୍ଦର୍ଯ୍ୟ, ଏତେ ମାଧୁର୍ଯ୍ୟ, ଏତେ ରଙ୍ଗ ବିଳାସିତା ମଧରେ ଆତ୍ମଦମନ କରି ରହିବା ଋଷିର ଅସାଧ। ତେବେ ସେ କାହିଁକି ଅକାରଣ ଆପଣାର ନିର୍ମଳ ଚରିତ୍ର କଳଙ୍କିତ କରିବ? ସେ କିପାଁ ବିବାହ ନ କରିବ? ଗୋଟିଏ ମ୍ଳେଚ୍ଛ ବର୍ମିଣୀର କ୍ରୀତଦାସ ହେବା ଅପେକ୍ଷା, ସତୀ ସାଧ୍ୱୀ ମାୟାର ସ୍ୱାମୀତ୍ୱ ଗ୍ରହଣ କଣ ଶତ ଗୁଣେ ଶ୍ରେୟ ନୁହେଁ। ପୁଣି ଭାବିଲା, ସେ ସର୍ବଦା ତା ପ୍ରତି ଆସକ୍ତା। କେଉଁଦିନ ତା ସେ ତାହା ଫାନ୍ଦରେ ପଡ଼ିପାରେ, ଆଜିଠୁଁ ସାବଧାନ ହେବା କଣ ଉଚିତ୍ ନୁହେଁ? ଭାବୁ ଭାବୁ ରଘୁନାଥ ଇରାବତୀ ନଦୀ ବନ୍ଧରେ ଆସି ପହଞ୍ଚିଲା। ଜେଟି ଉପରେ ବୁଲୁ ବୁଲୁ ସନ୍ଧ୍ୟା ହୋଇଗଲା, ଆକାଶରେ ଗୋଟିଏ ଯୋଡ଼ିଏ ତାରା ଦେଖାଦେଲା। ଆଉ ବିଶାଳବକ୍ଷା ଇରାବତୀର ଜଳଦର୍ପଣରେ କେଳି କରିବାକୁ ଲାଗିଲେ। ରଘୁନାଥ ଏକାନ୍ତ ମନରେ ତାରାସମୂହର ଜଳକ୍ରୀଡ଼ା ଦେଖୁଥିଲା। ହଠାତ୍ ପଛଆଡୁ କିଏ ତା କାନ୍ଧରେ ହାତ ପକାଇଲା। ରଘୁନାଥ ଫେରି ଚାହିଁଲା–ମିଷ୍ଟର ବନେଟ୍।

ମିଷ୍ଟର ବନେଟ୍ ପୋଲିସ କର୍ମଚାରୀ। ସେ ଜାତିରେ ଫିରିଙ୍ଗି, ଉଦ୍ୟାନଙ୍କ ମଦ୍ୟପାୟୀ, କିନ୍ତୁ ଶିଷ୍ଟାଚାରରେ ଅତି ଭଦ୍ର ଓ କଥାବର୍ତ୍ତାରେ ବେଶ ସୁରସିକ। ଲୋକେ ତା ସହିତ ଆଳାପ କରିବାକୁ ନ ଚାହିଁଲେ ସୁଦ୍ଧା, ସେ ଆପେ ବଳେ ପଡ଼ି ପରିଚୟ ଦିଏ–ପ୍ରଥମେ ବହୁତ ଭଦ୍ରତା ଦେଖାଏ, ଦିନେ ଅଧେ ହୋଟେଲରେ ଖୁଆଏ, କେବେ 'କ୍ଲବ'କୁ ଘେନିଯାଏ, ଥିଏଟରକୁ ନିଏ, ଶେଷକୁ ନିଜ ସଙ୍ଗିର ପକେଟରେ ହାତ ପକାଏ। ଥରେ ମୁଠାରେ ପାଇ ସେ ସର୍ବଶାନ୍ତ କରି ଛାଡ଼େ। ମଦ, ବେଶ୍ୟା, ଜୁଆଖେଳରେ ସେ ଧୁରନ୍ଧର। ରଘୁନାଥ ତାକୁ ଭଲରୂପେ ଚିହ୍ନେ, ସେଥିପାଇଁ ସେ ସତର୍କ ହୋଇ ତାଠାରୁ ଦଶହାତ ଦୂରରେ ଥାଏ। ମାତ୍ର ବେହିଆ ବନେଟ୍ ତା ସଙ୍ଗ ଛାଡ଼ିବାକୁ ଚାହେଁ ନାହିଁ। ରଘୁନାଥ ଧନୀ ଆଉ ଅବିବାହିତା, ତାକୁ ହାତ କଲେ କେତେ କାମ ନ ହେବ? ରୋଜ ଉପରି ମଦ ଖରଚଟା ତ ଉଠିଯିବ। କୋମ୍ପାନିର ପୂର୍ବତନ ମେନେଜର ସତୀଶ ବାବୁ ତ ଏହିପରି ଭଲଲୋକ ଥିଲେ। ବନେଟ ସାହେବ ଫାନ୍ଦରେ ପଡ଼ି ଶେଷହେଲେ। ଶେଷକୁ କୋମ୍ପାନୀର ତହବିଲ ତୋଷରପ କରି ବର୍ତ୍ତମାନ ଶ୍ରୀମନ୍ଦିରରେ। ବୟସ୍କ ବୁଦ୍ଧିମାନ ଯଦି ତା କଥାରେ ଭୁଲନ୍ତି, ତାହାହେଲେ ରଘୁନାଥ କି ଛାର! ସେ ରଘୁନାଥକୁ ଧରିବା ଯେପରି ସହଜ ମନେ କରିଥିଲା, ତଦ୍ରୁପ ହେଲା ନାହିଁ। ବର୍ଷେ ହେଲା, ସେ ତାହା ସଙ୍ଗରେ ଲାଗି ଟୋପାଏ ମଦବି ଚଖାଇପାରିଲା ନାହିଁ, ଅନ୍ୟାନ୍ୟ କଥା ତ ଦୂର। ତଥାପି ସେ ଚେଷ୍ଟାରୁ ବିରତ ନୁହେଁ। ଦୂରରୁ ଲକ୍ଷ୍ୟ କଲା, ରଘୁନାଥ ଜେଟିରେ

ବୁଲୁଛି, ସେ ମଧ୍ୟ ଆସି ବୁଲିଲା। କ୍ରମେ ଅନ୍ଧକାର ଘୋଟିଗଲା, ବନେଟ୍ ଅତର୍କିତ ଭାବରେ ଆସି ତା ପିଠିରେ ହାତ ମାଇଲା। ରଘୁନାଥ ମୁହଁ ବୁଲାଇ ତାଙ୍କୁ ଚାହିଁ କହିଲା,–''ଗୁଡ୍ ଇଭିନିଂ ମିଷ୍ଟର ବନେଟ୍! ଭଲ ଅଛନ୍ତି ତ?'' ସେ ରଘୁନାଥର ପ୍ରାସାରିତ କର ମର୍ଦ୍ଦନକରି ତା ସହିତ ବୁଲିବାକୁ ଲାଗିଲା। ଏଣୁ ତେଣୁ ପାଞ୍ଚକଥା ପଡ଼ିଲା ପରେ ସେ ରଘୁନାଥକୁ କହିଲା–''ମିଷ୍ଟର ମହାପାତ୍ର! ତୁମେ ବଡ଼ ଅରସିକ! ତୁମେ ସବୁବେଳେ ଏ କି ବ୍ରତ କରିଚ? ଯୁବା ବୟସ ତୁମର, ଏ ବୟସରେ ସ୍ଫୁର୍ତ୍ତି କାହିଁ? ଏ ବୟସରେ ମୁନି ଋଷି ହେଲେ ଚଳିବ ନା? ଜୀବନ କ୍ଷଣସ୍ଥାୟୀ! ଦୁଇ ଦଣ୍ଡ ମଉଜି କରି ଆନନ୍ଦରେ ଉଡ଼େଇ ଦେଲେ, ଯାଏ। ପାଣିର ଫୋଟକା ଚାହୁଁ ଚାହୁଁ ମିଳେଇ ଯିବ, ପକେଟରେ ପଇସା ଝଣ ଝଣ କରି ଲାଭ କଣ,–ଯଦି ଆମେ ଦୁନିଆଟା ଭୋଗ ନ କଲୁଁ?''

ସେତିକି ବେଳେ କୋଡେ଼ାଟି ବର୍ମୀ ଯୁବତୀ, ରୂପରେ ସେ ସ୍ଥାନଟି ଆଲୁଅ କରି ଚାଲିଗଲେ। ସେମାନେ କିଛି ଦୂର ଅଗ୍ରସର ହେଲା ମାତ୍ରେ ତାଙ୍କୁ ଚାହିଁ ବନେଟ୍ କହିଲା– ''ମୁଁ ଏଇ ସକାଶେ ସ୍ତ୍ରୀଙ୍କୁ ଭଲ ପାଏ। ଆହା କି ରୂପ! ଯେପରି ଫୁଲର ମାଳା! ଏ ଫୁଲବଣରେ କେଉଁ ମଧୁକର ମନ ବିଚଳିତ ନ ହେବ?'' ରଘୁନାଥ ତା କଥାରେ ବିରକ୍ତ ହୋଇ କହିଲା–''ବନେଟ୍!..., ତୁମେ ଏପରି କୁହ ନାହିଁ, ପର ସ୍ତ୍ରୀ ମାତ୍ରେ ଭଉଣୀ।'' ବନେଟ୍ ଗୋଟିଏ ଅଶ୍ଳୀଳ ଶପଥ କରି କହିଲା–''ଦୁନିଆଯାକ ମା ଭଉଣୀ ଦେଖିଲେ ପାଠ ସରିଲା, ସ୍ତ୍ରୀ ମାତ୍ରେ ଭୋଗର ସାମଗ୍ରୀ, ଜଗତରେ ମନୁଷ୍ୟର ତିନିଟା ଭୋଗ ସର୍ବଶ୍ରେଷ୍ଠ'; କେହି ସେ ଆଙ୍ଗୁଳି ଗଣି କହିଲା–''ମଦ, ମୁଦ୍ରା, ନାରୀ। ଏ ତିନିଟା ପୁରୁଷ ପୁଅର ନ ଥିଲେ, ସେ କଣ ଆଉ ଭଦ୍ରଲୋକ ବୋଲାଇବ?''

ରଘୁନାଥ ରୁକ୍ଷସ୍ୱରରେ କହିଲା–''ମିଷ୍ଟର ବନେଟ! ଏ କି ଭଦ୍ରତା ତୁମର? ମୋ ସାମନାରେ–''

ତାହାର କଥା ଶେଷ ହେବାକୁ ନ ଦେଇ ମିଷ୍ଟର ବନେଟ୍ କହିଲା–''ଆଚ୍ଛା, ଭାଇ, ଚାଲ ଆଜି ବଡ଼ ଥିଏଟରକୁ ଯିବା? ମୁଁ ଶୁଣିଚି ଫ୍ରାନ୍ସର ବିଖ୍ୟାତ ନର୍ତ୍ତକୀ ମିସ୍ ଆଲେନ୍ ଆସିଚି? ଯେଉଁ ସୁନ୍ଦର ନାଚ ତାର, ଦେଖିଲେ, ତୋ ମୁଣ୍ଡ ଘୂରିଯିବ, ଆଉ ଏ ସବୁ ଉପଦେଶ ଓ ବକ୍ତୃତାକୁ ସଙ୍ଗେ ସଙ୍ଗେ ଭୁଲିଯିବୁ।'' ରଘୁନାଥ ନାହିଁ କଲା, କିନ୍ତୁ ବନେଟ୍ ଯିଦ୍ କରି ନିଜ ହାତରୁ ତାକୁ ଟିକଟ କିଣିଦେବ କହିଲା। ରଘୁନାଥ ଅନେକ ଥର ଥିଏଟରେ, ବାୟୋସ୍କୋପ ଦେଖିଛି, ଭାବିଲା, ଥରେ ଅଧେ ଥିଏଟର ଦେଖିଗଲେ ଦୋଷ କଣ? ସେ ଅବଶେଷରେ .....

ସେ ଦିନ ରାତି ତିନିଟାକୁ ଯେତେବେଳେ ସେ ଘରକୁ ଫେରିଲା, ସେତେବେଳେ ଘୃଣାରେ, ଲଜ୍ଜାରେ ତା ଦେହ ଗୋଡ଼ଠୁଁ ମୁଣ୍ଡଯାକେ ଝିମିଝିମି ହେଉଥିଲା। ଯେଉଁ ବୀଭତ୍ସ ଦୃଶ୍ୟ ସେ ଦେଖିଲା, ତା ଜୀବନରେ କେବେ ଦେଖି ନଥିଲା। ରଙ୍ଗମଞ୍ଚରେ ନାରୀର ଉଲ୍ଲଙ୍ଗ

ନୃତ୍ୟାଭିନୟ ତାହାର ଯେତେ ମନେ ପଡ଼ିଲା, ସେତେ ତାର ସର୍ବାଙ୍ଗ ଜଳିଗଲା–ଏ ଦୃଶ୍ୟ ମନୁଷ୍ୟ ଦେଖିବାକୁ ଯାଏ, ପୁଣି ଭଦ୍ରବେଶଧାରୀ ମାନବ ! ପୃଥିବୀ ସଭ୍ୟ ହେଉଛି, ନା ରସାତଳକୁ ଯାଉଛି, ଏପରି ଥିଏଟର ବନେଟ ପରି ଜଘନ୍ୟ ମଦ୍ୟପାୟୀ ସହିତ ଦେଖିଯାଇ ଥିବାରୁ ତାର ଲଜ୍ଜା ଓ ଅନୁତାପର ସୀମାରହିଲା ନାହିଁ। ସେ ଶଯ୍ୟାରେ ପଡ଼ି ନିଜକୁ ବହୁତ ଗାଳିଦେଲା। ତାହାର ମନେହେଲା, ସେ ପାପର ପ୍ରଥମ ପାହାଚକୁ ଆସ୍ତେ ଆସ୍ତେ ଓହ୍ଲାଉଛି। ତହିଁରେ ଆଶୁ ପ୍ରତିକାର ଆବଶ୍ୟକ, ନୋହିଲେ ନେଡ଼ି ଗୁଡ଼ କହୁଣିକୁ ଗଲେ ଆଉ ଉପାୟ ନ ଥିବ।

ହଠାତ୍ ତା ମନରେ ହେଲା, ନିରୀହ ସରଳା ମାୟାକୁ ବିବାହକରି ସୁଖକରିବା ଦୋଷ, ଆଉ ଏ ପାପାଗରରେ ପହଁରିବା ଭାରି ପୁଣ୍ୟ ! ଆଜି ଥିଏଟର ଦେଖିବ, କାଲି ମଦ ଖାଇବ, ପରଦିନ ଚରିତ୍ର ହରାଇବ, ଯା ଯା କପାଳରେ ଅଛି, ସେ କାହିଁକି ଗୁଣବତୀ ସୁଶୀଳା ସ୍ତ୍ରୀ ରତ୍ନକୁ ବିବାହ କରିବ ? ଘୁଷୁରିକୁ ପାଚିଲା କଦଳୀ–ଅନ୍ଧ ହାତରେ ଦର୍ପଣ ?

ସେ ଆତ୍ମଗ୍ଲାନିରେ ବୁଡ଼ି ସେ ଦିନ କାମକୁ ଗଲା। କାମରେ ତାହାର ମନ ଲାଗିଲା ନାହିଁ। ତାର ଅର୍ଦ୍ଦଳି ଦିନୁ ସିଂ ଆସି ସଲାମ କରି ଠିଆ ହେଲା। ଖବର ଦେଲା, ଜଣେ ସ୍ତ୍ରୀ ଲୋକ ତାଙ୍କ ସହିତ ଦେଖା କରିବାକୁ ଆସିଛି।

ରଘୁନାଥ ଉଠି ଖାସକାମଡ଼ାକୁ ଗଲା, ଦେଖିଲା, ଆଗନ୍ତୁକା ମଧ୍ୟବୟସୀ-ପ୍ରାୟ ତିରିଶ ସେପାରି, କିନ୍ତୁ ପରମ ସୁନ୍ଦରୀ। ଆଉ ତାର ବେଶଭୂଷା ଦେଖି ଭାବିଲା, ସେ ଅତ୍ୟନ୍ତ ବିଳାସିନୀ।

ସ୍ତ୍ରୀଲୋକଟି ବାବୁଙ୍କୁ ଦେଖି ହସି ହସି ଅଭିବାଦନ କଲା। ତାକୁ ବନେଟ୍ ସାହେବ ପଠାଇଛନ୍ତି। ଯଦି ବାବୁଙ୍କର ଇଚ୍ଛା ହୁଏ, ତାଙ୍କ କତିରେ ରହିବ। ଏହା କହି ନିଜର ଘରକରଣା ଓ ସିଲେଇ ଆଦି ନିପୁଣତା ବୟାନ କଲା। ସେ ପୂର୍ବେ ଜଣେ ମୁସଲମାନର ରକ୍ଷିତା ଥିଲା। ମୁସଲମାନଟି ମରିଗଲା, କିନ୍ତୁ ତାକୁ ବିପୁଳ ସମ୍ପତ୍ତି ଦାନ କରିଯାଇଛି। ବର୍ତ୍ତମାନ ତାହାର କେବଳ ଗୋଟିଏ ସାନ ପୁଅ ଅଛି, ତାକୁ ବି ସେ ଫୁଙ୍ଗିଚାଉଁ (ପାଠଶାଳା) ଛାଡ଼ିଦେଇଛି। ରଘୁନାଥ ସବୁ ଶୁଣି ଶୁଣି ରାଗରେ ଫୁଲି ଉଠି, ତଥାପି ସଂଯତ ହୋଇ ତାକୁ ବିଦାୟ ଦେଇ ଘରକୁ ଆସି ନ ଗାଧୋଇ, ନ ଖାଇ ଖଟରେ ପଡ଼ିଗଲା ଏବଂ ଆଲମିରାରୁ ମାୟାର ସୁନା ଫ୍ରେମବନ୍ଧା ଫୋଟୋଟି ଆଣି ବକ୍ଷଃସ୍ଥଳରେ ଚାପିଧରି ଆବେଗକମ୍ପିତ ଅଧରରେ ଘନ ଘନ ଚୁମ୍ବନ କରିବାକୁ ଲଗିଲା। ତା ହୃଦୟ ମାୟାଲାଗି ବ୍ୟାକୁଳ ହୋଇଉଠିଲା। ସେ କଳ୍ପନାରେ ମଧ୍ୟ ଅନୁଭବ କଲା, ସେହି ରାତ୍ରିର ନିବିଡ଼ ଆଲିଙ୍ଗନ, ଆଉ ମାୟାର ସେହି ସଲଜ୍ଜ ଦୃଷ୍ଟି।



# ସପ୍ତବିଂଶ ଅଧ୍ୟାୟ

ମାୟା ସିନା ଅକାରଣ ଅଭିମାନ କରି ବର୍ମାରୁ ଚାଲିଆସିଲା। କିନ୍ତୁ ତା ମନରେ ଦିନ ରାତି ରଘୁନାଥର ମନୋହର ମୂର୍ତ୍ତି ଜାଗ୍ରତ; ପ୍ରତି ନିମିଷରେ ସେ ଭାବେ, ସେହି ସୁନ୍ଦର ଚମ୍ପାଗୋରା ତନୁ, ଆଉ ସେହି ନୀଳେନ୍ଦୁବରନୟନ[୧]। ରଘୁନାଥର ସେ ସରଳ, ସୁଢ଼ଳ, ଉନ୍ନତ ଦୀର୍ଘାକାର ଦେହ, କପାଳ ଉପରେ କଳା କୁଞ୍ଚିତ କେଶଦାମର ତରଙ୍ଗାୟିତ ସୌନ୍ଦର୍ଯ୍ୟ, ଆଉ ସେ ହୀରକ ସଦୃଶ ଦନ୍ତପନ୍ତିର ହାସ – ସେହି ବଂଶୀ-ନାସିକା[୨], ତାର ଯୁବତୀ ହୃଦୟରେ ଭାବୀ ସ୍ୱାମୀର ରୂପକ ମନୋମୋହନ ଚିତ୍ର ଯେତେ ଉଜ୍ଜ୍ୱଳ ହେଉଥିଲା, ମିଳନର ଆକାଂକ୍ଷା ସେତିକି ପ୍ରବଳ ହେଉଥିଲା। ବାସନାର ଆକୁଳତାରେ ସେ ଦିନ ତା'ର ଗଣି ଠିକ କରୁଥିଲା, ଆଉ ନିତି ଚାହୁଁଥିଲା ଡାକ ପିଆଦାକୁ।

ଅବଶେଷରେ ଡାକବାଲା ଦିନେ ଦେଖାଦେଲା। ଗୋବର୍ଦ୍ଧନ ତା ହାତକୁ ଚିଠିକିତାଟା[୩] ଆଣିବା ପୂର୍ବରୁ ଝରକା କତିରେ ଠିଆହୋଇ ମାୟା ଦେଖିପାରିଲା। ସେ ଉଦ୍‌ବେଗର ଦୋତାଲାର ସିଢ଼ି ପାରିହୋଇ ତା ହାତରୁ ରଘୁର ଚିଠିନେଇ ଆପଣା କୋଠରୀରେ ପଶି ଦ୍ୱାର କିଳିଦେଲା। ତାର ବିଳମ୍ବ ସହ୍ୟ ହେଲା ନାହିଁ, କମ୍ପିତ ଆଙ୍ଗୁଳିରେ ଲଫାପା ଚିରି ବହୁ ଆକାଂକ୍ଷିତ ପତ୍ରକୁ ବନ୍ଧନ ମୋଚନକଲା; କିନ୍ତୁ ପତ୍ର ଆଠ ଦଶ ଛତ୍ର ପଢ଼ି ତା ଦେହ ଶୀତେଇ ଗଲା। ସେ ଚଉକିରୁ ଉଠି ଆସି ହାତ ଗୋଡ଼ ଲମ୍ବାଇ ଶଯ୍ୟାରେ ପଡ଼ିଗଲା। ତା ମନରେ ହେଲା, କୋଠାଛାତ ତାକୁ ମାଡ଼ି ବସିଛି, ଅବା ଆକାଶ ତା ମୁଣ୍ଡରେ ଭାଙ୍ଗିପଡ଼ୁଛି।

ରଘୁନାଥର ଏପରି ନିଷ୍ଠୁର ପତ୍ର! କେମିତି ତା ହାତ ଗଲା, କେମିତି ସେ ଲେଖିଲା। ଅକାରଣ ନିର୍ଦ୍ଦୋଷ ମାୟାକୁ କଷ୍ଟସାଗରରେ ଭସାଇବାକୁ ତାର ଏ ଚେଷ୍ଟା। ଶେଷକୁ ତା ମନରେ ଏହାହିଁ ଥିଲା। ମାୟା ବହୁକ୍ଷଣ ଶୂନ୍ୟଦୃଷ୍ଟିରେ ଛାତକୁ ଅନେଇରହିଲା। କିଛିକ୍ଷଣ ପରେ ତା' ଦେହରେ ଚେତନା ପଶିଲା। ସେ ଚିଠିଖଣ୍ଡିକ ସଂପୂର୍ଣ୍ଣ ପଢ଼ିଲା। ସେଥିରେ ସବିସ୍ତାରରେ ଲେଖାଥିଲା ରଘୁନାଥ ସମଗ୍ର ଜୀବନୀ। ମାୟାକୁ ଇନ୍ଦ୍ରଜାଲ ପରି ବୋଧହେଲା, ତାର ବିଶ୍ୱାସ ମଧ୍ୟ ହେଲା ନାହିଁ ଯେ, ରଘୁନାଥ ତାକୁ ତ୍ୟାଗକରିଛି – ଏକାବେଳକେ ନିଷ୍ଠୁରରୂପେ ଚିର ଦିନ ସକାଶେ ତ୍ୟାଗକରିଛି। କିନ୍ତୁ ସେଇଟା ତ ସତ, ତା ଛାତି ସେତେବେଳେ ବରଫ ପରି ଥଣ୍ଡା।

ଘଣ୍ଟାରେ ପାଞ୍ଚଟା ବାଜିଲା। ସେ ଦିନ ମହିଳା-ସମ୍ମିଳନୀର ପ୍ରକାଶ୍ୟ ଅଧିବେଶନ; ସେଥିରେ ତାର ବକ୍ତୃତା ଦେବାର କଥା। ପ୍ରବନ୍ଧ ମଧ୍ୟ ଲେଖିରଖିଛି। ବର୍ତ୍ତମାନ ତାହାର ସହକାରିଣୀ କମଳବାସିନୀ ତାକୁ ଡାକିବାକୁ ଆସିବ। ସେ ଦୁଃଖକୁ ପଛକୁ ପକାଇ ଲୁଗାପଟା ପାଲଟି ବାହାରକୁ ଆସିଲା। ଦିନ ସେତେବେଳେ ରତ ରତ। ହନିଫ୍ ଆସି ଜଣାଇଲା, ଦାଣ୍ଡଘରେ ସୁରେନ୍ ବାବୁ ଅପେକ୍ଷା କରୁଛନ୍ତି। ଠିକ୍ ଯେଉଁ ସମୟରେ ଯେଉଁ ଲୋକ ସହିତ

(୧) ନୀଳଆଖି, ସୁନ୍ଦର ଆଖି, (୨) ଧାରୁଆ ନାକ, (୩) ଖଣ୍ଡକ।

ଦେଖା କରିବାକୁ ମାୟା ସଂପୂର୍ଣ୍ଣ ଅନିଚ୍ଛୁକ, ସେ ଆସି ପହଞ୍ଚିଛି ଶୁଣି, ମାୟା ବିରକ୍ତ ହେଲା; ମନେ କଲା, ହନିଫ ହାତରେ ମନାକରି ପଠାଇବ; କିନ୍ତୁ ପରକ୍ଷଣରେ ନିଜେ ଆସି ଉପସ୍ଥିତ ହେଲା। ସୁରେନ ବାବୁ କୁଶଳ ପ୍ରଶ୍ନ ପଚାରି ସାରି ବର୍ମା ଦେଶର ହାଲ ଚାଲ ପଚାରିଲେ। ମାୟା ଅନେକ ପ୍ରଶ୍ନର ଉତ୍ତର ଦେଇ ବିରକ୍ତହେଲା, ତଥାପି ସୁରେନ ତାକୁ ପଚାରିବାକୁ ଛାଡ଼ିଲା ନାହିଁ, କାରଣ ତା ମନ ଭିତରେ ଅଗ୍ନି ଜଳୁଥିଲା। ମାୟାକୁ ଅଙ୍କଲକ୍ଷ୍ମୀ କରିବାର ବାସନା ଯେ ଆବାଲ୍ୟ ପୋଷଣ କରିଛି, ଯାହାଲାଗି ସେ କମଳବାସିନୀକି ଆଶା ଦେଇ ସୁଦ୍ଧା ତ୍ୟାଗ କରିଛି, ସେ ମାୟା ବିଶ୍ୱାସଘାତିନୀ ପରି ରଘୁନାଥ ଉପରେ ଢଳିପଡ଼ିଛି। ସାମାନ୍ୟ ରଘୁନାଥ, ଉଡ଼ିଆ ଚଢ଼େଇ, ଅପରିଚିତ ଓଡ଼ିଆ କୁଲି, ସେ ହେଲା ମାୟାର ମନଚୋର? ଆଉ ଜମିଦାର ପୁତ୍ର, ଖାନ୍ଦାନୀ ବଂଶର ପିଲା, ଶିକ୍ଷିତ ସଭ୍ୟ ସୁରେନ୍ଦ୍ର ହେଲା ତାର ଉପେକ୍ଷାର ପାତ୍ର ! ହିଂସାରେ ତା ମନ ସର୍ବଦା ଜଳୁଥିଲା। ସେ ଯେଉଁ ଦିନ ଶୁଣିଲା ମାୟା ରେଙ୍ଗୁନ ଯାଉଛି, ସେ ଦିନ ଅଗ୍ନିରେ ଘୃତାହୁତି ଦେଲା। ମାୟା ସହିତ ଦେଖା କରିବାକୁ ତାର ବଡ଼ ଇଚ୍ଛା ଥିଲେ ସୁଦ୍ଧା, ନିଜ ଭଉଣୀ ଲୀନାର ବିବାହଲାଗି ସେ ଗ୍ରାମକୁ ବାହାରି ଯାଇଥିଲା, ସେଥିପାଇଁ ତାର ଆଜି ଆକସ୍ମିକ ଆଗମନ। ମାୟା ସବୁ ପ୍ରଶ୍ନର ଉତ୍ତର ଦେଇ ନମସ୍କାର କରି ଯିବାକୁ ବାହାରିଲା, କିନ୍ତୁ ସୁରେନ୍ଦ୍ର ଏ ପର୍ଯ୍ୟନ୍ତ ଅସଲ କଥାଟି କହିପାରି ନ ଥିଲା। ସେ ବାଧ ହୋଇ ଭଦ୍ରତାର ସୀମା ଲଘଂନ କରି କହିଲା "ମାୟା, ତୁମେ ଏତେ ପାଠ ପଢ଼ି, ଏତେ ସୁନାମ ଅର୍ଜନ କରି ସବୁ ବୃଥାକଲ। ତୁମେ ଯା ଓଡ଼ିଆ କୁଲିଟାକୁ ବିବାହ କରିବାକୁ ଯାଉଚ! ରଘୁନାଥ କଣ ତୁମର ଉପଯୁକ୍ତ ?" ଏ କଥା ଶୁଣି ମାୟା ରାଗରେ ଗୋଡ଼ଠୁଁ ମୁଣ୍ଡଯାକେ କମ୍ପିଗଲା। ସେ କୁପିତା ଫଣିନୀ ପରି ସଳଖ ଠିଆହୋଇ ସଗର୍ବରେ କହିଲା – "ସେଥିରେ ତୁମର କଣ ଅଛି, ସୁରେନ ବାବୁ? ତୁମେ କଣ ଅଭଦ୍ର ପରି କଥାକହୁଚ?"। ସୁରେନ ତା କଥାର ଉତ୍ତର ଦେଇଥାନ୍ତା, କିନ୍ତୁ ସେହି ସମୟରେ କମଳବାସିନୀ ଆସି ସେ ଘରେ ପ୍ରବେଶକଲା। ମାୟା ଓ ସୁରେନକୁ ଏକାଠି ଦେଖି କମଳବାସିନୀର ଛାତି ପୋଡ଼ିଗଲା। ମାୟା ଯେ ତାହାର ସମସ୍ତ ସୁଖ ମୂଳରେ କଣ୍ଟକ ସଦୃଶ, ଏ କଥା ଭାବି ଈର୍ଷାରେ ତା ଆଖି ଜଳିଉଠିଲା। ସୁରେନ ହସି ହସି ତାକୁ ନମସ୍କାରକଲା। କମଳବାସିନୀ ତାହା ନ ଦେଖିଲା ପରି ମାୟାକୁ ଅନାଇ ସହାସ୍ୟବଦନରେ କହିଲା–"ମୁଁ ତୋତେ ଏ ଘର, ସେ ଘର ଖୋଜିଲିଣି, ୬ଟା ବାଜିବାକୁ ଯେ ଆଉ ପନ୍ଦର ମିନିଟ୍ ବାକି, ଚାଲ, ସଭାର ବେଳ ହେଲାଣି, ସମସ୍ତେ ଚାହିଁଥିବେ।" ସେମାନେ ଉଠିବା ସମୟରେ ସୁରେନ ପଚାରିଲା, "କି ସଭା ଶୁଣେ? ହଁ, ମୁଁ ବି ଗୋଟିଏ ନୋଟିସ୍ ପାଇଚି। ଏ ତ ସାଧାରଣ ସଭା, ମୋ ଯିବାରେ ଦୋଷ କଅଣ? ଚାଲ ନା, ମୁଁ ତୁମମାନଙ୍କ ସଂଗରେ ଯିବି।" ମାୟାକୁ ସୁରେନ ସହିତ ଯିବାର ଇଚ୍ଛା ନ ଥିଲେ ସୁଦ୍ଧା ନିରୂପାୟ ହୋଇ ଆସି ମୋଟରରେ ବସିଲା।

ସେ ଦିନ ସଭା ଶେଷହେବା ପରେ, ସୁରେନ୍ ମାୟାକୁ ଘରେ ପହଁଞ୍ଚାଇ ଦେବାକୁ ତା ସହିତ ଆସିଲା। ସେମାନେ ଗାଡ଼ିରେ ବସିଲେ। ସୁରେନ୍ ମାୟାର ପ୍ରଶଂସା ଆରମ୍ଭ କରି କହିଲା–"ଏତେ ଲୋକ ବକ୍ତୃତା ଦେଲେ, କିନ୍ତୁ ତୁମ ତଳେ ସମସ୍ତେ। ତୁମେ ଯେତେବେଳେ କହିଲ, 'ନାରିଶକ୍ତି ହିଁ ଭାରତର ଜାତୀୟ ଶକ୍ତିର ମୂଳ', ସେତେବେଳେ ମୁଁ ମନେ ମନେ ତୁମକୁ ସେହି ଶକ୍ତିର ଜୀବନ୍ତ ମୂର୍ତ୍ତି ମନେକରୁଥିଲି। ବାସ୍ତବିକ୍, ତୁମେ ବଙ୍ଗଜନନୀର ଶକ୍ତିମତୀ ବରପୁତ୍ରୀ।" କିନ୍ତୁ ମାୟା ନୀରବରେ ଭାବୁଥିଲା ରଘୁନାଥର କଥା। ସୁରେନ୍ଦ୍ର ପୁନର୍ବାର କହିଲା, "ମାୟା ତୁମେ ଏଡ଼େ ନିଷ୍ଠୁର–ଏଡ଼େ ପାଷାଣ। ତୁମଠିଁ କଣ ହୃଦୟ ନାହିଁ!" ମାୟାଠୁଁ କିଛି ଉତ୍ତର ନା ପାଇ ସେ ବ୍ୟଥିତ ଦୀର୍ଘଶ୍ୱାସ ସହ ନୀରବହେଲା। ବିଦାୟ ନେବା ବେଳେ କରୁଣ ସ୍ୱରରେ କହିଲା, "ମାୟା, ମୋତେ ମନେରଖିଥିବ।"

ମାୟା ଆପଣା କୋଠରୀରେ ଆସି ଆରାମ ଚଉକିରେ ପଡ଼ିଗଲା। ଉତ୍ତେଜନାରେ ସେ ଏତେବେଳଯାଏ କାମରେ ଲାଗିଥିଲା। ସେଥିରେ ତାହାର ଅନ୍ତରରେ ବେଦନା ରୁଦ୍ଧ ହୋଇଯାଇଥିଲା। ବର୍ତ୍ତମାନ ସେ ସମୟ ଚାଲିଗଲା। ସେ ମୂଳ-ଉପୁଡ଼ା ଗଛପରି ଭାଙ୍ଗି ପଡ଼ିଲା।

ମଣିଷ ମଣିଷକୁ ପ୍ରେମକରେ, ଏହି ତ ତାର ଦୋଷ? ସେ ଯଦି ରଘୁନାଥକୁ ପ୍ରେମକରିନଥାନ୍ତା, ଆଜି ତାର ଏ ଦାବଦହନ କାହିଁକି ହୁଅନ୍ତା? ସେ ଅନେକ ଭାବିଲା, କିଛି ଉତ୍ତର ପାଇଲା ନାହିଁ,–ଆତ୍ମଧିକାର ମଧ ଜନ୍ମିଲା ନାହିଁ। ଖାଲି ମନେହେଲା, ରଘୁନାଥର ସେହି ପଦ୍ମପ୍ରଫୁଲ୍ଲ ମୁଖଶ୍ରୀ, ଆଉ ସେ ଚକ୍ଷୁର ସୌନ୍ଦର୍ଯ୍ୟ, ସୀତାପ୍ରେମରେ ପୂର୍ଣ୍ଣ ସେହି କରୁଣ କୋମଳ ଦୃଷ୍ଟି। ଅଚିହ୍ନା ଅଜଣା ସୀତା ଉପରେ ଅନ୍ତରର ତିକ୍ତ ବେଦନାର ଜ୍ୱାଳା ଢାଳିଦେଇ ମାୟା ଉଦାସ ଦୃଷ୍ଟିରେ ଆକାଶକୁ ଚାହିଁ ବସିଲା। ସୀତାର ଭାଗ୍ୟ ଉପରେ ଅଯଥା ଈର୍ଷାରେ ତା ଛାତି ଗୁରୁଗୁରୁ ହେଉଥିଲା। କିନ୍ତୁ ପ୍ରତିକାରର ଉପାୟ କିଛି ଖୋଜିପାଇଲା ନାହିଁ। ସେ ନ ଖାଇ ନ ପିଇ ବିଛଣାରେ ମୋଡ଼ିହୋଇ ପଡ଼ିଲା ମୁଣ୍ଡବଥା ବାହାନାରେ।

କନ୍ୟାକୁ ଚାହିଁ ସୁଧାମୟୀ ଆଶ୍ଚର୍ଯ୍ୟ ହେଲେ। ମାୟାର ସ୍ଥିର ଗମ୍ଭୀର ମୁଖଶ୍ରୀରେ ଯେ ଅଜଣା କଳା ମେଘଟିଏ ଢାଙ୍କିହୋଇଛି, ଏହା ସେ କେତେ ଦିନୁ ଲକ୍ଷ୍ୟ କଲେଣି, କିନ୍ତୁ କାରଣ ବୁଝି ନ ପାରି ବିବ୍ରତ ହୋଇ ପଡ଼ିଥିଲେ। ମାୟା ତ ଆଉ ମୁହଁରେ କିଛି କହେ ନାହିଁ, ପଚାରିଲେ କହେ–ବେଶ ଭଲ ଅଛି; ହେଲେ ମା ମନ କେତେବେଳେ ବୁଝେ? ଏତେଦିନ ସଂସାର କରି କଣ ସେ ଜାଣିପାରି ନାହାନ୍ତି? ମାୟା ଯେ ରଘୁନାଥଗତପ୍ରାଣ, ଏହା ମା ହୋଇ ସେ ବେଶ ଜାଣନ୍ତି, କିନ୍ତୁ ସେଥିରେ ବା ଦୁଃଖର କାରଣ କଣ, ସେତିକି ବୁଝିବାକୁ ତାଙ୍କ ହୃଦୟ ବ୍ୟଗ୍ର ହୋଇଉଠିଲା।

ଯେଉଁ ଦିନ ରଘୁନାଥର ଚିଠି ଖଣ୍ଡିକ ତାଙ୍କ ହାତରେ ପଡ଼ିଲା, ସେ ଦିନ ତାଙ୍କର ମନରେ ହେଲା, ମାୟା ଅକୂଳ ସମୁଦ୍ରରେ ଭାସମାନ।

ନିଭୃତ ନିସ୍ତବ୍ଧା କକ୍ଷରେ ମା ଝିଅ ଶୋଇଶୋଇ କଥାବାର୍ତ୍ତା ହେଉଥିଲେ। ଝିଅ କାନ୍ଦୁଥିଲା ମା କୋଳରେ। ମା ତାର ମୁହଁପୋଛି ଆଦର କରୁଥିଲେ, ତାଙ୍କ ଆଖି ମଧ୍ୟ ଶୁଖିଲା ନ ଥିଲା, କିନ୍ତୁ ସେ କଣ କହି ବା ସାନ୍ତ୍ୱନା ଦେବେ ? ସେ ଦୁହିତାର ମର୍ମବେଦନା ସବୁ ନୀରବରେ ବୁଝୁଥିଲେ। ତାଙ୍କର ମନେ ହେଉଥିଲା, ରଘୁନାଥ ଯଦି ଏ ଘରେ ଗୋଡ଼ ଦେଇ ନ ଥାନ୍ତା–ପୁଣି ପରକ୍ଷଣରେ ଭାବିଲେ, ଯାହା ହେବାର ତ ହେଲାଣି, ଏଥର ଉପାୟ ? ତାଙ୍କ ଦୃଷ୍ଟି ଶୂନ୍ୟ, ସେ ଆକୁଳ ଭାବରେ ଡାକିଲେ "ଭଗବାନ୍ !"

ଭାଗବାନ୍ ଶୁଣିଲେ ପରା ! ଶିରୀଶ ଆସି ଖୁଡ଼ୀଙ୍କି ଡାକି ନେଲା। କେବଳବାବୁ ଦାଣ୍ଡ ଘରେ ବିଶ୍ରାମ କରୁଥିଲେ। ତାଙ୍କ ସାମନାରେ ଚିଠି ଖଣ୍ଡେ ମେଲା ହୋଇ ପଡ଼ିଥିଲା। ସୁଧାମୟୀ ତାହା ଉଠାଇ ପଢ଼ିଲେ। କେବଳବାବୁ କହିଲେ, "କଣ ଯିବା ନା ନାହିଁ ?"

ସୁଧାମୟୀ କିଛି କ୍ଷଣ ଭାବି କହିଲେ, "ମାୟାର ଦେହ ଭଲ ନାହିଁ, ଚାଲ ନା, ତାକୁ ନେଇ ବୁଲି ଆସିବା।"

କେବଳବାବୁ ବ୍ୟସ୍ତ ହୋଇ ପଚାରିଲେ, "ମାୟାର ଦେହ କେମିତି ?"

ସୁଧାମୟୀ ଦୁଃଖିତ କଣ୍ଠରେ କହିଲେ, "ଆଉ କେମିତି ? ବାସ୍ତବିକ୍ ବଡ଼ ଅନ୍ୟାୟ ହେଲା। ହଠାତ୍ ଅଜଣା ଅଶୁଣା ଲୋକକୁ ଆପଣା ଘରେ ସ୍ଥାନଦେଇ ଏ ବିଭ୍ରାଟକଲ।"

କେବଳବାବୁ କହିଲେ, "ଅମୀ-ମା। ତୁମେ ବଡ଼ ଭୁଲ ବୁଝିଚ ରଘୁନାଥକୁ, ସେ ରତ୍ନଟିଏ। ଆମ କପାଳରେ ମନ୍ଦ ଥିଲା, ତେଣୁ ଏପରି ଘଟିଚି। ଭଗବାନ୍ କଲେ ପୁଣି ମଙ୍ଗଳ ହେବ। କିନ୍ତୁ ତାକୁ ଦୋଷ ଦିଅନା। ସେ ମହତ ଉଦାରହୃଦୟ ବାଳକ, ନିର୍ମଳ, ନିଷ୍କଳଙ୍କ।"

ସୁଧାମୟୀ ନୀରବ ହେଲେ। ତାଙ୍କ ଆଖିରେ ମାୟାର ଦୁଃଖ ବଡ଼ ଦିଶୁଥିଲା। ରଘୁନାଥ ଭଲ, ସେଥିରେ ତାଙ୍କର କି ଲାଭ ? ତା ଉପରେ ତାଙ୍କର ସ୍ନେହର ଅଭିମାନୀ ଉତ୍ତରୋତ୍ତର ବଢୁଥିଲା। ଚାରି ଛ ବର୍ଷ କାଳ ଯାହାକୁ ପୁତ୍ରପରି କୋଳକୁ ଆଉଜାଇ ନେଇଥିଲେ, ସେ ଶେଷରେ ମାୟାକୁ ଅତଳ ସମୁଦ୍ରରେ ଭସାଇଲା ? ଏ ଚିନ୍ତାର ତୀବ୍ରତା ତାଙ୍କୁ ବିଚାରଶୂନ୍ୟ କରିଥିଲା। ନିଃସହାୟ, ନିରୂପାୟା ନାରୀ। ଜାମାତା ଓ ଦୁହିତାର ସୁଖର ଘରକରଣା ବଦଳରେ କନ୍ୟାର ଚିରକରୁଣ କ୍ରନ୍ଦନ କପାଳରେ ଶୁଣିବାକୁ ଥିଲା ! ସେ ଦୁଃଖିତ ହୋଇ ସେ ସ୍ଥାନରୁ ଚାଲିଗଲେ।

କେବଳବାବୁ ଯିବାର ସ୍ଥିରକଲେ। ଦେଶପରିବର୍ତ୍ତନଦ୍ୱାରା ମାୟାର ହୃଦୟରେ ଶାନ୍ତି ଆସିପାରେ, ଏହା ଭାବି ବନ୍ଧୁବର ଚେମନ୍‌ଲାଲଙ୍କ ବସାରେ ତାକୁ ଛାଡ଼ି ଆସିଲେ। ବିବାହବ୍ୟାପାରରେ କେତେଦିନଯାଏ ମାୟା ଏପରି ବ୍ୟସ୍ତ ରହିଲା ଯେ, ତାହାର ଘନୀଭୂତ ଦୁଃଖଟା କିଛି ଦିନପାଇଁ ପାସୋରି ଗଲା। ତୁଳାର ସାହଚର୍ଯ୍ୟ ତାକୁ ବହୁତ ସାନ୍ତ୍ୱନା ଦେଲା।

ଆତ୍ମୀୟଲୋକ ନିକଟରେ ମନର କଥା କଣ ଗୋପନ ରହେ? ମାୟା କେତେ ଦିନ ବା ଲୁଚାନ୍ତା! ତୁଳା କ୍ରମେ କ୍ରମେ ମାୟାର ମନକଥା ବୁଝିଲା। ସେଥିରେ ସହଭାଗିନୀ ହେଲା ମୀରାବାଈ। ଦିପହରିଆ ଆମ୍ବ ବଗିଚାର ଗଛମୂଳେ ଚଟେଇ ପାରି ମାୟା ଓ ମୀରା ବସି ଦୁଃଖସୁଖ ହୁଅନ୍ତି। ମାୟା ମୀରାର ଦୁଃଖକଥା ଭାବି ବେଦନାରେ କାତର ହୋଇଯାଏ।

ମୀରା ପରମ ସୁନ୍ଦରୀ–ସାରସ୍ୱତ ବ୍ରାହ୍ମଣକୁଳରେ ସୁଦ୍ଧା ଏପରି ସୁନ୍ଦରୀ କ୍ୱଚିତ୍ ଅଛନ୍ତି। ମାତ୍ର ଖାଲି ରୂପ ତାର ବିଶେଷତ୍ୱ ନୁହେଁ। ତାର ବିଶେଷତ୍ୱ, ତାହାର ସ୍ୱାମୀ ଲଛମନ ପ୍ରତି ଅଚଳା ଭକ୍ତି। ଲଛମନ ଯେ ତାର ସ୍ୱାମୀ ନୁହେଁ, ତାର ଦେବତା! ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ନିର୍ବିବାଦରେ ଆତ୍ମପ୍ରାଣ ଢାଳିଦେବାଲାଗି ସେ ସର୍ବଦା ପ୍ରସ୍ତୁତ। ହାୟ, ମାୟା ଯଦି ରଘୁନାଥକୁ ପାଇଥାନ୍ତା, ତେବେ କଣ ଏହିପରି କରିପାରି ନ ଥାନ୍ତା? ଏତେ ନ ହେଲେ କଣ କଣିକାଏ ସୁଦ୍ଧା ତାଦ୍ୱାରା ମହତ୍ କାର୍ଯ୍ୟ କିଛି ହୋଇ ନ ଥାନ୍ତା?

ସେ ଦିନ ଗୁଟି ବେଲୁଁ ବେଲୁଁ ମୀରା ମାୟା ମୁହଁକୁ ଚାହିଁ ହସିଲା। ମାୟା ମଧ ଅଳ୍ପ ହସି ଦେଇ କହିଲା–ମୁନିପତ୍ନୀ ହୋଇଚ? ଏ ବେଶ ତୁମକୁ ବେଶ ମାନୁଚି। ଲଛମନ ଦାଦା ସବୁଥିରେ ଏକାବେଳେ ଚରମପନ୍ଥୀ।'' ମୀରା ଦୀର୍ଘଶ୍ୱାସସହ କହିଲା, ''ତାଙ୍କ ବାପା ମା ତାଙ୍କୁ ଏ ବନ୍ଧନ ଦେଇଛନ୍ତି। ନୋହିଲେ ଦେଶସେବା ଛଡ଼ା ଆଉ ସେ କିଛି ଜାଣନ୍ତି ନାହିଁ। ଭଉଣି! ବହୁତ କଷ୍ଟରେ ତାଙ୍କ ସହିତ ମୁଁ କାଳ କାଟିଛି, କିନ୍ତୁ ଏପରି ଦେବତୁଲ୍ୟ ବ୍ୟକ୍ତି ଯେ ମୋର ସ୍ୱାମୀ, ଏହା ମୋ ପକ୍ଷରେ ସୌଭାଗ୍ୟର ବିଷୟ। ସେ ଯାହା ଭଲ ବୁଝନ୍ତି, ତାହା କରିଯାଆନ୍ତି, ସେଥିରେ ମୋର ସଂପୂର୍ଣ୍ଣ ରାଜି।''

ମାୟା ଦୁଃଖିତହୋଇ କହିଲା, ''ବାପା ମାର ଯେ ଗୋଟିଏ ପୁଅ!'' ମୀରା ଗର୍ବୋଜ୍ଜ୍ୱଳ ଦୃଷ୍ଟି ସହ କହିଲା, ''କିନ୍ତୁ ଏପରି ପୁଅ କେତେ ଜଣ ଅଛନ୍ତି? ଯେତେବେଳେ ତାଙ୍କୁ ଅଠର ବର୍ଷ, ସେତେବେଳେ ସ୍ୱାମୀଜୀଙ୍କ ବକ୍ତୃତା ସେ ଶୁଣନ୍ତି। ସେ ଥର ଯେ କଲିକତାରେ ତୁମ ଘରକୁ ଯାଇଥିଲେ, ସେହି ଦିନୁ ସ୍ୱାମୀଜୀ ହେଲେ ତାଙ୍କର ଜ୍ଞାନଧ୍ୟାନ। ତାଙ୍କର ଏତେବଡ଼ ତ୍ୟାଗ। ଜେଲ ଗଲେ, ମୁଁ କେତେ କାନ୍ଦିଚି? କିନ୍ତୁ ସେ ମୋତେ ସାନ୍ତ୍ୱନା ଦେଇ କହିଲେ–'ତୁମେ କାନ୍ଦୁଚ ବୀରପତ୍ନୀ ହୋଇ! ଯେ ଦେଶରେ ପୃଥ୍ୱୀରାଜଙ୍କୁ ସଂଯୁକ୍ତା ନିଜ ହାତରେ ସାଞ୍ଜୁ ପିନ୍ଧାଇ ଯୁଦ୍ଧକୁ ପଠାଇଥିଲେ, ସେହି ଦେଶର ଝିଅ ତୁମେ'!''

ମାୟା ଆଉ ଶୁଣି ପାରିଲା ନାହିଁ–ନିଜର ହୀନତାର ଲଜ୍ଜାରେ ସେ ମର୍ମରେ ମରିଗଲା। ରଘୁନାଥପାଇଁ ସେ କଣ ଏତିକି କରିପାରିବ ନାହିଁ? ଯାଇ ତାର ଛାତି ଫାଟି–ଭାଙ୍ଗୁ ତାର ମନର ଆକୁଳ ଆକାଂକ୍ଷା, ସେ କଣ ବୀରନାରୀ ପରି ରଘୁନାଥପାଇଁ ଏତିକି କରି ପାରିବ ନାହିଁ? ରଘୁନାଥ ସତ୍ୟ-ରକ୍ଷାର୍ଥେ ଦେଶତ୍ୟାଗ କରିଛି, ତାପରି ବାଳିକାର ପ୍ରେମକୁ ଉପେକ୍ଷା କରିଛି, ସେ ଆଜନ୍ମ ସଭ୍ୟ ଶିକ୍ଷିତା ହୋଇ ଏଡ଼େ ଦୁର୍ବଳମନା, କ୍ଷଣିକ ପ୍ରତିଜ୍ଞାରେ ତାର ଛାତି ଦମ୍ଭହୋଇଉଠିଲା। ସେ ସନ୍ଧ୍ୟାକାଶକୁ ଅନାଇ ରେଙ୍ଗୁନବାସର କଥା ଭାବୁଥିଲା; ଆଉ

ସେହି ରାତ୍ରିର ପ୍ରଥମ ମିଳନ। ସେ ରନ୍ଧାଘର ପିଣ୍ଡାରୁ ଦାଣ୍ଡକୁ ଆସିଲା। ଡାକବାଲା ତା ହାତରେ ଖଣ୍ଡେ ଚିଠି ଦେଇଗଲା–ଅତି ସୁନ୍ଦର କାରୁକାର୍ଯ୍ୟଖଚିତ ରଙ୍ଗିଆ ଲଫାପା, ସୁବାସିତ 'ମୋହିନୀ'– ଗନ୍ଧରେ ନାକ ଫାଟି ପଡୁଥିଲା। ତାକୁ ହାତରେ ଧରି ମାୟାର ଛାତି ଦାଉଁ ଦାଉଁ ହୋଇ ଉଠିଲା। ଏ ନିଶ୍ଚୟ ପ୍ରେମପତ୍ର। ତେବେ କଣ ରଘୁନାଥ ଅନୁତାପ କଲା? ନୋହିଲେ, ଏ ଚକମକିଆ ଅତରଦିଆ ଗୋଲାପୀ ଲଫାପା କାହିଁକି? ସେ ଚିଠିଖଣ୍ଡିକ ଗୋପନରେ ଜାକେଟ ଭିତରେ ଲୁଚାଇ ଦେଲା। ଉଦ୍‌ବେଗରେ ମିନିଟଗୁଡ଼ିକ ଘଣ୍ଟା ପରି ବୋଧ ହେଲା। ରଘୁନାଥର ଚିଠି ମୀରା ବା ତୁକା ଆଖିରେ ପଡ଼ୁ, ଏହା ତାର ଇଚ୍ଛା ନ ଥିଲା। କିନ୍ତୁ ସେତିକିବେଳେ ତୁକା ସ୍କୁଲରୁ ଧାଇଁ ଆସିଲା ତାକୁ ଗୋଟିଏ ସୁଖବର ଦେବାକୁ–ତାର ଦରଖାସ୍ତ ମଞ୍ଜୁର ହୋଇଅଛି, ଅତିରିକ୍ତ ଶିକ୍ଷୟତ୍ରୀ କାର୍ଯ୍ୟ ସେ ପାଇଛି। ତାର ଆଉ କାର୍ଯ୍ୟରେ କି ପ୍ରୟୋଜନ! ଏ ଥର ତାର ଅନ୍ୟ କାର୍ଯ୍ୟକ୍ରମ ଆଖି ଆଗରେ ଭାସିଉଠିଲା। ସେଥିପାଇଁ ସ୍କୁଲ ଶିକ୍ଷୟିତ୍ରୀର ନୀରସ ନିସ୍ତେଜ ଜୀବନଲାଗି ତାର ଆଦୌ ଉତ୍ସାହ ହେଲା ନାହିଁ। ସେ ଏ ସଂବାଦରେ ଯେତେ ଦୂର ଖୁସିହେବା କଥା, ତା ନ ହେବା ଦେଖି, ତୁକା ଆରମ୍ଭକଲା ଅନ୍ୟ କଥା।

ଆଜି ତାଙ୍କର ନିମନ୍ତ୍ରଣ ବିଶ୍ୱମ୍ଭର ଶେଠ ଘରେ। ତାଙ୍କ ବୋହୂ ରୂପ କୁମାରୀର ମନ୍ତ୍ରଣପତ୍ର ଦେଖାଇ ସେ ଗଲା ଚଞ୍ଚଳ ଲୁଗା ପିନ୍ଧିବାକୁ, ମାୟାକୁ ବି ସାଙ୍ଗରେ ଟାଣି ନେଇ ନେଲା। ମାୟାର ଅନିଚ୍ଛା ସତ୍ତ୍ୱେ ସେ ହସହସ ମୁହଁରେ ବାହାରିଲା। ବକ୍ଷଃସ୍ଥଳରେ ଚିର ଈପ୍ସିତ ପତ୍ରମୁଦ ଖଣ୍ଡିକ କୌସ୍ତୁଭମଣି ପରି ଆଦରରେ ବିରାଜିତ ଥିଲା, ଆଉ ହୃଦୟ ପୂରିଥିଲା ରଘୁନାଥର ଚିନ୍ତାରେ। ସେ କଣ ସତେ ଏଡ଼େ ନିଷ୍ଠୁର ହୁଅନ୍ତେ? ଏ ସବୁ ପ୍ରେମର ଛଳନା! ଆଉ କିଛି ଦିନ ପରେ ସେହି ଶ୍ରୀପାଦତଳେ ତାର ସ୍ଥାନହେବ! ସେତେବେଳେ ସେ କିପରି ପୂଜାକରିବ, କିପରି ଆଦର କରିବ–ସେହି ଚିନ୍ତାରେ ତାର ହୃଦୟର ରକ୍ତ ଚଞ୍ଚଳ ହୋଇ ଉଠୁଥିଲା।

ପ୍ରେମକୁମାରୀ ଆସି ତା ହାତ ଧରି ଭିତରକୁ ଟାଣିନେଲା। ବହୁଦିନ ପରେ ପ୍ରେମକୁମାରୀ ସହିତ ତାର ଦେଖା, ସେହି ପିଲା ଦିନର ଇସ୍କୁଲ ସାଙ୍ଗ, ଦଉଡ଼ି ଡିଆଁ ଖେଳ, ଶିକ୍ଷୟିତ୍ରୀଙ୍କୁ ଲୁଚାଇ ଲୁଚାଇ ବାଦାମ ଖିଆ, ଆଖି ଠରାଠରି–ସବୁ କଥା ପକାଇ ଗୃହିଣୀ ପ୍ରେମକୁମାରୀ ହସରେ ଲୋଟିଯାଇ ମାୟାକୋଳରେ ତାହାର ଦେଢ଼ବରଷର ସୁନ୍ଦର ଶିଶୁପୁତ୍ର ରାମକୁମାରକୁ ଆଣି ଥୋଇଦେଲା। ଶିଶୁ ଅପରିଚିତ ମୁଖକୁ ଦଣ୍ଡେ ଚାହିଁ, ପରେ ଟାଣି ଓଟାରି ହୋଇ ମା କୋଳକୁ ଡେଇଁପଡିବାକୁ ବସିଲା। ମାୟା ଶିଶୁକୁ ଚୁମ୍ବନକରି ଆଜି ପ୍ରଥମ ମାତୃତ୍ୱର ସୁଖ ଅନୁଭବ କଲା। ତାର ମୁଗ୍ଧ ହୃଦୟରେ ନିଜର କଳ୍ପିତ ପୁତ୍ର କନ୍ୟାର ଛବି ଭାସିଉଠିଲା। ଏହିପରି ସେ ନିଜର ପିଲାକୁ ଧରିଥିବେ, ଆଉ ଏହିପରି ସେ ଆସି ପିତୃକୋଳରୁ ସ୍ନେହରେ ନିଧିକି କାଢ଼ିନେବ–ସେ ସୁଖ ବି ଅପୂର୍ବ।

ମାୟା ପୂର୍ଣ୍ଣ ହୃଦୟରେ ରାତି ବାରଟା ବେଳେ ଘରକୁ ଫେରିଲା। ବାଟଯାକ ରଘୁନାଥର ପରମ ସୁନ୍ଦର ରୂପ ତାର ହୃଦୟ ଉଜ୍ଜ୍ୱଳ କରିରଖିଥିଲା। ତାରି ଧ୍ୟାନରେ ତାକୁ ସେ ଦିନ ଘଣ୍ଟାକ ଚବିଶ ଘଣ୍ଟା ପରି ଲାଗୁଥିଲା।

ସେ ନୀରବ କକ୍ଷତଳେ ନିଭୃତରେ ଗୋଲାପୀ ଲଫାପା ଚିରିଲା, ପତ୍ର ପାଠ କରିବାକୁ ଦୀପ ତେଜିଦେଲା। ଉପରିଲିଖିତ ଶିରୋନାମା, ତଳର ଦସ୍ତଖତ ଉଭୟକୁ ଏକକାଳୀନ ଚାହିଁ ହଠାତ୍ ସାପ କାମୁଡ଼ିଲା ପରି ହୋଇ ସେ ଚିଠିଟାକୁ ଖଣ୍ଡେ ଦୂରରେ ଫୋପାଡ଼ିଦେଲା। ଚିଠିଟା ନିଆଁଖିଆ ହୋଇଥିଲେ, ତା ହାତ ଏତେ ଜଳି ନ ଥାନ୍ତା! ଏତେ ବଡ଼ ଆଶାର ଆନନ୍ଦରେ ନୈରାଶ୍ୟକୁ ବଜ୍ରାଘାତ ! ସେ ଅବସନ୍ନ ହୃଦୟରେ ଶଯ୍ୟାଶ୍ରୟ କଲା। ଉଦ୍‌ବେଗରେ ଆବେଗରେ ତା ଆଖି ଆଗରେ ସବୁ ଜିନିଷ ଘୂରୁଥିଲା ପରି ବୋଧହେଲା। ସେ ଆଖି ବୁଜିଲା।

ଚିଠିଟା ସୁରେନର। ମାନ ଅଭିମାନ, ପ୍ରେମ ଓ ପରିହାସର ମିଶ୍ରଣରେ ଚିଠିଟା ଅଦ୍ଭୁତ ଢଙ୍ଗରେ ଲେଖା! ତାର ପ୍ରତ୍ୟେକ ପଂକ୍ତି ମାୟାର ହୃଦୟକରେ ଶେଳ ପରି ବିଦ୍ଧହେଲା। କଟା ଘାରେ ଲୁଣଛିଟା ଦେବାକୁ ସୁରେନ୍ ଏପରି କରିପାରେ ? କିନ୍ତୁ ରଘୁନାଥ ତାକୁ ପରିତ୍ୟାଗ କରିଛି, ଏ ( ଥା ଦଶବାର, ଦଶଭଙ୍ଗୀରେ ଯେ ସେ ଲେଖିଥିଲା,ଏହି ଲଜ୍ଜାର ବେଦନା ତାକୁ ସବୁଠାରୁ ବଡ଼ କଷ୍ଟଦାୟକ ହେଲା।

ସେ ଆଖି ବୁଜି କେବଳ ଭଗବାନଙ୍କୁ ଡାକିଲା। ଆଉ ନୀରବ, ନିସ୍ତବ୍ଧ ରାତି ଘଣ୍ଟାଏ ଘଣ୍ଟାଏ କରି କଟିଗଲା। ପ୍ରଭାତର ମଧୁର ସର୍ଯ୍ୟୋଦୟ ସହିତ ସେ ନବକର୍ମର ସନ୍ଧାନରେ ଚାଲିଲା।

ଆଜିଠାରୁ ତାର ପୁନର୍ବାର ଶିକ୍ଷୟିତ୍ରୀ ଜୀବନ ଆରମ୍ଭ। ଏହି ଜୀବନଟା ଭଲ। ଆଉ ଚାରି ବର୍ଷ ପୂର୍ବରୁ ସେ ପାଇଥାନ୍ତା। ତା ହେଲେ ସ୍କୁଲଟା ତାର ଆନନ୍ଦର ଲୀଳାଭୂମି ହୋଇଥାନ୍ତା। କିନ୍ତୁ ନେଡ଼ିଗୁଡ଼ତ କହୁଣିକି ବହି ଯାଇଛି। ସେ ରଘୁନାଥ ଉଦ୍ଦେଶ୍ୟରେ ଦୁଃସହ ଅଭିମାନର ଅଗ୍ନି ବର୍ଷଣକରି, ପୁଣି ଥରେ ସ୍କୁଲ ମୁହଁ ଦେଖିବାକୁ ବାହାରିଲା। ତଥାପି ତ୍ୟାଗର ଗଭୀର ଆନନ୍ଦରେ ତାର ହୃଦୟ ପୂର୍ଣ୍ଣ।

ତାର ନୀରବ ସାଧନାକୁ ଲକ୍ଷ୍ୟ କରି ଦିପହରିଆ ଗୋଲାପ ବଗିଚାରେ ଝଙ୍କାଳିଆ ବକୁଳ ବୃକ୍ଷ ତଳରେ ବସି ମୀରା କହିଲା–''ଭଉଣୀ, ତୋର ମୋର ଜୀବନ ସମାନ !

ମାୟା ଦୀର୍ଘଶ୍ୱାସ ସହ କହିଲା–''ତୁ ଯେ ତୋର ଦେବତାକୁ ସେବା କରିବାକୁ ଯାଉଚୁ। ମୁଁ ଦୂରରେ ରହି ତୃଷାରେ ଚାତକିନୀ ପରି ମରୁଚି !''

ମୀରା ମାୟା କତିକି ଘୁଞ୍ଚି ଆସିଲା; ତାହାର ନୀଳୋତ୍ପଳ ଆଖି ଦିଓଟି ବିସ୍ଫାରିତ କରି ସେ ଗଭୀର ସ୍ୱରରେ କହିଲା–''ମୁଁ ଜାଣେ, ତୁ ବୁଝି ପାରିବୁ ନାହିଁ, କି ଦାରୁଣ ଆସକ୍ତିର ନିଆଁ ଛାତି ଭିତରେ ପୂରାଇ ମୁଁ ଉପରେ ଚନ୍ଦନ ପାଲଟିଚି ! ଖାଲି ସେହି ଦେବତାର ସେବା

ଲାଗି । ତୁ ଯେ ବହୁଦୂରରେ ତା ଉଦ୍ଦେଶ୍ୟରେ ସେବା ଅର୍ପଣକରୁଛୁ । ତୋର କଷ୍ଟ, ନା ମୋର କଷ୍ଟ ? ଭାତ କଡିରେ ବସି ଯେ ମୁଁ ଚିର ଉପବାସିନୀ !'' ମାୟା କର ଲେଉଟାଇ ପତ୍ର, ତା ମୁହଁକୁ ଚାହିଲା । ସେତେବେଳେ ମୀରା ମୁଖ ସରଳ ଆକୃତି ଧାରଣକରିଥିଲା । ମାୟା ଦୁଃଖିତ କଣ୍ଠରେ କହିଲା—''ଦିନେ ଭଲା ତୋ ପରି ପାଇଥାନ୍ତି, ମୁଁ ବି ଜଳି ଜଳି ସୁନା ହୁଅନ୍ତି ! କିନ୍ତୁ ମୋର କର୍ମ୍ମ ପୋଡ଼ା । ପାଇ ନାହିଁ, ପାଇବି ନାହିଁ, ତଥାପି ତାରି ଧ୍ୟାନରେ ମରିବି, କିନ୍ତୁ ଟଳିବି ନାହିଁ ।''

ମୀରା ମାୟାକୁ କୋଳକୁ ଆଉଜାଇ ନେଲା । ସେତେବେଳେ ତାର ହୃଦୟ ମହାନ୍ ଭକ୍ତିରେ ପୂର୍ଣ୍ଣ । ସେ ବାକ୍‌ଶୂନ୍ୟ ।

ପରକ୍ଷଣରେ ମାୟାର କାର୍ପେଟ ଖଣ୍ଡିକ ଟାଣିନେଇ, ତା ଧ୍ୟାନ ଭଗ୍ନକଲା ।



## ଅଷ୍ଟବିଂଶ ଅଧ୍ୟାୟ

ଆକାଶ ତଳ ଅନ୍ଧକାର, ଗୋଟି ଗୋଟି ତାରା ଫୁଟି ରହିଛନ୍ତି, ଆକାଶର ଗୋଟାଏ କୋଣରେ ବଙ୍କିମ ତୃତୀୟା ଚାନ୍ଦକୁ ଚାହିଁ କୋଠା ଛାତ ଉପରେ ଚିନ୍ତାମଗ୍ନା ମାୟା । ତାର ନୟନଯୁଗଳ ଦୂରାକାଶନିବଦ୍ଧ, କିନ୍ତୁ ହୃଦୟ ତହୁଁ ବଳି ଦୂରରେ ବିଚରଣ କରୁଥିଲା । ସେ ଭାବୁଥିଲା ରଘୁନାଥ କଥା—ସେ କିଏ, କୋଉଁଠୁ ଆସିଲା, କାହିଁକି ଆସିଲା ? ତାର କୁମାରୀ-ହୃଦୟରେ ପ୍ରେମର ଆଲୋକ ଜାଳି, ଅଶୁଭ ଧୂମକେତୁ ପରି ଅକାଳରେ ଅନ୍ତର୍ହିତହେଲା ! ଏପରି ତାର ନିୟତି । ସେ କଣ କରିଥିଲା ଯେ, ଭଗବାନ୍ ତାକୁ ଏ ଦୁଃଖଦେଲେ ? ମାୟା ଆଉ ଭାବିପାରିଲା ନାହିଁ । ତା ଛାତି ପୋଡ଼ିଉଠିଲା, ସେ ଆସି ମଶିଣା ଉପରେ ବସିଲା । ତୁକା ହାରମୋନିୟମ ବଜାଇ ଗୀତ ଗାଇବାକୁ ଆରମ୍ଭକଲା: ଗୀତ ହିନ୍ଦୁସ୍ଥାନୀ, ସ୍ୱର ଅତି ମଧୁର, ପୁଣି ତାହାର ଭାବ, ମନୋହର—ଶ୍ୟାମର ବିରହରେ ରାଧାର ଶୋକଗୀତି । ମାୟାର ଅନ୍ତର ଦ୍ରବ ହୋଇଗଲା । ସେ ଭାବବେଶରେ ତୁକା କୋଳରେ ଆଉଜିପଡ଼ିଲା । ନୀରବ ଅନ୍ଧକାରରେ ଦୁଇଜଣ, ଦୁଇଜଣର ବେଦନା ଅନୁଭବକଲେ । ଉଭୟେ ବିରହିଣୀ, ଉଭୟଙ୍କର ମିଳନ-ଆଶା ସୁଦୂରପରାହତ । ଉଭୟର ହୃଦୟତନ୍ତ୍ରୀ ଗୋଟିଏ କରୁଣ ସ୍ୱରରେ ବାଜୁଥିଲା, ଆଉ ସେଥିରେ ପ୍ରତିଧ୍ୱନିତ ହେଉଥିଲା ପରସ୍ପରର ପ୍ରିୟତମର ନାମ ।

ମାୟା କଥା ଆରମ୍ଭକଲା, ଆକାଶମଣ୍ଡଳକୁ ଚାହିଁ ଶୂନ୍ୟସ୍ୱରରେ କହିଲା—''ଭଉଣି, ଏ କି ଲୀଳା ବିଧାତାର ! ଏ କି ଛଳନା ! ଏ ଜୀବନଟା କଣ ଗୋଟିଏ ବିରାଟ୍ ଛଳନାର ସ୍ୱପ୍ନ ! ଯେ ଆଶା ଦିଏ, ସେ ଆଶା ପୂରଣ ନ କରି କନ୍ଦାଏ କାହିଁକି ?

ତୁକା ଗଭୀର ଭକ୍ତିରେ କହିଲା–''ତା ସେଇ ଜାଣେ ମାୟା। ତାର ଜଗତ୍, ତାକୁ ସେଇ ଚଳେଇ ଜାଣେ। ଯାହା ସେ କରେ, ସେଥିରେ ତୋର ମୋର କଷ୍ଟ ହୋଇପାରେ, କିନ୍ତୁ ଜଗତର ତ ମଙ୍ଗଳହୁଏ ?''

ମାୟା କହିଲା–''ତା ହେଲେ ସେ ଜଗତର ଈଶ୍ୱର –ମୋର ଈଶ୍ୱର ନୁହନ୍ତି। ମୋ ଭଲ ତ ସେ ଚାହାନ୍ତି ନାହିଁ।''

ତୁକା କହିଲା–''ତୁ କେମିତି ଜାଣିଲୁ ତୋର ଭଲ କାହିଁରେ ?'' ମାୟା କିଛି ଉତ୍ତର ଦେଲା ନାହିଁ, କିଛି କ୍ଷଣ ନୀରବରହି କହିଲା–ହେଲେ, ତା କଥା ଯେତେ ମୋ ମନେ ପଡୁଛି, ମନ ସେତିକି ଉଦାସ ହୋଇଉଠୁଚି। ସେ ମୋ ଜୀବନର କେତେ, ତା ମୁଁ ତୋତେ ବୁଝାଇପାରିବି ନାହିଁ!

''ମୋତେ ବୁଝେଇବାକୁ ହେବ ମାୟା–ଯେ ପିଲାଟିକାଳୁ ତୋତେ ଜାଣେ ? ତୋତେ ନ ଜାଣିଥିଲେ ବି, ମୁଁ କହନ୍ତି, ତୁ ଠିକ୍ ବାଟରେ ଅଛୁ। ତୁ ନାରୀର ଧର୍ମ ପାଳୁଛୁ ଭଉଣି, ତୁ ଦୁଃଖ କର ନା, ସେ ଆପେ ତୋର ହବ, ଆପେ ଆସିବ।''

ତୁକା ନୀରବ ହେଲା। ସେତେବେଳେ ତାର ଆଖି ଯେ କେଡ଼େ ଉଜ୍ଜ୍ୱଳ ହୋଇଥିଲା, ଅନ୍ଧକାରରେ ମାୟା ତା ଦେଖିପାରିଲା ନାହିଁ, କିନ୍ତୁ ତା ଛାତିର ଦକ୍ ଦକ୍ ଅନୁଭବକଲା। ସେ ତା କୋଳକୁ ଆହୁରି ଘଞ୍ଚିଯାଇ କହିଲା, ''ଗୋପାଳ ଦାଦା ଏହିପରି ତୋ ଜୀବନଟା ପୂର୍ଣ୍ଣ କରିଥିଲେ। ଭଉଣି, ତୋ ପରି ସତୀ ସାଧ୍ୱୀର ସେ ଅକାଳରେ ମୁଣ୍ଡର ସିନ୍ଦୂର ନିଭିଲା, ସେଥିରେ ମୁଁ ଆଶ୍ଚର୍ଯ୍ୟ। ଲୋକେ କହନ୍ତି, ବିଧବାଲକ୍ଷଣ ଥିଲେ ବିଧବା ହୁଅନ୍ତି, କିନ୍ତୁ ତୋ ପରି ଲକ୍ଷ୍ମୀଠି ଅଲକ୍ଷଣ କେଉଁଠି ମୁଁ ତ ଦେଖିପାରୁ ନାହିଁ।''

ତୁକା ମାୟା ଉପରେ ଆଉଜିପଡ଼ି କହିଲା–''ତୁ ପରା ମୋତେ ଭାରି ଭଲପାଉ। ମୋର ଲକ୍ଷଣ ଅଲକ୍ଷଣ ତୁ କେମିତି ଠିକ୍ କରିବୁ? କିନ୍ତୁ ସେ ସବୁ ମିଛ ଭଉଣୀ! ହିନ୍ଦୁ ନାରୀର ସ୍ୱାମୀ ମରେ–ଏ କଣ କଥାର କଥା! ମୁଁ ତ ଭାବେ, ସେ ସର୍ବଦା ଜୀବିତ। ଏ ଜଗତରେ ସିନା ବିଚ୍ଛେଦହୋଇଚି, ଜନ୍ମାନ୍ତରେ ପୁଣି ମିଳନହେବ ମାୟା!''

''ମୋର କଣ ଜନ୍ମାନ୍ତରରେ ମିଳନହେବ ? ସେଥିରେ ବା ସୁଖ କଣ ? ମୁଁ ତ ଜାଣିବି ନାହିଁ।''

କିଏ କହିଲା, ତୁ ଜାଣିବୁ ନୁଁ? ଲଛମନ ଦାଦା କହନ୍ତି, '' ଆମର ଅସ୍ତିତ୍ୱ କେବେ ଲୋପପାଇବ ନାହିଁ। ମୁଁ ବି ତାହା ବିଶ୍ୱାସକରେ।''

ମାୟା ଦୁଃଖିତ ହୋଇ କହିଲା –''ତୁକା! ତୁ ବଡ଼ ଧାର୍ମିକା। ତୁ ସବୁବେଳେ ଈଶ୍ୱରଙ୍କୁ ଧ୍ୟାନକରି ଜୀବନ କଟାଉଚୁ, ଆଉ ମୁଁ ବଡ଼ ଅପଦାର୍ଥ। ମୋର ଦିନରାତି ସେଇ କଥା ମନେପଡୁଛି। ପ୍ରତି ମୁହୂର୍ତ୍ତ ଘଣ୍ଟାଚାଲିଲା ପରି ତାରି ନାଁ ମୋ ମନ ଭିତରେ ବାଜୁଛି!

ଯାର କଣ ପ୍ରତିକାର କହଲୁ? ସେ ତ୍ୟାଗକଲା, ଯାହା ସହିତ ମିଳନର ଆଶ ମାତ୍ର ନାହିଁ, ତାଙ୍କୁ ସ୍ମରଣକରି ଲାଭ କଣ?''

ତୁକା କହିଲା–''ଆଉ କାହାକୁ ମନେ କରନ୍ତୁ? ସେଇ ତ ତୋର ପ୍ରଭୁ! ଦେବତା ଅପ୍ରସନ୍ନ ବୋଲି କଣ ଭକ୍ତ ସଙ୍ଗଛାଡ଼ିବ?''

ମାୟା ଭକ୍ତି ଗଦ୍‌ଗଦକଣ୍ଠରେ କହିଲା–''ସେଇ ମୋର ଦେବତା–ସେଇ ମୋର ପ୍ରଭୁ, ସେଇ ସ୍ମୃତିକୁ ସଙ୍ଗାଳିକରି ବଞ୍ଚିରହିବି। ତୁ ଜାଣୁ, ଯେତେବେଳେ ତାଙ୍କର ସେ ଦାରୁଣ ଚିଠି ମୁଁ ପାଇଲି, ସେତେବେଳେ ଦୁଃଖରେ ପଥର ପାଲଟିଗଲି। କଣ କରିବି, କୁଆଡ଼େ ଯିବି, କାହାକୁ କହିବି, ମୋର କିଛି ବୁଦ୍ଧି ସ୍ଫୁରିଲା ନାହିଁ। ମୁଁ କେବଳ ଲୁଚି ଲୁଚି କାନ୍ଦିଲି। ମା ଦେଖିଲେ, ସନ୍ଧାନ ନେଲେ, ବାପାଙ୍କୁ କହିଲେ। ଧନ୍ୟ ସେ ବାପା ମା, ମୋତେ ପଦେହେଲେ –'ତୁ କଣ କଲୁ' ବୋଲି ଦିନେ ପଚାରି ନାହାନ୍ତି। ଅଥଚ ମୋ ଦୁଃଖ କେମିତି ଲଣା ହେବ, ତାହାର ଉପାୟ ଭାବିବସିଲେ। ଯା କିଏ କରନ୍ତା? ହେଲେ, ବାବା ତାଙ୍କୁ ସ୍ନେହ କରନ୍ତି ନିଜ ପିଲାଙ୍କଠୁଁ ବଳି। କିନ୍ତୁ ମୋ କପାଳରେ, ଗୁଡ଼ରେ ବାଲି–ମୁଁ ଅଲକ୍ଷଣୀ।'' ତାର କଥା ଶେଷବେଳକୁ ଗଳା ରୁଦ୍ଧହୋଇଗଲା। ସେ ତୁକା କୋଳରେ ମୁହଁମାଡ଼ି ଅଶ୍ରୁରେ ଭାସିଗଲା।

ତୁକା ନିଜକୁ ସମ୍ଭାଳି ପାରିଲା ନାହିଁ, ସେ ମଧ ଆଖିରେ ଲୁଗାଦେଲା। ଦୁହେଁ କାନ୍ଦଣା-ସ୍ରୋତରେ ଭାସିଗଲେ।

ଶିଡ଼ିରେ ଜୋତା ଶବ୍ଦ ଶୁଭିଲା। ଲଛମନ ଭାଇ ଆସି ନିକଟରେ ଠିଆହେଲେ, ଡାକିଲେ, ''ତୁକା! ତୁକା ଉତ୍ତର ଦେଲା–''ଦାଦା!'' ଲଛମନ କୋମଳ ସ୍ୱରରେ କହିଲେ, ''ତମ ଦୁଇ ଜଣଙ୍କର ଆଖି କଣ ପାଣି-ଭଣ୍ଡାର! ନିଜର ଦୁଃଖଲାଗି ଏ ସ୍ୱାର୍ଥର କାନ୍ଦଣା କାନ୍ଦୁଚ। ମାୟା, ଭଉଣି, ଛାଡ଼–ଏ ପିଲାଖେଳ, ଛାଡ଼। ତୁମମାନଙ୍କ ଜୀବନର ଏଇ କାନ୍ଦଣା କେବଳ ଉଦ୍ଦେଶ୍ୟ ନୁହେଁ। ତୁମମାନଙ୍କପାଇଁ ଜଗତରେ ଆଉ ଅନେକ ମହତ୍ କାର୍ଯ୍ୟ ରହିଚି। ଆଜି ଶୁଣିଚ କଣ ଖବର ଆସିଚି?''

ତୁକା ମୁହଁପୋଛି କହିଲା, ''କଣ ଖବର?''

ଲଛମନ କହିଲେ, ''ସ୍ୱାମୀଜୀ ଆମେରିକାରେ ବିରାଟ ପରିବର୍ତ୍ତନ କରିଛନ୍ତି। ଶତ ଶତ ଶ୍ୱେତାଙ୍ଗ ହିନ୍ଦୁଧର୍ମ ଗ୍ରହଣ କଲେଣି। ମୋର ମନେ ହେଉଚି, ମୁଁ ଏହିକ୍ଷଣି ଯାଇ ସ୍ୱାମୀଜୀଙ୍କ ସହିତ ମିଶିଯାନ୍ତି।''

ମାୟା ଲଛମନ ଭାଇର ଉତ୍ତେଜିତ ସ୍ୱର ଶୁଣି କହିଲା, ''ଦାଦା, ଧନ୍ୟ ତୁମେ–ଦିନରାତି ଦେଶସେବା ତୁମର ମହାମନ୍ତ୍ର।''

ଲଛମନ ଭକ୍ତିଭରେ କହିଲେ–''ଦେଶ ଯେ ମୋର ମା, ମାର ଦୁଃଖ ଦେଖିଦେଖି କଣ ତା ପିଲାଏ ଅନ୍ୟକଥା ଭାବିବାର ଅବସର ପାଇବେ? ଦେଶରେ ତ ହଜାର ଲୋକ ଅଛନ୍ତି, ଯେଉଁମାନେ ଆପଣା ଚିନ୍ତାଛଡ଼ା, ଦିନେ ସୁଦ୍ଧା ଦେଶ ଓ ଦଶର କଥା ଭାବିନାହାନ୍ତି। ମୋ ପରି ଗୋଟାଏ ଅଧେ ଅଧମ ପୁତ୍ର ନ ଭାବିବେ ତ, ଆଉ ଭାବିବ କିଏ?''

ମାୟା ରହସ୍ୟକରି କହିଲା–''ବୋଉଦିଦୀ ସେହିଯୋଗୁଁ କହନ୍ତି, ତୁମେ ଦେଶଟାକୁ ମୁଣ୍ଡେଇକରି ବସିଚ।''

ଲାଲୀ ଦୀପ ଓ ପାନ ଘେନି ଆସିଲା। ଲଛମନ ଆସି ଚଟେଇରେ ବସିଲେ। ଦୀପାଲୋକ ତାଙ୍କ ମୁହଁରେ ପଡ଼ି ବଡ଼ ସୁନ୍ଦର ଦିଶୁଥିଲା। ଲଛମନର ବୟସ ପ୍ରାୟ ତିରିଶ ବର୍ଷ, ଉଜ୍ଜ୍ୱଳ ଗୌରବର୍ଣ୍ଣ, ଦୀର୍ଘ ସରଳ ନାସିକା, ପ୍ରଶସ୍ତ ଲଲାଟ ଏବଂ ଦୀର୍ଘ ଗୌର ଦେହବିଲମ୍ବିତ ଉପବୀତସୂତ୍ର ତାଙ୍କୁ ବ୍ରାହ୍ମଣ ସନ୍ତାନ ବୋଲି ଜଣାଇ ଦେଉଥିଲା। ସେ ଜଣେ 'ଗ୍ରାଜୁଏଟ', କିନ୍ତୁ ଚାକରି ନ କରି ଦେଶସେବାରେ ମନପ୍ରାଣ ଦେଇଛନ୍ତି। ତାଙ୍କର ସମ୍ପାଦକତ୍ୱରେ ସାପ୍ତାହିକ ପତ୍ରିକା 'ହିନ୍ଦୁସ୍ଥାନିକି ସମାଚାର' ବାହାରେ। ସେ ଓ ତୁକା ଭାଇ ଭଉଣୀ, ଲାଲୀ ତୁକାର କନ୍ୟା। ଲାଲୀ ଯେତେବେଳେ ମାସକର, ସେତେବେଳେ ତାହାର ପିତାଙ୍କର ମୃତ୍ୟୁହୁଏ। ଲଛମନଙ୍କ ପିତା, କନ୍ୟାକୁ ଶ୍ୱଶୁର ଘରୁ ନେଇଆସି ସ୍କୁଲରେ ପଢ଼ାଇଲେ। ସେଥିପାଇଁ ଚେମନ ଲାଲ ଜାତିରୁ ଅଟକ। କିନ୍ତୁ ସେ ଜାତିର କଠୋର କଟାକ୍ଷକୁ ଭୟକରି ଚଳିବା ବ୍ୟକ୍ତି ନୁହନ୍ତି। ତାଙ୍କରି କୃପାରେ ଅନାଥିନୀ ଦୁଃଖୀନୀ ବିଧବା ତୁକା ମଧ୍ୟ ବି.ଏ. ପାଶ କରି ସ୍କୁଲ ଶିକ୍ଷୟିତ୍ରୀ କାର୍ଯ୍ୟକରେ। ମାୟା ତୁକାର ବାଲ୍ୟସଙ୍ଗିନୀ। ମାୟାର ପିତା ଏଲାହାବାଦରେ ପ୍ରଥମେ ଦଶ ବର୍ଷ ପ୍ରଫେସର କାର୍ଯ୍ୟ କରିଥିଲା। ଚେମନ ଲାଲ ପୁସ୍ତକ ବ୍ୟବସାୟୀ। ଜାତିରେ ସାରସ୍ୱତ ବ୍ରାହ୍ମଣ, କିନ୍ତୁ ବ୍ରାହ୍ମଣର ଅହମିକା ତାଙ୍କଠାରେ ନ ଥିଲା। ଓକିଲାତି ପାଶ କରି ସୁଦ୍ଧା ସେ ଚାକିରି ନ କରି ସ୍ୱାଧୀନ ବ୍ୟବସାୟ କରୁଥିଲେ–ସ୍ୱପରିବାରକୁ ନିଜର ଆଦର୍ଶରେ ଗଢ଼ିଥିଲେ। ସେଥିପାଇଁ ସମାଜ ପକ୍ଷରୁ ଅନେକ ନିର୍ଯ୍ୟାତନ ସହିବାକୁ ହେଉଥିଲା; ତଥାପି ବାପ ପୁଅ ଅଟଳ ଅଟଳ ଭାବରେ ଠିଆହୋଇଥିଲେ, ଆଉ ସେଥିରେ ପ୍ରଧାନ ସହାୟକ ଥିଲେ କେବଳକୃଷ୍ଣ ବାବୁ।

ସେହି ବନ୍ଧୁତ୍ୱ ଖାତିରିରେ 'ଗୁଜୁବାଇ' ଉଗ୍ରହୃଦୟା ମାୟାକୁ ଆପଣା କୋଳକୁ ଟାଣି ନେଲେ। ପିଲାଟିଦିନୁ ତ ମାୟା ତାଙ୍କ ହାତରେ ମଣିଷ। ଘରକାମ ସାରି ସେ ମଧ୍ୟ ଛାତ ଉପରକୁ ଆସିଲେ। ତା ପଛେ ପଛେ ଜଣେ ଅତୁଲ୍ୟ ସୁନ୍ଦରୀ ମୂର୍ତ୍ତି ଅର୍ଦ୍ଧାବଗୁଣ୍ଠନ ମଧ୍ୟରେ ହାସ୍ୟରଞ୍ଜିତ ମୁଖମଣ୍ଡଳର ଦୀପ୍ତି ଘେନି ମାୟା ଓ ତୁକା କତିରେ ବସିଗଲା। ମୀରାବାଈ–ଲଛମନଙ୍କ ସହଧର୍ମିଣୀ।

ସମସ୍ତେ ଏକତ୍ର ହେଲା ପରେ ଲଛମନ ହାରମୋନିୟମ ଧରି ବସିଲେ। ମଧୁର କଣ୍ଠରେ ଗୀତ ଆରମ୍ଭହେଲା। ଗୀତ ସ୍ୱଦେଶ ବିଷୟକ–ସ୍ୱଦେଶର ଦୁଃଖ-ଦୈନ୍ୟ-ବିଜ୍ଞାପକ। କୋମଳ ଲଳିତ ସ୍ୱରରେ ତୁକା, ମାୟା ଓ ଲାଲୀ ଗୀତରେ ଯୋଗଦେଲେ। ଗୀତର ରଚକ ଲଛମନ। ଗୀତ ଶୁଣୁଶୁଣୁ ରୁକ୍ମଣୀ ବିହ୍ୱଳହେଲେ। ତାଙ୍କର ସନ୍ତାନମାନେ ଯେ ଦେଶମାତୃକାର ରାଜାବେଦୀ ସଜାଡିବାକୁ ଆଗୁସାର, ଏ ଆନନ୍ଦରେ ତାଙ୍କ ହୃଦୟ ପୂରିଉଠିଲା। ସେ ମନେ ମନେ ତାଙ୍କ ଉପରେ କଲ୍ୟାଣଧାରା ବର୍ଷଣ କରୁଥିଲା। ଦୀପାଲୋକରେ ତାଙ୍କର କୋମଳ ଗମ୍ଭୀର ମାତୃମୂର୍ତ୍ତି ବଡ଼ ସୁନ୍ଦର ଦିଶୁଥିଲା। ତାଙ୍କର ସ୍ଥୂଳ ଗୌର ଶରୀର, ଥାଳିପଟ ପରି ମୁହଁ, ଦୀର୍ଘନୀଳାୟତ 'ଲୋଚନଯୁଗଳ, କପାଳଉପରେ ତରଙ୍ଗାୟିତ କେଶର ଭଙ୍ଗିମା, ଆଉ ଶରୀରବୃତ ରକ୍ତବସନ, ନୀଳ ନିଚୋଳ, ତଦୁପରି ସର୍ବାଙ୍ଗରେ ସୁବର୍ଣ୍ଣାଳଙ୍କାରର ଶୋଭା, ଅଧରର ତାମ୍ବୁଳରାଗ ଓ ତାଙ୍କର ବସିବାର ଭଙ୍ଗୀ, ଏ ସମସ୍ତର ସମାବେଶ ଦିଶୁଥିଲା ଯେପରି ସେ ସାକ୍ଷାତ୍ ଦେଶମାତାରୂପେ ସେ ସ୍ଥାନରେ ଆବର୍ତ୍ତୁତ! ଆଉ ତାଙ୍କ ଶ୍ରଦ୍ଧାପ୍ଲୁତ ନୟନରେ ଚାହିଁ ମାୟା ଭାବିଥିଲା– ଗୋଟିଏ କଥା! ତାର ନିଜର କ୍ଷୁଦ୍ର ଚିନ୍ତା ସେତେବେଳେ ସେ ଭୁଲି ଯାଉଥିଲା। ତା କାନରେ ଖାଲି ବାଜୁଥିଲା "ତୁ ମେରେ ଜ୍ଞାନ ଜନନୀ, ତୁ ମେରେ ମୁକ୍ତିଦାୟିନୀ , ତେରି କମଲ ପୟରପର ଆଶ୍ରହାମରା।"

ସେଦିନ ମାୟା ମହନ୍ ବସ୍ତୁର ସନ୍ଧାନ ପାଇଲା। ଏତେଦିନ ସେ ଏତେ କାର୍ଯ୍ୟରେ ଯୋଗ ଦେଇଚି, ଏତେ ପଢ଼ିଚି, ଏତେ ଲେଖିଚି, ଦେଶ ବିଷୟରେ ଏତେ ଚିନ୍ତାକରିଚି, କିନ୍ତୁ ତାକୁ ଯେ ଜନନୀ ମୂର୍ତ୍ତିରେ ପୂଜାକରିବାର ମାଧୁରୀ ବା ପ୍ରାଣ ସ୍ପର୍ଶକରି ନ ଥିଲା। ଏ ଦିବ୍ୟାନନ୍ଦର ସେ ସନ୍ଧାନ ପାଇ ନ ଥିଲା। ଆଜି ତା ପ୍ରାଣରେ ନବଉଷାଲୋକର ଆବିର୍ଭାବ। ତାର ମନେହେଲା, ବାସ୍ତବିକ ତା ଭାବନା ବିଫଳ ନୁହେଁ, ତା ଜୀବନ ଅସାର ନୁହେଁ। ସେ ମଧ ଜଗତକୁ କିଛି କାମ କରିବାକୁ ଆସିଚି। ହୁଏତ ସେ କାର୍ଯ୍ୟ ବିବାହିତ ଜୀବନ ଅପେକ୍ଷା ମହତ୍, ସେଥିପାଇଁ ଭଗବାନ ତାକୁ ରଘୁନାଥର ସାହଚର୍ଯ୍ୟରୁ ବଞ୍ଚିତକଲେ। ପରମଶ୍ରଦ୍ଧାରେ ସେ ତୁକା ଓ ଲଛମନକୁ ଚାହିଁଲା। ଦିଓଟି ଯେପରି ଦେବମର୍ତ୍ତି। ଦିଓଟି ଯେପରି ସ୍ୱର୍ଗୀୟ ପବିତ୍ର ଅମୃତ ମାଧୁରୀ! ଦିଓଟି ମୁଖ ଯେପରି ଆନନ୍ଦର ସ୍ୱର୍ଣ୍ଣ-ଶତଦଳ! ତା ମନ ମୁଗ୍ଧ ହୋଇଗଲା। କ୍ରମେ ସେ ସେହିମାନଙ୍କ ଛାଞ୍ଚରେ ନିଜ ଜୀବନ ଢାଳିବାକୁ ବସିଲା। ଦେଶ ଓ ଦଶର ହିତ ବ୍ରତରେ ଜୀବନ ସମିବା ଛଡ଼ା ତାର ଆଉ ଥିଲା କଣ?

ସେଦିନ ବଡ଼ିପାହାନ୍ତାରୁ ଉଠି ମାୟା ଓ ତୁକା ଭ୍ରମଣ କରୁଥିଲେ। ସୂର୍ଯ୍ୟଦେବ ସେତେବେଳେ ଉଇଁ ନାହାନ୍ତି। ଯମୁନା ନଦୀର ପାଣି ଦୂରକୁ କଳା ଚାଦରଟି ପରି ଦିଶୁଥିଲା। ଆଉ ସେ କଳା ଧାରକୁ କାଟି ଗଙ୍ଗାର ଧଳା ପାଣି ବହି ଯାଉଥିଲା। ମାୟା ଓ ତୁକା ଦୁଇଜଣ ଆସି ନଦୀବନ୍ଧରେ। ପାହାନ୍ତାର ମିଠା ପବନ ତାଙ୍କୁ ଛୁଇଁ ଛୁଇଁ ଯାଉଥିଲା। ଆକାଶର ଗୋଟିଏ କୋଣରେ ବଡ଼ ହୀରା ଖଣ୍ଡପରି କୁଆଁତାରାଟି ଚକ୍ ଚକ୍ ଦିଶୁଥିଲା।

ମାୟା ସଙ୍ଗୀନୀକୁ ଲକ୍ଷ୍ୟ କରି କହିଲା - ତୁକା ! ଦେଖୁଚୁ ଗଙ୍ଗା ଯମୁନାର ମିଳନ ! କଳା ଗୋରା ଯୋଡ଼ିଏ କିପରି ମଶିଛନ୍ତି। ସେ ବଡ଼ ସୁନ୍ଦର, ବଡ଼ ଗୋରା, ଆଉ ମୁଁ କଳା ! ଏହିପରି ଭଲା ଆମର ମିଳନ ହୋଇଥାନ୍ତା !

ତୁକା କହିଲା- ବିଶ୍ୱାସ କର ଭଉଣୀ ! ତୋର ତପସ୍ୟା ସାର୍ଥକ ହେବ, ସେ ଆପେ ଆସିବ ! ଏପରି କ'ଣ ସେ ପାଷାଣ !

ମାୟା କହିଲା- ଆଉ ଆସିବ ! କତିରେ ଥାଇ ସେ ମୋର ହୋଇନାହିଁ, ସେ ଆଉ ଆସିବ ! ମୋ କପାଳ ବଡ଼ ଛୋଟ !

ତୁକା କହିଲା- ତୋ କପାଳ କଣ ମୋଠୁଁ ଛୋଟ ? ଦେଖିଲୁ, ମୁଁ କେମିତି ସହି ପଡ଼ି ରହିଚି। ମୋର ବିଶ୍ୱାସ, ଏ ଲୋକରେ ହେଉ ବା ପରଲୋକରେ ହେଉ, ମୋର ସ୍ୱାମୀ ନିତ୍ୟ ଜୀବିତ। ତାଙ୍କର ମୂର୍ତ୍ତି ମୋର ନିତ୍ୟ ଧ୍ୟାନ, ହେଲେ ଜଗତ ହିସାବରେ ମୁଁ ଦୁଃଖିନୀ, ଅଭାଗିନୀ ! ବିବାହର ବର୍ଷକ ମଧ୍ୟରେ ଯାହାର ସ୍ୱାମୀ ମରେ, ପୁଣି କୋଳରେ ମାସକର ପିଲାଥାଇ।

ମାୟା ଆପଣା ଦୁଃଖ ଭୁଲିଯାଇ କହିଲା- ତୁ ଭାରି ସହିଚୁ ଲୋ ! ପଥର ବି ତରଳି ଯାଇଥାନ୍ତା।

ତୁକା ଦୀର୍ଘ ନିଶ୍ୱାସ ଛାଡ଼ି କହିଲା- ସହିବାକୁ ଭଗବାନ ଶକ୍ତିଦେଲେ ସେତେବେଳେ, ମୋର ମଧ କଠିନ ବେରାମ ହୋଇଥିଲା, ବଞ୍ଚିବାର ଆଶା ନ ଥିଲା, ମାତ୍ର ମୁଁ ଅଭାଗିନୀ ବଞ୍ଚିଲି। ସେ କେବଳ ମୋର ଭାଇ ଯୋଗୁଁ। ସେ ଭାଇ, ବାବା ମୋତେ ଘରକୁ ଆଣି ଇସ୍କୁଲରେ ପୂରେଇଲେ। ଜଗତର ସେବାବ୍ରତରେ ମୋତେ ଦୀକ୍ଷିତକଲେ, ନୋହିଲେ ମୋର କ'ଣ ସେ ଦୁଃଖ ସହିବାର କ୍ଷମତା ଥିଲା ? ସବୁ କର୍ମଫଳ ଭଉଣୀ। ଯାହା କରିଚୁ, ତାହା ପାଇବୁ।

ମାୟା- ତୁ କଅଣ କରିଚୁ ଯେ ଏ ଦଣ୍ଡ ପାଇଲୁ ?

ତୁକା- ଏ ଜନ୍ମରେ କିଛି କରି ନାହିଁ ସତ, ଆଉ କେଉଁ ଜନ୍ମରେ କରିଥିବି। ସବୁ କର୍ମର ଫଳ କଣ ଏକାଦିନକେ ମିଳେ ?

ମାୟା- ଏପରି ମିଳି ଲାଭ କଅଣ ? କେବଳ କଷ୍ଟଭୋଗ ସାର।

ତୁକା- ନା ଭଉଣୀ ! ତାହା ନୁହେଁ, କେବଳ ତାହା ନୁହେଁ, କେବଳ ମନୁଷ୍ୟକୁ ଦୁଃଖଦେବା ଈଶ୍ୱରଙ୍କର ଇଚ୍ଛା ନୁହେଁ,- ସେ ତ ପୂର୍ଣ୍ଣାନନ୍ଦ। ଦୁଃଖସୁଖ ଦିଇଟା ଆମରି କର୍ମ ଗଛର ଫଳ, ହେଲେ ଏ ସବୁ କ୍ଷଣସ୍ଥାୟୀ। ଜୀବନ ପରେ ଜୀବନ ଅଛି, କିଏ ବଞ୍ଚେ, କିଏ ମରେ।

ମାୟା ବୁଝିଲା କି ନାହିଁ ସନ୍ଦେହ। ଦୁଇବନ୍ଧୁ ଗାଧୋଇବା ଲାଗି ପାଣି ଭିତରକୁ ଓହ୍ଲାଇ ଗଲେ। ଗାଧୋଇ ସାରି ଘରକୁ ଫେରିଲେ। ସେତେବେଳେ ସୁଦ୍ଧା ସକାଳ ହୋଇନଥିଲା।

ମାୟା ଘରକୁ ଆସି ଦେଖିଲା, ଲଛମନ ଭାଇ ଦାଣ୍ଡଘରେ କାହା ସହିତ କଥାବାର୍ତ୍ତାରେ ନିଯୁକ୍ତ। ହଠାତ୍ ଆଗନ୍ତୁକର ପଛପଟକୁ ଚାହିଁ ଦେଇ ତାର ଦେହଟା ଶୀତେଇ ଉଠିଲା। ଅସମ୍ଭବ ସାଦୃଶ୍ୟ! ସେ କିଏ? ରଘୁନାଥପରି ଲୋକଟି, ଏ କିଏ? ସେ ଘର ଭିତରକୁ ଯାଇ ବସ୍ତ୍ର ପରିବର୍ତ୍ତନ କଲାବେଳେ ଅକାରଣରେ ତା ଛାତି ଥରିଲା। ଲାଳୀକୁ ପଚାରିଲାରୁ ସେ କହିଲା, ଆଗନ୍ତୁକ ଜଣେ ଅତିଥି, ସମ୍ଭବତଃ ଏଠି କିଛିଦିନ ରହିବେ। ମାୟାର ମନଟା କିଛି ଫିକା ହୋଇଗଲା। ସେ ତରତର ହୋଇ ଜଳଖିଆ ସାରି ସ୍କୁଲକୁ ବାହାରିଲା। ପରପୁରୁଷ ରୂପରେ ରଘୁନାଥର ସାଦୃଶ୍ୟ ଦେଖି ସେ ଯେ ଏପରି ଚଞ୍ଚଳ ହେଲା, ଏହି ଲଜ୍ଜାରେ ଅତ୍ୟନ୍ତ ବ୍ୟଥିତ ହେଲା।

ରଘୁନାଥର ଚଞ୍ଚଳ ଆଖି ଦୂରରୁ ମାୟାକୁ ଚାହିଁଥିଲା। ସେ ମୁଗ୍ଧ ହୋଇ ଭାବିଲା- କି ସୁନ୍ଦର! ପରକ୍ଷଣରେ ମନେ ହେଲା– ସୀତାକୁ ତ ଏହିପରି ଚାହିଁଥିଲା। ଏଥର ତା'ର ପ୍ରେମପୂର୍ଣ୍ଣହୃଦୟ କହିଲା- ଯେ ଗୋଲାପ ଭଲପାଏ, ସେ କ'ଣ ମଲ୍ଲୀକୁ ଭଲ ପାଏ ନାହିଁ? ଯେ ପଦ୍ମଫୁଲକୁ ଭଲ ପାଏ, ସେ କଣ ଯୂଥିକାକୁ ଭଲପାଏ ନାହିଁ? ସେ ଲଛମନ ସହିତ କଥା କହୁଥିଲେ ମଧ ତାହାର ମନ ଚଞ୍ଚଳ ହୋଇଉଠୁଥିଲା।

ସ୍କୁଲ ଫେରନ୍ତି ମାୟା ଲୁଗାପଟା ବଦଳାଇବାକୁ ଯାଉଥିଲା। ମୀରା ସେ ଘରକୁ ଆସି ଭାଉଜ ସୁଲଭ ରହସ୍ୟରେ କହିଲା– ଆଉ ଲୁଗା ଛାଡ଼ିବାକୁ ହେବ ନାହିଁ। ସଜବାଜ ହୋଇ ଆସ, ମୁଣ୍ଡଟା ମୁଁ କୁଣ୍ଡେଇ ଦିଏ। ସେ ଘରେ ପରା ଆମ ଜୁଆଁଇ ଅପେକ୍ଷା କରିଛନ୍ତି? ମାୟାର ମୁହଁ ଲାଜରେ ପାଟଳ ବର୍ଣ୍ଣ ହୋଇଗଲା। ସେ ମୀରାର ଗାଲଚିପି ତାକୁ ତୁନି ହେବାକୁ କହିଲା। ତୁଳା ଆସି ତାକୁ ଦାଣ୍ଡ ଘରକୁ ଡାକିନେଲା।

ରଘୁନାଥ ଧୀରେ ମୁହଁ ଟେକି ମାୟାକୁ ଚାହିଁଲା। ତାର ଆଖି ପ୍ରେମରେ ଢଳ ଢଳ। ମାୟା ଲଜ୍ଜାରେ ମୁଣ୍ଡ ନୁଆଁଇଲା। ପରକ୍ଷଣରେ ତା ଗୋଡ଼ତଳେ ବସିପଡ଼ିଲା। ତାର ଦୁଇ ଆଖିରୁ ପାଣି ବହିଯାଉଥିଲା। ରଘୁନାଥ ତାକୁ ଟେକି କୋଳକୁ ଆଉଜାଇ ନେଲା। ମୁହଁ ପୋଛି ଦେଇ କହିଲା– ମାୟା ମୋର! ଆଉ କାନ୍ଦନା, ସବୁ କାନ୍ଦର ଅବସାନ ହୋଇଚି, ଏ ଅଧମ ଦାସ ତୁମ୍ଭର ଗୋଡ଼ତଳକୁ ଫେରି ଆସିଚି, କ୍ଷମାଦେଇ ଗ୍ରହଣକର, ଆଉ ଅବିଶ୍ୱାସ କର ନାହିଁ।

ମାୟା ରଘୁନାଥର କୋଳ ଛାଡ଼ି ଅନ୍ୟ ଆସନରେ ବସିଲା। ମୁହୂର୍ତ୍ତକରେ ତାର ମନେ ହେଲା, ସେ କ୍ଷଣିକ ଉତ୍ତେଜନାରେ ଭୁଲ କରିଚି। ରଘୁନାଥକୁ କି ବିଶ୍ୱାସ? ଦଶଥର ଆଦର

କରି ଯେ ଦଶଥର ଗୋଡ଼ରେ ଦଳିଚି, ତାକୁ କି ବିଶ୍ୱାସ ? ସେ ବହୁତ ଆଘାତ ସହ ଦୃଢ଼ ହୋଇଥିଲା, କମ୍ପିତ କଣ୍ଠରେ କହିଲା ''କଣ କ୍ଷମାଦେବି ? ବରଂ ମୋତେ କ୍ଷମାକର, ଦୋଷତ ମୋର ।''

ରଘୁନାଥ ଆବେଗପୂର୍ଣ୍ଣ କଣ୍ଠରେ କହିଲା- ତୁମର କି ଦୋଷ ମାୟା ?

ମାୟା ଶୁଷ୍କସ୍ୱରରେ କହିଲା- ''ମୁଁ ଯେ ତୁମକୁ ଭଲପାଇଲି, ସେହିଟାତ ମୋର ଦୋଷ। କଥାକହିଲା ବେଳେ ସେ ଭାରି ଥରୁଥିଲା। ରଘୁନାଥ ଉଠି ତାକୁ ଆଲିଙ୍ଗନକଲା, କିନ୍ତୁ ମାୟା ଟାଣିହୋଇ ଦୂରରେ ଠିଆହେଲା। ପୁଣି ଗମ୍ଭୀର କଣ୍ଠରେ କହିଲା- ''କାହିଁକି ମୋତେ ଅକାରଣ ଛଳନାକରୁଛ ? ତୁମ ଚିଠି କଣ ମୋ କତିରେ ନାହିଁ ? ତୁମେ ମୋତେ ଭଲପାଅ ନାହିଁ; ତୁମେ ଅତୁଲ୍ୟ ସୁନ୍ଦରୀ ସୀତାକୁ ଭଲପାଅ ! ମୁଁ ମରେ କି ସରେ, ତୁମର ସେଥିରେ କଣ ?- ଆଉ କହି ହେଲା ନାହିଁ। ରଘୁନାଥ ଚୌକିରେ ଆସି ବସିପଡ଼ିଲା। ସେତେବେଳେ ତା ଆଖି ମଧ୍ୟ ଅଶ୍ରୁପୂର୍ଣ୍ଣ ହୋଇଥିଲା। ମାୟା ଘର ଭିତରକୁ ଚାଲିଗଲା।

ରଘୁନାଥ ଦଶଦିନ ଏଲହାବାଦରେ ରହିଲା। ମାୟାକୁ ଅନେକ ବୁଝେଇଲା, ଅନେକ ତୋଷାମୋଦ କଲା। କିନ୍ତୁ ଏଥର ତାହାର ପଥର ମନ ଟଳିଲା ନାହିଁ। ସେ ରଘୁନାଥ କଥାରେ ଆସ୍ଥା ସ୍ଥାପନ କରିପାରିଲା ନାହିଁ। ରଘୁନାଥ ବ୍ୟଥିତ ଚିତ୍ତରେ ବିଦାୟ ନେଇ ଫେରିଯିବାକୁ ପ୍ରସ୍ତୁତହେଲା। ମାୟା ସେତେବେଳେ ଆପଣା କୋଠରୀରେ ବସି କାନ୍ଦୁଥିଲା। ରଘୁନାଥ ଯିବାର ଆଉ ଘଣ୍ଟାଏ ମାତ୍ର ବାକୀ, ସେ ତକିଆରେ ମୁହଁପୋତି କିଛିକ୍ଷଣ କାନ୍ଦିଲା। ବିଦାୟର ସମୟ ନିକଟବର୍ତ୍ତୀ ଭାବି ତା' ପ୍ରାଣ ଅଥୟ ହୋଇଉଠିଲା। ତା'ର ସବୁ ଦୃଢ଼ତା ସୂର୍ଯ୍ୟ କିରଣରେ କୁଆପଥର ଭଳି ମିଳେଇଗଲା। ସେ ଉଠି ଦାଣ୍ଡ ଘରକୁ ଗଲା।

ଦାଣ୍ଡ ଘରେ ରଘୁନାଥ ଏକାକୀ ବସି ନିଜ ଭାଗ୍ୟ ବିଷୟ ଚିନ୍ତାକରୁଥିଲା। ମାୟାର ବ୍ୟବହାରରେ ସେ ଅତିଶୟ ଆଘାତ ପାଇଚି। ମାୟା କତିରେ ଏତେ ପ୍ରତିଜ୍ଞାକରିବା ସତ୍ତ୍ୱେ ସେ ତାକୁ ବିଶ୍ୱାସ କଲା ନାହିଁ, ଏ ଚିନ୍ତାରେ ତା' ମନ ଅସ୍ଥିର ହେଉଥିଲା। ନିଜର ହତଭାଗ୍ୟ ଜୀବନର ଆର୍ତ୍ତବେଦନା ଭାରରେ ସେ ନଇଁ ପଡ଼ିଥିଲା, ଠିକ୍ ଏହି ସମୟରେ ମାୟା ସେ ଘରେ ପ୍ରବେଶକଲା। ତାର ବେଶଭୂଷା ଅସଂଯତ, କାନ୍ଦି କାନ୍ଦି ମୁହଁ ଫୁଲିଯାଇଚି। ରଘୁନାଥ ରୋରୁଦ୍ୟମାନା ପ୍ରେୟସୀକୁ ବକ୍ଷରେ ଥୋଇଲା। ଆଜି ଅଶ୍ରୁରେ ତାଙ୍କର ପୂର୍ଣ୍ଣ ମିଳନ, ଆଉ କଥାରେ ପ୍ରୟୋଜନ ହେଲା ନାହିଁ। ପରସ୍ପର ପରସ୍ପରକୁ ଆଜି ଭଲରୂପେ ଚିହ୍ନିଲେ। ଦୁହେଁ ଯେ ଦୁହିଁଙ୍କ ବିନା ଶୂନ୍ୟ, ଏହା ମଧ୍ୟ ଅନୁଭବକଲେ। ଆଜି ସେମାନେ ପ୍ରକୃତ ଏକାତ୍ମା।

ରଘୁନାଥ ଓ ମାୟାକୁ ବହୁତ ବହୁତ ଆଶୀର୍ବାଦ କରି ଚେମନଲାଲଙ୍କର ପରିବାର ଯେଉଁଦିନ ବିଦାୟ ନେଲେ, ସେଦିନ ଆବେଗରେ ତୁକା ଓ ମୀରା ନ କାନ୍ଦି ରିହପାରିଲେ ନାହିଁ। ଏପରି ଗଭୀର ସ୍ନେହ କି ସହଜେ ତୁଟେ ? ତଥାପି ମାୟା ଯେ ସୁଖୀ ହେବାକୁ ଯାଉଚି

ଏହା ଭାବି ନଣନ୍ଦ ଭାଉଜ ଆନନ୍ଦିତ ହେଲେ। ରଘୁନାଥ ଓ ମାୟା ଆସି ଗାଡ଼ିରେ ବସିଲେ। ରାତ୍ରିର ଅନ୍ଧାକାରର ନିସ୍ତବ୍ଧତା ଭଙ୍ଗକରି ଗାଡ଼ି ଯେତେବେଳେ ଘରଘର୍ ଶବ୍ଦରେ ଚାଲିଲା ରଘୁନାଥ ହସିହସି କହିଲା-ମୁଁ ତୁମକୁ ଅଜାଣତରେ ପ୍ରେମକଲି ମାୟା। ତୁମ୍ଭେ ପ୍ରକୃତରେ ମାୟାବିନୀ। ବିଶେଷତଃ ତୁମର ଯେଉଁ ଆଖିର ଚାହାଣି। ସେଇ ମୋର ଅମୃତ। ତୁମ୍ଭେ ଯିବା ପରେ କେତେଦିନ କେତେରାତି ଯେ ତୁମର ଚାହାଣିର ସ୍ୱପ୍ନଦେଖିଚି, ତାହା କହି ହେବନାହିଁ।

ମାୟା ମୁଗ୍ଧଦୃଷ୍ଟିରେ ରଘୁନାଥକୁ ଚାହିଁରହିଲା।

ରଘୁନାଥ ଗଦ୍‌ଗଦ୍ ସ୍ୱରରେ କହିଲ- ମାୟା! ବିଧାତାର ଲୀଳା ଆଶ୍ଚର୍ଯ୍ୟ! ମୁଁ ହଜାର କାହାକୁ ଭଲ ପାଉଥିଲେ ସୁଦ୍ଧା, ତୁମେ ମୋର ପ୍ରକୃତ ଜୀବନର ସଙ୍ଗିନୀ, ତୁମର ପ୍ରେମ ନିକଟରେ ମୁଁ ହାର ମାନିଲି। ଏପରି ହୀରନ୍ ମୋ କପାଳରେ ଥଲା ବୋଲି, ମୁଁ ଜାଣି ନ ଥିଲି।

ମାୟା ନିଜର ପ୍ରଶଂସା ଶୁଣି ଲାଜରେ ମୁହଁ ତଳକୁ କଲା।

× × × ×

ଯେଉଁଦିନ ମହାସମାରୋହରେ ମାୟା ଓ ରଘୁନାଥର ବିବାହ ସମ୍ପନ୍ନ ହେଲା, ସେ ଦିନ ଝିଅ ଜୁଆଁଇକି ଚାହିଁ କେବଳକୃଷ୍ଣବାବୁ ଓ ସୁଧାମୟୀଙ୍କର ହୃଦୟ ଆନନ୍ଦରେ ନାଚିଉଠିଲା। ବିବାହାନ୍ତେ ପିତାର ଆଶୀର୍ବାଦ ନେବାପାଇଁ ଗଲାବେଳକୁ ରଘୁନାଥ ଅଶ୍ରୁରୋଧ କରି ପାରିଲା ନାହିଁ। କେବଳବାବୁ ତା ମୁଣ୍ଡରେ ହାତଥୋଇ କହିଲେ-ବାପ! ତୁମେ ମାୟାକୁ ଗ୍ରହଣ କରିଚ ଏ ମୋର ପରମ ସୌଭାଗ୍ୟ! ମୋର ବଂଶରେ ଯେ ବ୍ରାହ୍ମଣ ପୁତ୍ର ଜୁଆଁଇ ହେଲା, ଏହା ମଧ୍ୟ ମୋର ସୌଭାଗ୍ୟ। ଆଶୀର୍ବାଦ କରୁଚି- ଦୁଇଜଣ ଚିରସୁଖୀ ହୁଅ। ଆଉ ଏଥର ନାହିଁ କର ନାହିଁ, ଏହା କହି ଦାନପତ୍ରଟି ଜୁଆଇଁ ହାତକୁ ବଢ଼ାଇଦେଲେ।

ଅବିନାଶ ଓ ଛାୟା ଦିଦୀର ବିବାହ ବେଳକୁ ବିଲାତରୁ ଫେରିଥିଲେ। ଦୁହେଁଯାକ ରଘୁନାଥର କାନମୋଡ଼ି ଫୁଲାଇଦେଲେ।

ରଘୁନାଥ ବର୍ମା ଜାହାଜରେ ବସି ଏ ଦୁହିଁଙ୍କ ଉପଦ୍ରବରୁ ତ୍ରାହି ପାଇଲା।

ସେତେବେଳେ ଗଭୀର ରାତ୍ରି, କିନ୍ତୁ ଆକାଶ ଜ୍ୟୋତ୍ସ୍ନାମୟୀ। ନୀଳ ସମୁଦ୍ରରେ ଢେଉ କାଟି 'ଭରାଟା' ଅଗ୍ରସର। ଆକାଶ ନୀଳଚକ୍ରବାଳ, ନୀଳ ସାଗର ସହିତ ମିଶିଯାଇଥିଲା, ଆଉ ପୂର୍ଣ୍ଣଚନ୍ଦ୍ରକୁ ଆଲିଙ୍ଗନ କରିବାକୁ ଯେପରି ବିଶାଳ ସମୁଦ୍ର ମହାବାହୁ ବିସ୍ତାରକରି ଉପରକୁ ଉଠୁଥିଲା। ସେ ମହା ମିଳନ ମୂହର୍ତ୍ତରେ 'ଡେକ୍' ଉପରେ ବୁଲୁଥାଏ ରଘୁନାଥ!- ଆଜି ତାର ହୃଦୟ ମହାଭାବପୂର୍ଣ୍ଣ। ଆତ୍ମା ଅନନ୍ତର ସରାରେ ବିଲୀନ। ସେ ଗଭୀର କୃତଜ୍ଞତାପୂର୍ଣ୍ଣ ହୃଦୟରେ ଭାବୁଥିଲା ଭଗବାନଙ୍କ ମହାମହିମା! ଅସୀମ, ଅପାର ଶକ୍ତି। ତାହାର ଯୁକ୍ତକର ଲଲାଟସ୍ପର୍ଶ କଲା, ଆଉ ହୃଦୟରୁ ପ୍ରାର୍ଥନା ଉଠିଲା। କ'ଣ ଥିଲା, ସେ କ'ଣ ହେଲା। ଯେ ଅନାଥ

ଅର୍କ୍ଷିତ, ତାକୁବି ଜଗତ୍‌ମାତା ଭୁଲନ୍ତି ନାହିଁ। ଯେ ବନ୍ଧୁହୀନ, ଗୃହହୀନ, ସହାୟହୀନ, ତା'ର ମଧ୍ୟ ପରମାଶ୍ରୟ ସ୍ନେହ ! ନୋହିଲେ ଦେଶତ୍ୟାଗୀ ହତଭାଗ୍ୟକି ଆଜି ଏତାଦୃଶ ମହାମଙ୍ଗଳ ଲାଭ କରିଥାନ୍ତା।

ବିସ୍ମୟବିମୂଢ଼ ରଘୁନାଥ ଭଗବାନଙ୍କ ଚିନ୍ତାରେ ତନ୍ମୟହୋଇ ହୃଦୟର ଗଭୀର କୃତଜ୍ଞତା କୃତାଞ୍ଜଳିପୁଟରେ ଜଣାଇଲା।



## ଊନତ୍ରିଂଶ ଅଧ୍ୟାୟ

ସେତେବେଳେ ମାଣ୍ଡାଲେ ନଗରୀର ସୁବର୍ଣ୍ଣ ପାଗୋଡ଼ା ଉପରେ ଅସ୍ତଗାମୀ ସୂର୍ଯ୍ୟର ଶେଷ ଆଭା ଟିକକ ପଡି ଝକମକ ଦିଶୁଛି, ଆଉ ଆଖପାଖ ଗଛପତ୍ର ଓ ଫୁଲରେ, କିଛିକ୍ଷଣ ପୂର୍ବେ ହୋଇଥିବା ବୃଷ୍ଟିର ସଞ୍ଚିତ ଜଳକଣା ଉପରେ ଶତଇନ୍ଦ୍ରଧନୁର ଶୋଭା ସୃଷ୍ଟିକରୁଚି। ନଦୀର ବିସ୍ତୃତ ବାରିବକ୍ଷବାହୀ-ସ୍ନିଗ୍ଧ-ଶୀତଳ ସମୀର ଦେହ ମନ ପ୍ରଫୁଲ୍ଲ କରିପକାଉଚି। ନଦୀକୂଳରେ ଅସଂଖ୍ୟ ବର୍ମିସୁନ୍ଦରୀ ଶତ-ପ୍ରଜାପତି ରଙ୍ଗର ପୋଷାକ ପିନ୍ଧି ବାୟୁ ସେବନ କରି ବୁଲୁଛନ୍ତି। ସେଦିନ ବର୍ମିଙ୍କର 'ମୁକ୍ତାଚୋରୀ' ପର୍ବ। ମୁକ୍ତାଗର୍ଭଶୁକ୍ତିକାଗୁଡ଼ିକ ନବବର୍ଷାଜଳ ପାନକରି କୂଳରେ ଲାଳ ଢାଳିଦେଇଛନ୍ତି। ସେହିଗୁଡ଼ିକ ମୁକ୍ତାରେ ପରିଣତ ହୋଇ ବାଲିରେ ମିଶି ଯାଇଚି। ତାହାହିଁ ଖୋଜି ବୁଲୁଛନ୍ତି ବର୍ମିଯୁବତୀବୃନ୍ଦ।

ନଦୀକୂଳରେ ଗୋଟିଏ ସ୍ଥାନରେ ଦୁଇଜଣ ଭାରତୀୟ ଦଣ୍ଡାୟମାନ। ଜଣେ ପୁରୁଷ ଓ ଜଣେ ସ୍ତ୍ରୀ। କିଛି ଦୂରରେ ଚାରୋଟି ପିଲା ନଦୀ ବାଲିରେ ଦଉଡ଼ାଦଉଡ଼ି କରୁଛନ୍ତି, ଆଉ ତାଙ୍କୁ ମୁଗ୍‌ଧ ଦୃଷ୍ଟିରେ ଚାହିଁଛନ୍ତି ଉଭୟେ। ସେମାନେ ଯେ ଉଭୟର ହୃଦୟ-ସଂପତ୍ତି। ଦଶଟିବର୍ଷ ତାଙ୍କ ଜୀବନରୁ ଯେ କେଉଁ ବାଟେ ବହି ଯାଇଚି, ଏହା ରଘୁନାଥ ଓ ମାୟା ବୁଝିପାରି ନାହାନ୍ତି। ଦଶଟି ବର୍ଷ ମଧ୍ୟରେ ତାଙ୍କର ଦାମ୍ପତ୍ୟଜୀବନ ମଧୁର କରି ଆସି ଦେଖାଦେଇଛନ୍ତି ଚାରୋଟି ସନ୍ତାନ। ଦୁଇଟିପୁତ୍ର-ନିର୍ମଳ ଓ ନିରୂପମ, ଦୁଇଟି କନ୍ୟା-ସ୍ମୃତି ଓ ମିନତି। ମାୟାର ଅପୂର୍ବ ଗୃହିଣୀତ୍ୱରେ ରଘୁନାଥ ଦୁଃଖକଷ୍ଟ କଣ ଜାଣି ପାରିନାହିଁ, ଅତୀତ ଜୀବନ ତାର ବର୍ତ୍ତମାନ ବିସ୍ମୃତିର ଅନ୍ଧକାରରେ କେଉଁଆଡ଼େ ଲୁଚିଯାଇଛି। ତଥାପି ବେଳେ ବେଳେ ସୀତାର ମୁଖ ତା' ମାନସପଟରେ ଉଦିତହୁଏ। ବେଳେ ବେଳେ ଖୁଡ଼ୀ ଓ ପିତେଇନାନୀ, ତାରାମଣି ଓ ସରସ୍ୱତୀ ହେରିକାଙ୍କୁ ମନେପକାଇ ସେ ଦେଶକୁ ଯିବାକୁ ମନେ କରେ; କିନ୍ତୁ ପରକ୍ଷଣରେ ସବୁ ପାସୋରିଯାଏ। ଆଜିକାଲି ସେ ନାନା କାର୍ଯ୍ୟରେ ବ୍ୟସ୍ତ। ବିଶାଳ ସଂପତ୍ତିର ମାଲିକ। ରାଙ୍ଗୁନ୍‌ରେ ତା'ର ମାନ, ପ୍ରତିପତ୍ତି ଯଥେଷ୍ଟ। ଦେଶର ଦେଶର ନାନାକାର୍ଯ୍ୟ ଭାର ସେ ଓ ମାୟା ଘେନିଛନ୍ତି, ବିଶେଷତଃ ବର୍ମାପ୍ରବାସୀ ଭାରତୀୟଙ୍କ ସଭାର ସେ ସଂପାଦକ, ଏବଂ ତାହାରି ଚେଷ୍ଟାଦ୍ୱାରା 'ଦି ସେଟ୍‌ଲର' [The Settler] ବୋଲି ସଭାର

ମୁଖପତ୍ରଟି ବାହାରେ। ରାଙ୍ଗୁନ୍‌ର 'ମାତୃମଙ୍ଗଳ' ସମିତିରେ ମାୟାର ବିଶିଷ୍ଟ ସ୍ଥାନ, ମହିଳା ସମିତିରେ ସେ ସଭାପତି।

ଦୁଃଖରେ ସୁଖରେ ଦିନ ବହି ଚାଲିଯାଉଛି। ଦୁହେଁ ଦୁହିଁଙ୍କ ଚାହିଁ ଆଜି ସେହି କଥାହିଁ ଭାବୁଛନ୍ତି ପରା? କିଛି ବେଳ ପରେ ସଞ୍ଜହେଲା। ନଦୀ କୂଳରେ 'ସାମ୍ପାନ୍' ବାଲା ଆସି ଡାକଦେଲା। ମାୟାର ନାମାଙ୍କିତ କ୍ଷୁଦ ଜାଲିବୋଟରେ ପରିବାରଟି ଉଠିଲେ। ନଦୀର ମନୋହର କଲ୍ଲୋଳ କାଟି, ମଧୁର ଜ୍ୟୋତ୍ସ୍ନାବୋଳା ଆକାଶ ତଳେ ରୂପା ରାଜ୍ୟରେ ହୀରାପରୀ ପରି ସାନ ଧଳା ବୋଟଟି ଅଗ୍ରସରହେଲା। ସେହି କ୍ଷୁଦ୍ରତରଣୀରେ ବସି ମାୟା ବୀଣା ବଜାଇବାକୁ ଲାଗିଲା, ତାହା ଉପରେ ଈଷତ୍ ଆଉଜି ପଡ଼ି ରଘୁନାଥ ଆକାଶକୁ ଚାହିଁଥିଲା, ଆଉ ଗୋଡ଼ତଳେ ଖେଳୁଥିଲେ ଶିଶୁବୃନ୍ଦ। ଆଜି ରଘୁନାଥ ମନରେ ମହାଭାବ। ସେ ବୀଣାର ମଧୁର ସ୍ୱରରେ ତନ୍ମୟ। ସମଗ୍ର ନୀଳାକାଶ, ତା ମଝିରେ' ଚାନ୍ଦର ଶୋଭା, ଖଣ୍ଡ– ମେଘ ମଧରେ ତାରାର ଲୁଚକାଳି, ପୁଣି ବିଶାଳ ସଲିଳ ଦର୍ପଣରେ ରୁଚିର ପ୍ରତିବିମ୍ବର ମୋହନ ନୃତ୍ୟ। ବୋଟର ଚାରିପାଖରେ କେବଳ ଅନନ୍ତ ଜଳର ବିସ୍ତାର, ଢେଉ ଉପରେ ଢେଉ, ସାନ ବଡ଼ ଢେଉ ମୁଣ୍ଡରେ ଧଳା ମଲ୍ଲିଫୁଲ ପୁଞ୍ଜପରି ଫେଣରାଶି, ରାଶିସଙ୍ଗି ହୀରାମୁକ୍ତା ଚୂରିହୋଇ ପଡ଼ିଲା ପରି ଢେଉଗୁଡ଼ିକ ବୋଟର୍ ଚାରିପାଖେ ଛିନ୍ନ ବିଛିନ୍ନ ହୋଇ ପଡୁଛନ୍ତି। ଦୂରକୁ ଆକାଶ ପାଣିଦେହରେ ମିଶିଗଲା ପରି ଦିଶୁଛି। ତାହାକୁ ଲକ୍ଷ୍ୟକରି ରଘୁନାଥ କହିଲା– ''ମାୟା! ଏଇ ଦିଗ୍‌ବଳୟ ପରି ଆମର ମିଳନ, ମୁଁ ମହାକାଶ ଆଉ ତମେ ଏଇ ପୂର୍ଣ୍ଣବକ୍ଷା ନଦୀ। ଆମେ ଉଭୟେ ଏପରି ମିଶିଛୁ ଯେ କେଉଁଠି ଜଣକର ଆରମ୍ଭ, କେଉଁଠି ଶେଷ ବାରିହେବ ନାହିଁ। କିଏ ଜାଣିଥିଲା ମୋ କପାଳରେ ଏତେ ସୁଖ ଅଛି ବୋଲି? ମୁଁ ପରା ରଘୁ-ଅର୍କ୍ଷିତ?''

ମାୟା ବୀଣାରୁ ଟିପକାଢ଼ି ବୀଣାକୁ କୋଳକୁ ଥୋଇଦେଲା। ଅଜ୍ଞାତରେ ରଘୁନାଥର କାନ୍ଧ ଉପରେ ହାତଟି ଥୋଇଦେଲା। ରଘୁନାଥ ବୁଲିପଡ଼ି ତା'ର କପୋଳ ଚୁମ୍ବନକଲା। ଗୋଡ଼ତଳେ ନିରୂପମା ଲଟେଇ ପଡ଼ି ପିତାମାତା ମୁହଁକୁ ଚାହିଥିଲା, ମାତାକୁ ଚୁମ୍ବନ କରିବାର ଦେଖି ସେ ଝାମିହୋଇ ପିତା କୋଳକୁ ଉଠିଲା। 'ମତେ ଚୁମା ଦିଅ' କହି ଅଳି କରିବାକୁ ଲାଗିଲା। ରଘୁନାଥ ପୁତ୍ରମୁଖ ବାରମ୍ବାର ଚୁମ୍ବନକଲେ। ଅକୃତଜ୍ଞ ଶିଶୁ ସେଥିରେ ସନ୍ତୁଷ୍ଟ ନ ହୋଇ ମା' କୋଳକୁ ଡେଇଁପଡ଼ିଲା। ମାୟା ହାସ୍ୟ-ଉଜ୍ଜ୍ୱଳ ଆନନରେ ସ୍ୱାମୀ ମୁହଁକୁ ଚାହିଁ କହିଲା– ''ଦେଖିଲ, ମୋ' ପୁଅପରା'' ସେଠୁଁ ଶିଶୁକୁ ପଚାରିଲା 'ତୁ ମୋ ପୁଅ?' ଶିଶୁ ଦରସ୍ଫୁଟ କଥାରେ କହିଲା– ''ତୋ ପୁଅ''। ରଘୁନାଥ ରଙ୍ଗଦେଖିବା ଅଭିପ୍ରାୟରେ କହିଲା– ''ମୋ ପୁଅ ନୋହୁଁ?'' ଶିଶୁ ସ୍ମିତ ବଦନରେ ସ୍ପଷ୍ଟ କହିଲା - ନା''। ଅନ୍ୟ ପିଲାମାନେ କତିରେ ଥିଲେ। ନିରୂପମା 'ନାଁ' କହିଲାରୁ ତିନିଜଣଯାକ ଦଉଡି ଆସି ବାପାକୁ କୁଣ୍ଢେଇ ପକେଇ କହିଲେ - ''ଆମେ ତମ ପିଲା।'' ସାନ ମିନତି ରଘୁନାଥର ଡାହାଣ ହାତ ଦଖଲ କରି କହିଲା- ''ଏ ମୋ ହାତ।'' ନିର୍ମଳ ବାମ ହାତ ଓ ଗୋଡ଼ ଦିଟା ଜାପୁଟି ଧରି କହିଲା-

''ଏତକ ମୋର।'' ସ୍ମୃତି ପିଠିରେ ନଦିହୋଇ ଗଲା ଛନ୍ଦିପକାଇଲା। ରଘୁନାଥ ସମସ୍ତଙ୍କୁ ଆଲିଙ୍ଗନକରି କହିଲା- ''ଚାଲ ଆମର ନଗୁକୁ ଆଉ ତା ମାକୁ ନଣରେ ପକେଇଦବା।'' ଏଥର ପିଲାମାନେ ଚିତ୍କାର କରି ମାକୁ ବେଢ଼ିଗଲେ। ସେ କହିଲା, ମୋ ମା; ସେ କହିଲା, ମୋ ମା। ମାୟା ଓ ରଘୁନାଥ ହସି ହସି ସେମାନଙ୍କୁ ଶାନ୍ତକଲେ। ପରକ୍ଷଣରେ ଶିଶୁମାନେ ପୁଣି ଡେକ୍ ଉପରେ ଖେଳିବାକୁ ଲାଗିଲେ। ତାଙ୍କର ବର୍ମିଆୟା 'ମାଁମିଏଁ' ତାଙ୍କୁ ଆରପଟକୁ ଘେନିଗଲା। ମାୟା ଓ ରଘୁନାଥ ନିଶ୍ଚିନ୍ତ ହୋଇ ବସି ଚନ୍ଦ୍ର-ଆଲୁଅ-ବୋଳା ନଈ ପାଣିକୁ ଚାହିଁ ରହିଲେ। ସେତେବେଳେ ସେମାନେ ସ୍ୱର୍ଗରେ କି ମର୍ତ୍ତ୍ୟରେ, ତା ତାଙ୍କୁ ଜଣା ନ ଥିଲା। ରଘୁନାଥ ବିହ୍ୱଳହୋଇ କହିଲେ- ''ମାୟା, ତମେ ପ୍ରକୃତ ମାୟାବିନୀ।''

ମାୟା ମଧୁରକଣ୍ଠରେ କହିଲା- ''ତୁମେ ତ ମତେ ସେଇ ନାଁ ଦେଇ,- ତମେ ଏପରି ଲଜ୍ଜାହୀନ ଯେ ଚିଠିପତ୍ର ଉପରେ ସୁଦ୍ଧା ମାୟାବିନୀ ବୋଲି ଲେଖିଥାଅ। ମୁଁ କଣ ସତେ ମାୟାବିନୀ-ଡାହାଣୀ ?''

ରଘୁନାଥ କହିଲେ-''ତା ନ ହୋଇଥିଲେ ଏ ଜୀବନଟା, ଏଡ଼େ ମଧୁମୟ, ଏଡ଼େ ଶାନ୍ତିମୟ ହୋଇ ନ ଥାନ୍ତା। ଦେଶ ଛାଡ଼ି ମୁଁ ହତଭାଗା ପରି ବୁଲୁଥିଲି, କଣ କରିବି, କୁଆଡ଼େ ଯିବି, କିଛି ଠିକଣା ନ ଥିଲା; କିନ୍ତୁ ତୁମର ମାୟାଦୃଷ୍ଟିଯୋଗୁଁ ଆଜି ମୋର ଏ ଅବସ୍ଥା। ବାସ୍ତବିକ ତୁମ କତିରେ ମୋର କୃତଜ୍ଞ ହେବା କଥା; କିନ୍ତୁ ମୁଁ ତ କେବେ ଏଥିପାଇଁ ତୁମକୁ ଧନ୍ୟବାଦଟିଏ ସୁଦ୍ଧା ଦେଇ ନାହିଁ ?''

ମାୟା ଦୃଷ୍ଟି ନତକରି କହିଲା - ''କିଏ କାହାକୁ ଧନ୍ୟବାଦ ଦବ ? ଓଲଟି ତମେ ଯେ ଏଡ଼େ ଅଯୋଗ୍ୟ ସ୍ତ୍ରୀର ହାତ ଧରିଚ, ମନେ ଅଛିଟି ପୂର୍ବକଥା ?''

ରଘୁନାଥ ଦୀର୍ଘଶ୍ୱାସ ଘେନି କହିଲେ, - ''ମୁଁ ଅନ୍ଧ, ରତ୍ନର ମର୍ଯ୍ୟାଦା ବା କାହୁଁ ବୁଝନ୍ତି ? ତୁମକୁ ଯେଉଁ ଉପେକ୍ଷା କରି କଷ୍ଟଦେଇଚି, ମୋର ଯେବେ ସେ କଥା ମନେ ପଡ଼େ, ସେତେ କଷ୍ଟହୁଏ।''

''କିନ୍ତୁ ସେହିଯୋଗୁଁ ତ ଏ ମିଳନ ଏଡ଼େ ମଧୁର ହେଲା ପ୍ରିୟତମ ! ମୁଁ ହଜାର ଥର ଭାବିଚି, ମୁଁ ଗୁଣହୀନା, ରୂପହୀନା। ମତେ ତମେ ଦୟାକରି ଭଲପାଇଚ।''

ରଘୁନାଥ ମାୟା କତିକି ଘୁଞ୍ଚିଆସି କହିଲେ, - ''ତୁମେ ରୂପହୀନ, ଗୁଣହୀନ !''

ମାୟା କହିଲା,- ''ମିସେସ୍ ସେନ୍ ପରି କଣ ମୁଁ ସୁନ୍ଦରୀ ? ମିସେସ୍ ସେନ୍ କହୁଥିଲେ, ତାରକ ବାବୁ ତାଙ୍କ ରୂପଦେଖି ତାଙ୍କୁ ବିଭାହୋଇଛନ୍ତି। ବାସ୍ତବିକ ମୁଁ ବଡ଼ ଅସୁନ୍ଦରୀ, ନା ?''

ମାୟାର ଶେଷୋକ୍ତ କଥାରେ କୃତ୍ରିମତାର ଆଭାସ ଥିଲା। ରଘୁନାଥ ଗମ୍ଭୀର ସ୍ୱରରେ କହିଲେ,- ''ବରଂ କୁହ ଯେ ତୁମେ ଭାରି ଗୁଣବତୀ, ଭାରି ସୁନ୍ଦରୀ। ମିଛ କହୁଚ କାହିଁକି କହିଲ। ମୁଁ ତ ତମକୁ ମିସେସ୍ ସେନ୍‌ଠାରୁ ସୁନ୍ଦରୀ ମନେକରେ।''

ମାୟା ସ୍ୱାମୀର ପ୍ରଶଂସାରେ ଗର୍ବିତା ହୋଇ ତାଙ୍କ କୋଳକୁ ଢଳିପଡ଼ି କହିଲା,- ''ଏତକ ବନାଯୋରି କଥା। ଦୁନିଆ ମତେ ଅସୁନ୍ଦରୀ କହିବେ, ତମେ କହିବ ସୁନ୍ଦରୀ।''

ରଘୁନାଥ- ''କିନ୍ତୁ ତମ ଭିତରେ ଯେ 'ତମେ' ଲୋକଟି ଅଛି, ସେ କିପରି ମୋର, ମୋର ନିଜର, ଏ କଥା ଯଦି ବୁଝନ୍ତି।''

ମାୟା ଗଦ୍‌ଗଦ କଣ୍ଠରେ କହିଲା, - ''ସେହିଯୋଗୁଁ ପରା ମତେ ତଡ଼ିଥିଲ-ମତେ ଦୋଷୀ ପରି ଶାସନ କରିଥିଲ, ମତେ କହିଥିଲ- ତୁ ମୋତେ ଭଲପାଇ ଅନ୍ୟାୟକରିଚୁ, ଏଥର ତହିଁର ପରିଶୋଧନେବି। ଦେଖିବି, କଲିକତା ଚାଲିଗଲେ ମୋ ବିନା ଚଳିବ କିପରି?''

ରଘୁନାଥ ପରମ ପ୍ରେମରେ କହିଲେ,-''ତୁମ ବିନା ମୁଁ ଦଣ୍ଡେ ଚଳିପାରିବି ନାହିଁ, ତମେ ମୋର ହାତଗୋଡ଼।''

ମାୟା ଅସ୍ଫୁଟସ୍ୱରରେ କହିଲା,- ''ମୁଁ ଯଦି ମରିଯାଏ?''

ରଘୁନାଥ କାନକୁ ସେ କଥା ଭାରି ଖରାପ ଶୁଭୁଲା। ତାହାର ଛାତି ଦାଉଁ ଦାଉଁ ହୋଇ ଉଠିଲା। ସେ ମାୟାକୁ କୁଣ୍ଢାଇପକାଇ କହିଲା,- ''ତା ହେଲେ ଏ ହତଭାଗା ପୁଣି ଅର୍କ୍ଷିତ ହେବ, ଏଥର ଚାରି ପିଲାଙ୍କୁ ନେଇ ଭାସିବ?''

ମାୟା ତାଙ୍କର ଭୟ ଓ ଉଦ୍‌ବେଗ ଲକ୍ଷ୍ୟକରି ହସି ହସି ଲୋଟିଗଲା, କହିଲା - ''ମୁଁ ଗୋଟାପଣଟା ବଞ୍ଚିଛି, ତମର ବାହୁନା ଲାଗିଚି କଣପାଇଁ ମ?'' ଏହା କହି ସେ ବାହାରକୁ ଚାହିଁଲା। ତାହାର ହୃଦୟ ଭିତର ସେତେବେଳେ ପ୍ରେମରେ ପୂର୍ଣ୍ଣ! ତାହାର ଜଗତମୟ କେବଳ ରଘୁନାଥର ମନୋମୋହନ ମୂର୍ତ୍ତି। ଏହି ମୂର୍ତ୍ତି ବିନିମୟରେ ସେ ସ୍ୱର୍ଗସୁଖ ସୁଦ୍ଧା ଚାହିଁ ନାହିଁ। ଏହି ମୂର୍ତ୍ତି ଯେ ତାର ଇଷ୍ଟ ଦେବତା, ତାହାର ବହୁ ସାଧନାର ଧନ, ବହୁ ଅଶ୍ରୁଜଳସିକ୍ତ ନନ୍ଦନର ପାରିଜାତମାଳ।

× × × ×

''କେମିତି ବୋଟ ବୁଲାହେଲା? ଏଥର ଗଲେ ମତେ ନବ। ଖାଲି ଏକା ଏକା ସାହେବ ମେମ୍ ଚାଲି ଯାଉଚ, ମୁଁ ଆଉ କେହି ନୁହେଁ ପରା?'' ଏହା କହି ମିସେସ୍ ସେନ୍, ମାୟା କତିରେ ଆସି ବସିପଡ଼ିଲା। ତାହା ହାତରେ ଥିଲା ଗୋଟିଏ ବ୍ଲାଉସ୍‌ର ନମୁନା। ମାୟା ଭଲ ସିଲେଇ ଜାଣେ, ସେଥିପାଇଁ ସେ ତାଠାରୁ କନା କଟାଇ ନେବାପାଇଁ ଆସିଥିଲା। ମିସେସ୍ ସେନ୍ ତାରକ ବାବୁଙ୍କର ସ୍ତ୍ରୀ। ତାରକ ବାବୁ ଆସଷ୍ଟାଣ୍ଟ ସର୍ଜନ, 'ସିରିୟାମ୍'ର ଡାକ୍ତର।

ସିରିୟାମ୍ ରେଙ୍ଗୁନ୍ ଉପକଣ୍ଠର କ୍ଷୁଦ୍ର ପଲ୍ଲୀ। ସେଠି ତେଲ ଓ କାଠର ବଂଶାଲ୍। କାରଖାନାର ଆଖେ ପାଖେ ପ୍ରାୟ ଏକହଜାର କୁଲିଙ୍କ ନିବାସ ଓ ଅନ୍ୟାନ୍ୟ ହାକିମଙ୍କ ଘର। ସେଥିପାଇଁ ରଘୁନାଥ ସେଠି ନିଜର ଗୋଟିଏ ଦାତବ୍ୟ ଔଷଧାଳୟ ଖୋଲିଛନ୍ତି, ତାର ପ୍ରଧାନ ଚିକିତ୍ସକ ତାରକ ବାବୁ।

ତାରକ ବାବୁଙ୍କ ହାତ ସୁନା। ଯାହା ଦେହରେ ଥରେ ଲାଗେ, ସେ ନିଶ୍ଚୟ ଭଲ ହୁଏ। ସେଥିପାଇଁ ଆଖ ପାଖ ଗାଁ ଗଣ୍ଡାରେ ତାଙ୍କର ଯେପରି ନାମ, ଫେର ସେ ରଘନାଥର ଅତ୍ୟନ୍ତ ପ୍ରିୟ। କାରାଖାନାରେ ରଘୁନାଥଙ୍କୁ ଛାଡ଼ି ବଙ୍ଗାଳୀ ପରିବାର ସେହି ଗୋଟିକ। ତାଙ୍କର ସନ୍ତାନ ଭିତରେ ଯୋଡ଼ିଏ ଝିଅ- ଇନୋଲା, ଭିନୋଲା। ଉଭୟେ ରଘୁନାଥଙ୍କ ପିଲାଙ୍କର ଖେଳ ଏବଂ ସ୍କୁଲ ସଙ୍ଗୀ। ସୁଖେଦୁଃଖେ ପରିବାର ଦିଓଟି ଗତ ପାଞ୍ଚବର୍ଷ ହେଲା ଏକାଠି ଚଳିଛନ୍ତି। ତାରକ ବାବୁ ଖ୍ରୀଷ୍ଟୀୟାନ୍। ମାୟା ଘର ତ ବ୍ରହ୍ମ-ସମାଜୀ, ସେଥିପାଇଁ ଉଭୟ ପରିବାରରେ ଖାଦ୍ୟପାନାଦି ସମୁଦାୟ ବ୍ୟବହାର ଅବାଧରେ ଚଳେ। ପାଖ ପଡ଼ିଶା ମାନ୍ଦ୍ରାଜୀ ଅସିଷ୍ଟାଣ୍ଟ ମାନେଜର ନାୟର୍ ବାବୁଙ୍କ ପରିବାରର ମଧ ଏମାନଙ୍କ ସହିତ ଘନିଷ୍ଠତା ଥିଲା। ବିଦେଶରେ ଭାରତୀୟ ମାତ୍ରେ ଭାଇବନ୍ଧୁ।

ମିସେସ୍ ସେନ୍ ମାୟାର ପ୍ରିୟସଖୀ। ସେଥିପାଇଁ ସେ ଅଭିମାନକରି କହିଲେ-''ଏଥର ଏକା ଏକା ବୁଲିଗଲ ନା ?''

ମାୟା ଲଜ୍ଜିତ ହୋଇ କହିଲା-''ଆଚ୍ଛା, ଯାର କ୍ଷତିପୂରଣ ଦେବି। ଚାଲ, ଆର ହପ୍ତା ଇନ୍‌ସିନ୍ ବୁଲିଯିବା, ସମସ୍ତେ, ଏକାଠି। ସେଠି ବଣଭୋଜି କରିବା, ସେ ଦିନକ ରହିବା, ସବୁ ସରଞ୍ଜାମ ଆୟୋଜନକରି ଆଗରୁ ନେଇଥିବା।'' ଏତିକିବେଳେ ରଘୁନାଥ ଘର ଭିତରକୁ ଆସିଲେ। ମିସେସ୍ ସେନ୍‌ଙ୍କୁ ନମସ୍କାର କରି ଗୋଟିଏ ଚଉକିଟାଣି ବସିଲେ। ତାଙ୍କ କଥାରେ ଯୋଗଦେଇ କହିଲେ-''ହଁ, ଆସନ୍ତା ହପ୍ତା ଯିବା, କିନ୍ତୁ ଡକ୍ଟର ସେନ୍ ବାହାରିଲେ ହୁଏ। କୌଣସି ଆମୋଦରେ ତାଙ୍କୁ ପାଇବ ନାହିଁ। ତାଙ୍କର ସେତିକିବେଳେ ଗୋଟିଏ ରୋଗୀ ହାଜର ନ ହେଲେ ହୁଏ। ଛୁରୀ, ଟଙ୍କା ଛଡ଼ା, ସେ ଆଉ କିଛି ଜାଣନ୍ତି ନାହିଁ।''

ମିସେସ୍ ସେନ୍ ମୃଦୁ ହାସ୍ୟକରି କହିଲେ-''ବାସ୍ତବିକ ସେ ଭାରି ଖଟିପାରନ୍ତି। ମୁଁ ହଜାର ଥର ମନାକରେ, କିନ୍ତୁ ସେ କେବେ ଶୁଣିବା ଲୋକ ନୁହନ୍ତି।''

ମାୟା କହିଲା-''ଧନ୍ୟ ତାଙ୍କ ଦେହ, ରାତି ନାହିଁ, ଦିନ ନାହିଁ, ମଣିଷ ଏତେ ଖଟିବ ?''

ରଘୁନାଥ କହିଲେ- ''ସେ ଖଟିବାକୁ ନାରଜହେଲେ, ତାଙ୍କୁ ଛାଡ଼ିଚି କିଏ ? ଦେଖିଲ ନାହିଁ ଆମ ନିର୍ମଳ ବେଳଙ୍କୁ ?''

ମାୟା ଦୀର୍ଘଶ୍ୱାସ ଘେନି କହିଲା- ''ପିଲାଟା ତ ମୋର ଯାଇଥିଲା, ଭଗବାନ୍ ତାଙ୍କୁ ଆଶୀର୍ବାଦ କରନ୍ତୁ। ରାତି ନାହିଁ, ଦିନ ନାହିଁ, ଅଖିଆ ଅପିଆ, ସେ ନିମ୍ନ ପଛରେ ଲାଗି ତାଙ୍କୁ ଭଲକରିଛନ୍ତି। ନୋହିଲେ, ଏତେ ଟିକିଏ ପିଲା ନମୋନିଆରୁ ବଞ୍ଚିଥାନ୍ତା ?''

ସ୍ୱାମୀର ପ୍ରଶଂସାରେ ମସେସ୍ ସେନ୍ ପ୍ରଫୁଲ୍ଲିତା ହେଲେ।

ସେଦିନ ସନ୍ଧ୍ୟାବେଳକୁ କଚେରି ଫେରନ୍ତି ରଘୁନାଥ ବଡ଼ ବିମର୍ଷ ହୋଇ ଘରକୁ ଆସିଲେ। ତାଙ୍କର ମୁହଁ ଦେଖି ମାୟାର ଭୟବୋଧ ହେଲା। ସେ ବ୍ୟସ୍ତ ହୋଇ ପଚାରିଲା - ''କଣ ହୋଇଚି ତମର ? ଏଡ଼େ ଶୁଖିଲା ଦିଶୁଚ ଯେ ?'' ରଘୁନାଥ ମାୟାକୁ ନିଭୃତକୁ ଡାକି ନେଇ ଧୀରେ ଧୀରେ କହିଲେ - ''ଭାରି ବପଦ, ମିସେସ୍ ସେନଙ୍କୁ ବଡ଼ ବିପଦ !''

ମାୟାର ଛାତି ଧଡ଼ ଧଡ଼ ଉଠିଲା। ସେ ନିର୍ବାକ ବିସ୍ଫାରିତ ନେତ୍ରରେ ରଘୁନାଥକୁ ଚାହିଁ ରହିଲା। ରଘୁନାଥ ପକେଟରୁ କାଗଜ ପୁଳିନ୍ଦାଟିଏ ବାହାର କରି କହିଲେ-''ହେଇ ଦେଖ, ମିସେସ୍ ସେନ୍ ନାମରେ ପୋଲିଶ ଉଆରଣ୍ଟ। କଲିକତାର ଜ୍ୟୋତିଷ ଡାକ୍ତର ଘରୁ ବହୁମୂଲ୍ୟ ଜିନିଷ ଚୋରି କରିଥିବା ଅପରାଧରେ ଏ ଉଆରଣ୍ଟ ବାହାରିଛି।''

ମାୟା ଥରହର ହୋଇ କମ୍ପିଲା। ସେ ଉଦ୍‌ବେଗରେ ବାରଂବାର କହି ପକାଇଲା- ''ମିଛ କଥା, ମିଛ କଥା। ମିସେସ୍ ସେନ୍ ଚୋରି କରିବ ! ତମେ କଣ ବାୟା ହେଲଣି କି ?''

ରଘୁନାଥ ଚଉକି ଗୋଟିଏ ଟାଣି ବସିପଡ଼ି କହିଲେ-''ହେଇ ଦେଖ, ଏ ସର୍କାରି କାଗଜ ଦେଖି କଣ ଅବିଶ୍ୱାସ କରିବ ? ବାହାରେ ପୁଲିଶ ସର୍ଜେଣ୍ଟ ଅପେକ୍ଷା କରୁଛନ୍ତି। ଭଦ୍ରଲୋକ ତାରକ ବାବୁ ବିଚାରା ମୁଣ୍ଡରେ ହାତଦେଇ ବସିଛନ୍ତି। ମିସେସ୍ ସେନ୍ ଏ କଥା ଶୁଣିଲା ବେଳୁ ଫିଟ୍ ହୋଇଗଲାଣି। କଣ କହୁଚ ? ତାର ଜାମିନ୍ ହେବାକୁ ହେବ। ମୁଁ ତାର ଜାମିନ୍ ହେବି, କଲିକତା ଯିବି।'' ମାୟା କଣ ବୁଦ୍ଧିଦେବ କିଛି ସ୍ଥିର କରିପାରିଲା ନାହିଁ। ବକାହୋଇ ବସିରହିଲା। ଦୁଇ ଘଣ୍ଟା ପୂର୍ବେ ମସେସ୍ ସେନ୍ ତା ଘରେ ବସିଥିଲା, ହଠାତ୍ ତାର ଏ ବିପଦ !' ସେ ନିଜ ଆଖିକାନକୁ ବିଶ୍ୱାସ କରି ପାରିଲା ନାହିଁ, କହିଲା-''ହଁ, ଯାହା ପାର, କର। ତା ସ୍ୱାମୀ, ମୋ ପିଲା ଜୀବନ ରକ୍ଷାକରିଛି। ଯେତେ ଟଙ୍କା ଦରକାର ପଡେ, ତାଙ୍କୁ ଉଦ୍ଧାରକର।''

କଥା ସ୍ଥିରହେଲା। ରଘୁନାଥ ସପରିବାର ତାରକ ବାବୁ ଓ ତାଙ୍କ ସ୍ତ୍ରୀ ସହିତ କଲିକତା ଯାତ୍ରାକଲେ। ବଣଭୋଜି, ଇନ୍‌ସିନ୍ ବୁଲା– ଏ ଦୁଃଖରେ କୁଆଡ଼େ ପାସୋର ଗଲା। କଲିକତା ଆସି ସେ ପ୍ରଥମେ ଗଲେ ଜ୍ୟୋତିଷ ଡାକ୍ତର କତିକି। ଜ୍ୟୋତିଷ ଡାକ୍ତର ଆମର ପୂର୍ବ ପରିଚିତ। ରଘୁନାଥକୁ ଚେୟାର ଦେଇ ଡାକ୍ତର ସାହେବ ସୁଖାସନରେ ବସିଲେ। ସେତେବେଳେ ତାଙ୍କ ମୁହଁରୁ ମଦର ଗନ୍ଧ ଭଣଭଣ ବାହାରୁଥିଲା। ରଘୁନାଥ ତାହାର ଚେହେରା

ଦେଖି ତାକୁ ନଗକର ପଶୁ ବୋଲି ଠଉରାଇନେଲା। ଏହାଠାରୁ ଦୟା ଆଶାକରିବା ବୃଥା ଭାବି ଅର୍ଥର କଥା ପକାଇଲା; କିନ୍ତୁ ଜ୍ୟୋତିଷ ବାବୁ ଅସମ୍ଭବ କ୍ଷତିପୂରଣର ଆଶ୍ୱାସନା ପାଇ ସୁଦ୍ଧା, ମୋକଦ୍ଦମା ଉଠାଇ ନେବାକୁ ଅସ୍ୱୀକୃତହେଲେ। ରଘୁନାଥ ବ୍ୟସ୍ତହୋଇ ଘରକୁ ଫେରିଲା।

ସେତେବେଳେ ମାୟାର ଖାସ୍‌କାମରାରେ ମାୟା ଓ ମିସେସ୍ ସେନ୍। ମିସେସ୍ ସେନ୍ କାନ୍ଦୁଛି, କୋହରେ ତା ଛାତି ଫାଟିଯାଉଛି, ମାୟାକୁ ଆଜି ସେ ସବୁ କହିବ- ତାହାର ପୂର୍ବ ଜୀବନର ଇତିହାସ; କିନ୍ତୁ ବହୁତ ଚେଷ୍ଟା ସତ୍ତ୍ୱେ, ତା ମୁହଁ ଫିଟୁ ନାହିଁ। ମାୟା ତାକୁ ସାନ୍ତ୍ୱନା ଦେଇ କହିଲେ-''ଭଉଣି ! ମୋର ଶୁଣିବାର ପ୍ରୟୋଜନ ନାହିଁ। ତୁମର ଏତେ କଷ୍ଟହେଉଛି ଯଦି, କୁହନାହିଁ।''

''କିନ୍ତୁ ମୁଁ ତମକୁ ନ କହି କହିବି କାହାକୁ? ମୋ ପରି ଅଭାଗିନୀର ଦୁଃଖ ଓ ଦୁର୍ବଳତାରେ ତୁମପରି ଦେବୀ ଛଡ଼ା ଆଉ ସହାନୁଭୂତି ପ୍ରକାଶକରିବ, କିଏ?'' ଏହା କହି କୋହରେ ଭାଙ୍ଗିପଡି କିଛିକ୍ଷଣ ନୀରବହେଲା। ତା ପରେ ଅତି ଧୀରକଣ୍ଠରେ କହିଲା-''ଦିଦି ! ମୁଁ କିଏ ଯଦି ତମେ ଜାଣ, ମତେ ଭାରି ଘୃଣାକରିବ, ମୁଁ ଭାରି ପାପିଷ୍ଠା, ମୁଁ ବଡ଼ଲୋକର ଝିଅ ସତ, ପିତା ଲକ୍ଷପତି, ଭଲ ଘର ବରରେ ଦେଇଥିଲେ, କିନ୍ତୁ ମୋ କପାଳ ଫାଟିଲା, ମୁଁ ପନ୍ଦର ବର୍ଷ ବେଳୁ ବିଧବା। ତମେ ତ ଜାଣ, ଆମର ବ୍ରାହ୍ମଣକୂଳରେ ଦ୍ୱିତୀୟ ବିବାହ ନାହିଁ, ମୁଁ ବିଧବା ହୋଇ ଆସି ବାପଘରେ ରହିଲି; କିନ୍ତୁ-''

ପୁଣି କୋହରେ ତା ଛାତି ଫାଟିଗଲା। ସମ୍ଭାଳିନେଇ କହିଲା-''କିନ୍ତୁ ଆମ ଘରେ ଯୂଥିକା ବୋଲି ଗୋଟିଏ ମାଷ୍ଟ୍ରାଣୀ ଥିଲା, ସେହି ମୋର ସର୍ବନାଶ କଲା। ମୁଁ ତାକୁ ଭାରି ଭକ୍ତି କରୁଥିଲି। ସେ ମୋତେ ବହୁତ ପାଠ ପଢ଼ାଇଥିଲା, ବାଜା ଶିଖେଇଥିଲା, ସିଲେଇ ଶିଖେଇଥିଲା, ବଙ୍ଗାଳୀ ଫେସନ୍‌ରେ ଚଳିବା, ସବୁ ମୁଁ ତାଠୁ ଶିଖିଥିଲି। ଆମ ଘର ଆଧୁନିକ ରୁଚିପ୍ରିୟ, ବିଶେଷତଃ ମୋର ଭାଇ ପୂରା ସାହେବ। ମୁଁ ଚଣ୍ଡାଳୁଣୀ ଆଗପଛ ବିଚାର କଲି ନାହିଁ, ଯୂଥିକା କଥାରେ ଭାସିଲି। ସେ ପହିଲି ମୋ କାନରେ ଶୁଣେଇଲା, ବିଧବା-ବିବାହ ହୁଏ। ସେ ପହିଲି ମତେ ନାରୀ-ସ୍ୱାଧୀନତା ଶିକ୍ଷାଦେଲା। ମୁଁ ତା କଥା ତନ୍ମୟହୋଇ ଶୁଣିଲି। ଆମ ଗ୍ରାମରେ ସତ୍ୟରଞ୍ଜନ ବାବୁଙ୍କ ପୁଅ ସୁରଞ୍ଜନ ସହିତ ମୋର ପ୍ରଣୟହେଲା, ମୁଁ ଆଶା କରିଥିଲି, ସେ ନିଶ୍ଚୟ ମତେ ବିବାହ ହେବ; ହେଲେ ସେ ମତେ ଦଗାଦେଲା। ଗୁପ୍ତରେ ବିଭାହୋଇ ପଡ଼ିଲା। ସେହିଦିନୁ ତା ଉପରେ ମୋର ଭୟଙ୍କର ଘୃଣାହେଲା। ମୁଁ ରାଗରେ, ଦୁଃଖରେ ବାୟାଣୀପରି ହେଲି। ଭାଇ ଭାଉଜ ମୋତେ କଲିକତା ବୁଲାଇ ଆଣିଲେ। ସେତେବେଳେ ସର୍ବନାଶୀଆଣୀ ମୁଁ ଯଦି ଆସି ନ ଥାନ୍ତି, ସେତିକି କଣ ମୋ କପାଳରେ ଥିଲା? ମୁଁ ଜ୍ୟୋତିଷ ଡାକ୍ତର ହାବୁଡ଼ରେ ପଡିଲି।''

ମାୟା ବିସ୍ମିତହୋଇ କହିଲା-''କେମିତି?''

ମିସେସ୍ ସେନ୍ ଦୀର୍ଘନିଶ୍ୱାସ ସହ କହିଲା-''ସେହି ଯୂଥିକା-ସେହି ଯୂଥିକା ମୋର ସର୍ବନାଶ କଲା ଭଉଣୀ! ଶେଷକୁ ମୋର ଅନେକ ଦୁର୍ଦ୍ଦଶା ଘଟିଲା। ଯୂଥିକା ଜ୍ୟୋତିଷ ଡାକ୍ତରର ଅନେକ ଧନ ସଂପତ୍ତି ଚୋରିକରି ମତେ ଘେନି ଆସାମ ପଳାଇଗଲା। ସିଲ୍‌ହଟ୍‌ରେ ମୁଁ ମିସନ୍ ବୋର୍ଡିଂରେ ଆଶ୍ରୟ ପାଇଲି। ମିସ୍ ଲେସ୍‌ଲି ଦୟାବତୀ ଦେବୀ, ସେ ମତେ ଦୟା କରି ପାଖରେ ରଖିଲେ। ସେହିମାନଙ୍କ ଆଦର୍ଶରେ ମୋର ମନ ପରିବର୍ତ୍ତିତହେଲା। ମୁଁ ଖ୍ରୀଷ୍ଟୀୟାନ ହେଲି। ସେମାନେ ମୋର ନାମ ପରିବର୍ତ୍ତନ କରି 'ଭାୟୋଲ' ଦେଲେ। ସେହିଦିନୁଁ ମୁଁ ପାପପଥରେ ଆଉ କେବେ ଯାଇନାହିଁ-ପ୍ରଭୁ ଜାଣନ୍ତି।''

ମାୟା ପଚାରିଲା-''ତୁମେ ଡକ୍ଟର ସେନ୍‌ଙ୍କ କିପରି ବିଭା ହେଲ?''

''ସିଲ୍‌ହଟାରେ ଥିଲାବେଳେ ମିସ୍ ଲେସ୍‌ଲି ମତେ ଡାକ୍ତରଖାନାରେ ଭର୍ତ୍ତିକଲେ ନର୍ସିଂ ଶିଖିବାକୁ। ସେଇଠି ଡକ୍ଟର ସେନ୍ ସହିତ ମୋର ସାକ୍ଷାତ୍ ହୁଏ। ସେ ଆଉଟା ଡୋର୍ ଇନ୍‌ଚାର୍ଜରେ ଥିଲେ। ମୋର ପୂର୍ବ ଜୀବନ ସ୍ମରଣକରି ମୁଁ ବଡ଼ ସାବଧାନରେ ଚଳୁଥିଲି। ଭଲ କାମ କରୁଥିବାରୁ ଆମର ଲେଡ଼ି ଡାକ୍ତର ମିସ୍ ଦତ୍ତ ମତେ ଭାରି ଭଲପାଉଥିଲେ। ଆହା! ସେ ମାପରି ଲୋକ, ତାଙ୍କ ଯତ୍ନ, ତାଙ୍କ ସ୍ନେହ କେବେ ଭୁଲିପାରିବି ନାହିଁ। ଡାକ୍ତର ସେନ୍ ନିଜେ ମୋର ପରିଚୟ ବୁଝିଲେ। ପାସ୍ କରି ଆସିଲାରୁ ମିସ୍ ଲେସ୍‌ଲିଙ୍କ ନିକଟକୁ ଯାଇ ମତେ ବିଭା ହେବାର ପ୍ରସ୍ତାବକଲେ। ମିସ୍ ଲେସ୍‌ଲି ମୋର ସମୁଦାୟ ଇତିହାସ ଜାଣନ୍ତି। ସେ ଇଙ୍ଗିତରେ ତାଙ୍କୁ କହିଲେ,-''କିନ୍ତୁ କଣ କହିବି ଭଉଣି! ସେ ସେଥିରେ ଆଦୌ କୁଣ୍ଠିତ ହେଲେ ନାହିଁ, ମତେ ବିବାହକଲେ। ମୁଁ ଯାହାର ଶ୍ରୀଚରଣରେ ସ୍ଥାନପାଇଚି ସେ ମହତ୍ ଦେବତା, ଆଦର୍ଶ ଖ୍ରୀଷ୍ଟିୟାନ୍। ମୁଁ ତାଙ୍କୁ କେତେ ଥର ପଚାରିଚି, 'ମୋର ପରି ଘୃଣିତାକୁ ତମେ କିପରି ଭଲପାଅ?' ସେ କହନ୍ତି-'ମଣିଷ କି ଘୃଣିତ ହୋଇପାରେ? ଏହି ମଣିଷ ପାଇଁ ପ୍ରଭୁ ପ୍ରାଣଦେଇଛନ୍ତି। ପ୍ରଭୁ ଯୀଶୁ ଯେତେବେଳେ ପାପୀଙ୍କୁ ଘୃଣାକରି ନାହାନ୍ତି, ମୁଁ କିପରି ଘୃଣାକରିବି? ମଣିଷ କିଛି କାଠ ପଥର ନୁହେଁ, ମଣିଷ ସୁବର୍ଣ୍ଣ, ନିଆଁରେ ଯେତେ ପୋଡୁଥାଏ, ତାହାର ଖାଦ ସେତିକି ନଷ୍ଟହୁଏ। ପ୍ରଭୁ ତମକୁ ଆପଣା ଗୃହକୁ ଡାକିଛନ୍ତି, ମୁ ତମକୁ କିମିତି ଦୂରକରିବି?''

ମାୟା ଗଭୀର ଶ୍ୱାସ ସହ ସହାନୁଭୂତିପୂର୍ଣ୍ଣ ସ୍ୱରରେ କହିଲା- ''ବାସ୍ତବିକ, ମିଷ୍ଟର୍ ସେନ୍ ଦେବତୁଲ୍ୟ ପୁରୁଷ, ମୁଁ ତାଙ୍କୁ ଭାରି ଭକ୍ତିକରେ, ତାଙ୍କର ହାତ ଅମୃତ। ତମେ ଭୟ କରନା, ଭଉଣୀ! ତମର କିଛି ହେବ ନାହିଁ। ଯେତେ ଟଙ୍କା ପଡୁ ପଛେ ସେ ତମକୁ ଉଦ୍ଧାର କରିବେ।''

ମିସେସ୍ ସେନ୍‌ର ଚକ୍ଷୁ ଆଶ୍ୱସ୍ତିରେ, ଆନନ୍ଦରେ ଉଜ୍ଜ୍ୱଳ ହୋଇଉଠିଲା। ସେ ମାୟାର ଗୋଟିଏ ହାତ ଆପଣା ହାତ ଭିତରେ ଚାପିଧରି କହିଲା- ''ବାସ୍ତବିକ ତୁମମାନଙ୍କ ମଧ୍ୟରେ

ଈଶ୍ୱରଙ୍କର ରାଜ୍ୟ। ତୁମେମାନେ ମଣିଷକୁ ମଣିଷ ବୋଲି ମନେକର। କିନ୍ତୁ ହିନ୍ଦୁ ସମାଜରେ ମୋର କି ଦୁର୍ଦ୍ଦଶା ହୋଇଥିଲା, ସେ କଥା ଭାବିଲେ ସୁଦ୍ଧା ହୃତକମ୍ପହୁଏ। ମଣିଷକୁ ମଣିଷର ଅଧିକାର ସେମାନେ ଦେବାକୁ ଚାହାନ୍ତି ନାହିଁ। ମୋ ପରି ଶତ ଶତ ଅଭାଗିନୀ ନାରୀ ହିନ୍ଦୁସମାଜର ଅନ୍ତରାଳରେ କାନ୍ଦି କାନ୍ଦି ମରୁଛନ୍ତି। ଅଶେଷ ପାପରେ ନିଜକୁ ବଳିଦେଉଛନ୍ତି; କିନ୍ତୁ ସମାଜ ତାଙ୍କର ବ୍ୟବସ୍ଥା କରୁନାହିଁ, କି ଜଡ଼, କି ମୃତ ସମାଜ ସେ।''

ମାୟା କହିଲା-''ସେ ଶିକ୍ଷା ସେମାନେ କେଉଁଠୁ ପାଇଲେ କହିଲ? ମହାତ୍ମା ଯୀଶୁ ଜଗତ୍‌ପାଇଁ ପ୍ରାଣଦେଇଥିଲେ। ସେ ପରପାଇଁ ପ୍ରାଣଦେବା ଆଦର୍ଶରେ ଖ୍ରୀଷ୍ଟଧର୍ମ ଏତେଦୂର ମହତ୍ତ୍ୱ ଲାଭକରିଛି, ଜଗତର ଏତେ ହିତସାଧନ କରିଛି; କିନ୍ତୁ ହିନ୍ଦୁ ଜାତି ପୃଥିବୀର ଆଦି ସଭ୍ୟ ଜାତି ହୋଇ ସୁଦ୍ଧା ନିଜର ଆଦର୍ଶ ହରାଇଛନ୍ତି। ହିନ୍ଦୁଧର୍ମରେ କେତେ ମହତ୍ ଆଦର୍ଶମାନ ରହିଛି। ବର୍ତ୍ତମାନ ଯେଉଁ କ୍ରୂର ସାମାଜିକ ନିୟମ ପ୍ରଚଳିତ, ସେ ସବୁ ଅର୍ଥଲୋଭୀ ବ୍ରାହ୍ମଣଙ୍କ ଦ୍ୱାରା ସୃଷ୍ଟହୋଇଛି।''

''ହେଲେ ଆଉ ସେ ଜାତିର ପରିବର୍ତ୍ତନର ଆଶା ନାହିଁ।'' ମାୟା ଦୃଢ଼ତା ସହ କହିଲା- ''ହବ ପରିବର୍ତ୍ତନ ଭଉଣି! ହବ! ଯେତେବେଳେ ବହୁତ ଧକ୍କା ଖାଇବ, ବହୁତ ଆଘାତ ପାଇବ, ସେତେବେଳେ ତାହାର ମୋହାନିଦ୍ରା ଭାଙ୍ଗିବ।''

ବ୍ୟଥିତ ମିସେସ୍ ସେନ୍ ଯୋଗଦେଇ କହିଲା-''ଆଉ ମୋରି ପରି ବିଧବାମାନଙ୍କର ରକ୍ତ କାନ୍ଦାଣାର ଅଭିଶାପ ଯେତେବେଳେ ପୂର୍ଣ୍ଣହେବ।''

ଖାଇବା ଘଣ୍ଟା ଶୁଣି ଦୁହେଁ ଉଠି ଭୋଜନାଶାଳାକୁ ଗଲେ। ମିଷ୍ଟର ସେନ୍ ଓ ତାଙ୍କର ଦୁଇ ପାଖରେ ଦୁଇ ଝିଅ ବସିଥିଲେ। ମାୟା ସେମାନଙ୍କୁ ଚାହିଁ ମିସେସ୍ ସେନ୍‌ଙ୍କ ମୁହଁକୁ ଚାହିଁଲା। ତାହାର ମନେହେଲା, ସତେ ମଣିଷ ସୁନା! ଆତ୍ମା ହିଁ ସାର। ଶରୀର ମିଥ୍ୟା। ନୋହିଲେ କି ଫୁଲମଞ୍ଜରୀ ଆଜି ଅବସ୍ଥାକୁ ଆସିଥାନ୍ତା। ମିଷ୍ଟର୍ ସେନ୍‌ର ମହତ୍ତ୍ୱରେ ତାର ହୃଦୟ ପୂର୍ଣ୍ଣହୋଇଉଠିଲା।



## ତ୍ରିଂଶ ଅଧ୍ୟାୟ

ବର୍ଷା ଟୁପୁର ଟୁପୁର ପଡୁଛି, ଆକାଶ ଘନଘଟାଚ୍ଛନ୍ନ। ଜ୍ୟୋତିଷ ଡାକ୍ତର ସେହି ସମୟରେ ଗୋଟିଏ ବୁଢ଼ା ମାଳୀକୁ ସଂଗରେ ଘେନି ଆସି ଡାକ୍ତରଖାନାରେ ସାହେବୀ ଢାଞ୍ଚାରେ ପଶିଗଲେ। ମାଳୀଟି ଆଡ଼େଇ ହୋଇ ଛିଡ଼ାହେଲା। ଗୋଟାଏ କୋଣରେ କେତୋଟି ଚିତ୍ର ଥିଲା, ତାହାକୁ ନିରୀକ୍ଷଣ କରିରହିଲା। ପରଦା ପଛଆଡେ ବୃହତ୍ ପ୍ରକୋଷ୍ଠ। ନାନାବିଧ ଚେୟାର ଟେବୁଲ ଓ ସୁନ୍ଦର ସାଜସଜ୍ଜାରେ ସନୋହର। ଘରଟିରେ ଡାକ୍ତର ସାହେବ ରୋଗୀ ଦେଖନ୍ତି,

କେହି ଆସଲେ ବସାଇ କଥାବର୍ତ୍ତା କରନ୍ତି। ସେ ଘର ଭିତରେ ଥିଲେ ସେତେବେଳେ ରଘୁନାଥ। କାନ୍ଥ ଚାରିଆଡ଼କୁ ଚାହିଁ ଛବିଗୁଡ଼ିକ ଦେଖୁଥିଲେ। ଛବି ମଧ୍ୟରେ କେତୋଟି ପ୍ରାକୃତିକ ଦୃଶ୍ୟ ସମ୍ବଳିତ, ନିର୍ଦ୍ଦୋଷ ଓ ମନୋହର, କିନ୍ତୁ ବାକିଗୁଡ଼ିକ ସମସ୍ତ ନାରୀଚିତ୍ର। ନାରୀକୁ ପୁରୁଷ ଯେତେ ପ୍ରକାର କୁତ୍ସିତ ଭାବରେ ଦେଖିବାକୁ ସୁଖପାଏ, ସେ ସବୁ ପ୍ରାୟ ଏହି ଛବିମାନଙ୍କରେ ଅଙ୍କିତ। ରଘୁନାଥ ସେହିସବୁ ନିରୀକ୍ଷଣ କରି ଆଧୁନିକ ସଭ୍ୟତାର ବିକାଶ କେଉଁ ଦିଗରେ, ତାହାହିଁ ମନେ ମନେ ଆଲୋଚନା କରୁଥିଲେ। ଚିତ୍ରଗୁଡ଼ିକ ସୁନ୍ଦର ସତ୍ୟ, ବର୍ଣ୍ଣ ଓ ଅଙ୍କନରେ ଅତି ମନୋହର, କଳାଦୃଷ୍ଟିରେ ନିଖୁଣ, କିନ୍ତୁ ଶୁଚିବିଚାରରେ ସେଗୁଡ଼ିକ ଅତ୍ୟନ୍ତ ଜଘନ୍ୟ। ପ୍ରତ୍ୟେକ ଚିତ୍ରକୁ ଚାହିଁ ତା ଲୋମମୂଳ ଟାଙ୍କୁରିଉଠିଲା। ନାରୀରୂପକୁ ଏପରି ଲଜ୍ଜାବରଣହୀନ କରି ଚକ୍ଷୁସମ୍ମୁଖରେ ରଖି କିପରି ପୁରୁଷଜାତି ଆପଣାର ସଭ୍ୟତାର ବଡ଼ାଇ କରନ୍ତି। ଝିଅ, ମା, ଭଉଣୀ, ଭାର୍ଯ୍ୟା ଏମାନଙ୍କର ଜାତିକୁ କିପରି ବାରବନିତାର ଆସନରେ ବସାଇ ହୃଦୟରେ ତୃପ୍ତିଲାଭ କରନ୍ତି! ଏ ଚିନ୍ତାରେ ତାହାର ହୃଦୟ ଆଲୋଡ଼ିତ ହେଉଥିଲା। ସେ ଜ୍ୟୋତିଷ ଡାକ୍ତର ବିରୁଦ୍ଧରେ ବୀଭତ୍ସ ଧାରଣା ପୋଷଣକରୁଥିଲା। ଏତିକିବେଳେ ଡାକ୍ତର ବାବୁ ଆସି ତାଙ୍କୁ ଅଭିବାଦନକଲେ। ରଘୁନାଥକୁ ଛବି ପ୍ରତି ଏକାନ୍ତ ଦୃଷ୍ଟିରେ ଚାହିଁଥିବାର ଦେଖି କହିଲେ- ଆପଣ ମୋର ଛବିପ୍ରୀତିରେ ନିଶ୍ଚୟ ପ୍ରଶଂସା କରିବେ। ମୁଁ ଶହଶହ ଟଙ୍କା ଖରଚକରି ଏ ସୁନ୍ଦରୀ ଦଳର ପ୍ରଜାପତିଙ୍କ ପ୍ରତିରୂପଗୁଡ଼ିକ ସଂଗ୍ରହକରିଚି। ସେଗୁଡ଼ିକ ଚମତ୍କାର, ଏଥିରେ ସନ୍ଦେହ ନାହିଁ। ରଘୁନାଥଠୁଁ କିଛି ଉତ୍ତର ନ ନେଇ ଗୋଟାଏ ଚେୟାର ଟାଣି ପକେଟରୁ 'ସିଗ୍ରେଟ କେସ୍' କାଢୁକାଢୁ କହିଲେ- ଆଉ ସେ ଛବିଟା ଦେଖନ୍ତୁ! ଦକ୍ଷିଣ ଦିଗରେ କାନ୍ଥର ଗୋଟିଏ ଛବିପ୍ରତି ତାର ଦୃଷ୍ଟି ଆକର୍ଷଣକଲେ। ଛବିରେ ଗୋଟିଏ ମନୋମୋହିନୀ ରମଣୀ ମୂର୍ତ୍ତି-ଶ୍ଳଥକେଶପାଶ, ଚଞ୍ଚଳ ଚାହାଣୀ, ଆଉ ଦେହରେ ଆବରଣର ଛାୟା ମାତ୍ର। ସେଥିରୁ ତାହାର ସର୍ବାଙ୍ଗର ଅନୁପମ ସୌନ୍ଦର୍ଯ୍ୟ ଓ ଗଠନ ଫୁଟିଦିଶୁଛି। ତାହାକୁ ଲକ୍ଷ୍ୟକରି ଡାକ୍ତର ବାବୁ କହିଲେ-ଏହିଟା ମୋର ପ୍ରିୟ ଛବି। କି 'ଆର୍ଟ'ର ଚମତ୍କାରିତା! ଅଙ୍କନରେ କେଉଁଠି ତିଳାର୍ଦ୍ଧ ଦୋଷ ନାହିଁ। ଏହିଟା 'ପ୍ରାଇଜ ପିକ୍‌ଚାର' (ପୁରସ୍କାରଯୋଗ୍ୟ ଛବି') ରଘୁନାଥ ଈଷତ୍ ହାସ୍ୟ କରି କହିଲେ- ଏହି ଛବିଗୁଡ଼ିକ ମୋର ଅତ୍ୟନ୍ତ ଦୃଷ୍ଟିକଟୁ; ଏପରି ବୀଭତ୍ସ ଓ ଅଶ୍ଳୀଳ ଛବି ଦେଖିଲେ ଦେହ ମନ କଳୁଷିତ ବୋଲିବା କଥା। ଜ୍ୟୋତିଷ ଡାକ୍ତର ହୋ ହୋ ହୋଇ ହସିଉଠି କହିଲେ- ଆପଣ ବ୍ରାହ୍ମ କି ନା, ଆପଣମାନେ ଶୁଚି ଶୁଚି ହୋଇ ବ୍ୟସ୍ତ। ଆମେ ହିନ୍ଦୁ ଅନ୍ଧ, ଆମର ରାଧାକୃଷ୍ଣ ମୂର୍ତ୍ତି ପରମପ୍ରିୟ।

ରଘୁନାଥ ଟିକିଏ ବିଚଳିତ ହୋଇ କହିଲେ, ''ହିନ୍ଦୁ ମାତୃଭକ୍ତ ଜାତି-ମା'କୁ ସେ ସତୀର ଆସନ ଦେଇଚି, ରାଧା ମଧ୍ୟ ହିନ୍ଦୁର ମା, ଲକ୍ଷ୍ମୀ। କିନ୍ତୁ ଆଧୁନିକ ସଭ୍ୟ ଜଗତରେ ନାରୀ, ମା, ବଦଳି ପ୍ରେମିକାରେ ପରିଣତ ହୋଇଚି, ସତୀ ସାଧ୍ୱୀର ସମ୍ମାନ ବଦଳରେ ବାରବିଳାସିନୀର ମର୍ଯ୍ୟାଦା ବଢ଼ିଚି।''

ଜ୍ୟୋତଷ ଡାକ୍ତର ସେ କଥାରେ କୌଣସି ଉତ୍ତର ନ ଦେଇ ମୁରୁକି ହସି କହିଲେ- ''ମୋର ତ ବାବୁ ଘର ସଂସାର ନାହିଁ, ମୁଁ ବୈରାଗୀ ମଣିଷ, କିନ୍ତୁ, 'ପଞ୍ଚ ମକାର' ସାଧନା ପୂର୍ଣ୍ଣମାତ୍ରାରେ କରିଚି। ଆଚ୍ଛା, ସେ କଥା କଣ ହେଲା ?''

ରଘୁନାଥ ବିନୀତ ସ୍ୱରରେ କହିଲେ-''ଆପଣ କ୍ଷମାଦେବେ କି ?''

ଜ୍ୟୋତିଷ ଡାକ୍ତର ଇତସ୍ତତଃ ହୋଇ କହିଲେ-''ଏତେବଡ଼ ଦୁଷ୍ଟାକୁ କ୍ଷମା ଦେଇପାରେ କି ?''

ରଘୁନାଥ ପ୍ରତିବାଦ କରି କହିଲେ-''କିନ୍ତୁ ଯେ ଦୁଷ୍ଟ, ସେ ବି ହାତମୁଠାରୁ ଖସି ଯାଇଚି, ଏ ନିରୀହ ସରଳାକୁ କିଁପା ଦଣ୍ଡିବେ ?''

ଜ୍ୟୋତିଷ ଡାକ୍ତର ସିଗାରେଟ୍ ପିଉ ପିଉ କେତେ କଣ ଆଲୋଚନା କରି ପକାଇଲେ- ବାସ୍ତବିକ, ଯୂଥିକା ତ ପ୍ରକୃତ ଦୋଷୀ; ମୋକଦ୍ଦମାରେ ଫୁଲମଞ୍ଜରୀର ଦଣ୍ଡ ନ ହୋଇପାରେ, ତେବେ ଅକାରଣେ ଏତେଗୁଡ଼ାଏ ଟଙ୍କା କାହିଁକି ହସ୍ତଚ୍ୟୁତହେବ ?'' ଡାକ୍ତର ସାହେବ ଅବଶେଷରେ ରଘୁନାଥ କଥାରେ ସମ୍ମତି ପ୍ରକାଶ କରି ଅର୍ଥ ଗ୍ରହଣକଲେ। ନରପିଶାଚ କବଳରୁ ଫୁଲକୁ ଉଦ୍ଧାରକରି ରଘୁନାଥ ମନେ ମନେ ଆନନ୍ଦିତ ହୋଇ ଘରକୁ ବାହାରିଲେ। ବାହାରେ ସେହି ବୁଢ଼ା ମାଳୀ ଉପରେ ତାଙ୍କର ଦୃଷ୍ଟିପଡ଼ିଲା। ମାଳୀଟି ଗୋଟିଏ ୧୨, ୧୪ ବର୍ଷର ପିଲା ସହିତ କଥାବାର୍ତ୍ତା ହେଉଥିଲା। ପିଲାଟି ସାହେବିପୋଷାକ ଭୂଷିତ, ଗୌରବର୍ଣ୍ଣ, ପାତଳ ଦେହ, କିନ୍ତୁ ଭାରି ସୁନ୍ଦର। ତାକୁ ଦେଖି ତାଙ୍କର ବହୁଦିନର ଗୋଟିଏ ପୁରୁଣା ସ୍ମୃତି ହଠାତ୍ ମନରେ ଉଦୟହେଲା। ସେ ଗୋଟିଏ ଏହିପରି ସୁନ୍ଦର ବାଳକର ମୁଖଛବି। ସେ ବାବୁ- ତାଙ୍କର ପିଲା ଦିନର ସଙ୍ଗୀ-ସୀତାର ଭାଇ। ବାଳକଟିକୁ କୌତୂହଳ ବଶତଃ କିଛିକ୍ଷଣ ଚାହିଁଲେ। ବାଳକ ମଧ ତାଙ୍କ ମୁଖକୁ ଅନାଇଲା। ଆଶ୍ଚର୍ଯ୍ୟ ସାଦୃଶ୍ୟ। ରଘୁନାଥ ତାର ସେହି ଗୋରା ଗୋରା ଗାଲ, ପଦ୍ମପାଖୁଡ଼ା ପରି ଆଖି, ସରଳ ବଂଶୀ ନାସିକା ସହିତ ବାବୁର ମୁଖ ତୁଳନାକରି ଭାବିଲେ, ଆଶ୍ଚର୍ଯ୍ୟ ସାଦୃଶ୍ୟ। ବାର ଚଉଦ ବର୍ଷ ବେଳେ ବାବୁ ଠିକ୍ ଏହିପରି ଦିଶୁଥିଲା। ବାଳକର ପରିଚୟ ଜାଣିବାକୁ ତାଙ୍କର ଇଚ୍ଛାହେଲା। ମାଳୀଟି ମଧ ରଘୁନାଥ ମୁହଁକୁ ବଲବଲକରି ଅନାଇଲା। ସେ ପାଖକୁ ଘୁଞ୍ଚି ଆସି ବାଳକକୁ ପଚାରିଲା, ''ତୁମର ନାମ କଣ ବାବା।''

ବାଳକ ଅପରିଚିତ ବ୍ୟକ୍ତିର ସମ୍ମୁଖରେ ଲଜ୍ଜାନତ ହୋଇ ତଳକୁ ମୁହଁ କରି କହିଲା, ''ଅମୂଲ୍ୟମୋହନ।''

ରଘୁନାଥ ପଚାରିଲା ''ନିବାସ କେଉଁଠି, ପିତାର ନାମ କଣ ?''

ବାଳକ ଏଥର ସରଳ ଦୃଷ୍ଟିରେ କହିଲା-''ଆମ ଘର ପଦ୍ମପୁର, କଟକ ଜିଲ୍ଲା, ପିତାଙ୍କ ନାମ ଦିବାକର ମିଶ୍ର।''

ରଘୁନାଥର ଛାତିଭିତର ଦାଉଁଦାଉଁ ହୋଇଉଠିଲା। ଗୋଟିଏ ଅସମ୍ଭାବିତ ଆନନ୍ଦକମ୍ପନରେ ତାଙ୍କର ସର୍ବାଙ୍ଗରେ ବିଦ୍ୟୁତ ଖେଳିଗଲା। ହଠାତ୍ କେତେ କଥା ତାଙ୍କ ମନକୁ ଘାଣ୍ଟି ପକାଇଲା। ତେବେ ଏ କଣ–ସାହାସ ହେଲା ନାହିଁ। ସେ ବାଳକକୁ ଆନନ୍ଦ ଓ ଉତ୍ତେଜନାରେ ପାଖକୁ ଟାଣିଆଣିଲେ। ମାଳୀ ମୁହଁକୁ ଚାହିଁ ଦୋଦୋଚିହ୍ନା ହୋଇ କହିଲା, "ତୁ ନରିଆ କି ରେ? ମୁଁ ରଘୁନାଥ।"

ବାଳକଟି ଅପରିଚିତ ମୁଖରେ ମାତୃଭାଷା ଶୁଣି ଆଶ୍ଚର୍ଯ୍ୟହେଲା, କିନ୍ତୁ ମାଳୀବୁଢ଼ା ସେହିକ୍ଷଣି ଫାଟିପଡ଼ିଲା ପରି ଭୂଇଁରେ ଲୋଟିଯାଇ ତାଙ୍କୁ ବାରଂବାର ଦଣ୍ଡବତ କରିପକାଇଲା।

ବାରଣ୍ଡା ରେଲିଂର ଗୋଟିଏ ଦାଢ଼ରେ କହୁଣୀ ଭରାଦେଇ ଛିଡ଼ାହୋଇ ରଘୁନାଥ ଶୁଣିଲେ ନରିଆଠଉ–"ସୀତା ଓ ଦିବାକର କଲିକତାରେ। ଦିବାକର ପୀଡ଼ିତ, ଜ୍ୟୋତିଷ ଡାକ୍ତରଙ୍କ ଚିକିତ୍ସାଧୀନ।" ତାଙ୍କ ଆଖି ସାମନାରୁ ପରଦାଟିଏ ଖସିଗଲା। ଫୁଲମଞ୍ଜରୀସଂକ୍ରାନ୍ତ ସମୁଦାୟ ବିଷୟ ତାଙ୍କୁ ବର୍ତ୍ତମାନ ପରିଷ୍କାର ଜଣାଗଲା। ସେ ସେହି ଚିନ୍ତାରେ ନିବିଷ୍ଟ ହୋଇ ନରିଆ ଅନୁରୋଧ ରକ୍ଷା ନ କରି ଘରକୁ ଗଲେ।

ମାୟା ତାଙ୍କୁ ଅପେକ୍ଷା କରି ବାଟ ଚାହିଁଥିଲା। ତାଙ୍କର ପାଦ ଶବ୍ଦ ଶୁଣି ...ଦୁଆରଆଡ଼କୁ ବୁଲି ଚାହିଁଲା। ସ୍ମୃତି ତା ଆଣ୍ଠୁ କତିରେ ଗୁରୁଣ୍ଡୁ ଥିଲା। ରଘୁନାଥ ମା ଓ ପିଲାଙ୍କୁ ଦଣ୍ଡେ ଚାହିଁଦେଇ ପ୍ରେମରେ ପୂରିଗଲା। କିଛିକ୍ଷଣ ଆଗରେ ସୀତାର ପୁଅକୁ ସେ କୋଳରେ ଆଉଜାଇଥିଲା। ତାହାର ସ୍ପର୍ଶର ସ୍ମୃତିରେ ଅନେକ ପୁରାତନ ସୁଖ ଦୁଃଖ ଉଚ୍ଛୁଳି ଉଠି ମନ କୋହରେ ଫାଟିପଡୁଥିଲା, ତାହା ଦୂର କରିବାକୁ ରଘୁନାଥ ସ୍ମୃତିକୁ କୋଳକୁ ନେବାକୁ ଗଲା। ସେ ମଧ ଆଣ୍ଠୁରେ ଭରା ଦେଇ ହାତ ବଢ଼ାଇ ବା'-ବା' ହେଉଥିଲା। ତାହାର ମଧୁର ଆହ୍ୱାନରେ ପିତୃପ୍ରାଣ ପୂରିଗଲା। ତାହାର ମୁଖ ଚୁମ୍ବନ କରୁ କରୁ ମାୟାକୁ କହିଲା–"ବୁଝିଲ, ଆଜି କାହିକିଁ ଡେରି ହେଲା। ଆଜି ଜଣେ ଅପୂର୍ବ ଲୋକ ସହିତ ସାକ୍ଷାତ୍ ହୋଇଚି।" ମାୟା ଅବାକ୍ ହୋଇ ଚାହିଁରହିଲା। ପରେ କହିଲା–"କିଏ ସେ।"

ସେ ଏଥର ସକାଳର ଘଟଣା ସବୁ କହିଲା ପରେ, କହିଲା–"ବୁଝିଲ, ମିସେସ୍ ସେନ୍ ଗୁଣବାନ୍ ଭ୍ରାତାର ଗୁଣବତୀ ଭଗିନୀ।"

ମାୟା ବାଧାଦେଇ କହିଲା–"ତୁନି ହୁଅ, ପର ପରମେଶ୍ୱର, ପରର ନିନ୍ଦାରେ ଆମର ଲୋଡ଼ା କଣ? ମିସେସ୍ ସେନ୍ ବର୍ତ୍ତମାନ ସଂପୂର୍ଣ୍ଣ ପରିବର୍ତ୍ତିତ।

ରଘୁନାଥ ଈଷତ୍ ହସି କହିଲା–"ସାପ କାତିଛାଡ଼ିଲେ ବି ବିଷଧର।"

ରଘୁନାଥ କହିଲେ–"କିନ୍ତୁ ଜ୍ୟୋତିଷ ଡାକ୍ତର ମୁହଁରୁ ଯଦି ତାର ଇତିହାସ ଶୁଣିଥାନ୍ତି କହନ୍ତି–"

''ଦୁନିଆଟାକୁ ଆଉ ଜ୍ୟୋତିଷ ଡାକ୍ତର ଚସମାରେ ଦେଖ ନା! ଯାହାର କାନ୍ଥେ କାନ୍ଥେ ପାପଚିତ୍ର, ପେଟେ ପେଟେ ମନ୍ଦବୁଦ୍ଧି, ସେ ପୁଣି ମଣିଷ ଭିତରେ କଣ ଭଲ ଅଛି କିପରି ଦେଖନ୍ତା। ତମେ ତ ନିଜେ କହୁଥିଲ ତା ଗୁଣ। ତାହାରି ଯୋଗୁ ତ ଫୁଲର ସର୍ବନାଶ। ବିଚାରି କଣ କରନ୍ତା? ତୁମ ବ୍ରାହ୍ମଣ କୂଳ ତ ସର୍ବନାଶର ମୂଳ। ନୋହିଲେ ଯୁବତୀ ବିଧବାଟାକୁ ଜବରଦସ୍ତି ବେଢ଼ା ଭିତରେ ରଖିବାକୁ ଚାହଁ, ସେ ପାଚେରି ଡେଇଁ ପଳେଇଲା ତ ଦୋଷ ତାର! ପ୍ରକୃତି ଉପରେ ଏ କି ବଳାତ୍କାରି?''

''ଆଚ୍ଛା ହଉ ହଉ, ତୁମ ଲେକ୍‌ଚର ରଖ।'' ଏହା କହି ହସି ରଘୁନାଥ ସ୍ମୃତିକୁ କୋଳକରି କହିଲେ,–''ଦେଖ ତୋତା! ତୋ ମା ମୋତେ ଖାଇବାକୁ ଦଉ ନାହିଁ?'' ତୋତା ପିତାର ଦୁଃଖ ରଖି ....

ରଘୁନାଥ ଭୋଜନରେ ବସିଲାରୁ ତୋତା ମା କୋଳରେ ହସିବାକୁ ଲାଗିଲା।

ସେଦିନ ରାତିରେ ସ୍ୱାମୀ ସ୍ତ୍ରୀ ଏକାକୀ ବସିଥିଲେ। ରଘୁନାଥ କହିଲା–''ଯଦି ଅନୁମତି ଦିଅ ସୀତାକୁ ଆଉ ତାହା ସ୍ୱାମୀକି ଦେଖି ଆସିବି, ତୁମେ ଯିବ କି?

ମାୟା ଦୁଃଖିତ ହୋଇ କହିଲା–''ହାୟ ରେ ବିଧାତା! ଯାହା ଲାଗି ମଣିଷ ଦେଶାନ୍ତର ହୁଏ, ଆପଣାର ସର୍ବସ୍ୱ ତ୍ୟାଗକରେ, ତାକୁ ପୁଣି ଦେଖିବାକୁ ମୋର ଅନୁମତି?''

ରଘୁନାଥ ମାୟା କତିକି ଘୁଞ୍ଚିଆସି କହିଲା–''କେଜାଣି କାହିଁକି ମାୟା! ସୀତା ଆଜି ସୁଦ୍ଧା ମୋ ହୃଦୟରେ ଜାଗ୍ରତ ଅଛି। ହେଲେ ତୁମ–''

ତାଙ୍କୁ କଥା ସମାପ୍ତ କରିବାକୁ ନ ଦେଇ ମାୟା କହିଲା–''ସେ ତ ସ୍ୱାଭାବିକ, ସେ ତ ଆପଣାର।'' ଏହାକହି ଗଭୀର ଦୀର୍ଘଶ୍ୱାସ ସହ କହିଲା –''ମୁଁ ସିନା ଖାଲି ବାଡ଼କୁ ବତା।''

ରଘୁନାଥ ଅଭିମାନିନୀକୁ ପାଖକୁ ଟାଣି ନେଇ କହିଲା–''ବାସ୍ତବିକ ମାୟା! ତମପରି ମତେ କିଏ ଭଲପାଏ? ଏତେ ପ୍ରେମ ଯେ ନାରୀର ବକ୍ଷସ୍ଥଳରେ! ଏତେ ତୁମର ଅନୁରାଗ! ମୁଁ ଅଧମ ଅଯୋଗ୍ୟ–''

ମାୟା କୋମଳ କରପଲ୍ଲବରେ ସ୍ୱାମୀର ମୁଖ ଆବୃତକରି କହିଲା– ''ତମେ ମୋର ଇଷ୍ଟଦେବତା, ତମେ ମୋର ମଥାମଣି!''

ରଘୁନାଥ କହିଲା–''ଆଉ ତୁମେ? ମୋର ହୃଦୟମରୁରେ ମନ୍ଦାକିନୀ-ଧାରା, ମୁଁ କଣ ହୋଇଥାନ୍ତି ଜଗତରେ, ବିଶେଷତଃ ବର୍ମାମୂଲକରେ ଆଉ ବନେଟ୍ ସାହେବ ଫାନ୍ଦରେ। ସେ ରାତିରେ ମିସ୍ ଏଲେନ୍‌ର ନାଚଟା ମୁଁ କେବେ ହେଲେ ଭୁଲି ନାହିଁ। ସ୍ତ୍ରୀଲୋକ ହୋଇ ସେ କିପରି ଏଡ଼େ ଲଜ୍ଜାହୀନା। ମୁଁ ସେ କଥା ଭାବିଲେ ମୁଣ୍ଡ ଘୂରିଯାଏ। ଏହି କଣ ସଭ୍ୟତା! ଏହି କଣ ପାଶ୍ଚାତ୍ୟ ଆଦର୍ଶ! ଏହି କଣ ନାରୀର ଆଦର୍ଶ!''

ମାୟା ଯୋଗଦେଇ କହିଲା–''ନାରୀର ଆଦର୍ଶ କାହିଁକି ହେବ, ପ୍ରବୃତ୍ତିର ନିର୍ଦ୍ଦେଶ ସେଇଟା।''

ରଘୁନାଥ ପରମ ସ୍ନେହରେ ମାୟାକୁ କୋଳାଗ୍ରତକରି କହିଲା–''ହେଲେ ମୁଁ ମରିଥାନ୍ତି, ମାଡେଇଁ, ମୋସୁଏଁ ମୋତେ ସାରିଥାନ୍ତେ। ମୁଁ ବର୍ମା କୁହୁକିନୀର କିଣା କିଙ୍କର ହୋଇଥାନ୍ତି।

ମାୟା ହସି ହସି କହିଲା–''ତୁମପାଇଁ ଯୌବନ ଭୀଷଣ ପରୀକ୍ଷାର ସମୟ! କାହିଁକି ନା ତମେ ପୁରୁଷ। ଲଗାମ ମାନିବା ଜନ୍ତୁ ନୁହଁ, ଆଉ ବିଚାରୀ ଫୁଲପରି ହତଭାଗିନୀ ନରୀମାନଙ୍କପାଇଁ ଯୌବନ କେବଳ କଠୋର ବ୍ରହ୍ମଚର୍ଯ୍ୟ, ଜପତପ, ହବିଶ, ଏକାଦଶୀ ସାଧନାର ସମୟ। ଆହୁରି ବିଚାର କରୁଥିଲ!''

ରଘୁନାଥ କହିଲା–''ତୁମେ ମତେ କାହିଁକି ଦୋଷଦଉଚ ଭଲା? କିଏ ପଣସ ଖାଏ, କାହା ମୁଣ୍ଡରେ ଅଠା ବୋଳା।''

ମାୟା କହିଲା–''ତୁମେ ପୁରୁଷଗୁଡ଼ାକ ,ଏକା ନାରୀଙ୍କର ଦୁଃଖର ମୂଳକାରଣ। ଆପଣା ବେଳକୁ ବାବୁ ସବୁ ଢିଲାଢ଼ିଲି। ସ୍ତ୍ରୀଙ୍କ ବେଳକୁ କଡ଼ାକଡ଼ି ଆଇନ୍। ତମମାନଙ୍କୁ ଭଲା ଏପରି କିଏ ଦଣ୍ଡ ଦିଅନ୍ତା, ତେବେ ଚେତନ୍ତ।''

ରଘୁନାଥ ତାକୁ ଆଦରକରି କହିଲା–''ହଉ ହେଲା ଏବେ। ପୁରୁଷଙ୍କ ଲାଗି ମୁଁ ଜାମିନ୍ ହେଉଛି।''

ମାୟା ସ୍ୱାମୀକୁ ହସିହସି କହିଲା–''ବାସ୍ତବିକ ତମପରି ଦେବତା କିଏ? ତମକୁ ଯେଉଁ ଦିନ ଦେଖିଚି, ସେହି ଦିନଠୁଁ ମୁଁ ମୋର ନୁହେଁ।''

ରଘୁନାଥ ଅନୁରାଗପୂର୍ଣ୍ଣ ସ୍ୱରରେ କହିଲେ–''ଏଥିରେ ଦୋଷ କାହାର? ଏଇଥିରୁ ବୁଝ। ନାରୀ ନିର୍ଯ୍ୟାତନପାଇଁ କେବଳ ପୁରୁଷ ଦାୟୀ ନୁହେଁ। ସ୍ତ୍ରୀ ପୁରୁଷ ଉଭୟେ ମିଳି ସ୍ୱାର୍ଥପରଭାବରେ ଯେଉଁ ସବୁ ଆଇନ୍ କାନୁନ୍ ବାନ୍ଧିଛନ୍ତି, ସେହିତକ ବିଷଲତା ପରି ସମାଜ ଦେହରେ ଗୁଡ଼େଇହୋଇ ଏତକ ଅନର୍ଥ ଭିଆଇଛି।''

ମାୟା ଆଶ୍ଚର୍ଯ୍ୟ ହୋଇ କହିଲା–''ସ୍ତ୍ରୀ ପୁଣି କଣ ଆଇନ୍ କଲା?''

ରଘୁ–''ପୁରୁଷ ସ୍ତ୍ରୀକୁ ଯେତେଦୂର ନିର୍ଯ୍ୟାତନ କରେ ନାହିଁ, ସ୍ତ୍ରୀ ସ୍ତ୍ରୀକୁ ସେତେ ଦୂର କରେ। ଶାଶୂ, ନଣନ୍ଦ, ଯା' ଏମାନେ କଣ ଯମର ଭଉଣୀ ନୁହଁନ୍ତି? ସ୍ତ୍ରୀମାନଙ୍କ ରକ୍ଷଣଶୀଳତାଯୋଗୁଁ ତ ହିନ୍ଦୁ ସମାଜରେ ଆଜି ଏତେ କୁସଂସ୍କାର।''

ମାୟା ଦୁଃଖିତ ହୋଇ କହିଲା–''ବାସ୍ତବିକ ମୁଁ ସର୍ବଦା ଭାବେ ସ୍ତ୍ରୀ-ଶିକ୍ଷାର ବିସ୍ତାର ଆଶୁ ପ୍ରୟୋଜନ। ହେଲେ, ଛାଡ଼ ସେ କଥା। କାଲି, ଚାଲ ଯିବା, ଦେଖଆସିବା।''

× × × ×

ଦିବାକର ବିଛଣାରେ ଶୋଇଥିଲେ, ନରିଆ ଆସି ଖବର ଦେଲା–ରଘୁନାଥ ବାବୁ ତାଙ୍କ ପରିବାର ଆସିଛନ୍ତି। ତା ପୂର୍ବ ଦିନରୁ ସେ ତା ମୁହଁରୁ ତାଙ୍କ ଖବର ପାଇଥିଲେ। ସୀତାଠୁଁ ଶୁଣିଲେ, ସେ ରେବତୀର ଧର୍ମ ଭାଇ। ରେବତୀ ତାଙ୍କର ଶଳାଭାଉଜ। ସେ ଲେଖାରେ ରଘୁନାଥ ଶଳାର ଶଳା, ମିତ୍ରସ୍ଥାନୀୟ। ପରମ ଆଦରରେ ରଘୁନାଥ ଓ ମାୟାଙ୍କୁ ପାଖରେ ବସାଇ ଦିବାକର ବହୁତ ସୁଖଦୁଃଖ ହେଲେ। ବିଦେଶରେ ଆପଣା ଲୋକଟିଏ ଦେଖିଲେ କିଏ ବା ଆନନ୍ଦିତ ନ ହେବ? ପୁଣି ଏପରି ଅବସ୍ଥାରେ। ଦୁଇମାସ ହେଲା ଜୀବନ ମୃତ୍ୟୁର ସନ୍ଧିସ୍ଥଳରେ ଠିଆହୋଇ ସେ ସଂଗ୍ରାମ କରୁଛନ୍ତି, ଦୁଇମାସ ହେଲା ଡାକ୍ତରୀ, କବିରାଜୀ, ହୋମିଓପ୍ୟାଥିକ୍ ଚିକିତ୍ସାରେ ତାଙ୍କର ପ୍ରାଣାନ୍ତ ହେଲାଣି। ଅବଶେଷରେ ଅପରେସନ୍, ଅସ୍ତ୍ରାଘାତ ମଧ୍ୟ ସହ୍ୟ କଲେ, ତଥାପି ସ୍ୱାସ୍ଥ୍ୟ ଫେରିପାଇ ନାହାନ୍ତି। ବରଂ କ୍ରମେକ୍ରମେ ଅବସ୍ଥା ମନ୍ଦ ଘଟୁଛି। ପୂର୍ବରୁ ସେ ରୂପ, ତେଜ ନାହିଁ। ମୁଣ୍ଡରେ ସେ କାମିନୀମନୋହର କୁଞ୍ଚିତ କେଶର ଚିକ୍କଣ ଫିରେଇ ନାହିଁ। ଚକ୍ଷୁ କୋଟରଗତ, ଶରୀର ଅସ୍ଥି ଚର୍ମସାର, ରକ୍ତହୀନ, ହାତପାଦ ଫୁଲିଗଲାଣି।

ରଘୁନାଥ ସେ ମୂର୍ତ୍ତିକୁ ଚାହିଁ ପନ୍ଦର ବର୍ଷ ପୂର୍ବରୁ ଯୁବକ ମୂର୍ତ୍ତିକୁ ମନେପକାଇଲା। ତାହାର ହୃଦୟରେ ଗୋଟିଏ ଅବ୍ୟକ୍ତ ବେଦନା ଖେଳିଗଲା। ସୀତା ମୁଣ୍ଡରେ ଲୁଗାଦେଇ ମୁହଁପୋତି ବସିଥିଲା। ତାହାର ପୂର୍ବରୁ ସେ ତନୁପାତଳ ଚେହେରା ନାହିଁ। ବୟସାନୁକ୍ରମେ କ୍ଷୀଣଦେହ ପୁଷ୍ଟି ଲାଭକରିଛି। ଦୂରରୁ ହଠାତ୍ ସରସ୍ୱତୀ ବସିଥିବାର ଭ୍ରମ ଜନ୍ମେ। ସେ ପ୍ରଥମେ ସୀତାକୁ ଚିହ୍ନି ପାରିଲା ନାହିଁ। ସୀତା ମଧ୍ୟ ତାକୁ ଦେଖି ଆଶ୍ଚର୍ଯ୍ୟହେଲା। ରଘୁନାଥ ଅନେକ ପରିବର୍ତ୍ତନ ହୋଇଛି; କିନ୍ତୁ ତଥାପି ସୀତା ତାକୁ ଦେଖି ଚମକିପଡ଼ିଲା। ତା ଛାତି ଭିତରେ ରକ୍ତ ଦ୍ରୁତଗତିରେ ବହିବାକୁ ଲାଗିଲା। ଦିବାକରକୁ ସେ ଆପଣା ବାପ ଘରର ପ୍ରାୟ ସମୁଦାୟ କଥା କହିଥିଲା; କିନ୍ତୁ ଦିନେ ହେଲେ ଭୁଲକ୍ରମେ ରଘୁନାଥର ନାମ ଉଚ୍ଚାରଣ କରି ନ ଥିଲା। ସେଥିପାଇଁ ତାହାର ସ୍ୱାମୀ ଜାଣି ନ ଥିଲେ ତାହାର ଓ ରଘୁନାଥ ମଧ୍ୟରେ କି ସଂପର୍କ। ସୀତା ବା କେମିତି କହନ୍ତା ରଘୁନାଥ ତାହାର କିପରି ଆପଣାର। ସ୍ୱାମୀ, ରଘୁନାଥ ସହିତ କଥାବର୍ତ୍ତା କରୁଥିଲେ, ସେ କାଠ ପାଲଟି ବସିରହିଲା। ଆଉ ତାକୁ ନିରୀକ୍ଷଣ କରୁଥିଲା–ମାୟା। ବହୁଦିନର ସେ ଚିଠିଖଣ୍ଡ ତାର ମନେପଡ଼ିଗଲା। ସେଥିରେ ଲେଖାଥିଲା 'ଅତୁଲ୍ୟ ସୁନ୍ଦରୀ ସୀତା'। ମାୟାର ସେହି ଧାଡ଼ିଟା ଆଖି ଆଗରେ ବଡ଼ ବଡ଼ ଅତି ଉଜ୍ଜ୍ୱଳ କଳା ଅକ୍ଷରରେ ଭାସିଉଠିଲା–'ଅତୁଲ୍ୟ ସୁନ୍ଦରୀ ସୀତା।' ପ୍ରକୃତରେ ସୀତା ସୁନ୍ଦରୀ-ପରମା ସୁନ୍ଦରୀ, ଆଉ ରଘୁନାଥ? ମାୟା ଦଣ୍ଡେ ସ୍ୱାମୀ ମୁହଁକୁ ଚାହିଁଲା। ଏ ତ ପ୍ରକୃତିର ଦିଓଟି ନିର୍ଦ୍ଦୋଷ ଆଲେଖ୍ୟ! ଏପରି ସାଦୃଶ୍ୟ, ଏପରି ପରସ୍ପରର ଉପଯୋଗୀ, ଏପରି ଯୁଗଳ ମନୋହର ମୂର୍ତ୍ତି ସେ ତ ଅତି କମ ଦେଖିଛି! ତା ଛାତି ଭିତରେ ଗୋଟିଏ ଅସ୍ପଷ୍ଟ ଅବ୍ୟକ୍ତ ବେଦନାର ପ୍ରବାହ ବୋହିଗଲା। କିନ୍ତୁ ପରକ୍ଷଣରେ ସେ ଆଶ୍ୱସ୍ତ ହେଲା। ରଘୁନାଥ ତାର, ସୀତାର ନୁହେଁ। ସେ ଆଶ୍ୱସ୍ତିର ଦୀର୍ଘ ନିଶ୍ୱାସ ସହ

ସୀତା କତିକି ଘୁଞ୍ଚି ସଉପରେ ବସିଲା। ସୀତା ମଧ୍ୟ ଓଢ଼ଣା ଆଖୁଆଳରୁ ଚାହିଁଲା ତେଜୋମୟୀ ମାୟାକୁ–ଶିକ୍ଷା-ସଭ୍ୟତା-ମାର୍ଜିତରୁଚିସଂପନ୍ନା ବଙ୍ଗବାସିନୀ ମାୟାକୁ। ତାହାର ପ୍ରାଣତନ୍ତ୍ରୀରେ ଗୋଟିଏ ଅଭିମାନର ସ୍ୱର ବାଜି ଉଠିଲା। ସେ ନିଜେ ବୁଝିଲା ନାହିଁ କାହିଁକି। ତାହାର ମନେ ହେଲା, ରଘୁନାଥ, ସ୍ୱାମୀଶଯ୍ୟାପ୍ରାନ୍ତ ଉପବିଷ୍ଟ ରଘୁନାଥ ମହାନ୍ ଦୋଷୀ। ଏହି କଣ ସେହି ସୀତାଗତପ୍ରାଣ, ପୀତେଣ ନାନୀର ରାମଚନ୍ଦ୍ର? ସେହି ମନୋମୋହନ ବାଳକ?, ଏବେ ରଘୁନାଥ ପୌଢ଼। ତାହାର ବୟସ ସହିତ ସୀତାପ୍ରେମ ହଜିଗଲା। କେଉଁ କାରଣରୁ ହଜିଲା, ତାହା ଜାଣିବା ସତ୍ତ୍ୱେ ତାହାର ହୃଦୟ ପ୍ରବୋଧ ମାନିଲା ନାହିଁ। କାହିଁକି ସେ ଏଡ଼େ ପ୍ରତିଜ୍ଞାରୁ ଚ୍ୟୁତହେଲା? ସେ ହୃଦୟର କୋହ ଚାପିପାରିଲା ନାହିଁ। ଉଠି ଗୃହାନ୍ତରାଳକୁ ଗଲା। ମାୟା ମଧ୍ୟ ତା ହାତ ଧରି ଗୃହଭିତରେ ପ୍ରବେଶକଲା। ଖିଡ଼ିକି ବନ୍ଧକୁ ଆଉଜି ଆଖିରୁ ଉଷ୍ଣ ଲୋତକ ଢାଳିଦେଲା। ମାୟା ମନେକଲା– ସ୍ୱାମୀର ଆସନ୍ନ ବିପଦ ଆଶଙ୍କାରେ ସୀତାର ରୋଦନ। ସେ ସହାନୁଭୂତିରେ ତରଳିଗଲା। ତାହାକୁ କୁଣ୍ଢାଇ ଧରି ଲୁହ ପୋଛିଦେଲା। ବହୁକ୍ଷଣ ପରେ ସେହି ମଧୁର ସ୍ପର୍ଶରେ ସୀତା ସାନ୍ତ୍ୱନା ଲାଭକଲା। ମାୟା ତା ମୁଣ୍ଡ କୋଳକୁ ଆଉଜାଇ ନେଲା। ସୀତାର ମନେହେଲା, ସାକ୍ଷାତ୍ ରଘୁନାଥ ଯେପରି ତାକୁ ସାନ୍ତ୍ୱନା ଦେଉଛି, ବାଲ୍ୟର ସେ କୋମଳ ବାଳକ, ସେ ମଧୁର କଥା, ସେ ନୀରବ ସ୍ନେହ, ମାୟା ଭିତରେ ଆଜି ମୂର୍ତ୍ତିମନ୍ତ। ମାୟାର କରସ୍ପର୍ଶରେ ସେ ମଧୁର ସ୍ନେହସୁଧା ତା'ର ପ୍ରାଣସ୍ପର୍ଶ କଲା ପରା? ସ୍ୱାମୀକୁ ସ୍ତ୍ରୀ ଭିତରେ ଆଜି ସେ ସ୍ପଷ୍ଟ ଅନୁଭବକଲା। ତାହାର ବ୍ୟଥାବିଦୀର୍ଣ୍ଣ ବକ୍ଷସ୍ଥଳ ଭିତରେ ସ୍ୱତଃ ଉଦିତ ହେଲା–'ରଘୁନାଥର ତୁ ଏତେଟା ନିଜର?' ମାୟା ସୀତାକୁ ଯାବୁଡ଼ିଧରିଲା। ଅମୂଲ୍ୟ ଆସି ମା କତିରେ ଲଟେଇ ପଡ଼ିଲା, ମାୟା ସେ ପରମ ସୁନ୍ଦର ବାଳକ ମୁହଁରେ ଦେଖିଲା ଜଣକର ଛବି-ଯାହାକୁ ତାହାର ସ୍ୱାମୀ ଭଲପାଏ, ଯାହାର ମଧୁସ୍ମୃତିକୁ ବରଷ ବରଷ ଘେନି ସେ ଉପାସନା କରିଛି– ସେହି ସୀତା ଆଜି ତାହାର ଅତି ନିକଟରେ। ନିଶ୍ୱାସ ନିଶ୍ୱାସରେ ମିଶୁଛି–ହୃଦୟ ହୃଦୟ ସ୍ପନ୍ଦନରେ ମିଶୁଛି। ତାହାର କହି ଦେବାକୁ ଇଚ୍ଛା ହେଉଥିଲା, "ସୀତା, ତୁ ମୋର ଅତି ଆପଣାର"; କିନ୍ତୁ ପାଟି ତ ଫିଟିଲା ନାହିଁ! ନୀରବ ଗୃହ ତଳରେ ସାଶ୍ରୁନେତ୍ରରେ ଦିଓଟି ନାରୀପ୍ରାଣ ଆଜି ଅନୁଭବକଲେ, ବିଶ୍ୱର ନାଡ଼ୀ କେମିତି ଚାଲୁଛି। କେମିତି ପ୍ରେମଧାରା ତାହାର ଅଙ୍ଗେ ଅଙ୍ଗେ ବହି ତାକୁ ସଜୀବ ସଚଳ ରଖିଛି। ଜଣେ ଯାଉଛି, ଜଣେ ଯାଉ ନାହିଁ, ଅଥଚ ଉଭୟେ ପ୍ରାପ୍ତିର ଆନନ୍ଦରେ, ଅପ୍ରାପ୍ତିର ଶୋକରେ ସମାନ ମୁହ୍ୟମାନ। ମାୟା ଭାବୁଛି, ଏହି ନାରୀ ତାହାର ସ୍ୱାମୀର ଇଷ୍ଟଦେବୀ; ସୀତା ଭାବୁଛି, ମାୟା ରଘୁନାଥର ପ୍ରାଣପ୍ରତିମା! ପ୍ରକୃତରେ ତେବେ କିଏ କାହାକୁ ପାଇଛି? ଏ ପ୍ରଶ୍ନର ମୀମାଂସାର ବେଳ ସେଠି ନ ଥିଲା, ହୃଦୟର ଆବେଗ ସେ ସବୁ ବୁଡ଼ାଇ ଦେଉଥିଲା। ସ୍ମୃତି ଆସି ଜବରଣ କରି ମା କୋଳରେ ପଶିଗଲା। ସୀତା କାନ୍ଦୁଥିଲେ ସୁଦ୍ଧା ହସିପକାଇ ତାକୁ ଆଦରକରିବାକୁ ବାହାରିଲା, କିନ୍ତୁ ସ୍ମୃତି ତା ହାତ ଠେଲିଦେଇ ମା କୋଳ ଭିତରେ ମୁହଁ ଲୁଚେଇଲା। ସୀତାର ପ୍ରାଣରେ ଜାଗିଉଠିଲା ବହୁଦିନ

ତଳର ସେହି ମଧୁର କଳ୍ପନା। ରଘୁନାଥର ସନ୍ତାନର ସେ ଜନନୀ ହୋଇଥାନ୍ତା, କିନ୍ତୁ ଆଜି ତାହାରି ସନ୍ତାନ ତାକୁ ସ୍ବର୍ଗର ଅଧିକାର ସୁଦ୍ଧା ଦେବାକୁ ଅନିଚ୍ଛୁକ। ଜଗତ! ସେ ତଥାପି ସ୍ମୃତି ମୁହଁରେ ପିତାର ସାଦୃଶ୍ୟ ନିରୀକ୍ଷଣ କରି ମୁଗ୍ଧହେଲା।

ମାୟା କନ୍ୟାର ମୁଖଚୁମ୍ବନ କରି କହିଲା–''ଏ ଦୁଷ୍ଟଟୋକୀ ତାଙ୍କର ଭାରି ଗେହ୍ଲା। ସେ ତ 'ତୋତା' 'ତୋତା' କହି ପାଣିପିଇବେ ନାହିଁ। ଏ କଣ ମୋ ପାଖରେ ଥାଏ କି?''

ସୀତା ତୋତାକୁ ଚାହିଁ ପଚାରିଲା–'ତୁମର କେଉଟି ପିଲା?''

ମାୟା କହିଲା–''ମୋର ଚାରୋଟି ପିଲା, ଭଉଣୀ! ଯୋଡ଼ିଏ ପୁଅ, ଯୋଡ଼ିଏ ଝିଅ। ତମର?'' ସେ ଅମୂଲ୍ୟର ମୁଣ୍ଡ ଆଉଁସି ଦେଇ କହିଲା–''ଏଇ ଗୋଟିକ ତ ମୋର ଏକୋଇର ବଳା।''

ମାୟା ଅମୂଲ୍ୟକୁ ପାଖକୁ ଟାଣିଆଣି କହିଲା–''ପ୍ରଭୁ ଏଇ ଖଣ୍ଡିକୁ ଆଶୀର୍ବାଦ କରନ୍ତୁ। ତୁମର ଗୋଟିଏ କୋଟିଏ ହଉ।''

ଅମୂଲ୍ୟ ନୀରବରେ ଆଶୀର୍ବାଦ ଗ୍ରହଣକଲା।

× × × ×

ଯାମିନୀ ଦ୍ୱିତୀୟ ପ୍ରହର ଅତୀତ। ବିସ୍ତୃତ ଶଯ୍ୟାରେ ମାୟା ଓ ରଘୁନାଥ। ମାୟା ଗାଢ଼ନିଦ୍ରାଭିଭୂତା, କଡିରେ ସାନ ଖଟୁଲୀରେ 'ତୋତା', ପ୍ରକୃତିର କୋମଳ ଫୁଲମାଳା। ରଘୁନାଥ ସେହି ନିଦ୍ରିତ ଶିଶୁର ସୁନ୍ଦର ବଦନମଣ୍ଡଳକୁ ଚାହିଁ ଜାଗ୍ରତ। ଆଜି ତାର ଜମାରୁ ନିଦ ହଉ ନାହିଁ। ସେ ଯେତେ ଚେଷ୍ଟାକରୁଛି ବିଛଣାରେ ଏକର ସେକର ହେଉଛି, ତଥାପି ତାହାର ଆଖିକି ନିଦ ଛୁଇଁ ନାହିଁ, ତା ମନ ଗଭୀର ଭାବନାପୂର୍ଣ୍ଣ। ସକାଳେ ସୀତାକୁ ଦେଖିଲା ବେଳୁ ତା ମନ ଏପରି ହୋଇଛି। କାହିଁକି ଯେ ଏପରି ହୋଇଛି, ସେ ତାର କାରଣ ବୁଝିପାରୁନାହିଁ; କିନ୍ତୁ ତା ଅନ୍ତରାତ୍ମା କାନ୍ଦିଉଠୁଛି, ତାହାର ସମୁଦାୟ ମର୍ମଗ୍ରନ୍ଥି ଛିଣ୍ଡିଲା ପରି ମନେହେଉଛି, ତାହାର ଖାଲି ମନରେ ଚେଇଁଉଠୁଛି ସୀତାର ମୁହଁ, ସୀତାର ସେହି ଶୁଷ୍କ କରୁଣ ଆନନଶ୍ରୀ, ଆଉ ସୀମାନ୍ତଶୋଭୀ ସେହି ସିନ୍ଦୂରରେଖାଟି! ଆଉ ତ ଅଳ୍ପ ଦିନ! ଏ ସିନ୍ଦୂର ତାର ତ ନିଭିଯିବ। ବ୍ରାହ୍ମଣ ଘରେ ସେହିଟା ନିଭିବା କଣ ତା ରଘୁନାଥକୁ ଭଲ ଜଣା। ନାରୀ ପକ୍ଷରେ ସେ ବେଦନା, ସେ ଦୁଃଖ ଯେ କେତେଦୂର ଭୟାନକ, ତାହା ସ୍ମରଣକରି ତାହାର ଛାତି ଥରିଉଠିଲା। ତଥାପି ତାହାର ମନ କହିଲା–''ସେ ସୀତାର ଆସନ୍ନ ବୈଧବ୍ୟଦୁଃଖରେ ସେତେ ଚିନ୍ତିତ ନୁହେଁ, ତେବେ ତାର ଚିନ୍ତାକଣ?''

ନିଃଶବ୍ଦ ନିକେତନର ନୀରବ ପବନରେ ସୁଦ୍ଧା ଚମକି ପଡ଼ି ରଘୁନାଥ ଭାବିଲା, 'ତେବେ ତାର ଚିନ୍ତାର କାରଣ କଣ?' ଦୂରରୁ-ବହୁଦୂରରୁ ତା ଆତ୍ମାଭିତରୁ ଉତ୍ତର ଆସିଲା–

''ହତଭାଗ୍ୟ ! ତୁ ସୀତାକୁ ଭଲପାଉ ? ପର ସ୍ତ୍ରୀ ସୀତାକୁ ତୁ ଭଲପାଉ ? ମାୟାତୁଲ୍ୟା ସତୀ ସାଧ୍ୱୀ ରମଣୀ ଯାହାର, ସେ ପୁଣି ସୀତାକୁ ସ୍ମରଣକରି କାତର !'' କିନ୍ତୁ କାଠଖଣ୍ଡ ନିଭିଛି ସିନା, କୋଇଲାଖଣ୍ଡ ଯିବ କୁଆଡ଼େ ? ସେ ଦଗ୍ଧୀଭୂତ ପ୍ରାଣର ଯାତାନର ଚିହ୍ନ ଆଜି ସୁଦ୍ଧା ଆତ୍ମାରେ ଅଙ୍କିତ । ରଘୁନାଥ ବସ୍ତୁବସ୍ତୁ ସବୁ ମନେକଲା । ଗୋଟି ଗୋଟି ହୋଇ ତାହାର ପୂର୍ବ ଜୀବନ ତା ଆଖି ଆଗରେ ଭାସିଉଠିଲା-ବାଲ୍ୟର ବାସସ୍ଥାନ ସେହି ପଲ୍ଲୀଗ୍ରାମ, ସ୍ନେହମୟୀ ଖୁଡ଼ୀ, ପୁଣି ସେହି ଅସ୍ପଷ୍ଟ ଅଥଚ ଅତିପ୍ରିୟ ରତନୀ ନାନୀର ମୁହଁ । ରଘୁନାଥ ସେ ସ୍ୱର୍ଗଗତା ରତନୀ ନାନୀକୁ କିପରି ଭୁଲିବ ? ସେହି ସ୍ନେହମୟୀ ଜନନୀକୁ କିପରି ଭୁଲିବ ? ଜନନୀ ଚିନ୍ତାରେ ତାରାମଣିର ମୁହଁ ଦିଶିଗଲା । ସେ ତ ତାର ମା, ତାକୁ ସୁଖଦୁଃଖରେ ରୋଗଶୋକରେ, ସେହି ତ ସମ୍ଭାଳିଥିଲା–ପେଟର ପୁଅପରି ସମ୍ଭାଳି ଥିଲା, ତାହାର ବଡ଼ ଇଚ୍ଛାହେଲା, ଆଉ ଥରେ ପ୍ରିୟ ଜନ୍ମଭୂମିକୁ ଦେଖନ୍ତା–ଆଉ ଥରେ ଖୁଡ଼ୀ କୋଳରେ ପିଲାଟି ପରି ମୁହଁ ଲୁଚାନ୍ତା, ହଜାର ରଘୁନାଥ ବିଧର୍ମୀ ହେଉ, ହଜାର ବର୍ଷ ଦେଶାନ୍ତରୀ ହେଉ, ଖୁଡ଼ୀ କଣ ତାକୁ ଭୁଲିଥିବ ? ମା ତାରାମଣି କଣ ତାକୁ ଭୁଲିଥିବ ?–ତାର ରାମଚନ୍ଦ୍ର ! ରଘୁର 'ରାମଚନ୍ଦ୍ର' ଡାକ ମନେପଡ଼ି ଛାତି କୋହରେ ଫାଟିପଡିଲା । ଆଉ କଣ ସେ ରାମଚନ୍ଦ୍ର ଅଛି, ସେ କଣ ଧନୁଭଙ୍ଗା ପଣରେ ସୀତାକୁ ପାଇଛି ? ବୃଥା, ବୃଥା ଜଗତ, ମାୟାର ମେଳ; କିନ୍ତୁ ?–ପାର୍ଶ୍ୱରେ ନିଦ୍ରିତା ମାୟାର ନିଶ୍ୱାସ ତା ଦେହରେ ବାଜିଲା, କିନ୍ତୁ ଏ କିଏ ? ଏ ପ୍ରେମମୟୀ ପତିପ୍ରାଣା କିଏ ? ରଘୁନାଥ ପ୍ରେମାବେଗରେ ତାକୁ କୁଣ୍ଢାଇ ପକାଇଲା, ସେତେବେଳେ ତା ଆଖିରୁ ଗଙ୍ଗାର ଧାର ବୋହୁଥିଲା । ମାୟ ଚମକି ପଡ଼ି ବିଛଣାରେ ଉଠି ବସିଲା । କ୍ଷୀଣ ଦୀପାଲୋକରେ ଦେଖିଲା, ତା ସ୍ୱାମୀ ରୋଦନରତ ! ଏପରି ସେ କେବେ ଦେଖି ନାହିଁ । ସେ ବ୍ୟସ୍ତ ହୋଇ ତାଙ୍କୁ ଆଉଁସିବାକୁ ଲାଗିଲା, ବ୍ୟସ୍ତହୋଇ କାରଣ ପଚାରିଲା । ପଚାରିଲା–'କଣ ଦୁଃସ୍ୱପ୍ନ ଦେଖିଚ ?'

ରଘୁନାଥ ବହୁକ୍ଷଣ ପରେ ଉତରକଲା, ''ମାୟା ! ଥରେ ମୋ ଦେଶକୁ ଯିବି ? ଆଜି ବହୁଦିନ ପରେ ମୋର ଖୁଡ଼ୀ, ମା ମନେ ପଡ଼ିବାରୁ ପିଲାପରି କାନ୍ଦିପକାଇଲି । ଛି, ମୁଁ ବଡ଼ ନରମ ।''

ମାୟା ଆଶ୍ୱସ୍ତହୋଇ କହିଲା–''ଏଇ କଥା, ଚାଲ ନା, ଏହି ହପ୍ତା ଯିବା । ବାବା ଅଜିତକୁ ପଠାନ୍ତୁ, କିଛିଦିନ ସେ ଯାଇ ରେଙ୍ଗୁନରେ ରହୁ, ଆମେ ଛ ମାସ ଦେଶ ବୁଲି ଆସିବା ।''

''କିନ୍ତୁ ତମେ କଣ ସେଇ ମୋର ଗରିବ ଜ୍ଞାତି କୁଟୁମ୍ବଙ୍କୁ ଦେଖିବାକୁ ଯିବ ? ତମର– ।'' ମାୟା ବାଧାଦେଇ କହିଲା–''ତମେ କେମିତି ମଣିଷ କହିଲ ? ତୁମର ଜ୍ଞାତି କୁଟୁମ୍ବ ମୋର ପର, ଆଉ ମୁଁ ଭାରି ବଡ଼ଲୋକ ।''

ରଘୁନାଥ ବ୍ୟଥିତ ହୋଇ କହିଲା–"ମୁଁ ଯେ ତମ ପଇସାରେ ବଡ଼ଲୋକ, ମାୟା।" ମାୟା ରଘୁନାଥର ହାତଛାଡ଼ି କିଛି ଦୂର ଘୁଞ୍ଚିଗଲା। ବହୁତ ବେଳ ପରେ ଅଭିମାନରେ କହିଲା–"ମୁଁ ଚିରଦିନ ଜାଣେ, ମୋ ସ୍ୱାମୀର ଅର୍ଜନରେ ମୁଁ ବଡ଼ଲୋକ; କିନ୍ତୁ ତମେ ଆଜି ମତେ କହିଲ, 'ମୁଁ ତୋ ପଇସାରେ ବଡ଼ଲୋକ', ଏହା ଶୁଣିବା ଅପେକ୍ଷା କଣ ଜହର ଖାଇବା ଭଲ ନୁହେଁ?"

ରଘୁନାଥ ମାୟା କତିକି ଘୁଞ୍ଚିଯାଇ କହିଲା–"ମୋର କି ଦୋଷ, ମାୟା! କହିଲ ତମର ଉପକାର ମୁଁ କଣ ଶୁଝିଚି? ତୁମଠି ମୁଁ କୃତଜ୍ଞ–।"

"ଆଉ କୁହ ନା"–ବାଧାଦେଇ ମାୟା କହିଲା–"ଆଉ ଏ ନିଷ୍ଠୁର କଥା ମୋ କାନରେ ପକାଅ ନାହିଁ। ଚାଲ, କାଲିଠୁଁ ସବୁ ତ୍ୟାଗକରିବା, ତମେ ଚାକିରିକରିବ, ମୁଁ ଖାଇବି, ମୁଁ ମୋ ସ୍ୱାମୀର ଦାସତ୍ୱ ଚାହେଁ ନାହିଁ। ସେ ହୀନତା କାହିଁକି ବରଣକରିବ?"

ତାହାର କଥାରେ ଗୋଟିଏ ଅସମ୍ଭବ ତେଜ ବାହାରୁଥିଲା। ରଘୁନାଥ ମାୟାର ଅଟଳ ସ୍ୱଭାବ ଜାଣେ। ସେ ଉଠିଆସି ତା ଗୋଡ଼ ଧରିପକାଇ କହିଲା–"ମୁଁ ଏ ଶ୍ରୀଚରଣର ଦାସ"। ମାୟା ଆପଣା ପାଦ ଛଡ଼ାଇନେଇ ବିଛଣାରେ ଲୋଟିଗଲା। ତା ମନ ଭିତର ରଘୁନାଥର କଥାରେ ପୋଡ଼ିଯାଉଥିଲା ପରା?

ସେଦିନ ବଡ଼ି ଭୋରୁ ଉଠି ମାୟା ଜିନିଷପତ୍ର ସଜାଡ଼ିବସିଲା। ରଘୁନାଥ ସେ ଘରେ କେଉଁ କାମରେ ପଶି ଆସି ତା ବ୍ୟସ୍ତତା ଦେଖି ହସି ହସି କହିଲା–"ଏ କଣ? ଆଜି କୋଉଁ ପୁରୀକୁ ବିଜେ କରିବ କି?"

ମାୟା ଗମ୍ଭୀର ସ୍ୱରରେ କହିଲା–"ଆଜି ମୁଁ ଶାଶୂ ଘରକୁ ଯିବି। ସକାଳୁ ବାବାଙ୍କୁ କହି ଦେଇଚି, ବର୍ମା ସଂପତ୍ତିର କଡ଼ାଏ କଉଡ଼ି ମୋର ଆବଶ୍ୟକ ନାହିଁ, ମୋ ସ୍ୱାମୀ ଯୁଆଡ଼େ ଯିବେ, ମୁଁ ସିଆଡ଼େ ଯିବି।"

ରଘୁନାଥ ତାର ବାୟାଣୀ କଥା ଶୁଣି ତାହା କତିରେ ବସିପଡ଼ି କହିଲା, –"ତମେ କଣ ମୋ କଥା ସତ ମଣିଲ? ଆଚ୍ଛା, ମୁଁ କଣ ତମଦ୍ୱାରା ବଡ଼ଲୋକ ନୁହେଁ? ତୁମେ ଯେ ମୋର ଶତ ଶତ ହୀରା ମାଣିକରୁ ଉତ୍କୃଷ୍ଟ! ହଉ, ଚାଲ ଯିବା–ଦେଶକୁ ଯିବା। ମୁଁ ଭାବିଥିଲି, ତମେ ଗରିବ ଘରକୁ ଯିବାକୁ ମଙ୍ଗିବ ନାହିଁ।"

ମାୟା ଅଭିମାନ-ଉଜ୍ଜ୍ୱଳ ଆଖିରେ କହିଲା–"ପୁଣି ସେମିତି କୁହ ନାହିଁ, ମତେ ଡାଗି କାଟେ। ମୋ ଜ୍ଞାତିକୁଟୁମ୍ବ ଦରିଦ୍ର ହେଲେ ହେଁ ମୋର।"

ରଘୁନାଥ ଆନନ୍ଦରେ ପୂରିଯାଇ କହିଲା–"ଏତେ ଗୁଣ ଥିଲାକୁ ମୁଁ ଗୋଡ଼ତଳେ ପଡୁଛି ସିନା!"

ମିନତୀ ମାର ଲୁଗାପଟା ଘେନି ସେ ଘରକୁ ଆସିଲା। ତାକୁ ମୋଟେ ସାତ ବର୍ଷ। ତାକୁ ଅନାଇ ରଘୁନାଥ କହିଲା–''ମା ଲୋ! ତୋ ମାକୁ ଘରୁ ତଡ଼ିଦେଉଛି ଜାଣୁ? ଏ ମା ଆମର ଆଉ ଦରକାର ନାହିଁ।''

ମିନତୀ ବିଶ୍ୱାସ ନ କରି ହସିହସି କହିଲା–''ହଁ ନା? ଆମେ ତମକୁ ଆଗେ ତଡ଼ି ଦବୁନି ଯେ! ଆମେ ତ କଟକ ଯିବା।''

''ହଉ ତେବେ ମୁଁ ରଗୁନ୍ ଯାଉଚି'', କହି ରଘୁନାଥ ବାହାରକୁ ଗଲା। ପିଲାମାନେ କଟକ ଯିବେ ଶୁଣି ନାଚିନାଚି ବୁଲିଲେ।

× × × ×



## ଏକତ୍ରିଂଶ ଅଧ୍ୟାୟ

ସୀତା ବାୟାଣୀ ହୋଇଛି। ସେ ନୀରବ, ଶୂନ୍ୟ ଦୃଷ୍ଟିରେ ଆକାଶକୁ ଚାହିଁ ଖିଡ଼କି ପାଉଚି ଲୁହା ରେଲିଂରେ ମୁଣ୍ଡ ଥୋଇଛି। ତାହାର ଆଗିତଳ ବିଶାଳ କଲିକତା ନଗରୀ–ଶତବିପଣୀ ଶୋଭିତ, ଶତ ସୁରମ୍ୟ ପ୍ରସାଦସମ୍ବଳିତ, ଶତ ବିଦ୍ୟୁତାଲୋକଝଲସିତ। ଆଉ ରାଜପଥରେ ଅସଂଖ୍ୟ ଫେରିବାଲାର ଚିତ୍କାର, ଅସଂଖ୍ୟ ଯାନବାହନର ଶବ୍ଦ। ମିଠା ସୁଲୁସୁଲିଆ ପବନ ତା ଆଖି ଉପରେ ପଡ଼ିଥିବା ଚୂର୍ଣ୍ଣକେଶରାଶି ଉଡ଼ାଇନେଉଛି, ତା ମୁଣ୍ଡରୁ ଲୁଗା ଖସି ଖସି ପଡୁଛି, ଗୃହତଳେ ଶୋଇଛନ୍ତି ଦିବାକର। ଏ ଶଯ୍ୟାରୁ ସେ ଉଠିବେ କି ନା କିଏ ଜାଣେ? କତିରେ ତାଙ୍କର ବସିଛି ଜଣେ ଇଂରାଜ ନର୍ସ। ସେ ରାତି ଜଗିବସିଛି, ରୋଗୀର କ୍ଷୀଣ ଶ୍ୱାସ, କ୍ଷୀଣ ନାଡ଼ିସ୍ପନ୍ଦନ ଘଣ୍ଟାକୁ ଘଣ୍ଟା ଗଣୁଛି, ଆଉ ଥରେ ଥରେ ସୀତା ଆଡ଼କୁ ଚାହୁଁଛି। ସୀତା ଏକପ୍ରକାର ବାୟାଣୀ। ତା ସ୍ୱାମୀ ମରିବେ, ସେ ଏ କଥା ଦୁଇଦିନ ହେଲା ଶୁଣିଛି। କଲିକତାର ବଡ଼ ବଡ଼ ଡାକ୍ତରମାନେ ମନ୍ତବ୍ୟ ଦେଇସାରିଲେଣି–ତା ସ୍ୱାମୀ ମରିବେ। ସୀତା ସେହି ଦଣ୍ଡରୁ ହତବୁଦ୍ଧି ହୋଇଛି। ଜଗତ ଆଜି ସାମନାରେ ଘୂରିଯାଉଛି, ଆକାଶର ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ତା ଆଖି ସାମନାରେ ଘୂରି ଯାଉଛନ୍ତି। ସେ କଣ କରିବ? ଏହି ଅସ୍ଥିର ଚିନ୍ତାରେ ତାହାର ପ୍ରାଣ ବ୍ୟାକୁଳ। ଇଚ୍ଛା, ତାହାର ଦେହକୁ କିଏ ଶତଖଣ୍ଡ କରି ଯଦି ପ୍ରାଣଟା କାଢ଼ିନିଅନ୍ତା, ସେ ମରନ୍ତା–ଆଉ ଦିବାକର ବଞ୍ଚନ୍ତେ। ତାହାର ପରମାୟୁ ଘେନି ଯଦି ଏହି ଦିବାକରକୁ ଆଉ ଦଶ ବର୍ଷ ବଞ୍ଚାନ୍ତା, ସେ ଅକ୍ଲେଶରେ ଆଜି ମରନ୍ତା। ପୁରାଣରେ ଶୁଣିଥିଲା ସାବିତ୍ରୀ ସତ୍ୟବାନଙ୍କ ବଞ୍ଚାଇଥିଲେ। ତେବେ ସେ କଣ ଦିବାକରକୁ ବଞ୍ଚାଇ ପାରିବ ନାହିଁ? ପରକ୍ଷଣରେ ମନେ କଲା ହାୟ! ସତୀ ସାବିତ୍ରୀ ଆଉ ଅସତୀ ଅଲକ୍ଷଣୀ ସେ। ରଘୁନାଥ ତାହାର ମନେପଡ଼ିଲା। ପୂର୍ବ ସ୍ମୃତି ହୃଦୟପଟରେ ଜାଗ୍ରତହେଲା–ସେହି ନିବିଡ଼ ଜ୍ୟୋତ୍ସ୍ନା-ମଧୁର ନିଃଶବ୍ଦ ରଜନୀରେ

ଅଶୋକ ଚଉତରା ମୂଳେ ରଘୁନାଥ ପାଦରେ ବିବାହପୂର୍ବରୁ ଆତ୍ମସମର୍ପଣ, ତାହାର ଗଳାରେ ସୁନାସୂତା ଅର୍ପଣ, ତାହାର ପାଦତଳେ ପଡ଼ି ରୋଦନ; ଆଉ ସେ ଶେଷ ବିଦାୟ । ସବୁ ଗୋଟି ଗୋଟି ପ୍ରେତଲୋକରୁ ଉଠିଆସିଲେ ପରା ! ତାର ଆଖି ଦଗ୍ଧ ହୋଇଗଲା; ଛାତି ପୋଡ଼ିଗଲା; ଯେ ଏତେ ପାପ କରିଛି, ଲୁଚାଇ ଲୁଚାଇ ରଘୁନାଥର ଛବିକି ଯେ ପୂଜା କରିଛି, ସେ ପୁଣି ଦିବାକର ଲାଗି ଆଜି କିପରି ପ୍ରାର୍ଥନାକରିବ ? ଭଗବାନଙ୍କୁ ଅଳିକରିବ ? କଣ ଅଛି ତାର ମହତ୍ତ୍ୱ, କଣ ଅଛି ତାର ସତୀତ୍ୱ ? ତଥାପି ସୀତା ଭାବିଲା–'ରଘୁନାଥ କିଏ ? ବାଲ୍ୟର ଭ୍ରାନ୍ତି କଣ କ୍ଷମଣୀୟ ନୁହେଁ। ଦିବାକର ତାହାର ଧର୍ମତଃ ସ୍ୱାମୀ, ଦିବାକର ତାହର ଇଷ୍ଟଦେବତା, ଇହପରକାଳର ମୁକ୍ତି। ସେ ଦିବାକର ବିନା ବୈକୁଣ୍ଠରେ ରାଜଭୋଗ ସୁଦ୍ଧା ଚାହେଁ ନାହିଁ।

ଭାବନା ଆବେଗରେ ସୀତା ଉଠିଲା, ଧୀରେ ଧୀରେ ଯାଇ ସ୍ୱାମୀର ମୁଣ୍ଡକତିରେ ଛିଡ଼ାହେଲା। ପନ୍ଦର ଦିନ ହେଲା ତା ମୁଣ୍ଡରେ ତେଲ ବାଜି ନାହିଁ, ଆଖି ଗାଡ଼ ଗାଡ଼ ପଶିଯାଇଛି, ପନ୍ଦର ଦିନ ହେଲା ଭାତ ପାଣି ସେ ଛାଡ଼ିଲାଣି। ତାହାର ବସନ ଭୂଷଣ ବିଶୃଙ୍ଖଳ। ଉନ୍ମାଦିନୀ ପରି ତାହାର ରୂପ ବିକଟ। ତାକୁ ଚାହିଁ ଇଂରାଜ ନର୍ସ ମିସେସ୍ ଉଆଲସ୍ କରୁଣାର୍ଦ୍ରକଣ୍ଠରେ ସାନ୍ତ୍ୱନା ଦେଇ ଅନେକ କଥା କହିଲେ। ସେ ମଧ୍ୟ ବିଧବା ହୋଇଥିଲେ, ଯୌବନରେ ପ୍ରଥମ ସ୍ୱାମୀଙ୍କୁ ହରାଇଥିଲେ। ବିଧବାର ଦୁଃଖ କଣ ସେ ଜାଣନ୍ତି। ସୀତା ଆଶ୍ଚର୍ଯ୍ୟ ହୋଇ କହିଲା–''ମେମ୍ ସାହେବ ! ତମର ସ୍ୱାମୀ ପରା ଡାକଘରେ କାମ କରନ୍ତି– ତମେ କହୁଥିଲ ?''

ମିସେସ୍ ଓ୍ୟାଲେସ୍ ଦୁଃଖିତ ହୋଇ କହିଲେ–''ଏ ମୋର ଦ୍ୱିତୀୟ ସ୍ୱାମୀ, ଆଦୌ ଭଲଲୋକ ନୁହେଁ। ଅତିରିକ୍ତ ମଦ ଖାଏ। ସେଥିପାଇଁ ମୁଁ ତାକୁ ତ୍ୟାଗ କରିଚି, କିନ୍ତୁ ମୋର ପ୍ରଥମ ସ୍ୱାମୀ ଭାରି ଭଲଲୋକ ଥିଲେ।''

ସୀତା ଅବାକ୍ ହୋଇ କିଛିକ୍ଷଣ ରହିଲା। କଥା କହିବାକୁ ତାହାର ବାକ୍‌ସ୍ଫୂର୍ତ୍ତି ହେଲା ନାହିଁ। ସେ ଦିବାକରର ମୁଣ୍ଡ କତିରେ ବସି କାନ୍ଦିଲା। ରାତି ଗୋଟାକ କଟିଗଲା–ସୀତା ସେହି ଏକାସନରେ। ପାହାନ୍ତାରେ ଦିବାକର ଆଖି ମେଲାଇ ସୀତାଙ୍କୁ ମୁଣ୍ଡ ଉପରେ ବସିଥିବା ଦେଖି ଆଗ୍ରହରେ ଚାହିଁଲେ। ମିସେସ୍ ଉଆଲ୍‌ସ କହିଲେ–''ମିସେସ୍ ମିଶ୍ର ରାତିଯାକ ଚେଇଁଛନ୍ତି, କାନ୍ଦୁଛନ୍ତି। ଦିବାକରଙ୍କ ଆଖିରୁ ପ୍ରବଳ ବେଗରେ ଦୁଇଧାର ଲୁହ ଗଡ଼ିଗଲା। ତାଙ୍କର ସବୁ ପୂର୍ବସ୍ମୃତି ମନେପଡ଼ିଲା। ସୀତା ଯେ ତାଙ୍କର ନୟନତାରା, ଯାହା ଲାଗି ସେ ଜଗତରେ ମଣିଷ ହେଲେ, ସେହି ସୀତା ଯେ ତାଙ୍କର କଅଣ, ଏ କଥା ସେ କହିପାରିଲେ ନାହିଁ। ସୀତା ସ୍ୱାମୀ ଆଖିରୁ ଲୁହପୋଛି ତାଙ୍କ ପାଖରେ ଲୋଟିପଡ଼ି 'ଭୋ' 'ଭୋ' ହୋଇ କାନ୍ଦିବାକୁ ଲାଗିଲା। ନର୍ସ ମିସ୍ ଗୁପ୍ତ ଆସି ମିସେସ୍ ଉଆଲସ୍‌ର ସ୍ଥାନ ଅଧିକାରକଲେ। ତାଙ୍କ ସଂଗେ ସଂଗେ ରୋଗୀ ଦେଖିବାକୁ ଜ୍ୟୋତିଷ ଓ ଗଗନ ଡାକ୍ତର ଆସିଲେ; କିନ୍ତୁ ସୀତା ଲଜ୍ଜାହୀନଭାବରେ

ସେଇଠି ବସିରହିଲା। ଆଜି ସେ ଆଉ ଉଠିବ ନାହିଁ। ତାହାର ସମୁଦାୟ ବଳ ଏକତ୍ର କରି ସେ ଭଗବାନଙ୍କୁ ଡାକିବ। ଭଗବାନ୍ ଯଦି ତା ସ୍ୱାମୀକୁ ବଞ୍ଚାନ୍ତି! କିଏ ଜାଣେ କାହାର ପରମାୟୁ କେତେ? ଡାକ୍ତର ବାବୁ କଣ ପ୍ରଭୁ ଯେ ପରମାୟୁ କଥା ଜାଣିବେ?

ପରିଚାରିକା ଆସି ସାଆନ୍ତାଣୀଙ୍କୁ ଅନ୍ୟ ଘରକୁ ଘେନିଗଲା। ଡାକ୍ତରମାନେ ରୋଗୀକୁ ପରୀକ୍ଷା କରିବାକୁ ବସିଗଲେ। ସୀତା ଆରଘରେ ବିଛଣାରେ ପଡ଼ି ମୂର୍ଚ୍ଛିତହେଲା। ସେ ଆଉ କେତେ ସହନ୍ତା? ନିଜର ପାପଲାଗି ସେ ଆଉ କେତେ ପ୍ରାୟଶ୍ଚିତ୍ତ କରନ୍ତା? ସ୍ୱାମୀର ପ୍ରାଣ ଲାଗି ସେ କାଳୀଘାଟର କାଳୀଙ୍କ ନିକଟରେ ମାନସିକକରିଛି। ସାତଦିନ କଠୋର ଉପବାସ ତ ପଣକରିଛି। ସ୍ନାନକରି ତାଙ୍କରି ପାଦୁକମାତ୍ର ସେବାକରି ପଡ଼ିରହିଛି। ଯଦି ମା କାଳୀ ତା ସ୍ୱାମୀକୁ ବଞ୍ଚାନ୍ତି। ସେ ବହୁତ ବଳିଦାନ ମାନସିକ କରିଛି। କିନ୍ତୁ ମା କାଳୀ କଣ ଶୁଣୁଛନ୍ତି? ତାଙ୍କ ଉପରେ ସୀତା ଏକାନ୍ତ ଲୟରଖି ରାତିଯାକ ପ୍ରାର୍ଥନାକରୁଛି, ରାତିଯାକ କାନ୍ଦୁଛି। ସେ ଆଉ କେତେ ସହନ୍ତା? ତାହାର ଦେହ ଭାଙ୍ଗିପଡ଼ି ସେ ଅଚେତନ ହୋଇପଡ଼ିଲା।

ଯେତେବେଳେ ଆଖି ମେଲାଇଲା, ଦେଖିଲା–କତିରେ ଜଣେ ଅପରିଚିତ ସ୍ତ୍ରୀଲୋକ ବସି ତା ମୁଣ୍ଡକୁ ପଙ୍ଖା କରୁଛି। ସେ ବକାଙ୍କ ଭଳି ତାକୁ ଚାହିଁଲା, ବହୁକ୍ଷଣ ପରେ କହିଲା– "କିଏ?" ରମଣୀ ପଙ୍ଖା ଥୋଇଦେଇ ତା ଗୋଡ଼ତଳେ ପଡ଼ି କହିଲା, "ମୁଁ ଫୁଲ, ବୋଉ ସାଆନ୍ତାଣି! ମୁଁ ସେହିତ ପାପୀୟସୀ, ମତେ କଣ ତମେ କ୍ଷମାକରିବ?" ସୀତା ପିଲା ପରି ତା ଗଳାରେ ବାହୁ ଦୋଟି ଛନ୍ଦିଦେଲା। ବର୍ତ୍ତମାନ କ୍ଷମା ଦେବାର ସମୟ ତାର ନ ଥିଲା, ଅକୂଳ ସାଗରରେ ସେ ଭାସୁଥିଲା। ସମ୍ମୁଖରେ କୁଟା କେରାଏ ଧରିପକାଇଲା ପରା? ସେହି ନିବିଡ଼ ଆଶ୍ଳେଷ ମଧ୍ୟରେ ନଣନ୍ଦ ଭାଉଜ ବହୁତ କାନ୍ଦିଲେ। ଫୁଲ ଆପଣାର ସବୁ କଥା ଗୋଟି ଗୋଟି କହିବସିଲା। କିନ୍ତୁ ଉଦାସିନୀ ସୀତା କାନକୁ କିଛି ଗଲା ନାହିଁ। ସେ ଦିବାକର ଚିନ୍ତାରେ ମୃତବତ୍ ପଡ଼ିରହିଲା।

ଦିବାକର କତିରେ ଡକ୍ଟର ସେନ୍ ବସିଥିଲେ। ଆଜି ସେ ଶଳାର ଶୁଶ୍ରୂଷା ଉପଚାର ଘେନି ବସିଛନ୍ତି, ଆଉ ଭାଇଙ୍କି ଜଗିଛି ଫୁଲ। ଡାକ୍ତର, ନର୍ସ ସମସ୍ତେ ବିଦାୟ ହୋଇ ଯାଇଛନ୍ତି। ଅନ୍ତିମ ମୁହୂର୍ତ୍ତରେ ବୈଦ୍ୟ କଣ କରିବେ? ଦିବାକର ପ୍ରାଣ ଯାଉଛି, ଆସୁଛି। ତଥାପି ସେ ଫୁଲକୁ ଓ ତାର ସ୍ୱାମୀକୁ ଦେଖି ଆଶ୍ୱସ୍ତିହେଲା। ତାହାର କ୍ଷୀଣକଣ୍ଠରୁ ବାହାରିଲା– "ତାରକ ବାବୁ-ଆପଣ-ଦେବ-ତା।" ଫୁଲ ନୀରବରେ ଅଶ୍ରୁପାତ କରୁଥିଲା, ଅମୂଲ୍ୟ ପିତା ପାଦତଳେ ବସିଥିଲା।

ମାୟା ଓ ରଘୁନାଥ ଆସି ଦିବାକର ଖଟ କତିରେ ବସିଲେ। ଆଜି ବିଚ୍ଛିନ୍ନ ପରିବାରର ମିଳନ। ମୃତ୍ୟୁ ନଦୀତଟରେ ଆଜି ବହୁକାଳରୁ ବିଭିନ୍ନ ଆତ୍ମା କେତୋଟିର ଅପୂର୍ବ ସଂଯୋଗ। ପରିବାରର ସମସ୍ତେ ଦିବାକରକୁ ଘେରି ବସିଲେ। ସୀତାର ରୂପ ଚାହିଁ ରଘୁନାଥର ସର୍ବାଙ୍ଗ

ଶୀତେଇ ଉଠିଲା। ସୀତା ଦିବାକରକୁ ଏତେ ଦୂର ପ୍ରେମକରେ? ହଁ, ଏହା ଯେ ବିବାହର ବଜ୍ରବନ୍ଧନ, ଏହା ଯେ ଦାମ୍ପତ୍ୟର ପବିତ୍ର ମିଳନ। ମୂର୍ଖ ରଘୁନାଥ! ଜଗତ୍ ବଡ଼ ଜଟିଳ।

ଦିବାକର ସମସ୍ତଙ୍କୁ ଚାହିଁଲେ, ଅମୂଲ୍ୟ, ସୀତାଙ୍କୁ ଅନାଇ ତାଙ୍କର ହୃଦୟ ବିଦୀର୍ଣ୍ଣ ହେଉଥିଲା। ସେ କଣ କହିବେ କହିବେ ହୋଇ କହିପାରିଲେ ନାହିଁ। ଜିଭ ଅବଶ ହୋଇ ଆସିଥିଲା, କିନ୍ତୁ ସୀତା ବୁଝିଲା ସ୍ୱାମୀର ପ୍ରାଣର କଥା। ତାଙ୍କ ଛାତି ଯେ ତାରିପାଇଁ କରତି ହେଉଛି, ସେ ଏ କଥା ଅନୁଭବକଲା। ସେ ତତଲା ଲୁହରେ ବୁଡ଼ିଗଲା।

ଦ୍ୱାରା ମେଲା ହୋଇଥିଲା। କବାଟ କତିରେ ଠିଆହୋଇ ଏ ମିଳିତ ପରିବାରକୁ ଏକ ଧ୍ୟାନରେ ଚାହିଁ ରହିଲେ ଜ୍ୟୋତିଷ ଡାକ୍ତର। ସେ ଅନେକ ମୃତ୍ୟୁଦୃଶ୍ୟ ଦେଖିଛନ୍ତି, ମୁମୂର୍ଷର ଶଯ୍ୟାପାର୍ଶ୍ୱରେ ଆତ୍ମୀୟ ସ୍ୱଜନର କରୁଣ ରୋଦନ ଶୁଣିଛନ୍ତି; କିନ୍ତୁ ଏପରି ସମ୍ମିଳନ କଦାପି ଦେଖି ନ ଥିଲେ। ଆଜି ତାଙ୍କ ଆଖିରୁ ଗୋଟିଏ କଠିନ ଆବରଣ ଅପସାରିତ ହେଲା। ସେ ବିଶେଷତଃ ଚାହିଁ ରହିଲେ ଫୁଲକୁ–ପୂର୍ବ ପ୍ରେୟସୀ ଫୁଲମଞ୍ଜରୀକୁ, ଆଉ ତାହାର ସ୍ୱାମୀ ଡାକ୍ତର ତାରକାନାଥ ସେନ୍‌ଙ୍କୁ! ତାଙ୍କର ପୂର୍ବ ଜୀବନର ଜଘନ୍ୟ ଚିତ୍ର ଆଜି ଆଖି ଆଗରେ ଦିଶିଗଲା। ସେହି ରାତ୍ରିର ନିମନ୍ତ୍ରଣ, ଫୁଲ ସହିତ ଗୋପନରେ ଦେଖା, ଯୂଥିକାର କୌଶଳରେ ଫୁଲକୁ ଅପହରଣ କରି ତା ସହିତ ଚାରିବର୍ଷ ଏହି ଘରେ, ଏହି ସ୍ଥାନରେ ଅବସ୍ଥାନ। ସେ ଘରର ପ୍ରତ୍ୟେକ କାନ୍ଥ ବାଡ଼ ଫୁଲ ଚିହ୍ନେ, ପ୍ରତ୍ୟେକ ସ୍ଥାନରେ ନିଜ ହାତରେ ସେ ନାନାବିଧ ଦ୍ରବ୍ୟ ସଜାଇ ରଖିଥିଲା, ଆଉ ଏ ଗୃହ ତଳରେ ତାଙ୍କ ସହିତ ସେ ବାସକରିଥିଲା। ଆଜି ସେହି ଦୁଶ୍ଚରିତ୍ରାର ଅପୂର୍ବ ପରିବର୍ତ୍ତନ, ସେ କୁଳକଳଙ୍କିନୀର ଆଶ୍ଚର୍ଯ୍ୟ ସ୍ୱାମୀଭକ୍ତି ସ୍ୱଚକ୍ଷୁରେ ଦେଖି ଏକାବେଳେ ସ୍ତମ୍ଭିତ ହୋଇଗଲେ। 'ଇଏ ଯେ ଫୁଲ', ଏହା ତାଙ୍କର ଆଖିରେ ଦେଖି ସୁଦ୍ଧା ବିଶ୍ୱାସ ହେଲା ନାହିଁ। ତାଙ୍କର ହୃଦୟରୁ ସ୍ୱତଃ ତାରକ ବାବୁ ପ୍ରତି ଭକ୍ତିର ଉଚ୍ଛ୍ୱାସଉଠିଲା। ସେ ମଧ ପୁରୁଷ, ସେ ଜଣେ ବେଶ୍ୟାକୁ ଘରଣୀ କରିପାରିଛି, କୁଳଟାକୁ ପତିବ୍ରତାର ସମ୍ମାନ ଦେଇଛି, ଆଉ ସେ ନିଜେ କରିଛି କଣ? ଶତ ଶତ କୁଳକାମିନୀର ସର୍ବନାଶ କରିଛି, ଶତ ଶତ ନିରୀହ ଅବଳାର ଧ୍ୱଂସପଥ ପ୍ରଶସ୍ତକରିଛି। ଏହି କଣ ତାର ଜୀବନର ଉଦ୍ଦେଶ୍ୟ? ବ୍ରାହ୍ମଣ କୂଳରେ ଜନ୍ମଲାଭ କରି ଏହି କଣ ତାର ସ୍ୱଧର୍ମ? ତାହାର ହିଲ୍‌ଡ଼ାର ମୁଖଛବି ମନେ ପଡ଼ିଗଲା। ସେ ସେହି ରୂପବତୀ ଇଂରାଜ କନ୍ୟାକୁ ପାପସାଗରରେ ଭସାଇଥିଲା। ସେହି ଦିନୁ ନାରୀ ସର୍ବନାଶ ହେଲା ତା ଜୀବନର ବ୍ରତ। କୁକ୍ଷଣରେ ସେ ବିଲାତ ଯାତ୍ରା କରିଥିଲା, କୁକ୍ଷଣରେ ମଦ୍ୟ ସହିତ ସ୍ନେହ ସ୍ଥାପନ କରିଥିଲା, ତାର ଜୀବନ ଗୋଟାକୁ ପାପରେ କଟିଗଲା। ନିରୀହା ରକ୍ତିମା' କୁଳବତୀ 'ଜୋତ୍ସ୍ନା', ବିଧବା ' !ଇନ୍ଦୁବାଳା' ଠାରୁ ଆରମ୍ଭ କରି 'ଯୂଥିକା' 'ଫୁଲ' ଇତ୍ୟାଦି କେତେ ରମଣୀର ଯେ ସେ ସର୍ବନାଶ ନ କରିଛି? ଅନୁତାପରେ ତାହାର ପାପିଷ୍ଠ ବକ୍ଷ ଦଗ୍‌ଧ ହେବାକୁ ଲାଗିଲା। ସେ ଗୃହରେ ପ୍ରବେଶକଲା। ତାକୁ ଦେଖି ଫୁଲ ମୁଣ୍ଡ ତଳକୁ କଲା। ଲଜ୍ଜାରେ ତା ଦେହରୁ ଶ୍ରମ ଝାଳଟିଏ ବହିଗଲା। ଜ୍ୟୋତିଷ ତାରକ

ବାବୁଙ୍କ ଅଭିବାଦନ କରି ଆସନ ଗ୍ରହଣକଲେ। ରୋଗୀର ଡାହାଣ ହାତଧରି ନାଡ଼ି ପରୀକ୍ଷାରେ ନିବିଷ୍ଟଚିତ୍ତ ହେଲେ। ମାୟା ତାଙ୍କୁ ଚାହିଁବା ମାତ୍ରେ ତାର ପୂର୍ବ କଥା ମନେପଡ଼ିଗଲା। ସେ ସମସ୍ତଙ୍କ ଉପରେ ଥରେ ଏ ମୁଣ୍ଡରୁ ସେ ମୁଣ୍ଡଯାଏ ଆଖି ବୁଲାଇଦେଲା। ଖଟ ମୁଣ୍ଡ ଉପରେ ସୀତା–ତା ସ୍ୱାମୀର ପୂର୍ବ ପ୍ରଣୟିନୀ, ଦୁହିଙ୍କର ଅପୂର୍ବ ସମ୍ବନ୍ଧ–ଅତ୍ୟାଶ୍ଚର୍ଯ୍ୟ ପ୍ରେମକାହାଣୀ ସେ ବାରଂବାର ତା ସ୍ୱାମୀଠାରୁ ଶୁଣିଛି; କିନ୍ତୁ ଆଜି ସେହି ରଘୁନାଥ ସୀତା ମଧ୍ୟରେ ସୁମେରୁ କୁମେରୁର ପ୍ରଭେଦ। ଆଉ ଯେ ଯୋଡ଼ିକ ଜୀବନ ବଲ୍ଲୀ, ଆଉ ଯୋଡ଼ିଏ ଜୀବନ ଲତିକାଙ୍କୁ ଆଶ୍ରୟ କରିଛନ୍ତି। ଗୋଟିକ ସେ ନିଜେ, ଆଉଟି ଦିବାକର। ମଦ୍ୟପାୟୀ ପାଷଣ୍ଡ ନରପଶୁ ସୀତାତୁଲ୍ୟ ପରଶମଣି ସ୍ପର୍ଶରେ ଏବେ କଷିତ କାଞ୍ଚନ, କିନ୍ତୁ ତହୁଁ ବଳି ଆଶ୍ଚର୍ଯ୍ୟ ତାରକାନାଥ, ଫୁଲମଞ୍ଜରୀ ଓ ଜ୍ୟୋତିଷ। ଧନ୍ୟ ତାରକା ବାବୁ! ତୁମେ ଚରିତ୍ରହୀନାଙ୍କୁ ଚରିତ୍ର ଦାନକରିଛ, ପାପପଙ୍କ ଲିପ୍ତା ଶୂକରୀକୁ ସୁରଭିରେ ପରିଣତ କରିଛ। ତୁମେ ଅହଲ୍ୟା ପାଷାଣକୁ ପାଦ ସ୍ପର୍ଶରେ ପବିତ୍ର କରିଛ। ତୁମରି କଥା ଠିକ! ମାନବାତ୍ମା ସୁବର୍ଣ୍ଣ। ନିଆଁରେ ପଡ଼ିଲେ ତାର ଖାଦ ନଷ୍ଟ ହୁଏ, ତୁମେ ଆତ୍ମାକୁ ଚିହ୍ନିଛ। ଏହିପରି ମନେ ମନେ ଚିନ୍ତାକରି ମାୟା ରଘୁନାଥ ସହ ଘରକୁ ଫେରିଲେ।

ଗାଡ଼ି ଭିତରେ ରଘୁନାଥ କହିଲା–''ଦେଖିଲ ମାୟା! ଅଦ୍‌ଭୁତ ଦୃଶ୍ୟ।''

ମାୟା କହିଲା, ''ସବୁ ସ୍ୱାଭାବିକ। ପ୍ରକୃତିରେ ପୁରୁଷ ଯାହା, ସ୍ତ୍ରୀ ତାହା। ଦୁଶ୍ଚରିତ୍ର ଦିବାକର ସୀତରନ୍ ପାଇ ସୁବର୍ଣ୍ଣ ହୋଇଚି, ଦୁଶ୍ଚରିତ୍ରା ଫୁଲମଞ୍ଜରୀ ତାରକାମନ୍ତମଳରେ ସ୍ୱର୍ଗର ଦେବୀ ହୋଇଚି। କେବଳ ରହିଚି ସେ ହତଭାଗ୍ୟ ଜ୍ୟୋତିଷ।''

''କିନ୍ତୁ ଆଉ ଗୋଟିଏ କଥା ଯେ ତୁମେ ଛାଡ଼ିଦେଲ। ଏ ହତଭାଗା ଅର୍କ୍ଷିତ ରଘୁନାଥ ଯେ ମାୟାମୟୀର ମୋହିନୀ ମନ୍ତ୍ରରେ–''

ମାୟା ବାଧାଦେଇ କହିଲା–''ହୁଁ, ମୁଁ ପରା ତମକୁ ମେଣ୍ଢା କରିଚି।''

ରଘୁନାଥ ଶ୍ରଦ୍ଧା ସହିତ କହିଲା–''ତୁମେ ମୋର ରକ୍ଷା କବଚ, ତୁମେ ମୋର ପରମାଶ୍ରୟଦାତ୍ରୀ! ନୋହିଲେ ମୁଁ ଜ୍ୟୋତିଷଠାରୁ ଊଣା ହତଭାଗ୍ୟ ହୋଇ ନ ଥାନ୍ତି।''

ମାୟା–''ଆଚ୍ଛା, ମତେ 'ଥାଙ୍କସ୍' (ଧନ୍ୟବାଦ) ଦିଅ।''

ହନିଫ୍ ଆସି ଖବର ଦେଲ–ଜ୍ୟୋତିଷ ଡାକ୍ତର ଘରେ ଅପେକ୍ଷା କରୁଛନ୍ତି। ରଘୁନାଥ ବ୍ୟସ୍ତ ହୋଇ ଦିବାକରର ସମ୍ବାଦ ଶୁଣିବାକୁ ତଳକୁ ଓହ୍ଲାଇଗଲେ। ଜ୍ୟୋତିଷ ରଘୁନାଥକୁ ଆଗେ ଅଭିବାଦନ କରି ଗୋଟିଏ ସୁନ୍ଦର ହାତୀଦାନ୍ତର ବାକ୍‌ସ, ରେଶମ ରୁମାଲ ମୋଡ଼ାରୁ କାଢ଼ି ମେଜ ଉପରେ ଥୋଇଦେଲେ। ରଘୁନାଥ ବିସ୍ମୟରେ ଚାହିଁଥିଲା। ତାଙ୍କୁ କହିବାକୁ ଅବସର ନ ଦେଇ ଜ୍ୟୋତିଷ କହିଲା–'ମହାଶୟ! ଏ ବାକ୍‌ସ ଭିତରେ ପଚିଶ ହଜାର ଟଙ୍କାର ଗୋଟିଏ ଦାନପତ୍ର ଅଛି। ତାହା ମୁଁ ତୁମରି ହାତରେ ମିସେସ୍ ସେନ୍‌ର ଦେବୋପମ ସ୍ୱାମୀଙ୍କୁ ଦାନ

କରିବାକୁ ଆସିଚି। ମୁଁ ମୂର୍ଖ! ପାପିଷ୍ଠ! ସେ ମହତ୍ ଦେବତା! ମୋର ଅପରାଧମୟ ଜୀବନର ଆଜିଠାରୁ ଅବସାନ ହେଲା। ଏଥର ଜୀବନ ପରିବର୍ତ୍ତନପାଇଁ ମୁଁ ବଦ୍ରିକା ଆଶ୍ରମରେ ଗୁରୁଦୀକ୍ଷା ନେବି। ମୋର ଯଥେଷ୍ଟ ଅନୁତାପ ହୋଇଚି।''

ରଘୁନାଥ ଜ୍ୟୋତିଷ ଡାକ୍ତରର ଏ ଅସମ୍ଭବ କଥା ଶୁଣି ଆକାଶରୁ ପଡ଼ିଲା ପରି ବୋଧହେଲା। ଦଶ ଦିନ ତଳେ ଯେ ତାଠାରୁ ଅର୍ଥର ତୋଡ଼ା ଗ୍ରହଣକରିଥିଲା, ସେ ଆଜି ସ୍ୱହସ୍ତରେ ତାହାର ପଞ୍ଚଗୁଣ ଅର୍ଥ ଘେନି ଉପସ୍ଥିତ। ଏ କଣ, ଭେଳିକି ନା କୌଣସି କୂର ପ୍ରତାରଣା?

ରଘୁନାଥର ଅବିଶ୍ୱାସ ଦେଖି ଜ୍ୟୋତିଷ ଡାକ୍ତର କହିଲା–''ଥରେ ମିସେସ୍ ସେନ୍ ସହିତ ସାକ୍ଷାତ କରିପାରିବି କି?'' ତାଙ୍କ ଅନୁରୋଧ ରକ୍ଷାପାଇଁ ରଘୁନାଥ ଫୁଲକୁ ସମ୍ବାଦ ଦେଲା। ଫୁଲ ପ୍ରଥମେ ବହୁତ ଇତସ୍ତତଃ କଲା, କିନ୍ତୁ ତାରକବାକୁ କହିଲେ–''ଭାଯୋଲା! ଭୟକର ନାହିଁ, ସାକ୍ଷାତ୍‌କର। ପ୍ରଭୁଙ୍କ ଦୟାରେ ତୁମର କୌଣସି ବିପଦ ହେବ ନାହିଁ।

ଫୁଲ ଆଶ୍ୱସ୍ତା ହୋଇ କମ୍ପିତକଳେବରରେ ଆସି ଜ୍ୟୋତିଷ ସାକ୍ଷାରରେ ଛିଡ଼ାହେଲା। ଜ୍ୟୋତିଷ ବାବୁ ବହୁକ୍ଷଣ ତାକୁ ଚାହିଁଲା ପରେ କହିଲା–''ଫୁଲକୁମାରି! ତୁମେ ଯାହାକୁ ସ୍ୱାମୀ ରୂପେ ପାଇଛ, ସେ ମହତ୍, ଦେବତା। ଆଶା କରେ, ତାହାର ସର୍ବଦା ବାଧ ରହିବ। ମାତ୍ର ଏ ପାଷଣ୍ଡ ଦିନେ ତୁମର ପ୍ରିୟ ଥିଲା। ସେହି ସ୍ମୃତିର ସଞ୍ଚାଳି ସ୍ୱରୂପ ଏହି ସାମାନ୍ୟ ଉପହାର ମୋର ନେବ କି?''

ଫୁଲ କି ଉତ୍ତର ଦେବ କିଛି ବୁଝିପାରିଲା ନାହିଁ। ଜ୍ୟୋତିଷ ପୁଣି କହିଲା–''ମୁଁ ଜାଣେ, ତୁମେ ମୋର ଟଙ୍କା ଛୁଇଁବ ନାହିଁ। ସେଥିପାଇଁ ମୁଁ ତାହା ସଂପୂର୍ଣ୍ଣ ଭିନ୍ନ ଉଦ୍ଦେଶ୍ୟରେ ଦେବାକୁ ଆସିଛି। ତୁମର ମନେ ଥିବ ଫୁଲ! ଯେଉଁ ଘରେ ବର୍ତ୍ତମାନ ତୁମର ଭାଇ ଅଛନ୍ତି, ସେହି ଘରେ ତୁମେ ଓ ମୁଁ ପ୍ରାୟ ଚାରିବର୍ଷ କାଳ ଥିଲୁ। ମୋର ସେହି ପ୍ରିୟ ଆବାସଟି ଏ ଟଙ୍କା ସହିତ ମୁଁ ଦାନ କରିଚି। ସେଠି ତୁମେ ତୁମର ଗଣବାନ୍ ସ୍ୱାମୀ ନାମରେ ଗୋଟିଏ ଅନାଥମାନଙ୍କପାଇଁ ଆଶ୍ରମ ନିର୍ମାଣକରିବ, କୁଳତ୍ୟାଗିନୀ, ନିଃସହାୟା ବିଧବା ନାରୀମାନେ ସେଠି ରହି ସବୁ ବିପଦରୁ ରକ୍ଷାପାଆନ୍ତୁ। ଏହି ମୋର ଇଚ୍ଛା। ପୂର୍ବର ଦୋଷ ସବୁ ଭୁଲିଯାଅ, ଆଜିଠାରୁ ତୁମେ ଓ ମୁଁ ପରମ ବନ୍ଧୁ।'' ଜ୍ୟୋତିଷ ନୀରବ ହେଲା।

ରଘୁନାଥ ଓ ତାରକ ବାବୁ ଦୁଇଜଣ ସ୍ତମ୍ଭିତନୟନରେ ଜ୍ୟୋତିଷର ମୂର୍ତ୍ତିକୁ ଚାହିଁ ରହିଲେ। କ୍ରମେ ସେ କୋଠରୀରେ ସନ୍ଧ୍ୟାରେ ଘନ ଅନ୍ଧକାର ମାଡ଼ିଆସିଲା, କିନ୍ତୁ ସମସ୍ତେ ନୀରବ ନିଶ୍ଚଳ। ତାଙ୍କର ନିଃଶ୍ୱାସ ସୁଦ୍ଧା ଶୁଭୁ ନ ଥିଲା। ବହୁକ୍ଷଣ ପରେ ଯେତେବେଳେ ମାୟା ଆସି ବୋତାମ ଟିପି ଇଲେକ୍‌ଟ୍ରିକ୍ ବତିଗୁଡ଼ିକ ଜଳାଇ ଦେଲା, ସମସ୍ତେ ଦେଖିଲେ, ଜ୍ୟୋତିଷ ଆଉ ସେ ଘରେ ନାହିଁ।

× × × ×

ଦିବାକରର ଅନ୍ତିମ ନିଶ୍ୱାସ ବହୁଥିଲା। ମୂର୍ଚ୍ଛିତା ସୀତାକୁ ରାତିଯାକ ଜଗିବସିଛି ମାୟା, ତାହାର କୋଳରେ ଦିନେ ତାର କଳନାରାଜ୍ୟର ସୀତା ମୁଣ୍ଡଦେଇ ନିଦ୍ରାଯିବ, ଏହା ସେ ସ୍ୱପ୍ନରେ କଦାପି ଭାବି ନ ଥିଲା, କିନ୍ତୁ ଆଜି ସୀତାର ପ୍ରତ୍ୟେକ ହୃଦୟର ସ୍ପନ୍ଦନ ସେ ସ୍ପଷ୍ଟ ଶୁଣି ପାରିଲା। ଗୋଟିଏ କି ଅଦ୍‌ଭୁତ ଆବେଗରେ ତାହାର ଦେହ ଥରିଥରି ଉଠୁଥିଲା।

ସୀତା ଶୋଇରହିଲା। ସେମାନେ କେତେବେଳେ ଯାଇ ଦିବାକରକୁ ଶ୍ମଶାନକୁ ଘେନିଗଲେ, ସେ ଜାଣି ନାହିଁ, କିନ୍ତୁ ଘରେ କାନ୍ଦ ବୋବାଳି ଶୁଣି ସେ ବୁଝିଲା, ତାର ସ୍ୱାମୀ ଆଉ ନାହାନ୍ତି। ହେଲେ ସେ ଆଉ କାନ୍ଦିଲା ନାହିଁ। ପଥର ପାଲଟି ପଡ଼ିରହିଲା।। ମା କାଳୀ ତା ପ୍ରାର୍ଥନା ଶୁଣିଲେ ନାହିଁ। ଏହି କଥାଟି ମାତ୍ର ତା ଛାତିରେ ପୋଡୁଥିଲା। ସେ ଦଗ୍‌ଧବକ୍ଷରେ ଭୂଇଁତଳେ ଲୋଟୁଥିଲା। ମାୟା ଓ ଫୁଲ ତାକୁ ଯେତେ ବୁଝାଇଲେ, ସେ ବୁଝିଲା ନାହିଁ। ସେ ମରିବାକୁ ପଣକରି ବସିଲା।

ବହୁଦିନ ତଳେ ସେ ଏହିପରି ଥରେ ମରିବାକୁ ବସିଥିଲା। ସେ ଦିନ ଦିବାକର ଆସିଥିଲେ ତା ହାତ ଧରିବାକୁ, ରୋଷଣୀ ବାଣରେ ଦାଣ୍ଡ ଚମକାଇ, ବାଇଦରେ ସଡ଼କ ଉଛୁଳେଇ, ଜମିଦାର ଦିବାକର ନବ ବରବେଶରେ ଆସିଥିଲେ, ତାହାର କ୍ଷୁଦ୍ର ହାତଟି ଧରିବାକୁ, ସେ ରାତିରେ ସେ ବସିଥିଲା ମରିବାକୁ। ଅଶୋକବୃକ୍ଷ, ପୋଖରୀରେ କଇଁଫୁଲ, ଆକାଶରେ ଜହ୍ନ, ପିତେଇ ନାନୀ ଆଉ ରଘୁନାଥ ଥିଲେ ତାର ସାକ୍ଷୀ। ଆଜି ସେ ମରିବାକୁ ବସିଛି– ଦିବାକର ତାକୁ ପୃଥିବୀର ଏ ..........।

ସେ କଣ କେବେ ଭାବିଥିଲା ଯା ହବ ? ତାହାର କ୍ଷୁଦ୍ର ଜୀବନ-ନାଟକ ଏହିଠାରେ ଶେଷ ହେଲା ପରା ? ତେବେ କିପାଁ ଆଉ ସେ ବଞ୍ଚିବ ? ବିଧବାର ଜୀବନଭାର ବହନ କରି କାହିଁକି ଆଉ ସେ ବଞ୍ଚିବ ? ବରଂ ସ୍ୱାମୀ ଯେଉଁ ଲୋକକୁ ଯାଇଛନ୍ତି, ସେ ସେହି ଲୋକକୁ ଚାଲିଯିବ।

ରଘୁନାଥ ଆସି କତିରେ ଛିଡ଼ାହେଲା। ବହୁତ ବର୍ଷ ପରେ ଏକାକୀ ଆଜି ଦଉଜଣଙ୍କର ପୁନରାୟ ସାକ୍ଷାତ୍। ରଘୁନାଥ କାନ୍ଦୁଛି। ସୀତାର ଦୁଃଖରେ କାନ୍ଦୁଛି। ବହୁବର୍ଷ ତଳେ ସେ ନିଃସହାୟ ଭାବରେ ଏହିପରି କାନ୍ଦିଥିଲା, ଏହିପରି କନକ ପ୍ରତିମାଟିକୁ ଚିରି ବିସର୍ଜନ ଦେଇଥିଲା; କିନ୍ତୁ ସେଦିନ ଆଉ ଏ ଦିନର ଢେର ପ୍ରଭେଦ। ଆଜି ତାର ସହାନୁଭୂତିର କାନ୍ଦଣା, ବନ୍ଧୁର ଶୋକ, ତଥାପି ରଘୁନାଥ କାନ୍ଦୁଛି। ସୀତା ମୁହଁ ତଳକୁ କରି ବସିଥିଲା, ରଘୁନାଥ ପିଲାଦିନ ପରି ତା କତିରେ ବସିଲା। ପିଲାଦିନ ପରି ଡାକିଲା 'ସୀତା'! ସୀତା ସେ ମଧୁର ସମ୍ବୋଧନରେ ଈଷତ୍ ଚମକିଉଠିଲା। ରଘୁନାଥ ଅଶ୍ରୁଗଦ୍‌ଗଦ କଣ୍ଠରେ କହିଲା– ''ସୀତା ! ଯାହା ହେବାର ହେଲାଣି, ମୋ ରାଣ, ଅମୂଲ୍ୟ ମୁହଁକୁ ଚାହିଁ ଆତ୍ମହତ୍ୟାରୁ ବିରତ ହୁଅ।'' ସୀତା ସ୍ତମ୍ଭିତା ହୋଇ ସେ ଆଦେଶ ଶ୍ରବଣକଲା। ସେ ଆଦେଶ ଲଂଘନ କରିବାକୁ

ତାର ଶକ୍ତି ହେଲା ନାହିଁ। ସେ ମୁଣ୍ଡ ପୋତି ନୀରବରେ ବସିରହିଲା। ଆଉ ତା କତିରେ ବସି ରହିଲା ରଘୁନାଥ। କେହି କାହାକୁ କିଛି କହିପାରିଲେ ନାହିଁ; କିନ୍ତୁ ପରସ୍ପରର ମୁହଁକୁ ଚାହିଁ ସବୁ ପୁରୁଣା କଥା ସେମାନଙ୍କର ମନେପଡ଼ିଗଲା। ସ୍ମୃତି କି ଭୁଲିବ? କେହି ଯେ କାହାକୁ ଆଉ ଏ ଜୀବନରେ ଦେଖିବେ ବୋଲି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ, କିନ୍ତୁ ବିଧାତା ପୁଣି ସାକ୍ଷାତ୍ କରାଇଲା। ଏପରି ମୁହୂର୍ତ୍ତରେ ଉଭୟଙ୍କର ସାକ୍ଷାତ୍ ହେଲା ଯେ, ଜଣେ ସୌଭାଗ୍ୟର ଚରମ ସୀମାରେ, ଆଉ ଜଣେ ଦୁର୍ଭାଗ୍ୟର ନିମ୍ନତମ ସୋପାନରେ। ତଥାପି ଦିଓଟି ଆତ୍ମା ପରସ୍ପରକୁ ଚିହ୍ନିଲେ ପରା?

ସୀତା ମରିପାରିଲା ନାହିଁ। ଦିନେ ଯାହା କଥା ଲାଗି ମରିପାରି ନ ଥିଲା, ଆଜି ତାହାରି ଆଦେଶରେ ସେ ମରିପାରିଲା ନାହିଁ।



## ଦ୍ୱାତ୍ରିଂଶ ଅଧ୍ୟାୟ

ଚୌଧୁରାଏ ଦାଣ୍ଡ ଘରେ ତକ୍ତପୋଷରେ ପଡ଼ିଛନ୍ତି। ମିଛରେ ଆଖି ବୁଜିଥିଲେ, ତାଙ୍କ ଆଖିକି ନିଦ ଆସି ନାହିଁ। ସେ ଭାବୁଛନ୍ତି ନାନା କଥା। ଏହି କେତେଟା ବର୍ଷ ଭିତରେ ତାଙ୍କ ଉପରେ କ୍ରମାଗତ ଶୋକର ଢେଉ ବହିଗଲାଣି। ଦୁଇବର୍ଷ ତଳେ ବଡ଼ ଝିଅ ସାବିତ୍ରୀ ମରିଗଲା ଯେ, ତାର ମଲାବେଳେ ସୁଦ୍ଧା ଖବର ଟିକିଏ ପାଇଲେ ନାହିଁ। ସହଜେ ତ ତା ଶାଶୂଘର ଯମପ୍ରକୃତିର, ସେଥିରେ ପୁଣି ତାକୁ ଅଣହେଳାକରି ମାଇଲେ। ତାର ଛ ମାସ ନ ଯାଉଣୁ ବଡ଼ ଗେଲବସର ନାତି ଲକ୍ଷିଆଟି ଦିନକ ଜ୍ୱରରେ ତଣ୍ଟିରେ ଛୁରୀ ଦେଇଗଲା। ବୁଢ଼ା ସେଇଥିରେ ବସିଗଲେ। ଲକ୍ଷିଆ ଥିଲା ତାଙ୍କର ଜୀବନଧନ। ତା ମୁହଁକୁ ଚାହିଁ ସେ ବାବୁର ସବୁ ଅତ୍ୟାଚାର ସହୁଥିଲେ। ଆଜିକାଲି ବାବୁ ସେ ଆଗ ବାବୁ ନୁହେଁ। ତାହାର ସ୍ୱଭାବ, ଚରିତ୍ର ନଷ୍ଟ ହୋଇଗଲାଣି। ରେବତୀର ବାର୍ଷିକ ସନ୍ତାନ, ତଜ୍ଜନିତ ରୋଗ ବ୍ୟାଧି ଇତ୍ୟାଦିରେ ଗୃହସୁଖରୁ ବଞ୍ଚିତ ହୋଇ ମଙ୍ଗଳାବାଗରେ ଗୋଟିଏ ରୂପବତୀ ଯୁବତୀ ମୋଚିଆଣୀର ଆଶ୍ରୟ ନେଇଛି। ଚୌଧୁରଙ୍କର ବିଶ୍ୱାସ, ମୋଚିଆଣୀ ପୁଅକୁ ଓଷଦ କରିଛି। ସେଥିପାଇଁ ଅନେକ ଗୁଣିଆ ଆଣି ଝଡ଼ାଫୁଙ୍କା, କାଟପାଣି, ତେଉଁରିଆଆଦି କରି ଥକିଲେଣି। ବାବୁର ମନ ପରିବର୍ତ୍ତନ ହେବାକୁ ନାହିଁ। ତା ଚିନ୍ତାରେ ଓ ଝିଅ, ନାତି, ବୋହୂ ଆଦି ଚିନ୍ତାରେ ଭାର୍ଯ୍ୟା ତ ବିଛଣା ଧରଲେଣି। ତାଙ୍କ ହାଡ଼ରୁ ମାଉଁସ ମିଳେଇଗଲାଣି। ମଝିଆଁ ଝିଅ ସରଳା ତ ଏକାବେଳକେ ବାପଘରୁ ଚିର ଅନ୍ତର। ତା ଉପରେ ପୁଣି ସୀତାର ଏ ଖବର। ଚୌଧୁରୀଙ୍କ ଯନ୍ତ୍ରଣା ଏତେ ହୋଇ ନ ଥାନ୍ତା। ଘରହାଲ ତ ଏହିପରି, ପୁଣି ଗୋଟିଏ ନାବାଲଗୀ ସଂପତ୍ତି ଲାଗି କଚେରିରେ ମୋକଦ୍ଦମା କରି କିଲେଟରୀ ଜଜକୋଟରୁ ହାଇକୋଟ ପର୍ଯ୍ୟନ୍ତ ଗଲେଣି। ସେଥିରେ ବିସ୍ତର ଟଙ୍କା ଖରଚ ହେଲାଣି, ତା ଉପରେ ପୁଣି ମାଡ଼ ପିଟାପିଟି ମକଦ୍ଦମା ଲାଗି ଫୌଜଦାରୀ ବି

ଚାଲିଲାଣି। ପୁଅ ତ ଅଯୋଗ୍ୟ। ସଂପରି ବାଡ଼ି ବୁଝାସୁଝା କରି ସେ ରଖନ୍ତା କଣ, ଓଲଟି ଘର ଚିଜ ଘେନି ପରକୁ ଦେଉଛି। ଗୁଡ଼ାଏ ବାପପୁଅରେ ଗାଳିଫଜିତ ହୁଏ, ଏହା ମାତ୍ର ସାର। ଚୌଧୁରୀଙ୍କର ବେଳେ ବେଳେ ମନେପଡ଼େ, ଜଗନ୍ନାଥ କବିରାଜ ମଧ ଥରେ ଥରେ ଚେତେଇଯାନ୍ତି, ସେହି ଅର୍କ୍ଷିତ ପିଲାଟି କଥା, ସେହି ଲାଜକୁଳା, ଧୀର, ବୋଲକାରୀ, ରଘୁନାଥ କଥା; ତାକୁ ଘରଜୋଇଁ କରିଥିଲେ ଆଜି ଏ ଘରଟି କେମିତି ଥା'ନ୍ତା? ତାହାର ବିଚକ୍ଷଣ ବୁଦ୍ଧି, ବିଷୟଜ୍ଞାନ ବୁଢ଼ାର ବେଳେ ବେଳେ ମନେପଡ଼ି ମନ ଭାରି ଘାଣ୍ଟି ହୁଏ। ବିଶେଷତଃ ଭାର୍ଯ୍ୟାର ବାହୁନା, କାନ୍ଦ, ପୁଣି ଦିବାକରଦର ଅପମାନ ବୋଝ ଉପରେ ନଳିତା ବିଡ଼ାଟି ହୋଇଥିଲା। ଏବେ ସେହି ଝିଅ ବିଧବାହେଲା, ଏ କଥାର ଯେଉଁ ଦିନ ତାର[୧] ଆସି ପହଞ୍ଚିଲା, ବୁଢ଼ା ଦୁଆର ବନ୍ଧକୁ ଆଉଜି ପଡ଼ି ଘଡ଼ିଏ କାଳ ଥକା ମାରି ବସିଗଲେ। ମଧେ ମଧେ ବାତଜ୍ୱର ହୋଇ ତାଙ୍କର ବଳ ତ ଭାଙ୍ଗି ଯାଇଥିଲା। ଆଣ୍ଠୁଗଣ୍ଠି ମଧ ଧରି ଅନେକ କଷ୍ଟ ପାଉଥିଲେ। ସରସ୍ୱତୀ ଯେତେବେଳେ ମୁଣ୍ଡ ବାଡ଼େଇ କାନ୍ଦିଲେ, ତାଙ୍କର ଚେତା ପସିଲା। ସେ କାହାକୁ ବା କଣ ପ୍ରବୋଧ ଦେବେ! ନିଜେ ନିତାନ୍ତ ଦୋଷୀ ପରି ଧୀରେଧୀରେ କଚେରିକୁ ବାହାରି ଗଲେ। ସେଠି ଭକୁଆ[୨] ପରି ବହୁତ ବେଳଯାଏ ଆକାଶକୁ ଚାହିଁ ବସିଲେ। ଶେଷରେ ଚାରିଟାବେଳକୁ ଅଫିମ ଟେକାଟି ଗଳାଧଃକରଣ କରି ବିଛଣାରେ ଆସି ପଡ଼ିଗଲେ! ସେ ଦିନ ସେ ଏଡ଼େ ଗମ୍ଭୀର ଆଉ ଭୟଙ୍କର ଦିଶୁଥିଲେ ଯେ, କେହି ସାହସ କରି ତାଙ୍କ ସହିତ ପଦେ ପାଟିଫିଟାଇଲା[୩] ନାହିଁ।

ସେହି ଦିନୁ ବୁଢ଼ା ଆଉ ଦେଖି କଥା କହନ୍ତି ନାହିଁ। କଣ କେତେବେଳେ ମନେ ମନେ ଭଟ୍‌ଭଟ୍ ହୁଅନ୍ତି, ବୁଝିହୁଏ ନାହିଁ। ଅଫିମ ମାତ୍ରାଟି ସେହି ଦିନୁଁ ମଧ ବଢ଼ିଛି। ଯେଉଁ ଦିନୁଁ ସୀତାକୁ ସେ ବଳାତ୍କାରୀରେ ଦିବାକରକୁ ବିବାହ ଦେଇଛନ୍ତି, ସେହିଦିନୁଁ ସରସ୍ୱତୀଙ୍କର ତାଙ୍କ ଉପରୁ ଭକ୍ତି ଛାଡ଼ିଯାଇଛି। କଥାରେ କହନ୍ତି, ''କାଚଘଡ଼ି, ମନଘଡ଼ି, ଥରେ ଭାଙ୍ଗିଲେ ନ ହୁଏ ଯୋଡ଼ି।'' ସରସ୍ୱତୀଙ୍କ ମନ ତ ଭାଙ୍ଗିଯାଇଛି। ତେବେ ଯେତେ ହେଲେ ହାତ ଧରିଲା ସ୍ୱାମୀ, ସେ ପୂର୍ବପରି ତାଙ୍କର ସବୁ ସେବାକରନ୍ତି। ମନଦୁଃଖ ମନରେ ମାରି ଘରର ହାଲ ହକିକତ[୪] ସବୁ ବୁଝନ୍ତି। ହେଲେ ଘର ଦୁଆରରେ ତାଙ୍କର ଆଉ ତେତେ ଶରଧା ନାହିଁ। ଗୁହାଳ ଭାଙ୍ଗି ଗଲାଣି, ଗାଈ ଗୋଟି ଗୋଟି ବିକି ଦେଲେଣି। ନରିଆକୁ ପାଇଟିରୁ ଛୁଟି ଦେବାରୁ, ନରିଆ ଯାଇ ସୀତା ଘରେ କାମକରୁଛି। ଚମ୍ପାବୋଉ ରୋଷାଇ ବାସ ପାଇଟି ସାରେ, ତାର ଆଖିକି ଭଲ ମଧ ଦିଶୁ ନାହିଁ। ପୁଣି ରଘୁନାଥ ଓ ସୀତା ଚିନ୍ତାରେ ସର୍ବଦା ଆଖିରୁ ଲୁହ ବୋହୁଛି। ରେବତୀର ଆଖି ମଧ ସବୁବେଳେ ଲୁହ ଢଳଢଳ। ଯେଉଁ ସ୍ୱାମୀ ତାକୁ ମୁଣ୍ଡର ମଣି କରିଥିଲେ, ତାଠୁ ହତାଦର ପାଇ କେବଳ ଜୀବନ ଥିବାରୁ ବଞ୍ଚିଛି ସିନା? ଅବଧି ସେ ବାରଟି ପିଲାର ମା। ସେଥିରୁ ଜୀବିତ ମୋଟେ ପାଞ୍ଚଟି। ଏଣିକି କେବଳ ପ୍ରତିବର୍ଷ ଅକାଳ ଜାତ ସନ୍ତାନଗୁଡ଼ିଏ ହୋଇ ସେ ମରୁଛି, ବଞ୍ଚିଛି। ତାର ରୂପରଙ୍ଗ କିଛି ନାହିଁ। ମୁହଁ ସିଠାପଡ଼ି

(୧) ଟେଲିଗ୍ରାମ, (୨) ନିର୍ବୋଧ, ବୋକା (୩) କଥାବାର୍ତ୍ତା କରିବା, (୪) ଭଲମନ୍ଦ କଥା।

ଗାଲପାଟି ହାଡ଼ ବାହାରି ପଡ଼ିଛି। ସୂତିକା ରୋଗରେ ସେ ଦୁଇବର୍ଷ ହେଲା ନିତି ନିତି ପଥ୍ୟ ପାଚନ ଘେନି ବସିଛି। ଘରକଥା ଅବା ବୁଝିବ ସେ କଣ ? ସ୍ୱାମୀଚର୍ଚ୍ଚା ଅବା କରିବ ସେ କଣ ? ସେ ମଲାକାଠଟି ପରି ଆପଣାର ଅସ୍ଥିର ଜୀବନଭାର ଘେନି ମ୍ରିୟମାଣ। ଚାରିଦିନରେ ଥରେ ବାବୁ ସହିତ ଦେଖା ହୁଏ କି ନା ସନ୍ଦେହ। ବାବୁ ଦିନରାତି ବହିନା ଦେଇ ପରକାନିଧାରା[୧] ହୋଇ ପଡ଼ି ରହିଥାଏ। ତାହାର ଦାଣ୍ଡ ଭଲ କି ସେ ଭଲ। ଲକ୍ଷିଆ ମଲାଦିନୁ ତା ମନ ଆହୁରି ମରିଯାଇଛି। ଘରେ ପୁଅ ଝିଅ ମଧ୍ୟରେ ଲୀଳାବତୀ ଓ ମହୀନ୍ଦ୍ର ଦିଓଟି ସାନ ସାନ ପିଲା। ବାକି ତିନୋଟି ନାତୁଣୀଙ୍କୁ ବୁଢ଼ା ବହୁକାଳୁ ବିଭା ଦେଇସାରିଲେଣି। ତାଙ୍କ ବିଭାବେଳେ ଆଉ ସେ ପଣ କଥା ଉଠାଇନାହାନ୍ତି। ସୀତାଭଳି ଚେଙ୍ଗ[୨] ପାଇ ତାଙ୍କ ମନମାନିଛି। ଘରଟିର ଆଉ ସେ ଶ୍ରୀ ସଂପଦ ନାହିଁ। ଜୀବନ ଥାଇ ନ ଥିଲା ପରି। ଏ ସବୁ କଣ ବୁଢ଼ାଙ୍କୁ ବାଧୁ ନାହିଁ? ବୁଢ଼ା ନୀରବରେ ସେହି ସବୁ ଚିନ୍ତା ଗୋଟିଗୋଟି କରି ମନରେ ଖେଳାଉଛନ୍ତି, ହଜାର ପଥର ହେଲେ ବି ଦିନେ ତରଳିବ। ହଜାର ବୁଢ଼ାର ମନ କଠିନ ହେଲେ ମଧ ଦିନ ତ ସେ ନଇଁଲା। ତାଙ୍କର ନିଜର ଦୋଷ ସେ ବୁଝିପାରିଛନ୍ତି, ବୁଝି ଅନୁତାପ କରୁଛନ୍ତି; କିନ୍ତୁ ବ୍ୟର୍ଥ ଅନୁଶୋଚନାରେ ଆଉ ଫଳ କଣ ? ସେ ବେଳେ ବେଳେ ଆଖି ମେଲାଇ ଛାତର କଡ଼ିକାଠଗୁଡ଼ିକ ଗଣୁଛନ୍ତି, ପାଖରେ ପଡ଼ିଥିବା ପଙ୍ଖାଟା ହଲେଇ ଦଉଛନ୍ତି। ଏହିପରି ସମୟରେ ବାବୁ ସେ ଘରକୁ ଆସି ଦାଣ୍ଡ ସିନ୍ଧୁକ ଫିଟାଇ କଣ କାଢ଼ିବାକୁ ଲାଗିଲା। ଚୌଧୁରୀ ଟିକିଏ ମୁଣ୍ଡ ଉଠାଇ ତାକୁ ବିରକ୍ତ ହେଲା ଭଙ୍ଗୀରେ ଚାହିଁ ରୁକ୍ଷ ସ୍ୱରରେ କହିଲେ– ''ହରିହର ବାବୁ କତିକି କାଲି ସଞ୍ଜବେଳେ ଯିବାକୁ କହିଥିଲି, ଗଲୁ?'' ବାବୁ ସିନ୍ଧୁକର ତାଲା ଫିଟାଉ ଫିଟାଉ କହିଲା–''ମୋର ବେଳ ନାହିଁ ଯିବାକୁ, ସତିଆ କି ହୁରୁଷିଆ କାହାକୁ ପଠାଉନା ?''

''ଆରେ ସେଥିରେ ତାଙ୍କର ଗରଜ[୩], ନା ଆମର ଗରଜ ? ତୁ ମାଲିକ ହୋଇ ନ ବୁଝିବୁ ତ ଆଉ ମୁଁ ବୁଢ଼ାଟା କେତେ ଧନ୍ଦାଳି[୪] ହେବି ?''

ବୁଢ଼ା ଈଷତ୍ କୋପ ପ୍ରକାଶକରି କହିଲେ–''କଣ କହିଲୁ–ତୋ କଥାରେ ମୁଁ ଚଉଦମାଣ ବିଲ ଘରବାଡ଼ି ସଂପତ୍ତି ଛାଡ଼ିଦେବି ? ଆଉ ତୁ ସଙ୍ଗୀ ସଙ୍ଗାତଙ୍କ ସାଙ୍ଗରେ ଆଖଡ଼ା ମଉଛବରେ ମାତିଥିବୁ ? ତତେ ଯେଉଁ କଥା କହିଲେ ବେଳ ନାହିଁ। ରଜାପୁଅଙ୍କ ସାଙ୍ଗରେ ବୁଲିବାକୁ ବେଳ ଅଛି ? କନ୍ହେଇ ପୁଅ ସାଙ୍ଗରେ ରାତି ରାତି ପାଲା କରିବାକୁ ବେଳ ଅଛି ? ସର୍ବନାଶିଆ କୁଳାଙ୍ଗାର!'' କ୍ରୋଧରେ ଚୌଧୁରୀ ବିଛଣାରୁ ଉଠିପଡ଼ିଲେ। ବାବୁକୁ ଟଙ୍କା ତମସୁକ[୫] ହାତବାକ୍ସଟା କାଢ଼ିବାର ଦେଖି ଗର୍ଜ୍ଜନକରି କହିଲେ–''ତୁ କୁଞ୍ଚିକାଠି କୋଉଁଠୁ ପାଇଲୁ ? ବୋଉ ଦେଇଚି ପରା ?–'' ଏହା କହି ସରସ୍ୱତୀଙ୍କୁ ଦୁଇପଦ ଟାଣକଥା ଶୁଣାଇ ତା ହାତରୁ ବାକ୍ସଟା ଛଡ଼ାଇନେଇ କହିଲେ–''ତୁମ ମା ପୁଅର ଟାଣ ମୁଁ ଭାଙ୍ଗୁଛି ଯେ ! ତୁ ଛୁଇଁବୁନୁ, ସେ ଟଙ୍କା ମୋ ମହିଆର।''

(୧) ଅନ୍ୟନିର୍ଭର, (୨) ଚିଆଁ, ଆଘାତ, (୩) ଆବଶ୍ୟକତା, (୪) ବ୍ୟସ୍ତ, (୫) ହ୍ୟାଣ୍ଡନୋଟ, କଣ୍ଟକବଲା

ବାବୁ ପିତା ପ୍ରତି କ୍ରୋଧାକଟାକ୍ଷ ନିକ୍ଷେପ କରି କହିଲା–''ଆଜି ଇଲାଗେ୧ ମୋର ପାଞ୍ଚଶ ଟଙ୍କା ଦରକାର। ବୋଉ କତିରେ ଥିଲେ ତମ ସିନ୍ଦୁକରେ ହାତ ଦେଇ ନ ଥାନ୍ତି।

''ପାଞ୍ଚଶ ଟଙ୍କା କଣ କରିବୁ? କୋଉଁଠି ଖାନାଭୋଜି ହଉଚି ପରା?''

''ସେଥିରେ ତମର କଣ ଅଛି? ମତେ ପାଞ୍ଚଶ ଟଙ୍କା ଇଲଗେ ଦିଅ, ମୁଁ ଆଉ ବିଳମ୍ବ କରି ପାରିବି ନାହିଁ। ଦାମ ବାବୁ ବାହାରେ ବସିଛନ୍ତି।''

ବୁଢ଼ା ଆଉ ସମ୍ଭାଳି ପାରିଲେ ନାହିଁ। ପୁଣି ବିଛଣାରୁ ଉଠି ପଡ଼ି କହିଲେ, ''କଣ? ତୁ ପାଞ୍ଚଶ ଟଙ୍କା ନେଇଯିବୁ? ଦାମ ବାବୁ ପରି ବଜାରି ଗୁଲିଖୋର୨–'' ସେ ଆଉ କଣ କହିଥାନ୍ତେ, ବାବୁ ପ୍ରଚଣ୍ଡ ରାଗହୋଇ କହିଲା–''ତୁନି ପଡ଼ ତୁମେ! ମତେ ପାଞ୍ଚଶଟଙ୍କା ଦବ କି ନାହିଁ କହ? ଭଲେ ଭଲେ ଦବ ତ ଦିଅ, ନହିଲେ ସେହି ସୁନାହାରଟା ନଉଚି?'' ଏହା କହି ଗହଣା ସିନ୍ଦୁକ ମେଲେଇ ଦେଲା।

ବୁଢ଼ା ବସିପଡ଼ି କହିଲା–''ସବୁ ନେ। ତୋରିପାଇଁ ଯତନ କରି ଛନ୍ଦୁ୩ ରଖିଚିରେ କୁଳ ବାଳୁଙ୍ଗା! ତୋରି ପିଲା ପିଚିକା ପାଇଁ। ମୋ ଦିନ ଆଉ ନାହିଁ ଯେ, ଯାଉଚି! ହଉ ଦେଖିବୁ ତୁ। ହାତ ପିଠିରେ ଲୁହ ପୋଛିବୁ!''

ଏହା ପରେ ବାପ ପୁଅଙ୍କର ଖୁବ୍ ବୋଲାବୋଲି୪ ଥୋଡ଼ାଏ ହେଲା, କିନ୍ତୁ ବାବୁ ନ ମାନି ପାଞ୍ଚଶ ଟଙ୍କା ଘେନି ଆସିଲା। ଭିତର ପିଣ୍ଡାରେ ରେବତୀ ଠିଆ ହୋଇ କାନ ପାରି ବାପ ପୁଅଙ୍କ କଜିଆ ଶୁଣୁଥିଲା। ସ୍ୱାମୀ ଉପରେ ଶ୍ୱଶୁରର ଅନର୍ଗଳ ଅଭିଶାପରେ ତା ମନଭିତର କାଟି ହୋଇଯାଉଥିଲା। ସେ ଦୀର୍ଘନିଃଶ୍ୱାସଟିଏ ପକାଇ ଯେମିତି ମୁହଁ ବୁଲାଇଛି, ବାବୁ ସେ ଘରୁ ବାହାରି ଆସିଲା–ତାହାର ରାଗ ଓ ଉତ୍ତେଜନାରେ ଗୋରାମୁହଁ ନାଲି ପଡ଼ି ଯାଇଥିଲା। ରେବତୀ ଖାଲି ଏତିକ କହିଲା–''ବାପାଙ୍କୁ ଏତେ ଉଣ୍ଡଷଣ୍ଡ୫ ଗାଳି କିଆଁ ସର୍ବଦା ଦଉଚ କହିଲ? ସେ ସଂପୁଚନ୍ତି୬, କାଟୁଛନ୍ତି–''

''ତୋର କଣ ଅଛି ବଦ୍‌ଜାତ୭–ତୁ ସେ ଖଣ୍ଟ ବୁଢ଼ାର ପର୍ଟ୮ ନେଇ ମୋ ସାଥିରେ ଲଢ଼ିବାକୁ ଅଇଲୁ–?''

ରେବତୀ ତୁନି ହୋଇ ରାଗରେ ଜରିଗଲା। ସେ ଆନନ୍ଦରେ ମୁଠି ବଢେଇ ବଢେଇ ଦାଣ୍ଡକୁ ଗଲା। ଦାମ ବାବୁ ବହୁକାଳୁ ଅପେକ୍ଷା କରି ବସିଥିଲେ। ତାହାର ଏତେ ବିଳମ୍ବ ଦେଖି କହିଲେ–''ଏବେ ଉଛୁର କିଆଁ?''

''ଟଙ୍କା କଣ ସହଜରେ ମିଳେ? ପୁଣି ଗାର୍ଡ଼ନ ପାର୍ଟିପାଇଁ। ସେ ଓଲ୍‌ଡ଼ ଫୁଲ୍ ଆମୋଦପ୍ରମୋଦର କତି କେବେ ମାଡ଼ିବ?''

''ତୋ ବାପ ଏକା ପୁରୁଣା କାର୍ମ୍ମ୯। ଲୋଭୀଟା ଏତେ ଧନ ସାଇତି ଦିପଇସା ଯାହା ହସି ଖୁସିରେ ଖର୍ଚ୍ଚ କରିବାକୁ ଦେଉ ନାହିଁ।''

---

(୧) ବର୍ତ୍ତମାନ, (୨) ଅଫିମିଆ, (୩) କମେଇକରି ସାଇତିବା, (୪) ଉଚ୍ଚବାଚ, ଯୁକ୍ତିତର୍କ, (୫) ଅଶ୍ଳୀଳ, (୬) ଗାଳିଦେବା, (୭) ଚରିତ୍ରହୀନ, (୮) ପକ୍ଷ, (୯) ପଇସା ଖର୍ଚ୍ଚ କରିବାରେ ଅନିଚ୍ଛୁକ

''ତାର ଦି'ଓଳି, ଦି' ଟେଳା ଅଫିମ ହେଲେ କଥାସରିଲା। ଅଫିମ ନିଶା ମୁଣ୍ଡରେ ଯେତେ ଚଢ଼ୁଥିବ, ବୁଢ଼ାର ହିସାବପତ୍ରଟା ସେତିକି ଗୋଳେଇ ମିଶେଇ ଯାଉଥିବ। ମତେ କହୁଚି, ହରିହର ବାବୁ କତିକି ଯା। ଆରେ ତମେ ତ ଜାଣି ଜାଣି ରାଣ୍ଡ ମାଇକିନାଙ୍କୁ ଭୁଲେଇ ନାବାଳାକି ସଂପରି ନେଇଚ, ମୁଁ ସେ ପାପରେ କାହିଁକି ପଶିବି? ଏତେ ପାପ କଣ ଧର୍ମ ସହିବ? ବିଧାତା ସେଇ ଯୋଗୁ ମୋ ସୁନାପୁଅକୁ ଛଡ଼େଇ ନେଇଛନ୍ତି।''

''ଲକ୍ଷିଆ ଗଲାଦିନୁଁ ତୋ ବାପ ବସିଗଲାଣି-''

''ତେବେ ତ ସେଟା ମରୁ ନାହିଁ!''

ଦାମ ବାବୁ ହସି ଦେଇ ତିଆରିଲା[୧] ପରି କହିଲା-''ହଉ ରେ! ବାପକୁ ଏମିତି କଥା କହନ୍ତି?''

ବାବୁ କହିଲା-''ଆଉ, ନାଇଁ ତ ବଞ୍ଚିକରି ଖାଲି ସଭିଙ୍କର ଅନିଷ୍ଟ କରୁଥିବ। ତାହାଯୋଗୁ ତ ସୁନାଘର ଚୂନା ହେଲା। ତା ସଙ୍ଗେ କାର ପଡ଼େ[୨] କହିଲ?''

''ତୋ ଶଶୁର ସାଙ୍ଗରେ ଭାରି କଜିଆ କରିଚି ବୁଢ଼ା, ନାଁ?''

''ତା ଝିଅଟାକୁ ଏଠି ବନ୍ଦି କରି ରଖି ବା ଫଳ କଣ କହିଲ? ମୁଁ କହେ- ଏଇ ମୁହୂର୍ତ୍ତରେ ଯାଉ। ଦିନରାତି ତା ପଥିପାଚନ ଦେଖି ଦେଖି ମତେ ବିରକ୍ତି ଲାଗିଲାଣି। ସବୁବେଳେ ଦିହ ଦୁଃଖକୁ କିଏ ପାରିବ ବାବା!''

''ତାର ଦୋଷ କଣ କହିଲୁ? ତାର ତ ବର୍ଷକୁ ବର୍ଷ ପିଲା ହଉଚି?''

''ମୁଁ କଣ ତାକୁ କହିଚି ବର୍ଷକୁ ବର୍ଷ ପିଲା ଜନ୍ମକର, ଆଉ ଗାତକୁ ଦଉଥା!''

''ସେ କଣ ବିଧାତା ପୁରୁଷ!''

''ନାହିଁରେ ଭାଇ! ଦୁନିଆଟା ସ୍ବର୍ଗମୟ, ମୁଁ କିଆଁ ଏତେ ଦୁଃଖ ଯନ୍ତ୍ରଣା ଭୋଗିବି?''

''ହଁ ତୋର ତ ବହିନା ଦିବି ଅଛନ୍ତି।''

ବାବୁ ହସି ଦେଇ କହିଲା-''ତୁନି ହ, ତୁନି ହ। ଆମେ ବ୍ରାହ୍ମଣ, ଏମିତି କଥା କହୁଚୁ?''

''ହଁ'', ଏହା କହି ଦାମ ବାବୁ ଓରଫେ ଦାମୋଦର ପଟ୍ଟନାୟକ ଓ ବାବୁ ଓରଫେ ବିଷ୍ଣୁପ୍ରସାଦ ଦୁଇ ଜଣ ଯାଇ ମଙ୍ଗଳାବାଗ ଗୁଲି ଆଡ଼୍‌ଡ଼ାରେ[୩] ଉଠିଲେ। ଦାମ ବାବୁ ପୁରୁଣା ଗୁଲିଖୋର, ବାବୁ ଶିକ୍ଷାନବିଶ୍ ମାତ୍ର।

ଜୁଅଇଁର ଏ ଅଧଃପତନ ଦେଖିଲା ଦିନୁଁ ଜଗନ୍ନାଥ କବିରାଜ ମର୍ମେ ମର୍ମେ ମରି ଗଲେଣି। ନିଜ ଦୁର୍ବୁଦ୍ଧିରେ ଜମିଦାରପୁଅକୁ ଝିଅ ଦେଇଛନ୍ତି ଭାବି ମନସ୍ତାପରେ ଦୁଇ ପ୍ରାଣୀ ଦିନ କାଟୁଛନ୍ତି। ସେଦିନ ସକାଳୁ ସକାଳୁ ଦିଟା ରାନ୍ଧିବାଢ଼ି ତାରାମଣି ପୋଥି ଧରି ବସିଲେ।

---

(୧) ମନଘେନିଲା, (୨) ସୁସଂପର୍କ, (୩) ମାଦକଦ୍ରବ୍ୟ ସେବନ ଜାଗା

ଆଜି ତାଙ୍କ ମନ ଆଗ୍ରହ ଓ ଆନନ୍ଦରେ ପୂରି ରହିଚି। ଜଗନ୍ନାଥ ନାହାନ୍ତି, ଷ୍ଟେସନକୁ ଯାଇଛନ୍ତି– ରଘୁନାଥ ଆଉ ତା ପଲାପିଲିଙ୍କି ପାଛୋଟି ଆଣିବାକୁ। ତାରାମଣି ବାରମ୍ବାର ଦାଣ୍ଡ ସଡ଼କକୁ ଚାହୁଁଛନ୍ତି। ଆଜିକାଲି ତାଙ୍କ ଘର ନିତାନ୍ତ ଶୂନ୍ୟ, କେବଳ କତିରେ ଅଛି ରୂପେଇ ବୋଲି ଚାକରାଣୀ ପିଲାଟି।

ରୂପେଇର କେହି ନାହିଁ। ଜାତିରେ ସେ ବାଉରାଣୀ। ଯେତେବେଳେ ତାକୁ ଦୁଇ ବର୍ଷ, ତା ମା ବାତଶ୍ଳେଷ୍ମା ଜ୍ୱରରେ ମରିଗଲା। କବିରାଜେ ତାପାଇଁ ବହୁତ ଔଷଧପାଣି କରିଥିଲେ, ସେହିଦିନ ରୂପେଇଟି ତାଙ୍କ ବାଡି ପନ୍ଦାରେ ପଡ଼ିଛି। ବାରି ଘର ଖରକେ, ଗୁହାଳଟା ପୋଛିଦିଏ, ହେଲେ ନିହାତି ନିଛାଟିଆ ବେଳେ ତାରାମଣିଙ୍କ ସଙ୍ଗରେ କଥାଭାଷା ହୁଏ। ଏବେ ଆସି ତାକୁ ବୟସ ହେଲାଣି ଦଶ, ଏଗାର। କାଳୀ ହେଲେ ମଧ ଗଣ୍ଡିମୁଠିଆଂ। ପେଜ ପାଣି ପିଇ ତା ଦେହ ବଳିଲା ପରି। ତା ହାତର ଦୁଇମୁଠା ମୋଡ଼ା ଖାଇଲେ ଜଗନ୍ନାଥଙ୍କର ବୁଲି ବୁଲି ଥକି ଯାଇଥିବା ଗୋଡ଼ ଦୁଇଟାରୁ ପରାସ୍[2] ଛାଡ଼ିଯାଏ। ତା ମାୟା, ସ୍ନେହ, ସେବା, ଯତ୍ନରେ ମୋହିତ ହୋଇ କବିରାଜେ ତାକୁ ମା ବୋଲି ଡାକନ୍ତି। ତାପାଇଁ ହାତକୁ ଦୁଇ ମୁଠା ରୂପାକାଚ, କାନକୁ ହଳେ ସୁନାଫୁଲ, ବେକରେ ରୂପାର ଗୋଟିଏ ଜଞ୍ଜିର[3] କରି ଦେଇଛନ୍ତି। ରୂପେଇ ସାଆନ୍ତ ସାଆନ୍ତାଣୀଙ୍କୁ ଅଜା ଆଈ ବୋଲି ଡାକେ।

ଆଜି ତା ମନଟା ଭାରି ପ୍ରଫୁଲ୍ଲ। ଆଈ କହିଛନ୍ତି ତାଙ୍କ ପୁଅବୋହୂ ଆସିବେ, ନାତି ନାତୁଣୀ ଆସିବେ। ତା ମାମୁଁ ମାଇଁଙ୍କ ବାଟ ଚାହିଁ ସେ ଓଳିଏ ହେଲା ଛିଡ଼ା ହୋଇଛି। ତାରାମଣି ତାକୁ କହିଲେ–''ଯା, କାନିଟା ପାରି ଟିକିଏ ଗଡ଼ପଡ଼[4] ହ। କିଆଁ ଏତେ ଠିଆଟା ହେଇ ଦଣ୍ଡ ସାଧୁଚ ? ତାଙ୍କ ଆସିବା ବେଳ କଣ ହେଲାଣି ?''

ରୂପେଇ ବୁଲିପଡ଼ି କହିଲା–''ଆଈ ! କିଏ କିଏ ଆସିବେ ?''

ତାରାମଣି ପୋଥି ଥୋଇଦେଇ କହିଲେ–''ତୋ ମାମୁଁ ଆସିବ, ମାଇଁ ଆସିବ, ତାଙ୍କ ପୁଅଝିଅ ଆସିବେ।''

''ତାଙ୍କ ପୁଅଝିଅ ନାଁ କଣ ?''

ଏତିକିବେଳକୁ ଦାଣ୍ଡରେ ଗାଡ଼ି ଶବ୍ଦ ଶୁଭିଲା। ରୂପେଇ ନିଜ ପ୍ରଶ୍ନର ଉତ୍ତର ଅପେକ୍ଷା ନ କରି ଏକାବେଳକେ ଦାଣ୍ଡପିଣ୍ଡାରେ ଯାଇ ଉଠିଲା। ତା ଦୁର୍ଭାଗ୍ୟକୁ ଶଗଡ଼ଟିଏ ସେ ବାଟ ଦେଇ ଗଲା। ସେ ତାକୁ ମନଇଚ୍ଛା ଦୁଇପଦ କହି କାନିପାରି ଶୋଇପଡ଼ିଲା। ଗାଢ଼ନିଦରେ ତା ମାମୁଁ ମାଇଁ ଆସିବା କଥା ପାସୋରି ପକାଇଲା।

ରଘୁନାଥ ଓ ମାୟା ଆସି ଜଗନ୍ନାଥ ଓ ତାରାମଣିଙ୍କ ଚରଣରେ ପ୍ରଣାମକଲେ। ପିଲାଙ୍କର ବାରମ୍ବାର ମୁଖଚୁମ୍ବନ କରି ସ୍ନେହମୟୀ ଆଈ ଆଖିରୁ ଆନନ୍ଦଧାରା ବହିବାକୁ ଲାଗିଲା। ଆଜି ବହୁଦିନ ପରେ ପିତାପୁତ୍ରର ମିଳନ। ବହୁବର୍ଷ ତଳେ ସେହି ଯେ ସକାଳ ବେଳେ

(୧) ଡଉଲଡ଼ାଉଲ, (୨) ଦରଜ, (୩) ଚେନ, (୪) ବିଛଣାରେ ଶୋଇ ଏପଟସେପଟ ହେବା।

ଗାଁକୁ ଯିବାକୁ ରଘୁନାଥ ବିଦାୟ ନେଇଥିଲା, ସେହି ଦିନୁଁ ପ୍ରାୟ ପନ୍ଦର ବର୍ଷ ପରେ ଏ ସାକ୍ଷାତ୍। ସମସ୍ତଙ୍କର ଏଥି ମଧ୍ୟରେ ଅନେକ ପରିବର୍ତ୍ତନ ହୋଇଯାଇଛି। ଜଗନ୍ନାଥ, ତାରାମଣିଙ୍କର କଳାବାଳ ଠାଏ ଠାଏ ପାଚି ଧଳା ଦିଶିଲାଣି। ତାରାମଣି ଆଗଠାରୁ ଝଡ଼ି ଯାଇଛନ୍ତି। ତାଙ୍କ ସ୍ୱାମୀ କଳା ପଡିଯାଇଛନ୍ତି। ରଘୁନାଥ ପରମାନନ୍ଦରେ ଖଟରେ ବସିପଡ଼ିଲା। ତାରାମଣି ମହାଶ୍ରଦ୍ଧାରେ ଉଠି ସମସ୍ତଙ୍କର ଚର୍ଚ୍ଚାରେ ଲାଗିଗଲେ। ମାୟାକୁ ଭୋଜନରେ ବସାଇ ତାରାମଣି ସ୍ନେହରେ କହିଲେ–''ଗରିବ ଘର ଭାତ ମାଙ୍କୁ ରୁଚିବ କି?''

ମାୟା ଲଜ୍ଜାନତ ଦୃଷ୍ଟି ତଳକୁ କରି ରହିଲା। ତା ଶାଶୂ ଶ୍ୱଶୁର ପାଇ ସେ ଯେ କିପରି ପରମାହ୍ଲାଦିତା, ଏହା ବଚନରେ ପ୍ରକାଶକରିବା ତାହାର ସାଧ୍ୟ ନ ଥିଲା। ତାରାମଣି ତା ଆଖିରୁ ତା ମନ କଥା ବୁଝିପାରିଲେ। ତୋତାକୁ ନେବାକୁ ହାତ ବଢ଼ାଇଲେ। ତୋତା ନୂଆ ଲୋକ କୋଳକୁ ଯିବାକୁ ଆଦୌ ମଙ୍ଗିଲା[୧] ନାହିଁ। ନର୍ମଳ, ନିରୂପମ ଦୁହେଁଯାକ ଆଗର ଦିପଟେ[୨] ବସିଗଲେ। ମିନତି ଅଜା କୋଳରେ ଆଉଜି ପଡ଼ିଲା।

ବାପ ପୁଅର କଥା ଆଉ ସରୁ ନାହିଁ। ସେ ରାତିରେ ଆଉ କାହାରିକୁ ଆନନ୍ଦରେ ନିଦ ହେଲା ନାହିଁ। ରୂପେଇ ମଧ୍ୟ ଅଧରାତିଯାକେ ବସି ନୂଆ ମାମୁଁ, ମାଇଁଙ୍କି ରଙ୍କ[୩] ସରସର ହୋଇ ଚାହିଁବସିଲା।

ବାବୁର ହାଲ ଶୁଣି ରଘୁନାଥ ଆଖିରୁ ପାଣିଗଡ଼ିଗଲା। ସେ ଗଭୀର ବିଶ୍ୱାସ ସହ ପିତାଙ୍କୁ ସାନ୍ତ୍ୱନା ଦେବାକୁ ଲାଗିଲା।

ନିଭୃତରେ ମାୟା ଓ ରଘୁନାଥ। ଜଗନ୍ନାଥ ବାହାରକୁ ଯାଇଛନ୍ତି। ତାରାମଣି ମଝିଘରେ ନାତି ନାତୁଣୀଙ୍କି ଧରି ବସିଛନ୍ତି, ସଞ୍ଜ ଗଡ଼ିଗଲାଣି। ବାଡ଼ିପଟରୁ ହେନା ଫୁଲର ଗନ୍ଧରେ ପ୍ରାଣ ମାତିଉଠୁଛି। ବାରି ପିଣ୍ଡାରେ ବସି ରଘୁନାଥ ମାୟାକୁ କହିଲେ–''ଏଠି ତୁମର ଚଳିବାକୁ ଅସୁବିଧା ହେଉ ନାହିଁ ତ? ମୁଁ ଅନ୍ୟ ଘର ଦେଖିବି?''

ମାୟା ଚମକି ପଡ଼ି କହିଲା–''ଏ ପରା ବାପ ମାଙ୍କୁ ଛାଡ଼ି ମୁଁ ଯିବି ଅନ୍ୟ ଘରକୁ? କେଇଟା ଦିନ ଲାଗି ଆସିଚୁଁ ଯେ! ମା'ଙ୍କ ପ୍ରେମରେ ପିଲାଏ ବାଇ। ଚାଲ ନା, ଏଥର ମା ବାପାଙ୍କୁ ବର୍ମା ନେଇଯିବା?''

ରଘୁନାଥ ଦୁଃଖିତ ହୋଇ କହିଲା–''ମାୟା। ତୁମେ ଯଦି ଜାଣନ୍ତ ବାପାଙ୍କର ଏ ଭୀଷ୍ମପଣଯୋଗୁଁ ତାଙ୍କ କେତେ ଦଣ୍ଡ ମିଳିବ?''

ମାୟା ହସିଦେଇ କହିଲା–''ଆଉ ମିଳିବାକୁ ବାକି ନାହିଁ ଯେ। ରୂପେଇ କି ରଖିଲାଦିନୁଁ ସେମାନେ ପରା ଏକଘରକିଆ?''

''କଣ କହୁଚ?'' ବିସ୍ମିତ ରଘୁନାଥ ବହୁକ୍ଷଣ ତୁନିହୋଇ ସେଠି ବସିରହିଲା। ମାୟା ଯେ କେତେବେଳେ ଘର ଭିତରକୁ ଚାଲିଯାଇଥିଲା, ସେ ଜାଣିନାହିଁ।

(୧) ରାଜିହେବା, (୨) ଦୁଇପାଖରେ, (୩) ଗେହ୍ଲା।

ନୀରବ ନିଶାକାଶକୁ ଚାହିଁ ତାହାର ବାଲ୍ୟକାଳର ଶତଶତ ସ୍ମୃତି ଏକାବେଳକେ ଚିତ୍ତ ଅଧିକାର କରିବସିଲେ। ଏହି ସେହି ବାରିପିଣ୍ଡା। ଏଇଠି ବସି ସେ କେତେ ତା ପ୍ରାଣର ସୀତା କଥା ଭାବିଥିଲା, କେତେ ସୁଖର ମଧୁଚକ୍ର ରଚନା କରିଥିଲା, ଏହି ଘରେ ସୀତାକୁ ଘେନି ସେ ସୁଖର ସଂସାରକରିବ ବୋଲି କେତେ ପାଞ୍ଚ ପାଞ୍ଚିଥିଲା। ଆଜି କାହିଁ ସେ ସୀତା! ତଥାପି ସୀତା ତା ହୃଦୟର ଗୋପନତମ ପ୍ରଦେଶରେ ଅଦ୍ୟାପି ଲୁକ୍‌କାୟିତ। ଯେ ଆବାଲ୍ୟ ସଙ୍ଗିନୀ ଥିଲା–ଯାହାର ପ୍ରତ୍ୟେକ କଥା, ପ୍ରତ୍ୟେକ କାର୍ଯ୍ୟ ତାରି ପ୍ରେମରେ ଅଭିଷିକ୍ତ ହୋଇଥିଲା, ତାହାର ପ୍ରତ୍ୟେକ ରକ୍ତବିନ୍ଦୁ ଯାହାର ନାମରେ ବହୁଥିଲା, ସେ ସୀତା–ସେ ବାଲ୍ୟସଖୀ ସୀତାକୁ ରଘୁନାଥ କେମିତି ଭୁଲନ୍ତା? ତାହାର ପ୍ରତିଜ୍ଞା ଭାଙ୍ଗିଛି, ସେ ସଂସାର କରିଛି, ପ୍ରେମମୟୀ ସତୀ ସାଧ୍ୱୀ ପତ୍ନୀ ଲାଭକରିଛି, ଚାରି ପିଲାର ବାପ ହୋଇଛି, ତଥାପି ସୀତାକୁ ସେ ଭୁଲି ନାହିଁ। ସୀତାର ପ୍ରତ୍ୟେକ କଥା ତା ମର୍ମରେ ଲେଖାହୋଇ ରହିଛି–ତାହାର ଜୀବନର ଯେ ସୀତା ଥିଲା ଲକ୍ଷ୍ୟ। ଉପଲକ୍ଷ୍ୟଗୁଡ଼ିଏ ଯୁଟିଛନ୍ତି ସତ୍ୟ, ତଥାପି ସୀତା ତାହାର ହୃଦୟରେ ଜୀବିତ ଅଛି। ମୃତ ଆତ୍ମୀୟର ସ୍ମୃତି ପରି ସେ ସୀତାର ବାଲ୍ୟୁଅ-ସ୍ମୃତିକୁ ଗୁପ୍ତଧନ ରୂପେ ପ୍ରାଣର ସଙ୍ଗୋଳିକରି ରଖିଛି। ସୀତା ତାର ହଜି ନାହିଁ–ଅନ୍ତରରେ ଅଛି; ମରି ନାହିଁ-ମର୍ମରେ ଜୀବିତ ରହିଛି। ଏହି ଘରଦ୍ୱାର ତାର ସାକ୍ଷୀ, ଏହି ବାଡ଼ିର ପ୍ରତ୍ୟେକ ଗଛ ତାର ପ୍ରମାଣ, ସେଇ ପୁରୁଣା ଆମ୍ବଗଛଟା ଅଦ୍ୟାପି ଜୀବିତଅଛି, ତାହାରି ମୂଳରେ ବସି ରଘୁନାଥ ଚିନ୍ତା କରୁଥିଲା ସୀତାର କଥା, ସୀତାର ବୈଧବ୍ୟ–ଦିବାକରଙ୍କୁ ବିବାହହେବା ଆଶଙ୍କାରେ ତାହାର କୋମଳ ପ୍ରାଣ କାନ୍ଦିଉଠିଥିଲା। ଆଜି ଅଭାଗିନୀ କଣ ହୋଇଛି? ବିଧବା ହେବା ତା କପାଳରେ ଶେଷକୁ ଘଟିଲା! କିନ୍ତୁ ବିଜୁଳି ପରି ମନେପଡ଼ିଲା ସୀତାର ସେହି ସ୍ୱର୍ଣ୍ଣମାଲ୍ୟ ଦାନ। ସେହି ଦିନୁଁ ସେ ତାକୁ ସ୍ତ୍ରୀ ବୋଲି ଭାବିଥିଲା। ସଂସାର ରଙ୍ଗମଞ୍ଚରେ ନାଟୁଆଙ୍କ ଭଳି ଆଉ ଯେତେ ସୁଆଙ୍ଗ କଲେ ସୁଦ୍ଧା ସେ ତ ତାର ପ୍ରଥମ ବିବାହ। ଅନ୍ତରାତ୍ମାକୁ ସାକ୍ଷୀ କରି ସେ ଯେ ବିଭା ହୋଇଥିଲା। କି ଅପୂର୍ବ ସ୍ୱାର୍ଥ ତ୍ୟାଗକରି ସେ କନକପୁରଳି ବିସର୍ଜନ ନ ଦେଇଛି। ଭାବୁ ଭାବୁ ରଘୁନାଥର ଛାତି କୋହରେ ପୂରିଗଲା। ଆକାଶର ତାରା, ଚନ୍ଦ୍ର ରଘୁ ମୁହଁକୁ ଅନାଇଲେ। ପନ୍ଦର ବର୍ଷ ତଳେ ଠିକ ଏଇଠି ରଘୁକୁ ସେମାନେ ଦେଖିଥିଲେ। ସେତେବେଳେ ତାହାର ସୀତା ମାତ୍ର ସମ୍ବଳ ଥିଲା। ଆଜି ତାହାର ଚାରିଆଡ଼େ ପ୍ରେମର ଫୁଲବନ। ତଥାପି ସୀତା ଫୁଲର ପ୍ରଜାପତି, ସେ–ତାକୁ ଭୁଲି ନାହିଁ। ସୀତା ପରର ସ୍ତ୍ରୀ, ବର୍ତ୍ତମାନ ବିଧବା, ସନ୍ତାନବତୀ ଜନନୀ, ତଥାପି ରଘୁନାଥ ତାକୁ ମନେପକାଇ ବ୍ୟଥିତ ହେଉଛି। ଦେହ ସହିତ ତାର ସମ୍ବନ୍ଧ ତୁଟିଛି, କିନ୍ତୁ ଅନ୍ତରାତ୍ମାର ସେହି ପୁରାତନ–ପୁରାତନ ସମ୍ବନ୍ଧ ରହୁଛି। କିଏ ଜାଣେ ସେ କେଉଁ ଯୁଗର ସମ୍ବନ୍ଧ? କିଏ ଜାଣେ, ସେ କେଉଁ ଜନ୍ମର ସଂପର୍କ? କିଏ ଜାଣେ– ସେ କେଉଁ ଲୋକ ଲୋକାନ୍ତରର ଅଚ୍ଛେଦ୍ୟ ଶୃଙ୍ଖଳ? ରଘୁନାଥ ଦୀର୍ଘଶ୍ୱାସ ସହ ମାନବର ନିୟତି ବିଷୟ ଭାବୁଥିଲା। ଏତେ ପରିବର୍ତ୍ତନ ଭିତର ଦେଇ ସେ ଆସିଲାଣି, ଏତେ ସୁଖଦୁଃଖର ଢେଉ ତା

ମୁଣ୍ଡ ଉପରେ ଦେଇ ଗଲାଣି, ତଥାପି ସେହି ଯେ ଛ ବର୍ଷର ବାଳିକାଟି ଦିନେ ଦର ଦର ଫିଟା ପାନଖିଲଟି ଆଣି ତାହାର କୋମଳ ହସ୍ତରେ ଦେଇଥିଲା, ସେହି ବାଳିକାଟିକୁ ସେ କିପାଁ ଅବଧି ଭୁଲି ନାହିଁ? ମଣିଷ କଣ ମଣିଷକୁ ଏତେ ପ୍ରେମ କରିପାରେ? ସୀତା ତାକୁ ପ୍ରେମ କରିଥିଲା ସତ, କିନ୍ତୁ ସେ ପ୍ରେମ କଣ ଆଉ ଅଛି? ସୀତା ତାକୁ ଭୁଲିଛି, ଦିବାକରର ମୃତ୍ୟୁଶଯ୍ୟାରେ ରଘୁନାଥ ଦେଖିଛି ତାହାର ସ୍ୱାମୀପ୍ରେମ, ସୀତା ତାକୁ ନିଶ୍ଚୟ ପାସୋରିଛି, କିନ୍ତୁ ସେ ହତଭାଗ୍ୟ କିପାଁ ତାକୁ ଭୁଲି ନାହିଁ? ନାରୀ ପରା ଏକନିଷ୍ଠା ସାଧିକା, କିନ୍ତୁ ରଘୁନାଥ ତ ଦେଖିଲା ସୀତାର ପରିବର୍ତ୍ତନ। ତାହାର ଆଶ୍ଚର୍ଯ୍ୟ ସ୍ୱାମୀ ପ୍ରେମ, ଆଶ୍ଚର୍ଯ୍ୟ ଉପବାସ, ସବୁ ରଘୁନାଥର ମନେପଡ଼ିଲା। ସୀତାର ହୃଦୟରେ ସେ କଣ ଆଉ ଅଛି? ତାହାର ବଡ଼ କଷ୍ଟହେଲା। ସେ ଶୂନ୍ୟଦୃଷ୍ଟିରେ ନୀଳାକାଶପଟକୁ ଚାହିଁରହିଲା। ହଠାତ୍ ତା ପିଠିରେ କିଏ ହାତମାଇଲା। ମାନବ କରସ୍ପର୍ଶରେ ସେ ଚମକି ପଡ଼ିଲା। ପରକ୍ଷଣରେ କ୍ରନ୍ଦନସ୍ୱରରୁ ପିତେଇନାନୀ ଉପସ୍ଥିତ ଜାଣି ପାରି ସେ ବୁଢ଼ୀକୁ କୁଣ୍ଢାଇ ପକାଇଲା। ବୁଢ଼ୀ କାନ୍ଦି କାନ୍ଦି କେତେ ବାହୁନି ଗଲା। ରଘୁନାଥ ଶତ ଚେଷ୍ଟାରେ ସୁଦ୍ଧା ତାକୁ ତୁନି କରି ପାରିଲା ନାହିଁ। ବୁଢ଼ୀ କାନ୍ଦ କାନ୍ଦ ସ୍ୱରରେ ଗୀତ ଗାଇଲା ପରି କହିଲା–''ମୋ ରାମଚନ୍ଦ୍ରରେ–କୁଆଡ଼େ ଥିଲୁ ରେ– ଏତେକାଳ ତୋ ବିନା ଅନ୍ଧ ହୋଇଥିଲିରେ–ମୋ ରାମଚନ୍ଦ୍ର ରେ।''

ମାୟା ଘରଭିତରୁ ଆଲୁଅ ଆଣି ମୁଗ୍ଧଦୃଷ୍ଟିରେ ପିତେଇକି ଚାହିଁ ରହିଲା। ଏ ବୁଢ଼ୀ କଥା ସେ ତା ସ୍ୱାମୀଠୁ କେତେଥର ସହସ୍ର ଥର ଶୁଣିଛି। ଆଜି ସେ ବିଢ଼ୀକି ସାକ୍ଷାତ୍ ଦେଖି ସେ ପ୍ରଣାମ ନ କରି ରହିପାରିଲା ନାହିଁ। ବୁଢ଼ୀ କୋଟି ପରମାୟୁର ଆଶୀର୍ବାଦ କରି ରଘୁବୋହୂକୁ କୁଣ୍ଢାଇ ଘର ଭିତରକୁ ଗଲା। ପିଲାମାନଙ୍କ ଗୋଟି ଗୋଟି କରି ନିରୀକ୍ଷଣ କରି ଦେଖିଲା। ସୀତା କଥା ଭାବି ତା ଛାତି କରତି ହୋଇଯାଉଥିଲା। ଆଜି ଏହି ଘରେ ସୀତା ବୋହୂ ସାଆନ୍ତାଣୀ ହୋଇଥାନ୍ତା, ଏହି ପିଲାମାନେ ସମ୍ଭବତଃ ତାରି ପେଟରୁ ଜନ୍ମ ହୋଇଥାନ୍ତେ; କିନ୍ତୁ ନଷ୍ଟୁର ବିଧାତା ସବୁ ସୁଖରେ ବାଦସାଧିଲା। ବୁଢ଼ୀ ପୁନରାୟ ବାହୁନି ବସିଲା ସୀତା କଥା। ସୀତା ଅଭାଗିନୀ, ସୀତା ବିଧବା ହେଲା। ବିଭା ହୋଇ ସୁଦ୍ଧା ଯେ ରଘୁକୁ ମନେ ପକାଇ କାନ୍ଦୁଥିଲା ତା ଛବିଖଣ୍ଡିକ ଗଣ୍ଠିଧନ କରି ରଖିଥିଲା, ସେହି ସୁଲକ୍ଷଣୀ କୋମଳାଙ୍ଗୀ ସୁବର୍ଣ୍ଣସୁନ୍ଦରୀ କପାଳରେ ବିଧାତା ଯା ଲେଖିଥିଲା! ରଘୁନାଥ ଲୁହରେ ତିନ୍ତିବୁଡ଼ି ସବୁ ଶୁଣିଲା। ସେ ଦେଶାନ୍ତରୀ, ସେ ଅଜାତି! ତା ସୀତାକୁ ରାବଣ ହରି ନେଲା! ସୁବର୍ଣ୍ଣ ଲଙ୍କାରେ ଅଭାଗିନୀ କାନ୍ଦୁଛି! ବୁଢ଼ୀର ଅଳଙ୍କାର ବୋଲିରେ ରଘୁନାଥର ମର୍ମଫାଟି କୋହଉଠିଲା।

ତାରାମଣି ବୁଢ଼ୀକି ତୁନି କହିଲେ–''ମାଉସି! ଗଲା କଥା ଛାଡ଼। ଯାହା ହବାର ଥିଲା ହେଇଚି, କର୍ମ କଥା କିଏ କହିବ? କହୁ କହୁ କନ୍ୟାର ମୁଖଛବି ଆଖି ଆଗରେ ନାଚି ଉଠିଲା। ବୁଢ଼ୀ ସେଠୁଁ ରେବତୀର ଦୁଃଖ ହାଲ ବୟାନ କରିବସିଲା। ସରସ୍ୱତୀ ରଘୁନାଥକୁ ଦେଖିବାକୁ ଡକାଇଛନ୍ତି ଶୁଣି ରଘୁ ବାଳକ ପରି କାନ୍ଦିପକାଇଲା।

ଯେତେବେଳେ ସେ ଆସି ସରସ୍ୱତୀଙ୍କ ପ୍ରଣାମ କରି ଶଯ୍ୟାପାର୍ଶ୍ୱରେ ବସିଲା, ତାହାର ସେତେବେଳେ ବାହ୍ୟଜ୍ଞାନ ନ ଥିଲା–ସେ ଜଳକା ପରି ଚାହିଁ ରହିଲା ହତଶ୍ରୀ ଘରଗୁଡ଼ିକୁ। ଏହି ସେହି ରୋଗଶୀର୍ଣ୍ଣ, ନିରାଭରଣା ଦେବୀ– ପ୍ରତିମା ସରସ୍ୱତୀ। ବହୁକ୍ଷଣ କେହି କାହାକୁ କିଛି କହିପାରିଲେ ନାହିଁ। କେବଳ ଦୁଇଧାର ଲୁହରେ ସରସ୍ୱତୀଙ୍କର ମର୍ମବେଦନା ବୁଝି ପରିଲା ରଘୁନାଥ। ରେବତୀ ମୁଣ୍ଡରେ ଲୁଗା ଦେଇ ଭାଇକୁ ଓଳଗି ହେଲା। ସେ ତାକୁ ଜମାରୁ ଚିହ୍ନିପାରିଲା ନାହିଁ। ରେବତୀ ବୋଲି ଦେଲାରୁ ଜାଣିପାରିଲା। ତାହାର ରଙ୍ଗରୂପ ମୂଳରୁ ଯାଇଛି, ମୁଣ୍ଡରେ ବାଳ ନାହିଁ, ଚନ୍ଦା ହୋଇଯାଇଛି, ଗାଲହାଡ଼ ବାହାରିପଡ଼ି ମୁହଁ ଅତି ବିକୃତ ଦିଶୁଛି। ରଘୁନାଥ କହିଲା–"କଣ ହେଲୁ ତୁ?"

" ମୋ କଥା ସରିଚି ଭାଇନା?" ରେବତୀ ଆଖିରେ ଲୁଗାଦେଲା। ମାୟା ତାକୁ କୁଣ୍ଢାଇ ଧରି ବହୁତ ଆଦରକଲା–ବହୁତ ବୁଝାଇଲା; କିନ୍ତୁ ପ୍ରବଳ ଅଶ୍ରୁ ପ୍ରବାହରେ ସେ ପଦେହେଲେ କଥା କହିପାରିଲା ନାହିଁ।

ବାବୁ ଦୁଇମାସ ହେଲା ଘରୁ ଚାଲିଯାଇଛି– ବାପର କଚ କଚ[୧] ସହି ନ ପାରି, ବକ୍‌ସିବଜାର ଆଡ଼େ ଅନ୍ୟ ବସାଘର କରି ରହିଛି। ସେ ବସାଟି ଦାମ ବାବୁର। ସମୟେ ସମୟେ ଦିନବେଳେ ଘରକୁ ଆସେ। ଟଙ୍କା କଉଡ଼ିର ଅଭାବହେଲେ, ଘେନିଯାଏ। ଭାର୍ଯ୍ୟାର ଦେହରୁ ସମୁଦାୟ ଗହଣା ଗଲାଣି। ରେବତୀ ତାହା ଉପରେ ହାତରେ ଦିମୁଠା କାଚ ପିନ୍ଧିଛି; କିନ୍ତୁ ସେ ଟଙ୍କା ନ ପାଇଲେ ବାକ୍‌ସ ଭାଙ୍ଗିବାକୁ ସୁଦ୍ଧା କୁଣ୍ଠିତହୁଏ ନାହିଁ। ତାର କାମ କାର୍ଯ୍ୟ କିଛି ନାହିଁ। ମନ୍ଦସଙ୍ଗୀ, ତାସ, ପଶା, ନିଶା ଓ ବେଶ୍ୟାରେ ବୁଡ଼ିରହିଛି। ଏପରି ଯାହାର ସ୍ୱାମୀ, ସେ ସ୍ତ୍ରୀ କାନ୍ଦବ ନାହିଁ ତ, ଆଉ କାନ୍ଦିବ କିଏ? ମାୟା ସବୁ ଶୁଣି ମନେ ମନେ ତୁଳନା କଲା–ନିଜ ସ୍ୱାମୀକୁ। ସେ ଯେ ସ୍ୱର୍ଗର ଦେବତାର ହାତ ଧରିଛି–ଏହି ଆନନ୍ଦରେ ତା ପ୍ରାଣ ପୂର୍ଣ୍ଣହୋଇଉଠିଲା।

ଦାଣ୍ଡ ଘରେ ବୁଢ଼ା ଶୋଇଥିଲେ। ରଘୁନାଥ ଦାଣ୍ଡ ଘରକୁ ଗଲା। ଦେଖିଲା ବୁଢ଼ା ଗାଢ଼ନିଦ୍ରାମଗ୍ନ। ସେ କିଛି କ୍ଷଣ ସେଠି ଅପେକ୍ଷାକଲା। କାନ୍ଥରେ ଦେଖିଲା ଗୋଟିଏ ଆଲୋକଚିତ୍ର। କତିକି ଯାଇ ଦେଖିଲା ସୀତା ଓ ଦିବାକର, ଗୋଡ଼ତଳେ ଅମୂଲ୍ୟମୋହନ। ତାହାର ବକ୍ଷ ବିଦୀର୍ଣ୍ଣ ହୋଇ ଗୋଟିଏ ଗଭୀର ଦୀର୍ଘଶ୍ୱାସ ବାହାରିଆସିଲା। ଶଯ୍ୟାଶାୟୀ ବ୍ୟକ୍ତିଟି ତାହାର ସୁଖ କଳ୍ପନାକୁ ଚୂର୍ଣ୍ଣକଲା।

ତାକୁ ଅର୍କ୍ଷିତ ବୋଲି ତ୍ୟାଗକଲା। ରଘୁନାଥର ସବୁ ଗୋଟି ଗୋଟି ପୂର୍ବ କଥା ମନେପଡ଼ିଗଲା। ବୁଢ଼ା କରମୋଡ଼ି ହାଇମାରି ନିଦରୁ ଉଠିଲେ। ରଘୁନାଥ ସମ୍ମୁଖକୁ ଯାଇ ସାଷ୍ଟାଙ୍ଗ ପ୍ରଣାମକଲା। ବିସ୍ମିତ ନିଦୋଥିତ ଚୌଧୁରୀ ପଚାରିଲେ–"କେ?"ସେ ବିନୀତସ୍ୱରରେ କହିଲା–"ଆଜ୍ଞା, ମୁଁ ଅର୍କ୍ଷିତ ରଘୁ।" ଘରେ ବିଜୁଳି ପଡ଼ିଥିଲେ ବୋଧହୁଏ ବୁଢ଼ା ଏପରି ଚମକି ପଡ଼ି ନ ଥାନ୍ତା। ଏପରି ପୁଷ୍ଟଦେହ, ଗୋରା, ସୁନ୍ଦର ବଙ୍ଗାଳୀ ବାବୁ, ସୁନା ଚେନ,

(୧) ବାରମ୍ବାର ଆତ୍ମାକୁ ବାଧିବାପରି ଧିକ୍‌କାର କଥା

ସୁନା ଚସମା, ଶୁଭ୍ରପରିଚ୍ଛଦଭୂଷିତ ରଘୁନାଥଙ୍କୁ ତାଙ୍କ ଗୋଡ଼ତଳେ ପ୍ରଣାମ କରିବାର ଦେଖି ହୃଦୟରେ ଶତ ବୃଶ୍ଚିକର ଜ୍ୱାଳା ଉପସ୍ଥିତହେଲା। ଯାହାକୁ ଅର୍କ୍ଷିତ ବୋଲି ନାଁ ଦେଇଥିଲେ, ସେ ବର୍ତ୍ତମାନ ଲକ୍ଷପତି। ଜଗନ୍ନାଥଠୁ ତାହାର ହାଲ ଚାଲ ସବୁ ଶୁଣିଥିଲେ, କିନ୍ତୁ ଦୁଇମାସ ହେଲା ତାଙ୍କ ସହିତ କଳିହେବାରୁ ରଘୁନାଥ ଯେ ଦେଶକୁ ଆସିଛି, ଏ ଖବର ପାଇ ନ ଥିଲେ। ସେ କ୍ଷୁବ୍‌ଧସ୍ୱରରେ କହିଲେ–''ଆଉ ବୁଢ଼ାଟାକୁ ପରିହାସ କର ନାହିଁ ବାପ! ଏବେ ମୁଁ ଅର୍କ୍ଷିତ।'' ଏହା କହି ସେ ଭୋଭୋ ହୋଇ କାନ୍ଦିପକାଇଲେ। ତାଙ୍କର ହୃଦୟରଜ୍ୱାଳା, ଅଶ୍ରୁ ଆକାରରେ ବହିଗଲା ପରା? ବାବୁ ସେତିକି ବେଳକୁ ଘର ଭିତରକୁ ପଶି ଆସିବାରୁ, ରଘୁନାଥ ତାକୁ କୁଣ୍ଢାଇଧରିଲା। ବହୁଦିନ ପରେ ଦୁଇ ସଙ୍ଗୀଙ୍କର ମିଳନ। ରଘୁନାଥ ନିକଟରେ ନିଜ ଅଧଃପତନର ଲଜ୍ଜାରେ ବାବୁ ଏକାବେଳକେ ମୁଣ୍ଡ ତଳକୁ ପୋତି ରହିଲା। କିଏ ଯେ କାହାକୁ କଣ କହିବ, କାହା ତୁଣ୍ଡରୁ ପଦେ ହେଲେ କଥା ଫୁଟିଲା ନାହିଁ। ତାଙ୍କ ଦୁହିଁଙ୍କୁ ବଲ୍ ବଲ୍ କରି ଚାହିଁ ରହିଲେ ଅନୁତପ୍ତ ଚନ୍ଦ୍ରଶେଖର ଚୌଧୁରୀଏ।



## ତ୍ରୟତ୍ରିଂଶ ଅଧ୍ୟାୟ

ଗୋରୁପଲ ଦାଣ୍ଡରେ ହମ୍ବାରଡ଼ି ଛାଡ଼ି ଗୋଠରୁ ଫେରିଲେଣି। ଗୋରୁ ଗୋଟି ଗଣତି କରି ଗୁହାଳରେ ବାନ୍ଧିବାକୁ ଘେନିଯାଉଚି ନରିଆ, ଢେମା ସଞ୍ଜବଳିତା ଜାଳି ଦୁଆରେ ଦୁଆରେ ଥୋଇ ଗଲାଣି। ଶଙ୍କରୀ ଦୁଆରକୁ ଆସି ଦେଖିଲା, ସେ ଖଟରେ ମୁହଁମାଡ଼ି ମୁଚୁଳଟା[୧] କୁଣ୍ଢେଇ ଶୋଇଛନ୍ତି। ମଝିଆ ସାଆନ୍ତାଣୀଙ୍କୁ ଡାକଟାଏ ଦେଇ ଭିତରକୁ ପଶିଗଲା। ଦିବାକର ଉଭୟଙ୍କୁ ତ୍ୟାଗକଲା ଦିନୁଁ ସେ ଦୁହିଁଙ୍କର ଦୁଇ ଭିନ୍ନ ଦିଗରେ ପରିବର୍ତ୍ତନ ହୋଇଛି।

ଢେମା ଯେତେ ହେଲେ ଦାସୀ। ଭାତଲୁଗା ପାଇଁ ତାର ଖଟଣି, ତା ଭାଗ୍ୟକୁ ସାଆନ୍ତ ପାଖଲଗା ପୋଇଲୀ[୨] ହୋଇଥିଲା। ଏବେ ଭାଗ୍ୟ ଆଦରି ଭଣ୍ଡାରଘରିଆ ଉଚ୍ଛବାର ଶରଣ ପଶିଛି। ଉଚ୍ଛବାର ବୟସ ଚବିଶ ପଚିଶ। ଗଉଡ଼ ଟୋକା, ବର୍ଣ୍ଣ ଶ୍ୟାମଳ ହେଲେ ସୁଦ୍ଧା ଦେଖିବାକୁ ସୁନ୍ଦର। ପିଲାକାଳୁ ସାଆନ୍ତ ଘରେ ବଢ଼ିଛି। ଯେପରି ଚଲାଖ, ସେପରି କୁଚକ୍ରୀ। ସେ ମଝିଆଁ ସାଆନ୍ତାଣୀଙ୍କର ପ୍ରିୟ ଭୃତ୍ୟ।

ଶଙ୍କରୀ କିନ୍ତୁ ବିବାହିତା ଭାର୍ଯ୍ୟା। ସ୍ୱାମୀତ୍ୟକ୍ତା ହେଲାଦିନୁ ସାତା ଉପରେ ସେ ଝୁରି[୩] ମରୁଛି। ତାର ଦେହ ଗୋଟାକ ଜହର[୪] ପାଲଟି ଯାଇଛି। ଗୀତବନ୍ଧୀ ନାଗୁଣୀ ପରି ସେ ଫଁ, ଫଁ ହୋଇ ବୁଲୁଛି। ବେଳ ପାଇଲେ କେବେ ଯେ କାହାକୁ କାମୁଡ଼ିବ ଜଣା ନାହିଁ। ପନ୍ଦର ବର୍ଷ ହେଲା ଯେ ସେ କିମିତି ଜୀବନ କାଟିଛି, ତାହା ତାକୁଇ ଜଣା। ସ୍ୱାମୀକି କଣ ସେ ଊଣା ପ୍ରେମ, ଭକ୍ତି କରିଥିଲା, ସ୍ୱାମୀ ତାର ଜୀବନର ଧନ, ନୟନର ମଣି, ସ୍ୱାମୀ ବିନା

(୧) ତକିଆ, (୨) ନିକଟତମ ଦାସୀ, ରକ୍ଷିତା, (୩) ଈର୍ଷାଭାବରେ ଜଡ଼ସଡ, (୪) ଉତ୍କଟ ବିଷ।

ସେ କିଛି ଜାଣେ ନାହିଁ, ସ୍ୱାମୀ ତାର ଜ୍ଞାନ, ଧ୍ୟାନ, ହେଲେ ସେଇ ସ୍ୱାମୀ ତାକୁ ତ୍ୟାଗକଲେ। ତାହାରି ଆଖି ଆଗରେ ଅନ୍ୟ ଭାର୍ଯ୍ୟା ନେଇ ସୁଖରେ ଘରକଲେ। ଦିନେ ତାକୁ ପଚାରିଲେ ନାହିଁ– ସେ ମଲା କି ଗଲା। ଏହା ନାରୀ ହୋଇ ସେ କିପରି ସହନ୍ତା? ନାରୀର ପ୍ରାଣ କଣ ତାଠେଇଁ ନାହିଁ? ନାରୀର ପ୍ରେମ କଣ ତା ଆତ୍ମା ମଧ୍ୟରେ ନାହିଁ? ତାର କଣ ଅଭାବ? ଖାଦ୍ୟ, ପଟ୍ଟବସ୍ତ୍ର, ବହୁମୂଲ୍ୟ ସୁବର୍ଣ୍ଣାଳଙ୍କାରରେ ସେ ପରିପୂର୍ଣ୍ଣ; କିନ୍ତୁ କେତେ ଦିନ ସେ ଉପବାସରେ କାଟିଛି, ତା କିଏ ଜାଣେ? ତା ପିଣ୍ଡା ତଳକୁ ଯେଉଁ ଟଗର ଗଛଟି ଅଛି, ସେହି ତାର ସାକ୍ଷୀ, ଆଉ ସାକ୍ଷୀ ପିଞ୍ଜରାର ଶୁଆଟି। ଶଙ୍କରୀ ଶୁଆକୁ ହରିନାମ ପରିବର୍ତ୍ତରେ 'ସାଆନ୍ତ' ଶବ୍ଦଟି ଶିଖାଇଥିଲା; ଶୁଆ ସର୍ବଦା 'ସାଆନ୍ତ ଏଇବାଟେ ଯାଅ' କହି ବୋବାଉଥାଏ। କିନ୍ତୁ ଦିବାକର ଦିନେ ସେ ସବୁ କଥା କାନକୁ ଘେନିନାହାନ୍ତି। ଭାର୍ଯ୍ୟାର ହୃଦୟରେ ଯେଉଁ ପ୍ରେମ ତାଙ୍କର ଅପେକ୍ଷାକରି ରହିଥିଲା, ତାହାର ପରିତୃପ୍ତି କେବେ ସାଧନ କରିନାହାନ୍ତି। ସେ ସୀତାଗତପ୍ରାଣ, ସୀତା ଦେହରେ କଣ୍ଟା ଫୁଟିଲେ ଯେଉଁ ପ୍ରେମ ତାଙ୍କର ଅପେକ୍ଷାକରି ରହିଥିଲା, ତାହାର ପରିତୃପ୍ତି କେବେ ସାଧନ କରିନାହାନ୍ତି। ସେ ସୀତାଗତପ୍ରାଣ, ସୀତା ଦେହରେ କଣ୍ଟା ଫୁଟଲେ ତାଙ୍କ ଦେହରେ କତୁରୀ ଚାଲିଗଲା ପରି ଲାଗୁଥିଲା। ପୁଣି ତହିଁ ଉପରେ ତାହାର ପରମ ସୁନ୍ଦର ପୁତ୍ର, ଜମିଦାରିର ଉତ୍ତରାଧିକାରୀ ଅମୂଲ୍ୟମୋହନ। ଅମୂଲ୍ୟମୋହନ ଦିବାକରର ପ୍ରାଣଧନ। ତାହାର ପ୍ରତି ଅବୟବକୁ ସେ ପରମ ସ୍ନେହରେ ନିରୀକ୍ଷଣ କରୁଥିଲେ; ମାତ୍ର ଶଙ୍କରୀକୁ ସେଇଟା ଦାରୁଣ ଅସହ୍ୟ ବୋଧହେଉଥିଲା। ସନ୍ତାନହୀନା ସନ୍ତାନର ସ୍ନେହ ଲାଗି ତୃଷିତା ହୋଇ ଉଠିଲା। ତହିଁରେ ପୁଣି ସଉତୁଣୀର ପୁଅ। କଥାରେ କହନ୍ତି–'ସଉତୁଣୀ କଣ୍ଟା ନ ଥାଉ।' ସେ ଅମୂଲ୍ୟକୁ ଦୁଇ ଆଖିରେ ଦେଖି ପାରୁ ନ ଥିଲା।

ସୀତା କଲିକତାରେ ସ୍ୱାମୀଧନକୁ ବିସର୍ଜନଦେଇ ଆସିଲା, ଶଙ୍କରୀ ମଧ୍ୟ ବୈଧବ୍ୟ ଚିହ୍ନ ଧାରଣକରି ବସିଲା। ବିଶାଳ ଶୂନ୍ୟପୁରୀରେ ଦାସଦାସୀ ବେଷ୍ଟିତା ଦିଓଟି ବିଧବା ଓ ଜମିଦାରିର ଉତ୍ତରାଧିକାରୀ ଅମୂଲ୍ୟମୋହନ ସୁଖଦୁଃଖରେ କାଳ କାଟିଲେ। ସୀତା ସମୟ କାଟୁଥିଲା ପୁତ୍ରର ମୁଖକୁ ଚାହିଁ। ତାହାର ସ୍ୱାମୀ ଯାଇଛନ୍ତି ସତ, ଆଖି ଉପରେ କିଶୋର ପୁତ୍ର ବିଦ୍ୟମାନ, ତାହାର ସେବା, ତାହାର ଚର୍ଚ୍ଚାରେ ସୀତା ତନ୍ମୟ ହୋଇଗଲା। ଏଡ଼େ ବଡ଼ ଜମିଦାରି, ବୃହତ୍ ଉଆସ, ଅସଂଖ୍ୟ ଦାସଦାସୀ, ସେ ସବୁ ତତ୍ତ୍ୱାବଧାନ କିଏ କରିବ? ତାହାର ଶୋକ କରିବାକୁ ବେଳ ନ ଥିଲା। ମହା ସମାରୋହରେ ସ୍ୱାମୀର ଶ୍ରାଦ୍ଧ ସଂପନ୍ନକରି ସେ ଏଥର ଲାଗିଗଲା ଜମିଦାରି ବୁଝାସୁଝାରେ। ନାଏକ ବୁଢ଼ା ଦୁର୍ଗାଚରଣ ମହାନ୍ତି ଅନ୍ଦରମହଲକୁ ଆସି ସାନ ସାଆନ୍ତ ଓ ମା ସାଆନ୍ତାଣୀଙ୍କୁ ଜମିଦାରର ସମୁଦାୟ ହିସାବପତ୍ର ଦିଅନ୍ତି। ତାହାର ଶାସନରେ ଦାସଦାସୀ ମଧ୍ୟରେ ଆତଙ୍କ ପହଞ୍ଚିଲା। ଆଗେ ଉଆସରେ ଅଳସ, ଅକର୍ମଣ୍ୟ ଦାସ ଦାସୀ ଅକାରଣ ଅନ୍ନଧ୍ୱଂସ କରି ପଡ଼ିଥାନ୍ତି, ଅଥଚ ବାର ଆଡ଼ର କଳି ଓ ପରଚର୍ଚ୍ଚା ଗୋଟାଇ

ଉଆସର ଶାନ୍ତି ନଷ୍ଟକରନ୍ତି । ସୀତା ନିଜ ହାତରେ କର୍ତ୍ତୃତ୍ୱନେଲା ଦିନୁ ପ୍ରଥମେ ସେହିମାନଙ୍କୁ କାଢ଼ିଲା । ଉଦ୍ଧବା କର୍ମଚ୍ୟୁତ ହୋଇ ଶଙ୍କରୀର ଆଶ୍ରୟ ନେଲା । ଢେମା ତ ବହୁକାଳରୁ ପାଇଟିରୁ ବରଖାସ୍ତ ହୋଇଥିଲା । ଦୁହିଁଙ୍କର ପ୍ରତିହିଂସାବହ୍ନି ଏତିକିବେଳେ ପ୍ରଜ୍ୱଳିତହେଲା । ସେଥିରେ ପ୍ରଧାନ ସହାୟା ହେଲେ ଶଙ୍କରୀ ।

ଶଙ୍କରୀ ନିଦରେ ଶୋଇ ନ ଥିଲେ, ଢେମାର ଡାକ ଶୁଣି ବସିପଡ଼ି କହିଲେ–"କି ଲୋ ! ଉଦ୍ଧବା ଅଇଲାଣି ?" ଢେମା ହସିଦେଇ କହିଲା–" ଏତେ ବେଳଯାଏ ?" ସେଠୁ ଶଙ୍କରୀ ତାକୁ କତିକୁ ଡାକି କହିଲେ–"ସାବଧାନ, ତତେ ମହାପ୍ରଭୁଙ୍କ ରାଣ, କାହାକୁ ତୁଣ୍ଡ ଦିଖଣ୍ଡ କରିବୁନାହିଁ, ଉଦ୍ଧବାକୁ ବି ସେହି ରାଣଦେଲି । ତମକୁ ମୁଁ ଯାହା ଦେବି–ଚିରଦିନ ବସି ଖାଇବ–ହେଲେ ଏଇ କଥାଟି ଗୁପ୍ତରଖ ।"

ଢେମା ବାରମ୍ବାର ଆଖି କାନର ରାଣପକାଇ କହିଲା–"ସାଆନ୍ତାଣି ! ମୁଁ କହିବି ? ତମେ ଯେତିକି ଜଳିଚ, ମୁଁ କଣ ସେତିକି ଜଳି ନାହିଁ ।" "ତୁ ମୋ ଜଳାଟା[୧] କଣ ବୁଝିବୁ ଲୋ ଢେମା ! ରାକ୍ଷାସୁଣୀ, ଅର୍କ୍ଷିତଆଣୀ ମୋର ସୁନାଘର ଚୂନାକଲା–ମୋ ସ୍ୱାମୀ କି କୁକୁର କଲା, ତା ପେଟରେ କଟକ ଜଡ଼ି ପକେଇଲା; ନଇଲେ ଆଉ କିଏ ସ୍ୱାମୀକି ଏପରି ବଶ କରୁ ନାହିଁ ? ଆମେ ଆଉ ସ୍ୱାମୀର ଭାରିଯା ହେଇ ନ ଥିଲୁ ? ମୁଁ କଣ ତାକୁ ଶରଧା କରୁ ନ ଥିଲି ? ମତେ ସେ ଆଡ଼ ଆଖିରେ ଅନାଇଲେ ? ବଳବୟସ ସବୁ ସାଇଲି–ପନ୍ଦର ବର୍ଷ ଝୁରିଝୁରି ମଲି । ଆଉ ପଚାରୁଚୁ ଲୋ ଢେମା ମୋ ଜଳିବା କଥା ! ରାଣ୍ଡ, ଅଲକ୍ଷଣୀ ମୋ ସ୍ୱାମୀକି ଖାଇଲା, ଏବେ ପୁଅ ଧରି ଥେଇକି ଥେଇକି ହଉଚି । ଦେଖିବି ଲୋ ତୋ ସୁଆଗଟା ! କେତେଦିନ ଆଉ ପୁଅର ମା ହୋଇ ମୋ ଛାତି ଉପରେ ଫୁଲେଇହୋଇ ବସିବୁ !"

ତା ଆଖିରେ ରାକ୍ଷସୀ ନିଆଁ ଜଳିଉଠିଲା । ସେ ରକ୍ତର ପିପାସାରେ ଯେପରି ଅଧୀର ହୋଇଉଠିଲା, ତାକୁ ଦେଖି କିଏ ମନେକରିବ, ସେହି ସେ ଭୀରୁ ପ୍ରକୃତି ଶଙ୍କରୀ ? ଯାହାକୁ ଶହେ ମାଡ଼ ମାଇଲେ କଥା ପଦେ ପାଟିରୁ ବାହାରେ ନାହିଁ, ପ୍ରତିହିଂସା ଏବେ ତାକୁ ବାଘୁଣୀ କରିଛି । ଦିବାକର ମଲାଦିନୁଁ ସେ ଆହୁରି ଭୟଙ୍କର ହୋଇଛି । କିପରି ଯେ ସୀତା ଉପରେ ଦାଉ ସାଧିବ ଉଣ୍ଡି[୨] ବୁଲୁଛି ।

ସୀତା ଏଥର ଜାଣିଲା ସଉତୁଣୀ ଜ୍ୱାଳା କିପରି । ଶଙ୍କରୀର ବାକ୍ୟବାଣରେ ସେ ବଡ଼ ମର୍ମାନ୍ତିକ ବ୍ୟଥା ପାଇଲା । ତାକୁ ଦେଖିଲା ମାତ୍ରେ ସେ ଢଗ ପକାଇ, ଉପରେ ପଡ଼ି ତା ସହିତ କଳି କରେ । ସୀତା ଅମୂଲ୍ୟ ମୁହଁକୁ ଚାହିଁ ସବୁ ତୁନି[୩] ହୋଇ ସହିଲା; ମାତ୍ର ସାଆନ୍ତାଣୀର ଅପମାନ ଦାସଦାସୀ କିଆଁ ସହିବେ ? ତାର ଦାସଦାସୀ ଓ ଶଙ୍କରୀର ଦାସଦାସୀ ମଧ୍ୟରେ ସର୍ବଦା ଭୀଷଣ କଳହ ଲାଗି ରହିଲା–ମାଡ଼ ମରାମରି ପର୍ଯ୍ୟନ୍ତ ଗଲା । ତଥାପି ସୀତା ଅମୂଲ୍ୟ ମୁହଁକୁ ଚାହିଁ ସବୁ ସହିଲା ।

---

(୧) ଜ୍ୱାଳା, ଦହନ, ବ୍ୟଥା, (୨) ଖୋଜିବା, (୩) ନିରବରେ

ଅମୂଲ୍ୟ ସୀତାର ପୁଅ ହେଲେ ମଧ ସାବତ ମାକୁ ଭଲପାଏ। ତାହାର ପ୍ରକୃତି ଅତି କୋମଳ। ପନ୍ଦର ବର୍ଷର ପିଲା, ଜଗତର ଛନ୍ଦ କପଟ ବା ସେ କାହୁଁ ଜାଣିବ? ଶଙ୍କରୀ ସୀତା ସହିତ କଳହକରେ, ମାତ୍ର ଅମୂଲ୍ୟ ପ୍ରତି ବଡ଼ ସ୍ନେହ ଦେଖାଉଥାଏ। ପ୍ରକାଶ୍ୟରେ କହେ 'ମୋ ସ୍ୱାମୀର ପୁଅ କଣ ମୋର ନୁହେଁ?' ଅମୂଲ୍ୟ ମଧ ସାବତ ମା ପ୍ରାଣରେ ତା ପ୍ରତି କିଛି କୂଟ ଅଛି ବୋଲି କେବେ କଳ୍ପନା କରି ନାହିଁ।

ଶଙ୍କରୀ ଶଯ୍ୟା ତ୍ୟାଗକରି ଉଠି ମୁହଁ ଧୋଇଲା, ପିଣ୍ଡାରେ ବୁଲିଲା–ଗଭୀର ଚିନ୍ତାରେ ତା ମନ ପୂର୍ଣ୍ଣ। ହେମାର ପରାମର୍ଶରେ ସେ ଚାଲିବ କି ନାହିଁ, ଏହାହିଁ ତାହାର ଚିନ୍ତାର ବିଷୟ। କିଛିଦିନ ହେଲା ପଦ୍ମପୁର ଗାଁକୁ ଗୋଟିଏ ସିଦ୍ଧ ଯୋଗୀ ଆସିଛନ୍ତି। ସେ ନାନାପ୍ରକାର ହୁକୁମ ଔଷଧ ଜାଣନ୍ତି। ଅନେକ ଦୁରାରୋଗ୍ୟ ରୋଗୀ ତାଙ୍କ କତିରୁ ଔଷଧ ନେଇ ଭଲ ହେବାର ଶୁଣା ଯାଉଛି; ଏପରି କି, ସେ କୁଷ୍ଠ, କ୍ଷୟକାଶ, ଗୋଦଡ଼, ବାତ ସୁଦ୍ଧା ଭଲ କରି ଦେଉଛନ୍ତି। ତାଙ୍କ ଔଷଧ ଫଳରେ ବନ୍ଧ୍ୟା ସନ୍ତାନବତୀ ହେଉଛି, ସ୍ୱାମୀତ୍ୟକ୍ତା ସ୍ୱାମୀକୁ ବଶ କରିପାରୁଛି। ହାୟ! ଦିବାକର ଜୀବିତ ଥିବା ସମୟରେ ଯଦି ଏପରି ମହାପୁରୁଷ ସେ ଗାଁକୁ ଆସିଥାନ୍ତେ, ତେବେ ତ ଶଙ୍କରୀ ନିଶ୍ଚୟ ଇଷ୍ଟଲାଭ[୧] କରିପାରିଥାନ୍ତା। ବର୍ତ୍ତମାନ ଗତ କଥା ମନେ ପକାଇ କପାଳ ଠୁକି[୨] ଲାଭ କଣ? ସେ ଯୋଗୀ ବଶୀକରଣ ମନ୍ତ୍ର ଯେତିକି ଜାଣନ୍ତି, ଜାରଣମାରଣ ବିଦ୍ୟା ମଧ ତାଙ୍କଠି ସେତିକି। ସେଇ କଥା ଶୁଣିଲାବେଳୁ ଶଙ୍କରୀ ଓ ହେମା ମୁଣ୍ଡରେ ଗୋଟାଏ ଦୁଷ୍ଟବୁଦ୍ଧି ପ୍ରବେଶ କରିଛି। କୌଣସି ଉପାୟରେ ଯଦି ସେମାନେ ମା ପୁଅକୁ ଭିନ୍ନେ କରିପାରନ୍ତେ? ଉଦ୍ଧବା, ଯୋଗୀ କତିକି ଯାଇ ଖଣ୍ଡେ ମୂଳ ଆଣିଛି, ତାକୁ ଭଲ ପାଉଣା[୩] ମଧ ଦେଇ ଆସିଛି। ଯୋଗୀ କହିଛି, ଖାଇବା ଦ୍ରବ୍ୟରେ କିମ୍ବା ପାନରେ ଏ ମୂଳଟି ଦେବାକୁ ହେବ। ଯାହା ନାଁ କରିଦେବ, ସେ ଲୋକ ଜୀବନ ଥାଉ ତାହାର ଛାଇ ମାଡ଼ିବ ନାହିଁ। ଚେରଟି ପାଇଲାବେଳୁ ଶଙ୍କରୀ ଗଭୀର ଚିନ୍ତାନ୍ୱିତା। 'ସତେ ସେ ଦବ?' ସାନ ଚେର ଖଣ୍ଡେ ତ! କେଉଁ କୌଶଳରେ ଯଦି ପାନ ଖଣ୍ଡକରେ ଦେଇଦିଏ, ଅମୂଲ୍ୟ କଣ ଜାଣିପାରିବ? ସେ ପିଲା ଲୋକ, ତାକୁ ଏତେ ଭିତରି କଥା କିଆଁ ମାଲୁମ[୪] ହବ?' ପୁଣି ଭାବିଲା, 'ଚେରଟା ବିଷ ନୁହେଁ ତ?' ମନ କହିଲା 'ବିଷ ହେଲେ କଣ ଯୋଗୀ ସିଦ୍ଧ ମହାପୁରୁଷ ଏଡ଼େ ପ୍ରତିଜ୍ଞାକରି ଦିଅନ୍ତେ? ଶହ ଶହ ଲୋକଙ୍କୁ ନିତି ଭଲକରୁଛନ୍ତି, ତା ପାଇଁ କଣ ଖଣ୍ଡେ ବିଷ ପଠାନ୍ତେ, ପୁଣି ନଗଦ କୋଡ଼ିଏ ଟଙ୍କା ନେଇ? ଯୋଗୀ କହିଛନ୍ତି–ଚେରଟି ଗୁଣ ଆଠଦିନ ଯାଏ କେବଳ। ଭାବିଲା–'ସେ ଚେରଟି ଦବ କି ନାହିଁ?' କିନ୍ତୁ ଭୟରେ ତା ହାତ ଗଲା ନାହିଁ। ହେମା ତା ଭୟ ଦେଖି ପରିହାସ କଲା। ଉଦ୍ଧବା ଭିତରେ ଭିତରେ ବହୁତ ମଣାଇଲା।[୫] ଏମିତି ଯଦି ଜଗତଯାକ ମରି ଯାଉଥାନ୍ତେ, ତେବେ ଆଉ ଔଷଧ ମଉଷଧି ଲୋକେ କରନ୍ତେ କି? ସବୁ ଔଷଧ ତ ଚେର ମୂଳରୁ ତିଆରି। ତଥାପି ଶଙ୍କରୀ ହାତ ଗଲା ନାହିଁ।

(୧) ସଫଳତା, (୨) ବଡ଼େଇ, (୩) ମଜୁରି, ମୂଲ, (୪) ଜଣାଯିବ, (୫) ରାଜି କରାଇବା।

ସେତେବେଳକୁ ରାତି ନଅଟା। ଢେମା ପୁଣି ଥରେ ଆସି ତା ଦୁଆରେ ଡାକିଲା– ''ମଝିଆ ସାଆନ୍ତାଣି! ଶୋଇଲଣି କି?'' ସାଆନ୍ତାଣୀ ଉଠି ଦୁଆର ଫିଟାଇଲେ। ଦାସୀ ଭିତରେ ପ୍ରବେଶ କଲାରୁ କବାଟ କିଳିଦେଲେ। ଢେମା ଅନୁନୟକରି କହିଲା–''ଆଉ ଗୋଟିଏ ଦିନ। ତେଣିକି ତମେ ଜାଣ! ତା ଗୁଣ ତ ଚାଲିଯିବ।'' ଶଙ୍କରୀ ଭୟରେ କହିଲା–''ମୁଁ ଦେଇପାରିବି ନାହିଁ ଲୋ ଢେମା! ଟୋକାଟା ମତେ ବଡ଼ ସୁଖପାଏ, ବିଷ ଫିସ ହୋଇଥିବ, ଜାଣୁ ଜାଣୁ କଣ ସ୍ୱାମୀର କୂଳ ବୁଡ଼େଇବି?'' ଢେମା ତାର ଭୟଦେଖି କହିଲା–''ଆଣ ଦିଅ, ମୁଁ ଦେବି, ତମର ଯୋଉ ଡର!'' ଶଙ୍କରୀ କିଛି ଉତ୍ତର ନ ଦେଇ ତୁନି ହୋଇ ରହିଲା। ଢେମା ବଳେ ବଳେ କୁଞ୍ଚି କାଠିଟା ନେଇ ଆଲମାରୀ ଫିଟାଇ, ଚେର ଖଣ୍ଡିକ ଘେନିଗଲା। ଶଙ୍କରୀ କିଛି ବେଳ ତୁନିହୋଇ ବିଛଣାରେ ପଡ଼ିଲା, ସେ ରାତିରେ ସେମିତି ପଡ଼ିରହିଲା, ତା ପାଟିକି ଭାତଗଲା ନାହିଁ। ଭାବିଲା 'ଯଦି ବିଷ ହୋଇଥାଏ, ଯଦି ଅମୂଲ୍ୟ ମରିଯାଏ, ତାହା ହେଲେ ତ ସର୍ବନାଶ, ଦୁର୍ଭାବନାରେ ତା ପ୍ରାଣ କମ୍ପିଉଠିଲା। ବଡ଼ି ପାହାନ୍ତାରୁ ସେ ଉଠି ବାରି ଅଗଣା କୂଅମୂଳକୁ ଗଲା। ଗାଧୁଆ ସାରି ଫୁଲ ଦିଓଟି ନିଜ ହାତରେ ତୋଳି ଦିଅଁ ପୂଜିବସିଲା। ଜଗନ୍ନାଥଙ୍କ କତିରେ ବାରମ୍ବାର ମୁଣ୍ଡିଆମାରି ଜଣାଇଲା–'ଟୋକାଟାର ଯେପରି କିଛି କ୍ଷତିହୁଏ।' ତା ମନ ତର୍କ କଲା, ମା ସିନା ଶତ୍ରୁ, ପୁଅ ତ ନୁହେଁ, ସେ ତ ତା ସ୍ୱାମୀର ଫଳ। ତା ପୂଜା ସରି ନ ଥାଏ, ଅମୂଲ୍ୟ ଆସି ଦୁଆରେ ଡାକିଲା–''ବଡ଼ ମା! ମତେ ପରା କଣ ଦବ କହିଥିଲ, ଦିଅ। ଶଙ୍କରୀ ଉଠି ଦୁଆର ମେଲାଇ ଅମୂଲ୍ୟକୁ ଭିତରକୁ ଡାକିଲା। ଆଜି ତା ଆଖିରେ ଅମୂଲ୍ୟ ବଡ଼ ସୁନ୍ଦର ଦିଶିଲା। ତାହାର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟେଙ୍ଗରେ ସ୍ୱାମୀ ଦେହର ସାଦୃଶ୍ୟ ଦେଖି ତାକୁ ଆଦର କରିବାକୁ ତା ପ୍ରାଣ ଆତୁର ହୋଇ ଉଠିଲା। ସେ ଆପଣା ପୁଅ ପରି ଅମୂଲ୍ୟକୁ ଆପଣା କୋଳକୁ ଆଉଜାଇ ନେଲା, ପିଠି ଆଉଁସି ଦେଲା। ଥାଳିଆରେ ରସଗୋଲା ରଖିଥିଲା, କାଢ଼ି ଖାଇବାକୁ ଦେଲା। ସେଠୁ ସିନ୍ଦୁକ ଫଟାଇ ଗୋଟିଏ ସୁନାମୁଦି କାଢ଼ିଲା।

ବଡ଼ ସୁନ୍ଦର ହୀରାବସା ମୁଦି, ସେଥିରେ ଦିବାକରର ନାମ ଅଙ୍କିତ। ସେହିଟି ଶଙ୍କରୀ ନୂଆ ଭୂଆସୁଣୀ ହୋଇ ଆସିଲା ଦିନୁ ତା କତିରେ ଥିଲା। ଦିନେ ସେ ବାକ୍ସ ସଜାଡୁ ସଜାଡୁ ଅମୂଲ୍ୟ ଆଖିରେ ପଡ଼ିଗଲା। ଅମୂଲ୍ୟ ତାହା ନେବାକୁ ବହୁତ ଅଳି କରିଥିଲା, ଶଙ୍କରୀ ଦେଇ ନ ଥିଲା; ମାତ୍ର ଯୋଗୀଠୁଁ ଔଷଧ ଆଣିଲା ଦିନୁଁ ମାଠୁଁ ଛଡ଼େଇବ ଭାବି ତାକୁ ବେଶି ଦେଖି ଆଦର କରିବାକୁ ଆରମ୍ଭକଲା। ଅମୂଲ୍ୟ ଗଲା ପରେ ତା ମନରେ ହେଲା–''ଢେମା କଥା ଠିକ୍, ଲୋକେ କଣ ଚେରମୂଳ ଖାଉନାହାନ୍ତି, କାହିଁ କାଲିଠୁଁ ନେଲାଣି ଏତେବେଳଯାଏ କଣ ଦେଇ ନ ଥିବ? ବିଷ ହୋଇଥିଲେ--।' ସେ ଆଉ ଭାବିପାରିଲା ନାହିଁ। ଅମୂଲ୍ୟର ଗୌର ସୁନ୍ଦର ମୁଖ ତା ହୃଦୟରେ ଭାସିଉଠିଲା। ଏତେଦିନ ଯାହାକୁ ସେ ଲୋକଦେଖାଣିଆ ଆଦରକରିଥିଲା, ଏବେ ତା ପାଇଁ ପ୍ରକୃତରେ ତାହାର ଅନ୍ତର ସନ୍ତାନ ବାତ୍ସଲ୍ୟରେ ପୂର୍ଣ୍ଣ

ହୋଇଗଲା। ତାକୁ କୋଳରେ ଘେନି ସନ୍ତାନର ଆକାଂକ୍ଷା ପୂର୍ଣ୍ଣକରିବାକୁ ତା ପ୍ରାଣ ତୃଷିତା ହୋଇ ଉଠିଲା। ସେ ନିଜେ ଅନୁଭବ କଲା, ସେ ମଧ ମା। ଜନ୍ମ ନ ଜଲେ ସୁଦ୍ଧା ଜନନୀର ପ୍ରାଣ ତାଠି ଅଛି। ଆତ୍ମାର ଆବେଗରେ ଭାବିଲା–''ଅମୂଲ୍ୟ ମୋର ପୁଅ, ମୋର ସ୍ୱାମୀର ପୁଅ ଯେତେବେଳେ, ସେ ମୋ ପୁଅ। ମହାପ୍ରଭୁ ତାକୁ କୋଟି ପରମାୟୁ ଦେଇଥାନ୍ତୁ।'' ମନେ ମନେ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ନମସ୍କାରକରି ସେ ପିଣ୍ଡାରେ ଯାଇ ବସିଲା।

ଅମୂଲ୍ୟ ଅତି ସୁନ୍ଦର ମୁଦିଟି ପିନ୍ଧି ଏକାବେଳେ ଦଉଡ଼ି ଗଲା ମା କତିକି। ମା ପୁଅ ପାଇଁ ସେତେବେଳେ ଜଳଖିଆ ସଜାଡୁ ଥିଲେ। ପାଖରେ ବସିପଡ଼ି ଡାହାଣ ହାତର ଅନାମିକା ଅଙ୍ଗୁଳି ଦେଖାଇ କହିଲା–''ହେଇ ଲୋ ମା! ବଡ଼ମା ମତେ କି ସୁନ୍ଦର ମୁଦିଟି ଦେଇଛି ବାପାଙ୍କର। ଅମୂଲ୍ୟ ଦିବାକରଙ୍କର ଶିକ୍ଷା ଫଳରେ ବ୍ରାହ୍ମଣ ଘର ପ୍ରଚଳିତ ''ନନା'' ଆଦି ଡାକ ଡାକୁ ନ ଥିଲା। ସୀତା କିଛିକ୍ଷଣ ମୁଦିଟିକୁ ଚାହିଁ କହିଲା–''ବାପା! ମୁଁ ତତେ ବାରଂବାର ମନା କଲି, ତୁ କାହିଁକି ଶତ୍ରୁ ଦୁଆରକୁ ଯାଉଛୁ କହିଲୁ?'' ଅମୂଲ୍ୟ ହସି ହସି କହିଲା– ''କଣ ହେଲା, ସେ ତ ବଡ଼ ମା, ବଡ଼ ମା କାହିଁକି ଶତ୍ରୁ ହବ ମ? ତୁମେ ତମ ଭିତରେ ବାଡ଼ିଆପିଟା ହୁଅ ପଛକେ, ମୁଁ ତୋର ଯେମିତି ପୁଅ, ତାର ସେମିତି ପୁଅ। ସେ କଣ ମତେ ଅସୁଖ ପାଏ?'' ''ତତେ ଶତ୍ରୁର ଅସୁଖ ନ ପାଉ ରେ'' ଏହା କହି ସୀତା ଜଳଖିଆ ଥାଳିଆ ଥୋଇଲାକୁ ଅମୂଲ୍ୟ କହିଲା–''ମୁଁ ପରା ବଡ଼ମା କତିରେ ଜଳଖିଆ ଖାଇ ଆସିଛି, ଥାଉ, ପଛେ ଆସିଲେ ଖାଇବି।''

ସୀତାର ଡାହାଣ ଆଖିଟା ଡେଇଁଉଠିଲା। ସେ ଅଶୁଭ ଲକ୍ଷଣ ଭାବି କହିଲା–''ପୁଅ! ତତେ ଆଉ କେତେ କହିବି? ଶତ୍ରୁଙ୍କ ଦୁଆରକୁ ଯିବୁ ନାହିଁ, ତାଙ୍କଠୁ କିଛି ଖାଇବୁ ନାହିଁ, ହେଲେ ତୁ ଶୁଣିଲା ପୁଅ ନୋହୁ।'' ସୀତା ପୁଅ ଉପରେ ମାନମାରି ମୁହଁ ବୁଲାଇଦେଲା। ଅମୂଲ୍ୟ ଆଦରରେ ମାର ଗଳାଛନ୍ଦି କହିଲା–''ମା ଲୋ! ତୁ ବୁଝୁନାହୁଁ, ବଡ଼ମା ମତେ ଭାରି ସୁଖପାଏ, ମୁଁ ଯଦି ତାକୁ ଅଣହେଳା କରିବି, ଲୋକେ କଣ କହିବେ, ବାପା କଣ ବିଚାରିବେ? ବୈକୁଣ୍ଠରେ ଥାଇ ବାପା କଣ ସବୁ ଦେଖୁ ନାହାନ୍ତି? ତାଙ୍କ ଅମୂଲ୍ୟ ସୁନାପୁଅ ହବ, ଏଇଯା ତ ସେ ଚାହାନ୍ତି?'' ବାପର ସ୍ମୃତିରେ ତାର ପଦ୍ମଆଖି ଦିଓଟି ଓଦାହୋଇଗଲା। ସୀତାର ଆଖିରୁ ମଧ ପାଣିବୋହିଲା। ଅମୂଲ୍ୟ ବାଁ ହାତ ପିଠିରେ ଲୁହପୋଛି କହିଲା–''ମାଷ୍ଟର ବାବୁ କହିଛନ୍ତି, ଏଥର ମୁଁ ପରୀକ୍ଷାରେ ପ୍ରଥମ ହେବି। ଆଉ ପୂଜା ଛୁଟି ସଇଲା ଯାକେ ଏଠି ରହିବିନି, ମୁଁ ଏତେ ସ୍କୁଲ ମାରା କରିପାରିବି ନାହିଁ।''

''ତୁ କଟକ ଗଲେ ଏଥର ମୁଁ ତୋ ସାଙ୍ଗରେ ଯିବି।''

''ତୁ ଏକା ଯିବୁନାହିଁ, ବଡ଼ମାକୁ ସାଙ୍ଗରେ ନବୁ, ସେ ଏକୁଟିଆଟା କଣ ଏଠି ପଡ଼ି ରହିବ?''

''ଆଉ ଏ ଘରଗୁଡ଼ାକ କିଏ ଦେଖିବ ରେ ବାପ!''

''କାହିଁକି, ମୋତିହରିକା ରହିବେ ନାହିଁ? ଲଖମା ନାନୀକୁ ରଖି ଯିବୁନାହିଁ?''

ଯେତେହେଲେ ସେମାନେ ପର।''

କିନ୍ତୁ ବଡ଼ମା ଏଠି କାନ୍ଦି ବୋବେଇ ପଡ଼ିଥିବ, ଆଉ ଆମେ ମା ପୁଅ କଟକରେ ସୁଖରେ ରହିବୁଁ, ତା ହବ ନାହିଁ। ନୋହିଲେ ମତେ ଅଜା ବସାରେ ଛାଡ଼ି ଦେ? ମୁଁ ମରଦପୁଅ, କଣ ଏକା ଚଳିପାରିବି ନାହିଁ?''

ସୀତା ପରମ ସ୍ନେହରେ ପୁଅ ପିଠିରେ ହାତବୁଲାଇ କହିଲା–''ତୋର ସେଠି କିଏ ସେବାକରିବ ରେ?''

ଅମୂଲ୍ୟ ହସିଦେଇ କହିଲା–''ମୋର ସେବା କଣ ଲୋଡ଼ା, ଗଣ୍ଡିଏ ଖାଇବି, ଖଣ୍ଡେ ପିନ୍ଧିବି, ପଢ଼ିବାକୁ ଯିବି। ପିଲାଙ୍କ ସାଙ୍ଗରେ ଖେଳିବି, ବୁଲିବି। ମୋତିକି ମୋ କତିରେ ଛାଡ଼ି ଦବୁ। ମୁଁ ଏକା ଚଳିପାରିବି ଯେ।''

ଶରଧା ଆସି କହିଲା–''ମାଷ୍ଟର ବାବୁ ଅଇଲେଣି।'' ଅମୂଲ୍ୟ ଧଡ଼ପଡ଼ ହୋଇ ଉଠି, ବହିଧରି ପଢ଼ିବାକୁ ବାହାରିଗଲା। ସୀତା ତା ପଛରେ ଚାହିଁ ତାକୁ କୋଟି କୋଟି ସ୍ନେହଶୀର୍ବାଦ ଦେବାକୁ ଲାଗିଲା। ଏଇ ଖଣ୍ଡିକ ଜଗତରେ ତାହାର ଜୀବନର ଏକମାତ୍ର ଅବଲମ୍ବନ। ଜୀବନରେ ସେ ଯାହା ପାଇଥିଲା, ଯେଉଁମାନଙ୍କୁ ପାଇଥିଲା, ସମସ୍ତଙ୍କ ହରାଇଛି। ଏ ଖଣ୍ଡିକ ଆଜି ତାର ସଂସାରରେ ବଞ୍ଚିବାର କାରଣ, ତାର ଜୀବନସୂତ୍ରର ଗଣ୍ଠି। ମା ପୁଅ ଏକା ଘରେ ଶୁଅନ୍ତି। ଗୋଟିଏ ପଲଙ୍କରେ ସୀତା ଶୁଏ, ଆଉ ଗୋଟିକରେ ଅମୂଲ୍ୟ ଶୁଏ। ଦାଣ୍ଡ ପିଣ୍ଡାରେ ମୋତି ଓ ଶରଧା ଶୋଇଥାନ୍ତି।

ସେତେବେଳେ ରାତି ଦୁଇଟା। ସୀତା ଗାଢ଼ନିଦ୍ରାଭିଭୂତା। ସ୍ୱପ୍ନ ଦେଖୁଛି, ସେ ଗୋଟିଏ ରମଣୀୟ କାନନରେ ବୁଲୁଛି। ଚାରିଆଡ଼େ ନାନାପ୍ରକାର ଫୁଲଗଛ, ପକ୍ଷୀମାନେ ବିବିଧ କାକଳୀନିରତ, ସେ ପରମସୁଖରେ ସେ କାନନରେ ବୁଲୁଛି। ହଠାତ୍ ଗୋଟାଏ ଦିଗରୁ ତାହାର ସ୍ୱାମୀ ଆସି ପହଞ୍ଚିଗଲେ। ଆସି ତାହାରି କତିରେ ବସିଲେ। ସେ ସ୍ପଷ୍ଟ ଦେଖିଲା– ଗୋଡ଼ତଳେ ତାହାର ଶିଶୁ ଅମୂଲ୍ୟମୋହାନ ଖେଳୁଛି, ପିଲା ତା ମୁହଁକୁ ଅନାଇଁ ହସି ହସି କୋଳରେ ଝାମ୍ପି ପଡ଼ିବାକୁ ଚେଷ୍ଟାକରୁଛି। ସେତେବେଳେ ନବୀନ ସୂର୍ଯ୍ୟୋଦୟର ମଧୁର କିରଣରେ ଆକାଶମଣ୍ଡଳ ବ୍ୟାପ୍ତ। ସୀତା ପୁଅ ମୁହଁକୁ ଚାହିଁ ହସୁଛି। ଦିବାକର କହିଲେ–''ସୀତା, ମୁଁ ପୁଅକୁ ଘେନିଯାଉଛି।'' ଏହା କହି ପିଲାକୁ କୋଳକୁ ନେଲେ। ହଠାତ୍ ଚାରିଆଡ଼ ଅନ୍ଧାର ହୋଇଗଲା। ଭୟଙ୍କର ମେଘ-ବିଜୁଳି-ବଜ୍ରନାଦ। ସେ ରମ୍ୟ ଉପବନ, ସେ ବିହଙ୍ଗକାକଳୀ ଲୁଚିଗଲା। ସୀତା ସେ ଅରଣ୍ୟରେ ଏକାକୀ। ତାର ସ୍ୱାମୀ ନାହିଁ–ତାର ପୁଅ ନାହିଁ; କିନ୍ତୁ ପାଦ କତିରେ ପ୍ରକାଣ୍ଡ କଳା ନାଗସାପ କାମୁଡ଼ିବାକୁ ଫଣା ବିସ୍ତାରକରି ମୁଣ୍ଡଟେକି ଛଡ଼ାହୋଇଛି।

ଚିତ୍କାର କରି ତାର ନିଦ ଭାଙ୍ଗିଗଲା। ଝାଳରେ ଦେହ ଗୋଟାସୁଦ୍ଧା ବୁଡ଼ିଗଲା। ତାର ଚିତ୍କାରରେ ମୋତି, ଶରଧା ଉଠି ଧାଇଁଆସିଲେ। ଦୀପ ତେଜି ଦେଖିଲେ, କାହିଁ କିଛି ନାହିଁ। ଘରର ଅନ୍ଧି ସନ୍ଧି ସବୁ ଖୋଜିଲେ, ମାତ୍ର କିଛି ମିଳିଲା ନାହିଁ। ମା ତାର ଚିତ୍କାରରେ ଅମୂଲ୍ୟ ଆଖି ମେଲାଇଲା। ମା, ମା କହି କାନ୍ଦିଉଠିଲା। ସୀତା ଖଟ କତିକି ଯାଇ ପଚାରିଲା– ''ବାବା!'' ଅମୂଲ୍ୟ କାନ୍ଦକାନ୍ଦ ହୋଇ ବସିପଡ଼ି କହିଲା–''ମା, ତଣ୍ଟି ପୋଡ଼ିଯାଉଛି, ମୋ ମୁଣ୍ଡ କଣ ହଉଛି।'' ଆଉ କହିପାରିଲା ନାହିଁ, ସେ ମୂର୍ଚ୍ଛା ହୋଇଗଲା। ଉଆସର ସମସ୍ତେ ଘେରିବସିଲେ। କାନ୍ଦ ବୋବାଳି ଚହଳରେ ଶଙ୍କରୀ ମଧ୍ୟ ଆପଣା ଘରୁ ବାହାରି ଆସିଲା। ତାକୁ ଦେଖି ସୀତା ହୃଦୟରେ ବଡ଼ବାନଳର ଶିଖା ଜଳିଉଠିଲା। ସେ ଚିତ୍କାରକରି କହିଲା– ''ଆଉ କଣ ଦେଖିବାକୁ ଆସିଛୁ?'' ଅଶ୍ରୁରେ ତା କଣ୍ଠ ରୁଦ୍ଧ ହୋଇଗଲା। ଶଙ୍କରୀ ବକାଙ୍କ ଭଳି ତାଟକା ହୋଇ ଖଟ ବାଡ଼ ଧରି ଠିଆ ହେଲା। ସମସ୍ତଙ୍କ ହାତ ଥରୁଛି। କାହାରି ବୁଦ୍ଧିବଳ କିଛି ନାହିଁ। ଘରେ କିଏ ବା କଣ ଜାଣେ? ଅନେକ ପ୍ରକାର ଛିଞ୍ଚା ବିଞ୍ଚା ଚାଲିଲା–ଚିକିତ୍ସକ ବାସୁଦେବ କର ଆସି ରୋଗୀକୁ ପରୀକ୍ଷା କରି ବସିଲେ। କଣ ହୋଇଛି, କଣ ହୋଇଛି କହି ସମସ୍ତେ ତାଙ୍କ ବ୍ୟସ୍ତ କରିପକାଇଲେ। ଅନେକ କ୍ଷଣ ପରୀକ୍ଷା କଲେ–ମୂର୍ଚ୍ଛା ଭାଙ୍ଗିବାପାଇଁ ଅନେକ ଔଷଧ ଦେଲା ପରେ ଅମୂଲ୍ୟ ଆଖି ମେଲାଇଲା। ସମସ୍ତଙ୍କର ଟିକିଏ ଆଶା ହେଲା, ଶଙ୍କରୀ ଗଳାର ସୁନାମାଳ କାଢ଼ି ଚିକିତ୍ସକଙ୍କ ହାତରେ ଦେଲା। ତା ଆଖି ଫାଟି ଲୁହ ଝରଝର ବୋହୁଥିଲା। ସାବତ ମାର ଏତେ ପ୍ରେମ ଦେଖି ବାସୁଦେବ ସ୍ତମ୍ଭିତ ହୋଇଗଲେ। କିଛିକ୍ଷଣ ପୂର୍ବେ ତାଙ୍କ ମନରେ ନାନା ପାପ ସନ୍ଦେହ ପ୍ରବେଶ କରିଥିଲା, ମାତ୍ର ଏ ବ୍ୟବହାରରେ ତାହା ଦୂର ହୋଇଗଲା। କିନ୍ତୁ ପରକ୍ଷଣରେ ସମସ୍ତ ଅନ୍ଧକାର। ନୀବନ ସୂର୍ଯ୍ୟୋଦୟରେ ମଧୁରକାନ୍ତି ପ୍ରକୃତି ନବବେଶ ଧାରଣ କରି ହସିବାକୁ ଲାଗିଲା। ପିଞ୍ଜରାର ଶୁଆ ସାରୀ ଡାକି ଉଠିଲେ। ଦୁଆର ବନ୍ଧ ଉପରେ ଝରକା ବାଡ଼ ଉପରେ ଖରାର ପହିଲି ରେଖା ଦିଶିଲା। ଚାରିଆଡ଼ ଜୀବନରେ ପୂରି ଉଠିଲା–ମାତ୍ର ଜମିଦାର ଉଆସରେ ମହାମୃତ୍ୟୁର ଗଭୀର ଛାୟା ଘୋଟିଗଲା। ପୁତ୍ର ଶବ ଉପରେ ପଡ଼ି ମାତା ଚେତା ବୁଡ଼ିଗଲା। ଦାସଦାସୀ ଚିତ୍‌କାର କରି କାନ୍ଦିଉଠିଲେ। ମାତ୍ର କାନ୍ଦିଲା ନାହିଁ ଜଣେ–ସେ ଜଣକ ଶଙ୍କରୀ। ସ୍ୱହସ୍ତରେ ଯାହାର ପ୍ରାଣ ସେ ବଧକରିଛି, ତା ପାଇଁ ସେ କିମିତି କାନ୍ଦବ? ନିଜ ଦୁର୍ବୁଦ୍ଧିରେ ଯେ ଶ୍ୱଶୁରକୂଳ ବୁଡ଼େଇଛି, ସ୍ୱାମୀ ଶ୍ୱଶୁରଙ୍କୁ ପିଣ୍ଡରୁ ବଞ୍ଚିତକରିଛି, ସେ କଣ ବୋଲି କାନ୍ଦବ? ଅମୂଲ୍ୟ ମୃତ ମୁହଁକୁ ଚାହିଁ ତା ଛାତିଭିତରେ ରକ୍ତ ବରଫ ପରି ଜମିଗଲା। ସେ ବାୟାଣୀ ପରି ସେଠୁଁ ଉଠି ଚାଲିଗଲା। ତାହାର ଆଖି ଆଗରେ ସେତେବେଳେ ଜଗତ୍ ଭୀଷଣ ଅନ୍ଧକାରମୟ!

ଆପଣା ଘର କବାଟ କିଳି ଶଙ୍କରୀ ବିଛଣା ଉପରେ ବସିଲା। ତାହାର ରାକ୍ଷସୀ କ୍ଷୁଧା ତୃପ୍ତହୋଇଛି। ପେଟଭିତରୁ ନିଆଁ ନିଭିଛି। ସେ ଉଦାସ ଶୂନ୍ୟ ଦୃଷ୍ଟିରେ କାନ୍ଥ ବାଡ଼

ଚାରିଆଡ଼କୁ ଚାହିଁଲା। କଣ ବୋଲି ସେ କଣ କଲା? କାହିଁକି ସେ ଯା କଲା? କିପାଁ କ୍ଷେମା ଉଚ୍ଛବାର କଥାରେ ପଡ଼ିଲା; କିନ୍ତୁ ଆଉ ଭାବିଲେ କଣ ହେବ, ଏହାର ପ୍ରାୟଶ୍ଚିତ ସେ କରିବ, ନିଶ୍ଚୟ କରିବ। ଯେଉଁ ହାତରେ ଅମୂଲ୍ୟର ପ୍ରାଣ ନେଇଛି, ସେହି ହାତରେ ନିଜର ପ୍ରାଣ ନେବ। ଆଉ ଏ କଳାମୁହଁ ସେ ଜଗତରେ କାହାକୁ ଦେଖାଇବ ନାହିଁ। ଗୋଟାଏ ବିକଟ ଦୀପ୍ତିରେ ତାର ଆଖି ଯୋଡ଼ିକ ଜଳିଉଠିଲା। ସେ ମରିବାର ବାଟ ସ୍ଥିରକରିବାକୁ ଲାଗିଲା। ବାରିଆଡ଼ କୂଅମୂଳେ କନିଆର ଗଛଟିଏ ଫୁଲ ଫଳରେ ନଇଁ ପଡ଼ିଥିଲା। ସେ ତୁନି ତୁନି କୂଅମୂଳକୁ ଗଲା। କେତୋଟି ସରସ ଫଳ ଛିଣ୍ଡାଇ ଆଣିଲା। ଘରେ ପଶି ଭିତରୁ କବାଟ କିଳିଦେଲା। ତାକୁ ପାଟିରେ ଯାକି ଶୋଇଲା। କ୍ରମେ ହାତ ଗୋଡ଼ ଥଣ୍ଡା ହୋଇ ଆସିଲା–ଚେତା ବୁଡ଼ିଲା।

ଦିନ ଏଗାରଟାକୁ ପୋଲିସ ଇନ୍‌ସପେକ୍ଟର ବାବୁ ଶିବଚରଣ ଦାସ ଦଳବଳ ସହ ଆସି ତା ଦୁଆରେ ବହୁତ ଡାକହାକ କଲେ, କେହି ଜବାବ ନ ଦେବାରୁ ଶେଷକୁ କବାଟ ଭାଙ୍ଗିଲେ। ଭିତରେ ପଶି ସମସ୍ତଙ୍କର ଚକ୍ଷୁ ସ୍ଥିତ–ଖଟ ଉପରେ ଶୋଇଛି ଶଙ୍କରୀ; କିନ୍ତୁ ଦେହ ହାତ କୁଆପଥର ପରି–ପ୍ରାଣହୀନ। ପାଟିଭିତରେ କନିଆର ଫଳ। ମକଦ୍ଦମା ସରକାରକୁ ଗଲା।

ଶଙ୍କରୀ ଓ ଅମୂଲ୍ୟ ଏକାଦିନରେ ଚତାରେ ଭସ୍ମୀଭୂତ ହେଲେ। ସୀତା ଶୋକରେ, ଦୁଃଖରେ ମୃତପ୍ରାୟ ହୋଇ ବାପ ଘରକୁ ନୀତହେଲା। ବହୁଦିନ ସେ ବେମାର ପଡ଼ିଲା। ବେମାରରୁ ଭଲ ହୋଇ ଶୁଣିଲା–"ମୋକଦ୍ଦମାର ବିଚାରରେ କ୍ଷେମା ଓ ଉଚ୍ଛବାର କଳାପାଣି ହୋଇଛି, ଆଉ ଯୋଗୀ ନରଘାତକ ପ୍ରମାଣିତ ହୋଇ ଫାଶୀକାଠରେ ଝୁଲିଛି।

ଦିବାକରର କୂଳ ବୁଡ଼ିଲା। ଲକ୍ଷ୍ମଣ ମିଶ୍ରର ପିଲାମାନେ ଆସି ପିତୃବ୍ୟ ସଂପତ୍ତି ଅଧିକାର କରିବସିଲେ। ଯେ ଯେତେ ବୁଝାଇଲେ ସୀତା ଆଉ ପୋଷ୍ୟପୁତ୍ର ଘେନିଲା ନାହିଁ। ତାର ତ ଅମୂଲ୍ୟ ଯାଇଛି, ପୋଷାପୁଅ–ଗୁଣ୍ଡାଗୁଅ, ସେ କଣ ତା ହୃଦୟର କ୍ଷତ ସ୍ଥାନ ଶୁଷ୍କ କରିବ?



## ଚତୁସ୍ତ୍ରିଂଶ ଅଧ୍ୟାୟ

ବିସ୍ତୃତ ତାଳବନ ଉପରେ ଅପରାହ୍ଣ ସୂର୍ଯ୍ୟର ମଳିନ ରଶ୍ମି ନୃତ୍ୟ କରୁଥିଲା। ପତ୍ରହୀନ ଖୁଣ୍ଟା ଉପରେ ବସିଥିଲା ଗୋଟିଏ ନୀଳବର୍ଣ୍ଣର ଭଦଭଦଳିଆ, ଗ୍ରାମ୍ୟପଥ ଦେଇ ଶଗଡ଼ ଅଡ଼ାଇ ଯାଉଥିଲେ ବର୍ମୀ କୃଷକବୃନ୍ଦ। ମୁଣ୍ଡରେ ଚାଉଳ ଟୋକେଇ, ଦେହରେ ରେସମୀ ପୋଷାକ, ପାଦରେ ମଖମଲ ଯୋତା, କାନରେ ହୀରା କର୍ଣ୍ଣଫୁଲ ଭୂଷିତ ହୋଇ ବର୍ମୀ ଯୁବତୀବୃନ୍ଦ ଲେସ୍ ବୁଣୁ ବୁଣୁ ଯାଉଥିଲେ ହାଟକୁ। ଦଳେ ଦଳେ ପିଲା ବାଟରେ ମାର୍ବୁଲ ଗୋଲି ଖେଳୁଥିଲେ।

ତାଙ୍କୁ ଚାହିଁ ଚାହିଁ ପଡ଼ିଆରେ ଚରୁଥିଲେ କେତୋଟି ମେଣ୍ଢା। କାଠ ଘରର ବିସ୍ତୃତ ବରଣ୍ଡାରେ ପାଦଚାରଣା କରୁଛି ରଘୁନାଥ। ସମ୍ମୁଖରେ ମୁକ୍ତ ପଡ଼ିଆରେ ହ୍ୟାଣ୍ଡବଲ୍ ଘେନି ଖେଳୁଛନ୍ତି ପିଲାଏ। ତାଙ୍କୁ ଚାହିଁ ତାହାର ପ୍ରାଣରେ ବିଷାଦ ଗଭୀର ଦୀର୍ଘନିଶ୍ୱାସ ଉଠୁଛି। ପିଲାଙ୍କର ମା ନାହିଁ। ଦିନେ ହସି ହସି ମାୟା ଯାହା କହିଥିଲା, ତାହାହିଁ ଘଟିଛି। ସ୍ୱାମୀ ଓ ଚାରି ପିଲାଙ୍କୁ ଅକୂଳ ସମୁଦ୍ରରେ ଭସାଇ ସେ ପରଲୋକ ଯାତ୍ରା କରୁଛି। ରେଙ୍ଗୁନରେ ଭୀଷଣ ପ୍ଲେଗ ଲାଗିଥିଲା, ହଠାତ୍ ଦିନକ ଜ୍ୱରରେ ତାହାର ମୃତ୍ୟୁହେଲା। ରଘୁନାଥ ପିଲାଙ୍କୁ ଘେନି ପେଗୁ ପଳାଇ ଆସିଲା। ବର୍ଷେ ହେଲା ସେ ପେଗୁରେ। ସଂସାରଗ୍ରୁ ତା ମନ ଛାଡ଼ିଯାଇଛି। ମାୟା ପରି ସ୍ତ୍ରୀରତ୍ନ ଯେ ହରାଇଛି, ତା ପରି ହତଭାଗ୍ୟ କିଏ ଅଛି ? ତଥାପି ରଘୁନାଥର ଦିନ ବହି ଚାଲି ଯାଉଛି। ଏଥି ମଧ୍ୟରେ ସୀତା ଘରର ଖବର କିଛି ପାଇ ନ ଥିଲା। ଆଜି ଡାକରେ ଜଗନ୍ନାଥଙ୍କର ଖଣ୍ଡେ ଚିଠି ଆସିଛି; ତାହା ପଢ଼ିଲାବେଳୁ ତାହାର ଭାବାନ୍ତର ଘଟିଛି।

ଜଗନ୍ନାଥ ଲେଖିଛନ୍ତି ଭୀଷଣ ସମ୍ବାଦ–'ସୀତାର ଏକମାତ୍ର ପୁତ୍ର ଅମୂଲ୍ୟ ଆଉ ଇହଜଗତରେ ନାହିଁ।' ସୀତା ବର୍ତ୍ତମାନ ବାପ-ଭାଇର କ୍ରୂର ଆଶ୍ରୟରେ। ଆଉ ସବୁଠାରୁ ଦୁଃଖର ବିଷୟ। ଭାଇ ଭାଉଜର ତା ପ୍ରତି ଅତ୍ୟାଚାର। ରଘୁନାଥ ଚାରିପୃଷ୍ଠାବ୍ୟାପୀ ସେ କରୁଣ ପତ୍ର ପାଠକଲା।

ତା ପ୍ରାଣରେ ବଡ଼ ବ୍ୟଥା ହେଲା, କିନ୍ତୁ ସଙ୍ଗେ ସଙ୍ଗେ ଅସମ୍ଭବ ଅଦ୍ଭୁତ ଅଭୂତ କଳ୍ପନାଗୁଡ଼ିଏ ତାହାର ଚିତ୍ତ ଅଧିକାର କଲେ। ସେ କାଠ ରେଲିଂ ବନ୍ଧରେ ଆଉଜି ପଡ଼ି ଦୂରାକାଶକୁ ଚାହିଁଲା। ବାସ୍ତବରେ ତା କଳ୍ପନା ଯଦି ସଫଳ ହୁଅନ୍ତା–କଣ ହୁଅନ୍ତା ? ଜଗତର ଅସମ୍ଭବ କଣ ? ଏ ଅବା କି ଗୁରୁତର କଥା। ସେ ବହୁଦିନର ପୁରୁଣା କଥା ସବୁ ମନେ ପକାଇଲା। ସେତେବେଳେ ସେ ବାଳକ, ସୀତା ବାଳିକା। ପରସ୍ପରକୁ ଦେଖିବାପାଇଁ ଉଭୟଙ୍କର କି ଆକୁଳ ଆକାଂକ୍ଷା। କୋଠା ଛାତ ଉପରୁ ସୀତା ତା ବାଟକୁ ଚାହିଁଥାଏ, ତାରିଆଡ଼େ କୂଅମୂଳେ ସୀତା ଲୁଚି ଲୁଚି ଯାଇ ତା ହାତରେ ଟଙ୍କା ପଇସା ଦେଇଆସେ। ଦିନେ ସେ କାନ୍ଦିଥିଲା। ସୀତା ପଣତ କାନିରେ ତା ଲୁହ ପୋଛିଥିଲା। ଆଉ ସେ ଦିନ, ସେ ବହୁଦିନ ତଳେ ରାଣୀହାଟ ଦଜାରକୁ ଯାଇ ତା ଲାଗି ଶିଙ୍ଘପାନିଆ, ଶିଙ୍ଘଫରୁଆ କିଣିଆଣିଥିଲା, ପୁଣି ଯୌବନର ସେ ମଧୁର ସ୍ମୃତି, ଲୁଚି ଲୁଚି ଆଖିରେ ଆଖିରେ କେତେ କଥା କି ରଘୁନାଥ ଜୀବନରେ ଭୁଲିପାରିବ ? ଆଜି ମଧ ତା କତିରେ ସେ ସୁନାସୂତା ଅଛି। ସ୍ମୃତିର ସଙ୍ଖାଳିପରି ଆଜି ମଧ ସୂତାଟିକୁ ସେ ବେଳେ ବେଳେ ଦେଖିଥାଏ। ଏଇ ସୂତା କେରାକ ଭିତରେ ତା ଜୀବନର ଇତିହାସ ଗୁପ୍ତରହିଛି, ଏହି ସୂତାଟି ତାକୁ ଦେଶାନ୍ତରୀ କରିଛି, ଜାତି ହରାଇଛି, ଦୂର ବର୍ମା ମୂଲକରେ ଆଣି ପକାଇଛି। ଏହି ସୂତା କେରାକ ଅବଲମ୍ବନରେ ସେ ପ୍ରେମମୟୀ ମାୟାକୁ ପାଇଛି, ଆଉ ତାର ମଧୁମୟ ପ୍ରେମତରୁର ଏ ଚାରୋଟି ଅପୂର୍ବ କୁସୁମ। ରଘୁନାଥ ବହୁକ୍ଷଣ ମାୟାକୁ ମନେପକାଇ ଅତି କାତର ହୋଇ କାନ୍ଦିଲା। ତା ଜୀବନରେ ସେ ଯୋଡ଼ିଏ

ସ୍ତ୍ରୀକୁ ଭଲ ପାଉଛି, ଯୋଡ଼ିକି ତା ଦୃଷ୍ଟିରେ ସମାନ—ଯୋଡ଼ିକି ତା ପ୍ରାଣର ଅମୂଲ୍ୟନିଧି। ମନ୍ଦ କର୍ମ-ଫଳରୁ ସେ ଦିଓଟିକୁ ହରାଇଛି। ତଥାପି ପ୍ରେମ ତ ତାର ମଳିନ ହୋଇ ନାହିଁ। ଯୋଡ଼ିଏ ତାର ହୃଦୟର ଶ୍ରେଷ୍ଠତମ ଆସନରେ ଆସୀନ, ତାର ଜୀବନ ବଂଶୀର ବିଷାଦ ଆନନ୍ଦର ଦିଓଟି ସ୍ୱର, ତାର ପ୍ରେମମୟ ହୃଦୟରେ ଗଙ୍ଗା ଯମୁନାର ଯୋଡ଼ିଏ ଧାରା। କେଉଁଠି କାହାର ଆରମ୍ଭ, କାହାର ଶେଷ, ସେ ସ୍ଥିରକରିପାରି ନାହିଁ। ସୀତାକୁ ଛାଡ଼ି ସେ ସୀତାକୁ ଭୁଲି ନାହିଁ। ମାୟାର ମୃତ୍ୟୁରେ ସେ ତାକୁ ଅନ୍ତରରେ ଅନ୍ତର କରି ନାହିଁ। ଦିଓଟି ତାର ଦୁଇ ଅଙ୍ଗ। ରଘୁନାଥ ଆଶ୍ଚର୍ଯ୍ୟ ହୋଇ ଭାବିଲା, ଅଦ୍ୟାପି ସୀତାକୁ ସେ ଭୁଲି ନାହିଁ କାହିଁକି ?

କଣ ଭଗବାନଙ୍କର ଏଇ ଇଚ୍ଛା ଥିଲା ? ଏତେ ଦୁଃଖ, ଏତେ ବିଚ୍ଛେଦ, ଏତେ ଶୋକ, ଏତେ ମୃତ୍ୟୁ ପରେ ଉଭୟର ମିଳନ ଭଗବାନଙ୍କର ଅଭିପ୍ରେତ ? ରଘୁନାଥ ଭବିଷ୍ୟତର ଉଜ୍ଜ୍ୱଳ ଚିତ୍ର ଆଖି ଆଗରେ ଦେଖିପାରିଲା। ଏଥର ସୀତାର ଦୁଃଖ ଅବସାନ ହେବ—ଏଥର ସେ ସୁଖୀହେବ। ଯେ ତାହାର ବିଚ୍ଛେଦର ଅହୋରାତ୍ର ତା ଛବି ଖଣ୍ଡିକ ପୂଜା କରିଛି। ସେ କଣ ପିତେଇ ନାନୀଠାରୁ ଶୁଣି ନାହିଁ ସବୁ, ସେ କଣ ଜାଣି ନାହିଁ ସୀତାର ହୃଦୟ ? ଏବେ ମଧ ସୀତା ଓ ତାର  ମିଳନ ହୋଇପାରେ, ପୃଥିବୀରେ ଅସମ୍ଭବ କଣ ? ଅଦ୍‌ଭୂଦ କଣ ? ଏଥର ସେ ସୀତାକୁ ସୁଖୀକରିବ, ତାକୁ ଅଙ୍କଲକ୍ଷ୍ମୀ କରିବ, ମାତୃହୀନ ପିଲାମାନେ ପୁଣି ନୂଆ ମା ପାଇବେ। କନ୍ୟାହୃତ ପିତା ପୁଣି ଝିଅଟିଏ ପାଇବେ, ଆଉ ସ୍ୱର୍ଗରେ ଥାଇ ଆଶୀର୍ବାଦ କରିବେ ତାକୁ ସରସ୍ୱତୀ—ସେଇ ସରସ୍ୱତୀ—ମାତୃ ହୃଦୟା, ଦୟାମୟୀ, ଦୀନ ଅନାଥର ଜନନୀ—ସେ ଯେ ତାଙ୍କର ଋଣ ପରିଶୋଧ କରିପାରି ନାହିଁ, ତାଙ୍କର ଅମୂଲ୍ୟ ସ୍ନେହର ପ୍ରତିଦାନ ଦେଇପାରି ନାହିଁ।

କଳ୍ପନାର ଆନନ୍ଦରେ ତାହାର ହୃଦୟ ପୂରିଉଠିଲା। ଏଥର ସେ ସମସ୍ତଙ୍କୁ ସୁଖୀ କରିବ। ବୃଦ୍ଧ ଜଗନ୍ନାଥ ଓ ତାରାମଣିଙ୍କୁ ସମାଜ ଦାଉରୁ ରକ୍ଷାକରିବ, ଆଉ ସ୍ନେହମୟୀ ପିତେଇ ନାନୀ— ତାହାରି ଆଶ୍ରୟରେ କାଳକାଟିବ। ପୁଣି ମନରେ ହେଲା, ସତେ ଯା ହେବ ? ସତେ ସୀତା ତାକୁ ବିଭାହେବାକୁ ସମ୍ମତହେବ। ହୃଦୟ କହିଲା— କିପାଁ ନ ହେବ ? ଚିର ନିର୍ଯ୍ୟାତିତା ଅବଳା— ସେ କିପାଁ ଆଉ କାହା ଲାଗି ରଘୁନାଥକୁ ତ୍ୟାଗକରିବ ? ଅବଶ୍ୟ ଜନ୍ମଗତ, ସମାଜଗତ କୁସଂସ୍କାର ସୀତାର ଥିବ, ତଥାପି ସେ ତାକୁ ପରାମର୍ଶ ଦେବ, ଶିକ୍ଷା ଦେବ, ସାମାନ୍ୟ ନାରୀ କଣ ତା କଥାରେ ଭୁଲିବ ନାହିଁ ? ବିଶେଷତଃ ତାହାର ପରମ ପ୍ରେମିକ କଥାରେ ? ଆଶାର ଆତିଶଯ୍ୟରେ ରଘୁନାଥକୁ ସମୁଦାୟ ଅତି ସହଜ ବୋଧହେଲା, ସେ ପକ୍ଷୀ ହୋଇଥିଲେ କେଜାଣି ସେହିକ୍ଷଣି ଉଡ଼ି ଚାଲିଯାଇଥାନ୍ତା; ମାତ୍ର ଦାରୁଣ କର୍ତ୍ତବ୍ୟ ତାହା କରିଦେଲା ନାହିଁ। ସବୁ କାମ ଅଜିତକୁ ଶିଖାଉ ଶିଖାଉ ତାକୁ ଆହୁରି ଛଅ ମାସ ଲାଗିଗଲା। ଗଭୀର ବିଶ୍ୱାସ ଓ ପରମାନନ୍ଦମୟ ଆଶାର କୁହୁକରେ ସେ ଦିନ ଗଣିଲା। ଯେଉଁ ଦିନ କଲିକତା

ଭୂଇଁରେ ସେ ପାଦ ଦେଲା, ସେଦିନ ସ୍ୱସ୍ତିର ଏକ ଅପୂର୍ବ ଉଲ୍ଲାସ ତାହାର ସର୍ବାଙ୍ଗ ଅଧିକାର କରି ପକାଇଲା।

ସଞ୍ଜବତୀ ଲଗାଇ ଫୁଲ ସେତେବେଳେ ସନ୍ଧ୍ୟାପରିଚ୍ଛଦ ପିନ୍ଧୁଥିଲା। ବେହେରାଣୀ ଆସି ସମ୍ବାଦ ଦେଲା ମିଷ୍ଟର ମହାପାତ୍ର ଆସିଛନ୍ତି। ସ୍ୱାମୀ ସ୍ତ୍ରୀ ଉଭୟେ ପୁରୁଣା ବନ୍ଧୁଙ୍କୁ ପାଛୋଟି ଘର ଭିତରକୁ ଆଣିଲେ। ଡାକ୍ତର ବାବୁ ଓ ତାଙ୍କ ସ୍ତ୍ରୀ ଆଜିକାଲି ବଡ଼ କାର୍ଯ୍ୟରେ ବ୍ୟସ୍ତ। ଜ୍ୟୋତିଷ ଡାକ୍ତରଙ୍କର ଦତ୍ତ ସଂପତ୍ତିରେ କଲ୍ୟାଣୀଭବନ ପ୍ରତିଷ୍ଠିତ ହୋଇଅଛି। ସେଠି ଶତାଧିକ ବିଧବା ଓ କୂଳତ୍ୟାଗିନୀ ଅନାଥା ଆଶ୍ରୟ ଲାଭକରିଛନ୍ତି। ଫୁଲ ଓ ତାରକ ବାବୁ ସେମାନଙ୍କର ମା ବାପ ହୋଇଛନ୍ତି। ଦୁଇଘଣ୍ଟା କାଳ ବୁଲି ବୁଲି ରଘୁନାଥ ସବୁ ଦେଖିଲା। ବିସ୍ମୟରେ ତାହାର ହୃଦୟ ପୂର୍ଣ୍ଣ ହୋଇଗଲା। ସେ ତା ଖାଉ ଖାଉ କାଢ଼ିଲା ଆପଣା କଥା। ଭାଇର ପୁଅ ମରି ଯାଇଛି ବୋଲି ଫୁଲର ବଡ଼ ଦୁଃଖହେଲା। କିନ୍ତୁ ପରକ୍ଷଣରେ ସେ ଶୁଣିଲା ରଘୁନନାଥର ଅପୂର୍ବ ଇତିହାସ। ସ୍ୱାମୀ ସ୍ତ୍ରୀ ନିବିଷ୍ଟଚିତ୍ତରେ ଶୁଣିଲେ। ସୀତାକୁ ବିବାହ କରିବାକୁ ରଘୁନାଥ ଇଚ୍ଛୁକ, ଏହା ଶୁଣି ଅତ୍ୟନ୍ତ ସୁଖୀ ହେଲେ। ଆପଣା କାର୍ଯ୍ୟର ସମର୍ଥକ ପାଇଲେ କିଏ ବା ଆନନ୍ଦିତ ନ ହେବ? ସ୍ଥିରହେଲା ସେ ସ୍ଥାନରେ ସୀତାଆସି ରହିବ।

ରଘୁନାଥକୁ କଟକ ବିଦାୟ ଦେଇ, ଫୁଲ ବୋହୂର ଆଗମନ ବାଟକୁ ଚାହିଁରହିଲା। ବିଧବାବିବାହ ତା ଦୃଷ୍ଟିରେ ଦୋଷାବହ ନୁହେଁ। ସେ ନିଜେ ବୈଧବ୍ୟଯନ୍ତ୍ରଣା ଭୋଗକରିଛି। ଆପଣାର ଅତୀତ ଜୀବନ ସ୍ମରଣକରି ତା ମନ ସୀତା ପ୍ରତି ସହାନୁଭୂତିରେ ପୂର୍ଣ୍ଣହୋଇ ଉଠିଲା। ତାହାର ଧ୍ରୁବ ଧାରଣାହେଲା, ସୀତା ନିଶ୍ଚୟ ରଘୁନାଥକୁ ଏଥର ବିବାହକରିବ। ହାତ କତିରେ ଅମୂଲ୍ୟ ପଦାର୍ଥ ପାଇ କିଏ ବା ତ୍ୟାଗ କରେ?

ମିଷ୍ଟର ସେନ୍ ଆସି ତା ପଛ ଆଡ଼େ ଛିଡ଼ା ହେଲେ। ତାକୁ ଚିନ୍ତାନ୍ୱିତ ଦେଖି କହିଲେ–''କଣ ଚିନ୍ତା କରୁଛ ଭାୟୋଲା?''

ଭାୟୋଲା କହିଲା 'ମୁଁ ସୀତା କଥା ଭାବୁଛି। ସତେ କଣ ସେ ରଘୁନାଥ ବାବୁଙ୍କୁ ବିଭାହବ, ତମର ବିଶ୍ୱାସ?

ତାରକ ବାବୁ ଆକାଶକୁ ଅନାଇଁ କହିଲେ–''କେମିତି କହିବି କହିଲ?'' ଫୁଲ କହିଲା–''ଯଦି ବିଭାହୁଏ, କ୍ଷତି କଣ? ମୁଁ ମୋ କଥା ଭାବୁଛି।''

ଏହା ପରେ ମନର କୋହ ମନରେ ମାରି ଗଭୀର ପ୍ରେମରେ ସ୍ୱାମୀ ମୁହଁକୁ ଚାହିଁ କହିଲା–'କିନ୍ତୁ ତମେ ମହାତ୍ମା ବୋଲି ସିନା ମତେ ଉଦ୍ଧାରକରିଛ?'

ତାରକ ବାବୁ ଧୀର କଣ୍ଠରେ କହିଲେ–''ଭାୟୋଲା! ଯୀଶୁ ତମକୁ ଉଦ୍ଧାର କରିଛନ୍ତି। ସେ ତମପାଇଁ ଆପଣାର ରକ୍ତ ଢାଳିଦେଇଛନ୍ତି।''

''ହଁ, ମୋର ପାପ ସିନ୍ଦୂର ବର୍ଣ୍ଣ ହେଲେ ହେଁ, ସେ ମେଷଲୋମତୁଲ୍ୟ ଶୁକ୍ଳ କରିଛନ୍ତି। ତାଙ୍କ କତିକି ଆସି ମୁଁ ଜୀବନ ପାଇଛି। ପ୍ରିୟତମ! କିପରି କହିବି ସେ ପ୍ରଭୁ ମୋର କିପରି ପ୍ରାଣାଧିକ ପ୍ରିୟ।''

ତାରକ ବାବୁ ପତ୍ନୀର ଧର୍ମଭାବରେ ମୋହିତ ହୋଇ କହିଲେ–''ଭାଯୋଲା! ତମେ ପ୍ରକୃତ ଖ୍ରୀଷ୍ଟିୟାନ, ଅନ୍ଧକାରରୁ ପ୍ରଭୁ ତମକୁ ଜ୍ୟୋତିକି ଆଣିଛନ୍ତି।''

''ସେହି ଯୋଗୁଁ ଏ ହାତ ତାଙ୍କର କାର୍ଯ୍ୟ କରିବ, ଏ ଗୋଡ଼ ତାଙ୍କରିପାଇଁ ଚାଲିବ, ଏ ଜିହ୍ୱା ତାଙ୍କରି ଗୁଣଗାନ କରିବ।'' ଭଓୋଲା ପ୍ରାର୍ଥନାର ବେଳ ହେଲାଣି ଦେଖି ଧର୍ମ ପୁସ୍ତକ, ଗୀତ ପୁସ୍ତକ ଆଣି ମଝିଘରେ ଥୋଇଲା। ସ୍ତ୍ରୀ, ବାଳିକା ସମସ୍ତେ ଗୋଟି ଗୋଟି ହୋଇ ଆସି ଆଣ୍ଠୁମାଡ଼ି ଭକ୍ତିଭାବରେ ଉପବେଶନ କଲେ। ଫୁଲ ସେମାନଙ୍କ କତିରେ ଝିଅ ଦୋ'ଟିକୁ ନେଇ ବସିଲା। ତାରକ ବାବୁ ଉପାସନା କଲେ, ବାଇବେଲ ଗ୍ରନ୍ଥରୁ ପାଠକଲେ,– ''ଯେପରି କଦାପି ଆମ୍ଭମାନଙ୍କ ମଧ୍ୟରୁ କୌଣସି ଲୋକ ଆଉ ଆପଣା ନିମନ୍ତେ ନ ବଞ୍ଚୁ ଅବା ଆପଣା ପାଇଁ ନ କରୁ, ମାତ୍ର ଆମ୍ଭମାନଙ୍କର ବଞ୍ଚିବାର ଓ ମରିବାର କେବଳ ପ୍ରଭୁଙ୍କ ନିମିତ୍ତ ହେଉ।'' ସମସ୍ତେ ଭକ୍ତିଭାବରେ ତଥାସ୍ତୁ କହିଲେ। ଫୁଲମଞ୍ଜରୀର ଆଖିରୁ ଅଶ୍ରୁଧାର ବହିବାକୁ ଲାଗିଲା।

ରଘୁନାଥ କଟକକୁ ଆସି ଜଗନ୍ନାଥଙ୍କ ଘରେ ଉପସ୍ଥିତ ହେଲା। ହଠାତ୍ ଚିଠିପତ୍ର ନ ଦେଇ ଆସି ଥିବାରୁ ସେମାନେ ବଡ଼ ଆଶ୍ଚର୍ଯ୍ୟହେଲେ। ରଘୁନାଥ ଯେ ବାୟା, ଏ କଥା ତାରାମଣି ଜାଣନ୍ତି। ସେ ବିପତ୍ନୀକ ପୁତ୍ରକୁ ସାନ୍ତ୍ୱନା ଦେଇ ବସିଲେ। ଜଗନ୍ନାଥ ଜାତିରୁ ଅଟକ ହୋଇଛନ୍ତି। ଘରେ ବାଉରାଣୀକି ସ୍ଥାନଦେଇ, ପୁଣି ସମାଜଚ୍ୟୁତ ରଘୁନାଥ ଓ ତାହାର ପରିବାରକୁ ଛଅମାସ କାଳ ରଖିଛନ୍ତି, ଏପରି ଅବସ୍ଥାରେ ଜାତି, ବିଶେଷତଃ ବ୍ରାହ୍ମଣ ଜାତି କି ତାଙ୍କୁ କ୍ଷମା କରିପାରେ? କିନ୍ତୁ ସେଥିରେ ତାଙ୍କର ଭ୍ରୂକ୍ଷେପ ନାହିଁ। ରୂପା ମୁହଁକୁ ଚାହିଁ ସେ ରଘୁକୁ ଉଦ୍ଦେଶ୍ୟକରି କହିଲେ–''ବାପ! ଏହି ଯୁବତୀ କନ୍ୟାକୁ–ମୋର ସ୍ୱହସ୍ତପାଳିତା ଅନାଥା ବାଳିକାକୁ ମୁଁ କେଉଁଠି ଛାଡ଼ିବି କହିଲୁ? ବାଉରାଣୀ ହେଲେ କଣ ସେ ମନୁଷ୍ୟ ନୋହେ? ସେ ଭାରି ବୁଦ୍ଧିମତୀ! ମୁଁ ତାକୁ ଅନେକ ପାଠ ପଢ଼ାଇଛି।'' ଏହା କହି ସସ୍ନେହବଚନରେ ରୂପାକୁ କତିକୁ ଡାକିଲେ। ରୂପା ଲାଜଲାଜ ହୋଇ ଅଜା ଓ ମାମୁଁ କତିରେ ଯାଇଁ ବସିଲା। ଜଗନ୍ନାଥ କହିଲେ–''କୋଇଲି ଚଉତିଶା ଗାଇଲୁ?'' ରୂପା ପ୍ରଥମେ ଲାଜରେ ମଲାପରି ହୋଇଗଲା, ପରେ ଭକ୍ତି ମଧୁର କଣ୍ଠରେ ଗାଇଲା–

''ଦେବତାକୁ ଦେଖ ଯାଇଁ, ଦିଅଁ ଅଛି ଯେଉଁଠାଇଁ,
ଦୃଷ୍ଟିଦେଲେ ନାହିଁ ଦୂରେ, ଦିଅଁ ରହିଅଛି ଆପଣା ଘରେ ଲୋ–
ଦୀପକୁ ଜାଳି ଦିଅଁକୁ ଦେଖ

ଦିଅଁ ରହିଅଛି ଦେଇକ ଶିଖା।''

ତାହାର ମନୋହର ସ୍ୱର ଶୁଣି ରଘୁନାଥ ତନୟ ହୋଇଗଲା। କହିଲା–''ବାପା! ଆଉ ଏ ଜାତିର ଲାଞ୍ଛନା ଭୋଗିବାକୁ ହେବ ନାହିଁ। ମୁଁ ତମ ସମସ୍ତିଙ୍କି ବର୍ମା ନେଇଯିବି। ଏ ଜାତିରେ ଥାଇ ଲାଭ କଣ?''

'କିନ୍ତୁ ମୁଁ ଏ ଜାତିକୁ ଛାଡ଼ିବି ନାହି ବାପ! ମତେ ସେମାନେ ନିର୍ଯ୍ୟାତନ କରନ୍ତୁ, ଏକ ବାଡ଼ କରନ୍ତୁ, ମୋର ଦୃଢ଼ପଣ ଦେଖି ଆଉ ପାଞ୍ଚଟାତ ମୋ ସାଥିରେ ମିଶିବେ। ତେଣିକି ଏ ସମାଜର ସଂସ୍କାର ହୋଇଯିବ; କିନ୍ତୁ ଆମେ ଯଦି ରୋଷରେ ତାଙ୍କୁ ତ୍ୟାଗ କରୁଁ, ସେମାନେ କଣ ବାଟକୁ ଆସିବେ?''

ତାରାମଣି ଆଖିରେ ଲୁଗାଦେଇ କହିଲେ–''ବାପା! ଯାହା କରିଛନ୍ତି ଏ ଜାତି! ମୋ ରେବର ମଲାମୁହଁ ଆମକୁ ଟିକିଏ ଦେଖେଇ ନାହାନ୍ତି। ତା ଶଶୁର ଆମକୁ ଦୁଇବର୍ଷ ହେଲା ଦୁଆର ମନାକରିଛି! ଯେ ଲୁଚେଇକରି ହେଲେ ଆମ ସଙ୍ଗେ ସଂପର୍କ ରଖିଥିଲା, ସେ କଣ ଆଉ ଅଛି କି?''

ଜଗନ୍ନାଥ ଶ୍ରଦ୍ଧାରେ କହିଲେ–''ସେ ଦେବୀ ସ୍ୱର୍ଗରେ, ଆଉ ତାରି କୋଳରେ ମୋ ପ୍ରିୟତମା କନ୍ୟା ରେବତୀ। ବାପ! ମୋରି ମୂର୍ଖତାରୁ ରେବତୀର ସର୍ବନାଶ। ମୁଁ ଜଣେ ଚିକିତ୍ସକ, ଜାଣି ଶୁଣି ଦଶ ବର୍ଷର ଶିଶୁକୁ ବିଭା ଦେଲି, ଜାଣି ଶୁଣି ସେତେବେଳେ ଜାତିକୁ ଭୟ କରି ମୋର ସୁବର୍ଣ୍ଣ ପ୍ରତିମାକୁ ଭସେଇଲି, ଆଉ କୋଉଁ ବାପ କେଭେ ଝିଅର ବାଲ୍ୟ ବିଭା ନ ଦଉ। ମୁଁ ମର୍ମେ ମର୍ମେ ତା ଲାଗି ମଲିଣି।''

ତାରାମଣି କାନ୍ଦ କାନ୍ଦ ହୋଇ କହିଲେ–''କଣ ସୁଖ ମୋ ଝିଅ କଲା! ବାର ବର୍ଷ ଦିନୁଁ ପୁଅର ମା ହୋଇ ବସିଲା। ଭଲ ଘର ବରରେ ଦେଇଥିଲୁଁ, ହେଲେ କପାଳ ଏତକ।''

ଜଗନ୍ନାଥ କହିଲେ–''କାହିଁକି ଅକାରଣ କପାଳକୁ ଦୋଷ ଦେଉଛ? ବାଲ୍ୟବିବାହ ଶରୀର ବିରୁଦ୍ଧରେ ଭୟଙ୍କର ଅତ୍ୟାଚାର। ଆଗ କାଳରେ ବାଲ୍ୟ ବିବାହ ଥିଲା–ଲୋକେ ଥିଲେ ସଂଯମୀ। ଆଜିକାଲି ବିଳାସ–ବ୍ୟସନ ହେଲାଣି ଇଷ୍ଟଧର୍ମ। ହେଲେ ବାବୁର ଏଡ଼େ ଅଧଃପତନ ହେବ, ଏହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି।'' ରଘୁନାଥ ଏହା କହି ବ୍ୟଥିତ ନୟନରେ ତଳକୁ ଚାହିଁଲା। ଜଗନ୍ନାଥ କହିଲେ, ''ତାର ବାପ ତାର ସର୍ବନାଶ କଲା। ତାର ଏକା ନୁହେଁ, ସମସ୍ତଙ୍କର କଲା। ଏବେ ଅନୁତାପରେ ଜଳି ମରୁଛି। ଆଉ ସେ ଦିନ ନାହିଁ, ଶାଶୂ ବୋହୂ ଗଲାଦିନୁଁ ବୁଢ଼ାର ଟାଣ ଭାଙ୍ଗିଛି।''

ତାରାମଣି କହିଲେ–''ନୂଆବୋହୂ ଯେ ଆସିଛି, ସେ ସ୍ୱାମୀ ଶଶୁର କାହାରି ବାଧ ନୁହେଁ। ଯେପରି ଖଳ, ସେହିପରି କ୍ରୂରପ୍ରକୃତି। ତମେ ମରି ଶୋଇଥିଲେ ଅନେଇ ଯିବ ନାହିଁ। ବାପ ଝିଅ ଦୁହିଙ୍କୁ ସେ କଥାରେ ଲୁହା ଚଟେଇ ଚିଆଁଦେଉଛି।''

ମା'ର କଥାରେ ରଘୁନାଥର ଛାତି ଭିତରେ ଗୋଟିଏ ମର୍ମାନ୍ତିକ ଶୂଳ ବେଦନା ଉଠିଲାପରି ହେଲା। ସେ ଦାଣ୍ଡକୁ ବୁଲି ବାହାରିଲା।

ନିବିଡ଼ ଜ୍ୟୋତ୍ସ୍ନାମୟୀ ମଧୁନିଶି। ଚତୁର୍ଦ୍ଦିଗ ନୀରବ, ନିଶେଷ୍ଟ। ପ୍ରକୃତିର ମହାବିଶ୍ରାମ, କେବଳ ଏ ବିଶ୍ରାମ, ପ୍ରହରରେ ଜାଗ୍ରତ–ନୀଳାକାଶ ତଳେ ସୁଧାମୟ ସୁଧାକର, ଦୀପ୍ତମୟୀ ତାରକାଶ୍ରେଣୀ, ଆଉ ଅବନୀ ତଳେ ନୈଶ– କୁସୁମ, ପତ୍ର ଅନ୍ତରାଳରେ ନିଶାରାଣୀ, ଯୂଥିକା, ଜହ୍ନିଫୁଲ; ପୁଷ୍କରିଣୀର ସ୍ଥିର ତରଙ୍ଗ ଉପରେ ହାସ୍ୟମୟୀ କୁମୁଦିନୀ। ନୈଶ– ପ୍ରହରୀ ଚନ୍ଦ୍ର ଜାଗ୍ରତ। ତାହାର ପରିଜନ କେତେକରେ ନିଦ୍ରାସୁଖ ଭୋଗ କରିବେ ? ଆଉ ଜାଗ୍ରତ ସେହି ପୁରାତନ ପୁଷ୍କରିଣୀ କୂଳରେ ସେହି ଚିର ଆଦରର ଅଶୋକ ଚଉତରା ମୂଳେ ଯୋଡ଼ିଏ ବ୍ୟକ୍ତି। ଜଣେ ପୁରୁଷ, ଜଣେ ରମଣୀ। ଏହି ଅଶୋକ ଚଉତରା ଉପରେ, ଏହି ତାରା ଚନ୍ଦ୍ରଙ୍କୁ ସାକ୍ଷୀ କରି ଦିନେ ଏହି ପଥର ପାହାଚ ଉପରେ ଏହି ଦିଓଟି ପ୍ରାଣୀ ଏହି ପରି ବସିଥିଲେ। ଏହିପରି ପରସ୍ପର ମୁହଁକୁ ଚାହିଁ କାନ୍ଦିଥିଲେ। ସେତେବେଳେ ଉଭୟେ ଥିଲେ ସଂସାରାନଭିଜ୍ଞ। ସଂସାରର ଦୁଃଖ-ସଂସାରର ଜଞ୍ଜାଳ-ସଂସାରର କଳଙ୍କ କାଳିମା-ଉଭୟର ପ୍ରାଣକୁ ସ୍ପର୍ଶ କରି ନ ଥିଲା। ସେତେବେଳେ ଉଭୟେ ଥିଲେ ପ୍ରକୃତିର ସନ୍ତାନ-ନିର୍ମଳ ପୂଜାଫୁଲ। ଉଭୟଙ୍କ କତିରେ ଉଭୟଙ୍କ ପ୍ରାଣ ନିବେଦିତ ଥିଲା।

ପରସ୍ପର ଥିଲେ ପରସ୍ପରର ଜୀବନ। ଏକ ବିନା ଅନ୍ୟକୁ ଜାଣି ନ ଥିଲେ। ନବଯୌବନର ଦକ୍ଷିଣା ପବନରେ ଫୁଟିଥିଲେ ଦିଓଟି ମନୋହର କୁସୁମ, ଗୋଟିଏ ଗୋଲାପ-ଗୋଟିଏ ମଲ୍ଲୀ, ଗୋଟିଏ କୁମୁଦ–ଗୋଟିଏ ପଦ୍ମିନୀ। ଉଭୟଙ୍କ ହୃଦୟରେ ଗୋଟିଏ ପ୍ରେମ ସଂଗୀତ ବାଜି ଉଠିଥିଲା–ନବୀନ ଅନୁରାଗ ତନ୍ତ୍ରୀରେ, ନବୀନ ଆଶାର ମୋହରେ, ପ୍ରେମ-ପାରିଜାତ ବନର କୋକିଳ କୋକିଳା ଉଭୟେ, ବଞ୍ଚିଥିଲେ କେବଳ ପରସ୍ପରପାଇଁ! ସେଦିନ ଜଗତ୍ ସେମାନଙ୍କ କତିରେ ଥିଲା ତୁଚ୍ଛ, ବାସ୍ତବ ଜୀବନ ଅସାର! କଳ୍ପନାର କଳ୍ପଲୋକ ସେମାନେ ରଚନାକରିଥିଲେ ମନେ ମନେ, ଇନ୍ଦ୍ରର ନନ୍ଦନ ବନ ଆଙ୍କିଥିଲେ ପ୍ରେମତୁଳିକାରେ। ଲକ୍ଷ୍ମୀନାରାୟଣ ପରି ଥିଲେ ପରସ୍ପର ଏକାନ୍ତ ଅବିଚ୍ଛିନ୍ନ।

କିନ୍ତୁ ସେ ଦିନ ଆଉ ନାହିଁ। ନିଷ୍ଠୁର ନିୟତି ଉଭୟଙ୍କୁ ଭିନ୍ନ କରିଲା। ସେମାନଙ୍କର ଶତ ପ୍ରତିଜ୍ଞା ସତ୍ତ୍ୱେ ଅନ୍ୟ ପ୍ରାଣ ସହିତ ଯୁକ୍ତକଲା, ଅନ୍ୟର ସୁଖଦୁଃଖ ଭୁଞ୍ଜିବାକୁ ଦେଲା। କର୍ମ ଅଗ୍ନିପରୀକ୍ଷାରେ ତାଙ୍କୁ ପ୍ରବେଶ କରିବାକୁ ହେଲା। ଏତେ ଦିନେ କର୍ମଫଳର ଅବସାନ ହେଲା ପରା ? ଏତେ ଦିନେ ସ୍ୱକୃତିରୁ ତ୍ରାହି ପାଇଲେ ପରା ? ପୁଣି ପୃଥିବୀର ଏ ପାରିରେ–ଯେଉଁ ପାରିରେ ସେମାନେ ଆଉ ପରସ୍ପରକୁ ପାଇବେ ନାହିଁ ଭାବିଥିଲେ, ସେହି ପାରିରେ ତାଙ୍କୁ ଆଣି ପରସ୍ପରର ସମ୍ମୁଖୀନ କରି ଭେଟାଇଦେଲା–ସେହି ନିୟତି। ସ୍ମୃତିର ଶତ ବୃଶ୍ଚିକଦଂଶନ ଉଭୟରେ ଜ୍ୱାଳାକରୁଥିଲେ ସୁଦ୍ଧା, ଉଭୟେ ଉଭୟକୁ ଦେଖି ଦଣ୍ଡକଲାଗ

ଆତ୍ମବିସ୍ମୃତ ହେଲେ; ଦଣ୍ଡକଲାଗି ସେମାନେ ମିଳନର ମଧୁ ଆସ୍ୱାଦନକଲେ। ଦଣ୍ଡକ ଲାଗି ଦୁହେଁ ଦୁହିଁଙ୍କୁ ଚାହିଁ ଆତ୍ମାର ଶାନ୍ତି ବିଧାନକଲେ ପରା!

ଆଉ ଏ ଦୁଇ ଜଣଙ୍କୁ ଚାହିଁ ବାରି କୂଅମୂଳେ ବସିଥିଲା ଗୋଟିଏ ଦୁର୍ବଳା ବୁଢ଼ୀ। ଦୁଇଜଣଙ୍କର ଆତ୍ମାକୁ ଏକ ସୂତାରେ ସିଇଁଛି ଯାହାର ହାତ, ଦୁଷ୍ଟର ଦୁର୍ନାମରୁ ରକ୍ଷାକରିବା ଲାଗି ଦୁଇଜଣଙ୍କୁ ସେ ନିଭୃତରେ ଜଗିବସିଛି। ଏହିପରି ସେ ଦିନେ ଉଭୟଙ୍କ ଏକାତ୍ମ୍ୟ ଦେଖିଥିଲା। ସେଦିନ ଉଭୟେ ଉଭୟ ଲାଗି ବ୍ୟାକୁଳ, ଦିଓଟି ପ୍ରାଣ ଏକାଠି ମିଶିଯିବାପାଇଁ ତତ୍‌ପର। ଜଳ ବକ୍ଷରେ ରେଖା ଆଙ୍କିଲାପରି ସମାଜ, ସ୍ୱଜନ ଯେତେ ତାଙ୍କୁ ଭିନ୍ନକଲେ ସୁଦ୍ଧା, ଦୁଇ ଜଣ ପ୍ରେମର ବିଦ୍ୟୁତ ଆକର୍ଷଣରେ ଏକାଠି ମିଶିଥିଲେ। ସେ ମିଳନର ସାକ୍ଷୀ ଥିଲା ସେ ନିଜ! ସେ ଦିନ, ଆଉ ଏ ଦିନ! ତା ପରେ ବର୍ଷ ବର୍ଷ ବହି ଯାଇଛି, ବର୍ଷ ବର୍ଷ ବସି ବୁଢ଼ୀ ଦୁହିଙ୍କର ବିଚ୍ଛେଦ ବାନ୍ଧୁନିଛି, ଗୀତ ବାନ୍ଧି ଗାଇଛି, କାନ୍ଦି କାନ୍ଦି ଆଖିର ଜ୍ୟୋତି ହରାଇଛି, ତଥାପି ସେମାନଙ୍କୁ ଫେରି ପାଇ ନାହିଁ। କ୍ରମେ ଗୋଟି ଗୋଟି କରି ତାହାର ସ୍ନେହର ସାଥୀ, ସୁହୃଦଙ୍କୁ ହରାଇଛି, କେତେ ସେ ହରାଇଛି, ତାର କଣ ଆଉ ତାଲିକା ସେ ରଖିଛି?

ସେମାନଙ୍କ କଥା ଗୋଟି ଗୋଟି ତାର ମନେପଡ଼ି ହୃଦ କରତୁଛି। ନୀରବ ନୀଳକାଶକୁ ଚାହିଁ ନୀରବ ପ୍ରାଣରେ ବସିଛି–ବୃଦ୍ଧା ପିଡେଇ ଆଉ ବସିଛନ୍ତି ସୀତା ଓ ରଘୁନାଥ।

ସୀତାର ଭାଗ୍ୟ–ରବି ଚିରକାଳପାଇଁ ଅସ୍ତମିତ। ତାହାର ସ୍ୱାମୀ ଯାଇଛି, ପୁତ୍ର ଯାଇଛି, ମା ଯାଇଛି, ଭାଉଜ ଯାଇଛି–ଯେ ତାଙ୍କୁ ସ୍ନେହ କରନ୍ତେ, ଯେ ତାର ଦୁଃଖରେ ଦୁଃଖୀ, ସୁଖରେ ସୁଖୀ ହୁଅନ୍ତେ, ସେ ସମସ୍ତେ ଗୋଟି ଗୋଟି ଯାଇଛନ୍ତି; କିନ୍ତୁ ଯାଇ ନାହିଁ ସେ ନିଜେ। ଆଉ ଯାଇ ନାହିଁ ତାର ଅନୁତପ୍ତ ବୃଦ୍ଧ ପିତା–ଯାହାର ମୂର୍ଖତା ଫଳରେ ଆଜି ସେ ହତଭାଗିନୀଠୁ ବଳି, ସେ ଯାଇ ନାହିଁ। ବୃଦ୍ଧ ଅକର୍ମଣ୍ୟ, ବାତାକ୍ରାନ୍ତ ହୋଇ ପଡ଼ି ରହିଛି ସେ ବୁଢ଼ା–ତାହାର କୃତକର୍ମର ଅନୁତାପଲାଗି, ପ୍ରାୟଶ୍ଚିତଲାଗି, ପୁତ୍ର ଓ ପୁତ୍ରବଧୂର ନିଷ୍ଠୁର ନିର୍ଯ୍ୟାତନ ଭୋଗକରି ପଡ଼ିରହିଛି ଗୋଟି ଗୋଟି ପୂର୍ବକଥା ସ୍ମରଣକରିବାଲାଗି। ତାହାର ସେବା, ତାହାର ଶୁଶ୍ରୂଷାର ଭାର ଘେନିଛି ସୀତା।

ସୀତାକୁ ଚାହିଁ ବୁଢ଼ାର ପ୍ରାଣ ଫାଟିଯାଏ। ରକ୍ଷକେଶା, ଅଳଙ୍କାରହୀନା, ବିଷାଦିନୀ, ଅନାଥିନୀ ସୀତା ମୂର୍ତ୍ତିକି ଚାହିଁ ବୁଢ଼ାର ଆତ୍ମା କାନ୍ଦିଉଠେ–କ୍ଷଣକ ଲାଗି। ଆଜି ଯଦି ସେ ତାହାର ହାତ ଧରିଥାନ୍ତା, ସେ ଯଦି ଘରର କର୍ତ୍ତୃତ୍ୱ ଘେନିଥାନ୍ତା, ତେବେ କଣ ଏପରି ହୋଇଥାନ୍ତା? କୁବେର କାନନର ଶ୍ରୀ ସଂପଦ କଣ ଏହିପରି ନିର୍ଜଳା ମରୁଭୂମିରେ ପରିଣତ ହୋଇଥାନ୍ତା? ତାହାର ନିଜ ହାତରେ ସେ ଛାୟାମୟ ରସାଳ ତରୁ କର୍ତ୍ତନକରିଛି। ଏବେ ଦୋଷ ଦେବ କାହାକୁ? ସେହି ଚିନ୍ତାରେ ଭାର୍ଯ୍ୟା ଝୁରିଝୁରି ମଲା। ସେ ବିଭ୍ରାଟରେ ବାଧ ପୁତ୍ର ପିତୃଦ୍ରୋହୀ ହୋଇ ଅଧଃପତନର ଚରମକୁ ଗଲା। ସୁନାର ଦେଉଳ ଚୂନାହେଲା। ଯକ୍ଷର

ସଂପରି ସରିଲା। ମାଲି ମୋକଦ୍ଦମାରେ, ଋଣଦାୟରେ ଗୃହ ସର୍ବସ୍ୱାନ୍ତହେଲା। ବୁଢ଼ା ବୟସକୁ ଏହା ଦେଖିବାକୁ ଥିଲା—ଏହା ଅଙ୍ଗେ ନିଭେଇବାକୁ ଥିଲା। ଲକ୍ଷ୍ମୀପ୍ରତିମା ଅହ୍ୟରାଣୀ ସ୍ୱର୍ଗକୁ ବିଜେ କଲେ; କନ୍ଥୁ ରଖିଗଲେ ଅନାଥ—ଅର୍କ୍ଷିତ ରୋଗାକ୍ରାନ୍ତ ବାଷଠି ବର୍ଷର ବୁଢ଼ା। ଦୁଷ୍କୃତ ଫଳରେ ଯାହା କତିକି ଯମ ସୁଦ୍ଧା ଆସିବାକୁ ଅମଙ୍ଗ। ହେଲେ ସବୁ ଆର୍ଦୋଳି, ସବୁ ଉଝଟ ସହେ ସୀତା। ପାଷାଣ ପ୍ରତିମା ନୀରବ ମୁଖରେ ସବୁ ଗଞ୍ଜଣା ସହି ବୁଢ଼ା ବାପାକୁ ସ୍ନେହାଞ୍ଚଳରେ ଘୋଡ଼ାଇରଖିଛି, ଭାଇ ଭାଉଜର କ୍ରୂର ବାକ୍ୟବାଣରୁ। ସୀତାର ମହତ୍ତ୍ୱ ଚିନ୍ତାରେ ରଘୁନାଥର ପ୍ରେମମୟ ହୃଦୟ ପୂର୍ଣ୍ଣ ହୋଇଗଲା।

ସେ ସୀତା ପାଦତଳେ ବସି ତାହାହିଁ ଆଲୋଚନା କରୁଥିଲା। ତାହାର ପଶ୍ଚାତ୍—ଜୀବନର ସମୁଦାୟ କାହାଣୀ ସେ ପ୍ରେମମୟୀର ପାଦତଳେ ନିବେଦନ କରିଛି। ଆଜି ମଧ ତା ଗଳାରେ ସେହି ସୁନାସୂତା! ଏତେ ପ୍ରେମର ସେ କଣ ପ୍ରତିଦାନ ଦେବ ନାହିଁ? ଉଭୟେ ନୀରବରେ ପରସ୍ପରକୁ ଚାହିଁଲେ, ହୃଦୟ ଭିତରେ ଦେଖିଲେ ପରସ୍ପର ହୃଦୟର ପ୍ରିୟ ମୂର୍ତ୍ତି ଅଦ୍ୟାପି ଜୀବିତ!

ରଘୁନାଥ ମୁଣ୍ଡ ଟେକି କହିଲା—"ସୀତା! ସବୁ ଶୁଣିଲ, ମତେ କଣ କ୍ଷମା କରିବ ନାହିଁ?"

ସୀତା ନିଜକୁ କହିଲା ପରି କହିଲା—"କ୍ଷମା! କଣ କ୍ଷମା! କଣପାଇଁ?"

ରଘୁନାଥ ପ୍ରତ୍ୟୁତ୍ତର କଲା—"ମୁଁ ଯେ ତୁମକୁ ଭୁଲି ଅନ୍ୟକୁ ବିବାହ କଲି, ତୁମ କତିରେ ଯେଉଁ ପ୍ରତିଜ୍ଞାକରି ଦେଶତ୍ୟାଗୀ ହୋଇଥିଲି, ତାହା ଭଙ୍ଗକଲି!"

ସୀତା କିଛିକ୍ଷଣ ନୀରବ ରହି କହିଲା—"କ୍ଷମା ମୁଁ କଣ ଦେବି ତୁମକୁ? ତୁମେ ମୋ ବିରୁଦ୍ଧରେ କିଛି ଦୋଷ କରି ନାହିଁ। ମୋର କପାଳ ମନ୍ଦ!" ଆବେଗରେ ରଘୁନାଥ କହିଲା, "ତା ନୁହେଁ ସୀତା!" "ମୁଁ ଆସିଛି, ପୁଣି ଫେରିଆସିଛି, ତୁମକୁ ସୁଖୀ କରିବାକୁ ପୁଣି ଫେରିଆସିଛି। ତୁମେ ଦୟାକରି ମୋ ପ୍ରସ୍ତାବରେ ସମ୍ମତହେଲେ ସବୁ ଦୁଃଖ, ସବୁ କଷ୍ଟ, ଅତୀତର ସବୁ ଶୋକ ଭୁଲିଯିବ। ସୀତା! ତୁମେ କଣ ମତେ ଗ୍ରହଣକରିବ?"

ସୀତା ସ୍ତମ୍ଭିତ ହୋଇଗଲା। ଇଏ କଣ! ଇଏ କଣ—ଉନ୍ମାଦର ପ୍ରଳାପ! ସୀତା ଗ୍ରହଣ କରିବ ତାକୁ? କିପରି ଗ୍ରହଣକରିବ?

ରଘୁନାଥ ତାଠୁ ଉତ୍ତର ନ ପାଇ କହିଲା—"ସୀତା! ଦେବି! ମୁଁ ତୁମକୁ ଚାହେଁ—ତୁମକୁ ବିବାହକରିବି।"

"ମୋତେ—ମୋତେ—" ସୀତା ଆଉ କହି ପାରିଲା ନାହିଁ। ରୋଷଦୀପ୍ତିରେ ତାହାର ଆଖି ଦୁଇଟା ଦାଉଦାଉ ଜଳିଉଠିଲା।

ସେ ଏକପାଦ ଘୁଞ୍ଚିଯାଇ କହିଲା–''ରଘୁନାଥ ! ସାବଧାନ ! କଣ ବୋଲି କଣ କହୁଚ ? ଅନ୍ୟର ଭାର୍ଯ୍ୟାକୁ ତୁମେ ବିବାହ ହେବାକୁ ଚାହଁ। ନିର୍ଲ୍ଲଜ୍ଜ ! ମତେ କଣ ଅନନ୍ତ ନରକରେ ବୁଡ଼ାଇବ ? ମୋ ସ୍ୱାମୀ, ମୋ ଶଶୁର କୂଳରେ ମୁଁ କାଳିଦେବି ? ତୁମେ ଏଭ କଥା କହିବାକୁ ଏତେ ନେହୁରାହୋଇ, ମୋ ସହିତ ଦେଖାକରିବାକୁ ଆସିଥିଲ ? ସାବଧାନ !''

ରଘୁନାଥ କିଛିକ୍ଷଣ ତୁନି ରହି କହିଲା–''ସୀତା ! ଭୁଲ ବୁଝିଛ। ତୁମର ସ୍ୱାମୀ କିଏ ? ତୁମର ମନେଅଛି– ?''

ସୀତା କୁପିତା ଫଣିନୀ ପରି ଉଠି ଠିଆହେଲା। ରୋଷପୂର୍ଣ୍ଣ ଗଭୀରସ୍ୱରରେ କହିଲା– ''ଆଉ ମୋ ମୁହଁ ଦେଖିବାକୁ ଆସ ନାହିଁ। ମୁଁ ସେ ସୀତା ନୁହେଁ–ସେ ସୀତା ତ ଅନେକ କାଳୁ ମଲାଣି। ମିଶ୍ରବଂଶର ବୋହୂ ମୁଁ–ଅମୂଲ୍ୟମୋହନର ମା–ଆଜି ଏ ମୁହୂର୍ତ୍ତରେ ମୋ ସ୍ୱାମୀର ପବିତ୍ର ମୂର୍ତ୍ତି ମୋ ଆଖି ଆଗରେ–ପାପିଷ୍ଠ ! ଦୂରହୁଅ, ଦୂରହୁଅ ମୋ ଆଖି ଆଗରୁ। ଆଉ କାହାକୁ ବିଭାହୁଅ–ସୀତାକୁ ନୁହେଁ।'' ସେ ଫେରି ଚାଲିଯାଉଥିଲା, ପରାଜିତ ରଘୁନାଥ ତାହାର ଅସମ୍ଭବ ତେଜଃପୂର୍ଣ୍ଣ କଥାଶୁଣି ଏକାବେଳେ ହତବୁଦ୍ଧି ହୋଇଗଲା। ତଥାପି ସାହସ କରି ଡାକିଲା ''ସୀତା ରୁହ, ତୁମ ମନରେ କଷ୍ଟଦେଲି, କ୍ଷମାକର।'' ସୀତା ବୁଲି ପଡ଼ି ଠିଆହେଲା। ରଘୁନାଥ କହିଲା–''ମୁଁ ତୁମକୁ ସୁଖୀ କରିବାକୁ ଚାହିଁଥିଲି।''

''ମତେ ସୁଖୀ କରିବାକୁ ଚାହଁ'' ତେବେ କଲ୍ୟାଣକର, ସୀତା ଶୀଘ୍ର ମରୁ; ଆଉ ତା ସ୍ୱାମୀ, ଯାହାର ଘର ସେ ପନ୍ଦର ବର୍ଷ କରିଛି, ଯାହାର ପୁଅକୁ ସେ ଗର୍ଭରେ ଧରିଥିଲା, ସେହି ସ୍ୱାମୀ, ସେହି ପୁଅକୁ ଜନ୍ମେ ଜନ୍ମେ ଆପଣାର କରି ପାଉ। ମହାପ୍ରଭୁ ମତେ ସେହି ସ୍ୱାମୀ, ସେହି ପୁଅ ଦିଅନ୍ତୁ।''

ସୀତା ଦ୍ରୁତପଦରେ ସ୍ଥାନ ତ୍ୟାଗକଲା। ରଘୁନାଥ ବହୁକ୍ଷଣ ପକ୍କା ପାହାଚ ଉପରେ ବସିରହିଲା। ଆଶାର କୁହୁକ ତାର ତୁଟିଛି, ମନର ଭ୍ରାନ୍ତି କଟିଛି, ତାକୁ ସେହି ଦିନୁଁ ଆଉ କେହି କଟକରେ ଦେଖି ନାହାନ୍ତି।



## ପଞ୍ଚତ୍ରିଂଶ ଅଧ୍ୟାୟ

ରଘୁନାଥ କୁଆଡ଼େ ଯିବ ? ପ୍ରାଣରେ ଏ ଦାରୁଣ ଅଶାନ୍ତି ଘେନି ସେ କୁଆଡ଼େ ଯିବ ? ପୁଣି ବର୍ମା ଫେରିଯିବ ? ସେ ତାହାହିଁ ସ୍ଥିରକରି କଲିକତାର ଟିକଟକିଣିଲା। ରେଲରେ ବସି ଝରକା ବନ୍ଧ ଉପରେ ମୁଣ୍ଡରଖି ଭାବିଲା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ। କାହିଁକି ତାହାର ଜୀବନରେ ଏତେ ଦୁଃଖ, ଏତେ ବିଚ୍ଛେଦ ? ଯାହାକୁ ସେ ଆପଣାର ଭାବିଲା, ସେ ତାକୁ ତ୍ୟାଗକଲା। ସୀତା କି ନିଷ୍ଠୁର ! ଏତେ ବର୍ଷର ପ୍ରେମକୁ ସେ ଉପେକ୍ଷାକଲା। ଅଭିମାନରେ

ତା ଛାତି ଜଳିଉଠିଲା। କିଛି ଦିନ ପୂର୍ବରୁ କଳ୍ପନା ତାହାର ସ୍ମୃତିପଥରେ ଉଦିତ ହୋଇ ତାକୁ ଯନ୍ତ୍ରଣାଦେଲା।

ରେଙ୍ଗୁନର ସେ ଅତୁଳ ପ୍ରାସାଦ ମାୟା ବିନା ଶୂନ୍ୟ। ପିଲାମାନେ କଲିକତାରେ। ଏକାକୀ ସେ କିପରି ବିଜନପୁରୀରେ ବାସକରିବ ? ପୁଣି ଶ୍ୱଶୁରଙ୍କ ପ୍ରସ୍ତାବ କଥା ଚିନ୍ତା କଲା। ରୂପଗୁଣବତୀ ଲତିକାକୁ ସେ ଯଦି ବିବାହକରେ, କଣ କ୍ଷତି ? ତାର କି ବୟସ ? ଚାଳିଶ ପୂରି ନାହିଁ, ତାର କି ବୟସ ? ବର୍ତ୍ତମାନ ସୁଦ୍ଧା ସେ ଯୁବକ; ମାତ୍ର ଲତିକା ଉପରେ ତାହାର ଆଦୌ ମୋହ ହେଲା ନାହି। ମାୟାର ସ୍ଥାନ ଅନ୍ୟ ଜଣେ ରମଣୀ ଅଧିକାରକରିବ, ଏହା ତା ପକ୍ଷରେ ବିଷଦୃଶ, କଳ୍ପନା ମନେହେଲା। ଜଣେ ଅଧିକାର କରିଥାନ୍ତା, ଯେ ଆବାଲ୍ୟ ତାର ହୃଦୟର ଆରାଧ୍ୟା ଥିଲା, ସେହି ଜଣକ ଅଧିକାର କରିଥାନ୍ତା, କିନ୍ତୁ ସେ ତ ନାସ୍ତିକଲା। କେଉଁ ଦେଶରେ ଜନ୍ମ ? କେଉଁଠି ତାର ବାସ ? ଅତି ସାନ ହୋଇଥିଲା, ପିତା, ମାତା, ଭଗିନୀକୁ ହରାଇଥିଲା। ଯୌବନରେ ହରାଇଲା ସୀତାକୁ। ତାକୁ ଘେନି ଘର କରିଥିଲେ ସେ ସୁଖୀ ହୋଇଥାନ୍ତା, ମାତ୍ର ତାହା ତ ତା କପାଳରେ ନ ଥିଲା। ଦେଶର ଆତ୍ମୀୟ ସ୍ୱଜନ ସବୁ ତ୍ୟାଗ କରି ସେ ହେଲା ଦେଶାନ୍ତରୀ। ବହୁଦିନ ପରେ ନରେଶ ଦାଦାର କଥା ତା ମନରେ ଉଦୟ ହେଲା। ସେ ତାକୁ ଭୁଲାଇ କଲିକତା ଆଣିଲା। ସେଠି ତା ଜୀବନର ଅପୂର୍ବ ପରିବର୍ତ୍ତନ। ପ୍ରେମମୟୀ ମାୟା ସହିତ ପରିଚୟ, ପୁଣି ବର୍ମା ଯାତ୍ରା, ସେଠି ଦ୍ୱାଦଶ ବର୍ଷ କାଳ ସୁଖର ସଂସାର ରଚନା–ସେ ସଂସାରରେ ତାର ପ୍ରିୟ ସନ୍ତାନସନ୍ତତିର ଜନ୍ମ, ସେଠି ରାଜସୁଖରେ ସେ ଅବଧି କାଳ କାଟିଛି, ବୋଧହୁଏ ଶେଷ ପର୍ଯ୍ୟନ୍ତ କାଟିଥାନ୍ତା, କିନ୍ତୁ କ୍ରୂର ମରଣ ତାହା କରିଦେଲା ନାହିଁ। ତା ଜୀବନର ଏକମାତ୍ର ଅବଲମ୍ୱନ ମାୟାକୁ ସେ ହରଣକରି ଘେନିଗଲା କେଉଁ ଅଜ୍ଞାତ ଦେଶକୁ। ଦିନେ ନୌକାରେ ଜହ୍ନ ରାତିରେ ସେ ଓ ମାୟା ବୁଲୁଥିଲେ ଐରାବତୀ ନଦୀର ବିଶାଳ ବାରି ବକ୍ଷରେ। ଜହ୍ନ ଆଲୁଅ ଜଳବକ୍ଷରେ ନାଚୁଥିଲା–ମାୟା, ସ୍ୱପ୍ନପୁରୀ ରଚନା କରି· ଆଉ ତା କୋଳରେ ସାକ୍ଷାତ୍ ମାୟାଦେବୀ ଢଳି ପଡ଼ିଥିଲା ଉଷ୍ମ ପ୍ରେମାଶ୍ଳେଷରେ। ସେ ଦିନ ଯାଇଛି, ସେ ଦିନ ସେ କହିଥିଲା, ''ମୁଁ ଯଦି ମରିଯାଏଁ।'' ରଘୁନାଥ କହିଥିଲା, 'ତେବେ ଅକୂଳ ସମୁଦ୍ରରେ ସେ ପିଲା ଚରୋଟି ନେଇ ଭାସିବ।' ହସି ହସି ଦିନେ ଯେଉଁ କଥା ହୋଇଥିଲା, ସେ ରହସ୍ୟ ଏବେ ବାସ୍ତବରେ ପରିଣତହୋଇଛି। ଗାଢ଼ ଅଶ୍ରୁସମାଚ୍ଛନ୍ନ ଆଖିରେ ନୈଶାକାଶକୁ ଚାହିଁ ରଘୁନାଥ ଭାବିଲା, ତାର ଅତୀତକୁ ସେ କଣ ଆଉ ଫେରି ପାଇବ ? ନା, ସେ ଆଉ କଲିକତା ଯିବ ନାହିଁ। ପୁଣି ଭାବିଲା କିଆଡ଼େ ଯିବ ? ହଠାତ୍ ତାର ମନେ ପଡ଼ିଲା ଲଛମନ ଭାଇ କଥା। ସେ ତ ତାକୁ ଡାକି ପଠାଇଥିଲେ। ମାୟାର ମୃତ୍ୟୁ ସମ୍ୱାଦ ପାଇ ମୀରା ଓ ତୁକା ବଡ଼ ବ୍ୟଥିତ ହୋଇଥିଲେ। ସେମାନେ ଶୋକଦଗ୍ଧ ରଘୁନାଥକୁ ଏଲାହବାଦ ଆସିବାକୁ ବାରମ୍ୱାର ଟେଲିଗ୍ରାମ ପଠାଇଥିଲେ। ବର୍ତ୍ତମାନ ସେଇଠିକୁ ଯିବାକୁ ସେ ବାହାରିଲା।

ବହୁଦିନ ତଳେ ରଘୁନାଥ ଲଛମନ ଭାଇଙ୍କୁ ଦେଖିଥିଲେ। ଆଜିକାଲି ତାଙ୍କର ବହୁତ ପରିବର୍ତ୍ତନ ହୋଇଯାଇଛି। ସେ ଗୈରିକଧାରୀ ସନ୍ନ୍ୟାସୀ ହୋଇଛନ୍ତି। ତାଙ୍କ ସହିତ ମୀରା ଓ ତୁକା ମଧ୍ୟ ସନ୍ନ୍ୟାସୀ ଦୀକ୍ଷା ଗ୍ରହଣକରିଛନ୍ତି। ତୁକା ଆଉ ଚାକିରୀ କରୁ ନାହିଁ। ''ହିନ୍ଦୁସ୍ଥାନକି ସମାଚାର'' ସେହିପରି ହପ୍ତାକୁ ହପ୍ତା ହିନ୍ଦୁସ୍ଥାନର ଦୁଃଖ ଦୈନ୍ୟ ଦୁର୍ଦ୍ଦଶାର କାହାଣୀ ବକ୍ଷରେ ଅଙ୍କନକରି ବାହାରୁଛି। ତାର ସଂପାଦକ ପୂର୍ବରେ ଥିଲେ କେବଳ ଲଛମନ୍। ଏବେ ତାଙ୍କୁ ଜଣେ ସହକାରୀ ମିଳିଛନ୍ତି। ସେ ଦେଶଭକ୍ତ ଅବଦୁଲ୍ ଅଜିଜ୍।

ଅଜିଜ୍ ଦିଲ୍ଲୀର ମୁସଲମାନ ଯୁବକ, ଧନୀର ପୁତ୍ର। ଶୁଭ ମୁହୂର୍ତ୍ତରେ ତାଙ୍କ କର୍ଣ୍ଣରେ ଦେଶମାତାର ପବିତ୍ର ଆହ୍ୱାନ ପ୍ରବେଶକଲା। ସେ ତାର ପୂଜାପାଇଁ ଅଣ୍ଟାଭିଡ଼ି ବାହାରିଲେ। ତାଙ୍କ ସ୍ତ୍ରୀ ଲୁତଫ୍ ଉନ୍ନିସା ସ୍ୱାମୀର ପଦାଙ୍କ ଅନୁସରଣକଲେ।

ସେ ବର୍ଷ ଦିଲ୍ଲୀରେ ବକ୍‌ରିଦ୍ ବେଳେ ଭୟଙ୍କର ଗୋଳମାଳ ହେଲା। ମୁସଲମାନମାନେ ହିନ୍ଦୁଙ୍କ ଉପରେ ଅମାନୁଷିକ ଅତ୍ୟାଚାରକଲେ। ଅବଦୁଲ୍ ଅଜିଜ୍ ମୂର୍ଖ ଭ୍ରାତାମାନଙ୍କର ଏ କାର୍ଯ୍ୟରେ ପ୍ରତିବାଦକରି ଜ୍ଞାତି-ସ୍ୱଜନ ପରିତ୍ୟକ୍ତ ହେଲେ। ତାଙ୍କୁ କାଫେରଙ୍କ ବନ୍ଧୁ କହି ସ୍ୱଜାତୀୟ ମୋଲ୍ଲାମାନେ ଦଣ୍ଡଦେଲେ। ଅବଦୁଲ୍ ତହିଁରେ ଭ୍ରୂକ୍ଷେପ ନ କରି ଏଲାହାବାଦ ଆସି ସେହିଦିନୁ ଲଛମନ୍‌ଙ୍କ ଗୃହରେ।

ରଘୁନାଥ ଦେଖିଲା, ଦେଖି ବିସ୍ମିତ ହେଲା, ଲଛମନର ଘର ହିନ୍ଦୁ-ମୁସଲମାନର ପୁଣ୍ୟ ମିଳନଭୂମି, ସେଠି ମୋମିନ୍ ଓ କାଫେର ଦୁଇଭାଇ ଏକ ପ୍ରେମରଜ୍ଜୁରେ ଆବଦ୍ଧ, ଆର୍ଯ୍ୟ ଓ ଯବନ ଦୁହେଁ ପରସ୍ପରର ସୁହୃଦ। ସେ ମନେ ମନେ କହିଲା,''ଧନ୍ୟ ଲଛମନ ଭାଇ! ଧନ୍ୟ ତୁମର ସାଧନା।''

ସେହି ପବିତ୍ର ନକେତନରେ ମୀରା ଓ ତୁକା, ଯବନ ଭଗୀନୀ ଲୁତଫ୍ ଉନ୍ନିସା ଓ ତାହାର ପିଲାମାନଙ୍କୁ ଆପଣା କୋଳରେ ସାଦରେ ଗ୍ରହଣକରିଛନ୍ତି। ସେଠି ରଘୁନାଥ ଉପସ୍ଥିତ ହୋଇ ମନରେ ଅପାର ଶାନ୍ତି ଲାଭକଲା। ବିଶେଷତଃ ମାୟାର ବାଲ୍ୟସଂଗିନୀ ତୁକାର ଆଦର ଯତ୍ନରେ।

ତୁକା ଆଉ ଅଗର ତୁକା ନୁହେଁ। ସେ ଆଜିକାଲି ଭାଇ ସହିତ ମିଶି ଦେଶ ସେବାରେ ମନପ୍ରାଣଦେଇ ଲାଗିଛି। ତାହାର ବକ୍ତୃତା ଶୁଣି, 'ହିନ୍ଦୁସ୍ଥାନିକି ସମାଚାର'ରେ ତାହାର ଲେଖା ପାଠ କରି ଭାରତବର୍ଷରେ ସାଧାରଣଙ୍କର ଭିତରେ ଦେଶପ୍ରେମ ଜଗିଉଠିଛି। ତୁକା ଗ୍ରାମେ ଗ୍ରାମେ, ନଗରେ ନଗରେ ବୁଲି ଦେଶପ୍ରେମବାର୍ତ୍ତା ପ୍ରଚାରକରୁଛି।

ଦିନେ ସନ୍ଧ୍ୟାବେଳେ ତୁକାର ବସିବା ଘରେ ସେ ଆଉ ଜଗନ୍ନାଥ କଥାବାର୍ତ୍ତା ହେଉଥିଲା। ତୁକା ରଘୁନାଥକ କହିଲା ''ମୁଁ ତୁମର The Settler (ଦି ସେଟେଲର୍) ସର୍ବଦା ବଡ଼ ମନୋଯୋଗ ସହିତ ପଢ଼େ। ବିଦେଶରେ ଭାରତୀୟର ଅପମାନର ତୁମେ ଯେଉଁ କରୁଣ କାହାଣୀ ସେଥିରେ ଲେଖିଥାଅ, କିଏ ତାହା ପଢ଼ି ନ କାନ୍ଦିବ?''

ରଘୁନାଥ କହିଲା, ''ଭଉଣି! ମୁଁ କଣ ବା କରିଛି ? ନିଜର ବ୍ୟବସାୟ ଚଳାଇବାକୁ ହେଲେ ହାତରେ ପତ୍ରିକାଟିଏ ଥିବା ପ୍ରୟୋଜନ। ମୁଁ କଣ ବା ସେଥିରେ ଲେଖେଁ? ସେଥିରେ ଲେଖୁଥିଲା ଆଉ ଜଣେ। ତାହାର ପ୍ରାଣରେ ତୁମରି ପରି ସର୍ବଦା ଦେଶ ଓ ଦଶର ଚିନ୍ତା ଜାଗିଥିଲା। ମୁଁ ହୃଦୟର କୌସ୍ତୁଭମଣିକୁ ବର୍ମା ଦେଶରେ ବିସର୍ଜନ ଦେଇଆସିଛି।'' ତାର କଣ୍ଠ ରୁଦ୍ଧ ହୋଇଆସିଲା। ସେ ଓ ତୁଳା ନୀରବ ଅଶ୍ରୁଜଳରେ କେହି ଆଉ କାହାରିକୁ କିଛି କହିପାରିଲେ ନାହିଁ।

ତାଙ୍କ ପଛଆଡ଼େ ଠିଆ ସବୁ ଶୁଣିଲା ଲଛମନ୍। ସାମନାକୁ ଆସି କହିଲା–''ଭାଇ ରଘୁନାଥ! ବ୍ୟଥିତ ହୁଅ ନାହିଁ। ତୁମେ ମାୟାକୁ ହରାଇ ମହାମାୟାଙ୍କୁ ପାଇଛ। ପତ୍ନୀର ହରାଇ ଦେଶମାତାଙ୍କୁ ପାଇଛ। ତାଙ୍କ ଘର, ସେ ତୁମ୍ଭର ପରମ ଲକ୍ଷ୍ୟ ହୁଅନ୍ତୁ।''

ରଘୁନାଥ କ୍ଷୁବ୍‌ଧକଣ୍ଠରେ କହିଲା–''ଭାଇ! ତୁମେ ମହାତ୍ମା, ତୁମେ ପରମ ପୁଣ୍ୟବନ୍ତ। ମୁଁ ପୃଥିବୀର କ୍ଷୁଦ୍ର ଜୀବ। ମୋହର ହୃଦୟରୁ ଆସକ୍ତିର ଅନଳ ନିଭି ନାହିଁ, ତୁମର ସାଧନା, ତୁମର ନିଷ୍ଠା ମୁଁ କାହୁଁ ପାଇବି ?''

ଲଛମନ୍ ଦୁଃଖିତ ହୋଇ କହିଲେ–''ଭାଇ! ଭୁଲ ବୁଝିଛ। କିଏ କାହାର ସ୍ତ୍ରୀ, କିଏ କାହାର ସ୍ୱାମୀ! ଶତ ରୂପରେ ସେହି ଭଗବାନ୍ ଆମ ଆଖି ଆଗରେ ଦେଖାଦିଅନ୍ତି, ଶତ ରୂପରେ ଆମର ଆତ୍ମାର ପ୍ରେମ ସମ୍ଭୋଗକରନ୍ତି, ଆମେ ସେହି ତନ୍ମୟ ମୂର୍ତ୍ତିକୁ ଦେଖିବାକୁ ପାଉ ନାହିଁ; କିନ୍ତୁ ଏ ମୋର ସ୍ତ୍ରୀ, ଏ ମୋର ପୁତ୍ର, ଏ ମୋର କନ୍ୟା ବୋଲି ଭାବୁ–ବ୍ୟସ୍ତ ହେଉ, ତାଙ୍କର ବିଚ୍ଛେଦରେ କାନ୍ଦିକାଟି ମରୁ।''

ରଘୁନାଥ ଦୀର୍ଘଶ୍ୱାସ ସହ କହିଲା–''ମତେ କିଏ ଶିକ୍ଷା ଦବ, ମତେ କିଏ ଏ ଚିନ୍ମୟ ପଥ ଦେଖାଇବ ? ସବୁ ଜାଣେ, ସବୁ ଶାସ୍ତ୍ର ପଢ଼ିଛି, କିନ୍ତୁ ଆତ୍ମାର ହାହାକାର ଘୁଞ୍ଚୁନାହିଁ। ଭଗବାନ୍ ମୋ ପ୍ରତି ଏଡ଼େ ନିଷ୍ଠୁର, କଠିନ!''

ଲଛମନ୍ ଶ୍ରଦ୍ଧାପୂର୍ଣ୍ଣ ସ୍ୱରରେ କହିଲେ–''ସେ ପ୍ରେମମୟ ହରି କାହାରି ପ୍ରତି ନିଷ୍ଠୁର ନୁହନ୍ତି, ସେ ଚିରପ୍ରେମ, ସଦାନନ୍ଦମୟ ଭୂମା-ତୁମର ଆତ୍ମାର ଆତ୍ମା। ଆପଣା ଆତ୍ମାକୁ ଅବଜ୍ଞା କରୁଛ ରଘୁନାଥ ? ତୁମେ ଏତେ କାଳ ଏତେ ଭୋଗ କଲ, କାହିଁ ତୁମର ଭୋଗର ପିପାସା ମେଣ୍ଟିଲା କି? କିନ୍ତୁ ନିବୃତ୍ତିରେ ପରମାନନ୍ଦ ଅଛି, ଏହିଟା ତୁମେ ବୁଝି ନାହଁ! ମନୁଷ୍ୟ ଲକ୍ଷ୍ୟଶୂନ୍ୟ ହୋଇ ଖାଲି ପବନ ପଛରେ ଧାଇଁପାରେ କି? ମୁଁ ଜନ୍ମ ବ୍ରହ୍ମଚାରୀ, ଅଥଚ ସଂସାରାଶ୍ରମରେ ରହିଛି। ମୋର ସ୍ତ୍ରୀ ସଦାବ୍ରହ୍ମଚାରିଣୀ, ଅଥଚ ସେ ସ୍ୱାମୀ ଘେନି ଘରକରୁଛି। ମୋର ଆଦର୍ଶ କଣ ଜଗତର ଆଦର୍ଶ? ତା ନୁହେଁ, ସମସ୍ତେ କଣ ମୋପରି ରହିବେ? ମୁଁ ତାହା କାମନା କରୁ ନାହିଁ। ତାହାହେଲେ ସୃଷ୍ଟି ବ୍ୟର୍ଥହେବ, ଜଗତ୍ ବୁଡ଼ିଯିବ। ଯାହା ଅସମ୍ଭବ, ଅସ୍ୱାଭାବିକ, ତାହା ଜଗତର ଆଦର୍ଶ ହୋଇପାରେ ନାହିଁ, କିନ୍ତୁ କାରଣ ଅଛି ରଘୁନାଥ, ମୁଁ ଜଣକୁ ଭାରି ଭଲ ପାଏଁ, ତା ଲାଗି ମୁଁ ସବୁ ତ୍ୟାଗକରିଛି, ଆବଶ୍ୟକ ହେଲେ ଏ ପ୍ରାଣ ମଧ୍ୟ ଦେବି।

ତାହାଲାଗି ମୁଁ ବେତମାଡ଼ ସହିଛ, ଜେଲଖାନା ଯାଇଛି, ସମାଜଚ୍ୟୁତ ହୋଇଛି, ସଂସାର ତ୍ୟାଗ କରିଛି–ସେ ଜଣକ କିଏ ଜାଣ ? ସେ ମୋର ଦେଶମାତା, ମୋର ଇଷ୍ଟଦେବୀ। ତାଙ୍କୁ ମୁଁ ନିର୍ଜୀବ ମୂରିକା ମନେକରେ ନାହିଁ, ସେ ମୋର ଜୀବନ୍ତ ଦେବୀ।'' ଲଛମନ ଭକ୍ତିଭରେ ମୁଣ୍ଡ ନୁଆଇଁଲେ।

ରଘୁନାଥ ହୃଦୟ ତନ୍ମୟ ହୋଇଗଲା। କିଛିକ୍ଷଣ ପରେ ଲଛମନ କହିଲେ–''ଭାଇ ! ତୁମେ କଣ ଦେଶମାତାର ସେବା କରିପାରିବ ନାହିଁ ? ତୁମର ଲକ୍ଷ୍ୟ ହଜିଯାଇଛି, ତୁମେ ଶାନ୍ତି ଖୋଜିବୁଲୁଛ, ଦେଶମାତାର ପଦପ୍ରାନ୍ତରେ ତୁମେ କଣ ସେ ଶାନ୍ତି ପାଇବ ନାହିଁ ?''

ସେତେବେଳେ ସୂର୍ଯ୍ୟର ଶେଷ ଆଭାସ ଟିକକ ଯମୁନାର ବିଶାଳ ବାରିବକ୍ଷ ଉପରେ ନାଚି ନାଚି, ବିବିଧ ବର୍ଣ୍ଣର ଅପୂର୍ବ ଇନ୍ଦ୍ରଜାଲ ସୃଷ୍ଟିକରିଥିଲା। ଆକାଶର ଅନନ୍ତ ନୀଳିମା ତଳେ ଶତ ଶତ ବିହଙ୍ଗ ଉଡ଼ି ଯାଉଥିଲେ ସ୍ୱ ସ୍ୱ ନୀଡ଼କୁ। ସେମାନଙ୍କୁ ଝରକା ବାଟେ ଚାହିଁ ରଘୁନାଥ ଭାବିଲା, ''ସମସ୍ତଙ୍କର ଆଶ୍ରା ଅଛି। ବିଶ୍ୱମାତା ସମସ୍ତଙ୍କର ଜୀବନଲାଗି ସଂସ୍ଥାନ କରିଦେଇଛନ୍ତି। ତେବେ ରଘୁନାଥପାଇଁ ସେ କଣ କୌଣସି ସଂସ୍ଥାନ କରି ନ ଥିବେ ? ଏତେ ବର୍ଷ ସେ ଯାହାଙ୍କର ଶ୍ରୀଚରଣ ତଳେ କାଟିଛି, ଯେ ତାଙ୍କୁ ଧନ, ଐଶର୍ଯ୍ୟ, ସୁଖ, ଶାନ୍ତି, ପିଲା, ପରିବାର ସବୁ ଦେଇଛନ୍ତି, ସେ କଣ ଏହି ମୁହୂର୍ତ୍ତରେ ତାକୁ ତ୍ୟାଗକରିବେ ? ହଁ, ମାୟାକୁ ହରାଇ ସେ ଉନ୍ମାଦ। ସୀତାଠାରୁ ଉପେକ୍ଷିତ ହୋଇ ସେ ହତାଶ। ଦୁଇ ଜଣ ତାର ଆପଣାର ଲୋକ ତାକୁ ତ୍ୟାଗକଲେ, ସେ କାହାକୁ ଘେନି ଆଉ ବଞ୍ଚିବ ? ଜୀବନ ଯେ ଲକ୍ଷ୍ୟଶୂନ୍ୟ।'' ତାର ପୁଅ ଦିଓଟିଙ୍କ ମୁହଁ ମନେପଡ଼ିଲା, ଝିଅ ଦୁହିଁଙ୍କର କୋମଳ କାନ୍ତି ଆଖି ଆଗରେ ନାଚିଉଠିଲା; କିନ୍ତୁ ତାଙ୍କପାଇଁ ସେ ଅଧିକ କଣ କରିବ ? ଅତୁଳ ସଂପତ୍ତିର ଅଧିକାରୀ ସେମାନେ। ତାଙ୍କ ପାଇଁ ତାର ଭାବିବାର ପ୍ରୟୋଜନ ନ ଥିଲା। ମାୟାର ମୃତ୍ୟୁ ପରେ ଆଉ ତାର କାର୍ଯ୍ୟରେ ମନ ନାହିଁ। ବର୍ମା ଗଲେ କୋହଉଠୁଛି। କାହିଁକି, କାହାପାଇଁ ଆଉ ସେ ଜୀବନ ଧାରଣକରିବ ? ଅଜି ଲଛମନର କଥାରେ ତାର ଆଖି ଆଗରେ ସାହସା ଗୋଟିଏ ନବୀନ କର୍ମକ୍ଷେତ୍ର ଦେଖାଦେଲା। ସେ ତନ୍ମୟ ହୋଇ ଭାବିଲା–'ଦେଶମାତାର ସେବା ସେ କରିବ। କାହିଁକି ନ କରିବ ?' କିଛିକ୍ଷଣ ପରେ କହିଲା–''ଭାଇ ! ତୁମର କଥା ଠିକ୍। ଦେଶମାତାର ଶ୍ରୀପଦ ତଳେ ମୋର ଶାନ୍ତିହେବ ପରା। ଭଗବାନ୍ ଏହିଯୋଗୁଁ ମତେ ଏତେ ପରୀକ୍ଷା, ଏତେ ଦୁଃଖଦେଇ ଏ ଅବସ୍ଥାକୁ ଆଣିଛନ୍ତି ପରା ! ତୁମେ ମୋ ଲାଗି ପ୍ରାର୍ଥନା କର ଭାଇ ! ମୁଁ ଦେଶମାତାର ଯେପରି ସେବକ ହୁଏ।'' ଲଛମନ ପୂର୍ଣ୍ଣପ୍ରାଣରେ କହିଲେ– ''ତଥାସ୍ତୁ।''

ବକୁଳ ବୃକ୍ଷର ବିସ୍ତୃତ ଛାୟାତଳେ ପରିଷ୍କାର ପରିଚ୍ଛନ୍ନ ପ୍ରାଙ୍ଗଣ, ଏଇଠି ବସି ଦୁଇ ପ୍ରହର ସମୟରେ ମାୟା ଓ ମୀରା କଥାଭାଷା ହେଉଥିଲେ, ଏଇଠି ବସି ତୁକା ଓ ମୀରା ସିଲେଇ କରନ୍ତି, ପୋଥି ପଢ଼ନ୍ତି, ପୁଣି ଲଛମନ ସଙ୍ଗୀ ଦଳଙ୍କୁ ଘେନି ବୈଠକକରନ୍ତି। ଆଜି

ସେହିପରି ଗୋଟିଏ ସନ୍ଧ୍ୟା ବୈଠକ। ଲଛମନ ବଡ଼ ସଂଗୀତପ୍ରିୟ। ସେ ହାରମୋନିୟମରେ ଗୀତ ଗାଉଛନ୍ତି, ପ୍ରଫୁଲ୍ଲଚିତ୍ତରେ ଶୁଣୁଛି ରଘୁନାଥ। ରଘୁନାଥ ଦେଶସେବା ବ୍ରତଧାରଣ କରିଛି, ତାର ଜୀବନରେ ବହୁ ପରିବର୍ତ୍ତନ ଘଟିଛି। ଲଛମନର ଗୀତ ସାଙ୍ଗ[୧] ହେଲା ପରେ ସେ ମଧ ଗୋଟିଏ ଗୀତ ଗାଇଲା। ତାର ଗୀତ ଓଡ଼ିଆ, ମଧୁର ଓଡ଼ିଶୀ ରାଗିଣୀରେ ରଘୁନାଥ ଗାଇଲା–

ଜୟ ମା, ନୀଳାଚଳ ଅଞ୍ଚଳେ
ଜୟ ମା ଚିଲିକା-ନୀଳ-କଲ୍ଲୋଳଚଞ୍ଚଳେ !
ପବିତ୍ର ତୋହୋର ଚିତ୍ର ଉତ୍ପଳ-ଚରଣ ରେଣୁ, ଦେ ମା ଶିରେ,
ତର୍ପଣ ମୁହିଁ କରିବି, ଯେସନ ଶ୍ରୀପଦ ତପତ ରୁଧିରେ।
ଭୁଜେ ଦେ ମା ଭରି ଅଜେୟ ବିକ୍ରମ,
ହୃଦତନ୍ତ୍ରେ ବାଜୁ ବନ୍ଦେ ମାତରମ୍
ଯାଏ ଯଥାତଥା, ରହୁ ମୋର ମଥା
ନତ ଶ୍ରୀପଯରେ ସର୍ବମଙ୍ଗଳେ।

ସମବେତ ସମସ୍ତେ ତାହାର ମନୋହର କଣ୍ଠସ୍ୱରରେ ମୁଗ୍ଧହେଲେ। ଲଛମନ ସାଶ୍ରୁନେତ୍ରରେ କହିଲେ–''ରଘୁନାଥ 'ହିନ୍ଦୁସ୍ଥାନିକ ସମାଚାର' ଅଫିସରେ ବସି କାମକରିବା ତୁମ୍ଭକୁ ଶୋଭା ପାଉ ନାହିଁ। ଫେରି ଯାଅ ତୁମେ ସେହି ନୀଳାଚଳ ଅଞ୍ଚଳ ପୁଣ୍ୟ ଉତ୍କଳଭୂମିକୁ, ସେହି ତୁମର ମା, ସେହି ତୁମର ସେବାପାଇବାର ଯୋଗ୍ୟା। ତାହାର ଦୁଃଖ ଦୁର୍ଦ୍ଦଶା ଦୂର କରିବା ତୁମର ସର୍ବାଦୌ କର୍ତ୍ତବ୍ୟ।''

ଅବଦୁଲ୍ ଅଜିଜ୍ କହିଲେ–''ଭାଇ ଲଛମନ୍ ଯାହା କହୁଛନ୍ତି ସତ କଥା। ତୁମର ଦେଶ ତୁମକୁ ଚାହେଁ, ଏଠି ଅନେକ କର୍ମୀ, ଏଠି ଅନେକ ଦେଶଲାଗି ସର୍ବସ୍ୱ ପଣକରି ବସିଛନ୍ତି। ତୁମେ ସେହି ଦରିଦ୍ର ଓଡ଼ିଶାକୁ ଫେରିଯାଅ। ନିଜ ମା କଥା ଆଗ ଭାବ।''

ରଘୁନାଥ କହିଲା–''ଭାଇ ! ତୁମମାନଙ୍କ ସାଙ୍ଗ ଛାଡ଼ିବାକୁ ମୋର ଇଚ୍ଛା ହେଉ ନାହିଁ। ତୁମମାନଙ୍କର ପବିତ୍ର ଆଦର୍ଶରୁ ଚ୍ୟୁତହେବାକୁ ମୋର ସାହସ ନାହିଁ।''

ଲଛମନ କହିଲା–''ଦେଶ ଦେଶ, ଜାତିଜାତି ମଧରେ ଘୃଣାର ପକ୍ଷପାତୀ ମୁଁ ନୁହେଁ। ଦେହର ଗୋଟିଏ ଅଙ୍ଗର ପକ୍ଷାପାତ ହେଲେ ଅନ୍ୟ ଅଙ୍ଗକୁ ବାଧିବ ନାହିଁକି ? ମୁଁ ଓଡ଼ିଶାର ଦଶା ସ୍ୱଚକ୍ଷୁରେ ଦେଖିଛି। ଯେଉଁ ଦେଶରେ ଦିନେ କଳିଙ୍ଗ ସମ୍ରାଟ ଐର ଖାରବେଳ ଭାରତର ଛତ୍ରପତି ହୋଇଥିଲେ, ଯେଉଁ ଦେଶରେ ଅଦ୍ୟାବଧି ଜଗନ୍ନାଥ ଦେବଙ୍କର ପବିତ୍ର ବିଗ୍ରହ[୨] ସମ୍ମୁଖରେ ପ୍ରତ୍ୟେକ ହିନ୍ଦୁସ୍ଥାନବାସୀ ନତଜାନୁ, ସେ ଦେଶ ହୋଇଛି କୁଲିଙ୍କ ଦେଶ। ସେ ଦେଶର ଲୋକଙ୍କୁ ଅନ୍ୟାନ୍ୟ ଦେଶର ଲୋକେ ତାଚ୍ଛଲ୍ୟ[୩] କରନ୍ତି !''

(୧) ଶେଷ, (୨) ମୂର୍ତ୍ତି, (୩) ପରିହାସ, ଠଟ୍ଟା।

କଥାଟା ରଘୁନାଥର ମର୍ମ ସ୍ପର୍ଶକଲା। ସତ କଥା ତ, ଦେଶକୁ ସମସ୍ତେ ଅବଜ୍ଞା କରନ୍ତି, ଏହା ନିଜେ ଜାଣେ। ରାଙ୍ଗୁନରେ ଓଡ଼ିଆମାନେ କୁଲିଗିରି କରନ୍ତି, ସେଥିପାଇଁ ସେଠି ଓଡ଼ିଆର କୁଲିଠୁଁ ବଳି ସମ୍ମାନ ନାହିଁ। କଲିକତାରେ ଓଡ଼ଆଙ୍କୁ ବଙ୍ଗାଳୀମାନେ ଟାପରା କରି ଅନେକ କଥା କହନ୍ତି। ଏପରି ଦୁର୍ନାମ–ଏମରି ଜାତୀୟ କଳଙ୍କ କଣ କେବେ ହେଲେ ଦୂର ହେବ ନାହିଁ? ତାହାର ମାତୃଭୂମି କଣ ସର୍ବଦା ହୀନ ଅବସ୍ଥାରେ ପଡ଼ିଥିବ? ତା ହୃଦୟରେ ଚିରକାଳ ଓଡ଼ିଶା ପ୍ରତି ଗଭୀର ଅନୁରାଗ ଥିଲା। କର୍ମବିପର୍ଯ୍ୟରେ ସେ ବହୁତ ଦେଶ ବୁଲିଛି। ବହୁତ ଭିନ୍ନ ଭିନ୍ନ ଜାତିର ଲୋକଙ୍କ ସହିତ କାରବାର କରିଛି, କିନ୍ତୁ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ କଦାପି ସେ କୁଣ୍ଠିତ ହୋଇ ନାହିଁ। ତାହାର ମାତୃଭୂମିକୁ ସେ ଅତ୍ୟନ୍ତ ଭଲପାଏ।

ପରଦିନ ହଠାତ୍ କେବଳବାବୁଙ୍କର ଗୋଟିଏ ଟେଲିଗ୍ରାମ ଆସିଲା। ରଘୁନାଥ ବ୍ୟସ୍ତ ହୋଇ କଲିକତା ଯାତ୍ରାକଲା। କେବଳ ବାବୁ ତାକୁ ପୁଣି ବର୍ମା ଯିବାକୁ ଅନୁରୋଧ କଲେ। ବୈଠକଖାନାରେ ଏକାକୀ ଶଶୁର ଜୁଆଇଁ ବସିଥିଲେ। ଶଶୁର କହିଲେ–''ବାପା! ତୁମେ କିପାଁ ବାୟା ମନ ... ଯାହା ହେବାର ହେଲଣି। ତୁମର ଇଚ୍ଛା ତ ଦ୍ୱିତୀୟ ସଂସାର କର। ମୋର ....ଲତିକାକୁ ବିବାହ କର। ପିଲାମାନଙ୍କୁ ଧରି ସୁଖରେ ରହ, କାହିଁକି ଏଣେ ତେଣେ ପଳାଇ ଯାଉଛ?''

ରଘୁନାଥ ନତବଦନରେ କହିଲା–''ପିତଃ! ମୁଁ ସଂପତ୍ତିଲୋଭୀ ନୁହେଁ। ଯାହା ଲାଗି ସଂପତ୍ତି, ସେ ଯେତେବେଳେ ମୋର ଯାଇଛି, ଆଉ କଣପାଇଁ ସେ ଦେଶକୁ ଫେରିଯିବି? ଆଉ ଦ୍ୱିତୀୟ ବିବାହରେ ମୋର ଇଚ୍ଛା ନାହିଁ। ଲତିକା ମୋର ଭଉଣୀ?''

''ମୁଁ ଜାଣେ ବାପ ତୁମେ ନିର୍ଲୋଭ। କିନ୍ତୁ ପିଲା ଚାରୋଟିଙ୍କ ମୁହଁକୁ ଅନାଇବ ନାହିଁ?''

ରଘୁନାଥ ଛଳଛଳ ଆଖିରେ କହିଲା–''ଆପଣଙ୍କ ଯତ୍ନରେ ପିଲା ଚରୋଟି ତ ମୋର ସୁଖରେ ଅଛନ୍ତି। ଆପଣଙ୍କ କଲ୍ୟାଣରେ ମୋର ନିର୍ମଳ, ନିରୂପମ ମଣିଷ ହୋଇ ବର୍ମା ଥଏଲ୍ କଂପାନୀର ଭାର ନେବେ; କିନ୍ତୁ ଆଉ ମୋତେ ସଂସାରର ମାୟାବନ୍ଧନରେ ବାନ୍ଧନ୍ତୁ ନାହିଁ। ଏଥର ମୁଁ ସର୍ବତ୍ୟାଗୀ ହୋଇଛି, ଲଛମନ୍ ଭାଇର ଦୀକ୍ଷା ନେଇଛି।''

କେବଳ ବାବୁ ବହୁକ୍ଷଣ ନୀରବ ହୋଇ ରହିଲେ। ପରେ ଦୁଃଖିତ କଣ୍ଠରେ କହିଲେ–''ରଘୁନାଥ! ପୁଅ! ବର୍ମା ସଂପତ୍ତି ତୁମର। ନିଜେ ବୁଝ ବା ତୁମେ ଯାହା ଇଚ୍ଛା ତାହା କର; କିନ୍ତୁ ତୁମର ମହତ୍ ଲକ୍ଷ୍ୟରେ ମୁଁ ବାଧା ଦେବି ନାହିଁ। ମୁଁ ଜାଣେ ତୁମେ ଲଛମନଠାରୁ କି ଦୀକ୍ଷା ନେଇଛ। ମୋହୋର ଭୟ ବାସ୍ତବରେ ପରିଣତହୋଇଛି।''

ରଘୁନାଥ ଧୀର ସ୍ୱରରେ କହିଲା–''ଦେଶସେବାରେ ଭୟ କଣ ବାବା?''

କେବଳବାବୁ କହିଲେ–''ଜାଣ, ଲଛମନ କେତେ ଥର ଜେଲ୍ ଯାଇଛି? ତାହାର ପ୍ରାଣନାଶ କରିବାକୁ ଲୋକେ ଗୋଡ଼େଗୋଡ଼େ ଜଗିରହିଛନ୍ତି। ସେ ରାଜଦ୍ରୋହୀ ବୋଲି

ଚାରିଆଡ଼େ ପ୍ରଚାରିତ।''

''କିନ୍ତୁ ବାବା! ସେତେ ବଡ଼ ତେଜସ୍ୱୀ ପୁରୁଷ ନ ହୋଇ ଥିଲେ କଣ ସେ ଏତେ ନିର୍ଯ୍ୟାତନ ସହନ୍ତେ ?''

କେବଳବାବୁ କହିଲେ–''ସେ ପୁରୁଷସିଂହ, ଆମ୍ଭେମାନେ ଭୀରୁ, ଅକର୍ମଣ୍ୟ! ହେଉ, ମୁଁ ଆଶୀର୍ବାଦ କରୁଛି, ତୁମେ ନବନିର୍ବାଚିତ ପଥରେ ଯଶସ୍ୱୀ ହୁଅ।''

ଜୁଆଁଇର କଥା ଶୁଣି ସୁଧାମୟୀ ବଡ଼ ଦୁଃଖିତ ହୋଇ ସ୍ୱାମୀକୁ କହିଲେ–''ରଘୁ ବଡ଼ ଖିଆଲିଆ, ତୁମେ ତାକୁ ବାରଣ କଲ ନାହିଁ?''

କେବଳବାବୁ କହିଲେ–''ସେ ମହାଧର୍ମର ବ୍ରତ ନେଇଛି, ମୁଁ କାହିଁକି ବାରଣ କରି ପାପଭାଗୀ ହେବି ? ଦେଶସେବାଠୁଁ ବଳି ଆଉ କଣ ଧର୍ମ ଅଛି ?''

''ତଦ୍ୱାରା ସେ ଯେ ରାଜଦ୍ରୋହୀ ହେବ।''

''ଦେଶସେବା କଲା ମାତ୍ରେ କଣ ରାଜଦ୍ରୋହୀ ହୁଅନ୍ତି ?''

''କିନ୍ତୁ ମୋର ବଡ଼ ଭୟ, ସେ ଲଛମନ ପରି ଜେଲ ନ ଯାଉ।''

''ଦେଶସେବାଲାଗି କାରାବରଣ ଯେ ଗୌରବ।''

ତାଙ୍କ କଥା ଶେଷ ନ ହେଉଣୁ ଆଉ ଘରୁ ଗୀତର ମଧୁର ଲହରୀ ଭାସିଆସିଲା। ଅର୍ଗାନ୍‌ରେ ଗୀତ ଗାଉଥିଲା ସାନ ମିନତି। ମିନତିର କଣ୍ଠସ୍ୱର ବାପ କଣ୍ଠ ପରି ଅତି ମଧୁର। ରଘୁନାଥ ତାକୁ ନିଜର ମାତୃଭାଷା ଶିକ୍ଷା ଦେଇଥିଲା। ତାହାର ସ୍ୱରଚିତ ଗୀତ କେତୋଟି ସେ କନ୍ୟା ମୁଖରୁ ଶୁଣିବାକୁ ବଡ଼ ଭଲପାଏ। ମିନତି ରଘୁନାଥର ଆଦେଶରେ ଗାଇଲା:–

ସୁନ୍ଦର, ସୁନ୍ଦର, ସୁନ୍ଦର!
ଚିରସୁନ୍ଦର ତୋର ଶ୍ରୀପୟର।।
ପଦପଙ୍କଜର କିଙ୍କର ବୋଲି
ଦୂରେ ଦୂରେ ମୋତେ ନ ଦିଅ ହେ ଠେଲି,
ତୋର କୋଟିଏ ସନ୍ତାନ ମଧେ ମୁଁ ଗୋଟିଏ ଅଧମ ସେବକ ତୋହାର।
କଳଙ୍କ ତୋ ଲାଗି ସେ ମୋର ଭୂଷଣ,
ଦିଅ ବକ୍ଷେ ଥୋଇ ପବିତ୍ର ଚରଣ,
ରାମ, କୃଷ୍ଣାର୍ଜୁନ ଯା ସେବା ଭାଜନ, ସେ ଚିର ସଂପଦ ମୋହର।
ଚିରସୁନ୍ଦର ତୋର ଶ୍ରୀପୟର।

କେବଳ ବାବୁ ନାତୁଣୀର ଅପୂର୍ବ କଣ୍ଠରେ ମୋହିତ ହୋଇ କହିଲେ–''ଅମିମା, ଏ ବାପ ଝିଅ ଦୋଟିଯାକ ଏଥର ଦେଶ ଉଦ୍ଧାର କରିପକାଇବେ। ମିନତି ପକ୍କା ଓଡ଼ିଆଣୀ! କେଡ଼େ ସୁନ୍ଦର ଓଡ଼ିଆ ଗୀତ ଗାଉଛି!'' ନିର୍ମଳ ଆସି ଅଜା ପିଠିରେ ଲଦିହେଲା। ଅଜା ରହସ୍ୟ କରି କହିଲେ–''ତୁ ଓଡ଼ିଆ କି ରେ!''

ନିର୍ମଳ ଗର୍ବରେ କହିଲ–''ମୋର ବାପା ଓଡ଼ିଆ, ଆଉ ମୁଁ କଣ ଓଡ଼ିଆ ନୁହେଁ ?''

ଅଜା ଆଖିକି ଦେଖେଇ କହିଲେ–''ଦେଖିଲ ନିମକହରାମ ନାତିକି ?''

ଆଈ କହିଲେ–''ସେ ପ୍ରକୃତିରେ ପିତୃଭକ୍ତି ସନ୍ତାନ।''

ନାତି ପିଠିରେ ଗେଲରେ ଧୀରେ ବିଧାଟିଏ ଥୋଇ ଅଜା ବାହାରକୁ ଗଲେ। ଆଈ କହିଲା, ନିର୍ମଳ ! ତତେ ଏତେ କଥା କିଏ ଶିଖେଇଲା କି ରେ ?'' ନିର୍ମଳ ଅଶ୍ରୁପୂର୍ଣ୍ଣ ଲୋଚନରେ କହିଲା–''କାହିଁକି, ମା କହେ, ଆମେ ଓଡ଼ିଆ, ଆମ ଗୋସାଁବାପା ଗୋସାଁମା ଘରକୁ ଯାଉଥିଲୁ। ସେମାନେ ଓଡ଼ିଆ କହନ୍ତି। ଆଈମା ! ମୁଁ କଟକ, ପୁରୀ ଯିବି ? ସେମାନେ ମତେ ଭାରି ସ୍ନେହ କରିନ୍ତି।''

ସୁଧାମୟୀ କନ୍ୟା ଚିନ୍ତାରେ ବ୍ୟଥିତା ହୋଇଥିଲେ, ଆଉ କିଛି ଉତ୍ତର ଦେଇ ପାରିଲେ ନାହିଁ।

ରଘୁନାଥ ସେତେବେଳେ ଦାଣ୍ଡଘରେ କାନ୍ଥରେ ଗୋଟିଏ ଅଏଲ୍ ପେଣ୍ଟିକୁ ଚାହିଁଥିଲା। ମନୋହର ଚିତ୍ର, ସେ ବର୍ମାରୁ ତିଆରିକରି ଆଣିଥିଲା। ଅଏଲ୍ ପେଣ୍ଟିଂରେ ଚିତ୍ରିତ ହୋଇଥିଲେ ମାୟା ଓ ରଘୁନାଥ, ଆଉ ଚାରୋଟି ଶିଶୁ। ଶିଳ୍ପୀର ଅଭୁତ କୌଶଳରେ ସମସ୍ତେ ଜୀବନ୍ତ ପରି ଦିଶୁଥିଲେ। ରଘୁନାଥ ବହୁକ୍ଷଣ ଚହିଁଲା ମାୟାର ମୂର୍ତ୍ତିକୁ। ଅଏଲ୍ ପେଣ୍ଟିଂରେ ସୁଦ୍ଧା ତାର ଅଧରପଲ୍ଲବରେ ଈଷତ୍ ହାସ୍ୟରେଖା ପ୍ରସ୍ଫୁଟିତ। ତାହାର ନୟନ ଦ୍ୱୟ ପ୍ରେମ ଜ୍ୟୋତିରେ ଉଜ୍ଜ୍ୱଳ। ସେହି ଅପୂର୍ବ ସୁନ୍ଦର ପ୍ରେମମୟ ପ୍ରତିରୂପ ମଧ୍ୟରେ ରଘୁନାଥ ଦେଖିଲା ତାହାର ଆତ୍ମାକୁ। ଆଜି ସୁଦ୍ଧା ମାୟା ଜୀବିତ, ତାର ଅନ୍ତରଆତ୍ମାରେ ମାୟା ଜୀବିତ। ତାର ପ୍ରତ୍ୟେକ ରକ୍ତବିନ୍ଦୁରେ ମାୟାର ନାମ। କ୍ଷଣିକ ମୋହରେ ସେ ସିନା ସୀତାକୁ ବିଭା ହେବାକୁ ଯାଇଥିଲା, ମାତ୍ର ମାୟାହିଁ ତାହାର ପ୍ରକୃତ ସହଧର୍ମିଣୀ, ତାହାର ସହକର୍ମିଣୀ, ତାର ଜୀବନତରୁ – ଆଶ୍ରିତ ପ୍ରେମଲତିକା। ବାର ବର୍ଷ କାଳ ସେ ତାର ଘର କରିଥିଲା ପରମ ଯତ୍ନରେ–ବାର ବର୍ଷ କାଳ ତାକୁ ଭୁଲାଇ ରଖିଥିଲା ପରମ ପ୍ରେମରେ, କିନ୍ତୁ କ୍ରୂର କାଳକୀଟ ଆସି ତାର ଜୀବନ-ଉଦ୍ୟାନର ଅପୂର୍ବ ଗୋଲାପ ଫୁଲର ଡେମ୍ଫ କାଟିଦେଲା। ରଘୁନାଥ ଏକା ହେଲା,-ବାୟା ହେଲା। ମାତ୍ର ଆଉ ନୁହେଁ। ଏଥର ମାୟା ନାମ ମନ୍ତ୍ର ଜପକରି ସେ ଦେଶସେବାରେ ଲାଗିବ। ମାୟାର ମୋହନ ମୂର୍ତ୍ତି ହେବ ତାର ଜୀବନର ସଙ୍ଗିନୀ।

ରଘୁନାଥ ଫ୍ରେମ ବନ୍ଧା ଫୋଟୋଟି କୋର୍ଟ ପକେଟ୍‌ରୁ କାଢ଼ିଲା। ନୀରବ ନିଭୃତରେ ବସି ତାକୁ ଶତ ଶତ ଚୁମ୍ବନ କରି ଅଶ୍ରୁଜଳରେ ଅଭିଷିକ୍ତ କଲା। ଆଜି ତାର ମନେହେଲା, ପବିତ୍ର ବିବାହ ବନ୍ଧନରେ ଯେ ତାର ସହଧର୍ମିଣୀ ହୋଇଥିଲା, ସେହିଁ ତାହାର ସ୍ତ୍ରୀ। ସେ ସୀତାକୁ କେବଳ କ୍ଷଣିକ ଉତ୍ତେଜନାରେ ବିଭାହେବାକୁ ଯାଇଥିଲା। ସୀତାର ଶେଷ କଥା ତାର ମନେପଡ଼ିଲା। ତାର ତେଜୋମୟୀ ମୂର୍ତ୍ତି ଭିତରେ ଦେଖିଲା ସୀତା ତାର ସ୍ୱାମୀ ଦିବାକରର। ମାୟା ପ୍ରତି ବିଦ୍ରୋହୀ ହୋଇ ସେ ଯେ ସୀତାକୁ ବରଣ କରିବାକୁ ଯାଇଥିଲା, ଏ ଲଜ୍ଜାରେ ତାର ଅନ୍ତର ବ୍ୟାକୁଳ ହୋଇଉଠିଲା। ସେ ନତଜାନୁ ହୋଇ ପରଲୋକଗତ ମାୟା ନିକଟରେ

ବାରମ୍ବାର କ୍ଷମାପ୍ରାର୍ଥନାକଲା।

ମନ ତାର କହିଲା ମୂର୍ଖ। ସୀତା କିଏ। ମାୟା କିଏ। ଗୋଟିଏ ପ୍ରେମର ଦୁଇଟି ଛବି। ଅନନ୍ତ ପ୍ରେମରେ ଜଗତ୍ ବନ୍ଧା। ସେହି ପ୍ରେମର ଦିଓଟି ବିକାଶ। ଯେ ଆଲୋକ ଭଲ ପାଏ, ସେ କଣ ଅନ୍ଧାକାର ଭଲପାଏ ନାହିଁ? ଯେ ହସେ, ସେ କଣ କାନ୍ଦେ ନାହିଁ? ସୀତା ଓ ମାୟା ତୋର ଦିଓଟି ପ୍ରକୃତି, ଗୋଟିଏ ଆନନ୍ଦମୟୀ, ଅପରଟି ବିଷାଦିନୀ। ଗୋଟିଏ ପୂର୍ଣ୍ଣିମା ଚାନ୍ଦର ମଧୁର କିରଣ–ଅନ୍ୟଟି ଅମାନିଶୀଥିନୀର ଦୁର୍ଭେଦ୍ୟ ତମିସ୍ରା। ଦିଓଟି ତୋର, କାହାରିକୁ ଭୁଲିବାକୁ ଚେଷ୍ଟା କରନା। ଦୁଇଜଣଙ୍କ ସ୍ମୃତି ହୃଦୟରେ ରଖି ନବକର୍ମ ପ୍ରବାହରେ ଜୀବନ ଭସାଇ ଦେ।

ରଘୁନାଥ ମନର କଥା ମାନିଲା। ସେହିଦିନୁଁ ସେ ସୀତା ଓ ମାୟା ଉଭୟଙ୍କ ପବିତ୍ର ସ୍ମୃତି ଧ୍ୟାନକରି ଜୀବନ କାଟିଲା। କୁଆଡ଼େ ଗଲା, କଣ ହେଲା, ଆଉ କେହି ତାର ଖବର ପାଇଲେ ନାହିଁ। ଅନେକ ଅନେକ କଥା କହିଲେ, ହେଲେ ଆମେ ଜାଣୁ ସେ ଅଦ୍ୟାପି ଜୀବିତ।

କିନ୍ତୁ ସୀତାର କଣ ହେଲା?

× × × ×

ତୁଳସୀପୁର ସେ ମୁଣ୍ଡକୁ ଉଦିଗା ପଡ଼ିଆରେ ଦେଉଳସାହି ଯିବା ବାଟ ଉପରେ ଧାଡ଼ି ଧାଡ଼ି କେତୋଟି ଚାଳ ଘର ଅଛି। ସଡ଼କ ଦାଡ଼କୁ ଗୋଟିଏ ଖୁଣ୍ଟ ପୋତା ହୋଇ କାଳିଆ ପଟାରେ ବଡ଼ ବଡ଼ ଅକ୍ଷରରେ ଲେଖା ରହିଛି–

''ମାନବେ ନ ମଣିବ ସାନ,
ମାନବ ଦେବତା ସମାନ।
ଜାତି ଅଜାତି ବେଦେ ନାହିଁ
ବ୍ରାହ୍ମଣ ନିଜ ସ୍ୱାର୍ଥ ପାଇଁ
ରଚିଛି ସକଳ ବିଧାନ,
ଚିନ୍ତ ସୁଧୀରେ ଜ୍ଞାନବାନ।''

## ଜଗନ୍ନାଥ କୁଟୀର

### ତା ତଳେ ଧାଡ଼ିଏ ସାନ ଅକ୍ଷର

### ସମସ୍ତଙ୍କ ଲାଗି ଅବାରିତ ଦ୍ୱାର।'

ଏଇ ଜଗନ୍ନାଥକୁଟୀରରେ ଆଜିକି ଦଶ ବର୍ଷ ହେଲା ରହିଛନ୍ତି ଜଗନ୍ନାଥ, ତାରାମଣି, ସୀତା ଓ ପିତେଇ ନାନୀ। ଚନ୍ଦ୍ରଶେଖର ଚୌଧୁରୀଙ୍କର କାଳ ଅନ୍ତେ ଭାଇ ଭାଉଜଙ୍କ ଅତ୍ୟାଚାର ସହି ନ ପାରି ସୀତା, ଜଗନ୍ନାଥ ମଉସାଙ୍କ ଆଶ୍ରୟରେ ଆସି ରହିଲା। ପିତେଇ ନାନୀ ମଧ

ତା ସଂଗେ ଧଇଲା। ସେହିଦିନଠାରୁ ସୀତା ଜୀବନରେ ମହାପରିବର୍ତ୍ତନ ଘଟିଲା। ଜଗନ୍ନାଥଙ୍କ ଶିକ୍ଷା ଫଳରେ ସୀତା ପୂର୍ବର କୁସଂସ୍କାର ଭୁଲି, ଦେଶସେବାରେ ପ୍ରାଣ ଆତ୍ମା ଢାଳିଦେଲା। ସେ ଭଲ ଓଡ଼ିଆ ବଙ୍ଗଳା ଜାଣେ। ଜଗନ୍ନାଥ ତୁଳସୀପୁର 'ବାଉରୀ ସାହି', 'ଚଢ଼େଇମରା ସାହି', 'କାଫଲା ବଜାର', 'ପାଣ ସାହି', 'ହାଡ଼ି ଗାଡ଼ିଆ' ଓ 'ଅଲ୍ଲିସା ବଜାର' ହାଡ଼ି ସାହିରେ ପିଲାଙ୍କ ପାଇଁ ଗୋଟିଏ ଚାହାଳି ଖୋଲିଛନ୍ତି।। ସେଥିରେ ଶିକ୍ଷୟିତ୍ରୀ ହୋଇଛି ସୀତା। ପିଲାଙ୍କୁ ବେତନ ଦେବାକୁ ପଡ଼େ ନାହିଁ। ସିଲଟ୍ ବହି କିଣିବାକୁ ପଡ଼େ ନାହିଁ। ମାଗଣାରେ ଆସି ପଢ଼ିଯାନ୍ତି। ସରକାରୀ ପରୀକ୍ଷା ହୁଏ ନାହିଁ; କିନ୍ତୁ ଭଲରୂପେ ମାତୃଭାଷା ପଢ଼ିପାରିଲେ, ମାନସାଙ୍କ, ବଜାର ପ୍ରଚଳିତ ହିସାବଟା କରିଶିଖିଲେ ପାଠ ଶେଷହୁଏ। ସନ୍ଧ୍ୟାବେଳେ ବୟସ୍କା ସ୍ତ୍ରୀମାନେ ସୁଦ୍ଧା ଆସି, ସୀତା ଓ ତାରାମଣି କତିରେ ପାଠପଢ଼ନ୍ତି, ପୋଥିବୋଲା ଶୁଣନ୍ତି।

ଜଗନ୍ନାଥ ନିଜର ସୁନ୍ଦର କୋଠାଘରଟି ବିକି ଦେଇ ଏ କୁଟୀର ତୋଳିଛନ୍ତି। ଶେଷ ଜୀବନରେ ବାନପ୍ରସ୍ଥ ଆଶ୍ରମର ସୁଖ ଅନୁଭବକରିବା ତାଙ୍କର ଉଦ୍ଦେଶ୍ୟ। ଜମି ଦୁଇବାଟିର ଧାନରେ ବର୍ଷକ ସୁଖରେ ଚଳେ। ବିସ୍ତୃତ ବାରି ବଗିଚାର ଫସଲରେ ବର୍ଷ ଗୋଟାକ ତିଅଣ[୧] କଷ୍ଟ ହୁଏ ନାହିଁ। ପରିବାରଟି ନିରାମିଷଭୋଜୀ, ଗୈରିକଧାରୀ, ଆଉ ବୈଷ୍ଣବଧର୍ମରେ ଦୀକ୍ଷିତ। ନଦିୟାର ଶ୍ରୀଗୌରାଙ୍ଗ ଯେଉଁ ପ୍ରେମପ୍ଲାବନରେ ଉତ୍କଳ ଭସାଇଥିଲେ, ସେହି ପବିତ୍ର ପ୍ରେମବିବାହରେ ସମସ୍ତେ ମଗ୍ନ।

'ରୂପେଇ' ଗୋଲକନାଥ ମହାରଣା ନାମକ ବଢ଼େଇ ଟୋକାକୁ ବିବାହ କରି ଉଭୟେ ଏହି ଆଶ୍ରମରେ ରହିଛନ୍ତି। ରୂପେଇ ପାକଶାଳାର କର୍ତ୍ତ୍ରୀ ...ଗୋଲକ ବାଡ଼ିବଗିଚାର ମାଲିକ। ବାର ଭାଇ ତେର ଗୋଳା, ବୈଷ୍ଣବ ହେଲେ ସବୁ ଗଲା'' ଏ କଥାର ସାର୍ଥକତା କାହିଁ ତାଙ୍କର କ୍ଷୁଦ୍ର ଚେଷ୍ଟାରେ ଲାଗିଛନ୍ତି ସମାଜ ସଂସ୍କାରପାଇଁ। ଆଶ୍ରମରେ ଅନ୍ଧୁରି କେତୋଟି ପ୍ରାଣୀ ଥିଲେ। ସେମାନେ ସମସ୍ତେ କୁଳତ୍ୟାଗିନୀ ବିଧବା। ସୀତାର ଆଦର୍ଶରେ ପବିତ୍ର ବ୍ରହ୍ମଚର୍ଯ୍ୟାରେ ଆଶ୍ରମକୁ ଦେବଭୂମିରେ ପରିଣତକରି ସେମାନେ ଅଦ୍ୟାପି ସେଇଠି ବାଲ୍ମୀକିଙ୍କ ତପୋବନ ରଚନାକରି ରହିଛନ୍ତି।

ଅଦ୍ୟାପି ଜଗନ୍ନାଥ କବିରାଜ କାମ କରନ୍ତି, ହେଲେ ଆଉ ପଇସା ଛୁଅନ୍ତି ନାହିଁ। ତାଙ୍କର ଇଷ୍ଟଦେବତା ଶ୍ରୀକୃଷ୍ଣଙ୍କ ଧ୍ୟାନରେ ସେ ଅହୋରାତ୍ର ତନ୍ମୟ। ବ୍ରାହ୍ମଣ ସଭା ତାଙ୍କୁ ତ୍ୟାଗ କରିଛି, ଆତ୍ମୀୟସ୍ୱଜନ ବହୁଦୂରରେ ବିସର୍ଜନ କରିଛନ୍ତି; କିନ୍ତୁ ବ୍ରଜର ଗୋପାଳ ସେହି ନବଘନ କାଳିଆର ପ୍ରେମକୋଳରେ ସେ ପରମ ଆଶ୍ରୟ ପାଇଛନ୍ତି।



(୧) ତରକାରି

## ପ୍ରଥମ ପଟ

କାହୁଁ କହ, ମର୍ତ୍ତ୍ୟପ୍ରାଣେ ଧର୍ମର ପିପାସା
ଜାଗିଲା; ବିକଳ ପ୍ରାଣେ ଖୋଜୁବଲେ ସେହି
ଧର୍ମନର କେଉଁ ସରେ: ବୃଥା ମରୀଚିକା
ଭୁଲାଏ ବିଭ୍ରାନ୍ତ ପାନ୍ଥେ ଘୋର ମରୁଦେଶେ ।

ବଡ଼ାର ଦାଣ୍ଡ ସାମନାକୁ ଘରଟା କୁଡ଼ିଆ ନୁହେଁ, ଚାଳିଆ ନୁହେଁ, କଫଲା ନୁହେଁ, କୋଠା ମଧ ନୁହେଁ । ଘରଟା ମଧବିର ଶ୍ରେଣୀୟ ଲୋକର ବାସୋପଯୋଗୀ । ସେକାଳିଆ ମରହଟୀ ଫେସନର ଘର । ଅବଶ୍ୟ ଆମର ପାଠକ ପାଠିକାଙ୍କର ମନୋମତ ନୋହିପାରେ; କିନ୍ତୁ ସେଥିପାଇଁ ମୁଁ ନାଚାର । ଘରଟିର ସାମନାରେ ପିଣ୍ଡା । ଉଚ୍ଚ ମାଟି ପିଣ୍ଡା । ଗୃହ ମଧରେ ହଠାତ୍ ପ୍ରବେଶ କଲାମାତ୍ରେ ଦର୍ଶକ ଏଣେ ଗୋବର, ତେଣେ ଗୋମୂତ୍ର ଦେଖିବାକୁ ପାଇବେ । ଗୃହର ସମ୍ମୁଖ ବଖରାଟି ଗୁହାଳ । ଗୁହାଳରେ ଗୁହାଳେ ଗୋରୁ । ଦୁଇହଳ ବଳଦ, ଚାରିଟା ଗାଈ, ଦୁଗ୍ଧବତୀ କାମଧେନୁ ଏବଂ ତାଙ୍କର ବଂଶଧର ମାନେ; ପୁତ୍ର କନ୍ୟା, ନାତି, ନାତୁଣୀ ଇତ୍ୟାଦି । କାହାର ନାମ ମଙ୍ଗୁଳିଆ, କାହାର ନାମ ସଁବାରିଆ, କାହାର ନାମ ଗୁରୁବାରିଆ ଇତ୍ୟାଦି । ତା' ପଛକୁ ବାସଉପଯୋଗୀ ଗୃହ, ମଧରେ ପ୍ରାଙ୍ଗଣ । ବେଶ୍ ବିସ୍ତୃତ । ଏକ ଦିଗରେ କୂପ ଏବଂ ଅନ୍ୟ ଦିଗରେ କ୍ଷୁଦ୍ର କ୍ଷୁଦ୍ର ବୃକ୍ଷଲତାରାଜି । କୂପର ଚତୁର୍ଦ୍ଦିଗ ସୁନ୍ଦର ସୁନ୍ଦର ପୁଷ୍ପବୃକ୍ଷ ସୁଶୋଭିତ । ଏଠି ଦଉଡ଼ିଟା, ସେଠି ମାଠିଆଟା - ଏହିପରି ଛିନ୍ନଛତ୍ର ହୋଇ ପଡ଼ିଥାଏ । ଗୃହଟିରେ ଦୀନା ପାଟରାର ବାସ । ତା'ର ଜାତି ପାଟରା[୧], ବ୍ୟବସାୟ ମଧ ତାହା । ସେ ବେଶ୍ ଚଳେ । ଲୋକଟି ନିରୀହ । କାହାକୁ ପଦେ ତୁଟି[୨] କହିବାର କେହି କେବେ ଶୁଣିନାହିଁ । ସରଳ, ଭଦ୍ର ଏବଂ ବିନୟୀ । ଗ୍ରାମର ଲୋକେ ବାବୁ ପଦବାଚ୍ୟ କରି ନ ପାରୁ; କିନ୍ତୁ ଏକ ହିସାବରେ ସେ ବାବୁ । କଥାରେ ଲୋକେ କୁହନ୍ତି - ଯାହାର ନାହିଁ ଚାଷ, ତାହାର ନାହିଁ ବାସ । ଦୀନାର ଚାଷଜମି ପ୍ରାୟ ବାରମାଣ ଥିଲା । ସେଥିପାଇଁ ଆପଣା ଅନ୍ନ ଆପେ ଭୁଞ୍ଜି ସେ ଘରେ ପୁତ୍ର କଳତ୍ର ସହିତ ସୁଖରେ ଥାଏ । ଦୀନାର ସ୍ତ୍ରୀର ନାମ ଗେନ୍ଦ୍ଲୀ । ସେକାଳର ପାଟରାଣୀ । ସେଥିପାଇଁ ତାହାର ନାମକରଣ ସମୟରେ କିଛି ବିଚାର ବିଧି ଇତ୍ୟାଦିର ଯୋଗାଡ଼ ହୋଇ ନଥିଲା । ସାହିତ୍ୟ ଏବଂ ସଭ୍ୟତାର ଏ ନାମ ରୁଚି ବିରୁଦ୍ଧ ହେବ କି ନାହିଁ, କେହି ଭାବିବାକୁ ଅବସର ପାଇ ନଥିଲା । ଯଦିଚ ପାଟରାଣୀ ପରି ତାହାର ସୁବର୍ଣ୍ଣ ଉଜ୍ଜ୍ୱଳ କିରୀଟ ନ ଥିଲା; ତଥାପି ତାହାର 'ସୁନୀଚ' ଶାନ୍ତି କୁଟୀରର ସେ ପାଟରାଣୀ । ଗଣ୍ଡେଇ, କଉଶୁଲୀ ସଖୀଦ୍ୱୟ, ପୁତ୍ର ନାଥିଆ ଓ ଭୋବନା ଏବଂ କନ୍ୟା ଏକୋଇର ବଳା ଗେଳବସର ଲଖୀ ସହିତ ଗେନ୍ଦ୍ଲେଇ ପାଟରାଣୀ ଢେର୍ ସୁଖରେ ବାସ କରୁଥିଲା ବୋଲି ଆମ୍ଭେମାନେ ବିଶ୍ୱସ୍ତସୂତ୍ରରୁ ଅବଗତ ହୋଇଅଛୁ ।

---

(୧) ମନୋହରି ଓ ଚେରମୂଳି ଜିନିଷ ବିକୁଥିବା ଗୋଷ୍ଠୀ, (୨) ଓଲଟେଇ, ତେଢ଼େଇ, ବାଧିଲାପରି ।

ଗେହ୍ଲେଇର ବାଡ ବଗିଚା ବେଶ୍। ଫଳ ପନିପରିବାପାଇଁ ନିତି ହାଟକୁ ତାମ୍ରମୁଦ୍ରା ପ୍ରେରଣର ଆବଶ୍ୟକତା ନ ଥିଲା। ଯଥାକାଳେ ଆମ୍ବଟି, କଦଳୀଟି, ପଣସଟି ଛାଡ଼ି; ପିଢ଼ାରେ କଖାରୁ, ଭାଡ଼ିରେ କାକୁଡ଼ି, ପଟାଳିରେ ଶାଗ, ରନ୍ଧାଘର ସାମନାକୁ ବାଇଗଣ, ଲଙ୍କା ଇତ୍ୟାଦିରେ ଆମଦାନି[୧] ସମୟଗତ ଏବଂ ମନୋମତ ହେଉଥିଲା।

ଦୀନାର ପରିବାରରେ ଏମାନଙ୍କୁ ଛାଡ଼ି ବୃଦ୍ଧା ପିଉସୀ ମଣି ଏବଂ ବୃଦ୍ଧ ହଳିଆଟିଏ। ବାହାରେ ଥାଏ, ଘରର ପାଞ୍ଚ ପାଇଟି କରେ, ଦଶକୋଶ କହିଲେ ଦଉଡ଼ିଯାଏ। ମଧ୍ୟବୟସ, ବଡ଼ ବିଶ୍ୱସ୍ତ। ନାମ ଲକ୍ଷ୍ମଣ।

ଆଜିକାଲିକାର ଦିନ ନୁହେଁ, ସେକାଳର କଥା। ସେତେବେଳେ ଦେଶରେ ବିଦ୍ୟାର ପ୍ରସାର ଅଳ୍ପ ଥିଲା। ସ୍କୁଲ୍ କଲେଜର ସଂଖ୍ୟା ମଧ୍ୟ ତଥୈବଚ। ଲୋକଙ୍କ ମନରେ ବିଦେଶୀୟ ଭାଷା ଶିକ୍ଷାର ସ୍ପୃହା ମଧ୍ୟ ଅଳ୍ପ ଥିଲା। ସଂସାର ଅଳ୍ପ ବ୍ୟୟରେ ଏବଂ ସୁଖସ୍ୱଚ୍ଛନ୍ଦରେ ନିର୍ବାହିତ ହେଉଥିଲା। ଯେ ପାଞ୍ଚଟଙ୍କା ପାଉଥିଲା, ସେ ବଡ଼ବାବୁ ବୋଲାଉଥିଲା। ମାଇନର୍ ପଛେ ଖଣ୍ଡେ ପାଶ୍ ନ ଥିବ, ଅଥଚ ତାରି ଘରେ ଧାନ ଅମାର - ତା'ର ଗୃହିଣୀ ହସ୍ତରେ ରୂପାକାମ, ଭୁଜାମୁଢ଼ି ଗଣ୍ଡାକ ପ୍ରଧାନ ଜଳଖିଆ। ପାଉଁରୁଟି, କେକ୍ ଇତ୍ୟାଦିର ସ୍ୱପ୍ନ ପ୍ରାୟ। କେହି ଦେଖି ନଥିଲେ, କୋଟ୍‌ପ୍ୟାଣ୍ଟ୍ ପିନ୍ଧା ତ ଦୂରର କଥା। କାନ୍ଧରେ ଗାମୁଛା, ଗୋଡ଼ରେ କଠଉ, ମରହଟ୍ଟୀ[୨] ଧୋତି ଚାଦର।

ଦୀନାର ଜ୍ୟେଷ୍ଠପୁତ୍ର ନାଥିଆ ବାଲ୍ୟକାଳରୁ ବଡ଼ ବୁଦ୍ଧିମାନ୍, ଚତୁର, କର୍ମକୁଶଳ; ଅଥଚ ଶାନ୍ତ ସ୍ୱାଭାବବିଶିଷ୍ଟ ବୋଲି ଗ୍ରାମରେ ଲୋକମାନେ ଆଦର କରୁଥିଲେ। ରୂପରେ କାର୍ତ୍ତିକ ନ ହୋଇଥିଲେ ସୁଦ୍ଧା ଶ୍ରୀସଂପନ୍ନା ଏବଂ ପ୍ରଫୁଲ୍ଲବଦନ। ପଞ୍ଚବର୍ଷ ବୟସରେ ତାହାର ପିତା, ତାହାର ସ୍ୱଳ୍ପ ଓଡ଼ିଆ ଶିକ୍ଷା ନିମନ୍ତେ ଗ୍ରାମର ଅବଧାନ ଶ୍ରୀ କହ୍ନେଇ ନାହାକଙ୍କର ଶ୍ରୀଚରଣ ତଳେ ପୁତ୍ରକୁ ସମର୍ପଣ କଲେ। କହ୍ନେଇ ନାହାକ ରୁକ୍ଷପ୍ରକୃତି; ଅଥଚ ବିଚକ୍ଷଣ ପଣ୍ଡିତ ଥିଲେ। କିନ୍ତୁ ପୋଷ କୁହ, ଗୁଣ କୁହ, ସମୟମତ ସେରେ ଚାଉଳ, କଦଳୀଟିଏ, ବାଇଗଣଟିଏ, ପଇସା ଦି'ଗଣ୍ଡା ଇତ୍ୟାଦି କହ୍ନେଇଙ୍କର ସିଧା[୩] ଦକ୍ଷିଣା ଦେଲେ ବୃଦ୍ଧ ତାଙ୍କର ଆଶୀର୍ବାଦ ଭଣ୍ଡାର ମୁକ୍ତ ରଖିବାରେ କେଭେ ତ୍ରୁଟି କରୁନଥିଲେ। ତାହାଙ୍କର ପ୍ରଧାନ ଗୁଣ, ସେ ବୁଦ୍ଧିମାନ୍ ଏବଂ ବିଦ୍ୟାନୁରାଗୀ ଛାତ୍ରଙ୍କୁ ବଡ଼ ସ୍ନେହ କରୁଥିଲେ।

ନାଥିଆର ସୌଭାଗ୍ୟ, ଅବଧାନଙ୍କର ଦୁଇ ଗୁଣର ସାର୍ଥକତା ସେ କରି ପାରୁଥିଲା। ଗେହ୍ଲେଇ ମଧ୍ୟ ସମୟଗତ ପୁତ୍ରଦ୍ୱୟର ଗୁରୁଦେବଙ୍କପାଇଁ ଫଳ ପୁଷ୍ପ ସମ୍ଭାର ସାଢ଼ି[୪] ରଖୁଥିଲା। ଲାଭ ମଧ୍ୟରେ ନିଜର ଭାଗ୍ୟ ଗଣନାଟି ମଧ୍ୟ ସ୍ୱଚ୍ଛନ୍ଦରେ ନିର୍ବାହିତ ହେଉଥିଲା। କ୍ରମେ କ୍ରମେ କହ୍ନେଇ ନାଥିଆର ବିଦ୍ୟା ବୁଦ୍ଧିର ପରିଚୟ ପାଇବାକୁ ଲାଗିଲେ। ତାହାଙ୍କର ମନ ସ୍ୱତଃ ତାହା ପ୍ରତି ଆକୃଷ୍ଟ ହେବାକୁ ଲାଗିଲା। ତିନିବର୍ଷ ତାହାଙ୍କ ନିକଟରେ ଅଧ୍ୟୟନ କରି ନାଥିଆ ଓଡ଼ିଆ ଏବଂ ଅର୍ଥଶାସ୍ତ୍ରରେ ବ୍ୟୁତ୍ପନ୍ନ ହୋଇ ଉଠିଲାଣି। ଅବଧାନଙ୍କର ମୁଖରେ ପ୍ରଶଂସାର ସୀମା ନାହିଁ। ଦୀନା ଏବଂ ଗେହ୍ଲେଇ ଶୁଣି ଶୁଣି ଆନନ୍ଦରେ ପୂରି ଉଠୁଥାନ୍ତି।

ଅବଧାନରଙ୍କର ମତ ହେଲା - ଏପରି ବୁଦ୍ଧିମାନ ପୁତ୍ରକୁ କଟକ ପ୍ରେରଣ କରି ଶିକ୍ଷାଦେଲେ ଭଲ ହୁଅନ୍ତା। ଦୀନାର ମଧ୍ୟ ସେଥିରେ ଆପତ୍ତି ଦେଖାଗଲା ନାହିଁ। ଗେହ୍ଲେଇ ପ୍ରଥମେ ଅନେକ

(୧) ଉତ୍ପାଦନ, ଅମଳ, (୨) ପୁରୁଣାକାଳିଆ, (୩) ଖାଦ୍ୟସାମଗ୍ରୀ, (୪) ସଜାଡ଼ି

କନ୍ଦାକଟା କଲା; କିନ୍ତୁ ସ୍ୱାମୀର ଇଚ୍ଛା ନାସ୍ତି କରିପାରିଲା ନାହିଁ। ତହୁଁ ନବମ ବର୍ଷ ବୟସ୍କ ନାଥିଆ ନିଜର ମାତୁଳ[୧] ଗୌରାଙ୍ଗ ପାତ୍ର ନିକଟକୁ ପ୍ରେରିତହେଲା।

ସେତେବେଳେ ମିଶନାରୀମାନେ ଅସି ଅନାଥାଶ୍ରମ ସ୍କୁଲ ଇତ୍ୟାଦି ସ୍ଥାପନକଲେଣି। ଗେହ୍ଲେଇର ନାନାଦି ଆପତ୍ତି ସତ୍ତ୍ୱେ ଦୀନା ସୁପୁତ୍ରକୁ 'ମିଶନ୍ ସ୍କୁଲ୍‌ରେ ଛାତ୍ର ରୂପେ ଭର୍ତ୍ତି କରାଇ ଦେଇ ଆସିଲା। ଗେହ୍ଲେଇ କାନ୍ଦି କାନ୍ଦି ଅସ୍ଥିର। କାଳେ ତାହାର ପୁଅ ଖ୍ରୀଷ୍ଟାନ୍ ହୋଇଯିବ। କିନ୍ତୁ ଦୀନା ଭାବିଲା ତାର ପୁତ୍ର ଇଂରାଜୀ ପଢ଼ିବ। ବାବୁ ହେବ। ଶହେ ଲୋକ ତାକୁ ଓଳଗି[୨] ହେବେ। ହାୟରେ ଦୀନା, ତୋର ଆଶାର ଆକାଶକୁସୁମ ଫୁଟିବ ଟିକି[୩] ?

କାଠଯୋଡ଼ି ନଦୀକୂଳରେ ସନ୍ଧ୍ୟା ସମୟରେ ଅନେକ ଲୋକ ସାନ୍ଧ୍ୟସମୀର ସେବନାର୍ଥେ ଆସିଥାନ୍ତି। ନାନାପ୍ରକାରର ଲୋକ ଆସନ୍ତି। ବାଳକ, ଯୁବକ, ବୃଦ୍ଧ, ବାବୁ, କୁଲି ଓ ବେହେରା ଇତ୍ୟାଦି ଇତ୍ୟାଦି। ଆଜି ସନ୍ଧ୍ୟା ସମୟରେ କାଠଯୋଡ଼ି କୂଳରେ ପ୍ରସ୍ତରାସନରେ ବସି ଦୁଇଜଣ ଯୁବକ କଥାବାର୍ତ୍ତା କରୁଛନ୍ତି। ଯୁବକଦ୍ୱୟ ମଧ୍ୟରେ ଜଣେ ଶ୍ୟାମଳକାୟ, ବେଶ୍ ସୁଶ୍ରୀ। ବୟସ ଅନ୍ୟୂନ ସତର ହେବ। ଅପର ଜଣକ କୃଷ୍ଣକାୟ। ଅବଶ୍ୟ ହାଣ୍ଡିକଳା ନୁହେଁ, ଦେଖିବାକୁ ମଧ୍ୟ ମନ୍ଦ ନୁହେଁ। ମୁଖଟି ତେଜପ୍ରଭାବିନ୍ୱିତ। ତାହାର ବୟସ ପ୍ରାୟ ବିଂଶତିର ସୀମା ପାର ହେବାକୁ ବସିଲାଣି ବୋଲି ବୋଧ ହେଉଥିଲା। ଯୁବକଦ୍ୱୟ ଏକାନ୍ତରେ କଥାବାର୍ତ୍ତାରେ ମଗ୍ନ। ଯଦିଚ ଅପରର କଥା ଶୁଣିବା ଦୋଷାବହ; ତଥାପି ଲେଖକଙ୍କୁ ସାତଖୁଣ ମାଫ ଥିବାରୁ ଆମ୍ଭେମାନେ ଶୁଣିବାରେ ସାହସୀ ହେଲୁ। ପ୍ରଥମ ଯୁବକ ମସ୍ତକ ନତ କରି କହିଲେ, ''ବୀରବାବୁ, ମାନବର ସ୍ୱାଧୀନତା ଉପରେ ପରିବାରର ଆଧିପତ୍ୟ ଭୟାନକ ବେଶି। ଆଜିକି ଦୁଇବର୍ଷ ହେବ ଯେ କଥା ମୋ ମନରେ ଉଦୟ ହୋଇଛି, ମୋର ମା କଥା ମନେପଡ଼ିବାରୁ ମୁଁ ନିଜକୁ ବାଧାଦେଉଛି। ଆହା ମୋ ମା। ସେ ମୋତେ କେତେ ସୁଖ ନ ପାଏ। ଯଦି ସେ ଜାଣିବ ଯେ, ମୁଁ ଏପରି ଅଭିପ୍ରାୟ କରିଛି, କେଜାଣି ସେ ପ୍ରାୟ ମରିଯିବ।'' ଏହା କହି ଏକ ଦୀର୍ଘନିଃଶ୍ୱାସ ତ୍ୟାଗକଲେ।

କିଛି କ୍ଷଣ ନୀରବ ରହି ପୁଣି କହିଲେ - ''ମନୁଷ୍ୟ ତ ଏକା ଆସେ, ଏକା ଯାଏ। ଜଗତର ଏତେ ବନ୍ଧନ ତାକୁ ବାନ୍ଧିରଖେ କିଆଁ? ଆମ୍ଭେମାନେ ଧର୍ମ ବିଷୟରେ ସ୍ୱାଧୀନ ହେବା ଦରକାର। ଜାତି ବିଚାର ଦୂର କରିବା ଦରକାର। ନୋହିଲେ ଉଚ୍ଚ ଜାତିର ବିଦ୍ରୂପ ଛଡ଼ା ନୀଚ ଜାତିର ଭାଗ୍ୟରେ କଣ ଅଛି ? ହେଲେ ପିତାମାତା ଗୃହସଂସାର ପରିତ୍ୟାଗ ବଡ଼ ଦୁଃଖର ବିଷୟ।''

ତାହାଙ୍କ କଥା ସମାପ୍ତ ହେବା ପରେ ବୀରବାବୁ କହିଲେ - ''କିନ୍ତୁ ସେ କହିଛନ୍ତି ଯେ, କେହି ଆମ୍ଭ ନିମନ୍ତେ ପିତାମାତା, ସ୍ତ୍ରୀ ସନ୍ତାନ ଇତ୍ୟାଦି ତ୍ୟାଗକରେ, ସେ ଇହକାଳରେ ତାହାର ଶହେଗୁଣ ଓ ପରକାଳରେ ଅନନ୍ତ ଜୀବନ ପାଇବ।'' ବାସ୍ତବିକ ତୁମ୍ଭର ପରୀକ୍ଷା କଠିନ। କିନ୍ତୁ ସେ ସେହିପରି ଅଗ୍ନିପରୀକ୍ଷାରେ ସୁବର୍ଣ୍ଣକୁ ପରିଷ୍କାର କରନ୍ତି। ତୁମ୍ଭଙ୍କୁ ଜଗତରେ ସବୁ ଛାଡ଼ିବାକୁ ହେବ। ଠିଆ ହେବାକୁ ପାଦେ ଭୂଇଁ ନ ଥିବ। ଚାରିଆଡ଼େ ନିନ୍ଦା ଅପମାନ ଇତ୍ୟାଦି ସହି ତାଙ୍କୁ ଲାଭ କରାଯାଏ। ଆମ୍ଭେମାନେ ତ ଆଉ ନିଜର ନୋହୁଁ। ବିଶେଷ ମୂଲ୍ୟରେ କ୍ରୀତ ହୋଇଛୁଁ।''

ପ୍ରଥମ ଯୁବକ କିଛିକ୍ଷଣ ଚିନ୍ତାକରି କହିଲେ - ''ବୀରବାବୁ ଯେ ଖ୍ରୀଷ୍ଟିଆନ୍ ଘରେ ଜନ୍ମ, ତାଙ୍କର କଷ୍ଟ କ'ଣ ? ସେ ସ୍ୱଧର୍ମ ପରିତ୍ୟାଗ କରି ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକ ଯାଏ ତାହାରି ସିନା

(୧) ମାମୁଁ, (୨) ନମସ୍କାର, (୩) କହନା ସତ ହେବ କି ?

କଷ୍ଟ । ତୁମ୍ଭେ ଖ୍ରୀଷ୍ଟିୟାନ, ସେଥିପାଇଁ ମୋତେ ଉପଦେଶ ଦେଇପାର । କିନ୍ତୁ ମୋର ଅବସ୍ଥାର କଷ୍ଟଟା ଜାଣିବ କିପରି ? ମୋର ମନ ଏପର୍ଯ୍ୟନ୍ତ ଅଠିକ୍ । କେଉଁ ଦିଗରେ କ'ଣ କରିବି ଜାଣିପାରୁ ନାହିଁ । ମାନିଲି, ଧର୍ମ ସତ୍ୟ; କିନ୍ତୁ ଗ୍ରହଣ କରିବା ସହଜ ନୁହେଁ । ସର୍ବସ୍ୱ ତ୍ୟାଗ ! ଖ୍ରୀଷ୍ଟଧର୍ମ ଏପରି ହେଲା କାହିଁକି ବୀରବାବୁ ?''

''ବରଂ କୁହେ - ହିନ୍ଦୁଧର୍ମ ଏପରି ହେଲା କାହିଁକି ? ତୁମ୍ଭମାନଙ୍କର ଧର୍ମର ଶ୍ରେଷ୍ଠ ବନ୍ଧନ- ଜାତି । ତୁମ୍ଭେମାନେ ସବୁ କରିପାର - କିନ୍ତୁ ଜାତିର ଗଣ୍ଡି ଭିତରେ ରହି । କିନ୍ତୁ ଜାତିରୁ ବାହାର ହେଲେ, ତୁମ୍ଭେ ଯେଡ଼େ ଧାର୍ମିକ ହୁଅପଛେ, ସବୁ ଗଲା । ତୁମ୍ଭେ ଜାତିର ଲୌହପ୍ରାଚୀର ଭିତରେ ଥାଅ, ତୁମ୍ଭେ ଚୋରି କର, ମିଛ କୁହ, ବ୍ୟଭିଚାର କର - କିଛି ନାହିଁ । କିନ୍ତୁ ପ୍ରକାଶ୍ୟରେ ପଠାଣ କିମ୍ବା ଖ୍ରୀଷ୍ଟିଆନ୍ ଘରେ ପାଣି ଛୁଇଁଲେ ଜାତି ଗଲା । ସେଥିପାଇଁ, ବରଂ କୁହ, ହିନ୍ଦୁ ଧର୍ମ କାହିଁକି ଏପରି ହେଲା ?''

ବୀରବାବୁଙ୍କ କଥାରେ ପ୍ରଥମ ଯୁବକ ହୃଦୟରେ ଆଘାତ ଆସିଲା । ସେ ଉତ୍ତେଜିତ ହୋଇ କହିଲେ - ''ବୀରବାବୁ, ହିନ୍ଦୁ ଆଗରେ ହିନ୍ଦୁଧର୍ମର ନିନ୍ଦା ଅସହ୍ୟ । ହିନ୍ଦୁଧର୍ମ, ସନାତନ ଧର୍ମ । ବହୁ ପ୍ରାଚୀନ ଏବଂ ସେଥିରେ ଅନେକ ଅମୂଲ୍ୟ ସତ୍ୟ ରହିଛି । ମୁଁ ହିନ୍ଦୁର ସନ୍ତାନ । ଆଜିଯାଏ ହିନ୍ଦୁ; କିନ୍ତୁ ଜାତିଭେଦ ଏବଂ କେତେକ ସାମାଜିକ ରୀତିନୀତିର ପକ୍ଷପାତୀ । ସେଥିପାଇଁ ଖ୍ରୀଷ୍ଟଧର୍ମକୁ ଉଚ୍ଚ ସ୍ଥାନ ଦେଇଛି । ନୋହିଲେ ହିନ୍ଦୁ ଧର୍ମର ମର୍ଯ୍ୟାଦା ଯଥେଷ୍ଟ । ମୁଁ ଖ୍ରୀଷ୍ଟଧର୍ମକୁ ଭଲ ପାଏ; କିନ୍ତୁ ତା ବୋଲି ହିନ୍ଦୁଧର୍ମର ନିନ୍ଦା ସହିପାରିବି ନାହିଁ ।''

ବୀରବାବୁ ଈଷତ୍ ଅପ୍ରତିଭ ହୋଇ କହିଲେ - ''ଜଗନ୍ନାଥ, ମୁଁ ହିନ୍ଦୁଧର୍ମର ନିନ୍ଦା କରୁନାହିଁ । ଜାତିଭେଦର ନିନ୍ଦା କରୁଅଛି । ଆଜି ଜାତିଭେଦ ତୁମ୍ଭ ଆମ୍ଭ ଭିତରେ ଯେ ଅତି ଉଚ୍ଚ ପ୍ରାଚୀର ପରି ଠିଆ ହୋଇଅଛି ତାକୁ ଡେଇଁ ଯିବା ଦୁଃସାଧ; ନୋହିଲେ ଆମ୍ଭେମାନେ ସମସ୍ତେ ମନୁଷ୍ୟ । ତୁମ୍ଭେ ଓ ମୁଁ ଭାଇ ଭାଇ ହୋଇ ପାରିଥାନ୍ତୁ; କିନ୍ତୁ ଆଜି ତା' ଅସମ୍ଭବ । ସେ ମିଳନ ହିନ୍ଦୁର ଦେଶରେ ହେବ ନାହିଁ । ଆମ୍ଭେମାନେ ଏକାସନରେ ବସି ଖାଇବା ଅସମ୍ଭବ । ଏଥିପାଇଁ ଆମ୍ଭେମାନେ ଚିରକାଳ ଭିନ୍ନ । ଆମ୍ଭମାନଙ୍କ ମଧ୍ୟରେ ମିଳନ ଅସମ୍ଭବ । ଭାଇ ଭଉଣୀ, ଭାଇ ଭାଇ ମିତ୍ରତା ସ୍ଥାପନ, ମନୁଷ୍ୟ ହୃଦୟକୁ ପ୍ରେମରେ ଏକ କରିବା ଧର୍ମ । ହିନ୍ଦୁଧର୍ମର ସେତକ ନାହିଁ ।''

''ନାଁ ବୀରବାବୁ, ଭୁଲ୍ କହିଲ । ପୁରୀ ଶ୍ରୀକ୍ଷେତ୍ରରେ ରଥଯାତ୍ରା ସମୟରେ ଯେଉଁ ଭୋଜନ ହୁଏ, ସେଠି ସବୁ ଜାତି ଏକାଠି ବସି ଖାଆନ୍ତି । ଶ୍ରୀ କ୍ଷେତ୍ରରେ ଜାତିଭେଦ ନାହିଁ ।''

''ସେ କାହିଁକି ଆସେ ? ଜାତିଭେଦ ହିନ୍ଦୁର ଗର୍ବ । ସେହି ଜାତିଭେଦ ଥିବାରୁ ଆଜି କୋଟି କୋଟି ଶାଖାରେ ବିଭକ୍ତ ହେବାରୁ ହିନ୍ଦୁ ଜାତି ଦୁର୍ବଳ, ଶକ୍ତିହୀନ, ସାମ୍ୟଭାବ ନାହିଁ । କିନ୍ତୁ ଅଦାବେପାରୀର ଜାହାଜ ଖବର କାହିଁକି ? ଜାତିଭେଦର ଅକଲ୍ୟାଣ ଆଖି ଆଗରେ; କିନ୍ତୁ ବୃଥା । ମୁ ସେ ସବୁ ଯୁକ୍ତିତର୍କ ଚାହୁଁ ନାହିଁ । ଯାହାର ମନ ମାନିଲା, ସତ୍ୟକୁ ବୁଝିଲା - ସେ ସତ୍ୟ ସଂଗ୍ରହ କରିବ । ଡେଙ୍କି ଗିଳାଇବା କଥା ନାହିଁ । ଆମ୍ଭେ ସତ୍ୟ ପ୍ରଚାର କରିବୁ ମାତ୍ର । ଫଳଦାତା ଈଶ୍ୱର ।

ଆମ୍ଭେ ବିଲର ମୂଲିଆ । ଜମିଚଷି ଧାନ ବୁଣିବୁ । ବରଷା ଦେବା କର୍ତ୍ତା ସେ, ଖରା ଦେବା କର୍ତ୍ତା ସେ । ଦେଖ ଜଗନ୍ନାଥ, ମୁଁ ହିନ୍ଦୁଧର୍ମର କିଛି ନିନ୍ଦା କରୁନାହିଁ । କିନ୍ତୁ ତିନୋଟି ବିଷୟ ମୋ ମନକୁ ପାଉନାହିଁ । ପ୍ରଥମରେ ଜାତିଭେଦ, ଦ୍ୱିତୀୟ ପ୍ରତିମା ପୂଜା, ତୃତୀୟ ବାଲ୍ୟବିବାହ । ଏ ତିନୋଟି ଥିବାରୁ'' - ବାଧାଦେଇ ଜଗନ୍ନାଥ କହିଲେ, ''ଏ ତିନୋଟି ନ ଥିଲେ ହିନ୍ଦୁ ଖ୍ରୀଷ୍ଟିୟାନ୍‌ର ଭେଦ ନ ଥାନ୍ତା । ଆଜି ପ୍ରତ୍ୟେକ ହିନ୍ଦୁ ଖ୍ରୀଷ୍ଟିଆନ୍‌ର ଭେଦ ନ ଥାନ୍ତା । ଆଜି ପ୍ରତ୍ୟେକ ହିନ୍ଦୁ ଖ୍ରୀଷ୍ଟିୟାନ୍ ହୋଇପାରନ୍ତେ ।''

ଦୁଃଖିତ ହୋଇ ବୀରବାବୁ କହିଲେ, ''ତା କି ସମ୍ଭବ ? ଖ୍ରୀଷ୍ଟିୟାନ୍ କେତେ ଜଣ ? କ୍ରୁଶ ବହିବା ସହଜ ନୁହେଁ ଭାଇ, ତ୍ରୁବନ ହେବା ସହଜ । ମଣ୍ଡଳୀରେ ନାମ ଲେଖାଇବା ସହଜ । ହେଲେ ଖ୍ରୀଷ୍ଟଙ୍କୁ ଧାରଣ କରିବା ବହୁ ସାଧନାର ବିଷୟ । ମାନବ ଅନ୍ତରରେ ଜୀବନ୍ତ ଈଶ୍ୱର ମୂର୍ତ୍ତିମାନ ହେବା ଯେ ବଡ଼ କଷ୍ଟକର ବିଷୟ । ଜୀବନବ୍ୟାପୀ ସଂଗ୍ରାମ । ଓ...'' - ଏହା କହି ବୀରବାବୁ ଆସନ ତ୍ୟାଗ କରି ଉଠିଗଲେ । ଅନ୍ଧକାର କ୍ରମେ ଘନୀଭୂତ ହୋଇ ଆସୁଥିଲା । ସମ୍ମୁଖରେ ସ୍ଫୀତବକ୍ଷା କାଠଯୋଡ଼ୀ, ପୂର୍ଣତୋୟା । ପାଣି ସର ସର ବହିଯାଉଛି, ପବନ ସର ସର ବହିଯାଉଛି । ପାଣି ପବନର ସତେ ଅଭେଦ ପ୍ରୀତି ।

ସେ ପାଣିସ୍ତର ଉପରେ ଥାକକୁ ଥାକ ଅନ୍ଧକାର ସଜ୍ଜିତ ହେଲାଣି । ଆକାଶର ବିସ୍ତୃତ ନୀଳିମାରେ କ୍ଷୁଦ୍ର ତାରା ଗୋଟିଏ ଯୋଡ଼ିଏ ମିଟି ମିଟି ହେଲେଣି । ବୃକ୍ଷଲତା ପବନ ପ୍ରବାହରେ କମ୍ପି ଉଠୁଥିଲେ । ପବନ-ଶୀତଳ ପବନ । ଫୁଲବାସଭରା ନ ଥିଲା; କିନ୍ତୁ ପ୍ରାଣାରାମଦାୟୀ ସୁଶୀତଳ ପବନ ।

ବୀରବାବୁ ନଦୀ ବକ୍ଷପ୍ରତି ଦୃଷ୍ଟିପାତ କଲେ । ବିଶାଳବକ୍ଷା ସଲିଳସ୍ଫୀତା ତଟିନୀ ବହିଯାଉଛି । ଅନ୍ଧକାର ତାହାର ସେହି ବିଶାଳ ବକ୍ଷ ଆଲିଙ୍ଗନ କରିବାକୁ ଆକାଶରୁ ଓହ୍ଲାଇ ଆସୁଅଛି ପରା । ତାରା ଦିଓଟି ଆନନ୍ଦରେ ହସି ଉଠୁଛନ୍ତି । ବୀରବାବୁ ନୀରବ ଦୃଷ୍ଟିପାତ ପୂର୍ବକ ଧ୍ୟାନମଗ୍ନ ହୋଇ କହିଲେ - ''ଜଗନ୍ନାଥ, ମାନବର ହୃଦୟ ସମୟେ ସମୟେ ଏହିପରି ଅନ୍ଧାର ହୋଇଉଠେ । କିନ୍ତୁ ତା' ମଧ୍ୟରେ ପ୍ରେମର ଆଲୋକ ତାରାପରି ସାନ୍ତ୍ୱନା ଦେଇ ଫୁଟିଉଠେ ସତେ ! ମୋର ସେହି ସାନଭଉଣୀ ପଦ୍ମାବତୀର ମୃତ୍ୟୁଶଯ୍ୟା ମୋର ଜୀବନର ଗୋଟିଏ ବଡ଼ ଦୁଃଖର ସ୍ମୃତି । ଯେତେବେଳେ ମନେ ପଡ଼େ, ଭାବେ ସେହି ଶାନ୍ତିମୟ ସୁନ୍ଦର ଦେବୀମୂର୍ତ୍ତି ଆକାଶରେ, ପୃଥିବୀରେ ସବୁଆଡ଼ ବୁଲୁଛି । ତାର ସେହି ଛୋଟ ମୁହଁର... ମୋତେ ଲାଗେ ଜଗତରେ ମୁଁ କେଉଁଠି ଦେଖିନାହିଁ । ଆହା, ମନୁଷ୍ୟ କ'ଣ ପ୍ରେମ କରିବାକୁ ଜନ୍ମେ ?''

ସହସା ଜଣେ ପଶ୍ଚାତରୁ ତାଙ୍କ ପୃଷ୍ଠରେ କରାଘାତ କରି କହିଲା - ''ବୀର, ଆଜି ଏତେ ରାତିରେ ଏଠେଇଁ; ତାଙ୍କ ସାଂଗରେ କିଏ ଅଛି ପରା ?''

ସ୍ୱରରୁ ଆଗନ୍ତୁକଙ୍କୁ ଚିହ୍ନିପାରି ବୀର ସହାସ୍ୟ ବଦନରେ କହିଲେ - ''କିରେ ଗୋପାଳ, ତୁ ଏଇଠି ବୁଲୁଛୁ, ଆଜି ଦେଖା ହେଉଛି ।''

ଗୋପାଳ ବଡ଼ ରହସ୍ୟପ୍ରିୟ । ସେ ସହାସ୍ୟ ବଦନରେ କହିଲା – ''ତୁ ପରା ଲେକ୍‌ଚର୍ ଦେଉଥିଲୁ । ତୋ ସଂଗୀ କିଏ ? ତୁ କ'ଣ ଶ୍ରୋତା ଏବଂ ବକ୍ତା – ଉଭୟ ?''

କିଞ୍ଚିତ୍ ପଛକୁ ଦୃଷ୍ଟିକରି ଜଗନ୍ନାଥଙ୍କୁ ଦେଖି କହିଲା – ''ଆରେ ସତେ, ଜଣେ ଅଛି ତ ?''

ଜଗନ୍ନାଥ ଗୋପାଳର କଥା ଶୁଣି କହିଲେ – ''ଗୋପାଳ, ବୀରର ଲେକ୍‌ଚର୍ ଆଟେଣ୍ଡ କରିବାର ଭାଗ୍ୟ ତୋର ନାହିଁ ।''

ସତେ, ମୋ ଭାଗ୍ୟଟା ବଡ଼ ଦୁର୍ଭାଗ୍ୟ । ଯାହା ହେଉ ଖୀରଷ୍ଟାନ[୧] ହେଲୁ । ଜାତିକୁଳ ନେଲୁ । ଏଥର ଗୋରୁମାଂସ ଓ ମଦ ଖାଇବାକୁ ସୁବିଧା । ନାହିଁକିରେ ଜଗନ୍ନାଥ ? ସାହେବ ହେବୁ, ଭାବନା କ'ଣ ? କୋଟ୍ ପ୍ୟାଣ୍ଟ ପିନ୍ଧିବୁ । ବବର୍ଚ୍ଚି, ଖାନ୍‌ସମା[୨] ହାତରେ କୁକୁଡ଼ା ରୋଷ୍ଟ୍ ବଡ଼ ସୁଆଦ, ନାହିଁ କିରେ ?''

''ତୁ ଖାଇଥିବୁ – ଜାଣିଛୁ ।''

''କିନ୍ତୁ ମୁଁ ବୀରବାବୁର ଲେକ୍‌ଚର ଆଟେଣ୍ଡ୍ କରି ନାହିଁ । ଆଜି ତୁମ୍ଭେମାନେ ବଡ଼ ଧର୍ମ ବକ୍ତୃତା କରୁଥିଲ, ମୁଁ ସବୁ ଶୁଣିଛି ।''

ବୀର ଅସହିଷ୍ଣୁ ବୋଧ କଲେ । ସେ ଉତ୍ତେଜିତ ଭାବରେ କହିଲେ – ''ଦେଖ୍ ଗୋପାଳ, ତୁ ଭାବୁ, ଖ୍ରୀଷ୍ଟିୟାନ୍ ହେଲେ ଖାଲି ମଦମାଂସ ଖାଆନ୍ତି ।''

ଗୋପାଳ ହସିହସି କହିଲା – ''ମୋ ଧାରଣା ସେଇଆ । ନୋହିଲେ ବାପ ମା' ଛାଡ଼ି, ଘରଦ୍ୱାର ଛାଡ଼ି ତୁଚ୍ଛାଟାକୁ ଖୀରଷ୍ଟାନ ମୁଁ ହୁଅନ୍ତି କାହିଁକି ?''

''ଧର୍ମ ପିପାସା ?''

''ଓଃ ଧର୍ମପିପାସା ! ବାସ୍ତବିକ ଧବେଳେଶ୍ୱରଙ୍କ ରାଣ, ମୋର ସେମିତି ଧର୍ମପିପାସା ଆଜି କିଛି ନାହିଁ । ଏତେ ଶୋଷ ଥିଲେ, ଗୋପାଳ ଆଉ 'ଗୋପାଳ' ନଥାନ୍ତା । ବୋଧହୁଏ ନାଥିଆର କିଛି ବେଶି ରକମର ତୃଷା । ସେଥିପାଇଁ ତୁ ତାକୁ ସେହି ଅମୃତ ନଦୀର ଜଳରୁ ପାଣି ପିଆଉଛୁ । ବେଶ୍ କରି ପିଉଥା ନାଥିଆ । ତେଣେ ବାପା ମା' ଶୁଣି ଇହଧାମ ଛାଡ଼ନ୍ତୁ ।''

ନାଥିଆ ଅପ୍ରତିଭ ହୋଇ କିଛି କହି ପାରିଲା ନାହିଁ । ଲଜ୍ଜାରେ ମୌନ ହୋଇ ରହିଲା । ସେ ଜାଣେ, ସେ ଖ୍ରୀଷ୍ଟ ଧର୍ମ ଭଲପାଏ । ଏକଥା ତା'ର ସାଂଗମାନେ ଜାଣିପାରିଲେ ତାକୁ ପ୍ରତିମୁହୂର୍ତ୍ତରେ ଅଶେଷ ବିଦ୍ରୂପ କରି କରି ପ୍ରାଣାନ୍ତ କରିବେ । ଆଉ ସେଥିରୁ ରକ୍ଷା ନାହିଁ ।

କିଛି କ୍ଷଣ ଭାବି କହିଲେ – ''ଗୋପାଳ, କଥା ଶୁଣିଲେ ଦୋଷ କ'ଣ ? ଧର୍ମସବୁ ଏକା । ବୀରବାବୁ ଧର୍ମପ୍ରିୟ । ମୁଁ ତ ଖ୍ରୀଷ୍ଟିୟାନ୍ ହୋଇ ପଡୁନାହିଁ ।''

କଥା ଶୁଣି ବୀରବାବୁ ଭାବିଲେ – ''ହାୟ !''



(୧) ଖ୍ରୀଷ୍ଟିୟାନ୍, (୨) ରୋଷେୟା ଓ ପରସାଳି

# ଦ୍ୱିତୀୟ ପଟ

''ଆଜି ମୁଁ ଅନାଥ''
କାହିଁ ଚାଲିଗଲୁ ଜନନୀ ଆମ୍ଭର
ଦୁଇଶିଶୁ ପ୍ରାଣ ଭସାଇ ଅକୂଳେ
ବାଳିକା ଅବଳା, ବିଶାଳ ସଂସାର
ଯିବୁ କାହାଦ୍ୱାରେ ନ ଭାବିଲୁ ତିଳେ।''

ଯୁବକତ୍ରୟ ଉଠି ପ୍ରସ୍ଥାନ କରିବାକୁ ଲାଗିଲେ; ଅନ୍ଧକାର ଗାଢ଼ରୁ ଗାଢ଼ତର ହେବାକୁ ଲାଗିଲା। ଆଜି ସେ ନୟନାଭିରାମ ଚାନ୍ଦିନୀ ରାତି ନାହିଁ। ପବନର ସର୍ ସର୍ ଶବ୍ଦ ଅନ୍ଧକାର ଭେଦକରି ପ୍ରାଣରେ ଆଘାତ କଲାପରି ଲାଗୁଛି। ପଥ ପାର୍ଶ୍ୱସ୍ଥିତ ବୃକ୍ଷରାଜି ଅନ୍ଧକାରରେ ସତେ ଯେପରି ଦୈତ୍ୟପରି ଠିଆହୋଇଛନ୍ତି। କେଉଁଆଡ଼େ ସର୍‌ସର୍ ଶବ୍ଦ। କେଉଁଆଡ଼େ ବୃକ୍ଷାନ୍ତରାଳବର୍ତ୍ତୀ ପକ୍ଷୀର ପକ୍ଷସଂଚାଳନ ଧ୍ୱନି। କେଉଁଆଡ଼େ ବା ଲୋକ ଯାତାୟତର ଅସ୍ପଷ୍ଟ ଶବ୍ଦ। ତଥାପି ଚାରିଆଡ଼ ନୀରବ ଥିଲା ପରି ଲାଗୁଥିଲା। ଯୁବକତ୍ରୟ ମଧ୍ୟ ନୀରବ। ନିଜ ନିଜ ଭାବନାରେ ମଗ୍ନ। କେବଳ ସେମାନଙ୍କର ପାଦ ଶବ୍ଦ ଶୁଣାଯାଉଥିଲା। କିୟତ୍‌କ୍ଷଣ ଗମନ କଲାପରେ ସେମାନେ ଏକ କ୍ଷୁଦ୍ର ଗଳିପଥରେ ପ୍ରବେଶକଲେ। ଗଳିର ଦୁଇ ଧାରରେ କ୍ଷୁଦ୍ର କ୍ଷୁଦ୍ର କୁଟୀର ଶ୍ରେଣୀବଦ୍ଧ ଭାବେ ଦଣ୍ଡାୟମାନ। ଅନ୍ଧକାର ପ୍ରାୟ ସର୍ବଦିଗ ଅଚ୍ଛନ୍ନ କରିଥିବାରୁ ଆଗନ୍ତୁକର ଦୃଷ୍ଟିରୁ ପୂର୍ବୋକ୍ତ କୁଟୀରଗୁଡ଼ିକର ଦୀନଦଶା ଓ ଭଗ୍ନାବସ୍ଥା ଲୁଚାଇ ରଖିଥିଲା। ଗଳିପଥ ପାର ନୋହୁଣୁ ପୂର୍ବଦିଗରେ ଗୋଟିଏ ଗୃହରୁ କ୍ଷୀଣ ରୋଦନ ଧ୍ୱନି ଶୁଣାଗଲା। ଜଗନ୍ନାଥ ତାହା ଶୁଣିପାରି କହିଉଠିଲା, ''ବୀରବାବୁ, କିଏ କାନ୍ଦିବାର ଧ୍ୱନି ଶୁଭୁଛି!''

ବୀର କାନପାତି କହିଲେ - ''ସତେ ତ, ପିଲା କାନ୍ଦିଲା ସ୍ୱର ହେବ ପରା। ସେ କିଏ କାନ୍ଦୁଚି କାନ୍ଦୁଥାଉ।'' ଯୁବକତ୍ରୟ ଅଗ୍ରସର ହେବାକୁ ଲାଗିଲେ।

ପୁନଶ୍ଚ ସେଇ କରୁଣଧ୍ୱନି ଅଧିକ ସ୍ପଷ୍ଟରୂପେ ଶୁଣିପାରି ଗୋପାଳ ଓ ଜଗନ୍ନାଥ, ଉଭୟେ କହିଉଠିଲେ, ''ସତେ କିଏ କାନ୍ଦୁଛି ତ!''

ବୀର ପୁନର୍ବାର ଶୁଣିବାକୁ ଲାଗିଲେ। ଏଥର ସ୍ପଷ୍ଟ ''ମା ଲୋ, ବୋଉ ଲୋ'' କରୁଣ କଣ୍ଠସ୍ୱର ଶୁଣାଗଲା। ଯୁବକତ୍ରୟ କାରଣ ଅନୁସନ୍ଧାନ କରିବାକୁ ସେହି ଦିଗକୁ ଅଗ୍ରସରହେଲେ। ନିକଟବର୍ତ୍ତୀ ହୋଇ ଦେଖିଲେ, ଗୃହଟି ଗୋଟିଏ ଭଗ୍ନ କୁଟୀର। ସ୍ଥାନେ ସ୍ଥାନେ ଚାଳ ଖସି ଯାଇଛି। ଚାରିଆଡ଼ ଅତି ଅପରିଷ୍କାର। ଗୃହ ତଳରେ ଗୋଟାଏ ଛିଣ୍ଡା ଚଟାଇ[୧] ଉପରେ ଅତି ଜୀର୍ଣ୍ଣଶୀର୍ଣ୍ଣ ଦୀନହୀନ ସ୍ତ୍ରୀ ଲୋକଟି ମୃତପ୍ରାୟ ପଡ଼ିରହିଛି। ନିକଟରେ ପ୍ରାୟ ବାର ତେର ବର୍ଷ ବୟସ୍କା ଏକ ସୁନ୍ଦରୀ ବାଳିକା ବସି ଅଧୀର ଭାବରେ ରୋଦନକରୁଛି। ତାହାର ଅଙ୍ଗର ପରିଧାନ

(୧) ତାଳ ଅବା ଖଜୁରି ପତ୍ରରେ ବୁଣା - ଶୋଇବାପାଇଁ ବ୍ୟବହୃତ ଉପକରଣ।

ଅତି ଜୀର୍ଣ୍ଣ ଓ ଶତଛିନ୍ନ ବସ୍ତ୍ର ଖଣ୍ଡେ। ଗୃହର ଏକ ପାର୍ଶ୍ୱସ୍ଥିତ ତୈଳଦୀପର କ୍ଷୀଣାଲୋକ ତାହାର ସୁଗୋଲ ଅଥଚ ମ୍ଳାନ ଗୌର ମୁଖରେ ପଡ଼ି ଏକ ଅପୂର୍ବ ବିଷାଦର ଛବି ସୃଷ୍ଟି କରିଥିଲା। ନିକଟରେ ଅନ୍ୟୂନ୍ୟ ପାଞ୍ଚବର୍ଷ ବୟସ୍କା ଏକ ଶିଶୁକନ୍ୟା କ୍ରନ୍ଦନରତା, ଯୁବକତ୍ରୟ ହଠାତ୍ କିଛି ବୁଝିପାରିଲେ ନାହିଁ। ବୀରବାବୁ ନିକଟବର୍ତ୍ତୀ ହୋଇ ପଚାରିଲେ, ''ହେ ପିଲା, କାହିଁକି କାନ୍ଦୁଛୁ ?''

ସହସା ଅପରିଚିତ ଯୁବକତ୍ରୟଙ୍କୁ ଦେଖି ବାଳିକା ଦ୍ୱୟ ଭୟଭୀତ ଓ ବାକ୍‌ହୀନ ହୋଇ ପଡ଼ିଲେ। ରୋଦନ ସମ୍ୱରଣ କରି ବାଳିକାଟି ପ୍ରଶ୍ନକାରୀର ମୁଖକୁ ବିସ୍ମୟ, ଭୀତବିହ୍ୱଳ ଦୃଷ୍ଟିରେ ଚାହିଁରହିଲା। ବୀରବାବୁଙ୍କ ପ୍ରଶ୍ନର କିଛି ଉତ୍ତର ଦେଲାନାହିଁ। ବୀରବାବୁ ଆହୁରି ନିକଟକୁ ଯାଇ ନତ ହୋଇ ଶଯ୍ୟାଶାୟିନୀର ମୁଖପ୍ରତି ଦୃଷ୍ଟିପାତ କଲେ। ସହସା ଏକ ପ୍ରକାର ଭୟରେ ତାଙ୍କ ହୃଦୟ ସ୍ପନ୍ଦିତ ହୋଇଉଠିଲା। ସେ ହସ୍ତ ପ୍ରସାରଣ କରି ତାହାର ଗାତ୍ର[୧] ସ୍ପର୍ଶକଲେ। ତାଙ୍କର ଭୟ ଆହୁରି ବଢ଼ିଗଲା। ଏ ଯେ ମୃତଦେହ, ତୁଷାର ଶୀତଳ, ମୁଖ ବିବର୍ଣ୍ଣ। ତାହାଙ୍କର ହୃଦ୍‌କମ୍ପ ହୋବକୁ ଲାଗିଲା। ସେ ସଂଗୀ ଦ୍ୱୟର ମୁଖପ୍ରତି ଦୃଷ୍ଟିପାତ ପୂର୍ବକ ଅସ୍ଫୁଟ ସ୍ୱରରେ କହିଲେ - ''ଭାଇରେ, ଏ କଣ, ଏ କଣ !''

ଜଗନ୍ନାଥ ଓ ଗୋପାଳ, ବୀରର ନିକଟବର୍ତ୍ତୀ ହୋଇ ସେହି ସ୍ତ୍ରୀଲୋକର ଗାତ୍ର[୧] ସ୍ପର୍ଶ କଲେ। ସେମାନଙ୍କର ମଧ ଦୃଢ଼ ବିଶ୍ୱାସ ହେଲା ଯେ, ସ୍ତ୍ରୀଲୋକଟି ମୃତ। ଗୋପାଳ ବୀରକୁ ଉଦ୍ଦେଶ୍ୟ କରି କହିଲା - ''ଭାଇଓ, ଏ କଣ ! ମୁଁ ଶୁଣୁଚି କଟକରେ ଠାଏ ଠାଏ କଲେରା ଲାଗିଛି, ସାବଧାନ।''

କଲେରା ନାମ ଶୁଣି ଅଳ୍ପବୟସ୍କ ଜଗନ୍ନାଥର ଅତିଶୟ ଭୟହେଲା। ସେ ବୀରର ନିକଟକୁ ଘୁଞ୍ଚିଆସି, ତାଙ୍କର ବସ୍ତ୍ରାଞ୍ଚଳ ଧରି ଭୟରେ କମ୍ପିତହେବାକୁ ଲାଗିଲେ। ଏକି ଭୟାନକ ସ୍ଥାନ, ଭାବିବାର ଅବସର ନଥାଏ। ବୀରର ଦୃଢ଼ ସାହସୀ ହୃଦୟ କ୍ଷଣକ ସକାଶେ ବିଚଳିତ ହୋଇଉଠିଲା।

ବୀର ପୁନର୍ବାର ମୃତଦେହ ପରୀକ୍ଷା କରିବାକୁ ଲାଗିଲେ। ତାହାଙ୍କର ସନ୍ଦେହ - ସତରେ ମୃତ୍ୟୁହୋଇଛି କି ନାହିଁ। ନିଃଶ୍ୱାସ ପରୀକ୍ଷାକଲେ। ବକ୍ଷ ସ୍ଥଳରେ ହସ୍ତ ଦେଇ ଦେଖିଲେ। ଜୀବନୀଶକ୍ତିର ସାମାନ୍ୟ ଆଭାସ ମଧ ପାଇଲେ ନାହିଁ। ତାହାଙ୍କର ପରୀକ୍ଷା କାର୍ଯ୍ୟ ସମାପ୍ତ ନୋହୁଣୁ ହଠାତ୍ ପବନର ଆଘାତରେ ସ୍ତିମିତ ଦୀପଟି ନିଭିଗଲା। ଘୋର ଅନ୍ଧକାର। ଯୁବକତ୍ରୟ କଣ କରିବେ ଭାବିପାରିଲେ ନାହିଁ। ପକେଟ୍‌ରେ ଦିଆସିଲ୍‌ର ସନ୍ଧାନ କଲେ। ଦିଆସିଲି ନାହିଁ। ଅନ୍ଧକାରରେ ମୃତଦେହ ନିକଟରେ ଭୀତ ଜଗନ୍ନାଥର ମୃତ୍ୟୁ ଯନ୍ତଣା ହେବାକୁ ଲାଗିଲା। ସେ କିଂକର୍ତ୍ତବ୍ୟବିମୂଢ଼ ହୋଇ କହିଲେ - ''ଚାଲ ବୀରବାବୁ, ଚାଲ ଯିବା।''

ବୀର ମଧ ଭାବିବାକୁ ଲାଗିଲେ - କର୍ତ୍ତବ୍ୟ କଣ ? ମୁହୂର୍ତ୍ତକ ମଧରେ ଅବବୋଧ କରି କହିଲେ - ''ଏ ମଲାମଣିଷ। ଏଠାରେ ଅକାରଣ ସମୟ ନଷ୍ଟ ନ କରି ପିଲାଦୁଇଟିଙ୍କୁ ନେଇ ଥାନାରେ ଖବରଦେଲେ ହେବ।''

---

(୧) ଦେହ, ଶରୀର

ବୀରର ପରାମର୍ଶ ଗ୍ରାହ୍ୟହେଲା। ଗୋପାଳ ବାଳିକାଦ୍ୱୟଙ୍କୁ ସମ୍ବୋଧନ କରି ପଚାରିଲା - "ତୁମେ ଦୁହେଁ ଆମ ସାଂଗରେ ଯିବ ତ ?"

ଜ୍ୟେଷ୍ଠାକନ୍ୟା କରୁଣ ସ୍ୱରରେ କାନ୍ଦିବାକୁ ଲାଗିଲା। ମାତାକୁ ପରିତ୍ୟାଗକରି ଯିବାର ପରାମର୍ଶ ତାହାର କର୍ଣ୍ଣରେ ନିଷ୍ଠୁର ବଜ୍ରବାଣୀ ପରି ବୋଧହେଲା। ବନ୍ଧୁତ୍ରୟ ବହୁ କଷ୍ଟରେ କନ୍ୟା ଦ୍ୱୟଙ୍କୁ ବୁଝାଇ ସଂଗରେ ନେବାକୁ ଚେଷ୍ଟାକଲେ। କିନ୍ତୁ ବାଳିକା ଦ୍ୱୟ ମୌନ ଭାବରେ ଅଚଳ ରହିଲେ। କାହାରି କଥା ଶୁଣିଲେ ନାହିଁ। ପୂର୍ବବତ୍ ରୋଦନ କରିବାକୁ ଲାଗିଲେ।

ବୀରବାବୁ ଏବଂ ଜଗନ୍ନାଥଙ୍କର ହୃଦୟ ବାଳିକା ଦ୍ୱୟର କରୁଣ କଣ୍ଠନିଃସୃତ ବିଳାପରେ ଏପରି ବିଚଳିତ ହୋଇଉଠିଲା ଯେ, ସେମାନେ ଅଶ୍ରୁ ସମ୍ବରଣ କରିପାରିଲେ ନାହିଁ। ସେମାନେ କନ୍ୟାଟିକୁ ସାନ୍ତ୍ୱନାଦେଇ ପଚାରିଲେ - "ତୁମର କ'ଣ ହୋଇଛି ? ଏଠି ଏପରି ଅବସ୍ଥାରେ ପଡ଼ିଛ କିଆଁ? ବାଳିକା ଗୋପାଳର ପ୍ରଶ୍ନରେ ରୋଦନ ସମ୍ବରଣକରି କହିଲା - "ବାବୁ, ବୋଉର କଣ ହୋଇଛି ! ଆମର କେହି ନାହିଁ। ମୋର ବା' ନାହିଁ। କଣ ଖାଇବୁ ? ପଇସା ନାହିଁ। ଦୀପରେ ତେଲ ନାହିଁ।" ଏହା କହି ଅତି ଅଧୀର ଭାବରେ ବାଳିକାଟି ପୁନଶ୍ଚ କାନ୍ଦିବାକୁ ଲାଗିଲା।

କିଛିକ୍ଷଣ ପରେ ପୁଣି କହିଲା - "ବାବୁ, ବୋଉ ସଞ୍ଜ ବେଳକୁ ଭାରି ଚଟପଟ ହୋଇ ପଡ଼ିଯାଇଛି। ଯେତେ ଡାକିଲିଣି - କଥା କହୁନି। କେତେ ହଲେଇଲଣି - ଉଠୁନି। ହାତ ହଲ୍‌ଚଲ୍ କରୁନି, ଆଖି ଫିଟେଇ ଚାହୁଁନାହିଁ; ମୁଁ କଣ କରିବି ? ବୋଉ ଲୋ, ବୋଉ ଲୋ ....." ଏହା କହି ପୁଣି କାନ୍ଦିବାକୁ ଲାଗିଲା।

ବୀର ପଚାରିଲେ - "ମା ତୋ' ବୋଉର କଣ ହୋଇଥିଲା, ମୋତେ କହ। ମୁଁ ମୋର ସାଧ ଅନୁସାରେ ଉପକାର କରିବି। ମୋତେ କିଛି ଲୁଚା ନାହିଁ; ସବୁ ଠିକ୍ କରି କହ।"

ବାଳିକାଟି ଅନେକ ଆଶ୍ୱସ୍ତହୋଇ କହିଲା - "ବାବୁ, ଆଜିକୁ ସାତଦିନ ହେବ ବୋଉକୁ ବଡ଼ ଜର ହେଉଥିଲା। ମୁଁ ଭାବିଲି - ତାର ବାତଜର ହୁଏ। ସେଇ ଜର ଅବା ହୋଇଥିବ। ଜର ଛାଡ଼ିଲା ନାହିଁ। ବୋଉ ବିଛଣାରେ ପଡ଼ି ବକୁଥାଏ।[୧] ଏଣୁ ତେଣୁ କଣ କହେ - କାନ୍ଦେ। ଆଜି ଦିନ ଦି'ଟାକୁ ମୁଁ ଯେନାଘରୁ ଆସି ଦେଖୁଛି - ବୋଉ ବେହୋସ[୨] ହୋଇ ପଡ଼ିଛି। ତାର ଅବସ୍ଥା ନାହିଁ। ଆଖି ଖୋଲା ଖୋଲା ଦିଶୁଚି। ସୁବାସୀ ବସି ତା' ପାଖରେ କାନ୍ଦୁଛି। ବୋଉ ବୋଉ ବୋଲି କେତେ ଡାକିଲି। ଖାଲି ସେ କଣ ବକୁଥାଏ, ପାଣି ମାଗୁଥାଏ। ମୁଁ ପାଣି ପିଇବାକୁ ଦେଲି, ପାଣି ପିଇଲା। ମୋତେ ଅନାଇଲା, ଆଖିରୁ ଲୁହ ଗଡ଼ିଗଲା। ହାତ ଉଠାଇବାକୁ ହାତ ଟେକିଲା, ହେଲା ନାହିଁ। ମୋତେ ଭାରି କାନ୍ଦ ମାଡ଼ିଲା। ତାକୁ ଆଉଁଷି ଦେଲି। ଆଉଁଷି ଦେଉଁ ଦେଉଁ ସଞ୍ଜ ହେଲା। ସଞ୍ଜବେଳେ କଣ ହେଲା କେଜାଣି ବଡ଼ ଛଟପଟ ହେଲା। ଗଁ ଗଁ ହେଲା ପରି ହେଲା। ଠକ୍‌କିନି[୩] ରହିଗଲା। ଆଉ ଯେତେ ଡାକୁଛି ଶୁଣୁନାହିଁ,

(୧) ଏଣୁ ତେଣୁ କଥା ଅଜାଣତରେ କହିବା, ବିଳିବିଳେଇ ହେବା। (୨) ଚେତାଶୂନ୍ୟ, (୩) ହଠାତ୍, ତତ୍‌କ୍ଷଣାତ୍

କଥା କହୁନି, ବକୁନି। ସେତିକିବେଳରୁ ଆଖି ଫିଟେଇ ଚାହୁନି। ବାବୁ, ବାବୁ, ମୋ ବୋଉ ସତରେ ଭଲ ହେବ ?'' - ବାଳିକାଟି ଅତି ଅଧୀର ଭାବରେ ଏତିକି କହି ପୁଣି କାନ୍ଦିଉଠିଲା।

ବୀର ଏଥର ଘଟଣା ବୁଝିପାରିଲେ। କଣ କରିବେ ଭାବିପାରିଲେ ନାହିଁ। ବାଳିକା ଦୁଇଜଣଙ୍କୁ ତୁନି୍¹ କରିବା ସ୍ଥଳରେ ପଚାରିଲେ - ''ତୋର ନାମ କଣ ?''

ବାଳିକା କାନ୍ଦୁ କାନ୍ଦୁ ଉତ୍ତର ଦେଲ - ''ମୋ ନାଁ ଶଶୀ।'' - ଏହା କହି ପୁଣି କାନ୍ଦିବାକୁ ଲାଗିଲା। ତିନିବନ୍ଧୁ ଯେତେ ବୁଝାଇଲେ, କାହିଁରେ କିଛି ହେଲା ନାହିଁ। ଶିଶୁଝିଅଟି ଚିରିଚିରେଇ² କାନ୍ଦିଉଠିଲା।

ବୀର ଓ ତାହାଙ୍କର ସଂଗୀଦ୍ୱୟ ସେମାନଙ୍କୁ ଯିବାକୁ ଡାକିଲେ; କିନ୍ତୁ କିଛି ଫଳ ହେଲା ନାହିଁ। କେହି ଉଠିଲେ ନାହିଁ। ବୋଉକୁ ଛାଡ଼ି ସେମାନେ ଯିବେ ନାହିଁ। ବନ୍ଧୁତ୍ରୟ ବୁଝାଇଲେ - ସେମାନଙ୍କର ବୋଉ ଆଉ ଜଗତରେ ନାହିଁ। ସେ ମରିଯାଇଛି। ଏହି ନିଷ୍ଠୁର ସତ୍ୟ ଢ଼ୋଷଣା ବାଳିକାଟି ବୁଝିପାରିଲା। କ୍ଷଣକପରେ ସେ ବୁଝିପାରିଲା - ସେ ଅନାଥିନୀ। ତାହାର ଛୋଟ ଭଉଣୀ ସୁବାସୀକୁ ନେଇ ଆଜି ସେ ସଂସାରରେ ଏକାକିନୀ, ଆଶ୍ରୟହୀନା। ତାହାର ଦୃଢ଼ ଆଶ୍ରୟ ସ୍ନେହମୟୀ ବୋଉ ଆଉ ଜଗତରେ ନାହିଁ। ତାହାର ମୁଣ୍ଡ ଘୁରିବାକୁ ଲାଗିଲା। ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା। ବାଳିକା ହତାଶହୋଇ ଭାବିଲା ''ସତେ ମହାପ୍ରଭୁ ଏପରି କଲେ। ଆଜି ଏତେ ବଡ଼ ସଂସାରରେ ତାଙ୍କର କେହି ନାହିଁ। ଆହା ପଦେ ତାଙ୍କପାଇଁ କହିବା ଲୋକ କେହି ନାହିଁ। ସେ ଅବଶ, ଅଚଳ, ପ୍ରସ୍ତର ମୂର୍ତ୍ତିପରି ମାତାର ମୃତଦେହ ନିକଟରେ ପଡ଼ିରହିଲା। ଆଗନ୍ତୁକ ଭଦ୍ରବ୍ୟକ୍ତିମାନେ ତାହାର ଦୃଷ୍ଟିରେ ଦେବଲୋକର ଦେବାତାପରି ଦେଖାଗଲେ। ବାଳିକା ଅତିରିକ୍ତ ଦୁଃଖରେ ମୂକ ଶିଳାପରି ଅଚଳହୋଇ ରହିଗଲା। ସେହି ନିବିଡ଼ ଅନ୍ଧକାର ଭିତରେ ବାଳିକାଟି ମାତୃଦେହକୁ ଆବୋରି ବସିରହିଲା। ସମସ୍ତେ ଡାକିଲେ। ସେ କିନ୍ତୁ କିଛି ଶୁଣିବାକୁ ନାରାଜ।

ବୀରବାବୁ ଦେଖିଲେ, ଉପାୟ ନାହିଁ। ଦୂରରୁ ଘଣ୍ଟା ଶବ୍ଦ ଶୁଣାଗଲା। ଠନ୍ ଠନ୍ କରି ନଅଟା ବାଜିଲା। ରାତ୍ରି ଅଧିକ ହେବାରୁ ବୀରବାବୁ, ଗୋପାଳ ଓ ଜଗନ୍ନାଥକୁ କହିଲେ - ''ଯାଅ, ଗାଆଁରୁ କାହାକୁ ଡାକି ଆଣ। ଏଠି ଠିଆ ହୋଇ ରହିଲେ ଉପାୟ ନାହିଁ। ମୁଁ ପିଲାଙ୍କ ପାଖରେ ଅଛି।'' ବୀର ସାହସୀ। ମନେ ମନେ ଈଶ୍ୱରଙ୍କୁ ଡାକି ଦୃଢ଼ଭାବରେ ଠିଆହୋଇ ରହିଲେ। ଗୋପାଳ ଓ ଜଗନ୍ନାଥ ଗ୍ରାମକୁ ଗଲେ।

ବହୁ କଷ୍ଟରେ ଗ୍ରାମରୁ ଜଣେ ଦୁଇଜଣ ଆଲୋକ ନେଇ ଆସିଲେ। ଅନେକ ଅନୁନୟ ହେଲା ପରେ ବିରକ୍ତ ହୋଇ ବୃଦ୍ଧା ସ୍ତ୍ରୀ ଲୋକଟିଏ ବଳପୂର୍ବକ ଶଶୀକୁ ତାହାର ମାତା ନିକଟରୁ ଟାଣିଆଣିଲା। ଶଶୀର ବାହାର ଜ୍ଞାନ ନାହିଁ। ବହୁକଷ୍ଟ, ଅନାହାର ଓ ଅନିଦ୍ରାରେ ତାହାର ଶରୀର ଅବସନ୍ନ ହୋଇପଡ଼ିଥିଲା। ବର୍ତ୍ତମାନ ମାତାର ନିଶ୍ଚିତ ମୃତ୍ୟୁ କଥା ଜାଣିପାରି ସେ ଜ୍ଞାନହୀନା ଭାବରେ ଶୂନ୍ୟ ଦୃଷ୍ଟିରେ ସବୁ ଦେଖିବାକୁ ଲାଗିଲା। ତାହାର ଶୀର୍ଣ୍ଣ କପୋଳ ଉପରେ ଆୟୁର

(୧) ନିରବ, (୨) ବିକଳରେ ଚିତ୍କାର।

କ୍ଷୀଣ ଶୁଷ୍କରେଖା ଦେଖାଯାଉଥିଲା। ଚକ୍ଷୁ କୋଟରଗତ, ବିଷାଦଭରା। ଶିଶୁ ସୁବାସୀ କାନ୍ଦି କାନ୍ଦି ଶୋଇପଡ଼ିଥିଲା। ବର୍ତ୍ତମାନ ଲୋକ କୋଳାହଳରେ ଜାଗ୍ରତ ହୋଇ ଦେଖିଲା - ଘର ଲୋକପୂର୍ଣ୍ଣ, ସେ କିଛି ବୁଝିପାରିଲା ନାହିଁ। ଶୀର୍ଣ୍ଣ ହସ୍ତ ଦ୍ୱୟରେ ଜ୍ୟେଷ୍ଠାଭଗ୍ନୀର ବସ୍ତ୍ରାଞ୍ଚଳ ଦୃଢ଼ଭାବରେ ଧରିରହିଲା। କ୍ଷୁଦ୍ର ଶିଶୁ, ସେ କିପରି ଜାଣିବ - ଆଜି ସେ କି ମହାରତ୍ନ ହରାଇ ବସିଚି ! ସମସ୍ତଙ୍କ ମୁଖକୁ ଚାହିଁ ନ ବୁଝିଲା ବିସ୍ମୟରେ ସେ ମୂକ ହୋଇ ରହିଲା। କେହି ତାହା ଆଡ଼କୁ ଅନାଇଲେ ନାହିଁ।

କିଛି କ୍ଷଣ ପରେ ପୂର୍ବୋକ୍ତ ବୃଦ୍ଧା ସ୍ତ୍ରୀଲୋକଟି ବାଳିକାଦ୍ୱୟଙ୍କୁ ଘରୁ ବାହାରି ଆସିବାକୁ ଆଦେଶ ଦେଲା। ବେନୁ ମାଆର ଆଦେଶ ଶଶୀ ଭାଙ୍ଗିପାରିଲା ନାହିଁ। ବାହାରକୁ ଆସିଲା। ପାଷାଣ କଠିନ ହୃଦୟରେ ମାତାର ସେହି ସ୍ନେହମୟ ବଦନପ୍ରତି ଶେଷଥରପାଇଁ ଦୃଷ୍ଟିପାତ କଲା। ତାର ସମଗ୍ର ଶରୀର ଘର୍ମାକ୍ତ ହୋଇଉଠିଲା। ଆଖିରୁ ଟପ୍ ଟପ୍ ହୋଇ ଲୁହ ଝରିବାକୁ ଲାଗିଲା। ଲୁଗାକାନିରେ ଲୁହ ପୋଛିଦେଇ ବାଳିକାଟି ବାହାରକୁ ଆସି ଦେଖିଲା, ପୂର୍ବୋକ୍ତ ଯୁବକତ୍ରୟ ତାହାର ଓ ତା ଭଉଣୀର ଅପେକ୍ଷାରେ ରହିଛନ୍ତି।

ସେ ବାହାରକୁ ବାହାରିଲା ମାତ୍ରେ ବୀରବାବୁ ଅଗ୍ରସର ହୋଇ କହିଲେ - ''ଶଶି, ଏ ଘର ଛାଡ଼ିବାକୁ ହେବ। ମୁଁ ତତେ ଯେଉଁଠିକି ନେଇଯିବି, ସେଠାକୁ ଯିବାକୁ ହେବ। ନୋହିଲେ ଆମେ ଯାଉଛୁ।''

ବୀରବାବୁଙ୍କ ଧ୍ୱନି ଶଶୀ କର୍ଣ୍ଣକୁ ବଡ଼ କରୁଣ ଓ ନିଷ୍ଠୁର ବୋଧହେଲା। ସେ ବିଷାଦଶୀର୍ଣ୍ଣ ମୁଖଟେକି ଓ ଚକ୍ଷଦ୍ୱୟ ବିସ୍ଫାରିତ କରି ବୀରବାବୁଙ୍କ ମୁଖକୁ ନିରୀକ୍ଷଣକଲା।

ପୁନର୍ବାର ବୀରବାବୁ କହିଲେ - ''ଶଶି, ଆସ, ନୋହିଲେ ଆମ୍ଭେମାନେ ଯାଉଛୁ।''

ଏଥର ବାଳିକାଟି ପାଟି ଫିଟେଇଲା। ବିଷାଦ ବିଧୁର କଣ୍ଠରେ କହିଲା - ''ବାବୁ, ମୋ ବୋଉ ଏଠି ପଡ଼ିରହିଥିବ ?'' ବାଳିକାର କରୁଣ କଣ୍ଠ ବଡ଼ ମର୍ମସ୍ପର୍ଶୀ। ତାହା ଯୁବକତ୍ରୟର କୋମଳ ହୃଦୟର ସବୁଠାରୁ କୋମଳ ତନ୍ତ୍ରୀରେ ଆଘାତକଲା। ସେମାନେ ସହାନୁଭୂତିରେ ବିଗଳିତ ହୋଇଉଠିଲେ। ବୀର ସାନ୍ତ୍ୱନା ପୂର୍ବକ କହିଲେ - ''ନାହିଁରେ, ତୋ ବୋଉର ବ୍ୟବସ୍ଥା ଆମେ କରିବା। ତୁ ଚାଲ୍। ତୁମ ଦୁଇଜଣଙ୍କୁ ଆମେ ସାଂଗରେ ନେଇଯିବୁ।''

ଅଗତ୍ୟା ବାଳିକା ବାଧ ହୋଇ ସମ୍ମତହେଲା। ଚିରଦିନର ବିଷାଦ-ସ୍ମୃତିବିଜଡ଼ିତ ସେହି ଭଗ୍ନ କୁଟୀରକୁ ଫେରି ଅନାଇଲା। ଆଉ ସେଠାରେ ତାହାର ସ୍ଥାନ ନାହିଁ। ଆଜି ହୁଏତ ତାର ସେହି ଆବାଲ୍ୟ ଆଦରର କୁଡ଼ିଆ ଖଣ୍ଡି ଚିରକାଳପାଇଁ ଛାଡ଼ି କେଉଁ ଅଜଣା ରାଇଜକୁ ଯିବାକୁ ହେବ। ଏତେ ଦୁଃଖରେ ସୁଦ୍ଧା ବାଳିକାର ପ୍ରାଣରେ ମମତା ପ୍ରବଳ ହୋଇଉଠିଲା। ସେ ବାକ୍‌ଶକ୍ତିହୀନ ହୋଇ ଭଗ୍ନୀକୁ ଧରି ଠିଆହୋଇ ରହିଲା।

କେଉଁ ଆଡ଼େ ଯିବ ତାହାକୁ ବୁଦ୍ଧି ଦିଶିଲା ନାହିଁ। ସେ ଜାତିରେ ଗୋପାଳ। ଆଜିକୁ ୫ ବର୍ଷ ତଳେ ତା' ଉଭଣୀର ଜନ୍ମର ଠିକ୍ ମାସକ ପରେ ତାହାର ସ୍ନେହମୟ ପିତା ପରିବାରକୁ ଦୁଃଖସାଗରରେ ଭସେଇ ଲୁଚିଗଲେ। ଆଜି ତାର ଏକମାତ୍ର ଭରସା ମାଆ ମଧ ସେହି ବାଟ ଧରିଲା। ଆଜି ଏତେ ବଡ଼ ଦୁନିଆଁରେ ତାହାର ଆପଣାର କେହି ନାହିଁ। ଯେତେ

ଅଧିକ ଭାବୁଥିଲା - ଏଇ କଥାଟି ତା' ପ୍ରାଣର ସୂକ୍ଷ୍ମତନ୍ତ୍ରୀକୁ ସେତିକି ଦୋହଲେଇ ଦେଉଥିଲା। ବାଳିକାଟି ସମଗ୍ର ବିଶ୍ୱକୁ କେବଳ ସେହି 'କେହିନାହିଁ' ରେ ପରିପୂର୍ଣ୍ଣ ବୋଲି ଭାବିନେଲା। ବାସ୍ତବିକ୍ ଚାରି ଆଡ଼େ ଜଗତ୍, ଅନନ୍ତ ଜଗତ୍। ଆପଣାର ସବୁ ସୁଖ, ସୌନ୍ଦର୍ଯ୍ୟ ଓ ବିଳାସିତାର ଅନନ୍ତ ପ୍ରସାର ମେଳାଇ ଏକ ଅଦ୍ଭୁତ ବିପଣୀ ପରି ବିସ୍ତୃତ ଭାବେ ସୁସଜ୍ଜିତ। ଅଥଚ କ୍ଷୁଦ୍ର ଦୀନା ବାଳିକା ଶଶୀର ଆଜି କେହି ନାହିଁ।

ଶଶୀ ଆକାଶ ଆଡ଼କୁ ଦୃଷ୍ଟିପାତ କଲା। ଦେଖିଲା - ଆକାଶ ଅନ୍ଧକାର। କେବଳ ଗୋଟିଏ ଦିଓଟି ତାରା ସେ ଅନନ୍ତ ଘନାନ୍ଧାକାରରେ ଜଳଜଳ ହୋଇ ଜଳୁଛନ୍ତି। ହାୟ- ଆଜି ତାର ମାତା କେଉଁଠାରେ? ଏହି ଅପୂର୍ବ ରହସ୍ୟମୟ ଆକାଶର ନିବିଡ଼ ଅନନ୍ତ ଶୂନ୍ୟରେ ବୋଧହୁଏ ମିଳାଇଗଲା। ବାଳିକା କ୍ଷୁବ୍ଧ ନୟନରେ ଏଣେ ତେଣେ ଚାହିଁଲା। ସମ୍ମୁଖରେ ଯୁବକତ୍ରୟ। ଏତେକ୍ଷଣ ପରେ ସେ ସ୍ପଷ୍ଟ ରୂପେ ତିନିଜଣଙ୍କୁ ଦେଖିପାରିଲା। ସ୍ନେହମୟ ବନ୍ଧୁ ପରି ସେହି କୃଷ୍ଣକାୟ ସୁଦୀର୍ଘ ଦେହ ବଳିଷ୍ଠ ଯୁବକ। ତାଙ୍କ ସାଂଗ ପ୍ରଫୁଲ୍ଲବଦନ, ଆଉ ଜଣେ ତାରିଆଡ଼କୁ ସକରୁଣ ନିବିଷ୍ଟ ଆଖିରେ ଚାହିଁରହିଛନ୍ତି। ତୃତୀୟ ଜଣକ ଅପେକ୍ଷାକୃତ ଅଳ୍ପବୟସ୍କ। ଶଶୀ ଆଗ୍ରହ ମିଶା ବିସ୍ମୟରେ ତିନିଜଣଙ୍କୁ ଦେଖିବାକୁ ଲାଗିଲା। ଦେଖିଲା - ସେହି ଅଳ୍ପ ବୟସ୍କ ତରୁଣଟି ତାହାରି ମୁହଁକୁ ଏକ ଧ୍ୟାନରେ ଚାହିଁ ଚାହିଁଛନ୍ତି। ଚକ୍ଷୁ ଅଶ୍ରୁପୂର୍ଣ୍ଣ। ସେହି ବ୍ୟକ୍ତିର ସହାନୁଭୂତି ଶଶୀର ଅନ୍ତରକୁ ଛୁଇଁଗଲା। ସେ କିଛି ଗୋଟାଏ ଅନୁଭବ କଲା ସତ୍ୟ; କିନ୍ତୁ ତାର ସ୍ୱରୂପ ବୁଝି ପାରିଲାନି।

କିଛି ସମୟ ପରେ ବାରବାବୁ ଦୁଇ ଭଉଣୀ ଓ ଦୁଇ ସାଂଗକୁ ଯିବାପାଇଁ ନିର୍ଦ୍ଦେଶ ଦେଲେ। ବାଳିକାଟି ସାନଭଉଣୀର ହାତଧରି ମନ୍ତ୍ରମୁଗ୍ଧ ପରି ସେମାନଙ୍କ ପଛେ ପଛେ ଚାଲିଲା। ସତେ, ସେମାନେ ତାର କିଏ? କେଉଁ ଅଜଣା ସ୍ୱର୍ଗଲୋକର ଦେବତା। ମମତାର ମୋହରେ ତାକୁ ବାନ୍ଧିଦେଇଛନ୍ତି। ପଛରେ ମାଆର ମୃତପିଣ୍ଡ। ଆଗରେ ଭରସାର ଅସ୍ପଷ୍ଟ ଆଲୋକ। ଶଶୀ କ୍ଷଣକପାଇଁ ଆତ୍ମବିସ୍ମୃତା ହୋଇ ଅସ୍ଫୁଟ ଧ୍ୱନିରେ କହିଲା - ''ମହାପ୍ରଭୁ!'' ଦୁଇଧାର ଲୁହ ତା' ଆଖିରୁ ବୋହିଗଲା। କିନ୍ତୁ ପରକ୍ଷଣରେ ଦେଖିଲା, ସେହି ଅଳ୍ପବୟସ୍କ ଯୁବକ ତାହାର ହାତକୁ ନିଜ ହାତରେ ଧରି, ତା' ଆଖିରୁ ଲୁହ ପୋଛିଦେଲେ। ଶଶୀର ହୃଦୟ ଅନବବୋଧ ସ୍ନେହ ଓ ଭକ୍ତିରେ ନତ ହୋଇପଡ଼ିଲା। ସେ କିଛି ବୁଝି ପାରିଲା ନାହିଁ।

ସେଦିନ ରାତି ପ୍ରାୟ ୧୨ଟା ବେଳେ ଜଗନ୍ନାଥ ଘରକୁ ଫେରିଆସିଲେ। ନିଜ କୋଠରୀର ଖଟରେ ଲମ୍ବ ହୋଇ ପଡ଼ିଗଲେ। ଦେହରେ ଅପରିସୀମ କ୍ଳାନ୍ତି, ମନରେ ଅନ୍ତହୀନ ଭାବନା। ଦୁଃଖରେ ଓ କ୍ଷୋଭରେ ଜଗନ୍ନାଥ ଭାବିଲେ - ମଣିଷର ଜନ୍ମ ଓ ମୃତ୍ୟୁର ରହସ୍ୟ। ଜନ୍ମ ତାଙ୍କୁ ଯେତିକି ବିସ୍ମିତ ବୋଧହେଲା, ମୃତ୍ୟୁ ସେତିକି ପରିମାଣରେ ତାଙ୍କୁ ଅଭିଭୂତ କଲା। ଶଶୀ ଓ ସୁବାସୀର ବିଷୟ ଘନଘନ ମନେପଡ଼ିଲା। ସେହି ସୁନ୍ଦରୀର ଗଭୀର ଶୋକମଳିନ ମୁଖଛବି, ଜଗନ୍ନାଥରର ହୃଦୟପଟରେ ଏକ ଅପୂର୍ବ ଆବେଗ ସୃଷ୍ଟିକଲା। ଜଗନ୍ନାଥ ନିଜେ ବୁଝିପାରିଲେ ନାହିଁ, କାହିଁକି?



# ତୃତୀୟ ପଟ

ଧନ୍ୟ ସେ ସଂସାର
ଆତ୍ମୀୟ ବାନ୍ଧବ ମଧ୍ୟେ ସ୍ନେହ ଯହିଁ ସାର ।

ଜୁଲାଇ ମାସ । ବର୍ଷା ଝର ଝର ବର୍ଷି ଯାଉଛି । ଚାଳରୁ ଅବିରତ ପାଣି ଖସିପଡୁଛି । ସେଇ ଦୃଶ୍ୟକୁ ନିରୀକ୍ଷଣ କରି ଗୋଟିଏ ଆରାମଚଉକି ଉପରେ ଶଶୀ ଅର୍ଦ୍ଧଶାୟିତା ଭାବରେ ବସିରହିଚି । ବୟସ ଅନ୍ୟୂନ ଚଉଦ । ହାତରେ ଏମ୍ବ୍ରୋଡୋରୀର ସିଲାଇ ଛୁଞ୍ଚ ।

ଶଶୀ ସିଲାଇ କାର୍ଯ୍ୟରେ ମନୋନିବେଶ କଲା । କ୍ଷୁଦ୍ର ଚମ୍ପାକଢ଼ପରି ଆଙ୍ଗୁଳିଗୁଡ଼ିକ ଛୁଞ୍ଚ ଓ ସୂତା ସହିତ ଖେଳିଲା ପରି ଜଣାଯାଉଥିଲା । ଶଶୀର ମୁହଁ ବଡ଼ ସୁନ୍ଦର, ବଡ଼ କୋମଳ, କରୁଣ ସ୍ନିଗ୍ଧ ଜ୍ୟୋତିପୂର୍ଣ୍ଣ । ଭସା ଭସା ଚକ୍ଷୁ ଦୁଇଟିରେ ତରଳ-ଚାହାଣୀ । ଆଭାଦୀପ୍ତ ଗଣ୍ଡଫଳକ । କ୍ଷୁଦ୍ର ବିମ୍ବାଧର ନିର୍ଦ୍ଦୋଷ, ଅଥଚ ସୁନ୍ଦର । ତରୁଣ ଯୌବନର ବିଳାସ ଓ ଚାଞ୍ଚଲ୍ୟ ଆଜିପର୍ଯ୍ୟନ୍ତ ସେହି ସୁନ୍ଦର କଟାକ୍ଷକୁ କଳଙ୍କିତ କରିନାହିଁ । ଶଶୀ ଥରେ ଥରେ ସିଲାଇ କାର୍ଯ୍ୟକୁ, ଥରେ ଥରେ ପତିତ ବର୍ଷାଧାରାକୁ ଚାହୁଁଥାଏ । ଗୃହର ବାରଣ୍ଡାଟି ପକ୍କା ସିମେଣ୍ଟ । ଘରଟି ବଙ୍ଗଳା ଧରଣର କ୍ଷୁଦ୍ର; କିନ୍ତୁ ପରିଷ୍କାର । ସିମେଣ୍ଟ ଚଟାଣରେ କୌଣସି ଚିହ୍ନ ଦେଖାଯାଉ ନଥିଲା ।

ଶଶୀର ପରିଧାନ ଖଣ୍ଡେ ଅଳ୍ପଦାମ୍‌ର ବିଲାତି ଶାଢ଼ୀ ଏବଂ ଭିତରେ ଖଣ୍ଡେ କାଞ୍ଚଲା । ସାଧାରଣ ଖ୍ରୀଷ୍ଟିୟାନ ଘର ବାଳିକାମାନଙ୍କର ପରିଚ୍ଛେଦ । ପୂର୍ବେ ଆଜିକାଲି ପରି ଜାକେଟ୍ ସେମିଜ୍, ପେଟିକୋଟ୍‌ର ଆଦର ସେତେ ନଥିଲା । ବିଶେଷ ପ୍ରୟୋଜନ ନଥିଲେ ସେ ସବୁ ପ୍ରାୟ କେହି ବ୍ୟବହାର କରୁନଥିଲେ ।

ବର୍ଷା ଝର ଝର ବର୍ଷି ଯାଉଥିଲା । ଚାଳରୁ ଖସି ଭୂମି ଉପରେ ଶତହୀରକ ଖଣ୍ଡପରି ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ଫେନାୟିତ ବୁଦ୍‌ବୁଦ୍ ଆକାରରେ ଫୁଟିଉଠି ପୁଣି ମିଳାଇ ବହିଯାଉଥିଲା । ଶଶୀ ସେହି ବୁଦ୍‌ବୁଦ୍ ରାଶି ପ୍ରତି ଦୃଷ୍ଟିପାତ କରୁ କରୁ ମାନବ ଜୀବନକୁ ବୁଦ୍‌ବୁଦ୍ ସଂଗେ ତୁଳନାକରୁଥିଲା । ଆଜିକୁ ଅଢ଼େଇ ବର୍ଷ ତଳେ ସେ କେଉଁଠି ଥିଲା । ସେ ଦୀନହୀନ ଜୀର୍ଣ୍ଣ କୁଟୀର । ଭଗ୍ନୀ ସୁବାସୀ ସହିତ ମାଆ ତାର କେତେ ଆନନ୍ଦରେ ସେ କୁଟୀର ମଣ୍ଡୁଥିଲା । ଶାନ୍ତିରେ ଉଜ୍ଜ୍ୱଳ ହୋଇଉଠୁଥିଲା । ମାତାର ମୃତ୍ୟୁଚିନ୍ତା ଶଶୀର ମନରେ ପୂର୍ବପରି ଗଭୀର ଭାବରେ ଆଘାତକରି ଏକ ଅବ୍ୟକ୍ତ ଦୁଃଖଭାବର ଅବତାରଣା କଲା । ମାଆର ସେଇ ଅତି ପରିଚିତ ମୁହଁଟି ତା' ଆଖି ଆଗରେ ଦେଖା ଗଲା । ଶଶୀ ଦୁଃଖରେ ଅଭିଭୂତ ହୋଇପଡ଼ିଲା ।

ଦିନ କାହାର ରହେ ? ଦିନ ଚାଲିଯାଏ; କିନ୍ତୁ ଦିନ ସମସ୍ତଙ୍କର ସମାନ ଭାବରେ ଯାଏ ନାହିଁ । କେବେ ଦୁଃଖ, କେବେ ସୁଖ । ହସ କାନ୍ଦର ଗୋଳାଗୋଳି ଭିତରରେ ଦିନ ଅତିକ୍ରାନ୍ତ ହୁଏ । କାହାକୁ ଅପେକ୍ଷା ରଖେନି । କାହାର ସୁବିଧା ଅସୁବିଧା ବୁଝେ ନାହିଁ । ମଣିଷ ଜୀବନରେ କେତେ ପରିବର୍ତ୍ତନ, କେତେ ଭଙ୍ଗା ଗଢ଼ାର ଇତିହାସ - ଦିନ ତାଆରି ମୂକସାକ୍ଷୀ ଭାବରେ ରହିଯାଏ । କାଳ ଅନନ୍ତ, ଅସୀମ । ସାଧାରଣ ମଣିଷର ସୀମିତ ଜୀବନକାଳପାଇଁ ତାର ଗତ ଅତି ଦ୍ରୁତ ବୋଧହୁଏ ।

ଶଶୀ ଓ ସୁବାସୀର ମଧ୍ୟ ଦିନ ଚାଲିଯାଉଛି। ଆଜି ସେ ଦୁହେଁ ଜୀର୍ଣ୍ଣ ବସ୍ତ୍ର ପରିହିତା ପୂର୍ବର ଗୋପାଳ ବାଳିକା ଶଶୀ ଓ ସୁବାସୀ ନୁହନ୍ତି। ସେମାନେ ବୀର ବାଳିକା ଶଶୀ ଓ ସୁବାସୀ ନୁହନ୍ତି। ସେମାନେ ବୀର ବିକ୍ରମ ଜେନାଙ୍କ ପରିବାରଭୁକ୍ତ। କନ୍ୟା ଓ ଭଗ୍ନୀ ସ୍ନେହରେ ପ୍ରତିପାଳିତା। ସେମାନଙ୍କୁ ପଦେ କଟୁକଥା କହିବାର କାହାର ସାହସ ନାହିଁ। ଲାବଣ୍ୟ ପ୍ରତିମା, ଚମ୍ପକବରଣା, ଉଜ୍ଜ୍ୱଳଚକ୍ଷୁ ବିଶିଷ୍ଟ। ଶଶୀ-ଶାନ୍ତ। ଶଶୀ ଆଉ ଚପଳା ବାଳିକା; ସୁବାସୀ-ସୁହାସିନୀର ନାମାନ୍ତର ପାଇଛନ୍ତି।

ବୀରବାବୁଙ୍କ ପିତା ଜେମସ୍ ଜେନା ଛାପାଖାନାରେ କାର୍ଯ୍ୟକରି କୋଡ଼ିଏ ଟଙ୍କା ମାସିକ ବେତନ ପା'ନ୍ତି। ତାଙ୍କ ପରିବାରରେ ତାଙ୍କର ଦୁଇପୁତ୍ର ବୀର ଓ ଶରତଚନ୍ଦ୍ର, ଆଉ କନ୍ୟା ଭାନୁମତୀ ଛଡ଼ା ତାଙ୍କ ସ୍ତ୍ରୀ ସୁମତି ଓ ବୃଦ୍ଧ ପିତା ମାତା। ଜେମସ୍ ବାବୁ ସରଳ। ପୁତ୍ର ଦୁହେଁ ସର୍ଭେ ଇଲାକାରେ କାର୍ଯ୍ୟ କରି କିଛି କିଛି ରୋଜଗାର କରନ୍ତି। ଭାନୁମତୀ ବାଳିକା ବିଦ୍ୟାଳୟର ଶିକ୍ଷୟିତ୍ରୀ। ସମସ୍ତେ କର୍ମଠ, ଆତ୍ମ– ନିର୍ଭରଶୀଳ। ଏହା ବ୍ୟତୀତ ବାଡ଼ିବଗିଚା, ଧାନ ଜମିରୁ ବି କିଛି ବାଜି ଆୟ ହୁଏ। ବରଷକ ଭାତ ଓ ଲୁଗାର ଭାବନା କରିବାକୁ ପଡ଼େନା।

ସେତେବେଳେ ଆଜିପରି ଏତେ ଅଭାବ ନ ଥିଲା। ଲୋକେ ଖାଦ୍ୟ ଅଭାବରେ ରାସ୍ତାକଡ଼ରେ ମରି ଶୋଉ ନ ଥିଲେ, କିମ୍ବା ଟଙ୍କାରେ ତିନିସେର ଚାଉଳ ହେବ ବୋଲି କେହି କଳ୍ପନା ବି କରି ନଥିଲେ। ମିଶ୍ନାରୀମାନେ ଖ୍ରୀଷ୍ଟିୟାନ୍‌ମାନଙ୍କୁ ସ୍କୁଲ୍‌ରେ ପାଠ ପଢ଼ାଇ, ବିବାହ ଦେଇ ଘରଦ୍ୱାର ଓ ଜମିବାଡ଼ି କରିଦେଉଥିଲେ। ଜେମ୍‌ସ ବାବୁଙ୍କର ପିତା ମାତା ସେହି ସୁବିଧାର ସୁଯୋଗ ନେଇଥିଲେ।

ବୀରବାବୁ ଓ ଶରତଚନ୍ଦ୍ର ଉଭୟେ ଅବିବାହିତ ଥିଲେ। ସେମାନେ ପିତାମାତା ଓ ଗୁରୁଜନମାନଙ୍କର ବଡ଼ ବାଧ୍ୟ ଥିଲେ। କିନ୍ତୁ ଚଗଲା ଶରତ, ଗୋସେଇଁ ମା ବୁଢ଼ୀ ଅଣ୍ଟାରେ ପଇସା ରଖିଦିଏ ନାହିଁ। ଶରତ ନିଜ ରୋଜଗାରକତକ ନିଜ ପିତାମାତାଙ୍କ ହାତରେ ନ ଦେଇ ଗୋସେଇଁ ମା ହାତରେ ଦିଏ। ସେଥିପାଇଁ ବୁଢ଼ୀ ଉପରେ ତାର ଷୋଳପଣି ଅଧିକାର। ବୁଢ଼ୀର ଇଚ୍ଛା ଶରତ ପଇସାର ଭକ୍ତ ହେଉ।

ବୁଢ଼ୀ ଥରେ ଥରେ ଲୋଭ ଦେଖାଇ କୁହନ୍ତି - ''ତୋ ବୋଉ ପାଇଁ ସୁନା ପଇଁଚ କରିବୁ। ଟଙ୍କା ରଖ।'' ଶରତ ପୁଣି ହସି ହସି ଉତ୍ତର ଦିଏ ''ତୁ ବୁଢ଼ୀମା – ମା କୁହନ୍ତି-''ଶରରେ, ସାନ୍ତମା ବୁଢ଼ୀଲୋକ। ତାଙ୍କୁ ବିରକ୍ତ କରନା।''

ଶରତ ପୁନର୍ବାର ହସି ହସି ଉତ୍ତର ଦିଏ - ''ମା, ତୁ ଜାଣିନାହୁଁ। ସେ ମୋ ଘରଣୀ। ତା ହାତରେ ପଇସା କଉଡ଼ି ରହିଲା। ଆଉ କାହାକୁ ମାଗିବି ? ତୋର ସେତିକି ମୁଣ୍ଡ ବଥା ଟିକିଏ କମ୍ ହେବା ଭଲ।''

ଶରତ ଚପଳ ସ୍ୱଭାବ ହେଲେ ବି ଦୁଷ୍ଟ ନୁହେଁ। ଚାକିରୀ ଭିତରେ ବାଡ଼ି ବଗିଚା ଓ ଗୋରୁ ଗାଈର ମଧ୍ୟ ତତ୍ତ୍ୱ ନିଏ। ସେଥିପାଇଁ ପକ୍ଷପାତିନୀ ବୃଦ୍ଧା ଲୁଚେଇ ଲୁଚେଇ ଶରତପାଇଁ ନାନା ପ୍ରକାର ଭୋଜନ ଦ୍ରବ୍ୟ ଆୟୋଜନ କରିଥାନ୍ତି। କିନ୍ତୁ ନାତୁଣୀ ଭାନୁମତୀ ସେ ସବୁ ସନ୍ଧାନ ପାଇବା ମାତ୍ରେ ବୃଦ୍ଧା ସପ୍ତମ ସ୍ୱରରେ ଚିଡ଼ିଉଠନ୍ତି। ବୃଦ୍ଧ ଯୋହନ୍ ଜେନା ନାତୁଣୀର ଏ ଦୁର୍ଦ୍ଦଶା ସହ୍ୟ କରି ନ ପାରି

ବେଳେବେଳେ ତା' ପକ୍ଷ ନିଅନ୍ତି। ବାଧ୍ୟ ନାତୁଣୀ ମଧ୍ୟ 'ସ୍ୱୋପାର୍ଜିତ ସମସ୍ତ ଅର୍ଥ ବୃଦ୍ଧ ସାନ୍ତ ବାପର ଲୌହ ସିନ୍ଦୂକରେ ରକ୍ଷା କରିବାକୁ ଭୁଲେନାହିଁ। ବୃଦ୍ଧ ବହୁ ଯତନରେ ନାତୁଣୀପାଇଁ ନାନାଦି ଖାଦ୍ୟ ଦ୍ରବ୍ୟ ଆୟୋଜନକରି ରଖିଥାନ୍ତି। କିନ୍ତୁ ଦୁଷ୍ଟ ଶରତ ବୃଦ୍ଧା ସା'ଡମାଆର ସୁପରାମର୍ଶ ଅନୁସାରେ ସେଥିରୁ ଅଧେ ଆତ୍ମସାତ୍ କରିଥାଏ। ଭାନୁମତୀ ତାହା ବୁଝିପାରି ସଂଧ୍ୟା ସମୟରେ ବୃଦ୍ଧର ପଦ ମର୍ଦ୍ଦନ କରୁକରୁ ଆତ୍ମଦୁଃଖ ନିବେଦନ କରେ। ତଳ ଉପର ଭାଇଭଉଣୀଙ୍କର କେବେ ପଡ଼େନି। ପରସ୍ପର ନାମରେ ବୁଢ଼ାବୁଢ଼ୀ ଆଗରେ ଗୁହାରିକରିବା ସେମାନଙ୍କର ନିତ୍ୟ ବ୍ୟବସାୟ। ଗୁହାରି ଫଳରେ ବୁଢ଼ାବୁଢ଼ୀଙ୍କର ସ୍ନେହ କଳହଲାଗେ। ନାତି ନାତୁଣୀ ତାହା ଦେଖି ଆନନ୍ଦରେ ଅଧୀର ହୁଅନ୍ତି।

ବୀରବାବୁ ଏ ସବୁ ମଧ୍ୟରେ ନଥାନ୍ତି। ଲୋକେ କହିଲା ପରି ତାଙ୍କ କାମ ଭଲ, କି ସେ ଭଲ। ଧର୍ମଭୀରୁ ବୀର ବିକ୍ରମ ସମାଜରେ ଓ ସଂଗୀଙ୍କ ମେଳରେ ସୁନାମ ଅର୍ଜ୍ଜନ କରିଥିଲେ। ବୀରର ଆଦର ମାତା ନିକଟରେ, ମାତାଙ୍କୁ ଦେବୀତୁଲ୍ୟ ପୂଜାକରିବା ତାଙ୍କର ପ୍ରଧାନ ସୁଖ। ବୀର ମାତାର ବିନାନୁମତିରେ କୌଣସି କାର୍ଯ୍ୟ କରୁନଥିଲେ। ''ପିତାମାତ ମୋର ଜଗତର ପ୍ରଭୁ।'' ଏହିପରି କଥା କେବେ କେବେ ତାଙ୍କ ମୁହଁରୁ ମଧ୍ୟ ଶୁଣାଯାଏ। ସଣ୍ଡେ ସ୍କୁଲରେ ବାଳକ ବାଳିକାମାନଙ୍କୁ ଶିକ୍ଷାଦେବା ସମୟରେ ବୀର ସହାସ୍ୟ ବଦନରେ ପଚାରନ୍ତି - ''ପିଲାଏ, ପଞ୍ଚମ ଆଜ୍ଞା କଣ ?''

ବିନୀତ ଛାତ୍ର ଜଣେ ସସ୍ମିତ ବଦନରେ ଉତ୍ତର ଦିଏ, ''ପିତାମାତାଙ୍କୁ ସମାଦର କର।''

''ସେହି କଥାଟି ମନେରଖି ତୁମେମାନେ କାର୍ଯ୍ୟ କରିବ। ପିତାମାତାଙ୍କୁ ସମାଦର କରିପାରିଲେ ଈଶ୍ୱରଙ୍କୁ ସମାଦର କରିପାରିବ ଏବଂ ଦୀର୍ଘାୟୁ ହେବ।''

ପିଲାମାନେ ବୀରବାବୁଙ୍କୁ ବଡ଼ ଭକ୍ତି କରନ୍ତି। ସେ ବଡ଼ ସତ୍ୟନିଷ୍ଠ, ପରୋପକାରୀ। କୌଣସି ମାଦକଦ୍ରବ୍ୟ ସେ ସ୍ପର୍ଶ କରନ୍ତିନି। ପାନ ସୁଦ୍ଧା ଖଣ୍ଡେ ଖାଇବାର କେହି ତାଙ୍କୁ ଦେଖିନାହିଁ। ସର୍ଭେ ଅଫିସରେ କାମ କରନ୍ତି। ଲୋକେ ତାଙ୍କୁ 'ବୀରବାବୁ' ବୋଲି ଡାକନ୍ତି। ବୀରବାବୁ ଘରେ ଅତି ସାଧାରଣ ଜୀବନଯାପନ କରୁଥିଲେ। ଚାହାଖିଆ ଅଭ୍ୟାସ ନାହିଁ। ସକାଳୁ ବାଡ଼ିପୋଖରୀର ''ଶ୍ୟାମସୁନ୍ଦର ଘନ ଘଞ୍ଚ କୁମୁଦ କହ୍ଲାରଶୋଭୀ ନୀଳାଭ ନିର୍ମଳ ଜଳରେ'' ବୁଡ଼ଟା ଦେଇ ଆସି ସାମାନ୍ୟ ଚଟଣି, ଭର୍ତ୍ତା କିମ୍ବା ଶାଗଭଜା ସହିତ ଓଡ଼ିଆ ଜାତିର ବଳସଂଚାରକାରୀ ସେହି ପୁରୁଷକ୍ରମିକ ପଖାଳଭାତ ସାଦରେ ଭୋଜନ କରୁଥିଲେ। ଭୋଜନ ଓ ପାନରେ ସଂଯମୀ, ବିଳାସହୀନ ଓ ସଦା ପରିଶ୍ରମକୁଶଳ, ସୁଚରିତ୍ରସଂପନ୍ନ ବୀରବିକ୍ରମ ପ୍ରକୃତରେ ବୀର ବିକ୍ରମ ଥିଲେ। ବର୍ଣ୍ଣ ଈଷତ୍ କୃଷ୍ଣଭ ହେଲେ ସୁଦ୍ଧା, ସୁଗଠିତ ଦେହ, ସୁନ୍ଦର ସ୍ୱାସ୍ଥ୍ୟ, ଲାବଣ୍ୟମଣ୍ଡିତ ମୁଖ ବିଶାଳତ୍ୱର ପରିଚାୟକ।

ବୀର ବିକ୍ରମ ମେଧାବୀ ଥିଲେ, କିନ୍ତୁ ସ୍କୁଲ୍ କଲେଜର ଶିକ୍ଷାରେ ଅଧିକ ଦୂର ଅଗ୍ରସର ହୋଇ ପାରିନଥିଲେ। ଏଣ୍ଟ୍ରାନ୍ସ ଦ୍ୱିତୀୟ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ି ପିତାଙ୍କ ଆଦେଶାନୁସାରେ ସର୍ଭେ ଇଲାକାରେ ଭର୍ତ୍ତିହେଲେ। ମାସିକ ଆୟ ବେଳେ ବେଳେ ତିରିଶ ଟଙ୍କାରୁ ମଧ୍ୟ ବଳିପଡୁଥିଲା। ସେ ସମୟରେ ତାହାହିଁ ଅତି ଉଚ୍ଚ କାର୍ଯ୍ୟ ବୋଲି ବିବେଚିତ ହେଉଥିଲା।

ଜଗନ୍ନାଥ ପାତ୍ରଙ୍କର ମାମୁଁ ଗୌରାଙ୍ଗ ପାତ୍ର କଟକର ସର୍ଭେ ଇଲାକାରେ କ୍ଷୁଦ୍ର ଚାକିରୀ କରୁଥିଲେ। ସେଥିପାଇଁ ବୀରବାବୁଙ୍କ ସହିତ ତାଙ୍କର ପରିଚୟ। ଜଗନ୍ନାଥ ବାଲ୍ୟକାଳରୁ ବୁଦ୍ଧିମାନ୍

ଥିଲେ ଓ ମିଶନ ସ୍କୁଲରେ ସୁଖ୍ୟାତି ସହିତ ପଢୁଥିଲେ। ସେଥିପାଇଁ ସେ ଖ୍ରୀଷ୍ଟଧର୍ମ ସଂସ୍ରବରେ ଆସିଥିଲେ। ବାଇବେଲ୍ ପରୀକ୍ଷା ଦେଉଥିଲେ। କେବେ କେବେ ପୁରସ୍କାର ମଧ୍ୟ ପାଇଛନ୍ତି। ସେ ଅଳ୍ପ ବୟସ୍କ ହେଲେ ମଧ୍ୟ, ବୀରଙ୍କର ବିଶେଷ ସ୍ନେହର ସାଂଗ ହୋଇପାରିଥିଲେ। ଉଭୟଙ୍କ ଗୃହ ମଧ୍ୟ ନିକଟବର୍ତ୍ତୀ। ସେଥିପାଇଁ ଅନେକବାର ବୀର ବାବୁଙ୍କ ଗୃହକୁ ଯାତାୟାତର ସୁବିଧା ହୋଇଥିଲା। ବୀରବାବୁଙ୍କ ଉଦାର ଚରିତ୍ର, ବାଳକ ଜଗନ୍ନାଥ ମନରେ ମହାଭାବର ଉଦୟ କରାଇଥିଲା। ଫଳସ୍ୱରୂପ ଜଗନ୍ନାଥ ଖ୍ରୀଷ୍ଟଧର୍ମପ୍ରତି କ୍ରମେ ଆକୃଷ୍ଟ ହେଉଥିଲେ। କିନ୍ତୁ ସ୍ୱଧର୍ମ ପରିତ୍ୟାଗ କରି ଖ୍ରୀଷ୍ଟଧର୍ମ ଗ୍ରହଣ କରିବା ଯେ କେଡ଼େ ଦୁଃସାଧ୍ୟ, ସେ ତାହା ଜାଣିଥିଲେ। ବୀରବାବୁଙ୍କ ନିକଟରେ ତାଙ୍କ ମନୋଭାବ ଗୁପ୍ତ ନ ଥିଲା। ଦୁଇସାଥି ବଡ଼ ଭ୍ରମଣପ୍ରିୟ। ପ୍ରତିଦିନ ସଂଧ୍ୟା ସମୟରେ ମହାନଦୀ ଓ କାଠଯୋଡ଼ୀ ନଦୀ କୂଳରେ ଭ୍ରମଣ କରୁ କରୁ ନାନା ସଦାଳାପ କରିବା ସେମାନଙ୍କ ଜୀବନର ପରମ ସୁଖ ଥିଲା। ଏହିପରି ଦିନେ ସଂଧ୍ୟା ସମୟରେ ଆମ୍ଭେମାନେ ତାଙ୍କୁ ସାକ୍ଷାତ୍ କରିବାର ସୁଯୋଗ ପାଇଛେ।

ଶଶୀ ଓ ସୁବାସୀ ବୀରବାବୁଙ୍କ ଧର୍ମ ଭଗ୍ନୀରୂପେ ତାହାଙ୍କ ଘରେ ସ୍ୱଚ୍ଛନ୍ଦରେ ଦିନାତିପାତ କରୁଛନ୍ତି। ଉଭୟେ ସ୍କୁଲରେ ପଢ଼ନ୍ତି। ଶଶୀ ଦିନକୁଦିନ ବଡ଼ କର୍ମକୁଶଳ ହୋଇପଡୁଛି। ବାଡ଼ି ବଗିଚାରେ ଫଳପୁଷ୍ପ ବୃକ୍ଷ ରୋପଣ ଏବଂ ଗୋପାଳନ ତାହାର ଅତିଶୟ ସ୍ନେହର ବିଷୟ। ରନ୍ଧାବଢ଼ା– ସେ ଓ ଭାନୁମତୀ ଉଭୟେ ମିଶି କରନ୍ତି।

ବୀରବାବୁଙ୍କର ପିତାମାତା ବାଳିକାଦ୍ୱୟର ପିତାମାତା ସ୍ୱରୂପ ହୋଇଛନ୍ତି। ବିଶେଷତଃ, ଜେମସ୍‌ବାବୁ ଶଶୀର ସୁକଣ୍ଠନିଃସୃତ ଧର୍ମଗୀତ ପ୍ରତିସଂଧ୍ୟାରେ ଶୁଣିବାକୁ ଭଲ ପାଉଥିଲେ। ଜେମ୍‌ସବାବୁର ଶଶୀର କଣ୍ଠସଂଗୀତର ଅଜସ୍ର ପ୍ରଶଂସାକରନ୍ତି। ଶଶୀର ରୂପଲାବଣ୍ୟର ପ୍ରଶଂସା ନିଷ୍ପ୍ରୟୋଜନ। ଶ୍ୟାମାଙ୍ଗୀ ଭାନୁମତୀ ଓ ଗୌରବର୍ଣ୍ଣା ଶଶୀ ଏକସ୍ଥାନରେ ବସିଥିଲେ ଏକ ବୃନ୍ତରେ ଫୁଟନ୍ତା ଚଂପା ଗୋଲାପର ତୁଳନା ମନକୁ ଆସେ।

ପାଠକ ବିରକ୍ତ ହେଉଥିବେ। କଥାରେ କଥାରେ ଅନେକ ବିଳମ୍ବ ହେଲାଣି। ବର୍ଷା ମଧ୍ୟ ଛାଡ଼ିଗଲାଣି। ଆକାଶ ପରିଷ୍କାର। ସୂର୍ଯ୍ୟ କିରଣ ପୁଣି ଗଛ ପତ୍ରର ଅଗରେ ପଡ଼ି ଜଳ ଉପରେ ଝିକି ଝିକି ମାରୁଛି ଏବଂ କ୍ଷଣେ କ୍ଷଣେ ଶତ ଇନ୍ଦ୍ରଧନୁ ଫୁଟିଉଠୁଛି। ବୀରବାବୁଙ୍କ ଗୃହ ଗାଁମୁଣ୍ଡକୁ। ସେଠାରେ ଖ୍ରୀଷ୍ଟିୟାନ୍ ସାହି ଶେଷହୋଇ ହିନ୍ଦୁସାହି ଆରମ୍ଭହୋଇଛି। ସମ୍ମୁଖ ଦିଗରେ ରାଜପଥ ପଡ଼ିରହିଛି।

ସେହି ସମୟରେ ଅଶ୍ୱ ଶକଟର ବେଶି ପ୍ରଚଳନ ନଥିଲା, ଲୋକେ ଗୋ'ଯାନରେ ଅବା ପାଦଗତିରେ ଯାତାୟାତ କରୁଥିଲେ। ଦିନ ପ୍ରାୟ ୯ଟା ବାଜିଲାଣି। ଶଶୀ ଏକାଧ୍ୟାନରେ ଖଣ୍ଡିଏ କୁରୁତା ସିଲାଇ କରୁଛି ଓ ବେଳେବେଳେ ଦୂରସ୍ଥିତ ଆମ୍ବଗଛକୁ ଅନାଇ ମନରେ ନାନା କଥା ଚିନ୍ତାକରୁଛି। ବିଶେଷତଃ ତା ମାତାର ପୂର୍ବସ୍ମୃତି, ଶୈଶବର ଶତ ଦୁଃଖ କଷ୍ଟ ମନରେ କରି ନାନାକଥା ଭାବୁଛି। ସେ ଏକ ସମୟରେ ଛିଣ୍ଡାଲୁଗା ପିନ୍ଧି ଗଉଡ଼ଘରେ ବାସ କରୁଥିଲା। ସଂସାରରେ ତାର ମାଆ ଓ ଭଉଣୀ ଛଡ଼ା ଆଉ କେହି ନଥିଲେ। ବାଲ୍ୟକାଳରେ ପିତାର ମୃତ୍ୟୁ ହୋଇଥିଲା। ସେଥିପାଇଁ ପିତୃସ୍ନେହର ବିଷୟରେ ଅଧିକ ମନେ କରି ପାରୁନଥିଲା। କିନ୍ତୁ ସ୍ନେହମୟୀ ଦୁଃଖିନୀ ଜନନୀ ତାହାର ସର୍ବସ୍ୱ ଥିଲା।

ସେ କେତେ ଆଦରରେ ମାଆର ସେବାକରେ । ବାଉରିବନ୍ଧୁ ବିଶ୍ୱାଳ ଓ ବାଞ୍ଛାନିଧି ଜେନା ଘରେ ଯାଇ ପ୍ରତିଦିନ ଧାନ କୁଟୁଥିଲା । ସେଥିରେ ଯାହା ଆୟ ହୋଇଥିଲା, ତାକୁ ସଞ୍ଚୟ କରି ମାଆର ପୀଡ଼ା ସମୟରେ ବ୍ୟୟ କରୁଥିଲା । ଆହା, ତାର ମାଆ ଯଦି ଆଜି ବଞ୍ଚିଥାନ୍ତା, ସେ କଣ କରିନଥାନ୍ତା । ଆହା ସେ ଯଦି ମରିଯାଇ ତାର ମାଆ ବଞ୍ଚିଥାନ୍ତା ! ଶଶୀର ସେହି ଭୟାନକ ରାତିର ଘଟଣା ମନରେ ପଡ଼ିଲା । ସ୍ନେହମୟ ବୀରଭାଇର ଆଲୋକସାମାନ୍ୟ ଦୟାଗୁଣ ତାହାର ମନେପଡ଼ିଲା । ସେ ଆଶ୍ଚର୍ଯ୍ୟ ହୋଇ ଭାବିଲା - ଈଶ୍ୱର କି ଅଦ୍ଭୁତ ଭାବରେ ସେଦିନ ତାର ଦୁଃଖ ମୋଚନକରିଥିଲେ । ବାସ୍ତବିକ ଯାହାର ବାପ ମା' ନାହିଁ, ଈଶ୍ୱର ତା'ର ବାପ ମା । ଯଦି ବୀରଭାଇ ସହିତ ସେ ରାତିରେ ଦେଖା ହୋଇନଥାନ୍ତା, ତେବେ ସେ କଣ କରିଥାନ୍ତା ! ଗୋଟି ଗୋଟି ହୋଇ ଶଶୀର ସବୁକଥା ମନେ ପଡ଼ିଲା । ବୀରଭାଇ ସତେ ତାର ନିଜ ଭାଇ । ବୀରଭାଇର ପରିବାରର ସମସ୍ତେ ଧର୍ମପ୍ରିୟ ଆଉ ସ୍ନେହୀ । ଆହା, ଏପରି ଧାର୍ମିକ ପରିବାର କଟକରେ ଆଉ ନାହାନ୍ତି ପରା ! ବୀର ଭାଇର ମା ସତେ ଯେପରି ତା'ର ନିଜର ମାଆ । ପୁଣି ବାବା ତାଙ୍କର । ବାଳିକା ପିତୃସ୍ନେହର ଆଭାସମାତ୍ର ପାଇଥିଲା । ଜେମ୍ସବାବୁ ନିଜର ପିଲାମାନଙ୍କଠାରୁ ଶଶୀକୁ ଅଧିକ ଭଲପାଉଛନ୍ତି । ଆନନ୍ଦବିହ୍ୱଳ ହୋଇ ଶଶୀ ତାହା ଭାବିବାକୁ ଲାଗିଲା । ବାବାଙ୍କର ସେହି ''ମା ଶଶୀ'' ଡାକ ତାହାର କର୍ଣ୍ଣରେ ପ୍ରବେଶ କରି ହୃଦୟରେ ଏକ ଅମୃତମୟ ପରିବେଶ ସୃଷ୍ଟିକଲା । ସତେ ଜଗତରେ ଅପରର ପିତା ଯଦି ଏଡ଼େ ସ୍ନେହୀ, ତାର ସ୍ୱର୍ଗୀୟ ପିତା କେଡ଼େ ସ୍ନେହୀ ନଥିବେ । ଧର୍ମପ୍ରିୟ ବାଳିକା ଶଶୀ ଆନନ୍ଦରେ ଭାବିବାକୁ ଲାଗିଲା ।

ପୁଣି ସେହି ରାତ୍ରିର ଦୃଶ୍ୟ ତାର ମନେପଡ଼ିଲା । ସେଥି ସଂଗେ ସଂଗେ ଆଉ ଜଣକର ସୁନ୍ଦର ଅସ୍ପଷ୍ଟ ମୂର୍ତ୍ତି ତା' ହୃଦୟରେ ହଠାତ୍ ଆବିର୍ଭୂତହେଲା । ଯାହାର ବିଶାଳ ସ୍ନେହମୟ ଚାହାଣିରେ ତାହାର ବାଳିକା ହୃଦୟ ସ୍ପନ୍ଦିତ ହୋଇଉଠିଥିଲା । ଯାହାର କୋମଳ ସ୍ନେହମୟ କର ଅଲକ୍ଷ୍ୟରେ ତାହାର ନୟନର ଅଶ୍ରୁ ମାର୍ଜନାକରିଥିଲା । ଅଢ଼େଇବର୍ଷ ମଧ୍ୟରେ ଦିନେ ହେଲେ ତ ସେ ତାହାର ଦେଖା ପାଇ ନାହିଁ । ସେ କିପରି ବା ଦେଖା ପାଇବ । ସ୍କୁଲ୍‌କୁ ସେ ଯାଏ, ଘରକୁ ଆସେ । ଘରଲୋକ ଛଡ଼ା ଆଉ କାହା ସହିତ ବିଶେଷ କଥାବାର୍ତ୍ତା କରେ ନାହିଁ । ସାହି ବୁଲିବାକୁ ମା'ର ବାରଣ । ସେ କିପରି ପୁଣି ଜଣେ ପୁରୁଷ ପିଲାର ସନ୍ଧାନ ବା ରଖି ପାରିବ । କିନ୍ତୁ ଶଶୀର ହୃଦୟରେ ସେ ସ୍ନେହମୟ ମୂର୍ତ୍ତି କେଉଁ ଅଜ୍ଞାତ ରାଜ୍ୟର ଦେବତାପରି ଉଚ୍ଚସ୍ଥାନ ଅଧିକାର କରିଅଛି । ସେ ନିଜେ ତାହା ସଂପୂର୍ଣ୍ଣ ବୁଝି ନାହିଁ । କିନ୍ତୁ ତାହାର କଥା ସ୍ମରଣହେଲା ମାତ୍ରେ ଶଶୀର ହୃଦୟ ଅଜଣା ରାଗିଣୀରେ ବାଜି ଉଠୁଛି । ତାର ହେତୁହୀନ ମନରେ କେଜାଣି କାହିଁକି ସେହି ଯୁବକର ଦର୍ଶନାକାଂକ୍ଷା ବଳବତୀ ବାସନା ସୃଷ୍ଟିକରିଛି । ମନେ ମନେ ସେ ଈଶ୍ୱରଙ୍କୁ ପ୍ରାର୍ଥନାକଲା - ଥରେ ହେଲେ ଦୂରରୁ ସେ ସେହି ସହାନୁଭୂତିଭରା ମୁହଁଟିକୁ ଦେଖିପାରନ୍ତା ।

ହଠାତ୍ ଶଶୀର ଭାବନାରେ ବାଧାପଡ଼ିଲା । ସେ ଚଞ୍ଚଳ ପଦଶବ୍ଦ ପାଇ ସହସା ଚମକି ଉଠିଲା । ଆଗକୁ ଚାହିଁ ଦେଖିଲା - ତାର ସମ୍ମୁଖରେ ଜଣେ ଯୁବକ ଠିଆହୋଇଛନ୍ତି । ସେ ଅପ୍ରତିଭ

ହୋଇପଡ଼ିଲା। ଆଗନ୍ତୁକ ମଧ୍ୟ ସହସା ଶଶୀଙ୍କୁ କିଛି କହି ନପାରି ତାହାର ଆୟତ ନେତ୍ର ଦ୍ୱୟର କୋମଳ ସ୍ନିଗ୍ଧ ଚାହାଣିରେ ଅଭିଭୂତ ହୋଇପଡ଼ିଲେ। ପର କ୍ଷଣରେ ଶଶୀ ସଂଭ୍ରମ ସହକାରେ ମୁଣ୍ଡରେ ଲୁଗା ଦେଇ ଆଗନ୍ତୁକଙ୍କୁ ଚାହିଁବାକୁ ଚେଷ୍ଟାକଲା। କିନ୍ତୁ କଥା କହିବାର ସାହସ ତାର ହେଲାନି। ଆଗନ୍ତୁକ ଶଶୀର ତତ୍କାଳୀନ ଅବସ୍ଥା ବୁଝିପାରିଲେ। ସଂକୋଚର ସହିତ ପଚାରିଲେ - ''ବୀରବାବୁ ଘରେ ଅଛନ୍ତି ? ତାଙ୍କୁ ଦେଖା କରିବା ନିତାନ୍ତ ଜରୁରୀ।''

ବୀରବାବୁ ଏବଂ ଶରତ ଉଭୟେ ସେଦିନ କାର୍ଯ୍ୟବଶତଃ କେନ୍ଦ୍ରାପଡ଼ା ଯାଇଥିଲେ। ଶଶୀ ସହଜ ସ୍ୱରରେ କହିଲା - ''ଭାଇ ଘରେ ନାହାନ୍ତି।''

ଆଗନ୍ତୁକ ବିବ୍ରତ ହୋଇ ପଡ଼ିଲେ। ନତ ସ୍ୱରରେ କହିଲେ, ''ବଡ଼ ଦରକାର ଥିଲା। ଆଚ୍ଛା, ମୁଁ ଯାଉଛି। ସେ କେବେ ଆସିବେ କହି ପାରିବକି ?''

ଶଶୀର ବଡ଼ ସଂକଟ। ସେ ଦେଖିଲା ଆଗନ୍ତୁକ ପୁନର୍ବାର କଥା କହିଲେଣି। ସେ ମୁଖ ନତ କରି କହିଲା - ''ଭାଇ ସୋମବାର ଆସବେ। କେନ୍ଦ୍ରାପଡ଼ା ଯାଇଛନ୍ତି।''

ହଠାତ୍ ଆଗନ୍ତୁକ ହୃଦୟ କୌତୂହଳୀ ହୋଇଉଠିଲା। ସେ ଶଶୀ ଆଡ଼କୁ ବିସ୍ମୟ ବିହ୍ୱଳ ନେତ୍ରରେ ଅନାଇ ଅସ୍ଫୁଟସ୍ୱରରେ ସ୍ୱତଃ କହି ପକାଇଲେ ''କିଏ ? ଶଶୀ''

ଶଶୀର କର୍ଣ୍ଣରେ କଥାଗୁଡ଼ିକ ପ୍ରବେଶକଲା। ସେ ଲଜ୍ଜାରେ ମ୍ରିୟମାଣ ହୋଇ ଆରକ୍ତ ବଦନରେ ଭୂମିଆଡ଼କୁ ଦୃଷ୍ଟିପାତକରି ରହିଲା। କିନ୍ତୁ ତାହାର ହୃଦୟ ଏକ ଅଭୂତପୂର୍ବର ଆନନ୍ଦରେ ପୂରିଉଠିଲା। ତାହାର ସମସ୍ତ ଶରୀର ଏକ ଅଜ୍ଞାତ ଭାବ ଆବେଶରେ କମ୍ପିତ ହୋଇଉଠିଲା। ''କିଏ, ଶଶୀ !'' କ୍ଷଣେ କ୍ଷଣେ ତାହାର ହୃଦୟତନ୍ତ୍ରୀରେ ଆଘାତ କରିବାକୁ ଲାଗିଲା। ଶଶୀ ଆତ୍ମବିସ୍ମୃତା ହୋଇ ଭୂମିକୁ ଚାହିଁ ଠିଆହୋଇ ରହିଲା।

ଆଗନ୍ତୁକ ଅନେକକ୍ଷଣ ବାଳିକାକୁ ଚାହିଁ କଣ ଭାବିଲେ। ପରେ ଧୀରେ ଧୀରେ ଗନ୍ତବ୍ୟ ମାର୍ଗରେ ପ୍ରସ୍ଥାନ କଲେ। ତାହାଙ୍କ ପ୍ରସ୍ଥାନ ପରେ ଶଶୀର ଧ୍ୟାନ ଭଗ୍ନହେଲା। ସେ ଅନାଇ ଦେଖିଲା- ଆଗନ୍ତୁକ ଆଉ ନାହିଁ। ଆହା, ଥରେ ଭଲା ସେ ଫେରି ଆସନ୍ତେ। ସେ ନିଶ୍ଚୟ ଲଜ୍ଜା ସଂକୋଚ ତ୍ୟାଗକରି ତାଙ୍କୁ ମନଭରି ଦେଖନ୍ତା। ବିସ୍ମୟ ଓ ଲଜ୍ଜାରେ ଶଶୀ ଭାବିଲା - ''କି ଆଶ୍ଚର୍ଯ୍ୟ, ! ଏତେଦିନପରେ ଥରେ ହେଲେ କୃତଜ୍ଞତା ଜଣାଇ ପାରିଲି ନାହିଁ। ମୁଁ ତ ଚିହ୍ନି ନଥିଲି। ସେ କିପରି ଚିହ୍ନିଲେ ?''

ସେଦିନ ଶଶୀର ଭାବନାର ଅନ୍ତ ନାହିଁ। ବିଛଣାରେ ଶୋଇ ଶୋଇ ଭାବିଲା - ଯାହାକୁ ଦେଖିବାକୁ ଇଚ୍ଛା କରୁଥିଲି, ଏତେଦିନପରେ ତାଙ୍କୁ ଦେଖିଲି। ପରସ୍ପରକୁ ଚିହ୍ନିଲି। କିନ୍ତୁ ଥରେ କୃତଜ୍ଞତା ଜଣାଇବାରେ ଅବସର ହେଲା ନାହିଁ। ଶଶୀର କୋମଳ ହୃଦୟ ଆଶ୍ଚର୍ଯ୍ୟ ଭାବରେ ଘନ ଘନ ଆନ୍ଦୋଳିତ ହେବାକୁ ଲାଗିଲା। କେବଳ ନୟନପଟରେ ସେହି ସୁନ୍ଦର ସ୍ନେହମୟ ତରୁଣ ମୂର୍ତ୍ତି ଭାସିବାକୁ ଲାଗିଲା। ସେ ଆଶ୍ଚର୍ଯ୍ୟ ହୋଇ ନିଜର ଅନପେକ୍ଷିତ ପରିବର୍ତ୍ତନ ଚିନ୍ତା କରିବାକୁ ଲାଗିଲା।

କିନ୍ତୁ କୌଣସି କାରଣ ବୁଝିପାରିଲା ନାହିଁ। ତାହାର ଦୃଷ୍ଟିରେ ସାରା ଜଗତଟା ଏକ ଆଶ୍ଚର୍ଯ୍ୟ ଅଦ୍ଭୁତ ସୌନ୍ଦର୍ଯ୍ୟରେ ପୂରିଉଠିଲା।



## ଚତୁର୍ଥ ପଟ

''ଏ ମାୟା ସଂସାର
କିଛି ନାହିଁ ଏଥି ସକଳ ଅସାର''
''ତୋ ଦୟା ଥାଉରେ ଧନ ହେଲି ମେଲାଣି
ଅଗୁଣାଧରା ନୟନୁ ନ ବୁହା ପାଣି।''

ସ୍ମିତ ବଦନରେ ସୁଠାମ ଠାଣିରେ ଗାନ କରୁ କରୁ ଜଗନ୍ନାଥ ନଦୀକୂଳରେ ଉପସ୍ଥିତ ହେଲେ। ବରଷା କାଳର ନଦୀ ଏ କୂଳ ସେ କୂଳ ଖାଉଛି। ପଠା ଚଡ଼ା¹ ସବୁ ବୁଡ଼ି ଯାଇ ଏକ ବୃହତ୍ ନୀଳ ଆସ୍ତରଣ ବକ୍ରଗତିରେ ଦୁଇକୂଳ ମଧ୍ୟରେ ପଡ଼ିରହି ହୃଦୟରେ ଅପୂର୍ବ ଅନନ୍ତ ଭାବରାଶି ଜାଗ୍ରତ କରାଇ ଦେଉଅଛି। ନଦୀର ଜଳରାଶି ସ୍ଥାନେ ସ୍ଥାନେ ନିର୍ମଳ, ସ୍ୱଚ୍ଛ, ଶୁଭ୍ର, ସ୍ଥାନେ ସ୍ଥାନେ ନୀଳାଭ ଓ ସ୍ଥାନେ ସ୍ଥାନେ ଘନ କଳା ଥିଲାପରି ଦିଶୁଥିଲା। ସ୍ଥାନେ ସ୍ଥାନେ ଆବର୍ତ୍ତ ଘୂର୍ଣ୍ଣନରେ ଜଳ ଚକ୍ରାକାରେ ଭାଙ୍ଗି ଭାଙ୍ଗି ପଡୁଥିଲା। ଢେଉ ଉପରେ ଢେଉ, ତରଙ୍ଗ ଉପରେ ତରଙ୍ଗ, ସ୍ତର ଉପରେ ସ୍ତର। ଜଳ ଖେଳି ଖେଳି ଭାଙ୍ଗି ଭାଙ୍ଗି, ପବନରେ ନାଚି ନାଚି ନଦୀବକ୍ଷରେ ଏକ ଅପୂର୍ବ ସୌନ୍ଦର୍ଯ୍ୟର ହାଟ ବସାଇ ଦେଇଥିଲା। କଲ୍ଲୋଳିନୀର କଳକଳ ନାଦ, ସୁଁ ସୁଁ ବହୁ ଦୂରରୁ ଶୁଣାଯାଉଥିଲା। ନଦୀର ଅନ୍ୟ ତୀର ଅସ୍ପଷ୍ଟ ଭାବରେ ଦେଖା ଯାଉଥିଲା। ଦୂରବର୍ତ୍ତୀ ପର୍ବତଗୁଡ଼ିକ ଘନନୀଳ ଉଚ୍ଚ ସ୍ତୂପ ମାତ୍ର ପରି ଦିଗ୍‌ବଳୟରେ ମିଶି ଯାଇଥିଲେ। ସେ ପାରିର କ୍ଷୁଦ୍ର କ୍ଷୁଦ୍ର ଗୃହଗୁଡ଼ିକ ଛୋଟ ହୋଇ ଦେଖାଯାଉଥିଲା।

ନଦୀକୂଳରେ ଅନେକ ଯାତ୍ରୀ ନୌକା ଉଦ୍ଦେଶ୍ୟରେ ସହଗମନ ଉଦ୍‌ବେଗୀ। ଜଗନ୍ନାଥ ନୌକାଭଡ଼ା ସ୍ଥିରକରି ନୌକାଉପରକୁ ଡେଇଁପଡ଼ିଲେ। ଆଜି ତାହାଙ୍କ ମନରେ ଏକ ଅପୂର୍ବ ଆନନ୍ଦ ଓ ଦୁଃଖ - ଏହି ଉଭୟ ଭାବର ତରଙ୍ଗ ଖେଳୁଅଛି। ସେ ଆବେଗଭରା ଗାନ କରୁ କରୁ ଆକାଶର ବିସ୍ତୃତ ନୀଳିମା ତଥା ନଦୀବକ୍ଷର ଅପୂର୍ବ ଶୋଭା ଦେଖି ମୁଗ୍‌ଧ ହେଉଥିଲେ। ନୌକା ଘାଟ ଛାଡ଼ିଦେଲା।

ଆଜି ଗେହ୍ଲେଇର ଭାରି ଆନନ୍ଦ। ହୃଦୟ କ୍ଷଣେ କ୍ଷଣେ ସ୍ପନ୍ଦିତ ହୋଇଉଠୁଛି। ସେ ଆନନ୍ଦ ମନରେ କଉଶୁଲୀ ଓ ଗଣ୍ଡେଇକୁ କାର୍ଯ୍ୟରେ ବରାଦ୍ ଦେବାରେ ଲାଗିଅଛି। ବହୁଦିନପରେ ପୁଅ ପରୀକ୍ଷାରେ ପାଶ୍ କରି, ତା' ଦୀନକୁଟୀରକୁ ଆଲୋକିତ କରିବାକୁ ଆସିଅଛି। ଆଜି ତାହାର ଗୁଣବନ୍ତ ପୁତ୍ର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛି, କେତେ ଇଂରାଜୀ ପଢ଼ିଛି। ସେ ସେତେବଡ଼ ଜାତି ନୋହିଲେ ସୁଦ୍ଧା, ତା' ପୁଅ ଆଜି ଜଣେ ବାବୁ! ହାକିମ ହେବ। ଗେହ୍ଲେଇ ନବନବ ଆଶା ସ୍ୱପ୍ନରେ ବିଭୋର। ସେ ଯେ ଜଗନ୍ନାଥର ମାତା-ଏହି କଥା ଭାବି ସେ ତା ଜନ୍ମ ସାର୍ଥକ ମଣୁଅଛି। ବହୁ ଭାଗ୍ୟକୁ ସେ

(୧) ନଇ ଅତଡ଼ାର ଉପର ଭାଗ ଓ ନଇ ଭିତରେ ଥିବା ଉଚ୍ଚ ଭୂମି।

ଜଗନାଥକୁ ଗର୍ଭରେ ଧରିଥିଲା । ପୁତ୍ରବତୀ ହୃଦୟ ଆନନ୍ଦରେ, ଗର୍ବରେ ଫୁଲିଉଠୁଛି । ସେ ଆଜି ଆଉ କଉଶୁଲୀ ଓ ଗଣ୍ଡେଇର କାର୍ଯ୍ୟ ଉପରେ, ରନ୍ଧନ ଉପରେ, ନଜର ଦେଇପାରୁ ନାହିଁ । ଆପେ ଏ କାମ ସେ କାମ କରିପକାଉଚି । ଆଜି ତିନିତିଅଣ ନ'ଭଜା, ସେ ନିଜେ ରାନ୍ଧିବାକୁ ବସିଗଲା । ତାର ପୁତ୍ର ଆଜିକି ଦୁଇ ବର୍ଷ ହେବ କଟକରେ ପଢୁଥିଲା । ଏଥି ମଧରେ ଘରକୁ ଆସିବାର ସୁବିଧା ପାଇ ନଥିଲା । ଦୁଇ ବର୍ଷ ସେ କେଉଁଠି ଖାଇଥିବ, ମନମତ[୧] କିଏ ରାନ୍ଧି ପରଷିଥିବ, ତା ବିଛଣା କିଏବା ପାରି ଦେଇଥିବ । ଦୂରଦେଶ, ପରଦେଶରେ ପୁଅ ତାର କେତେ ଅନିଭୋଗ[୨] ପାଇ ନଥିବ । ସେହେଲ୍ଲି ଆନନ୍ଦ ଉଲ୍ଲାସରେ ନାନା କଥା ଭାବୁଅଛି । ଥରେ ଥରେ ବାହାରକୁ ଅନାଉଛି, ସାମାନ୍ୟ ଶବ୍ଦରେ ଚମକିପଡୁଛି । ଜଗନ୍ନାଥର ଶୈଶବର ବହୁସ୍ମୃତି ତା ହୃଦୟପଟରେ ବିଭାସିତ ହେଉଅଛି । ସେ ବାଳକ ନାଥିଆ ବୁଲି ବୁଲି ପାଠ ଅଭ୍ୟାସ କରୁଥିଲା । କ୍ଷୁଧା ସମୟରେ କିପରି କରୁଣ କଣ୍ଠରେ ମାଆ ପାଖରେ ଖାଇବାକୁ ଅଳି କରୁଥିଲା । ଗ୍ରାମର ସବୁ ବାଳକଙ୍କ ଠାରୁ ସେ ଶିଷ୍ଟ ଓ ସୁଶୀଳ ବୋଲି ଖ୍ୟାତିଲାଭ କରିଥିଲା । କାହା ସହିତ କଳି ନାହିଁ, କଜିଆ ନାହିଁ । ପାଠହିଁ ତା'ର ସାର ।

କହ୍ନେଇ ଅବଧାନ କେତେ ପ୍ରଶଂସା କରନ୍ତି । ପିତାର ଆଦରର ନାଥିଆ ଆଜି ବଡ଼ ବାବୁ ହୋଇ ତାହାର କ୍ଷୁଦ୍ର କୁଟୀର ଆଲୋକିତ କରୁଅଛି । ଦାସୀ କଉସୁଲୀ ଓ ଗଣ୍ଡେଇ ଉଭୟେ ସାଆନ୍ତ ପୁଅର ଆଗମନ ଖବରପାଇ ଆନନ୍ଦିତ । କିଏ ଚାଉଳ ବାଛୁଚି, କିଏ ଦୁଧ ଆଉଟୁଚି, କିଏ ମାଛ ବାଛୁଚି, ପରିବା କାଟୁଚି-ସତେ ଯେପରି ଆଜି ନାଥିଆକୁ ପେଟଭରି ଖାଇବାକୁ ଦେବା ସେମାନଙ୍କର ଏକମାତ୍ର ଲକ୍ଷ୍ୟ ।

ବହୁ ଯତ୍ନରେ ଘରଦ୍ୱାର ଲିପାପୋଛା କରିଛନ୍ତି । ନାଥିଆ ଅପରିଷ୍କାର ଗୃହରେ ରହିପାରିବ ନାହିଁ । ସେ ବଡ଼ ସୁକୁମାର । କହୁ କହୁ ମାତୃସ୍ନେହ ଉଚ୍ଛୁଳିଉଠୁଛି ।

ଭାଇ ଭୋବନାର ମଧ କାମରେ ବିଶ୍ରାମ ନାହିଁ । ବାଡ଼ି ବଗିଚାର ତତ୍ତ୍ୱନେବାରେ ସେ ବ୍ୟସ୍ତ । କଟକରେ ମାଇନର ପାଶ୍ କଲାପରେ ତାର ଆଉ ପାଠପ୍ରତି ସ୍ପୃହା ରହିଲାନି । ସେ ଜଗନ୍ନାଥ ପରି ବୁଦ୍ଧିମାନ ଥିଲା ଏବଂ ମାନସିକ ଶ୍ରମଠାରୁ ଶାରୀରିକ ଶ୍ରମ ଅଧିକ ଭଲପାଉଥିଲା । ବାଡ଼ିବଗିଚା କରିବା, ଗୋରୁ ଗାଈର ଧନ୍ଦା ବୁଝିବା ଏବଂ ପୈତୃକ ବ୍ୟବସାୟକୁ ସେ ଭଲପାଉଥିଲା । ଭାଇର ଆଗମନ ଦେଖି ସେ ଭାରି ଖୁସୀ । ଭାଇ ତାର ବଡ଼ବାବୁ ହୋଇଛି, କଟକରେ ପାଶ୍‌କରିଛି - ଏହା ଭାବି ସେ ଆନନ୍ଦିତ । ଆହା-ଭ୍ରାତୃସ୍ନେହ କୁଟୀରରେ ମଳିପାରେ । କିନ୍ତୁ ସ୍ୱାର୍ଥପର ନାଗରିକ ଜୀବନରେ ଅଳ୍ପ ଦୃଷ୍ଟିହୁଏ ।

ଜଗନ୍ନାଥର ପିତା ଦୀନା ଆଜି ସବୁଠାରୁ ସୁଖୀ । ସେ ଯେ ଗ୍ରାମର ଦଶଲୋକର ଓ ତା' ଭାର୍ଯ୍ୟା ବହୁ ଆପତ୍ତି ସତ୍ତ୍ୱେ ସମସ୍ତଙ୍କର କଥା ଆଗ୍ରାହ୍ୟକରି ନିଜର ବହୁ ପରିଶ୍ରମଲବ୍ଧ ଅର୍ଥରେ ତାହାର ପୁତ୍ରକୁ ମନୁଷ୍ୟ କରିଅଛି- ଏହାହିଁ ତାହାର ମୁଖ୍ୟ ଆନନ୍ଦ । ଆଜି ତାହାର ପାଦ ଦଶହାତ ଦୂରରେ ପଡୁଛି । ସତେ ଜଗନ୍ନାଥ ଆଜି ତାର କୂଳରେ ପ୍ରଦୀପହେଲା । ସାତକୁଳ ଉଦ୍ଧାର ପାଇଲେ । ସେ ନିଜେ ଓଡ଼ିଆ ଛଡ଼ା ଆଉ କିଛି ଜାଣେ ନାହିଁ । ଅଥଚ ପୁଅ ତିନିତିନିଟା ପାଶ୍‌କରିଛି । ସେହି ଗର୍ବରେ, ଏକ ଅଜ୍ଞାତ ଆନନ୍ଦରେ ନାଥିଆର ପିତା ଉତ୍‌ଫୁଲ୍ଲ ।

---

(୧) ମନକୁ ରୁଚିଲାପରି, (୨) କଷ୍ଟ

ଦିନ ଦୁଇଟା ବେଳକୁ ଟେରିକାଟି, ପଞ୍ଜାବି ପିନ୍ଧି, ଗୋଡ଼ରେ ମୂଲ୍ୟବାନ୍ ପାଦୁକା ସହ ଜଗନ୍ନାଥ ଘରେ ପାଦଦେଲେ । ଆଜି ସେ ଜଗନ୍ନାଥ, ପୂର୍ବର ଜଗନ୍ନାଥ ନୁହେଁ । ତାହାର ରୂପରେ ଅନେକ ପରିବର୍ତ୍ତନ ହୋଇଅଛି । ଆଜି ବାଇଶିବର୍ଷ ବୟସ୍କ ଯୁବକ । ଦୀର୍ଘାକାର, ସୁଗଠିତ ଦେହ, ଗୌରବ ଉଜ୍ଜ୍ୱଳ ତନୁ । ତାହାର ବିଶାଳ ନୟନଦ୍ୱୟ ପୁରୁଷୋଚିତ ତେଜଦୀପ୍ତିରେ ଉଜ୍ଜ୍ୱଳ । କପାଳ ଉପରେ କୁଞ୍ଚିତ କେଶ ବିଚିତ୍ର ଭାଙ୍ଗରେ ସୁବିନ୍ୟସ୍ତ । ତାହାର ପରିଚ୍ଛଦରେ ମଧ୍ୟ ପରିବର୍ତ୍ତନ ହୋଇଅଛି । ଆଜି ସେ ଜଣେ ବାବୁପରି ଦିଶୁଅଛି । ଜଗନ୍ନାଥ ଯେଉଁ ଘରକୁ ଯାଉଛି, ସେ ଘରଟା ତାକୁ ମନୁନାହିଁ । ସେ ଏକ କିମ୍ଭୂତ କିମ୍ୟାକାର ରୂପଧରି, ହଠାତ୍ ଯେପରି ତାହାର ଅଜ୍ଞାତ ଅପରିଚିତ ଏ ଅସଭ୍ୟ ରାଜ୍ୟରେ ଉପସ୍ଥିତ । ପିତାମାତା ପ୍ରଶଂସାମାନ ଚକ୍ଷୁରେ ପୁତ୍ରର ସୌନ୍ଦର୍ଯ୍ୟ ନିରୀକ୍ଷଣ କରିବାକୁ ଲାଗିଲେ । ମଳିନ, ମୋଟା ଖଦିପିନ୍ଧା ଆଣ୍ଠୁ ତଳକୁ ପାଉନାହିଁ, ହାତରେ ପିତଳଖଡୁ ମଣିବନ୍ଧଠାରୁ କହୁଣୀ ପର୍ଯ୍ୟନ୍ତ ପିନ୍ଧି ଏବଂ ପାଟଫୁଲି ଚମ୍ପାକଳି ଇତ୍ୟାଦିରେ ସଜ୍ଜିତ ପାଟରାଣୀ ଗେହ୍ଲେଇ ଜଗନ୍ନାଥ ନିକଟରେ ଠିଆ ହେଲେ- ତାହାର ମାଆ ପରି ଦିଶୁ ନ ଥିଲା । ବାସ୍ତବିକ୍ ସେ ମନେ ମନେ ଲଜ୍ଜିତହେଉଥିଲା । ଦୀନା ମଧ୍ୟ ପୁତ୍ରକୁ ନିଜର ପୁତ୍ର ବୋଲି ଭାବିବାକୁ ବଡ଼ ଗୌରବର ବିଷୟ ମନେକରୁଥିଲା । କାହିଁ ଜଗନ୍ନାଥ ବାବୁ-କାହିଁ ସେ ମୂଲିଆମୁଣ୍ଡ ଦୀନା । ମଳିନ ବସ୍ତ୍ର ଖଣ୍ଡେ ପିନ୍ଧି କାନ୍ଧରେ ବହୁ ବରଷର ପୁରୁଣା ମୋଟାମସିଆ ଗାମୁଛା ପକେଇ, ପୁତ୍ର ନିକଟରେ ଠିଆ ହେଲାବେଳକୁ ନିଜେ ସଙ୍କୋଚ ବୋଧକଲା ।

ଗେହ୍ଲେଇ ବହୁ ଯତ୍ନରେ ପୁତ୍ରର ତର୍ଦ୍ଦନେବାକୁ ଲାଗିଲା । ସେ ଯେତେବଡ଼ ବାବୁ ହେଉପଛେ, ଜଗନ୍ନାଥ ତାହାର ନାଥିଆ । ତାହା ପୁଅ ତା ଆଖିରେ ନିହାତି ସାନ, ବାଳୁତ ପିଲା । ସେ ଯେତେ ବସ୍ତ୍ର ପିନ୍ଧୁ ପଛେ, ଯେତେ ଶଙ୍ଖାଚୁଡ଼ି ଲଗେଇଥାଉ ପଛେ, ସେ ଜଗନ୍ନାଥର ମାତା ।

କିନ୍ତୁ ଜଗନ୍ନାଥ ତା' ପିତା ମାତାର ଅପର୍ଯ୍ୟାପ୍ତ ଆଦର ମଧ୍ୟରେ ଆଜି ବିଦେଶୀ ଓ ଅତିମାତ୍ରାରେ ନିଃସଂଗ । ଜଗନ୍ନାଥର ଘରପ୍ରତି ଆଜି ପୂର୍ବର ପ୍ରାଣଭରା ସହନୁଭୂତି ନାହିଁ । ସେ କୋମଳ ମଧୁର ସ୍ନେହମୟ ମାତୃକୋଳ ଜଗନ୍ନାଥକୁ ପୂର୍ବବତ୍ ଟାଣି ଆଜି ଆଲିଙ୍ଗନ କରିବାକୁ ଶତବାର ପ୍ରସ୍ତୁତ ଥିଲେ ସୁଦ୍ଧା, ଜଗନ୍ନାଥର ହୃଦୟ ଆଜି ଶୀତଳ । ପରିବାର ପ୍ରତି ପ୍ରେମର ସେ ଉଷ୍ଣତା ନାହିଁ । ସେ ସବୁଆଡ଼େ ବିଜାତୀୟା ଓ ଭିନ୍ନ ଓ ବେଖାପ୍ ହୋଇପଡୁଛି-ସତେ ଏ ଘର ତାଆର ଘର ନୁହେଁ । ଏ ପରିବାର, ତା'ର ପରିବାର ନୁହେଁ । ଆଜି ପ୍ରାଣଭରା ସ୍ନେହ, ଅଜସ୍ର ଆଦର, ଐକାନ୍ତିକ ଯତ୍ନ ସତ୍ତ୍ୱେ, ଜଗନ୍ନାଥ କାହାରି ମନ ଆକର୍ଷଣ କରିପାରୁ ନାହିଁ । ସେ ନିଜେ ବୁଝିପାରୁ ଅଛି ଯେ - କିପରି ଏକ ଅଜଣା ବିଚ୍ଛେଦର ପରଦା ତାହାର ପରିବାର ଏବଂ ତାହାର ମଧ୍ୟରେ ଟଣା ହୋଇଅଛି । ସେ କିଛିରେ ହିଁ ନିଜର ପିତୃଗୃହରେ, ନିଜର ସଂପୂର୍ଣ୍ଣ ଆତ୍ମା ଢାଳିଦେଇପାରୁ ନାହିଁ ।

ଜଗନ୍ନାଥର ଆସିବାର ଏକମାସ ଅତୀତ ହେଲାଣି । ଏଥିମଧ୍ୟରେ ପିତାମାତା ତାହାର ଭାବ ପରିବର୍ତ୍ତନ ଅନେକଟା ଲକ୍ଷ୍ୟ କରିଛନ୍ତ; କିନ୍ତୁ ସେମାନେ ସରଳମନା, ସେଥିପାଇଁ କିଛି ମନକୁ ନେଉ ନାହାନ୍ତି । ବୋଧହୁଏ ପାଠପଢ଼ିଲେ, ନାମ ଓ ସ୍ଥାନ ପାଇଲେ, ବୟସ ବଢ଼ିଲେ, ଲୋକର ପରିବର୍ତ୍ତନ ହୁଏ । ସେ ପୁଣି କଟକ ସହର । ସେଠାରେ ରହି ଜଗନ୍ନାଥର ପରିବର୍ତ୍ତନ ଅସମ୍ଭବ ନୁହେଁ ।

ଜଗନ୍ନାଥ ବହୁଚେଷ୍ଟାରେ ନିଜର ପରିବର୍ତ୍ତିତ ଭାବଗୁଡ଼ିକୁ ଲୁଚାଇ ଲୁଚାଇ ଚଳିବାକୁ ଚେଷ୍ଟା କରିଛନ୍ତି । ବହୁ ସାବଧାନରେ ଚଳିଲେ ସୁଦ୍ଧା, ବେଳେବେଳେ ସେ ଧରା ପଡ଼ିଯାଉଛି । ଭୋଜନରେ, ଶୟନରେ, କଥାବାର୍ତ୍ତାରେ ଜଗନ୍ନାଥର ଭିନ୍ନରୁଚି, ଭିନ୍ନ ବ୍ୟବହାର । ହିନ୍ଦୁ ରୀତିନୀତିଗୁଡ଼ିକ ଯେପରି ସେ ଭୁଲି ଗଲାଣି । ପୂର୍ବବତ୍ ଗ୍ରାମରେ କାହା ସହିତ ଆଳାପ କରିବାକୁ ତା' ମନ ବଳୁନାହିଁ । ସ୍ୱଜାତି ବ୍ୟବସାୟକୁ ସେ ଘୃଣା ଦୃଷ୍ଟିରେ ଦେଖୁଅଛି ଓ ନିଜର ଜାତି ଯେ ପାଟରା- ଏହା ବହୁ ସଂକୋଚରେ ସୁଦ୍ଧା ମୁଖରୁ ବାହାର କରିବାକୁ ସେ କଷ୍ଟକର ମଣୁଅଛି । ତାହାର ସମସ୍ତ ରୁଚି ଆଜି ସଭ୍ୟତା ଉନ୍ମୁଖୀ । ସେ ରକ୍ଷଣଶୀଳତାର ପକ୍ଷପାତୀ ନହେଁ, ସେ ପ୍ରଗତିକାମୀ ।

ଗ୍ରାମରେ ପୂର୍ବରୁ କୌଣସି ସ୍କୁଲ୍ ନଥିଲା । କେତେ ବର୍ଷପରେ ଗୋଟିଏ ଉଚ୍ଚ ପ୍ରାଥମିକ ସ୍କୁଲ ସଂସ୍ଥାପିତ ହୋଇଅଛି । ଜଗନ୍ନାଥ ଦିନେ ସେହି ସ୍କୁଲ୍ ପରିଦର୍ଶନ କରିବାକୁ ବାହାରିଲେ । ଗ୍ରାମ ସ୍କୁଲରେ ଦୁଇ ଜଣ ଶିକ୍ଷକ, ନୀଳାମ୍ବର ପଟ୍ଟନାୟକ ଓ ଲକ୍ଷ୍ମୀଧର ମହାରଣା । ନୀଳାମ୍ବର ମାଷ୍ଟର କରଣ ସନ୍ତାନ- କିଛି ଆଧୁ ଅଛି । ସେ ମାଇନରଟା ପାଶ୍ କରି ଫୋରଥ କ୍ଲାସ୍‌ର ସୀମା ଦର୍ଶନ କରିଥିଲେ । ସେଥିପାଇଁ ନୀଳାମ୍ବର ବାବୁଙ୍କର ପାଦ, ଭୂମିରେ ପଡ଼ିବାକୁ ରାଜି ହେଉନଥିଲା । ଇଂଲିସ୍‌ଜୋତା ବିନା ସେ ଖାଲିପାଦରେ ଯିବାକୁ ଘୃଣା କରୁଥିଲେ । ସେ ଲୋକମୁଖରୁ ଶୁଣିଥିଲେ, ଦୀନା ପାଟରା ପୁତ୍ର ଜଗନ୍ନାଥ ଏଫ୍.ଏ. ପାଶ୍ କରି ଗ୍ରାମକୁ ଆସିଅଛନ୍ତି । ସେହି ସମ୍ବାଦରେ ସେ ତେତେଦୂର ସନ୍ତୁଷ୍ଟ ହେବା ପରି କେହି ବିଦ୍ୱାନ ଜଣେ ଆସୁବୋଲି ସେ ଇଚ୍ଛା କରୁ ନଥିଲେ ।

ସ୍କୁଲ୍ ଘରଟି ଚାଳ ଘର । ମାଟି କାନ୍ଥ ଉପରେ ଚୂନକାମକରା ଚାରୋଟି ବଖରା । ନିମ୍ନ ପ୍ରାଥମିକ ଓ ଉଚ୍ଚପ୍ରାଥମିକ ଦୁଇ ଶ୍ରେଣୀର ବିଭକ୍ତ ଥିବାରୁ ଏପରି ବ୍ୟବସ୍ଥା । ଲକ୍ଷ୍ମୀଧର ବାବୁ ନିମ୍ନ ପ୍ରାଥମିକର ଶିକ୍ଷକ ଓ ନୀଳାମ୍ବର ବାବୁ ଉଚ୍ଚପ୍ରାଥମିକର ଶିକ୍ଷକ । ସ୍କୁଲର ଶିକ୍ଷା ବ୍ୟବସ୍ଥା ବଡ଼ ସୁଧାର ସଂପନ୍ନ ।

ଜଗନ୍ନାଥ ସ୍କୁଲର ଦ୍ୱାର ସମକ୍ଷକୁ ଆସିଲା ମାତ୍ରେ, ଉପସ୍ଥିତ ଛାତ୍ରମଣ୍ଡଳୀ ଠିଆହୋଇ ତାଙ୍କୁ ଅଭିବାଦନ କଲେ । ଶିକ୍ଷକମାନଙ୍କ ସହିତ ମଧ ଅଭିବାଦନ ଓ ପ୍ରତ୍ୟଭିବାଦନ ହୋଇଗଲା । କିଛି କ୍ଷଣ କଥାବାର୍ତ୍ତା ପରେ ଜଗନ୍ନାଥ ବିଦାୟନେଲେ । ସମବେତ ଛାତ୍ରମଣ୍ଡଳୀ ପ୍ରଶଂସମାନ ଚକ୍ଷୁରେ କୃତବିଦ୍ୟ ଜଗନ୍ନାଥଙ୍କୁ ତାଳରୁ ତଳିପାଯାଏ ଅନାଇବାକୁ ଲାଗିଲେ ।

ଜଗନ୍ନାଥ ଫେରୁଛନ୍ତି । ଏହିପରି ସମୟରେ ନୀଳାମ୍ବର ବାବୁଙ୍କର କଥା ସ୍ପଷ୍ଟ ଶୁଣିପାରିଲେ, ''ହେଲେ କଣ ହେବ ? ଏତେ ପାଠପଢ଼ି ଜାତିଛୋଟ, ପାଟରା ପୁଅତ ।'' ଉଚ୍ଚଜାତି, ଆତ୍ମଗର୍ବୀ ନୀଳାମ୍ବରର ସେହି ବିଦ୍ରୂପ, ଶ୍ଳେଷବାକ୍ୟ ଜଗନ୍ନାଥର କୋମଳ ଆଭିମାନୀ ହୃଦୟରେ ତୀକ୍ଷ୍ଣ ଶେଳବିଦ୍ଧ କଲା । ହିନ୍ଦୁ ଜାତିପ୍ରତି ତାହାଙ୍କର ଘୃଣାହେଲା ।

ସେଦିନ ସେ ଗୃହକୁ ଫେରିଆସି, କାହାକୁ କିଛି ନ କହି, ଯାଜପୁରରେ ଥିବା ଏନ୍‌ଟ୍ରାନସ୍ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦପାଇଁ ଆବେଦନ ପତ୍ର ପ୍ରେରଣକଲେ । ଯଥା ସମୟରେ ଉତ୍ତର ଆସିଲା - ମାସିକ ବେତନ ପଚାଶ ଟଙ୍କା । ସରକାରୀ ଗୃହ । କାର୍ଯ୍ୟଟି ଜଗନ୍ନାଥଙ୍କର ବେଶ୍ ଗ୍ରାହ୍ୟ ହେଲା । ସେ ପିତାମାତାଙ୍କୁ ଜଣାଇ ଯିବାକୁ ପ୍ରସ୍ତୁତହେଲେ ।

କିନ୍ତୁ ସ୍ନେହମୟୀ ଜନନୀ ଦୁଇମାସ ନୋହୁଣୁ ପୁଣି ପୁଅ ବିଦେଶ ଯିବ ଶୁଣି କାନ୍ଦିବାକୁ ଲାଗିଲେ। ଦୀନା ମଧ ଦୁଃଖିତ ଭାବରେ ବସିପଡ଼ିଲା। କଣ କହିବ। କାମଗ ଜବାବ ଆସିଗଲାଣି।

ଦିବା ଦି'ପ୍ରହର। ମାତାର ଶୟନ କକ୍ଷରେ ଜଗନ୍ନାଥର ପିଠି ଆଉଁଷି କହିଲେ - ''ପୁଅ ତୁ ଚାରିମାସ କରି ମୋ ପାଖରେ ରହିଲୁ ନାହିଁ। ମୋର ମନପୂରାଇ ତତେ ଗଣ୍ଡେ ଖୁଆଇ ପାରିଲିନ। ଭଲକରି ଦେଖିଲି ନାହିଁ। ପାଖରେ ବସାଇଲିନି। ତୁ ବିଦେଶ ବୁଲିଲୁ। ପାଠ ପଢ଼ିଲୁ। ମଣିଷ ହେଲୁ। ଚାକିରୀ ପାଇଲୁ। ତୋ'ପାଇଁ ବୋହୂଟିଏ କରି ମୁଁ ନିଶ୍ଚିନ୍ତ ହୁଏ।''

ଜଗନ୍ନାଥ ଈଷତ୍ ମୁଖ ଫେରାଇଲେ।

ପୁଣି ମାଆ କହିଲେ - ''ଆମ ଗାଁର ଭାଗବତଙ୍କ ଝିଅଟି ମନକୁ ଆସିଚି। ବୟସ ବେଶି ନୁହେଁ। ଏଇ ଆଠବର୍ଷ ମାତ୍ର ହୋଇଚି। ପିଲାଟିର ବଳିଲା ଦେହ, ଦେଖିବାକୁ ଡଉଲ ଡାଉଲ - ଠିକ୍ ତୋ ଲାଖ୍। ଆଉ ବାପର ସଂପତ୍ତି ବି ଅଛି।

ଜଗନ୍ନାଥ ନୀରବରେ ସବୁ ଶୁଣିବାକୁ ଲାଗିଲେ। କିଛି କହିଲେ ନାହିଁ।

ପୁଣି ମାତା ଆଦରକରି କହିଲେ - ''ବାପ, ତୁ ବିଦେଶ କରିବୁ। ମୁଁ କାହା ମୁହଁ ଦେଖି ବଞ୍ଚିବି ? ବୋହୂଟି କରିଥିଲେ ହେଲେ ମୋ ଦୁଃଖ ଯିବ। ମୁଁ ଏଣିକି ବୁଢ଼ୀ ହେଲି।'' - ଏହା କହି କିଛିକ୍ଷଣ ନୀରବ ରହିଲେ। ଭାବିଲେ ଜଗନ୍ନାଥ ବୋଧହୁଏ ତାଙ୍କ କଥାରେ 'ହଁ' ଭରିବ; କିନ୍ତୁ ଜଗନ୍ନାଥ ତାହା କଲେ ନାହିଁ। କିଛି କ୍ଷଣ ନୀରବରେ ରହି କହିଲେ - ''ମା, ତୁ ମୋପାଇଁ ବ୍ୟସ୍ତ ହୁଅନା। ମୋର ଏଇ କ୍ଷଣି ଆଗ ଚାକିରୀ ହେଉ। ପରେ ଆଉ ସବୁ କଥା।''

ମାଆ ନିରାଶ ହୋଇ କହିଲେ - ''ବାପ, ପଛ କଥା କ'ଣ ? ଏତ ସଂସାର ଲାଗିଛି। ତୁ ପାଠ ପଢୁ ନ ଥିଲେ, କେଉଁ କାଳୁ ମୁଁ ନାତି ନାତୁଣୀ ଧରି ଗେଲକରନ୍ତିଣି।''

ଜଗନ୍ନାଥ ଅପ୍ରତିଭ ଓ ବିରକ୍ତ ହୋଇ ସେଠାରୁ ଉଠିଗଲା। ଗେହ୍ଲେଇର ହୃଦୟ ହଠାତ୍ ଅଭିମାନରେ ଉଚ୍ଛୁଳି ଉଠିଲା। ସତେ ଆଜି ନାଥିଆ - ତା' କଥା ଶୁଣିଲାନି। ଆଖିରେ ତା'ର ଲୁହ ଜମି ଆସିଲା। ବହୁ କଷ୍ଟରେ ସେ ତା' ସମ୍ଭାଳି ନେଲା।

ତାହାର ପରଦିନ ଜଗନ୍ନାଥ ଯାଜପୁର ଯାତ୍ରାକଲେ। ଗେହ୍ଲେଇର ହୃଦୟ ବିଷାଦ କାଳିମାଛନ୍ନ ହୋଇଗଲା। ସେ ନିଜର ନିଭୃତ କକ୍ଷତଳରେ ଲୁଗା କାନି ପାରିଦେଇ ଅଭିମାନରେ ଓ ଦୁଃଖରେ କିଛି କ୍ଷଣ କାନ୍ଦିଲା। ସତେ, ସଂସାର ଏପରି !



## ପଞ୍ଚମ ପଟ

କେହି ନୁହେଁ କାର ଏ ବିଶ୍ୱ ଭୁବନେ
ମୁଁ କିମ୍ବା ମରିବି ଜଳି
ପିତା ମାତା ବନ୍ଧୁ ଆତ୍ମୀୟ ସ୍ୱଜନେ
ଦିନେ ଛାଡ଼ି ଯିବି ଚାଲି।

ବୈତରଣୀ ନଦୀ ପ୍ରାୟ ଝରକା ଫିଟାଇଲେ ଦିଶୁଥିଲା। ସନ୍ଧ୍ୟା ସମୟରେ ନଦୀ କୂଳରେ ଘାଟ ପାଖରେ କେତେଗୁଡ଼ିଏ ନୌକା। ନୌକା ଯାଉଛି, ଭାସୁଛି ଓ ପଡୁଛି। ନଦୀ ବକ୍ଷର ଜଳ ପ୍ରବାହ ଅନନ୍ତ ସାଗର ଆଡ଼କୁ ଧାଇଁ ଯାଉଛି। ଜଗନ୍ନାଥ ଝରକା ନିକଟରେ ଠିଆହୋଇ ନଦୀ ଆଡ଼କୁ ଅନାଇଁ ଥିଲେ। ଆଜିକି ତିନିବର୍ଷ ହେଲା ସେ ଯାଜପୁରରେ କାମ କରୁଛନ୍ତି। ଯଯାତିକେଶରୀଙ୍କ ପ୍ରିୟ ରାଜଧାନୀ ଯାଜପୁର। ସ୍ଥାନଟି ମନ୍ଦ ନୁହେଁ। ପାଣି, ପବନ ବେଶ୍ ମନୋମତ। କାମଟି ମଧ୍ୟ ତାଙ୍କ ମନକୁ ଆସିଛି। ମାସିକ ଟ୫୦/- ବେତନ। ତା' ବାଦ ଗୃହଶିକ୍ଷକ ଭାବରେ ମଧ୍ୟ ସେ ମାସିକ ଟ୧୦/- ଆୟ କରନ୍ତି। ନିଜପାଇଁ କୋଡ଼ିଏ ଟଙ୍କା ରଖି ବାକିତକ ସେ ଘରକୁ ପଠାଉଥିଲେ। ଆଜି ପର୍ଯ୍ୟନ୍ତ ଜଗନ୍ନାଥଙ୍କର ବିବାହ ହୋଇନାହିଁ। ଏ ତିନିବର୍ଷ ମଧ୍ୟରେ ସେ ଆଉ ଘରକୁ ଯାଇ ନାହାନ୍ତି।

ଜଗନ୍ନାଥ ଦୁଷ୍ଟ ଚରିତ୍ର ନୁହନ୍ତି। କର୍ମକୁଶଳ, ଭଦ୍ର, ବିନୟୀ ଏବଂ ଦୃଢ଼ ପ୍ରତିଜ୍ଞ। ଅତିଶୟ ବିଳାସୀ ମଧ୍ୟ ନଥିଲେ। କିନ୍ତୁ ଜଗନ୍ନାଥ ସୁଖୀ ନ ଥିଲେ। ତାହାଙ୍କର ସୁଖପାଇଁ ଜାଗତିକ କୌଣସି ବସ୍ତୁ ଅଭାବ ନଥାଇ ମଧ୍ୟ ସେ ସୁଖୀ ନଥିଲେ। ସୁଖ ମାନସିକ ବସ୍ତୁ। ଆମ୍ଭେମାନେ ସହସ୍ର ବିଳାସ ବ୍ୟସନ ମଧ୍ୟରେ ବେଷ୍ଟିତ ଥାଇ ମଧ୍ୟ ସୁଖୀ ହୋଇ ନପାରୁ। ଆମ୍ଭମାନଙ୍କର ସବୁ ଅଭାବ ପୂର୍ଣ୍ଣହେଲେ ସୁଦ୍ଧା ଏପରି ସମୟେ ସମୟେ ହୁଏ ଯେ - ଯେତେ ଚେଷ୍ଟାକଲେ ମଧ୍ୟ ମନକୁ ସୁଖୀ କରିହୁଏ ନାହିଁ।

ଜଗନ୍ନାଥଙ୍କ ନିରାନନ୍ଦର ପ୍ରଧାନ କାରଣ ଧର୍ମଚିନ୍ତା। ଜଗନ୍ନାଥ ବାଲ୍ୟକାଳରୁ ଧର୍ମଭୀରୁ ଏବଂ ବୁଦ୍ଧିମାନ। ସେ ହିନ୍ଦୁ ସମାଜରେ ବଢ଼ି ଆସିଅଛନ୍ତି। କିନ୍ତୁ ଦୁର୍ଭାଗ୍ୟ ବଶତଃ ସେ ନୀଚ ଜାତିର ସନ୍ତାନ। ବ୍ରାହ୍ମଣ କରଣର କୌଳୀନ୍ୟ ଗର୍ବ ଅଛି; କିନ୍ତୁ ଜଗନ୍ନାଥର ତାହା ନାହିଁ। ଜାତିଭେଦ ଜଗନ୍ନାଥ ମନରେ ବଡ଼ ଆଘାତଦିଏ। ପଢ଼ିବା ସମୟରେ ଜଗନ୍ନାଥ ପ୍ରାୟ ସବୁବେଳେ ସର୍ବୋଚ୍ଚ ସ୍ଥାନ ଅଧିକାର କରୁଥିଲେ। ସେଥିପାଇଁ ଉଚ୍ଚଜାତି ସହପାଠୀମାନେ ବିଦ୍ରୂପଛଳରେ ''ପାଟରାପୁଅ, ''ନାଥିଆ ପାଟରା'', ଇତ୍ୟାଦି ପରିହାସ କରିବାକୁ ଛାଡ଼ିନଥିଲେ। କିନ୍ତୁ ଜଗନ୍ନାଥ ସେ ସବୁ ଅମ୍ଳାନ ବଦନରେ ସହ୍ୟ କରୁଥିଲେ। ସେଥିପାଇଁ ହିନ୍ଦୁ ଯୁବକମାନଙ୍କ ସହିତ ତାହାଙ୍କର ବନ୍ଧୁତ୍ୱ ଅଳ୍ପ ହୋଇଥିଲା।

କିନ୍ତୁ ଜଗନ୍ନାଥ ନିତାନ୍ତ ବନ୍ଧୁହୀନ ନ ଥିଲେ। ତାହାଙ୍କର ପ୍ରାଣର ବନ୍ଧୁ ବୀରବିକ୍ରମଙ୍କର ଧର୍ମ ପ୍ରିୟତା ଓ ଉଚ୍ଚ ଉଦାରଭାବ ପୂର୍ଣ୍ଣ ହୃଦୟ ଏବଂ ଭ୍ରାତୃସ୍ନେହର ନ୍ୟାୟ, ଗଭୀର ମମତା, ଜଗନ୍ନାଥଙ୍କ ହୃଦୟରେ ଏକ ଆନନ୍ଦ ଧାମର ସୃଷ୍ଟି କରିଥିଲା। ଜଗନ୍ନାଥ ସେହି ମହତ ହୃଦୟକୁ ଦେବତୁଲ୍ୟ ପୂଜା କରୁଥିଲେ। ବୀରବାବୁ ତାଙ୍କଠାରୁ ବୟସରେ ବଡ଼। କିନ୍ତୁ ତାହାଙ୍କର ଅତିଶୟ ପ୍ରିୟ ସଂଗୀ। ବାଲ୍ୟକାଳରୁ ବୀରର ଆଶ୍ଚର୍ଯ୍ୟ ଅକୃତ୍ରିମ ବନ୍ଧୁତ୍ୱ ତାହାଙ୍କ ହୃଦୟରେ ଗଭୀର ଭାବ ଜାତକରିଥିଲା। ତାହାର ଫଳ ସ୍ୱରୂପ ଖ୍ରୀଷ୍ଟଧର୍ମ ପ୍ରତି ଗଭୀର ସହାନୁଭୂତି ବାଲ୍ୟକାଳରୁ ତାଙ୍କ ହୃଦୟରେ ଦୃଢ଼ବଦ୍ଧ ହୋଇଥିଲା।

ଜଗନ୍ନାଥ ଝରକା ନିକଟରେ ଠିଆ ହୋଇ ନାନା କଥା ଭାବୁଛନ୍ତି। ବିଗତ ଛ ବର୍ଷ ମଧ୍ୟରେ ତାହାଙ୍କ ଜୀବନରେ ଅନେକ ପରିବର୍ତ୍ତନ ହୋଇଯାଇଅଛି। ଦୁଇବର୍ଷର କଲିକତା ଜୀବନ ବଡ଼ ସୁଖକର ଥିଲା। ଜଗନ୍ନାଥର ଆଉ ଥରେ କଲିକତା ଯିବାକୁ ଇଚ୍ଛାଥିଲା। ସେ ନଦୀବନ୍ଧକୁ ଅନାଇଁ

ଦେଖିଲେ, ସ୍ୱଚ୍ଛସଲିଳା ବୈତରଣୀ ବୋହିଯାଉଛି । ନୌକାଗୁଡ଼ିକ ଧୀରେ ଧୀରେ ଜଳକୁ ଦି'ଭାଗ କରି ଆଗକୁ ଯାଉଛନ୍ତି । ଜଳ ଆନ୍ଦୋଳିତ ହେଉଛି - ଶୁଭ୍ର ପାଲଗୁଡ଼ିକ ଉଡୁଛନ୍ତି । ଦୂରବର୍ତ୍ତୀ ନୌକା ଗୁଡ଼ିକ ଆକାଶର ଦିଗ୍‌ବଳୟରେ ମିଶିଗଲାପରି ଦିଶୁଛନ୍ତି । ଆକାଶର ପକ୍ଷୀଗୁଡ଼ିକ ଉଡ଼ି ଉଡ଼ି ପବନରେ ଭାସୁଅଛନ୍ତି । ଜଗନ୍ନାଥ ପକ୍ଷୀମାନଙ୍କୁ ଅନାଇଁ ଭାବିଲେ - ''ଆହା, ଏମାନଙ୍କ ପରି ସ୍ୱାଧୀନ ହୋଇଥାନ୍ତି ହେଲେ ।''

ସଂଧ୍ୟା ଗାଢ଼ରୁ ଗାଢ଼ତର ହୋଇଆସିଲା । ଧୀବରମାନେ କୂଳରେ ଜାଲ ସଜାଡ଼ିବାକୁ ଲାଗିଲେ । ଜଗନ୍ନାଥ ସେ ସବୁ ଦେଖୁ ଦେଖୁ ତିନିବର୍ଷ ତଳର କଥା ତାଙ୍କର ମନେପଡ଼ିଲା । ଏହିପରି ନୌକାରେ ବସି ସେ ଘରକୁ ଫେରୁଥିଲେ । କାହିଁ ଆଜି ସେ ସ୍ନେହର କୁଟୀର ? ସ୍ନେହମୟୀ ଜନନୀ ! କରୁଣାମୟୀ ଦେବୀ ମୂର୍ତ୍ତୀ । ଜଗନ୍ନାଥ ମାଆଙ୍କର ସ୍ନେହ ମର୍ମେ ମର୍ମେ ଅନୁଭବ କରିବାକୁ ଲାଗିଲେ । ସେହି ପ୍ରିୟତମା ମାତୃମୂର୍ତ୍ତି ତାହାଙ୍କୁ ବାଧା ଦେଇ ଆଜିକୁ ପାଞ୍ଚବର୍ଷ କାଳ ଧର୍ମତ୍ୟାଗ କରାଇ ପାରିନାହିଁ ।

ସେହି କରୁଣ କୋମଳ ମୁଖଟି ମନେପଡ଼ିଲା ମାତ୍ରେ ଯୁବକ ଜଗନ୍ନାଥଙ୍କ ଚକ୍ଷୁରୁ ଶିଶୁପରି ଲୁହ ଝରିବାକୁ ଲାଗିଲା । ସତେ ସେ ଏଡ଼େ ନିଷ୍ଠୁର । ଆଜି ସେ ଧର୍ମତ୍ୟାଗକଲେ ତାଙ୍କ ମାଆଙ୍କର କି ଦୁର୍ଦ୍ଦଶା ନ ହେବ ? ହୁଏତ ସେ ମରିଯିବ । ଭାବୁ ଭାବୁ ଅସ୍ଥିର ହୃଦୟରେ ଜଗନ୍ନାଥ କହି ଉଠିଲେ - ''ମା, ମା, ମୁଁ ତୋ'ର କୁସନ୍ତାନ । ତତେ ଦିନେ ହେଲେ ସୁଖୀ କରିପାରିଲି ନାହିଁ ।'' ଜଗନ୍ନାଥଙ୍କ ହୃଦୟ ବ୍ୟଥିତ ହୋଇଉଠିଲା । ସେ ଝରକା ପାଖରୁ ଘୁଞ୍ଚିଆସି ଚୌକିରେ ବସିପଡ଼ିଲେ । ଜଗନ୍ନାଥ ଶେଷ ବିଦାୟ ସମୟରେ ମାଆଙ୍କର ସେହି ବିଷାଦ ବିଧୁର କରୁଣ ମୁଖ ମନେକରିବାକୁ ଲାଗିଲେ । ବୀରବାବୁଙ୍କ ମାତୃଭକ୍ତି ମନେପଡ଼ିଲା । ସତେ, ବୀରବାବୁ ପିତାମାତାଙ୍କର ସୁସନ୍ତାନ, ସେ କାହିଁକି ନ ହେବେ । ଆଜି ଏତେ ପାଠ ପଢ଼ି ସୁଦ୍ଧା ସେ ପିତାମାତାଙ୍କୁ ପ୍ରାଣଭରି ଭଲପା'ନ୍ତି ନାହିଁ । ଜଗନ୍ନାଥ ତାଙ୍କ ହୃଦୟ ମଧ୍ୟରେ ମାଆଙ୍କର କରୁଣ ଓ ନିଷ୍କପଟ ମୂର୍ତ୍ତି ଅନୁଭବ କରିବାକୁ ଲାଗିଲେ । ସେ ଆଜି ପର୍ଯ୍ୟନ୍ତ ସାଂସାରିକ ବନ୍ଧନରେ ଲିପ୍ତହୋଇ ନଥିଲେ । ସେ ମାଆଙ୍କୁ ସବୁଠାରୁ ଅଧିକ ଭଲ ପାଉଥିଲେ । କିନ୍ତୁ କଣ ହେବ ? ମାଆଠାରୁ ଆହୁରି ଅଧିକ ପ୍ରେମମୟୀ, ହୃଦୟର ଚିର ଆକାଂକ୍ଷିତ ସ୍ୱପ୍ନ, ପ୍ରାଣର ପ୍ରତିମୁହୂର୍ତ୍ତରେ ଅନୁସ୍ପନ୍ଦନ- ଆଉ ଜଣେ ଜଗନ୍ନାଥଙ୍କ ହୃଦୟ ତନ୍ତ୍ରୀରେ ଆଘାତ କରିବାକୁ ଲାଗିଲେ । ଜଗନ୍ନାଥ ସେ ଅଦୃଶ୍ୟ ସତ୍ୟମୟଙ୍କୁ ବୁଝିପାରିଲେ । ତାହାଙ୍କର ସ୍ୱର ଜଗନ୍ନାଥଙ୍କର କର୍ଣ୍ଣକୁହରରେ ବାରମ୍ବାର ପ୍ରତିଧ୍ୱନିତ ହେବାକୁ ଲାଗିଲା । ସେଥିପାଇଁ ଅକଥନୀୟ ଦୁଃଖରେ ଜଗନ୍ନାଥ ସଂସାର ଅରଣ୍ୟରେ ଭ୍ରମଣ କରିବାକୁ ଲାଗିଲେ ।

ଧନ୍ୟ ଭାରତ ଭୂମି ! ଭାରତୀୟର ରକ୍ତରେ ରକ୍ତରେ ଧର୍ମ ଶୋଣିତ ପ୍ରବାହିତ । ହିନ୍ଦୁର ପ୍ରତି କାର୍ଯ୍ୟରେ ଧର୍ମର ମୋହର । ଭାରତ ସନ୍ତାନର ଖାଦ୍ୟପେୟ ପରି, ଧର୍ମ ମଧ ଦୈନନ୍ଦିନ ଜୀବନର ଏକ ମୁଖ୍ୟ ଅଂଶ ବିଶେଷ । ଆଜି ଧର୍ମ ଧର୍ମ ଉଚ୍ଚାରଣ କରି କୋଟି କୋଟି ଭାରତ ସନ୍ତାନ ଭ୍ରମଣ କରୁଅଛନ୍ତି । ଜଗନ୍ନାଥ ସେହି ଭାରତର ରକ୍ତରେ ଜନ୍ମ । ଧର୍ମ ତାହାଙ୍କ ହୃଦୟରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିବସିଛି । ସେ ସେଥିପାଇଁ ଆଜି ଦୁଃଖରେ, କ୍ଷୋଭରେ ଯନ୍ତ୍ରଣାରେ କାତର । ତାଙ୍କର

କଣ କେହି ନାହିଁ। ପ୍ରେମମୟ ଜନକଜନନୀ, ସ୍ନେହମୟ ଭ୍ରାତାଭଗ୍ନୀ, ବିଦ୍ୟା, ଉଚ୍ଚ ପଦ, ସୁଖ୍ୟାତି ସୁନାମ ସବୁ ଅଛି। କିନ୍ତୁ ତାଙ୍କର ସତ୍ୟ ପିପାସୁ ହୃଦୟର ତହିଁରେ ତୃପ୍ତି ନଥିଲା। ସେ ଦେଖିଲେ, ମନୁଷ୍ୟ ସଂସାରରେ ସବୁ ପାଇଲେ ସୁଦ୍ଧା ଈଶ୍ୱରଙ୍କୁ ନ ପାଇଲେ ସେ ଯେପରି କିଛି ପାଇନାହିଁ।

ସଂଧ୍ୟା ସମୟରେ ବେହେରା ହାରକିନି[୧] ଜାଳି ଦେଇ ମେଜ ଉପରେ ରଖିଗଲା। ଜଗନ୍ନାଥ ମେଜ ଉପରକୁ ଆସି ଖଣ୍ଡେ ପତ୍ର ଲେଖିବାକୁ ବସିଲେ। ଦୁଇଦିନ ହେଲା ବୀରବାବୁଙ୍କୁ କୌଣସି ପତ୍ର ଦେଇ ନାହାନ୍ତି। ଆଜି ପଞ୍ଚ ବର୍ଷ ମଧ୍ୟରେ ବୀରବାବୁ ଦୁଇଟି କନ୍ୟାର ଜନକ ହୋଇଛନ୍ତି ବୋଲି ସେ ଶୁଣିବାକୁ ପାଇଛନ୍ତି। ବୀରବାବୁ ବାସ୍ତବିକ ସୁନ୍ଦର ଓ ଭାଗ୍ୟବାନ୍। ଜଗନ୍ନାଥ ବୀରବାବୁଙ୍କ ବିଷୟ ଚିନ୍ତା କରିବାକୁ ଲାଗିଲେ। ସେ କାହିଁକି ଖ୍ରୀଷ୍ଟିୟାନ୍ ଘରେ ଜନ୍ମ ନ ହେଲେ। ସେ ବୀରବାବୁଙ୍କ ପରି ଶୁଭଗ ଜୀବନଯାପନ କରିପାରିଥାନ୍ତେ। ସେ କ୍ଷୋଭରେ ଚିରପ୍ରିୟ ପ୍ରାଣବନ୍ଧୁ ପାଖକୁ ପତ୍ରାରମ୍ଭ କଲେ। କିନ୍ତୁ ହୃଦୟର ଭାବ ଲିପିବଦ୍ଧ କରିପାରିଲେ ନାହିଁ। ଏଣୁ ତେଣୁ ପତ୍ର ଲେଖି ଶେଷକଲେ।

ଖାଇସାରିବା ପରେ ନିଦ ଆସିଲାନି। କଣ କରିବେ ! ଏହିପରି କେତେଦିନ କଟିବ ? ସେ ଭାବିଲେ ଖ୍ରୀଷ୍ଟଧର୍ମକୁ ସତ୍ୟ ଭାବି ସୁଦ୍ଧା, ଗ୍ରହଣକଲେ ଲୋକେ ନିନ୍ଦାକରିବେ। ନାନା କୁକଥା କହିବେ। କହନ୍ତୁ - ଚିନ୍ତା ନାହିଁ। ହେଲେ ପିତାମାତା - ସେମାନେ କଣ କହିବେ ? ତାଙ୍କ ଅର୍ଥରେ ମଣିଷ ହୋଇ ଜାଣିଶୁଣି କିପରି ତାଙ୍କ ହୃଦୟରେ ଆଘାତଦେବେ ? ଏତେ ଅକୃତଜ୍ଞ କିପରି ହେବେ ?

ଜଗନ୍ନାଥ ଅନେକ ଭାବିବାକୁ ଲାଗିଲେ। ବାପାଙ୍କୁ ମନେପକେଇ କାନ୍ଦିବାକୁ ଲାଗିଲେ। ଅଶ୍ରୁକଣାରେ ତାଙ୍କ ଉପାଧାନ[୨] ସିକ୍ତହେଲା। ରାତି ବାରଟା ହେଲା। ତାଥାପି ତାଙ୍କର ନିଦ୍ରା ନାହିଁ। ବହୁକ୍ଷଣ ଭାବନା ପରେ ସେ କର୍ତ୍ତବ୍ୟ ଅବଧାରଣ କଲେ। ପରଦିନ, ଦଶଦିନ ଛୁଟିନେଇ ସେ ଗ୍ରାମକୁ ଯାତ୍ରାକଲେ।

ଗେହ୍ଲେଇ ଭୋଜନାନ୍ତର ଗୃହତଳେ ବସ୍ତାଞ୍ଚଳ ବିଛାଇ ଦେଢ଼ବର୍ଷର ପୁଅ ସହିତ ବିଶ୍ରାମ କରୁଅଛନ୍ତି। ଆଜିକାଲି ଗେହ୍ଲେଇର ଚେହେରା ଅନେକ ବଦଳିଯାଇଚି। ସେ ସବୁବେଳେ ଜଗନ୍ନାଥ ବିଷୟ ଭାବୁଚି। ଜଗନ୍ନାଥ ଗୁଣବାନ୍। ମାସିକ ଚାଳିଶ ଟଙ୍କା ପଠାଏ। ଏଡ଼େ ସୁଶୀଳ ଜଗନ୍ନାଥ ଆଜିକୁ ତିନିବର୍ଷ ହେଲା ଘରକୁ ଆସିଲା ନାହିଁ। ବିବାହ କଲା ନାହିଁ। କାହିଁକି ସେ ପିତାମାତାଙ୍କ କଥା ଅଗ୍ରାହ୍ୟକଲା ! କାହିଁକି ସେ ବିଦେଶରେ କାଳକାଟୁଚି ? ସେ ତ ଏଇ ଗାଁଆକୁ ଏତେ ଭଲପାଏ। କିନ୍ତୁ ମାଆର ଇଚ୍ଛାରେ ଚାଲିବାକୁ ସେ ପ୍ରସ୍ତୁତ ନୁହେଁ କାହିଁକି ?

ଗେହ୍ଲେଇ ନାନା କଥା ଭାବୁ, ଭାବୁ ଭାବନାର ପୁଅ ନିଧିଆକୁ କୋଡ଼କୁ ଆଉଜେଇ ଆଣି ଶୋଇ ଦେବାକୁ ଚେଷ୍ଟାକଲା। ସେଇ ସୁନ୍ଦର ଶିଶୁର ସ୍ୱର୍ଗୀୟ ଅମୃତମୟ ଛବି ଦେଖିବାକୁ ଲାଗିଲା। ସତରେ ପିଲାକାଳେ ନାଥିଆ ଏହାଠାରୁ ବଳି ଆହୁରି ସୁନ୍ଦର ହୋଇଥିଲା। ଏହିପରି ନାନାକଥା ଭାବୁ ଭାବୁ ଗେହ୍ଲେଇ ନିଦରେ ଶୋଇପଡ଼ିଲା। ନିଦ୍ରିତ ଅବସ୍ଥାରେ ସ୍ୱପ୍ନ ଦେଖିଲା, ତାହାର ଜଗନ୍ନାଥ ଜୀର୍ଣ୍ଣ ମଳିନ ବେଶରେ, ବହୁ ଦୁଃଖରେ କାତରହୋଇ ତାହାର ପାଦତଳେ ଆସି ଗଡ଼ିପଡୁଛି। ଗେହ୍ଲେଇର

(୧) ଲଣ୍ଠନ, (୨) ତକିଆ

ମାତୃସ୍ନେହ ଉଚ୍ଛୁଳିଉଠିଲା । ସେ ସାନପିଲା ପରି ତାହାକୁ କୋଳକୁ ଟାଣିନେବାକୁ ଚେଷ୍ଟାକଲା । ଆନନ୍ଦ ଆବେଗରେ ତାହାର ନିଦ ଭାଙ୍ଗିଗଲା । ସେ ହଠାତ୍ ଚମକି ଉଠି ଦେଖିଲା, ସତକୁ ସତ ତାହାର ପୁତ୍ର ଜଗନ୍ନାଥ ତାହାର ନିକଟରେ ଉପସ୍ଥିତ । ଗେହ୍ଲେଇ ନିଜର ଦେଖିଲା ଆଖିକୁ ବିଶ୍ୱାସ କରିପାରିଲା ନାହିଁ ।

ମାଆର ବିସ୍ମୟ ଭଗ୍ନକରି ଜଗନ୍ନାଥ ପ୍ରଥମେ କଥା କହିଲେ । ''ମା, ମା'' କହି କାନ୍ଦି ଉଠିଲେ । ଗେହ୍ଲେଇ ଆନନ୍ଦ ଆବେଗରେ ପୁଅକୁ କୁଣ୍ଢାଇ ପକାଇଲା । ଜଗନ୍ନାଥ ସାନ ଛୁଆଟିପରି କାନ୍ଦିବାକୁ ଲାଗିଲେ । ବହୁକ୍ଷଣ ପରେ ସାନ୍ତ୍ୱନା ଲାଭକରି ଜଗନ୍ନାଥ ମାତାର ଗୋଡ଼ଧରି କହିଲେ - ''ମା, ମୁଁ ବିଶେଷ କାରଣରୁ ଦଶଦିନ ଛୁଟିନେଇ ଆସିଛି । ତୁ ମୋର ସବୁଠାରୁ ବଳି ବଡ଼ ଇଷ୍ଟ । ଜଗତରେ ମୁଁ ଯଦି କିଛି ଭଲପାଏ - ସେ ତୋତେ, ତୁ ମୋର ସବୁଠାରୁ ପ୍ରିୟ କିନ୍ତୁ-''

ମାତାର ହୃଦୟ ସ୍ନେହାତିଶଯ୍ୟରେ ଚମକିଉଠିଲା । ପୁଣି ଜଗନ୍ନାଥ କହିଲେ ''କିନ୍ତୁ ବାପ ମା'ଠାରୁ ମଧ ମଣିଷର ଖୋଜିବାର ବିଷୟ ଆହୁରି ଅଛି । ମଣିଷ ସବୁ ପାଇ ମଧ ସୁଖପାଏ ନାହିଁ ।

ଗେହ୍ଲେଇ ପୁଅର କଥାରୁ କିଛି ବୁଝି ପାରିଲା ନାହିଁ । ସେ ବ୍ୟସ୍ତ ହୋଇ କହିଲା - ''ବାପ, ମୁଁ ବଞ୍ଚିଥିଲା ଯାଏ ତୁ କାନ୍ଦ ନା । ତୋର କଣ ଅଭାବ ହୋଇଛି ମତେ କହ । ମୁଁ ମୋର ପାରୁପର୍ଯ୍ୟନ୍ତ ଚେଷ୍ଟାକରି ତୋ ଅଭାବ ଦୂରକରିବି ।''

ଜଗନ୍ନାଥ ବିରସ ବଦନରେ କହିଲେ - ''ମା, ତୁ ତା ପାରିବୁ ନାହିଁ । କିନ୍ତୁ ତୋ ଠାରୁ ଅନୁମତି ନେବାକୁ ମୁଁ ଆସିଛି । ତୁ ମୋତେ କହ, ମୁଁ କ'ଣ କରିବି ?''

ଗେହ୍ଲେଇ ପୁଅର ଘର୍ମାକ୍ତ ମୁଖକୁ ବସ୍ତ୍ରାଞ୍ଚଳରେ ପୋଛି କହିଲା - ''ଏଇକ୍ଷଣି ତୁ ଗୋଡ଼ ଧୁଅ । ପରେ ସବୁ କହିବୁ ।''

ଜଗନ୍ନାଥ ତାହାହିଁ କଲେ ।

ଜଗନ୍ନାଥର ଆସିବାର ପ୍ରାୟ ଆଠଦିନ ହେଲାଣି । ସଂଧ୍ୟାବେଳେ ଦୀନା ଓ ସେ ବାହାର ପିଣ୍ଡାରେ ବସିଛନ୍ତି । ଦୁଃଖସୁଖ କଥା ହେଉଛନ୍ତି । ପିତୃପ୍ରାଣ ଜଗନ୍ନାଥ ପିତାର କଥାରେ ସ୍ୱଳ୍ପ ଉତ୍ତର ଦେଉଛନ୍ତି । କଥା ପଡୁ ପଡୁ ସେ କହିଲେ - ''ବାବା, ମଣିଷ ଯାହା ସତ ବୁଝିବ, ଯାହା ନ୍ୟାୟ ବୁଝିବ, ଯାହା ଠିକ୍ ବୋଲି ଅନୁଭବ କରିବ, ସେ ତା' କାହିଁକି ନ କରିବ ? ତୁମେ କଣ ବୁଝ, ସତଟା ଜାଣିବା ଉଚିତ କି ନା ?''

ସରଳମନା ଦୀନା କହିଲା - ''ବାପା, ତୁ ମୋଠାରୁ ଜ୍ଞାନବନ୍ତ । ମୁଁ ତୋତେ କି ଜ୍ଞାନ ଶିଖାଇବି ? ଯାହା ସତ ବୁଝିବ - ତା କରିବ । ସେଥିରେ ଦୋଷ କଣ ?''

''ତେବେ ବାପା, ମୁଁ ଆଜି ତୁମର ଅନୁମତି ମାଗୁଛି । ଯାହା ସତ ବୁଝିବି, ତା' ମୁଁ ଗ୍ରହଣ କରିବି । ସେତେବେଳେ ତୁମେମାନେ ଦୁଃଖକରିବ ନାହିଁ ।

ଦୀନା ଏପର୍ଯ୍ୟନ୍ତ କଥାର ପ୍ରକୃତ ଅର୍ଥ ବୁଝିନଥିଲା । ହଠାତ୍ ତା' ମନରେ ଉଦୟ ହେଲା, ଜଗନ୍ନାଥ ବୋଧହୁଏ ଖ୍ରୀଷ୍ଟାନ ହେବାକୁ ଚାହେଁ । ସେ କ୍ଷୁଣ୍ଣଭାବରେ କହିଲା - ''ବାପ, ତୁ କଣ

ଜାତି ହରାଇବାକୁ ଇଚ୍ଛାକରୁ ? ଦେଖ୍, ସେପରି କାମ କଲେ ଚାରିଆଡ଼େ ନିନ୍ଦା କଳଙ୍କରେ ଆମ୍ଭେମାନେ ମୁହଁ ଟେକିପାରିବୁ ନାହିଁ।''

''ବାବା, ତୁମେ ଏହିକ୍ଷଣି କହିଲ - ସତ ବୁଝିଲେ ଗ୍ରହଣ କରି ପାରିବୁ। ତେବେ ଜାତି ହରେଇଲେ ଦୋଷ କ'ଣ ?''

ଦୀନା ଆକୁଳ ଭାବେ କହିଲା - ''ସେ ମହାପାପ, ସାତ ପୁରୁଷକୁ ଖୁଣ୍ଟା। ଦେଖ୍ ନାଥ, ତୁ ଜାତି ହରାଇବାକୁ ବସ ନାହିଁ। ଜଗତରେ ମୋର ମୁହଁ ଟେକିବାକୁ ସ୍ଥାନ ରହିବ ନାହିଁ। ଲୋକେ କହିବେ, ପୁଅକୁ ଇଂରାଜୀ ପଢ଼ାଇଲାରୁ ବାପ ମାକୁ ମାନିଲା ନାହିଁ। ଜାତି ହରାଇ ହାଡ଼ି କୂଳରେ ପଶିଲା।''

ଜଗନ୍ନାଥ ଅପ୍ରତିଭ ଭାବରେ କହିଲେ - ''ବାବା, ଏତେ ଦୁଃଖ କରନାହିଁ। ମୁଁ ବଞ୍ଚିଥିବା ଯାଏ, ତୁମ ଅନୁମତି ନ ନେଇ କିଛି କାମ କରିବି ନାହିଁ। ଏ ମୋର ଦୃଢ଼ ପ୍ରତିଜ୍ଞା। କିନ୍ତୁ ମୋର ଦୁର୍ଦ୍ଦଶା ହେବ। ଏଥର ଗଲେ ମୁଁ ଆଉ ଗ୍ରାମକୁ ଫେରି ଆସିପାରିବି ନାହିଁ। ଏଇ ମୋର ଶେଷ ବିଦାୟ। ବାପା, ତୁମେ ମୋତେ କାହିଁକି ପାଠ ପଢ଼ାଇଲ ? ଆଜି ପାଠ ପଢ଼ିଲାରୁ ସିନା ମୋର ଏତେ ଆଡ଼କୁ ମନଗଲା ! ମୁଁ ମୂଲିଆ ମଜୁରିଆ ହୋଇଥାନ୍ତି। ସେଥିରେ ମୋର ସୁଖ। ପାଠପଢ଼ି ଏତେ ଅନର୍ଥ; କିନ୍ତୁ ଏକ ପକ୍ଷରେ ଭଲ କରିଛ। ପାଠପଢ଼ିବାରୁ ସିନା ଯାହା ସତ୍ୟ, ମୁଁ ତା ବୁଝିପାରିଲି। ସତ୍ୟ ବୁଝିବା ପାଇଁ ମଣିଷର ଜନ୍ମ।''

''କିନ୍ତୁ ନିଜ ଧର୍ମ ହରାଇବା କ'ଣ ସତ୍ୟ ? ସେତ ମହାପାପ !''

''ବାପା, ମୁଁ ସେ ବିଷୟ ଖୁବ୍ ଭାବିଛି। ଧର୍ମ ବୋଲି ଆମ୍ଭେମାନେ କାହାକୁ କହୁଛୁ ? ନାନା ମୁନିଙ୍କର ନାନା ମତ। ହିନ୍ଦୁଧର୍ମ ତ ଗୋଟିଏ ସ୍ୱତନ୍ତ୍ର ଧର୍ମ ନୁହେଁ। ଏଥିରେ ଅନେକ ଧର୍ମମତ ଏକାଠି ମିଶି ରହିଛି। ସେଥିରେ ମୁଁ ଦେଖୁଛି, ମୂର୍ତ୍ତିପୂଜା ଛଡ଼ା ଆଉ ଯେପରି କୌଣସି ବିଷୟ ନାହିଁ। ସବୁ ମତ ଭିନ୍ନ ଭିନ୍ନ। କିନ୍ତୁ ସର୍ବସାଧାରଣ ହେଉଛି ମୂର୍ତ୍ତିପୂଜା, ଆଉ ଜାତିଭେଦ। ମୁଁ ଏ ଦୁଇଟାର ପକ୍ଷପାତୀ ନୁହେଁ।''

ଦୀନା ଆଉ ଶୁଣିପାରିଲା ନାହିଁ। ସେ କହିଲା, ''ହିନ୍ଦୁ ଧର୍ମ କୂଳରେ ଆମେ ଜନ୍ମହୋଇ ହିନ୍ଦୁର ମର୍ଯ୍ୟାଦା ରଖିବା ଭଲା।''

''ବାପା, ଠିକ୍ କହିଛ। ଆମେ ହିନ୍ଦୁ, ହିନ୍ଦୁ ଜାତିଠାରୁ ଶ୍ରେଷ୍ଠ ଜାତି ଆଉ ଜଗତରେ ନାହିଁ। ମୁଁ ହିନ୍ଦୁକୂଳରେ ଜନ୍ମ ହୋଇଥିବାରୁ ସିନା ସତ୍ୟ ଖୋଜି ବୁଲୁଛି। ଆଜି ହିନ୍ଦୁ ହୋଇ ନଥିଲେ 'ଧର୍ମ ଧର୍ମ' କହୁ ନଥାନ୍ତି। ହିନ୍ଦୁ କୂଳର ମର୍ଯ୍ୟାଦା ରଖିବା ଆମର କର୍ତ୍ତବ୍ୟ। ଆମରି ଦେଶରେ ଧର୍ମ ଆଉ ଜ୍ଞାନର ଜନ୍ମ।''

''କିନ୍ତୁ ହିନ୍ଦୁ ହୋଇ ଧର୍ମ ହରାଇବା ଭଲ ନୁହେଁ।''

ଜଗନ୍ନାଥ କାତର କଣ୍ଠରେ କହିଲେ - ''ବାପା, ମୁଁ ତୁମଠାରୁ ଜନ୍ମ। ତୁମକୁ ଶିକ୍ଷାଦେବା ମୋର କର୍ତ୍ତବ୍ୟ ନୁହେଁ। କିନ୍ତୁ ମୁଁ ଏତିକି ବୁଝୁଛି, ହିନ୍ଦୁ ଭାବରେ ଜନ୍ମ ହୋଇଥିବାରୁ, ମୋର ଧର୍ମ

ଖୋଜିବାକୁ ବଡ଼ ଇଚ୍ଛା ହୋଇଛି, ଆମ ଜାତିର ରକ୍ତମାଂସରେ ଧର୍ମ ମିଶିରହିଛି । ଅନ୍ୟ କୌଣସି ଦେଶରେ ଧର୍ମପିପାସା ଏଡ଼େ ପ୍ରବଳ ନୁହେଁ । ଯାହା ସତ ବୁଝିବି, ନିଶ୍ଚୟ ସେଇଟା ଗ୍ରହଣକରିବି । ଆମ୍ଭେମାନେ ସଂକୀର୍ଣ୍ଣ, ଛୋଟ ଜାତି ନୋହୁ । ଜଣେ ବ୍ରାହ୍ମଣ, ଜଣେ କଣ୍ଡରା ହୋଇ ଜନ୍ମହୋଇ ନାହୁଁ, ଆମ୍ଭମାନଙ୍କର ସମସ୍ତଙ୍କର ଏକ ଅଧିକାର, ଏକ ଦାବୀ । ଆମ୍ଭେମାନେ ଏପରି ମୂର୍ଖ ଯେ, ଭାଗ ଭାଗ ହୋଇ ବଳହୀନ ହୋଇପଡ଼ିଛୁ । ମୁଁ ଏପରି ଧର୍ମ ଚାହେଁ – ଯେଉଁଥିରେ ମୂର୍ତ୍ତିପୂଜା ନଥିବ । ସଂସାରଯାକ ଭାଇଭଉଣୀ ହୋଇ ଚଳିବେ ।''

ଦୀନା ଏସବୁ କଥା ଶୁଣିବାକୁ ପ୍ରସ୍ତୁତ ନଥିଲା । ସେ ବିରକ୍ତିସୂଚକ ସ୍ୱରରେ କହିଲା - ''ତୁ ପାଠ ପଢ଼ି ନାନା କଥା ଶିଖିଲୁ । ତୋ ଇଚ୍ଛା ଯାହା, କର । କିନ୍ତୁ ମୁଁ ଶୁଣିବାକୁ ନ ପାଏ ଯେ, ତୁ ଜାତି ହରୋଇଛୁ । ତା' କଲେ ତୋ' ମୁହଁ ଆଉ ଏ ଦେଶରେ ଦେଖାଇବୁ ନାହିଁ ।''

ଜଗନ୍ନାଥ ଅଧିକତର କାତର ହୋଇପଡ଼ିଲେ । ସେ କିଛିକ୍ଷଣ ନୀରବ ରହି କହିଲେ - ''ହେଉ ବାପା, ତାହାହିଁ ହେବ । ମୁଁ ଆଉ ଏ ଦେଶର ମୁହଁ ଦେଖିବି ନାହିଁ ।

ଦୀନାର ବିରକ୍ତି ଆହୁରି ବଢ଼ିଗଲା । ସେ ରାଗରେ, କ୍ଷୋଭରେ ପ୍ରଜ୍ୱଳିତହୋଇ କହିଲା - ''ଅକୃତଜ୍ଞ, ଏତେ କଷ୍ଟକରି ପାଠ ପଢ଼ାଇଥିଲି, ମୋ ମୁହଁରେ ଗୋଇଠା ଦେବୁ ବୋଲି । ମୁଁ ବେକୁବ୍[୧] ମୂର୍ଖ ଥିବାରୁ ଲୋକଙ୍କ କଥା ନ ମାନି ତୋତେ ପାଠ ପଢ଼ାଇଥିଲି । ଠିକ୍ ଦଶା[୨] ଦେଲୁ । ତୋ ଇଚ୍ଛା, ତୁ ଯାହା କରୁଛୁ କର । କିନ୍ତୁ ମୋତେ ତାହାର ଭାଗୀ କରିବୁ ନାହିଁ ।''

ଦୀନା ନୀରବ ହେଲା । ଜଗନ୍ନାଥ ଘର ଭିତରକୁ ଉଠିଗଲେ । ତା' ଆରଦିନ ଜଗନ୍ନାଥ ବିଦାୟ ହେଲେ । ପିତାଙ୍କୁ ପ୍ରଣାମ କରି ପଦଧୂଳି ନେଲେ । ମାତାଙ୍କୁ ପ୍ରଣାମ କରିବା ବେଳେ ମାଆ ସମ୍ଭାଳି ନ ପାରି ଆକୁଳ ହୋଇ କାନ୍ଦିଉଠିଲେ । ଜଗନ୍ନାଥ ଦୃଢ଼ ହୃଦୟରେ, ନୀରବରେ ପ୍ରଣାମକଲେ । ମାଆ ତାଙ୍କର ହାତ ଧରିପକାଇଲେ । କ୍ଷୋଭରେ, ଦୁଃଖରେ କହିଲେ ''ନାଥ, ତୁ ମୋତେ ଛାଡ଼ିଗଲୁ । ମାଆ ମୁହଁକୁ ଟିକିଏ ଅନାଇଲୁ ନାହିଁ ! ମୁଁ ପରା ତୋତେ ଏଡ଼େଟିକୁ ଏଡ଼େ କଲି । ମୋର ଦଶମାସ ଗର୍ଭ ବେଦନା ତୁ କାହୁଁ ବୁଝିବୁ !''

ଜଗନ୍ନାଥ ନୀରବ, କିଛି କହିଲେ ନାହିଁ । ଅଶ୍ରୁପୂର୍ଣ୍ଣ ନୟନରେ ଭାଇ ଭୋବନା ଅନାଇଁଥାଏ । ପିତାମାତାର ଦୁଃଖ ଦେଖି ତାକୁ ବଡ଼ କଷ୍ଟହେଲା । ସେ ଭାଇକୁ ଅନେକ ଅନୁନୟ ବିନୟ କଲା । କାହିଁରେ କିଛି ହେଲା ନାହିଁ । ଜଗନ୍ନାଥ ଉଠି ଚାଲିଗଲେ । ଗୃହରୁ ଓ ପରିବାରରୁ ଶେଷ ବିଦାୟ ନେଇ ବାହାରକୁ ଗୋଡ଼କାଢ଼ିଲେ ।

ଦୀନା କପାଳରେ ହାତ ଦେଇ ଭାବିବାକୁ ଲାଗିଲା । ସେଦିନେଇ ଆଉ ବିଛଣାରୁ ଉଠିଲା ନାହିଁ । କେବଳ ହାୟ ହାୟ ଶବ୍ଦ ଦୀନାର ପରିବାରରୁ ଶୁଣାଗଲା । ପୁତ୍ରକୁ ପାଠ ପଢ଼ାଇଥିବାରୁ ଘୋର ଲଜ୍ଜା ଓ ଅନୁତାପରେ ଦୀନାର ହୃଦୟ ସତେଯେପରି ଫାଟିପଡ଼ିଲା ।



---

(୧) ବୋକା, ନିର୍ବୋଧ (୨) ଫଳ, ଦଶା

# ଷଷ୍ଠ ପଟ

କାହିଁ ସେ, କିଏ ସେ ନଜାଣି ମୁଁ ମରେ
ଲୁଚିଗଲା କାହିଁ ଦେଖାଦେଇ ଥରେ
ଏବେ ଖୋଜିବୁଲେ ସରବ ଧରଣୀ
କାହିଁ ମୋର ସଖା ପ୍ରିୟ ଗୁଣମଣି ।

ଦୁଇ ବର୍ଷ ଅତିବାହିତ ହୋଇଗଲାଣି । ବୀରବାବୁ ଦାଣ୍ଡଘରେ ବସି ବହିପତ୍ର ଦେଖୁଛନ୍ତି । ଡାକ ହରକରା[୧] ଗୋଟାଏ ପତ୍ର ଦେଇଗଲା । ଜଗନ୍ନାଥର ହସ୍ତାକ୍ଷର ଦେଖି ବୀରବାବୁ ଆନନ୍ଦରେ ପତ୍ରଟି ଫିଟାଇଲେ, ପତ୍ର ପାଠକରି ତାଙ୍କର ଚକ୍ଷୁ ସ୍ଥିରହେଲା । ସେ ବାଳକ ପରି କାନ୍ଦିପକାଇଲେ । କିଛି କ୍ଷଣ ପରେ ପ୍ରକୃତିସ୍ଥ ହୋଇ ଘରଭିତରକୁ ଯାଇ ମାଙ୍କୁ କହିଲେ - ''ମା, ମୁଁ କଲିକତା ଯାଉଛି । ଆଜି ରାତି ଗାଡ଼ିରେ ଯିବି । ଜଗନ୍ନାଥ ମୃତ୍ୟୁ ଶଯ୍ୟାରେ - ସେ ବଡ଼ ବେରାମ[୨] । ତାର ବନ୍ଧୁ ଜଣେ ପତ୍ର ଦେଇଛି ।''

ବୀରବାବୁଙ୍କ ମାତା ଦ୍ୱିରୁକ୍ତି ନ କରି ଅନୁମତି ଦେଲେ । ବୀରବାବୁ ରାତିଗାଡ଼ିରେ କଲିକତା ଗଲେ ।

ଗୋଟିଏ କ୍ଷୁଦ୍ର ଅପରିଷ୍କାର ଗଳି । ଦୁଇଆଡ଼େ ଘରଗୁଡ଼ିକ ଲଗାଲଗି ହୋଇ ନିର୍ମିତ । ଆଲୋକ ପ୍ରବେଶର ପଥ ପର୍ଯ୍ୟନ୍ତ ରୁଦ୍ଧ । ରାସ୍ତାଟି ଦୁର୍ଗନ୍ଧ ଏବଂ ଆବର୍ଜନାରେ ପରିପୂର୍ଣ୍ଣ । ମାଛିମାନେ ପଲ ପଲ ଉଡୁଛନ୍ତି । କଲିକତା ସହର । ଆଜିକାଲିର କଲିକତା ସହର ନୁହେଁ । ପୂର୍ବକାଳର କଥା । ଦୁଇ ଆଡ଼ର ନାଳରେ ପଚାପାଣି ବୋହିଯାଇ ସମଗ୍ର ସ୍ଥାନଟିକୁ ଅତି ଦୁର୍ଗନ୍ଧରେ ପୂର୍ଣ୍ଣ କରିପକାଇଛି । ହଠାତ୍ ନ ଜାଣିବା ଲୋକ ପଶିଗଲା ମାତ୍ରେ ତାହାର ସମଗ୍ର ଶରୀର ଦୁର୍ଗନ୍ଧରେ ଅବଶ ହୋଇଉଠେ । ସେ ବାନ୍ତି ସମ୍ଭାଳି ପାରେ ନାହିଁ । ଏଣେ ତେଣେ ଗୋରୁହାଡ଼, କୁକୁଡ଼ା ପର, ମାଛକାତି ବିଛାଇ ହୋଇ ପଡ଼ିଅଛି । କାଦୁଅ ପଙ୍କ ସ୍ଥାନେ ସ୍ଥାନେ ପୂର୍ଣ୍ଣ । ଏହିପରି ଗଳିର ବାମ ଦିଗରେ ଗୋଟିଏ କ୍ଷୁଦ୍ର ଏକତଲ ପକ୍କାଘର । ଜୀର୍ଣ୍ଣଶୀର୍ଣ୍ଣ କାନ୍ଥ ସ୍ଥାନେ ସ୍ଥାନେ ଭାଙ୍ଗି ଯାଇ ସିମେଣ୍ଟ କାମ ଖସିପଡ଼ିଛି । ଇଟାଗୁଡ଼ିକ ସ୍ଥାନେ ସ୍ଥାନେ ଫାଟି ଆଁ କରିଛି । ଖଣ୍ଡେ ଖଣ୍ଡେ ଭାଙ୍ଗି ଯାଇଛି । ଚାରିଆଡ଼େ କଳା, ଅଳନ୍ଧୁ, ବୁଢ଼ୀଆଣୀ ବସା ପୂର୍ଣ୍ଣ । ଛୋଟ ଗୋଟାଏ କାମିନୀ ଫୁଲଗଛ ଗୋଟାଏ କୋଣ ଅନ୍ଧକାର କରିଅଛି । ସାମନା ନାଳରେ ବାର ବରଷର ମଇଳା ପାଣି ବହିଯାଇ ଘର ଚାରିଆଡ଼ ଦୁର୍ଗନ୍ଧରେ ଭରିଦେଉଛି । ସମ୍ମୁଖକୁ କାଷ୍ଠନିର୍ମିତ ଦ୍ୱାର । ସବୁଜ ରଂଗ । ବହୁ ପୁରାତନ, ଜୀର୍ଣ୍ଣଶୀର୍ଣ୍ଣ ।

ଠିକ୍ ସେହି ଦ୍ୱାର ସାମନାକୁ ଗୋଟିଏ ଫେଟିନ୍ ଗାଡ଼ି ଆସି ଠିଆହେଲା । ଗାଡ଼ିରୁ ବୀରବାବୁ ଓହ୍ଲାଇ ପଡ଼ି, କୋଚ୍‌ମ୍ୟାନ୍‌କୁ ତାହାର ଭଡ଼ା ଆଦି ଦେଇ, ଆପଣାର କ୍ଷୁଦ୍ର ବ୍ୟାଗ୍‌ଟି ହାତରେ ଧରି ବହୁପରିଚିତ ପରି ଦ୍ୱାରାଠେଲି ଘର ଭିତରକୁ ପଶିଗଲେ ।

ଦାଣ୍ଡଘର । ସେ ଘରେ କୌଣସି ଆସବାବ୍ ପତ୍ର ନଥିଲା । କୋଣମାନଙ୍କରେ ଚାରିଆଡ଼େ ଧୂଳି, କାନ୍ଥରେ ଅଳନ୍ଧୁ, ବୁଢ଼ିଆଣୀ ବସା । ଗୋଟିଏ ଭଙ୍ଗା ମେଜ ଉପରେ ପରସ୍ତେ ଧୂଳି, ତା' ଉପରେ ଦୁଇ ଚାରିଖଣ୍ଡ ଛିଣ୍ଡା ବହି ଓ ଗୋଟିଏ ଭଙ୍ଗା ପାନିଆ ପଡ଼ିରହିଛି ।

(୧) ପୋଷ୍ଟମ୍ୟାନ୍, ଡାକବାଲା, (୨) ଅସୁସ୍ଥ

ମେଜ ଚାରି ପାଖରେ ଦୁଇଟା ଅଧା ଭଙ୍ଗା ଚୌକୀ, ଗୋଟିଏ ପୁରୁଣା ଷ୍ଟଲ୍, ଗୋଟିଏ ଛିଣ୍ଡା ବେତର କେଦାରା ପଡ଼ିରହିଛି। ସେସବୁ ଉପରେ ପରସ୍ତ ପରସ୍ତ ଧୂଳି ପଡ଼ିରହି ଗୃହକର୍ତ୍ତାର ସଭ୍ୟତାର ପରିଚୟ ଦେଉଛି। କାନ୍ଥରେ ଦୁଇଟା ଛବି। ତା ଉପରେ ଧୂଳିରେ ଗୋଟିଏ ପ୍ରସ୍ତ, ଛବିର ଆକୃତି ଲୁଚେଇ ଦେଉଛି। ଘର ଭିତର କୋଠରୀକୁ ଯିବାକୁ ବିପରୀତ ଦିଗରେ ଆଉ ଗୋଟିଏ ଦ୍ୱାର ଥିଲା।

ବୀର କବାଟ ଠେଲି ଭିତରକୁ ପଶିଲେ। ଦ୍ୱିତୀୟ କୋଠରୀଟିର ଦଶା ମଧ ପ୍ରଥମ କୋଠରୀ ପରି; କିନ୍ତୁ ଅଳ୍ପ ପରିଷ୍କାର ପରିଚ୍ଛନ୍ନ ଥିଲା। ମେଜ, ଚୌକି ଇତ୍ୟାଦି ନ ଥାଇ ଗୋଟିଏ ପରୁଣା କ୍ୟାନଭାସ୍ ଖଟ ଉପରେ ମଇଳା ଚାଦର ବିଛାହୋଇଛି। ତାହା ଜୀର୍ଣ୍ଣଶୀର୍ଣ୍ଣ, ଅସ୍ଥିକଙ୍କାଳସାର ଜଗନ୍ନାଥ ତାହା ଉପରେ ପଡ଼ି ଅସ୍ପଷ୍ଟ, ଆର୍ତ୍ତ ଚିତ୍କାର କରୁଛନ୍ତି।

ବୀର ହଠାତ୍ ଘର ଭିତରକୁ ପଶି ଆସି, ଜଗନ୍ନାଥକୁ ଖଟ ଉପରେ ଦେଖିବାକୁ ପାଇ, ଚିହ୍ନି ପାରିଲେ ନାହିଁ। ନିକଟକୁ ଯାଇ ଦେଖିଲେ, ସେ ପ୍ରକୃତ ଜଗନ୍ନାଥ। କିନ୍ତୁ ତା'ର ଆଉ ସେ ପୂର୍ବ ରୂପ ନାହିଁ। ବାବୁଜଣଙ୍କୁ ଦେଖି ଚମକିପଡ଼ି ଠିଆହୋଇ ରହିଲା। କିଛି କ୍ଷଣ ପରେ ସାହସକରି ବାଳିକାଟି ପଚାରିଲା - ''ଆପଣ କିଏ ?''

ବୀରବାବୁ ତାହାର ପ୍ରଶ୍ନରେ ପ୍ରଥମେ କିଛି ଉତ୍ତର ଦେଇ ନ ପାରି ପଚାରିଲେ - ''ତୁ ଏଠାରେ କ'ଣ କରୁଛୁ? ଏଠାରେ ଜଗନ୍ନାଥ ବାବୁ ଅଛନ୍ତି କି ? ତୁ କଣ ଜଗନ୍ନାଥ ବାବୁର ରାନ୍ଧୁଣୀ ?'' ଅବଶ୍ୟ ସେ ବଙ୍ଗଳାରେ ପ୍ରଶ୍ନ କଲେ। କାରଣ ବାଳିକାଟି ବଙ୍ଗଳାରେ ପ୍ରଶ୍ନ କରିଥିଲା।

ସେ ବୀରବାବୁଙ୍କ କଥା ଶୁଣି ହଠାତ୍ ଆଶ୍ଚର୍ଯ୍ୟ ହୋଇ କହିଲା - ସେ ଜଗନ୍ନାଥ ବୋଲି କାହାକୁ ଚିହ୍ନେ ନାହିଁ। ସେଠାରେ ଯୋନାଥନ୍ ପାତ୍ର ନାମରେ ଜଣେ ଖ୍ରୀଷ୍ଟିୟାନ୍, ତାଙ୍କ ଘରେ ଭଡାରେ ଥାଇ ବେରାମ ପଡ଼ିଛି। ସେ ଗୃହକର୍ତ୍ତାର କନ୍ୟା। ସେମାନେ ଜାତିରେ ମୁସଲମାନ। ତାହାର ବାପ ବବୁର୍ଚ୍ଚି କାମକରେ।

ବୀରବାବୁ ଶୁଣି ଅବାକ୍ ହେଲେ। କି ଉତ୍ତର ଦେବେ ଭାବି ପାରିଲେ ନାହିଁ।

ବାଳିକାଟି ଉତ୍ତରରେ ଅପେକ୍ଷା ନ କରି ରନ୍ଧାଘର ଦ୍ୱାରଦେଇ, ସାମନା କବାଟ ବାଟେ ଅନ୍ୟ ଏକ ଗୃହରେ ପ୍ରବେଶକଲା। ବୀର ବାବୁ ହତବାକ୍ ହୋଇଛିଡ଼ା ହୋଇ ରହିଲେ।

କିଛି କ୍ଷଣ ପରେ ଜଣେ ଦାଢ଼ିଆ ପଠାଣ ଆସି ବୀରବାବୁଙ୍କ ସମକ୍ଷରେ ଉପସ୍ଥିତ ହେଲେ। ତାଙ୍କ ବୟସ ପ୍ରାୟ ଚାଳିଶି ପାର ହୋଇଗଲାଣି। ଦୀର୍ଘାକାର, କୃଷ୍ଣବର୍ଣ୍ଣ, ଯମାକୃତି ପଠାଣଟି ବୀରବାବୁଙ୍କ ସମ୍ମୁଖକୁ ଆସି ତାହାର ଯୁବତୀ କନ୍ୟା ସହିତ ବାକ୍ୟାଳାପ ଦୋଷରେ ବୀରବାବୁଙ୍କୁ ଭର୍ତ୍ସନା କରିବାକୁ ଲାଗିଲା। ବୀରବାବୁ କିଛି ବୁଝିପାରିଲେ ନାହିଁ। ଅଜଣା ରାଜ୍ୟକୁ ଆସି ଏପରି ବିପଦରେ ପଡ଼ିବାକୁ ହେବ ବୋଲି ସେ କଳ୍ପନା ସୁଦ୍ଧା କରି ନ ଥିଲେ। ସେ ସ୍ଥିରଭାବେ ଠିଆହୋଇ ସବୁ ଶୁଣିବାକୁ ଲାଗିଲେ। ପଠାଣଟି କି କାରଣରୁ ତାହାଙ୍କ ଏପରି

ଭର୍ତ୍ସନା କରୁଛି, ସେ ବୁଝିପାରିଲେ ନାହିଁ। ଭଲା, କଲିକତା ସହର। ଅନେକ କ୍ଷଣ ପରେ ପଠାଣଟି ଶାନ୍ତ ହେବାରୁ ବୀରବାବୁ ଧୀର ସ୍ୱରରେ କହିଲେ - ସେ ଜଗନ୍ନାଥ ପାତ୍ର ନାମକ ଜଣେ ହିନ୍ଦୁ ଲୋକଙ୍କୁ ଖୋଜିବାକୁ ଆସିଛନ୍ତି। ସେ ବର୍ତ୍ତମାନ ବଡ଼ ବେରାମ୍ ଅଛନ୍ତି।

ପଠାଣ ବୀରବାବୁଙ୍କ କଥାରେ ଅର୍ଥ ବୁଝି ନ ପାରି କହିଲା ଯେ, ସେଠାରେ କେହି ହିନ୍ଦୁ ଲୋକ ନାହିଁ। କିନ୍ତୁ ଯୋନାଥନ୍ ପାତ୍ର ନାମରେ ଜଣେ ଖ୍ରୀଷ୍ଟିୟାନ୍ ବାବୁ ବର୍ତ୍ତମାନ ବେରାମ ଅବସ୍ଥାରେ ତା' ଘରେ ଆଶ୍ରୟ ନେଇଛି। ଯୋନାଥନ୍ ବାବୁର ଅତି ଦୟାଳୁ ସଂଗୀ ବିଜୟ ବାବୁ ଆଜିକୁ ଦୁଇଦିନ ହେଲା ତାହାଙ୍କର ସମସ୍ତ ସଂପତ୍ତି ଅପହରଣ କରିନେଇ ପଳାଇଛି।'' ବୃଦ୍ଧ ପଠାଣ ଅତି ବିଦ୍ରୂପ ଭାବରେ କହିଲା। ଯୋନାଥନ୍ ନିଃସହାୟ ଅବସ୍ଥାରେ ପଡ଼ିଥିବାରୁ ସେମାନେ ଦୟା ପରବଶ ହୋଇ ତାହାକୁ ଦେଖାଚାହାଁ କରୁଅଛନ୍ତି।

ପଠାଣଟି ଅତ୍ୟନ୍ତ ବିରକ୍ତ ସହକାରେ ନୀଚ ଖ୍ରୀଷ୍ଟିୟାନ୍‌ମାନଙ୍କୁ ଭର୍ତ୍ସନା କରି କ୍ରୋଧ ଶାନ୍ତକରିବାକୁ ଲାଗିଲା।

ବୀରବାବୁ ମୂକବତ୍ ସବୁ ଶୁଣିଲା ପରେ ପଚାରିଲେ - ''ଯୋନାଥନ୍ ପାତ୍ର କଣ ପୂର୍ବରୁ ହିନ୍ଦୁ ଥିଲେ ?''

ପଠାଣ ସେ ସବୁକିଛି ଜାଣି ନଥିଲା। ସେ ରାଗରେ କହିଲା - ''ସେ ହିନ୍ଦୁ, କି ଖ୍ରୀଷ୍ଟିୟାନ୍ ଥିଲା ମୁଁ ଜାଣେ ନାହିଁ। ଏତିକି ଜାଣେ, ସେ ଲୋକଟି ବିଜୟ ଚନ୍ଦ୍ରସେନ୍ ସହିତ ଏଠାକୁ ଆସି ପଡ଼ିଛି। ଦୁଇଦିନରେ ମରିବ ଓ ସେଥିପାଇଁ ମୁଁ ତାକୁ ଆଜି ଡାକ୍ତରଖାନାକୁ ବିଦାୟ ଦେବି।''

ବୀର ଅଗତ୍ୟା ଜଗନ୍ନାଥଙ୍କର ଘରକୁ ପଶି ଦେଖିଲେ ଜଗନ୍ନାଥ ପୂର୍ବବତ୍ ପଡ଼ିରହିଛି। ତାହାର ସର୍ବାଙ୍ଗରୁ ଝାଳବହୁଛି। ବୀର ବ୍ୟାଗ୍‌ଟି ଫିଟାଇ କ'ଣ କେଜାଣି ମନେକରି ଚାରୋଟି ରୌପ୍ୟମୁଦ୍ରା ବାହାର କରି ପୂର୍ବୋକ୍ତ ପଠାଣକୁ ଦେଲେ। ରୂପାର ମୁଦ୍ରା ଦେଖି ପଠାଣ ମୋହିତ ହୋଇଗଲା। ସେ ସମ୍ମାନ ସହକାରେ ବୀରବାବୁଙ୍କ ନାମ ଧାମ ପଚାରିଲା। ବୀର ତାହାର କଥାରେ ସ୍ୱଚ୍ଛ ଉତ୍ତରଦେଇ ଉପସ୍ଥିତ କ୍ଷେତ୍ରରେ ତାହାର ସାହାଯ୍ୟ ଭିକ୍ଷାକଲା। ପଠାଣଟି ଆହ୍ଲାଦପୂର୍ବକ କହିଲା - ''ବାବୁ ଆମି ସବ୍ କରବୋ। ଜାନ୍ ଦିତେ ହୟ ଦିବ। ଆପନି ମେହେର୍‌ବାନି ରଖିବେନ୍।''

ବୀରବାବୁ ଟଙ୍କାର ଅଦ୍ଭୁତ ଶକ୍ତି ଦେଖି ଆଶ୍ଚର୍ଯ୍ୟହେଲେ। ତାହା ପରେ ବୀରବାବୁ ପଠାଣ ସାହାଯ୍ୟରେ ବଜାରରୁ ସାଗୁ, ବାର୍ଲି ଓ ଦୁଧ ମଗାଇ ରନ୍ଧାଇଦେଲେ। ଅଧ ଘଣ୍ଟାକ ମଧ୍ୟରେ ତାହା ଶେଷକରି ଜଗନ୍ନାଥର ମୁହଁରେ ଚାମୁଚେ ଚାମୁଚେ କରି ଦେବାକୁ ଲାଗିଲେ। ଜଗନ୍ନାଥ କ୍ଷୁଧାତୁର ଭାବରେ ସେଥିରୁ ଅନେକ ଅଂଶ ଖାଇଦେଲେ। ବୀରର ହୃଦୟ ବ୍ୟଥିତ ହେବାକୁ ଲାଗିଲା। କିଛି କ୍ଷଣପରେ ପରେ ଜଗନ୍ନାଥର ବାକ୍‌ଶକ୍ତି ଫେରିଆସିଲା। ସେ କ୍ଷୀଣ କଣ୍ଠରେ ବୀରକୁ ପଚାରିଲେ - ''ଆପନି କେ ? ଆମି ଚିନି ପାଛିନା।''

ବୀରବାବୁ କହିଲେ - ''ମୁଁ ବୀର ପରା ! କଟକରେ । ଭୁଲିଗଲେଣି କି ? ତୁ କଣ ପୂର୍ବର ଜଗନ୍ନାଥ ନୋହୁ ?''

ଜଗନ୍ନାଥ ଚକ୍ଷୁ ମୁଦ୍ରିତକରି କିଛିକ୍ଷଣ ଭାବିବାକୁ ଲାଗିଲା । ପରେ ଦୀର୍ଘନିଃଶ୍ୱାସ ନିକ୍ଷେପ କରି କହିଲା - ''ବୁଝିଲି ବୀରବାବୁ, ଆହା'' - ଆଉ କିଛି କହିପାରିଲା ନାହିଁ । ତାହାର ନେତ୍ରରୁ ଝର ଝର ଲୁହ ଗଡ଼ିପଡ଼ିଲା । ପରେ ହସ୍ତ ସଂକେତ କରି ବୀରଙ୍କୁ ସାମନାରେ ଟଙ୍ଗା ହୋଇଥିବା କୋଟ ଆଣିବାକୁ କହିଲା ।

ବୀରବାବୁ କୋଟ୍‌ଟି ଆଣି ପକେଟ୍‌ରୁ ଗୋଟିଏ ନୋଟ୍‌ବୁକ୍ ବାହାରକରି ପତ୍ର ଓଲଟାଇ ଦେଖିଲେ - ଜଗନ୍ନାଥ ନାମ ଯୋନାଥନ୍‌ରେ ବଦଳିଯାଇଚି । ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲା, ''ଜଗନ୍ନାଥ, ତୁ କଣ ଖ୍ରୀଷ୍ଟିୟାନ ହୋଇଗଲୁ ?''

କ୍ଷୀଣ କଣ୍ଠରେ ଜଗନ୍ନାଥ କହିଲା ''ହଁ ।''

ବୀର ବାବୁ ଶଯ୍ୟାରେ ନଇଁପଡ଼ି କାତର କଣ୍ଠରେ ପ୍ରାର୍ଥନାକରିବାକୁ ଲାଗିଲେ ।

ଅପରାହ୍ଣରେ, ଛାଇ ବୁଡ଼ିଯିବାପରେ, ପୂର୍ବୋକ୍ତ ପଠାଣ ସାହାଯ୍ୟରେ ବୀରବାବୁ ଜଗନ୍ନାଥକୁ ଷ୍ଟେସନକୁ ଆଣି କଟକ ଗାଡ଼ିରେ ଚଢ଼ିଲେ ।

ସକାଳ ହୋଇଆସୁଥାଏ । ଜଗନ୍ନାଥକୁ ଆଣି ବୀରବାବୁ ଘରେ ପହଞ୍ଚିଲେ । ଜଗନ୍ନାଥକୁ ଅତି ଯତ୍ନରେ ବିଛଣାରେ ଶୁଆଇଦେଲେ । ବିଶ୍ରାମ ନ କରି ସେହିକ୍ଷଣି କଟକର ବିଖ୍ୟାତ ଡାକ୍ତରମାନଙ୍କୁ ଡାକିଆଣିଲେ । ଜଗନ୍ନାଥଙ୍କର ରୀତିମତ ଚିକିତ୍ସା ଆରମ୍ଭହେଲା ।

ପନ୍ଦର ଦିନ ଧରି ପ୍ରାଣେପଣେ ଚିକିତ୍ସା ଓ ଯତ୍ନ ନେଇ ବୀରବାବୁ, ତାଙ୍କ ସ୍ତ୍ରୀ ଗୁଲ୍‌ବଦନୀ, ତାଙ୍କ ମାତା ଓ ଶଶୀ ଜଗନ୍ନାଥକୁ ମୃତ୍ୟୁମୁଖରୁ ରକ୍ଷା କରିବାକୁ ଲାଗିଲେ । ତାଙ୍କର ଦାଣ୍ଡ ଘରଟି ଡାକ୍ତରଖାନାରେ ପରିଣତ ହୋଇଗଲା ।

ପନ୍ଦର ଦିନ ପରେ ଜଗନ୍ନାଥ କ୍ରମେ ସୁସ୍ଥ ହେବାକୁ ଲଗିଲେ । କ୍ରମେ ପୂର୍ବଶକ୍ତି ଫେରିପାଇଲେ । ତାଙ୍କ ଚେହେରାରେ ପରିବର୍ତ୍ତନ ଜଣାଗଲା । ସେ କଥା କହିପାରିଲେ । ଉଠିକରି ବୁଲାଚଲା କରିବାକୁ ଲାଗିଲେ, ତଥାପି ଦୁର୍ବଳତା ଯାଉ ନଥାଏ ।

ଆହୁରି ପନ୍ଦର ଦିନ ପରେ ଡାକ୍ତର ବ୍ୟବସ୍ଥା ଦେଇ ବିଦାୟନେଲେ । ବୀରବାବୁଙ୍କର ଚାରିଶହ ଟଙ୍କା ଖର୍ଚ୍ଚ ପରେ ଜଗନ୍ନାଥ ସବଳ ସୁସ୍ଥହୋଇ ବିଛଣାରୁ ଉଠିଲେ; କିନ୍ତୁ ଦାଣ୍ଡଗୃହ ଛଡ଼ା ଅନ୍ୟ ଗୃହରେ ପ୍ରବେଶ କରୁ ନଥିଲେ । ତାହାଙ୍କର ସେ କୋଟରଗତ ଚକ୍ଷୁ ପୁନଃ ପ୍ରଫୁଲ୍ଲ ଓ ଜ୍ୟୋତିର୍ମୟ ହୋଇଉଠିଲା । ଜୀର୍ଣ୍ଣଶୀର୍ଣ୍ଣ ଦେହ ଉପରେ ମାଂସ ଦୃଢ଼ହେବାକୁ ଲାଗିଲା । ପୁନର୍ବାର ରଂଗ ପରିଷ୍କାର ହେବାକୁ ଲାଗିଲା ।

ବୀରବାବୁଙ୍କ ଘରେ ରହିବାର ଛ'ମାସ ହୋଇଗଲାଣି, ଜଗନ୍ନାଥର ପୂର୍ବ ସୌନ୍ଦର୍ଯ୍ୟ ଫେରିଆସିଛି । ଚେହେରା ସୁନ୍ଦର ଓ ଶରୀର ବଳିଷ୍ଠ ହେଲାଣି । ଆଜି କାଲି ସେ ଏଘର ସେଘର ହୁଅନ୍ତି । ବାଡ଼ି ବଗିଚାରେ ବୁଲନ୍ତି । କିଛି କିଛି କାମ ମଧ କରନ୍ତି । ବୀରବାବୁ ସସ୍ନେହ ତାଙ୍କୁ

କାର୍ଯ୍ୟ କରିବାକୁ ବାରଣକରନ୍ତି। କିନ୍ତୁ ଆଜିକାଲି ସେ ଖ୍ରୀଷ୍ଟିୟାନ୍ ଓ ଯୋନାଥନ୍ ପାତ୍ର ନାମରେ ପରିଚିତ। ଯୋନାଥନ୍‌ର ସୁବ୍ୟବହାରଦ୍ୱାରା ସମସ୍ତେ ପରିତୁଷ୍ଟ ହୋଇଅଛନ୍ତି। ଶଶୀ ତାଙ୍କୁ ଭାଇ ଭାଇ ଡାକେ।

ଯୋନାଥନ୍‌ର ପ୍ରଧାନ ସଂଗୀ ବୀରବାବୁଙ୍କ ସାନ ଝିଅ ବନବାସିନୀ। ଯୋନାଥନ୍ ସେହି ତିନିବର୍ଷ ବୟସ୍କା ଶିଶୁକନ୍ୟାଟି ସହିତ ପ୍ରାୟ ଦିନରାତି ଖେଳୁଥାନ୍ତି। ଆଜିକାଲି ତାହାଙ୍କ ଜୀବନ ଶିଶୁର ଜୀବନ ଭଳି ସରଳ ଓ ସ୍ନେହପୂର୍ଣ୍ଣ ହୋଇପଡ଼ିଛି। ବନକୁ କାଖେଇ ବାଡ଼ି ବାଡ଼ି ବୁଲିବା, ପୋଖରୀ କୂଳରେ ବସି ଖେଳିବା, ତାହାଙ୍କର ନିତ୍ୟ ସୁଖ। ସୁଚରିତ୍ର ଯୋନାଥନ୍ ନିର୍ଦ୍ଦୋଷ ଭାବେ ଖେଳିବୁଲି ସୁଖରେ ଅଛନ୍ତି। ମନ ମଧରେ କିନ୍ତୁ ଆଉ ଗୋଟିଏ ଚିନ୍ତା। ଅହରହ ତାହାହିଁ ତାଙ୍କୁ ବ୍ୟସ୍ତକରୁଚି। ଆଜିକାଲି ସେ ବେଶ୍ ସୁସ୍ଥ, ସେ କାହିଁକି ପୁନର୍ବାର କାର୍ଯ୍ୟ କରିବାକୁ ଯିବେନାହିଁ? କିନ୍ତୁ ଅତିରିକ୍ତ ସ୍ନେହବଶତଃ ବର୍ତ୍ତମାନ ତାଙ୍କୁ କାମକୁ ଯିବାକୁ ବୀରବାବୁ ନିଷେଧ କରୁଛନ୍ତି। ଆଜି ଛୁଟିଦିନ। ସକାଳେ ପୋଖରୀ କୂଳରେ ବସି ବୀର ଓ ଯୋନାଥନ୍‌ର ମାଛ ଧରାଯାଉଛି। ବନଟି ଯୋନାଥନ୍‌ର କାନ୍ଧରେ ଲଟିକିପଡ଼ି ଗୋଟିଏ କଞ୍ଚା ପିଜୁଳି ଚୋବାଉଚି। ଦର ଦର ଚୋବାକରି ତା ଛୋଟ ଛୋଟ ପାପୁଲିରେ ପାଣିକୁ ଫୋପାଡୁଛି। ଗୋଟିଏ ବାହୁରେ ତାକୁ ଜଡ଼ାଇଧରି ଯୋନାଥନ୍ ବୀରବାବୁଙ୍କ ସଂଗେ କଥାବାର୍ତ୍ତା ଆରମ୍ଭକଲେ -

''ବୀରବାବୁ– ଆଉ ବସିବାକୁ ଇଚ୍ଛା ନାହିଁ। କାମ ଦେଖିବା।''

ବୀର କହିଲେ - ''ଆଉ କିଛି ଦିନ ଯାଉ, ଦେଖିବା। ସର୍ଭେ ଇଲାକାରେ କିରାଣୀ କାମ ଖାଲି ହେବାର ଅଛି। ଦରମା ଚାଳିଶ ଟଙ୍କା।''

ଯୋନାଥନ୍ କିଛିକ୍ଷଣ ନୀରବ ରହି କହିଲେ, ''କିନ୍ତୁ ବାପାଙ୍କର ଆଦେଶ, ମୁଁ ସ୍ୱଦେଶରେ ରହିବି ନାହିଁ।'' କିଛିକ୍ଷଣ ନୀରବ୍ ରହି ପୁଣି କହିଲେ - ''ଓଡ଼ିଶାରେ କେହି ଜାଣିବ ନାହିଁ ମୁଁ ଖ୍ରୀଷ୍ଟିୟାନ୍ ହୋଇଛି ବୋଲି। ଆଉ କଟକରେ ରହିଲେ କାଳେ ସମସ୍ତେ ଚିହ୍ନିବେ - ଜାଣିବେ। ଆମ ଗ୍ରାମକୁ ଏକଥା ଖବର ହେବ। ମୁଁ କଲିକତା ଯିବି। ଏଠି ରହି ବାପାଙ୍କର ନିନ୍ଦାକରିବି ନାହିଁ।'' ବୀରବାବୁ ଦୁଃଖିତ ହୋଇ କହିଲେ - ''କିନ୍ତୁ କଲିକତାରେ ଥରେ ତ ଚେତିବ। ବିଜୟ ପରି ଆହୁରି ଅନେକ ସାଂଗ ମିଳିପାରନ୍ତି।''

''ନାଁ ଭାଇ, ଥରେ ଅନ୍ଧ ବାଡ଼ି ହଜାଏ ସିନା। ଚେତିଚି ଭଲ। ଆଉ କାନ ମୋଡ଼ିହେଉଚି, ବଙ୍ଗାଳୀଙ୍କ କଥାରେ ପଡ଼ିବି ନାହିଁ। ତାଙ୍କୁ ଯେ ଚିହ୍ନି ନାହିଁ, ସେ ନିଜ ବାପକୁ ବି ଚିହ୍ନି ନାହିଁ।''

ସହାସ୍ୟ ଭାବରେ ବୀର ପଚାରିଲା - ''ଆଚ୍ଛା, ତୁମର କିମିତି ଇମିତି ହେଲା? ମୋତେ ଆଉ ଥରେ କୁହ। ତମ କାହାଣୀ ଶୁଣିବାକୁ ବଡ଼ ଭଲ ଲାଗେ।'' ବୀର ଶୁଣିବା

ଆଶାରେ ସ୍ଥିରହୋଇ ବସିଲେ। ବନ ସାନପିଲାଟି, ପିତାଙ୍କୁ ମନରେ କ'ଣ ଭାବି ସ୍ଥିରହୋଇ ତାଙ୍କ ମୁଖକୁ ଅନାଇଲା।

ତହୁଁ ଜଗନ୍ନାଥ ଆରମ୍ଭ କଲେ ''ଶୁଣ ଭାଇ, ମୁଁ ଯାଜପୁରରୁ କଲିକତାକୁ ଆସି Greham କମ୍ପାନୀରେ କିରାଣୀ କାମ ପାଇଲି। ମାସିକ ଦରମା ପଚାଶ ଟଙ୍କା। ବେଶ୍ ଉପୁରି ଦଶଟଙ୍କା ବି ଥିଲା। ମୋର ମନରେ ଥାଏ, ମୁଁ ଖ୍ରୀଷ୍ଟିୟାନ୍ ହେବି। ତହୁଁ କଲିକତାର Methodist ମଣ୍ଡଳୀରେ ସଭ୍ୟ ହୋଇ ଯୋନାଥନ ପିଟର୍ ନାମରେ ୟୁରେସିଆନ୍ ବେଶରେ ରହିଲି। ସେଠିକାର ଆଉ ଜଣେ କର୍ମଚାରୀ ବିଜୟଚନ୍ଦ୍ର ସେନ ବଙ୍ଗାଳୀ ଖ୍ରୀଷ୍ଟିୟାନ୍‌ଙ୍କ ସହିତ ମୋର ବନ୍ଧୁତ୍ୱ ହେଲା। ସେତେବେଳେ ମୁଁ ଥାଏ ବହୁବଜାର ଷ୍ଟ୍ରିଟ୍‌ରେ। ସେଠାରୁ ପୁଣି ଯୋଡ଼ାସାଙ୍କୋ ଲେନ୍‌କୁ ଉଠିଗଲି। ସେଠାରେ ଏକାକୀ ଅବସ୍ଥାରେ ବଡ଼ କଷ୍ଟହେଲା। ହଠାତ୍ ମୋତେ Malaria ଧରିଲା। ପିଳେହୀ ବଢ଼ିଲା। ଦିନ ଦ୍ୱିପ୍ରହର ହୋଇଥାଏ। କାମରୁ ଆସି ବଡ଼ କ୍ଳାନ୍ତିରେ କପେ ଚା' ଖାଇ ବିଛଣାରେ ଲମ୍ବହୋଇ ଶୋଇଗଲି। ସେଦିନ ମୋତେ ଭୟାନକ ଜ୍ୱର ହେଲା। ସନ୍ଧ୍ୟାକୁ ବିଜୟବାବୁ ପହଞ୍ଚିଲେ। ମୋର ଅବସ୍ଥା ଦେଖି ବଡ଼ ଦୁଃଖ କରି କହିଲେ ''କିଓ ଯୋନାଥନ, ମୁଁ ଦେଖୁଚି ତୁମେ ଏକୁଟିଆ ବଡ଼ କଷ୍ଟ ପାଉଚ। ଚାଲ ଏଠାରୁ ଘର ଭଡ଼ା ତୁଟାଇଦେଇ ମୋ ପାଖରେ ରହିବ।''

ବିଜୟଙ୍କୁ ମୁଁ ଆଗରୁ ଜାଣିଥିଲି। ବଡ଼ ଭଦ୍ର, ବିନୟୀ ଓ ପରୋପକାରୀ। ତହୁଁ ମୁଁ ତାର କଥାରେ ସମ୍ମତହେଲି। ବିଜୟ ସେହିକ୍ଷଣି ଡାକ୍ତର ଡାକିଆଣି ମୋର ଚିକିତ୍ସାର ବନ୍ଦୋବସ୍ତ କଲା। ତା ପର ଦିନ ଜୁଲାଇ ୧୩ ତାରିଖରେ ମୁଁ ଯୋଡ଼ାସାଙ୍କୋ ଲେନ୍‌ର ଘରଛାଡ଼ି ୩୨ ନମ୍ବର Intallyରେ ଆସି ବିଜୟ ସହିତ ରହିଲି। ଘରଟି ଜଣେ ମୁସଲମାନ ହାରାମନ ବିବି ବାଡ଼ିଆଲିର। ତାର ସ୍ୱାମୀ ମଦ୍ୟପାୟୀ, ବେଜାଏ ଦୁଷ୍ଟ ପଠାଣ, ସେକ୍ ଆବଦୁଲ୍ ହାକିମ। ସେ ପୁଣି ବବୁର୍ଚି। ତାର ଗୋଟିଏ ଦୁଷ୍ଟ କନ୍ୟା, ମତିଜାନ୍ ବିବି। ଯାହାକୁ ତୁମେ ରାନ୍ଧିବାର ଦେଖି ଆସିଲ। ବିଜୟ ସହିତ ତାର ପ୍ରଣୟ ଥିଲା।

ଯାହା ହେଉ ବିଜୟଙ୍କୁ ଭଦ୍ର ମନେକରି ତା ସହିତ ଆସିଲି। ପ୍ରାୟ ୧୫ ଦିନ ମଧ୍ୟରେ ରୋଗ ପ୍ରବଳହେବାକୁ ଲାଗିଲା। ଏଥିମଧ୍ୟରେ ଦେଖିଲି। ବିଜୟ ଉପରେ ସାଧୁ, ଭିତରେ ଭୟାନକ ଠକ, ଧୂର୍ତ୍ତ ଓ ଦୁଷ୍ଟ ମଣିଷ। ରୋଜ ମଦଖାଇ ଆସି ପଡ଼ିଥାଏ। ନାନା ଅରୁଚି କଥା ବକେ। ଆଉ ସେ ପଠାଣ ଟୋକୀ ମତିଜାନ ତାକୁ ମାରିବାର ମୁଁ ଦେଖିଚି। ଏହିପରି ଦୁଇ ମାସ ହେଲା। ମୋର କାମ ଗଲା। ମୁଁ ଶଯ୍ୟାଶାୟୀ ହେଲି। ମୋର ବ୍ୟାଙ୍କରେ ପାଞ୍ଚଶହ ଟଙ୍କା ଥିଲା। ସେତକ ଛାଡ଼ି ହାତରେ ମୋର ପ୍ରାୟ ୨୫୦ ଟଙ୍କା ଥିଲା। ସବୁ ଅଯଥା ଅପବ୍ୟୟ କରି ବିଜୟ ଯେତେବେଳେ ଜାଣିଲା ମୁଁ ଆଉ ବଞ୍ଚିବି ନାହିଁ, ସେ ମୋର ଟ୍ରଙ୍କ ଖଣ୍ଡିକ ନେଇ ଫେରାର୍‌ହେଲା। ମୋର ଯାହା ମନେପଡୁଛି, ସେ ବ୍ୟାଗ୍‌ରେ ୫୫ ଟଙ୍କା ଯାଏ

ଥିଲା ଓ ଖୁଚୁରା କିଛି ଥିଲା। ଆଉ ବାକି ବହି ଓ ସାର୍ଟିଫିକେଟ୍ ଇତ୍ୟାଦି ବଡ଼ବାବୁଙ୍କ ପାଖରେ ରଖିଥିଲି। ସେଥିରେ ଥିବା ମୋର ସୁନାର ରିଂ, ଦାମୀଘଡ଼ି, ସୁନାର ଚେନ୍ ଓ ରେଶମ ଏବଂ ଗରମ ଲୁଗାପଟା ଥିଲା। ଏତଦ୍‌ବ୍ୟତୀତ କେତେକ ଗଳ୍ପ ବହି ଓ ବାଇବଲ୍ ସବୁ ଟ୍ରଙ୍କ ସୁଦ୍ଧା ଉଠେଇ ନେଇଗଲା। ଯାହାହେଉ, ତାହା ପୂର୍ବରୁ ମୁଁ ଦିନେ ତା' ହାତରେ ତୁମ ନିକଟକୁ ଖଣ୍ଡେ ଚିଠି ଦେଇଥିଲି। ଭାଗ୍ୟକୁ ତୁମେ ସେଇଟା ପାଇଥିଲ, ନ ହେଲେ ସବୁତ ଯାଇଥିଲା। ମୁଁ ତ କଲିକତାରେ ନିରାଶ୍ରୟହୋଇ ମରିଯାନ୍ତି।

ତା ପରେ ମୁଁ ଆଉ ବିଛଣାରୁ ଉଠି ପାରିଲି ନାହିଁ। ତୁମେ ଆସି ମୋର ପ୍ରାଣରକ୍ଷା କଲ। ବାସ୍ତବିକ୍ ତୁମେ ଦେବତା ସ୍ୱରୂପ। ତୁମପରି ଏ ଜୀବନରେ ମୋର କେହି ଆଉ ଉପକାର କରିନାହିଁ। ମୋର କଲିକତାର ଘଟଣା ଗୋଟିଗୋଟି ମନେପଡ଼େ। କେତେ ଉପାସ ଭୋକ ସହିବାକୁ ହୋଇଛି। ଦିନ ଦ୍ୱିପ୍ରହରବେଳେ ଆସି ଦେଖେ, ଚାକରଟା ପଳାଇଛି। ତେଣୁ ଉଦୁଉଦିଆ ଖରାବେଳେ ହୋଟେଲ୍‌କୁ ଯାଇ ଖାଇବାକୁ ହୋଇଛି। ସେଠାରେ ପୁଣି ଛେଳିମାଂସ ସହିତ ଗୋମାଂସ ଓ ଚର୍ବିରେ ତରକାରୀ ରନ୍ଧାହୁଏ। ବଡ଼ ଘୃଣାଲାଗେ। ଜଳଖିଆ ଖାଇ ରହିଯାଏ।

ବୀର ହସି ହସି କହିଲେ "କେବେ କ'ଣ ଗୋ ମାଂସ ଖାଇନାହଁ?"

ଯୋନାଥନ କହିଲେ, "ଅନେକ ଥର ଭୁଲ୍‌ରେ ଖାଇଦେଇଛି। ଜାଣିପାରି ନାହିଁ। ରାନ୍ଧିଦେଲେ ଠିକ୍ ଛେଳିମାଂସ ପରିଲାଗେ, କିନ୍ତୁ ଜାଣି ଜାଣି କେବେ ଖାଇ ନାହିଁ। ଘୃଣା ଲାଗେ। ହେଲେ ଗୋରୁ ଚର୍ବିରେ ତିଆରି ପରଟା ଅନେକ ଥର ଖାଇଚି। ଆଉ ସେ କୁଲ୍‌ଫି ବରଫ ଥରେ ଖାଇ ପରା ମୋତେ କଲେରା[1] ଧରିଥିଲା। ଦିନେ ସଞ୍ଜବେଳେ ଆଇସ୍‌କ୍ରିମ୍ ଓ କୁଲ୍‌ଫି ବରଫ କିଣି ଖାଇଲି। ସେତେବେଳେ ମୁଁ ୧୭ ନମ୍ବର ବହୁ ବଜାର ଷ୍ଟ୍ରିଟ୍‌ରେ ଥିଲି। କେତେ ଯୁବକ ଏକତ୍ର garden ବୁଲି ଯାଇଥିଲୁ। ଫେରି ଆସୁ ଆସୁ ରାତି ନ'ଟା। ସେଦିନ କାହିଁକି ଭୋକ ଭଲହେଲା ନାହିଁ। ମୁଁ ବେହେରାକୁ ଡାକି ବେଶ୍ ଦୁଇଟି ସ୍ଲାଇସ୍ ରୋଟି, ଖଣ୍ଡେ ମଟନ୍ ଚାପ୍ ଓ କପେ ଚାହା ଖାଇନେଲି। ଦେହଟା ଜର ଜର ଲାଗୁଥାଏ। ଭାଇରେ, ସକାଳକୁ କୁଆଡ଼େ ଯିବି? ସକାଳ ନ ହେଉଣୁ ମତେ ୨ଟା ଝାଡ଼ା ଓ ଗୋଟାଏ ବାନ୍ତି ହୋଇଗଲାଣି। ମୁଁ ପ୍ରଥମେ ଡାଇରିଆ ବୋଲି ମନେକରିଥିଲି। କିନ୍ତୁ ବାନ୍ତିହେଲା ବେଳକୁ ମୋର ଦେହ ଅବଶହେଇ ଆସିଲାଣି ଓ ଚାରିଆଡ଼ ଅନ୍ଧାର ଦିଶିଲାଣି। କିନ୍ତୁ ଭାଗ୍ୟକୁ Sulphuric acid ଥାଏ। କିଛି ବିଚାର ନ କରି ସେଥିରୁ ତିରିଶ ଟୋପା ଖାଇଦେଲି। ମରିବି ତ ମରିବି, ଯେ କୌଣସି ଉପାୟରେ ମରିବି। ସେଠୁ ସେହି ବେହେରାକୁ ଡାକି ସିଧା[2] ଖଣ୍ଡେ ଲେଖି ମୋର ବଡ଼ବାବୁ ଜ୍ଞାନେନ୍ଦ୍ରନାଥ ମଜମଦାରଙ୍କ ନିକଟକୁ ପଠାଇଲି। ସେ ଡାକ୍ତର ହରିଶ୍ଚନ୍ଦ୍ର ସରକାରଙ୍କୁ ସଂଗେ ସଂଗେ ନେଇ ପହଞ୍ଚିଲେ। ସେତେବେଳକୁ acid ଖାଇବା

(୧) ହଇଜା, (୨) ଚିଠି।

ସଙ୍ଗେ ତିନିଟା ଝାଡା ଓ ଦୁଇଟା ବାନ୍ତି ହୋଇଗଲାଣି। ମୁଁ ବିଛଣାରେ ନିସ୍ତେଜ ହୋଇପଡ଼ିଚି। ବିଛଣା ଗୋଟାକ ମଇଳାରେ ପୂର୍ଣ୍ଣ। ଯାହା ହେଉ, ସେ ଡାକ୍ତର ଧନ୍ୟ! ପ୍ରାଣପଣେ ଚିକିତ୍ସା କରି Saline injection ଦେଇ ମୋତେ ବଞ୍ଚାଇଲେ। ଡାକ୍ତରଙ୍କୁ ମୁଁ ଖୁସିରେ ଫିସ୍ ଛଡ଼ା ଗୋଟିଏ ୬୦ ଟଙ୍କାର ସୁନା ଘଡ଼ି ଉପହାର ଦେଇଥିଲି। ବଡ଼ ଭଦ୍ରଲୋକ ସେ । ତପ୍ରରେ ସୁସ୍ଥ ହେବାରୁ ୧୪ ନମ୍ବର ଯୋଡ଼ାସାଙ୍କୋ ଲେନ୍‌ରେ ଆସି ଘରଭଡ଼ାକରି ରହିଲି। ସେଠୁ ପୁଣି ଦୁର୍ଦ୍ଦଶା ଭୋଗକରି ଏତେ ସରିହେଲି। ମୋର ବେହେରାଟି କୁଆଡ଼େ ଗଲା ମୁଁ ଜାଣି ନାହିଁ। ସେ ବଡ଼ ବିଶ୍ୱସ୍ତ ଥିଲା। ବିଜୟ ଉଲ୍ଲାସରେ ସେ ବାହାରିଗଲା ବୋଧହେଉଛି।'' ଏହା କହି ଯୋନାଥନ ନୀରବ ରହିଲେ। ବୀର ସବୁ ଶୁଣିଲା ପରେ କହିଲେ ''ଭାଇ, ଏତେ ଭୋଗ କଲାପରେ ପୁଣି କଲିକତାକୁ ମନେକରୁଚ ?''

ଯୋନାଥନ କହିଲେ, ''କାହିଁକି ? ସେଠି ଯଦିଚ ମୋର ଏଡ଼େ ଦୁର୍ଦ୍ଦଶା ହେଲା, ଲୋକଙ୍କର ତ ସେଠି କପାଳ ଫିଟେ। ଏମିତି କଣ କଲିକତାର ଗଳି କନ୍ଦି ମୋତେ ଜଣା। ରାତି ବାରଟା ବେଳେ ବୁଲିଦେଇ ଆସିବି। ମୁଁ କିନ୍ତୁ ସୁଖ କରିଥିଲି କଲିକତାରେ I. A. ପଢ଼ିଲାବେଳେ। ସେ ବଡ଼ ସୁଖର ଦିନ ଥିଲା; ଏଥର ଆଉ ଗୋଟାଏ ଚାକିରୀ ଦେଖିବି। ଆଜି ଭାବୁଛି ଜ୍ଞାନେନ୍ଦ୍ର ବାବୁଙ୍କୁ ଖଣ୍ଡେ ପତ୍ରଦେବି। ଦେଖାଯାଉ, କ'ଣ ହେଉଛି।'' ଏହା କହି ପୁଣି ନୀରବ ହେଲେ।

ବୀର ଚିନ୍ତାକରି କହିଲେ ''ଆଚ୍ଛା ଦିଅ, ଦେଖା ଯାଉ। କିନ୍ତୁ ଏଥର ବିଭାହୁଅ। ବିଭା ହେଲେ ଏତେ କଷ୍ଟ ଭୋଗିବ ନାହିଁ।''

ଯୋନାଥାନ୍ ପୁଣି ଟିକିଏ ଛାଡ଼ି କହିଲେ, ''ହେଲେ, ମୁଁ କଲିକତାରେ ବିବାହ କରିବାକୁ ଇଚ୍ଛା କରିଛି। ଯଦି ଅସୁସ୍ଥ ହୋଇ ନଥାନ୍ତି, ତେବେ ଯା' ଭିତରେ ନଳିନୀବାଳାଙ୍କୁ ବିଭା ହୋଇସାରନ୍ତଣି। ତାଙ୍କ ସହିତ ମୋର ପାନପତ୍ର(୧) ହେବାର ଥିଲା। ଏଇ ସମୟରେ ଜ୍ୱରରେ ପଡ଼ିଲି। ସେ କିନ୍ତୁ ବିଭା ହୋଇ ସାରବେଣି। ପିଲାଟି ବଡ଼ ସୁନ୍ଦର। ଏଣ୍ଟ୍ରାନ୍‌ସ (2nd class) ଯାଏ ପଢ଼ିଛି। ବଡ଼ ସୁନ୍ଦର Harmonium ବଜାଏ। ମୋର ସେଠାରେ ଭାରି ଇଚ୍ଛା ଥିଲା। କିନ୍ତୁ ମୋର ଦୁର୍ଭାଗ୍ୟ।'' ଏହା କହି ଦୁଃଖିତ ଭାବରେ କିଛି କ୍ଷଣ ରହିଗଲେ।

ଦିନେ ଦୁଇଦିନ ମଧ୍ୟରେ ବୀରବାବୁଙ୍କ ଗୃହରେ ଯୋନାଥନଙ୍କ କଲିକତା ଯିବା ବିଷୟ ରାଷ୍ଟ୍ର ହୋଇଗଲା। ଯୋନାଥନ ବଡ଼ବାବୁଙ୍କଠାରୁ ପତ୍ର ପାଇଲା। ପୂର୍ବୋକ୍ତ କମ୍ପାନୀରେ କର୍ମ ଖାଲି ନଥିଲା। ଆଉ ଗୋଟାଏ ଟ୍ରାଫିକ୍ ଅଫିସ୍‌ରେ ୪୦ ଟଙ୍କା ବେତନର ଚାକିରୀ ଖାଲି ଥିବାର ସମ୍ବାଦ ପାଇଲା। ଆସନ୍ତା ବୁଧବାର ଦିନ ଗାଡ଼ିରେ କଲିକତା ଯିବାର ସବୁ ସ୍ଥିରହୋଇଗଲା। ଯୋନାଥନ୍‌ର କଲିକତା ଯିବା ଶୁଣି ଗୃହରେ ପ୍ରାୟ ଅଳ୍ପବହୁତେ ସମସ୍ତେ ଦୁଃଖିତ ହୋଇଥିଲେ। କିନ୍ତୁ ଶଶୀର ମନରେ ଭାରି ଦୁଃଖ। ବହୁବର୍ଷ ତଳେ ଶଶୀ, ଯୋନାଥନ

(୧) ନିର୍ବନ୍ଧ

ଓରଫ୍ ଜଗନ୍ନାଥଙ୍କୁ ଭଲପାଉଥିଲା। କିନ୍ତୁ କିଛି ସମ୍ବନ୍ଧ ନ ଥିବାରୁ ଶଶୀ ସେକଥାକୁ ପ୍ରାୟ ପାସୋରି ଦେଇଥିଲା। ସେ ଖୁବ୍ ଭଲ ପଢୁଥିଲା। ଆଜିକାଲି ସେ ମାଇନର ପାଶ୍ କରି ୨୦ ଟଙ୍କା ବେତନରେ କାମକରି ସୁଖରେ ଅଛି। ଥରେ ଥରେ ଜଗନ୍ନାଥ କଥା ତାର ମନେପଡ଼େ। କିନ୍ତୁ ଆକାଶକୁସୁମ ଭାବି ସେ ମନରେ ସ୍ଥାନଦେଇ ନଥିଲା। ଶଶୀ ଚରିତ୍ରବତୀ ଓ ସୁନ୍ଦରୀ। ଫୁଟିଲା ଚମ୍ପାଫୁଲର ରଂଗ, ଗୋଲାପୀ ହାତ ଗୋଡ଼, ପାତଳ ଓଠ ଦରଫୁଟା ଗୋଲାପ ପରି ସୁନ୍ଦର। ଲମ୍ବା ଲମ୍ବା ଆଖି ଦୁଇଠାରେ ସେ ଯାହାକୁ ଥରେ ଚାହିଁଥିବ, ତାର ମନ ପୂରି ଯାଇଥିବ। ବୀରର ପିତାମାତାଙ୍କ ନିକଟକୁ ଆପଣାର ଅତି ଆଦରର ଧର୍ମକନ୍ୟା ଶଶୀପାଇଁ ଅନେକ ପାତ୍ର ଆସୁଥିଲେ ବି ତାଙ୍କ ମନୋନୀତ ନ ହୋଇଥିବାରୁ ବିବାହ ହୋଇ ନଥିଲା। ଶଶୀର ଉପଯୁକ୍ତ ମୂଲ୍ୟ, ତାର ଗୁଣାବଳୀ ତାଙ୍କଠାରୁ ଅଧିକ କେହି ବୁଝି ନଥିଲା। ସେ ଆଦରରେ ତାକୁ 'ଶଶୀମୁଖୀ ରାଜକୁମାରୀ' ବୋଲି କୁହଥିନେ। ଶଶୀ ମଧ୍ୟ ନିଜର ଅତୁଳନୀୟ ରୂପ, ଅସୀମ ସୁନ୍ଦର ଗୁଣ, ପ୍ରାଣଭରା ଭକ୍ତି ଓ ପୂଜାଦ୍ୱାରା ଯେମସ୍ ବାବୁଙ୍କର ଅତିଶୟ ଅନୁଗତା ଓ ପ୍ରିୟପାତ୍ରୀ ଥିଲା। ଗୁଲ୍‌ବଦନୀ ଓ ନିଶାମଣି ବଧୂଦ୍ୱୟ ଶଶୀକୁ ଖୁବ୍ ଭଲପାଉଥିଲେ। ପିଲାମାନେ ଶଶୀର ବଡ଼ ବାଧ୍ୟଥିଲେ। ଜଗନ୍ନାଥ ଆସିଲା ପରେ ଶଶୀ ତାହାର ପ୍ରାଣପ୍ରଣେ ସେବାକରିଛି। ସେ ଯେତେବେଳେ ଶୁଣିଲା, ଜଗନ୍ନାଥ ଖ୍ରୀଷ୍ଟିୟାନ୍ ହୋଇ ଯୋନାଥନ୍ ନାମ ଗ୍ରହଣକରିଛି ଏବଂ ଆଜିପର୍ଯ୍ୟନ୍ତ ଅବିବାହିତ, ଶଶୀ ମନେ ମନେ ଆଶାର ସୌଧ ଗଢ଼ିବାକୁ ଲାଗିଲା।

ତାହାର ମନେହେଲା, ସତରେ ଜଗନ୍ନାଥ ତା'ପାଇଁ ଗଢ଼ା। ଈଶ୍ୱରଙ୍କର ଇଚ୍ଛା ସେ ଜଗନ୍ନାଥର ପତ୍ନୀ ହେବ। କିନ୍ତୁ ଜଗନ୍ନାଥ ସହିତ ଥରେ ଅଧେ କଥା କହିଛି ମାତ୍ର; ବଡ଼ ସଂକୋଚରେ, ହଠାତ୍ ଦରକାର ପଡ଼ିବାରୁ। ସେ ଘୁଣାକ୍ଷରରେ[୧] ଜଗନ୍ନାଥଙ୍କୁ ବୁଝିବାକୁ ଦେଇନାହିଁ ଯେ, ସେ ଜଗନ୍ନାଥକୁ ଭଲପାଏ। ସେ ଅକାତରରେ ଜଗନ୍ନାଥପାଇଁ ରାତି ରାତି ଜାଗିଛି, ପଥ୍ୟ ରାନ୍ଧିଛି। ମରିପଡ଼ି ତାହାପାଇଁ ପରିଶ୍ରମ କରିଛି। କିନ୍ତୁ ନିଜର କୌଣସି ହାବଭାବଦ୍ୱାରା ସେ ଜଗନ୍ନାଥଙ୍କୁ ଜଣାଇ ଦେଇ ନାହିଁ, ତାକୁ ସେ ଭଲପାଏ ବୋଲି। ସେଥିପାଇଁ ସେ ଆଜି ଅନୁତପ୍ତା। ସେ ଶୁଣିଛି, ଯୋନାଥନ କଲିକତାରେ କାମକରି ସେହିଠାର ବିବାହ କରିବ। ଆହା, ସେ କାହିଁକି ଦିନେ ତାର ଅନ୍ତର ଜଗନ୍ନାଥକୁ ଜଣାଇପାରିଲା ନାହିଁ। ଶଶୀ ଜଗନ୍ନାଥକୁ ଅନ୍ନ ପରିବେଷଣ କରେ, ପାନ ଭାଙ୍ଗିଦିଏ, ତାଙ୍କର ବିଛଣା ସଜାଡ଼େ। କିନ୍ତୁ ତାଙ୍କୁ ଦେଖିଲା ମାତ୍ରେ ମୁଣ୍ଡରେ ଲୁଗାଦେଇ ମୁହଁ ଲୁଚାଇ ଘୁଞ୍ଚିଆସେ। ତାଙ୍କଠାରୁ ଲୁଚିରହେ, ଦାଣ ଘରକୁ ସେଥିଲାଗି ପ୍ରାୟ ଯାଏନାହିଁ। କିନ୍ତୁ କାହିଁକି ସେ ଏପରି କଲା? ସେ ଭାବିନେଇଥିଲା, ଜଗନ୍ନାଥ ତାହାର। ତାହାର ସରଳ ବାଳିକା ହୃଦୟରେ ଜଗନ୍ନାଥ ଦେବତାତୁଲ୍ୟ ବିରାଜିତଥିଲେ। ତାଙ୍କର ପୂଜାପାଇଁ ଶଶୀ ସବୁ ଦେଇପାରେ; କିନ୍ତୁ ଲଜ୍ଜାରେ

(୧) ଅଜାଣତରେ, ଏତେଟିକିଏ

ସେ ଦୂରେଇ ରହୁଥିଲା। ସେ ଭାବିଥିଲା - ସେ ଜଗନ୍ନାଥଙ୍କୁ ଭଲପାଉଚି; ତେଣୁ ହୃଦୟରେ କ'ଣ ଟିକିଏ ଆଘାତ ଲାଗି ନଥିବ। ଶଶୀ ଭାବି ଭାବି ବିଭୋର ହୋଇପଡ଼େ। କିନ୍ତୁ ଆଜି ସେଥିପାଇଁ ତାକୁ ବ୍ୟାକୁଳିତାହୋଇ କାନ୍ଦିବାକୁ ପଡ଼ିଲା। ଜଗନ୍ନାଥ ଦ୍ୱାର ସମ୍ମୁଖରେ ବୁଲୁଥିଲେ। ଶଶୀ ରନ୍ଧାଘର ଦ୍ୱାରରେ ବସି ଚାଉଳ ବାଛୁଥିଲା। ହଠାତ୍ ଜଗନ୍ନାଥଙ୍କ ଉପରେ ତାହାର ଦୃଷ୍ଟି ପଡ଼ିବାରୁ ସେ ମୁଣ୍ଡରେ ଲୁଗାଟାଣି ଘରଭିତରକୁ ଉଠିଗଲା।

ଜଗନ୍ନାଥ ଏତେ ଦିନ ଯାଏ କିଛି ମନେକରି ନଥିଲେ। କିନ୍ତୁ ହଠାତ୍ କାହିଁକି କେଜାଣି ଶଶୀକୁ ଦେଖିବା ମାତ୍ରେ ତାଙ୍କର ପୂର୍ବ ଘଟଣା ସବୁ ମନେପଡ଼ିଲା। ସେହି ବର୍ଷା ଦିନରେ ଦାଣ୍ଡ ପିଣ୍ଡାରେ ସାକ୍ଷାତ୍‌ହେବା କଥା ମନେପଡ଼ିଲା। ସେ ଭାବିଲେ, ଶଶୀ କ'ଣ ଆଜିଯାଏ ଅବିବାହିତ ଅଛି ? ସୁବାସୀକୁ ସେ ଦେଖୁ ନାହାନ୍ତି। କାରଣ ସୁବାସୀ, ଭାନୁମତୀ ସହିତ ଯାଇ ଏକବର୍ଷ ହେଲା ସେଠାରେ ରହିଛି। ଭାନୁମତୀର ଏକୁଟିଆ ଘର। ଗୋଟିଏ ପୁତ୍ର ସନ୍ତାନ ହେବା ପରେ, ସେ ରୋଗଗ୍ରସ୍ତ ହେବାରୁ ସୁବାସୀକୁ ପାଖକୁ ନେଇଛି। କିନ୍ତୁ ଶଶୀଟି ତ ଆଜିଯାଏ ଘରେ ରହିଛି। ଜଗନ୍ନାଥ ଶଶୀକୁ ଅନେକବାର ଦେଖିଛନ୍ତି। ସେ ସୁନ୍ଦରୀ, ସୁଚରିତ୍ରା। ଆଉ ଶଶୀର ଗୁଣାବଳୀ, ସେ ବୀର ଓ ତାଙ୍କ ପିତାଙ୍କଠାରୁ ଅନେକ ଶୁଣିଛନ୍ତି। ଆଉ ମଧ ଜଗନ୍ନାଥ ଅକୃତଜ୍ଞ ନୁହନ୍ତି। ସେ ଶଶୀର ଅକ୍ଳାନ୍ତ ସେବା ଓ ଯତ୍ନ ଭୁଲିପାରି ନାହାନ୍ତି। ସେଥିଲାଗି ସେ ଶଶୀକୁ କ'ଣ ଉପହାର ଦେବେ ଭାବୁଥିଲେ। ତାଙ୍କର ତ ପଇସାକର ସମ୍ବଳ ନାହିଁ। ପୁଣି ସେ ଶଶୀକୁ ସୁନାବାଲା ହଳେ ଦେବେ ବୋଲି ମନେକଲେ; ନା, ଏଡ଼େ ଉପକାରୀକୁ ନିଶ୍ଚୟ କିଛି ଦେବେ; କିନ୍ତୁ ଟଙ୍କା ହାତରେ ନାହିଁ। ଧାରକରି ଦେବାଟା ଅତି ଅପସନ୍ଦ କଥା। ସେ ମନେ ମନେ ସ୍ଥିର କଲେ ଯେ, ସେ ଶଶୀକୁ ପଚାରିବେ, ସେ କ'ଣ ଚାହେଁ? କଲିକତାରୁ ସେ ତାହା ପାର୍ଶଲକରି ପଠାଇପାରିବେ। ଏହା ମନେ ମନେ ଭାବି ସେ ସୁଯୋଗପାଇଁ ଅପେକ୍ଷାକରିବାକୁ ଲାଗିଲେ।

ରାତ୍ରି ଆଠଟା ସମୟରେ ସମସ୍ତଙ୍କର ଭୋଜନ ଶେଷହେଲା। ଶଶୀ ଦାଣ୍ଡଘରେ ଜଗନ୍ନାଥଙ୍କର ବିଛଣା ପ୍ରସ୍ତୁତକରିବାକୁ ଗଲା। ଜଗନ୍ନାଥ ପୂର୍ବପରି ବାହାରକୁ ଉଠି ନ ଯାଇ ବସି ରହିଲେ। ବିଛଣା ପ୍ରସ୍ତୁତ ହେଲା ପରେ ଜଗନ୍ନାଥ ଶଶୀ ଆଡ଼କୁ ଚାହିଁ ଅତି ମୃଦୁସ୍ୱରରେ ଡାକିଲେ ''ଶଶି''। ଶଶୀ ଆଶ୍ଚର୍ଯ୍ୟ ଓ ଭୀତ ହୋଇ କହିଲା ''ଆଜ୍ଞା''।

ଜଗନ୍ନାଥ ତାହାର ଶିକ୍ଷିତ, ଭଦ୍ରାଚରଣରେ ତୁଷ୍ଟହୋଇ କହିଲେ, ''ଶଶି, ତୁମେ ମୋର ଅନେକ ଉପକାର କରିଛ, ଦିନରାତି ମୋର ସେବା କରିଅଛ। ତୁମର ପ୍ରାଣପାତ ପରିଶ୍ରମ ମୁଁ କଦାପି ଭୁଲି ପାରିବି ନାହିଁ। କିନ୍ତୁ ମୋତେ ଯେପରି ତୁମେ ନ ଭୁଲ, ସେଥିପାଇଁ ମୁଁ ଗୋଟିଏ ଉପହାର ଦେବାକୁ ସ୍ଥିରକରିଛି। ତୁମେ କ'ଣ ଚାହଁ କହିଲେ, ମୁଁ କଲିକତାରୁ ପଠାଇବି।''

ଶଶୀ ନିରୁତ୍ତର ହେଲା। ସେ କ'ଣ ବା ମାଗିବ ? ସେ ନତମୁଖୀ ହୋଇରହିଲା। ଜଗନ୍ନାଥ ପୁନର୍ବାର ତାହାହିଁ ପଚାରିଲେ। ଶଶୀର ସର୍ବାଙ୍ଗ ଥରିବାକୁ ଲାଗିଲା। ସେ ଜଗନ୍ନାଥଙ୍କ

ମୁଖକୁ ଚାହିଁ ପାରିଲା ନାହିଁ। ତୃତୀୟବାର ଜଗନ୍ନାଥ କହିଲେ '''ଶଶି, କହିବାକୁ ଲଜ୍ଜାକରୁଛ ? ଆଚ୍ଛା, ମୁଁ ନିଜେ ଦେଇଦେବି। ତୁମେ କ'ଣ କାନଫୁଲ ଠାରୁ ଯାରିଂ ପସନ୍ଦକର ନାହିଁ ? ମୁଁ କଲିକତାରୁ ପଠାଇବି, କିଛି ମନେ ନକରି ଗ୍ରହଣକରିବ।''

ଶଶୀର ମନ ବଡ଼ ବିରସ ହୋଇଗଲା, ସାମାନ୍ୟ ସୁନାର ଯାରିଂ ? ଏଇ ତାର ପୁରସ୍କାର ? ଏତେ ପ୍ରେମ, ଏତେ ସ୍ନେହ ବିନିମୟରେ ଏଇ ତାର ପ୍ରତିଦାନ ! ସେ ସହିପାରିଲା ନାହିଁ। ଆବେଗ ଓ ଅଭିମାନରେ ତାର ବିଶାଳ ଆଖି ଦୁଇଟି ଅଶ୍ରୁରେ ଛଳ ଛଳ ହୋଇଉଠିଲା। ସେ ସମ୍ଭାଳି ପାରିଲା ନାହିଁ। କୋହରେ ତାର ବକ୍ଷ ଫାଟିପଡ଼ିବାକୁ ଲାଗିଲା। ହଠାତ୍ ଦୀର୍ଘଶ୍ୱାସ ସହିତ ଦୁଇ ଟୋପାଲୁହ ତା' ଆଖିରୁ ଝରିପଡ଼ିଲା। ଜଗନ୍ନାଥ ଏହା ଦେଖିଲେ। ସେ କେବେ ସାମାନ୍ୟ ଘଟଣାରେ ବିଚଳିତ ହୋଇ ନ ଥିଲେ; କିନ୍ତୁ ଶଶୀର ଅଶ୍ରୁ ସେ ସହିପାରିଲେ ନାହିଁ। ଶଶୀ କ୍ଷୁବ୍‌ଧହୋଇ ସେଠାରୁ ଚାଲିଗଲା। ଜଗନ୍ନାଥ ଦେଖିଲେ, କ୍ଷଣକ ମଧରେ ଶଶୀ ଉଭେଇଗଲା। ଜଗନ୍ନାଥ ବଡ଼ ବିଚଳିତ ହୋଇପଡ଼ିଲେ। ସତେ ଶଶୀକୁ ଅପମାନକଲେ ପରା ! ସତେ ପଦଦଳିତ ଫଣିନୀ ଗର୍ଜି ଉଠିଲା।

ଜଗନ୍ନାଥ ଉଠି ଦାଣ୍ଡକୁ ଗଲେ। ପୋଖରୀ କୂଳ ଆଡ଼େ ବୁଲିବାକୁ ଗ଼ ଲେ। ଦେଖିଲେ ପୋଖରୀ ପାହାଚ ଉପରେ କିଏ ଜଣେ କାନ୍ଦୁଛି। ଅତି କ୍ଷୀଣ କ୍ରନ୍ଦନ ସ୍ୱର ଶୁଭୁଥିଲା; କିନ୍ତୁ ନାରୀର କଣ୍ଠ ! ଜଗନ୍ନାଥ କିଛି ନ ବୁଝି ନିକଟବର୍ତ୍ତୀ ହେଲେ। ଦେଖିଲେ ଶଶୀ, ସେଇ ଅଭିମାନିନୀ ଶଶୀ, ସେଇ ଅଜ୍ଞାତହୃଦୟା ଶଶୀ ! ଜଗନ୍ନାଥ କ'ଣ ଭାବି ଚାହିଁ ରହିଲେ। ସେହି ସୁନ୍ଦରୀ ବାଳିକା ଶଶୀକୁ ଅନାଇଁ ରହିଲେ। ତାହାର ସମସ୍ତ ସୌନ୍ଦର୍ଯ୍ୟ ମଧରେ ସେ ଦେଖିଲେ ଆଶ୍ଚର୍ଯ୍ୟ ଗମ୍ଭୀର ଦେବୀମୂର୍ତ୍ତି। ତାହାର କୋମଳ ହୃଦୟ ଯେପରି ସର୍ବ ସୌନ୍ଦର୍ଯ୍ୟରେ ଗଠିତ। ସେହି ଅଭିମାନିନୀ ଗୋପାଳ ବାଳିକାର ପୂର୍ଣ୍ଣ ସୌନ୍ଦର୍ଯ୍ୟମୟ, ବିଶାଳ, ବିଚିତ୍ର ଚକ୍ଷୁ ମନେପଡ଼ିଲା। ତାହାର ଲଜ୍ଜିତ ଚାହାଣି ମନେ ପଡ଼ିଲା। ଜଗନ୍ନାଥ ଆଶ୍ଚର୍ଯ୍ୟ ହେଲେ, ମୁଗ୍‌ଧହେଲେ। ଆହା, ସେହି ଶଶୀ କାନ୍ଦୁଛି। ଜଗନ୍ନାଥ ଆଉ ସହିପାରିଲେ ନାହିଁ। ତାର ପାଖକୁ ଗଲେ; କିନ୍ତୁ ଶଶୀ ଏହା ଜାଣିପାରିଲା ନାହିଁ, ଚାହିଁଲା ନାହିଁ, ସେ ମୁଖନତକରି କାନ୍ଦିବାରେ ଲାଗିଥାଏ। ତାହାର ଘର୍ମତପ୍ତ ନିଃଶ୍ୱାସ ସତେ ଯେପରି ଜଗନ୍ନାଥର ହୃଦୟକୁ ଦଗ୍‌ଧକରିବାକୁ ଲାଗିଲା। ଜଗନ୍ନାଥ ନତ ହୋଇପଡ଼ିଲେ। କ୍ଷଣକେ ତାଙ୍କର ହୃଦୟ ଶଶୀମୟ ହୋଇପଡ଼ିଲା। ସେ ସବୁ ବିଘ୍ନ, ବିଭେଦ ଭୁଲିଗଲେ। ସେ କେଉଁଠାରେ ଅଛନ୍ତି ଭୁଲିଗଲେ। ସେ ଶଶୀକୁ ବକ୍ଷସ୍ଥଳକୁ ଟାଣିଆଣିଲେ। ହଁ, ଜଗନ୍ନାଥ ବୁଝିପାରିଛନ୍ତି, ଶଶୀ ତାଙ୍କୁ ହିଁ ଚାହେଁ। ସେ ସୁନା ଯାରିଂ ଚାହେଁ ନାହିଁ। ଭାବି ଭାବି ଜଗନ୍ନାଥ ଲଜ୍ଜିତହେଲେ। ତାହାର ସମସ୍ତ ପ୍ରେମର ପ୍ରତିଦାନରେ ଜଗନ୍ନାଥ ସେ ସୁନ୍ଦରୀକୁ କ'ଣ ଦେବେ ? ସେ ତାହାକୁ ବକ୍ଷକୁ ଆଣିଲେ। ତା'ର ରୋରୁଦ୍ୟମାନ ମୁଖମଣ୍ଡଳକୁ ଲୁଗାକାନିରେ ପୋଛିଦେଲେ। ଆଉ ଏକ ମୁହୂର୍ତ୍ତ, କ'ଣ କଲ

ଜଗନ୍ନାଥ, ହାୟ କ'ଣ କଲ? ଜଗନ୍ନାଥ ଶଶୀର ମୁଖରେ ଚୁମ୍ବନକଲେ। ଶଶୀ ହାତରେ ସ୍ୱର୍ଗର ଚାନ୍ଦ ପାଇଲା। ସେ ଜଗନ୍ନାଥର କୋଳରେ ଢଳିପଡ଼ିଲା। ଆଜି ତାହାର ସମସ୍ତ ବେଦନାର ଅବସାନ ହୋଇଛି; କିନ୍ତୁ ମୁଖ ଫିଟିଲା ନାହିଁ। ଶଶୀ ପୂର୍ବବତ୍ ମୂକ ଓ ବଧିର।

ଜଗନ୍ନାଥ ଉଠିଗଲେ। ଶଶୀର ଆତ୍ମଜ୍ଞାନ ଉଦୟହେଲା। କ୍ଷୋଭ ଓ ଲଜ୍ଜାରେ ତାହାର ସର୍ବାଙ୍ଗ ରୋମାଞ୍ଚିତ ହୋଇଉଠିଲା। ସେ ଜଗତକୁ ଘୂର୍ଣ୍ଣାୟମାନ ଦେଖିଲା। ସାରା ଜଗତଟା ତାହାର ନିକଟରେ ଏକ ଅପୂର୍ବ ଭୟାନକ ରହସ୍ୟମୟ ବୋଧହେଲା। ଆକାଶକୁ ଅନାଇ ଦେଖିଲା, ସେଠାରେ ଜଗନ୍ନାଥଙ୍କର ଛବି, ପୁଷ୍କରିଣୀର ଗଭୀର ସ୍ୱଚ୍ଛ ଜଳରେ ମଧ୍ୟ ଜଗନ୍ନାଥ, ହୃଦୟ ଭିତରେ ଦେବତାର ଆସନରେ ଉପବିଷ୍ଟ ସେ; ତାହାର ଜଗନ୍ନାଥ -



## ସପ୍ତମ ପଟ

୪୫ ନମ୍ବର ଧର୍ମ୍ମତାଲା ଷ୍ଟ୍ରିଟ୍ ଘର। ଘରଟି ଏକ ତଳ ବିଶିଷ୍ଟ। ଦ୍ୱାର ସମ୍ମୁଖରେ ଗୋଟିଏ ୭ମ ବର୍ଷୀୟା ବାଳିକା ଦୁଇଟି କ୍ଷୁଦ୍ର ବାଳିକାଙ୍କ ସଂଗେ ଖେଳୁଅଛି। ବାଳିକାଟିର ଚେହେରା ବେଶ୍ ସୁନ୍ଦର। ପାତଳ ଶରୀର। ଅପେକ୍ଷାକୃତ ଲମ୍ବା ମୁଖ। ସରୁ ସରୁ ଲମ୍ବ ଲମ୍ବ ଆଖି। ଦ୍ୱିତୀୟା ଚନ୍ଦ୍ରପରି ଶୁଭ୍ର। ସରୁ ନାକ। ବର୍ଣ୍ଣ ଗୌରଶ୍ୟାମ। ଓଠ ଦୁଇଟି ଖୁବ୍ ପତଳା। ଛୋଟ ଛୋଟ ହାତ ଗୋଡ଼। ସରୁ ସରୁ ଅଙ୍ଗୁଳି। ସୁନ୍ଦର ଦନ୍ତପନ୍ତି। ଠିକ୍ ମୁକ୍ତା ପରି। ଅନ୍ୟ ଦୁଇଟି ବାଳିକାଙ୍କ ମଧ୍ୟରେ ଜଣେ ଦୁଇ ବର୍ଷର ଶିଶୁକନ୍ୟା। ଅପରଟିର ବୟସ ପଞ୍ଚବର୍ଷ ହେବ। ସେ ଦୁଇଜଣ ଦେଖିବାକୁ ବଡ଼ଠାରୁ ଅଧିକ ସୁନ୍ଦର ଓ ଗୌରବର୍ଣ୍ଣ।

ବାଳିକା ତିନୋଟି ଚୀନାମାଟିର କଣ୍ଢେଇ ଓ ବାସନ ନେଇ ଭାତ ରନ୍ଧାରନ୍ଧିରେ ବ୍ୟସ୍ତ। ପରସ୍ପର ଭିତରେ ମିଛିମିଛିକା ବିଭାଘରର ଆୟୋଜନ। ପୁଅ ସହିତ ଝିଅର ବିଭା ହେବାରେ ବ୍ୟସ୍ତ। ଭୋଜିର ଆୟୋଜନ ପାଇଁ ଇତସ୍ତତଃ ଚାଉଳ, ଡାଲି ଓ ଲୁଣ ପଡ଼ିଛି। ଏତେ ତେଣେ ଖାଲି ଦିଆସିଲ ବାକ୍ସ ବିଛାଡ଼ିହୋଇ ପଡ଼ିଛି। ଟିକିଟିକି ଛିଣ୍ଡା କନା, ଛୋଟ ଛୋଟ କୁର୍ତ୍ତା, ସାୟା, ସେମିଜ ଇତ୍ୟାଦି ତଳେ ପଡ଼ିଛି। ସେ ସବୁ ଯତ୍ନରେ ସଜଡ଼ାସଜଡ଼ି ଲାଗିଛି। ବଡ଼ ବାଳିକା ଦୁଇଟିର ସ୍ୱଭାବ ବେଶ୍ ଶାନ୍ତି। କିନ୍ତୁ ସବୁଠାରୁ ସାନଟି କ୍ଷଣେ କ୍ଷଣେ ଏଣେ ତେଣେ ଗୁରୁଣ୍ଡି ଗୁରୁଣ୍ଡି ଏଇଟା ସେଇଟା ଧରି ବଡ଼ ଭଉଣୀମାନଙ୍କୁ ବିରକ୍ତକରିବାରେ ଲାଗିଛି। ସେମାନଙ୍କର ଅତି ଯତ୍ନର ସଂସାରଟିକୁ ମାଟି କରିବାରେ ଲାଗିଛି।

ବଡ଼ଟିର ନାମ ଲୀନା। ହେମଲତା ଓ ଲୀନା ବର୍ତ୍ତମାନ ପରସ୍ପରର ସମ୍ମୁଦୁଣୀ। ଲଳିତାର ପୁଅ, ହେମଲତାର ଝିଅ। ହେମ ସେଥିପାଇଁ କନ୍ୟାର ସାଜସଜ୍ଜା ନେଇ ବ୍ୟସ୍ତ। କନ୍ୟାଟି ରୀତିମତ ପୋଷାକ ପିନ୍ଧି କ୍ଷୁଦ୍ର ସାଗୁଆନ କାଠ ନିର୍ମିତ ସୁଆରିରେ ବସିଲାଣି। ବରର ସାଜ ଆରମ୍ଭହେଉଛି। ଲଳିତା ବରଟିକୁ ହାତରେ ଧରି ବୋହୂକୁ କଣ ଦେବବୋଲି ହେମ ସହିତ

ବିଚାର କରୁଛ। ହେମ ମାଗୁଛି ସୁନାଚୁଡ଼ି। ନିଜେ ସୁନା ବାଲା[୧] ହଲେ ଦେଉଛି। ଏପରି ସମୟରେ ହଠାତ୍ ଦୁଷ୍ଟ ବନଲତା (ସାନଟି) ଗୁରୁଣ୍ଡି ଗୁରୁଣ୍ଡି ଆସି ବାକ୍ସ ସୁଆରି ମଧ୍ୟରୁ କନ୍ୟାଟିକୁ ଟେକି ନେଇଗଲା। ଏଣେ ହେମ ମହାବ୍ୟସ୍ତ ହୋଇ ବନଲତା ପଛରେ ଧାଇଁଛି। ମନ କିନ୍ତୁ ଶୁଣୁନାହିଁ। ପଛକୁ ବି ଚାହୁଁ ନାହିଁ। ସବନେ କନ୍ୟାଟିକୁ ହାତରେ ଚାପିଧରି ଆନନ୍ଦରେ କୁହାଟମାରି ହସୁଛି। ସତେ ଯେପରି ସେ ରାଜ୍ୟ ଜୟ କରି ଆଣିଛି।

ବଡ଼ କଷ୍ଟରେ ଲଳିତା ଆସି ବନଲତା ହାତରୁ କନ୍ୟାଟିକୁ ଉଦ୍ଧାରକଲା। ସେତେବେଳକୁ ତାର ବେଶଭୂଷା ସବୁ ଟଣା ଓଟରା ହୋଇସରିଲାଣି। ସତେ ଯେପରି କିଛି ଗୋଟାଏ ବଡ଼ ଦୁଃଖ ଘଟିଯାଇଛି। ହେମ ବଡ଼ବ୍ୟସ୍ତ ହୋଇ ପୁଣି କନ୍ୟାକୁ ସଜାଡ଼ିବାରେ ଲାଗିଛି। କିନ୍ତୁ ଏଣେ ପୁଣି ଦୁଷ୍ଟ ବନଟା ଗୁରୁଣ୍ଡି ଗୁରୁଣ୍ଡି ଯାଇ ଲଳିତା ଓ ହେମର ସବୁ ମେଲାହୋଇଥିବା ଜିନିଷପତ୍ର ଟାଣିଟୁଣି ଏକବାର ଲଣ୍ଡ ଭଣ୍ଡ କରିଦେଲା। ଏଇଟା ଛଡ଼ାଇଲେ ସେଇଟା ନେଇ ପଳାଉଛି। ଲୀଳା ଓ ହେମ ବଡ଼ ଧନ୍ଦାରେ[୨] ପଡ଼ିଗଲେ। ଶେଷକୁ ହେମ ପିତୁଳା ଥୋଇଦେଇ ଦୁଷ୍ଟା ବନକୁ ବଳପୂର୍ବକ କାଖରେ ଚାପିଧରିଲା। ତାପରେ ସବୁ ଖେଳନା ସାଉଁଟିବାରେ ଲାଗିଲା। ଆଜି ତାଙ୍କର ମହା ସମାରୋହରେ ବିଭାଘର ଏଇଠି ଶେଷ। କିନ୍ତୁ ବନ ଚୁପ୍ ହେଲାନି। ସେ ଚିତ୍କାରକରି କାନ୍ଦି ଘର ଫଟାଇବାକୁ ଲାଗିଲା। ତାହାର କ୍ରନ୍ଦନ ଧ୍ୱନିରେ ଭିତର ଘରୁ ଜଣେ ସ୍ତ୍ରୀ ଲୋକ ଦୌଡ଼ିଆସିଲେ। ସେମାନଙ୍କର ଅବସ୍ଥା ଦେଖି ଘଟଣାଟି ବୁଝିବାକୁ ତାଙ୍କୁ ମୁହୂର୍ତ୍ତେ ମାତ୍ର ବିଳମ୍ବ ହେଲାନି। ସେ ବନକୁ ହେମ କୋଳରୁ ନିଜ କୋଳକୁ ନେଇ ତାକୁ ତୁନିକଲେ[୩]। ପରେ ହେମ ଓ ଲଳିତାକୁ ସମସ୍ତ କଣ୍ଢେଇ ଦେଇ ଦେଇ ଭିତରକୁ ଆସିବାକୁ ଆଦେଶ ଦେଲେ। ସେତେବେଳକୁ ସମୟ ପାଞ୍ଚଟା। ଲଳିତା ଓ ହେମ ସ୍କୁଲରୁ ଫେରି ଖେଳୁଥିଲେ। ସମସ୍ତେ ଭିତରକୁ ଗଲାପରେ ମାତା କନ୍ୟାମାନଙ୍କୁ ମୁଖ ପ୍ରକ୍ଷାଳନ କରାଇ ସଫା ଫ୍ରକ୍ ଜୋତା, ମୋଜା ଇତ୍ୟାଦି ପିନ୍ଧାଇ ଦେଲେ। କେବଳ ବନକୁ କୌଣସି ସାଜସଜ୍ଜା କଲେ ନାହିଁ।

ପିଲାମାନଙ୍କର ଧନ୍ଦା[୪] ସରୁଣୁ ଶ୍ରାନ୍ତକ୍ଳାନ୍ତ ଶରୀରରେ ଯୋନାଥନ୍‌ବାବୁ ଅଫିସ୍‌ରୁ ଆସିଲେ। ଜ୍ୟୋଷ୍ଠାକନ୍ୟା ଲଳିତା ପିତାଙ୍କ ନିକଟକୁ ଦୌଡ଼ିଯାଇ ପକେଟ୍‌ମାନଙ୍କରେ ହାତ ପୂରାଇ ମୁଦ୍ରା ଅନ୍ୱେଷଣ କରିବାକୁ ଲାଗିଲା। କିନ୍ତୁ ସେ ବଡ଼ ସାବଧାନରେ ପିତାଙ୍କୁ ବିରକ୍ତ ନକଲା ପରି କାମ କରୁଥାଏ। ଯୋନାଥନ୍ ନତ ହୋଇ ଲଳିତାକୁ ଚୁମ୍ବନକଲେ। ଲଳିତା ଆନନ୍ଦରେ ପିତାର ଗଳାଧରି ପକାଇଲା। ହେମ ଲଳିତାର ଆଦର ବୋଧହୁଏ ସହିପାରିଲା ନାହିଁ। ସେ ମଧ୍ୟ ଦୌଡ଼ି ଆସି ''ବାବା ମୋତେ ମୋତେ'' କହି ମୁହଁ ବଢ଼ାଇଦେଲା। ଯୋନାଥନ୍ ତାକୁ ଗୋଟିଏ ଚୁମ୍ବନଦେଲେ। ହେମର ମନେହେଲା ମିଠାଇ ବଣ୍ଟା ହେଉଛି।

(୧) ବଳା, ହାତର ଅଳଂକାର ବିଶେଷ (୨) ସମସ୍ୟା, (୩) ନିରବ, ଚୁପ କରାଇବା, (୪) କାମ।

ଏହା ଭାବି ସେ ମଧ୍ୟ ଉପରକୁ ଚାହିଁ ଚାହିଁ ଗୁରୁଣ୍ଡି ଗୁରୁଣ୍ଡି ଆସି ପିତାଙ୍କ ଗୋଡ଼ତଳେ ହାଜରହେଲା। ଯୋନାଥନ୍ ବାବୁ ନଇଁପଡ଼ି ତାକୁ ଉଠାଇ କୋଳକୁ ନେଇ ଅଜସ୍ର ଚୁମ୍ବା ଦେବାକୁ ଲାଗିଲେ। ବ୍ୟସ୍ତ ହୋଇ ଲଳିତାର ମାତା ସ୍ୱାମୀଙ୍କୁ ଶାସନ କରିବାକୁ ଲାଗିଲେ - ''ଛାଡ଼, ତାକୁ ଓହ୍ଲାଇ ଶୀଘ୍ର ଲୁଗା ବଦଳାଇ ଆସ। ସାରାଦିନ ଖଟି ଖଟି ଦେହ କଳା ପଡ଼ିଗଲାଣି। ଥାଉ, ପରେ ଖେଳକରିବ।''

ସ୍ୱାମୀ ସ୍ନେହରେ କହିଲେ - ''ତୁମର କ'ଣ ଗଲା? ତୁମେ ସାରାଦିନ ଖାଲି ଖେଳ କରୁଥିବ। ମୁଁ ଘଣ୍ଟାଏ କଲେ ସହିହେଉ ନାହିଁ।'' ଏହା କହି ବନକୁ ଅନାଇ କହିଲେ, ''ଦେଖିଲୁ ମାମି, ତୋ ମା' ମୋତେ ହିଂସା କରୁଛି।'' ବନ କିଛି ବୁଝିଲା କି ନାହିଁ - ଆହୁରି ଦୃଢ଼ ରୂପେ ପିତା କୋଳରେ ଆଉଜିରହିଲା।

ଶଶୀ ନିକଟକୁ ଆସି ବନକୁ ଛଡ଼େଇ ନେଇ କହିଲା - ''ଭାରି ଖେଳ ବୋହିଯାଉଚି। କଣ କହିବି ଆଉ।''

ଯୋନାଥନ୍ ଶଶୀର ହାତ ଧରି ପକାଇଲେ। ଗଭୀର ପ୍ରେମରେ ଶଶୀର ଦୁଇ ଆଖି ଯୋନାଥନ୍‌ର ଦୁଇ ଆଖିରେ ନିବଦ୍ଧହେଲା। ଯୋନାଥନ୍ ମୋହିତ ହୋଇ ଶଶୀର ହାତ ଚାପି ଧରିଲେ।

ଆଜି ଯୋନାଥନ୍ ଆଉ ପୂର୍ବର ଜଗନ୍ନାଥ ନୁହଁନ୍ତି। ଆଜି ସେ ମିଃ ଯୋନାଥନ୍ ପାତ୍ର। ଅଫିସ୍‌ର ବଡ଼ ବାବୁ। ଶହେ ପଚାଶ ଟଙ୍କା ବେତନରେ କାମକରନ୍ତି। ଉପରି ପ୍ରାୟ ମାସିକ ପଚାଶ ଷାଠିଏ ଟଙ୍କା ରୋଜଗାର ହୁଏ। ଯୋନାଥନ୍‌ବାବୁ କର୍ମ କୁଶଳ, ଉଦ୍‌ଯୋଗୀ ଓ ସତ୍ୟବାଦୀ। ସେଥିପାଇଁ ଅଫିସ୍‌ର ସାହେବ ତାଙ୍କୁ ବଡ଼ ଭଲପାଆନ୍ତି। ପଚାଶ ଟଙ୍କା ବେତନ ମଧ୍ୟରୁ ନଅବର୍ଷ ମଧ୍ୟରେ ସେ ଟ୧୫୦/- ବେତନକୁ ଉଠିଅଛନ୍ତି। ସାହେବର ତାଙ୍କଠାରେ ବଡ଼ ବିଶ୍ୱାସ। ସବୁ ଭାର ତାଙ୍କ ଉପରେ। ଯୋନାଥନ୍ ବାବୁ ବଡ଼ ବିଶ୍ୱସ୍ତ। ସେ ବଡ଼ ବିଶ୍ୱସ୍ତ ଭାବରେ ଅଫିସର୍ କାମ ଚଳାଇ ନେଉଅଛନ୍ତି। ସାହେବ ତାଙ୍କର ବଡ଼ ପ୍ରଶଂସାକରନ୍ତି।

ଶଶୀ ଲଜ୍ଜାରେ ତଳକୁ ଅନାଇଁ କହିଲା - ''ହାତ ଛାଡ଼।'' ଯୋନାଥନ୍ ଆହୁରି ଦୃଢ଼ଭାବେ ଧରିରଖି କହିଲେ - ''ମୁଁ ଛାଡ଼ିବି ନାହିଁ। କଣ କରିବ କର।''

ଶଶୀ ବ୍ୟସ୍ତ ହୋଇ ହାତ ଛଡ଼ାଇବାକୁ ଚେଷ୍ଟାକଲା। ଯୋନାଥନ୍ ହାତ ଛାଡ଼ିଦେଇ, ଲୁଗା ବଦଳାଇବାକୁ ଉପକ୍ରମକଲେ। ଶଶୀ ଜଳଖିଆ ଇତ୍ୟାଦି ପରିବେଷଣକଲା। ଯୋନାଥନ୍ ଓ ପିଲାମାନେ ଟେବୁଲ୍‌ରେ ଆସି ବସିଲେ। ଉପଯୁକ୍ତ ପରିବେଷଣ ପରେ ସମସ୍ତଙ୍କୁ ତୃପ୍ତକରି ଶଶୀ ସାନ୍ଧ୍ୟ ଭ୍ରମଣକୁ ପଠାଇଦେଲା। ଯୋନାଥନ୍‌ବାବୁ ଶଶୀ ହସ୍ତରୁ ପାନନେଇ ଆଉ ଥରେ ସେହି ସୁନ୍ଦର କୋମଳ ମୁଖକୁ ପ୍ରେମବିଭୋର ନେତ୍ରରେ ଅନାଇଲେ। ତାପରେ ପିଲାମାନଙ୍କ ହାତଧରି ବାହାରକୁ ବାହାରିଗଲେ।

ଆଜିକାଲି ଶଶୀର ପୂର୍ବ ଚେହେରା ଆହୁରି ସୁନ୍ଦର ହୋଇଉଠିଛି। କିନ୍ତୁ ଯୌବନ ସୁଲଭ ତରୁଣ ମାଧୁରୀ ବଦଳେ ବୟସ୍କା ତରୁଣୀ ସୁଲଭ ଶାନ୍ତ, ଧୀର, ବିଚକ୍ଷଣ ଓ ବିବେକୀ ଦିଶୁଅଛି। ଶଶୀ ଖୁବ୍ ଅଳ୍ପ କଥା କହେ। ସଦା ଗମ୍ଭୀର; କିନ୍ତୁ ଯେତେବେଳେ ଅଲକ୍ଷରେ ସ୍ୱାମୀର ମୁଖକୁ ଅନାଏ, ଯୋନାଥନ୍ ଭାବନ୍ତି, ବୋଧହୁଏ ସଂସାରରେ ତାଙ୍କଠାରୁ ଭାଗ୍ୟବାନ୍ ଆଉ କେହି ନାହିଁ। ଶଶୀ ପରି କର୍ମକୁଶଳା, ଗୁଣବତୀ ଓ ରୂପବତୀ ଭାର୍ଯ୍ୟା ପାଇ ଯୋନାଥନ୍‌ଙ୍କ ମନ ଗଭୀର ପରିତୃପ୍ତିରେ ପୂରି ଆସେ।

ଦିନେ ଦିନ ଗୋଟାକ ସମୟରେ ଯୋନାଥନ୍ ଅଫିସ୍‌ରୁ ଫେରି ତିନିଜଣ ବୃଦ୍ଧ ଅତିଥି ସହିତ ଗୃହରେ ପ୍ରବେଶକଲେ। ଶଶୀ ଏଥିରେ ସ୍ୱାମୀଙ୍କ ଉପରେ ଏତେ ଟିକେ ବି ବିରକ୍ତ ନ ହୋଇ ଅତିଥି ତ୍ରୟଙ୍କର ଯଥାରୀତି ସତ୍କାର କରିବାକୁ ଲାଗିଲେ। ସେମାନେ ବିଦାୟ ନେଲାପରେ ଯୋନାଥନ୍ ଶଶୀକୁ ପଚାରିଲେ - ''ତିନିଜଣଙ୍କ ପାଇଁ କିପରି ଅନ୍ନ ହୋଇଗଲା।'' ଶଶୀ ସହାସ୍ୟ ବଦନରେ କହିଲା - ''ତୁମର ସେ କାରବାର ଶିଖିବାକୁ ଇଚ୍ଛାହେଲାଣି ଦେଖୁଛି। ମୋର ଲାଭତକ ଏଣିକି ମାରାପଡ଼ିବ ପରା!''



## ଅଷ୍ଟମ ପଟ

ଲଳିତାର ବୟସ ବଢୁଚି। ବୟସ ସଂଗେ ସଂଗେ ବୁଦ୍ଧି ଓ ବିବେକ ମଧ ବଢୁଚି। ଲଳିତାର ବୟସ ବର୍ତ୍ତମାନ ୧୪ ବର୍ଷ। ସେ ତରୁଣୀ, ଯୁବତୀ। କୋମଳ ତାର ଦେହର ଗଠନ। ଦେହରେ ସୌନ୍ଦର୍ଯ୍ୟର ଲହଡ଼ି। ମାତାପରି ସେ ଅତୁଳନୀୟ ସୁନ୍ଦରୀ ନୁହେଁ। କିନ୍ତୁ ଦେଖିବାକୁ ବେଶ୍। ତା'ର ଯୌବନସୁଲଭ ସୌନ୍ଦର୍ଯ୍ୟ ଓ ଲଜ୍ଜା ଅରୁଣିମ ମୁଖମଣ୍ଡଳ ବଡ଼ ସୁକୁମାର। ଲଳିତା ଇଂରାଜୀ ସ୍କୁଲ୍‌ରେ ପଢ଼େ। ସବୁ ବିଷୟରେ ଶ୍ରେଣୀରେ ସେ ଉଚ୍ଚସ୍ଥାନ ଅଧିକାରକରୁଚି। ସ୍କୁଲର ଶିକ୍ଷୟତ୍ରୀମାନେ ତାକୁ ବଡ଼ ଆଦରକରନ୍ତି। ତାର ସ୍ୱଭାବ ଚରିତ୍ର ଶାନ୍ତ ଓ ଗମ୍ଭୀର। ମାତାପରି ସେ ବିଚକ୍ଷଣ ଅଥଚ ସୁଶୀଳ ଓ ନମ୍ର। ଲଳିତା ସିଲାଇ ଶିଖିଚି। ଗାନବାଦ୍ୟ ଶିଖିଚି। କୋକିଳପରି କଣ୍ଠ ମଧୁର ଓ ଅନୁପମ। ମାତାଠାରୁ ସୁଶିକ୍ଷାପାଇ ସର୍ବୋପରି ସେ ଗୃହ କର୍ମରେ ପାରଦର୍ଶିନୀ।



## ନବମ ପଟ

ସଂସାରରେ କିଏ କାହାର? ଯୋନାଥନ୍‌ର ବିପୁଳ ସ୍ନେହ, ଗଭୀର ପ୍ରେମ, ହୃଦରର ସମସ୍ତ ଅକପଟ ପୂଜା ଶଶୀକୁ ଆବଦ୍ଧକରି ରଖିପାରିଲା ନାହିଁ। ଆଜି ଶଶୀ ମୃତ୍ୟୁ ଶଯ୍ୟାଗତା। ଦିନ ନାହିଁ, ରାତ୍ରି ନାହିଁ, ଅକ୍ଳାନ୍ତ ପରିଶ୍ରମରେ ଯୋନାଥନ୍ କ୍ଷୀଣ୍ ହେଲେଣି। ଅଜସ୍ର ଅର୍ଥ ବ୍ୟୟହେଲାଣି। କିନ୍ତୁ ଦିନ ପରେ ଦିନ ଯାଉଛି। ଶଶୀର ଅବସ୍ଥା ଭୟଙ୍କର। ଯୋନାଥନ୍

ବୁଝିଲେ - ଆଉ ଆଶା ରଖି ହେବନି। ଅନନ୍ୟୋପାୟ ହୋଇ ବୀରବାବୁଙ୍କୁ ଟେଲିଗ୍ରାମ୍ କରି ଡାକିପଠାଇଲେ। ବୀର ଶୁଣି ବିଳମ୍ବ ନ କରି ଆସିଲେ।

ଦିବା ଦ୍ୱିପ୍ରହର। ଯେଉଁ ଘରେ ଶଶୀ ଶଯ୍ୟାଗତା, ସେଠାରେ ବୀର ଓ ତାଙ୍କ ସ୍ତ୍ରୀ ଗୁଲ୍‌ବଦନୀ ଆସି ପାଦଦେଲେ। ପାଠକ ମହାଶୟ, ଥରେ କେହି ଘରର ଅବସ୍ଥା ଦେଖିବାକୁ ଇଚ୍ଛାକରନ୍ତି କି? ତେବେ ଆସନ୍ତୁ, ବୀରବାବୁ ଓ ତାଙ୍କ ସ୍ତ୍ରୀଙ୍କ ସହିତ ଗୃହପ୍ରବେଶ କରନ୍ତୁ।

ପ୍ରକୋଷ୍ଠଟି ଆୟତନରେ ବଡ଼; ବାୟୁ ଚଳାଚଳ ପକ୍ଷରେ ତେତେ ସୁବିଧା ନାହିଁ। କଲିକତାର ଅନେକଘର ଏହିପରି। ଗୃହରେ ରୋଗୀର ବ୍ୟବହାର୍ଯ୍ୟ ବସ୍ତୁ ଛଡ଼ା ପ୍ରାୟ ଅନ୍ୟ କୌଣସି ବସ୍ତୁ ନାହିଁ। ଗୃହର ଏକପାର୍ଶ୍ୱରେ ପଲଙ୍କ ଉପରେ ଶଶୀ ଶଯ୍ୟାଶାୟିନୀ। ଅଙ୍ଗ ପାଣ୍ଡୁର ଦିଶୁଛି। ଦେହ ଅସ୍ଥିସାର। ମୁଖ ବଡ଼ ମଳିନ। ମୁହଁରେ ବେଦନାର ଚିହ୍ନ ସ୍ପଷ୍ଟ ଅଙ୍କିତ। ଚକ୍ଷୁ ଅର୍ଦ୍ଧମୁଦ୍ରିତ; କିନ୍ତୁ ଭାବହୀନ। ପ୍ରଶାନ୍ତ ଲଲାଟରେ କାଳିମାର ରେଖା ପଡ଼ିଲାଣି।

ବୀର ବାବୁ ବିସ୍ମିତ ଭାବରେ ଚାହିଁ ରହିଲେ। ଏହି ସେହି ମୁଖ; ଏକ ସମୟରେ ସୌନ୍ଦର୍ଯ୍ୟର ଲୀଳାଭୂମି ଥିଲା। ଏହି ସେହି ମୁଖ, ଯାହା ଦେଖି ଜଗନ୍ନାଥ ମୋହିତହୋଇଥିଲେ। ଏହି ସେହି ମୁଖ, ଲଳିତାର ଆଦରିଣୀ ଜନନୀର ପ୍ରଶାନ୍ତ ଗମ୍ଭୀର, କରୁଣ ମୋହନ ମୁଖ। ଶଶୀର ଚେତନା ନ ଥାଏ। ଏକ ପାର୍ଶ୍ୱରେ ଲଳିତା, ପାଦ ନିକଟରେ ହେମ। ନିକଟରେ ଚୌକି ଉପରେ ବିନୋଦ। ଶଶୀର ଅବସ୍ଥା ଖରାପହେବାର ଶୁଣି ବିନୋଦ ତାହାଙ୍କୁ ଦେଖିବାକୁ ଏବଂ ଯୋନାଥନ୍ ବାବୁଙ୍କୁ ସାହାଯ୍ୟ କରିବାକୁ ଥରେ ଦୁଇଥର ଆସିଲେଣି। ଯୋନାଥନ୍ ବାବୁ ଅତିରିକ୍ତ ଦୁଃଖରେ ଆତ୍ମହରା। ତାହାଙ୍କର ଭଦ୍ରାଭଦ୍ର ବିଚାର ନାହିଁ। ଏତେବେଳେ ସହାନୁଭୂତିକାରୀଙ୍କୁ ସେ ପରମ ମିତ୍ର ମନେକରୁଅଛନ୍ତି। ସେଥିପାଇଁ ବିନୋଦପାଇଁ ବର୍ତ୍ତମାନ ଦ୍ୱାର ତାଙ୍କର ଅବାରିତ। ବିନୋଦ ମଧ ପ୍ରାଣପ୍ରଣେ ସାହାଯ୍ୟକରି ବନ୍ଧୁତ୍ୱର ପରିଚୟ ଦେଉ ଅଛନ୍ତି। ବିନୋଦର ଗୁଣାବଳୀର ଯୋନାଥନ୍ ବାବୁ ପରମ ପ୍ରୀତ ଏବଂ ଲଳିତା ମୁଗ୍ଧା।

ଲଳିତାର ଦୁଃଖ ଅପରିସୀମ। ତାହାର ମାତୃଭକ୍ତିପୂର୍ଣ୍ଣ ହୃଦୟରେ ମାତାର ଦାରୁଣ ଅବସ୍ଥା ସାତିଶୟ କଷ୍ଟକର ବୋଧହେଲା। ବାଲ୍ୟକାଳରୁ ମାତାର ପରମ, ପବିତ୍ର, ଗମ୍ଭୀର ସ୍ୱଭାବର ସୌନ୍ଦର୍ଯ୍ୟରେ ସେ ମୁଗ୍ଧହୋଇ ତାହାଙ୍କୁ ଦେବୀତୁଲ୍ୟ ପୂଜାକରୁଥିଲା, ତାହାର ମାଆ, କୋଟିକରେ ଗୋଟିଏ। ମୁଖମଣ୍ଡଳ ଆଜି ବିବର୍ଣ୍ଣ, ଜ୍ୟୋତିହୀନ। ଚକ୍ଷୁରେ କଟାକ୍ଷ ନାହିଁ। ଶରୀର ଚେତନାହୀନ। ପାଖରେ ବସି ଲଳିତା ରୋଦନକରୁଅଛି ଏବଂ ନାନା କଥା ଭାବୁଅଛି। ତା ମାଆର ପ୍ରତ୍ୟେକଟି କଥା ଆଜି ତା ମନେପଡ଼ୁଛି। ପିଲାଙ୍କୁ ମାଆ କିପରି ସେମାନଙ୍କୁ ଲାଳନପାଳନ କରୁଥିଲା, କେତେ କଷ୍ଟସହି, କେତେ ରାତି ଅନିଦ୍ରାହୋଇ ସେମାନଙ୍କର ସେବାକରିଅଛି। କାହାର ସାମାନ୍ୟ ପୀଡ଼ା ହେବାମାତ୍ରେ ମାଆର ଭାବନାର ଅନ୍ତ ନ ଥାଏ। ଦିବାରାତ୍ର ଯତ୍ନ, ଅକ୍ଳାନ୍ତ ସେବା। ଲଳିତା ଗୋଟିକ ପରେ ଗୋଟିଏ ସ୍ମରଣ କରିବାକୁ ଲାଗିଲା।

ସବୁ ପୂର୍ବ ଘଟଣା ଆଜି ଅତି ଅତର୍କିତ ଭାବରେ ମନେପଡ଼ୁଛି। ତା'ର ଚକ୍ଷୁ ସମକ୍ଷରେ ଅଗଣିତ ପୂର୍ବସ୍ମୃତି ଚିତ୍ରିତ ପଟପରି ଭାସିବାକୁ ଲାଗିଲା। ଲଳିତାର କୋମଳ ହୃଦୟ ଦୁଃଖରେ କାତରହେଲା। ସେ ବୁଝିପାରିଚି– ମାଆର ଜୀବନ ଆଉ ଅଳ୍ପ ମାତ୍ର ବାକି ଅଛି। ତଥାପି ଈଶ୍ୱରଙ୍କ ଉପରେ ତା'ର ଦୃଢ଼ ବିଶ୍ୱାସ। ସେ ମଙ୍ଗଳମୟ, ଯାହା କରିବେ। ତା ସେ ଆଶୀର୍ବାଦ ଭାବି ବହିନେଇପାରିବ।

ଏପରି ଦୁଃସମୟରେ ବିନୋଦର ଆଦର ଓ ଯତ୍ନ ଲଳିତାର ଆଖିରେ ବଡ଼ ମହତ୍ ବୋଧ ହେବାକୁ ଲାଗିଲା। ବିନୋଦ ସେମାନଙ୍କର, କିଏ ସେ? ତଥାପି ଦିନ ନାହିଁ, ରାତି ନାହିଁ, ଅକ୍ଲାନ୍ତ ପରିଶ୍ରମ କରି ସେ ଲଳିତାର ମାଆଙ୍କ ସେବାକରୁଅଛନ୍ତି। ନିତାନ୍ତ ପର ହୋଇ ସୁଦ୍ଧା ବିନା ଆହ୍ୱାନରେ ସ୍ୱଇଚ୍ଛାରେ ବିନୋଦ ଅତି ଅକାତର ଭାବେ ସେବାକରୁଛନ୍ତି। ଉଚ୍ଚମନା ବାଳିକା ଏହି ଅପରିଚିତ ଯୁବକର ମହତ୍ ଭାବକୁ ହୃଦୟଭରି ପୂଜାକରିବାକୁ ଲାଗିଲା। ବିନୋଦ ତାହାର ଦୃଷ୍ଟିରେ ଦେବତୁଲ୍ୟ ଅତି ଉଚ୍ଚ ହୋଇଉଠିଲେ। ସେହି ପରୋପକାରୀ ବିନୋଦ ସନ୍ମୁଖରେ ଲଳିତା ଆଜି ଦୁଃଖରେ ସଂପୂର୍ଣ୍ଣ ଲଜ୍ଜାଶୂନ୍ୟା, ନିରାଭରଣା। ସେ କାତରହୋଇ କେବଳ ରୋଦନ କରୁଅଛି। ବୀର ଓ ତାହାଙ୍କର ସ୍ତ୍ରୀ ଉପସ୍ଥିତହେଲେ।

ବୀର ଅନାଇ ଦେଖିଲେ; ପଲଙ୍କ ଉପରେ ସ୍ନେହମୟୀ ଶଶୀ ଅତି ଅବଶ ଭାବରେ ପଡ଼ି ରହିଛି। ତାଙ୍କର ମନେପଡ଼ିଲା - ଏଇ ଶଶୀ, ଯାହାକୁ ବହୁ ବର୍ଷ ତଳେ ତା' ମାଆର ମୃତଦେହ ନିକଟରୁ ଆଦର ଯତ୍ନକରି ଘରକୁ ଆଣିଥିଲେ। ସେହି ସୁନ୍ଦରୀ ଗୋପାଳ ବାଳିକା ଆଜି ମୃତ୍ୟୁଶଯ୍ୟାଶାୟିନୀ। ବୀରବାବୁଙ୍କ ଚକ୍ଷୁ ଲୋତକପୂର୍ଣ୍ଣ ହୋଇଉଠିଲା। ଲଳିତା ମୁଖଉଠାଇ ମାତୁଳ ଓ ମାତୁଳାଣୀଙ୍କୁ ଅନାଇଲା। ଏହି ସେହି ବୀରମାମୁଁ, ଯାହାର ମହତ୍ ଗୁଣାବଳୀ ଆଉ ଧର୍ମପ୍ରିୟତା ଗଳ୍ପଛଳରେ ବାରମ୍ବାର ମାତାନିକଟରୁ ସେ ଶୁଣିଥିଲା। ଲଳିତାର କୌତୂହଳୀ ଆଖି ମାମୁଁଙ୍କ ମୁହଁରେ ନିବିଷ୍ଟହେଲା। କୃଷ୍ଣକାୟ ପ୍ରୌଢ଼ ବ୍ୟକ୍ତି। ମୁଖଟିରେ ଯୁଗଯୁଗର ବ୍ୟଥିତ ଗ୍ଲାନି ଓ ଗଭୀର ଦୁଃଖର ଭାବ ସ୍ପଷ୍ଟ।

ଯୋନାଥନ୍ ଚାହିଁଲେ। ବୀରଙ୍କୁ ଦେଖିଲା ମାତ୍ରେ ତାଙ୍କର ଶୋକାବେଗ କୋଟିଗୁଣରେ ବର୍ଦ୍ଧିତହେଲା। ବହୁ ପୁରୁଣାସ୍ମୃତି ନିମିଷକରେ ହୃଦୟରେ ଜାଗିଉଠିଲା। ଯୋନାଥନ୍ ଗଭୀର ଦୁଃଖରେ ବୟସର ତାରତମ୍ୟ ଭୁଲିଗଲେ ଓ ପାଗଳ ପରି ଅଧୀରହୋଇ ବୀରବାବୁଙ୍କୁ କୁଣ୍ଢାଇପକାଇ କହିଲେ - ''ବୀର ଭାଇ, ମୋର ସବୁ ସରିଗଲା।'' ସତେ ଯେପରି ହୃଦୟର ଅଜଣା କେଉଁ ଅନ୍ତଃସ୍ତଳରୁ ଏଇ କେତୋଟି କଥା ବାହାରିଆସିଲା। ବାଳକପରି କରୁଣ ଭାବରେ ସେ କାନ୍ଦି ଉଠିଲେ। ବୀର ମଧ କାନ୍ଦିଲେ। ତାହାଙ୍କର ଦୃଢ଼ ହୃଦୟ ବିଚଳିତ ହୋଇଉଠିଲା। ଗୁଲ୍‌ବଦନୀ ଶୋକରେ ଅଧୀରାହୋଇ ବିଛଣା ପାର୍ଶ୍ୱରେ ବସିପଡ଼ିଲେ। ଲଳିତ ସମ୍ଭାଳିପାରିଲା ନାହିଁ। ସେ ଚିତ୍କାରକରି କାନ୍ଦିଉଠିଲା।

ବୀର ଶଶୀର ଶଯ୍ୟା ପାଖକୁ ଲାଗିଆସିଲେ। "ଶଶି, ଶଶି" ବୋଲି ଆକୁଳ ଭାବରେ କେତେ ଡାକିଲେ। ଦେହରେ ହାତମାରି ହଲାଇଲେ; କିନ୍ତୁ ଶଶୀର ଜବାବ୍ ନାହିଁ। ସେ ଦୃଷ୍ଟିରେ କୌଣସି ଜୀବନ୍ତ ଭାବ ନାହିଁ। ବୀର ଆଉଁଷିବାକୁ ଲାଗିଲେ। ସେ ଜାଣିପାରିଲେ ଶଶୀର ଏହା ଅନ୍ତିମ ଶୟନ। ତାହାଙ୍କ ହୃଦୟ କୋହରେ ପୂରିଉଠିଲା। ସେ ଦୀର୍ଘଶ୍ୱାସ ନିକ୍ଷେପକରି ବିଛଣାରେ ବସିପଡ଼ିଲେ।

କାହାର ମୁହଁରେ କଥା ନାହିଁ। ଦୁଇ ଘଣ୍ଟା ବିତିଗଲା। ଡାକ୍ତର ବାବୁ ଆସିଲେ। ଅତି ଚଞ୍ଚଳ ଭାବରେ ରୋଗୀକୁ ପରୀକ୍ଷା କରିନେଲେ। ତାହାଙ୍କ ମୁହଁରେ ନୈରାଶ୍ୟର ରେଖା ସ୍ପଷ୍ଟହୋଇଉଠିଲା। ଅତି ବ୍ୟଗ୍ରଭାବରେ ଯୋନାଥନ୍ ଓ ବୀରଙ୍କୁ ଅନାଇଲେ। ବ୍ୟାଗ୍ ଫିଟାଇ ଗୋଟାଏ ଇଞ୍ଜେକ୍ସନ୍ ଦେଲେ। ନୀରବରେ ଦୁଇ ମିନିଟ୍ ମଧ୍ୟରେ ସବୁ କାର୍ଯ୍ୟ ଶେଷହେଲା। ଡାକ୍ତର ମୂହୁର୍ତ୍ତେ କାଳ ଭୂଇଁକୁ ଚାହିଁଲେ। ଅତି କଠୋର କର୍ତ୍ତବ୍ୟ ତାହାଙ୍କ ସମ୍ମୁଖରେ। ଅତି କରୁଣ ଓ ନିଷ୍ଠୁର କର୍ତ୍ତବ୍ୟର ପରୀକ୍ଷା। ସେ କିପରି ତାହା ସାଧନକରିବେ। ଆଉ ଏକ ମୁହୂର୍ତ୍ତ ମୁଖ ଉଠାଇଲେ। ପୁଣି ମାଟିକୁ ଚାହିଁ ରହି କ'ଣ ଚିନ୍ତାକଲେ। ଯେତେହେଲେ ବି ସେ ମନୁଷ୍ୟ। ଛ' ବର୍ଷ ମେଡ଼ିକାଲରେ ପଢ଼ି, ଚାରିବର୍ଷ କାଳ ଶବ ବ୍ୟବଚ୍ଛେଦ କରିଥିଲେ ବି ତାଙ୍କର ହାତ ଅଚଳ ହେବାକୁ ଲାଗିଲା। ଆଜି ଏତେବଡ଼ ଗୁରୁତର କଥା। ମୁହୂର୍ତ୍ତକ ମଧ୍ୟରେ ସମସ୍ତ ନିଷ୍ଠୁରତା ସହ କିପରି ବ୍ୟାକୁଳିତ ଅର୍ଦ୍ଧ-ପାଗଳ ଯୋନାଥନ୍‌କୁ ଏକଥା କହିବେ। କିପରି ବା ସେହି ସୁକୁମାରୀ ବାଳିକାର କୋମଳ ହୃଦୟରେ ବଜ୍ରକଠିନ ଆଘାତଦେବେ! ମୁଖ ଉଠାଇ ଡାକ୍ତରବାବୁ ସ୍ଥିର ଭାବରେ ଯୋନାଥନ୍‌ର ଦୃଷ୍ଟିରେ ସ୍ୱଦୃଷ୍ଟି ନିବଦ୍ଧକଲେ। ପରମୁହୂର୍ତ୍ତରେ ଗମ୍ଭୀର ଭାବଶୂନ୍ୟ ବଦନରେ ନିର୍ବିକାର ଭାବରେ କହିଲେ - "ଯୋନାଥନ୍‌ବାବୁ, ଆପଣଙ୍କ ସ୍ତ୍ରୀଙ୍କର ବଞ୍ଚିବାର ଆଶା ଆଦୌ ନାହିଁ। ତାହାଙ୍କପାଇଁ ପାଗୁପର୍ଯ୍ୟନ୍ତ ଯତ୍ନହେଲା; ମାତ୍ର ଆଉ ଯତ୍ନକରିବା ବୃଥା।"

ଡାକ୍ତର ସ୍ୱକର୍ତ୍ତବ୍ୟ ଶେଷକଲେ ଓ ମୁହୂର୍ତ୍ତ ମଧ୍ୟରେ କକ୍ଷ ତ୍ୟାଗକଲେ। ଲଳିତାର କାନରେ ସେହି ବିଦାୟକାଳୀନ ବାଣୀ ବାରମ୍ବାର ଅତି ଭୟଙ୍କର ଭାବରେ ପ୍ରତିଧ୍ୱନିତ ହେବାକୁ ଲାଗିଲା। ସେ ହତଜ୍ଞାନହୋଇ ଖଟ ଉପରୁ ତଳେ କଚାଡ଼ି ହୋଇପଡ଼ିଲା। ଉନ୍ମାଦିନୀ ପରି ପ୍ରଳାପକରି ସେହିଠାରେ ନିସ୍ତେଜ ଭାବରେ ପଡ଼ିରହିଲା।

ଯୋନାଥନ୍ ଓ ବୀର ପଥର ପରି ନିର୍ବାକ ଓ ନିଶ୍ଚଳ। ଶୂନ୍ୟ ବିଷାଦଭରା ଦୃଷ୍ଟିରେ ପାଗଳ ପରି ଯୋନାଥନ୍ କହି ଉଠିଲେ - "ଆହା, ସମସ୍ତେ ମର।" ତାହାଙ୍କର ଆଉ ବାକ୍ୟସ୍ଫୁର୍ତ୍ତି ହେଲା ନାହିଁ। ସେ ଶଶୀର ପଦତଳେ ପଡ଼ି କାନ୍ଦିବାକୁ ଲାଗିଲେ। "ଶଶୀ, ଶଶୀ ତୋ ବଦଳି ମୁଁ ମରେ।" ଆଉ କହିପାରିଲେ ନାହିଁ। ଗଭୀର ଦୁଃଖ ତାଙ୍କର କଣ୍ଠ ରୁଦ୍ଧକଲା। ସେଠାରୁ ସେ ଉଠିଆସିଲେ। ଦୁଇ ହାତରେ ଶଶୀର ମସ୍ତକ ଉଠାଇ ଚୁମ୍ବନକଲେ। ଏହା ତାହାଙ୍କର ଶେଷ ଚୁମ୍ବନ। ଆଜି ତାଙ୍କର ଲଜ୍ଜା ନାହିଁ। ସେ ଅତି ନିବିଷ୍ଟ ଭାବରେ ସେହି ଆସନ୍ନ ମୃତ୍ୟୁମୁଖକୁ ଚାହିଁରହିଲେ। ଆଜି ସେ ନଈର ଏପାଖରେ, ଆଉ ଶଶୀ ଆର କୂଳରେ।

ଉଭୟଙ୍କ ମଝିରେ ଭୟଙ୍କର ମୃତ୍ୟୁନଦୀ। ତାହାଙ୍କ ଶଶୀ ଅଳ୍ପ ସମୟ ପରେ ଆଉ ଜୀବନରେ ରହିବନି। ସେହି ସୁନ୍ଦର ଢଳଢଳ ମୁହଁ ଚିରକାଳପାଇଁ ଆଖିଆଗରୁ ଲୁଚିଯିବ। ସବୁଦିନପାଇଁ ତାଙ୍କ ହୃଦୟଶୂନ୍ୟ ରହିବ, ଗୃହ ଅନ୍ଧକାରହେବ। କନ୍ୟାତ୍ରୟ ମାତୃହୀନ ହେବେ। ଏ କଥା ଲେଖକର ବର୍ଣ୍ଣନୀୟ ନୁହେଁ - ଅନୁଭବୀ ମାତ୍ର ଜାଣେ। ସେ ଉନ୍ମାଦ ରୋଗୀ ତୁଲ୍ୟ ଶଶୀର ମସ୍ତକ ଉପାଧାନରେ ନ୍ୟସ୍ତକରି, ସେ ପ୍ରକୋଷ୍ଠ ତ୍ୟାଗ କରିଗଲେ। ତାହାଙ୍କର ସହ୍ୟହେଲା ନାହିଁ। ବୀର ଶଶୀର ଶଯ୍ୟା ପାଖରେ ବସିରହିଲେ। ଗୁଲ୍‌ବଦନୀ ଉଠିଯାଇ ମୂର୍ଚ୍ଛାଗତା ଲଳିତାର ମୁଣ୍ଡରେ ପାଣିମାରିବାକୁ ଲାଗିଲେ। ବିନୋଦ ପଙ୍ଖା କଲେ।

କିଛିକ୍ଷଣ ପରେ ଲଳିତା ଚେତନା ଲାଭକରି ମା'ଲୋ କହି କାନ୍ଦିଉଠିଲା। ହେମ ଓ ବନ ଆଉ ଘରେ ବିନି ନିକଟରେ ଥିଲେ। ଲଳିତାର କ୍ରନ୍ଦନ ଶବ୍ଦ ଶୁଣି ଧାଇଁ ଆସି ଦେଖିଲେ - ଘରେ ପିତା ନାହାନ୍ତି; ଅଛନ୍ତି ଅପରିଚିତ ଜଣେ ବ୍ୟକ୍ତି ଏବଂ ଜଣେ ଭଦ୍ର ମହିଳା। ସେମାନେ ଦୁଃଖରେ କାତର। ଏଣେ ଲଜ୍ଜାରେ କିଛି ପଚାରି ପାରିଲେ ନାହିଁ। ମାତାର ଶଯ୍ୟା ପାଖରେ ବସି କାନ୍ଦିବାକୁ ଲାଗିଲେ। ଲଳିତା ଆହୁରି ଜୋର୍‌ରେ କାନ୍ଦିବାକୁ ଲାଗିଲା। ତାହାର କର୍ଣ୍ଣ କୁହରରେ ''ଆଉ ବଞ୍ଚିବାର ଆଶା ନାହିଁ'' - ଏହି କଥାଟି ଯେପରି ବାରମ୍ବାର ପ୍ରତିଧ୍ୱନିତ ହେବାକୁ ଲାଗିଲା। ସେ ଦେଖିଲା, ସାରା ଜଗତରେ ସତେ ଯେପରି ତା'ପାଇଁ ଭରିରହିଚି ଅସହାୟ ଶୂନ୍ୟତା। ସେ କାନ୍ଥଗୁଡ଼ିକୁ ଅନାଇଲା - ସେଠାରେ ଯେପରି ଲେଖାହୋଇଚି - ମା ତାର ଆଉ ବଞ୍ଚିବ ନାହିଁ। ମାତାର ନିଷ୍ପ୍ରଭ ମୁଖକୁ ଲଳିତା ଅନେଇଲା। ସେଠି ସେ ଦେଖିଲା ମରଣର କୃଷ୍ଣକାୟ ସେହି ମୁହଁକୁ ଢାଙ୍କିରଖିଚି। ଲଳିତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା। ତାହାର ମୁଣ୍ଡ ଘୂରିବାକୁ ଲାଗିଲା। ସେ ଭୂମିରେ ପଡ଼ି ଚିତ୍କାରକରି କାନ୍ଦିବାକୁ ଲାଗିଲା।

ସଂଧ୍ୟା ହୋଇ ଆସିଲା। କ୍ରମେ ରାତି ହେଲା। ଦାଣ୍ଡଘରେ ଯୋନାଥାନ୍‌ବାବୁ ଭୂମି ଉପରେ ଲମ୍ବହୋଇ ପଡ଼ିଛନ୍ତି। ବିନୋଦ କେତେ ବୁଝାଇଲେଣି। ବୀର ମଧ ଆସି ବୁଝାଇଲେ। କିନ୍ତୁ ସେ ବୁଝିଲେ ନାହିଁ। କେବଳ ଗୋଟାଏ ଅସ୍ପଷ୍ଟ ଶବ୍ଦ ସହିତ ଘନଘନ ଦୀର୍ଘଶ୍ୱାସ ବହିବାକୁ ଲାଗିଲା। ଆଜି ତାଙ୍କର ଶରୀର ଅତି ଭୟଙ୍କର ଦେଖାଯାଉଚି। ଚବିଶ ଘଣ୍ଟା ଗତହୋଇଥିଲେ ବି ସେ ଅନ୍ନ ଜଳ ସ୍ପର୍ଶକରି ନାହାନ୍ତି। ରାତି ବାରଟା ବେଳେ ବିନି ଚାହା ଆଣିଦେଲା। ସେ ତାହାକୁ ମଧ ଗ୍ରହଣକଲେ ନାହିଁ।

ବୀର ଆସିଲେ। ଯୋନାଥନ୍‌କୁ ଭୂମିରୁ ଉଠାଇବାକୁ ଅନେକ ଯତ୍ନକଲେ; କିନ୍ତୁ ସେ ଉଠିଲେ ନାହିଁ। ଚାହା ଖାଇବାକୁ କେତେ ଅନୁରୋଧକଲେ। କିନ୍ତୁ ସେ ଯୋନାଥନ୍ କୌଣସି କଥା ଯେପରି ଶୁଣିପାରୁ ନଥାନ୍ତି। ଶେଷକୁ ବୀର କହିଲେ - ''ଭାଇ, ମା'ଟି ତାର ପିଲାଛୁଆଙ୍କୁ ଛାଡ଼ି ଯାଉଚି। ତୁମ୍ଭେ ମଧ ସେମାନଙ୍କୁ ଅନାଇବ ନାହିଁ; ବର୍ତ୍ତମାନ ତୁମ୍ଭବିନା ସେମାନଙ୍କର କିଏ ଅଛି ?''

ଏକଥା ଯୋନାଥନ୍‌ର ହୃଦୟରେ ଦାରୁଣ ଆଘାତକଲା। ସେ ଆସ୍ତେ ଭୂମିରୁ ଉଠିଲେ। ଆଖି ଫୁଲିଯାଇଚି। ମୁହଁ ଦିଶୁଛି ଭୟଙ୍କର। ସତେ ଯେପରି ଯୋନାଥନ୍ ହଠାତ୍ ଦଶବର୍ଷ ଅଧିକ ବୃଦ୍ଧ ହୋଇପଡ଼ିଛନ୍ତି।

ଯୋନାଥନ୍ କୌଣସି ମତେ ବାଧ ହୋଇ ତାହା ଟିକିଏ ପିଇବାକୁ ଚେଷ୍ଟାକଲେ। ସବୁ କିନ୍ତୁ ଶେଷ କରିପାରିଲେ ନାହିଁ। ହଠାତ୍ ସେ ଉନ୍ମତ୍ତ ମତୁଆଳ ପରି ଶଶୀର ଶଯ୍ୟା ପାଖକୁ ଧାଇଁଗଲେ। ଶୂନ୍ୟ ଦୃଷ୍ଟିରେ ପ୍ରିୟତମାର ମୁଖକୁ ନିରୀକ୍ଷଣକଲେ। ଦୁଇ ବାହୁରେ ଶଶୀକୁ ଦୃଢ଼ ଭାବରେ ଆଲିଙ୍ଗନକରି ରହିଲେ। ଆଉ ସେଠାରୁ ଉଠିଲେ ନାହିଁ କି କଥା କହିଲେ ନାହିଁ।

ଘଣ୍ଟାଏ ବିତିଗଲା। ଦୁଇ ଘଣ୍ଟା ବିତିଗଲା। ଶଶୀର ଶ୍ୱାସ ରୁଦ୍ଧହୋଇଆସିଲା। ହୃଦୟର ସ୍ପନ୍ଦନ ଶିଥିଳ ହୋଇଆସିଲା। ସେ ଚିରକାଳପାଇଁ ଇହଧାମ ତ୍ୟାଗ କଲା। ପତିରକୋଳରେ ସତୀର ମୃତ୍ୟୁହେଲା। ଅନ୍ତିମ ଶୟନରେ ସେ ସ୍ୱାମୀର କ୍ରୋଡ଼ରେ ସ୍ଥାନପାଇଲା। ଯୋନାଥନ୍ ବୁଝିପାରିଲେ - ଶଶୀ ଆଉ ନାହିଁ। ଘଡ଼ିକୁ ଅନାଇଲେ। ନଅଟା ବାଜି ପନ୍ଦର ମିନିଟ। ବୀରବାବୁଙ୍କୁ ଅତିକରୁଣ ଭାବରେ ଅନାଇଲେ। ସେ ମୁଖରେ ଏକ ଗଭୀର ପ୍ରଶାନ୍ତି। ସତେ ଯେପରି ସଂସାରର ଏଇ ସ୍ୱାଭାବିକ ଝଡ଼କୁ ସାମ୍ନା କରିବାକୁ ସେ ମୁହଁରେ ପୂରିରହିଚି ଅଶେଷ ଧୈର୍ଯ୍ୟ।

ଗୁଲ୍‌ବଦନୀ କାନ୍ଦିଉଠିଲେ। ଲଳିତା ଭୂମିରୁ ଉଠିଆସି ପିତାଙ୍କୁ ଭରାଦେଇ ମୃତ ମାତୃ ଶବକୁ ବାରମ୍ବାର ଚୁମ୍ବନ କରିବାକୁ ଲାଗିଲା। ତାହାର ଆଖିରେ ଆଉ ଲୁହ ନ ଥିଲା। ସେ ଶୂନ୍ୟ ଦୃଷ୍ଟିରେ ପିତାଙ୍କ ମୁଖକୁ ଅନାଇ ବକ୍ର ହାସ୍ୟରେ ଓଷ୍ଠାଧର ଈଷତ୍ ଭିନ୍ନକରି କହିଲା ''ଆଉ କାହିଁକି କାନ୍ଦିବି ବାବା, ମା'ତ ନାହିଁ। ସ୍ୱର୍ଗକୁ ଗଲା ପରା! ଈଶ୍ୱର ଆମ ପ୍ରାର୍ଥନା ଶୁଣିଲେ ନାହିଁ।''

ପାଗଳଙ୍କ ପରି ଯୋନାଥନ୍ କହିଲେ - ''ନାହିଁ ମା, ଈଶ୍ୱର ଶୁଣିଲେ ନାହିଁ। ଆମ ଦୁଃଖ ଦେଖିଲେ ନାହିଁ। ତୁମ ମା'ଟିକୁ ନିଜ ପାଖକୁ ନେଇଗଲେ।''

ବନ ଓ ହେମ ଦୌଡ଼ି ଆସି ବାପାଙ୍କୁ କୁଣ୍ଢେଇ କାନ୍ଦିବାକୁ ଲାଗିଲେ। ଶୂନ ଦୃଷ୍ଟିରେ ଯୋନାଥନ୍ କନ୍ୟା ତ୍ରୟଙ୍କୁ ଅନାଇଁ ରହିଲେ। ବାଷ୍ପରୁଦ୍ଧ କଣ୍ଠରେ କହିଲେ - ''ମାମାନେ, ତୁମ୍ଭେମାନେ ଆଜିଠାରୁ ଅନାଥ। ତୁମ୍ଭର ମା ନାହିଁ। ମାଆ ବୋଲି ଆଉ କାହାକୁ ଡାକି ପାରିବ ନାହିଁ। ତୁମ୍ଭର ଯତ୍ନ ନେବାକୁ ଆଉ ଦୁନିଆରେ କେହି ନାହିଁ। ମୁଁ ଆଜିଠାରୁ ଫକୀର, ମୋର ରତ୍ନ ହଜିଗଲା।'' ବନ ଓ ହେମ ଉଚ୍ଚସ୍ୱରରେ କାନ୍ଦିଉଠିଲେ। ଯୋନାଥନ୍ ପୁଣି ବୀରଙ୍କୁ ଅନାଇଁ କହିଲେ - ''ଭାଇ, ତୁମର ସେଦିନ ରାତିକଥା ମନେ ଅଛି। ଶଶୀର ମାଆ ମରିପଡ଼ିଥିଲେ। ଆମ୍ଭେମାନେ ଯାଇ ପହଞ୍ଚିଥିଲେ। ମନେକର, ସେଇ ଅନ୍ଧାର ରାତି। ମା ଝିଅଙ୍କର ସମାନ ଦଶାହେଲା। ଭାଇ, ଅଳ୍ପଦିନପାଇଁ ମୋ କୁଟୀର ଆଲୋକିତ କରିବାପାଇଁ ମୁଁ ଏ ସ୍ୱର୍ଗର ତାରା ଆଣିଥିଲି। ଏବେ ସେ ନିଜ ସ୍ଥାନକୁ ଫେରିଗଲା। କାହିଁକି ଆଉ କାନ୍ଦିବି? କାହାପାଇଁ ଆଉ କାନ୍ଦିବି? ପୁତ୍ର ମଲାପରେ ତ ଦାଉଦ ରାଜା କାନ୍ଦି ନଥିଲେ। ଆଉ କଣ

ସତେ ଶଶୀ ଫେରିଆସିବ ? କ'ଣପାଇଁ ତେବେ କାନ୍ଦିବି !'' ଯୋନାଥନ୍ ବାତୁଳପରି ପ୍ରଳାପ କରିବାକୁ ଲାଗିଲେ, ଗୁଲ୍‌ବଦନୀକୁ ଅନାଇଁ କହିଲେ - ''ବୋଉଦି, ତୁମ ଋଣ ମୁଁ ଶୁଝିପାରିବି ନାହିଁ। ତୁମେ ଓ ଭାଇ ମତେ ମୃତ୍ୟୁମୁଖରୁ ବଞ୍ଚାଇଥିଲ। ସେତେବେଳେ ଏଇ ଶଶୀ ମୋର କେତେ ସେବାଯତ୍ନ କରିଥିଲା। ମୋରି ହାତରେ ମରିବ ବୋଲି କ'ଣ ଏବେ ସେବାକରୁଥିଲା !''

ସମସ୍ତେ କାନ୍ଦିବାକୁ ଲାଗିଲେ, କେବଳ ଲଳିତା ଘୋର ନୈରାଶ୍ୟ, ପ୍ରବଳ ଦୁଃଖ ଓ ଗଭୀର ବିଷାଦରେ ମ୍ରିୟମାଣ ହୋଇ ମାଆର ମୁଖକୁ ନିରେଖି ଚାହିଁରହିଲା। କେତେ ଚୁମ୍ବନକଲା। କେବଳ ''ଆଉ କାହିଁକି କାନ୍ଦିବି, ବାବା'' - କହି ସୁଦ୍ଧା କୋହରେ ତାହାର ହୃଦୟ ଫାଟିପଡୁଥିଲା।

ବିନୋଦର ଚକ୍ଷୁରେ ମଧ୍ୟ ଲୁହ ଜକେଇଆସିଲା। ଏପରି ଘଟଣା ସେ ପୂର୍ବରୁ କେବେ ଦେଖି ନ ଥିଲା। ଲଳିତାର ଦୁଃଖ, ଲଳିତାର ଅଶ୍ରୁ ତା' ପକ୍ଷରେ ବଡ଼ ଅସହ୍ୟ ହୋଇଉଠିଲା। ସେ ମର୍ମେ ମର୍ମେ ବେଦନା ଅନୁଭବ କରିବାକୁ ଲାଗିଲା।

ରାତ୍ରି ପ୍ରଭାତ ହେଲା, ବିନୋଦ ବାକ୍‌ସରୁ ଖୋଜି ଲୁଗା ଆଦି ବାହାରକଲା। ଯଥାରୀତି ସ୍ନାନାଦି କରାଇ ଫୁଲହାରରେ ସଜ୍ଜିତା ମୃତା ଶଶୀକୁ ବାକ୍‌ସ ମଧ୍ୟରେ ପୂରାଇଲେ। ନୀରବ ନିଶ୍ଚଳ ଭାବରେ ଲଳିତା ସବୁ ଦେଖିଲା। ତାହାର ହୃଦୟ ଖଣ୍ଡବିଖଣ୍ଡ ହେଉଥାଏ। କିନ୍ତୁ ସେ ପ୍ରସ୍ତର ମୂର୍ତ୍ତି ପରି ସ୍ଥାଣୁ ପାଲଟି ଯାଇଥାଏ। ଶେଷକୁ ବାକ୍‌ସ ବନ୍ଦହେଲା। କଳାଗାଡ଼ିରେ ଥୁଆହେଲା। ଲଳିତାର ଧୈର୍ଯ୍ୟର ସୀମା ଅତିକ୍ରାନ୍ତହେଲା। ସେ ଛିନ୍ନମୂଳ ମହୀରୁହ ପରି ଭୂମିରେ ପଡ଼ି ପୁନର୍ବାର ଅଚେତନ ହେଲା। ବିନୋଦ ବଡ଼ କାତର ହୋଇଉଠିଲା। ସେ ସ୍ୱହସ୍ତରେ ଲଳିତାର ମସ୍ତକରେ ଜଳ ସେଚନ କରିବାକୁ ଲାଗିଲା।

ବହୁକ୍ଷଣ ପରେ ଲଳିତାର ଚେତନାହେଲା। ସେ ଦେଖିଲା ଯେ ସେ, ନିଜ ପ୍ରକୋଷ୍ଠର ଶଯ୍ୟା ଉପରେ ଶାୟିତା, ପାଖରେ ବିନୋଦ। ସେ ଚକ୍ଷୁ ମେଲାଇ କ୍ଷୀଣ କଣ୍ଠରେ କହିଲା - ''ମା କେଉଁଠି ? ତାକୁ ନେଇଗଲେଣି ?''

ବିନୋଦ ପାଖକୁ ଘୁଞ୍ଚିଆସି ଅତି ମୃଦୁ କୋମଳ ପ୍ରେମପୂର୍ଣ୍ଣ ସ୍ୱରରେ କହିଲା - ''ଲଳିତା, ମା ସ୍ୱର୍ଗରେ। ତୁମେ ଏଡ଼େ ଅଧୀର ହେଲେ ଚଳିବ କିପରି ?''

ଲଳିତା ବିନୋଦର ମୁଖକୁ ଅନାଇଲା। ଉଭୟର ଦୃଷ୍ଟି ମିଳନହେଲା। ଲଳିତା ଚିହ୍ନିପାରିଲା ସେ ବିନୋଦ। ସେ ଚକ୍ଷୁ ମୁଦ୍ରିତ କଲା। ବିନୋଦ ଘୁଞ୍ଚିଆସି ଲଳିତାର କପାଳରେ ଚୁମ୍ବନକଲା। ଲଳିତା ସେ ଉଷ୍ଣ ସ୍ପର୍ଶ ମାତ୍ର ଅନୁଭବ କଲା। ତାହାର ଭାବ ଓ ଉଷ୍ଣତା ଗ୍ରହଣ କରିବାରେ ବର୍ତ୍ତମାନ ସେ ସଂପୂର୍ଣ୍ଣ ଅକ୍ଷମ। ବିନୋଦ ବାହାରକୁ ଗଲେ। ଲଳିତା ବିନୋଦ ପ୍ରଦର ଔଷଧ ଫଳରେ ନିଦ୍ରାଭିଭୂତ ହୋଇ ପଡ଼ିରହିଲା।



ଛୋଟ କୁଡ଼ିଆଟିଏ । ଚାଳ ନଇଁପଡ଼ିଛି । କାନ୍ଥ ଠାଏଁଠାଏଁ ଫାଟିରହି ଚାଳର ବତା ବାଉଁଶ ଜାଗାଏ ଦିଜାଗା ଖସିପଡ଼ିଛି । ଓହଳିଥିବା କୁଟା କେରାକରେ ଫଗୁଣ ମାସର ଧଳା ଜ୍ୟୋତ୍ସ୍ନା ଚିକ୍ ଚିକ୍ ଦିଶୁଛି, ସତେ-ଯେମିତି ବିଡ଼ାଏ ରୂପାତାର । ଘରଟି ବହୁ ଦିନର ଦଦରା, ପୁରୁଣା ।

ରାତ୍ର ପ୍ରାୟ ଅଧା ହେଲାଣି । ହେଲେ ପୂନେଇଁ ପାଖ ପାଖଯୋଗୁଁ ଆକାଶ ଚାନ୍ଦ ଆଲୁଅରେ ପରିଷ୍କାର । ସେଥି ଭିତରୁ ଅସ୍ପଷ୍ଟ ତାରା କେତୋଟି ଧନୀର ଜୁଲୁମରେ ମୁଣ୍ଡ ନଇଁଥିବା ଗରିବଙ୍କ ଭଳି ଚାହିଁ ଦଉଛନ୍ତି, ସେ ଚାହାଣିରେ ଆନନ୍ଦର ଆଭା ନାହିଁ – ଅଛି ଦାରିଦ୍ର୍ୟର ମଳିନତା, ବ୍ୟର୍ଥ ମନୁଷ୍ୟତ୍ୱର ହାହାକାର । ଚାନ୍ଦ ନିଜ ବିମଳ ଧବଳ ସୌନ୍ଦର୍ଯ୍ୟରେ ସ୍ନିଗ୍ଧ କୌମୁଦୀରେ, ପରମ ସୁନ୍ଦର ରୂପରେ ଆଜି ଆକାଶର ଅଧିପତି, ଆଉ ଶହ ଶହ ତାରା ଚିରା ପାପରା କନାପିନ୍ଧି ଦରିଦ୍ର ଖଟଣୀ କିଙ୍କରଶ୍ରେଣୀ, ଚାନ୍ଦ ଗୋଡ଼ ତଳକୁ ଯେମିତି ଭୟରେ ଚାହିଁ ବସିଛନ୍ତି । ଠିକ୍ ସେହିପରି ଧନୀଙ୍କର ବଡ଼ ବଡ଼ କୋଠା କଡିରେ ଏ ଛୋଟ ଚାଳଘରଟି ନିଜର ହୀନତା ଘେନି ଛିଡ଼ାହେଇଛି । ଦୁଆର ଜଳାବାଟେ ଘରୁ ଆଲୁଅ ରେଖାଟିଏ ଅଣଓସାରିଆ ଗଳିବାଟରେ ଆସି ପଡ଼ିଛି । ଘର ଭିତରେ ମା ଓ ପୁଅ । ମା ଗୋଟିଏ ଡିବି ବତୀ କଡିରେ ଆଖିରେ ଚଷମା ଲଗାଇ, ଗଦାଏ ଚିରା କନାକୁ କନ୍ଥା ଆକାରରେ ସଜାଡ଼ି ସିଇଁବାରେ ବ୍ୟସ୍ତ– ତାଙ୍କ ବାଁ ହାତ କଡିକୁ ଗୋଟିଏ କୁଲାରେ କୁଲାଏ ବିଡ଼ିବଳା ପତ୍ର–ଆଉ ବିଡ଼ି, ଧୂଆଁପତ୍ର । ପୁଅ ଗୋଟିଏ ଛିଣ୍ଡା ଶେଜ ଉପରେ ପାପୁଲିରେ ଗାଲ ରଖି ବହି ଖଣ୍ଡେ ଧରି ଦରଶୁଆ ହୋଇ ପଢ଼ାରେଲାଗିଛି । ତାଙ୍କ ଦୁଇ ଜଣଙ୍କ ଦେହରେ ଅତି ଛିଣ୍ଡା ଲୁଗା, ସାବୁନରେ ଘରେ କଚା ହୋଇଥିବାରୁ ମସିଆ ବର୍ଣ୍ଣ । ଚେହେରାରୁ ଦରିଦ୍ରତାର ଆଭାସ ପୁରା ଭାବରେ ମିଳୁଛି । ଘର ଭିତରେ ମୂଲ୍ୟବାନ୍ ଜିନିଷ ପତ୍ରର ନାମଗନ୍ଧ ନାହିଁ । ଗୋଟିଏ ଟିଣ ବାକ୍ସ– ସେ ବି ବଡ଼ ପୁରୁଣା, ଖଣ୍ଡେ ଦଦରା ପେଡ଼ି – ଏଣୁତେଣୁ ଆଳିମାଳିକା ଗୁଡ଼ିଏ, ଖଣ୍ଡ କେତେ ଆଲମୋନିଆ ବାସନ ଓ ପଟେ କଂସା ଓ ପଟେ କଂସା ଥାଳି – କାଠ ପିଢ଼ାଉପରେ ସଜଡ଼ାହୋଇଛି । ଗୋଟିଏ କରକୁ କେତେ ଖଣ୍ଡ ମସିଆ କନ୍ଥାଗୁଡ଼ିକ କମିଜି ଯତ୍ନରେ ଚଉଡ଼ା ହୋଇଛି । କାନ୍ଥରେ ଗୋଟିଏ ଦଉଡ଼ି ଅଲଗୁଣୀରେ ଖଣ୍ଡେ ଦରସଫା ଧୋତି ଓ କମିଜି ଝୁଲୁଛି । ଏତିକି ପୁଅର ବାହାରଯିବା ଲୁଗା ଆଉ ହଳେ ଯୋତା ଘରର ଗୋଟିଏ କୋଣରେ ଥୁଆହୋଇଛି । ଘରଟିରେ ଗୋଟିଏ ଅତି ସାନ ଝରକା – ସେଥିରୁ ଯେଉଁ ଆଲୁଅ ଦିନ ବେଳେ ବି ଘରକୁ

ଆସୁ ଚି, ତା' ଅନ୍ଧାରକୁ ଗା କରିବା ଛଡ଼ା ଆଉ କିଛି କାମର ନୁହେଁ। ଝରକାଟି ଖୋଲା ରହିଛି। ଘର ତଳଟି ଟିକିଏ ପରିଷ୍କାର ଭାବେ ଲିପା ପୋଛା ହୋଇଥିବାରୁ ମଳିଧୂଳିର ନାମଗନ୍ଧ ନାହିଁ।

ପୁଅଟିର ବୟସ ପ୍ରାୟ ୧୬/୧୭ ଭିତରେ ହବ। ମୁହଁଟି ପିଲାଳିଆ ହେଲେ ସୁଦ୍ଧା ତା' ଉପରେ ଯୌବନର ଆଭା ବୁଲିଗଲାଣି। ଚେହେରାଟି ଗୌରବର୍ଣ୍ଣ ଆକୃତି ଓ ଆଖି ଯୋଡ଼ିକ ଅତି ସୁନ୍ଦର। ଲମ୍ବାଳିଆ କାଟର ସୁଶ୍ରୀ ମୁଖ ଗଠନ। ମା'ଟି ଦରବୁଢ଼ୀ– କିନ୍ତୁ ଅତିରିକ୍ତ ପରିଶ୍ରମ ଆଉ ଚିନ୍ତାରେ ଦେହଟିର ମାଂସପେଶୀଗୁଡ଼ିକ ଓହଳି ପଡ଼ିଲାଣି – ଆଖି ଯୋଡ଼ିକ ପୁଅ ଭଳି ସୁନ୍ଦର ହେଲେ ସୁଦ୍ଧା, କୋଣରେ କଳାପଡ଼ି ବସିଗଲାଣି। ବାଳପାଚି ଆସିଲାଣି, ବୟସରୁ ବେଶି ବୟସଭଳି ଦିଶି ଚେହେରାର ସୁନ୍ଦରତା ନଷ୍ଟ ହେଲାଣି।

ଦୁଇଜଣ ନୀରବରେ ଆପଣା ଆପଣା ଧନ୍ଦାରେ ଲାଗିଛନ୍ତି। ନିସ୍ତବ୍ଧ ନିଶାରାତି ସାଏଁ ସାଏଁ ଗରଜୁଛି। ଦାଣ୍ଡରେ ଜନମାନବର ଶବ୍ଦ ନାହିଁ। ହଠାତ୍ ପ୍ରଭାକର ବାବୁଙ୍କ ବଡ଼ ଘଣ୍ଟାରେ ବାଜି ଉଠିଲା ଠଁ, ଠଁ, ରାତିବାର। ମା ଟିକେ ବ୍ୟସ୍ତହୋଇ ହାତକାମ ଛାଡ଼ି ପୁଅକୁ ଅନେଇ କହିଲେ- ଯା ବାପ' ବହି ଥୋଇ ଦେ, ଯା।

ପୁଅ– ମୋ ପରୀକ୍ଷା ଆଉ କେଇଟା ଦିନ ରହିଲା ଜାଣୁ। ଏତ ଜୀବନ ମରଣର ଗଣ୍ଠି-ହେଲେ ଏମିତି କେତେଦିନ ଯିବ ମୁଁ ଭାବୁଛି। ତୋର ଏତେ କଷ୍ଟ କରିବାଟା ମୋ ଆଖିରେ ଯାଉନାହିଁ, ମୁଁ କମେଇବାକୁ କେମିତି ଯାଇଥିଲି ଜାଣୁ? ସେ ମୋତେ ପରୀକ୍ଷା ଫିସର ଅଧାଦେବେ ବୋଲି ଆଶାଦେଇଛନ୍ତି- ଆଉ ଅଧତକ ମାଉସୀ ଦେବେପରା ?

ମା ଟିକେ ତିରସ୍କାର ସ୍ୱରରେ କହିଲେ – ଦୁଃଖା! ତୋତେ କିଏ କହିଲା କମେଇବାକୁ ତା ଦୁଆରକୁ ଯିବାକୁ। ଯାହା ଯୋଗୁ ଆମର ଆଜି ଏ ଦଶା, ହାଡ଼ି ଚଣ୍ଡାଳ ଦୁଆରକୁ ଯିବାଭଳ – ତାଙ୍କ ଦୁଆରକୁ ଯିବା ଅପେକ୍ଷା ଆଗରୁ ମରଣ କିଆଁ ନ ହେଲା – ଦେଖ, ମୁଁ କହିଦଉଛି – ସେ ଟଙ୍କା ମୁଁ ଯୋଗାଡ଼ କରିଛି। ମୋର ହାଡ଼ ଦିଖଣ୍ଡ ଥିଲାଯାକେ ତୁ କିଛି ଚିନ୍ତା କରନା –

ପୁଅ ବିକଳ କଣ୍ଠରେ କହିଲା – ମା ଦେଖ, ତୁ ବାଧିକା ପଡ଼ିଯିବୁ – ପନ୍ଦର ଦିନ ତଳେ ତୋତେ ଏତେ ଭୟଙ୍କର ଶୁଳାଝାଡ଼ା ହଉଥିଲା – ତୁ ଏତେ ରାତି ଜାଗିଲେ ହେବ ?

ମାଁ – ତୁ ମୋପାଇଁ ଚିନ୍ତା କରନା – ମୁଁ ମଲେ ମୋର ଦୁଃଖଯିବ। ହେଲେ ତୋର ଥୟଥାୟ କରି ଯଦି ମୁଁ ମରେ, ତେବେ ଯାଇ ମୋର ସୁଖ।

ଦୁଃଖା-ଆଚ୍ଛା ମା ଏମିତି କେତେଦିନ ଯିବ କହିଲୁ ? ଏଥର ପାଶ୍ କରିସାରିଲେ ମୁଁ କୋଉଁଠି ହେଲେ ଗୋଟିଏ ଚାକିରି ଦେଖିବି। ଗୋଟାଏ ଯୋଡ଼ାଏ ଟିଉସନର ଯୋଗାଡ଼ କରିବି ଭାବିଚି। କ'ଣ ମିଳୁଚି। ଟିଉସନ ପାଇଁତ ଅନବରତ ଖୋଜିଖୋଜି ଥକିଗଲିଣି।

ଗୋଟିଏ ମଙ୍ଗଳାବାଗରେ ମିଳିଥିଲା ଯେ, ସେ ପୁଣି ଟ୫ଙ୍କା। ଆଉ ତଗରପଡ଼ାରୁ ମଙ୍ଗଳାବାଗ ଯିବା। ପୁଣି ପରୀକ୍ଷା। ପଢ଼ା ପଢ଼ିପାଇଁ ଭାବିଦେଖିଲି, ଏବେ ହୋଇ ପାରିବ ନାହିଁ। ମୋର ଭାରୀ ଇଚ୍ଛାଥିଲା ମ୍ୟାଟ୍ରିକ୍ ପାଶ୍‌କରି ଆଉ ପଢ଼ନ୍ତି, କିନ୍ତୁ –

ମା' ମୋର ବି ସେଇ ଇଚ୍ଛା– ମୁଁ ଗୋଟିଏ ଉପାୟ ବହୁତ ଦିନୁ ଭାବିଚି – ହରିବାବୁ ଭାରି ସଦାଶୟ ଲୋକ – ତୋ ପଢ଼ାପାଇଁ ତୁ ତାଙ୍କୁ କିଛି ସାହାଯ୍ୟ ମାଗିବୁ କି? ତାଙ୍କ ଉପରେ ଏକା ମୋର ଖୁବ୍ ଭରସା। ଦୁଃଖ ଟିକେ ସଙ୍କୁଚିତ ହୋଇକହିଲା – ମୋତେ ଟିକେ ବଡ଼ ଲାଜମାଡ଼ିବ – ମୁଁ ପ୍ରଭାତକୁ କହିଛି। ମୋତେ କିନ୍ତୁ ମୁଣ୍ଡକଟିଲା ଭଳି ଲାଗିବ। ଏକେ ଆମ ପାଇଁ ଏତେ କରନ୍ତି, ପୁଣି କୋଉ ମୁହଁରେ ପଢ଼ିବାପାଇଁ ଟଙ୍କା ସାହାଯ୍ୟମାଗିବି?

ମା–ଗରିବର ମୁଣ୍ଡ ଲୁହାଠାରୁ ଟାଣରେ ବାପ। ଜାଣୁ, ଏ ମୁଣ୍ଡ ଉପରେ କେତେ ଝଡ଼ ବତାସି ବହିଯାଇଛି। ହାୟ ଆଜନ୍ମ ଗରିବ ହବା, ପୁଣି ସୁଖର ମୁହଁ ଦେଖି ଗରିବ ହବା କଥା ଯେ କେଡ଼େ ନିଆରା ତା ତୁ କାହୁଁ ବୁଝିବୁରେ ପୁଅ। ପୁଅ ଟିକିଏ ଶୁଖିଲା ହସି ହସି ଦେଇ କହିଲା, ମୁଁ ଆଜନ୍ମ ଗରିବ। ନାଁ ବାପ, ନାଁ ଭାଇବନ୍ଧୁଙ୍କୁ ଜାଣେ। ସେଇତିପାଇଁ ବଡ଼ଲୋକ ହବାଟା କ'ଣ, ତା କେମିତି ବୁଝିବି? ମା ଦୀର୍ଘ ନିଃଶ୍ୱାସଟିଏ ପକାଇ କହିଲେ ବାପଥିଲେ କାହିଁକି ଏତେ କଥାରେ।'' ତାଙ୍କ ଆଖିରୁ ବଡ଼ ବଡ଼ ଦିଟୋପା ଲୁହ ଗାଲକୁ ଗଡ଼ିପଡ଼ିଲା। ଦୁଃଖୀ ତା ଲକ୍ଷ୍ୟକରି କହିଲା–ମାଁ–ମାଁ–ତୁ କାନ୍ଦନା–ବାପାଙ୍କ କଥା ଆଉ ମନେ ପକାନା–ବାପା ନଥିଲେ ମୁଁ ତ ତୋର ଅଛି–ହାୟ ହାୟ ଲୁହ ପୋଛୁ ପୋଛୁ ମା ଭାବିଲେ– ସେତ ବାପାଙ୍କୁ କେବେ ଆଖିରେ ଦେଖିନାହିଁ....କେମିତି ଜାଣିବ ବାପ କି ପଦାର୍ଥ ଥିଲା....କଲିକତାରେ କଳାଜ୍ୱର ସେ ଅମୂଲ୍ୟ ପଦାର୍ଥକୁ ତ ଛାଡ଼ି ତୁଚ୍ଛାକରି ଘେନିଗଲା। ସେ ଯାଇଥିଲେ ସେଠିକି ଚାକିରୀ କରି। କରିଥିଲେ ବି ଭଲ ଚାକିରୀ। ମାସକୁ ଟ୪୦ଙ୍କା ବେତନ....କିନ୍ତୁ ୬ ମାସ ନ ଯାଉଣୁ ଧଇଲା କଳାଜ୍ୱର। ବଡ଼ ପିଳେହି ଓ କଲିଜା ନେଇ ସୁନ୍ଦର ଗୋରାରୂପ ବଦଳେ କଙ୍କାଳସାର ମୂର୍ତ୍ତିଘେନି ଘରକୁ ଆସି ସେ ବିଛଣାଧଇଲେ। ଆଉ ସେଥିରୁ ଉଠିଲେ ନାହିଁ। ସେତେବେଳେ ଯେ ଦୁଃଖୀ ପେଟରେ। ଦୁଃଖୀ କଣ ଜାଣିବ, ସେ ଦୁଃଖ, ସେ ବେଦନା, ଦିନକର କଷ୍ଟ।

ଚିରା ଲୁଗା, ଫଟା କାଚ ଛଡ଼ା ସବୁ ବିକି ଭାଙ୍ଗି ବଇଦ, ଡାକ୍ତର ଲଗେଇଲେ। ମାତ୍ର ରୋଗର ଦାଉ କାଣିଚାଏ ଊଣାନୋହିଲା। ସବୁଗଲା, ଶେଷରେ ସେ ଗଲେ। ଦୁନିଆର ଦୁଃଖ ଦେଖିବାକୁ–ବାଆ, ବତାସୀ, ଝଡ଼ ସହିବାକୁ ବଞ୍ଚିରହିଲେ ହୈମବତୀ–ଯାହାର ତ୍ରିକୂଳରେ ନିଜର କେହି ନଥିଲେ–ଅଥଚ ପୂର୍ଣ୍ଣ ଗର୍ଭାବସ୍ଥା।

ଖଣ୍ଡିଆ କାନ୍ଥକୁ ଆଉଜି ଯୋଉଦିନ ଦୁଃଖୀ ପୁଅର ଜନ୍ମ, ସାଇପଡ଼ୁସୁଣୀ ରମାର ସହାନୁଭୂତି ଓ ସେବାକଥା ଗୋଟି ଗୋଟି ହୋଇ ହୈମବତୀର ମନରେ ଚିତ୍ରପରି ଖେଳିଗଲା। ସେଦିନ ସେ ସାନ କଢ଼ଟିପରି ଦରହାସୀ ବାଳିକା ହେଲେ। ଭଲ ଲୋକକୁ ଏକା ଭଗବାନ

ଦୁଃଖ ଦିଅନ୍ତି। ଆଜି ରମା ବି ସ୍ୱାମୀଙ୍କୁ ହରେଇ କାଙ୍ଗାଳୁଣୀ-ଦୁନିଆରେ ସେ ଏକା ଦୁଃଖୀ ? ଦୁଃଖ ତ ଲକ୍ଷେ ଲକ୍ଷେ। କିନ୍ତୁ ତାଙ୍କଭଳି ଦୁଃଖୀ ବୋଧହୁଏ ଆଉ କେହି ନଥିବେ।

ମାଆଙ୍କୁ ନୀରବ, ଚିନ୍ତାକ୍ଳିଷ୍ଟଦେଖି ଦୁଃଖା ଉଠି, ବହିପତ୍ର ଥୋଇବାକୁ ଗଲା। ବର୍ତ୍ତମାନ ସେ ଅଳ୍ପ ଦିନରେ ମାଟ୍ରିକ୍ ପରୀକ୍ଷା ଦବ। ତାର ସମୁଦାୟ ଭବିଷ୍ୟତ ଆଶାଭରସାର ସ୍ଥଳ ସେହି ମାଟ୍ରିକ୍ ପାଶ୍ ଖଣ୍ଡିକ। କ୍ଲାସ୍ ସଙ୍ଗୀ ଶ୍ୟାମସୁନ୍ଦରର ବାପ ସାରଦା ବାବୁଙ୍କ ଯତ୍ନରେ ଚିରକାଳ ସେ ଫ୍ରିରେ ପଢ଼ିଆସିଚି। ଅଥଚ ନିଜ ଅଧ୍ୟବସାୟ ବଳରେ କ୍ଲାସରେ ପ୍ରାୟ ପ୍ରଥମ କି ଦ୍ୱିତୀୟ ସ୍ଥାନ ଛଡ଼ା, ତଳକୁ କେବେ ଖସିନାହିଁ। ପୁଲିସ୍ ସାହେବ ପ୍ରଭାକର ବାବୁଙ୍କ ସ୍ତ୍ରୀ ମଧ ତାଙ୍କୁ ପୁଅଭଳି ଭଲପାଆନ୍ତି। ତାଙ୍କ ଘର ଅତି ନିକଟରେ। ନିତି ସକାଳ ସନ୍ଧ୍ୟା ସେ ସେଇଠିକି ଯାଏ। ପ୍ରଭାକର ବାବୁ ବଡ଼ଲୋକ ବୋଲି ତାଙ୍କ ପିଲାଏ ତାଙ୍କୁ କେବେହେଲେ ଅନ୍ତର କରିନାହାନ୍ତି। ସେ ସେହିମାନଙ୍କର ଖେଳପଢ଼ା ଆମୋଦପ୍ରମୋଦ ସବୁର ସାଙ୍ଗସାଥୀ। ସେମାନେ ତ ସମସ୍ତେ ବଡ଼ଲୋକ-କିନ୍ତୁ କାହିଁ ସେ ଗରିବ ବୋଲି ତ କେହି ତାଙ୍କୁ ଅନାଦର କରି ନାହାନ୍ତି। ମାତ୍ର ମା ତାର ବଡ଼ଲୋକ ଓ ଗରିବ ଲୋକ ଭିତରେ ବଡ଼ ଅନ୍ତର ଦେଖନ୍ତି। ବଡ଼ ଲୋକଙ୍କ ସାଙ୍ଗେ ମିଶିବାକୁ ତାଙ୍କୁ ଏକରକମର ମନାକରୁଥାନ୍ତି-ସେଥିରେ କୁଆଡ଼େ ଗରିବର ଆତ୍ମ-ସମ୍ମାନ ନଷ୍ଟହୁଏ। ଅଥଚ ହରିବାବୁଙ୍କୁ ସାହାଯ୍ୟମାଗିବା–ସେ ବି ତ ଜଣେ ବଡ଼ ଜମିଦାର। ମା ତ କେଭେ କାହାକୁ ସାହାଯ୍ୟ ମାଗିନାହାନ୍ତି – ତା ପଢ଼ାପାଇଁ ଜଣ ଏତେ ମୁଣ୍ଡ ନୁଆଁଇବା ସେ ପସନ୍ଦକଲେଣି ? ମା କଥା ଶୁଣିଲାବେଳୁ ତା' ହୃଦୟରେ ପ୍ରବଳ ଦ୍ୱନ୍ଦ୍ୱ। ଦିନଥିଲା ତାଙ୍କ ବଂଶ ଜମିଦାର ବଂଶ ଥିଲେ। ଆତ୍ମୀୟଙ୍କ ଚକ୍ରାନ୍ତରେ ମାଲିମକଦ୍ଦମାରେ ସର୍ବସ୍ୱ ହରେଇଲେ। ଏସବୁ ଗପ ସେ ମା ମୁହଁରୁ ଅନେକଥର ଶୁଣିଚି, କିନ୍ତୁ ସେଥିରେ ତାର କେବେହେଲେ ମନଧ୍ୟାନ ଯାଇନାହିଁ। ବଡ଼ଲୋକ ହବାରେ କି ଅଧିକା ସୁଖ, ସେ କିଛି ବୁଝି ନାହିଁ – ବୁଝିବାକୁ ବାଛ ବି ନାହିଁ। ତାର ଇଚ୍ଛା ଅନ୍ୟ ରକମ, ତାର ଭାବନା ଅନ୍ୟ ଜଗତର। ବର୍ତ୍ତମାନ ସେ ବିଦ୍ୟା ରାଜ୍ୟର ସାଧକ, ପୂଜାହାରୀ। ତାର କ୍ଷୁଦ୍ର ସୁଖଦୁଃଖ ପାଠରେ, ବହିପତ୍ର ଭିତରେ, ସ୍କୁଲ ବେଞ୍ଚର ସୀମାରେ ଆବଦ୍ଧ। ତାର ଆଦର୍ଶ ମାଷ୍ଟରବୃନ୍ଦ-ବରିଷ୍ଠ କ୍ଲାସ୍ ମାଷ୍ଟର, ବ୍ରଜବାବୁ।

ସେ ତାଙ୍କୁ ବଡ଼ ଭକ୍ତିକରେ – ବଡ଼ ଶ୍ରଦ୍ଧାକରେ ଏକରକମ ଭଇ ବି ପାଏ। ତା' ଦୃଷ୍ଟିରେ ବ୍ରଜବାବୁ ବଡ଼ ଆଦର୍ଶ ପୁରୁଷ-କବି, ବିଦ୍ୱାନ, ଦେଶହିତୈଷୀ। ପ୍ଲାଟ୍‌ଫର୍ମ୍ମ ଉପରୁ ସେ ଯେତେବେଳେ ପାଠ ବୁଝାଉଥାନ୍ତି, ସେ ଏକ ଦୃଷ୍ଟିରେ ତାଙ୍କୁ ଚାହିଁଥାଏ। ତାଙ୍କ ଇଂରାଜୀ ଉଚ୍ଚାରଣ ଭଙ୍ଗୀକୁ ମନେ ମନେ ନକଲ କରୁଥାଏ। ବ୍ରଜାବାବୁ ଜଣେ ଭଲ ଗ୍ରାଜୁଏଟ୍। ଘରେ ପୁଣି ଏମ୍.ଏ.ପଢୁଛନ୍ତି। ଅଧା ବୟସରେ ସୁଦ୍ଧା ତାଙ୍କର ପାଠରେ ପ୍ରବଳ ସ୍ପୃହା। ତହିଁରେ ପୁଣି ସେ ଜଣେ ବଡ଼ ସ୍ୱଦେଶୀପ୍ରିୟ। ବିଦେଶୀ ବର୍ଜନରେ ପ୍ରାଣପଣେ ଲାଗିଛନ୍ତି। ବିଜୟ ତାଙ୍କ କଥା ଘରେ ବାହାରେ ସବୁବେଳେ ପ୍ରାୟ ଗପକରେ। ସେ କେମିତି ଦେହରେ ଓଟା ପକାଇ, ଚଟି ଯୁତା ମାଡ଼ି ସ୍କୁଲକୁ ଆସନ୍ତି– ପିଲାଏ ତାଙ୍କୁ ''ଅବଧାନେ'' ବୋଲି ଥଟ୍ଟାକରନ୍ତି-

ସେ କେମିତି ପାଠ ପଢ଼ଉପଢ଼ଉ ଗୀତାର ସର୍ଗଗୁଡ଼ା କହିଯାନ୍ତି-ଛାତ୍ରମାନେ ତାଙ୍କୁ 'ପାଗଲା' ବୋଲି ପଛରେ ପରିହାସକରନ୍ତି। ମାତ୍ର ବିଜୟ ତାଙ୍କୁ ବଡ଼ ଭକ୍ତିକରେ। ବିଶେଷତଃ ତିଳକ, ଗୋଖେଲ, ଗାନ୍ଧୀ କଥା ସେ ପକାଇଲେ। ସେ ବଡ଼ ଧ୍ୟାନରେ ଶୁଣେ। ଦେଶ ଜନନୀ, ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରିୟସୀ-ତାର ଦେଶମାତା-ଭାରତମାତା-ଭକ୍ତ କବି ମଧୁବାବୁଙ୍କ ଭାଷାରେ ମସ୍ତକରେ ହିମାଳୟ ପର୍ବତର ଦୁଇ ପାଗୁଶେ ଜଳଧି ବ୍ରହ୍ମପୁତ୍ର ସିନ୍ଧୁନଦୀ-ଚରଣରେ ବିରାଜିତ ମହାସାଗର-ବିନ୍ଧ୍ୟଗିରିବର, କଟିରେ ଗଙ୍ଗାଆଦି କେତେ ନଦୀ ଶୋଭେ ଶରୀରେ, ତାର ମହିମାମୟ ମୂର୍ତ୍ତି-ସେ ତା'ର ସେବକ ହେବ, ତାପାଇଁ ଆତ୍ମଦାନ କରିବ-କି ହବ ତାର ଟଙ୍କାପଇସା, ବଡ଼ଲୋକି, ଜମିଦାରୀ ! ତାର କ୍ଷୁଦ୍ର ମସ୍ତିଷ୍କରେ କେବେ ଦେଶନେତାର ମହିୟାନ ମୂର୍ତ୍ତି-କେବେ ସ୍ୱଦେଶ ପ୍ରେମିକ କବିର ଲଳିତ ବୀଣା ଝଙ୍କାର। କେବେ ସ୍ୱାଧୀନତାର ପ୍ରଳୟ ବହ୍ନି-ରାଷ୍ଟ୍ରବିପ୍ଳବର ବିପୁଳ ଜ୍ୱାଳାମାଳାର ତାଣ୍ଡବ ନୃତ୍ୟ-କେବେ ଭୟଙ୍କର ନୀରବ, ନିର୍ଜନ କାରା-ବାସର କରୁଣ ଚିତ୍ର। ସେ ମନେ ମନେ କାଳିଦାସ, ସେକ୍‌ସପିଅର-ଶିବାଜୀ, ନେପୋଲିଅନ୍ ହୋଇ ବସେ, କେବେ କେବେ ସ୍ୱାମୀ ବିବେକାନନ୍ଦ ବି ଗୋପାଳକୃଷ୍ଣ ଗୋଖେଲ ଅଥବା ଦେଶସେବକ ସାବରକର ହେବାର ଆକାଙ୍‌କ୍ଷାରେ ପୂରିଉଠେ।

ଭାତଥାଳିରେ ବସି ତା ମନ ଏଇସବୁ ଭାବନାରେ ପୂର୍ଣ୍ଣ। ତାର ଅନ୍ୟମନସ୍କତା ଲକ୍ଷ୍ୟକରି ମା' କହିଲେ-କିରେ ଖାଉନୁଁ? ତିଅଣ ଭଲହେଇନି ନାଁ? ହାୟ, ମୋ ପୁଅ ଦିନେ ସୁଖରେ ଖାଇପାରିଲା ନାଇଁ, ମା'ର ବ୍ୟାକୁଳତାର ଅଯତାର୍ଥତା ଦେଖି ସେ କଥାକାଟି କହିଲା- ମାଁ ତୁ 'ମୋ'ପେଇଁ ସବୁବେଳେ ବ୍ୟସ୍ତହଉ- ଦୁଃଖରେ ଅଛି- ଭଲ ଖାଇଲା ନାଇଁ, ଭଲ ପିନ୍ଧିଲା ନାଇଁ ବୋଲି। ତିଳକ ମହାରାଜ ଯେ ବାରବାର ଚୌଦ ବର୍ଷ ଜେଲ ଭାତ ଖାଇ କଟେଇଲେ-କେଡ଼େ ବଡ଼ଲୋକ ସେ, କେଡ଼େ ବଡ଼ ଜ୍ଞାନୀ-ବିଲାତରେ ବି ତାଙ୍କ ଭଳି ପାଠୁଆ ନଥିବେ। ଆମ ବ୍ରଜବାବୁ କହନ୍ତି- ଦାରିଦ୍ର୍ୟ ମଧ୍ୟରେ ମନୁଷ୍ୟତ୍ୱର ବିକାଶହୁଏ-ଧନିର ବିଳାସିତାରେ ମନୁଷ୍ୟ ପଶୁତ୍ୱପ୍ରାପ୍ତ ହୁଏ। ତାର-ବାଧା ଦେଇ ମାଁ କହିଲେ, ତୋ ବ୍ରଜବାବୁ ଖାଲି ଇସ୍କୁଲ ପିଲାଙ୍କୁ ଲେକ୍‌ଚର ଦିଅନ୍ତି ନାଁ ନିଜେ କେଭେ ଦାରିଦ୍ର୍ୟର ଦୁଃଖ ଅନୁଭବ କରିଛନ୍ତି ? ଭଲା ମୋ ଭଳି ତାର ପଞ୍ଚ ପାଇଟିକରି ଢେଙ୍କିକୁଟି, ବଡ଼ିପାରି, ବିଡ଼ିବଳି, କନ୍ଥା ସିଲେଇକରି କେହି ଚଳିଦେଖନ୍ତା କି-ଜାଣନ୍ତା, ଗଛର ଛାଇ ଅଛି, ଆମର ଛାଇ ନାହିଁ। ପୁଅ ତୋରି ଆଶ୍ରାରେ ଏତେଦିନ କଟେଇଲିରେ, ତୁ ପାଶ୍ କଲେ ଯାଇ ଆମର ଦୁଃଖ ଯିବ।

ଦୁଃଖୀ ଆଶ୍ୱାସ ଦେଇ କହିଲା-ମାଁ ମୁଁ ନିଶ୍ଚେ ପାଶ୍‌କରିବି। ପାଶ୍‌କଲେ ହେଲେ କୋଉଠି ଖଣ୍ଡେ ଅଧେ ଚାକିରୀ ମିଳିବ-ନଇଲେ କଲିକତା ଯିବି। କଲିକତା ନାଁରେ ମାଁର ଛାତି ଦାଉଁକିନା ଥରିଉଠିଲା- ପୂର୍ବକଥା ସବୁ ମନେପଡ଼ିଗଲା। ସେ ବିକଳ ହେଇ କହିଲେ- ଆମର ଯାହା ବି ହଉ, ମୁଁ ତୋତେ କଲିକତା ଛାଡ଼ିବି ନାଇଁରେ ବାପ। କଲିକତାରେ ଭାରି କଳାଜର ହୁଏ। ତୋ ବାପକୁ ପରା -

ମାଁର ଭୟ କହିଲେ ନସରେ। ପୁଅ ଟିକେ ମୁରୁକେଇ କହିଲା – ଆଉ କ'ଣ କଲିକତାରେ ସମସ୍ତଙ୍କୁ କଳାଜ୍ୱର ହୁଏ – ଏଡ଼େ ସହର ସେ – ଆଉ ଏଠି ଚାକିରୀ ନ ମିଳିଲେ ତ ଅନ୍ୟ କୋଉଠିକି ଯିବାକୁ ହବଇତ – ଦେଶଟି ଯୋଉ ଭଲ – ଚାରିଆଡ଼େ ତ ମେଲେରିଆ। ଡିଷ୍ଟ୍ରିକ୍ଟ ବୋର୍ଡ଼ରେ କାମକଲେ ଦର୍ମାବି ଅଳ୍ପ। ସେଥିରେ ପୁଣି କୋଉ ନାଁ କୋଉ ମେଲେରିଆ ଅଞ୍ଚଳକୁ ପଠେଇଦେବେ। ସେଟେଲମେଣ୍ଟରେ ଦେଖିବି ଯାଉଚି। ଧର ହରିବାବୁ ସାହାଯ୍ୟକଲେ ବି, କ'ଣ ମାଁ ଭାବିଚୁ ମୁଁ ଚଳିପାରିବି, ଆଉ ପାଠପଢ଼ିବି ? ସେ ଯଦିବା ସାହାଯ୍ୟକରିବେ, କେତେ ଏମିତି ? ମୋର ଇଚ୍ଛା ମୁଁ ଡାକ୍ତରୀ ପଢ଼ନ୍ତି – ଯଦି ହୁଅନ୍ତା ସ୍କଲରସିପ୍ ମିଳିଯାଆନ୍ତା।

ମାଁ ଟିକେ ଚିନ୍ତାକରି କହିଲେ– ହଁ ଠିକ୍ କହିଚୁ, ତୁ ବୀରବାବୁ ଡାକ୍ତରଙ୍କୁ କହି କିଛି ଯୋଗାଡ଼କଲେ ହବ– ସେ ବେଶ୍ ଭଲଲୋକ।

ଦୁଃଖା କ୍ଷୁଣ୍ଣ ହୋଇ କହିଲା – ମୁଁ କ'ଣ ଯା ତା ଦୁଆର ହୋଇପାରିବି ନାହିଁ। ପରୀକ୍ଷାରେ ଆଗ ପାଶ୍‌ହଉ, ତା'ପରେ ଦେଖିବି। ଆମର କ'ଣ ଜୀବନଯାକ ଇଯା ତା ଦୁଆର ହୋଇ ଯିବ ?

ଶେଷ କଥାଟିକରେ ମାଁ ଆଖିରୁ ଟପ୍ ଟପ୍ ଦିଟୋପା ଲୁହ ଭାତ କଂସାରେ ପଡ଼ିଗଲା– ପୁଅ ତା ଲକ୍ଷ୍ୟକରି କହିଲା – ମାଁ ତୁ କାନ୍ଦନା– ମାଁ, ମୁଁ ତୋ କାନ୍ଦ ଦେଖି ପାରିବି ନାହିଁ –

ଆରେ ବିଜୟ ତୁ ମୋ କାନ୍ଦ ଦେଖି ପାରିବୁନୁ କହୁଚୁ। ମୁଁ ଯେ କେତେ କାନ୍ଦିବି – ସତର ବର୍ଷ ହେଲା ଏ ଛାତି ପଥରକରି ଯେ ଏକା ଏକା ମୁଁ ନିଃସହାୟ ରାଣ୍ଡ ମାଇକିନା ଏ କୁଡ଼ିଆ ଖଣ୍ଡରେ ପଡ଼ିଚି – ଆରେ ପୁଅ, କେତେଥର ସୂର୍ଯ୍ୟ ଦେବତା ଉଇଁ କେତେଥର ଅସ୍ତଗଲେଣି– କେତେ ଖରା, କେତେ ବରଷା ମୁଁ ଏକା କଟେଇଚିରେ ବାପ। ମୋ ଦୁଃଖରେ କିଏ ଆହା କରିଚି କହିଲୁ? ହେଇପରା ନିଜ ଆତ୍ମୀୟ ସ୍ୱଜନ ନିମେଇ ବାବୁଘର ଘିଅରେ ଖାଇ ଦୁଧରେ ହାତ ଧୋଉଚନ୍ତି। ଦିନେ ବାସି ଶାଗରେ ମୋତେ ପଚାରନ୍ତି ? ମୋ ଶ୍ୱଶୁରର ସବୁସମ୍ପତ୍ତି ଭୋଗକଲେ, କିନ୍ତୁ ନ କହିଲେ ରାଣ୍ଡଛେଉଣ୍ଡ ପିଲାଟାକୁ କନା ପାଞ୍ଚଗଜ ଦବାକୁ– ସେଇତିପାଇଁ ମୁଁ କହେ, ତାଙ୍କ ଦୁଆରକୁ ଯିବୁନି– ତାଙ୍କ ନାଁ ଧରିବୁନି– ତୋର ସେମାନେ କେହି ନୁହନ୍ତି– ଆମର ଭଗବାନ ଅଛନ୍ତି – ସେଇ ଏକା ସାକ୍ଷୀ – ସେଇ ଏକା ମୋ ଦୁଃଖ ଦେଖିଛନ୍ତି, ଆଉ ଦେଖିବ। ମୋର ସେଇ ଟଗର ଗଛଟିରୁ ନିତି ଦିଅଁଙ୍କୁ ଫୁଲ ମୁଁ ଦିନ୍ଦେଇଚି – ଦିଅଁ ମୋ ଡାକ ଶୁଣିବେ – ମୋ ମନ କାମନା ପୂର୍ଣ୍ଣହବ।

ବିଜୟ ମାଁର ମନକାମନା କଥା ଯେତେ ଭଲ ଜାଣି ନଥିଲା, ତାଙ୍କ ପ୍ରିୟ ଟଗର ଗଛଟିକୁ ତହୁଁ ଭଲ ରୂପେ ଜାଣିଥିଲା, ଆଉ ଭଲବି ପାଉଥିଲା – ସେ ଖଣ୍ଡିକ ତା ବାପର ସ୍ମୃତି, ସେଥିପାଇଁ କଥା କଥାକେ ହେମବତୀ ତାକୁ ଉଇଗା ଦିଅନ୍ତି। ଯୋଉଦିନ ପ୍ରଭାକର ବାବୁଙ୍କ ମାଳି କତିରୁ ଚାରା ଗଛଟି ଆଣି ମନ୍ଦାକରି ସ୍ୱାମୀ ରୋଉଥିଲେ, ଭାର୍ଯ୍ୟା ଠିଆ ହୋଇ

ଦେଖୁଥିଲେ, ଝିପି ଝିପି ମେଘ ପକଉଥିଲା, ଆଉ ଚିନ୍ତା ନାହିଁମ ବୋଲି ସ୍ତ୍ରୀ ମଧୁର ଭର୍ତ୍ସନା କରିଥିଲେ– ସ୍ୱାମୀ ବୁଲିପଡ଼ି ପ୍ରେମ ଅପାଙ୍ଗରେ ସ୍ତ୍ରୀଙ୍କୁ ଚାହିଁଥିଲେ, ଆଉ ତତୋଽଧିକ ଗଭୀର ପ୍ରେମରେ କହିଥିଲେ, "ଏ ଫୁଲରେ ପରା ତମର ବଡ଼ ଶରଧା। ଗଛେ ଦିଗଛ ଫୁଲ ଥିଲେ ଠାକୁର ପୂଜିବ। ଏ କ'ଣ ନାକରା! ଆଉ ସେ କଳା ଜୁଡ଼ାରେ ନିଜ ହାତରେ ମୁଁ ପିନ୍ଧେଇବି– ମୁଁ ଯେ ତମକୁ ଆଉ କିଛି ଦେଇ ପାରିଲି ନାହିଁ। କହୁ କହୁ ତାଙ୍କ ଆଖି ଯୋଡ଼ିକ ଲୁହରେ ଟଳ ଟଳ ହୋଇଥିଲା – ଭାର୍ଯ୍ୟାର ଛାତି କୁଣ୍ଡେ ହେଇଯାଇଥିଲା – ସେ ମଧ ଆଖି ଦିଟା ପୋଛି, ପ୍ରେମ ଆବେଗରେ ଧୀରେ ଧୀରେ କହିଥିଲେ – "ତୁମେ ତ ମୋର ସବୁ" – ସେ ଦିନ କାହିଁ ? ତା'ପରେ ୧୭ ବର୍ଷ ବହିଯାଇଛି। ନିରାନନ୍ଦର ସତରବର୍ଷ। ସତର ବର୍ଷଯାକ ଟଗର ଫୁଲ ଫୁଟିଛି। ବାସନାରେ ସାନଚାଳିଆ ଖଣ୍ଡ ମହକିଚି – କିନ୍ତୁ ରୋପିଲା ହାତ ତା'ର କାହିଁ ଯେ, ସେ ଫୁଲନେଇ ତା'ର କଳା ଯୁଡ଼ାରେ ସଜେଇଥାନ୍ତା? ସେ ପ୍ରେମପୂର୍ଣ୍ଣ ଆଖି ଯୋଡ଼ିକ କାହିଁ ଯେ, ତା'ର ସେ ସୁନ୍ଦର ଶୋଭା ଦେଖିଥାନ୍ତା? ସବୁ ଯାଇଚି – ସବୁ ହଜିଚି। ମୁଣ୍ଡ ବାଡ଼େଇ ଖୋଜିଲେ ଆଉ ମିଳିବ ନାହିଁ– ହେଲେ ଅଛି ତା'ର ସ୍ମୃତି – ସ୍ମୃତିର ସୌରଭର ଆନନ୍ଦ – ସେହି ଆନନ୍ଦ ଟିକେ ସମ୍ବଳ କରି ତାକୁଇ ଗଣ୍ଠିଧନ କରି ପଡ଼ିଛନ୍ତି ହେମବତୀ ସତରବର୍ଷ କାଳ ସେଇ କୁଡ଼ିଆ ଖଣ୍ଡରେ, ଯେଉଁଠି ତାଙ୍କ ସ୍ୱାମୀର ଜୀବନଦୀପ ଚିରଦିନପାଇଁ ନିଭିଯାଇଥିଲା – କିନ୍ତୁ ତାହାର କାନ୍ଥେ କାନ୍ଥେତ ତାଙ୍କରି ଛବି, ତା'ର ମାଟିର କଣିକଣିକାରେ ତ ତାଙ୍କରି ସ୍ମୃତି, ତା'ର ଚଟାଣରେ ତାଙ୍କ ଅନ୍ତିମ ଶଯ୍ୟା, ଟଗରଗଛ ନାଁରେ ହେମବତୀର ଗୋଟି ଗୋଟି ସବୁ ମନେପଡ଼ିଗଲା। ଏତ ତାଙ୍କର ନିତି ଜପାହାର। ଏଥିରେ ନୂଆ କଥାଟା ଥିଲା ବା କ'ଣ! ବିଜୟ ଏ ସବୁରେ ଅଭ୍ୟସ୍ତ। ସେ ଏ ଦୁଃଖର ଗଭୀରତା କ'ଣ ବା ବୁଝିବ। ନୀରବରେ ଆହାର ସାରି ଗଲା ଛିଣ୍ଡା ଶେଯପାରି ଶୋଇବାକୁ– ମା ପାଇଟିଂ ସାରି ଝରକା ବାଟେ ଚାହିଁଲେ ନୀଳାକାଶକୁ। ନୀଳାକାଶରେ ଚତୁର୍ଦ୍ଦଶୀର ଚନ୍ଦ୍ରମା– ଆଜି ବାଦ୍ କାଲି ଦୋଳ-ହିନ୍ଦୁ ମାତ୍ରର ପିଠାପଣା ମହାନନ୍ଦର ଦୋଳପୂନେଇ–କିନ୍ତୁ କାହିଁ ସେ ଆନନ୍ଦ, କାହିଁ ସେ ପର୍ବ।

## ରମାନାନୀ

ହଇରେ ଦୁଃଖୀ! କିରେ ତୋ' ନିଦ ଭାଙ୍ଗିନାହିଁ କିରେ? ଯା ଡାକଦେଇ ରମାନାନୀ ବା ହାତରେ ଖଣ୍ଡେ ଦାନ୍ତକାଠି ଧରି କାନ୍ଧରେ ଗାମୁଛା ପକାଇ ଡାହାଣ ହାତର ବିଶି ଆଙ୍ଗୁଳିରେ ଦାନ୍ତରେ ଗୁଡ଼ାଖୁ ରଗଡୁ ରଗଡୁ ବାଡ଼ିବାଟେ ଆସି ହେମୀ ମାଉସୀ କୁଡ଼ିଆର ନାଳ କଡିକି ସଜନାଗଛ ମଳେ ଠିଆହେଲା। ହେମୀ ମାଉସୀ ଖଣ୍ଡେ ଛଡ଼ାରେ[2] ବସି ବାସି ପାଇଟି ସାରିବାରେ ଲାଗିଛନ୍ତି। ରମାକୁ ଭିତରକୁ ପଶିବାର ଦେଖି ମୁଣ୍ଡ ଉଠେଇ କହିଲେ– "କିଲୋ କାହିଁକି ରାତିରେ ପାଟି କରୁଥିଲୁ କି?

(୧) ଟିକିଏ ଦୂରରେ, (୨) ସକାଳର ଘର / ଦାଣ୍ଡ ଖରକା, ବାସନମଜା ଆଦି କାମ।

ରମା ଈଷତ୍ ମୁରୁକି କହିଲା, ''ତୋତେ ଶୁଭିଲାକି ? ନୂଆବୋହୂଟା ପରା ମୋତେ ଯା' ଇଚ୍ଛା ତା'କରି ଶୋଧୁଥିଲା[୧] । ମୁଁ ସତରେ ଆଉ କେତେ ସହିବି କହିଲୁ ? ଆଉ ସହିପାରିବି ନାହିଁ। ଏଥର ଯାଉଚି, ବାସୁଆବୋହୂ ଯିମିତି କନିଅର ମଞ୍ଜିଖାଇ ମଲା, ମୁଁ ସିମିତି ଏ ଜ୍ୱାଳାରୁ' ତ୍ରାହି ପାହିବି[୩] । ମାଉସୀ ତିରସ୍କାର ତୀବ୍ର ସ୍ୱରରେ କହିଲେ–କିଲୋ ! ଅଲକ୍ଷଣା କଥା ମୁହଁରେ ଧରୁଚୁ ? ତୁ'ତ ମନ ସୁଖେ ମରିବୁ– ପାଣୁଆ ଅପର୍ଣ୍ଣିକୁ କ'ଣ ବଇରୀ ବେକରେ ବାନ୍ଧିଯିବୁ। ବାପ ତ ଛାଡ଼ି ପଳେଇଲା– ଆଉ ମା'କି ଗଲେ କ'ଣ ଛତରରେ ବସିବେ[୪] କିଲୋ ! ଆଉ ନଇଲେ– ମୁଁ କାହାଁତକ[୫] ହାତରୁ ମାଉଁସ ଝଡ଼େଇବି କହିଲ ? ଦୋଳ ଆଜି, ତାଙ୍କୁ ଖଣ୍ଡେ କିଏ ଲୁଗାଦେଲା–ସେଇଠି ପରା ନିଧି ଭାଇର ପିଲାଏ ପାଟପଟନୀ ପିନ୍ଧି ବୁଲୁଛନ୍ତି। ଆଉ ମୋ ଆର୍ଣ୍ଣି ଟଆଣୀର ଗର୍ଭ କ'ଣ ବଥଉ[୬] ନାହିଁ, ଯେତେହେଲେ ଜନମ କରିଚି ଲୋ ! ବାପ ହତଲକ୍ଷ୍ମୀ କୋଉ ରାଜ୍ୟକୁ ଯାଇ ମଲା କେଜାଣେ– ତାଙ୍କୁ ନିଆଁ ଲାଗିଲା– ମୋତେ ବି ତା' ସାଙ୍ଗରେ ପୋଡ଼ିପାଡ଼ି ଦେଇ ଯାଇଥିଲେ ସରିଥାନ୍ତା– ଏ ଭାଇ ଭାଉଜର ସାତଗୋଇଠା କିଏ ସହିବ ବାପ ! ଦିନରାତି କାମ କରି କରି ମଲି– କିନ୍ତୁ ଛତରଖାଇ ନ କହିଲେ ଏତେ କଲୁ ବୋଲି– ମୋ କରମ ବାପ। ନଇଲେ ରେଙ୍ଗୁନ[୭] ପଳେଇଥାନ୍ତା। ଆଉ ମୁଁ ଏଠି ଏ ଖତୁମୁଷା ଖାଉଥାନ୍ତି ?

ମାଉସୀ ଦୟାର୍ଦ୍ର ହୃଦୟରେ ରମା ପ୍ରତି ଚାହିଁଲେ– ବୟସ ପ୍ରାୟ ତାର ୩୦ ବର୍ଷ ହବ। ହେଲେ ତା'ର ଗାଲ ଦି'ଟା ଠାକରା[୮]– ଆଖି ଗାଡ଼ ଗାଡ଼ ପଶିଯାଇଛି, ରୂପରଙ୍ଗ ସବୁ ମରିଯାଇଚି – ସବୁ ହାତରେ ଆତ୍ମସାତ୍ ଛାପଟି ଜଳ ଜଳ ହଉଚି– ସେ ସୁବିଧା କିନ୍ତୁ ଭାବିଲେ– ହାୟରେ। ରାଣ୍ଡ ନୋହିଲେ ରାଣ୍ଡଠୁ ବଳେ, ଗଲାବର୍ଷେ ହେଲାଣି ତା' ସ୍ୱାମୀ ନିରୁଦ୍ଦେଶ। ରୋଜଗାର ଧନ୍ଦାରେ ବରମା ଯାଇଚି ଯେ, ଯାଇଚି। ଗଲାର ମାସେ ଦି'ମାସ ବାଦ୍[୯] ନା ଚିଠି, ନା ଟଙ୍କା, ନା ପିଲା ଭାର୍ଯ୍ୟାର ଖୋଜ-ଖବରନେଲା। ସେଇଦିନୁ ଅନାଥିନୀ ଗାଁ ଛାଡ଼ି ଆସି ଭାଇଭାଉଜର ଆଶ୍ରାରେ ପଡ଼ିଚି। ଶ୍ୱଶୁର କୁଳରେ କେହି ନାହାନ୍ତି। ସବଂଶକୁ ଠାକୁରାଣୀ[୧୦] ଗ୍ରାସକଲା। ନଈକୂଳିଆ ଗାଁ ଖଣ୍ଡିକ ଧୋଇଲେ ଭାସିଗଲା, ଆଉ ତା'ର ଚାରି ପିଲାରୁ ଦୁଇଟିକୁ ଯମ ମୁହଁରେ ଦେଲାପରେ ସେ ଏକକାନିକିଆ ହୋଇ ପିଲା ଦି'ଟାକୁ ଧରି ଯେ ବାପଘର ଆଶ୍ରାରେ ପଡ଼ିଛି–ତା'ର ପିଠିରେ ଭଉଜଙ୍କର ଝାଡ଼ୁମୁଠା– ଖତୁମୁଷା। ତା'ର ମନରେ ଭାଇଙ୍କର ତିରସ୍କାର ଶତ କୁମ୍ଭୀପାକର[୧୧] ଜ୍ୱାଳା ସୃଷ୍ଟିକଲେ ସୁଦ୍ଧା, ସେ ଏ ଆଖି ଲୁହ ଦେ ଆଖିରେ ମାରି ପଡ଼ିରହିଛି। ମା'ବାପ ବି ନାହାନ୍ତି ଯେ ପିଠିରେ ପଡ଼ିବେ[୧୨]। କୂଳ ଭୁଆସୁଣୀ ଦାଣ୍ଡକୁ କୁଆଡ଼େ ଯିବ ? ଏବି ତ ତାଙ୍କରି ଭଳି ଦୁଃଖିନୀଟିଏ। ତାଙ୍କର କ'ଣ ଦୁନିଆରେ ଏକା ଦୁଃଖ। ମାଉସୀଙ୍କ ମନକଥା ବିଡ଼ିପାରି[୧୩] ରମା କହିଲା – କ'ଣ ଭାବୁଚୁ

(୧) ଗାଳିଦେବା, (୨) ଦୌରାତ୍ମ୍ୟ, (୩) ମୁକ୍ତିପାଇବା, (୪) ସର୍ବସ୍ୱ ହରାଇବା, (୫) କେମିତି, କେଉଁ କାଳପର୍ଯ୍ୟନ୍ତ, (୬) କଷ୍ଟପାଇବା, (୭) ରେଂଗୁନ, (୮) ଭିତରକୁ ପଶିଯିବା, କୋରଡ଼ପରି, ମାଂସ ନଥିବା (୯) ପରେ, (୧୦) ହଇଜା, (୧୧) ନରକ, (୧୨) ସହାୟ ହେବା, (୧୩) ବୁଝିପାରି

କିଲୋ ? ମୋ ଆଖିଁତିଆଣୀ ପାଇଁ ତୁ ଭାରି ଭାବୁ– ମାଉସୀ ସହାନୁଭୂତିରେ କହିଲେ– ଭାବେ ନାଥଭାଇର କ'ଣ ନଥିଲା। ତୁ ଗୋଟିଏ ଝିଅ ବୋଲି କେଡ଼େ ଗେଲବସରରେ ବଢ଼ିଥିଲୁ। ତୋ କପାଳରେ ଯା'ଥିଲା– ତୋ ପିଲାଏ ମୁଠାଏ ଭାତକୁ ତରସିଲେ। ମାଉସି ! ଆଉ ବାବା କଥା ପକାନା– ମା କେମିତି ଜାଣି ନଥିଲି, ସେଇ ମା ଥିଲେ ସେଇ ବାପ। ସେ ଥିଲେ ଆଉ ଏ ନିଧିଭାଇ, ନବୀନା ଭାଇ ମୋତେ ଏତେ କଷ୍ଟ ଦିଅନ୍ତେ, ଭାଉଜଗୁଡ଼ା ଏତେ ଗଞ୍ଜନ୍ତେ ? ମୋ ପିଲାଏ ଆଜି ଖଣ୍ଡେ ଖଦିକି ଜଳଜଳ କରି ଚାହିଁଥାନ୍ତେ ? ''ଯାହା କହ, ତୋ ଭାଇଙ୍କର ଟିକେ ବିବେକ ନାହିଁ। ଭାରିଯା ଯା କହିଲେ ସେଇ, ଅଧିକା କିଛି ନ'ଟା ଛ'ଟା ନାହିଁ, ଗୋଟାଏ ବୋଲି ଭଉଣୀ।'' ଆଲୋ ମାଉସୀ ମୁଁ କ'ଣ ଏକା ପେଟ ? ଆମେ ଯେ ତିନିଟା। ଯାହା ଘରକୁ ଆଉଚି କାହାକୁ ଅଣ୍ଟୁନାହିଁ। ଏ ନିଆଁଲଗା ସେଟିଲିମେଣ୍ଟରେ କ'ଣ ଅଛି କହିଲୁ ? ଦି'ଭାଇର ଦରମା ମିଶି ତେର ଟଙ୍କା; ଗୋଟେ ଏତେ ପରିବାରକୁ କ'ଣ ଅଣ୍ଟୁଚି ? ଦିନ ପ୍ରତିଦିନ କାଳ ହେଲାଣି ମହଙ୍ଗା(୧)। ସେଥିରେ ଘରେ ପଣେ(୨) ଛୁଆ– ତୁ'ତ ସବୁ ବୁଝ। ମୁଁ ବି କାହାଁତକ ତାଙ୍କୁ ଦୋଷ ଦେବି ? କୁଆଡ଼ିକି ଅଣ୍ଟୁନାଇଁ। ସେଇ ଯୋଗୁ ନିତି ହାଣ୍ଡି ବାଡ଼ିଆ।

ଏତେବେଳକୁ ମାଉସୀର ବାସନ ମଜାଧୁଆ ସବୁ ସରିଲା। ସେ କାଠ ପିଢ଼ାଟି ଉପରେ ବାସନତକ ସଜାଡ଼ି, ଚିରା ଗଣ୍ଠିଗଣ୍ଠିଆ ମସିଆ ଲୁଗା ଖଣ୍ଡେ ଆଉ ଚିରା ତେଲ ଚିକିଟା ଗାମୁଛାଟା ବାଁ ବାହୁ ଉପରେ ପକେଇ ଗାଧୋଇ ବାହାରିଲେ।

ଉଷାର ମଧୁର ଆଲୁଅ ପ୍ରାଚୀମୂଳେ ଫୁଟିଉଠିଥିଲା। ଗୋଲାପୀ ଆଭା ଉପରେ ସୂର୍ଯ୍ୟର ସ୍ୱର୍ଣାଂଶୁ, ଗୋଲାପୀ ଶାଢ଼ୀରେ ସୁନାର ଜରି ମୁହୁଣ୍ଡା ଭଳି ଦିଶୁଥିଲା। ମନେ ହେଉଥିଲା ନାଲି ପଦ୍ମଦଳ ଭିତରୁ ହଳଦିଆ କୋଷଟା ଫୁଟି ଦିଶୁଚି। ଆଉ ଆକାଶର ପ୍ରଶାନ୍ତ ନୀଳବର୍ଣ୍ଣ ଯେମିତି ନୀଳପାଣିର ପୋଖରୀଟିଏ।

ରମା ଦଣ୍ଡ ଖଣ୍ଡେ ଆକାଶକୁ ଚାହିଁଲା। ପାହାନ୍ତାର ଥଣ୍ଡା ପବନ ବାଜି ତା' ଚିତ୍ତ ଗ୍ଲାନି ଅନେକଟା କମିଯାଇଥିଲା। ସଙ୍ଗିନୀ ଦୁଇଟି ଧୀରେ ଧୀରେ ଆସି କାଠଯୋଡ଼ା କନ୍ଦକଡିରେ ପହଞ୍ଚିଲେ।

ଫାଲ୍‌ଗୁନ ମାସର କାଠଯୋଡ଼ି। ତା'ର ପାଣିର ଶୋଭା, ନାଚଭଙ୍ଗି ଆଜିକାଲି ନାହିଁ। ନାଳ ବାଲିଚରରେ ତାର ବକ୍ଷ ସୁଶୋଭିତ। 'ପୁଣ୍ୟ ତୋୟା ଉତ୍କଳ ଗରିମା'' କାଠଯୋଡ଼ି ଆଜିକାଲି ପୂତିଗନ୍ଧ ତୋୟାରେ ପରିଣତ। ମୁନିସିପାଲ୍‌ଟିର କଲ୍ୟାଣ କଟକ ସହର ଯାକର ଆବର୍ଜନା ଆଉ ଅନେକ ମଶାଣୀ ମଡ଼ା ତାର ନିର୍ମଳ ଜଳର ଉପାଦାନ। କାଠଯୋଡ଼ି କୂଳର ସ୍ୱାସ୍ଥ୍ୟପ୍ରଦ ବାୟୁ ସକାଶେ ହାଉଆ ଖାଇବାକୁ ଦୂର ବିବେଦଶରୁ ଆଉ ଲୋକମାନେ ଏଣିକି ଏଠାକୁ ଆସୁନାହାନ୍ତି, ଓଡ଼ିଆ ବୋଇତଗୁଡ଼ାକର ନାମଗନ୍ଧ କୁଆଡ଼େ ଲୁଚିଗଲାଣି। ପାରିତଙ୍ଗା,

(୧) ଉଚ୍ଚା ବଜାର ଦର, ଦୁର୍ମୂଲ୍ୟ, (୨) କୋଡ଼ିଏ ଗଣ୍ଡା, ବହୁତ

ମାଛମରା ନଉକା– ସେ ପୁଣି ବିଶେଷତଃ ବର୍ଷାଦିନ ଛଡ଼ା, ଅନ୍ୟ ସମୟରେ କ୍ୱଚିତ୍ ଦେଖାଯାଏ। ଶୁଖିଲା ଚର[୧] ଉପରେ ମଣିଷ ଶଗଡ଼, ବଳଦ ସବୁ ଚାଲିଯାନ୍ତି।

କାଠଯୋଡ଼ି କୂଳରେ କିନ୍ତୁ ଓଡ଼ିଆ ଜାତିର କୀର୍ତ୍ତି ସେହି ବିଖ୍ୟାତ ବନ୍ଧଟି ଆଜିସୁଦ୍ଧା ନୀରବରେ ଓଡ଼ିଆଙ୍କୁ କ'ଣ କହିବ କହିବ ବୋଲି ଭାଷା ପାଉନାହିଁ। ଆଉ ତାରି ଉପରେ ସୂକ୍ଷ୍ମ ଶରୀରୀ ମର୍କତକେଶରୀଙ୍କ ଆତ୍ମା କାନ୍ଦୁଚି ପରା। ତାଙ୍କର ଏଡ଼େ ପ୍ରିୟ କାଠଯୋଡ଼ିର ମଣିମର୍କତସନ୍ନିଭ ଜଳର ଢ଼େଉ ବଦଳେ, ବର୍ତ୍ତମାନ ତାଙ୍କ ଖୋଳିଆ ଦର, ଶୁଖିଲା କ୍ଷୀଣ ଆଖିଟା ତାଙ୍କ ସୂକ୍ଷ୍ମ ଆଖିରୁ ସୁଦ୍ଧା ପାଣି ବାହାର କରିଦେଉଚି। ଅକାତର ରୂପେ ଗଛପତ୍ର ସେହିଥିରେ ଭିଜି ଯାଉଚନ୍ତି ପରା।

ସଙ୍ଗିନୀ ଦ୍ୱୟର ଏତେ କଥା କିନ୍ତୁ ମନେପଡ଼ି ନଥିଲା– ନିଜର କ୍ଷୁଦ୍ର ସୁଖଦୁଃଖରେ ତନ୍ମୟା ରମଣୀ ଯୋଡ଼ିକ ପାଣି କୂଳକୁ ଓହ୍ଲାଇଗଲେ। ଘଣ୍ଟାଏ ପାଣିରେ ବୁଡ଼ି ଦେହ ଘସୁ ଘସୁ ରମା କହିଲା, ହେମୀ ମାଉସି! ନବା ମା'ର ଏତେ ଉଛର[୨] କାହିଁକି? ଏତେବେଳକୁ ସେ ଗାଧୋଇ ଆସନ୍ତାଣି।''

ମାଉସୀ କହିଲେ ''କି ଜାଣି, ତାକୁ ତ ନିତି ଜରହଉଚି। ହେଲେ ସେ ମୋର ବଡ଼ ଉପକାରୀ। ତା'ଠୁ ମୁଁ ବିଡ଼ିବଳା ଶିଖିଲି ବୋଲି କଷ୍ଟେ ମଷ୍ଟେ ଚଳୁଚି। ଏ ବିଡ଼ି ବଳାଟା ନଥିଲେ ଦୁଃଖୀ ଗରିବ ଘର କିମିତି ଚଳନ୍ତେ, ମୁଁ ବୁଝି ପାରୁନାହିଁ। ପହିଲି ମତେ ଜମାରୁ ଆସୁନଥିଲା। ରମା କହିଲା ''ମାଉସୀ ଆମର ନାଁ ହିନ୍ଦୁଘର ଟେକ ସିନା, ଦେଖିଲା ବେଳକୁ ଭିତରଟା! ଯାହାର ବି' ପଇସା ଅଛି ଗିରୀବକୁ ସେ ଆଡ଼ ଆଖିରେ ଅନଉ ନାହିଁ। ତମେ ହେଲ ଏକା, ତମକୁ କହିବାକୁ ବୋଲିବାକୁ କେହିନାହିଁ। ଆଉ ମୁଁ ବିଡ଼ିବଳିଲେ ବାକି ରହିବ? ଭାଉଜ କହିବେ କ'ଣ ପଠୁଣୀ ହେଇଚୁ ନାଁ ମୋଚିଆଣୀ ହେଇଚୁ– ବିଡ଼ି ବଳୁଚୁ।

ମାଉସୀ ଟିକେ ରୁଷ୍ଟଭାବେ କହିଲେ– ସ୍ୱାଧୀନଭାବେ ମଇଳା ସଫାକରି ଖାଇବ, କିନ୍ତୁ ଆପଣା ଲୋକର ଗୋଲାମୀ ଖଟିବ ନାହିଁ। ଆପଣା ଲୋକର ଗୋଲାମୀକରି ତୋର ଏ ଦୁର୍ଦ୍ଦଶା। ମୁଁ ଖାଏଁ ନଖାଏ, ମୋ କୁଡ଼ିଆ ଖଣ୍ଡରେ ପଡ଼ିଥାଏ। ମୋତେ କହିବାକୁ, ବୋଲିବାକୁ କେହି ନାଇଁ। ପଛେ ପର ଦୁଆରକୁ ଯିବ, ନିଜ ଲୋକଙ୍କ ତ୍ରିସୀମା ମାଡ଼ିବି ନାଇଁ। ସେମାନେ ଖୁବ୍ କାମ ଖଟେଇନେବେ, ଓଲଟି ଘରଅନାର କଥା –

ରମା– ସତଲୋ! ଯେତେ କର ତାଙ୍କ ଆଖିକି କ'ଣ ଦୁଶିବ, ଦୁଶିବ ଖାଲି ଭାତକଂସାକ, ମୋର ଯଦି ଆଉ ଅନ୍ୟ ଉପାୟ ଥାନ୍ତା, ମୁଁ ଏ ଭାତ, ଭାଉଜ– ଖଣ୍ଡିଆ କାନ୍ଦୁକୁ ଆଉଜି ହଉଥାନ୍ତି?

''ଆଲୋ ତମ କୂଳରେ ତ ଅଛି, ତୁ କାଚଖଡୁ[୩] ହୋଇଯାଉନୁ? ପଛତୁ ଯା କହି ଶିରିଆ (ା)ଳୀ ଝିଅ ପାଣିକି ଓହ୍ଲେଇ ଗଲା।'' ମାଉସୀ କହିଲେ– ''ସତରେ ସାତ ବର୍ଷତ

(୧) ଚାଲିଯିବାପରି ଭୂମି ବା ସ୍ଥାନ. (୨) ଡେରି, ବିଳମ୍ବ, (୩) ବିବାହ

ଅନେଇଲଣି । ରମା ଚିଉକାମୁଡ଼ି କହିଲା– ମାଉସି ! ସେ ହବାର ନୁହେଁ । ଆମର ପରା ମହାନ୍ତି –

ଗୋଡ଼ ଘସୁ ଘସୁ ଗିରିଆ ତେଲି ଝିଅ ପୁଣି ଯୋଗଦେଲା– ତମେ ନା ମାହାନ୍ତି, ନା ଗାଁ ମାହାନ୍ତି ମ ! ତମେ ତ ଚଷା– କଟକ ଆସି ଦି' ପଇସା ଦେଲାରୁ ମାହାନ୍ତି ବୋଲେଇଲ । ମୋତେ ତମ ଘରର ସବୁ ଖବର ଜଣା । ତୁ କି ଖବର କହିବୁ ଲୋ– କାଲି ସକାଳର ଟୋକିଟା, ଯା କହି ରମା ରାଗମୂର୍ତ୍ତି ଧରି ତା'ସହିତ ରୀତିମତେ ବାକ୍ୟୁଦ୍ଧ ଆରମ୍ଭ କରିବାକୁ ଉଦ୍ୟତ ଦେଖି, ମାଉସୀ ତା' ଲୁଗାକାନି ଟାଣିଧରି କହିଲେ– ଥାଉ ଥାଉ ମୋ– ତୁ ତା'ସଙ୍ଗେ ପାଟି ଫିଟାନା– ହଁ ! ଗୋଟାଏ କଂସାରେ ତ ପେଟ ପୂରିଲା ନାଇଁ ଦଶକଂସା ହେଲେ ମହତ ସରିବ ପଛେ, ବରକତ[୧] ନାଇଁ ।

ରମା ଦୁଃଖିତଭାବେ କହିଲା– ଦି' ଦି'ଟା ଛୁଆ ବେକରେ । ପୁଣି ତୁ ଜାଣୁ– ମୋ ଲାଗି କ'ଣ ଭାଇଙ୍କ ମୁଣ୍ଡ ତଳକୁ ଦେବି । ଏବେ ତମ କୁଳରେ ନାଇଁ, ତୁ ଯୁବା ବୟସ କାଟିଲୁ କି ନାଇଁ ।

ହଁ ଲୋ ଛାତି ପଥର କରି, ପୁଅ ଖଣ୍ଡକକୁ ପିଠିରେ ପକେଇ, ସବୁ ଦୁନିଆର ମାଡ଼ ଠୋକର[୨] ସହିଲିଣି– ''ହେଲେ ତୁ ପୁଅ ଜନମ କରିନୁ । ତୋର ତିନିଟା ! ଆଉ ଏ ମୋ ପାଣୁଆ ଅପର୍ତ୍ତି ପରି ବାଳୁଙ୍ଗାଯାକ ମୋତେ ଜମାରୁ ମାନିଲେ ନାଇଁ ମୋ ମୁହେଁ ମୁହେଁ ମୋତେ ସାତ ପାଞ୍ଚ ବତେଇଦେବେ । ଏ କଟକ ସହରଟା ବଡ଼ ବଜାରୀ ହେଲାଣି– ପିଲାଙ୍କୁ ସମ୍ଭାଳି ହଉନି –

ତୁ ତ ତାଙ୍କର ଯୋଉ ଯତ୍ନରେ । ଦିନରାତି ତାଙ୍କୁ ଦେଖେଇ ଶିଖେଇ ଶୋଧୁ । ସେ ତ ତୋଠୁ ଶିଖୁଛନ୍ତି – ନା ତାଙ୍କୁ ଦି ଅକ୍ଷର ପଢ଼େଇଲୁ –

ଆଜିକାଲି ପାଠରେ କ'ଣ ଅଛି କହିଲୁ? ପାଠ ପଢ଼େଇବାକୁ ପଇସା ଚାହିଁ[୩]– ନା ମୋଠି ପଇସା ଅଛି – ନା ଯା'ଙ୍କର ଭବିଷ୍ୟତ କିଛି ମୋ ଆଖିକି ଦିଶୁଚି, ଭିକ ମାଗିବେ ସେମିତି । ନଇଲେ କୋଉଠି ମୂଲ ଲାଗିବେ । ଆଜିକାଲି କାମ ଚାକିରୀତ ପାଇବା ସାତଜନମ ତପସ୍ୟାକଲେ– ମୋର କିଛି ବି ବଳ ନାହିଁ । ସଡ଼କରେ, ଗୋଡ଼ି ପକେଇବାକୁ ପାଣୁଆକୁ କେତେ ନେହୁରାକରି ପଠେଇଲି ଯେ, ଦିନେ ଦି'ଦିନ ଗଲା, ପୁଣି ବଜାରୀ ଟୋକାଙ୍କ ସାଙ୍ଗରେ ଗୁଡ଼ିଉଡ଼େଇ, ଗୁଲିଦଣ୍ଡା ଖେଳରେ ସେ ମାତିଲା ମାତିଲା – ଖାଲି ଆଣ ଆଣ ଖାଇବୁ– ତାଙ୍କକଥା ନ ସରୁଣୁ ଆଉ ଗୋଟିଏ କୃଷାଙ୍ଗୀ ମଧ– ବୟସୀ ସ୍ତ୍ରୀଲୋକ ବଡ଼ପାଟିରେ କାହାକୁ ଉଦ୍ଦେଶ୍ୟରେ ଗାଳି ଦଉଦଉ ଆସି ଗାଧୁଆ ଘାଟରେ ପହଞ୍ଚିଲା । ତା' କୋପମୂର୍ତ୍ତି[୪] ଦେଖି ରମା ତାଙ୍କୁ ପାଟିକରି ପଚାରିଲା – ''କିଲୋ ରଘୁଆ ମା', କାହା ଉପରେ ଅବତାଉଚୁ[୫] କିଲୋ ।''

(୧) ଶାନ୍ତି, ପୂର୍ଣ୍ଣତା, (୨) ଆଘାତ, (୩) ଦରକାର, ଆବଶ୍ୟକ, (୪) ରାଗ ଜରଜର ରୂପ, (୫) ରାଗ, ଅଭିମାନ ଓ ପ୍ରେମ ସାବ୍ୟସ୍ତକରିବା ।

ରଘୁଆ ମା ରମା ଆଡ଼କୁ ମୁହଁ ବୁଲେଇ, ବିକଟ ଭଙ୍ଗିରେ କହିଲା– ଆଲୋ ସେଇ ନିଆଁନଗା– ପୁଲିସି ସାଇବଟା, ସେଇଟା କାଲି ରଘୁଆକୁ ପରା ଧରିନେଇ ହାଜତରେ[୧] ପୂରେଇଛି– ପୁଅଟା ମୋର ତା' କୂଳରେ ନିଆଁ ନଗଉଥିଲା ଏକା। ଆମେ ଗରିବ ନୋକ– ପୋଡ଼ିଯାଉ ତା' ସମ୍ପରି– ତା' ବଅଁଶକୁ ଠାକୁରାଣୀ ଖାଉ– ତା' କୂଳ ଉଜୁଡ଼ିଯାଉ– କଥା କ'ଣ, କଥା କ'ଣ ? ରମା ଓ ହେମବତୀ ଉତ୍ସୁକହୋଇ ପଚାରିଲେ, ଆଖର[୨] ରଘୁଆ କରିଚି କ'ଣ ?

କ'ଣ ଆଉ କରିଚି– ତା'ର ଆଉ ଦୀନା ବାରିକର ସେଇ କଳ ନେଇ ମାଡ଼ ପିଟାପିଟି ହୋଇଥିଲେ– ମୁଁ ପରାଲୋ ତିରିଶ ଟଙ୍କାକୁ କିଣିଥେଲି। ଏ ଦୀନା ରିସ୍ବତ ଦେଇଚି। ସେଇଯୋଗୁ ପୁଲିସ ତାକୁ ନ ଧରି, ଓଲଟି ମାଡ଼ଖାଇଲା ରଘୁଆ– ଦୀନା ମାଇଲା ତାକୁ ଆଉ ଧରାଗଲା ଏ। କାଳ ଓଲଟା ହେଲାଣି– ନ'ଟାରେ ପଶିଲାଣି– ନ୍ୟାୟ ନିଶାପ କିଛି ନାହିଁ – ଯେ ଟଙ୍କା ଲାଞ୍ଚଦେଲା, ସତମିଛ କହିଲା, ସେଇ ପାରିପାଇଲା –

ହେମବତୀ କଥାରେ ଯୋଗଦେଇ କହିଲେ– ତୁ ଯାହା କହ ପଛେ, ତୋ ରଘୁଆ ପକ୍‌କା ବଦମାସ–ଦିନରାତି ଗୋଲିଆଙ୍କ ଆଡ୍‌ଡ଼ାରେ ପଡ଼ିରହିଲା– କମରରେ[୩] ତ ଗୋଟିଏ ପଇସା ନାଇଁ, ଓଲଟି ଘର ଚିଜ ବିକିଭାଙ୍ଗି କଥାରେ ଉଡ଼ଉଚି– ଆପଣା ପୁଅର ଗୁଣ କ'ଣ ଦେଖେ– ଏମିତି ଲୋକକୁ ଦଣ୍ଡ ହେବନାଇଁତ, କ'ଣ ଭଲଲୋକଙ୍କୁ ସରକାର ଧରିବ ?

– ରଘୁଆ ମା ବିରକ୍ତ ହେଇ କହିଲା– ଦୁଃଖୀ ବୋଉ ! ତୁ ଖାଲି ମୋ ପୁଅ ଗୁଣ ଦେଖୁ ଆମ ଉପରେ ଯୋଉ ବିପରି ପାଇଚି– ତୁ କ'ଣ ଜାଣୁ? ପରେ ଧୀରେ କହିଲେ, ଆଜି ଏକଥା କାହିଁକି ?

କି ସୁନ୍ଦର ସେ ଜମିବିଲ୍ ମାଣ। ସବୁ ଚଇତା ତେଲୀ ଖାଇଲା– ଆଜିକାଲି ପରା ନ୍ୟାୟ ନିଶାପ ନାଇଁ। ମିଛେ ମିଛେ ମକଦମା କଲା, କଣ ନା ଖଜଣା ଦେଇନାଇଁ– ମିଛସତ କରି ପରା ଜମିଗୁଡ଼ା ନିଲାମ କରିଦେଲା।

ଏତେବେଳକୁ ନବା ମା' ବାଉରାଣୀଟି ପହଞ୍ଚିଗଲା– ସେ କଥାରେ ଯୋଗଦେଇ କହିଲା– ଆଜିକାଲି ନଥା କ'ଣ କହୁଚୁ– ଏ ମୁନିସ୍‌ପାଲିଟି ହେଲାଦିନୁ ଆମ ଗରିବଙ୍କ କଥା ସଇଲା– ଆମ ସାଇକି ସାଇ ପରା ଉଠିଯିବାକୁ ନୋଟିସ୍ ମିଳିଛି। ଅସଲ ସେ ଜମିଖଣ୍ଡେ ଭଲ, ସେଠି ତେଲୀମାନେ ଆପଣା କୋଠା କରିବେ– ଆମେ ବାଉରୀ ଘରଗୁଡ଼ାକ ତାଙ୍କ ବାରି ପଛାଡ଼େ ଥିଲୁ– ବାରବେଠି[୪] ଖଟୁଥିଲୁ, ସେଥିରେ ବି ମନ ପାଇଲା ନାଇଁ ଯେ ଆମକୁ ଏକଥା। ପୁଣି ନୂଆବଜାର ଆଡ଼କୁ ତଡ଼ା ହଉଚି[୫] ପରା– ଆଉ ଏ ପ୍ରଭାକର ବାବୁ– ଏଇଟା ତ କଟକ କମେଇ ରଖିଚି– ଯା' ପ୍ରତାପରେ ତ ବାଘ ବକୁରୀ ଏକାଘାଟକେ ପାଣି ପିଉଚନ୍ତି। ରଘୁଆ ମା' କହିଲା – ସେଇଟା ମରୁନାଇଁ– ମୋ ଘରର ସର୍ବନାଶ କଲା– ଆଉ ଜମିବାଡ଼ି ଧନଦରବ ସବୁ ତା' ପେଟରେ ପଶିଲା– ଏବେ ମୋ ପୁଅକୁ ଜିଅଲ ଦେଲେଣି –

---

(୧) ଜେଲ, (୨) ନିରାଧାର, ନିର୍ଦ୍ଦିଷ୍ଟକରି, (୩) ଅଣ୍ଟାରେ, (୪) ବିଭିନ୍ନ ଲୋକଙ୍କ ଘରେ କାମକରିବା, (୫) ବଳପୂର୍ବକ ବାହାରକରିବା।

ଶିରୀଆ ତେଲୀ ଝିଅ ଜାନକୀ, ପୁଣି କଥାରେ ଯୋଗଦେଇ କହିଲା– ଆଲୋ ସେଇଟା କିଆଁ ମରିବ ଲୋ, ବଡ଼ଲୋକକୁ ସାତଖୁଣୀ ମାଫ। ଠାକୁରେ ବି ବଡ଼ଲୋକଙ୍କୁ ଡରନ୍ତି ଜାଣୁ। ସେମାନେ ଦୁନିଆରେ ଯାହା କରିବେ, ସେଇଟା ସୁନ୍ଦର। ରମା କହିଲା, ସତ– ଆମ ଗରିବଙ୍କ ଗୁହାରି ମହାପ୍ରଭୁ ବି ଶୁଣନ୍ତି ନାହିଁ। ନଇଲେ ଆମେ ଏତେ ଦୁର୍ଦ୍ଦଶାରେ ରହନ୍ତୁ –

ତା' କଥା ତା'ପାଟିରୁ ଛଡ଼ାଇ, ନବା ମା' କହିଲା– ଆଉ ସେମାନେ ଗୋଡ଼ ଉପରେ ଗୋଡ଼ ପକେଇ ଖାଇପିଇ ମଉଜକରନ୍ତେ। ଏଇ ଯେଉଁ ଚେରମାନଟା[୧] ଆଜିକାଲି ଅଛି– ବାପ ଗରିବଙ୍କ ମହାପ୍ରଭୁ ଭାଇ ଏକା। ତା' ନୂଆ କୋଠାରେ ବେଠି ଖଟି ଖଟି ଆମ ବାଉରୀକୁଳ ମଲେ। ସରକାରୀ ଟଙ୍କା ସବୁ ଆପଣା ଘରେ ପୂରେଇଲା– ବଡ଼ ତଳ ସାଲିଆ ଦୋମହଲା ହେଲାଣି ଏକା –

ରମା ପୁଣି କଥାରେ ଯୋଗଦେଇ କହିଲା– ଆଉ ଆମ ବାରିଆଡ଼ର ନାଳଟା ଗଲା ପଚୁଚି। ବରଷା ଦିନରେ ଯୋଉ ଦୁର୍ଗନ୍ଧ। ଆମ ଭାଇ ଉପରକୁ ନେଖିନେଖି[୨] ଥକିଲେଣି, କିଏ କାହିଁକି ଶୁଣିବ–

ରଘୁଆ ମା କହିଲା– ଖାଲି ଖଜଣାଦେଇ ମରୁଚୁ ଆମେ। ଆମ ସାଇର ସେଇ ଦଳୁଆ ପୋଖରୀଟା ପୋତିହୋଇ ପଇଲାଣି– ମଶାଙ୍କ ଜାଳାରେ ଦିନବେଳେ ବି ପିଣ୍ଡାରେ ବସି ହବନାହିଁ। ଆଉ ସାଇର ଜମିଦାର ଅମ୍ବିକା ବାବୁଙ୍କୁ ଆମେ ପ୍ରଜାଏ କେତେ ନେହୁରା ହେଲୁ– ସେ ତ ମୋ ଜିଅଲ ଉପରେ ଆଖି ରଖିଥିଲା – ସେଇଟା ପୁଣି ମକଦ୍ଦମା ଯୁଟେଇ ଦୀନା ବାଗିଜକୁ ମୋ ପୁଅ ପଛରେ ଲଗେଇଦେଲା। ତା' ମନେ ମନେ ଏବେତ ଜିଅଲ ବିକିବ। ହଉ ଦେଖାଯାଉ, ବୋହୂ ଦିହ ପଛେ ନଙ୍ଗଳା କରିବି, ଜିଅଲ ମୁଁ ଛାଡ଼ିବିନାହିଁ। ମୋର ସେଇ ଏକା ସଙ୍ଖାଳିଟା –

ଶିରୀଆ ତେଲୀ ଝୁଅ ଫକ୍‌କିନା ହସିପକେଇ କହିଲା – ମୋ ବାପସଙ୍ଗେ ତୋ ପୁଅ ଯୋଉ ଜାଇଥିଲା, ତା'ଫଳ ପାଇଲା। ଆମକୁ ପରା କୁହଲୋ, ବିଲାତି ଚରବି ଆଣି ବିକୁଛି – ତେଲରେ ସୌବିନି[୩] ରାନ୍ଧି ମିଳାଉଚୁ ?

ରଘୁଆ ମା ଗର୍ଜନ ଭାଙ୍ଗିରେ ବୁଲିପଡ଼ି କହିଲା – ଅଧର୍ମ କରି ତମେ ବର୍ତ୍ତିଗଲ– ତମକୁ ଏକା ଧର୍ମ ସହିବ। ନାଞ୍ଚ ରିସ୍‌ପତରେ ପେଟ ପୂରଉଚ ବୋଲି ହାକିମ ତମକୁ ଛାଡ଼ି ଦେଇଚନ୍ତି। ଆମେ ଏତେ ଟଙ୍କା କୋଉଠୁ ପାଇବୁ ଯେ ତମ ସରିସାଙ୍ଗ ହବୁ?

ତା' କଥାରେ କ୍ରୋଧିତା ଶିରୀଆ ତେଲୀ ଝୁଅ ଏକାବେଳେ ଅଣ୍ଟାରେ ଲୁଗାଭିଡ଼ି କୂଳକୁ ଉଠିଆସି, ଭୟଙ୍କର ପାଟିରେ କଳି ଆରମ୍ଭ କରିଦେଲା। ତାର ସଂସ୍କୃତ ବାକ୍ୟାବଳୀରେ କାନ ନ ଦେଇ, ଆଖିମାରି ହେମବତୀ ରମାକୁ ପାଣିରୁ ଉଠିଆସିବାକୁ ଇଙ୍ଗିତକଲେ।

ରମା କୂଳକୁ ଉଠିଆସି ଲୁଗା ଚୁପୁଡୁ ଚୁପୁଡୁ ଧୀର ଗଳାରେ କହିଲା, ଏ କଳିଆ ଖୋରଣୀଟା କାନଅତରା ପକେଇଦେଲାଣି[୪]। ତାଙ୍କ ସାଙ୍ଗ ଖଣ୍ଡିକେତ ଯା ଜଳାରେ ଅସ୍ଥିର।

(୧) ଚେୟାରମ୍ୟାନ୍, (୨) ଲେଖିବା, (୩) ସୟାବିନ, (୪) କାନକୁ କିଛି ନ ଶୁଭିବା ଅବସ୍ଥା।

ବଡ଼ ଅଲଖେଣୀ[୧]। ଯା'ଙ୍କୁ ଭଗବାନ ସହିଚି। ରାଣ୍ଡ ଭାଉଜର ସବୁ ଖାଇପିଇ ଭସ୍ମକଲେ। ଯା' ବାପ ବଡ଼ ମାମଲତକାର। ମାଉସୀ ଆଡ଼ ଆଖିରେ ରମାକୁ ଅନାଇ କହିଲେ – ଲୋ ଝିଅ, ଦୁଃଖୀ ବାପର ହୋମିଓପାଥି ବାକ୍‌ସ ରଖିଚୁ ପରା।

ବାପ ଥିଲାବେଳେ ତାଙ୍କଠୁ ଶିଖିଥିଲି। ତାଙ୍କର ଏ ସବୁଥିରେ ଭାରି ଝୁଙ୍କ[୨] ମତେ ଶିଖେଇବାକୁ। କେତେଲୋକର ଯେ ଉପକାର ହେଇଚି।

ନବାଗନ୍ତୁକା ରଘୁଆମା କହିଲା, ''ସେ ତ ମଣିଷ ନଥିଲେ, ହୀରାଟି! ବଡ଼ ଭଲ ମଣିଷ ଥିଲେ। ତାଙ୍କ ହାତପଥରେ ମୋର ଗେଲୀ ଜୀବନ ପାଇଚି। ତା'ର ପରା ପୁଅଟା ମାଟିରେ ମିଳେଇଗଲା– କି କାଳରୋଗ ଧଇଲା।''

ପୂର୍ବୋକ୍ତ କଥାରେ ହୈମବତୀର ଆଖି ଅଶ୍ରୁପୂର୍ଣ୍ଣ ହୋଇଗଲା। ସେ ହୃଦୟୋତ୍ସୃତ ଦୀର୍ଘଶ୍ୱାସ ଚାପିନେଇ କହିଲା, ଯେ ଭୋଗିଚି ସେ ଜାଣେ। ମା' ସ୍ୱାମୀ ହରେଇଥିବାର। ବିଧବା ହେବାର କ'ଣ ବିଶେଷତଃ ହିନ୍ଦୁ ଘରେ, ଯେ ନିଜେ ଭୋଗିଚି ସେଇ ଜାଣେ। ସେଇ ଦିନଠୁ ଦୁନିଆ ସରିଚି। ଅସାର ଜଡ଼ପଦାର୍ଥ ପରି ବଞ୍ଚିରହିବା କଥା ନାଁ। ଏ ଦେହ ଭିତରୁ ଆତ୍ମା କିଏ ନେଇଯାଇଚି। ହଁ ବଞ୍ଚିଚୁ, ଖାଉଚୁ, ପିଉଚୁ– ସବୁ ହଉଚି; କିନ୍ତୁ ମନ କୋଉଥିରେ ନା, ପାଚେରୀ ପଛାଡ଼େ କ'ଣ ଅଛି।– ପାରନ୍ତା।

ରମା ଯୋଗଦେଇ କହିଲା– ''ମାଉସୀ ସମସ୍ତେ କହିଲେ। ମୁଁ କିନ୍ତୁ ଭାବେ କି, ସେ ସାତବର୍ଷ ହେଲା ଗଲେଣି– ମରିହଜି ଯିବେଣି। ତୁରନ୍ତ ମୋ ଛାତି ଭିତରେ ସବୁ ବେଳେ ସେଇ ମୂର୍ତ୍ତି। କିଜାଣି କେବେ ଯଦି ଫେରିଆସିବ। କେବେ ଯଦି ଘରଦ୍ୱାର ମନେପଡ଼ିଯିବ– କହୁ କହୁ ତା'ର କଣ୍ଠରୋଧ ହୋଇଗଲା। ନୀରବରେ ଅଶ୍ରୁମୋଚନ କରି ଦୀର୍ଘାୟତ ଲୋଚନରେ ଆକାଶପଟକୁ ଅନାଇଲା। ଦେଖିଲା, ପ୍ରଭାତର ପୂର୍ଣ୍ଣବିକାଶ ହୋଇସାରିଚି। – ବିହଙ୍ଗ କାକଳୀରେ ନଦୀକୂଳପୂର୍ଣ୍ଣ– ତରୁଣ କିରଣମାଳାରେ ଗଗନ ଆଚ୍ଛାଦିତ। ଆଉ ତା'ର ହୃଦୟ। ପ୍ରଭାତର ଏ ନବୀନ ମାଧୁରୀରେ ତା'ର ହୃଦୟ ଅବ୍ୟକ୍ତ ଅସ୍ପଷ୍ଟ ଆର୍ତ୍ତନାଦରେ ପୂର୍ଣ୍ଣ। ଗତ ସାତବର୍ଷରେ ସୁଦ୍ଧା ସେ ବ୍ୟଥାର ଉପଶମ ହୋଇନାହିଁ। ସେଇ ତା' ଜୀବନରେ ଦଣ୍ଡେଖଣ୍ଡେ ପ୍ରଭାତ ହୋଇଥିଲା। ଘଡ଼ିଏ ଖଣ୍ଡେ ସୁଖସୂର୍ଯ୍ୟ ଉଇଁଥିଲା। କ୍ଷଣେମାତ୍ର ଆନନ୍ଦରେ ହୃଦୟ ପଦ୍ମ ଉତ୍‌ଫୁଲ୍ଲ ହୋଇଥିଲା।

ପରକ୍ଷେଣରେ ସବୁ ଅନ୍ଧକାର। ତାହାର ସୁଖସୂର୍ଯ୍ୟ ଅସ୍ତମିତ। ଚତୁର୍ଦ୍ଦିଗ ଅନ୍ଧକାର; କିନ୍ତୁ ତାହା ରାତ୍ରିର ଅନ୍ଧକାର ନୁହେଁ। ରାତି ପରେ ଦିନ ଆସେ। କିନ୍ତୁ ତା' ଜୀବନରେ ଆଉ ଦିନ ଆସିବ ନାହିଁ। ତାହାର ଜୀବନ ଅନନ୍ତ ଅନ୍ଧକାରପୂର୍ଣ୍ଣ, ଚିର ଅମାନିଆ। କିଏ ଜାଣେ ତା'ର ପ୍ରଭାତ କେଉଁଠି, କିଏ ଜାଣେ ଜୀବନର ପରପାରେ କେଉଁ ଉଜ୍ଜ୍ୱଳ ରେଖା ତା'ର ଅବସାନ ସୀମା।

---

(୧) ଅଲକ୍ଷ୍ମୀ, ଦୁଷ୍ଟ, (୨) ଆଗ୍ରହ

ରମାଙ୍କୁ ମ୍ଳାନମୁଖୀ ଦେଖି ସାନ୍ତ୍ୱନାର୍ଥେ ମାଉସୀ କହିଲେ, ''ମା, ଗଲା କଥା ଭାବି କଷ୍ଟକରନା, ଏ ଜୀବନରେ ମୂଲ୍ୟ ଅଛି।''

କି ମୂଲ୍ୟ ଅଛି ମାଉସୀ ଯାହାର ସ୍ୱାମୀ ନାହିଁ–
ଅସାର ଜଡ଼ପଦାର୍ଥ ପରି ବଞ୍ଚିରହିବା ନା।

## ପଞ୍ଚମ ଅନ୍ତର

ଦିବା ଦପ୍ରହର ହୋଇଚି। ହରେନ୍ଦ୍ର ବାବୁଙ୍କ ବିସ୍ତୃତ ପ୍ରାଙ୍ଗଣରେ ପୋଷା ପାରାଙ୍କ ଲାଗି ଧାନ ବୁଣା ହେଉଚି। ତାଙ୍କୁ ଖୁଣ୍ଟୁ ଖୁଣ୍ଟୁ କାଉ ଓ ପାରାଙ୍କ ଭିତରେ ଖୁମ୍ପାଖୁମ୍ପି ଚାଲିଚି, ଆଉ ମୁଠିଏ ମୁଠିଏ ଧାନ ପକେଇଦେଇ ସେ ଦୃଶ୍ୟର ଆନନ୍ଦ ଉପଭୋଗ କରୁଛନ୍ତି ଯୋଡ଼ିଏ ବାଳିକା। ଜଣେ ହରେନ୍ଦ୍ର ନାରାୟଣଙ୍କର ଏକମାତ୍ର ଏକାଦଶବର୍ଷ ବୟସ୍କା ଦୁହିତା, ପ୍ରୀତି ପ୍ରତିମା; ବାଳିକାର ରୂପ ଅଛି, କିନ୍ତୁ ସେଥିରେ ମୋହ ନାହିଁ; ସୌନ୍ଦର୍ଯ୍ୟ ଅଛି, କିନ୍ତୁ ସେଥିରେ ଯୁବତୀସୁଲଭ ହାବଭାବ, କଟାକ୍ଷ ନାହିଁ। ବାଳିକା– ଶାନ୍ତ ବାଳିକା। ତାହାର ଅଯତ୍ନ ବିନ୍ୟସ୍ତ ଦୀର୍ଘକେଶ ପୃଷ୍ଠଦେଶରେ ଅଲୁଳାୟିତ, ମୁଖକୁ ଅର୍ଦ୍ଧାଚ୍ଛାଦନ କରିପକାଇଛି।

ବାଳିକା ଗୋଟାଏ ହାତରେ ଧାନ ବିଞ୍ଚୁଛି, ଆଉ ଗୋଟିଏ ହାତରେ ବାଳ ଭେଉଟେଇ ପିଠିକି ପକାଇଦେଉଚି। ତା'ର ପରିଧାନରେ ସାନ ଖଣ୍ଡେ ସେମିଜ, ଅଧା ଲେ୍ ବୁଣା, ଆଉ ଶୁଭ୍ର ଦେଶୀଶାଢ଼ୀଟିଏ; କିନ୍ତୁ ତାହାର ଅଳଙ୍କାର ବାହୁଲ୍ୟ ତା'କୁ ଧନୀର ଦୁହିତା ବୋଲି ଚିହ୍ନାଇଦେଉଚି। କାନରେ ଭାରି ଭହୁଦୀ ମାଙ୍କଡ଼ା, ଗଳାରେ ଦୁଇତିନିସରି ମୋଟା ମୋଟା ହାର, ହାତରେ ସୁନା ଚୂଡ଼ୀ, ବାହୁରେ ଅନନ୍ତ, ଗୋଡ଼ରେ ଝୁମ୍‌ଝୁମିଆଁ ମଲ୍ଲ, କପାଳରେ ଗୁଞ୍ଜର ପୋକର ଗୋଟିଏ ଟିପ ଆଉ ପାଦରେ ଅଳିତା। ବାଳିକା ହାସ୍ୟମୁଖରା। କତିରେ ବସିଥିବା ବୃଦ୍ଧା, ବିଧବା, ଶୁକ୍ଳଚ୍ଛେଦାପରିହିତା ଓ ମଣ୍ଡିତମସ୍ତକ। ତା' ଜେଜେ ମା'ର ଦେହରେ ନାମାବଳୀର ଛାପା କନାଟିଏ ଟାଣୁ ଟାଣୁ ବାଳିକା ଢ଼ଳି ଢ଼ଳି ସଙ୍ଗିନୀ ଅରୁଅପା ଉପରେ ପଡ଼ିଗଲା।

ଅରୁଅପା ହରେନ୍ଦ୍ରବାବୁଙ୍କର ଘନିଷ୍ଠ ମିତ୍ର ଶ୍ରୀମନ୍ତ ପଟ୍ଟନାୟକର ଝିଅ। କୃଷ୍ଣା କୃଶାଙ୍ଗୀର ରୂପ ମଧ୍ୟରେ ବିଶାଳ ଗଭୀର ପ୍ରଶାନ୍ତ ଆଖିଯୋଡ଼ିକ, ଆଉ ସୁନ୍ଦର ପାତଳା ଓଠ ଓ ମୁକ୍ତାନିନ୍ଦୀ ଦନ୍ତପନ୍ତି। ତା' ଭିତରେ ସାଧାରଣ ବାଳିକା ଭଳି ପ୍ରଗଲ୍‌ଭତା ନାହିଁ, ବରଂ ବୟସାଧିକ ଗମ୍ଭୀରତା, ଧୀର ତେଜସ୍ୱିତାର ତା'ର ସ୍ୱଭାବର କିଛି ପରିଚୟ ମିଳିଯାଉଚି। ଅରୁ ଦେହରେ କରଣ ଘର ସୁଲଭ ଆଭରଣ ବାଛରା ନାହିଁ। ଲାଜ କୁଚ୍‌କୁଚ୍ ଭାବ ତା'ଠି ଆଦୌ ନାହିଁ (ଘରେ ବସି ବସି ସେ ଭଲପାଠ ପଢ଼ିଚି। କବିତା ଚର୍ଚ୍ଚା, ଖବରକାଗଜ ପଢ଼ା ହିଁ ତା'ର ଜୀବନର ପ୍ରଧାନ ସୁଖ। ଆଉ ସୁଖ ସମାଜରେ ଗୋଟାଏ କିଛି ଅବା ନିଜ ଜୀବନରେ ପରିବର୍ତ୍ତନ କରିପକାଇବା। ହେଲେ ତା'ର ଚିପା ଓଠ ଭିତରୁ ଏ ବିଷୟରେ ଗୋଟିଏ ଶବ୍ଦ କେହି କେବେ ଶୁଣିନାହାନ୍ତି) ଇନ୍ଦୁ ମାଉସୀ ଘରକୁ ସେ ପ୍ରାୟ ପ୍ରତ୍ୟହ ଆସେ। କେହି ନ ଡାକିଲେ ବି ଆସେ।

ପ୍ରୀତି ତା'ଠୁ ଅନେକ ଛୋଟ, ତା' ସହିତ ଖେଳିବା, କି ସୁରୁଚିଠୁ ଗୀତ ଶିଖିବା ଅବା କୁସୁମିକାଠ ଲେଶର ପାଟର୍ଣ୍ଣ ନେବାତ ଏକପ୍ରକାର ବାହାନା, ତା'ର ପ୍ରାଣର ଆବେଗ ଥିଲା, ଗୋଟିଏ ସରଳ ସୁନ୍ଦର ଯୁବକ ମୂର୍ତ୍ତି, ଯେ କି ସେତେବେଳେ ଆରଘରେ ବସି ବହି ପଢୁଥିଲା ବା ପଢ଼ିବାର ଛଳନା କରୁଥିଲା। ନିଜର ଓ ଯାହାର ମଧରେ ସୁମେରୁ କୁମେରୁର ବ୍ୟବଧାନ।

ଏକଥା ଦୁଇଜଣଙ୍କ ଭିତରୁ କେହି କାହାକୁ କେବେ କହିନାହାନ୍ତି; କିନ୍ତୁ ଅରୁଅପା ଜାଣେ, ସତ୍ୟଭାଇ ତା' ନିଜର କେତେଟା ସାମ୍ନା, ତା'ରି ଭିତରେ ଗୋଟିଏ ଲୁହାର ପାଚେରୀ ଠିଆକରିଚି। ପିତୃବନ୍ଧୁ ହରେନ୍ଦ୍ରଙ୍କ ପୁତ୍ରର ପ୍ରଣୟାଭିଳାଷିଣୀ ମନେ ମନେ ଜାଣେ, ସେ ମହାପାତ କରୁଚି। ମନ ଥରେ ଥରେ ଧିକ୍କାର ଦିଏ। ସ୍ନେହମୟୀ ମାତା ଓ ଇନ୍ଦୁମାଉସୀ ଏକଥା ଘୃଣାକ୍ଷରେ ଜାଣିଲେ କ'ଣ ଦଶାଦେବ ?'' କିନ୍ତୁ ପୁଣି ଥରେ ଥରେ ନିଜକୁ ଶକୁନ୍ତଳା; ଦମୟନ୍ତୀ କଳ୍ପନା କରିବସେ। ଭାବେ, ''ହିନ୍ଦୁର ଝିଅହୋଇ କ'ଣ ସତୀତ୍ୱ ବିକ୍ରୟ କରିବି ? ଏତେ ହୀନା ସେ ସୀତା, ସାବିତ୍ରୀର ଦେଶରେ ତାଙ୍କର ଜନ୍ମ। ଠିକ୍ ସେହି ଭାବନାରେ ଆଜି ତାର ଆତ୍ମା ପୂର୍ଣ୍ଣ।

ସତ୍ୟର ଦୀର୍ଘାକାର ଗୌରଶ୍ୟାମ ତନୁ, ଦୀପ୍ତ ଲଲାଟ, ଉଜ୍ଜ୍ୱଳ ନୟନଦ୍ୱୟ ତା'କୁ ଆଜି ଅତିମାତ୍ରାରେ ଅନୁପ୍ରାଣିତ କରିଚି। ସେ ବହୁକ୍ଷଣ ଏଣେତେଣେ ଚାହିଁବାର ଚେଷ୍ଟାକରି ସୁଦ୍ଧା, ଅଲକ୍ଷ୍ୟରେ ଅଭ୍ୟାସ ବଶତଃ ଯାଇ ସତ୍ୟ ପଢୁଥିବା ଘରକୁ ପ୍ରୀତିକୁ ଟାଣି ଟାଣି ସାଙ୍ଗରେ ନେଇ, ବହିଥାକରେ ଦରାଣ୍ଡି ବସିଲା। ସତ୍ୟ ତା'ର ବାରମ୍ବାର ବିଫଳ ପ୍ରୟାସ, ବହୁମୂଲ୍ୟ ପୁସ୍ତକଗୁଡ଼ିକୁ ଘାଣ୍ଟିଚକଟି, ଟେବୁଲ ଉପରେ ମନୋମତ ପୁସ୍ତକ ପାଉ ନଥିବା ଦେଖି, ତା'କୁ ସାହାଯ୍ୟକରିବାକୁ ଉଠିଆସିଲା। ଟିକେ କୃତ୍ରିମ ତିରସ୍କାର କଲାଭଳି କହିଲା, ''ଏତେ ବହି ଘାଣ୍ଟିପକାଅ ନାହିଁ। କ'ଣ ବହି ଖୋଜୁଚ, ମୁଁ ଦେବି'' ଅରୁ ସତ୍ୟର ଦୃଷ୍ଟି ଆକର୍ଷଣ ହିଁ ଚାହୁଁଥିଲା। ମୁଣ୍ଡଟେକି ଅନାଇଲା, ଚାରିଚକ୍ଷୁର ମିଳନହେଲା। ହୃଦୟ ହୃଦୟର ଭାଷା ପଢ଼ି ପାରିଲେ। ସତ୍ୟ ବହିର କାଚୁ ଆଲମାରୀ ବତିକି ଆଉରି ଘୁଞ୍ଚି ଆସିଲା। ଅରୁର କହୁଣୀ ତା' ଦେହରେ ଅସାବଧାନରେ ବାଜିଗଲା। ଅନନୁଭୂତ ପୁଲକରେ ଦୁଇଜଣଙ୍କର ଦେହ ଶୀତେଇ ଉଠିଲା। ତଥାପି ଶିଷ୍ଟାଚାର ରକ୍ଷା କଲାଭଳି ଅରୁ ପଚାରିଲା, ''କ'ଣ ଜୋର୍‌ରେ ବାଜିଗଲା ? ମୁଁ ଦୁଃଖିତ।''

ସତ୍ୟ ଅରୁଆଡ଼କୁ ଖଣ୍ଡେ ସୁନେଲୀ ମଲାଟବନ୍ଧା ବହି ବଢ଼େଇ ଦେଲା। ଅରୁ ସତ୍ୟର ଅଜାଣତରେ ଯେପରି ପହିଲି ପୃଷ୍ଠା ଦେଖିଲା, ଉପର ଛତ୍ରରେ ଲେଖାଅଛି –

''ଯା ଲାଗି ଜୀବନ ନିତି ନିବେଦନ
କଭି ସେ ବେଦନା ବୁଝେକି ?
ପାଉଣା ପାଇବା ନାହିଁକି ମୋ ହକ
ଜନ୍ମ ଜନ୍ମ ରଣ ଶୁଝେ କି ?''

ହଠାତ୍ ଅରୁର ମନରେ ହେଲା "ହଉ କଳଙ୍କ, ସତ୍ୟଲାଗି କଳଙ୍କ ତ ମୋର ଭୂଷଣ"– ହେଲେ, ମନୋରାଜ୍ୟରେ ସେ ଏଡ଼େ ଜୋରରେ କଥାଟା କହିଲା।

ତା'ରି ଆରଘରେ ଦିନ ଦ୍ୱିପ୍ରହରେ ଯେ ଇନ୍ଦୁମତୀ ହରେନ୍ଦ୍ରଙ୍କ ଗୋଡ଼ତଳେ ବସିଚନ୍ତି, ତାଙ୍କ ମୂର୍ତ୍ତିଟି ମନେପଡ଼ିଗଲା ମାତ୍ରେ ପ୍ରେମ ସହିତ ନୈରାଶ୍ୟ, ଶ୍ରଦ୍ଧା ସହିତ ଭୟ, ବାସନା ସହିତ କୁଣ୍ଠା ତାକୁ ଅଭିଭୂତ କରିପକାଇଲା। ଲୁଗା ଆଢୁଆଳରେ ଚୋରାଧନ ପରି ବହିଟି ଲୁଚାଇ ଦ୍ରୁତଗତିରେ ସ୍ଥାନଛାଡ଼ି ଅନ୍ତର୍ଦ୍ଧାନହେଲା, ସତ୍ୟର ଆଖି ପଲକପଡ଼ିବା ପୂର୍ବରୁ।

ଠିକ୍ ଏହି ସମୟରେ ଶଯ୍ୟାଶାୟିତ ନରେନ୍ଦ୍ର, ଇନ୍ଦୁମତୀ ଆପଣା ସଂସାରର ଦୁଃଖ ସୁଖ ପକାଇଚନ୍ତି– ହରେନ୍ଦ୍ର ଶଯ୍ୟାରେ ବିଶ୍ରାମ କରୁଚନ୍ତି– ଇନ୍ଦୁ ପାଦତଳେ ବସି ପାଦମାର୍ଜ୍ଜନା କରୁଛନ୍ତି। ପତ୍ନୀଙ୍କ ମୁଖକୁ ଅନାଇ ଗୋଡ଼ ଘଷିବାକୁ ବାରଣକରି ହରେନ୍ଦ୍ର କହିଲେ – "ଥାଉ ଥାଉ, ଦିନଯାକ ଖଟି ଖଟି ଅଣ୍ଟିଲା ନାହିଁ, ଆଉ ଗୋଡ଼ ଘଷିବାର ପ୍ରୟୋଜନ ନାହିଁ। ମୋ ପରିବାରର ଖଟଣୀ ଚେର ତୁମେ ସରିଗଲଣି। ତୁମର ଏସବୁ ସେବା ବଦଳେ ମୁଁ ତୁମକୁ କ'ଣ ବା ଦେଲି, ମୁଁ ଶୋଇ ଶୋଇ କ'ଣ ଭାବୁଛି ଜାଣ ? ସତ୍ୟକୁ ବିଭାଦେଇ ବୋହୂଟିଏ ତୁମପାଇଁ ଆଣିଦେବି। ଦୁର୍ଗାପ୍ରସନ୍ନ ବାବୁଙ୍କ ଝିଅ ଲାବଣ୍ୟପ୍ରଭାକୁ ମୁଁ ମନେମନେ ଠିକ୍‌କରିଚି। ବାଳିକାଟି ବଡ଼ ବୁଦ୍ଧିମତୀ, ସୁନ୍ଦରୀ ଆଉ ପାଠଶାଠ ବି ପଢ଼ିଚି। ବାଳିକା ସ୍କୁଲରେ ଆଉରି ପଢୁଚି।

ଇନ୍ଦୁ ବାଧାଦେଇ କହିଲେ – "ମୁଁ ବାବୁ ପାଠପଢ଼ା ବୋହୂ ଜମା ଘରକୁ ଆଣିବି ନାହିଁ, ଦେଖୁନା ସାନବୋହୂଙ୍କ ଗୁଣ। ସେଇଥିପାଇଁ ତ ଘଡ଼ି ଘଡ଼ି ମୋ ଭାଉଜକୁ ଡାକି ପକାଏ।"

ହରେନ୍ଦ୍ର ଚିନ୍ତିତଭାବେ କହିଲେ – "ସତ, ବିଚାରୀପାଇଁ ମୋ ମନରେ ଭାରି ଦୁଃଖ। ଅମ୍ବିକା ତ ମୋଟେ ପଚାରିଲା ନାହିଁ। ପିଲାଝିଲା ଭଲା ଗୋଟାଏ ଯୋଡ଼ାଏ ଥାଆନ୍ତେ।"

ଇନ୍ଦୁ ଉତ୍ସୁକ ହୋଇ କହିଲେ– "ଆଚ୍ଛା, ଡାକ୍ତରାଣୀ ଲଗାଇ ତା'ର ଚିକିତ୍ସା କରାଇଲେ ?"

ହରେନ୍ଦ୍ର ଈଷତ୍ ହସି କହିଲେ – "ଡାକ୍ତର ଚିକିତ୍ସା କର ଆଗ। ଚରିତ୍ରହୀନ, ମାତୁଆଲ ହାତରେ କୁସୁମିକା ଭଳି ସ୍ତ୍ରୀ, ମାଙ୍କଡ଼ ହାତରେ ଶାଳଗ୍ରାମ।"

ଇନ୍ଦୁ କ୍ଷୁଣ୍ଣ ହୋଇ କହିଲେ– "ସେହି ମାତଙ୍ଗିନୀଟା ତା'ର ସର୍ବନାଶ କଲା। ବୋହୂର ମା' କୁଆଡ଼େ ଏଥର ଗୋଟିଏ ଗୁଣିଆ ଡକେଇଚି– ସେ କହିଚି ତାଙ୍କର ଛାଡ଼ବାଡ଼ କରେଇଦେବ ବୋଲି ?"

ହରେନ୍ଦ୍ର ବିଛଣାରୁ ମୁଣ୍ଡଟେକି ଅବଜ୍ଞାରେ କହିଲେ– "ଛି, ଛି, ତୁମେମାନେ ଏ ଗୁଣୀମନ୍ତକୁ ବିଶ୍ୱାସକର। ତୁଚ୍ଛା ଧପାବାଜୀ ! ବିଚରା ବିଧବାଟିର ଯାହା କିଛି ଅଛି, ସେ ଏଇଥିରେ ନ ଠିକିଲେ ରକ୍ଷା ! ତୁମେ ତାକୁ ବୁଝେଇବଟି। ସେ ଏ ଅସାର କଥାରେ ନ

ମାନନ୍ତୁ। ଅମ୍ବିକାଟା ପିଲାଦିନୁ ମହାଦୁଷ୍ଟ। ମ୍ ଏତେ ଚେଷ୍ଟାରେ ତାକୁ ମଣିଷ କରିପାରି ନାହିଁ। ତା' ସାଙ୍ଗରେ ବରେନ ବି.ଏ.ପାଶ୍‌କଲା। ଏଇଟା ପଢ଼ିଥିଲେ ହୋଇ ନଥାନ୍ତା। ଯା'ର ଥିଏଟର, ବାଇସ୍କୋପ୍‌[୧]। ମଦ, ବିଡ଼ି, ନ ହେଲେ ଦିନେ ଚଳିବ ?''

ଇନ୍ଦୁମତୀ ପ୍ରତିବାଦ କରି କହିଲେ– ''ପିଲାଦିନୁ କାହିଁକି ଦୁଷ୍ଟ ହେବ ମ ? ତା'ର ଦୁର୍ଭାଗ୍ୟକୁ ବାପା ପିଲାଦିନୁଁ ମରିଗଲେ, ନୋହିଲେ ମୋ ଭାଇ ତ ଧ୍ରୁବ ପ୍ରହ୍ଲାଦ ଭଳି ହୋଇଥାନ୍ତା ! ରାଧାଚରଣ ତାକୁ ମାଟିରେ ମିଶେଇଲା। ଆଉ ଆଜିକାଲି ପୁଣି ନୃସିଂହ ଜୁଟିଛନ୍ତି। ମତେ ତା'ଲାଗି ଲଜ୍ଜାଲାଗୁଚି। ସେ ତ ସବୁବେଳେ ନିଶାରେ ବୁଡ଼ିରହିବ। ଭାରି ଟଙ୍କା ଉଡ଼ାଉଚି। ତା କତିକି ବୋହୂକୁ ପଠେଇଦେବି ଭାବୁଚି।''

ହରେନ୍ଦ୍ର ଏଥର କହିଲେ– ''ବାଘ ହାବୁଡ଼ରେ ହରିଣକୁ ଛାଡ଼ିଦେବ ? ବିଚାରୀ ମାଡ଼ ଖାଇ ଖାଇ ମରିଯିବ ?''

''କିନ୍ତୁ ସେ ତ ଯିବାକୁ ତିଆର[୨]। ସେ କହୁଚି, ସ୍ୱାମୀ ଯୋଗୀହେଲେ ମୁଁ ଯୋଗିନୀହେବି– ମୁଁ ତାଙ୍କର ପାଖେ ପାଖେ ରହି ଦେଖିବି। ସେ କେତେକେ ଭଲ ନ ହେବେ ତୁମେ ଏଥିରେ ବାଧ ଦିଅନା।''

ହରେନ୍ଦ୍ର କିଛିକ୍ଷଣ ଭାବି କହିଲେ – ''ଦେଖିଲ, ଏଇ ହଉଚି ପୂର୍ବକାଳର ସୀତା ସାବିତ୍ରୀର ଆଦର୍ଶ। ଆଉ ଆଜିକାଲିର ଆଦର୍ଶ–''

''ମୁଁ ଘରେ ଦେଖୁଚି। ମୋର ସତ୍ୟପାଇଁ ଏମିତି ଗୋଟାଏ ବହୂ ଆଣି ଦିଅ, ଯେ କି ଏକାବେଳେ ମୋରି ବହୂଭଳି ସୁଧାରା ହେଇଥିବ। ପାଠଶାଠ ମୁଁ କିଛି ଚାହୁଁନାହିଁ।''

କିନ୍ତୁ ତୁମେ ଭୁଲକରୁଚ। ତୁମ ପୁଅ ଯଦି ତାକୁ ନ ଚାହେଁ।'' ଇନ୍ଦୁ ବିଶ୍ୱାସରେ କହିଲେ– ''ନିଶ୍ଚେ ସେ ଚାହିଁବ, ତା'ର ଚାହିଁବାରେ କ'ଣ ଅଛି ? ତା' ବିଭାରେ ତା'ର କି ହକ[୩] ? ମୁଁ ତା'କୁ ଜନ୍ମ କରିଚି। ତା' ସୁଖଦୁଃଖ ତା'ଠୁ ମୁଁ ବେଶି ଜାଣେ।''

'କ'ଣ ତା ମଣିଷପଣିଆରୁ ତୁମେ ତା'କୁ ବଞ୍ଚିତ କରିବ ? ତୁମେ ଯୁବା ପୁଅକୁ କାଠ କୁଣ୍ଢେଇଭଳି ଆପଣା ଆଙ୍ଗୁଳିରେ ନଚେଇବ ?''

''ହଁ, ଏମିତି କହିକରି ନିଜ ଭାଇର କ'ଣ କଲ କହିଲ ? ପ୍ରତିଦିନ ଘରଭାଙ୍ଗିବା ପରାମର୍ଶ ଚାଲିଚି, ସ୍ୱାମୀକୁ ଶିଖାଯାଉଚି। ଭିନ୍ନହୁଅ, ଭିନ୍ନହୁଅ। ଶାଶୂ ଯା'ର କଟକଣାରେ ମୁଁ ରହିବିନାହିଁ।'' ସେ ଲେଖାପଢ଼ା ମାଇକିନାକୁ ମୁଁ ଦୂରରୁ ଜୁହାରକରୁଚି।

ଭାର୍ଯ୍ୟା କଥାରେ ହରେନ୍ଦ୍ର ବିଛଣାରେ ଉଠିବସିଲେ–ଟିକେ ଉତ୍ତପ୍ତଭାବେ କହିଲେ,– ''କ'ଣ କହିଲ, ସେ ଭିନ୍ନହବ ମୋ'ଠୁ। ମୁଁ ତାକୁ ଏଡ଼େ ଟିକରୁ ଏଡ଼େ କଲି। ମୁଁ ତାର ଭାଇ; ମୁଁ ତା'ର ବାପ ସମାନ। ତା'ମନୋମତ ସବୁ କରିଦେଲି। ମନ ଅନୁସାରେ ବିଭାଦେଲି। କି ସୁଖରେ ଭଣାକଲି ଯେ, ମୋ'ଠୁ ମୋ ପଡ଼ନ୍ତ କାଳରେ[୪] ଭିନ୍ନହେବ ?

---

(୧) ସିନେମା, (୨) ପ୍ରସ୍ତୁତ, ରାଜି, (୩) ଅଧିକାର, (୪) ବୁଢ଼ା ବୟସ।

ଇନ୍ଦୁ କହିଲେ – ''ଦେଖିବ ସେ ନିଶ୍ଚେ ଭିନ୍ନ ହେବ। ଟଙ୍କା କଡିରେ କି ଭାଇ, କି ବାପ ? ତୁମେ କୁଆଡ଼େ ତା'ଟଙ୍କା ଖାଇଯାଉଛ ?''

ହରେନ୍ଦ୍ର ଉତ୍ତେଜିତ ହୋଇ କହିଲେ, ''ମିଛକଥା ! ସେ ଯେତେବେଳେ ତିନିମାସର ପିଲା, ବାପ ମରିଗଲେ। ମୁଁ ତା'ଟଙ୍କା ଖାଇଲି ନାହିଁ। ଏବେ ସେ ଯୋଗ୍ୟ ହେଲା, ବି.ଏ. ପାଶ୍ କଲା, ଭଲ ବୋହୂଟିଏ ପାଇ ଘରଦ୍ୱାର କଲାବେଳକୁ ମୁଁ ତା ଟଙ୍କା ଖାଇଗଲି। ତୁମ ମାଇପଙ୍କର ଏସବୁ ପରିଛିଦ୍ର ଖୋଜିବାର ସ୍ୱଭାବ। କିଏବା ତୁମ କାନରେ କହୁଥିଲା ବସି, ବରି ଭିନ୍ନହେବ। ଏସବୁ ଅମ୍ବିକାର ପାଠ।''

ଇନ୍ଦୁ ରୁଷ୍ଟହୋଇ କହିଲେ– ''ତୁମେ ମୋ ଭାଇକି ମୋଟେ ଦେଖିପାର ନାହିଁ। ଆପଣା ଭାଇକୁ ବେଶି ଭଲପାଅ କି ନା, ସେଥିପାଇଁ ତାଙ୍କ ଦୋଷ ଦିଶୁନାହିଁ। ତାଙ୍କ ମନେ ମନେ କେତେ ବିଚାର, କେତେ ଫନ୍ଦି[୧]। ଆମେସବୁ ତାଙ୍କ ଦୃଷ୍ଟିରେ ବଡ଼ ମୂର୍ଖ।

''ହଁ ଏଥିରେ କ'ଣ ବା ମିଛ ଅଛି ! ସାନବୋଉ କଲିକତାର ଝିଅ। ସେ ଯୋଉ ସଭା, ସୋସାଇଟିରେ ବଢ଼ିଛନ୍ତି, ଆମେ ତ ଜାଣିକରି ମଫସଲିଆ, ତାଙ୍କର ରୁଚି ଅବଶ୍ୟ ଭିନ୍ନ ହବାକଥା। ଯା' ବୋଲି ସବୁଥିରେ ତାଙ୍କୁ ଦୋଷଦେଇ ତୁମ ଛାଞ୍ଚରେ ଢ଼ାଳିବା ଅନ୍ୟାୟ।''

ଇନ୍ଦୁ ଟିକେ କୁପିତହୋଇ କହିଲେ – ''ଆଚ୍ଛା କଥା ବୁଝିଲ, ସେ ରୁଚିଫୁଚି କଥା ନୁହେଁ। ତୁମକୁ ଦୋଷଦେଇ କହନ୍ତି, ତୁମେ ତାଙ୍କ ହକ ସମ୍ପରି ଉଡ଼ାଉଚ। ତା'ଅର୍ଥ, ତୁମେ ଅଯଥା ଦାନକରୁଚ– ଏଥର ଲାଇବ୍ରେରୀ ପାଇଁ ଦି' ହଜାର ଟଙ୍କାଦେଲ– କ'ଣ ଗୋଟାଏ ଅନାଥାଶ୍ରମ କରିବ ପରା ବାହାରିଚ– ଏସବୁରେ ଯେଉଁ ଟଙ୍କା ଖର୍ଚ୍ଚ, ବରି କହନ୍ତି – ଆମେ ଦୁଇଭାଇ– ଜଣକର ଯାହା ଇଚ୍ଛା ତା ଖର୍ଚ୍ଚ କରିବେ, ମୁଁ କାହିଁକି ହାତଟେକାକୁ ଅନେଇଥିବି ? ତୁମେ ପୁଣି କୁଆଡ଼େ ବିଜୟକୁ ପଢ଼ାଉଚ ? ସେଥିରେ ତାଙ୍କର ବଡ଼ ରାଗ।''

ହରେନ୍ଦ୍ର ନିର୍ବାକ୍ ବିସ୍ମୟରେ ଭାର୍ଯ୍ୟାର ମୁଖପ୍ରତି କିଛିକ୍ଷଣ ଚାହିଁରହି କହିଲେ– ''ବରି ପେଟରେ ଏତେକଥା ଅଛି ବୋଲି ମୁଁ ମୋଟେ ଜାଣିନାହିଁ। ସେତ ମତେ ସଫା କହିଲେ ହେଲା। ହେଲେ ଏସବୁ କାହା ଆଗରେ, କହିଚି କହିଲା ସତକରି !''

ଇନ୍ଦୁ କିଛିକ୍ଷଣ ନୀରବ ରହି କହିଲେ– ''ଆଉ କହିବ କାହା ଆଗେ। ଅମ୍ବିକାକୁ କହିଚି– ଅମ୍ବିକା କହିଚି ବୋଉ ଆଗରେ– ସେ ମତେ କହିଲା।''

ହରେନ୍ଦ୍ର ହାସ୍ୟକରି କହିଲେ– 'ଓଃ ଶୁଣ୍ଡୀର[୩] ସାକ୍ଷୀ ମତୁଆଳା[୪]। ନା ଅମ୍ବିକା କଥାରେ ଠିକଣା ଅଛି, ନା ବରି କଥାରେ ସ୍ଥିରତା ଅଛି। ଆଉ ତୁମ ଭାଇ ତ ଯେଉଁ ସତ୍ୟବାଦୀ ଦେଖିଲ ନାହିଁ, କେମିତି ଧୋବଲା ମୁଦି ନାରେ କେତେ ହୁପା[୨] ଉଠେଇଥିଲା, ସେ ଜବର କରି କଥାଟା ଧରିଲାରୁ, ଏ ଆପଣା ମିଛ ସ୍ୱୀକାରକଲା। ମୋ ପରି ଲୋକକୁ ଯାହାର ଟିକେ ଭୟନାହିଁ।''

(୧) ଚକ୍ରାନ୍ତ, (୨) ଗୁଜବ, (୩) ମଦ ବିକାଳୀ, (୪) ମାତାଲ, ମଦୁଆ।

ଇନ୍ଦୁ ଦୁଃଖିତ ହୋଇ କହିଲେ– ''ତୁମେ ସବୁବେଳେ ମୋରି ଭାଇର ଦୋଷ ଦେଖ। ତୁମ ଭାଇର ଦୋଷ ଖାଲି ଘୋଡ଼ାଉଥାଅ। ମିଛେ ମିଛେ ଥିଏଟର କରି ସେ କେତେଟଙ୍କା ନଷ୍ଟକରୁଚି ଜାଣତ ! ରାତି ଅଧରେ ତାଙ୍କ ମୂର୍ତ୍ତି ଦେଖିଲେ ଜାଣନ୍ତ, ଥିଏଟରରୁ ଆସୁଚନ୍ତି, କି ଶୁଣ୍ଡୀ ଘରୁ ଆସୁଛନ୍ତି।''

ହରେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ କହିଲେ– ''କ'ଣ କହୁଚ, ବରି କ'ଣ ମଦଖାଏ ? ଏ ତେବେ ଅମ୍ବିକା ତାକୁ ଶିଖେଇଚି।''

ଖାଆନ୍ତି କି ନାହିଁ କିଏ ଜାଣେ ? କିନ୍ତୁ ଅମ୍ବିକା ଖାଏନାହିଁ। ଦୋଷ ଭିତରେ ତାର ମାତଙ୍ଗିନୀ ଛଡ଼ା ଆଉ କ'ଣ ଅଛି। ସେ ଘୋଡ଼ାମୁହାଁକୁ ଯଦି ଥରେ ପାଆନ୍ତି ! ମୋ ଭାଇର ସର୍ବନାଶ କଲା।''

ହରେନ୍ଦ୍ର ବାବୁଙ୍କର ଉତ୍ତେଜିତ ଭାବ ଲକ୍ଷ୍ୟକରି କହିଲେ,– କ'ଣ ଝାଡୁରେ ପିଟିବ କି ? ମାତଙ୍ଗିନୀ ବଦଳି ଏଠି ମୁଁ ଅଛି ଭାବ।''

ଇନ୍ଦୁ ସହାସ୍ୟ ବଦନରେ କହିଲେ– ''ଯାଉ ସେ ମାତଙ୍ଗିନୀ ଚୁଲିକି, ଆମର ବର୍ତ୍ତମାନ କରିବା କ'ଣ କହିଲ ? କେମିତି ସମସ୍ତଙ୍କୁ ସନ୍ତୁଷ୍ଟକରିବୁ ?''

ହରେନ୍ଦ୍ର କ୍ଷୁଣ୍ଣ ସ୍ୱରରେ କହିଲେ– ''ଯେମିତି ଚାଲୁଚି ଚାଲୁ।''

ଇନ୍ଦୁ କହିଲେ– ''କିନ୍ତୁ ଶେଷକୁ ଭାଇ ଭାଇ ଭିତରେ ମନାନ୍ତର ହବ, ଏଇଟା କ'ଣ ଭଲ ? ଆମର କୁଞ୍ଜକୁଟୀର କଳିକୁଟୀର ହବନାଇଁତ ? ବିଜୟର ସାନ୍ତବାପା କମଳାକାନ୍ତ ଘର ଭଳିଆ ହେବନାହିଁ ତ। ସେହି ମୋର ଭୟ।''

''ତୁମେ ଏତେ ଭୟ କାହିଁକି କରୁଚ ?''

''ଦେଖ, ତୁମେ ସମ୍ପତ୍ତି ବିଭାଗକର, ଆମ ଭାଗକରେ ତୁମର ଯା ଇଚ୍ଛା ତା କର, ତାଙ୍କ ଭାଗକ ତାଙ୍କୁ ବୁଝେଇଦିଅ।''

''ବୋଧହୁଏ ଶେଷକୁ ତାହା କରିବାକୁ ହବ; କିନ୍ତୁ ମତେ ବୟସ ଆସି ଚାଳିଶବର୍ଷ ହେଲା। ଆଜିକି ଅଠେଇଶ ବର୍ଷକାଳ ଏ ସମ୍ପତ୍ତି ମୁଁ ବୁଝିଲି। ମାଇନର ପାଶ୍ ପରେ ମୁଁ ବି ଆଉ ପଢ଼ି ନଥାନ୍ତି। ମୁଁ ଲାଗିପଡ଼ି ଏ ସମ୍ପତ୍ତି କେତେ ବଢ଼େଇଚି ଜାଣତ ! ଚାନ୍ଦିପଡ଼ା, ଦୌଲିତପୁର, ମାଣିକ ଗାଁ, ଏସବୁତ ମୋର ନିଜର ସମ୍ପତ୍ତି। ତଥାପି ମୁଁ ବରିକୁ ଅଧା ଭାଗ ଦେବାକୁ ପ୍ରସ୍ତୁତଅଛି। ଅଥଚ ସତ୍‌କାର୍ଯ୍ୟରେ ଦାନଲାଗି ସେ ଏଡ଼େ ରୁଷ୍ଟ କାହିଁକି, ମୁଁ ତ କିଛି ବୁଝୁନାହିଁ। ଧନକୁ ଧର୍ମ ସକାଶେ ଭଗବାନ୍ ଦେଇଛନ୍ତି ସିନା।''

''ଦେଖ ତୁମେ ବିଜୟକୁ ଯେ ସାହାଯ୍ୟକରୁଚ, ସେଥିପାଇଁ ସେମାନେ ବିରକ୍ତ– ନାନା ସ୍ଥାନରେ କହିଚନ୍ତି। ତୁମେ ତା'କୁ ଜୁଆଇଁ କରିବ। ହେଲେ ସତରେ କ'ଣ ବିଜୟକୁ ତୁମେ ଜୁଆଇଁ କରବ ?''

ହରେନ୍ଦ୍ର କହିଲେ– ''ଆଚ୍ଛା ମଣିଷ, ଉଆଟାକୁ କେମିତି ଭୂଆଟା କର। କେଉଁଦିନ ବିଜୟକୁ ମୁଁ ଜୁଆଇଁ କରିବାକୁ ଭାବିଥିଲି ? ଏ କଳ୍ପନା ବି ଲୋକେ କଲେଣି ? ସେଥିରେ ବା ଦୁଃଖ କ'ଣ ? ବିଜୟ ଗୋଟିଏ ରତ୍ନ-ଭାଗି ସଚ୍ଚରିତ୍ର, ସୁଶୀଳ, ସଦ୍‌ବଂଶର ପିଲା। ଏପରି

କୁଆଡ଼ଁ ପାଇବାତ ମୋ ଭାଗ୍ୟର କଥା! ତୁମେ ବିଜୟକୁ ଦେଖିଥିଲେ କହନ୍ତ 'ଏଡ଼େ ସ୍ୱରୂପ, ଏଡ଼େ ସୁବୋଧ, ମୁଁ ଏମିତି ପିଲାତ ଆମ ସମାଜରେ ଦେଖିନାହିଁ।''

ତା'ର ତେଜୋମୟୀ ମା କଥା କଣ କହିବି? ମୋ ଘରେ ଆସି ରହିବାକୁ ଅନୁରୋଧ କଲି; କିନ୍ତୁ ସେ ଭଙ୍ଗା କୁଡ଼ିଆ ଛାଡ଼ିକରି ଆସିଲେ ନାହିଁ। ତାଙ୍କ ସ୍ୱାମୀର ସେ ଶେଷ ଜୀବନରେ ଦୁଃଖାବସ୍ଥାର ଘର। ତାକୁ ତ୍ୟାଗକରି ଦୋତାଲା କୋଠାରେ ସେ ରହିବାକୁ ଚାହାନ୍ତି ନାହିଁ। ମହାମତୀ, ମହାସାଧ୍ୱୀ ସେ। ମୁଁ ସ୍ୱାର୍ଥଭାବ ରଖି ବିଜୟକୁ ସାହାଯ୍ୟ କରୁଚି, ଏକଥା ଶୁଣିଲେ ସେ ମୋର ଆର୍ଥିକ ସାହାଯ୍ୟ ମୋଟେ ଗ୍ରହଣକରିବେ ନାହିଁ। ମୋର ଭାରି ଇଚ୍ଛା ତୁମେ ତାଙ୍କୁ ଥରେ ଦେଖନ୍ତ- ସତୀତ୍ୱର ଜୀବନ୍ତ ବିଗ୍ରହ। ନାମ ହୈମବତୀ; ରୂପ ଗୁଣରେ ମଧ୍ୟ ସାକ୍ଷାତ୍ ହୈମବତୀ, ଦୁର୍ଗା। ଏପରି ମାତାର ସନ୍ତାନ ବିଜୟ ଯେ କି ପଦାର୍ଥ, ତାହା ବର୍ତ୍ତମାନ ବୁଝିପାରିବ ନାହିଁ। ତା'କୁ ଯଦି କନ୍ୟାଦାନ କରିପାରୁ, ତେବେ ତ ଆମେ କୃତାର୍ଥ ହବୁ।''

ଇନ୍ଦୁ ଦୀର୍ଘନିଃଶ୍ୱାସ ପକାଇ କହିଲେ– ''ପ୍ରୀତିର ସେ ଭାଗ୍ୟ ହବ?''

''ପ୍ରୀତି ଆଜିକାଲି ପଢ଼ାପଢ଼ି କେମିତି କରୁଚି? ଗୋବିନ୍ଦ ମାଷ୍ଟର ଭଲ ପଢ଼ାଉଛନ୍ତି ତ?''

''ଏତେବଡ଼ ପିଲା ହେଲା, ଆଉ ପାଠଶାଠ କ'ଣ ପଢ଼ିବ? ଏଥର ଘରକାମ ଶିଖୁ।''

''ଏମିତି କୁହନାହିଁ। ବିଜୟ ପରି ଜୁଆଇଁ ଚାହଁତ, କନ୍ୟାକୁ ବିଦୁଷୀ କର। ବିଜୟ ଯେଉଁ ସମାଜରେ ବଢ଼ିଚି, ନାରୀର ଆଦର୍ଶ ସେ ଯାହା ଦେଖିଚି, ତୁମେତ ପ୍ରଭାକର ବାବୁଙ୍କ ଘରକଥା ସବୁ ଜାଣ, କିଏ କହିପାରେ ବିଜୟ ତାଙ୍କରି ଭିତରୁ ଜଣକୁ ବିଭାହେବ କି ନାହିଁ।''

''ସେମାନେ ବ୍ରାହ୍ମଣ, ଏମାନେ କାୟସ୍ଥ ଯେ।''

''ସେମାନେ ଆଜିକାଲି ବ୍ରାହ୍ମ ସମାଜରେ ଯୋଗଦେଲେଣି। ହେଲେ ସେମାନେ ଏକେଶ୍ୱରବାଦୀ, ଏକରକମ ହିନ୍ଦୁ କହିଲେ ଚଳେ।''

''ତୁମେ ତ କୁହ ସେମାନେ ସାହେବ ମେମ୍‌ପରି ଥାନ୍ତି।''

''ସେମାନେ ଆଧୁନିକ, ତାଙ୍କ ଧର୍ମତ ଏ ଦେଶୀୟ, ତୁମେ ଏତିକି ବୁଝ– ତାଙ୍କ ଝିଅ, ପୁଅସବୁ ବଡ଼ ବଡ଼ ପାଶ କରିଛନ୍ତି– ଆଜିକାଲିକା ଫେସନରେ ଚଳନ୍ତି। ଆମ ସାନବୋଉ କ'ଣ? ହିନ୍ଦୁ ଘର ଝିଅତ! ତୁମର ତାଙ୍କର ମଧ୍ୟରେ କେତେ ପ୍ରଭେଦ।''

''କିନ୍ତୁ ତୁମେ ତାଙ୍କୁ କହ ସେମାନେ ଆଦର୍ଶ ପୁରୁଷ ସ୍ତ୍ରୀ।'' ''ହଁ ଆଧୁନିକ ଯୁଗର ଆଦର୍ଶତ ତାଙ୍କର ପୂର୍ଣ୍ଣମାତ୍ରା ଅଛି। ବିଦ୍ୟୁଲତା କିପରି ଗୃହିଣୀ ଆଉ ପତିବ୍ରତା। ଯା'ତ ତୁମକୁ ଜଣା। ତାଙ୍କ ଝିଅମାନେ ଗୋଟିକୁ ଗୋଟି ସରସ– ଯେପରି ରୂପ, ସେପରି ଗୁଣ। ସେଥିପାଇଁ କହୁଥିଲି, ବିଜୟର ଆଶା ମୁଁ କେବେ କରିବି ନାହିଁ। ଆଉ ସେ ଆଶାରେ ବି ତା'କୁ ସାହାଯ୍ୟ କରୁନାହିଁ।''

''ହଁ, ଯେ ଯାହା ହାଣ୍ଡିରେ ଚାଉଳ ପକେଇଚି। ମୋ ମା'କୁ କ'ଣ ବର ମିଳିବ ନାହିଁ? କାଲି ସକାଳେ ଶିବଙ୍କ ଭଳି ବର ଆସିବେ।''

ଏଇକ୍ଷଣି ତା'ର ବା କି ବୟସ ହେଇଚି। ହେଇତ ଏଗାର ପଶିଲା।''

''ଏଁ, ଆମ ହିନ୍ଦୁଘର ଏଡ଼େବଡ଼ ଝିଅ ହେଲାଣି। ମୁଁ ପରା ନଅ ବରଷରେ ବାହା ହେଇଥିଲି।''

''ତୁମେ ତ ଜାଣ, ମୁଁ ବାଲ୍ୟ ବିବହର ପକ୍ଷପାତୀ ନୁହେଁ।''

ତେବେ ତାକୁ କ'ଣ ଏଇନା ବାହା ଦେବନାହିଁ?

''ତାର ଷୋଳବର୍ଷ ପୂର୍ବରୁ ମୁଁ ତାକୁ ମୋଟେ ବିଭାଦେବି ନାହିଁ।''

ଏଣେ ତା ଛେଳେ ମା ଯେ ବ୍ୟସ୍ତ ହେଲେଣି। ମତେ କେତେଥର କହିଲେଣି, ପ୍ରୀତିଟା ଭାରି ଲମ୍ବା ହେଲାଣି। ଆଉ ଘରେ ତାକୁ ରଖିବାର ନୁହଁ। ଆଉ ତୁମେ କ'ଣ କହୁଚ, ଷୋଳବର୍ଷ। ତାକୁ ଆଜିଠୁ ଅହାରରେ ଅରୁଚି ହେଲାଣି। ଏ ରାଜ୍ୟଛଡ଼ା କଥା ତୁମ ମୁଣ୍ଡରେ କିଏ ଦେଲା? ଲୋକେ କହିବେ ଖ୍ରୀଷ୍ଟାନ୍ ହେଲେଣି। ଲୋକନିନ୍ଦାକୁ ଭୟନାହିଁ।

''ଆଃ! ମୋର ଏସବୁକୁ ଭୟନାହିଁ। ତୁମେ ଦେଖିବ, ମୁଁ ପ୍ରୀତିକୁ ଷୋଳବର୍ଷ ପୂର୍ବରୁ ମୋଟେ ବିଭାଦେବି ନାହିଁ। ଚିକିତ୍ସା ଶାସ୍ତ୍ରରେ ଲେଖାହେଇଚି, ବାଲ୍ୟବିବାହ ଶରୀର ବିରୁଦ୍ଧରେ ଘୋର ଅତ୍ୟାଚାର, ଆଉ ପାପ। ଲୋକନିନ୍ଦା ଭୟରେ ମୁଁ ପାପକରିବାକୁ ଯିବି? ପିତାହୋଇ ସନ୍ତାନ ବିରୁଦ୍ଧରେ?''

ହଜାର ହଜାର ବାଲ୍ୟବିବାହ ହେଉଯାଉଚି, କାହାରି ଶରୀର ବିରୁଦ୍ଧରେ ପାପ ହଉନାହିଁ, ଖାଲି ଆମରି ଘରେ ନୂଆକଥା। ବଡ଼ କନ୍ୟାଦେଖି ସାନବୋଉକୁ ଆଣିଲା ଯେ, କଣ ହେଲା?

## ଷଷ୍ଠ ଅନ୍ତର

ଦେବମନ୍ଦିରରେ ସନ୍ଧ୍ୟାରତ। ଶଙ୍ଖ, ଘଣ୍ଟା ବାଜିସାରିଲାଣି। ସନ୍ଧ୍ୟା ବନ୍ଦନାସାରି ଆସି ବୈଠକଖାନାର ପ୍ରଶସ୍ତ ପ୍ରକୋଷ୍ଠ ମଧରେ ହରେନ୍ଦ୍ର ପ୍ରବେଶକଲେ। ଗୋଟାଏ ବଡ଼ ଟେବୁଲ। ତା'ଉପରେ ସାଧା ଚାଦର ବିଛାହୋଇଛି। ଗୋଟାକେତେ ବହି, ଖବରକାଗଜ, କଲମ, ଦୁଆତ, ଦୁଅତଦାନି, ଏତିକି ତା'ର ଉପରିସ୍ଥ ସରଞ୍ଜାମ, ତା'ର ଚାରିଆଡ଼େ ଆରାମ ଚଉକି, ସେଥିରେ ଗଦି ଦିଆନାହିଁ, କି କିଛି କାରୁକାର୍ଯ୍ୟ ନାହିଁ। କାନ୍ଥରେ କେତେଗୁଡ଼ିଏ ହିନ୍ଦୁ ଦେବଦେବୀର ଛବି। ରାଧାକୃଷ୍ଣ, କାଳୀଶିବ, ରାମସୀତା, ନଳଦମୟନ୍ତୀ ଇତ୍ୟାଦିଙ୍କର ବିଭିନ୍ନ ତୈଳଚିତ୍ର, ଆଉ ଖଣ୍ଡେ ଦୁଇଖଣ୍ଡ ପାରିବାରିକ ଆଲୋକ ଚିତ୍ର।

ଘର ଭିତରେ ବା ପିଣ୍ଡାରେ ଫୁଲଗଛ ବା ଫୁଲକୁଣ୍ଡ, ଫୁଲଦାନି ଆଦିର ନାମ ଗନ୍ଧ ନାହିଁ। ବିଚିତ୍ର ବର୍ଣ୍ଣର ଗୃହସଜ୍ଜା, ଆଇନା, ଆଲମାରି, ବ୍ରାକେଟ ପିତାଳାଦି ପରିବର୍ତ୍ତେ ଗୋଟାଏ

କୋଣରେ କାଠର ବଡ଼ ଆଲମାରି ଭିତରେ ମାନେ ପୁସ୍ତକ ସ୍ତରେ ସ୍ତରେ ସଜ୍ଜିତ ଏବଂ ଗୋଟିଏ ପାଖରେ ଗୋଟିଏ ବଡ଼ ତକ୍ତପୋଷ, ତା' ଉପରେ ବିଛଣା। ଗୃହତଳେ ଗାଲିଚାର ନାମଗନ୍ଧ ନାହିଁ। ତା'ବଦଳେ ନାନା ରଙ୍ଗର ଆଲେପନ, ମୁରୁଜ। ଗୃହସ୍ଥ ନିଷ୍ଠାବାନ୍ ହିନ୍ଦୁ। ଭିତର ଘରେ ଯୋତାପାଦରେ ପ୍ରବେଶ ନିଷେଧ। ସେଥିପାଇଁ ଦାଣ୍ଡ ଘରର ଗୋଟିଏ କୋଣରେ ପାଦୁକାବଳୀର ସ୍ଥାନ। ଖଡଉ ଚଟିଠାରୁ ଆରମ୍ଭକରି ଇଂଲିଶ୍ ଶୁ ପର୍ଯ୍ୟନ୍ତ ସେଇଠାରେ ରକ୍ଷିତ। ଘର କାନ୍ଥର ଗୋଟିଏ ବଡ଼ ଥାକରେ ତିନି ଚାରୋଟି ତକ୍ତା ପଟାବସା ହୋଇଚି। ତା'ପରେ ମଧ୍ୟ ଥାକେ ଥାକେ ପୁସ୍ତକ ଆଉ ଉପର ଥାକରେ ମାଟିର ମାଛ, ବାଇଗଣ, ଚଢ଼େଇ, ସିଂହ ଆଦି ରଙ୍ଗିଆ କଣ୍ଢେଇ କେତୋଟି। ନବ୍ୟ ରୁଚିସମ୍ପନ୍ନ ଆଧୁନିକ। କେହି ହରେନ୍ଦ୍ରଙ୍କର ବୈଠକଖାନା ଦେଖିଲେ, ତାଙ୍କୁ ହୁଏତ କୃପଣ, ନୋହିଲେ ଅମ୍ବିକାଙ୍କ ଭାଷାରେ ଆଧୁନିକତାର ଜ୍ଞାନହୀନ ଓଲଡ୍‌ଫୁଲ କହିପାରେ। ମାତ୍ର ମନ୍ତବ୍ୟ ଯାହାର ଯାହାହେଉ ହରେନ୍ଦ୍ରଙ୍କର ଆଧୁନିକତାର ସୌକିଭିତରେ ପୋଷାକପତ୍ର ସାଜସଜ୍ଜା, ସିଗ୍ରେଟ, ଚଷମା ବାଦଗଲେ ସୁଦ୍ଧା, ଖବରକାଗଜର ନିଶା ତାଙ୍କୁ ଛାଡ଼ିନାହିଁ। ନିତି ଦୁଇବେଳା ଖବରକାଗଜ ପଢ଼ିବା ବରେନ୍ଦ୍ରଙ୍କ ମତରେ ତାଙ୍କର ଗୋଟିଏ ଦୁରଭ୍ୟାସ। ସେଇ ଅଭ୍ୟାସର ବଶବର୍ତ୍ତୀ ହୋଇ ସେ ମେଜ କତିରୁ ଚୌକିଟାଏ ଟାଣିଆଣି ବସି, ଦୈନିକ ଖବରକାଗଜ ପଢ଼ିବାକୁ ଲାଗିଲେ ଖବରକାଗଜ ପଢୁଛନ୍ତି ମଧ୍ୟେ ମଧ୍ୟେ ମୁଣ୍ଡ ଉଠାଇ ବାହାରକୁ ଅନାଉଚନ୍ତି, ଆଉ ଅସ୍ପଷ୍ଟ ସ୍ୱରରେ କହୁଛନ୍ତି – ଏତେବେଳ ହେଲା ଆସିଲା ନାହିଁ। ରୋଗୀଫୋଗୀ ଜୁଟିଲେ କି?

ତାଙ୍କ ଆଉ ଘରେ ଗୋଟିଏ ଲମ୍ବା, ଧଡ଼ିଆ, କୃଷ୍ଣବର୍ଣ୍ଣ ଲୋକ ପଶିବା ଦେଖି, ସେ ସାହ୍ଲାଦେ କହିପକେଇଲେ ''ଦୀର୍ଘଜୀବୀ ହେବ ଭାଇ, ନାଁ ନଉ ନଉ ତ ହାଜର।'' ଲମ୍ବା ଲୋକଟି ଗୋଟିଏ ଚଉକି ଟାଣି ବସୁ ବସୁ କହିଲେ, 'ଦୀର୍ଘ ଜୀବନର ଆଉ ଏ କାଳରେ ଦରକାର ନାହିଁ ବାବା! ଜୀବନ ନେଇ ଯଉ ଟଣାଟଣି।'' ହରେନ୍ଦ୍ର ଈଷତ ହସିକରି କହିଲେ ''ଆମର ତ ଯେନତେନ ପ୍ରକାରେଣ ଚଳିଯାଉଚି; କିନ୍ତୁ ନିଧିଆ, ରାମା, ବାସୁଆର କ'ଣ ଅବସ୍ଥା ହେଉଚି ଦେଖୁଚତ? ନା ଅଛି ପେଟକୁ ଦାନା, ନା ଅଛି ଦେହକୁ କନା।'' ସେଥିରେ ଶ୍ରୀମନ୍ତ ଯୋଗଦେଇ କହିଲେ, ''ଆଉ ନା ଅଛି ଆମର ତାଙ୍କ ପ୍ରତି ସହାନୁଭୂତି, ଆମେ ବାବୁ ଆସନରେ ବସି ଆରାମ ଚଉକି ଉପରୁ ହାତଚଢ଼େଇ ପାତାଳଗାମୀଙ୍କ ପିଠିଟା ଭି ଛୁଇଁବାକୁ ପାରୁନାହୁ।'' କିନ୍ତୁ ପଦାଘାତରେ ଆହୁରି ହାତେ ତଳକୁ ଠେଲିଦବାକୁ ବେଶ୍ ପାରୁଚୁ। ଆମରି ଅନ୍ୟାୟରେ ତ ଦେଶଗଲା। ଏଇଟା ଆମେ ନ ବୁଝି ପର ଉପରେ ଦୋଷ ଦେବାକୁ ବସିଚୁ। ଆଚ୍ଛା, ମୁଁ ତୁମକୁ ଯଉଁ କଥାପାଇଁ ପରାମର୍ଶ ମାଗିଥିଲି ସେଟା କଣ କଲ?

ଶ୍ରୀମନ୍ତ ମୁଣ୍ଡ ତଳକୁ ନୁଆଇଁ କିଛିକ୍ଷଣ ଚିନ୍ତାକଲେ। ପରେ ମୁଣ୍ଡ ପଛାଡଟା ଟିକିଏ ଲୁଣ୍ଡାଉ କୁଣ୍ଡାଉ କହିଲେ– କାଲି ସାରା ରାତି ସେ ବିଷୟରେ ଚିନ୍ତାକରି ସୁଦ୍ଧା, କିଛି ମୀମାଂସା

କରିପାରିଲି ନାହିଁ। ତୁମେ ତ ଜାଣ, ତାଙ୍କୁ ମୁଁ ପ୍ରାୟ ସବୁ ବିଷୟରେ ପରାମର୍ଶ ମାଗେ, ତାଙ୍କୁ ଏକଥା ଗୁଡ଼ାକ କହିଲାରୁ ସେ ଗୋଟିଏ ଛୋଟକଥା କହିଛନ୍ତି।" ହରେନ୍ଦ୍ର ଉତ୍ସୁକ ହୋଇ କହଇଲେ, କ'ଣ କଥା? ଶ୍ରୀମନ୍ତ କହିଲେ– ସେ କହନ୍ତି ଏତେଗୁଡ଼ିଏ ଟଙ୍କା ଏଇନା ଆତୁରାଶ୍ରମରେ ଖରଚ କର ନାହିଁ, ଯୋଉମାନଙ୍କପାଇଁ ଯୋଉ ଉଦ୍ଦେଶ୍ୟରେ ଏ କାମଟା ହବ ଶେଷକୁ ସେହିମାନେ ନିମକହରାମ ହେବେ, ଆଉ କୋଠାପାଳ ଘେନି କ'ଣ କରିବ? ଆମେ ବି ସେଇକଥା ଭାବୁଥିଲୁ। ଗୋଟିଏ ଅନାଥାଶ୍ରମ କରି ଲୋକପୋଷିବା ଆମର ଉଦ୍ଦେଶ୍ୟ ନୁହେଁ। ଦେଶଯାକତ ଲକ୍ଷ ଲକ୍ଷ ଅନାଥ। ଏଭଳି ଅବସ୍ଥାରେ ଗୋଟିଏ ଲୋକ ବା କେତେ ଲୋକଙ୍କପାଇଁ କ'ଣ କରିବ? କେତେ ହଜାର ଟଙ୍କା ଇମିତି ଖର୍ଚ୍ଚକରିବ? ଆଉ ଏ ଦେଶରେ କାହାର ବା ସହାନୁଭୂତି ପାଉଚି? ସମସ୍ୟା ତ ଅନେକ; ଅଥଚ ସମାଧାନର ଉପାୟ କ'ଣ?''

ହରେନ୍ଦ୍ର ଐକାନ୍ତିକଭାବେ କହିଲେ– ''ମୁଁ କିଛିତ କରିବି। ଅନେକ ସମସ୍ୟା ଜାଣେ। କ'ଣ କରିବି କୁହତ? ତୁମ ଗୃହିଣୀ କଥା ଶୁଣି ମୋ ମନରେ ହଉଚି, ସ୍ଥାୟୀ ଘରବାଡ଼ି, ଆଶ୍ରମାଦି ଆଗ ନକରି, ସେଦିନର ପରାମର୍ଶ ମତେ ପଲ୍ଲୀ ସଂଗଠନ କାମ ଯେତେଟା ହେଲାଣି, ତା'ରି ଉପରେ ଆଉ କିଛି କରିବା।

''କିନ୍ତୁ ସେ ଆଉ କିଛିଟା କ'ଣ? ତାଙ୍କ ମତରେ– ତୁମର ଆଦର୍ଶ ମୋଗଲବନ୍ଦିର ଗ୍ରାମରେ ପ୍ରଚାର ଓ ବିସ୍ତାରକରିବା ଦରକାର। ତୁମେ ନିଜେ ଜମିଦାରୀ ଭିତରେ ଯାହା ଯାହା କଲଣି, ଅର୍ଥ ଚାଷୀଙ୍କ ଦୁର୍ଦ୍ଦଶାମୋଚନ ସକାଶେ କୃଷକ ପାଣ୍ଠି, ସାଧାରଣ ଗୋଶାଳା, ଭାଗବତ ଘର ସଂସ୍କାର, ମୁସଲମାନମାନଙ୍କର ମସ୍‌ଜିଦ୍ ସଂସ୍କାର, ଗ୍ରାମ୍ୟ ସେବାସଂଘ, ତୁମର ନଳିତାପୁର ଚାନ୍ଦିପଡ଼ା, ବିରିଗାଁ, ତେନ୍ତୁଳିଆ ହେରିକାରେ ତ ବେଶ୍ ଫଳପ୍ରଦ ହେଉଚି, ସେଠି ତ ସାଧାରଣ ଚାଷୀଙ୍କ ଅବସ୍ଥା ଦିନକୁ ଦିନ ଭଲହେଲାଣି। ଏଥର ଆମ ଦୁହିଁଙ୍କ ପରାମର୍ଶ କୁଟୀରଶିଳ୍ପ ଆଡ଼ିକି ମନଦିଅନ୍ତି।

ଲୁଣ ତେଲଠୁ ଆରମ୍ଭକରି ଲୁଗା, ଯୁତା, ଛତା ସବୁ ଆମ ଦେଶରେ, ଆମରି ହାତରେ ତିଆରିହେଉ। ଆମେ ତାକୁ ବେଭାରକରିବା। ଯୋଉ ଟଙ୍କା ଆତୁରାଶ୍ରମପାଇଁ ରଖିଚ; ଆହୁରି ଚାନ୍ଦା ଉଠାଇ, ସେ ପାଣ୍ଠିକୁ ଦୁଇଗୁଣ କରି, କର୍ମଚାରୀ ରଖି ଶିଳ୍ପାଶ୍ରମ କର। ଲୋକଙ୍କୁ ନାନା ରକମ ଶିକ୍ଷାଦିଅ। ତାଙ୍କରତ ଏ ମତ।

ହରେନ୍ଦ୍ର ଉଲ୍ଲସିତ ହୋଇ କହିଲେ – ''ମୋର ଧନ୍ୟବାଦ ତାଙ୍କୁ, ଦେଖ ଘରଣି କିନା, ନୁଣ ତେଲର ହିସାବ ଜାଣନ୍ତି। ଏପରି ଝିଅମାନେଇ ଆମ ଦେଶର ଅଳଙ୍କାର। କାହିଁ ଆତୁରାଶ୍ରମ, କାହିଁ ଶିଳ୍ପାଶ୍ରମ। ନାରୀମାନେ ଦେଖୁଚି ଶେଷକୁ ଭାରତ ଉଦ୍ଧାରକରିବେ। ଶ୍ରୀମନ୍ତ ଯୋଗଦେଇ କହିଲେ– ଯଦି ଉପଯୁକ୍ତ ହୁଅନ୍ତି, ନାରୀ ଶକ୍ତିରୂପା, ପୁରୁଷର କର୍ମ ପ୍ରେରଣାର ମୂଳ।

ହରେନ୍ଦ୍ର– ''ତାଙ୍କର ଏ ପ୍ରସ୍ତାବ ଅତି ଉତ୍ତମ, ସେ କଥାଟି କହିଛନ୍ତି, ବର୍ତ୍ତମାନ କାର୍ଯ୍ୟରେ ପରିଣତକରିବା ଭାର ଆମମାନଙ୍କର, ସତ ନିଃସମ୍ବଳର କାର୍ଯ୍ୟଇ ଦରକାର, ପେଟ ପୋଷିବା ଲାଗି କାର୍ଯ୍ୟଇ ଦରକାର। ସେଇଯୋଗୁ ତ ଆସାମ କଲିକତା ପଳାଉଚନ୍ତି।

ଶ୍ରୀମନ୍ତ କହିଲେ– ''ସେ ଆହୁରି କହିଛନ୍ତି, ଆତୁରାଶ୍ରମର କଳ୍ପନା ପ୍ରଥମେ ହେଲା ପଦ୍ମିନୀର ବିଶିଆ ସାଥିରେ ଆସାମ ଯିବା ଦିନଠୁ ତ ? କୁଲିଡ଼ିପରେ ନାଁ ଲେଖେଇ କାହ୍ନୁଆ ହେରିକା ଯୋଉ ବାରଜଣ ଚାଲିଗଲେ ଏଇ ପଡ଼ାରୁ, ଫେର ଖବରକାଗଜରେ ପଢ଼ିଲ ନଈବଢ଼ିରେ ଆଠଗଡ଼ ଭାସିଗଲା। ଅଧିକାଂଶ ଲୋକ ହିନିଛେକରା ହେଇ କିଏ କୋଉଆଡ଼େ ପଳେଇଲେ। ଚାଉଳିଆଗଞ୍ଜ, କୁଲିଡିପ ଦିନ୍ ଶଅ ଶଅ ଲୋକ ରପ୍ତାନି କଲା; ଏସବୁ ସହିତ ତୁମ ମନ ବିଚଳିତ ହେଲା। କ'ଣ କରିବ, କ'ଣ କରିବ କହି ଆତୁରାଶ୍ରମର କଳ୍ପନା ସିନା କଲ। ଅତଏବ ଆମ ଦୁହିଁଙ୍କ ମତରେ, ଅକର୍ମଣ୍ୟ ଅନାଥରୂପେ ଲୋକଙ୍କୁ ପୋଷି, ଦେଶରେ ଗଳଗ୍ରହର ସଂଖ୍ୟା ବଢ଼େଇବା ଅପେକ୍ଷା, ତାଙ୍କୁ କାମ ଯୋଗାଇବା ଭଲ। ଏଣେ ଦେଶର ମଧ ଧନବୃଦ୍ଧି ହବ।

ହରେନ୍ଦ୍ର–ହେଲେ ତାଙ୍କ ପ୍ରସ୍ତୁତ ହାତକାମ, କଳକାମ ସାଥିରେ ପାରିଉଠିବ ତ ?''

ଶ୍ରୀମନ୍ତ– ''ସେଇତ ଭାବନା, କ୍ଷତି ଆଉ କଷ୍ଟ ଭି ତୁମର। ଅକାତରେ ହଜାର ହଜାର ଟଙ୍କାର ମୂଳ ପାଣ୍ଠିତ ତୁମେଇ ଦବ। କିଛି ଦିନରେ ଅବଶ୍ୟ ଲାଭହବ। ଲୋକେ ସେସବୁ ବ୍ୟବହାର କରିବାକୁ ପସନ୍ଦକରିବେ। ପ୍ରଚାରଦ୍ୱାରା ଲୋକଙ୍କ ମନରେ ଜାତୀୟଭାବ ଜାଗ୍ରତ ହେଲେ ବ୍ୟବହାର କରିବେ ନାଇଁ କାହିଁକି ? ଆଗେ ମନରେ ଭାବ ଆଉ ଚିନ୍ତା। ସେଠୁତ କାର୍ଯ୍ୟ। ଜିନିଷ ଶସ୍ତା ବି ତୁମରି ଉପରେ ନିର୍ଭରକରେ। କ୍ଷତି ସବୁଆଡୁ ତୁମରି ହେବ। ତୁମେ ତ ମୂଳପାଣ୍ଠିର ମାଲିକ।''

ହରେନ୍ଦ୍ର– ''କଳ୍ପନାରେ ତ କଳ୍ପଲୋକ– ଲାଭ ମଧ ଅସମ୍ଭବ ନୁହଁ; କିନ୍ତୁ କାର୍ଯ୍ୟତ ହେବା କଠିନ। ଆମେ ତ ଭାବିଚିନ୍ତି ପ୍ଲାନ୍‌ଟି କରିଚୁ କାର୍ଯ୍ୟତଃ କ'ଣ ହବ। ସେତିକି ହଉଚି ଅସଲ କଥା। ଏତ ଦି'ଦିନର କାମ ନୁହଁ। ଯା' ପାଇଁ ଆଉରି ଗଭୀର ଚିନ୍ତା ଆବଶ୍ୟକ। ମୁଁ ଲଳିତବାବୁ ଓ ବିଷ୍ଣୁବାବୁ ସହିତ ପରାମର୍ଶକରେ।

ଏ କାମପାଇଁ କର୍ମଚାରୀ ଆବଶ୍ୟକ। ତୁମର ପିଲାଏ ଆଉ ମୋର ପିଲାଏ ଏସବୁ ସ୍ଥାନରେ ଯୋଗଦେବେ। ଦୁଃଖର କଥା ବରି, ଅମ୍ବିକାର ଏଥିରେ ମୋଟ ସହାନୁଭୂତି ନାଇଁ। ମୁଁ ସେମାନଙ୍କ ଆଚରଣପାଇଁ ବଡ଼ ପ୍ଲାବିତ। ଥରେ ଥରେ ଇଚ୍ଛାହୁଏ, ଅମ୍ବିକାକୁ ଦ୍ୱାର ମଡ଼େଇବି ନାଇଁ; କିନ୍ତୁ ପିତୃମାତୃହୀନ ଅନାଥ ଭାବି, ପରେ ମନରେ ବଡ଼ କଷ୍ଟହୁଏ। ତେବେ ଆଜିକାଲି ଅନେକ ପରିମାଣରେ ଭଲହେଲାଣି। ଏମିତି ସବୁବେଳେ ରହିଲେ ତ ?''

ଶ୍ରୀମନ୍ତ ଈଷତ୍ ଦୁଃଖିତ ଭାବରେ କହିଲେ– ''ମୋତେ ସାନବଉଙ୍କ କଥା ଭାବି ବଡ଼ ଦୁଃଖଲାଗେ, ଏପରି ସତୀ ସାବିତ୍ରୀଙ୍କର ଏପରି ସ୍ୱାମୀ ଅଥଚ ତାଙ୍କୁ ସେ ଇଷ୍ଟ ଦେବତା ପ୍ରଭୁରୂପ ପୂଜାକରିବେ। ଏ ଏକରକମ ଏକତରଫା ଡିଗ୍ରୀ।

ହରେନ୍ଦ୍ର-କିନ୍ତୁ ସେ ତ ସେଥିରେ ମୋକ୍ଷଲାଭ କରିବେ। ଦୁର୍ଗତି ହେବ ଏ ଅମ୍ବିକାଟାର। ତାଙ୍କ ଭଉଣୀଙ୍କ ଅନୁରୋଧରେ ସିନା ମୁଁ ତାକୁ ଘରେ ସ୍ଥାନଦିଏ। ନୋହିଲେ ମୋର ଇଚ୍ଛାନାହିଁ ସେ ଏଠି ଦଣ୍ଡେ ଆସୁ ବୋଲି। ତା'ର ଆଦର୍ଶରେ ମୋର ସନ୍ତାନମାନଙ୍କର ଚରିତ୍ର ନଷ୍ଟହବ। ଏକମାତ୍ର ଭାଇ କି ନା। ଭଉଣୀଙ୍କର ଭାରି ସ୍ନେହ।

ଶ୍ରୀମନ୍ତ ସହାନୁଭୂତିରେ କହିଲେ- 'ସେ ତ ସ୍ୱାଭାବିକ।'

ଏପରି ସମୟରେ ଭୃତ୍ୟ ଆଲୁଅ, ପାନଆଦି ଦେଇଗଲା। କିଛିକ୍ଷଣପରେ ସାନ୍ଧ୍ୟ ଭ୍ରମଣରୁ ଫେରି ବରେନ୍ଦ୍ର ଆସି ବୈଠକଶାଳାରେ ପ୍ରବେଶକଲେ। ତାଙ୍କର ଆକୃତି ଯଦିଚ ହରେନ୍ଦ୍ରଠାରୁ ଆହୁରି ସୁନ୍ଦର ଆଉ ଲାବଣ୍ୟପୂର୍ଣ୍ଣ ଥିଲା, ତଥାପି ସୌନ୍ଦର୍ଯ୍ୟ ବୃଦ୍ଧି ସକାଶେ କୃତ୍ରିମ ଉପାୟ ଅବଲମ୍ବନରେ ସେ ପଶ୍ଚାଦ୍‌ପଦ ନଥିଲେ।

ପ୍ରଥମତଃ ମୁଣ୍ଡରେ ଦୀର୍ଘ ଟେରୀ, କୁଞ୍ଚିତ ଶତରଙ୍ଗବିଶିଷ୍ଟ ଚୂର୍ଣ୍ଣ କେଶରାଶି, ଜବାକୁସୁମ ଏବଂ ଜଳ ଉଭୟର ସାହଚର୍ଯ୍ୟର ପ୍ରସାଧନୀଦ୍ୱାରା ସୁଗୌର ଲଲାଟଦେଶରେ ତରଙ୍ଗାକାରରେ ଅତି ମନୋହର ଦିଶୁଥିଲା। ସେଥିରେ ପୁଣି ସ୍ମଶ୍ରୁ ଓ ଗୁମ୍ଫହୀନ ମୁଖମଣ୍ଡଳ ଭିନୋଲିଆ ରୋଜ୍‌ସୋପରେ ଧୌତହୋଇ ସୌନ୍ଦର୍ଯ୍ୟ ତୁଷାର ହେଜେଲିନ୍ ସ୍ନୋଦ୍ୱାରା ପରିମାର୍ଜିତ। ଦେହରେ ଚୁଡ଼ିଦାର ଅଷ୍ଟିମଯୁକ୍ତ ନୀଳାଭ ରେଶ୍ମୀ ପଞ୍ଜାବୀ ଭିତରୁ ଇଂଲିସ୍ ବନିଏନ୍ ଫୁଟି ଦିଶୁଥିଲା। ପକେଟରେ ହାସ୍ନା ହେନା ଏସେନ୍‌ସସିକ୍ତ ରେଶ୍ମି କାରୁକାର୍ଯ୍ୟମଣ୍ଡିତ ରୁମାଲ; ଭାଙ୍ଗ ହୋଇ ଏପରି ରହିଥିଲା ଯେ, ଅଧାପ୍ରାୟ ବାହାରକୁ ଦିଶୁଥିଲା। ପୁଣି ବାମ ହାତରେ ସୁନାର ରିଷ୍ଟ ୱାଚ୍। ଡାହାଣ ହାତର ଅନାମିକାରେ ରତ୍ନଶୋଭିତ ସୁବର୍ଣ୍ଣ ଅଙ୍ଗୁରୀୟ, କଟିଦେଶରେ ପାତଳା ଚିକ୍‌କଣ ରେଶ୍ମୀଧଡ଼ି ଢାକେଇଧୋତୀ, ଏପରି କୁଞ୍ଚହୋଇ ପିନ୍ଧା ହୋଇଥିଲା ଯେ, କୁଞ୍ଚାକାନି ତରଙ୍ଗାୟିତ ଭାବେ ଚରଣ ଚୁମ୍ବନକରୁଥିଲା। ଚରଣ ଶୋଭାବର୍ଦ୍ଧନପୂର୍ବକ ଜରିଦିଆ ମଖମଲ ପମ୍ପଶୁ ବିରାଜିତ ଥିଲା। ଏହାଛଡ଼ା ଗୋଟିଏ ଅର୍ଦ୍ଧଦଗ୍ଧ ସିଗାରେଟ ବାମହସ୍ତରେ ଏପରି ଭାବରେ ଧାରଣ କରିଥିଲେ ଯେ, ସହଜରେ ଦିଶୁ ନଥିଲା।

ବରେନ୍ଦ ବୈଠକଖାନାରେ ପ୍ରବେଶକରି ଦାଦା ଏବଂ ଶ୍ରୀମନ୍ତ ବାବୁଙ୍କୁ ଦେଖି ଟିକେ ଅପ୍ରସ୍ତୁତହୋଇ ଘର ଭିତରକୁ ପଶିଯାଉଥିଲେ। ହରେଂଦ୍ର ଡାକିଲେ- ''ବରି, ଏଠିକି ଆ, ତୋ'ର ବି ଆମ କଥାରେ ଯୋଗଦେବା ଉଚିତ୍''।

ବରେନ୍ଦ୍ର ଭାଇ କଥାରେ ପ୍ରତ୍ୟୁତ୍ତର ନଦେଇ ଖଟରେ ଆସି ବସିଗଲେ। ବେହେରା ହାତରୁ ପାନନେଇ ଶ୍ରୀମନ୍ତ କହିଲେ- ''ଅମ୍ବିକା ବାବୁ ଓ ସତୁବାବୁଙ୍କୁ ଡାକିଆଣ।'' ବେହେରା ଭରତିଆ ଆଦେଶ ପାଳନକଲା।

ବରେନ୍ଦ୍ରକୁ ଚାହିଁ ହରେନ୍ଦ୍ର କହିଲେ- ''ଦେଖ, ତୁମେମାନେ ଏଥର ବଡ଼ହେଲଣି, ତୁ ପାଶ୍‌କଲୁ, ଘରସଂସାର କଲୁ, ଜମିଦାରୀ କାମରେ ଏଥର ତୁମେମାନେ ମୋତେ ସାହାଯ୍ୟ କର। ଭିନ୍ନ ଭିନ୍ନ ଗାଁର କାମ ବୁଝ।''

"ମୌନଂ ସମ୍ମତି ଲକ୍ଷଣଂ" ପରି ବରେନ୍ଦ୍ର ତୁନିହୋଇ ମୁହଁପୋତି ରହିଲେ। ହାତର ସିଗ୍ରେଟଟା କୋଉଠିକି ପକେଇବେ, ଏଇ ଚିନ୍ତା ତାଙ୍କୁ ଅଥୟ କରୁଥାଏ। ଅମ୍ବିକା ଆଉ ସତ୍ୟ ଆସି ଆସନ ଗ୍ରହଣକଲେ। ପ୍ରଥମେ ହରେନ୍ଦ୍ର କହିଲେ– ''ଦେଖ ଅମ୍ବିକା, ସତ୍ୟ ଆଉ ବରି– ତୁମମାନଙ୍କଠାରୁ ମୁଁ ଅନେକ ଆଶାକରେ, ମୋର ଖୁବ୍ ବିଶ୍ୱାସ, ମୋର କାମରେ ତୁମେମାନେ ସାହାଯ୍ୟକରିବ।

ଅମ୍ବିକା–କାହିଁକି ନ କରିବା ?

ହରେନ୍ଦ୍ର–ଆମେମାନେ ଗୋଟିଏ ଶିଳ୍ପାଶ୍ରମ କରିବାକୁ ଯାଉଚୁ। ଅନେକ ପ୍ରକାର କୁଟୀରଶିଳ୍ପ, ସେଥିରେ ଲୋକଙ୍କୁ ଶିକ୍ଷାଦେବା, ତୁମେମାନେ ମୋ ସହିତ ମିଶି ଏ କାମରେ ହାତଦେବତ ?

ଶ୍ରୀମନ୍ତ କହିଲେ– ଏ କଥାର ପକ୍କା ପକ୍କି ବନ୍ଦୋବସ୍ତ ହେଇନାହିଁ। ହରିବାବୁ, ଲଳିତବାବୁ, ବିଷ୍ଣୁବାବୁ ହେରିକା ସହିତ ଏ ବିଷୟ ପରାମର୍ଶକରିବେ। ହେଇପାରେ ଆଉରି ଦି'ବର୍ଷ ଯିବ; କିନ୍ତୁ ଆମେମାନେ ଆପଣା ଭିତରେ ଆଗେ ପରାମର୍ଶ କରିନେବା।

ଶ୍ରୀମନ୍ତ ବାବୁଙ୍କ କଥାଶୁଣି ବରେନ୍ଦ୍ର ବାବୁ ମୁଖ ଗମ୍ଭୀରକଲେ।

ଅମ୍ବିକା ସହାସ ବଦନରେ କହିଲେ– ''ଶିଳ୍ପାଶ୍ରମ ତ କିଛି ସହଜ ବ୍ୟାପାର ନୁହେଁ, ଏତେଟଙ୍କା କୋଉଠୁ ଆସିବ ?

ହରେନ୍ଦ୍ର– ଆମେ ଦବା, ମୁଁ ଦେବି ବାରହଜାର ଟଙ୍କା, ଦରକାର ହେଲେ ଆଉରି ବେଶି ଦେବି। ଆଉ ଶ୍ରୀମନ୍ତବାବୁ ବି ଦେବେ ଚାରି ହଜାର ଟଙ୍କା। ତାରିଣୀ ବାବୁ କହିଚନ୍ତି ସେ ପାଞ୍ଚଶହ ଟଙ୍କା ଦେବେ, ପ୍ରଭାକର ବାବୁ ମଧ କିଛି ଦେବେ। ଟଙ୍କା ଉଠିଯିବ। ସେଥିପାଇଁ ମୁଁ ଦାୟୀ। ବରେନ୍ଦ୍ର ଟିକେ ଅପ୍ରସନ୍ନ ସ୍ୱରରେ କହିଲେ– ଦାଦା, ଲାଭକ୍ଷତି ବୁଝି ବ୍ୟବସାୟ କରିବା କଥା, ଶିଳ୍ପାଶ୍ରମଦ୍ୱାରା ଆମର ଲାଭ ହେବ କି ନାଇଁ, କିଏ ଜାଣେ ? ଆଉ ଏତେ ଏତେ ଟଙ୍କା ଦାନକରି, କାର୍ଯ୍ୟରେ କ୍ଷତିହେଲେ, ଶେଷରେ ବଡ଼ ମୁସ୍କିଲହେବ।

ଅମ୍ବିକା ଯୋଗଦେଇ କହିଲେ– ''ମୁଁ ବି ସେଇକଥା ଭାବୁଚି, ଶିଳ୍ପାଶ୍ରମରେ ଲାଭ କ'ଣ ! ସତେ ଏ ଓଡ଼ିଆ ମଣିଷ ହେବେ। ହେବେ ଯେ, ତାଙ୍କ ପଛରେ ଏତେ ଟଙ୍କା ପାଣିରେ ପକେଇବ।''

ଶ୍ରୀମନ୍ତ ଇଷତ୍ ଉତ୍ତେଜିତ ସ୍ୱରରେ କହିଲେ– ଓଡ଼ିଆଙ୍କୁ ମଣିଷ କଲେ କ'ଣ ଓଡ଼ିଆ ମଣିଷ ହେବେ ନାଇଁ ? ଏ ଜାତିଟା କ'ଣ ଏଡ଼େ ଅଧମ ?

ଅମ୍ବିକା ହସି ହସି କହିଲେ– ନା ଦାଦା ! ତୁମେ ରାଗ ହୁଅ ନାଇଁ। ତୁମେ ଓଡ଼ିଆ ବୋଲି କଣ ମୁଁ ତୁମକୁ କହୁଚି ଭାବିଚ ?

ହରେନ୍ଦ୍ର କହିଲେ– ଆଉ ଆମେ କ'ଣ ଓଡ଼ିଆ ନୋହୁଁ ?

ଅମ୍ବିକା– ଆମେତ ଡୋମିସାଇଲଡ୍। ଆମେ ଓଡ଼ିଆ, ଏକଥା ମୁଁ କହିପାରିବି ନାଇଁ।

ହରେନ୍ଦ୍ର ଉତ୍ତେଜିତ ଭାବରେ କହିଲେ– ରାଧାନାଥ, ପ୍ୟାରୀମୋହନ କରିପାରିଲେ, ଆଉ ତୁମେ କହିପାରିବ ନାହିଁ। ଯଦି ଓଡ଼ିଶାକୁ ତୁମର ମନେ ମନେ ଏତେ ଘୃଣା, ତେବେ ତ ତୁମର ଏଥିରେ ମିଶିବାର ନୁହଁ।

ଅମ୍ବିକା ଲଜ୍ଜିତ ହୋଇ ମୌନାବଲମ୍ବନ କଲେ। ହରେନ୍ଦ୍ର ବୁଲିପଡ଼ି କହିଲେ– ବରି, ତୁ କ'ଣ କହୁଚୁ? ସତୁ ତୁ କ'ଣ କହୁଚୁ? ଏ କାମ କରିବ ନା ନାହିଁ। ବରେନ୍ଦ୍ର କିଛିବେଳ ଭାବିଲେ, ଏ ଭିତରେ ସତୁ କହିଲା– ବାବା, ଆପଣଙ୍କଠୁ କ'ଣ ମୋର ବେଶି ବୁଦ୍ଧି? ଯଦି ଶିକ୍ଷାଶ୍ରମ କରି ଆମ ଦେଶରେ ମଙ୍ଗଳହୁଏ କରନ୍ତୁ, ମୁଁ ସେଥିରେ ମନପ୍ରାଣ ଢ଼ାଳିଦେବି।

ଶ୍ରୀମନ୍ତ ପ୍ରଫୁଲ୍ଲ ଭାବରେ କହିଲେ– ତୁମେ ପିତାର ଉପଯୁକ୍ତ ପୁତ୍ର।

ବରେନ୍ଦ୍ର ତତ୍‌ପରେ କହିଲେ– ''ଦାଦା! ଏ ତ ବୈଜ୍ଞାନିକ ଯୁଗ। କଳକାରଖାନାର ଯୁଗ। ହାତଶିଳ୍ପ ଏ ଯୁଗରେ କଳକାମ ସଙ୍ଗେ ପାରିଉଠିବ ନାଇଁ। ମୋର ଏ ବିଶ୍ୱାସ। ଶିକ୍ଷାଶ୍ରମ ଆଦିରେ ମୋର ଆସ୍ଥା ନାଇଁ। ଆପଣ କଲେ, କରନ୍ତୁ।

ଅମ୍ବିକା କହିଲେ– ଯଦି ନିହାତି ଦାନକରିବା ଇଚ୍ଛାଅଛି, କଲିକତାର ସ୍ୱଦେଶୀ ଫଣ୍ଡ କିମ୍ବା କାଶୀର ଜାତୀୟ ମହାବିଦ୍ୟାଳୟକୁ ଟଙ୍କାଟା ପଠେଇଦିଅନ୍ତୁ। ଦେଖିବେ, ନାମ ବି ହବ, ରାୟବାହାଦୂର, କି ରାଜାସାହେବ, ନୋଇଲେ ଦୟାସାଗର ଆଦି କିଛି ଗୋଟାଏ ଉପାଧି ପାଇଯିବେ। ଏଠି କଲେ ନା କାମ ହବ, ନା କାମଟା ସ୍ଥାୟୀ।

ବାଧାଦେଇ ହରେନ୍ଦ୍ର ବିରକ୍ତହୋଇ କହିଲେ– ମୁଁ ଉପାଧି କି ଟାଇଟଲ ସକାଶେ ଟଙ୍କା ଦବାକୁ ବସିନାଇଁ। ମୁଁ ଦେଶର ମଙ୍ଗଳ ଚାହେଁ। ମାନପାଇଁ ନୁହେଁ, ତୁମ ଭୁଲବୁଝିଚ, ଭୁଲବୁଝିଚ।

ବରେନ୍ଦ୍ର କହିଲେ– କିନ୍ତୁ ଦାଦା, ଏଥିରେ ଯେ ଦେଶର ମଙ୍ଗଳ ହବ, ଯା ଆପଣ କେମିତି ଜାଣିଲେ? ଅକାରଣେ ଟଙ୍କାଗୁଡ଼ିଏ ପାଣିରେ ପକେଇଦେଲେ –

ଶ୍ରୀମନ୍ତ କହିଲେ– ଏତେ ଭୀରୁ ସେ ନୁହନ୍ତି– ପାଣିରେ ପଡୁ ବା ଯାହାହଉ, କାର୍ଯ୍ୟରେ ପଶ୍ଚାତ୍‌ପଦ ହେବେ ନାଇଁ, ଏ ପୁଣି ଦେଶର କାମ।

ବରେନ୍ଦ୍ର ବିରକ୍ତ ସ୍ୱରରେ କହିଲେ– ଶ୍ରୀମାନ୍ ଦାଦା! ତୁମେଇ ଦାଦାଙ୍କୁ ଏସବୁ ପରାମର୍ଶ ଦଉଚ; କିନ୍ତୁ ତୁମର ଭାବି ଦେଖିବାର ଅଛି, ଆମ କଥାଟା ବି। ମୋର ଏ ସବୁରେ ଅର୍ଥନଷ୍ଟର ଇଚ୍ଛା ନାଇଁ। ମାତ୍ର ଏତେଗୁଡ଼ାକ ସତ୍ୟକଥା କହିପକାଇ ବରେନ୍ଦ୍ର ଲଜ୍ଜିତହେଲେ।

ହରେନ୍ଦ୍ର ଦୁଃଖିତ ସ୍ୱରରେ କହିଲେ– ବରି, ତୋର ମନଭାବ ମୁଁ ବୁଝିଚି। ପୈତୃକ ସମ୍ପତ୍ତିର ଗୋଟିଏ ଅଧଲା ମୁଁ ଦେବିନାଇଁ। ମୋର ଅର୍ଜିତ ସମ୍ପତ୍ତିର ଆୟରୁ ଏ ଟଙ୍କା ରଖିଚି। ଯଦି ସେଥିରେ ଅନଟନ ହୁଏ, ମୋର ସ୍ତ୍ରୀ, କନ୍ୟାର ଅଳଙ୍କାରଆଦି ଦେବି; କିନ୍ତୁ ତୋର ଅର୍ଥକ୍ଷତି କରିବି ନାଇଁ। ମୁଁ ଖାଲି ତୋର ସହାନୁଭୂତି ଆଉ ସାହଚର୍ଯ୍ୟ ଚାହେଁ। ସେତିକି ଦେ, ଭାଇ। ବରେନ୍ଦ୍ର ନୀରବରେ ଅବସ୍ଥାନକଲେ।

ଶ୍ରୀମନ୍ତ କହିଲେ– ଏ କାର୍ଯ୍ୟରେ ମୁଁ ମୋର ସ୍ତ୍ରୀ, ପୁତ୍ର କନ୍ୟା ସମସ୍ତେ ସର୍ବସ୍ୱ ଘେନି ଯୋଗଦବୁଁ, କାରଣ ଏ ଆମ ଦେଶର କାମ, ଦେଶର ମଙ୍ଗଳରେ ସିନା ଆମର ମଙ୍ଗଳ।

ହରେନ୍ଦ୍ର– ଆଉ ଏ କ'ଣ ମୋର ଦେଶ ନୁହେଁ?

ଶ୍ରୀମନ୍ତ– ତୁମେମାନେ ଏ ହିସାବରେ ଆପଣାକୁ ବଙ୍ଗାଳୀ କହିପାର; କିନ୍ତୁ ବାଧାଦେଇ ହରେନ୍ଦ୍ର କହିଲେ, ମୋର ସାତପୁରୁଷ ଯେଉଁ ଦେଶର ଅନ୍ନଜଳରେ ଲାଳିତପାଳିତ, ମୋର ସାତ ପୁରୁଷ ଯେଉଁ ଦେଶରେ ମାଟି ପାଇଚନ୍ତି, ମୋର ଭବିଷ୍ୟତ ସାତପୁରୁଷ ଯେଉଁ ଦେଶର ଅଧିବାସୀ ହେବାର ମୋର ଆକାଂକ୍ଷା, ସେ ମୋର ଦେଶ ନୁହେଁତ, ମୋର ଆଉ ଦେଶ କୋଉଠି ?

ଅମ୍ବିକା କହିଲେ– ବଙ୍ଗାଳୀ ଯୋଉଠି ଥାଉ, ସେ ଆପଣା ମାତୃଭୂମିକୁ ଭୁଲିବ ନାଇଁ। ''ବଙ୍ଗ ଆମର ଜନନୀ, ଆମାର'' ତା'ର ସାଧନାମନ୍ତ। (ଅବଶ୍ୟ ଅମ୍ବିକା ଓ ବରେନ୍ଦ୍ର କେରା ବଙ୍ଗଳାରେ କଥା କହୁଥିଲେ, ପାଠକମାନଙ୍କ ସୁବିଧାର୍ଥେ ତା'କୁ ଓଡ଼ିଆରେ ଅନୁବାଦ କରାହେଇଚି)।

ହରେନ୍ଦ୍ର ଉତ୍ତେଜିତ ଭାବେ କହିଲେ– ମୁଁ ସ୍ୱୀକାରକରୁଚି– ମୁଁ ବଙ୍ଗାଳୀ, ମୁଁ ବଙ୍ଗାଳୀର ବଂଶଧର; କିନ୍ତୁ ତଥାପି ମୁଁ ଓଡ଼ିଆ। ମୋର ବାପଦାଦା ଓଡ଼ିଆ, ଓଡ଼ିଶାର ଅନ୍ନ ଜଳରେ ମୋ ଦେହ ପୁଷ୍ଟ। ମୁଁ ଏଡ଼େ ଅକୃତଜ୍ଞ ନରାଧମ, ଚଣ୍ଡାଳ ନୁହେଁ। ରାଧାନାଥ, ପ୍ୟାରୀମୋହନ, ଗୌରୀଶଙ୍କର ସାଙ୍ଗେ ସମସ୍ୱରରେ ମୁଁ କହିବି– ମୁଁ ଓଡ଼ିଆ, ଓଡ଼ିଆ, ଓଡ଼ିଆ। ଓଡ଼ିଶାର ସୁଖରେ ମୋର ସୁଖ; ଓଡ଼ିଶାର ଦୁଃଖରେ ମୋର ଦୁଃଖ। ଓଡ଼ିଶା ନଷ୍ଟହେଲେ, ମୁଁ ନଷ୍ଟହେବି। ଓଡ଼ିଶା ଲୁପ୍ତହେଲେ, ମୁଁ ମଧ ଲୁପ୍ତ ହେବି।

ତାଙ୍କର ଉତ୍ତେଜିତ ସ୍ୱରରେ ସମସ୍ତେ ଅଳ୍ପ ଭୀତ ହୋଇଗଲେ। ସମସ୍ତଙ୍କୁ ଶାନ୍ତକରିବା ଅଭିପ୍ରାୟରେ ଶ୍ରୀମନ୍ତ କହିଲେ– ଏଠିତ ଆମେ ଶିକ୍ଷାଶ୍ରମ କଥା ପକେଇଥିଲୁ, ଏଠି ଓଡ଼ିଆ ବଙ୍ଗାଳୀ କଳିଆଣି ଯୁଟେଇବାର ନ ଥିଲା। ଅମ୍ବିକା ବାବୁଇ କଥାଟା କଢ଼ିଲେ। ହରେନ୍ଦ୍ର ପୂର୍ବବତ୍ ସ୍ୱରରେ କହିଁଲେ– ମୁଁ କଳିର ପକ୍ଷପାତୀ ନୁହେଁ। ଓଡ଼ିଆ ବଙ୍ଗାଳୀ ଭାଇଭାଇ। ଭାଇଭାଇ ଭିତରେ କଳି ଯେ ଲଗାଏ, ସେ ମହାପାପୀ।

ତାଙ୍କର କଥା ସରିନାଇଁ, ଏପରି ସମୟରେ ଦାଣ୍ଡରୁ ଊର୍ଦ୍ଧ୍ୱଶ୍ୱାସରେ ଭିକାରିଆ ଦୌଡ଼ିଆସିଲା। ଭୀତତ୍ରସ୍ତ କଣ୍ଠରେ ଚିତ୍କାରକରି କହିଲା– ବାବୁ ବାବୁ, ତନ୍ତୀ ସାଇ ଗୋଟାକ ପୋଡ଼ିଜଳି ଛାରଖାର ହେଲାଣି। ହରେନ୍ଦ୍ର ସହିତ ସମସ୍ତେ ଉଠି ବାହାରକୁ ଗଲେ। ସେତେବେଳକୁ ନିଆଁ ଲିଭିନାଇଁ। ଆକାଶ ଉଜ୍ଜ୍ୱଳକରି ଅଗ୍ନିଶିଖା ଊର୍ଦ୍ଧ୍ୱକୁ ଉଠୁଚି।

ସନ୍ଧ୍ୟାର ଅନ୍ଧକାର ସେଥିରେ ବୁଡ଼ିଗଲାଣି। ଗୋଳମାଳ, କୋଳାହଳ, ପାଣି ପାଣି ଚିତ୍କାରରେ ସାହି ଏମୁଣ୍ଡ ସେମୁଣ୍ଡ କମ୍ପିଉଠୁଚି। ପିଲାମାନଙ୍କର କାନ୍ଦବୋବାଳି, ସ୍ତ୍ରୀମାନଙ୍କର କରୁଣ ଧ୍ୱନିରେ ସାନ୍ଧ୍ୟଗଗନ ମୁଖରିତ। ତନ୍ତୀସାହି ହରେନ୍ଦ୍ରଙ୍କର ଘର ପଛଆଡ଼େ। ଗୋଟିଏମାତ୍ର

ପୋଖରୀ, ମଝିରେ ବ୍ୟବଧାନ। ପୋଖରୀର ଚାରିପାଖ ଉଚ୍ଚ ପାଚେରୀ ଘେରା। ପାଚେରୀର ପଛପଟରୁ ତନ୍ତୀଙ୍କର ଧାଡ଼ି ଧାଡ଼ି ଘର ଆରମ୍ଭହୋଇଚି। ସାହିରେ ପ୍ରାୟ ପାଁଶ ଘର; କିନ୍ତୁ ପ୍ରତ୍ୟେକ ଘର ମଧ୍ୟରେ ପିମ୍ପୁଡ଼ିଟିଏ ଗଳିବାକୁ ସୁଦ୍ଧା ବାଟ ନାହିଁ। ଘରକୁ ଘର କାନ୍ଥକୁ ଲାଗିଚି। ପିଣ୍ଡାକୁ ପିଣ୍ଡା ଯୋଡ଼ିହୋଇ ରହିଚି। ଛାତଗୁଡ଼ିକ ନିତାନ୍ତ ଡାଲୁ। କୋଠରୀଗୁଡ଼ିକ ଦିନ ଦି'ପହରରେ ମଧ୍ଯ ଘୋର ଅନ୍ଧକାର। ପ୍ରତ୍ୟେକ ତନ୍ତୀର ଗୋଟିଏ ଯୋଡ଼ିଏ ବଖରା ଆଗକୁ ଉଚ୍ଚ ଅଥଚ ଅଣଓସାରିଆ ହାତେ ଦି'ହାତ ପିଣ୍ଡା, ପଛପଟକୁ ଦଶ ବାରହାତ ଲମ୍ବ। ଦୁଇ ଚାରିହାତ ଓସାରର ଖଣ୍ଡିଏ ଅଗଣା, ଦାଣ୍ଡପଟ ବାରିପଟର ସବୁସ୍ଥାନରେ ଲୁଗା ବୁଣିବା ସରଞ୍ଜାମ, ସୂତା ଏବଂ ଲୁଗାଦିରେ ପୂର୍ଣ୍ଣ। ପଚାପେଚର ଗନ୍ଧରେ ସେଠି ଅଧଘଣ୍ଟା ଛିଡ଼ା ହେବାର ଯୋ' ନାହିଁ। ଅଥଚ ସ୍ଥାନଟି ନର ମୁଣ୍ଡମାଳରେ ପୂର୍ଣ୍ଣ।

ସେଦିନ ବାରଟାବେଳେ ମଝିସାଇର ଗୋଟିଏ ତନ୍ତିଅଣୀ ନିଜର ସାନଚାଳିଆ ରନ୍ଧାଘରେ ଚାରୁ ବଘାରୁ ବଘାରୁ ହାଣ୍ଡିରୁ ନିଆଁଉଠି ଛାତଉପରୁ ଓହଳିଥିବା ଅଖା ଖଣ୍ଡକରେ ଦୈବାତ୍ ଲାଗିଗଲା। ସେଠୁ ଚାଳରେ ଲାଗି ଅଧଘଣ୍ଟା ଭିତରେ ସାରାସାହି ଘର ପୋଡ଼ିଗଲା। ବହୁତ ଚେଷ୍ଟା ଯତ୍ନରେ ସୁଦ୍ଧା ଏପର୍ଯ୍ୟନ୍ତ ଲିଭିନାହିଁ।

ଅଗ୍ନିର ପ୍ରଳୟ ଶିଖା ଏ ଛାତରୁ ସେ ଛାତକୁ ଡେଇଁ ଡେଇଁ ଯେପରି ଖେଳିବୁଲୁଚି। ଆହା, ସେ କି କରୁଣ ଦୃଶ୍ୟ। ପ୍ରତ୍ୟେକ ଛାତ ଜଳୁଚି। ଛାତର କାଠବାଉଁଶ ଫାଟି ଫାଟି ଏଠି ଖଣ୍ଡେ, ସେଠି ଖଣ୍ଡେ ଛିଡ଼ିପଡୁଛି। କୋଉଠି କୋଉଠି କାନ୍ଥ ଅଧାଯାକ ଜଳିପୋଡ଼ି ଗଲାଣି। ଦୁଲ୍ ଦୁଲ୍ ମାଟିମୁଣ୍ଡାଗୁଡ଼ିକ ଛିଡ଼ି ଛିଡ଼ି ମଣିଷ ଉପରେ ଗୋରୁଗାଈ ଉପରେ ପଡ଼ି କାହାକୁ ଚାପି ମାରୁଚି, କାହାକୁ ଦରମରା କରିଦେଉଚି। ସ୍ତ୍ରୀ ପୁରୁଷ ଅଧିକାଂଶ ପାଣିଢ଼ାଳାରେ ବ୍ୟସ୍ତ। ଆହୁରି କେତେଜଣ ଘରୁ ନିଜବସ୍ତ ଟାଣି ବାହାରକରୁଚନ୍ତି।

ଗାଁ ଗୋଟିକର ଲୋକ ପ୍ରାୟ ସେଠି ଗଦା ହୋଇଗଲେଣି। ତାଙ୍କ କୋଳାହଳରେ କାହାରି କଥା କାହାରିକୁ ଶୁଭୁନାହିଁ। ଅଥଚ କୂଅଛଡ଼ା ନିକଟରେ ପୋଖରୀ ନାହିଁ।

ହରେନ୍ଦ୍ରଙ୍କର ପୋଖରୀ ଚାରିପଟେ ପାଚେରୀ ଘେରା। ମୁହୂର୍ତ୍ତ ମଧ୍ୟରେ ହରେନ୍ଦ୍ର ଲୋକବାକ ନେଇ ଘଟଣାସ୍ଥଳରେ ଉପସ୍ଥିତହେଲେ। ତାଙ୍କର ସବଳ କର୍ମଚାରୀମାନେ ମୁହୂର୍ତ୍ତ ମଧ୍ୟରେ ପୋଖରୀ ପାଚେରୀର ଏକାଂଶ ଭାଙ୍ଗିପକେଇଲେ। ଜମିଦାରୀ କଚେରୀରେ ରଖା ହୋଇଥିବା କଳସ ଓ ସିଡ଼ିମାନ ସେଇକ୍ଷଣି ଅଣାଗଲା।

ଶଅ ଶଅ ଲୋକ ପାଣିକାଢ଼ି ଘରର ଛାତମାନଙ୍କ ଉପରେ ଢ଼ାଳିବାକୁ ଲାଗିଲେ। ଲୋକମାନଙ୍କୁ ଉତ୍ସାହିତକରି ହରେନ୍ଦ୍ର ଏବଂ ତାଙ୍କ ପୁତ୍ରମାନେ ନିଜେ, ନିଜ ପାଣିମାଠିଆ ତାଙ୍କ ହାତରେ ଟେକି ଟେକି ଦେଉଥାନ୍ତି।

ଘଣ୍ଟାକପରେ ନିଆଁ ଲିଭିଗଲା। ପ୍ରାୟ ଚାରିଶଅ ଘରର ଭସ୍ମସ୍ତୂପ ନିରୀକ୍ଷଣକରି ଶଅ ଶହ ଘରଦ୍ୱାରହୀନ ନିରାଶ୍ରୟ ପୁରୁଷ, ସ୍ତ୍ରୀ ଶିଶୁଆଦିଙ୍କୁ କେଉଁଠି ସ୍ଥାନଦେବେ ଭାବୁ ଭାବୁ ହରେନ୍ଦ୍ର ଘରେ ଉପସ୍ଥିତହେଲେ।

ଖରାଦିନ। ମୁକ୍ତ ଆକାଶ ତଳେ ପୁରୁଷମାନଙ୍କର ଅବସ୍ଥାନ କଷ୍ଟକର ନୁହେଁ ଭାବି, କଚେରୀଘର ଆଉ କେତେଗୁଡ଼ିଏ ବାଢେଘର ଖାଲିକରି ସ୍ତ୍ରୀଲୋକ ଓ ପିଲାମାନଙ୍କୁ ସ୍ଥାନଦେଲେ। ସେ ରାତିକ ବଡ଼ କଷ୍ଟରେ କଟିଲା। ତା' ପରଦିନ ହିସାବରୁ ଜଣାଗଲା, ପ୍ରାୟ ତିନିଶଅ ପରିବାର ଗୃହହୀନ ଆଉ କପର୍ଦ୍ଦକ ଶୂନ୍ୟ।

ହରେନ୍ଦ୍ରଙ୍କର ହୃଦୟ କରୁଣାର୍ଦ୍ର ହୋଇଉଠିଲା। ଭାବିଲେ, ଶିକ୍ଷାଶ୍ରମ ତେଣିକି ଥାଉ। ଆଗ କାମ, ଆଗ। ସ୍ଥାନୀୟ କେତେଜଣ ଭଦ୍ରବ୍ୟକ୍ତିଙ୍କ ସହିତ ପରାମର୍ଶ କରି, ପ୍ରାୟ ଦୁଇହଜାର ଟଙ୍କା ଆଉ ପ୍ରଚୁର ଖାଦ୍ୟ ଓ ବସ୍ତ୍ର ଆଦି ଦେଇ ସେହି ଅନାଥ ତେଲେଙ୍ଗା ତନ୍ତୀକୁଳଙ୍କୁ ରକ୍ଷାକଲେ। ଦେଶରେ ତାଙ୍କର ନାମରେ ଧନ୍ୟ ଧନ୍ୟ ପଡ଼ିଗଲା। ତାଙ୍କର ପ୍ରଶଂସା ଶୁଣି ଈର୍ଷାନ୍ୱିତା ସୁରୁଚି ଦିନେ ସନ୍ଧ୍ୟା ସମୟରେ ସ୍ୱାମୀଙ୍କୁ କହିଲେ- ''ଏତେ କାଣ୍ଡହଉଚି, ଏତେକଥା ଶୁଣୁଚ, ତେବେ କ'ଣ ଘଟରେ ବୁଦ୍ଧି ହେଲାନାହିଁ? ପୈତୃକ ସମ୍ପତ୍ତି ଦାନକରି କରି ଶେଷକୁ ରାୟ ବାହାଦୂର ହେବେ, ଅନ୍ତତଃପକ୍ଷେ କାଇସର- ହିନ୍ଦ୍ ମଡ଼େଲଟା ପାଇଯିବେ। ତୁମେ ବି.ଏ. ପାଶ୍‌କରି କ'ଣ ଖଡ଼ା ଚୋବାଉଥିବ।

ବରେନ୍ଦ୍ର ସ୍ତ୍ରୀଙ୍କର ଈର୍ଷା କୁଟିଳନୟନ ଭଙ୍ଗି ଦେଖି ହସି ହସି କହିଲେ- ''ସେ ତ ଭାଇ, ପାଇଲେ। ଆମରି ଗୌରବ ବଢ଼ିବ।''

ସୁରୁଚି ହାତଛିଞ୍ଚାଡ଼ି କହିଲେ- ଏଡ଼େ କାପୁରୁଷ, ହୀନ, ଅଯୋଗ୍ୟ ସ୍ୱାମୀ ମୋରି କପାଳରେ ଥିଲା ଏକା।

ବରେନ୍ଦ୍ର ତାଙ୍କୁ ଅଧିକ ରଗେଇବା ଅଭିପ୍ରାୟରେ କହିଲେ- ''ଇଚ୍ଛାହେଲେ ଡାଇଭୋର୍‌ସି ଦିଅ।''

ସୁରୁଚି ରକ୍ତନେତ୍ର ଅଶ୍ରୁରଞ୍ଜିତ କରି କହିଲେ- କାଲି ମୁଁ ବାପଘରକୁ ଯାଉଚି, ଦେଖିବି କେମିତି ମଜା।

ବରେନ୍ଦ୍ର ବିଦ୍ରୂପ ଛଳରେ କହିଲେ- ଆଉ ମୁଁ ତୁମର ଖୁରାକୁ ଝୁରି ଝୁରି ମରିଯିବି ଯେ।

ସ୍ୱାମୀର ବ୍ୟଙ୍ଗବାଣୀ ଶୁଣି, ଈଷତ୍ କୋପରେ ସୁରୁଚି କହିଲେ- ''ଗୋଟିଏ ମାତଙ୍ଗିନୀର ଯୋଗାଡ଼ ହେଲାଣି କି? ହଉ ହଉ ଯାହାଇଚ୍ଛା କର। ମୁଁ କିନ୍ତୁ ଅଟଳ ଅଟଳ। ଏଥର ଭିନ୍ନହେବ, ତେବେ ଯାଇ ବାପଘରୁ ଆସିବି। ନୋହିଲେ ଅଇଁଠା ପତର ଚାଟିବାକୁ ଆଉ ଏ ଘରର ମୁହଁ ଦେଖିବି ନାହିଁ। ଆମେ ମା ପୁଅ କଲିକତା ପ୍ରବାସୀହୋଇ ରହିବୁ। ତେବେ ବାବୁଙ୍କ ଚୈତନ୍ୟୋଦୟ ହବ ସିନା। ଭଲରେ କହିଲେ କେବେ ଶୁଣିବ ନାହିଁ।

ବରେନ୍ଦ୍ର ଭାର୍ଯ୍ୟାର କଥା ଚିନ୍ତା କରୁକରୁ ବୁଲିବାହାରିଲେ।

# ସପ୍ତମ ଅନ୍ତର

# ସ୍ୱାମୀ, ସ୍ତ୍ରୀ

ରାତି ବାରଟା ହେଲାଣି। ଘରେ ବତୀ ଜଳୁଛି। କିରାସିନ୍ ଲଣ୍ଠନ କତିରେ ରଖି ଶଯ୍ୟାରେ ବସି ସୁରୁଚି ଚିଠି ଲେଖୁଚନ୍ତି। ବାଲ୍ୟବାନ୍ଧବୀ କମଳକଳିକାକୁ। ଚିଠିର କିୟଦଂଶ ପଢ଼ି ମନେ ମନେ ହସିଦଉଚନ୍ତି। ଭଲ ଲାଗିଲାରୁ ପୁଣି ପଢୁଚନ୍ତି। ପାଖରେ ଶୋଇଚି ତିନିବର୍ଷର ଶିଶୁପୁତ୍ର ଦୁଲାର। ହେଲେ ତାଙ୍କ କାନ ବରାବର ରହିଚି ବାହାରକୁ। ପତରର ଖଡ଼ଖଡ଼ରେ ସୁଦ୍ଧା ଚମକି ପଡୁଛନ୍ତି। ଆଜି ପର୍ଯ୍ୟନ୍ତ ବରେନ୍ଦ୍ର ଘରକୁ ଫେରିନାହାନ୍ତି। ସେ ଜାଣନ୍ତି, ଆଜି ଥିଏଟର ନାହିଁ। ତେବେ ଏତେ ରାତିଯାକେ ତାଙ୍କ ସ୍ୱାମୀ କୁଆଡ଼େ ଯାଇଚନ୍ତି। ଏହି କଥା ତାଙ୍କ ମନରେ ଘାଣ୍ଟିଗୋଳି ହେଉଚି। ଠିକ୍ ଏତିକିବେଳକୁ କବାଟରେ ଆସି ଧୀରେ ଧୀରେ ଡାକପକାଇଲେ ବରେନ୍ଦ୍ର। କାତେ ପାଣିରୁ ଉଠିଲା ପରି ଆହ୍ଲାଦରେ ଧାଇଁଯାଇ ସୁରୁଚି ସ୍ୱାମୀଙ୍କୁ କବାଟ ଖୋଲିଦେଲେ।

''ଏତେ ରାତିଯାକେ କୁଆଡେ ଯାଇଥିଲ ମ! ଅନେଇ ଅନେଇ ମୋ ଆଖିରୁ ପାଣିମଲାଣି। ମଣିଷ ଏତେ ରାତିଯାକେ ବାହାରେ ଥାନ୍ତି। ଆମେ ମା ପୁଅ ଭୟରେ ଅସ୍ଥିର ହେଲୁଣୁ।''

ଏକ ନିଃଶ୍ୱାସରେ ଏତକ କଥା କହିଦେଇ, ସୁରୁଚି ସ୍ୱାମୀର ପରିଚର୍ଯ୍ୟାରେ ବ୍ୟସ୍ତହେଲେ।

ବରେନ୍ଦ୍ର ଶାନ୍ତଭାବେ ଆରାମ ଚଉକିରେ ଆଉଜିପଡ଼ି ଟିକେ ରହସ୍ୟଭାବେ କହିଲେ– ''ଭୟରେ ଅସ୍ଥିର ହେଲ କାହିଁ, ମୁଁ କ'ଣ ମଦୁଆ, ମାଛୁଆ।'' ସୁରୁଚି ଈଷଦ୍ ହାସ୍ୟରେ ମୁଖରେ ମୋହିନୀଭାବ ଆଣି ସ୍ୱାମୀପାଦକୁ କୋମଳ କରଦ୍ୱାରା ମାର୍ଜନା କରୁ କରୁ, ଗାଢ଼ ସ୍ୱରରେ କହିଲେ– ଖାଲି କ'ଣ ସେଇ ଭୟ! ତୁମେ ନ ଥିଲେ ମୋତେ କେତେ ଖରାପ ଲାଗେ। ଅନ୍ଧାର ରାତି, ତୁମେ ଦଣ୍ଡେ ବାହାରେ ରୁହବୋଲି କ'ଣ ମୋର ଇଚ୍ଛା। କୁହମ କୁଆଡ଼େ ଯାଇଥିଲ?

ବରେନ୍ଦ୍ର ସସ୍ନେହ ସ୍ୱରରେ କହିଲେ– ''ରୁଚି କ୍ଷମାକରିବତ, କହିବି। ତୁମକୁ ନକହି କୁଆଡ଼େ ଯାଇଥିଲି ଜାଣ? ଦୌଲତପୁର। ହଠାତ୍ ଆକାଶରୁ ପଡ଼ିଲାପରି ଅବାକ୍‌ହୋଇ ବିସ୍ମୟ ବିମୂଢ଼ ସ୍ୱରରେ ସୁରୁଚି କହିଲେ– ''ଦୌ–ଲତ୍–ପୁର। ଆଠକୋଶ। ଏମିତି କ'ଣ ଘୋଡ଼ାଚଢ଼ା କାମଥିଲା। ଘରେ ନ କହି ନ ବୋଲି ଏ ଅନ୍ଧାର ରାତିରେ ଦୌଲତ ପୁର ଗଲ?

ବରେନ୍ଦ୍ର ସ୍ତ୍ରୀଙ୍କୁ ଶାନ୍ତକରିବା ଅଭିପ୍ରାୟରେ କହିଲେ– ''ମୁଁ ଏକା ଯାଇ ନଥିଲି ମ। ସତୁ ମୋ ସାଙ୍ଗରେ ଥିଲା। ଭୀମା ଚପ୍ରାସୀ ଯାଇଥିଲା, ସେଠି ମେନେଜର ଗୋଟାଏ ଜରୁରୀ ମକଦ୍ଦମା ସକାଶେ ଡକେଇ ପଠେଇଥିଲେ, ମୁଁ ସେତେବେଳେ କଚିରୀରେ ଥିଲି। ଦାଦା

ମୋତେ ଆଉ ସତୁକୁ ପରା ପଠେଇଲେ, କହିଲେ ତୁମେମାନେ ବଡ଼ ହେଲଣି ଜମିଦାରୀ କାମ ବୁଝ।

ସୁରୁଚି ଟିକେ ମୁହଁ ମୋଡ଼ିଦେଇ କହିଲେ– ''ଏତେ ତର ଯେ, ଘରେ ବି ଟିକେ ସେଇଯୋଗୁ କହିଦେଇ ଗଲ ନାହିଁ; ନା ତୁମେ। ନା ତୁମ ଦାଦା, ନା ତୁମ ଗୁଣବତୀ ବଉଦିଦି ଆଉ ଏଣେ ମୁଁ ହାହୁତାଶ କରି କୁଆଡ଼େ ଗଲହେଇ ତୁମ ବାଟ ଚାହିଁଚି। ପୂଝାରୀ ଭାତ ତର୍କାରି ଦେଇଗଲା ପରା। ସବୁ ସେମିତି ପଡ଼ିଚି, କିଏ ଛୁଇଁନାହିଁ।

ବରେନ୍ଦ୍ର– ତୁମେ ଏତେ ଅଧୀରା ହୁଅ କାହିଁକି? ଘରକୁ ଆସିବାର ବେଳ ନଥିଲା। ଘରକୁ ଆସିକରି ଯାଇଥିଲେ, ପୁଣି ଫେରିଆସି ପାରିଥାନ୍ତି କି? ଦାଦା ବି ତେଣେ ବହୁକୁଦ ବାହାରିଗଲେ। ଅମ୍ବିକା ତ ନଳିତାପୁର ଯାଇଚି। ଘରେ ଖବର ଦବ କିଏ?

ସୁରୁଚି– ତମେସବୁ ଏମିତି। ''ମଣିଷ ମରି ବି ଗଲେ ତୁମମାନଙ୍କର ଦୟା ନାହିଁ।'' କି କାମ ଥିଲାଟି ଶୁଣେ? ଦୌଲତପୁର ଯାଅ, ହାତୀପୁର ଯାଅ। କାମବେଳକୁ ତୁମେ, ଟଙ୍କାବେଳକୁ ଅନ୍ୟ। ମୁଁ ସବୁ ଜାଣେ ଯେ, ମୁଁ ସବୁ ଜାଣେ, ମୋ ସ୍ୱାମୀକି ଖଟେଇ ଖଟେଇ ହାଡ଼ରୁ ମାଉଁସ ଝଡ଼େଇବେ। ଆଉ ଟଙ୍କା କାହା ବାକ୍‌ସରେ ଉଠିବ? ଦାଦା ଯାଇଚନ୍ତି, ପୁଣି ଦିଦି ଜାଣନ୍ତି ନାହିଁ, ଏ ଗୋଟାଏ କଥା?

ବରେନ୍ଦ୍ର ହସି ହସି କହିଲେ– ''ହେଇ, ତୁମେ ଏଡ଼େ ମିଛ କହୁଚ? ମୁଁ କୋଉଦିନ କୋଉ କାମଟା ବୁଝେ ମ? ଦାଦା ତ ସବୁ କରନ୍ତି। ସତୁବି ମୋ'ଠୁ ବେଶି ଦେଖେ। ଆଉ ତୁମେ ନିଜେ ରାଗରେ ବୋଉଦିଦି ସାଙ୍ଗରେ କଥା କହୁନା, ସେ ବଡ଼। ସେ କ'ଣ ଆସି ତୁମକୁ ଖୋସାମତ୍ କରିବେ?

"ମଲା ମୋର"! ଘୃଣାରେ ନାସିକା କୁଞ୍ଚନ କରି ସୁରୁଚି କହିଲେ – ''କିଏ କାହାର ଖୋସାମତ ମାଗୁଚି; ସେ ବି ଯେମିତି; ମୁଁ ବି ସେମିତି, ନାହିଁ ସେ ହେଲେ ରାଣୀ, ଜମିଦାରଙ୍କ ସ୍ତ୍ରୀ, ଆମେ ହେଲୁ ଘର ପୋଇଲି, ଚାକିରିଆଣୀ। ସବୁ କଥା ତାଙ୍କରି ହାତରେ ସାଦି ଚାକିରିଠୁ ଆରମ୍ଭକରି ସବୁ ତା'ରି ତୋଷାମଦି। ମା' ଠାକୁରାଣୀ', ଆଉ ମୁଁ କ'ଣ ଏ ଘରର କୁକୁର, ମା କାହିଁକି ତାଙ୍କୁ ପ୍ରଶଂସାକରି ମୋତେ ସେଦିନ ଝାଡ଼ନାଦେଲେ। ମୋ ଇଚ୍ଛା ମୁଁ ନ ରାନ୍ଧିବି। ମୋ ଇଚ୍ଛା ମୁଁ ବସିଥିବି। ସେଥିରେ ତୁମ ଘରକୁ ଆଇଚି କ'ଣ ଖାଲି ଚାକିରିଆଣୀଗିରି କରିବାକୁ?

ବରେନ୍ଦ୍ର କ୍ରୋଧିତା ସୁନ୍ଦରୀକୁ କୋଳକୁ ଟାଣିଆଣିଲେ। ସୁରୁଚି ଅଭିମାନରେ କମଳ ଆଖିରୁ ଲୁହଢ଼ାଳିଲେ। ବରେନ୍ଦ୍ର ତାଙ୍କ କାନିଟାଣି ତାହା ପୋଛୁ ପୋଛୁ ସାନ୍ତ୍ୱନାରେ କହିଁଲେ– ''ହେଇ, ତୁମେ ଏତେ ଅଭିମାନୀ। କଥା ପଦେ ପଦରେ କାନ୍ଦିପକଉଚ। ଯାଅ ଯାଅ, ତୁନି ହୁଅ, ତୁନିହୁଅ।

ସୁରୁଚି ଅଧିକା ବିକଳ ହୋଇ କଇଁ କଇଁ ହୋଇ କହିଲେ – ''ଖାଲି ତୁନିହୁଅ, ତୁନିହୁଅ କହୁଚ। ମୋତେ ସୁଖୀ କରିବାକୁ ଦିନେହେଲେ ଚେଷ୍ଟକଲ ନାହିଁ। ମୋ କଥା ଦିନେ ଶୁଣିଲ ନାଇଁ।

ବରେନ୍ଦ୍ର– ଦେଖ ତୁମ ସୁଖର ଅଭାବ କ'ଣ ?

ସୁରୁଚି – ଖାଲି କ'ଣ ଲୁଗା ଗହଣାର ସୁଖ, ସ୍ୱାମୀରତ ସୁଖନାହିଁ।

ବରେନ୍ଦ୍ର – ଆଉ ସ୍ୱାମୀ କେମିତି ପ୍ରେମକରିବ କୁହତ ?

ସୁରୁଚି – ଜମା ଜାଣନାଇଁ ? ଆଖି ଉପରେ କ'ଣ ମୁଁ ଦେଖୁନାଇଁ। ଏକାମନ, ଏକାପେଟ, ଆଉ ଆମ ବାବୁଙ୍କର ମୋ କଥାକୁ ଗୋଡ଼ ତଳିପାରେ ବି ଖାତିର ନାଇଁ। ଯାକୁଇ କହନ୍ତି ପ୍ରେମ ! ପ୍ରେମ।

ବରେନ୍ଦ୍ର – ଆଉ ତୁମେ ସର୍ବଦା କୁ-ପରାମର୍ଶ ଦଉଚ। କହୁଚ– ମା, ଭାଇଠୁ ଭିନ୍ନ ହେବାକୁ। ଏଇଟା କ'ଣ ଦାଣ୍ଡକୁ ଶୋଭା। ସେଇକଥା ମୁଁ ତୁମର ରଖିନାଇଁ ବୋଲି ତମର ଏତେ ରାଗ, ଆଉ ବଉଦିଦି ସର୍ବଦା ପରିବାର କଲ୍ୟାଣଚାହାନ୍ତି।

''ଯୋଉ କଲ୍ୟାଣ ତ ?'' ଏହାକହି ଦୁମ୍‌କିନା ଗର୍ବିତପାଦତଳେ କଚାଡ଼ି, ସ୍ୱାମୀର ଆହାର ଆୟୋଜନପାଇଁ ଉଠିଗଲେ। ବରେନ୍ଦ୍ର କୌତୁହଳବଶତଃ ସୁରୁଚିର ଅଧାଲେଖା ଚିଠି ଉଠାଇ ପଢ଼ିବାକୁ ଲାଗିଲେ, ''ମୋର କଣ, ସେ କାଳିଆ ସାଭେରି ଲେଡ଼ି ଆଧୁନିକ ଯୁଗଚିତ ଶିଷ୍ଟାଚାର ଧରଣ ଧାରଣ ତାଙ୍କ ପରିବାର ମଧ୍ୟରେ କେହି ଜାଣନ୍ତି ନାଇଁ।

କ'ଣ କହିବି ପ୍ରିୟସହି, ଦୁଃଖ ବା କ'ଣ ଜଣାଇବି। ମୁଁ ଗାଇପାରେ, ବଜେଇପାରେ, ପଢ଼ାଲେଖାରେ ପଟୁ ଢ଼େର ବେଶି। ଫେସନ୍‌ରେ ତ କଥାଇ ନାଇଁ; କିନ୍ତୁ ଶାଶୂ ମୋତେ ମୋଟେ ଦେଖିପାରନ୍ତି ନାଇଁ, ଖାଲି ତା'ରି ପ୍ରଶଂସାଗାନ କରୁଥାନ୍ତି। କଥା ଏତିକି, ସେ ଦିନରାତି ରନ୍ଧାଘରେ ପଶି ରାନ୍ଧେ। ଆଉ ମୁଁ ଦାସୀର କାର୍ଯ୍ୟକରିବାକୁ ଇଚ୍ଛାକରେ ନାଇଁ। ରନ୍ଧାଘରର ନିଆଁଧୂଆଁରେ ମୋର ସୁବର୍ଣ୍ଣ ଅଙ୍ଗରେ କାଳିବୋଳିବାକୁ ଚାହେଁ ନାହିଁ। ଭଉଣି, ଏଠି ମୁଁ ବଡ଼ ଦୁଃଖରେ ଅଛି। ଏଠି ନାଟକ, ନଭେଲ ପଢ଼ିବାକୁ ମନା। କୁଆଡ଼େ ଘରର ଝିଅବୋହୂ ସେଥିରେ ଖରାପହୁଅନ୍ତି। ଏଠି ନା ଅଛି ପାଚକ, ନା ଅଛି ଥିଏଟର। ଦୁଇଘଡ଼ି ଆମୋଦ କରିବାପାଇଁ ଏଠି ଅଛି ଖାଲି ରନ୍ଧାଘର। ରାନ୍ଧିବାଢ଼ି ଖାଅ। ଶାଶୂର ଗୋଡ଼ଘସ। ଆଉ କୋଣରେ ପଶିଥାଅ। କେହି ଆସିଲେ ହାତେ ଓଢ଼ଣାଦେଇ ମୁହଁବୁଲେଇ ବସ, ଏଠି ନା ସୋସାଏଟି ଅଛି, ନା ସଭା ମିଟିଂ ଅଛି, ଯାଦୁଘର, ଚିଡ଼ିଆଖାନା। ନ୍ୟୁ ମାରକେଟ ତ ସ୍ୱପ୍ନର କଥା, ପୁଣି ଘରେ ମଧ୍ୟ ହାରମୋନିଏମ୍ ସିତାର ଟିପିବାର ଯୋ ନାଇଁ। ଘରେ ଦେଢ଼ଶୂର, ଭାଇବୋଉର ଗୀତ କାଳେ ତାଙ୍କ କାନରେ ପଡ଼ିଯିବ। ଏପରି ମନ୍ତ୍ରଣା, ଆଉ କଟକଣା ମଧ୍ୟରେ ମୁଁ କେତେଦିନ ବଞ୍ଚିବି କୁହ ? ଦୁଲାଲ୍‌ର ବାପ ମୋର ପରାମର୍ଶ ଶୁଣି ଏଥର ଯଦି ଭିନ୍ନ ନହୁଅନ୍ତି, ତେବେ ମୁଁ ସିଧା ବାପଘର ଚାଲିଲି ଜାଣିବ।''

ବରେନ୍ଦ୍ର ଚିଠିଟା ଥୋଇଦେଇ ଟିକେ ମୁରୁକେଇ ହସିଲେ। ସୁରୁଚି ଖାଇବାର ସଜାଡ଼ି ଥୋଇଲା ପରେ କହିଲେ– ''ତୁମେ ଏମିତି ଚିଠି ଲେଖୁଚ କମଳକୁ। ସୁରୁଚି ସଦର୍ପେ କହିଲେ''–

''ଯାହା ସତ ତାହା ଲେଖିବି ନାହିଁ।'' ବରେନ୍ଦ୍ର ପ୍ରତ୍ୟୁତ୍ତର ନଦେଇ ଆହାରରେ ବସିଲେ।

ସ୍ୱାମୀ ସ୍ତ୍ରୀ ଆହାରରେ ବସିଚନ୍ତି। ପୁଅକୁ ଅନାଇ ମା କହିଲେ– ଦୁଲାଲ, ଆଜି ତୁମ ସଙ୍ଗେ ଖାଇବାକୁ ପାଇଲା ନାହିଁ।'' ବାବା ବାବା କରି ଶୋଇଲା। ବରେନ୍ଦ୍ର 'ଆହା' କହି ଭାତଗୁଣ୍ଡାଟା ମୁହଁକୁ ନେଲେ।

ସୁରୁଚି କହିଲେ– 'ହେ, ଜାଣ ମା ଆଉ ଦିଦି, ମୁଁ ତୁମ ସାଙ୍ଗେ ଖାଏ ବୋଲି କହନ୍ତି ଭାରି ଲଜ୍ଜାହୀନ, ତାଙ୍କର କେତେ ଗୋଟାଏ ଛୋଟ ପ୍ରକୃତି ମ? ଏ ଓଡ଼ିଶାର ଲୋକେ ସବୁ ଅସଭ୍ୟ, ବର୍ବର କାହିଁକି ମ? ଆମ ବଙ୍ଗଦେଶରୁ ତ ଏମିତି ସବୁ ମରହଟିଆ ରୀତିନୀତି ଉଠିଗଲାଣି। ଆମଘରେ ପ୍ରକାଶ୍ୟ ଭାବରେ କେମିତି ସମସ୍ତେ ଗାଡ଼ିଚଢ଼ି ଏଣେତେଣେ ବୁଲିଯାଉ। ଥିଏଟର, ବାଇସ୍କୋପ୍ ଦେଖିଯାଉ। କେହି ତ ମନାକରନ୍ତି ନାହିଁ। ଏ ଦେଶଟା କେଡ଼େ ଅସଭ୍ୟ, ଅଭଦ୍ର, ସବୁକୁ ଆଖି।

ବରେନ୍ଦ୍ର ହସି ହସି କହିଲେ– 'ସେଇଟା ପରା କଲିକତା ସହର। ଏଇଟା ପରା ଓଡ଼ିଶା ଦେଶ। ଏଠି ପାଞ୍ଚଲୋକ ଛି ଛା କରିବେ। ଏଠି ଏପରି ଚଳିଲେ ବାପଦାଦିର ନାଁ ନିନ୍ଦାହବ।

ସୁରୁଚି– ହା ସବୁଦିନ ଖାଲି ଅସଭ୍ୟ ବର୍ବର ଥିବୁ। ଏ ସ୍ୱାଧୀନତାର ଯୁଗ। ତୁମେ ଜ୍ଞାନୀହୋଇ ଏ ନୀତି କହୁଚ। ଯେଉଁମାନେ ଅଶିକ୍ଷିତା, ସେମାନେ ଯୋଉ ନିକ୍ତିରେ[୧] ତୌଲ[୨] ହେବେ, ବି.ଏ. ଏଫ.ଏ.ପାଶ୍‌କଲା ସ୍ତ୍ରୀ ବି ସେଇ ନିକ୍ତିରେ। ସେମାନେ ନା ଜାଣନ୍ତି ଲୁଗାପିନ୍ଧି, ନା ଜାଣନ୍ତି ମୁଣ୍ଡବାନ୍ଧି। ଶିଷ୍ଟାଚାରର ଧାର ଧାରନ୍ତି ନାହିଁ। ହେଇ ତୁମେ ହସିବ ନାହିଁ, ସେଦିନ କଥା ଜାଣିଚ? ସେ ବଳଭଦ୍ର ଘର ପରିବାର କଥା। ହାୟ, ହାୟ! ଓଡ଼ିଆଣୀ ଏତେ ଅସଭ୍ୟ ବୋଲି ମୁଁ ଜାଣି ନଥିଲି, ଦେହଯାକ ଚିତାକୁଟା। ଏକ ଟୋକେଇ ଗହଣା ମୁଣ୍ଡରେ, ଖଣ୍ଡିଆ ଝାଡୁ ମୁଠାପରି ଗୋଟିଏ ଖୋସା। ଏମାନେ ମଣିଷ ନା ବଣମଣିଷ, ମୋର ପ୍ରଥମେ ଭ୍ରମହେଲା। କଲିକତା ପରି ଏଠି, ଏ ଗୋଟାଏ ପୁଣି ଦେଶ।

ବରେନ୍ଦ୍ର–ତୁମେ ସବୁବେଳେ ଏଠିକାର ଲୋକଙ୍କୁ ତୁଚ୍ଛ, ତାଚ୍ଛଲ୍ୟକରି ଘୃଣାରେ କଥା କୁହ। ସେଥିରେ ସେମାନେ ତୁମକୁ କିମିତି ଭଲପାଇବେ। ବୋଉ, ଦିଦି ମୁହଁରୁ ଏମିତି କଥାସବୁ ଶୁଣିଚ।

---

(୧) ତରାଜୁ, (୨) ମାପ, ଓଜନ

ସୁରୁଚି – ମଲା ମୋର, ବୋଉ ଦିଦିର ଭକ୍ତ। ଯେମିତି ପୁଣି ଦାଦା, ସେମିତି ପୁଣି ଦିଦି। ଆଧୁନିକ ଯୁଗର ଲୋକ ନୁହନ୍ତି। ହେଲେ ମୋତେ ସବୁଠୁ ବେଶି ରାଗଲାଗେ ସେଇ ଅମ୍ବିକା, ପୁଣି ଅମ୍ବିକା ବୋଉକୁ। ଛୋଟମୁହଁରେ ବଡ଼କଥା। ମୋତେ ପଦେ ପଦେରେ ଚିଆରିଲା। ସେଇଯୋଗୁ ତ ଭଗବାନ୍ ସ୍ୱାମୀ ସୁଖରୁ ବଞ୍ଚିତକଲେ। ଆଉ କ'ଣ ନେଇକରି ଏତେ ଗର୍ବ, ଏତେ ଅହଙ୍କାର, ଭଲହେଇଚି। ଯେମିତି ଗୁଣ ସେମିତି ଫଳ। ପୁଣି ତାଙ୍କୁ କୁହାହେଉଚି 'ଲକ୍ଷ୍ମୀ' ଯାଲୋ ଲକ୍ଷ୍ମୀ, ସ୍ୱାମୀଙ୍କୁ ତ ଭଲ କରିପାରିଲା ନାଇଁ, ଆଉ କି ଲକ୍ଷ୍ମୀ,

ବରେନ୍ଦ୍ର– ଅମ୍ବିକା ପରି ସ୍ୱାମୀ ପାଇଥାନ୍ତ ଯେ ଜାଣିଥାନ୍ତ।

ସୁରୁଚି – ଆଉ ଉଚ୍ଚାହାଣ୍ଡି ଭାରିଜା ହେଲେ କିଏ ବା ସନ୍ତୁଷ୍ଟ ହେବ। ରୂପରେ ତ ମା' କାଳୀ ଜଗଦମ୍ବା।

ବରେନ୍ଦ୍ର – ନିଜେ ସୁନ୍ଦରୀ ବୋଲି ପରକୁ ଏତେ ଖୁଣୁଚ ?

ସୁରୁଚି – ଆଉ କ'ଣ ତା'ରି ପରି କାଳି ହୋଇଥାନ୍ତି ? ତା'ଠୁ ବାମୀ ସୁନ୍ଦର। ଏଡ଼େ ଅସୁନ୍ଦରୀ ଡାହାଣୀ ହାଡ଼ିଆଣୀ ବୋଲି ସ୍ୱାମୀ ତ୍ୟାଗକଲା। ସେ ପୁଣି ପରକୁ ଚିଆରେ[୧]।

ବରେନ୍ଦ୍ର ଟିକେ ଦୁଃଖିତହୋଇ କହିଲେ– ''ରୁଚି, ସୌନ୍ଦର୍ଯ୍ୟ କେତେଦିନ ? ତୁମକୁ ଯଦି ହଠାତ୍ ବସନ୍ତ ହୁଏ, ତୁମ ରୂପ କ'ଣ ହବ ?''

ସୁରୁଚି ଅଭିମାନରେ ଛିଙ୍କିପଡ଼ି କହିଲେ– ''କ'ଣ ଖୋଜୁଚ କି ?

ବରେନ୍ଦ୍ର ସ୍ତ୍ରୀ ମୁଖକୁ ଅନାଇ ନିର୍ନିମେଷ ନୟନରେ ସେ ଲାବଣ୍ୟ କମଳର ସୁଧାପାନ କରୁ କରୁ କହିଲେ – ''ତୁମର ଏ ମୁହଁ ସକାଶେ ମୁଁ କୋଉଠି ରହିପାରିଲି ନାଇଁ। ତୁମର ମୁହଁ ମୋତେ ପାଗଳକରିଚି। ଯେତେବେଳେ ତୁମ ଘରକୁ ବୁଲିଯାଉଥିଲି, ତୁମ ଦାଦା ସଙ୍ଗେ ତୁମେ କବାଟ ପଛାଡ଼େ ଛିଡ଼ାହୋଇଥିଲ। ତୁମର ମୁହଁଦେଖି ମୁଁ ପାଗଲ୍ ହୋଇଗଲି। ଆଜି ମଧ ସେ ମାୟା ମୋର କଟି ନାହିଁ। ଏକତ୍ର ବାସରେ ପରା ପ୍ରେମ ମିଳନ ହୁଏ। ସ୍ୱାମୀର ବାକ୍ୟରେ ମୁଗ୍ଧା ପ୍ରଣୟିନୀ ସ୍ୱାମୀର କୋଳକୁ ଆଉଜି ପଡ଼ିଲେ।

ସେଦିନ ଶଯ୍ୟାରେ ସୁରୁଚି କହିଲେ– ''ଦେଖ, ଏଥର ତୁମେ ମନ ଦୃଢ଼କର। ଭିନ୍ନ ହୁଅ। କି ଦାଦା, କି ବୋଉଦିଦି। ନିଜର ପିଲାପିଲି, ହେଲେଣି ତାଙ୍କକଥା ଭାବ। ଦାଦା ଦି ହାତରେ ଯେତେଟଙ୍କା ଖର୍ଚ୍ଚକରୁଛନ୍ତି, ମୋର ଦିହସହୁ ନାଇଁ। ଆମେ ଯେଡ଼େ ଆମରି କାମ ସେତିକି ହବାରଅଛି। ଚେନାଏ ଜମିଦାରୀ ଅଛି ବୋଲି କ'ଣ ହାଡ଼ି, ପାଣ ପଛରେ ଖର୍ଚ୍ଚକରିବ ? ନିଜ ପିଲାଏ କ'ଣ ଭିକମାଗିବେ, ଦାଦା ପୁଣି କ'ଣ ଶିକ୍ଷାଶ୍ରମ କରିବେ। ବାରହଜାର ଟଙ୍କା, ଏ କ'ଣ ପାଖରେ ପଡ଼ିଚି। ତୁମେ ନାହିଁକର। ଆମର ସେଥିରେ କି ନାମ, ଯଶ। ଆମର ହରିପୁର, ଶଙ୍ଖୁଆପଦା, ନଳିତାପୁର ଆଦି ଏତେ ଜମିଦାରୀ ଅଛି।

(୧) ପରାମର୍ଶ ଦେବା।

ତୁମେ ଜମିଦାର ହେବ। ଆଉ ମୁଁ ତୁମ ସ୍ତ୍ରୀରୂପେ କେତେ ମାନପାଇବି। ଆମର ଅଲଗା କଚେରୀ ହେବ। କ'ଣ ଦାଦା ଅଧୀନରେ ସର୍ବଦା ଚାକରପରି ପଡ଼ିରହିଥିବା। ତୁମେ ବି.ଏ. ପାଶ୍ କରିଚ। ଜମିଦାରୀ ଚଳେଇବାକୁ କ'ଣ ତୁମର ବୁଦ୍ଧିନାହିଁ!

ବରେନ୍ଦ୍ର – ମୋତେ ତ କେହି ଚାକର କହନ୍ତି ନାହିଁ, ଜମିଦାରଙ୍କ ଭାଇ କହନ୍ତି।

ସୁରୁଚି – କିନ୍ତୁ ଜମିଦାର ତ କହନ୍ତି ନାହିଁ। ଜମିଦାର ଆଉ ଜମିଦାର ଭାଇ ମଧ୍ୟରେ କେତେ ପ୍ରଭେଦ। କାହିଁ ସ୍ୱର୍ଗ, କାହିଁ ମର୍ତ୍ତ୍ୟ। ତୁମେ ନିଜେ ଜମିଦାର ହବ। ଏ ଆଶାରେ କ'ଣ ମୋ ବାପା ମା ଝିଅ ଦେଇ ନଥିଲେ। ଭାଡ ହାତ ତଳେ ପଡ଼ିଥିବ ବୋଲି କ'ଣ ମୋତେ ଭସେଇ ଦେଇ–

ବରେନ୍ଦ୍ର– କିନ୍ତୁ ବଡ଼ଭାଇ ବାପ ସମାନ। ଅକୃତଜ୍ଞହେବି କେମିତି। ଲୋକେ କହିବେ ଭାର୍ଯ୍ୟା କଥାରେ ପଡ଼ି ଭିନ୍ନହେଲା, ଏ କଥାତ ଦାଣ୍ଡକୁ ନିନ୍ଦା।

ସୁରୁଚି – ହଉ। ଯା ଇଚ୍ଛା କର। ମୁଁ ଆଉ କେବେ କିଛି କରିବି ନାହିଁ। ଯା କହି ରାଗରେ ମୁହଁବୁଲାଇ ଶୋଇଲେ। ପରିଶ୍ରମ କ୍ଳାନ୍ତିହେତୁ ବରେନ୍ଦ୍ର ତାଙ୍କର ମାନଭଞ୍ଜନରେ ଚେଷ୍ଟା ନକରି ଅଚିରାତ୍ ଗଭୀର ନିଦ୍ରାଭୀଭୂତ ହେଲେ।

ସୁରୁଚି କିନ୍ତୁ ଶୋଇ ନଥାନ୍ତି। ନିଃଶ୍ୱାସ ଶବ୍ଦରୁ ଜାଣିପାରିଲେ, ସ୍ୱାମୀ ଘୋର ନିଦ୍ରାମଗ୍ନ। ତାଙ୍କର ଭାରି ଅଭିମାନହେଲା। ପ୍ରଥମେ ଟିକେ କାନ୍ଦି ପକାଇଲେ। ପରେ ଭାବିଲେ "କ'ଣ କରିବି। ସେ ତ ମୋ କଥା ମୋଟେ ଶୁଣିଲେ ନାହିଁ। କେମିତି ବୁଝେଇବି। ନିଜେ ଯଦି ଜଣେ ନ ବୁଝେ, ତେବେ ତା'କୁ କେମିତି ବୁଝେଇବି। ପୁଣି ମନକହିଲା, ଦେଖ ତୋର ନିଜର ବାପ ମା ଭାଇ ଭଉଣୀ ଅଛନ୍ତି। ତୁ କ'ଣ ତାଙ୍କଠୁ ଭିନ୍ନହେବାକୁ ଚାହୁଁ। ତେବେ ସ୍ୱାମୀ କେମିତି ଆପଣା ଭାଇଠୁ ଭିନ୍ନହେବେ। ପୁଣି ସେ ପିଲାଦିନୁ ତାଙ୍କୁ ମଣିଷ କରିଛନ୍ତି। ଇମିତି ଅକୃତଜ୍ଞ ହବା କ'ଣ ମନୁଷ୍ୟର ଭଲ; କିନ୍ତୁ ହୃଦୟର ହିଂସାପ୍ରବୃତି କହିଲା, ଏଠି ଯେ ଟଙ୍କା ପଇସାର ସମ୍ବନ୍ଧ। ଭାଇ ଭାଉଜ ବୋଲି କ'ଣ ସେଇମାନେ ଏକା ଦୁଇହାତରେ ପଇସା ଉଡ଼ାଉଥିବେ, ବିଶେଷତଃ ବାପର ସମ୍ପତ୍ତି।"

ଏଇପରି ଦ୍ୱନ୍ଦ୍ୱଭାବ ମନରେ ଉଦୟହୋଇ ସୁରୁଚିଙ୍କୁ ଅସ୍ଥିରକଲା। ମୋଟେ ନିଦ୍ରା ହେଲାନାହିଁ। ଶେଷକୁ ସେ ବିଛଣାରୁ ଉଠିଯାଇ, ଦୀପଟି ତେଜିଦେଇ, ମୁଣ୍ଡକତିରେ ରଖି ଗୋବିନ୍ଦ ରାମ ନାମକ ଉପନ୍ୟାସ ପାଠକରିବାକୁ ଲାଗିଲେ। ପଢୁ ପଢୁ ରାତି ଚାରିଟା ବାଜିଲା। ତାଙ୍କ ଆଖି ତନ୍ଦ୍ରାଚ୍ଛନ୍ନ ହୋଇଗଲା। ସେ ଅଜାଣତରେ ଶୋଇପଡ଼ିଲେ। କେତେବେଳେ ହାତରୁ ବହିଟି ଖସି ଦୁମ୍‌କିନା ବରେନ୍ଦ୍ର ମୁହଁରେ ପଡ଼ିଗଲା। ଆଘାତରେ ତାଙ୍କ ନିଦ ଭାଙ୍ଗିଲାରୁ ଦେଖିଲେ ଦୀପ ତେଜରେ ଜଳୁଚି, ସମ୍ଭବତଃ ସୁରୁଚି ଉପନ୍ୟାସ ପଢୁଥିଲେ। ଏପରି ରାତିରେ ଜାଗି ପଡ଼ିବା ଦ୍ୱାରା ଶରୀର କ୍ଷତିହେବା ସମ୍ଭବ ଭାବି, ତାଙ୍କୁ କହିବେ, ଏକଥା ମନରେ ରଖି ଦୀପ ଲିଭେଇ ପୁଣି ଶୋଇପଡଲେ।

ସୁରୁଚି ଉଠିଲାବେଳକୁ ଦିନ ପ୍ରାୟ ଦଶଟା ବାଜିବା ଉପରେ। ଏତେବେଳ କରି ଉଠିଚନ୍ତି ଭାବି, ପ୍ରଥମେ ତାଙ୍କର ଲଜ୍ଜାବୋଧହେଲା; କିନ୍ତୁ ବେଶିକ୍ଷଣ ସେପରି ବସି ରହିପାରିଲେ ନାହିଁ। ସଦମ୍ଭ ଭାବରେ, ମନରେ ଦୃଢ଼କରି ଗଲେ ସ୍ନାନଶାଳାକୁ। ପ୍ରାତଃକୃତ୍ୟ ସାରି ଫେରୁଚନ୍ତି, ଅଧବାଟରେ ତାଙ୍କୁ ରାଧିକା ଦାସୀ ଭେଟି କହିଲା– ''ସାନ ସାଆନ୍ତାଣୀ, ଏତେବେଳ କରିଉଠିଲ। ବଡ଼ମା ଠାକୁରାଣୀ ଯେ ବିରକ୍ତ ହଉଚନ୍ତି। ସ୍ତ୍ରୀ ଲୋକରେ ଏ କି ଅଲକ୍ଷଣା କଥା। ଦିନ ଦଶଟାରେ ବିଛଣାରୁ ଉଠିବ। ଆଉ ଘରେ ଲକ୍ଷ୍ମୀ ରହିବେଟି? ଦାସୀର ଏପରି ଉଦ୍ଧତ କଥା ଶୁଣି ସୁରୁଚି ରାଗରେ ନିଆଁବାଣ ହୋଇ କହିଲେ– ଚୁପ୍‌କର। ମୋତେ କ'ଣ କରି ପାଇଲୁ କି। ମୁଁ କ'ଣ ତୋରି ପରି ଚାକିରିଆଣୀ? କୁଆଡ଼େ ଥିଲେ ମୋର ଶାଶୂ, ନା କାହାର ଶିକ୍ଷାପାଇ ଏତକ କୁହାହେଉଛି। ଛୋଟ ମୁହଁରେ ବଡ଼କଥା। ଦାସୀ ନୀରବ ହେଲା।

କିନ୍ତୁ ଅନ୍ୟାୟରେ ଆଉ ବୟସୀ ବୃଦ୍ଧାଦାସୀକୁ ତିରସ୍କାର କରିବାଶୁଣି କୁସୁମିକା ରନ୍ଧାଘରୁ ବାହାରି କହିଲେ– ''ସାନବଉ, ସାନବଉ, କାହିଁକି ସେ ବୁଢ଼ୀ ଲୋକକୁ ବକୁଚ, ଦିନ ଦଶଟାରେ ଉଠିବା କ'ଣ ଭଲ? ମାଉସୀ ତ ନିଜେ ବିରକ୍ତ ହେଉଥିଲେ। ଜାଣ ତ ଡେରିରେ ଉଠିଲେ ସେ କେତେ ବକନ୍ତି, କେତେ ବିରକ୍ତ ହୁଅନ୍ତି –

ସୁରୁଚି ତ ରାଗ ହୋଇଥିଲେ। ଏଥର କୁସୁମିକା କଥାଶୁଣି ଆହୁରି କ୍ରୋଧ ହୋଇ କହିଲେ– ''ତୁମ୍ଭ ଉପଦେଶ ରଖିଦିଅ। ରାତି ବାରଟାକୁ ଲୋକେ ଘରକୁ ଆସିବେ। କାହିଁବୋଲି ଦୌଲତ୍‌ପୁର ଯାଇଥିଲେ, ତାଙ୍କ ଚର୍ଚ୍ଚା କରୁ କରୁ ରାତି ଦି'ଟା ହେଲା। ମଣିଷ ଦିହତ, କେତେ ସକାଳୁ ଉଠିବି। ନ ବୁଝି ଗାଳି।

କୁସୁମିକା ଅପ୍ରତିଭ ହୋଇ କହିଲେ– କ୍ଷମାକର ସାନବୋଉ। ସାନଦାଦା ଯେ ଦୌଲତପୁର ଯାଇଥିଲେ, ମୁଁ କି ଜାଣେ।

ସୁରୁଚି ଝଙ୍କାର ଦେଇ କହିଲେ– ''କିନ୍ତୁ ନ ବୁଝି ହଠାତ୍ ଉପରେ ପଡ଼ି କଳିଆ କରିବା ତୁମରି ସ୍ୱଭାବ।

କୁସୁମିକା– ଏ କ'ଣ କଳିଆ। ଘର କରି କ'ଣ ମନୁଷ୍ୟ କଥା କହେ ନାହିଁ?

ସୁରୁଚି – କଥା କହିବ କ'ଣ ଖାଲି କଳିଆ କଥା, ଯା' କହି ଦୁଲ୍ ଦୁଲ୍ ଗୋଡ଼ କଚାଡ଼ି ଆପଣା କୋଠରୀକୁ ଗଲେ। କୁସୁମିକା ଯୁଦ୍ଧରେ ପରାଜିତ ହେଲାଭଳି, ଲଜ୍ଜିତାହୋଇ ରନ୍ଧାଘର ଭିତରକୁ ଚାଲିଗଲେ। ସୁରୁଚି ଘରେଆସି ଦେଖିଲେ– ମେଜ ଉପରେ ଜଳଖିଆ ପତର ସଜଡ଼ାହୋଇ ଥୁଆହୋଇଚି। ପାନ ଭାଙ୍ଗି ବାମୀ ବଟାରେ ପୂରାଉଚି। ଜଳଖିଆ ସାରି ବସିଲେ ବେଶଭୂଷା କରିବାକୁ, ବାମୀ ତାଙ୍କର ପାଞ୍ଚଟିକିଆ ବେଣୀ ପାରୁ ପାରୁ କହିଲା, ସାନ ସାଆନ୍ତାଣୀ, ଶୁଣିଲଣି। କେତେକଥା ହେଲାଣି। ବଡ଼ବାବୁ ଆଉ ବୋଉସାଆନ୍ତାଣୀ ତୁମମାନଙ୍କୁ ଭିନ୍ନ କରିଦବାକୁ ବସିଚନ୍ତି।

ସୁରୁଚି ଆନନ୍ଦରେ କହିଲେ– କରନ୍ତୁ; ଆମେ ତ ତାହା ଚାହୁଁ। ତାଙ୍କ ଅଧୀନତା କିଏ ଚାହେଁ?

ବାମୀ– ହେଲେ ସମ୍ପତ୍ତି କ'ଣ ଦେବେ କି ଏମିତି? ଚାରିଭାଗେ ନେବେ ସେମାନେ। ତୁମକୁ ଦେବେ ଭାଗେ। ସାନବାବୁ ତ କିଛି ରୋଜଗାର କରି ନାହାନ୍ତି। ଓଲଟି ତାଙ୍କ ପଢ଼ାପଢ଼ିରେ ଆଠ ଦଶହଜାର ଟଙ୍କା କୁଆଡ଼େ ଖର୍ଚ୍ଚହୋଇଚି।

ସୁରୁଚି କଥାଟା ଆହୁରି ପରିପାଟୀରୂପେ ଶୁଣିବାକୁ କାନପାତିଲେ। ଚତୁରା ବାମୀ ମଧ ମାଜିଘଷି, ଚକ୍‌କଣକରି କଥାଟା ସଜେଇ କହିଲେ– ଶେଷକୁ ସବୁ ବୁଝିବ। ମା ହେବେ ବଡ଼ ପୁଅ ପଟିଆ। ତୁମ ଦିହିଁଙ୍କର ସର୍ବନାଶ ହେବ। ନଳିତାପୁର ଖଣ୍ଡକ ଛଡ଼ା ଆଉ ଚେନାଏ କିଛି ପାଇବ ନାଇଁ।

ବାମୀ କଥା ଶୁଣୁ ଶୁଣୁ ରାଗରେ ସୁରୁଚିର ସର୍ବାଙ୍ଗ ଜଳିଗଲା। ସ୍ୱାମୀ ନିର୍ବୁଦ୍ଧିତାକୁ ମନେ ମନେ ଗାଳିଦେଇ, ବଡ଼ ଅଇନା କତିରେ ଓଦାକନାରେ ମୁଣ୍ଡରେ ପାତା ଟାଣୁ ଟାଣୁ ବାହାରୁ ଡାକବାଲାର ଡାକ ଶୁଣିଲେ। ବାମୀ ଦୌଡ଼ିଯାଇ ଚିଠି ଆଣିଲା। ସୁରୁଚି ହସ୍ତାକ୍ଷର ଦେଖି ଜାଣିଲେ, ମାତୃକରାଙ୍କିତ ଲିପି। ତରତରରେ ମୁଣ୍ଡବନ୍ଧା ସାରି, ଚିଠି ଫିଟେଇ ପଢ଼ିବସିଲେ। ଚିଠିର ଏକାଂଶ ନିମ୍ନରୂପ –

''ମା ସୁରୁଚି!

ତୋର ଚିଠିପାଇ ଯେ ମନରେ କେତେଦୂର ଦୁଃଖହେଲା କ'ଣ ଲେଖିବି। ହେଲେ ବଡ଼ ଆଶାକରି ତୋତେ ଜମିଦାର ଘରେ ବିଭାଦେଇଥିଲି। ଶେଷରେ ଏଇ ଦୁଃଖଭୋଗିବୁ ଖାଲି। ତୋ'ର ଦେଢ଼ଶୁର ଯା' ଏତେ ଭଲଲୋକ ଦେଖା ଯାଉଥିଲେ; କିନ୍ତୁ ତାଙ୍କ ପେଟରେ ଛୁରୀ ଥିଲାବୋଲି କେ ଜାଣେ। ତୋ ବାପ ସାଧାସିଧା ଲୋକ। ତାଙ୍କର ଦୃଢ଼ ଧାରଣା, ହରିବାବୁ ଅତି ମହତ୍ ଲୋକ। ମୁଁ ତାଙ୍କୁ ଆଉ କ'ଣ ବୁଝେଇବି। ମା, ତୋତେ ମୁଁ କେତେଦିନ ହେଲା ଦେଖିନାଇଁ। ତୁ ଇଚ୍ଛାକଲେ ତୋ'ର ଶାଶୂ କତିକି ଚିଠି ଲେଖି ତତେ ଡକେଇପଠାନ୍ତି।

ମା ମୋର ସୀତାପରି ଚିରଦୁଃଖିନୀ ହେଉ, ଜୁଆଇଁଙ୍କ ନିର୍ବୁଦ୍ଧିତାରେ ଶେଷକୁ ପରର ଗୋଲାମୀ କରୁ। ରନ୍ଧାଘରର ବାସନମଜ୍ଜା ଅଇଁଠାଧୁଆ କି ତୋତେ ସାଜେ? ମୁଁ ମେମ୍ ପିଲା ପରି ତତେ ପଢ଼େଇଚି। ଏତେ ଶାରୀରିକ ପରିଶ୍ରମ କରିବୁ ନାଇଁ। ପିଲାଦିନରୁ ତ କରିନାହୁଁ, ବର୍ତ୍ତମାନ ଢେଙ୍କିକୁଟିଲେ, ଚକିପେଶିଲେ, ଦେହ ଖରାପ ହେବନାହିଁ? ବଞ୍ଚିବୁ କି ମରିବୁ।

ମୋର ସାନକଥା ଶୁଣୁନା, ଆପଣା ଗଣ୍ଡାକ ଭଲ ଭଲ ବୁଝିନିଅ। ସ୍ୱାମୀକୁ ବର୍ତ୍ତମାନ କହିବାକୁ ଯଦି ଭୟକରୁ, ଏଠିକି ଆ। ମୁଁ ସେ କଥା ବୁଝିବି। ଏଥର ଭିନ୍ନ ନ ହେଲେ ଜୁଆଇଁଙ୍କ ସାଥିରେ ଭଲେ ଭଲେ ତୋତେ ଛାଡ଼ିବି ନାହିଁ।

ମୁଁ ସିନା ଭାବିଥିଲି, ମା ମୋର ରାଜରାଣୀ ହେବ। ଶେଷକୁ ପରର ଅଇଁଠା ବାସନ ମାଜିବା ତୋ କପାଳରେ ଥିଲା। ହାୟ, ହାୟ, ଏମିତି ଘର ଜାଣିଥିଲେ ଓଡ଼ିଶାରେ ବନ୍ଧୁ

କରି ନଥାନ୍ତି। ଓଡ଼ିଶାର ଲୋକେ ଭଲ ନୁହନ୍ତି। ତୁ ତାଙ୍କ ବାରଣ ଶୁଣିବୁ ନାହିଁ। କଅଁଳ ଲୁହାକୁ ମୂଷା କାମୁଡ଼େ।'' ଯେତେ ଚିପି ଚିପି ରହିବୁ, ସେମାନେ ସେତିକି ତୋତେ ଦୁଃଖ ଦେବେ। ମୁହଁ ଟାଣ ରଖିଥିବୁ। ଆପଣା ସ୍ୱାର୍ଥ ଆଗ। ତୋର କାଲି ସକାଳେ ଆଉ ପିଲାପିଲି ହେବେ, ତାଙ୍କ ଭବିଷ୍ୟତ ଭାବ। ଶିକ୍ଷାଶ୍ରମ ଆଦିରେ ଟଙ୍କା ଉଡ଼ାଇ, ଭିକାରୀ ଦଶା ଡାକିଆଣ ନାହିଁ। ଏ ମୋର ତୋତେ ପରାମର୍ଶ।

ମାତାଙ୍କର ଉପରୋକ୍ତ ପତ୍ର ପାଠକରି ସୁରୁଚିର ଅନ୍ଧଆଖି ଖୋଲିଗଲା। ତତ୍‌କ୍ଷଣାତ୍ ମାତାଙ୍କର ପ୍ରତ୍ୟୁତ୍ତର ଲେଖିବସିଲେ।

ସେଦିନ ଭୋଜନ ସମୟରେ ବରେନ୍ଦ୍ର କହିଲେ – ରାତିରେ ବହି ପକେଇ କ'ଣ ମଣିଷର ମୁହଁ ଭାଙ୍ଗିବ ?

ସୁରୁଚି ହସି ହସି କହିଲେ, କ'ଣ ତୁମ ଉପରେ ବହିଟା ପଡ଼ିଗଲା। ମୁଁ ଶୋଇ ପଡ଼ିଥିଲି। ହଠାତ୍ କିମିତି ହାତରୁ ଖସିପଡ଼ିଥିବ।

ବରେନ୍ଦ୍ର– ହଉ, ହଉ ମୁହଁଭାଙ୍ଗୁ ପଛେ, ନିଜ ଦେହଟି ଭାଙ୍ଗ ନାହିଁ। ରାତିରେ ବହି ପଢ଼ିଲେ କଳାକମଳ ନୟନରେ ଜ୍ୟୋତି ରହିବଟି ?

ସୁରୁଚି ଟିକେ ଅଭିମାନ ମିଶ୍ରିତ ସ୍ୱରରେ କହିଲେ– ଦେହଭଙ୍ଗକୁ ଏତେ ଦୃଷ୍ଟି, ଆଉ ମନ ଯେ ଭାଙ୍ଗୁଚ। ମୋ କଥା କ'ଣ ଶୁଣୁଚ ?

ମୁଁ ଯେ କାନ୍ଦି କାନ୍ଦି ମରୁଚି, ସେଥିରେ କଳାକମଳ ନୟନର ଜ୍ୟୋତି ହ୍ରାସ ହେଉନାହିଁ ?

ବରେନ୍ଦ୍ର– ତୁମର ସବୁବେଳେ ସେଇ ଗୋଟିକ କଥା ଶୁଣି ଶୁଣି ବିରକ୍ତ ଧଇଲାଣି।

ସୁରୁଚି– ହଉ, ହଉ ଅନ୍ୟକଥା କହିବି। ମା ଚିଠି ଦେଇଚନ୍ତି। ଘରକୁ ଯିବି।

ବରେନ୍ଦ୍ର– ସତରେ। ତେବେ ମୋ ଦଶା।

ସୁରୁଚି – ତୁମ କଥା ତୁମେ ବୁଝିବ। ଏଥର ନିଶ୍ଚେ ଯିବି। ଆଉ ଏଠି ଏ ଜ୍ୱାଳା, ଯନ୍ତ୍ରଣା କଟକଣାରେ ରହିବି ନାହିଁ।

ବରେନ୍ଦ୍ର ଅନ୍ୟମନସ୍କ ଭାବେ କହିଲେ– ହଉ ଯାଅ।



# ସାମ୍ୟବାଦ-ଭାରତୀୟ ଓ ରୁଷୀୟ

ରୁଷିଆରେ ସାମ୍ୟବାଦର ଗତି ଓ ନୀତି କିପରି, ଏ କଥା ଶିକ୍ଷିତ ପାଠକ ଅବଶ୍ୟ ଅନେକେ ମୋ ଠାରୁ ମଧ୍ୟ ଭଲ ଜାଣିଥିବେ। ସାମ୍ୟବାଦର ଗବେଷଣାମୂଳକ ସମାଲୋଚନା ଏ ଲେଖାର ଉଦ୍ଦେଶ୍ୟ ନୁହେଁ। ମୁଁ ଜଣେ ଦିଲ୍ଲୀ-ପ୍ରବାସୀ ଓଡ଼ିଆ। ଦିଲ୍ଲୀବାସୀ ଅନେକେ ହୁଏତ ଓଡ଼ିଶା ବିଷୟରେ କେତେକ ଧାରଣା କରିଥିବେ। କିନ୍ତୁ ଜଣେ ଓଡ଼ିଆ ଯେ ଓଡ଼ିଶା ମାଟିରେ ବଢ଼ିଚି, ଓଡ଼ିଶାକୁ ଅନୁଭବ କରିଚି, ତାର ଦୁଃଖସୁଖରେ ଭାଗୀ ହୋଇଚି-ସେ ଖବରକାଗଜ ଲେଖାଠାରୁ ଓଡ଼ିଶା ବିଷୟରେ ଅନେକ ସତ୍ୟ ଓ ଅନୁଭବର କଥା ନିଶ୍ଚୟ କହିପାରିବ। ବହିପଢ଼ା ଓ ଆଖି ଦେଖାରେ କେତେ ଭିନ୍ନତା!

ଠିକ୍ ସେହିପରି ଜଣେ ରୁଷୀୟ ସେ ମାଟିରେ ଜନ୍ମ ହୋଇଚି, ବଢ଼ିଚି ଏବଂ ରାଜ୍ୟକ୍ରାନ୍ତି[୧] ବେଳେ ଦେଶରୁ ବାହାରି ଆସିଚି ସପରିବାର, ସେ ଅବଶ୍ୟ ରୁଷିଆ ବିଷୟରେ କେତେକ ମୌଳିକ କଥା ନିଶ୍ଚୟ କହିପାରିବ, ପୁଣି ସେ ଯଦି ସରଳ ସାଧାରଣ ଜଣେ ଶ୍ରମିକ ଶ୍ରେଣୀର ଲୋକ ହୁଏ! ଦୈବାତ୍ ଏହିପରି ଗୋଟିଏ ପରିବାର ସହିତ ମୋର ପରିଚୟ ହେଲା ଦିଲ୍ଲୀରେ। ସେମାନେ ସର୍କଶବାଲା। ଭାର୍ଯ୍ୟା ନାଚେ, ସ୍ୱାମୀ ଘୋଡ଼ାର ଖେଳ ଦେଖାଏ। ସେମାନେ ବର୍ମା, ଜାପାନ, ଶିଙ୍ଗାପୁର, ଚୀନ୍, ଆମେରିକା ସବୁଆଡ଼େ ସର୍କସ ଦଳ ସହିତ ବୁଲିଛନ୍ତି। ଏବେ ପ୍ରାୟ ବର୍ଷେ ହେଲା ଦିଲ୍ଲୀରେ ଅଛନ୍ତି। ସ୍ତ୍ରୀଟି ପୋଲିସ (ପୋଲାଣ୍ଡ) ରମଣୀ। ଧର୍ମରେ ମୁସଲମାନ। ପୁରୁଷ କକେସସ୍ ପାହାଡ଼ର ପ୍ରାନ୍ତବର୍ତ୍ତୀ ଜଣେ ଗ୍ରାମ୍ୟ କୃଷକର ପୁଅ, ଖ୍ରୀଷ୍ଟିୟାନ୍। ଆଜିକାଲି ତାଙ୍କର କୌଣସି ଧର୍ମ ନାହିଁ। ସ୍ତ୍ରୀଟି ପ୍ରାୟ ଆଫଗାନ୍-ନାରୀଭଳି। ଇଂଲଣ୍ଡବାସୀଙ୍କ ଭଳି ୟାଙ୍କର ରଂଗ ଏତେ ଶେଥା ନୁହେଁ, କିନ୍ତୁ ଲାଲଚା, ଗୋରା, ବଡ଼ ବଡ଼ ଆଖି ଏବଂ ପୋଷାକ ସାଧାରଣ ସାହେବଙ୍କ ଭଳି– ବର୍ତ୍ତମାନ, ଯାହାକି ତାହାଙ୍କର ଜାତୀୟ ପୋଷାକ ନୁହେଁ। ଏମାନେ ଭାରି ପରିଶ୍ରମୀ, ମିଳାପୀ ଏବଂ ଅତି ସରଳ ଓ ସାଧାରଣ।

ଦୁଇଜଣ ଅଳ୍ପ ଅଳ୍ପ ଇଂରାଜୀ ଜାଣିଥିବାରୁ ତାଙ୍କଠୁଁ ରୁଷଦେଶର ଭିତିରି ହାଲ କଅଣ, ଜାଣିବାର କିଛି କିଛି ସୁବିଧା ହେଲା। ସେମାନେ ମଧ୍ୟ ସରଳ ଚିତ୍ତରେ ମୋ ପ୍ରଶ୍ନର ଉତ୍ତର ଦେଲେ। ତାଙ୍କ ସହିତ କଥାବାର୍ତ୍ତାର ସାରାଂଶ ନିମ୍ନ ପ୍ରକାର –

ରୁଷ ଗୋଟିଏ ଭାରି ବଡ଼ ଦରିଦ୍ରଙ୍କର ଦେଶ। ସେ ଦାରିଦ୍ର୍ୟ ଟଙ୍କା ପଇସାରେ ଯେତେ ନୁହେଁ, ଖାଇବା ବସ୍ତୁର ଅଭାବରେ ସେତେ। ସମୟରେ ପାଖରେ କୋଡ଼ିଏ ଟଙ୍କା ଥିଲେ ମଧ୍ୟ ଗୋଟିଏ ଶୁଖିଲା ରୋଟି କି ଗୋଟିଏ ଅଣ୍ଡା ମିଳିବା ଏକ ପ୍ରକାର ଦୁଃସାଧ୍ୟ ହୋଇପଡ଼େ। ବରଫାବୃତ ଇଉରୋପୀୟ ଦେଶଗୁଡ଼ିକର ଜନସାଧାରଣଙ୍କର ପ୍ରଧାନ ଦୁରାବସ୍ଥାର କାରଣ– ପ୍ରଚୁର ଖାଦ୍ୟାଭାବ। ଟଙ୍କାତ କେହି ଗିଳି ପାରିବ ନାହିଁ। ଖାଦ୍ୟ ଓ ବସ୍ତ୍ର ଏବଂ ଥଣ୍ଡାରୁ ବଞ୍ଚିବା ପାଇଁ ଇନ୍ଧନର ଅଭାବ ହିଁ ଅଶାନ୍ତି, ଅସନ୍ତୋଷ ଓ ଶେଷକୁ ବିଦ୍ରୋହ ଏବଂ ଯୁଦ୍ଧ। ଇଉରୋପରେ

(୧) ରାଷ୍ଟ୍ର ବିପ୍ଳବ, (୨) ଇଷତ୍ ଲାଲ୍।

ଶତ ଶତ ବର୍ଷବ୍ୟାପୀ ଯୁଦ୍ଧ ପରେ, ଯୁଦ୍ଧର ପ୍ରଧାନ କାରଣ ସେହି ରୁଷୀୟ କୃଷକ ଦୃଷ୍ଟିରେ କେବଳ ଭୀଷଣ ଖାଦ୍ୟାଭାବ। ଭାରତବର୍ଷ ସେମାନଙ୍କ ଦୃଷ୍ଟିରେ ଯେପରି ଲକ୍ଷ୍ମୀଙ୍କ ଭଣ୍ଡାର। ଜଳବାୟୁ ସୁଖକର, ସହନୀୟ, ଆଉ ଖାଦ୍ୟଭାତ ଅତି ଶସ୍ତା। ମୁଁ କହିଲି, 'ଆମ୍ଭେମାନେ ଭାବୁ, ଆମ ଦେଶ ଭାରି ଗରିବ।' ସେ କହିଲା, 'ଟଙ୍କା ପଇସାରେ କିଏ କେତେ ଗରିବ, ତା ମୁଁ ଜାଣେ ନା; କିନ୍ତୁ ଆମ ଗାଁମାନଙ୍କରେ ଲୋକଙ୍କ କତିରେ ସମୟ ସମୟରେ ଯଥେଷ୍ଟ ଟଙ୍କା ଥିଲେ ସୁଦ୍ଧା, ସନ୍ଧ୍ୟା ସୁଦ୍ଧା ପେଟପୂରା ଖାଦ୍ୟ ଲାଗି ଅନେକ ପରିବାର ଦିନ ଦିନ ତରସି କରି ରହନ୍ତି। ମୁଁ ପଚାରିଲି, କାହିଁକି? ବଜାରରୁ ଆଣ ନାହିଁ? ''ବଜାରରେ ନ ଥାଏ ଯେ! କୋଉଠୁ କିଣାଯିବ। ଯେଉଁ ଅଳ୍ପ ଗହମ ବା ମାଂସ ହେଉଥିବା ଥାଏ, ସବୁଠାରୁ ବେଶି ଦାମ ଦେଇ କେତେକ ଲୋକ କିଣିନେଲା ପରେ ଶେଷ! ଟଙ୍କା ଥିଲେ ସୁଦ୍ଧା ଅନ୍ୟ ଲୋକେ ଓପାସରେ ରହିଯିବେ ସିନା! ତୁମ ଦେଶରେ ପଇସା ଥିଲେ ସବୁ କିଣି ପାରିବ; କାରଣ ସବୁ ଜିନିଷ ସବୁବେଳେ ମିଳେ। ଆମ ଗାଁମାନଙ୍କରେ ଖାଇବାର ଅକାଳ ପଡ଼ିଯାଏ। କୋଶ କୋଶ ଦୂରରୁ ଲୋକେ ଗହମ, ସୁଜି କିଣିଆଣିବାପାଇଁ ଯାଇ ନିରାଶ ହୋଇ ଫେରି ଆସନ୍ତି। ସେଥିପାଇଁ ସେ ଦେଶରେ ବଲସେଭିକ୍ ସର୍କାର ବଡ଼ ବଡ଼ ସାଧାରଣ ହୋଟେଲ୍ ଆଉ ଖାଇବା ଜାଗାସବୁ ତିଆରି କରି ମଜୁରିଆଙ୍କୁ କାମ ବଦଳି ପଇସା ନ ଦେଇ ଖାଇବାକୁ ଦିଅନ୍ତି।'' ମାତ୍ର ଫେର୍ ସେ କହିଲା, ''ଘରେ ଖାଇବା, ନିଜର ପିଲାଭାର୍ଯ୍ୟାଙ୍କୁ ଘେନି ପରିବାର ଭିତରେ ଖାଇବା ଓ ରହିବାର ମଣିଷର ଯୋଉ ଆନନ୍ଦ ଓ ସୁଖଶାନ୍ତି - ପବ୍ଲିକ୍ ହୋଟେଲରେ ରାସନ ଖାଇ ବାରାକ (କୁଲୀଙ୍କ ଘର) ରେ ରହି ପିଲାଙ୍କୁ "କୋଶେ" (ଶିଶୁଶାଳା)ରେ ଛାଡ଼ି ସେ ଆନନ୍ଦ, ସେ ସୁଖଶାନ୍ତି କି ମିଳିପାରେ? ଆମେ କଣ ମେଶିନ୍ (କଳ), ଆମେ ତ ମଣିଷ। ଆମ ଭିତରରେ ମଣିଷର ହୃଦୟ, ସୁଖଦୁଃଖ ବୁଝିବା କ୍ଷମତା, ସ୍ତ୍ରୀ ସନ୍ତାନ ପ୍ରତି ପ୍ରେମ ତ ଅଛି। କିନ୍ତୁ ରୁଷର ସାମ୍ୟବାଦୀ ନୀତିରେ ଏତକ ଆଉ ରହିଲା କେଉଁଠି?'' ମୁଁ କହିଲି, 'ତୁମ୍ଭେମାନେ ଯେ ଯଥେଷ୍ଟ ଖାଇବାକୁ ପାଇଲ, ଖାଦ୍ୟାଭାବରେ ମଣିଷ ମରିବା ଅପେକ୍ଷା କଣ ଏହିଟା ଭଲ ହେଲା ନାହିଁ? ଯଥେଷ୍ଟ କାମ କରିବ, ଆଉ ଯଥେଷ୍ଟ ଖାଇବାକୁ ପାଇବ।'' ଉତ୍ତରରେ ସେ କହିଲା - ''ଏ କଥା ସତ; କିନ୍ତୁ ଏହା ସହିତ ଯେ ମଣିଷପଣ ମୋଟେ ସଂପର୍କ ନାହିଁ! ଆମେ କଣ ଅନ୍ୟ ଲୋକ, ଆଉ ଅନ୍ୟ ଜାତିଠୁଁ ଭିନ୍ନ? ମଣିଷ ସର୍ବଦା ନିଜତ୍ୱ ଚାହେଁ। ମୁଁ ମୋ ପରିବାର ଭିତରେ ନିଜର ଛୋଟ କୁଡ଼ିଆ ଘରଟିରେ ପଛେ ମରିବାକୁ ଚାହେଁ, କିନ୍ତୁ ମୋର ସବୁ ଜିନିଷକୁ, ଏପରି କି ମୋ ପିଲା ଭାର୍ଯ୍ୟାଙ୍କୁ ସୁଦ୍ଧା ସର୍ବସାଧାରଣ ସଂପତ୍ତି (Public Property) କରିଦେବାକୁ ଚାହେଁ ନାହିଁ। ଏପରି ଜୀବନରେ ବଞ୍ଚିବାର ସୁଖ ନାହିଁ। ମଣିଷ ଖାଲି ପେଟକୁ ଗୋରୁ କୁକୁର ଭଳି ଖାଇ ବଞ୍ଚିବାକୁ ଚାହେଁ ନାହିଁ।'' ମୁଁ କହିଲି- 'ତୁମ ଦେଶରେ ଲୋକେତ ବଡ଼ ସୁଖରେ ଅଛନ୍ତି, କାରଣ ସେମାନେ ବଡ଼ ସ୍ୱାଧୀନ ଆଉ କେବଳ ନଜ ପରିବାର, ନିଜର କ୍ଷୁଦ୍ର ସୁଖଦୁଃଖ ଅପେକ୍ଷା, ଏପରି ଗାଁ

ଗୋଟାକ ମିଳିକରି ରହିବା, ସମସ୍ତଙ୍କ ସହିତ ଦୁଃଖସୁଖରେ ସମାନ ଭାଗନେବା, ଏହିଟା କଣ ଭଲ ନୁହେଁ? ଅନ୍ୟ ଦେଶର ଲୋକେ ଏଇ ସ୍ୱାଧୀନତା ସକାଶେ ତରସୁଛନ୍ତି।'' ତେବେ ସେ କହିଲା - ''କେତେକ ଅଂଶରେ ଖୁବ୍ ଭଲ, ପୁଣି କେତେକ ଅଂଶରେ ଖୁବ୍ ମନ୍ଦ। ତୁମେ, ଆମକୁ ଠିକ୍ ଯେପରି ସ୍ୱାଧୀନ ଭାବ, ଆମେ ଠିକ୍ ତା ନୋହୁ। ନିଜ ଦେଶରେ 'ଷ୍ଟାଲିନ୍ ମନ୍ଦ', 'ସୋଭିଏଟ୍ ସରକାର ଖରାପ' ଏ କଥା ଆମେ କଣ କହିପାରିବୁ? ଆମର ବି କଥା କହିବାର ସ୍ୱାଧୀନତା ନାହିଁ। ମୁଁ ରୁଷ ଦେଶରୁ ପଳାଇଆସିଚି। ମୁଁ ଗଲେ ଗୁଳିର ଶିକାର ହେବି। ମୋ ସ୍ତ୍ରୀକୁ ହୁଏତ ସେମାନେ ଜେଲଖାନାରେ ପକାଇଦେବେ ବା ମାରି ପକାଇବେ। ରକ୍ତପାତର ଶାନ୍ତି, ବନ୍ଧୁକ ମୁନରେ ଯୋଉ ଶାନ୍ତି ଅର୍ଜନ କରାଯାଇଛି, ସେ କଣ ପ୍ରକୃତ ଶାନ୍ତି ପଦବାଚ୍ୟ?'' ଫେର ମୁଁ ତାକୁ ଅନ୍ୟ ଦେଶ କଥାସବୁ ପଚାରିଲି - ଯେପରି କି ତା ସ୍ତ୍ରୀର ଦେଶ ପୋଲାଣ୍ଡ କଥା। ସେ କହିଲା - ''ପୋଲ୍‌ଜାତି ବଡ଼ ପ୍ରାଚୀନ। ଯାଙ୍କର ଚମତ୍କାର ପୁରାତନ ଇତିହାସ ଅଛି; ମାତ୍ର ଆଜିକାଲି ତାଙ୍କର ଦୁର୍ଦ୍ଦଶାର ସୀମା ନାହିଁ।

''ଗଲା ଇଉରୋପୀୟ ଯୁଦ୍ଧ ପରେ, ସବୁ ଇଉରୋପୀୟ ଦେଶର ମଜୁରିଆ ଆଉ ଚଷାମାନେ ଏକ ପ୍ରକାର ସର୍ବସ୍ୱାନ୍ତ; ଆଉ କେତେବେଳେ ଯେ କୋଉଠି କାହାର ଖୁଣ୍ ହେବ, ତାର ଠିକଣା ନାହିଁ। ଇଉରୋପ ବର୍ତ୍ତମାନ ଗୋଟିଏ ନରକାଗ୍ନି କୁଣ୍ଡ ଭଳି। ଯାଠାରୁ ବ୍ରିଟେନ୍‌ରେ ବହୁତ ସୁଖଶାନ୍ତି ରହିଚି; ଅନ୍ତତଃ ଲୋକେ ଶାନ୍ତିରେ ଖାଇ ଆରାମର ନିଦ ହେଲେ ଶୋଉଛନ୍ତି।''

ଏହିପରି ଅନେକ କଥାବାର୍ତ୍ତାରେ ସାରାଂଶରୁ ଦୋ'ଟି ପ୍ରଧାନ ବିଷୟ ମୋର ଆଖି ଆଗରେ ପଡ଼ିଲା। ପ୍ରଥମତଃ, ଇଉରୋପର ଜନସାଧାରଣଙ୍କର ଖାଦ୍ୟ– ଦାରିଦ୍ର୍ୟ, ଆଉ ତଜ୍ଜନିତ ଅଶାନ୍ତି। ତା ଫଳରେ ସ୍ୱଦେଶରେ ଓ ବିଦେଶରେ ଯୁଦ୍ଧ ଓ ରକ୍ତପାତ। ମଣିଷ କତିରେ ସବୁ ଥାଇ ଖାଇବାର ନ ଥିଲେ, ସେ ନିଶ୍ଚୟ ଭୋକିଲା ବାଘ ଭଳି ଶିକାର ଅନ୍ୱେଷଣରେ ସର୍ବଦା ରଡ଼ିଛାଡ଼ି ବୁଲିବ। ଇଉରୋପର ମାନବିକ ସ୍ୱାଧୀନତା କେବଳ ରକ୍ତରଞ୍ଜିତ। ଶାନ୍ତି ଅର୍ଥ, ଶ୍ମଶାନର ଶାନ୍ତି। ସେଠି ପ୍ରକୃତ ମନୁଷ୍ୟତ୍ୱ, ଦୟାଧର୍ମ, ପ୍ରେମ, ପରିବାରର ସ୍ଥାନ ନାହିଁ। ସେଠି କେବଳ 'ମୁଁ ନିଜେ ବଞ୍ଚିବାର ଚେଷ୍ଟା', 'ପ୍ରବୃତ୍ତିର ତାଣ୍ଡବ ନୃତ୍ୟ', 'ଲାଳସାର ନରକାଗ୍ନି' ସବୁବେଳେ ଜଳୁଚି। ସ୍ତ୍ରୀ ପୁରୁଷ ସେହିଥିରେ ଦଗ୍ଧ ହେଉଛନ୍ତି। ଇଉରୋପରେ ବରଫାବୃତ ରୁକ୍ଷ ବିରାଟ ଉଷର କ୍ଷେତ୍ରରେ ସେଥିପାଇଁ ରୁଧିରରଂଜିତ ସାମ୍ୟବାଦ, ମହାଲେନିନବାଦର ଜନ୍ମ ଏବଂ ସାଫଲ୍ୟ। ଭାରତ ଭୂମିରେ ଲେନିନ୍‌ବାଦ ଏବଂ ଇଉରୋପରେ ଅହିଂସା ଶାନ୍ତିମୟ ସତ୍ୟାଗ୍ରହରୂପୀ ଗାନ୍ଧିବାଦ କଣ କଦାପି ତିଷ୍ଠିପାରେ? ଦୁଇଟି ପରସ୍ପର ବିରୁଦ୍ଧ (Diagonally opposite) ନୀତି ଏବଂ କ୍ରିୟା।

ଏକ ଦିଗରେ ରୁଷୀୟ ସାମ୍ୟବାଦ, ଅନ୍ୟ ଦିଗରେ ଭାରତୀୟ ଶାନ୍ତି ସତ୍ୟାଗ୍ରହବାଦ, ଏ ଦୁଇଟାରୁ ଭାରତପାଇଁ କୋଉଟା ଭଲ ଏବଂ ଉପଯୁକ୍ତ, ସେଥିପାଇଁ ମୁଁ ସର୍ବଦା ଅନେକ ଚିନ୍ତାକରେ। ଆଧୁନିକ ଯୁବକ ଯୁବତୀ, ବିଶେଷତଃ ଶିକ୍ଷିତଶ୍ରେଣୀଙ୍କର, ରୁଷୀୟ ସାମ୍ୟବାଦ

ଉପରେ ବିଶେଷ ଶ୍ରଦ୍ଧା; କିନ୍ତୁ କ୍ରିୟାତ୍ମକ ଭାବେ ଯଦି ଭାରତରେ ମଧ ବନ୍ଧୁକମୁନରେ ଜାତି, ସମାଜ, ଧର୍ମ ଓ ରାଜନୀତି ସବୁର ସଂସ୍କାର କରାଯାଏ। ତୋପ, ଗୋଳା, ଗୁଳିଦ୍ୱାରା ଯଦି ଭାରତର ବର୍ତ୍ତମାନ ସମୁଦାୟ ସାମାଜିକ ଏବଂ ରାଜନୈତିକ ପରିସ୍ଥିତି ଭାଙ୍ଗି ଚୂର୍ଣ୍ଣ କରାଯାଏ। ଭାରତ କଣ ସୁଖୀ, ଉନ୍ନତ ଏବଂ ସ୍ୱାଧୀନ ହୋଇଯିବ ? ଇଉରୋପର ବର୍ତ୍ତମାନ ବାତାବରଣରୁ ଆମେ କଣ ଶିକ୍ଷାକରୁଛୁ ? ରୁଷ, ଜର୍ମାନୀ, ଇଟାଲୀ, ସ୍ପେନ୍, ଫ୍ରାନ୍ସ - କୋଉଠି ଶାନ୍ତିର ନାମ ମାତ୍ର ନାହିଁ। ସ୍ୱାଧୀନତା ଅର୍ଥ ନରହତ୍ୟା, ଯୁଦ୍ଧ, ବିଦ୍ରୋହ, ଆଉ ଉତ୍ପାତ। ସେଥିରେ ପୁରୁଷତ୍ୱର ବାହାର ଝଲକ କି ଚମକ ଥାଇପାରେ, କିନ୍ତୁ ମାନବତ୍ୱର ପ୍ରକୃତ ବିକାଶ, ମହାବିଶ୍ୱମୈତ୍ରୀ, ସୁଖଶାନ୍ତି, ସ୍ୱାଧୀନତା, ମନୁଷ୍ୟର ଆତ୍ମିକ କଲ୍ୟାଣ ସକାଶେ କିଛି ନାହିଁ। ଆମେ ଯେ ଇଉରୋପର ପାଶବିକ ସ୍ୱାଧୀନତାଠାରୁ ଢେର ଉଚ୍ଚ ଜିନିଷ ଚାହୁଁ, ଗାନ୍ଧିଙ୍କର ଅହିଂସା ଅସହଯୋଗ, ଯାହା କି ଶତସହସ୍ର ବର୍ଷ ବ୍ୟାପୀ ହିନ୍ଦୁ ଧର୍ମର ଅସ୍ଥିମଜ୍ଜାଗତ ! ମହାନ୍ ସତ୍ୟତାର ଆଲୋକରେ ମୋର ଆତ୍ମା ଉଦ୍ଭାସିତ ହୋଇଉଠିଲା। ଆମେ ଭାରତୀୟ ଠିକ୍ ଇଉରୋପିଆନ ଭଳି ଚିନ୍ତା କରୁନା। ରକ୍ତ ବୁହାଇ ଅନ୍ୟକୁ ଲାଠିମାଡ଼ କରି, ଦସ୍ୟୁତାର ଶାନ୍ତି ଠିକ୍ ଆମର ଧ୍ୟେୟ ନୁହେଁ। ଆମେ ନିଜର କ୍ଷୁଦ୍ର ପରିବାର, ସମାଜର ସୁଦୃଢ଼ ଗଣ୍ଡି ଭିତରେ ଥାଇ ସୁଦ୍ଧା। ବିଶ୍ୱମୈତ୍ରୀ 'ବସୁଧୈବ କୁଟୁମ୍ବକମ୍'ର ପାଠ ପଢ଼ିଚୁ। ସେ ପାଠ ପଢ଼ିବାପାଇଁ ଇଉରୋପ ବର୍ତ୍ତମାନ ସୁଦ୍ଧା ଶିଶୁ, ବୃଦ୍ଧ ଭାରତ କତିରୁହିଁ ତାକୁ ଏ ଜ୍ଞାନଲାଭ, ଏ ବିଦ୍ୟାଧ୍ୟୟନ କରିବାକୁ ହେବ। ସେହିଥିରେ ଯାଇ ଜଗତର କଲ୍ୟାଣ !

କଂଗ୍ରେସର ଶକ୍ତି ଯେ କେତେ ଦୂର, ଏହା ଗତ ଦଶବର୍ଷର ସତ୍ୟାଗ୍ରହ ଆନ୍ଦୋଳନ ଜଗତକୁ ଜଣାଇଦେଇଚି। କଂଗ୍ରେସର ଶକ୍ତି କେବଳ ନୈତିକ ଶକ୍ତି; ଗୋଳା ବାରୁଦର ଶକ୍ତି ନୁହେଁ। ଯଦି ଭାରତୀୟ ଧର୍ମରେ ଆତ୍ମାର ଏଡ଼େ ମହାନ୍ ସ୍ଥାନ ନ ଥାନ୍ତା, ତା' ହେଲେ ଆଜି ନିରସ୍ତ୍ର, ନିର୍ଦ୍ୱନ୍ଦ୍ୱ, ଜଟିବସ୍ତ୍ରମାନ ସମ୍ବଳ କଙ୍କାଳମୂର୍ତ୍ତି କରି; ବେଡ଼ି, କୋରଡ଼ା, ଜେଲ, କଳାପାଣି ପର୍ଯ୍ୟନ୍ତ ବରଣ କରୁ ନଥାନ୍ତେ। ଗାନ୍ଧିଙ୍କର ମହାମୋହନ ମନ୍ତ୍ର ମୂଳରେ ହିନ୍ଦୁଧର୍ମର ସେହି ମହାନ୍ ଉଦାର ନୀତି-ଆତ୍ମତ୍ୟାଗ ! ତ୍ୟାଗରେ ହିଁ ଭାରତୀୟ ତାର ଗତି, ସ୍ଥିତି ଏବଂ ଶେଷକୁ ମୁକ୍ତି ଦେଖେ। ଏତି ମହାନ୍ ସନାତନ ସାମ୍ୟବାଦ, ଆତ୍ମିକ ସାମ୍ୟବାଦ, ଏଥିପାଇଁ ସାରା ଦେଶଟାକୁ ଭାଙ୍ଗିରୁଜି ଶ୍ମଶାନ କରିଦେବାପାଇଁ ରଣ, ଜିଘାଂସା ପ୍ରବୃତ୍ତି ନାହିଁ। କୁରୁ ପାଣ୍ଡବ ଯୁଦ୍ଧରେ ବିଶ୍ୱମୈତ୍ରୀ ଓ ଶାନ୍ତିର ପୃଷ୍ଠପୋଷକ ଶ୍ରୀକୃଷ୍ଣ ସେଥିପାଇଁ ଆତ୍ମତ୍ୟାଗ ଓ ଅତ୍ୟାଚାରିତ ପାଣ୍ଡବପକ୍ଷରେ ହିଁ ଛିଡ଼ା ହୋଇଥିଲେ। ନିଜେ ନିରସ୍ତ୍ର ରହି, ଅଥଚ ଅର୍ଜୁନଙ୍କୁ ଅସ୍ତ୍ରତ୍ୟାଗର ଉପଦେଶ ନ ଦେଇ, ଆତ୍ମରକ୍ଷାର୍ଥେ ଅସ୍ତ୍ର ଗ୍ରହଣ କରିବାକୁ ମଣାଇଥିଲେ। ଅତଏବ, ଭାରତୀୟ ଧର୍ମ ଭୀରୁର ଧର୍ମ ନୁହେଁ। ମାରିବାର ଶକ୍ତିଠାରୁ ମରିବାର ଶକ୍ତି ଅତି ମହାନ୍ ଏବଂ ନୈତିକ ଭାବେ ଅତି ଉଚ୍ଚ।

ଆମ୍ଭେମାନେ ସର୍ବଦା ପାଶ୍ଚାତ୍ୟ ଜିନିଷର ଉପୁରି ଚମକ ଦେଖି ଭୁଲିଯାଉ ଏବଂ ଭାବୁ, ସେମାନେ ଭାରି ସଭ୍ୟ, ଉନ୍ନତ ଓ ସ୍ୱାଧୀନ କିନ୍ତୁ ଆମର ବାହାରର ମଇଳା କୋତରା, ଛିଣ୍ଡା

ହେଂସ, ମସିଣା ସମ୍ବଳିତ କୁଡ଼ିଆ ଭିତରେ ନୈତିକତାର ଯେଉଁ ବିରାଟ ଆଦର୍ଶ, ତା ଆଜିସୁଦ୍ଧା ପଶ୍ଚିମ ଦେଶରେ ଜନ୍ମ ହୋଇ ନାହିଁ। ମହାନ୍ ଏସିଆରେ ହିଁ ଏ ତ୍ୟାଗ ଓ ମହାମାନବତ୍ୱର ଜନ୍ମ। ସେ ବେଦଠାରୁ ଆରମ୍ଭ କରି ବାଇବଲ୍ ଓ କୋରାନ୍ ପର୍ଯ୍ୟନ୍ତ ବ୍ୟାପ୍ତ। ମନୁଷ୍ୟଙ୍କୁ ମନୁଷ୍ୟତ୍ୱର ଯେଉଁ ଅମୂଲ୍ୟ ଶିକ୍ଷା, ତାର ଅନୁଶୀଳନ ଭାରତରେ; ଇଉରୋପରେ ନୁହେଁ। ଇଉରୋପର ଦୂଷିତ ହାଉଆ ଲାଗି ଆଜି ଆମ ଦେଶରେ ଏତେ ଦୁଃଖ, ଦୁର୍ଦ୍ଦଶା, ଦାରିଦ୍ର୍ୟ, ଅନ୍ନବସ୍ତ୍ରାଭାବ ଓ ଅଶାନ୍ତିର ଉତ୍ପତ୍ତି। ଏ ସବୁର ମୂଳରେ ପାଶ୍ଚାତ୍ୟ ଢଙ୍ଗରେ ଶାସନ ଓ ରାଜନୈତିକ ପରିସ୍ଥିତିରୁ ଉଦ୍ଭୂତ ସବୁପ୍ରକାର ବିଷମତା, ଗଣ୍ଡଗୋଳ, ଆଉ ଭୀଷଣ ଅର୍ଥଦାରିଦ୍ର୍ୟ। ଅତଏବ ଆମେ ସମଗ୍ରଭାବେ ସ୍ୱତନ୍ତ୍ର ହେଲେ ଯାଇ ଆମର ଅନ୍ତର୍ନିହିତ ବାକି ଛୋଟ ଛୋଟ ସମସ୍ୟାଗୁଡ଼ିକର ସମାଧାନ ବିନାରକ୍ତପାତରେ କରିପାରିବୁ। ଆମର ସବୁଠାରୁ ପ୍ରଧାନ ପରାଧୀନତା ରାଜନୈତିକ ପରାଧୀନତା, ବିଦେଶୀୟ ଶାସନ। ଭାରତର ପ୍ରଧାନ ଦୁଃଖ– ତାର ବହୁ ଜାତିବିଭାଗ, ନାରୀସମସ୍ୟା କି ଶ୍ରମିକ ସମସ୍ୟା ନୁହେଁ। ଭାରତୀୟ ଭାବେ, ଭାରତ ପାଇଁ ଯାହା ଭଲ, ତା ସେ ନିଜେ ସ୍ଥିରକରିବେ, କିନ୍ତୁ ତା ହେବ ସ୍ୱାଧୀନ ସ୍ୱତନ୍ତ୍ର ଭାରତରେ। ଓଡ଼ିଆ ଯୁବକଯୁବତୀରେ ଏଥିରୁ ଶିକ୍ଷା କରିବାର ଅନେକ ବିଷୟ ଅଛି। କାରଣ ଓଡ଼ିଶାର କୁଲି ମଜୁରିଆ, ଚଷା ଓ ଜମିଦାରଙ୍କର ଯେ ବିଷମ ସମସ୍ୟା, ତାହା ଇଂରେଜ ଶାସନ ପୂର୍ବରୁ ତ କେବେ ହେଲେ ନ ଥିଲା। ବ୍ରିଟିଶ୍ ଶାସନ ନୀତି ହିଁ ଭାରତର ଦାରିଦ୍ର୍ୟର ମୂଳକାରଣ। ନୋହିଲେ ଆମ ଦେଶରେ ଖାଇବାକୁ ଶସ୍ୟ, ପିନ୍ଧିବାକୁ ଲୁଗାର ଅଭାବ ମୋଟେ ନାହିଁ। ଆମ ଭିତରେ ଏ ଜିନିଷଗୁଡ଼ିକ ପାଇବାପାଇଁ ଆତ୍ମଦ୍ରୋହ କି ରକ୍ତପାତ ମୋଟେ ନାହିଁ। ଆମେ ଅତୀତରେ ଏତେ ଅଧିକ ସୁଖଶାନ୍ତିରେ ଥିଲୁ ଯେ, ରାତିଦିନ ଆତ୍ମିକ ଓ ଧାର୍ମିକ ଚିନ୍ତା, ଆତ୍ମରକ୍ଷା କଥା ଭୁଲି ଶତ୍ରୁର ମାୟାଜାଲରେ ପଡ଼ିଗଲୁ। ବ୍ରିଟିଶର ଭାରତଜୟ, କିଛି ସମାନ ସମାନ ଯୁଦ୍ଧ ଫଳରେ ହୋଇନାହିଁ। ଭାରତର ଆତ୍ମଦାନ ଫଳରେ ସେ ଆତ୍ମଦାନ ମୂଳରେ ଭୀରୁତା ନ ଥିଲା। ଅତୀତରେ ଭାରତ ଶକ, ହୁନ୍, ଗ୍ରୀକ୍, ମୁସଲମାନ ସମସ୍ତଙ୍କୁ ନିଜର ବିଶାଳ କୋଳରେ ସ୍ଥାନ ଦେଇଚି, ଇଂଗ୍ରେଜଙ୍କୁ ମଧ୍ୟ ଠିକ୍ ସେହିପରି ଦେଇଥିଲା। ମୁସଲମାନ ମଧ୍ୟ ବିଜେତା ଭାବେ ଭାରତକୁ ଆସି ଶାସନଭାର ଗ୍ରହଣକରିଛନ୍ତି; ମାତ୍ର ସେମାନେ ଯେ ଆଉ ଭାରତରେ ବିଦେଶୀ ହୋଇ ନ ରହି, ଏହି ମାଟିର ସନ୍ତାନ ହୋଇ ଏହାର ଦୁଃଖ ସୁଖ, ଉନ୍ନତି-ଅବନତିର ଭାଗୀ ହୋଇଗଲେ। ଯଦ୍ୟପି ହିନ୍ଦୁ ମୁସଲମାନର ଧାର୍ମିକ ଦ୍ୱନ୍ଦ୍ୱ ଆଉ ସ୍ଥଳବିଶେଷରେ ଭୀଷଣ ଯୁଦ୍ଧ ମଧ୍ୟ ହୋଇଯାଉଚି, ହିନ୍ଦୁ ହିନ୍ଦୁ ମଧ୍ୟରେ ମଧ୍ୟ ଧାର୍ମିକ ବୈମନସ୍ୟ[୧] ହୋଇଚି; କିନ୍ତୁ ତା ବୋଲି ଭାତଗଣ୍ଡାକ, ରୋଟି ଟୁକୁଡ଼ାକପାଇଁ କେହି କାହାରି ଗଳା କାଟୁ ନଥିଲେ। ବର୍ତ୍ତମାନ ଭାତଗଣ୍ଡାକ ଓ ଲୁଗା ଖଣ୍ଡକ ହେଉଚି ଆମର ସମସ୍ୟା। ଏଥିପାଇଁ ଲେନିନ୍‌ବାଦ, ମାର୍କସ୍, ଫାସିଷ୍ଟ, ନାତ୍‌ସି ଆଦି ଆନ୍ଦୋଳନରେ ଇଉରୋପ ଜର୍ଜରିତ। ଅଥଚ ଆଜି ସୁଦ୍ଧା ସେଠିକାର ସମସ୍ୟାର ପ୍ରକୃତ ସମାଧାନ ହୋଇନାହିଁ। ବିଶ୍ୱବ୍ୟାପୀ ପ୍ରଳୟ

(୧) ବିରୋଧଭାବ, ଭିନ୍ନମାନସିକତା

ଯୁଦ୍ଧାଶଙ୍କାରେ ଜଗତ ଶଙ୍କିତ। ମାତ୍ର ଦରିଦ୍ର ଭାରତ ଏ ସମସ୍ୟାର ସମାଧାନ ଲାଗି ସତ୍ୟାଗ୍ରହରୂପୀ ଅହିଂସା-ଅସ୍ତ୍ର ପ୍ରୟୋଗ କରିଚି। ପଶୁବଳ ଓ ଆତ୍ମବଳ, କାହାର ଜୟ ଶେଷକୁ ହେବ, ଭବିଷ୍ୟତ୍ ଇତିହାସ ମାତ୍ର ତାର ସାକ୍ଷୀ ହେବ। ଏବେ ଆମର ଏକମାତ୍ର କର୍ତ୍ତବ୍ୟ ସତ୍ୟ, ନ୍ୟାୟ ଓ ଅହିଂସାର ପକ୍ଷରେ ହିଁ ରହିବ। ଯତୋଧର୍ମ୍ମ ସ୍ତତୋଜୟଃ, ଭାରତର ଏହି ନୀତି ହିଁ ଆମର ଗନ୍ତବ୍ୟମାର୍ଗର ଆଦର୍ଶ। ଲେନିନବାଦ ଆମର ଆଦର୍ଶ ନୁହେଁ, ସମାଜକୁ ଚୂର୍ଣ୍ଣବିଚୂର୍ଣ୍ଣ କରି ଧ୍ୱଂସପଥର ଯାତ୍ରୀ ହେବା ଆମର ଧେୟ ନୁହେଁ। ସାଧାରଣ ହୋଟେଲରେ ଭାତ ଖାଇ, ସାଧାରଣ ଶିଶୁ-ଆଶ୍ରମରେ ଛାଡ଼ି, ସ୍ୱାପୁରୁଷ ମଜୁରିମାତ୍ର ସମ୍ବଳକରି ଜୀବନ କଟିବା, ଭାରତୀୟ ଚଷା କି ଶ୍ରମିକ, କାହାରି ଅଭିପ୍ରେତ ହୋଇପାରେ ନା। ପରିବାର ମମତା ଆମର ଅସ୍ଥିମଜ୍ଜାଗତ। ଏକାନ୍ନବର୍ତ୍ତି ପରିବାରର ଶାସନରେ ରହି, ବଡ଼ ଛୋଟରେ ଅନୁଗତ ହୋଇ, ଭାରତୀୟ ନରନାରୀ ସୁଖଶାନ୍ତି ଓ ମୋକ୍ଷ ଲାଭ କରି ଯାଇଛନ୍ତି। ଭାରତୀୟ ସମାଜ ବ୍ୟବସ୍ଥା, ପରିବାର ବ୍ୟବସ୍ଥାର ସୁନ୍ଦର ନୀତିଗୁଡ଼ିକ ଆଜି କାଲିକା ବିପ୍ଳବଯୁଗରେ ଅବଶ୍ୟ ଆଉ ପୂର୍ବ ଭଳି ସୁଗଠିତ ରହିବାର ଆଶାକରିବା ବିଡ଼ମ୍ବନା; ତଥାପି ଇଉରୋପୀୟ ସମାଜର ଅନୁକରଣ ଦ୍ୱାରା ଯେ ଆମ ସାମାଜିକ ସମସ୍ୟାଗୁଡ଼ିକର ପ୍ରକୃତ ସମାଧାନ ହୋଇଯିବ, ତା ନୁହେଁ। ଆମର ନିଜ ବାଟ ସ୍ୱତନ୍ତ୍ର। ଆମର ସାମ୍ୟବାଦର ମୂଳାଦର୍ଶ ଇଉରୋପୀୟ ହେଲେ, ଆମର ସର୍ବନାଶ ହେବା ଛଡ଼ା କଲ୍ୟାଣ ହେବ ନାହିଁ, ଏହା ମୋର ଦୃଢ଼ବିଶ୍ୱାସ।

ଅତଏବ, ଭାରତୀୟ ସାମ୍ୟବାଦ ଭିତରେ ବଲ୍‌ସେଭିକ୍ ରୁଷୀୟ ସାମ୍ୟବାଦକୁ ଆଣି ଭର୍ତ୍ତିକର, ଭାରତର ସର୍ବନାଶ ନ କରି ଆମର ବହୁ ପୁରାତନ ପୋଥିପାଞ୍ଜି ଭିତରୁ ଆମର ପ୍ରକୃତ ସାମ୍ୟବାଦର ନୀତିଗୁଡ଼ିକ ଖୋଜି ବାହାର କରିଦେବାକୁ ହେବ। ରାଜନୈତିକ ସଂଗ୍ରାମସ୍ଥାଳୀରେ ଗାନ୍ଧି ତାହା ପ୍ରୟୋଗ କରିଛନ୍ତି। ହରିଜନ ଆନ୍ଦୋଳନରେ ମଧ ସେ ତାହାହିଁ କରିଅଛନ୍ତି। ନାରୀ ଆନ୍ଦୋଳନ ଦୃଶ୍ୟତଃ ନ କରାଇ, କଂଗ୍ରେସ ଜରିଆରେ ହଜାର ହଜାର ନାରୀଙ୍କୁ ସ୍ୱଦେଶର ଗୌରବ ଲାଗି ଆତ୍ମବଳି ଦେବାକୁ ରଣଭୂମିରେ ସୁଭଦ୍ରା ଭଳି ଛିଡ଼ା କରିଛନ୍ତି। ଚଷା, ମଜୁରିଆ - ଧନିକ, ଶ୍ରମିକ ଆନ୍ଦୋଳନରେ ମଧ ଶେଷକୁ ତାହାଇ ହେବ।

ଆମ ଦେଶର ଚାଷୀ ଓ ଶ୍ରମିକ ଆନ୍ଦୋଳନର ନେତୃବୃନ୍ଦଙ୍କୁ ଏହି କଥା ଧ୍ୟାନରେ ରଖିବାକୁ ମୁଁ ଅନୁରୋଧ କରୁଚି। ସେହିପରି ସାମାଜିକ ଆନ୍ଦୋଳନର ମୁଖ୍ୟବ୍ୟକ୍ତିଙ୍କୁ ମଧ ଏହି କଥା ମନେରଖିବାକୁ ହେବ। ଭାରତର ସାମୂହିକ କଲ୍ୟାଣ ତାର ବାହାର ଦୈହିକ ଶକ୍ତିରୁ ନୁହେଁ, ଆତ୍ମିକ ଅନ୍ତର୍ନିହିତ ମହାନ୍ ଶକ୍ତି ବଳରୁ ହିଁ ହେବ। ବିଶ୍ୱପାଇଁ ସେ ଶକ୍ତି କଲ୍ୟାଣକାରୀ; ପ୍ରଳୟଙ୍କରୀ, ବିଧ୍ୱଂସିନୀ ନୁହେଁ। ସେଥିରେ Revolution ନୁହେଁ, ବିନାଶ ନୁହେଁ; ବିକାଶହିଁ Evolution ମୁଖ୍ୟ ଉଦ୍ଦେଶ୍ୟ। ମହାମଙ୍ଗଳାଦାୟିନୀ ଅନ୍ନପୂର୍ଣ୍ଣା, ଦୁର୍ଗତିନାଶିନୀ ଦୁର୍ଗାହିଁ ସେଥିପାଇଁ ଭାରତର ଶକ୍ତିର ଦେବୀ।



# କେଶବଚନ୍ଦ୍ର

ଆମର ଶ୍ରଦ୍ଧେୟ ବିଶ୍ୱନାଥ ବାବୁ¹ ଯେତେବେଳେ ମୋତେ ମହାତ୍ମା କେଶବଚନ୍ଦ୍ର ସେନ୍‌ଙ୍କ ବିଷୟରେ କିଛି କହିବାକୁ ଏହି ଚାରି ପାଞ୍ଚ ଦିନ ତଳେ ଅନୁରୋଧ କରିଥିଲେ, ସେତେବେଳେ ମୋର ମନେହେଲା, ମୁଁ କ'ଣ କହିବି ? ତାଙ୍କର ଚରିତ, ନା ଜୀବନ ?

କେଶବଚନ୍ଦ୍ରଙ୍କ ଜୀବନ ଚରିତ ଅନେକ ପାଠ କରିଅଛନ୍ତି। ତାଙ୍କ ବିଷୟରେ ମୋ ଠାରୁ ଅଧିକ ଜାଣିବା ବ୍ୟକ୍ତି ଏଠାରେ ଅନେକ ଅଛନ୍ତି। ସେଥିପାଇଁ ତାଙ୍କ ଜୀବନ-ଚରିତ ବର୍ଣ୍ଣନା ମୋର ଉଦ୍ଦେଶ୍ୟ ନୁହେଁ। ଭାଇ ଭଉଣି ! ଜଗତରେ ଶତ ଶତ ବ୍ୟକ୍ତି, ଶତ ଶତ ବୀର, ଗୁଣୀ, ଜ୍ଞାନୀ, ପଣ୍ଡିତ ଜନ୍ମଲାଭ କରୁଅଛନ୍ତି; କିନ୍ତୁ କେଶବଙ୍କ ତୁଲ୍ୟ ଅପୂର୍ବ ଧର୍ମଭାବ, ଅଦ୍ଭୁତ ଈଶ୍ୱରପ୍ରୀତି ଘେନି କେତେଜଣ ଏ ପୃଥିବୀକି ଆସିଥାନ୍ତି ? କେତେ ଜଣ ଏ ପାପତପକ୍ଲିଷ୍ଟ ଧରାବକ୍ଷରେ ଅମୃତଧାରା ଢାଳି ଦେଇ ଯାଇଅଛନ୍ତି ? ମନୁଷ୍ୟ ହିସାବରେ ଘରଦ୍ୱାର କରି, ଅର୍ଥୋପାର୍ଜନ କରି, ଏ କ୍ଷଣସ୍ଥାୟୀ ଜୀବନଟି ଅତିବାହିତ କରି ଯାଇଅଛନ୍ତି ଅନେକେ, ଅନେକେ ଚିରକାଳ ସେହିପରି ଜୀବନ ଯାପନ କରୁଥିବେ, ମାତ୍ର ଏ ମର ଜୀବନରେ ପରମାର୍ଥର ସନ୍ଧାନ କେତେଜଣ ପାଇଅଛନ୍ତି ? କେତେଜଣ ବ୍ରହ୍ମାନନ୍ଦ ସୁଧା ପାନ କରିଅଛନ୍ତି। କେତେଜଣ ତାହା ଜଗତକୁ ଦାନ କରିଅଛନ୍ତି ? ଅତି ବିରଳ ! ଅତି ବିରଳ !

କେଶବଚନ୍ଦ୍ର ଆମରି ପରି ତ ସାଧାରଣ ମନୁଷ୍ୟ, ଆମରି ପରି ନିତ୍ୟ ଦୁଃଖସୁଖବିଜଡ଼ିତ, ଦୋଷଗୁଣ ସମନ୍ୱିତ ଜଣେ ରକ୍ତମାଂସ ଶରୀରଧାରୀ, ମର୍ତ୍ତ୍ୟର ମାନବ-କୃତବୀର, ଧୂଳିରୁ ଯାହାର ଉତ୍ପତ୍ତି, ପୃଥିବୀର ମୃଣ୍ମୟ ଅଙ୍କରେ ଯାହାର ପରିଣତି, ଆମରି ପରି ଆଶା ନୈରାଶ୍ୟ, ଦୁଃଖ କ୍ଲେଶ, ପରୀକ୍ଷା, ପ୍ରଲୋଭନ, କାମନା ବାସନାରେ ସେ ଉତ୍ପୀଡ଼ିତ, ଆମରି ପରି ସ୍ତୁତିଲାଞ୍ଛନାଭୋଗୀ, ଷଡ଼ରିପୁ ପଞ୍ଚେନ୍ଦ୍ରିୟର ଅଧୀନ ଜଣେ ଧରଣୀର ସନ୍ତାନ। କ୍ଷୁଧାର ଜ୍ୱାଳା ଯେ ସହିଥିଲେ, ଆଖିରୁ ଅଶ୍ରୁ ଯେ ବୁହାଇଥିଲେ, ମାନବୀୟ ଦୁର୍ବଳତାରେ ଯେ ଭୁଲଭ୍ରାନ୍ତି କରିବସିଥିଲେ, ସେହି ତ ଜଣେ ମାନବ। କିନ୍ତୁ କି ବିଶାଳ ମହିମାମୟ ସେ ଜୀବନ ! କି ଅତ୍ୟୁଚ୍ଚ, ଅତ୍ୟୁଦାର, ଅତି ଚମତ୍କାର ସେ ହୃଦୟ। କି ସୁତୁଙ୍ଗ ସେ ସାଧନା ! ତାହାରି କତିରେ ସିନା ଆମର ମସ୍ତକ ଅବନତ, ଆମର ହୃଦୟ ଶ୍ରଦ୍ଧା ସମ୍ଭ୍ରମରେ ଅଭିଭୂତ, ଆମର ପ୍ରାଣ ଗୌରବଗର୍ବରେ ସ୍ଫୀତ। କାରଣ କେଶବ ଆମରି ଜଣେ ଭାରତୀୟ ଭାଇ, ତାଙ୍କର ଜୀବନ ଆମରି ଗୃହ – ସଂପତ୍ତି – ଆମରି ଆଦରର ଧନ।

ସେ ତ ବେଶିଦିନର କଥା ନୁହେଁ। ଯେତେବେଳେ ପାଶ୍ଚାତ୍ୟ ଶିକ୍ଷା, ପାଶ୍ଚାତ୍ୟ ସଭ୍ୟତା, ପାଶ୍ଚାତ୍ୟ ଧର୍ମ ଏ ଦେଶରେ ପ୍ରବେଶ କଲା, ସେତେବେଳେ ଭାରତର ଭାଗ୍ୟଗଗନ ଘନତିମିରାଚ୍ଛନ୍ନ – ଚାରିଆଡ଼େ ଯୁଦ୍ଧବିପ୍ଲବ, ଅଶାନ୍ତି, ଅରାଜକତା, ଧର୍ମନାମରେ ଶତ ଶତ ବୀଭତ୍ସ କୁସଂସ୍କାର, କଦାଚାର। ଭାରତ ତାହାର ପବିତ୍ର ଉପନିଷଦ୍ – ପ୍ରଦର୍ଶିତ ଧର୍ମମାର୍ଗ

---

(୧) 'ଉତ୍କଳ ସାହିତ୍ୟ' ସାହିତ୍ୟ ପତ୍ରିକାର ସଂପାଦକ, ବାଗ୍ମୀ ଓ ବ୍ରାହ୍ମଧର୍ମାବଲମ୍ବୀ।

ଭୁଲି ଯାଇଥିଲା। ନୈମିଷାରଣ୍ୟର ଶିକ୍ଷା ସାଧନା ଭାରତବକ୍ଷରୁ ଲୁପ୍ତ ହୋଇଥିଲା। ପରମବ୍ରହ୍ମଙ୍କ ପୁଣ୍ୟ ଉପାସନା ବଦଳରେ ଭାରତର ସନ୍ତାନ-ଋଷିର ବଂଶଧର, ପରିମିତ ପ୍ରତିମା ମୋହରେ ମୁଗ୍ଧ ହୋଇଥିଲେ। ହିନ୍ଦୁ ଭୁଲିଥିଲା ପ୍ରାଣର ପୂଜା ନୈବେଦ୍ୟ - ପଶୁପ୍ରାଣ ବଧକରି ଦେବତାଙ୍କୁ ସନ୍ତୁଷ୍ଟ କରୁଥିଲା। ଚିନ୍ମୟୀ ମା' ମୃଣ୍ମୟୀ ପ୍ରତିମା ହୋଇଥିଲେ। ପୌରୋହିତ୍ୟର ଦାରୁଣ ଅତ୍ୟାଚାର, ତାନ୍ତ୍ରିକର କୂଟଧର୍ମ ଓ କଳ୍ପନାଜାଲ, ମାୟାବାଦର ଶୂନ୍ୟତତ୍ତ୍ୱ ଭାରତବକ୍ଷରେ ତୃଷାର ହା-ହା-କାର ଜଗାଇଥିଲା। ଯେଉଁ ଭାରତ ବକ୍ଷରେ ଚୈତନ୍ୟଙ୍କ ପ୍ରେମବନ୍ୟା ବହିଥିଲା - ଆଚଣ୍ଡାଳ-ବ୍ରାହ୍ମଣଙ୍କୁ ଯେ ଅଙ୍କରେ ଧାରଣ କରିଥିଲେ, ଯେଉଁ ଭାରତରେ ମହାତ୍ମା ଗୌତମ ମୁନିଙ୍କ ସାମ୍ୟମୈତ୍ରୀ କରୁଣାର ମହୋଦାର ବାଣୀ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ .ପ୍ରତିଧ୍ୱନିତ ହୋଇଥିଲା, ସେ ଭାରତ ଭୁଲିଥିଲା ତାର ଗୌରବମୟ ଧର୍ମସାଧନା, ତାର ବିଶ୍ୱପ୍ରୀତି। ଜାତିର କ୍ଷୁଦ୍ର ସୀମାରେ, ସମାଜର ବେଷ୍ଟନୀର ଶୁଷ୍କ ଆଚାର ମଧ୍ୟରେ ନିବଦ୍ଧ ରହିଥିଲା ଧର୍ମ ସାଧନା। ସେହି ସମୟରେ ପ୍ରବଳ ପ୍ରଳୟାଗ୍ନି ଶିଖାରୂପେ ମାଡ଼ିଆସିଲା ପାଶ୍ଚାତ୍ୟ ସଭ୍ୟତା ଓ ଶିକ୍ଷା। ତାହାର ଆଖି-ଝଲସା ରୂପରେ ଶତ ଶତ ଭାରତ ସନ୍ତାନ ପତଙ୍ଗ ତୁଲ୍ୟ ସେଥିରେ ନିପତିତ ହେଲେ। ନିଜର ଯେ କିଛି ଅଛି, ନିଜ ପୂର୍ବପୁରୁଷର ସଞ୍ଚିତ ଯେ କି ଅମୂଲ୍ୟ ରତ୍ନରାଜି ଧର୍ମର କୋଠଭଣ୍ଡାରରେ ଗଚ୍ଛିତ, ତାହା ଆଉ ମନେ ପଡ଼ିଲା ନାହିଁ। ଶତ ଶତାବ୍ଦୀର ଘନ ଜଞ୍ଜାଳ ଆବର୍ଜନା ମଧ୍ୟରୁ ମଣି ଆହରଣ ଦୁଷ୍କର ହେଲା ପରା! ଭାରତ ନିଜସ୍ୱ ବିସର୍ଜନ ଦେବାକୁ ବସିଲା, ହିନ୍ଦୁ ମରିବାକୁ ବସିଲା। ନିଜର ସଭ୍ୟତା, ନିଜର ସାଧନା, ନିଜର ଶିକ୍ଷା ଭାରତ ସନ୍ତାନ ଚକ୍ଷୁରେ ହେୟ ବିବେଚିତ ହେଲା। କେବଳ ହିନ୍ଦୁ କିମ୍ବା? ପବିତ୍ର ଇସ୍‌ଲାମ ଧର୍ମ ମଧ୍ୟ ଆଘାତପ୍ରାପ୍ତ ହେଲା। ପ୍ରବଳ ବନ୍ୟାରେ ଭାରତ ବୁଡ଼ିଯିବ ପରା! ନା, ତାହା ବିଧାତାଙ୍କର ଅଭିପ୍ରେତ ନ ଥିଲା। ଘୋର ଅନ୍ଧକାର ମଧ୍ୟରେ ସହସା ଉଦୟ ହେଲେ ଆଶାର ପ୍ରଭାତୀତାରାରୂପୀ ରାମମୋହନ। ହିନ୍ଦୁର ଶାସ୍ତ୍ର, ମୁସଲମାନର କୋରାନରୁ ଉଦ୍ଧାରକଲେ ପବିତ୍ର, 'ଏକମେବା ଦ୍ୱିତୀୟମ।' ଭାରତ ପ୍ରାଣରେ ଆସନ୍ନ ପ୍ରଭାତର ଆଶା ପ୍ରଥମ ଜୀବନ ସ୍ପନ୍ଦନ ରୂପେ ଖେଳିଗଲା ପରା! କିନ୍ତୁ ସେତିକି ଯଥେଷ୍ଟ ନଥିଲା। ପୂର୍ବାକାଶରେ ଅପୂର୍ବ ଉଷାଲୋକ ଦେଖାଗଲା। ମହର୍ଷି ଦେବେନ୍ଦ୍ର ନାଥ, ଊନବିଂଶ ଶତାବ୍ଦୀରେ ପୁଣି ଜଣେ ଭାରତୀୟ ମହାମୁନି। ଭାରତର ସୁପ୍ତ କୁଟୀର ଦ୍ୱାର ଦେଶରେ ଅପୂର୍ବ ମନୋହର ବେଶରେ ଆସି ଛିଡ଼ା ହେଲେ। ଉପନିଷଦର ଜଳଗମ୍ଭୀର ନିନାଦରେ ଡାକିଲେ, ''ଉଠ ବ୍ରହ୍ମ ସନ୍ତାନ, ଜାଗ ଅମୃତର ପୁତ୍ରଗଣ, ମୁଁ ସେ ମହାନ୍ ପୁରୁଷଙ୍କ ସନ୍ଧାନ ପାଇଅଛି। ଆତ୍ମାପୁରରେ ପରମାତ୍ମାଙ୍କୁ ମୁଁ ଦେଖିଅଛି। କିପାଁ ପଥବଣା ପଥିକ ଅବାଟରେ ଯାଉଅଛି? ଆସ ଆସ, ବ୍ରହ୍ମସଦନରୁ ତୁମର ନିମନ୍ତ୍ରଣ ଆସିଅଛି। ଏଇ ତୁମର ଶାସ୍ତ୍ର, ତୁମରି ଅଳିଆ ଆବର୍ଜନାର ସ୍ତୂପ ମଧ୍ୟରେ ରହିଅଛି ମହାମୂଲ୍ୟ ଅପୂର୍ବଜ୍ୟୋତିଃ ମାଣିକ୍ୟରାଜି। ତୁମେ ସଂଗ୍ରହ କର, ତୁମେ ଭୋଗକର।'' ଉଷା ଆସିଲା, ସୂର୍ଯ୍ୟ ଦେଖାଦେଲେ। ନବରବିକାନ୍ତ କେଶବଙ୍କର ଉଦ୍ଭବହେଲା। ଭାରତ ପ୍ରାଣରେ ନବ

ସଞ୍ଜୀବନୀ ସୁଧା କିଏ ସିଞ୍ଚିଦେଲା ପରା! ନବସାଧନାର, ନବବିଧାନର ମହାମନ୍ତ୍ର ଅମୃତମୟ ବୀଣାରେ ବାଜିଉଠିଲା।

ସେହି କେଶବ! ସେହି ଆମର ନମସ୍ୟ କେଶବ। ସେହି ବ୍ରହ୍ମନନ୍ଦ ବ୍ରହ୍ମସନ୍ତାନ, ପରମ ଭକ୍ତ, ପରମ ଯୋଗୀ, କେଶବଙ୍କୁ ଆଜି ଶ୍ରଦ୍ଧାର ସ୍ରକ୍‌ଚନ୍ଦନରେ ଅଭିନନ୍ଦନ କରିବା ପାଇଁ ଏ ସ୍ଥାନରେ ସମ୍ମିଳିତ ହୋଇଅଛୁ। ଆମ୍ଭେମାନେ ତାଙ୍କରି ଭାରତୀୟ ଭାଇ ଭଉଣୀ। ଆହା! କିପରି ସେ ପ୍ରେମର ପୁଷ୍ପାଞ୍ଜଳି ଥୋଇବୁ?

ଯେ ଭାରତ ବକ୍ଷରେ ସର୍ବଧର୍ମର ସମନ୍ୱୟ ସାଧନ କରିଯାଇଅଛନ୍ତି, ହିନ୍ଦୁ ମୁସଲମାନ, ବୌଦ୍ଧ, ଜୈନ, ବ୍ରାହ୍ମ, ଖ୍ରୀଷ୍ଟିୟାନଙ୍କୁ ଯେ ଏକତା ସୂତ୍ରରେ ଆବଦ୍ଧ କରି ଯାଇଅଛନ୍ତି, ବିଭିନ୍ନ ଧର୍ମାବଲମ୍ବୀ ଯେ ଆମ୍ଭେମାନେ କିପରି ତାଙ୍କର ବନ୍ଦନା କରିବୁ? ଆଜି ଆମର ଭାଷା ମୂକ, ହୃଦୟ ଗଭୀର ଭାବପୂର୍ଣ୍ଣ। ଆଖିପତା ଅଶ୍ରୁରେ ଟଳମଳ।

ଏହି ଭାରତ ପରା ହିନ୍ଦୁ ମସୁଲମାନ ଜନନୀ, ଏହି ଭାରତରେ ପରା ବୌଦ୍ଧ ଖ୍ରୀଷ୍ଟିୟାନର ବସତି। ଏକା ରକ୍ତ ତ ସମସ୍ତେ; କିନ୍ତୁ କାହିଁ ସେ ପ୍ରେମ? କାହିଁ ସେ ଆତ୍ମୀୟତା? ପରସ୍ପର ପରସ୍ପରର ବିରୋଧୀ! ଭାଇ ଭାଇର ଶୋଣିତପିପାସୁ। ସହୋଦର ସହୋଦରର ବିନାଶକ! ଭ୍ରାତୃହନ୍ତା ଭାରତ! ଏକ ପିତାର ସନ୍ତାନ ଯେ ତୁମ୍ଭେମାନେ, ଏହା ଧର୍ମାନ୍ଧତାରେ ଦର୍ଶନ କରିପାରୁ ନାହିଁ। ପରସ୍ପର ନିର୍ଯ୍ୟାତନାରେ ଧର୍ମାନ୍ଧତା ଛଡ଼ା ଅଛି ଆଉ କଣ? ସେ ଶତ୍ରୁତା ମୂଳରେ ତ ଧନଲିପ୍‌ସା ନାହିଁ, ଉଚ୍ଚ ପଦ ମାନ ପ୍ରତିଷ୍ଠାର ଆକାଙ୍କ୍ଷା ନାହିଁ, ଅଛି କେବଳ ନିଜ ଧର୍ମର ଶ୍ରେଷ୍ଠତ୍ୱ ପ୍ରତିପାଦନ, ଅଛି କେବଳ ନିଜ ଶାସ୍ତ୍ରର ଅଭ୍ରାନ୍ତ ମହିମା ଘୋଷଣା। ଏ ଦାରୁଣ ହିଂସା ମଧ୍ୟରେ, ଏ ପ୍ରବଳ ଆତ୍ମକଳହ ମଧ୍ୟରେ କିଏ ସେ ଦେବତାରୂପୀ ମହାନ୍ ପୁରୁଷ ବଜ୍ର ନିର୍ଘୋଷରେ ସମଗ୍ର ଧର୍ମମଣ୍ଡଳୀକୁ ଡାକି କହୁଅଛନ୍ତି, କିପାଁ ଏ ବିରୋଧୀ, କିପାଁ ଏ ବିଚ୍ଛେଦ? ଶୁଣ ହିନ୍ଦୁ, ଶୁଣ ମୁସଲମାନ, ଶୁଣ ଖ୍ରୀଷ୍ଟାନ୍! କିପାଁ ତୁମ ଭିତରେ ଏତେ କଳହ, ଏତେ ରକ୍ତପାତ? ଗୋଟିଏ ମା'ର ଶିଶୁ ତୁମେ! ମୂର୍ଖ, ଅଜ୍ଞାନ, କିପାଁ କଳିକରି ଏ ପବିତ୍ର ପରିବାର ଛିନ୍ନଭିନ୍ନ କରୁଅଛ? ଧର୍ମରେ ବିରୋଧ ନାହିଁ, ଧର୍ମ ଯେ ସତ୍ୟ ଭାଇ! ମହାସତ୍ୟ! କୁସଂସ୍କାରରେ ବିରୋଧ, ହିଂସାରେ ବିରୋଧ, ଏକ-ଦେଶ-ଦର୍ଶିତାରେ ବିରୋଧ ସିନା! ଧର୍ମରେ କି ବିରୋଧ ସମ୍ଭବ? ସବୁ ଧର୍ମ ସତ୍ୟ।

ସବୁ ଧର୍ମ ସତ୍ୟ। ଅନେକ ତାଙ୍କୁ ଉପହାସ କଲେ, ଉନ୍ମାଦ ଭାବିଲେ। ସବୁ ଧର୍ମ ସତ୍ୟ, ଏହା କି ଅସମ୍ଭବ? ଏ ତ ପାଗଳର ପ୍ରଳାପ। ତାଙ୍କରି ଦଳର ବ୍ରାହ୍ମ ବନ୍ଧୁମାନେ କହିଲେ, ଆମେ ଏ କଥା ମାନିବୁ ନାହିଁ। କିନ୍ତୁ କେଶବ ଦବିଲେ ନାହିଁ। ପୁଣି ଡାକି କହିଲେ– ସବୁ ଧର୍ମ ସତ୍ୟ, ସତ୍ୟରେ ପ୍ରତିଷ୍ଠିତ। ଧର୍ମ ତ ଅସ୍ୱାଭିକ କୌଣସି ବାହରର ବସ୍ତୁ ନୁହେଁ। ଧର୍ମ ଯେ ଆନ୍ତରିକ, ଧର୍ମ ଯେ ସହଜାତ, ସ୍ୱାଭାବିକ। କିପାଁ ଧର୍ମ ନାମରେ ବୃଥା ଏ ଯାଗ-ଯଜ୍ଞ, ଯୋଗ ତପସ୍ୟା, ନିଃଶ୍ୱାସ-ରୋଧକାରୀ ପ୍ରାଣାୟାମ। ସେଥିରେ ପ୍ରୟୋଜନ ବୁଝୁଅଛ କର, କିନ୍ତୁ ମିଛେ ମିଛେ ଧର୍ମର ଆବରଣରେ ଡାଙ୍କ ନାହିଁ। ମୁକ୍ତି କି ପରର ରକ୍ତମୂଲ୍ୟରେ

କୃତ? ଆମେ ତ ମାର ସନ୍ତାନ, ଆମେ ଦାସ ନୋହୁଁ, ଆମେ ମୁକ୍ତ, ସ୍ୱାଧୀନ। କି ମୁକ୍ତି ଲାଗି ହେ ତାପସ, ତୁମେ ଚାରିପାଖରେ ଅଗ୍ନି ଜଳାଇ ବସିଅଛ? କି ମୁକ୍ତି ଲାଗି ହେ ଯୋଗୀ, ତୁମେ ଅରଣ୍ୟବାସ କାମନା କରୁଅଛ? ଏହି ଗୃହ, ଏହି ସଂସାର ତ ତୁମର ତପୋବନ, ଏହି ଚିର ତ ତୁମର ମହାନ୍ ତୀର୍ଥ! ମା'ଙ୍କୁ ସେହିଠାରେ ଚିନ୍ମୟୀ ରୂପେ ଦର୍ଶନ କର। ଆହେ ମୃଣ୍ମୟ ମୂର୍ତ୍ତିର ଉପାସକ! ଧର୍ମ ନାମରେ ତୁମେ ଏ ସବୁ କପଟତା, ଏ ସବୁ ଛଳନା ପରିହାର କର। ଯେ ବିଶ୍ୱବିଧାତା ତୁମର ଜୀବନ ପାଇଁ ବିନା ମୂଲ୍ୟରେ ଜଳ ଓ ପବନର ବ୍ୟବସ୍ଥା କରିଅଛନ୍ତି, ଶତ ଶ୍ୟାମଳ ଶସ୍ୟକ୍ଷେତ୍ର, ଶତ ବୃକ୍ଷ ବୀଥିକାରେ ତୁମପାଇଁ ଆହାର ସଜାଡ଼ି ରଖିଅଛନ୍ତି, ତୁମର ଧର୍ମପାଇଁ ସେ କ'ଣ ଅସ୍ୱାଭାବିକ ଉପାୟ ନିର୍ଦ୍ଦେଶ କରିବେ? କୃଚ୍ଛ ସାଧନଦ୍ୱାରା ନୁହେଁ, କଠୋର ତପଶ୍ଚରଣଦ୍ୱାରା ନୁହେଁ, ପ୍ରେମରେ ବ୍ରହ୍ମଲାଭ। ସାନ ଶିଶୁପରି ‘‘ମା ମା’’ ବୋଲି ଡାକ। ସନ୍ତାନର ଡାକରେ ଜନନୀର ହୃଦୟ ବିଗଳିତ ହେବ। ସେ କିପରି ଲୁଚି ବସିରହିବେ? ଭାଇଭଉଣୀ, ସର୍ବଧର୍ମସମନ୍ୱୟର ଏ ମହାସାଧନାର ପନ୍ଥା ଏଥିପୂର୍ବେ ଆଉ କିଏ ଏପରି ସୁନ୍ଦର ସରଳ ରୂପେ ଦେଖାଇଥିଲେ କି? ଭାରତୀୟ ଯୁବକ! ଏ ଆଦର୍ଶ ତୁମପାଇଁ। ତୁମରି ପ୍ରାଣରେ ଗୌତମ, ଗୌରାଙ୍ଗଙ୍କ ମିଳନ ଭୂମି, ତୁମରି ହୃଦୟବେଦୀରେ ଖ୍ରୀଷ୍ଟ, କୃଷ୍ଣଙ୍କ ଉପାସନା। ଆମର ପ୍ରଭୁ ଆଉ ଦୂରାକାଶରେ ନାହାନ୍ତି। ସିଏବା ଆଉ କୋଟିକନକ ମଣିଛଟା- ମଣ୍ଡିତ ସିଂହାସନୋପରି ଆସୀନ ହୋଇ, ଲକ୍ଷ ସ୍ୱର୍ଗୀୟ ସାଧୁ ଦୂତବୃନ୍ଦ ବେଷ୍ଟିତ ମହିମାରେ ପୃଥିବୀର, ଧୂଳିରେ ଅବନତ ପାପିଷ୍ଠ ମାନବାତ୍ମାକୁ ରୋଷକଷାୟିତ ନେତ୍ରରେ ଚାହୁଁ ନାହାନ୍ତି। ସେ ମା ଧୂଳିଧୂସର ଅବୋଧ ଶିଶୁକୁ ଧୂଳିର ତୋଳିନେବାକୁ ନିଜେ ଉନ୍ମାଦିନୀ ପରି ଧାଇଁଆସିଛନ୍ତି। ତାଙ୍କର ଯେ କୋଳର ସନ୍ତାନ ଆମ୍ଭେମାନେ। ପ୍ରାଣରେ ସେ କଥା କୁହନ୍ତି। ସେ ପ୍ରେମମୟ ସଖାଙ୍କ ଆସନ ହୃଦୟ ପଦ୍ମରେ। କେବଳ କବିର କଳ୍ପନା ନୁହେଁ, କେବଳ ଭାଷାର ବୈଚିତ୍ର୍ୟ ନୁହେଁ, ଏହି ଆମରି ମଧ୍ୟରେ ଊନବିଂଶ ଶତାବ୍ଦୀରେ ସାଧକ ଭକ୍ତ ବ୍ରହ୍ମ ଦର୍ଶନ ଲାଭ କରିଅଛନ୍ତି। ପାଶ୍ଚାତ୍ୟ ଜଡ଼ବାଦ ଶିକ୍ଷାଲାଭ କରି ସୁଦ୍ଧା, ଶୁଷ୍କ ଦାର୍ଶନିକ ତତ୍ତ୍ୱରେ ବୁଡ଼ି ସୁଦ୍ଧା, ପ୍ରାଣରେ ତାଙ୍କର ଭକ୍ତିର ଜାହ୍ନବୀ ବହିଗଲା। ଏ ତ ଅତି ଚମତ୍କାର ବ୍ୟାପାର।

ଜ୍ଞାନୀ, ପଣ୍ଡିତ କେଶବ, ଈଶ୍ୱରଙ୍କ କତିରେ ସରଳ ଶିଶୁ। ସରଳ ଶିଶୁ ପରି ସେ ମା'ଙ୍କ ଡାକ ଶୁଣୁଥିଲେ। କର୍ଣ୍ଣରେ ତାଙ୍କର ଅହରହ ମା'ଙ୍କ ମଧୁର ରବ ବାଜି ଉଠୁଥିଲା। ତାଙ୍କର ଆଦର୍ଶବାଦ କଥା କିଏ ନ ଜାଣେ? କେତେ ଲୋକ କେତେ ପ୍ରକାର ସମାଲୋଚନା କରିଅଛନ୍ତି, କେତେ ଲୋକ ସେଥିପାଇଁ ତାଙ୍କ ସହିତ ଅପଡ଼ ହୋଇଅଛନ୍ତି; କିନ୍ତୁ ସେ ନିଜର ବିଶ୍ୱାସରୁ କଦାପି ରେଣୁ ପ୍ରମାଣ ଟଳି ନାହାନ୍ତି। ସମସ୍ତେ ତାଙ୍କୁ ତ୍ୟାଗ କରିଅଛନ୍ତି, ଆତ୍ମୀୟ ବନ୍ଧୁ ପର ହୋଇଅଛନ୍ତି; ତଥାପି ସେ ନିଜର ବିଶ୍ୱାସ ବର୍ଜନ କରି ନାହାନ୍ତି। ଏ କ'ଣ ଭଣା କଥାଟିଏ?

ତାଙ୍କ ଜୀବନର ଆରମ୍ଭ ବିବେକ, ବୈରାଗ୍ୟ ଓ ବିଶ୍ୱାସରେ। କେବଳ ମୁଗ୍ଧ ଅନ୍ଧବିଶ୍ୱାସ ନୁହେଁ-ବିବେକ, ବୈରାଗ୍ୟ ସହିତ ସମ୍ମିଳିତ। ଉଦ୍ଦାମ ଯୌବନରେ ଯେତେବେଳେ ପ୍ରାଣ ସଂସାରର ଭୋଗ ବିଳାସରେ ବୁଡ଼ିବା କଥା, ସେତେବେଳେ କେଶବ ବ୍ରହ୍ମସାଧନରେ ମଗ୍ନ। ବିଂଶ ଶତାବ୍ଦୀର ଯୁବକ ଯୁବତୀ! ଖ୍ରୀଷ୍ଟ, କୃଷ୍ଣ ପୌରାଣିକ ହୋଇପାରନ୍ତି; କିନ୍ତୁ ତୁମ ଆଖିଆଗରେ ଏ ଯେ କେଶବ ମୂର୍ତ୍ତି, ଧର୍ମର ଅପୂର୍ବ ବିଗ୍ରହ, ଏହାଙ୍କ ପ୍ରଭାବ କିଏ ଅସ୍ୱୀକାର କରିବ କହ ତ? ଭାରତ ଅଦ୍ୟାପି ଚିହ୍ନିନାହିଁ, ତାହାର ଆଳସ୍ୟବିଜଡ଼ିତ ଆଖି ଏବେ ସୁଦ୍ଧା ଭଲ ରୂପେ ଖୋଲି ନାହିଁ। ନୋହିଲେ ସେ ବୁଝନ୍ତା, ତା ମଧ୍ୟରେ ଅଳ୍ପ ଦିନ ମଧ୍ୟରେ କି ମହାପୁରୁଷମାନଙ୍କର ଆବିର୍ଭାବ ହୋଇଅଛି। ପରେ ପରେ ରାମମୋହନ, ଦେବେନ୍ଦ୍ର ନାଥ, ରାମକୃଷ୍ଣ, ବିବେକାନନ୍ଦ ଓ କେଶବଙ୍କ ଆଗମନ, ଏହା କି ଭାରତରେ ନବଯୁଗର ସୂଚନା ନୁହେଁ?

ଆଉ କେବଳ ଶୁଷ୍କ ତର୍କ ନୁହେଁ, କତିପୟ ଦାର୍ଶନିକ ମତବାଦ ନୁହେଁ, ସାକ୍ଷାତ୍ ଅନୁଭବ, ପ୍ରାଣର ପ୍ରେରଣା, ହୃଦୟରେ ବ୍ରହ୍ମଦର୍ଶନ ଆଜି ଧର୍ମର ମୂଳଭିତ୍ତି। ଏ ମୂଳ ଭିତ୍ତିର ଦୃଢ଼ ପାଷାଣ କେଶବ। ତାଙ୍କ ମଧ୍ୟରେ ଯୀଶୁଙ୍କ ସେବା, ଚୈତନ୍ୟଙ୍କ ପ୍ରେମ, ବୁଦ୍ଧଙ୍କ ମହାଦୟା ଜ୍ଞାନର ବୃନ୍ତରେ ବିକଶିତ କୁସୁମ ଭଳି ପରିଶୋଭିତ ହୋଇଥିଲା। ସେ ଅପୂର୍ବ ସୌରଭରେ ଆଜି ଭାରତର କୁଞ୍ଜବନ ଆମୋଦିତ।

ଭାରତ ଚୈତନ୍ୟଙ୍କୁ ଭୁଲିଯାଇଥିଲା, କେଶବ ତାଙ୍କୁ ପୁନରୁଦ୍ଧାର କଲେ। ପୁଣି ମୃଦଙ୍ଗ କରତାଳ ସହ ହରିନାମ ସଂକୀର୍ତ୍ତନରେ ଭାରତର ପ୍ରାଣ ମତ୍ତ ହୋଇଉଠିଲା। ଭାରତୀୟ ହୃଦୟ ଯେ ଭାବରସଗ୍ରାହୀ, କେବଳ ଶୁଷ୍କ ମୀମାଂସା ତର୍କାଦିରେ ସେ ତୃପ୍ତ ହୁଅନ୍ତା କିପରି? ସେ ପ୍ରେମରସ ପ୍ରାଣରେ ପ୍ରାଚ୍ୟଜଗତର ମହାପୁରୁଷ ଈଶ୍ୱରଙ୍କର ଅପୂର୍ବ ସେବକ ଈଶ୍ୱରଙ୍କୁ ସେ ବରଣ କରିଆଣିଲେ। ଆଉ ବୈଦେଶିକ ବେଶରେ ନୁହେଁ, ଘରର ଜ୍ଞାତି, ବନ୍ଧୁ ତୁଲ୍ୟ। ତାଙ୍କର ସେବା ଓ ବିଶ୍ୱାସ, ତାଙ୍କର ମାନବାତ୍ମା ଲାଗି ପରମ ପ୍ରେମର ଭାବଧାରା ଆମ ସମାଜରେ ଖେଳିଗଲା। କେଶବ ସମାଜସଂସ୍କାରରେ ଲାଗିପଡ଼ିଲେ। ବଙ୍ଗ ଦେଶରେ ଶତ ଶତ ଯୁବକ କେଶବଙ୍କ ଦଳରେ ମିଶି କୁସଂସ୍କାର, ଅନ୍ୟାୟ ଆଚାର ବିରୁଦ୍ଧରେ ଛିଡ଼ାହେଲେ। ଭାରତରେ ଅଭିନବ ସମାଜ ବିପ୍ଳବ ଦେଖାଗଲା। ଧର୍ମ କେବଳ ହୃଦୟର ସଂପତ୍ତି ନୁହେଁ; ପରମାତ୍ମା କେବଳ ଆତ୍ମାରେ ଅଧିଷ୍ଠିତ ନୁହଁନ୍ତି, ସେ ତ ସମାଜର ଜନନୀ। ସେ ଯେ ମଙ୍ଗଳମୟ ପିତା। ତାଙ୍କ ରାଜ୍ୟରେ ନାରୀ ପୁରୁଷର ସମାନ ଅଧିକାର। ବହୁ ଶତାବ୍ଦୀ-ଅପହୃତା ନାରୀର ଶିକ୍ଷା, ସ୍ୱାଧୀନତା ନାରୀବୃନ୍ଦ ଲାଭକଲେ। ଯେଉଁ ନାରୀ ଚିରକାଳ ଅବଜ୍ଞେୟା ହୋଇଥିଲା, କାମିନୀ-କାଞ୍ଚନ ତ୍ୟାଗ କଲେ ଯେଉଁ ଦେଶରେ ଧର୍ମ ସାଧନାର ପରାକାଷ୍ଠା ହେଉଥିଲା ଭଉଣୀ, ସେହି ଚିର ଅବଜ୍ଞାତା ନିର୍ଯ୍ୟାତିତା ଯେ ଆମ୍ଭେମାନେ; ଆମ୍ଭେମାନେ ସେହି ଦେଶରେ ଶ୍ରଦ୍ଧାର ଆସନ ପାଇଲୁଁ। ନାରୀ ଯେ ଜନନୀ, ଅମୃତମୟୀ ଅଦ୍ୟାଶକ୍ତିର ତନୟା, ନାରୀକୁ ବର୍ଜନକରି, ହେ ପୁରୁଷ, ତୁମେ କି ଧର୍ମ ସାଧନ କରିବାକୁ ଯାଉଅଛ? ନାରୀକୁ ସାଂଗରେ ନିଅ, ସେ ତୁମର

ମା, ତୁମରି ଦୁହିତା, ସଂସାରାଶ୍ରମରେ ତୁମର ସଂଗିନୀ ସହଧର୍ମୀଣୀ ! କେଶବ ସ୍ତ୍ରୀ କନ୍ୟାଙ୍କୁ ଧର୍ମସଂଗିନୀ କରିଥିଲେ, ମହିଳା ସମାଜ ସ୍ଥାପନ କରିଥିଲେ, ନାରୀଜାତି କିପରି ଉନ୍ନତି ଲାଭକରିବେ, ତାହା ଅହରହ ଚିନ୍ତା କରୁଥିଲେ। ଭଉଣି, ଆସ ତାଙ୍କ ଜତିରେ ଆମର ଭକ୍ତିର ନୈବେଦ୍ୟ ସଜାଡ଼ି ଥୋଇବା। ଆସ ଭାଇ ଭଉଣି ! ଏକାଠି ମିଳି ଧର୍ମ ଓ ଜଗତର ହିତସାଧନ କରିବା। ଧର୍ମ ଯେ ଆଉ କଥାର କଥା ନୁହେଁ। ଆଉ କେବଳ ଗୋଟିଏ ଅଭ୍ରାନ୍ତ ଶାସ୍ତ୍ର ନିବନ୍ଧ ନୁହେଁ। ଗୋଟିଏ ବିଶେଷ ଜାତି ବା ଦଳର ସଂପତ୍ତି ନୁହେଁ। ବ୍ରାହ୍ମ ଧର୍ମ ଆଉ ଶାଖା ଧର୍ମ ନୁହେଁ। ତାହା ମାନବ ହୃଦୟର ସ୍ୱାଭାବିକ ଧର୍ମ। ଜଗତର ନବ-ବିଧାନ, ଅଥଚ ଚିର ପୁରାତନ, ଶାଶ୍ୱତ। ସେଥିରେ ଦଳାଦଳି, ହିଂସାଦ୍ୱେଷ, ପରାଧୀନତା, ଗୁରୁଶାସ୍ତ୍ରର ସ୍ଥାନ କାହିଁ ? ଖ୍ରୀଷ୍ଟଙ୍କୁ ତାଙ୍କର ଜଣେ ଶିଷ୍ୟ ପରମଗୁରୁ ବୋଲି ସମ୍ବୋଧନ କରିଥିଲା। ସେ କହିଲେ, ଆମ୍ଭଙ୍କୁ ପରମ କିପାଁ କହୁଅଛ ? ପରମେଶ୍ୱରଙ୍କ ବିନା ତ ଆଉ କେହି ପରମ ନାହାନ୍ତି ! କେଶବ ସେହି କଥା କହିଲେ। ମାଙ୍କ ସ୍ଥାନ ଆଉ କିଏ ଅଧିକାର କରିବ ? କ୍ଷୁଦ୍ର ପ୍ରତିମା ? ଜଣେ ନାରୀଗର୍ଭଜାତ ମନୁଷ୍ୟ ପ୍ରାଣର ତୃଷ୍ଣା ବ୍ରହ୍ମପଦାମୃତ ବିନା କି ନିବୃତ୍ତ ହୋଇପାରେ ? ସାମାନ୍ୟ ମାନବୀୟ ଆଦର୍ଶ ! ଈଶା, ମୂଷା, ଚୈତନ୍ୟଙ୍କ ଆଦର୍ଶରେ ଆମର ଆଉ କି ପ୍ରୟୋଜନ ? ସେମାନେ ମହାପୁରୁଷ, ସେମାନେ ମହାତ୍ମା, ସେମାନେ ଭଗବାନ୍‌ଙ୍କ ପ୍ରେରିତ। ଅଜ୍ଞାନ ମାନବ ସମାଜର ଆଲୋକ -ଦାତା ସେବକ। କିପାଁ ସେବକଙ୍କୁ ନେଇ ପ୍ରଭୁର ସ୍ଥାନ ଦେଉଅଛ ? ଭୃତ୍ୟଙ୍କୁ କିପାଁ କର୍ତ୍ତାରୂପେ ପୂଜା କରୁଅଛ ? ଶ୍ରଦ୍ଧାକର, ସମ୍ମାନ କର, ତାଙ୍କୁ ଛାଡ଼ ନାହିଁ। ସେ ଯେ ତୁମମାନଙ୍କପାଇଁ ନିବେଦିତ ପ୍ରାଣ ! କିନ୍ତୁ ବ୍ରହ୍ମଙ୍କୁ ଭୁଲ ନାହିଁ। ବ୍ରହ୍ମସାଧାନା ଧନ ଯେ ସମସ୍ତଙ୍କର, ନିହାତି ନିଃସ୍ୱ କଙ୍ଗାଳଠାରୁ ମହାରାଜାଧିରାଜ, ସମସ୍ତଙ୍କପାଇଁ ମାଙ୍କ କୃପାଦ୍ୱାର ମେଲା। ଆସ ପାପୀ, ତାପୀ, ନର, ନାରୀ ଆସ ପୁଣ୍ୟବନ୍ତ ଜ୍ଞାନୀ, ଧ୍ୟାନୀ, ମୂର୍ଖ ପଣ୍ଡିତ ଆସ, ସମସ୍ତେ ଆସ ! ଆସ ହିନ୍ଦୁ, ଆସ ମୁସଲମାନ, ଆସ ଖ୍ରୀଷ୍ଟିୟାନ, ଆସ ବ୍ରାହ୍ମ ! ଆସ ସମଗ୍ର ପୃଥିବୀର ମହାମାନବ ଶ୍ରେଣୀ !ଏ ତ ତୁମର ମାଙ୍କ ମନ୍ଦିର ! ଏଠି ଭେଦାଭେଦ ନାହିଁ, ଦଳଗତ ପାର୍ଥକ୍ୟ ନାହିଁ, ଏଠି ଜାତୀୟ ବିଚାର ନାହିଁ। ଏଠି ସମସ୍ତେ ପରସ୍ପରର ଜ୍ଞାତି, ଭାଇ, ବନ୍ଧୁ !

ଏହି ତ ଆମର ଆଦର୍ଶ ! ଏହି ତ ଆମର ସାଧନା ! କ୍ଷୁଦ୍ର ଦଳଭେଦ, ବ୍ୟକ୍ତିଗତ ପ୍ରତିଷ୍ଠା– ଏ ସବୁ ବ୍ରାହ୍ମର ଆଦର୍ଶ ନୁହେଁ। ନିଖିଳ ବିଶ୍ୱ ଯାହା ନିକଟରେ ପବିତ୍ର ବ୍ରହ୍ମମନ୍ଦିର, ସେ କି କ୍ଷୁଦ୍ର ସୀମା ମଧ୍ୟରେ ଆବଦ୍ଧ ରହିବ ? ସେ କି ସାନ ସାନ ଦଳ ସୃଷ୍ଟିକରିପାରିବ ? ତାହାହେଲେ ବ୍ରହ୍ମଧର୍ମର ଗୌରବ ଆଉ କେଉଁଠାରେ ? କେଶବ ତାହା ପ୍ରାଣେ ପ୍ରାଣେ ବୁଝିଥିଲେ। ସେଥିପାଇଁ ସେ ତାଙ୍କ ସମାଜର ନାମ ଦେଲେ ନବବିଧାନ। ଏ ନୂଆ ବିଧାନ, ଏଠି ଈର୍ଷାର ସ୍ଥାନ ନାହିଁ, ଏଠି ଦ୍ୱନ୍ଦ୍ୱର ପ୍ରବେଶପଥ ନାହିଁ। ଏଠି ଏକ ମନୁଷ୍ୟଜାତି, ଏକ ପିତା ପ୍ରଭୁ। ଏକ ଧର୍ମ, ଏକ ସମାଜ। ମାନବର ହିତାର୍ଥେ ଆତ୍ମବଳି ଦାନ ହିଁ ପୁଣ୍ୟ ସଞ୍ଚୟ। ଅନ୍ୟର ମୁକ୍ତି ଅନ୍ୱେଷଣରେ ଆତ୍ମମୁକ୍ତି। ଭାରତରେ ଏହା ଅଭିନବ। ଶତ କ୍ରିୟାକର୍ମର ଆୟସ

ବେଷ୍ଟନୀବଦ୍ଧ ସମାଜରେ ଏ ପନ୍ଥା ନୂତନ। ଆଚାର ଆଚାର ଚିତ୍କାରକରି, ଯେ ସମସ୍ତଙ୍କୁ ଘୃଣାରେ ଆଡ଼େଇ ଦେଇଅଛି, ତା କତିରେ ଏ ଧାରା ନୂଆ; କିନ୍ତୁ ଏହା ତ ଅତୀତ ସତ୍ୟ! ଏହା ତ କୌଣସି ପୁସ୍ତକର ବନ୍ଧା ବୋଲି ନୁହେଁ, ବେଦ ବେଦାନ୍ତର ଦାର୍ଶନିକ ବାଣୀ ନୁହେଁ। ତାହା ପୃଥିବୀର କ୍ଷୁଦ୍ରତମ ମାନବଜୀବନଟିରେ ସୁଦ୍ଧା ପ୍ରମାଣିତ। ଏହା ମହାପୁରୁଷ, ମହାତ୍ମାଙ୍କ 'ଏକଚାଟିଆ' ଅଧିକାର ନୁହେଁ। ଏହା ବିଭୁସନ୍ତାନ ପ୍ରତ୍ୟେକ ମାନବର ହୃଦୟ-ନିଧି। କେଶବ ତାହାହିଁ ଭାରତକୁ ଦେଇଗଲେ। ତେବେ ଆସ ଭାଗେର ଭାଇ ଭଉଣି! ଭେଦାଭେଦ, ଦଳାଦଳି ଭୁଲିଯାଅ। ତୁମରି ମିଳନରେ ସର୍ବ ଧର୍ମର ସମନ୍ୱୟ ହେଉ। ତୁମରି ମନ୍ଦିରରେ ସର୍ବ ଧର୍ମର ସମନ୍ୱୟ ହେଉ। ତୁମରି ମନ୍ଦିରରେ ପାଖେ ପାଖେ ଯୀଶୁ, ଚୈତନ୍ୟଙ୍କ ମୂର୍ତ୍ତି ଶୋଭାପାଉ! ତୁମରି ବେଦୀରେ ବାଇବଲ, କୋରାଣ ଏକତ୍ର ରଖାଯାଉ। ତୁମେ ଭୁଲିଯାଅ କ୍ଷୁଦ୍ର ସୀମା। ଅନନ୍ତଭୂମା ମହାନ୍ ପରମେଶ୍ୱରଙ୍କର ସନ୍ତାନ, ଅମୃତର ଅଧିକାରୀ, ତୁମେ ଭୁଲିଯାଅ ଅସତ୍ୟର ଅନ୍ଧ ଆତ୍ମବଡ଼ିମା। ଜଗତ ତୁମରି ଆଦର୍ଶ ଦେଖୁ। ତୁମ ମଧ୍ୟରେ ବିଶ୍ୱ ତାର ବରପୁତ୍ର ଲାଭକରୁ। ଐହିକ ସଂପଦରେ ନୁହେଁ, ପାରମାର୍ଥିକ ସଂପଦରେ, ପାଶବ ବଳରେ ନୁହେଁ, ଆତ୍ମିକ ବଳରେ ଭାରତ ନବଜୀବନରେ ଜାଗ୍ରତ ହେଉ, ଏହାହିଁ ମୋର ପ୍ରାର୍ଥନା।



# ହିନ୍ଦୀ ସାହିତ୍ୟର କ୍ରମବିକାଶ

୧୯୨୮ ସାଲର ମଧ୍ୟଭାଗରେ ମୁଁ ଯେତେବେଳେ ପ୍ରଥମେ ଦିଲ୍ଲୀ ଆସିଥିଲି, ହିନ୍ଦୀ ସାହିତ୍ୟ ସହିତ ମୋର ପ୍ରଥମ ପରିଚୟ ହେଲା, ଶ୍ରୀ ଚତୁର ସେନ୍ ଶାସ୍ତ୍ରୀ ବୈଦ୍ୟାଚାର୍ଯ୍ୟଙ୍କର ''ହୃଦୟ କି ପ୍ୟାସ୍'' ଉପନ୍ୟାସ ପାଠକରି। ସତ କହିବାକୁ ଗଲେ, ନାଁ ଓ ଭାଷା ଦିଗରୁ, କି ଭାବ ଅଥବା ଚରିତ୍ର ଚିତ୍ରଣ ଦିଗରୁ, ମୋତେ ଉପନ୍ୟାସଟା ଭଲ ଲାଗିଲା ନାହିଁ। ବଙ୍ଗଳା ତ ବହୁ ନିମ୍ନରେ; କିନ୍ତୁ ଓଡ଼ିଆ ଉପନ୍ୟାସଠାରୁ ମଧ୍ୟ ଅତି ନିମ୍ନସ୍ତରରେ ବୋଲି ମନେହେଲା। ପ୍ରେମଚାନ୍ଦ୍ରଙ୍କର 'ରଂଗଭୂମି' ମଧ୍ୟ ସେହି ସମୟରେ ପଢ଼ିବାକୁ ମିଳିଥିଲା। ତାହା ମଧ୍ୟ ସେତେଦୂର ଚିତ୍ତାକର୍ଷକ ବୋଧହେଲା ନାହିଁ, ଯଦ୍ୟପି 'ହୃଦୟ କି ପ୍ୟାସ୍'ଠାରୁ ଶତଗୁଣେ ଭଲ ଥିଲା। ଏହାପରେ ଦୁଇବର୍ଷ ମଧ୍ୟରେ କେତୋଟି ବିଶିଷ୍ଟ ହିନ୍ଦୀ ଲେଖକଙ୍କର ଲେଖା ମଧ୍ୟ ଆଖି ଆଗରେ ପଡ଼ିଲା। ଦେଖିଲି, 'ଖଡ଼ିବୋଲୀ' ହିନ୍ଦୀର ଗଦ୍ୟଭାଷା ଯେପରି ନୀରସ, ଶୁଷ୍କ ଓ କଠିନ, ସେଥିରେ ଯେପରି ବଙ୍ଗଳାର ଲଳିତ ଲାବଣ୍ୟ, ଓଡ଼ିଆର ତରଳ ଲହରୀ ପ୍ରାଣର ପୁଲକୋଲ୍ଲାସ ନାହିଁ - ଯେପରି କଟୁ କଠିନ ହବାଟା ତାର ସ୍ୱାଭବସିଦ୍ଧ। ପ୍ରାୟ ୪ ବର୍ଷ ପର୍ଯ୍ୟନ୍ତ ଆଉ ହିନ୍ଦୀ ସାହିତ୍ୟ ବା ହିନ୍ଦୀ ଲେଖକଙ୍କର ଲେଖନକଳା ପ୍ରତି ଏତେ ଧ୍ୟାନ ଦେଲି ନାହିଁ। କିନ୍ତୁ ବିଶାଳ ଦିଲ୍ଲୀ ନଗରୀରେ ରହି, ନିତିପ୍ରତି ଘରେ ବାହାରେ, ହିନ୍ଦୀ ଭାଷା କହିବା ଶୁଣିବାଯୋଗୁଁ ଭାଷାଟା ନିଜର ହୋଇଗଲା। କ୍ରମେ ସାହିତ୍ୟ ମଧ୍ୟ ପାଖକୁ ପାଖକୁ ଘୁଞ୍ଚି ଆସିଲା। ସନ ୧୯୨୮ରୁ ଆଜି ସନ ୧୯୩୮, ବ୍ୟବଧାନ ଦଶବର୍ଷ ମଧ୍ୟରେ ହିନ୍ଦୀ କେତେ ଦୂର ଅଗ୍ରସର ହୋଇଛି, ତାହାର ବିଚାର କରିବାକୁ ବସିଚି। ସନ ୧୯୨୮ ରେ ଯେଉଁ ନବ୍ୟ ଲେଖକମାନଙ୍କ ସହିତ ମୋର ପରିଚୟ ହୋଇଥିଲା, ସେତେବେଳେ ସେମାନେ ସାହିତ୍ୟ-ଜଗତରେ ଶିଶୁ। ସେତେବେଳେ ନାମ ଶୁଣା ଯାଉଥିଲା, 'ପ୍ରେମଚାନ୍ଦ' ହିନ୍ଦୀ ଉପନ୍ୟାସ ସମ୍ରାଟ, ଆଉ ଚତୁର୍ବିଧ ଲେଖକ ଶ୍ରୀ ଚତୁରାସେନ ଶାସ୍ତ୍ରୀ, କାବ୍ୟ ଲେଖକ ଶ୍ରୀ ମୈଥିଳୀ ଶରଣ ଗୁପ୍ତ। ଅବଶ୍ୟ ଏମାନେ ହିନ୍ଦୀର ଜଣେ ଜଣେ ମହାନ୍ ସାଧକ। ଏହାଙ୍କର କଳା-ପ୍ରତିଭାର ବିଚାର କରିବା ନିଷ୍ପ୍ରୟୋଜନ।

ଆଉ ଏମାନେ ମଧ୍ୟ ଆମ ଯୁଗର ନୁହନ୍ତି। ଓଡ଼ିଶାରେ ଶ୍ରୀ ଗୋଦାବରୀଶ ମିଶ୍ର, ପଣ୍ଡିତ ଶ୍ରୀ ନୀଳକଣ୍ଠ ଦାସଙ୍କ ଯୁଗର ଲେଖକ ଏମାନେ। ବର୍ତ୍ତମାନର ତରୁଣ ଲେଖକଲେଖିକାଙ୍କ ମଧ୍ୟରେ ଏହାଙ୍କର ସ୍ଥାନ ନାହିଁ। ଗତ ଦଶବର୍ଷ ଭିତରେ ହିନ୍ଦୀକୁ ଯେ ବିପୁଳ ସାହିତ୍ୟିକ ବିଭବ-ଦାନ କରିଛନ୍ତି, ସେହି ତରୁଣ ଲେଖକମାନଙ୍କ ମଧ୍ୟରେ, ଯେଉଁମାନଙ୍କର ରଚନା ସହିତ ମୋର ଘନିଷ୍ଠ ପରିଚୟର ସୁଯୋଗ ଘଟିଛି, ସେହିମାନଙ୍କ ବିଷୟରେ ଆମ ଦେଶର ନବୀନ ଲେଖକ ଲେଖିକାଙ୍କର କୌତୁହଳ ନିବାରଣପାଇଁ କିଛି କିଛି ଲେଖିବି।

ସନ୍ ୧୯୨୮ର ଶେଷାଶେଷି ହିନ୍ଦୀ ଓ ଉର୍ଦ୍ଦୁର ବିଶିଷ୍ଟ ଲେଖକ, ଆର୍ଯ୍ୟ-ସମାଜର ଜଣେ ବିଖ୍ୟାତ ସନ୍ନ୍ୟାସୀ ଶ୍ରୀ ଆନନ୍ଦ ଭିକ୍ଷୁ ସରସ୍ୱତୀଙ୍କୁ ସହିତ ଜଣେ ହିନ୍ଦୀର ନବୀନ ଲେଖକ ଆମ ଘରକୁ ଆସିଲେ।

ବୟସ ସେତେବେଳକୁ ପ୍ରାୟ ପଚିଶ ଛବିଶ। ନାମ ଜୈନେନ୍ଦ୍ର କୁମାର। ପଣ୍ଡିତ ନୀଳକଣ୍ଠ ଦାସଙ୍କର ''ଆର୍ଯ୍ୟ ଜୀବନ'' ହିନ୍ଦୀରେ ଅନୁବାଦ କରିଥିବାରୁ ମୁଁ ତାଙ୍କର ପରିଚୟ ପାଇ ଆପ୍ୟାୟିତ ହେଲି। ଦିଲ୍ଲୀରେ ରହନ୍ତି; ସେଥିପାଇଁ ସ୍ୱାଭାବତଃ ଅନେକ ଥର ଦେଖା ସାକ୍ଷାତର ସୁଯୋଗ ମିଳିଲା, ମାତ୍ର ସେତେବେଳେ ମୁଁ ହିନ୍ଦୀ କହିପାରୁ ନଥାଏ; ହିନ୍ଦୀ ସାହିତ୍ୟ ପ୍ରତି ଅନୁରାଗ ନ ଥାଏ, ଉକ୍ତ ଲେଖକଙ୍କର କୌଣସି ଲେଖା ପଢାକୁ ବାହାରି ନ ଥାଏ।

ଆଜି ସେହି ଜୈନେନ୍ଦ୍ରଙ୍କ 'କଥା ସାହିତ୍ୟ' ହିନ୍ଦୀ କାହିଁକି, ଭାରତର ଜାତୀୟ ସାହିତ୍ୟର ଭଣ୍ଡାରରେ ରହିବା ଉପଯୁକ୍ତ। ବର୍ତ୍ତମାନ ସେ କିଛି ଦିନ ତଳେ ଉପନ୍ୟାସ-ସମ୍ରାଟ ପ୍ରେମଚନ୍ଦ୍ରଙ୍କର ବିଖ୍ୟାତ ହିନ୍ଦୀ କାହାଣୀ ପତ୍ରିକା 'ହଂସ'ର ସଂପାଦନା କରୁଥିଲେ। ହିନ୍ଦୀର କାହାଣୀ ଜଗତରେ ସର୍ବଶ୍ରେଷ୍ଠ କଳାକାର ଜୈନେନ୍ଦ୍ରଙ୍କର ଲେଖାର ପରିଚୟ ସାମାନ୍ୟ କେତୋଟି ଛତ୍ରରେ ଦେବା ଅସମ୍ଭବ। ଓଡ଼ିଆ ପାଠକମାନେ ଯଦି ତାଙ୍କର ସଂପୂର୍ଣ୍ଣ ଲେଖା ପଢ଼ିବାକୁ ଚାହାଁନ୍ତି, ତେବେ ହିନ୍ଦୀ ଗ୍ରନ୍ଥ ରତ୍ନାକର, ହୀରାବାଗ୍ ବମ୍ୱାଇ ଅଥବା ସରସ୍ୱତୀ ସାହିତ୍ୟ ସଦନ, ବନାରସକୁ ଲେଖିଲେ ତାଙ୍କର ସମୁଦାୟ ପୁସ୍ତକ ପାଇପାରିବେ। ଦିଲ୍ଲୀର ୭ ନମ୍ବର ଦରିଆଗଞ୍ଜରେ ତାଙ୍କର ଘର।

ଚେହରାରେ ସେ ସାମନ୍ୟ, ଦୁର୍ବଳ, ପତଳା, ଖଦଡ଼ଧାରୀ ଜଣେ ଅତି ସାଧାରଣ ପରିସ୍ଥିତିର ଲୋକ। ହଠାତ୍ ଦେଖିଲେ ମନେ ହେବ, ବୋଧହୁଏ ଜଣେ କଂଗ୍ରେସ ଭଲିଣ୍ଟିଆର। କିନ୍ତୁ ଏ ଲୋକଟିର ସ୍ୱଭବରେ ଯେପରି ଗାମ୍ଭିର୍ଯ୍ୟ, ଲେଖାରେ ମଧ୍ୟ ସେହିପରି ଗାମ୍ଭିର୍ଯ୍ୟ ପୂର୍ଣ୍ଣମାତ୍ରାରେ ଫୁଟିଉଠିଛି। ଲେଖା ଓଜସ୍ୱିନୀ ନୁହେଁ, ହାଣ-ମାର-କାଟର ଉତ୍ତେଜନାରେ ପୂର୍ଣ୍ଣ ନୁହେଁ। ପ୍ରକୃତି ବର୍ଣ୍ଣନାର ଛଟା ନାହିଁ, ବଡ଼ ବଡ଼ ସଂସ୍କୃତ କି ଆରବୀ ଫାର୍ସୀ ଶବ୍ଦର ସମାବେଶ ନାହିଁ, ମାତ୍ର ଲେଖାଟି ଆରମ୍ଭ କଲେ ଏକ ନିଃଶ୍ୱାସରେ ଶେଷ ନ କରି ରହି ହେବ ନାହିଁ, କାରଣ ଲେଖା ମଧ୍ୟରେ ଏପରି ଗୋଟିଏ ପ୍ରଚ୍ଛନ୍ନ ପ୍ରାଣଧାରା ପ୍ରବହମାନ। ଲେଖକ ଦାର୍ଶନିକ, ମନୁଷ୍ୟର ଜୀବନତତ୍ତ୍ୱଦର୍ଶୀ - ଜୀବନର ନାନା ନିଗୂଢ଼ ସମସ୍ୟାକୁ ସହଜ ସରଳ ଭାବରେ ହୁଏତ ଗୋଟିଏ ସାମାନ୍ୟ କାହାଣୀ ଭିତରେ ଏପରି ଫୁଟାଇ ଦେଖାଇଛନ୍ତି, ଯାହାକି ପାଠକ ପଢ଼ିସାରିଲା ପରେ ମଧ୍ୟ ବହୁଦିନ, ବହୁବର୍ଷ ହୃଦୟ ମଧ୍ୟରେ ଗୋଟିଏ ଗାର କାଟିଲା ପରି ରହିଯିବ। ଅହିଂସା, ଅପରିଗ୍ରହ, ସତ୍ୟ, ଶିବ, ସୁନ୍ଦର - ଏ ପଞ୍ଚବିଧ ମହାଭାରତୀୟ ଦର୍ଶନ ତତ୍ତ୍ୱକୁ ଘେନି ମାନବର ବାସ୍ତବ ଜୀବନରେ ଏପରି ସିଧାସରଳ ଭାବରେ ବିକଶିତ କରି ଦେଖାଇବା ବୋଧହୁଏ ସାମାନ୍ୟ କୃତିତ୍ୱର ପରିଚାୟକ ନୁହେଁ। ପୁଣି ଦଳିତ, ଦୁର୍ବଳ, ବିଜିତ, ଉତ୍ପୀଡ଼ିତର ମହାନତା ଘେନି ତାଙ୍କ ଲେଖାର ଉତ୍କର୍ଷ। ସେହି ଦଳିତ, ସେହି ଉତ୍ପୀଡ଼ିତ ନାରୀ ଯେ ସର୍ବଶ୍ରେଷ୍ଠ, ନାରୀ ଯେ ଯୁଗଯୁଗାନ୍ତର ଦେଇ ଆସୁଚି, ନାରୀ ଯେ ଜଗତକୁ ସୁନ୍ଦରରୁ ଶିବ, ଶିବରୁ ସତ୍ୟକୁ ଘେନି ଯାଉଚି; ପ୍ରଭୁ ନୁହେଁ, ମାଲିକ ନୁହେଁ, ଭଗବାନ୍ ନୁହେଁ; ସେବା, ସ୍ନେହ, ଶ୍ରଦ୍ଧାରୂପୀ ହୃଦୟର ଅମୂଲ୍ୟ ଅବଦାନ ଦେଇ ଯୁଗଯୁଗାନ୍ତର ସେ ମାନବକୁ ପଶୁତ୍ୱର ଦେବତ୍ୱକୁ ଘେନି ଯାଉଚି; ଏପରି ଚିତ୍ର ଯଦି କେହି ଭାରତବର୍ଷର ଆଙ୍କିଚି, ସେ ଜୈନେନ୍ଦ୍ରଙ୍କ

ଲେଖନୀ। ଭାରତର ନାରୀଜାତି ଏହି ମହାନ୍ ଲେଖକ ନିକଟରେ ଚିରଋଣୀ। କାରଣ ସେ ସେମାନଙ୍କର ମୂକ ବେଦନାକୁ ଭାଷା, ନୀରବ ଆତ୍ମାକୁ ଅଭିବ୍ୟକ୍ତିର ସ୍ୱରୂପ ଦାନକରିଛନ୍ତି। ତାଙ୍କରି ଲେଖାରୁ ଗୋଟିଏ ଯୋଡ଼ିଏ ଉଦାହରଣ ଦେଲେ ଯଥେଷ୍ଟ ହେବ।

'ଏକରାତ୍' - ''ଗୋଟିଏ ରାତି'' ତାଙ୍କର ଛୋଟ ଗଳ୍ପଟିଏ। ସେଥିରେ ନାୟକ ଜୟରାଜ, ନାୟିକା ସୁଦର୍ଶନା। ଜୟରାଜ ଜଣେ ବିଶିଷ୍ଟ କଂଗ୍ରେସକର୍ମୀ - ହରିପୁର ଗାଁରେ କଂଗ୍ରେସ ସଭାର ପ୍ରେସିଡେଣ୍ଟ ହୋଇଯିବା କଥା - କିନ୍ତୁ ଯିବେ କି ନ ଯିବେ - ଏହି ଦ୍ୱନ୍ଦ୍ୱ ନେଇ କେତେ ଘଣ୍ଟା କଟିଲା। କାରଣ ହରିପୁର - ହରିପୁର ତାଙ୍କର ପ୍ରାଣର ଘନିଷ୍ଠ ସମ୍ବନ୍ଧ- ସେହି ହରିପୁର। ନା - ନା ଯିବା ଠିକ୍ ନୁହେଁ - ମାତ୍ର ଦେଶ ଓ ଜାତିର ଆହ୍ୱାନ। ଯାହା ଭୟ କରୁଥିଲେ, ତାହା ହିଁ ଘଟିଲା। ସୁଦର୍ଶନା - ହରିପୁରରୁ ପଳାଇ ଆସିବାକୁ ତର ସହିଲା ନାହିଁ। ମୁଣ୍ଡ ଉପରେ ଘୋର ବର୍ଷା, ବିଜୁଳି, ମେଘ ଅନ୍ଧାର। ଗାଡ଼ି ଛାଡ଼ିଲା - ଷ୍ଟେସନରେ ପଡ଼ି ରହିଲେ, ମାତ୍ର ସେହି ସୁଦର୍ଶନା। ସେହି ଷ୍ଟେସନ ବାଟରେ ସୁଦର୍ଶନା ସହିତ ପୁନଃ ସାକ୍ଷାତ୍। ଏକାବେଳେ ନିକଟରେ। ସୁଦର୍ଶନା କଣ କମ୍ ସହିଚି? ସୁଦର୍ଶନା ଧନୀର ପତ୍ନୀ। ନାନା ବିଳାସରେ, ଆରାମର ସୁଖ ଶେଯରେ ପଡ଼ି ସୁଦ୍ଧା, ସୁଦର୍ଶନା ଜୟରାଜଙ୍କୁ ଦେଖିଲମାତ୍ରେ ହଠାତ୍ ପାଗଳିନୀ ଭଳି ଘର ଛାଡ଼ି ପଳାଇଯାଉଚି; ମାତ୍ର ଭେଟୁଚି କାହାକୁ ନା, ଜୟରାଜଙ୍କୁ। ଦୁଇଜଣ ଦୁଇଜଣଙ୍କୁ ଚାହିଁଥିଲେ। କେହି କାହାକୁ ବାସ୍ତବ ଜଗତରେ ପାଇ ନାହାନ୍ତି। ପରସ୍ପରଠାରୁ ବହୁଦୂରକୁ ପଳାଇ ସୁଦ୍ଧା, ହଠାତ୍ ନିଷ୍ଠୁର ନିୟତି ପୁଣି ଏକାବେଳକେ ନିକଟକୁ ଆଣି ମିଳାଇଦେଉଚି, କିନ୍ତୁ ଏଥର ଆତ୍ମଚେତନା ହେଲା - ଦେହର ପଳାୟନ, ଦେହର ଦୂରତା କେବଳ ଅଧିକ ନୈକଟ୍ୟ ବୃଦ୍ଧିକରିଥିଲା ସିନା! ଆଚ୍ଛା, ଅଧିକ ନିକଟକୁ ଆସି କଣ ହେଲା? ଏକାବେଳେ ପଳାଇବାକୁ ହେଲା - ସୁଦର୍ଶନା ଫେରିଗଲା - ଆଉ ଜୟରାଜ ଫେରିଗଲା। ଜଗତରେ ପରସ୍ପରକୁ ସ୍ୱାମୀସ୍ତ୍ରୀ ରୂପେ ପାଇବାର ପ୍ରବଳ ଆକାଂକ୍ଷା କଦାପି ଫଳୀଭୂତ ହୋଇନଥିଲା। ମାତ୍ର ଦେହର ଅତି ନିକଟରେ ଦେହକୁ ପାଇ ସୁଦ୍ଧା ଦେହ ଉପଭୋଗ୍ୟ ହେଲା ନାହିଁ। କାରଣ ଦେହପ୍ରାପ୍ତିଠାରୁ ଦେହାତୀତ କିଛି ମହାନ୍ ପଦାର୍ଥର ପ୍ରାପ୍ତି ହୋଇସାରିଥିଲା। ସେହି Realisation ବାକି ଥିଲା - ସେହି ଆତ୍ମାନୁଭୂତି -

ଜୟରାଜ କହୁଚି- ସୁଦର୍ଶନା, ରହ ମାତ୍ର ସୁଦର୍ଶନା ଚାଲିଯାଉଚି। କାରଣ ସୁଦର୍ଶନା ଜୟରାଜ ସହିତ ଯିବାକୁ ଘରୁ ବାହାରି ନାହିଁ। ବାହାରିଚି– କର୍ତ୍ତବ୍ୟବୋଧରେ, ବାହାରିଚି ସତ୍ୟାନୁରୋଧରେ। ପତିକୁ ସ୍ପଷ୍ଟ କହିଚି - କଣ ନାଁ ସେ ପ୍ରତିବ୍ରତା ନୁହେଁ, ଅଥଚ ସେ ଥିଲା ଜଣେ କର୍ତ୍ତବ୍ୟଶୀଳ ପତ୍ନୀ। ସେ ଥିଲା, ଗୋଟିଏ ପରିପୂର୍ଣ୍ଣ ସଂସାରରେ ଅଭାବର ବହୁ ଦୂରେ - ପ୍ରେମମୟ ପତିର କୋଳରେ। କିନ୍ତୁ ମନୋରାଜ୍ୟରେ ତାର ଥିଲା, କୋଉଠି ଯେପରି କିଛି ଖାଲି - କିଛି ଗୋଟାଏ ଅପୂର୍ଣ୍ଣତା, ଆଉ ହଠାତ୍ ତାର ଆତ୍ମବୋଧ ହେଲା ଜୟରାଜଙ୍କୁ ଦେଖି। ତାର ଅଭାବର କାରଣ ସେ ଭାବିଲା, ସେ ସ୍ୱାମୀ କତିରେ ଅବିଶ୍ୱାସିନୀ। ତାର ନୈତିକ କର୍ତ୍ତବ୍ୟନିଷ୍ଠା ତାକୁ ଘରୁ ବାହାରକଲା।

ଏ ଗୋଟିଏ ସାମାନ୍ୟ ଉଦାହରଣ। ଏହାଙ୍କର ବିଶିଷ୍ଟ ଉପନ୍ୟାସ 'ସୁନୀତା' ହିନ୍ଦୀସାହିତ୍ୟ ପ୍ରତିଯୋଗିତାରେ ଟ୫୦୦ ଟଙ୍କା ପୁରସ୍କାର ପ୍ରାପ୍ତ। ପରଖ, ତ୍ୟାଗପତ୍ର, ତପୋଭୂମି ଆଦି ଯେ କୌଣସି ସାହିତ୍ୟିକ ପକ୍ଷରେ ବିଶେଷ କୃତିତ୍ୱ ଓ ଗୌରବର କାରଣ।

ହିନ୍ଦୀର ବୟୋବୃଦ୍ଧ ଲେଖକ ମୈଥିଳୀଶରଣ ଗୁପ୍ତଙ୍କର ସାନଭାଇ ଶ୍ରୀ ସିୟାରାମ ଶରଣ। ଏ ହିନ୍ଦୀର ଜଣେ ଉଦୀୟମାନ ଲେଖକ। କଥା, କବିତା, ନାଟକ ଓ ଉପନ୍ୟାସ ଆଦି ବହୁବିଧ ରଚନାରେ ଯାଙ୍କର କୃତିତ୍ୱ ଅଛି। ଅତି ସରଳ, ନିରାଡମ୍ବର, ଗ୍ରାମ୍ୟଧରଣର। ଅସହଯୋଗୀ ଏବଂ ବିଶିଷ୍ଟ ସାହିତ୍ୟିକ ପରିବାରର ଜଣେ ଏକନିଷ୍ଠ ସାଧକ ଏ। ଯାଙ୍କର ଅତି ସରଳ ଓ ମର୍ମସ୍ପର୍ଶୀ ରଚନା 'ନାରୀ' ଗୋଟିଏ ବିଶିଷ୍ଟ ଉପନ୍ୟାସ। 'ନାରୀ ପଢ଼ିଲେ ଓଡ଼ିଆ ପାଠକ ଭାବିବେ, ବୋଧହୁଏ ହିନ୍ଦୀଭାଷାରେ କୌଣସି ଓଡ଼ିଶା ଗାଁର ନିତ୍ୟ ପରିଚିତ ଘଟଣା ସମ୍ବଳିତ ଲେଖାଟିଏ ପଢୁଛନ୍ତି ବୋଲି। ବୃନ୍ଦାବନ ଓ ଯମୁନା କ୍ଷୁଦ୍ର କୃଷକ ପରିବାର। ବୃନ୍ଦାବନ କଲିକତା ଯାଇଚି କୁଲିରୂପେ - ଘରେ ଏକାକିନୀ ଯମୁନା ପୁଅ ହରଲାଲକୁ (ଓରଫ ହିଲ୍ଲୀ) ଧରି ସଦା ଡାକବାଲାର ଚିଠିକୁ ପ୍ରତୀକ୍ଷାକରି ବସିଚି। ବହୁ ବର୍ଷରୁ ଦେଶାନ୍ତରୀ ବୃନ୍ଦାବନ କୁସଂଗରେ ପଡ଼ି ଘରକୁ ଚିଠି ପତ୍ର ସୁଦ୍ଧା ଦବା ବନ୍ଦ କରିଚି, ବାପ ଝୁରି ଝୁରି ମଲା। ମହାଜନ ଓ ଜମିଦାର ମୋତିଲାଲର ଦାଉ, ପ୍ରତିବେଶୀ ଅଜିତର ମହାମାନବିକତା, ମହିମାମୟୀ ଗ୍ରାମ୍ୟବାଳା ଯମୁନାର ନିରାଡ଼ମ୍ବର ମହାନ୍ ଚରିତ୍ର ପଢୁ ପଢୁ ପାଠକର ହୃଦୟ ସହରର ଦୂଷିତ ବାତାବରଣ ଛାଡ଼ି, କାହିଁ ସେ ଦୂର ପଲ୍ଲୀ ଗ୍ରାମର କ୍ଷେତ, ପକ୍‌କା କୂଅ, ଆମ୍ବଗଛ ମୂଳର ଅନ୍ଧାରୁଆ ଛାଇ ତଳେ ପହଞ୍ଚିଯିବ। ସେହି ଆମ୍ବଗଛକୁ ଯୁମନାର ସ୍ୱାମୀ ଓ ସେ ଦୁହେଁ ପୋତିଥିଲେ। ତାଙ୍କର ଏକମାତ୍ର ପୁଅ ହରିଆର ସହୋଦର ଭାଇ ଭଳି ଯମୁନାର ବାତ୍ସଲ୍ୟରେ ପାଳିତ ସେହି ଆମ୍ବଗଛ। ଶେଷକୁ ଦିନେ ଜମିଦାର ନେଉଚି - କେମିତି ନେଲା, ବଡ଼ କରୁଣ ସେ କାହାଣୀ, ବଡ଼ ମର୍ମସ୍ପର୍ଶୀ ସେ କଥା - ପାଠକେ ନିଜେ ପଢ଼ିଲେ ବୁଝିବେ।

ହିନ୍ଦୀର ମୁକୁଳିତ କବିତା କାନନରେ କୋକିଳ ଶ୍ରୀମତୀ ମହାଦେବୀ ବର୍ମା ଭାରତୀୟ ନାରୀ-କବି-ଗଣ ମଧ୍ୟରେ ଛାୟାବାଦ (Mysticism) ରେ ଶୀର୍ଷ ସ୍ଥାନୀୟ। ବର୍ତ୍ତମାନ ସେ ଏଲ୍ଲାବାଦର ବିଖ୍ୟାତ ହିନ୍ଦୀ ମାସିକ ପତ୍ରିକା 'ଚାନ୍ଦ'ର ସଂପାଦିକା। ତାଙ୍କର କାନ୍ତ–ଲଳିତ–ମଧୁର ପଦ୍ୟାବଳୀ ପଢୁ ପଢୁ ମନ ଆନନ୍ଦ ରସରେ ଭରିଉଠିବ। ହିନ୍ଦୀରେ କୋମଳ ଭାବ ଓ ମଧୁର ରଚନାରେ ସେ ସର୍ବଶ୍ରେଷ୍ଠା ଏବଂ ଭାବ ଓ ଭାଷାରେ ଅଦ୍ୱିତୀୟା କହିଲେ ଅତ୍ୟୁକ୍ତି ହେବ ନାହିଁ। ତାଙ୍କର କବିତା, ମାନବର ମନସ୍ତତ୍ତ୍ୱକୁ ଘେନି। ନୀହାର, ନୀରଜା, ରଶ୍ମି ଆଦି ତାଙ୍କର ବିଶିଷ୍ଟ କବିତା ପୁସ୍ତକ।

ହିନ୍ଦୀ କବିତା ଓ ନାଟକର ତ୍ରିବେଣୀଧାରା ସୁମିତ୍ରା ନନ୍ଦନ ପନ୍ଥ, ଶ୍ରୀ ସୂର୍ଯ୍ୟକାନ୍ତ ତ୍ରିପାଠୀ, ଶ୍ରୀ ଜୟଶଙ୍କର ପ୍ରସାଦ ସାଧାରଣତଃ 'ପନ୍ଥ, ପ୍ରସାଦ, ନିରାଲା'' ନାମରେ ପରିଚିତ। ଆଧୁନିକ ହିନ୍ଦୀ କବିତା ସାହିତ୍ୟ ଏମାନଙ୍କ ନିକଟରେ ବହୁଭାବରେ ଋଣୀ। ଏମାନଙ୍କ ମଧ୍ୟରେ ପ୍ରସାଦଙ୍କ ଆସନ ସର୍ବଶ୍ରେଷ୍ଠ। ହିନ୍ଦୀର ଦୁର୍ଭାଗ୍ୟକୁ ମାତ୍ର ୪୦ ବର୍ଷ ବୟସରେ, ଗତ ନଭେମ୍ବର

ମାସରେ କାଶୀରେ ସେ ପରଲୋକ ଗମନକଲେ। ହିନ୍ଦୀ ଉପନ୍ୟାସ ସମ୍ରାଟ ପ୍ରେମଚନ୍ଦ୍ରଙ୍କର ଦେହାନ୍ତ ପରେ, ପ୍ରସାଦଙ୍କର ଅକାଳମୃତ୍ୟୁ ହିନ୍ଦୀ ସାହିତ୍ୟକ ଜଗତ ଲାଗି ଭୟଙ୍କର ଦୁର୍ଘଟଣା। ପୁଣି କାଶୀର ଦୁଇଜଣ ସାହିତ୍ୟରଥୀ ପରେ ପରେ ଇହସଂସାରରୁ ବିଦାୟନେଲେ। ଏମାନଙ୍କର ଅସଂଖ୍ୟ ରଚନା, ବହୁ ନାଟକ, କବିତା, ଗାଥା ଓ ଗଦ୍ୟକାବ୍ୟ– ହିନ୍ଦୀ ସାହିତ୍ୟର ସ୍ଥାୟୀ ସଂପତ୍ତି। ପ୍ରସାଦ କେତୋଟି କାହାଣୀ ମଧ୍ୟ ଲେଖିଛନ୍ତି। ଏମାନଙ୍କ ରଚନାରେ ବଙ୍ଗଳାର ପ୍ରଭାବ ଅତ୍ୟଧିକ ଏବଂ ଇଂରାଜୀର ପ୍ରଭାବ ମଧ୍ୟ ଜଣା ନୁହେଁ। ଏହିମାନଙ୍କର ପଦାଙ୍କ ଅନୁସରଣକାରୀ ''ବିଶାଳ ଭାରତ'' ନାମକ କଲିକତାର ବିଖ୍ୟାତ ହିନ୍ଦୀ ମାସିକ ପତ୍ରର ସଂପାଦକ ନବଯୁଗର ଅସହଯୋଗୀ କବି ଓ କାହାଣୀକାର ଶ୍ରୀ ବାତ୍ସାୟନ ଓରଫ ''ଶ୍ରୀ ଅଜ୍ଞେୟ''। 'ଭଗ୍ନଦୂତ' ଏହାଙ୍କର ଓଜସ୍ୱିନୀ କବିତାର ସମଷ୍ଟି। ନିଜ ଜେଲ ଜୀବନର ଅଭିଜ୍ଞତା ସମ୍ବଳିତ ଅନେକ କବିତା ଓ କାହାଣୀ ଏ ମହାଶୟ ଲେଖିଛନ୍ତି।

ଅସହଯୋଗିନୀ ମହାଓଜସ୍ୱିନୀ ନାରୀକବି ରାଜପୁତ ରମଣୀ ଶ୍ରୀମତୀ ସୁଭଦ୍ରା କୁମାରୀ ଚୌହାନ୍ - ''ଖୁବ୍ ଲଡ଼ୀ ମର୍ଦ୍ଦାନୀଥି, ଓହତ ଝାନ୍‌ସିବାଲୀ ରାନୀଥି''।

ରାଣୀ ଲକ୍ଷ୍ମୀବାଈଙ୍କ ବିଷୟରେ ଲିଖିତ ଏହି ଅମର କବିତା ଆଧୁନିକ ହିନ୍ଦୀଭାଷୀଙ୍କର ଘରେ ଘରେ ଦୁନ୍ଦୁଭି ନିନାଦ ଭଳି ଶୁଣାଯାଏ।; ମହାଦେବୀ ଯେପରି କବିତା କାନନର କୋକିଳା, ସୁଭଦ୍ରା ସେହିପରି କବିତା ରଣଚଣ୍ଡୀଙ୍କର ତୂର୍ଯ୍ୟ ନିନାଦ। ତାଙ୍କ କବିତା ରାଜନୈତିକ ପ୍ରାଣବତ୍ତାରେ ପରିପୂର୍ଣ୍ଣ। ବୀର ରସର ଠାଏ ଠାଏ ଅତି ସୁନ୍ଦର ପରିସ୍ଫୁରଣ। ବାସ୍ତବିକ ହିନ୍ଦୀ ଭାଷା ଜଗତରେ ସୁଭଦ୍ରା ଓ ମହାଦେବୀ ଦୁଇଜଣ ଅମର ପ୍ରତିଭାଶାଳିନୀ। ତାଙ୍କ ପଛକୁ ଅନେକ ନାରୀକବି ଓ ଲେଖିକା ଅଛନ୍ତି। ହିନ୍ଦୀ ଉପନ୍ୟାସ ଜଗତରେ ଅଗ୍ରଗଣ୍ୟା ପ୍ରବାସୀ ବଙ୍ଗମହିଳା ଶ୍ରୀମତୀ ଉଷାଦେବୀ ମିତ୍ରା, ବଙ୍ଗବାଳା ହେଲେ ମଧ୍ୟ ହିନ୍ଦୁସ୍ଥାନ-ବାସୀ ଏବଂ ହିନ୍ଦୀ ଭାଷାଭାଷୀ ଉପନ୍ୟାସ ଜଗତରେ ନାରୀ ଲେଖିକା ମଧ୍ୟରେ ଉଷା ମିତ୍ରଙ୍କର ସାଧନା ସର୍ବଶ୍ରେଷ୍ଠ। - ସେହିପରି କାହାଣୀ ରାଜ୍ୟରେ ପ୍ରେମଚାନ୍ଦଙ୍କ ପତ୍ନୀ ଶ୍ରୀମତୀ ଶିବରାଣୀ ଦେବୀ। ସୁଭଦ୍ରା କୁମାରୀ ମଧ୍ୟ ଜଣେ ବିଶିଷ୍ଟ କାହାଣୀ - ଲେଖିକା, ସ୍ୱର୍ଗୀୟା ସୁକବି ଶ୍ରୀମତୀ ପୁରୁଷାର୍ଥବତୀ ଏବଂ ତାଙ୍କର ପତି ଶ୍ରୀ ଚନ୍ଦ୍ରଗୁପ୍ତ ବିଦ୍ୟାଳଙ୍କାର, ଜଣେ କବିତାରେ ଏବଂ ଜଣେ କାହାଣୀରେ, ହିନ୍ଦୀରେ ଉଚ୍ଚାସନ ପ୍ରାପ୍ତ। ମହାରାଷ୍ଟ୍ରୀୟ ଶ୍ରୀ ପ୍ରଭାକର ମାଡ଼ବେ, ହିନ୍ଦୀର ଜଣେ ଭଲ ଲେଖକ। କମଳାବତୀ ମଧ୍ୟ ଉଦୀୟମାନ ମାରବାଡ଼ୀ କବି। ଶ୍ରୀମାତୀ ଜୀନବଘରିଆ, ଶ୍ରୀ କବିବଚନ, ସୁସ୍ନିଗ୍ଧ କବିତା ରସର ମନ୍ଦାକିନୀ ବୁହାଉଛନ୍ତି। ହାଲା ଓ ମଧୁଶାଳାର ରଚୟିତା ଏବଂ ଶ୍ରୀ ଅବେଧଶ ଭାରତୀ, ହରି, କରୁଣେଶ, ପ୍ରେମିବମଲ, ବିକଳ, ନବୀନ ସନାତନ, ନଳିନୀ, ଲଲ୍ଲୀ (ବିହାରର ଶ୍ରୀମତୀ ତୋରଣ ଦେବୀ ଶୁକ୍ଳା) ଆଦି ନବୀନ କବି ଓ ରଚୟିତ୍ରୀବୃନ୍ଦଙ୍କର ଗୋଟି ଗୋଟି ପରିଚୟ ଲେଖିଲେ ବଡ଼ ପୋଥିଟିଏ ହେବ। ସୁଦୂର ଉତ୍କଳବାସିନୀ ହେଲେ ମଧ୍ୟ ସୌଭାଗ୍ୟକ୍ରମେ ଦିଲ୍ଲୀବାସଯୋଗୁଁ ଏମାନଙ୍କର ପରିଚୟ ଲାଭର ବିଶେଷ ସୁଯୋଗ ଘଟିଛି। ଏମାନଙ୍କୁ ଛାଡ଼ିଦେଲେ ବହୁ ଉର୍ଦ୍ଦୁ ଭାଷାର ଲେଖକ ଓ ଲେଖିକାଙ୍କ ସହିତ ମୋର ସାହିତ୍ୟକ ବନ୍ଧୁତ୍ୱର ସୁଯୋଗ ଘଟିଛି।

ମାଧୁରୀ ସଂପାଦକ ବ୍ରଜଭାଷାର ବିଶିଷ୍ଟ ଲେଖକ ଶ୍ରୀ ଦୁଲାରେଲାଲ ଭାର୍ଗବଙ୍କ ସହିତ ଦେଖା ହୋଇଥିଲା। ହିନ୍ଦୀରେ ତାଙ୍କ ସ୍ଥାନ ଅତି ଉଚ୍ଚରେ ସତ୍ୟ; ମାତ୍ର ସେ ସ୍ୱଭାଷାଭିମାନୀ। ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ଭାଷାକୁ ଯେପରି ନୀଚଭାବରେ ସେ ସମାଲୋଚନା କଲେ, ତାଙ୍କ ପ୍ରତି ମୋର ସଦ୍‌ଭାବ ବଢ଼ିବା ଅପେକ୍ଷା, ଏପରି ସାହିତ୍ୟିକ ବ୍ୟକ୍ତିମାନେ ଯେ ରାଷ୍ଟ୍ରଭାଷାପାଇଁ ଆପଣାର ମୌରସୀ ପଟ୍ଟା ନେଇଛନ୍ତି, ଏହିପରି ମନେହେଲା। ଉପରଲିଖିତ କବିଙ୍କ ମଧ୍ୟରେ ସମସ୍ତେ ୟୁ:ପି:ର ଲୋକ ନୁହନ୍ତି- ପଞ୍ଜାବୀ, ବୁନ୍ଦେଲଖଣ୍ଡୀ, ବଙ୍ଗାଳୀ, ମହ୍ରଟ୍ଟୀ, ଗୁଜରାଟୀ, ରାଜପୁତାନାବାସୀ– ପ୍ରାୟ ସବୁ ପ୍ରାନ୍ତର ଲୋକ ଅଛନ୍ତି। ଏପରି କି ଦାକ୍ଷିଣାତ୍ୟବାସୀ, ମାନ୍ଦ୍ରାଜୀ ଓ ତେଲୁଗୁଙ୍କ ମଧ୍ୟରେ ମଧ୍ୟ କେହି କେହି ରାଷ୍ଟ୍ରଭାଷାକୁ ଯଥେଷ୍ଟ ଲେଖା ସଂପରି ଦାନ କରିଛନ୍ତି। କିନ୍ତୁ ସେମାନଙ୍କ ସହିତ ଚାକ୍ଷୁଷ ପରିଚୟ ନ ଥିବାରୁ ଏ ପ୍ରବନ୍ଧରେ ସେମାନଙ୍କ ବିଷୟ କିଛି ଲେଖିଲି ନାହିଁ।

ଉତ୍କଳୀୟ ପାଠକେ ଭାବୁଥିବେ, ଓଡ଼ିଆର ଲେଖନୀରୁ ବୋଧହୁଏ ହିନ୍ଦୀରେ କିଛି ଲେଖା ବାହାରି ନାହିଁ। କିନ୍ତୁ ତାହା ନୁହେଁ - ଉତ୍କଳର ମଧ୍ୟ ନଗଣ୍ୟ କେହି ହିନ୍ଦୀକୁ ନିଜର ଯତ୍‌ସାମାନ୍ୟ ଦାନ ଦେବାକୁ ଚେଷ୍ଟିତ। ନିଜ ଘର କଥା ନିଜେ ଲେଖିବା ଭଲ ନୁହେଁ, ଅତଏବ କ୍ଷାନ୍ତ ହେଲି।

ହିନ୍ଦୀ ମହିମାମୟୀ ରାଷ୍ଟ୍ର ଭାଷା। ''ହିନ୍ଦୀ, ହିନ୍ଦୁ, ହିନ୍ଦୁସ୍ଥାନ'' - ଏ ଆଜି ଯେପରି ଆମର ପୂଜାର ତ୍ରିମୂର୍ତ୍ତି। ଆମେ ଉତ୍କଳୀୟ ହେଉ କି ବଙ୍ଗାଳୀ ହେଉ, ଗୁଜରାଟୀ ହେଉ କି ମହାରାଷ୍ଟ୍ରୀ ହେଉ, ଆନ୍ଧ୍ର ହେଉ ଅଥବା କେରଳୀ ହେଉ, ଆମର ସମୁଦାୟ ଭାଷା, ଆମର ସମୁଦାୟ ବାଣୀବିଳାସ ଘେନି ଭାରତୀର ମନ୍ଦିର ତିଆରିହୋଇଚି। ପ୍ରାନ୍ତୀୟ ହିନ୍ଦୀ ଆମର ପୂଜ୍ୟ ନୁହେଁ; ସେ ଆମର ଭାଷା ଭଳି ବିରାଟ ହିନ୍ଦୀର ଅଂଶ ବିଶେଷ। ଆମର ବିରାଟ ଭାରତୀୟ ମହାଭାଷାର ବିରାଟ ସ୍ୱପ୍ନ ମୁଁ ଦେଖୁଚି। ତାର ଲିପି ସଂସ୍କୃତର ସେହି ''ଦେବନାଗରୀ''। ବେଦମାତା ବ୍ରହ୍ମବାଣୀ ସାବିତ୍ରୀ ଓ ଗାୟାତ୍ରୀର ଝଙ୍କାରରେ ପରିପୂର୍ଣ୍ଣ। ପ୍ରାକୃତିର ଆନନ୍ଦ ପ୍ରକୃତିରେ ଉଚ୍ଛ୍ୱସିତା-ଭାରତର ଆସମୁଦ୍ର ହିମାଚଳର ପୁରପଲ୍ଲୀ ନିନାଦିତ ସେଇ ମହାନ୍ ରାଷ୍ଟ୍ରଭାଷାର ବିଭିନ୍ନ ବେଶଭୂଷା, ବିଭିନ୍ନ ମଧୁର–ସୁନ୍ଦର–କାନ୍ତ–ରୌଦ୍ର–କୋମଳ କଠୋର ରୂପ, ହୀମାଦ୍ରି ଶିଖରର ଗିରି ଗୌରୀ ଗୁରୁଠାରୁ କନ୍ୟା କୁମାରୀର ତୀର–ଧୌତକାରୀ ମହା ମହୋଦଧିର ତରଙ୍ଗ-ମାଳା ପର୍ଯ୍ୟନ୍ତ ତାର ମହାନ୍ ବିସ୍ତାର। ଭାରତର ଆକାଶ ବତାସ ଗୁଞ୍ଜାୟମାନକରି ଯେଉଁ ମହା ମହନୀୟା ମହିମାମୟୀ ବାଣୀ ସରସ୍ୱତୀ ଭାରତର ହୃଦୟ ଶତଦଳରେ ସମାସୀନା, ତାଙ୍କରି ପବିତ୍ର ପୂଜାବାସର ଶ୍ରୀ ପଞ୍ଚମୀରେ ଭାରତୀୟ ରାଷ୍ଟ୍ରଭାଷାର ଏ ସ୍ୱରୂପ ମୁଁ ଉତ୍କଳୀୟ ପାଠକଙ୍କୁ ଉପହାର ଦେଲି।



# ହିନ୍ଦୀ ସାହିତ୍ୟର କ୍ରମବିକାଶ ସମ୍ବନ୍ଧରେ ପଦେଅଧେ

ତା୪।୩।୩୮ର ଦୈନିକ ଆଶାରେ, ସହକାରର ସମାଲୋଚନା ପ୍ରସଂଗରେ ଶ୍ରୀ ରାମଚନ୍ଦ୍ର ଦାସଙ୍କ ଉକ୍ତ ଲେଖା ବିଷୟରେ ଉତ୍କଳୀୟ ପାଠକପାଠିକାମାନଙ୍କୁ ଆହୁରି କେତୋଟି କଥା କହିବାର ଅଛି। ପ୍ରଥମ କଥା, ଲେଖାଟିର ନାମକରଣ ବୋଧହୁଏ ''ମୋ ଦୃଷ୍ଟିରେ ହିନ୍ଦୀ ସାହିତ୍ୟର କ୍ରମବିକାଶ'' ବୋଲି କରିଥିଲେ ଠିକ୍ ହୋଇଥାନ୍ତା। କାରଣ ହିନ୍ଦୀ ବର୍ତ୍ତମାନ ବାଇଶକୋଟି ଲୋକଙ୍କର ମାତୃଭାଷା। ପୁଣି ଭାରତର ରାଷ୍ଟ୍ରଭାଷା, ହିନ୍ଦୀର ସବୁ ବିଷୟରେ ମୁଁ ସର୍ବଜ୍ଞାତା ନୁହେଁ, ମଧ ସବୁ ଲେଖକଙ୍କୁ ଜାଣେ ନାହିଁ। ଯେଉଁମାନଙ୍କ ସହିତ ସାକ୍ଷାତ୍ ପରିଚୟ, ପତ୍ର ବ୍ୟବହାର ଆଦି ଅଛି, ସେହିମାନଙ୍କ ବିଷୟ ବିଶେଷ ଭାବରେ ଲେଖି ମୋ ଦେଶର ବହୁଦୂରରେ ଥିବା ପାଠକପାଠିକା ଓ ଲେଖକ ଲେଖିକାମାନଙ୍କ ନିକଟରେ ସେମାନଙ୍କୁ କିୟଦଂଶରେ ପରିଚିତ କରାଇବାପାଇଁ ମୋର କ୍ଷୁଦ୍ର ପ୍ରୟାସ ମାତ୍ର। ଶ୍ରୀ ମୋହନଲାଲ୍ ମୋହତଙ୍କୁ ମୁଁ ଆଦୌ ଜାଣେ ନାହିଁ। ତାଙ୍କ ଲେଖା ଏ ପର୍ଯ୍ୟନ୍ତ ପଢ଼ିନାହିଁ। ଅତଏବ ତାଙ୍କ ବିଷୟରେ କଣ ବା ଲେଖିଥାନ୍ତି? ଯାହା ହେଉ, ମୁଁ ତାଙ୍କର ପରିଚୟ ପାଇଲେ ବଡ଼ ସୁଖୀ ହେବି ଏବଂ ତାଙ୍କ ରଚନା ମଧ ପଢ଼ି ଆଦରର ସହିତ ତାଙ୍କ ବିଷୟରେ ଲେଖିବି। ଆମ ଲେଖକଶ୍ରେଣୀ ଭିତରେ ତ କିଛି ପରସ୍ପର ବୈରଭାବ ନାହିଁ ଯେ, ଜଣକୁ ଟେକି ଜଣକୁ ରସାତଳକୁ ପକାଇଦେବା? ଯେ ବା ସେପରି କରୁଥିବେ, ସେହିଟା ଲେଖକ ହିସାବରେ ତାଙ୍କର ଅନ୍ୟାୟ। କାରଣ ଆମେ ଲେଖକବର୍ଗ ସମଶ୍ରେଣୀଭୁକ୍ତ। ଆମ ଲେଖାର ଉତ୍କର୍ଷ, ଅପକର୍ଷ, ସମାଲୋଚନା ପାଇଁ ତ ବିଶାଳ ଜନସାଧାରଣ ରହିଛନ୍ତି। ଅସଂଖ୍ୟ ପାଠକ ଓ ଦେଶର ଅନ୍ୟ ବ୍ୟକ୍ତିମାନେ ଅଛନ୍ତି, ଯେଉଁମାନେ ଆମର ପ୍ରତିଭାର ତୁଲ୍ୟ ମୂଲ୍ୟ ଦେଇ ଆମର ଆସନ ନିର୍ଣ୍ଣୟ କରିବେ। ଅତଏବ ଗୟାବାଲା ଶ୍ରୀ ମୋହନଲାଲ୍ ମହତୋଙ୍କ ବିଷୟରେ କିଛି ନ ଜାଣିଥିବାରୁ, କିଛି ଲେଖିପାରି ନାହିଁ। ଅଳ୍ପଦିନ ହେଲା ଦିଲ୍ଲୀରୁ ''ଜୀବନ ସୁଧା'' ପତ୍ରରେ ଜଣେ 'ଲେଖକଙ୍କ' ନାମ ବାହାରିଛି। ସେଥିରେ ମଧ ତାଙ୍କ ନାମ ଖୋଜି ପାଇଲି ନାହିଁ। ବୋଧହୁଏ ସେ ଏ ଅଞ୍ଚଳରେ ଏତେ ପ୍ରସିଦ୍ଧ ହୋଇ ନାହାନ୍ତି। ଏହା ତାଙ୍କ ଲେଖାର ଦୋଷ ନୁହେଁ। ଭାରତ ବର୍ଷର ବିସ୍ତୃତି ଏବଂ ଆମ ଭାରତୀୟ ଲେଖକ ସଂପ୍ରଦାୟ ମଧରେ ଭାଷାଗତ ନାନା ଭିନ୍ନତା, ପୁଣି ଗୋଟିଏ ସାଧାରଣ ସଂସ୍କାର ଅଭାବ। ଆମେ ପରସ୍ପରକୁ କଣ ବା ଜାଣୁ? ଓଡ଼ିଶାର ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, ହରିହର ମହାପାତ୍ର, ସଚ୍ଚିଦାନନ୍ଦ ରାଉତରାୟ, ପଟ୍ଟନାୟକ, ମହାନ୍ତି, ଦାସ, ରଥ ଆଦି କେତେକ ବିଶିଷ୍ଟ ଲେଖକଙ୍କର ଅମୂଲ୍ୟ ଚିନ୍ତାଧାରା ଉତ୍କଳର ୪୦ ହଜାର ପଢ଼ିବା ଲୋକ (Reading Public) ମଧରୁ ବା କେତେ ହଜାରଙ୍କ ହାତରେ ପଡ଼ିଛି? ଅଖିଳ ଭାରତରେ ତାଙ୍କର ପରିଚୟ କେଉଁଠି? ରବିଠାକୁର, ଶରତ ଚାଟର୍ଜୀ,

ପ୍ରେମଚାନ୍ଦ, ବଙ୍କିମଚାନ୍ଦଙ୍କ ଭଳି କେତେ ଜଣ ବା ଭାଗ୍ୟବାନ ଲେଖକ ଦେଶ ବିଦେଶରେ ପରିଚିତ ? ଯେଉଁମାନେ ଦେଶକୁ ଚିନ୍ତାରତ୍ନ ଦାନ କରୁଛନ୍ତି, ସେହି ଦେଶର ଭାଗ୍ୟବିଧାତା ମହାମନୀଷୀ ଦେଶର ସୁପୁତ୍ରମାନେ ଅଧିକାଂଶ ସ୍ଥଳରେ ବଡ଼ ଗରିବ। ଏପରିକି ଦୁଇ ଓଳି ପେଟପୂରା ଅନ୍ନ ଅନେକଙ୍କ ଭାଗ୍ୟରେ ଜୁଟେ ନାହିଁ। ହିନ୍ଦୀର ଅତି ଶ୍ରେଷ୍ଠ କଳାକାର ଶ୍ରୀ ଜୈନେନ୍ଦ୍ରଙ୍କୁ ମୁଁ ଖୁବ୍ ଭଲ ରୂପେ ଜାଣେ। ତାଙ୍କର ସାହିତ୍ୟ ସାଧନା ମୋ ସାମ୍ନାରେ ଆରମ୍ଭ ହୋଇଛି। ଆଠଟି ବର୍ଷ ମଧ୍ୟରେ ସେ ହିନ୍ଦୀରେ ଏଡ଼େ ଉଚ୍ଚାସନ ପାଇଛନ୍ତି ଠିକ୍, ତାଙ୍କର ବ୍ୟକ୍ତିଗତ ଅବସ୍ଥା କଣ ? ଅଧିକାଂଶ ପତ୍ରିକାର ସଂପାଦକମାନଙ୍କର ଭିତିରି ଖବର କଣ ? ଅତଏବ ପରସ୍ପରର ସାହଚର୍ଯ୍ୟ, ପରସ୍ପରର ରଚନା ସହିତ ପରିଚିତ ହେବା ଭାଗ୍ୟ ମଧ୍ୟ ଅନେକଙ୍କର ନାହିଁ। ମୁଁ ବା ସବୁ ଲେଖକଙ୍କ ବିଷୟ କାହୁଁ ଜାଣିବି ? ବୋଧହୁଏ ଏପରି ଲେଖକ ଥିବେ, ଯେ ଆଜି ସୁଦ୍ଧା ଲୋକଲୋଚନକୁ ଆସିନାହାନ୍ତି, ଅଥଚ ଅତି ଶ୍ରେଷ୍ଠ ସାଧକ ଓ କଳାକାର। ମୋର ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ କାହାରିକୁ ଟେକିବା ବା କାହାରିକୁ ତଳେ କଚାଡ଼ିବା। ଏପରି ହୀନ ମନୋବୃତ୍ତି ନେଇ ମୁଁ କଦାପି ମୋର ଗତ ୧୬ ବର୍ଷର ସାହିତ୍ୟିକ ଜୀବନରେ ପଦେ ବି ଲେଖିନାହିଁ। କାରଣ ମୋର ଲେଖକ କର୍ତ୍ତବ୍ୟ ତା ନୁହେଁ। ଲେଖକଙ୍କର ପବିତ୍ର ଲେଖନୀ ଦେଶକୁ ବହୁମୂଲ୍ୟ ଚିନ୍ତାସମ୍ଭାର ଦାନ କରି ଉଚ୍ଚ, ଉନ୍ନତ କରିବା ଉଦ୍ଦେଶ୍ୟରେ ଉତ୍ସୃଷ୍ଟ ହେବା ଉଚିତ। କେହି ଯଦି ଏହା ନକରି ତଦ୍‌ବିପରୀତ ଆଚରଣ କରେ, ସେ ଯେଡ଼େ ବଡ଼ ଲେଖକ ବା ଲେଖିକା ହୁଅନ୍ତୁ, ତାଙ୍କର ପୁଣ୍ୟ କର୍ତ୍ତବ୍ୟରୁ ସେ ବିଚ୍ୟୁତ ହେଉଛନ୍ତି ବୋଲି ମୋର ମତ। ସମାଲୋଚକ ମହାଶୟ ଶ୍ରୀ ଦୁଲାରେଲାଲ୍ ଭାର୍ଗବଙ୍କ 'ମାଧୁରୀ' ସଂପାଦନ ସମ୍ବନ୍ଧରେ ମୋର ଭୁଲ୍ ସଂଶୋଧନ କରି ପାଠକ ପାଠିକାମାନଙ୍କର ଉପକାର କରିଛନ୍ତି। ସେଥିପାଇଁ ମୁଁ ତାଙ୍କ ନିକଟରେ କୃତଜ୍ଞ। ମୋର ଆହୁରି ଗୋଟିଏ ଭୁଲ ଶ୍ରୀମତୀ ତୋରଣଦେବୀଙ୍କ ବିଷୟରେ ହୋଇଚି। ସେ ବିହାରର ନୁହନ୍ତି, ତାଙ୍କର ଆଦି ସ୍ଥାନ ଜବଲପୁର- ବର୍ତ୍ତମାନ ସେ ପ୍ରୟାଗବାସିନୀ। ଯଦିଚ ତାଙ୍କ ପୂର୍ବ ପ୍ରକାଶିତ ପତ୍ରିକା ମୁଁ ପାଉଥିଲି, ମୋତେ ତାଙ୍କର ପ୍ରକୃତ ଜନ୍ମସ୍ଥାନ ବିଷୟରେ ସଠିକ ଖବର ଜଣା ନଥିଲା। ଏବେ ମୋରି ବିଷୟରେ ଓଡ଼ିଶାର ଅଧିକାଂଶ ଲେଖକ ଓ ପାଠକ କଣ ଜାଣିଥିବେ ? ଯେଉଁମାନେ ମୋ ଲେଖା ସହିତ ଘନିଷ୍ଠ ଭାବେ ପରିଚିତ, ସେମାନେ ହୁଏତ ଜାଣି ନଥିବେ, ମୋର ପ୍ରକୃତ ଜନ୍ମସ୍ଥାନ ଗୋଦାବରୀ ତୀରବର୍ତ୍ତୀ ଦଣ୍ଡକାରଣ୍ୟରେ, ଅଥବା ମୁଁ ଆବାଲ୍ୟ ବ୍ରହ୍ମଦେଶବାସିନୀ। ଏ ସବୁ ସାଧାରଣ ଭୁଲ୍। ତୋରଣଦେବୀ କାନ୍ୟକୁବ୍ଜ ଶୁକ୍ଳବଂଶୀୟା ବ୍ରାହ୍ମଣୀ। ଏଥିପାଇଁ ଅନେକ ତାଙ୍କୁ ''ପୂର୍ବୀ'' କହିଥାଆନ୍ତି। ଏଠି ''ପୂର୍ବୀ'' ବିହାର-ଓଡ଼ିଶା, କେବେ କେବେ ବଂଗ ଓ ମିଥିଳାକୁ ମଧ୍ୟ ବୁଝାଏ। ଦୁଲାରେଲାଲ ''ମାଧୁରୀ''ର କିମ୍ବା ଅନ୍ୟ କାହାରି ସଂପାଦକ ହୁଅନ୍ତୁ, ସେଥିରେ ମୋ ଲେଖାର ବିଶେଷ ସମ୍ବନ୍ଧ ନାହିଁ, ମାତ୍ର ସେ ଯେ ବ୍ରଜଭାଷାର ଜଣେ ବିଶିଷ୍ଟ ଆଧୁନିକ ଲେଖକ, ଏ ବିଷୟ ସମାଲୋଚକ ତାଙ୍କର ୧୯୩୬ ସାଲରେ ''ଦେବ

ପୁରସ୍କାର'' ପାଇବା କଥା ଉଲ୍ଲେଖ କରି, ମୋ ବ୍ୟକ୍ତବ୍ୟର ପୁଷ୍ଟି ସାଧନ କରିଛନ୍ତି। ଯାହାହେଉ, ସମାଲୋଚକ ମୋର ଲେଖାଟି ବୋଧହୁଏ ତରତରରେ ପଢ଼ି ତାର ମୂଳ ବିଷୟବସ୍ତୁର ଭାବାର୍ଥ ଧରିପାରିଲେ ନାହିଁ।

ଉତ୍କଳର ପୁରପଲ୍ଲୀର ଅସଂଖ୍ୟ ଲେଖକ, ପାଠକ କଣ ବା ଜାଣନ୍ତି ? ଜୈନେନ୍ଦ୍ର କିଏ, ସିୟା ରାମଶରଣ କିଏ ବା ମୋହନଲାଲ କିଏ ? ହିନ୍ଦୀ ଦିନକୁଦିନ ଉନ୍ନତି କରୁଚି, ମଧ୍ୟ ରାଷ୍ଟ୍ରଭାଷାର ଆସନ ଲାଭ କରି ପ୍ରାୟ ସାରା ଭାରତବର୍ଷରେ ବ୍ୟାପିଯାଇଚି; ତଥାପି ଉତ୍କଳୀୟ ଲେଖକମାନେ ଭାବ, ଚିନ୍ତା ଓ ଭାଷାର ସୌଷ୍ଠବ ଦିଗରୁ ଦେଖିଲେ ହିନ୍ଦୀ ଲେଖକମାନଙ୍କଠାରୁ କୌଣସି ଅଂଶରେ ଊଣା ନୁହନ୍ତି, ବରଂ ସ୍ଥଳବିଶେଷରେ ଉତ୍କୃଷ୍ଟ; କିନ୍ତୁ ଓଡ଼ିଶା ଗୋଟିଏ କ୍ଷୁଦ୍ର ପ୍ରଦେଶ, ପୁଣି ବହୁକାଳ ନିଜର ସ୍ୱାତନ୍ତ୍ୟ ହରାଇ ଅନ୍ୟାନ୍ୟ ପ୍ରଦେଶ ସହିତ ଯୋଡ଼ା ହୋଇ ରହିଥିବାରୁ ତାର ସାହିତ୍ୟ ଗୌରବ ଅବଧି ବାହାରେ ଫୁଟିପାରି ନାହିଁ। କିନ୍ତୁ ସେ ଦିଗରେ ମଧ୍ୟ ଚେଷ୍ଟା ଚାଲିଚି, ମୋର ଆଶା ଅଛି, ଅତି ଶୀଘ୍ର ଉତ୍କଳର ଅନେକ ଲେଖକଲେଖିକାଙ୍କର ସଂକ୍ଷିପ୍ତ ବିବରଣୀ ସଂଗ୍ରହକରି ହିନ୍ଦୀର କୌଣସି ମାସିକ ପତ୍ରରେ ଦେବାକୁ। ଦୁଃଖର ବିଷୟ, ମୁଁ ଓଡ଼ିଶାରୁ ବହୁ ବର୍ଷରୁ ବହୁଦୂରରେ ଅଛି। ଆଧୁନିକ ଅନେକ ଲେଖକଙ୍କ ରଚନା ସହିତ ପ୍ରାୟ ବିଶେଷ ପରିଚୟ ନାହିଁ, ତଥାପି ମୋର କତିପୟ ସାହିତ୍ୟିକ ମିତ୍ର ଏ ବିଷୟରେ ମୋତେ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ପ୍ରଦାନ କରିଛନ୍ତି। ଦେଖାଯାଉ, କେତେଦୂର ସଫଳତା ଲାଭରେ କ୍ଷମାଂ ହେବି।

ଭାରତୀୟ କଳା ଓ କୃତିର ଗୋଟିଏ ସମୂହ ସଂଗ୍ରହଲାଗି ଆଜି ସୁଦ୍ଧା କେହି ବିଶେଷ ଭାବରେ ଚେଷ୍ଟିତ ହୋଇ ନାହାନ୍ତି। ବିଶାଳ ଭାରତୀୟ ମହାଜାତିର ଅନ୍ତର୍ଗତ ଥାଇ ସୁଦ୍ଧା ଆମେ ଏକ ପ୍ରକାର ପରସ୍ପରଠୁଁ ବିଚ୍ଛିନ୍ନ। ଭାଷାର ବାହ୍ୟିକ ଭିନ୍ନତା, ବହୁଲିପିର ପ୍ରଚଳନ ଯୋଗୁଁ ଆମେ ଏକପ୍ରକାର କେହି କାହାକୁ ଭଲ ରୂପେ ଜାଣୁ ନା; ଅଥଚ ଆମ ଭାବନା, ଚିନ୍ତା ଓ ଜାତୀୟ ଆଶା ଆକାଂକ୍ଷା ଏକ କହିଲେ ଚଳେ। ରାଜନୈତିକ ଭାବରେ ଭାରତୀୟ ଜାତିକୁ ସୁଦୃଢ଼ ସଂଗଠନ ଦେବାପାଇଁ କଗ୍ରେସ ଭଳି ସଂସ୍ଥା ଦେଶରେ ଅଛି ଏବଂ ଦିନକୁ ଦିନ ଅତୀବ ଲୋକପ୍ରିୟ ହେଲାଣି, ଏହା ପ୍ରତ୍ୟକ୍ଷ ସତ୍ୟ; ମାତ୍ର ଭାରତୀୟ ସଂସ୍କୃତି– ଯାହାକୁ ଆମେ Indian Culture ବୋଲି କହୁ, ତାପାଇଁ ଗୋଟିଏ କଂଗ୍ରେସ ଭଳିଆ ସମବେତ ସଂସ୍ଥା ନାହିଁ। ଅନେକେ ହୁଏତ ଭାବୁଥିବେ, ବୋଧହୁଏ ପ୍ରୟୋଜନ ନାହିଁ ବା ଏପରି ସଂସ୍ଥାର ସମ୍ଭାବନା ମଧ୍ୟ ଦୁରାଶା। ୟୁରୋପରେ ଅନେକ ଦେଶ, ଅନେକ ଭାଷା। ସମସ୍ତେ ନିଜ ନିଜ ଦେଶର ସ୍ୱାର୍ଥରକ୍ଷାଲାଗି ପ୍ରାଣପଣେ ଚେଷ୍ଟିତ। ସେମାନଙ୍କ ମଧ୍ୟରେ ଅନେକ ବିଷୟରେ ଐକ୍ୟ ଥିଲେ ସୁଦ୍ଧା, ରାଜନୈତିକ ଭାବରେ ସେମାନଙ୍କର ପରସ୍ପର ମଧ୍ୟରେ ନାନା ବିଷମତା ରହିଚି। ଯାହା ଠିକ୍ କହିବାକୁ ଗଲେ, ଭାରତରେ ନାହିଁ। ୟୁରୋପରେ ବାହ୍ୟ ଏକତା ଭିତରେ ବିରାଟ ଭିନ୍ନତା; ଅଥଚ ଭାରତର ବାହ୍ୟ ଅନୈକ୍ୟ ଭିତରେ ଏକ ବିରାଟ ଏକତା ପ୍ରଚ୍ଛନ୍ନ। ଏ ଜାତି ଓଡ଼ିଆ, ବଂଗାଳୀ, ମର୍ହଟ୍ଟୀ, ତେଲୁଗୁ, ତାମିଲ, ଗୁଜରାତି, ୟୁପି, ସିପି, ପଞ୍ଜାବୀ ଏପରିକି

ଧାର୍ମିକ ଦୃଷ୍ଟିରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ପାର୍ସୀ ଆଦି ଭାଗରେ ବିଭକ୍ତ ହେଲେ ସୁଦ୍ଧା, ଯାଙ୍କର ନୈତିକ, ରାଜନୈତିକ– ଉଭୟ ସ୍ୱାର୍ଥ ଏକପ୍ରକାର; ଏକା କହିଲେ ଚଳେ। ଯାଙ୍କର ସମସ୍ୟା ମଧ୍ୟରେ ଇଂଲଣ୍ଡ, ଇଟାଲୀ, ଜର୍ମାନୀ, ସ୍ପେନର ଭିନ୍ନତା ନାହିଁ। ଭାରତୀୟ ଜାତି ଏକ ନ ହେଲେ ଦୁନିଆର ତିଷ୍ଠି ରହିବା ମଧ୍ୟ ତାଙ୍କପାଇଁ ସମ୍ଭବ ହେବ ନାହିଁ। ଆମେ ବିଚ୍ଛିନ୍ନ ଭାରତକୁ ଭାବି ପାରୁନା। ମଧୁବାବୁଙ୍କ ଭାଷାରେ ଆମେ ପିଲାଦିନୁଁ ଗାଇଚୁ -

ତୁହିମା ଜନମ ଭୂମି, ପବିତ୍ର ଭାରତ ଭୂମି,
ତୋର ପୁଣ୍ୟମୟ କୋଳେ ଜନ୍ମ ଆମ୍ଭର,
ଧନ୍ୟ ମହିମା ତୋହର, କାହିଁ ତାର ପଟାନ୍ତର,
ମସ୍ତକରେ ହିମାଳୟ ପର୍ବତବର।
ଦୁଇ ପାର୍ଶ୍ୱେ ଜଳଧି ବ୍ରହ୍ମପୁତ୍ର ସିନ୍ଧୁ ନଦୀ
ଚରଣରେ ବିରାଜିତ ମହାସାଗର।
ବିନ୍ଧ୍ୟ ଗିରିବର କଟିରେ,
ଗଙ୍ଗା ଆଦି କେତେ ନଦୀ ଶୋଭେ ଶରୀରେ।

ବଙ୍ଗର ଯୋଗେଶ ବାବୁଙ୍କର - ''ଦେଖ ବସ୍ତ! ସମ୍ମୁଖେତେ ପ୍ରସାରିତ ତବ ଭାରତେର ମାନଚିତ୍ର।'' ରାଷ୍ଟ୍ରୀୟ କବି ଦ୍ୱିଜେନ୍ଦ୍ର ଲାଲ ରାୟଙ୍କର 'ଚନ୍ଦ୍ରଗୁପ୍ତ' ନାଟକରେ ଭାରତର ବର୍ଣ୍ଣନା, ବଙ୍କିମ ବାବୁଙ୍କର ବନ୍ଦେ ମାତରମ୍ ପୁଣି ହିନ୍ଦୀରେ, ''ନ ତୁଲନା ଭାଇ ଜନମ ତୁମ୍ହାରା ହୁଆ ହେ ଭାରତ ଭୂପର, ଶିସପର ଶୋଭିତ ମହିମା ହିମାଚଲ କଟିମେଁ ବିନ୍ଧ୍ୟ ଭୂଧର।'' କଣ କେହି ଭାରତ ସନ୍ତାନ ଆପଣାର ଛଡ଼ା ଅନ୍ୟର କହି ପାରିବେ? ବ୍ରଜଭାଷାର ଗର୍ବିତ କବି ଶ୍ରୀ ଦୁଲାରେ ଲାଲ ଭାର୍ଗବ ଯେତେବେଳେ ମୋତେ କହିଲେ, ''ଓଡ଼ିଶାର ଅଛି କଣ? ଓଡ଼ିଶା ହିନ୍ଦୁସ୍ଥାନର ଗୋଟିଏ ଅତି ନଗଣ୍ୟ ପ୍ରାନ୍ତ। ତାର ପୌନେ କୋଟି ଲୋକଙ୍କ ମଧ୍ୟରେ ପ୍ରାୟ ଚାଳିଶ ହଜାର ଅକ୍ଷରଜ୍ଞାନ ସମ୍ବଳିତ ଲୋକ ଥିବେ। ସେଥିରେ ବୋଧହୁଏ ଦଶହଜାର ଖଣ୍ଡେ ପତ୍ରିକା ପଢୁଥିବେ କି ନା ସନ୍ଦେହ। ସେଠି କି ସାହିତ୍ୟ, ତାର ବା ମର୍ଯ୍ୟାଦା କଣ? ଯାହା କିଛି ହୋଇଛି, ଏହି ଯୁପି (ସଂଯୁକ୍ତ ପ୍ରାନ୍ତ)ରେ ହୋଇଚି। ରାମକୃଷ୍ଣ ଏଇଠି ଜନ୍ମିଛନ୍ତି, ଧର୍ମ ଏଇଠୁ ଉତ୍ପନ୍ନ। ବଙ୍ଗ ଓ ଉତ୍କଳର ବୈଷ୍ଣବ ସାହିତ୍ୟର ଆଦି ଲୀଳାଭୂମି ଏହି ବ୍ରଜଭୂମି। ''ମୁଁ କହିଲି'', ଏକଥା ସତ, କିନ୍ତୁ ଭାରତର ଯାହା ଯେଉଁଠି ଅଛି, ତା ଉପରେ ସବୁ ଭାରତୀୟର ସମାନ ଅଧିକାର। ଆମର ଜଗନ୍ନାଥ, ଆମର ବୈତରଣୀ କଣ ଏକଚାଟିଆ, ନା ସବୁ ଭାରତୀୟଙ୍କର? ଯଦି ଉତ୍କଳ ପ୍ରାନ୍ତକୁ ନିହାତି ନଗଣ୍ୟ ମନେକର, ତାର ହୀନତା ଭାରତୀୟଙ୍କ ଲାଗି ଅପମାନର ବିଷୟ। ମାତ୍ର ତା ନୁହେଁ, ପ୍ରଦେଶ ସାନ ହୋଇପାରେ; ଭାଷା ସାନ ନୁହେଁ କି ସାହିତ୍ୟ ନ୍ୟୂନ ନୁହେଁ। ଆପଣ ଓଡ଼ିଆ ଭାଷା ଜାଣନ୍ତି ନାହିଁ, କି ସାହିତ୍ୟ ପଢ଼ିନାହାନ୍ତି। ଯେ ଯାହା ନ ଜାଣେ, ସେ ତାର ବିରୁଦ୍ଧ ସମାଲୋଚନା

କରିବା ଅନ୍ୟାୟ। ବ୍ରଜଭାଷା ଓ ବ୍ରଜଧାମ ପ୍ରତି ଉତ୍କଳୀୟ ହିନ୍ଦୁମାନଙ୍କର ପରମ ଶ୍ରଦ୍ଧା। କିନ୍ତୁ ମୁଁ ଦେଖୁଚି, ଆପଣ କେବଳ ହିନ୍ଦୀକୁ ସଂଯୁକ୍ତ ପ୍ରାନ୍ତର ସଂପତ୍ତି କରି ରଖିବାକୁ ଚାହାନ୍ତି; ଏହା ଅସମ୍ଭବ। ଏହି ପ୍ରାନ୍ତୀୟ ବିଦ୍ୱେଷ ଘେନି ବଙ୍ଗାଳୀମାନେ ଭାରତର ଅନ୍ୟାନ୍ୟ ସବୁ ପ୍ରାନ୍ତକୁ ତୁଚ୍ଛ ଦୃଷ୍ଟିରେ ଦେଖି ସୁଦ୍ଧା ବର୍ତ୍ତମାନ ଅନ୍ୟାନ୍ୟ ପ୍ରାନ୍ତ ଜାଗ୍ରତ ହୋଇ ସେମାନଙ୍କ ଗର୍ବ ଚୂର୍ଣ୍ଣକରିଛି। ତଥାପି ବଙ୍ଗରେ ସମସ୍ତେ ଏପରି ନୁହନ୍ତି। ବିଶ୍ୱ-ଭାରତୀରେ ଭାରତ କାହିଁକି, ଜଗତର କଳା ଓ ସାହିତ୍ୟର ଉତ୍କୃଷ୍ଟ ପଦାର୍ଥମାନ ସଂଗୃହୀତ ହେଉଚି। କୌଣସି ଜାତି ସଂକୀର୍ଣ୍ଣ ବିଦ୍ୱେଷପୂର୍ଣ୍ଣ ମନୋଭାବ ନେଇ ଆଗକୁ ବଢ଼ିବା ସମ୍ଭବପର ନୁହେଁ।''

ପ୍ରକୃତରେ ସାହିତ୍ୟ ଜଗତରେ ବିଦ୍ୱେଷ ଅପେକ୍ଷା ଉଦାରତା ଓ ବିଶ୍ୱମାନବିକତା ହିଁ ଉନ୍ନତିର ପଥପରିଷ୍କାରକ। କିପରି ଭାରତରେ ଗୋଟିଏ ଉଦାର ନୈତିକ ସଂସ୍କୃତି ସଂଘ ସ୍ଥାପିତ ହେବ, ଏହାର ଚେଷ୍ଟା ମୁଁ ବହୁଦିନୁଁ କରି ଆସୁଥିଲି। ସନ ୧୯୨୭ ସାଲଠୁ ମୁଁ ଓ କବି ଶ୍ରୀ ଚକ୍ରଧର ମହାପାତ୍ର ଏହି ଉଦ୍ଦେଶ୍ୟରେ ଭାରତୀ-ତପୋବନର କଳ୍ପନା କରିଥିଲୁ। ୧୯୩୦ ସାଲରେ ଚକ୍ରଧର ମହାପାତ୍ର ଏହି ଯୋଗେ ଦିଲ୍ଲୀ ଆସିଥିଲେ। ମାତ୍ର ସେତେବେଳେ ମୁଁ, କି ସେ, ହିନ୍ଦୀ ମୋଟେ ଜାଣି ନଥିଲୁ। ଅତଏବ ବିଶେଷ କିଛି କାର୍ଯ୍ୟ ହୋଇପାରିଲା ନାହିଁ। ଗତ କେତେକ ବର୍ଷ ମଧ୍ୟରେ ହିନ୍ଦୀ ଶିଖିବାର ସୁଯୋଗ ପାଇ ହିନ୍ଦୀ ପ୍ରାନ୍ତର ଲେଖକ ଲେଖିକାମାନଙ୍କ ସହିତ, ମଧ୍ୟ ଦିଲ୍ଲୀ କେନ୍ଦ୍ରସ୍ଥଳ ହେବାରୁ ଭାରତର ପ୍ରାୟ ସବୁ ଦେଶର ଲୋକେ ଏଠି ଏକତ୍ର ହେବାର ସୁଯୋଗ ଥିବାରୁ, ଏବେ ପୁନର୍ବାର ଏହି ଉଦ୍ଦେଶ୍ୟକୁ କେବଳ ଉତ୍କଳରେ ସୀମାବଦ୍ଧ ନ ରଖି ଅଖିଳ ଭାରତୀୟ ରୂପ ଦାନକରିବା କାର୍ଯ୍ୟର ଉଦ୍‌ଯୋଗ ଚାଲିଚି। ମୋର ଆଶା, ଉତ୍କଳର ଲେଖକଲେଖିକା ଏଥିରେ ପୂର୍ଣ୍ଣ ସହଯୋଗ ଦାନକରିବେ। ବାରାନ୍ତରରେ ଭାରତୀ-ତପୋବନ ସମ୍ବନ୍ଧରେ ବିସ୍ତାରିତ ବିବରଣ ପ୍ରକାଶକରିବାର ବାସନାରହିଲା।

ଦିଲ୍ଲୀବାସୀ ଅନେକ ହିନ୍ଦୀ ଲେଖକ ଏବଂ ଝାନ୍‌ସୀର ଶ୍ରୀ ସିୟରାମ ଶରଣ (ତାଙ୍କ ଭାଇ ଶ୍ରୀ ମୈଥିଳୀ ଶରଣ) ଉଜ୍ଜୈନୀବାସୀ ଶ୍ରୀ ପ୍ରଭାକର ମାଚବେ ଏମ୍.ଏ.ସାହିତ୍ୟରତ୍ନ, ଜୀବନସୁଧାର ସଂପାଦକ ଶ୍ରୀ ଯଶପାଲ ଜୈନ ବି.ଏ.ଏଲ୍‌., ଏଲ୍‌.ବି.ବିଶାଳ ଭାରତର ସଂପାଦକ, ଶ୍ରୀ ସଚ୍ଚିଦାନନ୍ଦ ବାତ୍ସାୟନ ''ଶ୍ରୀ ଅଜ୍ଞେୟ'' ନିଜର ହାର୍ଦ୍ଦିକ ଶୁଭ କାମନା ମୋ ଠାକୁ ଜଣାଇଛନ୍ତି। ମୁଁ ମଧ୍ୟ ସହକାର ସଂପାଦକଙ୍କୁ ଏଥିଲାଗି ଅଭିନନ୍ଦନ ଦେଉଚି ଏବଂ ଶ୍ରୀ ଯଶପାଳ ଜୈନଙ୍କର ଉତ୍କଳୀୟ ଲେଖକଙ୍କୁ ସହକାର ଜରିଆରେ ଉପହୃତ ଏକ କପି ପଠାଉଅଛି।



# ଅନ୍ତୁଡ଼ିଶାଳର ଅନାଚାର

ମୋହର ଏହି ଅକିଞ୍ଚିତକର ଲେଖା ପାଠକ ପାଠିକାମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବା ପୂର୍ବର୍ ମୁଁ ଏଥି ବର୍ଣ୍ଣିତ ସାମାଜିକ ଓ ଦେଶାଚାର ସମ୍ବନ୍ଧୀୟ ତୀବ୍ର ସମାଲୋଚନା ନିମନ୍ତେ ଯାବତୀୟ ଦୋଷାଦୋଷ ସକାଶେ ସାନୁନୟ କ୍ଷମାଭିକ୍ଷା କରୁଅଛି। ମୋହର କଠୋର କର୍ତ୍ତବ୍ୟ ଏବଂ ମୋହର ଭଗ୍ନିବର୍ଗଙ୍କର କଲ୍ୟାଣକାମନା ମାନସରେ ନିମ୍ନଲିଖିତ ବିଷୟମାନ ଲେଖିଲି। ଭବିଷ୍ୟତରେ ଏ ବିଷୟରେ ଆହୁରି ଆଲୋଚନା କରିବାର ଇଚ୍ଛାରହିଲା।

ଜଗତରେ ନାରୀର ଯେତେ ପ୍ରକାର ଅଧିକାର ଅଛି ତନ୍ମଧ୍ୟରେ ମାତୃତ୍ୱ ହିଁ ବିଶିଷ୍ଟ ଏବଂ ସର୍ବଶ୍ରେଷ୍ଠ ଅଧିକାର, ମହତ୍ୱ ଓ ଆତ୍ମବଳିଦାନ ଅଟେ। କିନ୍ତୁ ତାହା ପ୍ରତି ଆମ୍ଭ ଦେଶବାସୀଙ୍କର କି କିଛି କର୍ତ୍ତବ୍ୟ ନାହିଁ? ଅନ୍ତୁଡ଼ିଶାଳର ଅତ୍ୟାଚାର, ଅନାଚାର, ନିଷ୍ଠୁରତା, ହୃଦୟହୀନତା ଓ ଅମାନୁଷିକ ବ୍ୟବହାର କେବେ ହେଁ କାହାରି ଦୃଷ୍ଟି ଆକର୍ଷଣ କଲାପରି ଜଣାଯାଉ ନାହିଁ। ଯଦିବା କେବେହେଁ କାହାରି ତହିଁପ୍ରତି ଦୃଷ୍ଟିପଡ଼େ ତଥାପି ତାହାଦ୍ୱାରା ବିଶେଷ କୌଣସି ଉପକାର ହୁଏ କି ନାହିଁ, ସନ୍ଦେହ।

''ନାରୀର ମାତୃତ୍ୱ''- ଏହାର ସହଜ ଅର୍ଥ ''ଗର୍ଭଧାରଣ ଓ ପ୍ରସବ''। ଏହି ବ୍ୟାପାର କିପରି କଷ୍ଟ ଓ ବିପଦସଙ୍କୁଳ ଏହା କେତେଲୋକ ଉପଲବ୍ଧ କରିଥାନ୍ତି? ପୁରୁଷ ଓ ନାରୀର ସମାଜର ସବୁ ସ୍ତରରେ ସମାନ ଅଧିକାର ଥାଇପାରେ ବା ନ ଥାଇପାରେ, ମାତ୍ର ଯେଉଁ ମାତୃତ୍ୱର କଷ୍ଟ ଓ ଆତ୍ମବଳିଦାନ ଯଜ୍ଞରେ ପୁରୁଷର ତିଳାର୍ଦ୍ଧ ଅଧିକାର ନାହିଁ, ଅଥଚ ସେହି ଆତ୍ମଯଜ୍ଞପ୍ରସୂତ ଫଳଟିରେ ମାତ୍ର ପୁରୁଷର ଓ ସମାଜର ଅଧିକାର- ତେବେ ସେହି ଆତ୍ମଯଜ୍ଞକାରିଣୀ ରମଣୀ ପ୍ରତି କୃପାଦୃଷ୍ଟିକରିବା ପୁରୁଷର ତଥା ସମାଜର ଏକାନ୍ତ କର୍ତ୍ତବ୍ୟ ନୁହେଁ କି?

ପୁରୁଷ ସମାଜର ହିତ କରିପାରେ, ନିଜର ପ୍ରଭୁତ୍ୱ, କଷ୍ଟାର୍ଜିତ ଧନ ଅକାତରେ ସମାନାର୍ଥେ ବ୍ୟୟ କରିପାରେ, ମାତ୍ର ନାରୀ ତ ସମାଜକୁ ସ୍ୱୀୟ ରକ୍ତପିଣ୍ଡ ଗଠିତ, ସ୍ୱୀୟ ବେଦନା, ଅଶ୍ରୁ ଓ ସମୂହ କଷ୍ଟର ଫଳଟିମାନ ଦାନ କରିଥାଏ। ଏହା କି ଅତିଶୟ ଅଳ୍ପ ଓ ଉପେକ୍ଷଣୀୟ ବିଷୟ! ପ୍ରଜନନ କ୍ରିୟାରେ ନାରୀ ଏବଂ ପୁରୁଷ ଉଭୟେ ଦାୟୀ ସତ୍ୟ; ମାତ୍ର କାହାର ଦାୟିତ୍ୱ ସମଧିକ, କାହାର କଷ୍ଟ ଗୁରୁତର, କାହାର ଶ୍ରମ ମହତ୍ତର? ନାରୀ ଦଶମାସ ଗର୍ଭରେ ଧରେ। ଏହା କି ସହଜ କଥା? ନିଜ ଶରୀରର ପ୍ରତ୍ୟେକ ସୂକ୍ଷ୍ମ କଣିକାରୁ ଭାଗ ପ୍ରଦାନକରେ– ଏହା କି ସାମାନ୍ୟ ବିଷୟ? ଗୋଟିଏ ସନ୍ତାନଲାଗି ମାତାର ରକ୍ତ, ମାଂସ, ଅସ୍ଥି, ମେଦ ମଜ୍ଜା ସବୁର ସାରଭାଗ ବ୍ୟୟିତହୁଏ। ଏହା କେତେ ବ୍ୟକ୍ତି ସମ୍ୟକ୍ ହୃଦୟଙ୍ଗମ କରିଥାନ୍ତି? ପ୍ରତି ମୁହୂର୍ତ୍ତ ସ୍ୱୀୟ ଜୀବନକୁ ବିପନ୍ନକରି, ପ୍ରତି ମୁହୂର୍ତ୍ତେ ମରଣକୁ ସମ୍ମୁଖରେ ରଖି, ସନ୍ତାନ ଗର୍ଭରେ ଧାରଣକରିବା କେବଳ ଈଶ୍ୱର ଦତ୍ତ ନାରୀର ବୈଶିଷ୍ଟ୍ୟ। ଏହାଠାରୁ ମହତ୍ତର ଆତ୍ମବଳିଦାନ ଆଉ ନାହିଁ କହିଲେ ଚଳେ। ଆହା ଏତେ କଷ୍ଟାର୍ଜିତ ମାତୃତ୍ୱ ହିଁ ନାରୀର

ଶ୍ରେଷ୍ଠତମ ଆକାଂକ୍ଷା, ତାହାର ସମଗ୍ର ଅନ୍ତରାତ୍ମା ମାତୃତ୍ୱର ପଦବୀ ଲାଭାର୍ଥ ବ୍ୟାକୁଳିତ। କାରଣ ତାହା ହିଁ ନାରୀର ଗର୍ବ, ''ସନ୍ତାନବତୀ ଜନନୀ'' ବସ୍ତୁତଃ ରମଣୀର ଶ୍ରେଷ୍ଠ ସମ୍ମାନ।

ଗର୍ଭବତୀ ରମଣୀ ପଦେ ପଦେ ଯେ କେତେ ବିପଦରେ ପତିତା ହୋଇପାରନ୍ତି ଏହା ଅତି ଅଳ୍ପଲୋକେ ବୁଝିଥାନ୍ତି। ରୋଗରେ ମଧ୍ୟ ଗର୍ଭସ୍ଥ ଶିଶୁର କଲ୍ୟାଣ କାମନାରେ ଚିକିତ୍ସା ବିଳମ୍ବ ଘଟିଥାଏ। ଆଜିକାଲି ଦେଶର ଚତୁର୍ଦ୍ଦିଗରେ ମ୍ୟାଲେରିଆ, ମାତ୍ର ଗର୍ଭିଣୀର ମ୍ୟାଲେରିୟା ହେଲେ ଗର୍ଭପାତ ଆଶଙ୍କାରେ କୁଇନାଇନ୍‌ଦ୍ୱାରା ଚିକିତ୍ସା ହୋଇପାରେ ନାହିଁ। ବର୍ଷା ଦିନରେ ଏ ଦେଶରେ ଭୟାନକ ରକ୍ତାମାଶୟ (Dysentry) ହୋଇଥାଏ। ମାତ୍ର ସେହି ଏକ କାରଣରୁ ରକ୍ତାମାଶୟର ଔଷଧ ଏମେଟିନ୍ (Emetine) ପ୍ରୟୋଗ କରାଯାଇପାରେ ନାହିଁ। ଗର୍ଭିଣୀର ପଦେ ପଦେ ବିପଦ। ସେଥିପାଇଁ ଅତି ଯତ୍ନ ସହକାରେ ତାହାଙ୍କୁ ରକ୍ଷାକରିବା ସର୍ବତୋଭାବେ ବିଧେୟ। ମାତ୍ର ପରିତାପର ବିଷୟ ଏହି କି, ସମସ୍ତ ବିଷୟରେ ଆମ୍ଭେମାନେ କେଡ଼େ ଉଦାସୀନ, କେତେ ଶତ ଶତ ଗର୍ଭିଣୀଙ୍କୁ ଅବହେଳା କରିଥାଉଁ, ଅନ୍ତୁଡ଼ିଶାଳର ଦେଶାଚାର ନାମରେ କି ଅମାନୁଷିକ ଅତ୍ୟାଚାର ଯେ କରିଥାଉଁ ତାହାର କି ଇୟତ୍ତା ଅଛି? କିନ୍ତୁ ଜାଣି ଜାଣି ଯେ କରୁଁ ତାହା ନୁହେଁ, ଅଧିକାଂଶ ସ୍ଥଳରେ ଅବସ୍ଥାର ଅନ୍ତରାୟ ଏହି ତତୋଽଧିକ ସ୍ଥଳରେ କୁସଂସ୍କାର, ପୂର୍ବାପର ଅନୁଷ୍ଠିତ ସାତପୁରୁଷିଆ ରୀତି। ଏଣୁ ଭୟରେ ଛାଡ଼ିପାରୁ ନାହିଁ ମାତ୍ର ଆମ୍ଭମାନଙ୍କର ବୁଝିବା ଉଚିତ୍, ଆମ୍ଭ ଦେଶ ତ ଆଉ ସେ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ନୁହେଁ, ଆମ୍ଭ ଦେଶୀୟ ରମଣୀମାନେ ତ ପୂର୍ବପରି ସୁଖାଦ୍ୟଜନିତ ସବଳ ଓ ସୁସ୍ଥ ଶରୀର ନୁହନ୍ତି, ଅଧିକାଂଶ ରମଣୀର ଜୀବନୀଶକ୍ତି ଅପହୃତ। ଏହା ଉପରେ ମଧ୍ୟ ପୂର୍ବାପର ଆଚରିତ ରୀତିଗୁଡ଼ିକ ଅତିଶୟ କୁସଂସ୍କାର ପୂର୍ଣ୍ଣ ଏବଂ ତଦ୍ୱାରା ଆବହମାନ କାଳରୁ ଅନେକ ପ୍ରସୂତି ଓ ପ୍ରସୂତର ଜୀବନ ନଷ୍ଟହେଉଅଛି। କେବଳ ବର୍ତ୍ତମାନ ଯୁଗକୁ ଦୋଷଦେଲେ ଚଳିବ ନାହିଁ। ଅନ୍ତୁଡ଼ିଶାଳର କୁପ୍ରଥାଗୁଡ଼ିକ ସର୍ବାଦୌ ବର୍ଜନ କରିବାକୁ ହେବ।

ଅବସ୍ଥାର ଅନ୍ତରାୟ ବଶତଃ ବା ଅନ୍ୟ କୌଣସି କାରଣରୁ ଅଧିକାଂଶ ଗୃହରେ ଗର୍ଭିଣୀ ସ୍ତ୍ରୀମାନେ ଅନୁଚିତ୍ ଏବଂ ସୁସ୍ଥ ଲୋକଠାରୁ ମଧ୍ୟ ଅଧିକ ପରିଶ୍ରମ କରିଥାନ୍ତି। ତଦ୍ୱାରା ସମୟେ ସମୟେ ବିଶେଷ ଅନିଷ୍ଟ ଘଟିଥାଏ। ଅକାଳ ପ୍ରସବ, ଅଯଥା ଗର୍ଭପାତ, ହଠାତ୍ ରକ୍ତସ୍ରାବ ଇତ୍ୟାଦି ଏଥିରେ ଅନ୍ତର୍ଗତ। ସମୟେ ସମୟେ ନିଷ୍ଠୁର ସ୍ୱାମୀର ଅତ୍ୟାଚାର ମଧ୍ୟ ଗର୍ଭିଣୀର ବହୁତ ଅମଙ୍ଗଳ ଆନୟନ କରିଥାଏ। ଗର୍ଭାବସ୍ଥା ଯେ ସହସା କେଡ଼େ ବିପଦଜନକ ହୋଇପାରେ, ଏହା ଶତକଡ଼ା ଅନେଶ୍ୱତ ଲୋକ ବୁଝନ୍ତି ନାହିଁ। ବିଶେଷତଃ ଅଧିକାଂଶ ସ୍ତ୍ରୀମାନେ ଏ ବିଷୟରେ ଏଡ଼େ ଅଜ୍ଞ ଯେ, ସମୟରେ ସେହିମାନେ ନିଜନିଜର ଅମଙ୍ଗଳ ଘଟାନ୍ତି। ଗର୍ଭ ସମୟରେ ଅତ୍ୟଧିକ ପରିଶ୍ରମ ଓ ମାନସିକ ଚିନ୍ତାଦିଦ୍ୱାରା କି ବିପଦ ହୋଇପାରେ, ଏହା ଗର୍ଭିଣୀ ନିଜେ ଜାଣେ ନାହିଁ, ତେବେ ସେ କିପରି ସାବଧାନ ହୋଇପାରେ? ସେଥିପାଇଁ ଏହି ବିଷୟରେ ପ୍ରତ୍ୟେକ ନାରୀର ଶିକ୍ଷାକରିବା ଉଚିତ୍ ନୁହେଁ କି? ସେ ଭୂମ୍ୟଧିକାରୀ ସେ କ୍ଷେତ୍ ସମ୍ବନ୍ଧୀୟ ବିଷୟଗୁଡ଼ିକରେ ଅଜ୍ଞହେବା ଯେପରି ତାହାରଅନିଷ୍ଟଜନକ, ଲାଭାଲାଭ ନଜାଣି

ବାଣିଜ୍ୟ କରିବା ଯେପରି ଅବିବେକିତା, ଆଇନ୍ ନଜାଣି ଓକିଲ ହେବା ଯେପରି ମୂର୍ଖତା, ବିବାହିତା ଓ ଭାବୀ ମାତାମାନଙ୍କର ମାତୃତ୍ୱ ସମ୍ବନ୍ଧୀୟ ଜ୍ଞାନ ନଥିବା ତଦ୍ରୂପ ବିପଦ ଓ ଦୁଃଖର କାରଣ। ଅନେକର ବୈବାହିକ ଜୀବନ ଅଳ୍ପଦିନ ପରେ ଦୁର୍ବିସହ ଭାର ଓ ଜୀବନ ତିକ୍ତ ହେବାର କାରଣ, ମାତୃତ୍ୱ ସମ୍ବନ୍ଧୀୟ ଜ୍ଞାନର ଅଭାବ। ଏ ଦେଶର ଶିଶୁ ମୃତ୍ୟୁ ସଂଖ୍ୟା ଯେ ଶୋଚନୀୟ, ଏହା ସମସ୍ତେ ଜାଣନ୍ତି। ସମଗ୍ର ଭାରତବର୍ଷରେ ପ୍ରତିବର୍ଷ ଯେତେ ଶିଶୁ ଅବହେଳା ଓ ଅଯଥା କାରଣରେ ମରନ୍ତି, ବୋଧହୁଏ ପୃଥିବୀର ଅନ୍ୟ କୌଣସି ଦେଶରେ ଏତେ ନୁହେଁ। ୧୯୨୧ ଖ୍ରୀଷ୍ଟାବ୍ଦରେ ଲଣ୍ଡନରେ ହଜାରକଙ୍କର ଅଶିଟି ଶିଶୁରେ ମୃତ୍ୟୁ ହୋଇଥିଲା ଏବଂ ଲଣ୍ଡନଠାରୁ ବିଶେଷ କ୍ଷୁଦ୍ର ବୋମ୍ବାଇରେ ହଜାରକଙ୍କର ଛଅଶତ ଛଅଷଠି ଶିଶୁରେ ମୃତ୍ୟୁ ହୋଇଥିଲା। ଏହାହିଁ କି ଜୀବନ୍ତ ଜାତିର ଲକ୍ଷଣ? ବଙ୍ଗ ଦେଶରେ ପ୍ରତିବର୍ଷ ଅଭାବନୀୟ ରୂପେ ନବଜାତର ମୃତ୍ୟୁ ହେଉଅଛି। ଏ ବିଷୟରେ ଓଡ଼ିଶା ମଧ୍ୟ ପଶ୍ଚାତପଦ ନୁହେଁ। ଏଠାରେ ମଧ୍ୟ ଶିଶୁ ମୃତ୍ୟୁ ଅତ୍ୟଧିକ।

କେବଳ କି ଶିଶୁ ମୃତ୍ୟୁ? ପ୍ରସୂତୀର ମୃତ୍ୟୁ ମଧ୍ୟ ଏ ଦେଶରେ ଅଭାବନୀୟ ରୂପେ ଅଧିକ, ଯେଉଁ ଲୋକମାନଙ୍କର ଏକାଧିକ ସ୍ତ୍ରୀ ମରିଥାନ୍ତି, ଅନୁସନ୍ଧାନଦ୍ୱାରା ଜଣାଯାଏ ଯେ ଅଧିକାଂଶ ସ୍ଥଳରେ ସ୍ତ୍ରୀମାନେ ଗର୍ଭାବସ୍ଥାରେ ବା ପ୍ରସବ ସମୟରେ ମରିଛନ୍ତି। ଲୋକେ କହନ୍ତି ଏ ସବୁ ଆତ୍ମ କର୍ମଦୋଷ। ମାତ୍ର ଟିକେ ସାବଧାନ ହେଲେ, କର୍ମଦୋଷ ଅନେକ ନିବାରଣ ହୋଇପାରନ୍ତା।

ପ୍ରସବ ସାଧାରଣତଃ ଦୁଇ ପ୍ରକାର। ସ୍ୱାଭାବିକ ଓ ଅସ୍ୱାଭାବିକ, ଶତକରା ୯୬ଟି ପ୍ରସବ ସ୍ୱାଭାବିକ। କିନ୍ତୁ ଅଜ୍ଞାନତା ବଶତଃ ଅନେକ ସ୍ଥଳରେ ସ୍ୱାଭାବିକ ପ୍ରସବ ଅସ୍ୱାଭାବିକରେ ପରିଣତ ହୁଏ, ଏବଂ ଅନ୍ତୁଡ଼ି ଶାଳର କୁପ୍ରଥାଗୁଡ଼ିକଦ୍ୱାରା ଅନେକ ସୁସ୍ଥ ପ୍ରସୂତୀ ଓ ହୃଷ୍ଟପୃଷ୍ଟ ପିଲା ମରିଥାନ୍ତି।

କୋମଳ ଓ କ୍ଷୁଦ୍ର ମଣିଷପିଲାର ଜନ୍ମଘରଟି ଠାକୁର ଘର ତୁଲ୍ୟ ଦେଖିବା ଉଚିତ୍ ନୁହେଁ କି! ମାତ୍ର ଅନ୍ତୁଡ଼ିଶାଳଟି ଗୃହର ସବୁଠାରୁ ନିକୃଷ୍ଟତମ ଓ ଜଘନ୍ୟ ଅଂଶରେ ତିଆରି ହୁଏ ଏପରିକି ଢ଼େଙ୍କିଶାଳ, ଅନ୍ଧାରକୋଣ, ଚାଳିଘର, ଗୋଦାମଘର, ଅବା ମେଲାଅଗଣା ଯେଉଁଠାରେ ସାମାନ୍ୟ କେତେଖଣ୍ଡ ତାଟି ଘେରାହୋଇ ଗୋଟିଏ ଅଭିନବ ଗୃହ ତିଆରି ହୋଇ, ମା ଓ ପିଲାର ଜୀବନକୁ ସର୍ବାଂଶରେ ବିପଦଗ୍ରସ୍ତ କରିପକାଏ। ଧାତ୍ରୀବିଦ୍ୟା ଅନୁସାରେ ପ୍ରସୂତିକୁ ଅତି ପରିଷ୍କାରରଖିବା କର୍ତ୍ତବ୍ୟ। କାରଣ ଅପରିଷ୍କାରର ଭୀଷଣ ଫଳ-ସାପ ଜହରଠାରୁ ବେଶି। ''ସୂତିକା ଜ୍ୱର'' ବା ବିଷାଣ ଜ୍ୱର, ଯହିଁରୁ ବଞ୍ଚିବା ପୁନର୍ଜନ୍ମ ଲାଭ ତୁଲ୍ୟ, ଏହା କେତେ ଲୋକ ବୁଝନ୍ତି? ଅନ୍ତୁଡ଼ିଶାଳ ଯେ ବଡ଼ କଦର୍ଯ୍ୟ– ଏପରିକି ଯେତେ ଦୂଷିତ ବୋଧ ହୁଏ ପାଇଖାନା ଓ ଗୁହାଳ ଛାଡ଼ି ଅନ୍ୟ କୌଣସି ଘର ଏତେ କଦର୍ଯ୍ୟ ହେବ ନାହିଁ। ଏହାର ଏକମାତ୍ର କାରଣ – ଛୁଆଁ। ଅନ୍ତୁଡ଼ି ଛୁଆଁ ଠାରୁ ଛୁଆଁ ନାହିଁ। ଏହା ସ୍ତ୍ରୀ ଲୋକମାନଙ୍କର ଦୃଢ଼ ବିଶ୍ୱାସ। ଧାଈ ନାମରେ ଯେଉଁ ସ୍ତ୍ରୀଲୋକ ହାତରେ ଗର୍ଭିଣୀକୁ ଓ ତାହାର କଅଁଳା ପିଲାକୁ ସମର୍ପଣ

କରାହୁଏ, ମୋହର ମନରେ ତାହାକୁ ଯମର ସାକ୍ଷାତମୂର୍ତ୍ତି ବୋଲି ମନେହୁଏ। କାରଣ ତାହାର ଦୂଷିତ ହସ୍ତ, ସେଥିରେ ଯେଉଁ ବଡ଼ ବଡ଼ ମଇଳା ନଖ, ଯେଉଁ ବଡ଼ ବଡ଼ ରସ ଓ ପିତଳର ଖଡ଼ୁ, ତାଦ୍ୱାରା କେତେ ଗର୍ଭିଣୀ ଓ ନବ– ପ୍ରସୂତ ଶିଶୁର ପ୍ରାଣ ନାଶହୁଏ, ଏହା କେହି କେବେ ଚିନ୍ତା କରିଥାନ୍ତି କି ?

ଜଣେ ଲୋକର ପର ପର ପାଞ୍ଚଟି ସନ୍ତାନ ନଷ୍ଟହେଲା ପ୍ରତ୍ୟେକ ସନ୍ତାନ ଜଣେ ନୀଚ ଜାତୀୟ ଧାଈ ହସ୍ତରେ ଜନ୍ମ ହୋଇଥିଲା ଏବଂ ତାହାର ସିଦ୍ଧାନ୍ତ ଯେ, ଉକ୍ତ ଲୋକର ଗୃହରେ 'ହାଡ଼ବାଈ' ନାମରେ କୌଣସି ଡାହାଣୀ ଥିବା ହେତୁ ଏପରି ଶିଶୁ ମୃତ୍ୟୁ ହେଉଅଛି। ସେ ଡାହାଣୀ ପିଲାଗୁଡ଼ିକ ଗର୍ଭରୁ ମାରିଖାଇଯାଉଛି। ଷଷ୍ଠଗର୍ଭ ସମୟରେ ଦୈବାତ୍ ଦୁର୍ଘଟଣା ଘଟିଲା। ଧାଈ ଆସି ଗର୍ଭିଣୀକୁ ପରୀକ୍ଷାକରି ସିଦ୍ଧାନ୍ତ କଲା ଯେ, ଶିଶୁ ଗର୍ଭରୁ ମରିଯାଇଅଛି। ମୂହୂର୍ତ୍ତ ମଧ୍ୟରେ କଥାଟା ଚତୁର୍ଦ୍ଦିଗରେ ବ୍ୟାପିଗଲା। ଉକ୍ତ ଲୋକ ଆକୁଳ ହୋଇ ମୋତେ ଡାକିନେଲା। ଗର୍ଭଟି ନଷ୍ଟହୋଇଅଛି, ଏହା ଭାବି ମୁଁ ତାହାର ଔଷଧାଦି ନେଇ ଶୀଘ୍ର ଘଟଣା ସ୍ଥଳରେ ପହଞ୍ଚି ଦେଖେ ଯେ, ସେ ଗୃହରେ କେତେଗୁଡ଼ିଏ ସ୍ତ୍ରୀ ଲୋକ ପୋଖତୀକୁ ଧରି ଚିତ୍କାର କରି କନ୍ଦାକଟା କରୁଅଛନ୍ତି, ନିକଟରେ ଅର୍ଦ୍ଧଇଞ୍ଚ ପରିମିତ ନଖ ବିଶିଷ୍ଟ ଜଣେ ବୃଦ୍ଧା। ସେ ହେଉଛନ୍ତି ଧାଈ। ସେ ମୋତେ ଦେଖିଲାମାତ୍ରେ ବିରକ୍ତହୋଇ କହିଲା ''ଆଉ ଆପଣ ଆସି କ'ଣ କରିବେ ? ଘରେ ତ ହାଡ଼ବାଇ ଅଛି – ପେଟରୁ ଚଣ୍ଡିଚିକିଛି, କାଲି ରାତିଠଉଁ ଚିପି ସାରିଲାଣି– ମୁଁ କହୁଛି ଡାକ୍ତରିଆଣୀ ଡାକନାହିଁ, ଆଉ କ'ଣ ଅଛି ଯେ ? ମୁଁ ଦେଖିଲି, ସେମାନଙ୍କ ଗୃହରେ ରାନ୍ଧଣାଦି ସୁଦ୍ଧା ହୋଇନାହିଁ। ସମସ୍ତେ ବ୍ୟାକୁଳ। ଏପରି ଅବସ୍ଥାରେ ସହସା ସେମାନଙ୍କୁ ସାନ୍ତ୍ୱନାକରିବା ମୋ ପକ୍ଷରେ ଅସମ୍ଭବ ହୋଇଉଠିଲା। ଗର୍ଭିଣୀକୁ ପରୀକ୍ଷା କରି ଅପେକ୍ଷାକୃତ ଆଶ୍ୱସ୍ତହୋଇ, ମୁଁ ସେମାନଙ୍କୁ ଗରମ ଜଳ ପ୍ରସ୍ତୁତକରିବାକୁ କହିଲି। ଏଥିରେ ପୁଣି ସମସ୍ତେ କାନ୍ଦିବାକୁ ଆରମ୍ଭକଲେ। ଗର୍ଭିଣୀ ମୋତେ ଦେଖି ଭୟରେ ଚିତ୍କାର କରିବାକୁ ଲାଗିଲା। ଯାହାହେଉ ପ୍ରସବାନ୍ତର ଦେଖାଗଲା, ଗୋଟିଏ ସୁନ୍ଦର ଜୀବିତ ପୁତ୍ର ସନ୍ତାନ। ପିଲାଟି କାନ୍ଦିଉଠିଲା ମାତ୍ରେ, ଗୃହର ଯାବତୀୟ ସ୍ତ୍ରୀ ଲୋକ ଆଶ୍ଚର୍ଯ୍ୟ ଓ ଉତ୍ତେଜିତ ହୋଇ ମୋତେ ଘେରିପକାଇଲେ। ମାତ୍ର ସେହି ଧାଈ ସେତେବେଳେ କ୍ରୋଧରେ ଚିକିସା କରି କହିଲା– ''ସକାଳୁ ଆସିଲିଣି ପଇସା ଦବଟି ମୁଁ ଯାଏଁ। ତୁମର ତ ଡାକ୍ତର ଆସିବ– ମୁଁ ଯାଏଁ।''

ଧାଈମାନେ ନଖଦ୍ୱାରା ଫୁଲ ଛିଣ୍ଡାଇପକାଇବାର କଥା ଅନେକ ଜାଣିଥିବେ, ଫଳ ସ୍ୱରୂପ ଭୟାନକ ରକ୍ତସ୍ରାବ ହୋଇ ପ୍ରସୂତୀର ଇହଲୀଳା ଶେଷହୁଏ, ନୋହିଲେ ଭୀଷଣ ସୂତିକା ଜ୍ୱର ଭୋଗି ଭୋଗି ମୃତ୍ୟୁ ହୋଇଥାଏ। ପ୍ରସବ ସମୟରେ ଅଯଥା ହସ୍ତକ୍ଷେପଦ୍ୱାରା ଜରାୟୁ ବାହାରକୁ କାଢ଼ି ଆଣିବା ଓ ପ୍ରସବ ବିଳମ୍ବହେଲେ ବା ଅଯଥା କ୍ଷିପ୍ରକାରିତା ବଶତଃ ଜରାୟୁ ମୁଖ ବିଦୀର୍ଣ୍ଣ କରିବାଦ୍ୱାରା ବହୁ ପ୍ରସବିନୀଙ୍କର ସର୍ବନାଶ ହୋଇଅଛି। ମନୁଷ୍ୟ ଶରୀର ଗଠନ ସମ୍ବନ୍ଧରେ ଧାଈ ସଂପୂର୍ଣ୍ଣ ଅଜ୍ଞ ଏବଂ ଆଧୁନିକ ପରିଷ୍କାର ଓ ପରିଚ୍ଛନ୍ନତା ବିଶେଷତଃ ହାତ ଧୂଆଧୋଇ ବିଷୟରେ ନିତାନ୍ତ ଜ୍ଞାନହୀନ। ତେଲ ଲଗାଇ, ଅଧୁଆ ହାତରେ ବାରମ୍ବାର ଭିତର

ପରୀକ୍ଷାକରିବା ଧାଈମାନଙ୍କର ବିଶେଷ କଦର୍ଯ୍ୟ ସ୍ୱଭାବ। ଯେଉଁଠାରେ ଖୁବ୍ ଭଲ ରୂପେ ହାତ ଧୋଇ ସୁଦ୍ଧା, ଡାକ୍ତର ଏକାଧିକଥର ହସ୍ତଦେବେ ନାହିଁ, ଧାଈ ସେଠାରେ ଦଶଥର ପରୀକ୍ଷାକରିବ ଏବଂ ବିବିଧ ଲୋକ ହସ୍ତରେ ନିଜର ଝିଅ, ଭଉଣୀ ବା ସ୍ତ୍ରୀକୁ ସମର୍ପଣକରି ଲୋକେ ନିଶ୍ଚିନ୍ତ ହେବା ଉଚିତ୍ କି? ଆଜି କାଲିତ ଶିକ୍ଷିତ ନର୍ସର ଅଭାବ ନାହିଁ। ଲୋକେ ଯେ ଅର୍ଥକୁ ଡରି ସେମାନଙ୍କୁ ଡାକି ପାରନ୍ତିନାହିଁ, ଏହା ମଧ ନୁହେଁ। ବିଶେଷତଃ ଯେଉଁମାନଙ୍କର ସମର୍ଥ୍ୟ ଅଛି, ସେହିମାନଙ୍କ ଗୃହରେ ବିଶେଷ ଅନାଚାର। ଦରିଦ୍ର କୁଡ଼ିଆବାସୀଙ୍କୁ ତେବେ ଦୋଷଦେବ କିଏ?

ଧାଈ ଅଧିକାଂଶ ସ୍ଥଳରେ ପିଲାର ପ୍ରାଣନିଏ। ସେ ପିଲାର ନାଭି କାଟେ। ତା ମଧ ଅତି କଦର୍ଯ୍ୟ ଭାବରେ ହୁଏ। କୌଣସି ସିଝା ଅସ୍ତ୍ର ବ୍ୟବହୃତ କରେ ନାହିଁ। ମାତ୍ର ଲୁଗାକଟା କଇଞ୍ଚି ବା ଛୁରୀ, କଲମତ୍ରାସ, ଶାମୁକା ଏପରିକି ଦାଢ଼ଥିବା ଯେ କୌଣସି ପଦାର୍ଥରେ ଟାଣିଓଟାରି କାଟନ୍ତି ଓ ମଇଳା ସୂତାରେ ବାନ୍ଧନ୍ତି। କେବେ କେବେ ହୁଗୁଳା ହୋଇଥିବାରୁ ନାଭିରୁ ରକ୍ତସ୍ରାବ ହୋଇ ମଧ ପିଲାଟି ମରିଯାଏ। ଏହାର ଅନେକ ଉଦାହରଣ ମୁଁ ଦେଖିଛି।

ନାଭି ପଡ଼ିଲେ ଛୁଆଁଯାଏ, ଏହା ଏକ ଭ୍ରାନ୍ତ ଧାରଣା। ସେହି ହେତୁ ଟାଣି ଓଟାରି ଯେ କୌଣସି ପ୍ରକାରେ ହେଉ ପାଞ୍ଚ ଦିନ ପୂର୍ବରୁ ନାଭିଟିକୁ ସ୍ଥାନଚ୍ୟୁତ କଲେ, ଧାଈ ପୁରସ୍କାର ପାଏ। ନାଭି ସେକିବା ପ୍ରଥା ଏପରି ଅପରିଷ୍କାର ଭାବେ ହୁଏ ଯେ, ନାଭି ଦୋଷରୁ ଧନୁଷ୍ଟଙ୍କାର ବାତ, ଅର୍ଥ, ଧନୁପରି ବଙ୍କା ହୋଇଯିବା ଓ Enpipelas (ଦେହରେ ଲାଲି ଲାଲି ଦାଗ ହେବା) ଓ ନାଭି ପାଚିବା ଇତ୍ୟାଦି ଦୁର୍ଘଟଣା ହୋଇ ପିଲାମାନେ ମରନ୍ତି।

ନାଭି କଞ୍ଚା ଘା ପରି। ତାକୁ ଯତ୍ନ କରି Boiric Acid (ବୋରିକ୍ ଆସିଡ୍) ପକାଇ ବାନ୍ଧି, ତା'ପରେ ଶୁଖିଲା ସେକ ଦିଆଯାଇପାରେ। ମାତ୍ର କ୍ଷୁଦ୍ର କନାଖଣ୍ଡଦ୍ୱାରା ବାନ୍ଧିବା ଦୂରେ ଥାଉ ନିତ୍ୟ ତେଲଦେଇ ନଖରେ ଚିପି ଚିପି ସେକାହୁଏ। ଆମ୍ଭ ଦେଶର ବିଶ୍ୱାସ, ଛୁଆ ପିଲାର ରୋଗ ନାନାଦି ଆଧିଦୈବିକ କାରଣରୁ ହୋଇଥାଏ; ଏପରିକି ଡାହାଣୀ, ଯୋଗିନୀ ଏବଂ ଅଳତା ଲଗେଇଥବା ସ୍ତ୍ରୀ ଓ ଋତୁମତୀ ସ୍ତ୍ରୀମାନେ ପିଲାଙ୍କୁ ଛୁଇଁଲେ ପିଲାଙ୍କର ରୋଗହୁଏ। କିନ୍ତୁ ନାଭିଟି ଯେ ମୂଳ, ଏହା କେହି ଜାଣନ୍ତି ନାହିଁ।

ପିଲାକୁ କାଳେ ଡାହାଣୀ ଧରିବ, ଏହି ଭୟରେ ଅନେକ ଘରେ ନାନାଦି ଧୂପ ଧୂନିର ବ୍ୟବସ୍ଥା ହୁଏ। ସମୟେ ସମୟେ ଲଙ୍କାମରିଚର ଉତ୍କଟ ଗନ୍ଧଦ୍ୱାରା ଡାହାଣୀ ଦୂରହେବା ଦୂରେଥାଉ, ନଜର ଉତୁରିବା ଦୂରେଥାଉ, ଶିଶୁ ଓ ପ୍ରସୂତୀର ଶ୍ୱାସକ୍ରିୟାର ବିଷମ ବ୍ୟାଘାତ ହୋଇଥାଏ। ଅନ୍ତୁଡ଼ି ଜାଳିବା। ଆମ୍ଭ ଦେଶର ପ୍ରଧାନ ପ୍ରଥା, ସେଥିରୁ ହିଁ ସୂତିକାଗାରର ନାମ ଅନ୍ତୁଡ଼ିଶାଳ। ଅଗ୍ନିରହିବା ଦୋଷ ହୋଇ ନପାରେ; ମାତ୍ର ତାହା ସହିତ ଧୂଆଁର ଆଧିକ୍ୟ ହେଲେ କାର୍ବନ ଡାଇଅକ୍ସାଇଡ୍ ଓ କାର୍ବନ ମନଅକ୍ସାଇଡ୍ ଗ୍ୟାସ ଧୂଆଁର ଆଧିକ୍ୟ ହେଲେ କାର୍ବନ ଡାଇଅକ୍ସାଇଡ୍ ଓ କାର୍ବନ ମନଅକ୍ସାଇଡ୍ ଗ୍ୟାସ ଦୁଇଟା ଉତ୍ପନ୍ନହୋଇ, ପିଲାର ରକ୍ତଶ୍ରାବ ହୋଇ, ଦୁର୍ବଳ ମାର ଶ୍ୱାସପ୍ରଶ୍ୱାସ କ୍ରିୟାରେ ବାଧା ଜନ୍ମାଏ। ଗୋଟିଏ ମାତ୍ର କଣା ନଥାଏ,

ଛୋଟ ଅନ୍ଧାଗୁଆ କୋଠରୀ, ହୁଏତ କେତେକ ଆଳିମାଳିକାରେ ପୂର୍ଣ୍ଣ, ସେହି ଛୋଟ ଘରର କୋଣରେ ଖଣ୍ଡିଏ ଛିଣ୍ଡା, ମଇଳା କତରା ଅଥବା ହେଁସ ଉପରେ ମା ଓ ପିଲା ମୁଣ୍ଡ ଉପରେ ନିଆଁହୁଳା; କାଠ ଲାଗିଛି, ଦିବାରାତ୍ର ଜଳୁଛି ଓ ଧୂମରେ ଘରଟି ପରିପୂର୍ଣ୍ଣ। ବିଶୁଦ୍ଧ ପବନ ସମସ୍ତଙ୍କ ପକ୍ଷରେ ଉପକାରୀ। ତେବେ ମା ଓ ପିଲା ପକ୍ଷରେ ଅପକାରୀ କିପାଁ?

ଅନେକ ଭାବନ୍ତି, ଶିଶୁ ମା ଗର୍ଭରେ ଗରମରେ ଥିବାରୁ, ହଠାତ୍ ଥଣ୍ଡା ପବନ ଲାଗି ସର୍ଦ୍ଦି ହୋଇପାରେ। ମାତ୍ର ତାହା ନୁହେଁ। ବିଶୁଦ୍ଧ ପବନଦ୍ୱାରା ତାହାର ଫୁସ୍‌ଫୁସ୍ ସତେଜ ଏବଂ କାର୍ଯ୍ୟକାରୀ ହେଲେ, ତାହାର ଶରୀରର ରକ୍ତ ବିଶୁଦ୍ଧ ହୁଏ ଏବଂ ଶିଶୁ ହୃଷ୍ଟପୁଷ୍ଟ ହୋଇ ବଢ଼େ। ରକ୍ତସ୍ରାବଦ୍ୱାରା, ଦୁର୍ବଳ ମାର ବିଶୁଦ୍ଧ ବାୟୁ ବଡ଼ ପ୍ରୟୋଜନ। ଥଣ୍ଡା ଲାଗିବାର ଭୟ ଥିଲେ, ଉପଯୁକ୍ତ ପରିମାଣରେ ଲୁଗା ଘୋଡ଼ାଇଲେ, ସେ ଭୟ ଦୂରହେବ। ଅତି ଆବଶ୍ୟକ ମନେକଲେ, ରଡ଼ନିଆଁରେ ପିଲାର ହାତଗୋଡ଼ ମଧ୍ୟେ ମଧ୍ୟେ ସେକା ଯାଇପାରେ, ମାତ୍ର ସେକି ସେକି ଶୁଖୁଆକରିବା ନିତାନ୍ତ ଅନୁଚିତ ଏବଂ ତଦ୍ୱାରା ପିଲାଟି ଚିରକାଳ ସକାଶେ ଶୀତ ସହିବାଶକ୍ତି ହରାଇ ସର୍ଦ୍ଦିୟ ହୁଏ। ଆମ୍ଭ ଦେଶରେ ନାକ ସର୍ଦ୍ଦି, ମୁଣ୍ଡସର୍ଦ୍ଦି ଏସବୁ ପିଲାଙ୍କର ବିଶେଷ ବଳିଷ୍ଠ ରୋଗ। ଦିବାରାତ୍ର ନାକରୁ ସିଙ୍ଘାଣି ବହିବା ଏପରି ସେକିବାଦ୍ୱାରା ହୋଇଥାଏ। ହଠାତ୍ କେବେ ଥଣ୍ଡା ଲାଗିଲେ ଶିଶୁର ସହ୍ୟ ଶକ୍ତି ନଥିବାରୁ ଛାତିରେ କଫ ବସି ବ୍ରଙ୍କାଇଟିସ୍ ଓ ନିୟୁମୋନିୟା ମଧ୍ୟ ହୋଇପାରେ।

ଅନ୍ତୁଡ଼ିଶାଳରେ ପ୍ରସୂତି ପ୍ରତି ଦେଶାଚାର ନାମରେ ସମୟେ ସମୟେ ଭୀଷଣ ଅନାଚାର ହୁଏ। ପ୍ରସବ ପରେ ରକ୍ତସ୍ରାବଯୋଗୁଁ ତୃଷାହେବା ସ୍ୱାଭାବିକ। କିନ୍ତୁ ଶୋଷରେ ପ୍ରାଣଯାଉ ପଛେ, ଟୋପାଏ ପାଣି ବା ଦୁଧ ଦେବାକୁ ଭୟ କରନ୍ତି କାରଣ ନାଡ଼ି ପାଚିବ। ଦୂଷିତ ଜୀବାଣୁଦ୍ୱାରା ନାଡ଼ି ପାଚିବାର କଥାତ କେହି ଜାଣନ୍ତି ନାହିଁ, ସ୍ତ୍ରୀ ଲୋକେ ଅଯଥା ଭୟରେ ପ୍ରସୂତି ପ୍ରତି ଏପରି ନିଷ୍ଠୁର ବ୍ୟବହାର କରନ୍ତି। ଦୁଧ ବା ପାଣିତ ପାକସ୍ଥଳୀକୁ ଯିବ, ଜରାୟୁ ସହିତ ତାହାର କିଛି ସମ୍ପର୍କ ନାହିଁ। ଏହା ବୁଝାଇଲେ ମଧ୍ୟ ଭୟରେ ବା ଅଜ୍ଞାନତା ବଶତଃ ବୁଝିପାରନ୍ତି ନାହିଁ। ଅତି ଶୋଷରେ ପ୍ରସୂତୀ ମୂର୍ଚ୍ଛାଯିବାର ମୁଁ ନିଜେ ଦେଖିଛି।

ପେଟ ସେକିବା ଆମ୍ଭ ଦେଶର ଏକ ପ୍ରଧାନ ଏବଂ ମୋ ମତରେ ଅତି ଉତ୍ତମ ପ୍ରଥା। କାରଣ ଫୁଲ (Placenta) ଖସି ଯାଇ ଜରାୟୁ ଦେହରେ ସେ ଯାଗାରେ ଘା ହୋଇଥାଏ ଏବଂ ପ୍ରସବ ପରେ ଜରାୟୁ କ୍ରମେ ସଂକୋଚ ହୁଏ। ସେକିବାଦ୍ୱାରା ଗରମ ଯୋଗୁ ଜରାୟୁ ଦେହରେ ଅଧିକ ରକ୍ତ ଚଳାଚଳହୁଏ। ସେ ରକ୍ତ ଗୁଣରେ ନାଡ଼ି ଶୁଖିଯାଏ। ଡାକ୍ତରୀ ମତ ଅନୁସାରେ, ଗରମ ସେକ ଚିକିତ୍ସା ଅତି ଉତ୍କୃଷ୍ଟ। ସେଥିପାଇଁ ନାନା ରକମ ଫୋମେଣ୍ଟେସନ୍ ବ୍ୟବହୃତ ହୁଏ। ସେକ, ଶୁଖିଲା ଫୋମେଣ୍ଟେସନ୍; ମାତ୍ର ଧାଈ ମାନଙ୍କର ପେଟସେକା ପ୍ରଥା ସର୍ବ ସ୍ଥାନରେ ସମାନ ନୁହେଁ। ଗୋଇଠିଦେଇ, ପେଟରେ ଠିଆହୋଇ ସେକିବା ଏକ ଅତି ବିପଜ୍ଜନକ ପ୍ରଥା। ଏହାକୁ 'ଗୋରଡ଼ା' ଦେବା କହନ୍ତି। ଉକ୍ତ ଗୋରଡ଼ା

ପ୍ରଥାଦ୍ୱାରା ନାଡ଼ିଖସିବା ଏବଂ ଫୁଲ ମୁହଁ ବଙ୍କାହେବା– ଏସବୁ ଦୁର୍ଘଟନା ହୁଏ। ପ୍ରସୂତୀକୁ ଅଯଥା ଉଠାବସା କରାଇବା ମଧ୍ୟ ଅତ୍ୟନ୍ତ ବିପଜ୍ଜନକ। ଉପଯୁକ୍ତ ସେକଦେବା ପ୍ରଥା ଜଣା ଥିଲେ, କେବେ ହେଲେ ରକ୍ତସ୍ରାବ ହୋଇ ଦୁର୍ବଳ ପୋଖତୀକୁ ଅକାରଣେ ଉଠାବସା କରିବାକୁ ହୁଅନ୍ତା ନାହିଁ। ସେକ ଉତ୍ତମ, ମାତ୍ର ସେକ ଦେବାର ପ୍ରଥାଟି ପ୍ରାୟ ଅଧିକାଂଶ ସ୍ଥାନରେ ଅତି କଦର୍ଯ୍ୟ ଭାବରେ ହୋଇଥାଏ।

ପ୍ରସୂତୀପାଇଁ ଯେଉଁସବୁ ଲୁଗା ବ୍ୟବହାର ହୁଏ, ତାହା ଅଧିକାଂଶ ସ୍ଥଳରେ ଅତି ମଇଳା, ଦୁର୍ଗନ୍ଧ ଏବଂ ଦୂଷିତ, ପୁଣି କାହାରି କାହାରି ଗୃହରେ ବ୍ୟବହୃତ ଲୁଗାଗୁଡ଼ିକ ବାର ଦିନର, ବାରରାତ୍ର ପର୍ଯ୍ୟନ୍ତ ଅନ୍ତୁଡ଼ିଶାଳରେ ଗୋଟିଏ କୋଣରେ ଏକତ୍ର ଗଦାହୋଇଥାଏ। ତହିଁରେ ଅଳ୍ପ ପରିସର ଏବଂ ପବନହୀନ ଅନ୍ତୁଡ଼ିଶାଳର ଦୁର୍ଦ୍ଦଶାର ସୀମା ନଥାଏ। ଗୃହଟି ଏପରି ଦୁର୍ଗନ୍ଧରେ ପୂର୍ଣ୍ଣହୁଏ ଯେ, ସେଠାରେ ମନୁଷ୍ୟ ରହିବା ସାଧ୍ୟାତୀତ। ନିଃସହାୟ ମାତା ଓ ଶିଶୁ ଜୀବନ ବିକଳରେ ପଡ଼ିଥିବା କଥା। ଏହାଦ୍ୱାରା ଯେ କେଡ଼େ ଅନିଷ୍ଟହୁଏ, ଏହା ସମସ୍ତେ ବୁଝୁଥିବେ।

ମାର ଖାଦ୍ୟ ବିଷୟରେ ଠିକ୍ ଯତ୍ନ ନିଆଯାଏ ନାହିଁ। ସମୟେ ସମୟେ ଅଧିକ ପରିମାଣରେ ଶୁଣ୍ଠି ପିପୁଳି ପଦାର୍ଥ ସେବନ କରାଇବାଦ୍ୱାରା, ପ୍ରଭୂତ ଅନିଷ୍ଟ ହୁଏ; ତାହାର ଫଳ ସ୍ୱରୂପ ''ସୂତୀକା ଝାଡ଼ାରେ କେତେ ଅଳ୍ପବୟସୀ ଅକାଳରେ ବୁଢ଼ୀ ହୋଇଯାନ୍ତି। ଅଧିକାଂଶ ଗୃହରେ ଦୁଗ୍ଧ, ଯାହାକି ଶ୍ରେଷ୍ଠ ପଥ୍ୟ, ତାହା ନାଡ଼ିପାଚିବା ବା କଞ୍ଚାରହିବା ଭୟରେ ନିଷେଧ ହୁଏ।

ଅଧିକାଂଶ ଗୃହରେ ପୁଣି ତୃତୀୟ ଦିବସରେ, ପ୍ରସୂତୀର milk fever (ଦୁଧର ଜର) ହେବା ସତ୍ତ୍ୱେ, ଭାତ ଦିଆଯାଏ। ଅନ୍ତତଃ ପଞ୍ଚମ ଦିନ ପର୍ଯ୍ୟନ୍ତ ଖାଦ୍ୟ ବିବେଚନା ପୂର୍ବକ ଖୁଆଇବାହିଁ ଉଚିତ୍। ଖାଦ୍ୟାଦି ସମ୍ବନ୍ଧରେ ପ୍ରାୟ ଭିନ୍ନ ଭିନ୍ନ ଗୃହରେ ଭିନ୍ନ ଭିନ୍ନ ପ୍ରଥା। ମାତ୍ର ମୋ ବିଚାରରେ ଶୁଣ୍ଠି ପିପ୍ଳି ଆଦି ଉପକାରୀ, କିନ୍ତୁ ବେଶି ମାତ୍ରା ହେତୁ ପେଟ ରୋଗ ହୁଏ। କାରଣ ପ୍ରସୂତୀର ଜ୍ୱର ବିକାର ହେଲେ ଭାତ କିମ୍ବା ଶୁଣ୍ଠି ପିପ୍ଳାଦି ଉତ୍ତେଜକ ପଦାର୍ଥ ନଦେଇ ଦୁଗ୍ଧ ଦେଲେ ଭଲ। ସେତେବେଳେ ହଜମ ଶକ୍ତି ନଥାଏ, ସେଥିପାଇଁ ବିବେଚନା କରି ଖାଦ୍ୟ ଦେବା ବିଧେୟ। ସେହି ସମୟରେ ଦୁଗ୍ଧହିଁ ପ୍ରଧାନ ପଥ୍ୟ। ଦୁଗ୍ଧଦ୍ୱାରା ନାଡ଼ ପାଚେ ନାହିଁ। ବରଞ୍ଚ ଦୁଧ ପିଇଲେ, ମା'ର ଦୁଧ ବଢ଼େ ଏବଂ ତଦ୍ଦ୍ୱାରା ଶିଶୁ ଓ ମାତା ଉଭୟଙ୍କର ବିଶେଷ ଉପକାର ହୁଏ।

ଶିଶୁର ଖାଦ୍ୟ ସମ୍ବନ୍ଧରେ ସବୁଠାରୁ ବିଶେଷ ଅଯତ୍ନ ହୁଏ। କାହାରି କାହାରି ଘରେ କହ୍ନିଁଲା ପିଲାକୁ ଗଧ ଦୁଗ୍ଧ ଓ ନିରୋଳା ଗୋ ଦୁଗ୍ଧ ପାନକରାନ୍ତି। ଗଧ ଦୁଗ୍ଧ ବେଶ୍ ଉପକାରୀ, ମାତ୍ର ସାରହୀନ। ଗୋ ଦୁଗ୍ଧ ପ୍ରସ୍ତୁତ କରିଜାଣିଲେ, ତାହାହିଁ କୃତ୍ରିମ ଉପାୟରେ ମାତୃ ଦୁଗ୍ଧ ସହିତ ପ୍ରାୟ ସମାନ ହୋଇପାରେ। ପେଟ ରୋଗରେ କେତେ ସୁନାଚାନ୍ଦ ମାଁକୁ

କନ୍ଦାଇ, ଏକୋଇଶା ନ ପୂରଣୁ ଯମଘରକୁ ଚାଲିଯାନ୍ତି। ନାଭିଦୋଷ ଏବଂ ପେଟଦୋଷ, ଏ ଦୁଇଟା ପିଲା ମରିବାର ଦୁଇଟି ପ୍ରଧାନ କାରଣ।

ପିଲା କାନ୍ଦିଲା, ଯେଉଁ କାରଣରୁ କାନ୍ଦୁ ପଛେ, ତାହାକୁ ସେଇକ୍ଷଣି ଖୁଆଇବା ପ୍ରଥା ଘରେଘରେ ପ୍ରଚଳିତ। ଖାଇବାର ସମୟ ଠିକ୍ ଥାଏ ନାହିଁ। ଅନିୟମରେ ଖୁଆଇବାରୁ ଅଜୀର୍ଣ୍ଣାଦି ଦୋଷରେ ଶିଶୁର ପେଟ ଫାମେ, ତାହାର ଉପଯୁକ୍ତ ଚିକିତ୍ସା ନହୋଇ ଶେଷକୁ ଶିଶୁଟି ମୃତ୍ୟୁ ମୁଖରେ ପତିତହୁଏ। ଏପରି ଅନେକ ଘଟନା ମୁଁ ସ୍ୱ ଚକ୍ଷୁରେ ଦେଖିଅଛି। ଶିଶୁ ବା ମାତାକୁ ଜଡ଼ା ତେଲ ଦେବାଦ୍ୱାରା ଯେ କି କଲ୍ୟାଣ ସାଧିତ ହୁଏ, ଏହା ଅନେକ ବୁଝନ୍ତି ନାହିଁ। ଗର୍ଭାବସ୍ଥାରେ ନିତ୍ୟ ବୃଦ୍ଧିପ୍ରାପ୍ତ ଜରାୟୁ ଚାପରେ ଅନ୍ତଗୁଡ଼ିକର କାର୍ଯ୍ୟ ଅତି ଶିଥିଳ ହୋଇପଡ଼ି, ବିଶେଷ କୋଷ୍ଠବଦ୍ଧ ହୁଏ। ଗର୍ଭାବସ୍ଥାରେ ଝାଡ଼ାକଷ୍ଟ ହୋଇଥାଏ। ସେଥିପାଇଁ ମଧ୍ୟେ ମଧ୍ୟେ ଜଡ଼ାତେଲ ଅବା ''କ୍ୟାସ୍କାରା ସାଗ୍ରାଡା'' ଦେବା ଉଚିତ୍। ମାତ୍ର ବିଶେଷ ଭାବେ କୋଷ୍ଠବଦ୍ଧ ହେଲେ ମଧ୍ୟ, ଲୋକେ କିଛି ପ୍ରତିକାର କରନ୍ତି ନାହିଁ, କରିବାକୁ ଭୟ ମଧ୍ୟ କରନ୍ତି। ସନ୍ତାନ ପ୍ରସବ ପରେ ଜଡ଼ାତେଲ ଦେବାଦ୍ୱାରା ପେଟ ଉତ୍ତମ ରୂପେ ପରିଷ୍କାର ହୋଇଯାଏ। ଲୋକେ ତାହା ନବୁଝି ଜଡ଼ାତେଲ ଆଦି ବ୍ୟବହାର କରିବାକୁ ସର୍ବଦା ପଶ୍ଚାଦ୍‌ପଦ ହୋଇ ମାତାର ଅନିଷ୍ଟ ଏବଂ ସ୍ଥଳ ବିଶେଷରେ ଶିଶୁର ସର୍ବନାଶ ସାଧନକରନ୍ତି। ଶିଶୁଟିକୁ ନିୟମିତ ମାତ୍ରାରେ ଜଡ଼ାତେଲ ସେବନ କରାଇବାଦ୍ୱାରା, ତାହାର ଅଧିକାଂଶ ପେଟ ଦୋଷ ନିବାରିତହୋଇ ଶିଶୁଟି ଅତି ସୁସ୍ଥ ଓ ସବଳ ହୁଏ। ଏହା ହୃଦୟଙ୍ଗମ କରିବା ପ୍ରତ୍ୟେକ ପିତାମାତାର କର୍ତ୍ତବ୍ୟ।

ଶିଶୁର ଓ ପ୍ରସୂତୀର ଆଚ୍ଛାଦନ ବିଷୟରେ ଯାବତୀୟ ହେଳା ହୋଇଥାଏ। ଅଧିକାଂଶ ଗୃହରେ ମାତା ସିଲାଇ ଜାଣି ନଥିବାରୁ ପିଲାପାଇଁ ପୂର୍ବରୁ କିଛି ହିଁ ପ୍ରସ୍ତୁତ କରିପାରନ୍ତି ନାହିଁ। ଅମନଯୋଗିତା, ଅଜ୍ଞତା ବଶତଃ ଦର୍ଜିଦ୍ୱାରା ପ୍ରସ୍ତୁତ କରାଇନିଅନ୍ତି ନାହିଁ। ସ୍ଥଳ ବିଶେଷରେ ଏପରି ହୁଏ ଯେ, ପ୍ରସବ ସମୟରେ ତଦୁପଯୋଗୀ ଆୟୋଜନ କିଛି ହୋଇ ନଥାଏ। ହଠାତ୍ ଖୋଜିଲେ ଖଣ୍ଡେ ଛିଣ୍ଡାକନା ମିଳେ ନାହିଁ।

ଅନ୍ତୁଡ଼ିଶାଳର ସର୍ବାପେକ୍ଷା କଦାଚାର ''ଛୁଆଁ''। ଏହି ଛୁଆଁ ବାରଣ ଥିବାରୁ ଗୃହରେ ଅନେକ ସ୍ତ୍ରୀଲୋକ ଥିବା ସତ୍ତ୍ୱେ, ସମୟ ବିଶେଷରେ ସେମାନେ କୌଣସି ସାହାଯ୍ୟ ଦୂରେ ଥାଉ, କେବଳ ଦୂରରେ ଦଣ୍ଡାୟମାନ ଦର୍ଶକତୁଲ୍ୟ ହୋଇଥାନ୍ତି। ଛୁଆଁ ହେତୁ ପ୍ରସୂତୀ ନିକଟକୁ କେହି ଯିବେ ନାହିଁ, ତାହାର ସେବା କରିଦେବା କାମରେ ଥାନ୍ତି ପାଲୁଣୀ ବାଉରାଣୀ ଇତ୍ୟାଦି ନୀଚ ଜାତୀୟା ଜଣେ ଧାଈ, ସେ ଭଲ କରୁ ବା ମନ୍ଦ କରୁ, ତତ୍ତ୍ୱନେବାର ମଧ୍ୟ କାହାର ସମୟ ହୁଏନାହିଁ। ଲେଖିକା ସ୍ୱୟଂ ଅନେକ ସ୍ଥଳରେ ପ୍ରସୂତୀ ଓ ଶିଶୁକୁ ଅତି ନିଃସହାୟ ଅବସ୍ଥାରେ ପଡ଼ିଥିବାର ଦେଖିଅଛି। ସାତଦିନ ଅନ୍ତୁଡ଼ି ନ ଉଠିବାଯାକେ ବିଶେଷ ଛୁଆଁ ଏବଂ ଶିଶୁର ନାଭି ନ ପଡ଼ିବା ଯାକେ ଛୁଆଁଯାଏ ନାହିଁ। ସେଥିପାଇଁ ପ୍ରସୂତୀକୁ ଜ୍ୱରାଦି ହେଲେ ମଧ୍ୟ, ଯତ୍ନର ଅତ୍ୟନ୍ତ ଅଭାବ ପରିଲକ୍ଷିତ ହୁଏ। ଅସ୍ୱାଭାବିକ ପ୍ରସବ ସମୟରେ ବା

ସୂତୀକାଗାରରେ କୌଣସି ଦୁର୍ଘଟଣା ବଶତଃ ଡାକ୍ତର ଆସିଲେ, ସେ ଗୃହର ଅନ୍ୟାନ୍ୟ ଆତ୍ମୀୟମାନଙ୍କର ସ୍ୱତଃ ପ୍ରବୃତ୍ତ ସାହାଯ୍ୟ କରିବା ଦୂରେ ଥାଉ ଅନେକ ଅନୁନୟ ବିନୟ ଓ ଯୁକ୍ତିତର୍କ କରିସୁଦ୍ଧା, ସମୟେ ସମୟେ କୌଣସି ପ୍ରକାର ସାହାଯ୍ୟ ପ୍ରାପ୍ତ ହୁଅନ୍ତି ନାହିଁ। କେହି କହନ୍ତି ''ମୁଁ ଗାଧୋଇ ପାରିବି ନାହିଁ'' ''ଆମ୍ଭଘରେ ଅମୁକର ବେରାମ'', କେହି ପୁଣି କହେ, ଆମ୍ଭର ସାନ ପିଲା ଅଛି। କେହିବା ରନ୍ଧନଶାଳାର ମାଲିକ-ଇତ୍ୟାଦି ଇତ୍ୟାଦି। ଏତଦ୍ଵାରା ଡାକ୍ତର ବା ନର୍ସର କାର୍ଯ୍ୟରେ ବିଶେଷ ବ୍ୟାଘାତଘଟେ। ଦୁଇଚାରି ହାତ ନ ଲାଗିଲେ କୌଣସି କାର୍ଯ୍ୟ ସୁଚାରୁ ରୂପେ ସମ୍ପନ୍ନ ହୋଇପାରେ ନାହିଁ। ଏହି ଛୁଆଁହେତୁ, ପ୍ରସୂତୀ ଓ ଶିଶୁ ଆବଶ୍ୟକୀୟ ବ୍ୟବହାରିକ ସାମଗ୍ରୀରୁ ବଞ୍ଚିତ ହୁଅନ୍ତି।

ଗୋଟିଏ ପ୍ରସୂତୀର ୧୦୩ ଡିଗ୍ରୀ ଜ୍ୱର। ସନ୍ତାନ ଜରାୟୁରେ ନଷ୍ଟହୋଇ ପଚି ଯାଇଥିଲା, ଅତିଶୟ ରକ୍ତସ୍ରାବ ହୋଇସାରିଛି। ଧାଇଦ୍ୱାରା ପ୍ରସବକ୍ରିୟା ସମ୍ପନ୍ନ ହେଲାପରେ ପ୍ରସୂତୀର ଅବସ୍ଥା ଦେଖି ତାହାର ପିତା ଲେଖିକାଙ୍କୁ ଆହ୍ୱାନକଲେ। ଅବସ୍ଥାସଂପନ ବ୍ୟକ୍ତି, ଗୃହରେ ଆତ୍ମୀୟା ଓ ଦାସଦାସୀର ଅଭାବ ନାହିଁ; ମାତ୍ର ସେମାନେ ବିଶେଷ ନିଷ୍ଠାବାନ୍। ପ୍ରସୂତୀର ଜନନୀ ଓ ନିକଟ ଆତ୍ମୀୟବର୍ଗ ମୋତେ ଦେଖି ପ୍ରସୂତୀର ବିବରଣ କହିଗଲେ। ମାତ୍ର ମୁଁ କାର୍ଯ୍ୟାରମ୍ଭ କଲାବେଳେ ସମସ୍ତେ ପୃଥକ୍। ଏକେତ ରାତ୍ରିକାଳ ଏବଂ ସମ୍ପୂର୍ଣ୍ଣ ଏକାକିନୀ ଗୋଟିଏ କ୍ଷୁଦ୍ର ପ୍ରକୋଷ୍ଠରେ ଖଣ୍ଡେ ଛିଣ୍ଡା ଚଟାଇ, ତାହାରି ଉପରେ ଷୋଡ଼ଶ ବର୍ଷୀୟା ପ୍ରସୂତୀ ବିକଳଭାବେ ରୋଦନ କରୁଅଛି ଏବଂ ଘରମୟ ପାଣି, ରକ୍ତ ଓ ଦୁର୍ଗନ୍ଧ, ନିକଟରେ ଗୋଟିଏ ମହମବତୀ ଜଳୁଅଛି। ଶତ ଅନୁନୟ କରିସୁଦ୍ଧା କୌଣସି ଆତ୍ମୀୟା, ଏପରିକି ଜଣେ ସୁଦ୍ଧା ଦାସୀ କେହି ମୋତେ ସାହାଯ୍ୟ କରିବାକୁ ଅଗ୍ରସର ହେଲେ ନାହିଁ, ଶେଷକୁ ପ୍ରସୂତୀର ପିତା ବଜାରରୁ ଆବଶ୍ୟକୀୟ ଦ୍ରବ୍ୟାଦି ଅଣାଇ, ବାହାରରୁ ଜଣେ ଧାଇଦ୍ୱାରା କାର୍ଯ୍ୟ ନିଷ୍ପନ୍ନ କରାଇଲେ। ଉକ୍ତ ଗୃହସ୍ଥଙ୍କର ସ୍ତ୍ରୀ ଲୋକେ ଯେ ଇଚ୍ଛା ପୂର୍ବକ ପ୍ରସୂତୀକୁ ପରିତ୍ୟାଗ କରିଥିଲେ ତାହା ନୁହେଁ, କେବଳ ''ଛୁଆଁ''। ରାତି ଅଧରେ ସ୍ନାନ କରିବା କିପରି ସୁଖକର, ସେଥିପାଇଁ କେହି ସାହାଯ୍ୟାର୍ଥେ ଅଗ୍ରସର ହେଲେ ନାହିଁ।

## ଆଉ ଗୋଟିଏ ଘଟଣା :

ପ୍ରସୂତୀ ତିନିଦିନ ହେଲା ଅଚେତନ, ପ୍ରସବ ସହଜଭାବେ ସମ୍ପୂର୍ଣ୍ଣ ହୋଇସୁଦ୍ଧା ଦୈବାତ୍ ପ୍ରସୂତୀର ଜ୍ୱର ବିକାର ହୋଇ ଅବସ୍ଥା ଏପରି ଶୋଚନୀୟ। ମୁଁ ଯାଇ ଦେଖେ ପ୍ରସୂତୀ ଗୋଟିଏ ଘୋର ଅନ୍ଧକାର କଣରେ ଖଣ୍ଡେ ଛିଣ୍ଡା ହେଁସ ଉପରେ ପଡ଼ିଚି, ନିକଟରେ ଶିଶୁ କନ୍ୟା। ମୁଣ୍ଡ ଉପରେ ମଶାଲ ପରି ଅଗ୍ନି। ଗୃହର ଏକ କଣରେ ଦୁର୍ଗନ୍ଧ କନାଗୁଡ଼ିକ ଗଦାହୋଇଛି, ଅନ୍ୟ ଅଂଶରେ ଗୋବର ଲିପାହୋଇଛି। ଘରର ଚଟାଣ ସମ୍ପୂର୍ଣ୍ଣ ସନ୍ତସନ୍ତିଆ ଏବଂ ଗୃହରେ ପବନ ଲେଶମାତ୍ର ନାହିଁ। ମୁଁ ପ୍ରସୂତୀର ନାଡ଼ିଦେଖି ଜାଣିପାରିଲି, ତାହା ଏକ ପ୍ରକାର ସନ୍ନିପାତ ଆରମ୍ଭ କହିଲେ ଚଳେ, ମୁଖ ଓ ହସ୍ତପଦାଦି ଫୁଲିଯାଇଛି ଏବଂ ଶୀତଳ

ହୋଇଛି । ପ୍ରସୂତୀ ସମ୍ପୂର୍ଣ୍ଣ ଅଜ୍ଞାନ, ଅଥଚ ଜଣେ ସ୍ତ୍ରୀଲୋକ ଉଠିଆରି ବୋଲି ପ୍ରସୂତୀର ସର୍ବାଙ୍ଗରେ ହଳଦୀ ଓ ତୈଳ ମର୍ଦ୍ଦନ କରିବାରେ ଲାଗିଅଛି । କାରଣ କିଛିକ୍ଷଣ ପରେ ସ୍ନାନାଦି କ୍ରିୟା ହେବ । ବହୁ କଷ୍ଟରେ ତାହାଙ୍କୁ ପରୀକ୍ଷା ପୂର୍ବକ ଡାକ୍ତରଖାନାକୁ ନେଇଯିବାକୁ ପରାମର୍ଶ ଦେଲି, ମାତ୍ର ସେଥିରେ କେହି କର୍ଣ୍ଣପାତ କଲେ ନାହିଁ । କାରଣ ଡାକ୍ତରଖାନା ଗଲେ ସ୍ତ୍ରୀ ପତିତା ହେବ । ଅଥଚ ଡାକ୍ତର ଡକାଇ ଚିକିତ୍ସା କରିବାର ସାମର୍ଥ୍ୟ ସେମାନଙ୍କର ନାହିଁ । ଅବଶେଷରେ ଅନ୍ୟ ଏକ ଅପେକ୍ଷାକୃତ ଦୀର୍ଘ ପରିସର ପ୍ରକୋଷ୍ଠକୁ ନେଇଯିବାକୁ କହିବାରୁ ତାହା ଛୁଆଁ ହେବା ଭୟରେ, ଅନ୍ୟାନ୍ୟ ସ୍ତ୍ରୀ ଲୋକେ ଭୀତହୋଇ ଉଠିଲେ । ବାହାର ଚାଳିରେ ଖଣ୍ଡେ ତକ୍ତପୋଷ ଥିଲା । ସେଠାକୁ ନିଅ କହିଲେ । ସେଥିରେ ସ୍ତ୍ରୀ ଲୋକେ ନାନାଦି ଆପତ୍ତି କଲେ । ଶେଷକୁ ସିଦ୍ଧାନ୍ତହେଲା ''ପ୍ରସୂତୀର କପାଳରେ ଯାହା ଅଛି, ତାହା ହେବ । ସେମାନେ ଆଉ କିଛି କରିବେ ନାହିଁ ।'' ମୋହର ପରୀକ୍ଷା ଏବଂ ଚିକିତ୍ସାଦ୍ୱାରା ଜରାୟୁରେ ପରିସ୍ରବର ଅଂଶ ବିଶେଷ ରହି ପଚି ଯାଇଥିବାର ଦେଖାଗଲା । ପ୍ରସବ ସ୍ୱାଭାବିକ୍, ହେଲେ ଧାତ୍ରୀର ଅଜ୍ଞତା ବଶତଃ ଯେ ଏ ଦୁର୍ଘଟଣା ଘଟିଥିଲା, ଏହା କହିବା ବାହୁଲ୍ୟ ମାତ୍ର ।

ହାଟୁଆ କୁଳରେ ଏପରି ଦୁର୍ଘଟନା ପ୍ରାୟତଃ ଘଟିଥାଏ । କେତେକ ଲୋକ ମଧ୍ୟ ଡାକ୍ତରଖାନା ନେଇ ନାନାଦି ଅସୁବିଧାରେ ପଡ଼ିବା ଓ ଡାକ୍ତର ଡକାଇ ଚିକିତ୍ସା କରାଇବାଦ୍ୱାରା ଅର୍ଥକ୍ଷୟ ଇତ୍ୟାଦି ଅପେକ୍ଷା ଗୋଟିଏ ସ୍ତ୍ରୀ ମୃତ୍ୟୁପରେ ଦ୍ୱିତୀୟ ବିବାହରେ ଅଳ୍ପ ଖର୍ଚ୍ଚ ଭାବି ନିଶ୍ଚିତ ଥାଆନ୍ତି । ଏହାର ପ୍ରମାଣ ଲେଖିକା ଅନେକ ସ୍ଥଳେ ପାଇଅଛି । ଏପରିକି ''୩ ଟଙ୍କା ଖର୍ଚ୍ଚକଲେ ଆଉ ଗୋଟିଏ ବୋହୂ ଘରକୁ ଆସିବ । ଏଥିପାଇଁ ଟ୨୫ଙ୍କା କିଆଁ ଖର୍ଚ୍ଚ କରିବି, ଏହା ଜଣେ ସଙ୍ଗତିସମ୍ପନ୍ନ'' ହାଟୁଆ କୁଳର ଶାଶୂଠାରୁ ଲେଖିକା ଶୁଣିଛନ୍ତି । ମଧ୍ୟ ୧-୫୦ ଟଙ୍କାରେ ଦ୍ୱିତୀୟହେବା କଥା ଉଲ୍ଲେଖକରି ଜଣେ ସ୍ୱାମୀ ସ୍ତ୍ରୀର ଯତ୍ନ ନେଇନାହିଁ । ହାୟ ଦରିଦ୍ରତା । ଲୋକେ ପେଟକୁ ଖାଇବାକୁ ପାଉ ନାହାନ୍ତି । ଖଣ୍ଡେ ପିନ୍ଧିବାକୁ ପାଉ ନାହାନ୍ତି ସେମାନେ ଏପରି କହିବା ସ୍ୱାଭାବିକ୍ । ଡାକ୍ତର ଡକାଇ ପଇସା ଖରଚ କରିବାରେ ତ ଅନେକର ଘୋର ଆପତ୍ତି । ଅବସ୍ଥାର ମଧ୍ୟ ଅନ୍ତରାୟ ଡାକ୍ତରଖାନାକୁ ନେବା କିନ୍ତୁ ତତୋଽଧିକ । ବିପଦ ପ୍ରଧାନ କାରଣ ''ଜାତି ଯିବ'' ଏକ ଘରିଆ ହେବେ, ବିଶେଷତଃ ସ୍ତ୍ରୀ ଲୋକର ଜାତି ଗଲେ ଆଉ ଆସି ନପାରେ । କୌଣସି ସ୍ତ୍ରୀ ମନ୍ଦକର୍ମଦ୍ୱାରା କୁଳତ୍ୟାଗିନୀ ହେଲେ ଯେତିକି ଅପରାଧ ଜୀବନର ସଙ୍କଟ ମୁହୂର୍ତ୍ତରେ ଡାକ୍ତରଖାନାକୁ ଯାଇ ଜୀବନରକ୍ଷା ମଧ୍ୟ ସେତିକି ଅପରାଧ । ସେ ଓ ତାହାର ପରିଜନ ବର୍ଗ ଏକ ଘରିଆ ହେବେ । ଏଥିପାଇଁ ନିରାଶହୋଇ ଅନେକ ଡାକ୍ତରଖାନା ଯିବାକୁ ସମ୍ମତ ହୁଅନ୍ତି ନାହିଁ । ଜଣେ ଭଦ୍ରବଂଶୀୟା ରମଣୀଙ୍କର ଛଅଟି ସନ୍ତାନ ନଷ୍ଟହେଲେ । ଷଷ୍ଠ ଗର୍ଭନାଶ ହେବା ସମୟରେ ଲେଖିକା ତାହାଙ୍କୁ ଚିକିତ୍ସା କରୁଥିଲେ । ନଷ୍ଟ ଶିଶୁକୁ ଅବଲୋକନକରି ମା ଉଚ୍ଚୈଃସ୍ୱରେ ବିଳାପକରି କହିଥିଲେ ''ଆମାର ଯେ ଛୟଟିତୋଲା କେନ ତେବେ ପେଟଧରି ?'' ଗର୍ଭାବସ୍ଥାରେ ଅବହେଳା ବଶତଃ ଶିଶୁଗୁଡ଼ିକର ଦୁର୍ଦ୍ଦଶା ହୋଇଥିଲା ।

ମଫସଲରେ ଗୋଟିଏ ସପ୍ତଦଶବର୍ଷ ବୟସ୍କା ଯୁବତୀର ପ୍ରଥମ ପ୍ରସବହୁଏ। ପ୍ରସବଟି ସ୍ୱାଭାବିକ୍ ବୋଲି ଶୁଣାଯାଏ। ପ୍ରସବ ସକାଶେ ଧାଈ ନିଯୁକ୍ତ ହୋଇଥିଲା। ଅର୍ଥାତ୍ ମଫସଲର ଗୁଳୁଣୀ ଧାଈ। ପ୍ରସବର ବିଳମ୍ବ ହେତୁ ଧାଈ ଆଉ ଅପେକ୍ଷା କରି ନପାରି ଜରାୟୁ ମୁଖ ଚିରିଦେଇ ପିଲାଟିକୁ ଟାଣିଆଣିଲା। ପିଲାଟି ଅଳ୍ପକ୍ଷଣ ମାତ୍ର ଜୀବିତଥିଲା। ପ୍ରସବର ତୃତୀୟ ଦିବସରେ ପ୍ରସୂତୀର ହଠାତ୍ ଭୟାନକ ଜ୍ୱରହେବାରୁ, ତାହାର ସ୍ୱାମୀ କାହାର ବାଧା ପ୍ରତି ଭୃକ୍ଷେପ ନକରି, ସ୍ତ୍ରୀକୁ ଶଗଡ଼ରେ ପକାଇ ଡାକ୍ତରଖାନାକୁ ନେଇଆସିଲା। ଡାକ୍ତରଖାନାରେ ପରୀକ୍ଷାନ୍ତର ଦେଖାଗଲା, ପ୍ରସୂତୀର ବିଷମ ସୂତିକା ଜ୍ୱର। ଜରାୟୁ ମୁଖ ତିନି ଚାରି ସ୍ଥାନରେ ଦୀର୍ଣ୍ଣ ବିଦୀର୍ଣ୍ଣ ଓ ପରିଶ୍ରବର କିୟଦଂଶ ଜରାୟୁରେ। ବର୍ତ୍ତମାନ ପ୍ରସୂତୀ ଅଚେତନ। ଲେଖିକା ସେତେବେଳେ ଦ୍ୱିତୀୟ ଶ୍ରେଣୀର ଛାତ୍ର। ଉକ୍ତ ସ୍ତ୍ରୀଟି ସମ୍ପୂର୍ଣ୍ଣ ଅଜ୍ଞାନ। ପ୍ରତ୍ୟେହ ୧୦୪-୧୦୫° ଜ୍ୱର ଏବଂ ଯେତେଦୂର ଜଣାଗଲା, ତାହାର ବଞ୍ଚିବାର ଆଶା ନାହିଁ। କିନ୍ତୁ କେବଳ ବ୍ୟଥିତ ହୃଦୟ ତାହାର ସ୍ୱାମୀ ପ୍ରତ୍ୟେକ ସକାଳ ସନ୍ଧ୍ୟା ଡାକ୍ତରଖାନା ଫାଟକ ନିକଟରେ ଛିଡ଼ାହୋଇଥାଏ। ସନ୍ଧ୍ୟାର କେତେ ଘଣ୍ଟା ଉତ୍ତୀର୍ଣ୍ଣ ହେଲାପରେ ମଧ, ସେ ଛିଡ଼ା ହୋଇଥାଏ। ଯେ ସେ ବାଟ ଦେଇ ଡାକ୍ତରଖାନାରେ ପ୍ରବେଶକରେ ତାହାକୁ, ଡାକି ପଚାରେ ତାହାର ସ୍ତ୍ରୀ ବଞ୍ଚିବ କି ନାହିଁ। ସେ ଏକ ପ୍ରକାର ଉନ୍ମତ୍ତ। ଚତୁର୍ଥ ଦିବସରେ ପ୍ରସୂତୀର ଅବସ୍ଥା ବିଶେଷ ମନ୍ଦ ହୋଇଉଠିଲା। ଡାକ୍ତର ତାହାର ସ୍ୱାମୀକୁ ଡକାଇ କହିଲେ, ପ୍ରସୂତୀର ଜୀବନର କୌଣସି ଆଶାନାହିଁ। ଯୁବକଟି ପାଗଳ ପରି ଅନେକ କାନ୍ଦିଲା, ଲେଡ଼ି ଡାକ୍ତରଙ୍କର ଗୋଡ଼ ଧରି ବ୍ୟାକୁଳ ଭାବେ ଅନେକ ପ୍ରାର୍ଥନାକଲା। କିନ୍ତୁ ଶେଷ ମୁହୂର୍ତ୍ତରେ ପ୍ରାର୍ଥନାରେ ଆଉ ଫଳ କ'ଣ! ପଞ୍ଚମ ଦିନ ପ୍ରାତଃକାଳରେ ପ୍ରସୂତୀର ଇହଲୀଳା ଶେଷହେଲା। ଫାଟକର ଅଦୂରବର୍ତ୍ତୀ ବୃକ୍ଷତଳେ ସମସ୍ତ ରାତ୍ରି ଉପବେଶନକରି, ଯୁବକଟି ନ ଜାଣି ଭଗବାନଙ୍କୁ କେତେ ଡାକିଥିଲା ମାତ୍ର ପ୍ରଭାତର ଆଲୋକ ସଙ୍ଗେସଙ୍ଗେ ତାହାର ହୃଦୟର ଆଶାଲୋକ ଏକାବେଳେ ଲିଭିଗଲା। ଡାକ୍ତରଖାନା ଫାଟକ ଫିଟିଲା। ଦ୍ୱାର ନିକଟକୁ ଆସି ସେ ଶୁଣିଲା ତାହାର ସ୍ତ୍ରୀ ମରିଯାଇଅଛି। ମାତ୍ର ତାହାର ବିଶ୍ୱାସ ହେଲାନାହିଁ। ଦିବା ୧୧ଟା ପର୍ଯ୍ୟନ୍ତ ଉନ୍ମାଦ ପରି ସେ ଫାଟକର ଦ୍ୱାରଧରି ଛିଡ଼ାହୋଇଥାଏ। ଆହା ସେ ଦୃଶ୍ୟ ଯେ ପ୍ରତ୍ୟକ୍ଷ କରିଅଛି, ସେ କେବଳ ବୁଝିପାରିବ। ସେହି ଯୁବକର ବିଷାଦକ୍ଳିଷ୍ଟ କରୁଣମୁଖ ଆଜି ପର୍ଯ୍ୟନ୍ତ ମୁଁ ଭୁଲିନାହିଁ।

ଅଧିକାଂଶ ଲୋକଙ୍କ ଧାରଣା, ଆଗରେ ତ ଆମ୍ଭ ବାପଅଜା କାଳରେ ଡାକ୍ତରୀ ନଥିଲା, ସେତେବେଳେ କି ଏବଂବିଧ ଦୁର୍ଘଟନାମାନ ଘଟୁଥିଲା? ମୋହର ବିବେଚନାରେ ମଧ ନିଶ୍ଚୟ ଘଟୁଥିଲା। ଆଜି ପର୍ଯ୍ୟନ୍ତ ଓଡ଼ିଶାରେ ଡାକ୍ତରୀର ପ୍ରସାଦ ଅତ୍ୟଳ୍ପ ପରିମାଣରେ ହୋଇଥିବାରୁ, ଏବଂବିଧ ଦୁର୍ଘଟନା ନାନା ସ୍ଥାନରେ ଘଟୁଅଛି। ତେବେହେଁ ପୂର୍ବକାଳୀନ ଦେଶର ଅବସ୍ଥା ଆଜିକାଲି ତୁଲ୍ୟ ନୁହେଁ। ପୂର୍ବକାଳରେ ''ହା ଅନ୍ନ, ହା ବସ୍ତ୍ର ରବ ଶ୍ରୁତହୋଇ ନଥିଲା। ମ୍ୟାଲେରିଆର ପ୍ରବଳ ପ୍ରକୋପ ସମାଜକୁ ସଂତ୍ରସ୍ତ କରିନଥିଲା। ସ୍ତ୍ରୀଗଣ କର୍ମଶୀଳା ଓ ସୁସ୍ଥ ବଳକାୟା ଏବଂ ପରିବାରଗୁଡ଼ିକ ଏକାନ୍ନବର୍ତ୍ତୀ ଥିଲେ। ତେବେ ସୁଦ୍ଧା ଅସ୍ୱାଭାବିକ ପ୍ରସବାଦିରେ

ପ୍ରସୂତୀ ଓ ଶିଶୁ ମୃତ୍ୟୁ ବିଶେଷ ଭାବେ ହେବାର ଥିଲା। ଏହା ନିଶ୍ଚୟ ଧାତ୍ରୀ ବିଦ୍ୟାରେ ପୁଙ୍ଖାନୁପୁଙ୍ଖ ରୂପେ ପ୍ରଜନନତତ୍ୱ ଆଲୋଚିତ ହୋଇଥିବାରୁ ଏବଂ ଶତ ଶତ ବର୍ଷର ଅଭିଜ୍ଞତା ଲିପିବଦ୍ଧ ହୋଇଥିବାରୁ, ସେହିବିଦ୍ୟାରେ ଶିକ୍ଷିତା ନର୍ସ ଏବଂ ସାଧାରଣ ଅଜ୍ଞ ଧାଈ ମଧ୍ୟରେ ବିଶେଷ ପ୍ରଭେଦ ବହୁ ପୁରାକାଳରେ, ବୋଧହୁଏ ପଞ୍ଚଦଶ ଶତାବ୍ଦୀରେ ଅଷ୍ଟ୍ରିଆର ରାଜଧାନୀ ଭିଏନା ନଗରର ପ୍ରସୂତୀ ହସପିଟାଲର ଅଧ୍ୟକ୍ଷ୍ୟ ଜ୍ୱରରେ ଶତକଡ଼ା ୯୫ ଜଣ ମରୁଥିବାର ଦେଖି, ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ, ତାହାର କାରଣ ଅନୁସନ୍ଧାନରେ ପ୍ରବୃତ ହେଲେ। ସେ ଦେଖିଲେ, ହସପିଟାଲର ଛାତ୍ରଙ୍କ ଶିକ୍ଷା ବିଭାଗରେ, ନର୍ସ ଶିକ୍ଷା ବିଭାଗ ଅପେକ୍ଷା ପ୍ରସୂତୀ ମୃତ୍ୟୁ ସଂଖ୍ୟା ଅଳ୍ପ ଅଟେ। ବହୁ ପର୍ଯ୍ୟବେକ୍ଷଣ ପୂର୍ବକ ସେ ସିଦ୍ଧାନ୍ତ କଲେ ଯେ, ଦୂଷିତ ହସ୍ତ ହିଁ ଏହି ସୂତିକା ଜ୍ୱରର ଏକ ବିଶିଷ୍ଟ କାରଣ। ଏହିଁ ଉଭାରେ ସେହି ଦିନୁ କ୍ଲୋରାଇଡ୍ ଅଫ୍ ରାଇମ୍ ଜଳରେ ମିଶାଇ ହସ୍ତ ପ୍ରକ୍ଷାଳନ ପୂର୍ବକ ପ୍ରସୂତୀଙ୍କୁ ଛୁଇଁବାର ବା ଚିକିତ୍ସାଦି କରିବାର ବ୍ୟବସ୍ଥାକଲେ। ପରବର୍ତ୍ତୀ ବର୍ଷ ପ୍ରସୂତୀର ମୃତ୍ୟୁ ସଂଖ୍ୟା ଅତିଶୟ ଊଣାହେଲା। ଏହିପରି କ୍ରମେ କ୍ରମେ ଡାକ୍ତରମାନେ ବହୁ କଷ୍ଟ ସ୍ୱୀକାରପୂର୍ବକ ଶତ ଶତ ବର୍ଷ ବ୍ୟାପି ଆଲୋଚନା ଓ ଗବେଷଣା, ପର୍ଯ୍ୟବେକ୍ଷଣ ଫଳରେ ଧାତ୍ରୀ ବିଦ୍ୟାକୁ ପୂର୍ଣ୍ଣାଙ୍ଗ କରିପାରିଅଛନ୍ତି। ମଧ୍ୟ ଏ ପର୍ଯ୍ୟନ୍ତ ଦିନକୁ ଦିନ ଆଲୋଚନା ଓ ପର୍ଯ୍ୟବେକ୍ଷଣ ବଢୁଅଛି।

ଆଜିକାଲି ଜଗତର ସବୁ ସଭ୍ୟ ଦେଶ ଆଧୁନିକ ଧାତ୍ରୀ ଶିକ୍ଷାନୁଷ୍ଠାନରେ ଗର୍ଭିଣୀର ଚିକିତ୍ସା କରାଇଥାନ୍ତି, ତେବେ ଆମ୍ଭେମାନେ ସେଥିରେ ପଶ୍ଚାଦ୍‌ପଦ ହେବା କଣ କର୍ତ୍ତବ୍ୟ ଯେଉଁ ସ୍ଥାନରେ ଶିକ୍ଷିତା ଧାଈ ଅନାୟସରେ ମିଳନ୍ତି, ସେ ସ୍ଥାନରେ ଶିକ୍ଷିତା ଲୋକଙ୍କଦ୍ୱାରା ଜୀବନ ବିପନ୍ନକରିବା ପ୍ରୟୋଜନ କ'ଣ? ତାହାରି ଫଳ ସ୍ୱରୂପ ମୁଁ ମୋହର କର୍ତ୍ତବ୍ୟପାଳନ ସକାଶେ ଦୃଢ଼ ପ୍ରତିଜ୍ଞାବଦ୍ଧ ହୋଇଅଛି। ସେ ଦିନର ଘଟନା ମୋହର ସ୍ମୃତିପଟରେ ବିଶେଷ ଭାବେ ଅଙ୍କିତ। ସେହି ହେତୁ ଦୀର୍ଘ ଚାରିବର୍ଷ ପରେ, ଆଜି ଏ ଲେଖାର ଅବତାରଣା ମୁଁ ଭୁଲିନାହିଁ। ଓଡ଼ିଶାର ପ୍ରସୂତୀମାନଙ୍କର ଦୁର୍ଦ୍ଦଶା ଏବଂ ସେହିମାନଙ୍କର କଲ୍ୟାଣ କାମନା ମୋହର ସର୍ବାଦୌ କର୍ତ୍ତବ୍ୟ ନୁହେଁ କି?

ଆମ୍ଭମାନଙ୍କର ବାଳିକାମାନଙ୍କୁ ଜଳୋପଯୋଗୀ ଶିକ୍ଷା ଦେବାରେ ବାଧା କ'ଣ? ଆଜିକାଲିର କନ୍ୟାମାନେ ପାଠ ପଢୁଅଛନ୍ତି। ନାଟକ, ନଭେଲପଢ଼ିବା ଦ୍ୱାରା ବହୁମୂଲ୍ୟ ସମୟ ନଷ୍ଟ କରୁଅଛନ୍ତି। ମାତୃତ୍ୱ ସମ୍ବନ୍ଧୀୟ ଅବଶ୍ୟ ଜ୍ଞାତବ୍ୟ ଶିକ୍ଷା ବିଷୟଗୁଡ଼ିକ ଶିକ୍ଷାକଲେ କ'ଣ ଦୋଷ ହୁଅନ୍ତା? ଅବଶ୍ୟ ଓଡ଼ିଆରେ ଏ ପ୍ରକାର ପୁସ୍ତକ ଗୋଟିଏ ହେଲେ ଅଛି ବୋଲି ମୋତେ ଜଣାନାହିଁ। କିନ୍ତୁ ଶିକ୍ଷିତା ବାଳିକାମାନେ ପ୍ରାୟତଃ ବଙ୍ଗଳା ଜାଣିଥାନ୍ତି। ବଙ୍ଗଳା ଭାଷାରେ ଏବଂ ଇଂରାଜୀରେ ଏତଦ୍ ସମ୍ବନ୍ଧୀୟ ଅନେକ ପୁସ୍ତକ ଅଛି। ଇଚ୍ଛାକଲେ ଅନୁବାଦ କରାଯାଇପାରେ। ଆଜିକାଲି ଶିକ୍ଷା ସକାଶେ ସରକାର ମନୋଯୋଗୀ, ସ୍କୁଲରେ ପାଠ୍ୟ ପୁସ୍ତକ ସହିତ ମାତୃଭାଷା ଓ ଇଂରାଜୀରେ ପଠିତ ହୋଇପାରେ। ତଦ୍ଦ୍ୱାରା ବାଳିକାମାନେ ବିଶେଷ ଉପକୃତ ହୋଇପାରିବେ। ଜ୍ୟାମିତି, ଆଲଜେବ୍ରାଦ୍ୱାରା ତ ଗୃହିଣୀ ଓ ମାତାର ଉପକାର ହୋଇ ନପାରେ।

ସହସ୍ର ଦର୍ଶନବିଜ୍ଞାନ ଚର୍ଚ୍ଚାକରିଥିଲେ ମଧ୍ୟ ପ୍ରସବର ଗୋଟିଏ ଶୂଳ ବେଦନାର ଉପଶମ ହୋଇ ନପାରେ। ଗର୍ଭ ଓ ପ୍ରସବକାଳୀନ ବିପଦାଦି ସମ୍ବନ୍ଧୀୟ ସାଧାରଣ କଥା ବାଳିକାମାନେ ବେଶ ମନେ ରଖିପାରିବେ ଏବଂ ସମୟ ବିଶେଷରେ ସମୂହ ବିପଦରୁ ରକ୍ଷା ପାଇପାରିବେ।

ଅତି କ୍ଷୁଦ୍ର କ୍ଷୁଦ୍ର କଥା ଗର୍ଭାବସ୍ଥାରେ ଅଳ୍ପ ଓ ସ୍ୱାସ୍ଥ୍ୟକର ପରିଶ୍ରମ କରିବ, ଅଧିକ ରାତ୍ରି ଜାଗରଣ କରିବ ନାହିଁ। ଖାଦ୍ୟାଦି ସମ୍ବନ୍ଧରେ ବିଶେଷ ସତର୍କ ହେବ। ମୁକ୍ତ ବାୟୁ ସେବନ କରିବ, ଋତୁର ତାରିଖ ଅନୁସାରେ ଏକସପ୍ତାହ ପୂର୍ଣ୍ଣ ବିଶ୍ରାମକରିବ। କାରଣ ସେହି ସମୟରେ ଗର୍ଭପାତର ଆଶଙ୍କା ସମଧିକ। କୋଷ୍ଠବଦ୍ଧ ହେଲେ ଉପଯୁକ୍ତ ପରିମାଣ ଅତି ମୃଦୁ ବିରେଚକ ବ୍ୟବହାର କରିବ କିମ୍ବା ଗରମ ଦୁଗ୍ଧ ସେବନକରିବ। ଜ୍ୱର ହେଲେ ବିଶେଷ ଭାବେ ବିଶ୍ରାମକରିବ। ସର୍ବଦା ପ୍ରଫୁଲ୍ଲ ଓ ସଂଯମୀ ହୋଇ ଗର୍ଭସ୍ଥ ଶିଶୁର କଲ୍ୟାଣସାଧନ କରିବ। ତେବେ ସିନା ହୃଷ୍ଟପୁଷ୍ଟ ନିରୋଗ ସନ୍ତାନ ଲାଭକରି ସମାଜର ଉପକାର କରିବ। କେତେକ କ୍ଷୀଣପ୍ରାଣ ଅଳ୍ପାୟୁ ସନ୍ତାନଦ୍ୱାରା ନିଜ ଜୀବନ ଓ ସମାଜକୁ ଦୁରୂହ ଭାରଗ୍ରସ୍ତ କରିଦେବା କର୍ତ୍ତବ୍ୟ କି? ଶିଶୁ ହିଁ ତ ଭାବି ମାନବ ଓ ସମାଜର ଗୋଟିଏ ସ୍ତମ୍ଭ! ସେହି ଶିଶୁର ଆଗମନପାଇଁ ବେଳହୁଁ ପ୍ରସ୍ତୁତ ହେବା ଉଚିତ୍। ଅନ୍ୟଥା କୌଣସି ବିପଦର ସମ୍ଭାବନା ଦେଖିଲେ, ଯଥା ଗୋଡ଼ ଓ ମୁଖଫୁଲା, ପ୍ରସାବଦୋଷ, ବିଶେଷ ଜ୍ୱରାଦି ବିକାରହେଲେ ଡାକ୍ତର ଡକାଇ ଚିକିତ୍ସା କରିବା ଉଚିତ୍। ଏହାକି ବାଳିକାମାନେ ଶିକ୍ଷା କରିପାରିବେ ନାହିଁ? ସମସ୍ତେ ଯେ ଡାକ୍ତର ବା ନର୍ସ ହେବେ, ତାହା ମୁଁ କହୁନାହିଁ। ବରଂ ସାବଧାନତାଦ୍ୱାରା ଡାକ୍ତରକୁ ଭାବିବାର ଋଣ ହୋଇଯିବ, ଅର୍ଥର ଅଯଥା ବ୍ୟୟ ମଧ୍ୟ ନିବାରିତହେବ।

ନଭେଲ ପରିବର୍ତ୍ତରେ ସେ ସବୁ ପଢ଼ିବାଦ୍ୱାରା ସେମାନଙ୍କର ଶିକ୍ଷାର ସାର୍ଥକତା ସମ୍ପାଦିତ ହୁଅନ୍ତା। ଶିକ୍ଷାର ଉଦ୍ଦେଶ୍ୟ ପ୍ରକୃତ ମନୁଷ୍ୟତ୍ୱ ଦାନ କରିବା। ପ୍ରକୃତ ମନୁଷ୍ୟତ୍ୱର ଲକ୍ଷଣ– କର୍ତ୍ତବ୍ୟ ଜ୍ଞାନ। ନାରୀର ମାତୃତ୍ୱ ଅପେକ୍ଷା ମହତ୍ତର କର୍ତ୍ତବ୍ୟ କି ଅଛି ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧିଧାରିଣୀ ଯଦି ମାତୃତ୍ୱ ସମ୍ବନ୍ଧୀୟ ଜ୍ଞାତବ୍ୟ ବିଷୟଗୁଡ଼ିକ ଶିକ୍ଷା ନକରି, କେବଳ ସାହିତ୍ୟ, ଦର୍ଶନ ଓ ବିଜ୍ଞାନାଦିର ଚର୍ଚ୍ଚା କରିଥାଆନ୍ତି, ଶ୍ୱଶୁର ଗୃହରେ ସନ୍ତାନର ଜନନୀ ହେବାବେଳେ ସେ କଷ୍ଟ ଭୋଗୁ ଭୋଗୁ, ଥରେ କ'ଣ ମନେକରୁ ନଥିବେ, ଆହା ମାତା କିପରି ହୁଅନ୍ତି ଏ ବିଷୟ ଖଣ୍ଡେ ପୁସ୍ତକ ଯଦି ପଢ଼ିଥାନ୍ତି? ମାତାମାନେ ତ ନିଜ ନିଜ ଅନୁଭବରୁ କନ୍ୟାକୁ ଶିକ୍ଷାପ୍ରଦାନ କରିପାରନ୍ତି। ଆମ୍ଭ ଦେଶରେ ତ ବାଳିକା ବିବାହ ଅଧିକାଂଶ ସମାଜରେ ପ୍ରଚଳିତ। ଜନନୀ ଶାଶୁଘରକୁ ତ ଅଜ୍ଞାନ ବାଳିକାଟିକୁ ପଠାଇଦିଅନ୍ତି। ମୁଣ୍ଡରେ ଓଢ଼ଣା ଦେବାକୁ ଶିକ୍ଷାଦିଅନ୍ତି। ଶାଶୂନଣନ୍ଦଙ୍କୁ କିପରି କଥାକହିବାକୁ ହେବ ଶିକ୍ଷାଦିଅନ୍ତି। ଅଥଚ ମାତୃତ୍ୱ ବିଷୟରେ ପଦେ କଥା ମଧ୍ୟ ଶିଖାନ୍ତି ନାହିଁ। ଫଳ ସ୍ୱରୂପ ଦ୍ୱାଦଶ ତ୍ରୟୋଦଶ ବର୍ଷୀୟା ଅଜ୍ଞାନ ବାଳିକା ସନ୍ତାନର ଜନନୀ ହୋଇବସନ୍ତି ଏବଂ କେତେଗୁଡ଼ିଏ ଅକାଳ ଜନ୍ମା, କ୍ଷୀଣ ପ୍ରାଣ ଅଳ୍ପାୟୁ ସନ୍ତାନସନ୍ତତିଦ୍ୱାରା ପରିବାରକୁ ଓ ସ୍ୱୀୟ କୋମଳ ଜୀବନକୁ ବିଶେଷ ଭାରଗ୍ରସ୍ତ କରିପକାନ୍ତି। ଏସବୁ ଦୋଷତ ସେମାନଙ୍କର ନୁହେଁ। ସେଥିପାଇଁ ପ୍ରାୟ ବାଳିକାମାନଙ୍କର ପ୍ରଥମ ଗୋଟିଏ

ହୋଇ, ଦିଓଟି ହୋଇ ସନ୍ତାନ ନଷ୍ଟହୋଇଥିବା କଥା ଘରେ ଘରେ ଶୁଣାଯାଏ।

ଏହାର ବହୁଳ ଉଦାହରଣ ଲେଖିକା ଜାଣେ। କିନ୍ତୁ ମାଆ ଝିଅକୁ ଶିକ୍ଷା ଦେବା ଅଶ୍ଳୀଳ ହେବ। ଗର୍ଭ, ଏହି ଶବ୍ଦଟି ତ ମହା ଲଜ୍ଜାକର। ପୁଣି ଗର୍ଭଧାରଣ ତତ୍ତ୍ୱ ମାତା କନ୍ୟାକୁ, ଶାଶୂ ବୋହୂକୁ, ଶିକ୍ଷୟିତ୍ରୀ ଛାତ୍ରୀକୁ ଶିକ୍ଷାଦେବେ। ଆଉ ସମାଜ ରହିବ ନାହିଁ। ମାତ୍ର ପ୍ରଜନନ କ୍ରିୟା ହିଁ ବିଶ୍ୱସୃଷ୍ଟିର ମୂଳମନ୍ତ୍ର। ମାତାର ସ୍ୱୀୟ ଅନୁଭବରୁ କନ୍ୟାକୁ ଯାବତୀୟ ବିଷୟ ଏକାନ୍ତ ପ୍ରୟୋଜନ। ଏହା ହେଉଥିଲେ ଅନେକ ବାଳିକା ବଧୂ ଗର୍ଭ ଓ ପ୍ରସବକାଳୀନ ସମୂହ ବିପଦରୁ ରକ୍ଷାପାଉଥାନ୍ତେ। ଧାତ୍ରୀବିଦ୍ୟା ତ ଅନୁଭବ ଓ ପର୍ଯ୍ୟବେକ୍ଷଣର ସାର ସଂଗ୍ରହ।

ପରିଶେଷରେ ବକ୍ତବ୍ୟ ଏହି ଯେ, ପ୍ରଜନନ କ୍ରିୟାର ସାଧାରଣ ନିୟମାବଳୀ, ଗର୍ଭାବସ୍ଥାରେ ଗର୍ଭିଣୀର ଉପଯୁକ୍ତ ଯତ୍ନ, ପ୍ରସବ ପ୍ରକ୍ରିୟାର ସ୍ୱାଭାବିକ ରୀତି, ପ୍ରସବକାଳୀନ ଓ ପ୍ରସବାନ୍ତର ପ୍ରଧାନ ପ୍ରଧାନ ବିପଦଗୁଡ଼ିକ ଏବଂ ତତ୍‌ସମୂହର ନିବାରଣ ଉପାୟମାନ ଶିକ୍ଷା କରିବା ବାଳିକାମାନଙ୍କ ପକ୍ଷରେ ଲଜ୍ଜା ଓ ଅଶ୍ଳୀଳତାର ବିଷୟ ନ ହୋଇ ବରଂ ଅଧିକ ଜୋରଦାର ବିଷୟ ହେବ। ତଦ୍ୱାରା ସେ ଦାୟିତ୍ୱ ଜ୍ଞାନସମ୍ପନ୍ନା ସୁମାତା ହୋଇ ସ୍ୱାମୀ ଓ ପରିଜନଙ୍କର ପ୍ରୀତିଭାଗିନୀ ହେବ। ମଧ୍ୟ ସ୍ୱୀୟ ଜୀବନ ଓ ପରିବାରର ଅନେକ ମଙ୍ଗଳସାଧନ କରିବ ଏବଂ ତଦ୍ୱାରାଅନ୍ତୁଡ଼ି ଶାଳର ଅତ୍ୟାଚାର, ପ୍ରସୂତୀ ଓ ଶିଶୁ ମୃତ୍ୟୁର ସଂଖ୍ୟା ବିଶେଷ ପରିମାଣରେ ହ୍ରାସପ୍ରାପ୍ତ ହେବ।

ଓଡ଼ିଶାର ମନୀଷୀ ଏବଂ ମନସ୍ୱିନୀଗଣ ଏ ବିଷୟରେ ଧୀର ଚିତ୍ତରେ କ୍ଷଣକାଳ ସକାଶେ ଚିନ୍ତାକରିବେ କି ? ଆପଣା ଆପଣା ଅନୁଭବ ସହିତ ମିଳାଇ ପରୀକ୍ଷାକରିବେ କି ? ନା ଲେଡ଼ି ଡାକ୍ତରର ଲେଖାବୋଲି ଉପେକ୍ଷାକରିବେ ?



# ମାତୃମଙ୍ଗଳ

## ଏକ

ନିର୍ଭୀକ ସଂପାଦକ ମହୋଦୟ !

ମାତୃମଙ୍ଗଳ ସମ୍ବନ୍ଧରେ ଆପଣ ମୋର ଲେଖା ଚାହାନ୍ତି। ମୁଁ ଜାଣେ, ଆପଣ ଆମ ଗରିବ ଜାତିର, ଆଉ ଏ ଗରିବ ସହରର ଅନେକ ହାରିଗୁହାରି ଛପେଇ ଲୋକଙ୍କ ଆଖି ଆଗରେ ପଦାରେ ପକାଇଛନ୍ତି। ସେଥିପାଇଁ ଆପଣଙ୍କୁ ଓ ଦେଶବାସୀଙ୍କୁ ଜଣେଇବାକୁ ମୁଁ ଯାହା ଜାଣେ ଲେଖିବି।

**ପ୍ରଥମ କଥା**

ମାତୃମଙ୍ଗଳ ଓ ଶିଶୁମଙ୍ଗଳ ବିଷୟଟା କ'ଣ କ'ଣ ବା ତହିଁରୁ ଗୁରୁତ୍ୱ କେତେ, ଆମ ଦେଶର ଶିକ୍ଷାଭିମାନୀମାନଙ୍କଠାରୁ ଆରମ୍ଭ କରି ନିତାନ୍ତ ଗରିବ ମୂର୍ଖ ପର୍ଯ୍ୟନ୍ତ ପ୍ରାୟ କେହି ବୁଝନ୍ତି ନାହିଁ; ବୁଝୁଥିଲେ ମଧ୍ୟ ସେ ବିଷୟରେ ମନୋଯୋଗ ଦେବାକୁ କାହାରି ଚେଷ୍ଟା ପ୍ରାୟ ନ ଥାଏ। ଆମ ଦେଶରେ ଶିଶୁର ମୃତ୍ୟୁ ସଂଖ୍ୟା ଅଧିକ। ଏହାର କାରଣ କ'ଣ ? ଲୋକେ ଡାକ୍ତରୀ ଜାଣନ୍ତି ନାହିଁ ବୋଲି, ଅବା ଜାଣିଶୁଣି ପିଲାଙ୍କୁ ମାରିପକାନ୍ତି ? ତା ନୁହେଁ। କାରଣ ଯେଉଁ ସମୟରେ ଏ ଦେଶରେ ଡାକ୍ତରୀ ନ ଥିଲା, ସେ ସମୟରେ ସବଳ ସୁସ୍ଥ ଶିଶୁ ଜନ୍ମ ନେଉଥିଲେ, ଆଜିକାଲି ଆମେ ଏଡ଼େ ହିନବଳ କାହିଁକି ? ମୋ ମତରେ ନିମ୍ନଲିଖିତ କେତୋଟି କାରଣ ସେଥିପାଇଁ ଦାୟୀ।

**(୧) ପ୍ରଥମ ଏବଂ ସର୍ବପ୍ରଧାନ ଅଶିକ୍ଷିତ ମା :** ମା ହବାର କ'ଣ ଦାୟିତ୍ୱ ଆମ ଦେଶର ଝିଅ ଜାଣନ୍ତି ନାହିଁ, ନ ଜାଣିବା ପୂର୍ବରୁ ସଂସାରରେ ପଶନ୍ତି। ପିଲାଟିକି କିପରି ମଣିଷ କରିବାକୁ ହବ– ମା, ଆଈ ଲାଜ କଥା ବାହୁଅ ଝିଅକୁ କହିବେ କେମିତି ବୋଲି ଶିଖେଇ ନଥାନ୍ତି। ପିଲାର ରୋଗ ବଇରାଗ ଚିକିତ୍ସାତ ଦୂରର କଥା, ସୁସ୍ଥ ସବଳ ଶିଶୁକୁ କେମିତି ଖୁଆଇବାକୁ ହେବ, କେମିତି ଶୁଆଇବାକୁ ହେବ, ପିଲାର ଦେହ ଭଲମନ୍ଦ କେମିତି ବୁଝିବାକୁ ହେବ, କିଛି ଜାଣନ୍ତି ନାହିଁ। ସେଥିରେ ପୁଣି ବୋଝ ଉପରେ ଲଳିତା ବିଡ଼ା। ସେ ପିଲା, ପିଲାର ମା ହୋଇ ବସେ। ବାଲ୍ୟ ବିବାହ, ଦେଶାଚାର, କୁଳାଚାର, କୁସଂସ୍କାର, ଭୂତଡାଆଣୀ ଭୟର କଥା ଛାଡ଼।

**(୨) ଦ୍ୱିତୀୟ : ଅଶିକ୍ଷିତ ବାପା :** ପିଲା ଜନ୍ମରେ, ପିଲା ପାଳନରେ ବାପର ଦାୟିତ୍ୱ କେତେ, ବଡ଼ ଓଡ଼ିଆ ବାପ ତାହା ବୁଝନ୍ତି ନାହିଁ। ଦେଶରେ ବ୍ରହ୍ମଚର୍ଯ୍ୟର ନାମ ଗନ୍ଧ ନାହିଁ। ଏ ଘର ଛାଉଣି କି ସେ ଘର ଛାଉଣି ଯେ ଗୋଟିଏ ଗୋଟିଏ ପିଲା ହୋଇ ସ୍ତ୍ରୀ ଦରମରା ହୁଏ ବା ମରିଯାଏ, ପିଲା ଅଧା ଜୀବନିଆ ହୁଏ ବା ଜୀବହୀନ ଜନ୍ମହୁଏ। ଶରୀରର କାର୍ଯ୍ୟ ଓ ବିଶ୍ରାମ– ଉଭୟ ପ୍ରକ୍ରିୟା, କଳା। ସନ୍ତାନ ପ୍ରସବପର ମହାକ୍ଲେଶ ସାଧ୍ୟ। ଦେହର ସମୁଦାୟ ଶକ୍ତିକ୍ଷୟ

ପରି ବ୍ୟାପାର ଯଦି ଜଣେ ସୁସ୍ଥ ସବଳ ସ୍ତ୍ରୀ ଲୋକର ଶରୀର ମଧ୍ୟରେ ପ୍ରତି ବରଷ ଘଟୁଥାଏ, ତାହା ହେଲେ ୭।୮ ବର୍ଷ ମଧ୍ୟରେ ସ୍ତ୍ରୀ ଦେହର ଦଫାରଫା ଶେଷ, ଅଥଚ ଯେଉଁ ସନ୍ତାନମାନେ ହୁଅନ୍ତି ସେମାନେ ଯେ ଜଗତରେ କିଛି କାମ କରିବାକୁ ଆସିଥାନ୍ତି, ଏପରି ନୁହେଁ। ଦିବାରାତ୍ର ବାର ରୋଗବଇରାଗରେ ବାପା ମାର କଷ୍ଟ ଅର୍ଜିତ ପଇସା ତାଙ୍କରି ପିଛାରେ, ଡାକ୍ତର ବୈଦ ଔଷଧ ମୌଷଧିରେ ଖରଚ ହୁଏ। ପୁଣି ଯେଉଁ ଯେଉଁ ଆୟରେ ଚାରିପ୍ରାଣୀ ଚଳିବା କଷ୍ଟକର, ସେ ଆୟରେ ଦଶପ୍ରାଣୀ ହେଲା ବେଳକୁ, ହାଡ଼ଭଙ୍ଗା ଖଟଣି ଖଟିଲେ ସୁଦ୍ଧା ଅଭିଭାବକର ଚିନ୍ତାର ବିରାମ ନଥାଏ। ପୁରୁଷମାନଙ୍କୁ ବୈବାହିକ ଜୀବନରେ କଲ୍ୟାଣକର ସଂଯମର ମୂଲ୍ୟ କିଏ ଶିଖେଇବ ? ସେମାନେ ସଂଯମୀ ହେଲେ, ସେମାନଙ୍କ ଘର ସ୍ୱର୍ଗ ଭୂବନ ହେବ ଏବଂ ସ୍ତ୍ରୀର ଅକାଳ ମୃତ୍ୟୁରେ ପୁନର୍ବାର ଅଳ୍ପ ବୟସ୍କା କନ୍ୟାଟିର ପାଣି ଗ୍ରହଣକରି ନିଜେ ଜୀବନ ବଞ୍ଚାଇବାକୁ ଏବଂ ପୁତ୍ରକନ୍ୟାର ଜୀବନକୁ କଣ୍ଟକାମରେ କରିବାର ପ୍ରୟୋଜନ ହେବ ନାହିଁ। ଦଶଟା ରୋଗୀଣା ଅଧାମଲା ଛୁଆ ଅପେକ୍ଷା ଗୋଟିଏ ଯୋଡ଼ିଏ ସୁସ୍ଥ ସବଳ ପିଲା ଭଲ।

**ତୃତୀୟ**

**ସମାଜର ଅତ୍ୟାଚାର ମୂଳକ ପଦ୍ଧତି :** ଶିଶୁ ମୃତ୍ୟୁ ବେଶି ହେବାର କାରଣ ହେଉଛି– ସମାଜ ମଧ୍ୟରେ ବାଲ୍ୟ ବିବାହ ଏବଂ ସଂକୀର୍ଣ୍ଣ ସୀମା ମଧ୍ୟରେ ବିବାହ ସର୍ବପ୍ରଧାନ ଅତ୍ୟାଚାରମୂଳକ ପଦ୍ଧତି। ବାଲ୍ୟ ବିବାହଦ୍ୱାରା ବାଳିକା ବୟସରେ ମାତା ହେବାକୁ ହୁଏ। ବାର ଚଉଦ ବା ଷୋଳ ବର୍ଷ 'ଜନନୀ' ହେବାର ବୟସ ନୁହେଁ। ଅଠର ବର୍ଷ ସ୍ତ୍ରୀ ଲୋକ ପକ୍ଷରେ ଦେହର ପୂର୍ଣ୍ଣତା ପ୍ରାପ୍ତିର ସମୟ। ପ୍ରତ୍ୟେକ ଝିଅକୁ ଅଠର ବର୍ଷ ପରେ ବିବାହ ଦେଲେ, ଅଧିକ ଶିଶୁ ଜନ୍ମନ୍ତେ ନାହିଁ ବା ଅକାଳ ମୃତ୍ୟୁରେ ଅନେକ ମା ଓ ପିଲା ମରନ୍ତେ ନାହିଁ। ସଂକୀର୍ଣ୍ଣ ନିୟମ, ଅର୍ଥାତ୍ ଗୋଟିଏ ବର୍ଣ୍ଣରେ ବିଭିନ୍ନ ଶାଖାରେ ସୁଦ୍ଧା ବିବାହ ନିଷେଧ ପ୍ରଥା। ତଦ୍ୱାରା ବିବାହଯୋଗ୍ୟ ଗୋତ୍ର ଏବଂ ଘରର ସଂଖ୍ୟା ଅତ୍ୟନ୍ତ ସୀମାବଦ୍ଧ ହୁଏ। ପୁରୁଷାନୁକ୍ରମିକ ଶାରୀରିକ ଓ ମାନସିକ ଦୁର୍ବଳତା ଏବଂ ବଂଶ ପରମ୍ପରାର ଦୁର୍ଗୁଣଗୁଡ଼ିକ ସନ୍ତାନସନ୍ତତି ଉତ୍ତରାଧିକାର ସୂତ୍ରରେ ପାଇଥାନ୍ତି। ବଦ୍ଧସ୍ରୋତା ନଦୀ ପରି ଗୋଟିଏ ଜାତିର ଗୁଣ ଓ ଲକ୍ଷଣଗୁଡ଼ିକ ପୁରୁଷରୁ ପୁରୁଷ ଗଡ଼ିଆସୁଥାଏ। ଯଦି ବ୍ରାହ୍ମଣ କ୍ଷତ୍ରିୟ ଆଦିର ଅନ୍ତର ଜାତି ସହିତ ବିବାହ ହେଉଥାନ୍ତା, ଆମ ଦେଶରେ କୋଟି କୋଟି ଦୁର୍ବଳ ଦେହ ଓ ଦୁର୍ବଳ-ମନା ଲୋକ ନଥାନ୍ତେ। ବ୍ରାହ୍ମଣ, ଚଷାର ଶାରୀରିକ ଶକ୍ତି ପାଆନ୍ତା। ଚଷା, ବ୍ରାହ୍ମଣର ମସ୍ତିଷ୍କର ଜ୍ଞାନ ଓ ବିଦ୍ୟାନୁରାଗ ଲାଭକରନ୍ତା। ହିନ୍ଦୁଧର୍ମରେ ଭ୍ରାନ୍ତ ଜାତିଭେଦର ବିରାଟ ବିଦ୍ୱେଷ ଥିଲା ପର୍ଯ୍ୟନ୍ତ ଭାରତୀୟ ମହାଜାତିର ସ୍ୱପ୍ନ ଦେଖିବା ବୃଥା।

**ଚତୁର୍ଥ କାରଣ :**

**ଦେଶବ୍ୟାପୀ ଦାରିଦ୍ର୍ୟ :** ଅଧିକାଂଶ ଶିଶୁମୃତ୍ୟୁର ଏହା ଏକ ବିଶେଷ କାରଣ ଏବଂ ସର୍ବପ୍ରଧାନ କାରଣ। କଟକ ଓଡ଼ିଶାର ରାଜଧାନୀ। ଦେହରେ ମୁଖର ସ୍ଥାନ ଯେପରି, ଓଡ଼ିଶାରେ

କଟକର ସ୍ଥାନ ସେପରି। କଟକ ମ୍ୟୁନିସିପାଲଟି ଡାକ୍ତରଖାନାମାନଙ୍କରେ ଡାକ୍ତର, ନର୍ସ, ଶିକ୍ଷିତ ଧାଈ ସବୁ ରହିଛନ୍ତି। କିନ୍ତୁ ଏତେ ପିଲା ମରୁଛନ୍ତି କାହିଁକି? ପ୍ରଧାନ କଥା, ଅଭାବ। ଯେଉଁ ଆଡ଼କୁ ଚାହଁ, କେବଳ ଅଭାବ। ଖାଇବାର ଅଭାବ, ପିନ୍ଧିବାର ଅଭାବ, ରହିବାର ଅଭାବ। ଗତଥର ବର୍ଷାଦିନରେ ଗରିବ ଘରମାନଙ୍କରେ ପିଲା ପୋଖତୀର କି ଦୁର୍ଦ୍ଦଶା, ତାହା ମୁଁ ଆଖିରେ ଦେଖିଛି। ନିଜେ ଯାଇ ଅନେକ ଜାଗାରେ କାର୍ଯ୍ୟକରିଛି। କାନ୍ଥୁ କରକୁ ପାଣି, ଚଟାଣ ଓଦା, ସନ୍ତସନ୍ତିଆ, ମଇଳା କତରା ହେଂସ। ଓଳିଏ ଦାନା ଥିଲେ, ଆର ଓଳିକି ଦାନ ନାହିଁ। ଏପରି ଅବସ୍ଥାରେ ପିଲାଗୁଡ଼ିଏ ସୁସ୍ଥସବଳ ହେବେ, ସଂସାରରେ ବଞ୍ଚି ମଣିଷ ହେବେ? ଗାଈ, କୁକୁର, ବିଲେଇଙ୍କ ପିଲା ହେଉଚି। କିନ୍ତୁ କାହିଁ ମଣିଷ ପରି ସେମାନେ କଦର୍ଯ୍ୟ ହେଉ ନାହାନ୍ତି। ଆମେ ପଶୁଠାରୁ ହୀନ ହେଉଛୁ। ମା ଗର୍ଭବତୀ, କିନ୍ତୁ କୋଳରେ ବର୍ଷକର ଶିଶୁ। କଟକର ଭଲ ଦୁଧ ମିଳେ ନାହିଁ। ଯାହା ନିତାନ୍ତ ପାଣିମିଶା, ତାହା ବି ସମୟରେ ମିଳେ ନାହିଁ, ଅଥଚ ପିଲା, ପୋଖତୀ ସଭିଙ୍କ ସକାଶେ ଦୁଧ ଅତି ପ୍ରୟୋଜନ।

ଦାରିଦ୍ର୍ୟ ବଶତଃ ପୋଖତୀ ଦୁଇ ମାସ ଯାକେ ନସରପସର ହୋଇ, ରନ୍ଧାବଢ଼ାଠୁଁ ପାଣିକଢ଼ା ପର୍ଯ୍ୟନ୍ତ କାମରେ ଲାଗିଥାଏ। ଉଠିଆରୀ ଗାଧୁଆ ଗାଧୋଇ ଘର ଧନ୍ଦାରେ ଲାଗେ। ଏପରି ଅବସ୍ଥାରେ ଦେଶରେ ସୁସ୍ଥ ସବଳ ଶିଶୁର ଆକାଂକ୍ଷା ବାତୁଳତା।

ଦୁର୍ଦ୍ଦଶା ଆମର ସୀମାତୀତ। ପ୍ରତିକାର କିଏ କରୁଛି। ଡାକ୍ତର କବିରାଜ କରିବେ? ତାହା ନୁହେଁ, ସେମାନେ ରୋଗର ଚିକିତ୍ସକ। ଆମେ ଚାହୁଁ ସ୍ୱାସ୍ଥ୍ୟ। ଅତଏବ, କାର୍ଯ୍ୟ ସମସ୍ତଙ୍କର। ଉପରୋକ୍ତ ଚାରୋଟି କାରଣରୁ ଯେ ଯାହା ପାନ୍ତି, ସେ ତାହା ଦୂର କରିବାରେ ମନୋଯୋଗୀ ହେଉଛୁ। ତେବେ ଦେଶରେ ସୁସ୍ଥସବଳ ଶିଶୁର ଆକାଂକ୍ଷା ଶୋଭା ପାଇବ।

ଦାରାନ୍ତର ଆଉ କିଛି ପ୍ରକାଶ କରିବାର ବାସନା ରହିଲା।

## ଦୁଇ

ପୂର୍ବରୁ କୁହାଯାଇଛି ଯେ ଅଶିକ୍ଷିତା ମା ଯୋଗେ ଦେଶରେ ଶିଶୁ ମୃତ୍ୟୁର ସଂଖ୍ୟା ଏତେ ଅଧିକ। ମା' ହେବାର ଦାୟିତ୍ୱ କ'ଣ ଏହା ଆମ୍ଭ ଦେଶର ଝିଅମାନେ ଜାଣନ୍ତି ନାହିଁ। ନ ଜାଣି ବିବାହକରନ୍ତି। ଫଳସ୍ୱରୂପ ଯାହା ଭୋଗକରନ୍ତି, ତାହା ସମସ୍ତେ ଦେଖୁଛନ୍ତି। କିନ୍ତୁ ଏହାର ପ୍ରତିକାର କ'ଣ? ଏହା ଭାବିବା ସର୍ବାଦୌ ପ୍ରୟୋଜନ। ଗଛ ଯେନି ଫଳ। ଦେଶରେ ଉପଯୁକ୍ତ ମା ତିଆରି ନ ହେଲେ, ଭଲ ସନ୍ତାନର ଆଶା ଆମର ବୃଥା। ଝିଅମାନଙ୍କୁ ମାତୃମଙ୍ଗଳ ବିଷୟରେ ଶିକ୍ଷାଦେବା ଆମ୍ଭର ବାଞ୍ଛନୀୟ।

ଆମ ଦେଶରେ ଗୋଟିଏ ଧାରଣା, ପିଲାଟି ଜନ୍ମ ହେବା ପରେ ଯେନେତନେ ପ୍ରକାରେଣ ବାଆପାଣି ପିଇ, ଧୂଳି ଧୂସର ହୋଇ ବଢ଼ିପଡ଼ିବ। ସେଥିପାଇଁ ପୁଣି ମା'ର ଶିକ୍ଷା ଗୋଟିଏ ଆବଶ୍ୟକ କ'ଣ? ଆଗ କାଳରେ ବା କେତେ ବାପା ମା ଶିକ୍ଷା ପାଉଥିଲେ, ଆମ

ଦେଶରେ କ'ଣ ଆଉ ସୁସ୍ଥ ସ୍ଥାନ ନାହିଁ? ଆମରି ଓଡ଼ିଆ ପୂଅତ ଭୁବନେଶ୍ୱର, ପୁରୀ, କୋଣାର୍କ ମନ୍ଦିର ଗଢ଼ିଥିଲେ। ତୁଳନା କଲେ ଆକାଶ ପାତାଳ ପ୍ରଭେଦ। ସେ ରାମ ନାହିଁ, କି ସେ ଅଯୋଧ୍ୟାପୁରୀ ନାହିଁ। ଟଙ୍କାକୁ ପଚାସେରେ ଚାଉଳ ନାହିଁ, କି ଘର ଘିଅଦୁଧରେ ଭାସୁନାହିଁ। ପୂର୍ବକାଳରେ ସ୍ତ୍ରୀଲୋକମାନଙ୍କର ଶାରୀରିକ ଶକ୍ତି ଥିଲା ଅପୂର୍ବ। ଶିକ୍ଷାଦୀକ୍ଷା ମଧ୍ୟ ଉଣା ନଥିଲା, ଇଂରେଜ ପାଠ ପଢ଼ି ନଥିଲେ 'ବୋଲି ଯେ ପିଲା ପୋଖତୀଙ୍କର ଉପଚାର ମୋଟେ ଜାଣି ନଥିଲେ, ତାହା ନୁହେଁ, ତାହାର ପ୍ରମାଣ ଓଡ଼ିଶାର ଏନ୍ତୁଡ଼ିଶାଳର କଥା।

କର୍ପୂର ଉଡ଼ିଯାଇଛି, କିନ୍ତୁ କନା ଅଛି। ସମଗ୍ର ଭାରତବର୍ଷରେ ଏନ୍ତୁଡ଼ିଶାଳର ଅନୁଷ୍ଠାନ ମଧ୍ୟରେ ଓଡ଼ିଶାର ଅନୁଷ୍ଠାନ ସର୍ବଶ୍ରେଷ୍ଠ ଏବଂ ବିଜ୍ଞାନୁମୋଦିତ। ଏହା ମୁଁ ପରେ ସର୍ବସ୍ଥାନେ ପ୍ରକାଶ କରିବି। କିନ୍ତୁ ସେ ସବୁ ଉତ୍କୃଷ୍ଟପ୍ରଥା ମଧ୍ୟରେ ନାନା ଆବର୍ଜନା କୁସଂସ୍କାର ଆସି ମିଶିଲା। ଫଳରେ ହିତ ବୀପରିତ ହେଲା। ଯେଉଁଠାରେ ପରିଷ୍କାର, ପରିଚ୍ଛନ୍ନର ବ୍ୟବସ୍ଥା, ସେଠାରେ ଅଯଥା ଛୁଆଁଛୁଇଁର ବାରଣ ପଶିଲା, ଯେଉଁ ସ୍ଥାନରେ ଅଥର୍ବବେଦବିତ୍ ବ୍ରାହ୍ମଣମାନଙ୍କର ଚିକିତ୍ସା ସେ ସ୍ଥାନ ମୂର୍ଖ ଗୁନୁଣୀ ଧାଈ ଅଧିକାର କଲା। ଏହାଠାରୁ ବଳି ପରିତାପର ବିଷୟ କ'ଣ ଅଛି?

ଆଗ କାଳରେ ସ୍ତ୍ରୀ ଲୋକମାନେ ଶିଶୁର ସମୁଦାୟ ଚିକିତ୍ସା ହାତେ ହାତେ କରୁଥିଲେ। ଆଜିକାଲି କେତେ ସ୍ତ୍ରୀ ଲୋକ ସେ ସବୁ ଜାଣନ୍ତି? ଘରେ ଘରେ ମା, ଶାଶୂ, ଆଈବୁଢ଼ୀ ମାନେ ଥିଲେ ପିଲାମାନଙ୍କର ଡାକ୍ତର, ନର୍ସ। ସେମାନେ ଯେଉଁ ଘୁଣ୍ଟିସବୁ ଜାଣୁଥିଲେ, ସମୟ ଋତୁଭେଦ ଅନୁସାରେ ପିଲପୋଖତୀଙ୍କର ଯେଉଁ ଉପଚାର କରୁଥିଲେ, ଆଜି ସେ ସବୁ ଲୁପ୍ତ ପ୍ରାୟ। ସେଥିପାଇଁ ଚାରୋଟି ସନ୍ତାନର ମା ହୋଇ ଝିଅମାନେ ଆଜିକାଲି ବୁଢ଼ୀ। ଆଳସ୍ୟ ଭାବ, ଶାରୀରିକ ପରିଶ୍ରମ ବିମୁଖତା ଏବଂ ମାନସିକ ପରିଶ୍ରମର ଅଭାବ– ଏସବୁ ଆଜିକାଲି ଝିଅମାନଙ୍କୁ ଅକାଳରେ ବୁଢ଼ୀ କଲାଣି। ସେମାନଙ୍କର ସନ୍ତାନମାନେ ଯେ ଗୁଣୀ, କର୍ମୀ, ଜ୍ଞାନୀ ଦେଶନେତା ହେବେ, ଏହା ଅଳୀକ ଆଶା। ସେଥିପାଇଁ ଶିକ୍ଷିତା ମାତାର ପ୍ରୟୋଜନ। ସେ ଶିକ୍ଷା କେବଳ ସ୍କୁଲ କଲେଜର ଶିକ୍ଷା ନୁହେଁ, ତାହା ଘରେ ଘରେ ପ୍ରଦତ୍ତ ହେଲେ ଆହୁରି ଭଲ ହୁଅନ୍ତା। କିନ୍ତୁ ଘରେ ଶିକ୍ଷା ଦେବ କିଏ? ନାରୀକୁ ଶିକ୍ଷା ଦେବାପାଇଁ ନାରୀ ହିଁ ଉପଯୁକ୍ତ। ଝିଅର ଶିକ୍ଷୟିତ୍ରୀ ମା', ମାଉସୀ, ଆଈ ହେବା ଉଚିତ୍। ସେ ସବୁ ଅଶ୍ଳୀଳ ବିଷୟ, କୁରୁଚିପୂର୍ଣ୍ଣ– ଏହା ଭାବି ବସିଲେ ଚଳିବ ନାହିଁ। ଯେଉଁଥିରେ ଦେହ, ମନ ଓ ଭବିଷ୍ୟତ ସମାଜର କଲ୍ୟାଣ ନିହିତ, ତାହା ଅଶ୍ଳୀଳ ଏବଂ କୁରୁଚିପୂର୍ଣ୍ଣ ହେବା ପାପ। କିନ୍ତୁ ଆମ ଦେଶର ମା', ଆଈ ନିଜେ ଅଶିକ୍ଷିତ, ସେମାନେ ବା ଶିଖେଇବେ କ'ଣ? ସେଥିପାଇଁ ମାତୃମଙ୍ଗଳର ଶିକ୍ଷା ସର୍ବାଦୌ ଶିକ୍ଷିତମାନଙ୍କଠାରୁ ଆରମ୍ଭ ହେବା ଉଚିତ୍। ଯେଉଁ ଗୃହିଣୀ ଗୃହର ଲକ୍ଷ୍ମୀ, ସନ୍ତାନର ଜନନୀ, ସମାଜର ମାତା– ତାଙ୍କୁ ଶିକ୍ଷିତା କରାଇବା, ତାହା ଦେହମନର କଲ୍ୟାଣ ଲୋଡ଼ିବା ସର୍ବ ପ୍ରଧାନ

କର୍ତ୍ତବ୍ୟ ନୁହେଁକି ? ଓଡ଼ିଶାରେ କେତେ ଜଣ ସ୍ୱାମୀ ଆପଣା ସ୍ତ୍ରୀର ସର୍ବମୟ କଲ୍ୟାଣ କାମନା କରିଥାନ୍ତି ? କେବଳ ଘରମଣି କାବ୍ୟବନ୍ଦିନୀ, ହାଣ୍ଡିଶାଳର ଦେବୀ ହେଲେ ନାରୀର ପ୍ରତିଷ୍ଠା ହେଲା ନାହିଁ, କି ସ୍ୱାମୀର କର୍ତ୍ତବ୍ୟ ପୂର୍ଣ୍ଣ ହେଲାନାହିଁ। ଦେଶ ମଧ୍ୟରେ ଅଳ୍ପ ଶିକ୍ଷିତ ଲୋକ ଅଛନ୍ତି। ଅନେକ ଦେଶର ବିବିଧ ନ୍ୟାୟକରି ଓଡ଼ିଶାକୁ ଉନ୍ନତ ମହତ କରିବାକୁ ଅନେକ ଉଦାରଭାବୀ, ଉଚ୍ଚମନା ଯୁବକ ନ୍ୟସ୍ତ। କିନ୍ତୁ ନିଜର ଛାୟା ସ୍ୱରୂପା କାନିଧରା ଉର୍ଯ୍ୟାଟିଏର କଥା କେତେଜଣ ବସି ଭାବନ୍ତି ? ଆମ ଦେଶର ଉନ୍ନତି ମୂଳରେ ଯେ ବିଧାତାଙ୍କର ଚଡ଼କ ପଡୁଛି। ସେକଥା କେବଳ ଆମ ଦେଶ ମଣିଷର ଗୋଟିଏ ଆଡୁ ଉଠିବା ଚେଷ୍ଟା ହେତୁ ପକ୍ଷାଘାତୀ ପରି। ଆମ ଦେଶର ପୁରୁଷମାନେ ସବୁକ୍ଷେତ୍ରରେ ଶରୀରକୁ ବିଦାୟ ଦେଇ ଅଣ୍ଟାଭିଡ଼ିଛନ୍ତି। ଫଳସ୍ୱରୂପ କିଛି କରିପାରୁ ନାହାନ୍ତି। ଈଶ୍ୱରଙ୍କର ସନାତନ ନିୟମ ଲଂଘନକରି କୌଣସି ଜାତି ବଡ଼ ହେବାର ପ୍ରମାଣ ନାହିଁ। ରାମାୟଣରେ, ରାମ ଦଶରଥ ପରି ସୀତା, କୌଶଲ୍ୟା, କୈକେୟୀଙ୍କର ପ୍ରୟୋଜନ। ଆମ ଦେଶରେ ସୁଭଦ୍ରା ନାହିଁ। ଅଭିମନ୍ୟୁ ଗଢ଼ିବାର ଚେଷ୍ଟା। ଶକ୍ତି ନାହିଁ କାର୍ତ୍ତିକେୟ ଜନ୍ମର ଆକାଙ୍କ୍ଷା। ଏହା ବାତୁଳତା।

## ତିନି

ନାରୀର ଉତ୍‌ଥାନ ନ ହେଲେ ମାତୃମଙ୍ଗଳର ଚେଷ୍ଟା ମୂର୍ଖତା। ତାହାର ନିଜପାଇଁ କ'ଣ ପ୍ରୟୋଜନ ସେ ନିଜେ ନ ଜାଣିଲେ, ଅନ୍ୟ କରିବେ କ'ଣ ? ନିଜର ଶରୀର ଓ ସନ୍ତାନପାଇଁ କ'ଣ କ'ଣ ଅତ୍ୟାବଶ୍ୟକ– ଏହା ନାରୀ ନ ଜାଣିଲେ, ସେ କାର୍ଯ୍ୟରେ କରିବ କ'ଣ ? ମା ତିଆରି ଥିଲେ ଶିବାଜୀ, ନେପୋଲିୟନ ସମସ୍ତେ ଜନ୍ମ ହେବେ। ଆମ ଜାତିର ମା ପ୍ରୟୋଜନ। ସ୍ଥାନେ ସ୍ଥାନେ, ପ୍ରତି ସହରରେ, ପ୍ରତି ପଲ୍ଲୀରେ ମାତୃ ସମିତିର ପ୍ରତିଷ୍ଠା ପ୍ରୟୋଜନ। ସେମାନଙ୍କର ଶିଖିବା ଭଳି ପୁସ୍ତକ ଓ ପ୍ରଚାର ପ୍ରୟୋଜନ। ଡାକ୍ତରୀଶାସ୍ତ୍ରର କେତୋଟି ପୃଷ୍ଠା ମଧ୍ୟରେ ମାତୃମଙ୍ଗଳ ଆବଦ୍ଧ ନୁହେଁ। ଓଡ଼ିଶାର ମା'ମାନଙ୍କର କଲ୍ୟାଣଲାଗି ଯେଉଁମାନେ ଚିନ୍ତିତ, ସେମାନେ ସଂଘବଦ୍ଧ ଚେଷ୍ଟାକରନ୍ତୁ ! ଓଡ଼ିଶାର ସ୍ଥାନେ ସ୍ଥାନେ ମାତୃମଙ୍ଗଳ ସଂଘ ହେଉ। ମାମାନଙ୍କ ଲାଗି ବିଭିନ୍ନ ଉପାଦେୟ ପତ୍ରିକା ଓ ଗ୍ରନ୍ଥ ସେମାନେ ପ୍ରକାଶ ଓ ପ୍ରଚାର କରନ୍ତୁ। କେବଳ ସରକାରକୁ ବା ବୈଦେଶିକ ରେଡ଼କ୍ରସ ସୋସାଇଟିକୁ ଚାହିଁବସିଲେ ହେବ ନାହିଁ। ଆମର ଉଦର ଜ୍ୱାଳରେ ଅନ୍ନ ପ୍ରୟୋଜନ, ନିଜ ପରିଶ୍ରମରେ ତାହା କରିବା ବିଧେୟ। ଖାଲି ବାହାରେ ଖଦଡ଼, ସାହିତ୍ୟ, ଡାକ୍ତରି ବିଦ୍ୟା ଆଦି ପ୍ରଚାର ହେଲେ ଜାତି ଉଠିଯିବ ନାହିଁ। ଘରକୋଣରୁ ପ୍ରଚାର ଆରମ୍ଭ କରିବା ଉଚିତ୍। ପରପାଇଁ ଆମ୍ଭେମାନେ ଏତେ ଚିନ୍ତାକରୁ, କିନ୍ତୁ ନିଜ ମା ଭଉଣୀଙ୍କ କଥା ଭାବି ଥାଉ କି ? ସେମାନେ ଯେ ଜ୍ଞାନତୃଷାରେ ଆମରି ଗୋଡ଼ତଳେ ପଡ଼ିଅଛନ୍ତି, ତାଙ୍କର କ୍ଷୁଧାର, ଅନ୍ନତୃଷାର ପେୟଘେନି ଆମେ କାହା ଦୁଆରକୁ ଯାଇ ଅନର୍ଥକ ଚିତ୍କାରକରୁଛୁ ? ଯେଉଁ ଦେଶ ମା'କୁ ଚିହ୍ନେ ନାହିଁ, ସେ କଦାପି

ଉଠିବ ନାହିଁ। ଅତଏବ, ଓଡ଼ିଆ, ମା'କୁ ଚିହ୍ନ, ମା'କୁ ଘରକୁ ବରଣ କରି ଆଣ, ମା'ର ମଙ୍ଗଳପାଇଁ ଆଜ ହୁଁ ଚେଷ୍ଟାରେ ଲାଗ। ତୁମରି ସନ୍ତାନମାନେ ଉଠିବେ। ତୁମରି ଭିତରୁ ଦେଶକର୍ମୀ, ଦେଶନେତା ବାହାରିବେ। ମା'କୁ ଅବହେଳାକରି ଯଦି ରସାତଳକୁ ଯାଅ, ତାହାହେଲେ ପ୍ରତିବର୍ଷ ମାତୃପୂଜା ରୂପ ବିରାଟ ଛଳନାରେ ଜଗତକୁ ଭୁଲାଅ ନାହିଁ ଯେ, ତୁମେ ମାତୃଭକ୍ତ ଜାତି। ଅଥଚ୍, ତୁମରି ଘରେ ଘରେ ସନ୍ତାନ, ଜନନୀ, ଦୁଃଖ ଦୈନ୍ୟ ଅଜ୍ଞାନ କୁସଂସ୍କାରରେ ଲକ୍ଷ ସଂଖ୍ୟାରେ ପ୍ରାଣ ବିସର୍ଜନ କରୁଅଛନ୍ତି। ମାତୃ ଅଭିଶାପରେ ଆମ ଦେଶ ଛାରଖାର ହେଲାଣି। ଆଉ କେତେ କାଳ ମହାମାରି, ମଡ଼କ, ଦୁର୍ଭିକ୍ଷ, ବନ୍ୟା ରୂପରେ ମାତୃ ଅଭିଶାପ ଓଡ଼ିଶାକୁ ଘେରିରହିଛି। କେବଳ ବେଲପଣା ଦେଲେ ମାତୃଦେବତୀ ସନ୍ତୁଷ୍ଟ ହେବେ ନାହିଁ। କେବଳ ପାକଲା କଦଳୀ ଭୋଗପାଇ କୋପନିବୃତ୍ତ ହେବ ନାହିଁ। ତୁମର ଗତିମୁକ୍ତି ନାହିଁ, ଏହା ସଂପୂର୍ଣ୍ଣ ସତ୍ୟ। ଆମ ଦେଶରେ ଚିକ୍, ହାର, ଚୁଡ଼ି ବାଲା ପାଇଁ ଝିଅଙ୍କର ଯେତେ ଆତୁରତା; ସିନ୍ଦୂରକଜଳ ଲଗାଇ ବସିବାକୁ ଯେତେ ସ୍ପୃହା; ଭଲ ବିଷୟ ଶିଖିବାକୁ ଯଦି ସେତକ ଥାନ୍ତା ? ବେଶଭୂଷା ମନ୍ଦ ନୁହେଁ, କିନ୍ତୁ ପଳାସ ଫୁଲ ପରି ରଂଗ ଟହଟହ ହୋଇ ଲାଭ କ'ଣ ? ଗୁଣର ବାସନା ଥିଲେ, ଯୁଇ ଫୁଲଟି ସୁଦ୍ଧା ଦେବଭୋଗ୍ୟ। ସ୍ତ୍ରୀକୁ କେବଳ ସୁବର୍ଣ୍ଣ ଅଳଙ୍କାର, ଋଣଧାରକରି ପାଟପୀତାମ୍ବରୀ ଆଣିଦେବା ସ୍ୱାମୀର କର୍ତ୍ତବ୍ୟ ନୁହେଁ, ସ୍ତ୍ରୀଟି କିଏ ସେ ଏବଂ କାହିଁକି ତାକୁ ଗୃହଲକ୍ଷ୍ମୀ ରୂପେ ପ୍ରତିଷ୍ଠା କରିଅଛନ୍ତି, ଏହା ଆଗ ଭାବିବା ଉଚିତ୍। ହିନ୍ଦୁ ଧର୍ମଶାସ୍ତ୍ର କହନ୍ତି - ପୁତ୍ରାର୍ଥେ କ୍ରୀୟତେ ଭାର୍ଯ୍ୟା। ଯଦି ଏହା ହିଁ ହିନ୍ଦୁ ବିବାହର ଉଦ୍ଦେଶ୍ୟ। ତେବେ ହିନ୍ଦୁସ୍ଥାନରେ ପୁତ୍ରର ଜନନୀର ଏତେ ଦୁର୍ଦ୍ଦଶା କାହିଁକି ? ଏହାର ଉତ୍ତର କିଏ ଦେବ ? କେହି ଦେଉ ନଦେଉ, ଏହାର ଅବହେଳା ଜନିତ ପାପ ଭାରରେ ଦେଶ ଟଳମଳ। ଅତଏବ ଶୀଘ୍ର ପତ୍ରିକାର କର୍ତ୍ତବ୍ୟ।

ଯେଉଁମାନେ ମାତୃମଙ୍ଗଳ ଲାଗି ଚେଷ୍ଟିତ, ଆଶାକରେ ଏହା ପାଠକରି ସେମାନେ ଶୀଘ୍ର କର୍ମରେ ପ୍ରବୃତ୍ତ ହେବେ।

ବାରାନ୍ତରେ ପୁଣି କିଛି ପ୍ରକାଶ କରିବି।



# ମାତୃମଙ୍ଗଳ

ଭାରତର ବର୍ତ୍ତମାନ ଜନସଂଖ୍ୟା ପ୍ରାୟ ତିରିଶ କୋଟି। ସେଥିରୁ ପ୍ରତ୍ୟେକ ବର୍ଷ ପଞ୍ଚସ୍ତରୀଲକ୍ଷ ସ୍ତ୍ରୀ ଲୋକ ସନ୍ତାନ ପ୍ରସବକରି ମୃତ୍ୟୁ ମୁଖରେ ପଡ଼ନ୍ତି। ଆଉ ବର୍ଷକରୁ ଊଣା ବୟସରେ କୋଡ଼ିଏ ଲକ୍ଷ ଶିଶୁ ମରନ୍ତି। ବାର୍ଷିକ ପଞ୍ଚାନବେ ଲକ୍ଷ ପ୍ରାଣହାନି ସକାଶେ ଦାୟୀ କିଏ ? ଏହା କଣ କେବଳ ''କପାଳ ?'' ଭାରତ ବର୍ଷ ଅଦୃଷ୍ଟବାଦୀଙ୍କ ଦେଶ। ଏଠି ପୁରୁଷକାରର ସ୍ୱାର୍ଥକତା କ୍ୱଚିତ୍ ସ୍ୱୀକୃତି। ସେଥିପାଇଁ ମାତୃମଙ୍ଗଳ ଓ ଶିଶୁମଙ୍ଗଳ ସକାଶେ ସାଧାରଣଙ୍କ ହୃଦୟର ସହାନୁଭୂତି ଓ ଉଦ୍ୟମର ଆଶା ବିଡ଼ମ୍ବନା ହେଲେ ହେଁ ଶିକ୍ଷିତ ସମାଜର କଣ ଏଥିପାଇଁ କିଛି ଦାୟିତ୍ୱ ନାହିଁ ?

ଦେଶର ଧନ, ଦେଶର ଉଦ୍ୟମରେ ଯେଉଁମାନେ ଶିକ୍ଷିତ ଓ ସଭ୍ୟ, ଦେଶର ଏବଂବିଧ ବିପଦରେ ସେମାନେ କଣ ନିଶ୍ଚିନ୍ତ ରହିବା ଉଚିତ୍ ? ହଜାରକେ ୧୦ଜଣଙ୍କୁ ବଞ୍ଚାଇ ପାରିଲେ କି ୩୦,୦୦୦,୦୦ ଲୋକଙ୍କୁ ବଞ୍ଚାଇ ପାରନ୍ତେ ନାହିଁ ? ଶିଶୁହିଁ ଭବିଷ୍ୟତ ମାନବ; ସେଥିମଧ୍ୟରୁ ଯଦି ବରଷକେ ୨୦ ଲକ୍ଷ ଲେଖାଏଁ ମରନ୍ତି; ତେବେ ଦିନେ ସେ ଭାରତୀୟ ଜାତି ଜଗତରୁ ପୋଛି ହୋଇଯିବେ, ସେଥିରେ ଆଶ୍ଚର୍ଯ୍ୟ କ'ଣ ?

ଦେଶରେ ମାତୃମଙ୍ଗଳ ସମସ୍ୟା ଦିନକୁଦିନ ଗୁରୁତର ହେଉଅଛି। ଜାତିର ଅଧଃପତନ ମୂଳରେ ମାତୃଜାତିପ୍ରତି ଅବହେଳା ଯେ ବିଦ୍ୟମାନ, ଏହା କହିବା ବାହୁଲ୍ୟ। ଗଛମୂଳରେ ପାଣି ଦେଲେ ଗଛ ଉଧାଏ। ମୂଳ କାଟି ଡାଳ ତିନ୍ତାଉଥିଲେ ଗଛ ବଞ୍ଚିବ ନାହିଁ ଯେଉଁ ମା ସମାଜର ଜନନୀ, ତା' କଥା ଆମେ ଭାବିଲୁ ନାହିଁ, ଯେଉଁ ପିଲା ସମାଜର ଭବିଷ୍ୟତ ଆଶା ତା' କଥା ଆମକୁ ଲାଗିଲା ନାହିଁ, ଅଥଚ ଆମେ ଶୂନ୍ୟେ ଶୂନ୍ୟେ ଶକ୍ତିଶାଳୀ ଜାତିଟାଏ ହୋଇଯିବୁ। ଏହାଠାରୁ ଅଧିକ ମୂର୍ଖତା କଣ ଅଛି ?

ମାତୃମଙ୍ଗଳର ଅର୍ଥ କ'ଣ ? କେହି ଭାବିପାରନ୍ତି ମିଡ଼୍‌ୱାଇଫରୀ ତା ଧାତ୍ରୀ ବିଦ୍ୟାସଂକ୍ରାନ୍ତ କୌଣସି ବିଷୟ। ସେ ବିଷୟ ଭାବିବା ଡାକ୍ତରଙ୍କ କାମ। କିନ୍ତୁ ବିଷୟଟି ତା'ନୁହେଁ। ଧାତ୍ରୀବିଦ୍ୟା ମାତୃମଙ୍ଗଳର ଅଂଶ ବିଶେଷ ହୋଇପାରେ, କିନ୍ତୁ ସମ୍ପୂର୍ଣ୍ଣ ମାତୃମଙ୍ଗଳ ଡାକ୍ତରୀ ଛୁରୀ କଇଁଚି ଭିତରେ ନାହିଁ କି ହୋମିଓପ୍ୟାଥିର ଓଷଦ ବାକ୍ସ ଭିତରେ ନାହିଁ।

ମାତୃମଙ୍ଗଳ ପ୍ରତ୍ୟେକ ଗୃହସ୍ଥର ସାଧନାର ବିଷୟ ହେବା ଉଚିତ୍। ପ୍ରତ୍ୟେକ ପରିବାର ପିଲା ଚାହାନ୍ତି। ପିଲା ମୁହଁର କଅଁଳ ହସ, ଦରୋଟି କଥା କିଏ ଶୁଣିବାକୁ ଭଲପାଏ ନାହିଁ। ଆପଣା ବଂଶରେ ବଳିଷ୍ଠ, କାର୍ଯ୍ୟକ୍ଷମ, ଯଶସ୍ୱୀ ପୁତ୍ର କନ୍ୟାର ଆବିର୍ଭାବ କିଏ ଶ୍ରଦ୍ଧାଚକ୍ଷୁରେ ନ ଦେଖିବ ? କିନ୍ତୁ ତା'ପାଇଁ ସାଧନା ଆବଶ୍ୟକ। ଆମେ କିଛି କରିବୁଁ ନାହିଁ ଅଥଚ ଶୂନ୍ୟେ ଶୂନ୍ୟେ ବଡ଼ ହେବୁଁ, ଏ ଆଶା ପୋଷିବା ବୃଥା।

ମାତୃମଙ୍ଗଳ ଓ ଶିଶୁମଙ୍ଗଳ ଦୁଇଟି ପରସ୍ପର ଜଡ଼ିତ। ସମାଜର ସ୍ଥିତି ଓ ବୃଦ୍ଧିପାଇଁ ସମାଜ ଉପଯୁକ୍ତ ମାନବ ଚାହେଁ। ସେ ମାନବର ଜନନୀ ନାରୀ। ଅତଏବ କିପରି ଉପାୟରେ ଆମ୍ଭେମାନେ ସବଳ ମାତା ଓ ସନ୍ତାନ ପାଇପାରୁଁ, ତାହା ଭାବି ଦେଖିବା କଥା। ନାରୀର କଲ୍ୟାଣରେ ସମାଜର କଲ୍ୟାଣ। ଅତଏବ ନିମ୍ନଲିଖିତ ବିଷୟରେ ଆମ୍ଭମାନଙ୍କର ମନୋଯୋଗୀ ହେବା ଉଚିତ୍।

(୧) କନ୍ୟାସନ୍ତାନର ଉପଯୁକ୍ତ ଲାଳନ ପାଳନ ଓ ଶିକ୍ଷା। ''ମାଇକିନାଝିଅ ଯେତେ ହେଲେ ଚୁଲି ମୁଣ୍ଡକୁ'' ନ ଭାବି ମାଇକିନା ଝିଅ ଆମ ମା ଭାବିଲେ ଭଲ ହୁଅନ୍ତା। ଝିଅଙ୍କୁ ଅବଜ୍ଞା କରିବା ସକାଶେ, ଅବହେଳାରେ ଶିକ୍ଷାଦିରୁ ବଞ୍ଚିତ କରିବା ସକାଶେ, ଓଡ଼ିଶାରେ ଅନେକ ପ୍ରବାଦ ଓ ପ୍ରବଚନ ପ୍ରଚଳିତ। ଉଦାହରଣ ସ୍ୱରୂପ- ''ପୁଅସୁନା କଳଶ, ଝିଅ କାଠଫଳ,'' ''ପୁଅର ଭାଗ୍ୟ ପତର ତଳେ, ଝିଅ ଭାଗ୍ୟ ପଥର ତଳେ।'' ଅର୍ଥାତ୍, ପୁଅ ଯେପରି ସାତନିଧି; କିନ୍ତୁ ଝିଅ ଯେ ଜଗତର ମା' ଏକଥା ଭୁଲି ଆମେ ଭାରି ଅନ୍ୟାୟ କରୁଛୁ। ଅନ୍ୟାୟର ଫଳ ବା କେଉଁଆଡ଼େ ଯିବ ? ସମାଜ ତା' ଭୋଗି ଦିନକୁ ଦିନ ଦୁର୍ବଳ ହେଉଛି। ସାବିତ୍ରୀ ସତ୍ୟବତୀର ଯୁଗ ଆଜି ସତ୍ୟ, ତ୍ରେତା, ଦ୍ୱାପର ହେଲାଣି। ଅଶିକ୍ଷିତା ମା କେବେହେଲେ ଉପଯୁକ୍ତ ରୂପେ ସନ୍ତାନର ପାଳନ ଓ ଶିକ୍ଷାନିର୍ବାହ କରିପାରିବ ନାହିଁ। ଅଥଚ ପୁତ୍ରର ଆଦିଗୁରୁ ମାତା। ନୀତି ବାକ୍ୟରେ ଅଛି ଆକାଶରୁ ବଡ଼ ପିତା, ମାତା ବଡ଼ ପୃଥିବୀ ଅପେକ୍ଷା, ''ଆଉ ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପୀ ଗରୀୟସୀ'' କିନ୍ତୁ ଅଶିକ୍ଷିତା ଅର୍କର୍ମଣ୍ୟା ନାରୀ ବା କିପରି ମହତ୍ ଆଖ୍ୟାଧାରଣର ଯୋଗ୍ୟା ବିବେଚିତ ହେବ ? ଆମ ଦେଶଦେଶରେ ଅଧିକାଂଶ ବାପମା ଝିଅର ଶିକ୍ଷା ଦୀକ୍ଷାରେ ମୋଟେ ମନୋଯୋଗ ଦିଅନ୍ତି ନାହିଁ, ଅଥଚ ସେମାନେ ଯଦି କଦାପି ଆମ ଦେଶରେ ଉନ୍ନତିପାଇଁ ଆଶା ପୋଷଣ କରିଥାନ୍ତି, ତେବେ ତାହା ବୃଥା।

(୨) ବାଲ୍ୟ ବିବାହ : ବାଲ୍ୟବିବାହ ଫଳରେ ବାଲ୍ୟମାତୃତ୍ୱ ଏବଂ ତଜ୍ଜନିତ ମୃତ୍ୟୁ ଓ ଅକାଳଜାତ ସନ୍ତାନ ଓ ନାନାଦି ଦୁଃସାଧ ପୀଡ଼ାର ଫଳ ସମାଜ ପକ୍ଷରେ ବଡ଼ ବିଷମୟ। ଯେଉଁ ଜାତିରେ ବାଲ୍ୟବିବାହ ପ୍ରଚଳିତ ସେମାନଙ୍କର ଏହା ଜାଣିବା ଉଚିତ୍, ବାରବର୍ଷର ବାଳିକା ସନ୍ତାନର ଜନନୀ ହେବାର ମୁଁ ସ୍ୱଚକ୍ଷୁରେ ଦେଖିଅଛି। ଏହାଠାରୁ ବଳି ପରିତାପର ବିଷୟ କଣ ହୋଇପାରେ ? ଯେଉଁ ଶରୀରରେ ନିଜର ଗଠନ କାର୍ଯ୍ୟ ସରିନାହିଁ, ସେ ଯଦି ଅନ୍ୟ ଶରୀରଟିଏ ଧାରଣ ଓ ପୋଷଣ କରେ ତେବେ ଦୁଇଟି ଶରୀର ଯେ ଅକାଳ ମୃତ୍ୟୁଲାଭ କରିବେ, ଏହାକଣ ଆଶ୍ଚର୍ଯ୍ୟ ? କିନ୍ତୁ ଅନେକ ତାହା ବୁଝିବାକୁ ଚାହାନ୍ତି ନାହିଁ। ଆଠବର୍ଷରେ ଝିଅର ବିବାହ ଦେଇ ଗୌରୀଦାନ ପୁଣ୍ୟପାଇଁ ଅନେକ ପିତାମାତା ଲାଳାୟିତ। ସେମାନଙ୍କର ନିଜର ପୁଣ୍ୟ ହୋଇପାରେ, କିନ୍ତୁ ତଦ୍ୱାରା ସମାଜର ଦିନକୁଦିନ ଅଧୋଗତି ହେଉଅଛି। ନାରୀର ବାରବର୍ଷଠାରୁ ପଚିଶ ବର୍ଷ ମଧ୍ୟରେ ପ୍ରଜନନ ଶକ୍ତି ଅତ୍ୟନ୍ତ ବେଶି। ସେଥିପାଇଁ ଆମ୍ଭେମାନେ

ପ୍ରାୟତଃ ଶୁଣି ଥାଉଁ ଜଣ ଜଣଙ୍କର ୨୦/୨୨ ବର୍ଷରେ ୭/୮ ପିଲା। ଅଥଚ ସେଥିରୁ ଚାରିଟା ପାଞ୍ଚଟା ସୂର୍ଯ୍ୟାଲୋକ ଦେଖିଥିବେ କି ନାହିଁ? ଏହାହିଁ କଣ ବିବାହର ଉଦ୍ଦେଶ୍ୟ?

ପୁରୁଷ ଓ ନାରୀର ମଙ୍ଗଳମୟମିଳନ କ'ଣ ନାରୀ ଓ ଶିଶୁ ହତ୍ୟାର କ୍ରୂର ବିଧାନ? ଅକାଳ ପ୍ରସୂତୀର ଜୀବନ କଦାପି ସୁଖ ଶାନ୍ତିର ହୁଏ ନାହିଁ। ବାର ରକମ ରୋଗ, ବର୍ଷକୁ ବର୍ଷ ପିଲା ଦ୍ୱାରା ପରିବାରଟି କାରାଗାରରେ ପରିଣତ ହୁଏ। ଆଜିକାଲି ଏକେତ ଅନ୍ନ ସମସ୍ୟାର ଦିନ, ଯେପରି ଦୁର୍ଭିକ୍ଷ ଦୁର୍ମୂଲ୍ୟରେ ମନୁଷ୍ୟ ଅସ୍ଥିର, ଏଥିରେ ପୁଣି ସ୍ତ୍ରୀର ବର୍ଷକୁ ବର୍ଷ ସନ୍ତାନ, ପୀଡ଼ା ଓ ଚିକିତ୍ସାବ୍ୟୟରେ ଗୃହସ୍ୱାମୀର ଅବସ୍ଥା କିପରି ହେଉଅଛି, ତାହା ଭୁକ୍ତଭୋଗୀ ଅନୁଭବ କରୁଥିବେ। ଲେଖିବା ବାହୁଲ୍ୟ ମାତ୍ର।

ବାଳିକାର ୧୮ବର୍ଷରୁ ୨୧ ବର୍ଷରେ ବିବାହ ହେଲେ ଭାରତୀୟ ସମାଜର ଯେ ବିଶେଷ କ୍ଷତି ହୁଅନ୍ତା, ଏହା ମନେ ହେଉନାହିଁ। ବରଂ ସବଳମାତାର ସନ୍ତାନ ସବଳ ହୁଅନ୍ତେ। ବୟସ କିଛି ବେଶି ହେଲେ ଜନନ ଶକ୍ତି ଊଣା ହୁଏ। ଅଯଥା ଅକାଳଜନ୍ମା ସନ୍ତାନଗୁଡ଼ିକର ଦାଉରୁ ମାତାର ଜୀବନ ରକ୍ଷାପାଆନ୍ତା ଓ ପରିବାର ମଧ ସୁଖର ଆଳୟ ହୁଅନ୍ତା, ଏଥିରେ ସନ୍ଦେହର ଅବକାଶ ନାହିଁ।

ବାଲ୍ୟବିବାହର ପକ୍ଷରେ ଏବଂ ଉପକାରିତା ସମ୍ବନ୍ଧରେ ଅନେକ ଯୁକ୍ତି ଥାଇପାରେ। କିନ୍ତୁ ଯେଉଁ ଦେଶରେ ପ୍ରାୟ ଦଶଲକ୍ଷ ବାଲ୍ୟ ବିଧବା ସଂସାରର ସକଳ ପ୍ରକାର ସୁଖରୁ ବଞ୍ଚିତ ହୋଇ ହାହାମୟ ଜୀବନ ଯାପନ କରୁଛନ୍ତି, ପ୍ରାୟ ପଞ୍ଚସ୍ତରୀ ଲକ୍ଷ ପ୍ରସୂତୀ ଅକାଳରେ ମରୁଛନ୍ତି, ଆଉ କୋଟି କୋଟି ନାରୀ ଅକାଳ ବାର୍ଦ୍ଧକ୍ୟ ସୂତିକା ରୋଗାଦିରେ ଭାରଗ୍ରସ୍ତ ଜୀବନ ବହନ କରି ପଡ଼ିଛନ୍ତି ଏବଂ ଯେଉଁ ଦେଶରେ ଉପଯୁକ୍ତ କର୍ମୀ, ଉପଯୁକ୍ତ ମାନବ ଅଭାବରେ ସମାଜ ରସାତଳକୁ ଯିବାକୁ ବସିଲାଣି, ସେ ଦେଶରେ ବାଲ୍ୟ ବିବାହ ଏକାବେଳେ ବନ୍ଦ କରିବା ଧର୍ମାନୁମୋଦିତ କର୍ତ୍ତବ୍ୟ, ଏହା କହିଲେ କ୍ଷତି ନାହିଁ। ସମାଜ ଏ ସବୁ ବିଷୟ ଭାବିବେ କି?



# ନୂତନ ଓ ପୁରାତନ

ଆମ ଦେଶରେ ଆଜିକାଲି ସନ୍ତାନପ୍ରସବ ସମୟରେ ଯେଉଁ ପ୍ରଥାଗୁଡ଼ିକ ଅନୁଷ୍ଠିତ ହୁଏ, ତାହା ଭଲ କି ମନ୍ଦ, ଶାସ୍ତ୍ରାନୁମୋଦିତ ଅଥବା କେବଳ କୁସଂସ୍କାର, ଏହା ଭାବିବାକୁ କାହାରି ସମୟ ନାହିଁ। ଅଥଚ ଆମ୍ଭେମାନେ ଉନ୍ନତ, ଶକ୍ତିଶାଳୀ ଜାତିରେ ପରିଣତ ହେବାକୁ ଚାହୁଁ ଏବଂ ଦାବୀ କରୁଁ ଯେ, ଆମେ ପୃଥିବୀର ସର୍ବଶ୍ରେଷ୍ଠ, ସର୍ବୋନ୍ନତ, ସର୍ବାଦୌ ସଭ୍ୟ, ମହାପରାକ୍ରମଶାଳୀ, ଜ୍ଞାନବିଜ୍ଞାନ ସମ୍ପଦବିତ୍ ଆର୍ଯ୍ୟ-ଜାତିର ବଂଶଧର। କିନ୍ତୁ ଅନ୍ତୁଡ଼ି ଶାଳର କଦର୍ଯ୍ୟ ପ୍ରଥାଗୁଡ଼ିକ ଆଲୋଚନା କଲେ ମନରେ ହୁଏ, ଏହା ଏଡ଼େ ବଡ଼ ଜାତିର କେବଳ ''ଅଦୃଷ୍ଟ-ଦୋଷ।''

ଭାରତବର୍ଷର ସବୁ ଜାତିଙ୍କ କଥା ଛାଡ଼ି କେବଳ ଓଡ଼ିଆଙ୍କ କଥା ଭାବିଲା ବେଳକୁ ମନେହୁଏ, ଓଡ଼ିଆ ଏଡ଼େ ବୀରଜାତି ଥିଲେ, ଏଡ଼େ ପରାକ୍ରମୀ, ଜ୍ଞାନମେଧାସମ୍ପନ୍ନ ଜାତିର ସ୍ୱାସ୍ଥ୍ୟବିଜ୍ଞାନ ନିଶ୍ଚୟ ଅତି ଉନ୍ନତ ଥିଲା।

ନୋହିଲେ ଦୁର୍ବଳ ମାତାର ଦୁର୍ବଳ ସନ୍ତାନ ଯେ ପୁରୁଷୋତ୍ତମ, ଅନଙ୍ଗଭୀମ, ଯଯାତିକେଶରୀ ଆଦିରେ ପରିଣତ ହୋଇଥିଲେ, ଅଥବା ଜଗନ୍ନାଥ ଦାସ, ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ହୋଇ କବିତାକାନନରେ କୋକିଳକାକଳି ଶୁଣାଇଥିଲେ, ଏହା ଅତୀବ ଅସମ୍ଭବ।

ଆଧୁନିକ ପ୍ରସୂତି ଓ ଶିଶୁର ପରିଚର୍ଯ୍ୟା ଯେ ଆର୍ଯ୍ୟପ୍ରଥାର ସମ୍ପୂର୍ଣ୍ଣ ବିରୋଧୀ ଏବଂ ଜାତୀୟ ସ୍ୱାସ୍ଥ୍ୟହୀନତାର ଗୋଟିଏ ବିଶିଷ୍ଟ କାରଣ, ଏହାହିଁ ସଂକ୍ଷେପରେ ଦର୍ଶାଇବା ଏ ପ୍ରବନ୍ଧର ଉଦ୍ଦେଶ୍ୟ। ଆଶାକରେଁ, ସହୃଦୟ ପାଠକପାଠିକାବର୍ଗ ଏ ବିଷୟ ଧୀର ଚିତ୍ତରେ ଥରେ ବିବେଚିନା କରିବେ।

ଆମ ଦେଶରେ ଗୋଟିଏ ଉକ୍ତି ଅଛି, ''ଶରୀରମାଦ୍ୟଂ ଖଳୁ ଧର୍ମସାଧନମ୍'', ଅଥଚ ଯେଉଁ ଗୃହରେ ମାନବ ଜୀବନର ପ୍ରଥମ ମୁହୂର୍ତ୍ତର ଶୁଭ ସୂଚନା ହୁଏ, ସେ ସ୍ଥାନ ଆମ ଦେଶରେ ଆବାସଭୂମିର ନିକୃଷ୍ଟତମ ଅଂଶରେ ହିଁ ନିର୍ବାଚିତ ହୁଏ। ଚାଳିଆ ଘର, ରନ୍ଧାଘର, ଢେଙ୍କିଶାଳ ଅନ୍ଧାର କୋଣ ଅବା କେତୋଟି ତାଟିଘେରା ଗୋଟିଏ ଅପ୍ରଶସ୍ତ, ଆଲୋକବିହୀନ ଓ ଅନ୍ତୁଡ଼ିନିଆଁ ଧୂଆଁରେ ପରିପୂର୍ଣ୍ଣ କାରାଗାର ସଦୃଶ କ୍ଷୁଦ୍ର ପ୍ରକୋଷ୍ଠ ମାନବଶିଶୁର ପ୍ରଥମ ନିବାସ-ଗୃହ ସକାଶେ ବ୍ୟବହୃତ ହୁଏ।

ଏଥିରେ ସନ୍ତାନଟି ଭବିଷ୍ୟତରେ ସବଳକାୟ ମାନବ ନ ହୋଇ ଚିର ରଗ୍ଣ ଓ ହୀନବଳ ହେବା ସ୍ୱାଭାବିକ ଏବଂ ପ୍ରସୂତିର ଅକାଳ ବାର୍ଦ୍ଧକ୍ୟର ନିଦାନ ମଧ୍ୟ ଏହିଠାରେ ସୂଚିତ ହୁଏ।

କିନ୍ତୁ ଆମର ପୂର୍ବ ପୁରୁଷଙ୍କର ଅନ୍ତୁଡ଼ିଶାଳ ଅବା ସୂତିକାଗାର କେଉଁଠାରେ, କିପରି ଭାବରେ ଏବଂ କି କି ଉପକରଣରେ ନିର୍ମିତ ହେଉଥିଲା, ତାହା ଥରେ ଅନୁସନ୍ଧାନ କଲେ

ଆମ୍ଭର ପୂର୍ବ ପୁରୁଷଙ୍କ ତେଜବୀର୍ଯ୍ୟ ଓ ଆମର ହୀନବଳ ଓ କ୍ଷୀଣବୁଦ୍ଧିର କାରଣଗୁଡ଼ିକ ଜଣାପଡ଼େ।

ସାଗର ସେପାରିର ଲୋକେ ଆସି ଆଜି ଆମକୁ ଯେଉଁ ମାତୃମଙ୍ଗଳ, ଶିଶୁମଙ୍ଗଳାଦି ବିଷୟରେ ଶିକ୍ଷା ଦେଉଛନ୍ତି ଓ ମେଜିକ୍ ଲଣ୍ଠଣରେ ଛବି ଦେଖାଇ ଆମ ମଗଜରେ ପୂରାଇବାକୁ ଚେଷ୍ଟା କରୁଛନ୍ତି, ସେ ଆମରି ଘର କୋଣରେ ଗଦା ହୋଇଛି। ଆମରି ଆଳିମାଳିକା ପୋଥିପାଞ୍ଜିରୁ ସେ ରତ୍ନଗୁଡ଼ିକ କାଢ଼ି, ଝାଡ଼ି, ଘଷିମାଜି ଆମରି କତିରେ ବିତରଣ କରିବାକୁ ଆସିଛନ୍ତି। ଆମେ କି ଏସବୁର ତତ୍ତ୍ୱ ନେଉ, ନା ଖୋଜାଲୋଡ଼ା କରିଥାଉଁ?

ଆଜି ଗୋଟିଏ ଯୋଡ଼ିଏ ବିଷୟରେ କିଛି ଆଲୋଚନା କରିବି। ତାହା ଗୋଟିଏ ଲୁପ୍ତ ପ୍ରଥା, ଅର୍ଥାତ୍ ଗର୍ଭିଣୀ ନାରୀ ଓ ଭବିଷ୍ୟତ ସନ୍ତାନ ସକାଶେ ସର୍ବାଦୌ ପ୍ରୟୋଜନୀୟ ସୂତିକା-ଗୃହ-ନିର୍ମାଣ।

ଡାକ୍ତରୀ ମତରେ ସପ୍ତମ ମାସଠାରୁ ଅଷ୍ଟମ ମାସ ଶେଷ ମଧ୍ୟରେ ସୂତିକା-ଗୃହ ନିର୍ମାଣପୂର୍ବକ ପ୍ରସବୋପଯୋଗୀ ସମୁଦାୟ ଦ୍ରବ୍ୟସମ୍ଭାର ସୁସଜ୍ଜିତ କରି ରଖିବା କର୍ତ୍ତବ୍ୟ। ଗୃହଟି ପ୍ରଶସ୍ତ, ବାୟୁ ଓ ଆଲୋକପୂର୍ଣ୍ଣ ଏବଂ ପରିଷ୍କୃତ ଓ ଅଯଥା ଦ୍ରବ୍ୟାଦିବର୍ଜ୍ଜିତ ହେବା ପ୍ରୟୋଜନ ଏବଂ ପ୍ରତ୍ୟେକ ଜିନିଷ ବିଶେଷ ଭାବରେ ଧୌତ ଓ ବିଶୋଧିତ ହେବା ଉଚିତ୍। ପ୍ରସବୋପଯୋଗୀ ଦ୍ରବ୍ୟାଦିର ତାଲିକା ନିମ୍ନରେ ପ୍ରଦତ୍ତ ହେଲା।

(୧) ପରିଷ୍କାର ପୁରୁଣା ଲୁଗାପଟା, ଧୂଆକଚା ହୋଇ ପରିଷ୍କାର ସ୍ଥାନରେ ରହିବ।

(୨) ପରିଷ୍କାର ବିଛଣା, ଖଟ, ମସୁରୀ ଓ ଶିଶୁର ଆଚ୍ଛାଦନ ଓ ଗାତ୍ରାବରଣ।

(୩) ପରିଷ୍କାର ସୂତା, କଇଁଚି ଓ ସାବୁନ୍।

(୪) ଔଷଧ ମଧ୍ୟରେ ସାମାନ୍ୟ ପରିମାଣ ଫିନାଇଲ୍, ପୋଟାସ୍ ପରମାଙ୍ଗାନେଟ୍, ସାଲାଇନ୍, ବୋରିକ୍ ଆସିଡ୍ ଓ ତୁଳା ଏକ ପାକେଟ୍।

(୫) ଖାଇବା ଔଷଧ ମଧ୍ୟରେ ଆର୍‌ଗଟ୍ ଓ ବ୍ରାଣ୍ଡି ଦୁଇ ଦୁଇ ଆଉନ୍ସ। ଏତଦ୍‌ଭିନ୍ନ ଜଳ-ପାତ୍ରାଦି ଓ ଅନ୍ୟାନ୍ୟ ପ୍ରୟୋଜନୀୟ ପଦାର୍ଥମାନ ଚିକିତ୍ସକଙ୍କ ପରାମର୍ଶାନୁଯାୟୀ ଆୟୋଜନ କରିବା କର୍ତ୍ତବ୍ୟ। ଅଷ୍ଟମ ମାସରୁ ଚିକିତ୍ସକ ବା ଧାତ୍ରୀ ଦ୍ୱାରା ଗର୍ଭବତୀର ସମ୍ପୂର୍ଣ୍ଣ ପରୀକ୍ଷା ଓ ବ୍ୟବସ୍ଥାଦି ବିଧେୟ।

ଋଷି ଚରକ ଓ ଶୁଶ୍ରୁତଙ୍କର ମତ କଣ, ପାଠକ-ପାଠିକା ଦେଖନ୍ତୁ। ଚରକ-ସଂହିତାର ନାରୀର-ସ୍ଥାନ ଓ ଶୁଶ୍ରୁତ-ସଂହତିାର ଗର୍ଭିଣୀ-ବ୍ୟାକରଣରେ ନିମ୍ନଲିଖିତ କତିପୟ ଅତ୍ୟନ୍ତ ଉପାଦେୟ ବିଷୟାବଳୀ ଦୃଷ୍ଟିଗୋଚର ହୁଏ। ''ନବମ ମାସପୂର୍ବରୁ ସୂତିକାଗୃହ ନିର୍ମାଣ କରିବ

ଏବଂ ବ୍ରାହ୍ମଣଶୂଦ୍ରାଦି ବର୍ଣ୍ଣଭେଦରେ ବିଲ୍ୱ, ବଟ, ତିନ୍ଦୁକ, ଭଲ୍ଲାତକ କାଷ୍ଠରେ ଗୃହ ନିର୍ମିତ ହେବ ଏବଂ ନାନାବିଧ ଔଷଧିକ ବୃକ୍ଷଶାଖା ପରିବେଷ୍ଟିତ ହେବ। ଯେଉଁ ସ୍ଥାନରେ ଉକ୍ତ ଗୃହ ନିର୍ମ୍ମିତ ହେବ, ସେଠାରେ ଅସ୍ଥି, ଖପରା, ଶର୍କରାଦି ନଥିବ; ଭୂମି ଶୁଷ୍କ ଏବଂ ପ୍ରଶସ୍ତ, ରୂପ-ରସ-ଗନ୍ଧ ବିଶିଷ୍ଟ ହେବା ଉଚିତ୍। ସେହି ଘରଟି ଆଠହାତ ଦୀର୍ଘ, ଚାରିହାତ ପ୍ରସ୍ଥ ଏବଂ ଭିତ୍ତି ସୁଲେପିତ ଓ ଧୂପଧୂନାବିଶୋଧିତ ଏବଂ ପୂର୍ବ ବା ଦକ୍ଷିଣଦ୍ୱାରୀ ହେବ ଏବଂ ତାହା ବାୟୁ ଓ ଆଲୋକପୂର୍ଣ୍ଣ ହେବା ଉଚିତ୍। ନିମ୍ନଲିଖିତ ଦ୍ରବ୍ୟଗୁଡ଼ିକ ଅଥର୍ବ-ବେଦବିତ୍ ବ୍ରାହ୍ମଣବର୍ଗଙ୍କ ଉପଦେଶାନୁଯାୟୀ ସ୍ଥାପନ କରିବ। ପିଢ଼ା, ଖଟ, ଆଲେପନାର୍ଥ ପାତ୍ର, ଅଗ୍ନି, ଜଳ, ଉଦୂଖଳ, ମଳତ୍ୟାଗର ସ୍ଥାନ, ସ୍ନାନର ସ୍ଥାନ, ଚୁଲ୍ଲୀ ଇତ୍ୟାଦି ଯଥାସ୍ଥାନରେ ଓ ଯଥୋପଯୁକ୍ତଭାବେ ପ୍ରସ୍ତୁତ କରି ରଖିବ ଏବଂ ଘୃତ, ତୈଳ, ମଧୁ, ସୈନ୍ଧବ, ସୌବର୍ଚ୍ଚଳ, କାଳଲବଣ, ବିଡଙ୍ଗ, ଛାତ୍, କୁଡ଼୍, ଦେବଦାରୁ, ଶୁଣ୍ଠି, ପିପ୍ପଳି, ପିପ୍ପଳିମୂଳ, ଗଜପିପ୍ପଳି, ମଣ୍ଡୂକପର୍ଣ୍ଣି, ଅଳେଇଚ, ଲଶଲାଙ୍ଗଳା, ବଚ, ଚୈ, ଚିତା, ଡହରକରଞ୍ଜ, ହେଙ୍ଗୁ, ସୋରିଷ, ରସୁଣ, ଚାଉଳଗୁଣ୍ଡ, ଖୁଦ, କଦମ୍ୱ, ଫେସି, କୁଷ୍ମାଣ୍ଡ, ଭୂର୍ଜ୍ଜପତ୍ର, କୋଳଥ, ମୈରେୟ, ସୁରା ଓ ଆସବ ରଖିବ। ଦୁଇଟା ଶୀଳପଟା, ଦୁଇଟା ବଡ଼ ମୂଷଳ, ଦୁଇଟା ଉଦୂଖଳ ସୂତିକାଗୃହ ଦ୍ୱାର କତିରେ ରଖିବ। ତଦ୍‌ଭିନ୍ନ ଗୋଟିଏ ଗର୍ଦ୍ଦ. ଗୋଟିଏ ଶ୍ରୁବ, ସୁବର୍ଣ୍ଣ ଓ ରଜତନିର୍ମ୍ମିତ ଦୁଇଟି ସୂଚି, ଓ ସୂଚି ରଖିବା ପାତ୍ର, ଇସ୍‌ପାତ୍-ନିର୍ମିତ ଶସ୍ତ୍ରସମୂହ, ବିଶ୍ୱ-କାଷ୍ଠନିର୍ମ୍ମିତ ଦୁଇଟା ଖଟ, ଅଗ୍ନି ଜାଳିବା କାରଣ ତିନ୍ଦୁକ ଓ ଇଙ୍ଗୁଦି କାଷ୍ଠାଦି ବ୍ୟବସ୍ଥା କରିବ। ଆଉ ବହୁସନ୍ତାନବତୀ ଓ ଯେଉଁମାନେ ଗର୍ଭିଣୀର ସୁହୃତ୍ ଏବଂ ତାହା ପ୍ରତି ସ୍ନେହଶୀଳା, ଏପରି ଅନେକ ସ୍ତ୍ରୀ ଲୋକ ନିର୍ବାଚନ କରିବ। ସେହିମାନେ ପ୍ରସବ ସମୟରେ ସାହାଯ୍ୟ କରିବା ନିମନ୍ତେ ପୂର୍ବରୁ ପ୍ରସ୍ତୁତ ହୋଇଥିବେ। ପୁଣି ଅନେକ ଅଥର୍ବ-ବେଦବିତ୍ ବ୍ରାହ୍ମଣ (ଅର୍ଥାତ୍ ଚିକିତ୍ସକ) ପ୍ରସବ ସମୟରେ ପ୍ରୟୋଜନୀୟ ସାହାଯ୍ୟାର୍ଥ ଗୃହରେ ଅବସ୍ଥାନ କରିବେ। ଉକ୍ତ ବ୍ରାହ୍ମଣମାନେ ଯାହା ଯାହା ଉପଯୁକ୍ତ ବିବେଚନା କରନ୍ତି, ତତ୍ ସମୁଦାୟ ଦ୍ରବ୍ୟ ପୂର୍ବରୁ ସଂଗ୍ରହକରି ରଖିବେ।

ନବମ ମାସ ଉପସ୍ଥିତ ହେଲେ, ଶୁଭଦିନ, ଶୁଭକରଣରେ ମୈତ୍ରମୁହୂର୍ତ୍ତରେ ଏବଂ ଶୁଭ ନକ୍ଷତ୍ର ଗତ ଚନ୍ଦ୍ରରେ ଶାନ୍ତି-କର୍ମ୍ମବିଧାନୁସାରେ ହୋମକରି ଅଗ୍ରେ ବ୍ରାହ୍ମଣ (ଚିକିତ୍ସକ), ଅଗ୍ନି, ଜଳକୁମ୍ଭ ସୂତିକାଗୃହ ପ୍ରବିଷ୍ଟ କରିବ ଏବଂ ଗୋସମୂହକୁ ତୃଣ, ଜଳ ଏବଂ ମଧୁମିଶ୍ରିତ ଖାଇ ଖୁଆଇବ।

ଆସନୋପବିଷ୍ଟ ବ୍ରାହ୍ମଣବର୍ଗଙ୍କୁ ଅତିପ ତଣ୍ଡୂଳ, ପୁଷ୍ପ ଓ ସ୍ୱାଭିମତ ମାଙ୍ଗଲ୍ୟସୂଚକ ଫଳସମୂହ ଜଳ ସହ ଦାନ କରିବ ଏବଂ ତତ୍‌ପରେ ଅଭିବାଦନ, ପୁନରାଗମନ ଓ ସ୍ୱସ୍ତିବାଚନପୂର୍ବକ ''ପୁଣ୍ୟାହଂ ପୁଣ୍ୟାହଂ'' ଏହି ଶବ୍ଦ ଉଚ୍ଚାରଣ କରି ବ୍ରାହ୍ମଣବର୍ଗର ପଶ୍ଚାଦ୍‌ବର୍ତ୍ତିନୀ ହୋଇ ଗର୍ଭିଣୀ ସୂତିକାଗୃହରେ ପ୍ରବେଶକରିବେ ଏବଂ ଅଶୌଚାନ୍ତ ଦିବସ ପର୍ଯ୍ୟନ୍ତ ଉକ୍ତ ଗୃହରେ ବାସ କରିବେ।

ଉପର ଲିଖିତ ବର୍ଣ୍ଣନା ପାଠକରି ଅଧୁନା ପ୍ରଚଳିତ ପ୍ରଥା ସହିତ ତୁଳନା କଲେ, ମନରେ ଗଭୀର କ୍ଷୋଭ ଜାତ ହୁଏ। ଆମେ କି ରତ୍ନ ହରାଇଲୁଁ! ଆଉ ସାଗର ସେପାରିର ଲୋକେ ତାହାର ମର୍ମ୍ମ ଗ୍ରହଣକରି ମର୍ଯ୍ୟାଦାପୂର୍ବକ ନିଜ ଚିକିତ୍ସାଶାସ୍ତ୍ରଗତ କଲେ ଏବଂ ଜଗତକୁ ଶିକ୍ଷା ଦେଲେ। ଆଧୁନିକ ଡାକ୍ତରି ମତରେ ଯେପରି ପରିଷ୍କାର ବସ୍ତ୍ରାଦି ବିଶେଷ ପ୍ରୟୋଜନ, ଚରକ ଶୁଶ୍ରୁତଙ୍କ ମଧ୍ୟରେ ମଧ୍ୟ ତଦ୍‌ବତ୍। ଅତି ଶୁଚି, ଶୁଭ୍ର କ୍ଷୌମ ବସନର ବ୍ୟବହାର ବିଶେଷରୂପେ ନିର୍ଦ୍ଦେଶିତ ହୋଇଅଛି ଏବଂ ପ୍ରସୂତି ଓ ନବଜାତ ଶିଶୁର ଗାତ୍ରାବରଣ ଶଯ୍ୟାଦିର ବିଶେଷ ବର୍ଣ୍ଣନା ପ୍ରଦତ୍ତ ହୋଇଅଛି।

ଡାକ୍ତରୀ ଚିକିତ୍ସା ସହିତ ତୁଳନା କଲେ କେତେକ ବିଷୟରେ ଅତ୍ୟନ୍ତ ସୌସାଦୃଶ୍ୟ ପରିଲକ୍ଷିତ ହୁଏ।

(୧) ବାୟୁ-ଆଲୋକ-ପୂର୍ଣ୍ଣ, ପ୍ରଶସ୍ତ ପରିଷ୍କୃତ ସୂତିକାଗାର।

(୨) ପ୍ରସବୋପଯୁକ୍ତ ବହୁଳ ଦ୍ରବ୍ୟସମ୍ଭାର ଏବଂ ସୁରା ଓ ଆସବାଦି (ଅର୍ଥାତ୍ ବ୍ରାଣ୍ଡି, ସ୍ପିରିଟ୍) ପର୍ଯ୍ୟନ୍ତ ପର୍ଯ୍ୟାୟଭୁକ୍ତ।

(୩) ଖଟ, ପିଢ଼ା, ବିଛଣା ଛଡ଼ା ଇସ୍‌ପାତ୍ ନିର୍ମ୍ମିତ ପ୍ରସବଯନ୍ତ୍ରାଦି ଓ ଉପଯୁକ୍ତ ଶୁଶ୍ରୂଷାକାରିଣୀ ରମଣୀବୃନ୍ଦ ଏବଂ ଅଥର୍ବବେଦବିତ୍ ବ୍ରାହ୍ମଣବର୍ଗ ଅର୍ଥାତ୍ ଆର୍ଯ୍ୟ ଯୁଗର ଡାକ୍ତର ଓ ନର୍ଷ ମାସେ ଦେଢ଼ମାସ ପୂର୍ବରୁ ସମସ୍ତ ବିଷୟ ସୁବ୍ୟସ୍ଥିତ ଓ ସର୍ବପ୍ରକାର ଶୌଚ ଓ ଧର୍ମ୍ମର ବିଧିବିଧାନ। ଏହା କି ଅତ୍ୟନ୍ତ ଆଶ୍ଚର୍ଯ୍ୟ ଏବଂ ଗୌରବର ବିଷୟ ନୁହେଁ?

ହାୟ, ହାୟ, ସେଦିନ କାହିଁ? ଏବେ ଅନୁଭୂତି ଛୁଆଁଠୁ ବଳି ଛୁଆଁ ନାହିଁ। ଦଶବାର ଜଣ ବହୁଦର୍ଶିନୀ, ଶିକ୍ଷିତା ନାରୀ ଓ ଅଥର୍ବବେଦବିତ୍ ଚିକିତ୍ସକ ବ୍ରାହ୍ମଣର ସ୍ଥାନ ଜଣେ ଅର୍ଦ୍ଧଇଞ୍ଚପରିମିତ ସମଳ-ନଖ-ବିଶିଷ୍ଟା, ଅତ୍ୟନ୍ତ ଅପରିଷ୍କାର-ବସ୍ତ୍ର-ପରିହିତା ନୀଚଜାତୀୟା ଧାଈ ଅଧିକାର କରିବା ଯେ ଆମ ଜାତିର କେଡ଼େ ଦାରୁଣ ଅଧଃପତନର ପରିଚାୟକ, ତାହା ଏ କ୍ଷୁଦ୍ର ଲେଖନୀରେ ବର୍ଣ୍ଣନା କରିବା ଦୁଃସାଧ୍ୟ।

ଗର୍ଭିଣୀର ଚିକିତ୍ସା, ଶୁଶ୍ରୂଷା, ପଥ୍ୟାଦି ଏବଂ ନବଜାତ କୁମାରର ପରିଚର୍ଯ୍ୟା ଚରକ ଶୁଶ୍ରୁତ ଗ୍ରନ୍ଥରେ ଅତି ବିଶଦବରେ ବର୍ଣ୍ଣିତ ହୋଇଅଛି।

ଗୋଟିଏ ବିଷୟରେ ଉଲ୍ଲେଖ ଅତି ପ୍ରୟୋଜନୀୟ ମନେକଲି, ଅର୍ଥାତ୍ ନାଭିଚ୍ଛେଦନ। ଆଜିକାଲି ଯେପରି ଯେକୌଣସି ଅପରିଷ୍କୃତ ଅସ୍ତ୍ର, ଖଣ୍ଡିଆ ଟିଣ ଖଣ୍ଡେ ବା ଦାଢୁଆ ଶାମୁକାରେ ନାଭି କାଟନ୍ତି ଏବଂ ଟଙ୍କା କି ଡବଲ ପଇସା ଉପରେ ଥୋଇ ଘସି ଘସି କଟାଯାଏ, ତାହା ପୂର୍ବେ ପ୍ରଚଳିତ ନଥିଲା। ନାଭିଚ୍ଛେଦନର ବିଶେଷ ବିଧି ନିମ୍ନଲିଖିତମତେ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ଅଛି। ନାଭିମୂଳରୁ ଆଠ ଆଙ୍ଗୁଳି ଛାଡ଼ି ଯେଉଁ ଯେଉଁ ସ୍ଥାନରେ କଟାଯିବ, ତହିଁର

ତଳ ଉପର ଦୁଇପାଖ ଚିହ୍ନିତ କରି ନିମ୍ନରେ ପରିଷ୍କାର ସୂତ୍ର ବନ୍ଧନପୂର୍ବକ ତୀକ୍ଷ୍ଣଧାର ସ୍ୱର୍ଣ୍ଣ, ରଜତ ବା ଲୌହାସ୍ତ୍ରଦ୍ୱାରା ଛେଦନ କରିବ ଏବଂ ଛେଦିତ ଅଂଶରେ ବଦ୍ଧସୂତ୍ର ଶିଥିଳ ଭାବରେ ଶିଶୁର ଗଳାରେ ଝୁଲାଇଦେବ। ଆକସ୍ମିକ ରକ୍ତସ୍ରାବ ନିବାରଣାର୍ଥେ ଏହି ବ୍ୟବସ୍ଥା ଅନୁମିତ ହୁଏ।

ନାଭି ସେକିବା ପ୍ରଥାର ବର୍ଣ୍ଣନା ନାହିଁ। ନଖରେ ଟିପି ଟିପି ସେକି ୭ ଦିନ ପୂର୍ବରୁ ଯଥାତଥାକ୍ରମେ ନାଭିଟି ସ୍ଥାନଚ୍ୟୁତ କରି ଧାଇ ''ବକ୍ସିସ୍'' ଘେନି ପଳାଇବା ପ୍ରଥାର ଉଲ୍ଲେଖ କୁତ୍ରାପି ଦୃଷ୍ଟ ହୁଏନାହିଁ। ବରଂ ତତ୍‌ପରିବର୍ତ୍ତରେ ଲୋଧ, ଯଷ୍ଟିମଧୁ, ପ୍ରିୟଙ୍ଗୁ ଓ ହଳଦି ଏକତ୍ର ବାଟି ତେଲରେ ସିଝାଇ ସେହି ତେଲ ନାଭିରେ ଦେବା ଓ ଲୋଧଚୂନା ଦେଇ ବାନ୍ଧିବା ବିଷୟର ଉଲ୍ଲେଖ ଦୃଷ୍ଟ ହୁଏ। ଏହା ଆଧୁନିକ ଡଷ୍ଟିଙ୍ଗ ପାଉଡ଼ର ଦେଇ ବାନ୍ଧିବା ବ୍ୟବସ୍ଥା ସଦୃଶ ଅଟେ। ଏପରି ବିଧିସବୁ ପାଳିଲେ ବିଷାଣ-ଜ୍ୱର, ଚଉଆ ରୋଗ ଯେ ହେବନାହିଁ, ଏହା ଉଲ୍ଲେଖ କରିବା ବାହୁଲ୍ୟମାତ୍ର।

ଦୁଃଖର ବିଷୟ, ଆମ୍ଭେମାନେ ନିଜର ଶାସ୍ତ୍ର-ସମ୍ମତ ପ୍ରଥାମାନ ଭୁଲିଯାଇ ନିତାନ୍ତ କୁସଂସ୍କାରଗୁଡ଼ିକୁ ଧର୍ମଜ୍ଞାନରେ ପାଳି ଆସୁଛୁଁ ଏବଂ ତହିଁର ବିଷମୟ ଫଳସ୍ୱରୂପ ଶିଶୁ ଓ ପ୍ରସୂତିର ମୃତ୍ୟୁସଂଖ୍ୟା ଭୟଙ୍କର ବୃଦ୍ଧି ଲାଭ କରୁଅଛି। ଏହାହିଁ କି ଜାତୀୟ ଜାଗରଣ।



# ମା ଓ ପିଲାର ଯତ୍ନ

## ୧୯୨୪ ମସିହା କଟକ ଶିଶୁପ୍ରଦର୍ଶନୀରେ ପଠିତ ୪-୨-୨୪

– ୧ –

ପିଲାତ ଆମର ଶ୍ରେଷ୍ଠଧନ, ପିଲାତ ଆଉ ୧୫/୨୦ ବର୍ଷ ପରେ ଆମ ଦେଶର ହର୍ତ୍ତାକର୍ତ୍ତା ହେବେ, ସେହି ପିଲାଙ୍କୁ ଆଉ ତାଙ୍କ ମାଙ୍କୁ ଯତ୍ନ ନକଲେ ଆମେ ଯେ ବଡ଼ ଦୋଷରେ ଦୋଷୀ ହେଉଛୁଁ। ଆମ ଦେଶରେ ତ ଅନେକ ଟଙ୍କା, ଅନେକ ଆଡ଼େ ଖରଚ ହୁଏ। ପୁନିଅପର୍ବ, ନାଟତାମସା, ଯାତ୍ରା, ବିବାହ, ଭୋଜି, ଆମୋଦପ୍ରମୋଦ ଏ ସବୁରେ ତ ଆମେ ଶହ ଶହ ଟଙ୍କା ଖରଚ କରିବାକୁ କୁଣ୍ଠିତ ହେଉଁ ନା, ଧାର ଉଧାର କରି କାର୍ଯ୍ୟ ଚଳାଉଁ; କିନ୍ତୁ ପିଲାଟି ଜନ୍ମ ହେବ, ଜଗତକୁ ଗୋଟିଏ ନୂଆ ମଣିଷ ଆସିବ, ଘରକୁ ଗୋଟିଏ ନୂଆ ଲୋକ ଆସିବ, ବଂଶରେ ଗୋଟିଏ ଶାଖା, ଗୋଟିଏ ଦୀପ ଦେଲାବାଲା ଆସିବ, ତା'ପାଇଁ ଆମେ କେତେ ଖରଚ କରୁଁ? କଣ ଯୋଗାଡ଼ କରି ରଖିଥାଉଁ? ଝିଅ ବିଭା ସମୟରେ ଗହଣାଗାଣ୍ଠି, କଂସାବାସନ, ଲୁଗାପଟା ଖଞ୍ଜିଦେବାପାଇଁ ମାମାନେ କେଡ଼େ ବ୍ୟସ୍ତ, ପିଲାଟି ହେଲା ବେଳକୁ ତାର ଅଧକରୁ ଅଧା ଯତ୍ନ ହୁଏ ନାହିଁ। ଆମେ ଭାବୁଁ, ଏହିପରି ତ କାଳକ ଚଳିଛି, ଆଜି ପୁଣି ଏ ନୂଆ ଢଙ୍ଗ କିଆଁ? ହେଲେ ଆମେ ଭୁଲିଯାଉଁ, ଆମରି ଅନାଚାର ଆମକୁ ଭୋଗିବାକୁ ପଡ଼େ। ସେହି କାରଣରୁ ଏକା କଟକରେ ବରଷେ ନ ପୁରୁଣୁ ଛୁଆପିଲା ୧୦୦ ଶହେ ଜଣ ମଧ୍ୟରୁ ୨୫ଟା ମରିଯାନ୍ତି। ବିଲାତ ଆଡ଼େ ଶହେରେ ଆଠଟା ମରନ୍ତି କି ନାହିଁ। କିନ୍ତୁ କଟକ ପରି ଛୋଟିଆ ଜାଗାରେ ବରଷକରେ ୨୦୦/୨୫୦ ପିଲା ମରନ୍ତି। ଏକା ଭାରତବର୍ଷ ଗୋଟାକରେ ବର୍ଷକୁ କୋଡ଼ିଏ ଲକ୍ଷ ପିଲା ମରନ୍ତି। ଯେଉଁ ଜାତିର ବରଷକର ମଣିଷ ଭିତରୁ ୨୦ ଲକ୍ଷ ମରିବେ, ସେ ଜାତି ଯେ ଦିନେ ଏକାବେଳେ ପୃଥିବୀରୁ ପୋଛି ହୋଇଯିବେ, ସେ କଥା ବା କେଉଁ ଆଶ୍ଚର୍ଯ୍ୟ! ପିଲା ଉପରେ କାର ଲୋଭ ନାହିଁ। କେଉଁ ମାଁ ନିଜ ପିଲାଙ୍କୁ ହୃଷ୍ଟପୁଷ୍ଟ ଦେଖିବାକୁ ନ ଚାହେଁ? କିନ୍ତୁ କଣ କରିବେ? ବିଚାରୀ ମାମାନେ ଯଦି ଜାଣନ୍ତେ, କିପରି ପିଲା ପାଳିଲେ ପିଲାଟି ସୁସ୍ଥ ସବଳ ହେବ, ମା ବାପ ଖୁସି ହେବେ, ତେବେ ସେମାନେ କଣ ଲାଗିପଡ଼ି କରନ୍ତେ କାହିଁକି? କିନ୍ତୁ ଦୁଃଖର କଥା, ଆମ ଦେଶରେ ଝିଅଙ୍କର ଏସବୁ ବିଷୟରେ ଆଦୌ ଶିକ୍ଷା ନାହିଁ, ଶିକ୍ଷାର ବ୍ୟବସ୍ଥା ମଧ୍ୟ ନାହିଁ।

ଆପଣା ପିଲାଙ୍କୁ ପୋଖତୀଙ୍କୁ ଯତ୍ନ କରିବାକୁ କି କି ପଦାର୍ଥ ଖୋଜା, ପ୍ରସବ ପୂର୍ବରେ କିମିତି ରହିଲେ, ପ୍ରସବ ସମୟରେ କିମିତି ବ୍ୟବସ୍ଥା କଲେ, ପିଲାଟିକି କିମିତି ଯତ୍ନକଲେ ମାର ଦେହଟି ଭଲ ରହିବ, ପିଲାଟି ଦେବ ମଣିଷ ହେବ, ଏହିସବୁ ବିଷୟ ଆଜି ମୁଁ କହିବି।

ପହିଲି କଥା – ପ୍ରସବ ପୂର୍ବରୁ କିମିତି ରହିବେ।

ଗର୍ଭ ଜଣାପଡ଼ିଲା ପରେ କେତୋଟି କଥା ସବୁବେଳେ ମନେ ରଖିବେ। (୧) ଗର୍ଭିଣୀର ଖାଇବାର ଯେମିତି ପ୍ରଚୁର ହୁଏ। ଖାଇବାରେ ଅଣ୍ଟା ନିଅଣ୍ଟ ଥିଲେ ସୁଦ୍ଧା ଗର୍ଭିଣୀ ସ୍ତ୍ରୀ ଲୋକଙ୍କୁ ମାଟେ ଉପବାସୀ ରଖିବ ନାହିଁ। ଠିକ୍ ନିୟମିତ ସମୟରେ ସେ ଖାଇବେ। ଖାଇବା ପଦାର୍ଥ ବଳକାରକ ହେବା ଆବଶ୍ୟକ। ଭାତ, ଡାଲି, ତରକାରୀ ଛଡ଼ା ଦୁଧ, ଘିଅ, ମାଛ ଆଉ ଯେଉଁମାନେ ମାଂସ, ଅଣ୍ଡା ଇତ୍ୟାଦି ଖାଆନ୍ତି, ସେମାନେ ସେ ସବୁ ପଦାର୍ଥ ଖାଇବେ। ମନେ ରଖିବେ, ମାଁର ଖାଇବାରେ ମାଁ ଓ ପିଲା ଦୁଇଟି ପୋଷା ହୁଅନ୍ତି। ମାଁକୁ ଉପବାସୀ ରଖିବା, ମାଁର କଦର୍ଯ୍ୟ ଆହାର ହେବା ମାନେ, ଗର୍ଭରେ ଥିବା ପିଲାଟିକି ମାରି ପକାଇବା! ବାସି ପଦାର୍ଥ ମୋଟେ ଖାଇବାକୁ ଦେବେନାହିଁ।

(୨) ଠିକ୍ ନିୟମିତ ସମୟରେ ମିଶ୍ରାମ କରିବେ। ରାତି ଜାଗିବା, ଅତ୍ୟନ୍ତ ଚିନ୍ତା, ଦୁଃଖ, ବେଶି ପରିଶ୍ରମ- ଏସବୁ ଗର୍ଭିଣୀ ପକ୍ଷରେ ବଡ଼ ଅନିଷ୍ଟକର। ଭାରି ଜିନିଷ ଟେକିବା, କୂଅରୁ ବଡ଼ ଗରା ବା ମାଠିଆରେ ପାଣି କାଢ଼ିବା, ଢେଙ୍କି କୁଟିବା ଇତ୍ୟାଦି ଭାରି ୨ କାମ କରିବା ଆଦୌ ଉଚିତ୍ ନୁହେଁ। କିନ୍ତୁ ଅଳପ ପରିଶ୍ରମ ଭଲ, ଏକାବେଳେ ଶୋଇ ବସି ରହିଲେ ଅନିଷ୍ଟ ବିନା ଇଷ୍ଟ ହେବନାହିଁ। ଦେହ ଚଞ୍ଚଳ ହେଲେ, ଦେହରେ ରକ୍ତ ଚଳାଚଳ ଭଲ ହୁଏ। ମାଁର ରକ୍ତରେ ପିଲା ବଢ଼େ। ସେଥିପାଇଁ ରକ୍ତ ପରିଷ୍କାର ରଖିବା ସକାଶ ମାଁଙ୍କର ଖୋଲା ପବନ ଜାଗାରେ, ବଗିଚାରେ, ଚାରିରେ ବୁଲାବୁଲି କରିବା, ଘରକରଣାର କାମଦାମ କରିବା ଖୁବ୍ ଭଲ। ଗର୍ଭିଣୀର ଲୁଗାପଟା ବିଷୟରେ ଯତ୍ନ ନେବା ଉଚିତ୍। ଅଣ୍ଟା କଷି ଲୁଗା ପିନ୍ଧିବେ ନାହିଁ। ଶୀତ ସମୟରେ ଗରମ ଲୁଗା, ଗରମ ଦିନରେ ଥଣ୍ଡା ଲୁଗା ବ୍ୟବହାର କରିବେ। ଆଉ ସାମାନ୍ୟ ରୋଗ ହେଲେ ଡାକ୍ତର ଡାକି ଚିକିତ୍ସା କରିବେ। ଏହି ବିଷୟରେ ଆମ ଦେଶରେ ବଡ଼ ହେଳା। ଭଲ ମଣିଷର ରୋଗ ହେଲାମାତ୍ରେ ଦଶ ଡାକ୍ତର ଦେଖାଇବେ, କିନ୍ତୁ ଗର୍ଭବତୀର ରୋଗ ହେଲେ କାଳେ ପିଲା ନଷ୍ଟହେବ, ଏହି ଭୟରେ ଔଷଧ ଖୁଆଇବାରେ ବଡ଼ ଡେରି କରନ୍ତି। କିନ୍ତୁ ସେଥିରେ ଯେ ଦୁଇଟି ଜୀବନର ବିପଦ, ଏହିଟା ଭୁଲିଯାନ୍ତି। ନଦୀ ବଢ଼ିଲେ ଛାତୁ ଛାତୁ ଅନେକ ଦିନ। ରୋଗ ବଢ଼ିଲେ ଭଲ କରିବା ବଡ଼ କଷ୍ଟ, ପୁଣି ଗର୍ଭିଣୀ ଶରୀରରେ। ସେଥିପାଇଁ ଅଳ୍ପ ରୋଗ ହେଲାବେଳୁ ପ୍ରତିକାର କରିବାଟା ବୁଦ୍ଧିର କଥା, ସେଥିରେ ମାଁ ଓ ପିଲା ଦୁହିଁଙ୍କର ମଙ୍ଗଳ। ଗର୍ଭ ସମୟରେ ଏହି କେତୋଟି ଲକ୍ଷଣ ଦେଖିଲା ମାତ୍ରେ ଡାକ୍ତରଙ୍କ ସଙ୍ଗେ ପରାମର୍ଶ କରି ବ୍ୟବସ୍ଥା କରିବ।

(୧) ମୁହଁ ଓ ଗୋଡ଼ ଫୁଲା। (୨) ଅତିରିକ୍ତ ମୁଣ୍ଡବିନ୍ଧା। (୩) ରକ୍ତସ୍ରାବ, (୪) ଜ୍ୱର, (୫) ଝାଡ଼ା।

ଗୋଡ଼ ଫୁଲିଲେ ସାଧାରଣତଃ କହିଥାନ୍ତି ଗଭା ଓହ୍ଲାଏ। ଏହିପରି କହି କିଛି ମନୋଯୋଗ କରନ୍ତି ନାହିଁ। ଅନେକ ଜାଗାରେ ସେହି କାରଣରୁ ବଡ଼ ଅନିଷ୍ଟ ଘଟେ। ପରିସ୍ରାରେ ଦୋଷ ହେଲେ ଗୋଡ଼ ଆଉ ମୁହଁ ଫୁଲେ। ଦେହରେ ବିଷ ଜମି ଶେଷକୁ ହଠାତ୍ ଦିନେ ଶେଷ ମାସ ଆଡ଼କୁ ହାତ ଗୋଡ଼ରେ ବାତ ମାରି ଗର୍ଭିଣୀ ମୂର୍ଚ୍ଛାଯାଏ। ଏ ରୋଗରେ

ଅନେକ ପ୍ରସୂତି ମରନ୍ତି, ଆଉ ପିଲା ମୋଟେ ବଞ୍ଚେନାହିଁ, ପେଟରୁ ମରିଯାଇଥାଏ। ଡାକ୍ତର ଖାନାରେ ସୁଦ୍ଧା ଅନେକ ଚିକିତ୍ସା ହେଲେ ଏହିପରି ରୋଗୀ ଖୁବ୍ କମ୍ ବଞ୍ଚନ୍ତି। କିନ୍ତୁ ଆଗରୁ ସାବଧାନ ହେଲେ ଏ ରୋଗରୁ ରକ୍ଷା ମିଳେ। ମେଲେରିୟାରେ ମଧ୍ୟ ଲୋକେ ଚିକିତ୍ସା କରାଇବାକୁ ଭୟକରନ୍ତି। କୁଇନିନ୍‌ଦ୍ୱାରା ଗର୍ଭ ନଷ୍ଟ ହେବାର ବିଶେଷ ଭୟ ସତ, କିନ୍ତୁ ମେଲେରିଆରେ ମଧ୍ୟ ଗର୍ଭ ନଷ୍ଟ ହୁଏ। ଦେହରୁ ରକ୍ତ ଶୁଖିଯାଏ। ଏଥିରେ ଗର୍ଭସ୍ଥ ପିଲାର ଏକା ଅମଙ୍ଗଳ ହୁଏ, ତାହା ନୁହେଁ, ମାଁ ଓ ପିଲା ଉଭୟେ ଭୋଗନ୍ତି। ଆମ ଦେଶରେ ଅନେକ ଗର୍ଭସ୍ରାବର କାରଣ ପିହ୍ଲେଇ ବା ମେଲେରିୟା। ଅନେକ ପ୍ରସୂତି ମଧ୍ୟ ମରିଯାନ୍ତି। ଦେହରେ ରକ୍ତ ଅଭାବରେ ଶୋଥ ହୁଏ।

ଆମଝାଡ଼ା ମଧ୍ୟ ଗୋଟିଏ ଭୟଙ୍କର ରୋଗ। ଏ ରୋଗରେ ଦେହକ୍ଷୀଣ ହୋଇ ରକ୍ତ ଶୁଖି ୨ ଶେଷକୁ ଫୁଲା ଓ ଶୋଥ ହୁଏ। ଉପଯୁକ୍ତ ଚିକିତ୍ସା ନକଲେ ଅକାଳପ୍ରସବ ହୋଇ ପିଲା ମରିଯାଏ, ମାଁର ମଧ୍ୟ ବଞ୍ଚିବାର ଠିକଣା ନ ଥାଏ।

ଗର୍ଭବସ୍ଥାରେ ରକ୍ତସ୍ରାବ ହେଲେ, ଅନେକେ ମନେକରନ୍ତି ଋତୁ ହେଲା, ଏହିପରି ପ୍ରଥମ ୪/୫ ଦିନ ମଧ୍ୟରେ ଯତ୍ନ ନ ନେଇ ଶେଷକୁ ଅତିରକ୍ତ ହେଲେ, ଔଷଧ କରନ୍ତି ବା ଡାକ୍ତର ଦେଖାନ୍ତି। ଏହା ଅତି ଅନିଷ୍ଟକର। ଗର୍ଭାବସ୍ଥାରେ ସାମାନ୍ୟ ରକ୍ତ ଦେଖିଲାମାତ୍ରେ ଡାକ୍ତର ଡକାଇ ଚିକିତ୍ସା କରାଇବେ। ନୋହିଲେ ମାଁ ଓ ପିଲା ଦୁଇଟିର ଜୀବନ ଯିବା କଥା।

ଗର୍ଭର ଦଶମାସ ସମୟ ଭିତରେ ଘରେ ଏହି କେତୋଟି ପଦାର୍ଥ ଆଗରୁ ସଞ୍ଚି ରଖିବେ। ଉପଯୁକ୍ତ କନାପଟା, ପେଟ ବାନ୍ଧିବା ଲୁଗା, ବ୍ୟବହାର କରିବା କନା, ପିଲା ସକାଶେ କନା, ଛୋଟ ୨ କୁରୁତା, ଗୁଦୁଡ଼ି ହେଁସ ଇତ୍ୟାଦି। ଅନେକ ଜେଗାରେ ମୁଁ ଦେଖିଛି, ଖଣ୍ଡେ କନା ଯୋଗାଡ଼ କରି ରଖି ନଥାନ୍ତି। ହଠାତ୍ ପ୍ରସବ ହେଲା, ଘରର ଯାହା ତାହା ମଇଳା ଅଧୁଆ କନାରେ ସବୁ କାର୍ଯ୍ୟ କରନ୍ତି। ଏହାର ଫଳସ୍ୱରୂପ ମାଁ ପିଲା ଅନେକେ ରୋଗରେ ମରନ୍ତି। ଆଜିକାଲି କଟକରେ ପ୍ରାୟ ଶୁଣାଯାଏ ପ୍ରସବପରେ ୩ ଦିନରେ ବା ୪ ଦିନରେ ଜ୍ୱର ହେଲା, ପ୍ରସୂତୀ ମରିଗଲା। ଏ ଯେଉଁ ଛୁଆଁ ଜ୍ୱର, ଏ କେବଳ ମଇଳା ଲୁଗା, ମଇଳା ହାତ, ଧାଈର ମଇଳା କାମରେ ହୋଇଥାଏ। ପ୍ରସବ କିଛି ଘଣ୍ଟାକର କଥା ନୁହେଁ। ଦଶମାସ ସମୟ। ପଇସାଏ ୨ ସଞ୍ଚୟ କରି ରଖିବା ପାଞ୍ଚ ଦଶଟି ପୁରୁଣା ଲୁଗା ଧୋଇକଚେଇ ପରିଷ୍କାର ରଖିବା ସକାଶେ ଢ଼େର ସମୟ। ଯେଡ଼େ ଗରିବ ହେଲେ ମଧ୍ୟ ଗୋଟିଏ ପିଲା ଜନ୍ମ ସକାଶେ ୫/୧୦ଟି ଟଙ୍କା ଅନାୟାସରେ ଖରଚ କରିପାରନ୍ତି। ଗରିବ ଘରେ କଣ ଝିଅପୁଅ ବିଭା ହେଉ ନାହାନ୍ତି, ଗହଣା ପିନ୍ଧୁ ନାହାନ୍ତି, ଯାତ୍ରା ତାମସା ଦେଖିବାକୁ ପଇସା ଖରଚ କରୁ ନାହାନ୍ତି ? ଗୋଟିଏ ପିଲା ଜନ୍ମ ସକାଶେ ୫/୧୦ ଟଙ୍କା ସଞ୍ଚିବାକୁ ଦଶମାସ ସମୟରେ ପାରିବେ ନାହିଁ, ଏକଥା ମିଛ। ଆଜିକାଲି ସାବୁନ ବଡ଼ ଶସ୍ତା। ବଜାରର 'ସନ୍‌ଲାଇଟ୍' ସାବୁନ୍ ଖଣ୍ଡି ଏଗାର ପଇସା କରି, ଯେଡ଼େ ଗରିବ ହେଲେ ମଧ୍ୟ ଟ.୧ ଖରଚ କରି ବାକ୍‌ସେ ସାବୁନ୍ କିଣି ରଖି ପାରିବେ। ହାତ ଧୋଇବା ଓଷଦ ଓ ଗୋଟିଏ ଯୋଡ଼ିଏ ବାସନ କୁଣ୍ଡ କୂଅରେ ଯେଉଁ ଲାଲି ଓଷଦ ପଡ଼େ, ଆଉ 'ଫିନାଇଲ୍' କଥା ଆଜିକାଲି ସମସ୍ତେ

ଜାଣନ୍ତି । ପୁଣି ସ୍ଥାନେ ସ୍ଥାନେ ଡାକ୍ତରଖାନା । ଯେତେ ଗରିବ ହେଲେ ମଧ୍ୟ ସରକାରୀ ଡାକ୍ତରଖାନାମାନଙ୍କୁ ଯାଇ ଡାକ୍ତର, ଡାକ୍ତରାଣୀଙ୍କୁ ପଚାରି ବୁଝି ପିଲା ପ୍ରସବପାଇଁ ସବୁ ଠିକଣା କରିପାରନ୍ତି । ମନ ଥିଲେ ବାଟ ଥାଏ ।

ଦ୍ୱିତୀୟ କଥା- ଆମ ଦେଶର ଅନ୍ତୁଡ଼ିଶାଳର ଅତ୍ୟାଚାର । ଏ ଅତ୍ୟାଚାର ଦୂର ନ କଲେ ତ ପିଲା ଓ ପୋଖତୀଙ୍କର ମରିବା ସଂଖ୍ୟା କମିବନାହିଁ ।

— ୨ —

ପ୍ରସବପାଇଁ ଗୋଟିଏ ଭଲ ଘର ବନ୍ଦୋବସ୍ତ କରିବେ । ସେ ଘରଟି ଯେପରି ବଡ଼, ଖୋଲା, ମେଲା ଥିବ, ତାକୁ ଝାଡ଼ି ପୋଛି ପରିଷ୍କାର କରି ରଖିବେ, ବାର ଅଳିମାଳିକା କାଢ଼ନେବେ, ଚୂନଘର ହୋଇଥିଲେ ଥରେ ଧଉଳେଇ ଦେବେ, ବା ମାଟିଘର ହୋଇଥିଲେ ଲିପାପୋଛା କରି ରଖିବେ । ଘରେ ପ୍ରସବର ସବୁ ଜିନିସପତ୍ର, ଯଥା ଖଣ୍ଡିଏ ଛୋଟ ତକ୍ତପୋଷ ବା ଭଲ ମସିଣା, ଭଲ ବିଛଣା, ଚାରୋଟି ବା ଯୋଡ଼ିଏ ଚାଦର, ଦୁଇଟି ତକିଆ, ପିଲାପାଇଁ ଅଲଗା ଖଣ୍ଡେ ବିଛଣା, ମଶାରୀଟିଏ, ପୁରୁଣା ପରିଷ୍କାର ଲୁଗା କେତେଗୁଡ଼ିଏ, ସାବୁନ୍ ଦିଖଣ୍ଡ ଅବସ୍ଥା ଭଲ ଯଦି, ତେବେ ଏହାଠାରୁ ଅଧିକ ଜିନିଷ ଆୟୋଜନ କରି ପାରନ୍ତି, ଯଥା– ଅଏଲ୍‌କ୍ଲଥ, ବେଡ୍‌ପାନ ଲୋସନ୍, ତୁଳା, ଔଷଧ, ମେଜ, ଚୌକି ଇତ୍ୟାଦି । କିନ୍ତୁ ଗରିବଘରେ ପରିଷ୍କାର ଲୋଟା, ପିତଳର ତସଲା, ମାଟିର ପରିଷ୍କାର କୁଣ୍ଡ ପଲମ ଇତ୍ୟାଦି ଗରମ ପାଣିରେ ଫୁଟାଇ ରଖାଯାଇପାରେ । ମା'ର, ପିଲାର ଅନ୍ତୁଡ଼ିଶାଳରେ ବ୍ୟବହାର ସକାଶେ, ଯାବତୀୟ ଜିନିଷ ସେହି ଘରେ ଆଗରୁ ସଜାଡ଼ି ରଖିଥିଲେ, ଯେ କୌଣସି ମୁହୂର୍ତ୍ତରେ ପିଲା ହେଲେ ସେହି ଘରକୁ ନେଇ ପ୍ରସବ କରାଇପାରିବ ।

ଆଗରୁ ଧାଈ ବା ନର୍ଷ ବନ୍ଦୋବସ୍ତ କରି ରଖିବ । ତାର କିନ୍ତୁ ଲୁଗା ଓ ହାତ ପରିଷ୍କାର ଥିବ, ନଖ ନଥିବ, ହାତରେ ଚୁଡ଼ି ମୁଦି ଖଡୁ ଏସବୁ ନଥିବ, ସେ ଯେପରି ଅକାରଣ ମଇଳା ହାତରେ ଦଶଥର ଘଣ୍ଟାଘଣ୍ଟି ନକରେ । ଆଉ ଭଲରୂପେ ସାବୁନ ଓ ଗରମ ପାଣିରେ ହାତ ଧୋଇ ପୋଖତୀକୁ ଛୁଇଁବ ।

ତୃତୀୟ କଥା ପିଲାର ଯତ୍ନ :

ଗୋଟିଏ ସୁସ୍ଥ ସବଳ ପିଲା ଜନ୍ମପରେ ପହିଲି ବର୍ଷରେ କି କି କାରଣରୁ ମରିଯାଏ, ଆଉ କଣ ପ୍ରତିକାର କଲେ ଭଲ ହେବ ତାହା ଅଳ୍ପ କିଛି କହିବି ।

କାରଣ ଗୁଡ଼ିକ ହେଉଛି- ଅନ୍ତୁଡ଼ିଶାଳରେ ଅଯତ୍ନ,

ଅର୍ଥ - ଖାଇବା, ଗାଧୋଇବାରେ ଅନିୟମ, ଲୁଗାପଟା ଘୋଡ଼ାଇବାରେ ଅବହେଳା- ଅଯଥା ସେକ-ନାଭିର ଅଯତ୍ନ ।

ଆଉ ବାପା ମାର ରୋଗ - ମାଙ୍କର ପିଲା ପାଳିବା ବିଷୟରେ ଜ୍ଞାନ ବା କ୍ଷମତାର ଅଭାବ । ପିଲାଟିର ରୋଗ ହେଲେ ଖଟ ଚିକିତ୍ସାର ଅବହେଳା ।

ଗାଧୁଆ, ଖିଆ ବିଷୟରେ ଏହି କେତୋଟି କଥା ମନେ ରଖିବେ- ପିଲାଟି ଜନ୍ମ ହେଲା ମାତ୍ରେ ତାହାର ମୁହଁଭିତର ଖଣ୍ଡିଏଯାଙ୍କ ପରିଷ୍କାର କନାରେ ପୋଛିଦେବେ, ଅଳ୍ପ ଉଷ୍ମପାଣିରେ ଆଖି ଧୋଇଦେବେ। ସିଝା କଇଁଚି ଓ ସୂତାରେ ନାଭି କାଟି ବାନ୍ଧିବେ, ଦେଖିବେ ନାଭିଟି ଯେପରି ଦୃଢ଼ଭାବେ ବନ୍ଧାହେଲା। ପ୍ରଥମେ ନଡ଼ିଆତେଲ ଫୁଟାଇ ଥଣ୍ଡା କରି ଦେହରେ ଘସିଦେଇ ପରେ ସାବୁନ୍ ଲଗାଇ ଗରମ ପାଣିରେ ଗାଧୋଇ ପୋଛିଦେବେ। ଏ ସମୟରେ ଝାଡ଼ା ପରିସ୍ରା ସ୍ଥାନ ପରୀକ୍ଷାକରି ଦେଖିବା କଥା। ବାଟ ନ ଥିଲେ ଡାକ୍ତରଙ୍କୁ ଡ଼କାଇ ଦେଖାଇବେ। ଗାଧୁଆବେଳେ ଆଖି ଭଲକରି ଧୋଇଦେବେ। ପ୍ରତିଦିନ ଉଷୁମ ପାଣିରେ ଆଖି ଆଉ ମୁହଁ ଧୋଇଦେଲେ ଆଖି ଧରେ ନାହିଁ। ପିଲାକୁ ଭଲରୂପେ ପୋଛି ଖଣ୍ଡେ ତୁଳାରେ ଟିକେ ବୋରିକ୍ ଆସିଡ୍ ପାଉଡ଼ର ଦେଇ ବା ଟିକେ ବ୍ରାଣ୍ଡି ଦେଇ ପରିଷ୍କାର କନାରେ ନାଭି ବାନ୍ଧିଦେବେ। ଛୋଟ କୁରୁତା ପିନ୍ଧାଇ ଲୁଗା ଘୋଡ଼ାଇ ଶୁଆଇବେ। ଜନ୍ମର ତିନିଦିନ ପର୍ଯ୍ୟନ୍ତ ପିଲାଙ୍କୁ ବେଶି ଖୁଆଇବା ଉଚିତ୍ ନୁହେଁ। ବିଧାତା ନିଜେ ସେତେବେଳେ ମା ସ୍ତନରେ ଦୁଗ୍ଧ ଦେଇ ନାହାନ୍ତି, ସେଥିପାଇଁ ପ୍ରଥମ ତିନି ଦିନରେ ଅନ୍ୟାନ୍ୟ ଦୁଧ ନ ଖୁଆଇ, ଟିକେ ମହୁ, ବା ଅଳ୍ପ ଚିନିପାଣି ଖୁଆଇବେ, ଅଧ ଛଟାଙ୍କି ପାଣିରେ ଚାମଚେ ଚିନି ଦେଇ ଗରମ କରିନେଲେ ହେଲା। ଜନ୍ମର ଦୁଇଘଣ୍ଟା ପରେ ଗରମ ପାଣିରେ ଛାତି ଧୋଇଦେଇ ପିଲାକୁ ଶୁଆଇବେ। କଞ୍ଚା ଦୁଧ ପିଲା ପେଟକୁ ଗଲେ ଠିକ୍ ଜଡ଼ାତେଲ ପରି କାମ କରେ, ଆଉ ଘୁଣ୍ଟି ଇତ୍ୟାଦି ପ୍ରୟୋଜନ ହୁଏନାହିଁ। ଘୁଣ୍ଟି ଖାଇ ପିଲା ମରିବାର ମୁଁ ଅନେକ ସ୍ଥାନରେ ଦେଖିଛି। ସାନ ପିଲାଙ୍କୁ ଓଷଦ ଅଞ୍ଚ, ହାତୁଡ଼ିଆ ବଇଦ ବା ଧାଇ ଉପରେ ଛାଡ଼ି ନ ଦେଇ ଭଲ ଡାକ୍ତର ଦେଖାଇବା ଉଚିତ୍। ତିନିଦିନ ଦୁଧ ଓହ୍ଲାଇଲା ପରେ ପ୍ରତି ଦୁଇଘଣ୍ଟାରେ ଥରେ ଖୁଆଇବେ, ଆଉ ରାତି ୯ଟାକୁ ଥରେ ଆଉ ସକାଳ ପାହାନ୍ତାକୁ ଥରେ ଖୁଆଇଲେ ଯଥେଷ୍ଟ। ପିଲା କାନ୍ଦିଲା ମାତ୍ରେ ଦୁଧ ନ ଖୁଆଇ ଦେଖିବେ, ପିଲା କାହିଁକି ଘଡ଼ି ଘଡ଼ି କାନ୍ଦୁଛି। ଅନେକ ସ୍ଥଳରେ ପେଟ, ମୁଣ୍ଡ ବା କାନରେ ଯନ୍ତଣା ହେଲେ ପିଲା ଅଧୀର ହୋଇ କନ୍ଦାକଟା କରେ। ସେଥିପାଇଁ ଦେଖିବେ ପେଟ ଟାଣୁଛି, କି କାନ ଟାଣୁଛି ବା ମୁଣ୍ଡ ବିନ୍ଧୁଛି। ଅଯଥା ଖୁଆଇ ଖୁଆଇ ପେଟରୋଗ ଡାକି ଆଣିବା ଭଲ କି? ମା'ର ଦୁଧ ଥିଲେ ଟେକା ଦୁଧ ଦେବେନାହିଁ। ଯଦି ଟେକାଦୁଧ ଦେବା ନିତାନ୍ତ ଦରକାର ହୁଏ, ତେବେ ଗାଈଦୁଧକୁ ପାଣି ମିଶାଇ ତିଆରିକରି ପିଲାକୁ ଘଣ୍ଟା ହିସାବରେ ଖୁଆଇବେ। ପହିଲି ତିନିମାସ ମଧ୍ୟରେ ଭାଗେ ଦୁଧ, ଦୁଇଭାଗ ପାଣି ଭଲ କରି ଦୁଇଚାରି ଫୁଟଣା କରି ନେଇ ମିଶ୍ରି ବା ଚିନି ମିଶାଇ ଖୁଆଇବେ। ଭଲ ହଜମଶକ୍ତି ନଥିଲେ କିଛି ପାନମହୁରୀ, ୪୫ଟା ଲବଙ୍ଗ ଗୋଟିଏ ପରିଷ୍କାର କନାରେ ବାନ୍ଧି ଦୁଧ ସହିତ ସିଝାଇବେ। କିନ୍ତୁ ସେହି ଦୁଇଘଣ୍ଟା ଅନ୍ତରରେ ଖୁଆଇବେ। ଚାରି ମାସରୁ ଆଠମାସ ପର୍ଯ୍ୟନ୍ତ ପିଲାକୁ ୨୪ ଘଣ୍ଟାରେ ଥରେ ଥରେ କରି ଖୁଆଇବେ। ଆଠମାସ ପରେ ମା'ଦୁଧ ଛଡ଼ାଇବା ଭଲ। ଆମ ଦେଶରେ ଗୋଟିଏ ଗୋଟିଏ ପିଲା ୪/୫ ବର୍ଷ ଯାକେ ମାଠୁଁ ଦୁଧ ଖାଉଥାନ୍ତି। କିନ୍ତୁ ଏହା ମା ଓ ପିଲା ଦୁଇଜଣଙ୍କ ଦେହ ପକ୍ଷରେ ଭଲ ନୁହେଁ। ମା'ର ଯକ୍ଷ୍ମା

ଥିଲେ ପିଲାକୁ ମୋଟେ ମା'ଦୁଧ ଖୁଆଇବନାହିଁ। ଦାନ୍ତ ଉଠିବା ପୂର୍ବରୁ ଭାତ ଆଦି ଖୁଆଇବା ଉଚିତ୍ ନୁହେଁ। ଟେକାଦୁଧ ଯେପରି ଭଲ ଗାଈ ବା ଛେଳିର ହୁଏ, ଏଥି ପ୍ରତି ଦୃଷ୍ଟିଦେବେ। ରୋଗଣା ପଶୁର ଦୁଧ ଖାଇଲେ ପିଲା ରୋଗଣା ହେବ। ପୁଣି କଅଁଳା ପିଲାକୁ କଅଁଳା ଗାଈର ଦୁଧ ଖୁଆଇବା ଭଲ।

ଗାଧୁଆ ବିଷୟରେ ମନୋଯୋଗ କରିବେ। ନାଭି ପଡ଼ିଗଲା ପରେ ନିତି ଗରମପାଣି ଓ ସାବୁନ୍‌ରେ ଗାଧୋଇଦେଲେ ଭଲ। ଗାଧୁଆ ପୂର୍ବରୁ ତେଲ ହଳଦୀ ଦେଲେ ମଧ କିଛି ଅନିଷ୍ଟ ହୁଏନାହିଁ। କିନ୍ତୁ ତେଲ ଲଗାଇ ଛୁଆ ପିଲାଟିକୁ କୁଲା ବା ପିଢ଼ାରେ ଘଣ୍ଟାଏ ଦୁଇଘଣ୍ଟା ଶୁଖାଇବା ବଡ଼ ନିଷ୍ଠୁରତା। ଗୋଟିଏ ଘରେ ଏହିପରି ପିଲାଟିକୁ ଖରାରେ ଥୋଇଦେଇଥିଲେ। ପାତି ମାଙ୍କଡ଼ ଆସି ପିଲାଟିକୁ ଟେକିନେଇ ଗଛ ଉପରେ ବସି ତଳକୁ ଫୋପାଡ଼ିଦେଲା। ଘର ଲୋକମାନେ ଅନାଉଁ ଅନାଉଁ ପିଲାଟିର ପ୍ରାଣଗଲା। ପିଲାଟିକୁ ଖରାରେ ପକାଇ ନ ରଖି ମେଲା ଘରେ ଶୁଆଇଲେ ଭଲ। ପିଲାଙ୍କୁ ନିତ୍ୟ ଗାଧୋଇ ଦେଲେ ସର୍ଦ୍ଦି ଓ କାଶ କମ ହୁଏ। ଦଶ ପନ୍ଦର ଦିନ ପରେ ଦିନେ ହଠାତ୍ ଗାଧୋଇ ଦେଲେ ପିଲାର ସର୍ଦ୍ଦି, ଏପରିକି ନିମୋନିଆ ସୁଦ୍ଧା ହୋଇଯିବାର ସମ୍ଭାବନା। ଚର୍ମ ପରିଷ୍କାର ଥିଲେ ସିନା ଦେହ ଭଲ ରହିବ। ଆମ ଦେଶରେ ଅନ୍ତୁଡ଼ିଶାଳରେ ଉଠିଆରୀ, ବାରରାତ୍ର, ଏକୋଇଶା ଭିନ୍ନ ଗାଧୁଆ ନାହିଁ। ଏପରିକି ଝାଡ଼ା ପରିସ୍ରା ପରେ ମଧ ପାଣିରେ ପରିଷ୍କାର କରନ୍ତିନାହିଁ।

ପିଲାଙ୍କର କୁରୁତା ଇତ୍ୟାଦି ବ୍ୟବହାର ଆମ ଦେଶରେ ଖୁବ୍ କମ୍। ଛୋଟ ପିଲାଟିର ଛାତି ଘୋଡ଼ାଇବା ବିଶେଷ ଦରକାର। କିନ୍ତୁ ଅଧିକାଂଶ ସ୍ଥଳରେ ମୁଣ୍ଡ ଗୋଡ଼ ସବୁଆଡ଼ କନାରେ ମୋଡ଼ି ଛାତିଟି ମେଲା ରଖିଥାନ୍ତି। ଗୋଟିଏ କୁରୁତା ପିନ୍ଧାଇ ଦେଲେ ଛାତି ଇତ୍ୟାଦି ସବୁ ଢଙ୍କାଯିବ। ମୁଣ୍ଡ ମେଲା ରଖିବା ଭଲ, ପିଲାର ମୁହଁ ଘୋଡ଼ାଇ ଦେଇ ଅମୁହାଁ କରିବା ଭଲ ନୁହେଁ। ସେଥିରେ ନିଃଶ୍ୱାସ ବନ୍ଦ ହୋଇ ପିଲା ମରିଯାନ୍ତି। ଏପରିକି ମା'ର ଶୋଇବା ଦୋଷରେ ପିଲା ଉପରେ ଚାପପଡ଼ି ମରିବାର କଥା ମୁଁ ଗୋଟିଏ ସ୍ଥାନରେ ଦେଖିଛି। ସେଥିପାଇଁ ପିଲାଟିର ବିଛଣା ଅନ୍ୟ ସ୍ଥାନରେ ହେଲେ ଭଲ। ପିଲାକୁ ଦୋଳାରେ ପକାଇ ବେଶି ଝୁଲାଇବା ଭଲ ନୁହେଁ। ପିଲାକୁ ଗୋଟିଏ ମଶୁରୀ ଦେବେ, ଯେପରି ମଶା ନ କାମୁଡ଼େ। ପିଲା ଜନ୍ମ ସମୟରେ ପ୍ରାୟ ବାଲେଶ୍ୱରୀ ତିନି ସେରରୁ ସାଢ଼େ ତିନି ସେର ଓଜନ ଥାଆନ୍ତି। ପ୍ରତି ସପ୍ତାହରେ ଦୁଇ ଛଟାଙ୍କି କରି ବଢ଼ନ୍ତି। ଛମାସରେ ୬ ସେରରୁ ୭ ସେର ଏବଂ ବରଷକୁ ୧୨/୧୪ ସେର ହୁଅନ୍ତି। ସେଥିପାଇଁ ଓଜନ କଲେ ପିଲାର ସ୍ୱାସ୍ଥ୍ୟ ଜଣାପଡ଼େ।

ପ୍ରତିମାସକୁ ଥରେ ଓଜନ କରି ଦେଖିବେ, ପିଲାର ଠିକ୍ ଓଜନ ଅଛି କି ନାହିଁ। ଠିକ୍ ଓଜନ ଥିଲେ ଜାଣିବେ, ପିଲାଟି ସୁସ୍ଥ ଅଛି। ଓଜନ କମିଲେ ଚିକିତ୍ସା କରିବେ, ପଥ୍ୟ ଧରିବେ।

ପିଲାର କଲ୍ୟାଣରେ ଆମର କଲ୍ୟାଣ, ଜାତିର କଲ୍ୟାଣ, ଏହିଟା ମନେ ରଖିବେ।



# ଆଧୁନିକ ଧର୍ମସମସ୍ୟା

ସଭାପତି ମହାଶୟ, ଭ୍ରାତା ଓ ଭଗିନିବର୍ଗ,

ମୁଁ ଆଜି ଯେଉଁ ବିଷୟଟିରେ ପଦେ ଅଧେ କହିବି ବୋଲି ଆପଣମାନଙ୍କ ସମ୍ମୁଖରେ ଠିଆ ହୋଇଅଛି, ତାହା ସାମାନ୍ୟ ବିଷୟ ନୁହେଁ। ''ଆଧୁନିକ ଧର୍ମ ସମସ୍ୟା''। ଆଜିକାଲି ସବୁଆଡ଼େ ସମସ୍ୟା: ଅନ୍ନ ସମସ୍ୟା, ବସ୍ତ୍ର ସମସ୍ୟା, ରାଜନୈତିକ ସମସ୍ୟା, ସାମାଜିକ ସମସ୍ୟା। ଆଜିକାଲିର ଜୀବନ ସମସ୍ୟାମୟ। ସମସ୍ୟାଗୁଡ଼ିକର ବିଶ୍ଳେଷଣ କରୁ କରୁ ମାନବ ଶ୍ରାନ୍ତ, କ୍ଳାନ୍ତ; ତାହାର ଆୟୁ କ୍ଷୀଣ, ତାହାର ବୁଦ୍ଧିବୃତ୍ତି ବିବ୍ରତ, କିନ୍ତୁ ସମସ୍ୟାଗୁଡ଼ିକର ମୀମାଂସା ହେବା ଦୂରେ ଥାଉ, ବରଂ ଜଟିଳତା ଦିନକୁ ଦିନ ବୃଦ୍ଧିଲାଭ କରୁଅଛି।

ଆଧୁନିକ ଧର୍ମ ଜଗତରେ ଘୋର ସମସ୍ୟା, ନାନା ମୁନିଙ୍କର ନାନା ମତ, ନାନା ଶାସ୍ତ୍ରର ନାନା ଅର୍ଥ, ନାନା ପଣ୍ଡିତଙ୍କର ନାନା ପନ୍ଥା। କେଉଁଟା ଠିକ୍, କେଉଁଟା ଅବଲମ୍ବନୀୟ, ଏହା ସ୍ଥିର କରିବାକୁ ଯାଇ ମାନବର ଚିତ୍ତବୃତ୍ତି ବଣାହୁଏ। ହିନ୍ଦୁଧର୍ମ କହନ୍ତି - ହିନ୍ଦୁଧର୍ମ ଅତି ଉଦାର, ଏହା ସର୍ବପ୍ରାଚୀନ, ସନାତନ ଧର୍ମ, ସର୍ବଧର୍ମର ଆଶ୍ରୟ ସ୍ୱରୂପ, ମୁକ୍ତିର ସମସ୍ତ ପନ୍ଥା ତହିଁରେ ନିର୍ଦ୍ଦେଶିତ, ଅତଏବ ହିନ୍ଦୁଧର୍ମ ଶ୍ରେଷ୍ଠ ଧର୍ମ। ଖ୍ରୀଷ୍ଟଧର୍ମ କହନ୍ତି, ଏକମାତ୍ର ଖ୍ରୀଷ୍ଟ ଧର୍ମ ଭିନ୍ନ, ପାପୀ ମାନବର ଗତି ନାହିଁ; ଏକମାତ୍ର ଖ୍ରୀଷ୍ଟଙ୍କର ପ୍ରାୟଶ୍ଚିତ, ଖ୍ରୀଷ୍ଟଙ୍କର ଈଶ୍ୱରତ୍ୱରେ ବିଶ୍ୱାସ ମାନବର ପରିତ୍ରାଣର ପଥ। ମୁସଲମାନ ଧର୍ମ କହନ୍ତି, ଇସଲାମ ଧର୍ମରେ ଦୀକ୍ଷିତ ନ ହେଲେ ସ୍ୱର୍ଗଲାଭ ଅସମ୍ଭବ। ଏହିପରି ସବୁଆଡ଼େ ସବୁ ଧର୍ମ ନିଜର ମାହାତ୍ମ୍ୟ ଘୋଷଣାରେ ତତ୍ପର।

ସ୍ଥିରଚିତ୍ତରେ ଆଲୋଚନା କଲେ ଦେଖାଯାଏ, କେବଳ ଗୋଟିଏ କୌଣସି ବିଶେଷ ମତବାଦ ଧର୍ମ ନୁହେଁ। ଧର୍ମ ଶବ୍ଦଟିର ମୂଳ ଅର୍ଥ - ଯାହା ଧରିରଖେ ବା ବାନ୍ଧିରଖେ, ଅର୍ଥାତ୍ ବିଶ୍ୱକୁ ଯାହା ଏକତାରେ ଆବଦ୍ଧକରେ, ମାନବ ପ୍ରାଣରେ ଯାହା ଏକମାତ୍ର ଅବଲମ୍ବନ, ତାହା କି କେବଳ କତିପୟ ମତର ସମଷ୍ଟି? ତାହାକି ଗୋଟିଏ ଯୋଡ଼ିଏ ଅଭ୍ରାନ୍ତ ଶାସ୍ତ୍ର ବା ମହାତ୍ମାଙ୍କର ଅଧୀନ? ନା ଭାଇ, ନା ଭଉଣି, ତାହା ନୁହେଁ। ଯାହା ଭୁବନକୁ ଧାରଣ କରେ, ସମସ୍ତ ପାର୍ଥକ୍ୟ ବିନାଶକରେ, ଯାହା ମାନବ ମାନବ ମଧ୍ୟରେ ଭ୍ରାତୃଭାବ ଆନୟନ କରେ, ତାହାହିଁ ଧର୍ମ ଏବଂ ସେହି ଧର୍ମପାଇଁ ଆଜି ମାନବପ୍ରାଣ ପିପାସିତ।

ଯେତେବେଳେ ଧରାପୃଷ୍ଠରେ ମାନବର ଜନ୍ମହେଲା, ସେହି ଆଦିମ ଅବସ୍ଥାରେ ପ୍ରକୃତିର ମହନୀୟ ସୌନ୍ଦର୍ଯ୍ୟ-କ୍ରୋଡ଼ରେ ଲାଳିତ ପାଳିତ ମାନବ ଦେଖିଲା, ବିଶ୍ୱ ବଡ଼ ସୁନ୍ଦର। ଉପରେ ସୁବିଶାଳ ନୀଳ ଆକାଶ, ଅଗଣ୍ୟ ରବି, ଚନ୍ଦ୍ର, ତାରକା, ଅସଂଖ୍ୟ ଗ୍ରହ ଉପଗ୍ରହ, ତଳେ ଅଜସ୍ର କୁସୁମ ପଲ୍ଲବ ନଦୀ ନିର୍ଝର ମଣ୍ଡିତ ବିଶାଳ ଶ୍ୟାମଳ ପୃଥିବୀ। ପରେ ପରେ

ଛଅ ଋତୁର ଆଗମନ ହେଲା, ପରେ ପରେ ତାହାର ଜୀବନରେ ନିତ୍ୟ ନୂତନ ଆନନ୍ଦର ମୂର୍ଚ୍ଛନା ଜାଗ୍ରତ ଓ ଝଙ୍କାରିତ ହେଲା। ମାନବ ସୌନ୍ଦର୍ଯ୍ୟର ଉପାସକ ହେଲା। ପ୍ରତ୍ୟେକ ବସ୍ତୁରେ ଗୋଟିଏ ଦେବତା କଳ୍ପନା କଲା। ଇନ୍ଦ୍ର, ବରୁଣ, ଅଗ୍ନିର ଆବିର୍ଭାବ ହେଲା। କିନ୍ତୁ ଏ କ'ଣ? ମୁହୂର୍ତ୍ତିକରେ ତାହାର ପରିବର୍ତ୍ତନ ହେଲା। ରୋଗ, ଶୋକ, ଦୁଃଖ, ବିଚ୍ଛେଦ, ସବୁ ଗୋଟି ଗୋଟି ହୋଇ ଆସି ତାକୁ ବିବ୍ରତକଲେ। ଦୁର୍ଭିକ୍ଷ, ପ୍ଲାବନ, ମହାମାରୀ, ଭୂମିକମ୍ପରେ ସେ କମ୍ପମାନ ହେଲା। ଏ କଣ! ଏତେ ସୌନ୍ଦର୍ଯ୍ୟ, ଏତେ ମାଧୁର୍ଯ୍ୟ ମଧ୍ୟରେ ସଂହାରର ଭୀଷଣ ମୂର୍ତ୍ତି! ମାନବ ଭୀତ ଓ ତ୍ରସ୍ତ ହେଲା। ଏଥର ଦେବାତାମାନଙ୍କ ନିକଟରେ କେବଳ ପୂଜା, ପ୍ରୀତିର ଅଞ୍ଜଳି, ଭକ୍ତିର ନୈବେଦ୍ୟ ଦେଇ ସେ ସ୍ଥିର ରହିପାରିଲା ନାହିଁ। ଭୟରେ ନାନା ବଳିଦାନ, ଦେବାତଙ୍କର ସନ୍ତୁଷ୍ଟି ସକାଶେ ଜପ, ତପ, ଯାଗଯଜ୍ଞ ସୃଷ୍ଟିକଲା, କିନ୍ତୁ ତଥାପି ତାହାର ହୃଦୟରେ ଶାନ୍ତି ହେଲା ନାହିଁ।

ତାହାର ପ୍ରାଣ ଆହୁରି କିଛି ଲୋଡ଼େ। ଊର୍ଦ୍ଧର ନୀଳ ଆକାଶର ବହୁ ଉଚ୍ଚରେ ସେ କେଉଁ ଦେବତା ଅଛନ୍ତି, ତାଙ୍କର ସ୍ୱରୂପ କ'ଣ, ଚିନ୍ତାକରି, ଧ୍ୟାନକରି ମାନବ ଖୋଜିବାକୁ ବସିଲା ସେ ଭୂମାନନ୍ଦର ତତ୍ତ୍ୱ। ମାନବ ଦେଖିଲା, ତାହାର ଅନ୍ତରରେ ସ୍ୱର୍ଗରାଜ୍ୟ ବିଦ୍ୟମାନ, ତାହାର ଆତ୍ମ ନିବେଦନରେ ନିବିଡ଼ ଆନନ୍ଦ! ତହୁଁ ମାନବ ଅବତାର ପୂଜାର ସୃଷ୍ଟିକଲା। ଅଚିନ୍ତ୍ୟ ଅଜ୍ଞେୟ ପରମେଶ୍ୱରଙ୍କ ପୂଜା ତାହା ନିକଟରେ ବଡ଼ କଷ୍ଟସାଧ୍ୟ ପ୍ରତୀୟମାନ ହେଲା। ମାନବ ଭିତରେ, ମାନବର ମହତ୍ତ୍ୱରେ ସେ ପରମ ଦେବାତଙ୍କର ଅନ୍ୱେଷଣ କଲା; କିନ୍ତୁ ତହିଁରେ ତାର ପୂର୍ଣ୍ଣ ତୃପ୍ତିହେଲା ନାହିଁ। ମାନବର ଶତ ଶତ ଦୁର୍ବଳତା, ଶତ ଶତ ତ୍ରୁଟି, ଶତ ଶତ ହୀନତା ତାହାର ବ୍ରହ୍ମ ସୌନ୍ଦର୍ଯ୍ୟ ପିପାସା ତୃପ୍ତ କରିପାରିଲା ନାହିଁ। କେତେ ମତ, କେତେ ପନ୍ଥା, କେତେ ଯୋଗ ଧ୍ୟାନ ଧାରଣାର ଉପଦେଶମାନ ପ୍ରଚାରିତ ହେଲା, କିନ୍ତୁ ସମସ୍ତ ନିଷ୍ଫଳ। କ'ଣ ମାନବ ଲୋଡ଼େ?

ଆଧୁନିକ ଧର୍ମର ସମସ୍ୟା, ତାହାହିଁ। କ'ଣ ମାନବ ଲୋଡ଼େ? କେଉଁ ବିଷୟ ମାନବର ତୃପ୍ତି ବିଧାନ କରିବ। କେବଳ ଗୋଟିଏ ଯୋଡ଼ିଏ ଅଭ୍ରାନ୍ତ ଶାସ୍ତ୍ର, କେବଳ କତିପୟ ବ୍ୟକ୍ତିଙ୍କ ମଧ୍ୟରେ ଈଶ୍ୱରତ୍ୱ ପ୍ରତିପାଦନ? ନା ଭାଇ! ନା ଭଉଣୀ! ମାନବ ସେଥିରେ ତୃପ୍ତ ନୁହେଁ। ବୁଦ୍ଧଙ୍କର ସନ୍ନ୍ୟାସ, ଚୈତନ୍ୟଙ୍କର ପ୍ରେମ, ତଥାପି ତୃପ୍ତି ନାହିଁ। ଜଟିଳ, କୁଟିଳ ତତ୍ତ୍ୱର ସୃଷ୍ଟିକଲା, ବିଶ୍ୱର ରହସ୍ୟ ବୁଝାଇବାପାଇଁ ସହସ୍ର ବିଜ୍ଞାନ ଦର୍ଶନ ନିଯୋଜିତ କଲା, ଶତ ଶତ ଦେବତା ଚରଣରେ ପ୍ରଣିପାତକଲା, ଶତ ଶତ ମହାତ୍ମା ଓ ଗୁରୁ ଅନ୍ୱେଷଣ କଲା, ଶତ ଯାଗ ଯଜ୍ଞର ଅନୁଷ୍ଠାନ ଓ ଯୋଗାଭ୍ୟାସ କଲା, ତପସ୍ୟା ବଳରେ ଅଦ୍ଭୁତ ବିଭୂତି, ବହୁବିଧ ଶକ୍ତି ଲାଭକଲା; କିନ୍ତୁ ତୃପ୍ତି ନାହିଁ, ତୃପ୍ତି ନାହିଁ। ମାନବ କ'ଣ ଲୋଡ଼େ? ଆଜି ସେ କ'ଣ ବାଞ୍ଛାକରେ? ତାହାର ହୃଦୟର ଗଭୀରତମ ପ୍ରଦେଶରୁ କି ଆକୁଳ ଆକାଂକ୍ଷାର ଉଚ୍ଛ୍ୱାସ ଊର୍ଦ୍ଧ୍ୱକୁ ଉଠିଅଛି? ଧର୍ମର ଆଧୁନିକ ସମସ୍ୟା ତାହାହିଁ।

ଯାଗ କହ, ଯଜ୍ଞ କହ, ତପସ୍ୟା କହ, ଆତ୍ମ– ବଳିଦାନ କହ, ସବୁ ତ ଧର୍ମ ସାଧନାର ସୋପାନ ମାତ୍ର; କିନ୍ତୁ ସେହି ସୋପାନରେ ଠିଆହୋଇ ତାହାର ତୃପ୍ତି ନାହିଁ? ସେ ତ ଦିବ୍ୟ ସୌନ୍ଦର୍ଯ୍ୟ-ମୟ ଅଟ୍ଟାଳିକା ମଧ୍ୟକୁ ପ୍ରବେଶ କରିବାକୁ ଚାହେଁ। ଏହା ତ ତାହାର ଜୀବନର ଚରମ ଆକାଂକ୍ଷା, ଅଳ୍ପରେ ସେ ସନ୍ତୁଷ୍ଟ ହୋଇପାରିବ ନାହିଁ। ''ନାଳ୍ପେ ସୁଖମସ୍ତି''। ବିରୋଧଭାବ, ଧର୍ମ ଧର୍ମ ମଧ୍ୟରେ ସଂଘର୍ଷ, ପରସ୍ପର ପ୍ରତି କ୍ରୂର ଆକ୍ରମଣ, ନିଜର ମାହାତ୍ମ୍ୟ ପ୍ରତିପାଦନ କରି ଅନ୍ୟକୁ ତୁଚ୍ଛ ଜ୍ଞାନ, ଏ କ୍ଷୁଦ୍ରତା ମଧ୍ୟରେ ମାନବର ତୃପ୍ତି ନାହିଁ, ଶାନ୍ତି ନାହିଁ।

ଆଧୁନିକ ଧର୍ମର ଲକ୍ଷ୍ୟ ଏକ, ଭାବ ଏକ, ଚିନ୍ତା ଏକ, ଏକତ୍ୱ ପ୍ରତିପାଦନ ହିଁ ଆଧୁନିକ ଧର୍ମ ସମସ୍ୟାର ଏକମାତ୍ର ମୀମାଂସା। ଗୋଟିଏ ବିଶେଷ ମତବାଦ, ଗୋଟିଏ ବିଶେଷ ଶାସ୍ତ୍ରବାଦ, ଗୋଟିଏ ବିଶେଷ ଅବତାର ବା ଗୁରୁ ସମଗ୍ର ବିଶ୍ୱର ପରମ ପରିତୃପ୍ତି ନୁହନ୍ତି। ଗୋଟିଏ ବିଶେଷ ପ୍ରତିମା, ଗୋଟିଏ ବିଶେଷ ଚିତ୍ର ପୂର୍ଣ୍ଣ ପରିମେଶ୍ୱରଙ୍କୁ ପୂଜାକରିବାପାଇଁ ଯଥେଷ୍ଟ ନୁହେଁ। ଏଠି ଯେ ପ୍ରାଣଯଜ୍ଞ, ଆତ୍ମବଳିଦାନ! କେବଳ ବାହାରର ବସ୍ତୁ ଧାନକରି ଭଗବତ୍ ପୂଜାକରିବାପାଇଁ ଆଜି ମାନବ ପିପାସିତ ନୁହେଁ। ସେ ଚାହେଁ, ତାର ପ୍ରାଣର ଦେବତାଙ୍କୁ ହୃଦୟମନ୍ଦିରରେ ପ୍ରତିଷ୍ଠାକରି, ଅନ୍ତରର ବସ୍ତୁଦ୍ୱାରା, ଅନ୍ତରର ଭକ୍ତିଦ୍ୱାରା, ଅନ୍ତରର ଆନନ୍ଦଦ୍ୱାରା ପୂଜାକରିବ। ଯୁଗ ଯୁଗାନ୍ତର, ଲୋକ ଲୋକାନ୍ତର ଯାହାଙ୍କ କ୍ରୋଡ଼ରେ ସେ ପାଳିତ, ଯାହାଙ୍କ ସତ୍ତାରେ ତାର ସମସ୍ତ ସତ୍ତା ନିହିତ, ଯାହାଙ୍କ ମହତ୍ତ୍ୱରେ ତାହାର କ୍ଷୁଦ୍ରତ୍ୱ ନିମଜ୍ଜିତ, ସେହି ଦେବତାଙ୍କର ପୂଜା ସକାଶେ କି ଯଜ୍ଞ, କି ସାଧନା, କି ପ୍ରକାର ତପସ୍ୟାର ପ୍ରୟୋଜନ? ମାନବ କି ପନ୍ଥାରେ ତାଙ୍କର ପୂଜା କରିବ? ଯେ ଏକାଧାରରେ ତାହାର ପିତା, ମାତା, ଗୁରୁ, ସୁହୃଦ, ଯେ ଏକାଧାରରେ ତାହାର ପ୍ରାଣର ସମସ୍ତ ଆକଂକ୍ଷାର ପରମ ପରିତୃପ୍ତି, ଯେ ଏକାଧାରରେ ତାହାର ସମସ୍ତ ଦୁଃଖର ଚରମ ଶାନ୍ତି, ସେହି ମହନୀୟ ଚିରପ୍ରେମମୟଙ୍କର ପୂଜା ମାନବ କ'ଣ ଦେଇପାରିବ? ବାହାରର ବସ୍ତୁ ଏପରି କଣ ଅଛି? କେଉଁ ଦେବତା, କେଉଁ ପ୍ରତିମା, କେଉଁ ଅବତାରର ପୂଜା ତାହାର ଚିର ଆକଂକ୍ଷିତ ସ୍ଥାନ ଅଧିକାର କରିପାରେ?

କେତେଦିନ ସେ କୁଟିଳ ତର୍କରେ ଭୁଲିବ? କେତେଦିନ ସେ ଶୁଷ୍କ ତତ୍ତ୍ୱର ଆଶ୍ରୟ ନେବ? ନିରାଶ, ଅବସନ୍ନ ପ୍ରାଣରେ ଆଜି ମାନବ ଡାକୁଅଛି, ''ହେ ଦେବତା! ତୁମ୍ଭର ପୂଜା ତ ମୋହର ସ୍ୱଭାବସିଦ୍ଧ ଧର୍ମ, ତୁମ୍ଭର ପୂଜା ତ ମୋହର ପରମ ଆନନ୍ଦର କର୍ମ, ତାହାପାଇଁ କ୍ଷୁଦ୍ର ପ୍ରତିମାର ପ୍ରୟୋଜନ ନାହିଁ, ତାହାପାଇଁ ଜଟିଳ, କୁଟିଳ ତତ୍ତ୍ୱର ପ୍ରୟୋଜନ ନାହିଁ। ପ୍ରୟୋଜନ ଅଛି କେବଳ ଗୋଟିଏ କର୍ମ। ତାହା ପ୍ରେମ। ସେହି ପ୍ରେମ ହୃଦୟ, ମନକୁ ଅଧିକାର କରୁ। ବହୁ ଶତାବ୍ଦୀ ପୂର୍ବରେ ସାଧୁ ଯୋହନ କହିଥିଲେ, ''ଈଶ୍ୱର ପ୍ରେମ ସ୍ୱରୂପ''। ପ୍ରେମଦ୍ୱାରା ଈଶ୍ୱରଙ୍କର ପୂଜା, ପ୍ରେମରେ ଆତ୍ମବଳିଦାନ, ପ୍ରେମରେ ଅସାଧ ସାଧନ ହୁଏ। ପ୍ରେମ ବିରୋଧଭାବ ଅପସାରଣ କରେ; ଭାଇ ଭାଇ ମଧ୍ୟରେ ଶାନ୍ତି ସ୍ଥାପନ କରେ; ଜାତି

ଜାତି ମଧ୍ୟରେ ଐକ୍ୟ ଆନୟନ କରେ, ଧର୍ମ ଧର୍ମ ମଧ୍ୟରେ ସଂଘର୍ଷ ଆନୟନ କରେ, ଧର୍ମ ଧର୍ମ ମଧ୍ୟରେ ସଂଘର୍ଷ ନିବାରଣ କରେ। ପ୍ରେମ ସମସ୍ତ ମଳିନତା, ସମସ୍ତ ଦୈନ୍ୟ ନିଜର ଅତୁଳ ବିଭବରେ ଆଚ୍ଛାଦନ କରେ। ତାହାର ମହନୀୟ ଜ୍ୟୋତିରେ ହୃଦୟର ସମସ୍ତ ଅନ୍ଧକାର ଦୂରୀଭୂତ ହୁଏ।

ସାଧୁ ପାଉଲ କହିଥିଲେ - ପ୍ରେମର ସହିଷ୍ଣୁତା ଦୀର୍ଘକାଳ ବ୍ୟାପୀ, ପ୍ରେମ ମଙ୍ଗଳ ଦାୟକ, ପ୍ରେମରେ ଈର୍ଷା, ଦର୍ପ, ଦାମ୍ଭିକତା, ଅବିହିତ ବ୍ୟବହାର, ସ୍ୱାର୍ଥ ବା କୁଚିନ୍ତା ନାହିଁ। ପ୍ରେମ ପାପରେ ଆମୋଦ ନ କରି, ସତ୍ୟରେ ଆନନ୍ଦ କରେ। ସେ ସମସ୍ତ ଆଚ୍ଛାଦନ କରେ, ସମସ୍ତ ପ୍ରତ୍ୟୟ କରେ, ସବୁ ବିଷୟକୁ ଭରସା କରେ, ସବୁ ସମ୍ଭାଳି ରଖେ। ସମସ୍ତ ଭବିଷ୍ୟତ ବାକ୍ୟ, ସମଗ୍ର ଭାଷା, ସର୍ବ ବିଦ୍ୟା ଲୁପ୍ତହେବ, ମାତ୍ର ପ୍ରେମର ଲୋପ କଦାପି ହେବ ନାହିଁ।'' ବାଇବେଲ ଯାହା କହେ, ବେଦ ଯାହା କହେ; କୋରାଣ, ପୁରାଣ ତାହା କହନ୍ତି। ଆଜି ବ୍ରାହ୍ମ ସମାଜ ମଧ୍ୟ ତାହାହିଁ କହନ୍ତି।

ଈଶ୍ୱର ତ ସମସ୍ତଙ୍କର ପିତା। ଇଂଲଣ୍ଡରେ ତାଙ୍କର ସୂର୍ଯ୍ୟ ଉଦିତ ହୁଏ, ଭାରତରେ ତାଙ୍କରି ରବି କିରଣ ଦାନକରେ। ସମସ୍ତ ବିଶ୍ୱର ପ୍ରଭୁ ସେ। ବିରୋଧ ଭାବ, ସହସ୍ର କ୍ଷୁଦ୍ର ମତବାଦ ଆଧୁନିକ ଧର୍ମ ନୁହେଁ। ବିଶ୍ୱ ଧର୍ମ-ସାର୍ବଜନୀନ ଧର୍ମ, ସମଗ୍ର ମାନବର ପରିତୃପ୍ତିର ଧର୍ମ। ତାହା ଦେଶ-କାଳ-ପାତ୍ର ଭେଦର ଅପେକ୍ଷା କରେ ନାହିଁ। ଧୂଳିରେ ଅବନତ, ଶତ ପାପରେ କଳଙ୍କିତ, ଶତ ସ୍ୱାର୍ଥରେ ଜଡ଼ିତ ମାନବଠାରୁ ମହୋଚ୍ଚ, ମହୋଦାର ଶ୍ରେଷ୍ଠ ମହାତ୍ମା ପର୍ଯ୍ୟନ୍ତ ସମସ୍ତଙ୍କର ପରମାଶ୍ରୟ ସ୍ୱରୂପ ଏକମାତ୍ର ''ଏକମେବାଦ୍ୱିତୀୟମ୍''। ପରମେଶ୍ୱରଙ୍କଠାରେ ସେହି ଧର୍ମର ମୂଳଭିତ୍ତି। ସମଗ୍ର ମାନବସମାଜର ପରମ ମିଳନରେ ତାହାର ପରିଣତି। ସମଗ୍ର ଧର୍ମର ଚରମ ସମନ୍ୱୟରେ ତାହା ସ୍ଥିତି, ସମଗ୍ର ବିଶ୍ୱର ଅକୁଣ୍ଠିତ ସେବାରେ ତାହାର ପୂର୍ଣ୍ଣ ଆନନ୍ଦ।

ଏହାହିଁ ଆଧୁନିକ ଯୁଗଧର୍ମର ଲକ୍ଷ୍ୟ। ଏହି ଲକ୍ଷ୍ୟ ହୃଦୟରେ ପୋଷଣକରି ଆଜି ଆମ୍ଭେମାନେ ଆଉ ବିଭିନ୍ନ ଧର୍ମାବଲମ୍ବୀ ନୋହୁଁ। ଆମ୍ଭେମାନେ ବିଶ୍ୱପିତାଙ୍କ ସନ୍ତାନ। ଦୂର ଦୂରନ୍ତର ସେହି ଭାରତର ତପୋବନରେ ସେହି ଋଷି ଆଶ୍ରମରେ ଧ୍ୱନିତ ହୋଇଥିଲା - ''ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ।'' ଏହି ବିଶ୍ୱ ମାନବ ଅମୃତର ସନ୍ତାନ। ଆଉ ଆମ୍ଭେମାନେ ବିଭିନ୍ନ ନୋହୁ। ଆମ୍ଭେମାନେ ଅମୃତର ସନ୍ତାନ, ଅମୃତର ଅଧିକାରୀ। ହେ ମୃତ୍ୟୁ, ତୁମ୍ଭର ଜୟ କେଉଁଠାରେ? ଆମ୍ଭମାନଙ୍କ ମଧ୍ୟରେ ଭେଦଭାବ, ସହସ୍ର ମତବାଦ, ଧର୍ମ ଧର୍ମର ସଂଘର୍ଷ ବାସକରିବା ଅନୁଚିତ। ଆମ୍ଭେମାନେ ତ ଅମୃତର ସନ୍ତାନ, ବିଶାଳ ବିଶ୍ୱ ପରିବାରରେ ଆମ୍ଭମାନଙ୍କର ସ୍ଥାନ। ଆମ୍ଭମାନଙ୍କର ଏକମାତ୍ର ପିତା - 'ପରମେଶ୍ୱର', ଆମ୍ଭମାନଙ୍କର ଏକମାତ୍ର ଶାସ୍ତ୍ର - 'ସତ୍ୟ', ଆଉ ଆମ୍ଭମାନଙ୍କର ଏକମାତ୍ର କର୍ତ୍ତବ୍ୟ - 'ପିତାଙ୍କର ପ୍ରୀତି ସାଧନ, ଭ୍ରାତା ଭଗିନୀଙ୍କର ମଂଗଳ ସାଧନ ଓ ବିଶ୍ୱ ସେବା'।

ଆସ ଭାଇ, ଆସ ଭଗିନି ! ସମସ୍ତ ଭେଦଭାବ ଭୁଲିଯାଅ, ସମସ୍ତ ବିଦ୍ୱେଷ ଭୁଲିଯାଅ; ଆସ, ସେହି ବିଶ୍ୱପିତାଙ୍କ ଚରଣରେ ବାରମ୍ବାର ପ୍ରଣିପାତ କରି ପୃଥିବୀର ଧୂଳିରୁ ଉର୍ଦ୍ଧ୍ୱକୁ ଉଠିବା, ମାନବତ୍ୱରୁ ଉର୍ଦ୍ଧ୍ୱକୁ ଉଠିବା, ଦେବତ୍ୱର ବିକାଶ କରିବା, ଜୀବନର ଭିତରରେ ଓ ବାହାରେ, ସବୁଆଡ଼େ ସେହି ''ଏକମେବା-ଦ୍ୱିତୀୟମ୍''ଙ୍କୁ ସ୍ଥାପନକରି ପରସ୍ପରର ଦୁର୍ବଳତା, ପରସ୍ପରର ସଂକୀର୍ଣ୍ଣତା ଉଦାର ପ୍ରେମଦ୍ୱାରା କ୍ଷମାକରି ସେହି ଅମୃତର ଅଧିକାରୀ ଆମ୍ଭେମାନେ ଯେ ପରସ୍ପରର ଭ୍ରାତା ଓ ଭଗୀନୀ, ଏହାହିଁ କାର୍ଯ୍ୟରେ ପରିଣତକରିବା। ଈଶ୍ୱର ଆମ୍ଭମାନଙ୍କର ସହାୟ ହେଉନ୍ତୁ।



# ଅଭିଭାଷଣ : ଏକ

ଶ୍ରଦ୍ଧେୟ ବନ୍ଧୁବର୍ଗ,

ଆଜି ଆପଣମାନେ ସୁଦୂର ଦିଲ୍ଲୀରୁ ମୋତେ ସାଦର ଆହ୍ୱାନ କରିଆଣି ଯେଉଁ ଶ୍ରଦ୍ଧାର ଆସନ ଦାନ କରିଚନ୍ତି, ତାହା ଗ୍ରହଣ କରିବାପାଇଁ ନିଜକୁ ଅଯୋଗ୍ୟ ଏବଂ କର୍ତ୍ତବ୍ୟ ପାଳନ ଅପଟୁ ଜାଣି ସୁଦ୍ଧା, ଆପଣମାନଙ୍କର ଆନ୍ତରିକ ସଦ୍‌ଭାବର ଉପେକ୍ଷା କରିବାକୁ ନିତାନ୍ତ ଅକ୍ଷମ ହୋଇ ଯେ ଆପଣମାନଙ୍କ ମଧ୍ୟରେ ଉପସ୍ଥିତ ହୋଇପାରିଚି, ସେଥିପାଇଁ ନିଜକୁ ଧନ୍ୟ ମନେ କରୁଚି। ଜାଣେ ନାଁ, ମୁଁ କେତେଦୂର ନିଜର କରର୍ତ୍ତବ୍ୟ ପାଳନ କରିବାକୁ ସମର୍ଥ ହେବି; ଜାଣେ ନାଁ, ମୋ'ଭଳି ଜଣେ କ୍ଷୁଦ୍ର ବ୍ୟକ୍ତିଦ୍ୱାରା ପ୍ରବାସୀ ଉତ୍କଳୀୟ ସମାଜର କି ସେବା ହୋଇପାରିବ; ତଥାପି, ଯେଉଁ ଆସନ ଦିନେ ଉତ୍କଳପ୍ରାଣ, ଉତ୍କଳ-ମଣି ଗୋପବନ୍ଧୁ ଦାସ ଗ୍ରହଣ କରିଥିଲେ, ସେ ଆସନ ଅତି କୁଣ୍ଠିତ ଭାବେ ସଶ୍ରଦ୍ଧ ଗ୍ରହଣ କରିବାକୁ ଅଗ୍ରସର ହେଉଅଛି। ଆଜି ଗୋପବନ୍ଧୁଙ୍କର ସ୍ୱର୍ଗୀୟ ଆତ୍ମା ଅମରଧାମରୁ ତାଙ୍କ ପ୍ରିୟ ଉତ୍କଳୀୟଙ୍କୁ ଶୁଭ ପ୍ରେରଣା ଦାନ କରନ୍ତୁ, ଏହା ହିଁ ମୋର ପ୍ରାର୍ଥନା!

ଭାଇମାନେ! ଆମ୍ଭେମାନେ ଉତ୍କଳମଣିଙ୍କୁ ଭୁଲିବା ସମ୍ଭବ କି? ଆମରି କତିରୁ[୧] ଫେରି ଭୀଷଣ ଆନ୍ତ୍ରିକ ଜ୍ୱରରେ ତାଙ୍କର ନଶ୍ୱର ଦେହାବସାନ ଘଟିଥିଲା। ବୋଧହୁଏ ମୃତ୍ୟୁର ପରମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଆମ୍ଭମାନଙ୍କର କଥା ଚିନ୍ତାକରିଥିବେ। ସ୍ୱଜାତି ପ୍ରେମର ସେ ଉଜ୍ଜ୍ୱଳ ବିଗ୍ରହକୁ ଭଲା କୌଣସି ଉତ୍କଳ ସନ୍ତାନ, ସେ ପଛେ ପୃଥିବୀର ଯେ କୌଣସି ସ୍ଥାନରେ ଥାଉ - ଭୁଲି ପାରିବ କି? ତାଙ୍କର ରକ୍ତର ପ୍ରତ୍ୟେକ ବିନ୍ଦୁ ଦେଶମାତୃକାର ପାଦ ସିକ୍ତକରି ବହିଯାଇଚି। ସେ ରକ୍ତର ଋଣୀ ଆମ୍ଭେମାନେ, ସେ ରକ୍ତର ପ୍ରତ୍ୟେକ ଟୋପାର ମୂଲ୍ୟ ଆମକୁ ଦେବାକୁ ହେବ। ଆମେ ନିଶ୍ଚେଷ୍ଟ, ଅଳସ। ଆମେ ଦେଶ ବିଦେଶରେ ଲାଞ୍ଛିତ ହେଉଥିଲାଯାକେ, ଆମ ମଧ୍ୟରେ ସଂଘଶକ୍ତି ଜାଗ୍ରତ ନ ହେଲା ଯାକେ, ଗୋପବନ୍ଧୁଙ୍କ ବଳିଦାନର[୨] ଯୋଗ୍ୟ ଆମେ ହେବୁ ନାହିଁ। ଭାଇମାନେ, ଥରେ ତାଙ୍କୁ ମନେ ପକାଅ! ଥରେ ସ୍ମରଣ କର, ସେ ଆମରି ପାଇଁ ଜୀବନ ଦାନ କରିଛନ୍ତି।

ଆଜି ସ୍ୱର୍ଗତଃ ମଧୁସୂଦନ ଆମର ମନେପଡୁଛନ୍ତି। କଲିକତାରୁ ତାଙ୍କର କର୍ମୀ ଜୀବନର ପ୍ରାରମ୍ଭ। କଲିକତାରେ ପ୍ରଥମ ପ୍ରତିଷ୍ଠା ପାଇଥିବା ଓଡ଼ିଆ ସେ; ତାଙ୍କର ଜୀବନର ପ୍ରତ୍ୟେକ ମୁହୂର୍ତ୍ତ, ଧନ, ପ୍ରାଣ, ଶକ୍ତି-ସବୁ ଶେଷ ପର୍ଯ୍ୟନ୍ତ ଉତ୍କଳକୁ ଦାନ କରିଯାଇଛନ୍ତି। ଓଡ଼ିଆ ଶିଳ୍ପୀର ଶିଳ୍ପକଳାକୁ ଜଗତ୍ ସମକ୍ଷକୁ ଆଣିବାକୁ ପ୍ରାଣାନ୍ତ ପରିଶ୍ରମ କରିଛନ୍ତି; ଏ ଶୁଭ ଅବସରରେ ତାଙ୍କର ସ୍ୱର୍ଗୀୟ ଆତ୍ମାକୁ ଅଶ୍ରୁର ଶ୍ରଦ୍ଧାଞ୍ଜଳି ଦାନ କରିବା ଆମ ପ୍ରତ୍ୟେକଙ୍କର କର୍ତ୍ତବ୍ୟ।

ଉତ୍କଳର ଏ ମଧ୍ୟରେ ଅନେକ କ୍ଷତି ଘଟିଚି - ନାନା କ୍ଷେତ୍ରରେ କାର୍ଯ୍ୟ କରୁଥିବା ବିଶିଷ୍ଟ ଉତ୍କଳୀୟମାନେ ଜାତିକୁ କନ୍ଦାଇ ଅମରଧାମକୁ ଚାଲି ଯାଇଛନ୍ତି। ଯେଉଁମାନେ ଜାତ

ହୃଦୟରେ ଶିକ୍ଷା, ସାଧନା, ସାହିତ୍ୟ, ଜାତୀୟତାର ପ୍ରେରଣକର୍ତ୍ତା, ସେହିମାନଙ୍କ ମଧ୍ୟରୁ ଅନେକ ବିଶିଷ୍ଟ ବ୍ୟକ୍ତି ଆଜି ଆଉ ନାହାନ୍ତି। ଏ ମୁହୂର୍ତ୍ତରେ ଏ ସମ୍ମିଳନୀର ପବିତ୍ର ମଣ୍ଡପରେ କ୍ଷଣକ ସକାଶେ ଉତ୍କଳର ସେହି ସ୍ୱର୍ଗୀୟ ଆତ୍ମା ଶ୍ରୀ ବିଶ୍ୱନାଥ କର, ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ, ଶ୍ରୀ ଆର୍ତ୍ତତ୍ରାଣ ଶତପଥୀ ଆଦିଙ୍କୁ ସ୍ମରଣ କରି ଜାତି ସହିତ ଆମର ହୃତ୍‌ସ୍ପନ୍ଦନର ଏକତା ଅନୁଭବ କରିବାକୁ ମୁଁ ସମସ୍ତଙ୍କୁ ଆହ୍ୱାନ କରୁଚି। ଆମେ ଯେତେ ଦୂରେ ଥାଉଁ, ଆମେ ଓଡ଼ିଆ-ଓଡ଼ିଶା ସହିତ ଆମର ପ୍ରାଣ ସମ୍ବନ୍ଧ, ଓଡ଼ିଶାର ଉତ୍‌ଥାନରେ ଆମର ଗୌରବ, ପତନରେ ଆମର ଘୋର ଲଜ୍ଜା ଓ ଗ୍ଲାନି !

ଉତ୍କଳ ସହିତ ଏକତା ଅନୁଭବ କରି, ଆଜି ଆମ ମଧ୍ୟରେ କାର୍ଯ୍ୟ କରିଥିବା ଉତ୍କଳୀୟ ନେତାଙ୍କୁ ଆମେ, ତାଙ୍କର ସେବା ଓ ଆମପାଇଁ ନିଜର ଅମୂଲ୍ୟ ସମୟ ଓ ସ୍ୱାର୍ଥ ଦାନ ଲାଗି, ସମସ୍ତଙ୍କୁ ଧନ୍ୟବାଦ ଦେଉଅଛୁ। କାରଣ, ସେହିମାନେ କଲିକତାରେ ଓ ଅନ୍ୟାନ୍ୟ ଜାଗାରେ ଓଡ଼ିଆ ମୁଭ୍‌ମେଣ୍ଟ (Oriya Movement)ର ପ୍ରାଣ। ଅକ୍ଳାନ୍ତ କର୍ମୀ ଶ୍ରୀ ହରେକୃଷ୍ଣ ମହତାବ, ପଣ୍ଡିତ ନୀଳକଣ୍ଠ ଦାସ, ଶ୍ରୀ ଗୋଦାବରୀଶ ମିଶ୍ର, ଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁ, ଶ୍ରୀ ଶଶିଭୂଷଣ ରଥ ଆଦି ପୁରାତନ ଓ ଆଧୁନିକ ସମସ୍ତ କର୍ମୀଙ୍କୁ ଆମେ ଆମର ସ୍ନେହ ଶ୍ରଦ୍ଧାର ପୁଷ୍ପାଞ୍ଜଳି ପ୍ରଦାନ କରୁଚୁ। କଲିକତା, କାଳିମାଟି, ବର୍ମା, ଦିଲ୍ଲୀ, ପଞ୍ଜାବ ଆଦି ବିଭିନ୍ନ ସ୍ଥାନକୁ ବାରମ୍ବାର ଯାଇ ସେମାନେ ନାନା ଭାବରେ ନିଜର ସତ୍ ପରାମର୍ଶ, ସୁଚିନ୍ତା, ଉପଦେଶ ଓ କାର୍ଯ୍ୟଦ୍ୱାରା ଆମ ପ୍ରବାସୀ ଉତ୍କଳୀୟ ଭାଇଭଉଣୀଙ୍କୁ ଉତ୍କଳର ମମତାସୂତ୍ରରେ ବାନ୍ଧିଛନ୍ତି, ଆମ ମଧ୍ୟରେ ଦେଶପ୍ରେମର ପ୍ରେରଣା ଦାନ କରିଛନ୍ତି। ଆମେ ତାଙ୍କଠାରେ କୃତଜ୍ଞ।

ପ୍ରବାସୀ ଉତ୍କଳୀୟଙ୍କର ମୁଖ ଉଜ୍ଜ୍ୱଳକାରୀ ମହାମନା ଦାନବୀର ଶ୍ରୀ ଭାସ୍କର ଚନ୍ଦ୍ର ମହାପାତ୍ରଙ୍କୁ ଦେଶ ଓ ଜାତି ଲାଗି ତାଙ୍କର ବହୁବିଧ ଦାନର ଓ ବିଶେଷତଃ ଆତ୍ମବଳରେ ତାଙ୍କର କଲିକତା ଭଳି ମହାନଗରୀରେ ଉତ୍କଳୀୟ ରୂପେ ପ୍ରତିଷ୍ଠାର ପ୍ରଶଂସା ନ କରି ମୁଁ ରହି ପାରୁନାହିଁ। କଲିକତା-ପ୍ରବାସୀ ଉତ୍କଳୀୟ ସଂପ୍ରଦାୟର ସେ ପ୍ରକୃତ ମଥାମଣି। ସେ ମନେ ପ୍ରାଣେ ଓଡ଼ିଆ। ଉଚ୍ଚାସନକୁ ଆସି ସେ ଉତ୍କଳକୁ ଭୁଲି ନାହାନ୍ତି। ଏକା କଲିକତାବାସୀ ଓଡ଼ିଆଙ୍କର ନୁହେଁ, ନିଖିଳ ଉତ୍କଳବାସୀଙ୍କର ତାଙ୍କଠାରେ କୃତଜ୍ଞ ହେବାର ଅନେକ କାରଣ ରହିଚି। ଦେଶର ଅନେକ ସଦନୁଷ୍ଠାନ, ବହୁ ଦରିଦ୍ର ଛାତ୍ର ଓ ଶିଳ୍ପୀ ବା ଅନ୍ୟାନ୍ୟ କର୍ମୀ ତାଙ୍କର ବିପୁଳ ଦାନ ଫଳରେ କାର୍ଯ୍ୟକାରୀ ହୋଇପାରିଛନ୍ତି। ବିଦେଶରେ ଓଡ଼ିଆ ଗୌରବ ଶ୍ରୀ ମହାପାତ୍ରଙ୍କୁ ମୁଁ ବିଶେଷ ଭାବେ ଏ ସମ୍ମିଳନୀ ମଣ୍ଡପରୁ ଧନ୍ୟବାଦ ଦେଇ ତାଙ୍କୁ ଆହୁରି ଅଧିକ ଭାବେ ସ୍ୱଜାତି ଓ ସ୍ୱଦେଶର ଗୌରବ ଲାଗି ସତ୍‌କାର୍ଯ୍ୟରେ ନିଜେ ଅଗ୍ରସର ହେବା ଏବଂ ଅନ୍ୟଙ୍କୁ ତାଙ୍କର ସତ୍‌ଦାନଦ୍ୱାରା ଉତ୍ସାହ ଓ ସାମର୍ଥ୍ୟ ଦେବାପାଇଁ ସାଗ୍ରହ ଅନୁରୋଧ କରୁଅଛି।

ଏପରି ଯେଉଁମାନେ ବର୍ମାରେ ପ୍ରାବସୀ ଓଡ଼ିଆ, ସେମାନଙ୍କୁ ମଧ୍ୟ ଆମ ସହିତ ଏକୀଭୂତ ହୋଇ କାର୍ଯ୍ୟ କରିବାକୁ ଆମେ ସାଦର ନିମନ୍ତ୍ରଣ କରୁଅଛୁ। ଓଡ଼ିଆଙ୍କ ପ୍ରବାସ

ସ୍ଥାନ ରୂପେ ବହୁ ପ୍ରାଚୀନ ଯୁଗରୁ ବର୍ମାର ପ୍ରସିଦ୍ଧି। ଉତ୍କଳୀୟ ସଭ୍ୟତା ବର୍ମାର ଅଂଗେ ଅଂଗେ ବିରାଜିତ। ପ୍ରାଚୀନ କଳିଙ୍ଗର ପ୍ରଧାନ ଉପନିବେଶ ବ୍ରହ୍ମଦେଶ, ରଂଗପୁରୀ, ମଣ୍ଡଳନଗରୀ ଆଦିରେ ବହୁ ପୁରାତନ ଓଡ଼ିଆ ସଭ୍ୟତା ଓ କୀର୍ତ୍ତି, ଏପରି କି ପୁରାତନ କଳିଙ୍ଗ ଜାତି ବିଦ୍ୟମାନ। ସେଠି କେବଳ ଓଡ଼ିଆ ଶ୍ରମିକ ରୂପେ ନୁହେଁ-ଧନିକ, ନାଗରିକ, ସାର୍ବଜନିକ କାର୍ଯ୍ୟକାରୀ ଦେଶର ଅସ୍ଥିମଜ୍ଜା ପ୍ରାଣରେ ମିଶି ରହିଥିବା ଅନେକ ଓଡ଼ିଆ ଅଛନ୍ତି। ସେଠାରେ ଯେପରି ଓଡ଼ିଆ ଗୌରବ କ୍ଷୁଣ୍ଣ ନ ହୁଏ, ଏଥିପାଇଁ ଆମର ସର୍ବଦା ଚେଷ୍ଟିତ ରହିବା ପ୍ରୟୋଜନ। ସୁଖର ବିଷୟ, ବର୍ମାରୁ ଓଡ଼ିଆରେ ଖବର କାଗଜ ବାହାରୁଚି, ରାଙ୍ଗୁନରେ ଓ ବାସିନ୍‌ରେ ବିଶିଷ୍ଟ ଓଡ଼ିଆ ବ୍ୟବସାୟୀମାନେ ରହିଛନ୍ତି; ଏପରି କି, ଓଡ଼ିଆ ନାରୀ ଓକିଲ, ବର୍ମା କୋର୍ଟରେ ଓକିଲାତି ପ୍ରାକ୍‌ଟିସ୍ କରୁଛନ୍ତି। ବର୍ମାରେ ଉତ୍କଳୀୟ ହିନ୍ଦୁ, ଶ୍ରୀ ଜଗନ୍ନାଥଙ୍କର ମନ୍ଦିର ମଧ୍ୟ ପ୍ରତିଷ୍ଠା କରିପାରିଅଛି। ଏ ସବୁ ଜାତୀୟ ଉନ୍ନତିର ଚିହ୍ନ, ସନ୍ଦେହ ନାହିଁ।

ସିଂହଭୂମି ନିଖିଳ ଉତ୍କଳର ଏକ ବିଶିଷ୍ଟ ଅଂଶ। ରାଜନୈତିକ କାରଣରୁ ଉତ୍କଳରୁ ଅନେକ ବର୍ଷ ପୃଥକ୍ ହୋଇଥିଲେ ସୁଦ୍ଧା, ସିଂହଭୂମିର ବିରାଟ ଓଡ଼ିଆ ଜାଗରଣ କଥା କିଏ ନ ଜାଣେ ? ଜାମସେଦ୍‌ପୁରର ଗତ ଉତ୍କଳ ସମ୍ମିଳନୀର ବିପୁଳ ସଫଳତା ଏହାର ପ୍ରମାଣ। ଜାମସେଦ୍‌ପୁରର ଲୁହା କାରଖାନାରେ ବହୁତ ଓଡ଼ିଆ କାର୍ଯ୍ୟକରି ନିଜର ପରିଶ୍ରମ ଦ୍ୱାରା କଂପାନୀର ଶ୍ରୀବୃଦ୍ଧି କରୁଛନ୍ତି। ସେମାନେ ସେଠାରେ ପାଠାଗାର, କ୍ଲବ୍, ଖବର କାଗଜ ଆଦି ସ୍ଥାପନ କରି ଓଡ଼ିଆର ଜାତୀୟ ଜାଗରଣରେ ସାହାଯ୍ୟ କରୁଛନ୍ତି। ମୁଁ ସେମାନଙ୍କୁ ଆହୁରି ଉତ୍ସାହରେ ସଂଘବଦ୍ଧ ଭାବେ କାର୍ଯ୍ୟ କରିବାକୁ ଆହ୍ୱାନ କରୁଚି। ଜାମସେଦପୁର କଲିକତାର ଅତି ନିକଟରେ; ଅତଏବ ଜାମସେଦପୁର ଓ ଖଡ଼୍‌ଗପୁରର ଓଡ଼ିଆମାନେ କଲିକତାପ୍ରବାସୀ ଉତ୍କଳୀୟଙ୍କ ସହିତ ବହୁତ ସମ୍ବନ୍ଧ ରଖିପାରନ୍ତି, ରଖିବା ମଧ୍ୟ ଉଚିତ୍। ଏ ଦିଗରେ ସମ୍ମିଳନୀରେ ଚେଷ୍ଟିତହେବା ଆବଶ୍ୟକ।

ପଞ୍ଜାବ, ରାଜପୁତନା ଓ ଦିଲ୍ଲୀ ଆଡ଼େ ଯଦ୍ୟପି ଓଡ଼ିଆଙ୍କର ସଂଖ୍ୟା ଅଳ୍ପ; ତଥାପି କାର୍ଯ୍ୟବଶତଃ କେତେକ ବିଶିଷ୍ଟ ଓଡ଼ିଆ ସେହି ସବୁ ସ୍ଥାନମାନଙ୍କରେ ରହିଛନ୍ତି। ଦିଲ୍ଲୀ ଓ ଆହ୍ଲାବାଦରେ ଓଡ଼ିଆ ଛାତ୍ରମାନେ ବିଶ୍ୱବିଦ୍ୟାଳୟମାନଙ୍କରେ କୃତିତ୍ୱ ଦେଖାଇଛନ୍ତି। ଏପରି କି, ପଞ୍ଜାବର ଜଳନ୍ଧର କନ୍ୟାମହାବିଦ୍ୟାଳୟରେ ଏବେ କେତେକ ଓଡ଼ିଆ ବାଳିକା ଛାତ୍ରୀ ଓ ଶିକ୍ଷୟିତ୍ରୀ ରୂପେ ଗୃହୀତ ହୋଇଛନ୍ତି। ଯେଉଁ ଓଡ଼ିଆ ଶ୍ରମିକମାନେ ଏହିସବୁ ପ୍ରଦେଶରେ କାର୍ଯ୍ୟ କରୁଛନ୍ତି, ସେମାନଙ୍କର ନିଜ ହିସାବରେ ଗୋଟିଏ ସୁନାମ ଅଛି। ଦିଲ୍ଲୀର ହାତିଦାନ୍ତ କାମ ଅଧିକାଂଶ ଓଡ଼ିଆଙ୍କ ହାତର କୃତୀ। ଏଥିପାଇଁ କେତେଗୁଡ଼ିଏ ଓଡ଼ିଆ ଶିଳ୍ପୀ ପୁରୁଷାନୁକ୍ରମେ ଏ ସବୁ ଜାଗାରେ ରହିଛନ୍ତି ଏବଂ ନୂଆ ନୂଆ ଲୋକେ ଓଡ଼ିଶାରୁ ଆସୁଛନ୍ତି। ଶିଳ୍ପୀ ଓ ଶ୍ରମିକ ରୂପେ ଓଡ଼ିଆ ନିଜକୁ ହୀନ ନ ଭାବନ୍ତୁ। ତାଙ୍କ କାର୍ଯ୍ୟର ମହତ୍ତ୍ୱ, ସାମାନ୍ୟ ମୂଲ୍ୟ ଆଠଅଣା ଦଶଅଣା ମଜୁରୀ ମାତ୍ରପାଇଁ ବିକି ନ ଦିଅନ୍ତୁ। ସେମାନେ ତାକୁ ନିଜର ବୋଲି ଚିହ୍ନିତ କରିବାକୁ

ସର୍ବଦା ସଚେଷ୍ଟ ହୁଅନ୍ତୁ। ସାମାନ୍ୟ ପଶୁ ମଧ ଅନ୍ନରେ ଜୀବନ ଧାରଣକରେ; କେବଳ କେତୋଟି ଟଙ୍କା ମାସିକ ରୋଜଗାର କରି କିଛି ଦେଶକୁ ପଠାଇ, କିଛି ନିଜର ଜୀବନ ଧାରଣ ଓ ବିଳାସବ୍ୟସନରେ ଖର୍ଚ୍ଚକରି ନିତାନ୍ତ ନିକୃଷ୍ଟ ଅପଦାର୍ଥ ଭଳି ଜୀବନ କାଟିବା ଜୀବନର ଏକମାତ୍ର ଉଦ୍ଦେଶ୍ୟ ନୋହୁ। କଲିକତାରେ ଓଡ଼ିଆ ସଂଖ୍ୟା ଦୁଇଲକ୍ଷ। ଦୁଇଲକ୍ଷ ଲୋକର ସାମୁହିକ ରାଜଧାନୀ କଟକ ସହରର ମୋଟ ଜନସଂଖ୍ୟା ମାତ୍ର ଷାଠିଏ ହଜାର।

କଲିକତାର ଓଡ଼ିଆମାନେ ଶିକ୍ଷା ଓ ସାଧନା ବଳରେ ଉଦ୍‌ଯୋଗକଲେ କଲିକତା କର୍ପୋରେସନ୍‌ରେ ମେମ୍ବର, ଏପରିକି ମୁଖିଆ ମଧ ହୋଇପାରିବେ। କଲିକତାର ସାର୍ବଜନିନ ଜୀବନରେ ଏମାନେ ସମ୍ମିଳିତ ଚେଷ୍ଟାକଲେ ବହୁତ ଭାଗ ନେଇପାରନ୍ତି। ଏମାନେ କଣ କେବଳ ଶ୍ରମିକ ? ଅନେକ ଓଡ଼ିଆ କୃତୀ ଛାତ୍ର ତ କଲିକତାରେ ଅଛନ୍ତି; ଅନେକ ଡାକ୍ତର, ବୈଦ୍ୟ, ଓକିଲ, ବ୍ୟବସାୟୀମାନେ ଅଛନ୍ତି; ସେମାନେ ନିଜର ସୀମିତ ସ୍ୱାର୍ଥକୁ ନ ଅନାଇ ଜାତିର ବିଶାଳ ସ୍ୱାର୍ଥକୁ ନିଜର କରିନେବା ଉଚିତ୍। କଲିକତାରେ ଓଡ଼ିଆ ପ୍ରେସ ଅଛି; ପତ୍ରିକା ଅଛି; ପାଠାଗାର ଅଛି, କ୍ଲବ୍ ଅଛି; କିନ୍ତୁ ସେଗୁଡ଼ିକର ଅବସ୍ଥା କିପରି ? ଏପରି ନିର୍ଜୀବ ନିର୍ବଳ ସଂସ୍ଥାଗୁଡ଼ିକଦ୍ୱାରା ବା ଜାତିର କି ଉପକାର ହୋଇପାରେ ? କଲିକତାରୁ ପ୍ରଥମ ପ୍ରକାଶିତ ବଙ୍ଗାଳୀ ପତ୍ରିକା ପ୍ରବାସୀ ଭଳି, କି ମଡ଼ର୍ଣ୍ଣ ରିଭିୟୁ ଭଳି ଶକ୍ତିଶାଳୀ ହେବା ପ୍ରୟୋଜନ। ଆଜିକାଲି ଯୁଗରେ ଦୀପର ଜୁଳୁ ଜୁଳୁ ଆଲୁଅରେ କାମ ହୁଏ ନାହିଁ। ଏ ତ ବିଜୁଳୀବତୀର ଯୁଗ। ଆତ୍ମ– ବିଜ୍ଞାପନା ଛଡ଼ା ଜାତିର ଆତ୍ମୋନ୍ନତି ଅସମ୍ଭବ। ତାର ପ୍ରଧାନ ପନ୍ଥା ହେଉଚି ପତ୍ରିକା। ପ୍ରବାସୀ ଉତ୍କଳୀୟର ଗୋଟିଏ ଜବରଦସ୍ତ ପେପର, ଗୋଟିଏ ବିଶିଷ୍ଟ ଇଂରାଜୀ ଓଡ଼ିଆ ସଂବାଦ ପତ୍ର-ଦୈନିକ ବା ସାପ୍ତାହିକ - ବିଶେଷ ପ୍ରୟୋଜନ। ପ୍ରେସ୍ ଆଉ ପେପର ନ ହେଲେ, ଏ ଯୁଗରେ ଜାତୀୟ ଜାଗୃତି ଅସମ୍ଭବ। ଏ ଦିଗରେ କଲିକତାର ଓଡ଼ିଆ ପ୍ରେସ୍ ଏବଂ ପତ୍ରିକା ମହଲର ଧାନ ଦେବା ଉଚିତ୍। ବର୍ମା ଓ ଜାମସେଦ୍‌ପୁର ଏବଂ ଦିଲ୍ଲୀରେ ମଧ ଏଗୁଡ଼ିକର କ୍ଷୀଣତା ତୀବ୍ରଭାବେ ଆମ୍ଭେମାନେ ଅନୁଭବ କରୁଅଛୁ। ବର୍ମା ଓ ଜାମସେଦପୁର ପ୍ରତିକାଗୁଡ଼ିକ ମଧ ଅତି ଦୁର୍ବଳକାୟ। ଦୁର୍ବଳର କ୍ଷୀଣ ସ୍ୱରକୁ କିଏ ଖାତିର କରିବ ? ପତ୍ରିକାଗୁଡ଼ିକ ଓଜସ୍ୱୀ ଏବଂ ଜାତୀୟତାରେ ପୂର୍ଣ୍ଣହେବା ଉଚିତ୍।

ସେଥିପାଇଁ ମୁଁ କଲିକତା ପ୍ରବାସୀ ଓଡ଼ିଆ ଭାଇମାନଙ୍କର ଏ ସମ୍ମିଳନୀ ଅନୁଷ୍ଠାନକୁ ଶତକଣ୍ଠରେ ପ୍ରଶଂସା ନ କରି ରହି ପାରୁନାହିଁ। ବିଦେଶରେ ଲକ୍ଷ ଲକ୍ଷ ଓଡ଼ିଆମାନଙ୍କର ମିଳନର ଏ ଯେଉଁ ଶୁଭ ଭୂମିକା ସେମାନେ ଆରମ୍ଭ କରିଛନ୍ତି, ଏ ଉଦ୍ୟମ ସ୍ଥାୟୀ ହେଲେ, ତାର ଫଳ ଅତି ଉତ୍ତମ ହେବ, ଆଉ ଦେଶ ବିଦେଶରେ ଓଡ଼ିଆମାନେ ଜାତ୍ୟାଭିମାନରେ ମୁଣ୍ଡ ଟେକି ବାଟ ଚାଲିପାରିବେ। ସେମାନଙ୍କୁ ବିଦେଶରେ ବଙ୍ଗାଳୀ ବା ଦକ୍ଷିଣୀ ସାଜିବାକୁ ହେବନାହିଁ। ଓଡ଼ିଆର ଜାତୀୟତା, ଭାରତୀୟ ଜାତୀୟତା ମଧ୍ୟରେ ଅତୀତର ସେହି କେଶରୀ, ଗଜପତି ଅମଳ ଭଳି ଏକ ବିଶିଷ୍ଟ ସ୍ଥାନ ଅଧିକାର କରିବ। ବଙ୍ଗାଳୀର 'ଉଡ଼େ ଭେଡ଼ା'

ତାଙ୍କର ବା ବର୍ମାର 'ଯେ ଓଡ଼ୟା କୁଲୀ'ର ଲାଞ୍ଛନା ରହିବ ନାହିଁ। ଭାରତ ବୁଝିବ, ଏହି ଅସଂଖ୍ୟ କୁଲୀ ହାତରେ ହିଁ ତାର ଜୀବନ ସମସ୍ୟାର ଏକ ଯଥେଷ୍ଟ ସମ୍ମାନ କରିବ। ତାଙ୍କୁ ଏକଥା ବୁଝିବାକୁ ଦେବା ଆମର ପ୍ରଧାନ କର୍ତ୍ତବ୍ୟ।

ବିଦେଶରେ ଓଡ଼ିଆ ଜାତିର ଦୁରବସ୍ଥାର ଗାଆଣୀ[୧] ଗାଇ ଆପଣମାନଙ୍କର ସମୟ ନଷ୍ଟ କରିବାକୁ ମୁଁ ଚାହେଁ ନାହିଁ - କାରଣ, ମୋ' ଭଳି ଆପଣମାନେ ପ୍ରତ୍ୟେକ ଭୁକ୍ତଭୋଗୀ। ଦକ୍ଷିଣ-ଆଫ୍ରିକାରେ ମହାତ୍ମା ଗାନ୍ଧିଙ୍କର ଅନୁଭବଠାରୁ ବର୍ମା ଓ କଲିକତା-ପ୍ରବାସୀ ଓଡ଼ିଆଙ୍କର ଲାଞ୍ଛନାଯୁକ୍ତ ଅନୁଭବ କିଛି ଊଣା ନୁହେଁ; ବରଞ୍ଚ ଅନେକ ପରିମାଣରେ ବେଶି। ପ୍ରକୃତରେ କହିବାକୁ ଗଲେ, ଏହିମାନଙ୍କର ଲାଞ୍ଛନା ହିଁ ଆମ ଜାତୀୟ ଜୀବନରେ ଏକ ବିଷାକ୍ତ ଫୋଟକା ଭଳି, ଦୁର୍ଗନ୍ଧ ପଚା ଘାଆ ଭଳି - ଏଇ ବିଷୟରେ ଆମେ ମରୁଚୁ। କଲିକତା ଓ ରେଙ୍ଗୁନରେ ଓଡ଼ିଆ ଆଉ ଓଡ଼ିଆଣୀଙ୍କର ଦୁର୍ନାମ ଦୁର୍ଗତି ଆମକୁ ଭାରତରେ ଗୋଟିଏ ଅତି ନଗଣ୍ୟ ପରିସ୍ଥିତିରେ ପକେଇ ପାରିଚି। ଓଡ଼ିଶା, ଯେ କି ମହାନ୍ ଶିଳ୍ପକଳାର ଦେଶ - ସେ ଦେଶର ସ୍ଥାୟୀ ବାସିନ୍ଦା ସୁଦ୍ଧା ଓଡ଼ିଆଙ୍କ ମଧ୍ୟରେ ଯେ କିଛି ମନୁଷ୍ୟତ୍ୱ ଅଛି, ଏହା ସ୍ୱୀକାର କରିବାକୁ ନାରାଜ। ଅନ୍ୟ ଦେଶ ଲୋକେ ବା ତାଙ୍କୁ ପାସଙ୍ଗରେ କାହିଁକି ପକେଇବାକୁ ଯିବେ। ପ୍ରବାସୀ ଉତ୍କଳୀୟର ସବୁଆଡୁ ମହା ବିପଦ। ଏକେ ତାର ଜାତୀୟତା ଯିବାକୁ ବସିଚି, ଦ୍ୱିତୀୟରେ ତାର ସୋଦର; ତା' ଦେଶର ଲୋକେ ତାଙ୍କୁ ଆପଣାଠୁଁ ଦୂରକୁ ଫୋପାଡ଼ିବାକୁ ସର୍ବଦା ପ୍ରସ୍ତୁତ, ତୃତୀୟରେ ଅନ୍ୟାନ୍ୟ ଜାତିଙ୍କ ଲାଞ୍ଛନାରେ ତା' ମୁଣ୍ଡ ଏପରି ନଇଁ ପଡ଼ିଚି ଯେ, ସେ ନିଜେ ଭାବି ପାରୁନାହିଁ, ଜଗତରେ ତାର କୌଣସି ବିଶିଷ୍ଟ ସ୍ଥାନ ଅଛି ବୋଲି। ଅଳ୍ପଦିନ ତଳେ ମୋତେ ସ୍ୱର୍ଗୀୟ ବିପିନ୍ ପାଲଙ୍କ କନ୍ୟା ଶ୍ରୀମତୀ ଲୀଳାବତୀ ଘୋଷ ତାଙ୍କର ବିଲାତ ପ୍ରବାସର ଗୋଟିଏ କଥା କହୁଥିଲେ ଯେ, ସେଠିକାର ପାଠପଢୁଆ ବଙ୍ଗାଳୀ ଛାତ୍ରଙ୍କର ଇଂରେଜଙ୍କ ସାମନାରେ ବଙ୍ଗଳା କହିବାକୁ ଏତେ ଲାଜ ଯେ, ପରସ୍ପର ମଧ୍ୟରେ ସୁଦ୍ଧା ସେମାନେ ବିନା ଇଂରାଜୀରେ କଥା କହିପାରନ୍ତି ନାହିଁ। ମୁଁ ଭାବିଲି, ଓଡ଼ିଆଙ୍କର ଠିକ୍ ଏଇ ଅବସ୍ଥା। ଶିକ୍ଷିତ ଭଦ୍ର ଓଡ଼ିଆ ମଧ୍ୟ ବିଦେଶରେ ନିଜ ଭାଷା କହିବାକୁ ଲାଜକରନ୍ତି, ବିଚରା ମୂଲିଆ ବାପୁଡ଼ାର କଥା କିଏ ପଚାରେ? ବର୍ମାରେ ଓଡ଼ିଆଙ୍କର ପରସ୍ପର ମଧ୍ୟରେ ଦରଭଙ୍ଗା ହିନ୍ଦୀ, କଲିକତାର ବଙ୍ଗଳା ଯେ ଶୁଣିଥିବ, ସେ ଏ କଥାର ପ୍ରମାଣ ଦେବ। ମାତୃଭୂମି, ମାତୃଭାଷା ଆମେ ଦୁଇଟାର ଦ୍ରୋହୀ ତ ଆମ ଭିତରେ ଜାତୀୟ ଜୀବନ ପଶିବ କୋଉଠୁ? କିନ୍ତୁ, ତଥାପି ନୈରାଶ୍ୟ କାରଣ ନାହିଁ।

ଜାତିଟା ଯେତେ ଛୋଟ ହେଉ, ଜାତିର ଲୋକ ସଂଖ୍ୟା ଯେତେ ଊଣା ହେଉ, ଚିନ୍ତା ନାହିଁ; ଯଦି ତା' ମଧ୍ୟରେ ବଳିଷ୍ଠ କର୍ମୀ, ଉପଯୁକ୍ତ ପୁରୁଷ ସ୍ତ୍ରୀ ଅଛନ୍ତି, ଯେଉଁମାନଙ୍କ ଯୋଗୁଁ

(୧) ଗୀତ।

ଜାତି ମୁଣ୍ଡ ଟେକି ଛିଡ଼ା ହୋଇପାରିବା ଭଳି କ୍ଷମତା ଅର୍ଜନକରିଚି। ଆମ ଜନ୍ମଭୂମି ଓଡ଼ିଶା ଅତି କ୍ଷୁଦ୍ର ଦେଶ ନୁହେଁ। ଇଉରୋପରେ ଓଡ଼ିଶାଠାରୁ ବି ଛୋଟ ଛୋଟ ସ୍ୱାଧୀନ ରାଜ୍ୟମାନ ସଭ୍ୟତା ଓ ସଂସ୍କୃତିରେ ପୃଥିବୀର ରାଷ୍ଟ୍ରସଂଘରେ ସ୍ଥାନ ପାଇଛନ୍ତି। ବିଶାଳ କଲିକତା ମଧ୍ୟରେ ଦୁଇଲକ୍ଷ ଓଡ଼ିଆ କିଛି ଗୋଟିଏ ଊଣା ଶକ୍ତି ନୁହେଁ। ଏଇ ଦୁଇଲକ୍ଷ ଶ୍ରମିକଦ୍ୱାରା ହିଁ କଲିକତାରେ ଓଡ଼ିଆର ଜାତୀୟ ଜୀବନ ଜାଗ୍ରତହେବ। ସଭ୍ୟ ଆମେରିକାରେ ଦାସ ଜାତି କଳା ନିଗ୍ରୋଙ୍କ ମଧ୍ୟରେ ଯଦି ଅଳ୍ପ ସମୟ ମଧ୍ୟରେ ଅଦ୍‌ଭୂତ ଜାତୀୟ ଜୀବନ ଜାଗ୍ରତ ହୋଇ ପାରିଲା, କଲିକତାରେ ତା' କାହିଁକି ବା ସମ୍ଭବ ନ ହେବ ? ପୁଣି କଲିକତାର ଦେଖାଦେଖି ରାଙ୍ଗୁନ୍‌ରେ ହେବ, ରାଙ୍ଗୁନ୍‌ଠାରୁ ଆସାମରେ ହେବ, ଆସାମଠାରୁ ପଞ୍ଜାବରେ ହେବ। ଅତଏବ ଆସ ଆମର ପ୍ରବାସୀ ଓଡ଼ିଆ ଭାଇ ଭଉଣି ! ଆମେ ସଂଘବଦ୍ଧ ହେବା, ଆମେ ଗୋଟିଏ ବିଶାଳ ପ୍ରବାସୀ ଉତ୍କଳ ସମ୍ମିଳନୀର ଜାତୀୟ ବାନା ତଳେ, ଏକ ମନପ୍ରାଣରେ ଏକତ୍ରିତ ହୋଇ ଆମ ଭିତରୁ ଦୋଷ ଦୁର୍ବଳତାଗୁଡ଼ିକ ଦୂର କରିଦେବା। ପ୍ରବାସୀ ଓଡ଼ିଆଙ୍କ ମଧ୍ୟରେ ଯେଉଁମାନଙ୍କର ଶକ୍ତି, ସାମର୍ଥ୍ୟ, ଧନ, ସଂସ୍ଥାନ ଅଛି, ମୁଁ ବିଶେଷ ଭାବେ ସେହିମାନଙ୍କୁ ଏ କାର୍ଯ୍ୟରେ ଅଗ୍ରଣୀ ହେବାଲାଗି ଆହ୍ୱାନ କରୁଚି। ସେମାନେ ଆପଣା ଶ୍ରମିକ ଭାଇଙ୍କର କାନ୍ଧକୁ କାନ୍ଧ ମିଶାଇ ଛିଡ଼ା ହୁଅନ୍ତୁ ଏବଂ ଉତ୍କଳ ମାତାର ଜୟଗାନ କରି ଜାତୀୟ କାର୍ଯ୍ୟରେ ଲାଗି ପଡ଼ନ୍ତୁ। ଏଥିରେ ସରକାରୀ ବେସରକାରୀ କୌଣସି ଲୋକର କିଛି ଭୟର କାରଣ ନାହିଁ; କାରଣ, ଏହା ରାଜନୈତିକ ଆନ୍ଦୋଳନ ନୁହେଁ। ଏହା ଗୋଟିଏ ସୁପ୍ତ ଜାତିକୁ ଉଦ୍‌ବୁଦ୍ଧ କଲା ଭଳି କଲ୍ୟାଣକର ପ୍ରଚେଷ୍ଟା। ଏହାର କାର୍ଯ୍ୟ, ନିଜ ଜାତି ମୁଣ୍ଡରୁ କଳଙ୍କର ଦାଗ ଲିଭାଇବା। ସେଥିପାଇଁ ଯେଉଁ ଯେଉଁ ଜାଗାରେ ଓଡ଼ିଆମାନେ ଅସତ୍ କାର୍ଯ୍ୟରେ ଲିପ୍ତ ଅଛନ୍ତି, ସେଠାରୁ ସେସବୁର ଚିହ୍ନବର୍ଣ୍ଣ ପର୍ଯ୍ୟନ୍ତ ଲୁପ୍ତ କରିଦେବାକୁ ହେବ। ଓଡ଼ିଆ ଶ୍ରମିକ ବିଦେଶକୁ ଆସୁଚି ତ ସସ୍ତ୍ରୀକ ଆସୁ। ସପରିବାର ରହୁ। ଯଦି ତା ନହୁଏ, ଏପରି ଜୀବନଠାରୁ ସ୍ୱଦେଶରେ ଜୀବନାନ୍ତ ହେବା ଭଲ। ବିଦେଶରେ ଜାତି ମୁହଁରେ କଳଙ୍କ ଲିପି ବଞ୍ଚି ରହିବାଟା ମହା ଦୁର୍ଭାଗ୍ୟ।

ସବୁ ଦେଶରେ, ସବୁ ସ୍ଥାନରେ ଶ୍ରମିକମାନଙ୍କର ଅଭାବ ଅଭିଯୋଗ ଅନେକ। ସେମାନଙ୍କ ପ୍ରତି ତାଙ୍କ ମାଲିକମାନେ ଯଥେଷ୍ଟ ଅନ୍ୟାୟ କରନ୍ତି। ସଂଘବଦ୍ଧ ନ ହେଲେ, ସେ ସବୁ ଅନ୍ୟାୟର ପ୍ରତିକାର ହେବ କିପରି ? ଭାରତବାସୀର ଦୁର୍ନାମ, ସେମାନଙ୍କ ମଧ୍ୟରେ ମେଳ ନାହିଁ। ଓଡ଼ିଆ ମଧ୍ୟ ଉତ୍ତରାଧିକାର ସୂତ୍ରରେ ତାହା ଅଧିକ ରୂପେ ପାଇଚି। ଓଡ଼ିଆଙ୍କ ମଧ୍ୟରେ ସୁଦ୍ଧା ପରସ୍ପର ଏକତା ନାହିଁ। ଏକତା ନାହିଁ କହିଲେ ଠିକ୍ ହେଲା ନାହିଁ - ଏକତା ନାହିଁ ଭଲ କାମପାଇଁ - ଏକତା ନାହିଁ ଅତ୍ୟାଚାରର ପ୍ରତିରୋଧ କରିବାପାଇଁ; କିନ୍ତୁ ଏକତା ଅଛି - ତାସ, ପଶା, ନାଟତାମସା, ତ୍ରିନାଥମେଳା, ପଞ୍ଚାନନ ମେଳା କରିବାରେ; ନିଶା ଖାଇବାରେ। ଏହିପରି ନାନା କୁକାର୍ଯ୍ୟପାଇଁ ଏକତା ଅଛି - ଓଡ଼ିଆଙ୍କର ଦେଶରେ ଯେଉଁ

ହାଲ, ବିଦେଶରେ ବି ସେଇ ଅବସ୍ଥା। ଏସବୁ ସୁଧୁରବାର ଉପାୟ କଣ? ଏ ସବୁ କିଏ ସୁଧାରିବ? ଦୋଷଗୁଡ଼ିକ ବଖାଣି ବସିଲେ ତ ହେବ ନାହିଁ। ଆତ୍ମୀୟ ଭଳି ଦୋଷଗୁଡ଼ିକୁ ଦୂର କରିବାଲାଗି ଚେଷ୍ଟା କିଏ କରିବ? ଏ କାର୍ଯ୍ୟରେ ଭାର କାହା ଉପରେ? ଏହାର ଦାୟିତ୍ୱ ଶିକ୍ଷିତ ଓଡ଼ିଆଙ୍କ ଉପରେ, ସେମାନେ ଆପଣା କର୍ତ୍ତବ୍ୟ ଭାବୁଛନ୍ତି ତ? ନାଁ ସାଧାରଣ ଶ୍ରମିକଙ୍କୁ ଥାର୍ଡ଼କ୍ଲାସ କୁଲି ଭାବି ଘୃଣାରେ ବହୁଦୂରେ ଥାଇ ଆତ୍ମୀୟତାର ପରିଚୟ ଦେଉଛନ୍ତି। ଏସବୁ ବିଷୟରେ ନିଜେ ନିଜେ ଆମର ଭାବିବାର ଖୁବ୍ ଅଛି। ଯଦି ଆମେ ବିଦେଶରେ ଆମ ଜାତିର ଟେକ ରଖିବାକୁ ଚାହୁଁ, ତା' ହେଲେ ଆମ ଭାଇ ଭଉଣୀଙ୍କ ଦଶା ଆମକୁ ସୁଧୁରେଇବାକୁ ହେବ। ତା' ନ କରି କେବଳ ତାଙ୍କୁ ଦୋଷ ଦେଇ ବସିଲେ ଦୁନିଆ ଦାଣ୍ଡରେ ଆମର ନିସ୍ତାର ନାହିଁ। ତାଙ୍କର କଳଙ୍କର କାଳିମାତକ ଆମରି ଦେହରେ ବୋଳିହେବ। ଆମ ଭବିଷ୍ୟତ ବଂଶଧର ତାଙ୍କରି ସୁନାମ ଦୁର୍ନାମର ଭାଗବାଣ୍ଟ ପାଇବେ। ଅତଏବ ବେଳହୁଁ ସାବଧାନ ହେବା ଆମର କର୍ତ୍ତବ୍ୟ। କଲିକତାରେ ଯେଉଁ ଦୁଇଲକ୍ଷ ଓଡ଼ିଆ ଅଛନ୍ତି, ସେମାନଙ୍କ ମଧ୍ୟରୁ କେତେକ ସ୍କୁଲ୍ ଛାତ୍ର ବା ବ୍ୟବସାୟୀଙ୍କୁ ଛାଡ଼ି ଦେଲେ ବାକି ସମସ୍ତେ ନିଃସନ୍ଦେହରେ ଶ୍ରମିକ। ଦିଲ୍ଲୀ, ପଞ୍ଜାବ, ସିମଲା ଆଡ଼େ ମଧ୍ୟ ଦୁଇଶ ଓଡ଼ିଆ ଥିବେ। ସେମାନେ ପ୍ରାୟ ସମସ୍ତେ ଶ୍ରମିକ। ଆଉ ସେହିମାନଙ୍କ ମଧ୍ୟରେ ମୁଁ ବି ଜଣେ। ମଜୁରିଆ ବା ଶ୍ରମିକ ହେବା ନୀଚତାର ପରିଚାୟକ ନୁହେଁ; ମନୁଷ୍ୟ ନୀଚ ହୁଏ ହିଂସା, ସ୍ୱାର୍ଥପରତା, ଆଚରଣର ଦୁଷ୍ଟତାରେ। କେବଳ ଶ୍ରମିକ ହେଲାମାତ୍ରେ କେହି ନୀଚ ହୋଇଯାଏ ନାହିଁ। ସେଥିପାଇଁ ଲକ୍ଷ ଲକ୍ଷ ଓଡ଼ିଆ ଶ୍ରମିକର ନିଜର ଆତ୍ମସମ୍ମାନ ଲାଗି କୌଣସି ଗ୍ଳାନିଥିବା ଉଚିତ୍ ନୁହେଁ। ସେମାନେ ଶ୍ରମିକ ବୋଲି ତାଙ୍କର ଲଜ୍ଜାର କୌଣସି କାରଣ ନାହିଁ। ଯେ ଉପଯୁକ୍ତ ଶ୍ରମକରି, ମୁଣ୍ଡର ଝାଳ ତୁଣ୍ଡରେ ମାରି ଅନ୍ନ ଭୋଜନ କରେ - ଯେ ତାର ଅନ୍ନବସ୍ତ୍ର ଉପଯୁକ୍ତ ଭାବେ ଅର୍ଜନ କରିଚି - ସେ ଚୋର ନୁହେଁ - ପୃଥିବୀର ଧନିକ ସଂପ୍ରଦାୟ ଯେ ପରର ଝାଳବୁହା ପଇସାରେ ଗୋଡ଼ ଉପରେ ଗୋଡ଼ଥୋଇ ଅଏସକରନ୍ତି, ସେମାନେ ପ୍ରକୃତରେ ଚୋର - ଯେ ପେଟ ସକାଶେ ଖଣ୍ଡେ ରୋଟି ଚୋରିକରେ, କି ଦେହ ସକାଶେ ଖଣ୍ଡେ ରୋଟି ଚୋରିକରେ, କି ଦେହ ସକାଶେ ଖଣ୍ଡେ ଲୁଗା ଚୋରିକରେ, ସେ ପ୍ରକୃତରେ ବଡ଼ଚୋର ନୁହେଁ; ବଡ଼ଚୋର ସେହିମାନେ, ଯେଉଁମାନେ ପୃଥିବୀର ତିନିଭାଗ ଲୋକଙ୍କୁ ନିଜର ସ୍ୱାର୍ଥ ସକାଶେ ଗୋଲାମ କରି ରଖିଛନ୍ତି; ତାଙ୍କୁ କୁଲି, ମଜୁରିଆ, ଚାକର, ପୂଜାରୀ ବନେଇ, ଅତି ଅଳ୍ପ ମୂଲ୍ୟରେ ତାଙ୍କର ରକ୍ତବୁହା ପରିଶ୍ରମର ଲାଭ, ସୁଖସ୍ୱାଚ୍ଛନ୍ଦ୍ୟ ଲୁଟୁଛନ୍ତି।

ଥରେ, ଦିନେ ଦିଲ୍ଲୀରେ କେହି ଜଣେ ଭଦ୍ରଲୋକ ମୋତେ ଓଡ଼ିଶା ସମ୍ବନ୍ଧରେ ପଚାରିଥିଲେ-ଓଡ଼ିଆ ଜାତି ମଧ୍ୟରେ ଏତେ ଆଳସ୍ୟ ଏବଂ କୁଲିଗିରି କରିବାଲାଗି ଉନ୍ମୁଖତା କାହିଁକି? ମୁଁ ତାଙ୍କୁ କହିଥିଲି - ଓଡ଼ିଶାରେ ପୂର୍ବେ ଦୁଇଟି ଜିନିଷ ଥିଲା - ଗୋଟିଏ ଖଣ୍ଡାର ବ୍ୟବସାୟ– ଅର୍ଥ ଯୁଦ୍ଧ କରିବା, ଆଉ ଶାନ୍ତି ସମୟରେ ରାଜଦତ୍ତ ଭୂମିଚାଷ - ଜାୟଗିରିଦାରୀ

ଘରେ ନାରୀମାନଙ୍କର କୁଟୀର ଶିଳ୍ପ ଥିଲା ପ୍ରଧାନ। ଏବେ ଖଣ୍ଡେଇତ ନାହିଁ, କି ଚାଷରେ ପେଟ ପୂରୁ ନାହିଁ, କୁଟୀର ଶିଳ୍ପ ବା ଜାତୀୟ ବ୍ୟବସାୟଗୁଡ଼ିକ ମୃତପ୍ରାୟ। ଶତବର୍ଷବ୍ୟାପୀ ବଢ଼ି ଆଉ ମରୁଡ଼ି। ତାହାହେଲେ ଆମ ପାଇକପୁଅଙ୍କର ଆଉ ଶିଳ୍ପୀସନ୍ତାନମାନଙ୍କର ସମ୍ବଳ କଣ ? ସେଥିପାଇଁ ଅତୀତର ଏଡ଼େ ବଡ଼ ବୀର ଜାତି ଆଜି କୁଲି ଜାତିରେ ପରିଣତ। ମୁସଲମାନ ଶାସନରେ ରାଜପୁତାନାର ଯେ ଅବସ୍ଥା, ପ୍ରତାପ-ସମର-ସଂଗର ବଂଶଧରମାନେ ଯେପରି ଅର୍ଦ୍ଧମୃତ ଅଫିମର ଦାସ, ଉଦାର ବ୍ରିଟିଶ ଶାସନରେ ଲକ୍ଷେ ରଙ୍ଗାର ମଉଡ଼ମଣିର ଦାନ୍ତୁଆ ଖଣ୍ଡାଧାରୀ ଓଡ଼ିଆପୁଅର ଆଜି ତତୋଽଧିକ ଅବସ୍ଥା। ଓଡ଼ିଆ କୁଲି, ଶ୍ରମିକ, ମଜୁରିଆ। ଓଡ଼ିଆଣୀ ଦୂର ଦେଶରେ ଉଦରାନ୍ନ ସକାଶେ ନିର୍ବାସିତା। କାରଣ - ସ୍ୱର୍ଣ୍ଣଭୂମି କଳିଙ୍ଗ ଜନନୀ ଆଜି କାଙ୍ଗାଳୁଣୀ। ତାର ସୁନା ଫଗୁଆ ଶୂନ୍ୟ ହୋଇଯାଇଛି। ତାର ହୀରା, ଲୁହା, କାଠ, ପଥର, ହାତୀଦାନ୍ତ, କଂସା ପିତଳ, ଲୁଣ, କଉଡ଼ି, ସିପ, କାଇଁଶ ଆଦି କାହିଁରେ ତାର ନିଜତ୍ୱ ନାହିଁ। ତା' ଦେଶରେ କ୍ଷୀର ନୀରରେ ପାଳନକର୍ତ୍ତ୍ରୀ ମା ଭଳି ମହାନଦୀ, କାଠଯୋଡ଼ି, ବ୍ରାହ୍ମଣୀ, ବୈତରଣୀ ତାକୁ ପାତାଳ ଗର୍ଭରେ ବୁଡ଼ାଇ ପ୍ରତିବର୍ଷ ସର୍ବସ୍ୱାନ୍ତକରି ଛାଡ଼ୁଛନ୍ତି। ହଇଜା, ମେଲେରିଆ ଠାକୁରାଣୀଙ୍କ କଲ୍ୟାଣରେ ଘର ଘର ଜନଶୂନ୍ୟ। ଏପରି ଅବସ୍ଥାରେ ଲକ୍ଷ ଲକ୍ଷ ଓଡ଼ିଆ ଭାଇ ଅତି ଅଳ୍ପ ମୂଲ୍ୟରେ ବିଦେଶରେ ପଡ଼ିରହି ଜୀବିକା ଅର୍ଜନ କରିବା ଛଡ଼ା ତାଙ୍କର ଯେ ଗତ୍ୟନ୍ତର ନାହିଁ। କୁଲିଗିରି ଯେ ତାଙ୍କର ବର୍ତ୍ତମାନ ଜୀବନର ସାର ଲକ୍ଷ୍ୟ। ବହୁଦିନ ତଳେ ମୁଁ ଗୋଟିଏ କବିତାରେ ଲେଖିଥିଲି -

ପଖାଳ ଭାତକୁ ନ ମିଳେ ଲୁଣ
ତବତ ସାଥିକୁ ନାହିଁ ତିଅଣ
ଗୋରୁ ହେଲେ ହଡ଼ା, ଲୋକେ ହେଲେ ମଡ଼ା
(ସାର) କୁଲିଗିରି ଚାହା ବଗିଚା କାମ।

ଦେଶକୁ ଆଡ଼କାଠି ଯାଇ ଚାଉଳିଆଗଞ୍ଜ ଡିପୋରୁ ଶହ ଶହ ହଜାର ହଜାର କୁଲୀ ଓ କୁଲୀଆଣି ବର୍ମ୍ମା, ଆସାମ, କଲିକତା ରପ୍ତାନି କରିବା କଥା କିଏ ନ ଜାଣେ ? ଓଡ଼ିଆ ଜାତି ଏସବୁ ଅଂଗେ ନିଭେଇ ନିଭେଇ ଜରାଜୀର୍ଣ୍ଣ ହେଲାଣି। ଆଉ କେତେ କାଳ ଯେ ଏ କର୍ମ ଭୋଗୁ ଅଛି, କିଏ କହିବ ? ଭାରତ, ଜଗତରେ ସବୁଠାରୁ ହୀନ, ଲାଞ୍ଛିତ, ପରପଦଦଳିତ ଦେଶ - ତାର କୋଟିଗୁଣ ଉଜ୍ଜ୍ୱଳ ସୁବର୍ଣ୍ଣ ଅତୀତ ଥିଲେ ସୁଦ୍ଧା ପୃଥିବୀର ସଭ୍ୟ ଦେଶମାନଙ୍କ କତିରେ କୁଲୀ, କିରାଣୀ, କୃଷକ (Cooly, Clerk, Cultivator) ଦେଶ ଛଡ଼ା ତାର ଆଉ ଅଧିକ କିଛି ସମ୍ମାନ ନାହିଁ। ଏଡ଼େ ବଡ଼ ନୂତନ ରାଜଧାନୀ– ପରମ ସୁନ୍ଦର ନୂତନ ଦିଲ୍ଲୀ - ''କୁଲି– କିରାଣୀ– ବସ୍ତି'' ଛଡ଼ା ଆଉ କିଛି ନୁହେଁ - ଭାରତ-ଜାତୀୟତାର ଛାପ ତାର କୌଣସି ଅଙ୍ଗରେ ନାହିଁ। ଭଙ୍ଗା, ଦଦରା, ପୋପରା, ଖଣ୍ଡିଆ କୋଠା କଙ୍କାଳମାନ ଝୁଲା ପୁରୁଣା ଦିଲ୍ଲୀର ଅଂଗେ ଅଂଗେ ପୁରୁଣା କୀର୍ତ୍ତି; ଭାରତୀୟ ସଭ୍ୟତା, ଭାରତୀୟ ଶିଳ୍ପର

ଗୌରବ ଗରିମା ଗୋଟିଏ ଛିଣ୍ଡା ଚାରୁଚିତ୍ର ଭଳି ଓହଳିଚି। ସେ ସବୁ ଦେଖିଲେ ଏବଂ ବର୍ତ୍ତମାନ ଭାରତର ଅବସ୍ଥାକୁ ତା ସହିତ ତୁଳନା କଲେ, ସହଜେ କିଏ ବିଶ୍ୱାସ କରିବ ଯେ, ଏ ସବୁ ଏହି କୁଲୀ ମଜୁରିଆ କୃଷକ ଭୂମିର ସନ୍ତାନଙ୍କର ଅମର କୀର୍ତ୍ତି! ସାଢ଼େ ଚାରି ଶହ ବର୍ଷର ପୁରୁଣା ଲାଲକିଲ୍ଲା ପଥର ଉପରେ ପଥର ଦୃଢ଼ ଭାବେ ଜମେଇ ଗର୍ବରେ ଆଜିସୁଦ୍ଧା ଛିଡ଼ା ହୋଇଚି। ଏଣେ ନବ ନିର୍ମିତ ପ୍ରାସାଦମାନଙ୍କର କାନ୍ଥ ଠାଏ ଠାଏ ଆଜୁହୁଁ ଫାଟିଲାଣି। ଭାରତୀୟ ଶିଳ୍ପୀର, ଭାରତୀୟ ଶ୍ରମିକର ପୃଥିବୀକୁ ଅମର ଦାନ– ଭାରତର ଶିଳ୍ପକଳାଗୁଡ଼ିକ ଦେଖିଲେ କିଏ ବିଶ୍ୱାସ କରିବ ଯେ, ସେମାନେ ଆଠଅଣା, ଦଶଅଣା ମଜୁରୀ ଲାଗି ହାଡ଼ମାଂସ ପଚେଇ ଖଟଣୀ ଖଟି, ପଶୁଠୁ ହୀନ ଜୀବନ ଯାପନ କରି, ପିଲା ପରିବାରର ସୁଖ ଶାନ୍ତି - ଜୀବନର ଅନ୍ୟ ସମସ୍ତ ଧେୟ ଆରାଧ ଏକାବେଳେ ଭୁଲିଯାଇ, ନରକର କୀଟ ପାଲଟି ଯାଇଛନ୍ତି ବୋଲି। କୋଣାର୍କ ରଚୟିତାଙ୍କ ପୁଅମାନେ ଆଜି କଲିକତାର ଝୋଟକଳ, ସୂତାକଳର କୁଲିଗଣ୍ଡରୀଠେଲା ବୁହା– ମଜୁରିଆ, ବାସନ-ବର୍ତ୍ତନ-ମଜା-ଭାତରନ୍ଧା ବେହେରା ପୁଝାରୀ; ପୁଣି ଲକ୍ଷ ଲକ୍ଷ ସଂଖ୍ୟାରେ! ଜଗତରେ ଭାରତ, କୁଲୀର ଦେଶ ବୋଲି ସମ୍ମାନିତ। ଭାରତର ସ୍ୱ ଘରେ ଉତ୍କଳ କୁଲୀର ଦେଶ ବୋଲି ପରିଚିତ। ପୃଥିବୀ ନିକଟରେ ଭାରତୀୟ, ଭାରତୀୟ ନିକଟରେ ଉତ୍କଳୀୟ ଏକା ମାନଦଣ୍ଡରେ ମପା - ଏକ ନିକିତିରେ ତଉଲା, ଆମେ ଓଡ଼ିଆ ଭାରତର ଦୁଃଖ ଦୁର୍ଦ୍ଦଶାର ଜୀବନ୍ତ ଉଦାହରଣ। ଭାରତୀୟ କୁଲୀ ଶ୍ରେଣୀର ମଉଡ଼ମଣି ଓଡ଼ିଆ- ସେହି ଓଡ଼ିଆ କୁଲୀ ଜାତିର ଜଣେ ଝିଅ ମୁଁ ନିଜକୁ କୁଲି ବା ଶ୍ରମିକ ବୋଲି ଜଗତ ସାମନାରେ କହିବାକୁ କଦାପି ଲଜ୍ଜିତ ନୁହେଁ। କାରଣ କୁଲୀର ବି ସମ୍ମାନ ଅଛି। କୁଲୀର ବିରାଟ ଅତୀତ ଥିଲା - ବିଶାଳ ଭବିଷ୍ୟତ ଅଛି। ଜଗତର ଭାଗ୍ୟ ନିର୍ଣ୍ଣୟ ଏଣିକି ଯଦି କୌଣସି ଗୋଟିଏ ଶ୍ରେଣୀ ହାତରେ ଅଛିତ, ସେ ଶ୍ରେଣୀ କୁଲୀର। ଅତଏବ ଆମର ନିରାଶ ହେବାର କୌଣସି କାରଣ ନାହିଁ। ଜଣେ କୁଲୀ ବର୍ତ୍ତମାନ ବ୍ରିଟିଶ ରାଜ୍ୟର ଭାଗ୍ୟବିଧାତା। କୁଲୀ, ମୂଲିଆ, ଶ୍ରମିକ ଏ ଶବ୍ଦ ଆଉ ଲଜ୍ଜାଜନକ ନୁହେଁ। ଅତଏବ ଓଡ଼ିଆ କୁଲୀ ହିସାବରେ ଜଗତରେ ତଥା ଭାରତରେ ଆମର ଗୋଟିଏ ବିଶେଷ ସ୍ଥାନ, ଗୋଟିଏ ବିଶେଷ ଅଧିକାର, ଜଗତର ସମୂହ ପ୍ରଶ୍ନର ଉତ୍ତର ଦେବାଲାଗି ଗୋଟିଏ ବିଶେଷ ଶକ୍ତି ଅଛି।

ବର୍ତ୍ତମାନ ଜଗତର ପ୍ରଶ୍ନ କଣ? ଖାଦ୍ୟ, ବସ୍ତ୍ର ଏବଂ ବାସସ୍ଥାନ। ଏତକ ପାଇବା ପାଇଁ ପୃଥିବୀମାତାର ପ୍ରତ୍ୟେକ ସନ୍ତାନ ନ୍ୟାୟତଃ ଅଧିକାରୀ। ବିଶ୍ୱମାତା କୃପଣ ନୁହନ୍ତି - ବିଶ୍ୱଜନନୀର ଭଣ୍ଡାରରେ ଅକ୍ଷୟ ସଂପତ୍ତି, ଅଶେଷ ଅନ୍ନ ବସ୍ତ୍ର, ତାଙ୍କ କୋଳରେ ଅମାପ ସ୍ଥାନ; କିନ୍ତୁ ଏ ସବୁରୁ ଅଧିକାଂଶ କାହିଁକି ବଞ୍ଚିତ? ଏହାର କାରଣ– ଆମ ଭିତରେ ଅସଂଖ୍ୟକର ମାନସିକ ଦୁର୍ବଳତା, ସଂଘବଦ୍ଧ ଶକ୍ତିର ଅଭାବ। ଆମେ ବହୁ ହୋଇ ସୁଦ୍ଧା ଅଳ୍ପସଂଖ୍ୟକ ଅତ୍ୟାଚାରୀର ଭୟରେ ବା ଭୟାଶଙ୍କାରେ ବ୍ୟାକୁଳ। ଆମେ ମହାମୂର୍ଖ, ମହା ଦୁଃଖୀ, ଆମେ ପ୍ରତି ମୁହୂର୍ତ୍ତ ରକ୍ତ ବୁହାଇ ବୁହାଇ ସୁଦ୍ଧା ଆମ ପେଟ ପୂରେ ନାହିଁ, ଆମ ଦେହ ଲୁଚେ ନାହିଁ - ଆମେ ପଶୁ ରହିବା ଅଯୋଗ୍ୟ ସ୍ଥାନରେ ପଡ଼ି ସଢୁଥାଉ। ଆମେ

ଏପରି ଅଧମ ହୋଇଗଲୁଣି ଯେ, ନ୍ୟାୟାନ୍ୟାୟ, ଧର୍ମାଧର୍ମ, ଚରିତ୍ରୋନ୍ନତି ଆଦିର ବିଚାର ଆମଠି ନାହିଁ। ଆମେ ମାଲିକ, ପ୍ରଭୁ, ମହାରାଜ, ସାହେବ, ହାକିମ ଆଦି ମହାଭୂତ ଭୟରେ ସର୍ବଦା ବ୍ୟସ୍ତ। ଉପରିସ୍ଥର ତୋଷାମୋଦ କରିବା ଛଡ଼ା ଯେପରି ଆମର ଗତ୍ୟନ୍ତର ନାହିଁ। ଏହି ତ ସାଧାରଣ ଶ୍ରମିକର ଜୀବନୀ। ତା'ଠୁ ମନୁଷ୍ୟୋଚିତ ସଦ୍‌ଗୁଣ, ମହାନତା, ଆତ୍ମାର ବିଶାଳତା, ଉଦାରତା ଆଶାକରିବା ବିଡ଼ମ୍ବନା।

ଧରନ୍ତୁ, କଲିକତାର ହିଁ ଦୁଇ ଲକ୍ଷ ଓଡ଼ିଆ ଶ୍ରମିକଙ୍କର କଥା। ସେମାନଙ୍କର ଜୀବନର ଅଧଃପତିତ ଅବସ୍ଥା ବୋଧହୁଏ ମୋ'ଠାରୁ ମଧ୍ୟ ଆପଣମାନେ ଅଧିକ ଭଲରୂପେ ଜାଣନ୍ତି। ଅକଥ୍ୟ ପରିଶ୍ରମର ସେମାନେ ଉପଯୁକ୍ତ ମୂଲ ପାଆନ୍ତି ନାହିଁ। ଯାହା ପାଆନ୍ତି, ତା ପୁଣି ତାଙ୍କର ବ୍ୟସନ ବିଳାସିତାକୁ ନିଅଣ୍ଟ। ଘରେ ପିଲା, ଭାର୍ଯ୍ୟା ଦୁଃଖରେ ଦରମଲା ପ୍ରାଣଘେନି ପଡ଼ିଥାନ୍ତି। ଅଧିକାଂଶ ଗ୍ରାମର ନିଃସହାୟ ସ୍ତ୍ରୀମାନେ ଅନ୍ନବସ୍ତ୍ର ବିହୀନ ହେବାରୁ ନାନା ପ୍ରକାର ଦୁଃଖ ଗଞ୍ଜଣା, ଲାଞ୍ଛନା ସହି ନ ପାରି ଘରୁ ପଳେଇଆସି କୁଲିଆଣୀଗିରି କରନ୍ତି। ନୋହିଲେ ପାପ ବ୍ୟବସାୟରେଂ ନିଜ ଦେହକୁ ଢାଳିଦିଅନ୍ତି; ପୁଣି ତାଙ୍କରି ପୁଅ ଭାଇ ତାଙ୍କୁ ଘେନି ଅସତ୍ ବ୍ୟବସାୟରେ ଦି'ପଇସା ରୋଜଗାର କରିବା ବାଟ କରିଥାନ୍ତି। ହାୟ, କି ପରିତାପର ବିଷୟ ! କୁଲି ବା ଶ୍ରମିକ ହେବା ଅର୍ଥ ନିଶା; ବେଶ୍ୟା, ବ୍ୟଭିଚାରର ଦାସ ହେବା ନୁହେଁ। ସେପରି କୁଲି ଜାତି ଯଦି ଜଗତରୁ ଲୋପପାଏ, ତା' ହେଲେ କିଛି ଦୁଃଖ ନାହିଁ, ବରଂ ପୃଥିବୀର ଭବିଷ୍ୟତ୍ ବଂଶଧରଙ୍କର ସେଥିରେ ମଂଗଳ। ମାତ୍ର କୁଲି ବା ଶ୍ରମିକ ହେବା ଅର୍ଥ ପୃଥିବୀର ଭାଗ୍ୟ ଡୋରିକୁ ନିଜ ହାତରେ ରଖିବା। ଯେ ପୃଥିବୀର ମାଟିରୁ ଶସ୍ୟ ଉତ୍ପନ୍ନକରେ, ଯେ କପାରୁ ସୂତା ଓ ଲୁଗା ବାହାରକରେ, ଯେ ଜୀବନ ଉପାୟର ସମସ୍ତ ସାମଗ୍ରୀ ତିଆରିକରେ, ସେହି ତାର ପ୍ରକୃତ ମାଲିକ; ଅନ୍ୟ ନୁହେ। ସାମାନ୍ୟ ମଜୁରୀ ଦେଇ, ଅନ୍ୟ ତା' ଉପରେ ମାଲିକାନା ସ୍ୱତ୍ୱ ହାସଲକରି ହସୁଥିବ, ଆଉ ସେହିପରି ମାଲିକଙ୍କଠୁ ଯୁତାଖାଇ ଦେହରେ ଚନ୍ଦନ ବୋଳିଲା ଭଳି ଘିନିବା ଅର୍ଥ ପ୍ରକୃତ କୁଲିଗିରି ନୁହେଁ – ପଶୁ ବି ଅତ୍ୟାଚାର ପାଇଲେ ଆତ୍ମବଳ ଦେଖାଏ। ମନୁଷ୍ୟ କଣ ପଶୁଠୁ ଅଧମ ! କୁଲିର ସଂଘବଦ୍ଧ ଶକ୍ତି ହିଁ ପୃଥିବୀର ଅସଲ ଭାଗ୍ୟ ବିଧାତା। କଲିକତା ସହରର କୁଲି ! ତୁମ୍ଭେମାନେ ହିଁ କଲିକତାର ବିଧାତା ! ଏକ ଦଣ୍ଡରେ ତୁମ୍ଭେମାନେ ଏ ସହରର ଆଲୁଅକୁ ଅନ୍ଧକାରରେ ପରିଣତ କରିପାର, ଏକ ଦଣ୍ଡରେ ଏ ପରିଚ୍ଛନ୍ନ ରାଜପଥକୁ ନରକକୁଣ୍ଡ କରିଦେଇପାର। ତୁମ ଯୋଗେ ତୁମ୍ଭ ମାଲିକମାନଙ୍କର ଅଣ୍ଟିରେ ପଇସା। ପୁଣି ସେହିମାନେ ତୁମରି ତଣ୍ଟି ଚିପିବେ, ଆଉ ତମ୍ଭେ ଭୟାର୍ତ୍ତ ଠେକୁଆ ଭଳି ତାଙ୍କ ଗୋଡ଼ର ଏଣେ ତେଣେ ନସର ପସର ହେଉଥିବ, ଯା ନୁହେଁ ଆତ୍ମବଳ ବା ଜାତୀୟତା। କୁଲିଗିରି କର, ଚିନ୍ତା ନାହିଁ। ଶ୍ରମରେ, କାମ କରିବାରେ କିଛି ଲାଜ ନାହିଁ, କିନ୍ତୁ ମଣିଷ ହୋଇ କାମକର। ତୁମ ଭିତରେ ଯେ କେତେ ଶକ୍ତି ଲୁଚିଛପି ରହିଚି, ସେଇଟା ଥରେ ଭାବ। ସେହିପରି ଶକ୍ତିର ଆରାଧନା କର। ସଂଘବଦ୍ଧ ହୁଅ, ସଂଘ ଶକ୍ତିକୁ ଚିହ୍ନ। ଏକାଠି ହେବା

ମୂଳରେ ଯେ ମହାବଳ ରହିଚି, ସେଇଟା ଭାବ। କେବଳ ଆତ୍ମଚିନ୍ତା ନୁହେଁ - ଆତ୍ମୀୟର ବି ଚିନ୍ତାକର। ତା ହେଲେ ଯାଇ ନିଜର, ନିଜ ଦେଶର, ନିଜ ଜାତିର; କି ଦେଶ, କି ବିଦେଶ ସବୁଠାରେ ମୁଖ ଉଜ୍ଜ୍ୱଳ କରିପାରିବ। ଅଳ୍ପଦିନତଳେ ଦିଲ୍ଲୀର ଲୁଗାମାର୍କେଟରେ ଜଣେ ମୂଲିଆ (କାହାର) ଯୁବକ ଅମୀର ସିଂହକୁ ଲୁଗା ମାଲିକମାନଙ୍କ ତରଫରୁ ମାଡ଼ହେଲା। ସଂଗେ ସଂଗେ ସବୁ ମଜୁରିଆ ('କାହାର') ଲୁଗା ଗଣ୍ଠିରା ଉଠେଇବେ ନାହିଁ କହି, ସତ୍ୟାଗ୍ରହ କରିବସିଲେ। ଲୁଗା ମାର୍କେଟ ବନ୍ଦ। ମାଲିକଙ୍କର ଖୋସାମଦ କିଏ ଦେଖେ? ଆଜିକାଲି ଧର୍ମଘଟ କରିବା ବା ସତ୍ୟାଗ୍ରହ କରିବା ତ କଥା କଥାକେ ହୁଏ। କିନ୍ତୁ ଏଠି କଲିକତାରେ ଏପରି ବ୍ୟକ୍ତି ବି ଅଛନ୍ତି, ଯେ ନିଜ ଭାଇର ଅଭିଯୋଗ ଉପେକ୍ଷାକରି ମାଲିକଙ୍କ କତିରେ ଭଣା ମଜୁରିରେ ଅପରର କାମ ଛଡ଼େଇକରି ନେଇପାରନ୍ତି। ହାୟ! ଧିକ୍! ଏପରି ରୋଜଗାରଠାରୁ ତ ଉପବାସ ଭଲ! ଏପରି ହୀନତାର କାରଣ ଜାତୀୟ ଜୀବନର ଅଭାବ। ଜାତୀୟ ଜୀବନର ଅଭାବ ଲାଗି ଦାୟୀ କିଏ? ଦାୟୀ ଆମ୍ଭେମାନେ। ଆମ ଓଡ଼ିଆ ଜାତିର ସମୂହ କଲ୍ୟାଣଲାଗି, ତାଙ୍କର ପାରିବାରିକ ଜୀବନର ସୁଖ ବିଧାନ ଲାଗି ଆମେ ଦାୟୀ; କିନ୍ତୁ ଆମେ କେବେ ଏ ବିଷୟ ଚିନ୍ତାକରିଚୁ କି? ଯଦି ଆମେ କରି ନ ଥାଉ - ଆସ, ଆଜି ସମୟ ଅଛି - ଆଜି ଆମେ ଏକାଠି ହେବା, ଆମେ ନିଜ ଜାତିର, ନିଜ ଭାଇ ଭଉଣୀଙ୍କର ଅଧଃପତନର ମାର୍ଗ ବନ୍ଦକରି ତାଙ୍କୁ ସଂଘବଦ୍ଧ କରିବା। ଖାଲି କଲିକତା ପ୍ରବାସୀ ଓଡ଼ିଆଙ୍କ ମଧ୍ୟରେ ଏ ସମ୍ମିଳନୀଟିଏ ଗଢ଼ିରଖିଲେ ଚଳିବ ନାହିଁ; କଲିକତା, ବର୍ମା, ଆସାମ, ପଞ୍ଜାବ, ରାଜପୁତାନା ଆଦି ଉତ୍ତର, ଦକ୍ଷିଣ; ସମୁଦାୟ ଭାରତ ଓ ଅନ୍ୟ ଦେଶର ପ୍ରବାସୀ ଉତ୍କଳୀୟ ଭାଇଭଉଣୀଙ୍କୁ ଏକାଠି କରିବା ଭାର ଆମ ଉପରେ। ଯାପାଇଁ ଜବରଦସ୍ତ ଆନ୍ଦୋଳନ ଚଳାଇବାକୁ ହେବ। କେବଳ ସଭାରେ ବସି କେତୋଟି ପ୍ରସ୍ତାବ ପାଶ୍ କଲେ ହେବ ନାହିଁ।

ପୃଥିବୀର ପ୍ରତ୍ୟେକ ଦେଶରେ ଆଜିକାଲି ଶ୍ରମିକ ଆନ୍ଦୋଳନ ଅତି ପ୍ରବଳ ଭାବେ ହେଉଚି। ଏପରି ସ୍ଥଳେ ଓଡ଼ିଆ ଶ୍ରମିକର ଆଳସ୍ୟ, ସୁପ୍ତି ଏକା ଓଡ଼ିଶା ନୁହେଁ, ଭାରତ ତଥା ଜଗତପାଇଁ ଘୋର ଅପମାନଜନକ। ପ୍ରତ୍ୟେକ ଶ୍ରମିକ ସାଧାରଣ, ସେ ୟୁରୋପ, ଆମେରିକାରେ ଜନ୍ମ ହୋଇଥାଉ, ଭାରତ ବା ଗରିବ ଓଡ଼ିଶାରେ ଜନ୍ମ ହୋଇଥାଉ, ଶ୍ରମିକ ହିସାବରେ ସେମାନେ ସହୋଦର। ସେମାନଙ୍କର ଦୁଃଖ କଷ୍ଟ, ଅଭାବ ଅଭିଯୋଗ, ଅତ୍ୟାଚାର କାହାଣୀ ଏକା।

ପହିଲୁ କହିଚି, ପୃଥିବୀର ପ୍ରଶ୍ନ - ଖାଦ୍ୟ, ବସ୍ତ୍ର ଆଉ ବାସସ୍ଥାନ। ପୁଣି ଜଗତରେ ମଣିଷ ବୋଲାଇବାପାଇଁ ଉପଯୁକ୍ତ ଶିକ୍ଷା, ମଣିଷକୁ ମଣିଷଭଳି ରହିବାଲାଗି ତାର ଜନ୍ମଗତ ଅଧିକାର, ମାନବିକ ସ୍ୱାଧୀନତା। ପୃଥିବୀର ଯେ କୌଣସି ଶକ୍ତି ମଣିଷକୁ ଏଥିରୁ ବଞ୍ଚିତକଲେ, ସେ ତା' ବିରୁଦ୍ଧରେ ନିଶ୍ଚୟ ମୁଣ୍ଡଟେକିବ। ଏହି ମୁଣ୍ଡଟେକାଟା ଏକୁଟିଆ ଲୋକର ହେଲେ ଏହାର ବିଶେଷ କିଛି ମୂଲ୍ୟ ନାହିଁ। କିନ୍ତୁ ଏକାଠି କେତେ ଲୋକର ମିଶିକରି ହେଲେ ଏହା

ଆନ୍ଦୋଳନ ରୂପ ଧାରଣକରି ଜଗତର ଭାଗ୍ୟ ଓଲଟାଇବାପାଇଁ ମଧ୍ୟ କ୍ଷମ। ସତ୍ୟାଗ୍ରହ, ଆନ୍ଦୋଳନ, କୃଷକ ଆନ୍ଦୋଳନ, ବଲ୍‌ସେଭିକ୍ ଆନ୍ଦୋଳନ, ଶ୍ରମିକ ଆନ୍ଦୋଳନ, ଯୁବକ ଆନ୍ଦୋଳନ, ନାରୀ ଆନ୍ଦୋଳନ– ଯାହା କିଛି ଆନ୍ଦୋଳନ ବା ହଲଚଲ, ସବୁର ମୂଳ କାରଣ ମଣିଷ ଉପରେ ମଣିଷର ଅମାନୁଷିକ ଅତ୍ୟାଚାର, ଆଧିପତ୍ୟର ଗର୍ବ। ଯଥେଷ୍ଟ ଖାଇବା ପିନ୍ଧିବା, ଭଲ ଥାନରେ ସୁଖରେ ରହିବା, ନିୟମିତ ପରିଶ୍ରମ କରିବା; ଶିକ୍ଷା, ସାଧନା, ମଣିଷ ମାତ୍ରର ପ୍ରୟୋଜନ। ଏଥିରୁ ମଣିଷକୁ ବଞ୍ଚିତ କଲେ ସେ ଯଦି ତାର ପ୍ରତିକାର କରି ନ ପାରେ, ତା' ହେଲେ ତା'ର ସେପରି ବଞ୍ଚିରହି ଅଯଥା ପୃଥିବୀର ଭାର ବୃଦ୍ଧିକରିବା ଅନ୍ୟାୟ। ଦଳିତ, ଦୁର୍ବଳ, ଭୀରୁର ଏ ପୃଥିବୀରେ ସ୍ଥାନ କମ। ଅତଏବ ଆମକୁ ଚିନ୍ତାକରିବାକୁ ହେବ, ଆମେ କଣ କରିବୁ? ଆମେ ଆଉ କେତେ କାଳ ନିର୍ଜୀବ, ନିରାଶ, ରୋଗଗ୍ରସ୍ତ, ପଙ୍ଗୁ, ବ୍ୟସନର ଦାସ ହୋଇ ପଡ଼ିଥିବୁ? ଆମେ ଆଉ କେତେକାଳ ଧନିମାନଙ୍କର, ମାଲିକମାନଙ୍କର ''ଦେହି ମେ ପଦପଲ୍ଲବମୁଦାରମ୍''ର କୃପାଭିକ୍ଷାକୁ ସମ୍ବଳ କରିଥିବୁ।

ଶ୍ରମିକ ଭାଇମାନେ! ମନେ ରଖ - ଆଭିଜାତ୍ୟ ଉଚ୍ଚାସନରୁ ମୁଁ ତୁମ୍ଭମାନଙ୍କୁ ଏ କଥା କହୁନାହିଁ। ମୁଁ ଜଣେ ନାରୀ। ନାରୀ ଭଳି ଆଜନ୍ମ ଦାସତ୍ୱ, ଆଜନ୍ମ ମୂଲିଆଗିରି ବୋଧହୁଏ କେହି କଦାପି କରିପାରିବ ନାହିଁ। ଗତ ହଜାର ହଜାର ବର୍ଷ ଧରି, ନାରୀ ପ୍ରାୟ ସବୁ ଦେଶରେ ଏବଂ, ବିଶେଷତଃ ଭାରତବର୍ଷରେ ଅଶେଷ ଲାଞ୍ଛନାର ପୁଞ୍ଜୀଭୂତ ନିଗ୍ରହ, ଅକଥ୍ୟ ଅତ୍ୟାଚାର, ଦୁଃସହ ପୀଡ଼ା, ଏ ଆଖି ଲୁହ ସେ ଆଖିରେ ପୋଛି, ପେଟ ସକାଶେ ଦେହ ବିକି, ଦାସତ୍ୱ କରି କରି ଜାତିର ବଂଶଧାରା ରକ୍ଷାକରି ଆସିଅଛି, ନିଜର ଅମୂଲ୍ୟ ରକ୍ତ ଢାଳି। କିନ୍ତୁ ପୃଥିବୀ ତାର ମୂଲ୍ୟ ଦେଇନାହିଁ, ଦେବାକୁ ପ୍ରସ୍ତୁତ ନୁହେଁ, ଦେବ କି ନାହିଁ, ଜଣା ନାହିଁ। ଅତଏବ ପରାଧୀନ, ବନ୍ଦୀ, ଦାସ, ଶ୍ରମିକ ହିସାବରେ ଜଣେ ନାରୀ ହୃଦୟର ଯେ ବିଶିଷ୍ଟ ଗଭୀର ସହାନୁଭୂତି ତା' ମୋଠାରୁ ଆପଣମାନଙ୍କର ପ୍ରାପ୍ୟ। ଶ୍ରମିକ-ସମସ୍ୟା ସହିତ ପୃଥିବୀର ଅର୍ଦ୍ଧାଧିକ ମାନବଜାତି ଯେ ନାରୀ, ତାର ଭାଗ୍ୟ ଯେ ଜଟିଳ ଭାବେ ଜଡ଼ିତ, ଏ ଯୁଗରେ ଆଉ କାହାରିକୁ ତାହା ବୁଝାଇବାକୁ ହେବ ନାହିଁ। ପୁରୁଷ ଜାତି ମଧ୍ୟରେ କେତେକ ସଂଖ୍ୟାରେ ବା କୁଲି, ଦାସ, ମଜୁରିଆ, ହରିଜନ, ଚଣ୍ଡାଳ, ପଞ୍ଚମବର୍ଣ୍ଣୀ, ଅସ୍ପୃଶ୍ୟ ଥାଇ ପାରନ୍ତି; କିନ୍ତୁ ଅତି ଅଳ୍ପ କେତୋଟି ଭାଗ୍ୟବତୀଙ୍କୁ ଛାଡ଼ିଦେଲେ ନାରୀ ଦେହଧାରୀ ଜୀବ ସବୁଗୁଡ଼ିକ ଅତି ନିମ୍ନଶ୍ରେଣୀର କୁଲିମୂଲିଆ। ତାଙ୍କ ରକ୍ତବୁହା ପରିଶ୍ରମର ସମ୍ମାନକରିବା ଦୂରେଥାଉ, ତାଙ୍କରି ଗର୍ଭଜାତ ପୁରୁଷ ତାଙ୍କୁ ସର୍ବଦା ଅନ୍ୟାୟ ଅତ୍ୟାଚାରରେ ଏପରି ପଦଦଳିତକରି ରଖିଛନ୍ତି ଯେ, ଅନ୍ୟାୟର ପ୍ରତିକାର କରିବା ଦୂରେ ଥାଉ, ତାଙ୍କ ପ୍ରତି ଯେ ଅନ୍ୟାୟ ହେଉଚି, ଏ ମଧ୍ୟ ତାଙ୍କର ବୋଧଗମ୍ୟ ନୁହେଁ। ଠିକ୍ ଓଡ଼ିଆ ଶ୍ରମିକର ଅବସ୍ଥା ସେହିପରି। ଅନ୍ୟାୟ ଅତ୍ୟାଚାରର ବୋଧଜ୍ଞାନ ଯାହାର ନାହିଁ, ତାକୁ ଅନ୍ୟାୟ ଅତ୍ୟାଚାରର ପ୍ରତିକାରଲାଗି ପ୍ରବର୍ତ୍ତାଇବା ବାତୁଳତା ମାତ୍ର। ଶୋଇଲାକୁ ଉଠେଇ ପାରାଯାଏ - ମଲାକୁ ଚେତେଇବ କିଏ?

ଏ ସବୁର ପ୍ରତ୍ୟେକ ଶବ୍ଦ କେବଳ ଜିଭରୁ ନୁହେଁ, ମୋର ଅନ୍ତରାତ୍ମାରୁ ଉଚ୍ଚାରିତ। ଶ୍ରମିକ ପ୍ରାଣର ନୈରାଶ୍ୟ, ଦରିଦ୍ର ପରପଦାନତର କ୍ଲୈବ୍ୟ, ଦୀନତା, ବ୍ୟଥା, ବ୍ୟାକୁଳତାର ଯେ ଅଶବ୍ଦ ରୋଦନ, ସେ କେବଳ ତାର ଅନ୍ତରାତ୍ମାକୁ ଘାରୁ ନାହିଁ; ଭାଇ, ବିଶ୍ୱାତ୍ମାକୁ କନ୍ଦେଇଲାଣି। ଏଇ ବିଶ୍ୱାତ୍ମାର କ୍ରନ୍ଦନ, ଅସଂଖ୍ୟ ଭଙ୍ଗା କୁଡ଼ିଆ, ଛିଣ୍ଡା ଶେଯ ଉପରେ ଖଣ୍ଡିଆକନାସମ୍ବଳ, ଭୋକବ୍ୟାକୁଳ ପରମପିତାର କୋଟି କୋଟି ସନ୍ତାନର ଅଶ୍ରୁ, ସେହି ପରମାତ୍ମାଙ୍କୁ ବ୍ୟଥିତ କଲାଣି। ଆଉ ତାରି ଫଳ ସ୍ୱରୂପ ଜଗତରେ ଆଜିକାଲି ଏତେ ଆନ୍ଦୋଳନ, ଏତେ ଲେନିନ, ଗାନ୍ଧିର ଜନ୍ମ, ଏତେ ରକ୍ତଧାର ବୁହାଚାଲିଛି।

ଓଡ଼ିଆ ଶ୍ରମିକ! ଏଥିରେ ତୁମର ବଡ଼ ଭାଗ୍ୟ, ତୁମେ ଯେ ଶହ ଶହ ବର୍ଷ ଦୈବୀ, ପୁଣି ମାନୁଷୀ, ସବୁ ପ୍ରକାର ବିପତ୍ତିରେ ଅସ୍ଥିକଙ୍କାଳନସାର। କିନ୍ତୁ ଏଇ ମାଟିର ମଣିଷ ଭିତରେ ମହାନ୍ ଆତ୍ମା ଗୁପ୍ତଅଛି - ଏ ନିଶ୍ଚୟ ଏ ଜାତିର ପ୍ରାଣକୁ ଉଦ୍‌ବୁଦ୍ଧ କରିବ। କେହି କୁଲୀ କହି ଟାପରା କରିଛନ୍ତି, କେହି ମେଣ୍ଢା କହି ଉପହାସ କରିଛନ୍ତି, କେହି ଘୃଣାରେ ନାକଟେକି ଦୂର କରିଦେଇଛନ୍ତି ବୋଲି କଦାପି ହତାଶ ହୁଅ ନାହିଁ। ଦୁର୍ବଳ ଭୀରୁ! ଅଧିକାର ତୁମ୍ଭମାନଙ୍କର। ତୁମ୍ଭେମାନେ ଯେ ଧରଣୀମାତାର ମାଟିର ସନ୍ତାନ, ତୁମ୍ଭମାନଙ୍କର ଦାବୀକୁ ଉପେକ୍ଷା କରିବା ଭଳି କ୍ଷମତା ପୃଥିବୀର ନାହିଁ। କିନ୍ତୁ ତୁମ୍ଭେମାନେ ଦାବୀ କରିଜାଣିଲେ ତ? ଯଦି ତୁମ୍ଭେମାନେ ମୂକ, ବଧୀର, ସର୍ବପ୍ରକାର ଅପମାନ ଅସମ୍ମାନକୁ ମୁଣ୍ଡରେ ମୁଣ୍ଡାଇ ନେବାକୁ ସଦା ପ୍ରସ୍ତୁତ ହୋଇ ରହିଥାଅ ଏବଂ ତୁମର ମାଲିକ, ତୁମର ପ୍ରଭୁ, ତୁମର ଅଧିପତିଙ୍କୁ ଈଶ୍ୱରଙ୍କର ଅବତାର, ନରଦେହଧାରୀ ଦେବତା ଭାବି ପୂଜା କରିବାକୁ ମନ ବଳାଇଥାଅ, ତା' ହେଲେ ତୁମ୍ଭେମାନେ ଅତି କରୁଣାର ପାତ୍ର; ଭାଗବାନ ମଧ୍ୟ ତୁମ୍ଭମାନଙ୍କର ଗୁହାରି ଶୁଣିବାକୁ ପ୍ରସ୍ତୁତ ହେବେ ନାହିଁ। କଥାରେ ଅଛି, ''ଆପେ ନ ମଲେ ସ୍ୱର୍ଗେ ନ ଯାଇ' ନିଜ ଆତ୍ମବଳରେ ଯାହା ନ ସାଧି ପାରି. ଅନ୍ୟ କେହି ତାହା ତୁମ ପାଇଁ କରିଦେବେ ନାହିଁ। ଅତଏବ ତୁମେ -

(କ) ଅକଥ୍ୟ ପରିଶ୍ରମ କରୁଚ

(ଖ) ଅଳ୍ପ ମଜୁରୀ ପାଉଚ

(ଗ) ପଚା, ସଢ଼ା, ଦୁର୍ଗନ୍ଧ ଓ ଅନ୍ଧାରୁଆ ସ୍ଥାନରେ ରହିଛ

(ଘ) ତୁମେ ନାନାବିଧ ଅତ୍ୟାଚାରରେ ପୀଡ଼ିତ

(ଙ) ତରିମରି ଲାଞ୍ଚ ରିସ୍‌ପତ୍ ଦେଇ ସୁଦ୍ଧା ଛାଡ଼ ପାଉ ନାହିଁ

(ଚ) ନାନାଦି ଅସତ୍ ବ୍ୟସନରେ ଲିପ୍ତ

(ଛ) ପାରିବାରିକ ସୁଖ ଶାନ୍ତି ତୁମ ଭାଗ୍ୟରେ ନାହିଁ

କିନ୍ତୁ ତୁମେ ନିର୍ବାକ ନିଷ୍ପନ୍ଦଭାବେ ସହୁଚ - ପାଷାଣଂ ବଳି ସହୁଚ; ସତେ ଯେପରି ସହିବାପାଇଁ ତୁମେ ଜୀବିତ ଅଛ। କିନ୍ତୁ ଭାଇ, ଏଡ଼ିକି ଅଧିକ ସହିବାଟା ତୁମର ଭଲ ଗୁଣ ନୁହେଁ। ଏଥର ତୁମେ ଅସହିଷ୍ଣୁ ହୁଅ। ପ୍ର' ଅନ୍ୟାୟର ପ୍ରତିକାରପାଇଁ ବଦ୍ଧପରିକର ହୁଅ।

ପ୍ରତ୍ୟେକ ଅଭାବ ଅଭିଯୋଗର ପରିପୂରଣପାଇଁ ଚେଷ୍ଟିତହୁଅ। ତୁମେ ନିଜର ଅମୂଲ୍ୟ ସ୍ୱାସ୍ଥ୍ୟ, ଶିକ୍ଷା ଦୀକ୍ଷା ଆଡ଼କୁ ମନ ସଂଯୋଗକର। ତାସ୍, ପଶା, ନିଶା, ବେଶ୍ୟାର ଦାସତ୍ୱ ତ୍ୟାଗକର। ସସ୍ତ୍ରୀକ ସସନ୍ତାନ ଜୀବନ ନିର୍ବାହପାଇଁ ଦୃଢ଼ପ୍ରତିଜ୍ଞ ହୁଏ। ଜାଣେ, ତୁମର ରୋଜଗାର ଅଳ୍ପ; କିନ୍ତୁ ଯେଉଁମାନେ ତୁମର ହାଡ଼ମାଂସ ପେସା ଧନରେ, ଉଚ୍ଚ ଉଚ୍ଚ ମହଲାରେ ବିଜୁଳିମତୀ, ବିଜୁଳିପଙ୍ଖା ତଳେ ଆଳସ୍ୟ ଅଯସରେ ସମୟ ହେଳାରେ କଟାଇ; ମୋଟର, ଜାହାଜ, ରେଲ, ଏରୋପ୍ଲେନରେ ବୁଲି ନିତି ସିନେମା ଥିଏଟରର ଆନନ୍ଦ ଲୁଟି ସୁଦ୍ଧା ଶ୍ରାନ୍ତି ଅପନୋଦନ କରିପାରୁ ନାହାନ୍ତି, ତୁମେ ତାଙ୍କଠାରୁ ତୁମ ହକ୍ ଆଦାୟକର। ସେମାନେ ନିଜର ଭଲ ପାଇଁ, ତୁମର ଭଲପାଇଁ ଏବଂ ଦେଶ ଦୁନିଆର ଭଲପାଇଁ ନିଶ୍ଚୟ ତୁମର ଗୁହାରୀ ଶୁଣିବାକୁ ବାଧହେବେ। ତୁମେ ଏକତାର ମୂଲ୍ୟ ଶିକ୍ଷାକର। ସଂଘବଦ୍ଧ ଭାବେ ନିଜର ସ୍ୱାର୍ଥକୁ ଚିନ୍ତାକର। ତୁମେ ସଂଗଠିତ ନ ହେଲେ ଜାତିର ଯେ ସର୍ବନାଶ ହେବ। ନିଜ ମାତୃଭୂମିର ମାନରକ୍ଷା ଯେ ତୁମରି ହାତରେ। ନିଖିଳ ବ୍ରିଟିଶ୍ ଭାରତରୁ ଓଡ଼ିଆ କୁଲୀର, ଓଡ଼ିଆ ଶ୍ରମିକର ଅପମାନ-କାଳିମା ଦୂର କରିବାର ଭାର କଲିକତା ପ୍ରବାସୀ ଓଡ଼ିଆ ଭାଇମାନେ, ତୁମରି ହାତରେ ଅଛି। ଏଥିରେ ପଛଘୁଞ୍ଚା ଦିଅ ନାହିଁ। ସାରା ଦେଶଟା ତୁମ ଆଡ଼କୁ ଆଗ୍ରହ ସନ୍ତୁଷ୍ଟ ନୟନରେ ଚାହିଁଚି। ଭଲକରି ଦେଖିନିଅ। ତୁମ ମଧ୍ୟରେ ଜାଗରଣ, ଏକ ମହା ଜାଗରଣ। ଏହା ନିଖିଳ ଉତ୍କଳ ଜାତିର ଶିରା ପ୍ରଶିରାରେ ପ୍ରାଣଧାରା ସଞ୍ଚାର କରିଦେବ।

ଆଜି ବିଂଶ ଶତାବ୍ଦୀରେ ରୁଷ, ତରଷ, ଜାପାନ, ୟୁରୋପ, ଆମେରିକା ପୂର୍ଣ୍ଣ ଜାଗ୍ରତ ହେଲା ବେଳକୁ, ଏ ଭାରତ ମଧ ଚେଇଁଉଠିଲା ସମୟକୁ, ପ୍ରବାସୀ ଓଡ଼ିଆ ଭାଇ ଶ୍ରମିକ! ତୁମେ କଣ ନିଦରେ ଶୋଇଥିବ? ନା ତୁମେ ଜାଗ, ଉଠ।

ପ୍ରବାସୀ ଉତ୍କଳୀୟ ଛାତ୍ରବୃନ୍ଦ! ତୁମର ମଧ ଦେଶପାଇଁ କିଛି ଭଣା କର୍ତ୍ତବ୍ୟ ନୁହେଁ। ତୁମ୍ଭେମାନେ କର୍ମବୀର ମଧୁସୂଦନଙ୍କର ଛାତ୍ର ଜୀବନର ଆଦର୍ଶ ଅନୁକରଣ କର। ମାତୃଭୂମି ଆଉ ମାତୃଭାଷା ଏ ଦୁଇଟିର ଟେକକୁ ମୁଣ୍ଡରେ ମଥା ତିଳକ ରୂପେ ଘେନିଥାଅ। ତୁମ୍ଭେମାନେ ଦେଶର ଭବିଷ୍ୟତ୍ ଆଶାଭରସା। ତୁମେ ଯୁଆଡ଼େ ଯାଅ, ଓଡ଼ିଆ ଜାତିର ଟେକ, ଓଡ଼ିଆର ଗୌରବକୁ ଆପଣା ସହିତ ବହି ନେଇଯାଅ। ତୁମେ ଓଡ଼ିଆ ବୋଲି ନିଜର ପରିଚୟ ଦେବାକୁ କଦାପି କୁଣ୍ଠିତ ହୁଅ ନାହିଁ। ତୁମେ ଜଗନ୍ନାଥଙ୍କ ଦେଶର ସନ୍ତାନ। ସମଗ୍ର ଭାରତରେ ତୁମର ନିଜର ଗୋଟିଏ ସମ୍ମାନିତ ସ୍ଥାନଅଛି। ଅତଏବ ତୁମର ମାତୃଭୂମି ପ୍ରେମରେ ହିଁ ଜାତିର ଜୀବନ।

ଆଉ ପ୍ରବାସୀ ଉତ୍କଳୀୟ ବ୍ୟବସାୟୀ, ଧନୀ, ମାନୀ, ଜ୍ଞାନୀ, ଅଭିଜାତବର୍ଗ! ତୁମ୍ଭେମାନେ ସଂଖ୍ୟାରେ ଅଳ୍ପ ହେଲେ ସୁଦ୍ଧା ବିଦେଶରେ ଉତ୍କଳର ଗୌରବବାନା ଟେକିବା ତୁମରି ପ୍ରଧାନ କର୍ତ୍ତବ୍ୟ। ତୁମେ କେବଳ ଜାତିର ସନ୍ତାନ ନୁହଁ, ତୁମେ ଜାତୀୟ ସମ୍ମାନର ଗନ୍ତାଘରିଆ। ଅନ୍ୟ ଜାତି ନିକଟରେ ଓଡ଼ିଆକୁ ଓଡ଼ିଆ ବୋଲି ପରିଚିତ କରାଇବା ଭାର ତ ତୁମ୍ଭମାନଙ୍କ ଉପରେ। ତୁମେ ଯଦି ନିଜକୁ ଓଡ଼ିଆ ବୋଲି ଜଗତକୁ ଜଣାଇବାକୁ କୁଣ୍ଠିତହୁଅ, କି ନିଜ ଜାତିର ଦରିଦ୍ର ସନ୍ତାନଙ୍କୁ ଅବଜ୍ଞା ଦୃଷ୍ଟିରେ ଦେଖ, ତେବେ ଜାଣିଥାଅ, ସେହିମାନଙ୍କର

ଲାଞ୍ଛନାରେ ପୃଥିବୀ ନିକଟରେ ତୁମ ମୁଣ୍ଡ ତଳକୁ ହୋଇଯିବ। ବିଦେଶୀ ନିକଟରେ ତୁମେ ସର୍ବଦା ଚୋର ଭଳି ଆତ୍ମପରିଚୟ ଲାଗି ମୌନରହିବ। ବିଦେଶରେ ତୁମର ଗରିବ ଶ୍ରମିକ ଭାଇଭଉଣୀଙ୍କର ସ୍ୱାର୍ଥ ତୁମଠାରୁ ଭିନ୍ନ ନୁହେଁ। ତାଙ୍କର ସ୍ୱାର୍ଥ ଓ ସମ୍ମାନ ରକ୍ଷାରେ ହିଁ ତୁମର ସ୍ୱାର୍ଥ ଓ ସମ୍ମାନ ରକ୍ଷିତହେବ। ତାଙ୍କର ହିତଲାଗି ସର୍ବଦା ପ୍ରସ୍ତୁତ ରହିବା ତୁମର କର୍ତ୍ତବ୍ୟ। ତାଙ୍କର ଶିକ୍ଷା ଦୀକ୍ଷା, ସ୍ୱାସ୍ଥ୍ୟ, ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ତୁମର ବରାବର ଦୃଷ୍ଟିରହିବା ଦରକାର। ତାଙ୍କ ମାନକୁ ନିଜର ମାନ, ତାଙ୍କ ଅପମାନକୁ ନିଜର ଅପମାନ ଭାବିନେବା ଏବଂ ତଦନୁସାରେ କାର୍ଯ୍ୟକରିବା ତୁମର ଉଚିତ୍। ଦେହର ଗୋଟିଏ ସ୍ଥାନରେ ବେଦନା ହେଲେ ସାରା ଦେହକୁ ବାଧେ ନାହିଁ କି ?

ଶ୍ରମିକଙ୍କୁ ଛାଡ଼ିଦେଲେ ବ୍ୟବସାୟ କ୍ଷେତ୍ରରେ ଓଡ଼ିଆଙ୍କର କୃତିତ୍ୱ ବିଶେଷ କିଛି ନାହିଁ। ଖାସ ଓଡ଼ିଶାରେ ମଧ ଧନୀ, କୋଟିପତି ବା ଲକ୍ଷପତି ବିରଳ। ଦେଶର ସମସ୍ତ ବ୍ୟବସାୟ ପ୍ରାୟ ବିଦେଶୀଙ୍କ ହାତରେ। ସେ ବୋଇତ ବଣିଜକରି ଦୂର ବିଦେଶରୁ ବିଜୟ ଲକ୍ଷ୍ମୀ, ଧନମାଣିକରେ ଭଣ୍ଡାର ପୂର୍ଣ୍ଣକରିବା ବର୍ତ୍ତମାନ ଓଡ଼ିଆ ଜାତି ନିକଟରେ ଅତୀତର କେବଳ ଗୋଟିଏ ସୁନ୍ଦର ସ୍ୱପ୍ନ। ଓଡ଼ିଆ ସାଧବବୋହୂଙ୍କ ବୋଇତ ବନ୍ଦାଣ କଥା ଗାଉଁଲୀ ଗୀତ ମଧରେ ମାତ୍ର ସୀମାବଦ୍ଧ। ମୂଳଧନ ଅଭାବରେ ଏବଂ ବ୍ୟବସାୟ କରିବାଲାଗି ଯେତେଗୁଡ଼ିଏ ଗୁଣର ଆବଶ୍ୟକ, ସେହି ସବୁର ଅଭାବରେ ଓଡ଼ିଆ ଜାତିର ବ୍ୟବସାୟ କ୍ଷେତ୍ରରେ, ବ୍ୟାଙ୍କିଙ୍ଗ୍ କରିବାରେ, ଧନପତି ହେବାରେ ଏକାବେଳେ ସ୍ଥାନ ନାହିଁ। ବ୍ୟବସାୟ ବାଣିଜ୍ୟ ବିନା ଜାତିର ଶ୍ରୀ ବୃଦ୍ଧି କୁଆଡୁ ହେବ ? ଆମରି ଦେଶକୁ ମାରୱାଡ଼ୀ ପୁଅ ଲୋଟାକମ୍ବଳସମ୍ବଳ ହୋଇ ଆସି ବର୍ଷ କେତେଟାରେ ଲକ୍ଷପତି ହେବା କଥା କିଏ ନ ଜାଣେ ? ଓଡ଼ିଆଙ୍କ ଦେହରେ ସେ ନିରଳସ ଉଦ୍ୟମ, ସେ ଅଦ୍ୟମ କାର୍ଯ୍ୟସ୍ପୃହା ମୋଟେ ନାହିଁ। ଆଜିକପାଇଁ ଭାତ ଥିଲେ, କାଲିପାଇଁ ଚିନ୍ତାଶୂନ୍ୟ ଭାବେ ଶୋଇବାଲାଗି ଓଡ଼ିଆ ଖୁବ୍ ପାରେ। ଏପରି ଅତି ଅଳ୍ପକେ ସନ୍ତୁଷ୍ଟ, ସାଗପେଜରେ ପେଟପୂରାଇ, ସଂସାର ବୈରାଗ୍ୟ ଦେଖାଇ ବସିଥିଲେ, ଆଜିକାଲିର ଧନୀଜାତିମାନଙ୍କ ଦ୍ୱାରେ ଯେ ଗୋଲାମ ହେବାକୁ ହେବ, ଏହା ସ୍ୱତଃସିଦ୍ଧ। ସମବାୟ ବ୍ୟାଙ୍କିଙ୍ଗ (Co-operative Banking) ସିଷ୍ଟିମ୍‌ର ଉପକାରିତା ଆମେ ଅତି କଣା ବୁଝୁ। ଆମ ଭିତରେ ବାଣିଜ୍ୟ କୌଶଳ ଓ ନୀତି ମୋଟେ ନାହିଁ। ସମବାୟ ନୀତିରେ ପରସ୍ପର ମିଳି ବାଣିଜ୍ୟ ବ୍ୟବସାୟ କରିବା ଦୂରେ ଥାଉ, କେବଳ ଜଣେ ଜଣକର ଛିଦ୍ରଖୋଜିବା ଆମର ଚରିତ୍ରର ପ୍ରଧାନ ଗୁଣ। ଗୋଟିଏ ମାରୱାଡ଼ୀ କି ଗୋଟିଏ ବଙ୍ଗାଳୀ ନିଃସ୍ୱ ହୋଇ ପରଦେଶ ଗଲେ ସୁଦ୍ଧା ତାଙ୍କ ଜାତିଭାଇ ଅପରିଚିତ ଲୋକେ ମଧ ସ୍ୱତଃ ତାର ସାହାଯ୍ୟପାଇଁ ଦଉଡ଼ିଯିବେ। କିନ୍ତୁ ଆମ ମଧରେ ସେ ଗୁଣ ମୋଟେ ନାହିଁ। ''ବାଣିଜ୍ୟେ ବସତେ ଲକ୍ଷ୍ମୀ, ତଦର୍ଦ୍ଧଂ କୃଷିକର୍ମଣି।'' ଏହା ଆମେ ଭୁଲି ଯାଇଛୁ। କେବଳ ପରାଧୀନତା, ଚାକିରୀ, ମଜୁରୀ, ଏଇଥିପାଇଁ ଆମେ ଲାଳାୟିତ। ଏ ହୀନ ମନୋଭାବ ଦୂରକରି, ବାଣିଜ୍ୟ ଦିଗକୁ ମନ ବଳାଇବା ଆମର ଏକାନ୍ତ କର୍ତ୍ତବ୍ୟ। ଆଜି ସୁଦ୍ଧା ଓଡ଼ିଶାରେ ଏପରି ପଦାର୍ଥମାନ ଅଛି, ଯାହା

ଘେନି ବିଦେଶୀ ଲାଭକରୁଚି, ଆଉ ଆମ ମଧ୍ୟରେ ମେଳ ନ ଥିବାରୁ ଆମେ ଭୋକରେ ମରୁଚୁ। ପୁରୀ, ସତ୍ୟବାଦୀର ନଡ଼ିଆ ପଇସାକୁ ଗୋଟିଏ କିଣି ମାରୱାଡ଼ୀ ମହାଜନ ଦିଲ୍ଲୀରେ ଟ. (ତିନିଅଣା, ଚାରିଅଣା)ରେ ବିକୁଚି। ସେ ଫଳ କଣ କେହି ଓଡ଼ିଆ ପର ଦେଶରେ ବିକି ନ ପାରେ? ଚିଲିକାର ମାଛ ବଙ୍ଗାଳୀମାନେ କଲିକତା ଆଦି ସ୍ଥାନକୁ ରପ୍ତାନି କରୁଛନ୍ତି। ରୂପାକାମ, ପିତଳ କାମ, ବାଲେଶ୍ୱରୀ କଂସାବାସନ, କଟକୀ ଶିଙ୍ଗକାମ, ପୁଣି ଗୋଟିଏ ପ୍ରଧାନ ସାର ଖାଦ୍ୟ ବସ୍ତୁ ହାତକୁଟା ଚାଉଳ, ଯାହା କି ମିଲ୍ ଚାଉଳଠାରୁ ଶ୍ରେଷ୍ଠ, ବେରୀବେରୀ ରୋଗ ନାଶକ ଏବଂ ଡାକ୍ତରମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ - ଖାଣ୍ଟି ସୋରିଷ ତେଲ, ଏ ସବୁର ବ୍ୟବସାୟ ଏବଂ ଏହିପରି ନାନା ରକମ ଖାଦ୍ୟ ପଦାର୍ଥର ବା ଧାତୁ ପଦାର୍ଥର ବ୍ୟବସାୟ ସମବାୟ ନୀତିରେ କଣ କରିହୁଅନ୍ତା ନାହିଁ? ତୁମ ଦେଶକୁ ବିଦେଶୀ ଆସି ଧନ ବହିନେବେ, ତୁମେ ଯିବ ତାଙ୍କ ଦେଶକୁ କେବଳ ମୂଲଲାଗି? ଭାରତର ଅନ୍ୟାନ୍ୟ ଜାଗାର ବିଶିଷ୍ଟ ପଦାର୍ଥମାନ ଯେପରି କି କାଶ୍ମୀର ଦେଶର ରେଶମ ଓ ଗରମ ଲୁଗା, ଶାଲ, କାଶ୍ମୀରୀ କେଶର, ସୁଗନ୍ଧୀ, କାବୁଲୀ ଫଳ, ବର୍ମାର ବାଉଁଶର ରଂଗପେଡ଼ି, ପାନବଟା ଆଦି ସୁନ୍ଦର କାମମାନ, ମରାଦାବାଦୀ ବାସନ, ଶଙ୍ଖମର୍ମର ପଥରର ପଦାର୍ଥ - ଏହିପରି ନାନା କ୍ଷୁଦ୍ର ବୃହତ୍ ପଦାର୍ଥ ଘେନି ଭିନ୍ନ ଭିନ୍ନ ଦେଶ ଲୋକେ ଆମ ଦେଶରେ ବିକି ଦି'ପଇସା କରୁଛନ୍ତି, ଆମେ ସେ ସବୁ କ୍ଷେତ୍ରରେ କଣ କରୁଚୁ? ଆମକୁ ବ୍ୟବସାୟର ଭିନ୍ନ ଭିନ୍ନ କ୍ଷେତ୍ର ଖୋଜି ମୂଳଧନ ଅଭାବରେ ସମବାୟ ନୀତି ବା ପାର୍ଟନରସିପ୍ (Partnership) ସହଯୋଗ ସହକାରେ କାର୍ଯ୍ୟ କରିବାକୁ ହେବ। ଜାତୀୟ ଧନ ବୃଦ୍ଧି ନ ହେଲେ ଅସଂଖ୍ୟ ମଜୁରିଆ ଦ୍ୱାରା କୌଣସି ବିଶିଷ୍ଟ ଅବସ୍ଥାରେ ପହଞ୍ଚିବା ଅସମ୍ଭବ। ଓଡ଼ିଆ ଜାତି କେବଳ ଯେପରି ଶ୍ରମିକ ସମଷ୍ଟି ନ ହୋଇପଡ଼େ।

ଧନିକ ଓ ଶ୍ରମିକ ସମସ୍ୟା ସମ୍ବନ୍ଧୀୟ ପୃଥିବୀବ୍ୟାପୀ ବିଶାଳ ପ୍ରଶ୍ନର ଉତ୍ତର ଦେବା, କି ସମାଲୋଚନା କିରବାର ଅବସର ଏ ନୁହେଁ, ତଥାପି ଏତିକି କହି ରଖିବା ଉଚିତ୍ ଯେ, ଉତ୍କଳର ସମସ୍ୟା ଧନୀର ସମସ୍ୟା ନୁହେଁ, ଉତ୍କଳର ସମସ୍ୟାହିଁ ଦରିଦ୍ର ମଜୁରିଆର ସମସ୍ୟା। କେତେକାଂଶରେ ଅଖିଳ ଭାରତର ସମସ୍ୟା ମଧ୍ୟ ତାହା ହିଁ। ଅତଏବ ଭାରତ ସନ୍ତାନ ଉତ୍କଳୀଙ୍କୁ ଘୃଣାଦୃଷ୍ଟିରେ କେହି ଯଦି ଅନ୍ୟ ଭାରତୀୟ ଦେଖୁଥାଏ, ତେବେ ତାହା ତାହାର ବିଷମ ଭୁଲ୍; କାରଣ ସମସ୍ତେ ଏକ ନୌକାରେ। ବୁଡ଼ିଲେ ସମସ୍ତେ ବୁଡ଼ିବେ, ଉଠିଲେ ସମସ୍ତେ ଉଠିବେ। ଅତଏବ ଓଡ଼ିଆର ଅପମାନ ଏକା ଓଡ଼ିଶାର ଅପମାନ ନୁହେଁ, ସମୁଦାୟ ଭାରତୀୟ ଜାତିର। ଆମେ ସମଗ୍ର ଭାରତଠାରୁ ଭିନ୍ନ ନୋହୁ। ଭାରତୀୟ ପରିସ୍ଥିତିରୁ ଦୁଃଖ, ଲାଞ୍ଛନା, ଅପମାନ, ହତାଦର, ଦାରିଦ୍ର୍ୟରେ ଆମେ ପୂର୍ଣ୍ଣତଃ ସହଭାଗୀ। ପ୍ରବାସୀ ଉତ୍କଳୀୟ! ତୁମେ ଉତ୍କଳରୁ ବିଚ୍ଛିନ୍ନ ହୋଇଥିଲେ ସୁଦ୍ଧା ଆସାମୁଦ୍ରିହିମାଚଳ ତୁମର ଜନ୍ମଭୂମି, ତୁମର ମାତୃଭୂମି। ତୁମେ ପ୍ରତ୍ୟେକ ସ୍ଥାନରେ ମାତୃଭୂମିର ଗୌରବକୁ ଭାରତୀୟ ଭାବେ ରକ୍ଷାକରିବାକୁ ଶିକ୍ଷା କର। ଭାରତ ଗୋଟିଏ ଜାତି ଭାବେ ଉତ୍‌ଥିତ ହେଲାବେଳକୁ ତୁମେ ସେଥିରେ ପ୍ରକୃତ ଭାରତୀୟ ରୂପେ ଆପଣା

ଆପଣା ସ୍ଥାନ ଦଖଲକର। ତୁମେ ନିଜର ଓଡ଼ିଆ ସ୍ୱରୂପଟି ମାତ୍ର ଚିନ୍ତାକର ନାହିଁ, ବୃହତ୍ତର ଭାରତୀୟ ସ୍ୱରୂପକୁ ସଦା ଆଖି ଆଗରେ ଥୋଇ, ନିଜ ଜାତିର ବୈଶିଷ୍ଟ୍ୟ ଓ ପ୍ରତିଷ୍ଠା ପ୍ରତିପାଦନକର। ତାହାହେଲେ ଭାରତର ଅନ୍ୟାନ୍ୟ ଜାତି (?) ବଙ୍ଗାଳୀ, ମାରୱାଡ଼ି, ହିନ୍ଦୁସ୍ଥାନୀ, ତେଲୁଗୁ ଆଦି କେହି ତୁମକୁ ହତମାନ୍ୟ କରିପାରିବେ ନାହିଁ। ନିଜ ଗୋଡ଼ରେ ନିଜେ କୁରାଢ଼ିମାରିବା, କି ନିଜ ହାତକୁ ନିଜେ କାମୁଡ଼ିବାକୁ କିଏ କେବେ ଚାହିଁବ କି? ଭାରତର ବିଭିନ୍ନ ସ୍ଥାନରେ ଥିବାରୁ, ପ୍ରବାସୀ ଉତ୍କଳୀୟ! ତୁମର ଅନ୍ତର୍ଭାରତୀୟ ହେବାର ମହାନ୍ ସୁଯୋଗ ସ୍ୱତଃ ଲାଭହୋଇଛି। ଏ ସୁଯୋଗରୁ ନିଜକୁ ବଞ୍ଚିତକର ନାହିଁ। ଅନ୍ତର୍ଭାରତୀୟ ହେବା ଲାଗି ଯେ ଯେ ଗୁଣ ଆବଶ୍ୟକ, ତାହାର ସାଧନାରେ ଲାଗିପଡ଼। ତୁମ ଭିତରେ ଶିକ୍ଷା, ବିଶେଷତଃ ରାଷ୍ଟ୍ରଭାଷା ହିନ୍ଦୀ ଶିକ୍ଷାର ବହୁଳ ପ୍ରଚାରହେବା ବାଞ୍ଛନୀୟ। ହିନ୍ଦୀ, ଇଂରାଜୀ ଏ ଦୁଇ ଭାଷାରେ ଭଲ ଦଖଲଥିଲେ, ଭାରତ ତଥା ପୃଥିବୀର ଯେ କୌଣସି ସ୍ଥାନରେ ଚଳପ୍ରଚଳପାଇଁ କଷ୍ଟ ହୁଏ ନାହିଁ। ପ୍ରବାସୀ ଜାତିର ଅନ୍ତତଃ ଏ ଦୁଇ ଭାଷା ଜାଣିବା ବଡ଼ ପ୍ରୟୋଜନ। ଯେଉଁ ଅସଂଖ୍ୟ ଶ୍ରମିକ ଶିକ୍ଷାଦୀକ୍ଷା, ଧନମାନବିହୀନ ହୋଇ ହଠାତ୍ ଦେଶରୁ ବିଦେଶକୁ ଆସୁଛନ୍ତି, ସେମାନଙ୍କର ଶିକ୍ଷା ଓ ସହାୟତାଲାଗି ଓଡ଼ିଆବହୁଳ ସ୍ଥାନମାନଙ୍କରେ ଅନୁଷ୍ଠାନମାନ ସଂସ୍ଥାପିତ ହେବା ଉଚିତ୍। ଏ ସମ୍ମିଳନୀର ଏ ଦିଗକୁ ବିଶେଷ ଲକ୍ଷ୍ୟଥିବା ଦରକାର। କଲିକତା, କାଳିମାଟି, ରେଙ୍ଗୁନ, ଦିଲ୍ଲୀ ଆଦି ବିଶିଷ୍ଟ ସ୍ଥାନମାନଙ୍କରେ ଓଡ଼ିଆ ଅଫିସ ବା ସଂଘ ସୃଷ୍ଟିକରି ବିପନ୍ନ ସମ୍ବଳହୀନ ବ୍ୟକ୍ତିଙ୍କୁ ସ୍ଥାନ ଓ କାର୍ଯ୍ୟ ଖୋଜିବା ଲାଗି ରହିବା ସୁବିଧା କରିଦେବାକୁ ହେବ। ଏ ଦିଗରେ ମୂର୍ଖ ଓ ଦରିଦ୍ର ହିମାଳୟର ପାହାଡ଼ିଆ ଜାତି ଓଡ଼ିଆଙ୍କଠାରୁ ଭଲ। ପାହାଡ଼ୀମାନଙ୍କ ମଧ୍ୟରେ ଅଧିକାଂଶ ଆଲମୋଡ଼ା, ନୈନିତାଲ, କୁମାୟୁନ୍ ଜିଲ୍ଲାମାନଙ୍କଠାରୁ ଦିଲ୍ଲୀ, ଶିମଳା, ପଞ୍ଜାବ, କଲିକତା ପର୍ଯ୍ୟନ୍ତ ଚାକିରୀପାଇଁ ଯାଇଥାନ୍ତି। ପାହାଡ଼ୀ ବ୍ରାହ୍ମଣ ଓ ରାଜପୁତ ରୋଷାଇ କରନ୍ତି, ଆଉ ଅନ୍ୟାନ୍ୟ ଜାତି ଚାକର, ବେହେରା କାମ କରନ୍ତି। ସେମାନେ ଯେଉଁଠିକି ଯାଆନ୍ତି, ସଂଘବଦ୍ଧ ଭାବେ ଯାଆନ୍ତି – ତାଙ୍କ ଭିତରେ ଭାରି ମେଳ। ପ୍ରତି ସହର ଓ ଗାଁମାନଙ୍କରେ ତାଙ୍କର ନିଜର ଟୋଲୀ ଥାଏ। ସେଠି ସେ ଅନ୍ୟ ପାହାଡ଼ିଆ ସାହାଯ୍ୟରେ ଖାଇପିଇ ଚାକିରୀ ଖୋଜନ୍ତି। କେହି ରୋଗରେ ପଡ଼ିଲା ତ ଅନ୍ୟ ଲୋକ ତାର ସେବାକରନ୍ତି। ପାହାଡ଼ୀଙ୍କଠାରୁ ପ୍ରବାସୀ ଓଡ଼ିଆମାନଙ୍କର ସଂଖ୍ୟା ଅତି ଅଧିକ। ସେମାନେ ଇଚ୍ଛାକଲେ, ସଂଘବଦ୍ଧ ଭାବେ ରହି କାର୍ଯ୍ୟକଲେ ନାନା ବିପଦ, ଅର୍ଥହାନି ଓ ଲାଞ୍ଛନାରୁ ଅବ୍ୟାହତି ପାଇପାରନ୍ତେ।

ଦିନ ଥିଲା, ଓଡ଼ିଆ ସୈନ୍ୟ ମୋଗଲ ବାହିନୀକୁ ପରାସ୍ତ କରିପାରିଥିଲା, କିନ୍ତୁ ସୈନ୍ୟବିଭାଗରେ ଓଡ଼ିଆଙ୍କର ଆଜି ନାମ ଗନ୍ଧ ନାହିଁ। ଓଡ଼ିଆର ପାଇକ ଖଣ୍ଡାଏତଙ୍କର ଏପରି ଅପମାନର କଣ କିଛି ପ୍ରତିକାର ନାହିଁ? ପାଇକ ଖଣ୍ଡାଏତ ଜାତି କୁଲିଗିରି କରିବା ଦେଖିଲେ କାହାର ହୃଦୟ ଫାଟି ନ ଯିବ? ଏହାର ପ୍ରତିକାର କଣ? ଏ ପ୍ରଶ୍ନର ଉତ୍ତର ବହୁଦିନ ଚିନ୍ତା

କରି ସୁଦ୍ଧା ମୁଁ ପାଉନାହିଁ। ଶିଖ, ରାଜପୁତ, ମର୍ହଟା, ଗୁର୍ଖା, ଜାଠଭଳି ଓଡ଼ିଆ ଯୁବକ କଣ ସୈନ୍ୟ ଭିତରେ ସ୍ଥାନ ପାଇପାରିବେ ? ଓଡ଼ିଆ ଦେହରେ ସେ ପୂର୍ବ ବଳ, ମନରେ ସେ ସାହସ କଣ ଫେରି ଆସିବ ? କୋଇଲା ଖଣି, ଚାହା ବଗିଚା; ମିଲ୍‌ର ଗଣ୍ଡରୀ ଠେଲା ବୁହା; ଜାହାଜରେ, ରେଳ ଲାଇନରେ କାମ କରୁଥିବା ଲୋକଙ୍କ ଦେହର ମାଂସପେଶୀମାନଙ୍କରେ କଣ ଟିକେ ହେଲେ ଶକ୍ତି ନାହିଁ ? ଯେଉଁ ଦେଶର ନାରୀମାନେ ଧନୁଶର ଧରିପାରୁଥିଲେ, ସେ ଦେଶର ଜବାନ୍ ପୁଅ କଣ ବିଲୁଆକୁ ମହାବଳ ଭାବିଲେଣି ? ଅତୀତର ସମର କାହାଣୀମାନ ଶୁଣି ଏ ଯୁଗରେ ଆଉ କି ଲାଭ ? ମୋ ବୋଧରେ, ଉପଯୁକ୍ତ ଶିକ୍ଷା ପାଇଲେ ଓଡ଼ିଆ ଯୁବକ ମଧ ସୈନ୍ୟପାଇଁ ତିଆରି ହୋଇପାରିବେ। ଦୈହିକ ବଳର ସାଧନା ଏ ଯୁଗର ଏକ ମହାନ ସାଧନା, ଏ ସାଧନା ନ ଥିଲେ ପୃଥିବୀର ବଳଦୃପ୍ତ ସମରକୁଶଳ ଜାତି ନିକଟରେ ଆମର ମାନ ମହତ୍ କିଛି ନାହିଁ। ନିର୍ବଳର ସମ୍ମାନ କରିବାକୁ କେହି ପ୍ରସ୍ତୁତ ନୁହେଁ। ଏ ବିଷୟରେ ଆମର ପ୍ରତିବାସୀ ବଙ୍ଗ ଭାଇଙ୍କର ଦୃଷ୍ଟାନ୍ତ ଆମର ଅନୁସରଣୀୟ। ଦିନ ଥିଲା, ଯେତେବେଳେ ବଙ୍ଗାଳୀ ନିଜ ମୁହଁରେ ନିଜକୁ ସମରଭୀରୁ କହୁଥିଲା, କିନ୍ତୁ ସେ ଜଗତକୁ ଦେଖେଇ ପାରିଲା, ସେ ଆଉ ଭୀରୁ, ଦୁର୍ବଳ ରହିବାକୁ ଚାହଁ ନାହିଁ। ଆମେ ବି ଦେଖେଇବା ଉଚିତ୍, ଆମ ଦେହରେ କେଶରୀ ଗଜପତି ବାହିନୀର ରକ୍ତ ଅଛି। ଆମେ ମଧ ଅସାଧ୍ୟ ସାଧନ କରିପାରୁ। ଏଥିପାଇଁ ଭଲ ଭଲ ବ୍ୟାୟାମଶାଳା, ଶାରୀରିକ ବଳବିଧାନର ଶିକ୍ଷା ସଂସ୍ଥାମାନ ସବୁ ଓଡ଼ିଆ ଶ୍ରମିକ ବସ୍ତିମାନଙ୍କରେ ସ୍ଥାପନକରିବାକୁ ହେବ। ଏବେ ମଧ ଉତ୍କଳର ରାଧାଶ୍ୟାମ, ନାଇଡୁ, ପାତ୍ର, ମହାନ୍ତି ଆଦି ବଳକସରତ୍ ଦେଖାଇ ପୃଥିବୀକୁ ଚମତ୍କୃତ କରିପାରିଛନ୍ତି। ଏ କ୍ଷେତ୍ରରେ ଓଡ଼ିଆ ଯୁବକମାନଙ୍କଠୁ ଆଶାକରିବା ଅନୁଚିତ ନୁହେଁ। ଦଶ ଘଣ୍ଟା ଅକ୍ଳାନ୍ତ ପରିଶ୍ରମ କରିପାରୁଥିବା ବଳିଷ୍ଠ ଶ୍ରମିକ ନିଶ୍ଚୟ ସିପାହୀ କାର୍ଯ୍ୟ କରିପାରେ। କେବଳ ଟ୍ରେନିଂ ଅଭାବ। ଟ୍ରେନିଂ (ଶିକ୍ଷା) ଦେବାପାଇଁ ସମ୍ମିଳନୀ ପକ୍ଷରୁ ବନ୍ଦୋବସ୍ତ ହେବା ଉଚିତ୍। ମନେ ରଖ– ତୁମେ ବୀରଜାତି। ତୁମର ପୂର୍ବପୁରୁଷ ସୁଦୂର ପ୍ରଶାନ୍ତ ମହାସାଗରର ଉନ୍ନତ ତରଙ୍ଗମାଳା ଉପରେ ବିଜୟ ଧ୍ୱଜା ଟେକିଥିଲେ। ତୁମର ଅତୀତର ଅସଂଖ୍ୟ କାହାଣୀ ଲେଖିବସିଲେ ପୋଥିକୁ ପୋଥି ପୂରିଯିବ। ତୁମେ ପୁଣି ସେହିସବୁ ଦେଶରେ କେବଳ କ'ଣ ଶ୍ରମିକରୂପେ ଚିହ୍ନା ପଡୁଥିବ ? ତା' ନୁହେଁ। ତୁମର ଭବିଷ୍ୟତ ଅତି ଆଶାପ୍ରଦ। ତୁମେ ଆଳସ୍ୟ ତ୍ୟାଗକରି ଆତ୍ମସଂଗଠନରେ ଲାଗିପଡ଼, ଦେଖିବ, ଅତି ଅଳ୍ପ ଦିନରେ ତୁମରି ଯଶରେ ପୃଥିବୀ ପୂର୍ଣ୍ଣ ହେବ।

ଆଜି ଯେତେ କ୍ଷୁଦ୍ର ହେଉ ପଛେ, ଆମ ଦେଶ ଗୋଟିଏ ନୂଆ ପ୍ରଦେଶ ରୂପେ ଗଢ଼ାହେବାର ଉଦ୍ୟମ ଚାଲିଚି। ସେଥିରେ ନାନା ପ୍ରକାର ଅଭିଯୋଗ ଓ ଅସନ୍ତୋଷ ଥିବା ସତ୍ତ୍ୱେ ଆମର ନିଜର ଗୋଟିଏ ଆନନ୍ଦ ଅଛି। ପରର ଲାଙ୍ଗୁଡ଼ରେ ଗୁଡ଼ାଇ ହୋଇଥିବା ଅପେକ୍ଷା, ନିଜତ୍ୱ, ଅତି ସାନ ହେଲେ ସୁଦ୍ଧା ତାର ମୂଲ୍ୟ ଅଛି। ପ୍ରବାସୀ ଓଡ଼ିଆ ! ନିଜର ନୂଆ ପ୍ରଦେଶର

ଉନ୍ନତିପାଇଁ ତୁମର ମଧ କର୍ତ୍ତବ୍ୟ ଅଛି। ବିଦେଶରେ ତୁମେ ଯେତେ ଅଧିକ ସୁଖ୍ୟାତି ଅର୍ଜନ କରିବ, ତୁମ ପ୍ରଦେଶର ମହତ୍ତ୍ୱ ଅନ୍ୟ ଦେଶୀୟ ଦୃଷ୍ଟିରେ ସେତେ ଅଧିକ ବଢ଼ିଯିବ। ଦୁଇ ହଜାର ବର୍ଷର ପଳାୟିତ ଅତ୍ୟାଚାରିତ ୟୁହୁଦୀ ଜାତିର ନିଜ ଦେଶପ୍ରତି ଆଧୁନିକ ଅଭିଯାନର କଥା ତ ତୁମ୍ଭେମାନେ ଶୁଣିଥିବ। ବମ୍ବେ କଲିକତାର ବଡ଼ ବଡ଼ ୟୁହୁଦୀ ମହାଜନ ଆଜି ବହୁ ଯୁଗ ପରିତ୍ୟକ୍ତ ସ୍ୱଦେଶକୁ ନିଜର କରିନେବାକୁ ଲାଳାୟିତ। ତୁମ୍ଭେମାନେ କଣ ଦଶ ପଚିଶ ବର୍ଷରେ ଉତ୍କଳକୁ ଭୁଲିଯାଇପାର ? ଜନନୀ ଜନ୍ମଭୂମି ଯେ ସ୍ୱର୍ଗଧାମଠାରୁ ବଡ଼ ! ଜନ୍ମଭୂମି ନାମରେ ତୁମେ ପାଗଳ ହୋଇଯାଅ, ସ୍ୱଜାତି ପ୍ରେମରେ ମଉରହ। ସ୍ୱଦେଶ ସହିତ ନିଜ ଭାଗ୍ୟ ସୂତ୍ରକୁ ସର୍ବଦା ବାନ୍ଧିରଖ। ସେହି ସ୍ୱଦେଶର ମାଟିହିଁ ତୁମର ଅତି ଆପଣାର।

ପରିଶେଷରେ ଗୋଟିଏ କଥା କହିବି, ଜଗତକୁ ଜଣାଅ, ତୁମର ଶକ୍ତି ଅଛି, ଅତ୍ୟାଚାରୀକୁ ଉତ୍ତର ଦେଲାଭଳି ଆତ୍ମବଳ ଅଛି; ତୁମର ସହିତ ମନ୍ଦ ବ୍ୟବହାର କଲାବାଲାର ପ୍ରତିଶୋଧ ନେବାର ତୁମର କ୍ଷମତା ଅଛି। ଖାଲି ନୀରବ କାନ୍ଦଣା କାନ୍ଦିଲେ କିଛି ହେବ ନାହିଁ। ଖାଲି ସହିବା ବାହାଦୁରୀ ବହୁତ ଦେଖାଇ ସାରିଲାଣି, ଏଥର ଉପଯୁକ୍ତ ଜବାବ ଦେଲାଭଳି ଅଣ୍ଟାଭିଡ଼ି, ଦେଖିବ ତୁମ ଅବଜ୍ଞାକାରୀ ଅତ୍ୟାଚାରୀର ଦର୍ପ ପାଣିଫୋଟକା ଭଳି ମିଳାଇଯିବ। ମୋର ପ୍ରଧାନ କଥା ତୁମେ ସଂଗଠିତ ହୁଅ, ତୁମେ ଶିକ୍ଷିତ ହୁଅ- ତୁମେ ଦିନରେ ନ ହେଲେ ରାତିରେ ପାଠପଢ଼; ଦେଶବିଦେଶର ଖବର ରଖ; ନିଜର ସ୍କୁଲ୍, କ୍ଲବ, ପାଠାଗାର, ଆମୋଦଶାଳା, ବ୍ୟାୟାମଶାଳା ଗଢ଼; ଅନ୍ଧବିଶ୍ୱାସ କୁସଂସ୍କାରକୁ ତୁମେ ଛାଡ଼। ନାରୀପୁରୁଷ ଉଭୟେ, ଶକ୍ତିର ସାଧନାକର। ପରିବାର ଘେନି ରହ- ପୁଣି ସମସ୍ତ ବ୍ୟସନ ଛାଡ଼। ଏଗୁଡ଼ିକ ଅସମ୍ଭବ, ଆକାଶ କୟାଁ ଚିଲିକା ମାଛ ନୁହେଁ - ଅନ୍ୟ ଦେଶରେ ଯାହା ସମ୍ଭବ ହୋଇଛି, ପ୍ରବାସୀ ଉତ୍କଳୀୟଙ୍କଦ୍ୱାରା ମଧ ସମ୍ଭବ ହେବ, ଏ ମୋର ଖୁବ୍ ବିଶ୍ୱାସ।

କଲିକତାର ଦୁଇ ଲକ୍ଷ ଓଡ଼ିଆ ! ଏ ପଥରେ ତୁମେ ଅଗ୍ରଣୀ ହୁଅ - ଭଗବାନ ତୁମ ପଥରେ ସହାୟ ହୁଅନ୍ତୁ - ଜଗନ୍ନାଥ ତୁମକୁ ଜୟଶ୍ରୀ ଦିଅନ୍ତୁ।

ଆଜି ନିଖିଳ ଭାରତ ଜାତିର ମହା ଜାଗରଣ ସମୟରେ ତୁମେ ସେଥିରେ ବିଶିଷ୍ଟ ଭାଗ ନିଅ। ତୁମର ସ୍ୱଦେଶକୁ, ସ୍ୱଜାତ ଦ୍ରବ୍ୟକୁ ଭଲପାଅ, ବ୍ୟବହାରକର। ଯେଉଁ ସ୍ୱଦେଶୀ ମୁଭ୍‌ମେଣ୍ଟର ଜନ୍ମଭୂମି କଲିକତା, ଯେଉଁ ସ୍ୱରାଜ୍ୟ ସଂଗ୍ରାମରେ ଦେଶର କୋଟି କୋଟି ଧନ ଓ ପ୍ରାଣ ବଳି - ବେଦୀରେ ଅର୍ପିତ, ସେ ସଂଗ୍ରାମରେ ତୁମେ କାୟମନୋବାକ୍ୟରେ ଆତ୍ମ ନିବେଦନ କରିଦିଅ। କିଛି କରି ନ ପାରୁଚ ତ ସ୍ୱଦେଶୀ ବ୍ୟବହାର ଏବଂ ନିଶା ବହିଷ୍କାର ଅନ୍ତତଃ ପକ୍ଷେ କର ଏବଂ ତଦ୍ୱାରା ଜାତୀୟ ଜୀବନର ବଳ ବୃଦ୍ଧିକର। ଦେଶବନ୍ଧୁ,[୧] ଗୋପବନ୍ଧୁ, ଗାନ୍ଧି, ଲଜପତ[୨] ଆଦିଙ୍କର ମହା ସାଧନାପୀଠ କଂଗ୍ରେସ ଶକ୍ତି, କିଛି କ୍ଷୁଦ୍ର ଶକ୍ତି ନୁହେଁ। ଜାତୀୟ ଜୀବନର ପ୍ରତୀକ କଂଗ୍ରେସ ମୁଭ୍‌ମେଣ୍ଟରେ ଗତ କେତେକ ବର୍ଷ ମଧରେ ଭାରତ ଯେଉଁ ଅଦ୍‌ଭୂତ୍ ଶକ୍ତି, ଧୈର୍ଯ୍ୟ, ସାହସ ଓ ସହିଷ୍ଣୁତାର ପରିଚୟ ଦେଇଚି ସେଥିରେ,

ଉତ୍କଳୀୟ ଭାଇ ଭଉଣୀଙ୍କର ବହୁତ ଭାଗ ରହିଛି। ତାହା ତୁମଲାଗି ଗୋଟିଏ ଗର୍ବର ବିଷୟ। ତୁମ ଜାତୀୟ ଉନ୍ନତିରେ ଏ ଗର୍ବର ମୂଲ୍ୟ ଅଛି, ଜାଣିଥାଅ। ପ୍ରବାସୀ ଉତ୍କଳି ! ତୁମେ ଆପଣା ଜାତୀୟ ଜୀବନ ଜାଗ୍ରତ କରିବାପାଇଁ, ସବୁ ପ୍ରକାର ସାର୍ବଜନିକ କାର୍ଯ୍ୟରେ ଭାଗ ନେବାପାଇଁ କେଉଁ କେଉଁ ଦେଶରେ ହେଲେ ପଛଘୁଞ୍ଚା ଦିଅ ନାହିଁ।

ଅତଏବ -

(୧) ତୁମେ ସମ୍ମିଳିତ ହୁଅ, ତୁମର ଏ ସମ୍ମିଳନୀକୁ ସ୍ଥାୟିତ୍ୱ ଦାନକର। ଏହାର ଶାଖା ପ୍ରଶାଖାମାନ ଉତ୍କଳୀୟଙ୍କର ବିଭିନ୍ନ ପ୍ରବାସ ସ୍ଥାନରେ ଖୋଲ। ଏହା ସହିତ ପ୍ରେସ୍ (ଛାପାଖାନା) ଓ ସଂବାଦ ପତ୍ର ଯୁକ୍ତକର। ଏହାର କାର୍ଯ୍ୟପାଇଁ ଧନ ସଂଗ୍ରହକର। ଏହାର ହେଡ୍ଅଫିସ୍ କଲିକତାରେ ରଖ।

(୨) ଓଡ଼ିଆଙ୍କର ପ୍ରବାସ ସ୍ଥଳରେ ମଧ୍ୟ ଓଡ଼ିଆ କ୍ଲବ୍, ପାଠାଗାର, ସମିତି, ପତ୍ରିକା, ଆଦିର ସଂଗଠନକୁ ନବୀନ ଉତ୍ସାହରେ ଜୀବନ୍ତକରି ଜଗାଅ। ପ୍ରତ୍ୟେକ ସ୍ଥାନର ଓଡ଼ିଆ ଆପଣା ଆପଣା ଭିତରେ ଚାନ୍ଦାକରି ଉପଯୁକ୍ତ ଲୋକଙ୍କୁ ପ୍ରଧାନ, ଉପପ୍ରଧାନ, ମନ୍ତ୍ରୀ, କାର୍ଯ୍ୟକାରୀ ଆଦି ପଦଦେଇ ଆପଣାପାଇଁ ଜଣ ଜଣ ଦରକାର, ତାହା ସ୍ଥିରକର। ଏ ସବୁ ସାମୟିକ ନ ହୋଇ ସ୍ଥାୟୀ ଏବଂ ଦୃଢ଼ଭାବରେ ହେବା ଭଲ।

(୩) ଶ୍ରମିକମାନଙ୍କ ସକାଶେ ନୈଶ ବିଦ୍ୟାଳୟ, ବ୍ୟାୟାମଶାଳା ଆଦି ସଂଗଠନ କର। ତାଙ୍କୁ ପାଠ ପଢ଼ାଅ, ଖବର କାଗଜ ପଢ଼ା ଶିଖ, ରାଷ୍ଟ୍ରଭାଷା ହିନ୍ଦୀ ଶିକ୍ଷାଦିଅ।

(୪) ପ୍ରବାସୀ ଓଡ଼ିଆଙ୍କର ଏକ ଇଂଗ୍ରାଜୀ ପତ୍ରିକା ପ୍ରୟୋଜନ।

(୫) ଶ୍ରମିକମାନଙ୍କର ସପରିବାର ରହିବାଲାଗି ସୁବ୍ୟବସ୍ଥା ହେବା ଉଚିତ୍। ଏଥିପାଇଁ ତାଙ୍କ ଅଭାବ ଅଭିଯୋଗ ଜନସାଧାରଣ ଏବଂ ସରକାର ସମସ୍ତଙ୍କର ଦୃଷ୍ଟିକୁ ଆଣିବା ଦରକାର। ତାଙ୍କ ସ୍ୱାସ୍ଥ୍ୟ, ଚରିତ୍ର ଓ ଶିକ୍ଷାର ଉନ୍ନତିର ଭିନ୍ନ ଭିନ୍ନ ସ୍ଥାନୀୟ ସୁଗମ ପନ୍ଥାମାନ ଖୋଜି ବାହାରକରିବା ସମ୍ମିଳନୀର କାର୍ଯ୍ୟହେବା ଉଚିତ୍। ତାଙ୍କ ପ୍ରତି ଯଦି ଅନ୍ୟାୟ ହେଉଚି କି ଅଧିକା ପରିଶ୍ରମ ଏବଂ ଅଳ୍ପ ବେତନ ମିଳୁଛି, ତା' ଲାଗି ପ୍ରବଳ ଆନ୍ଦୋଳନ ସମ୍ମିଳନୀ ତରଫରୁ କରାଯାଉ।

(୬) ଯେଉଁଠାରେ ଓଡ଼ିଆଙ୍କର ବିଶିଷ୍ଟ ସଂଖ୍ୟା, ଯେପରି କଲିକତା ଓ ବର୍ମ୍ମା ଆଦି ସ୍ଥାନରେ, ସେଠି ସବୁପ୍ରକାର ସାର୍ବଜନିକ ସଂସ୍ଥା କର୍ପୋରେସନ୍, ମ୍ୟୁନିସିପାଲିଟି ବା ଡିଷ୍ଟ୍ରିକ୍ଟ ବୋର୍ଡ଼ରେ ଯେପରି ଓଡ଼ିଆମାନେ ସ୍ଥାନପାଆନ୍ତି, ତାର ଖୁବ୍ ଚେଷ୍ଟା ଦରକାର। ଯାପାଇଁ ତାଙ୍କୁ ଯୋଗ୍ୟହେବାର ମାର୍ଗ ମଧ୍ୟ ଶିକ୍ଷାଦିଆଯାଉ।

(୭) ଓଡ଼ିଆ ଶ୍ରମିକ ଏବଂ ଛାତ୍ରମାନଙ୍କର ରହିବା ଜାଗା ସବୁର ସ୍ୱାସ୍ଥ୍ୟ ପ୍ରତି ତୀବ୍ର ଦୃଷ୍ଟି ଦେବା ଦରକାର ଏବଂ ପ୍ରତିକାର କରିବାର ବୈଧ ଉପାୟ ଅବଲମ୍ବନ କରାଯିବା ଉଚିତ୍।

(୮) ଅସଦ୍ ବ୍ୟବସାୟର ସ୍ଥାନମାନଙ୍କୁ ଅତି ଶୀଘ୍ର, ଲୋକମତ ଗଠନକରି ବା ସରକାରୀ ସାହାଯ୍ୟରେ, ଯେପରି ହେଉ, ସମୂଳେ ଲୋପକରିବା ବଡ଼ ଆବଶ୍ୟକ। ପତିତା ନାରୀ ବ୍ୟବସାୟ, ଦେଶରୁ ନାରୀ ଓ ବାଳିକାଙ୍କୁ ଭୁଲାଇ ଆଣି ଅନ୍ୟ ଦେଶରେ ଅସତ୍ କାର୍ଯ୍ୟଲାଗି ବିକିବା ଲୋକଙ୍କୁ ଧରି ଆଇନତଃ ଦଣ୍ଡ ଦିଆଯିବା କର୍ତ୍ତବ୍ୟ।

(୯) ବିଦେଶରେ କିପରି ଓଡ଼ିଆମାନେ ବିଶେଷଭାବେ ବ୍ୟବସାୟ ବାଣିଜ୍ୟ କରିପାରିବେ, ତା'ପାଇଁ ଚେଷ୍ଟାକରାଯାଉ, ସମବାୟ ନୀତିରେ ଧନ ଏକତ୍ରକରି ବ୍ୟାଙ୍କରୁ ସାହାଯ୍ୟ ନେଇ ଏ କ୍ଷେତ୍ରରେ କାର୍ଯ୍ୟ କରିହେବ କି ନାହିଁ, ତା' ବିଚାର କରାଯାଉ।

(୧୦) ଓଡ଼ିଆଜାତ ବିଶିଷ୍ଟ ବାଣିଜ୍ୟ ଦ୍ରବ୍ୟକୁ ବିଦେଶରେ ପ୍ରଚାର ଓ ବିକ୍ରୟର ବ୍ୟବସ୍ଥା ଓଡ଼ିଆଙ୍କଦ୍ୱାରା କରାଯାଉ।

କାର୍ଯ୍ୟ ଅନେକ, କର୍ମୀ ଅଳ୍ପ; ତହିଁରେ ପୁଣି ଧନ ଓ ସୁଯୋଗ ସବୁର ଅଭାବ। ତଥାପି ଭାଇ ଓ ଭଉଣୀମାନେ, ମୁଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଚି, ଭଗବାନ ଆମ୍ଭମାନଙ୍କୁ ନିତ୍ୟ ନୂତନ ଶକ୍ତି, ସାହସ ଓ ଧୈର୍ଯ୍ୟ ଦାନକରନ୍ତୁ। ଆମ ଦ୍ୱାରା ଆମ ଜାତିର ଯେ କୌଣସି ସେବା ହୋଇପାରେ। ତା' ଯେପରି ଦାନ କରିବାକୁ ଆମେ କଦାପି କୁଣ୍ଠିତ ନ ହେଉ।



# ଅଭିଭାଷଣ : ଦୁଇ

## ବିଂଶ ଶତାବ୍ଦୀର ଭାରତୀୟ ନାରୀ

ଶ୍ରୀମତୀ କୁନ୍ତଳା କୁମାରୀ ଦେବୀ ବୃନ୍ଦାବନ ଗୁରୁକୁଳର ଷଷ୍ଠବିଂଶତି ବାର୍ଷିକୋତ୍ସବର ମହିଳା-ପରିଷଦରେ ସଭାନେତ୍ରୀ ହୋଇ ଯେଉଁ ଅଭିଭାଷଣ କରିଥିଲେ, ତାହା ଅପେକ୍ଷାକୃତ ବଡ଼ ହୋଇଥିବାରୁ, ଦିଆଯାଇ ନପାରି ସେଥିରୁ କେତେକାଂଶ ସଂଗ୍ରହକରି ଦିଆଗଲା। ଅଭିଭାଷଣ ଦେବାକୁ ଯାଇ ସେ କହିଥିଲେ —

''ପ୍ରିୟ ଭଉଣୀମାନେ, ମୋର ପରମ ସୌଭାଗ୍ୟ ଯେ, ମୁଁ ଆଜି ଗୁରୁକୁଳର ପବିତ୍ରଭୂମି ଉପରେ ଆପଣମାନଙ୍କ ଆନନ୍ଦ ସମ୍ମିଳନରେ ଯୋଗ ଦେବାକୁ ସୁଯୋଗପାଇଅଛି। ମୁଁ ସୁଦୂର ଉତ୍କଳ ପ୍ରାନ୍ତବାସିନୀ, ହିନ୍ଦୀ ମୋର ମାତୃଭାଷା ନୁହେଁ, କିମ୍ବା ସେଥିରେ ମୋର ଦକ୍ଷତା କି ଯୋଗ୍ୟତା ନାହିଁ। ନ ଥିଲେ ହେଁ ଆପଣମାନଙ୍କ ନିର୍ମଳ ସ୍ନେହରେ ମୁଁ ଏଠାକୁ ଟାଣିହୋଇ ଆସିଛି। ମୋର ଭଙ୍ଗାରୁଜା ଶବ୍ଦରେ ଦରଫୁଟା ଭାଷାରେ ଅଳ୍ପ ସମୟ ଆପଣମାନଙ୍କ ସ୍ନେହ ସଂସ୍ପର୍ଶରେ କଟାଇବାକୁ ଠିକ୍ କରିଅଛି।

ମୋର ବିଷୟ ହେଉଚି– ବର୍ତ୍ତମାନ ଭାରତୀୟ ମହିଳା ଜାତିର ଅବସ୍ଥା, ବିଶାଳ ଜଗତ ନିକଟରେ ନିଜ ସଭ୍ୟତା ରକ୍ଷାକାରିଣୀ ଭାବରେ କିପରି ଅଛି; ତାହା।

ଭଉଣୀମାନେ, ଆମର ଅବସ୍ଥା କ'ଣ ? ସଂସାରରେ ଆମର ସ୍ଥାନ କେଉଁଠି ? ଆମେ ଅଭିମାନରେ କହିଥାଉଁ ସୀତା, ସାବିତ୍ରୀ, ଗାର୍ଗୀ, ମୈତ୍ରେୟୀ ବିଶ୍ୱବିରାଙ୍କ ବଂଶଧର ବୋଲି। ମାତ୍ର ସେମାନଙ୍କର ଗୁଣ ଓ ଶକ୍ତି ଆମ୍ଭଠାରେ କଣ ରହିଚି ? ଆମ୍ଭେମାନେ ଆଜି ସମାଜର କୁସଂସ୍କାର ଅନ୍ଧାରରେ ବନ୍ଦିନୀ ରହି ଧ୍ୱଂସୋନ୍ମୁଖ ହୋଇ ଲକ୍ଷ ଆଘାତରେ 'ଚୁ' କରିବାକୁ ଶକ୍ତି ସୁଦ୍ଧା ହରାଇବସିଚୁଁ। ଦିନ ଥିଲା, ଭାରତ ନାରୀ ଯମ ସହିତ ଲଢ଼ି ସ୍ୱାମୀର ପ୍ରାଣ ଛଡ଼ାଇ ଆଣିଥିଲା; ଦିନ ଥିଲା, ଭାରତ ନାରୀ ବେଦ ରଚନା କରି ପାରିଥିଲା; ଦିନ ଥିଲା, ନାରୀର ତିରସ୍କାର କାଳିଦାସ ପରି କବି ସୃଷ୍ଟିକରିପାରିଥିଲା ଓ ଯୁଗାବତାର ମହାତ୍ମା ଶଙ୍କରଙ୍କୁ ନାରୀ ଯୁକ୍ତି ଜାଲରେ ପରାସ୍ତ କରିପାରିଥିଲା। ଏପରିକି ଯେଉଁ ଭାରତ ନାରୀର ଶକ୍ତିକୁ ମନୁଷ୍ୟ କାହିଁକି ଦେବତା ସୁଦ୍ଧା ଟାଳିପାରୁ ନଥିଲେ। ସୂର୍ଯ୍ୟଦେବ ନିଜର ଉଦୟାସ୍ତ ବନ୍ଦକରି ଦେଉଥିଲେ, ସେଦିନ କାହିଁ ?

ନାରୀ ଘରେ ବାହାରେ ସର୍ବତ୍ର ପୂଜିତା ଥିଲା। ରନ୍ଧନଶାଳାରେ ଯାଜ୍ଞସେନୀର ପ୍ରଭାବ ଯେପରି ଥିଲା– ତେଣେ ଯୁଦ୍ଧମନ୍ତ୍ରଣାରେ ଶ୍ରୀକୃଷ୍ଣ, ଯୁଧିଷ୍ଠିରଙ୍କର ସେପରି ମନ୍ତ୍ରଦାତ୍ରୀ ରହିଥିଲା। ଭୀଷଣ ରଣ-ଭୂମିରେ, ଭୟାବହରଣସ୍ଥଳରେ, ରାଜେଶ୍ୱର୍ଯ୍ୟ ପରିତ୍ୟାଗକରି ସୁକୁମାରୀ ରାଜନନ୍ଦିନୀ ପ୍ରତିଜ୍ଞାପାଇଁ ବାରବର୍ଷ କାଳ କେଶ ମୁକୁଳା ରଖିଥିଲା; ଯେଉଁଠି ସୁଭଦ୍ରା ପରି

ସହଧର୍ମିଣୀ, କୁନ୍ତୀପରି ମାତା, ଗାନ୍ଧାରୀପରି ପତିବ୍ରତା ଥିଲେ- ସେମାନେ କେଉଁ ପୁରୁଷର କାମ୍ୟ ନୁହନ୍ତି।

ଆଜି ଆମ୍ଭେମାନେ ପୁରୁଷ ହାତରେ ଖେଳନା ପରି ଇଚ୍ଛାରେ ଉଠୁଚୁ, ବସୁଚୁ। ଆମର ସ୍ୱାଧୀନ ଇଚ୍ଛା କିଛି ନାହିଁ। ଆମ୍ଭେମାନେ ମନୁଷ୍ୟର ଯେଉଁ ଜନ୍ମଗତ ଦାବି ସ୍ୱାଧୀନତା, ଯାହାଯୋଗୁଁ ମନୁଷ୍ୟ ମନୁଷ୍ୟ, ତାହା ହରାଇଅଛୁଁ। ଆମ୍ଭେମାନେ ନିଜେ ନିଜକୁ ସନ୍ଦେହ କରି ଅନ୍ୟର ଫାଶରେ ବନ୍ଧାହୋଇ, ସୁଖନିଦ୍ରାରେ ମଉଜରେ ଘୁମାଇ, ନିଜର ସ୍ୱତ୍ୱ ଦାବି ପର୍ଯ୍ୟନ୍ତ ଭୁଲିଯାଇଚୁଁ। ପରପ୍ରଦତ୍ତ ଭାତ ମୁଠାକର ପ୍ରତ୍ୟାଶୀ ହେବା ବ୍ୟତୀତ ଆମର ଗୌରବର ସାମଗ୍ରୀ କଣ ଅଛି ? ତେବେ କଣ ଆମ୍ଭେମାନେ ଏତେ ହୀନ ?

ଭଉଣୀମାନେ ! ଭାବୁଥିବ, ଏ ପରି କ'ଣ କହୁଚି–ଯେତେବେଳେ ଭାରତୀୟ ନାରୀଜାତିର ଯଶୋଗାନ ସମ୍ପୂର୍ଣ୍ଣ ସଂସାର କରୁଚି, ଯେତେବେଳେ ହଜାର ହଜାର ଭଉଣୀ ଉତ୍ସୁକ ହୃଦୟରେ ଦେଶ ଓ ଜାତିପାଇଁ ଅପୂର୍ବ ତ୍ୟାଗ ସ୍ୱୀକାରକରି ଭୀଷଣ କାରାଗାରର ଲୌହ ପିଞ୍ଜରା ମଧ୍ୟରେ ଆବଦ୍ଧହୋଇ ନିଜ ଦେଶର ସ୍ୱାଧୀନତା ଯୁଦ୍ଧରେ ଲଢୁଚନ୍ତି, ସେତେବେଳେ ଆମେ କିପରି ବୁଝିବୁ ଯେ ଭାରତୀୟ ନାରୀର ଅବସ୍ଥା ଶୋଚନୀୟ ଓ ଦୟନୀୟ। ସିଂହତେଜା, ଅରୁଣନୟନା ପଦ୍ମିନୀ ପରି ଚିତାଗ୍ନି-ବରଣକାରିଣୀ ଭାରତ ଲଳନାର ଅବସ୍ଥା ସଂସାରରେ ଦୀନ ଓ ହୀନ ? ସତ କଥା- ଆଜି ଭାରତ ଇତିହାସ ପୃଷ୍ଠାରେ ଏକଥା ସ୍ୱର୍ଣ୍ଣାକ୍ଷରରେ ଲେଖାଯିବ। ପ୍ରକୃତରେ ବର୍ତ୍ତମାନ ଦେଶରେ ବୀରାଙ୍ଗନାମାନଙ୍କର ଅପୂର୍ବ ତ୍ୟାଗ-ଗାଥାରେ ଗଗନ ପବନ କମ୍ପିଉଠୁଚି। ଊର୍ମିଳା, ସରୋଜିନୀ, କମଳା, ସତ୍ୟବ୍ରତୀ, ହଂସା, ଊର୍ମିଳା, ନାରୀ, ମାଳତୀ, ସରଳା ଇତ୍ୟାଦି ଅମର ନାମର ଜୟଗାନରେ ଜଗତ ମୁଖରିତ। କେଉଁ ଜାତି, ଏପରି ମହତ୍ ନାରୀଙ୍କର ଗୌରବପାଇବାକୁ ପଛଘୁଞ୍ଚାଦେବ ? ଧନ୍ୟ ସେହି ଜାତି ! ଯାହାର ମଧୁର ଅଙ୍କରେ ଏମାନଙ୍କର ଜନ୍ମ। ସେମାନଙ୍କ ପ୍ରଶଂସା ଗାଇବାକୁ ଶବ୍ଦ ଅଣ୍ଟିବ ନାହିଁ।

ଆଉ ଗୋଟିଏ କଥା ଭାବିବାର, ଦେଖିବାର, ବିଚାର କରିବାର ଅଛି। ଏହି ଯୁଦ୍ଧରେ ପୁରୁଷ ପଥପ୍ରଦର୍ଶକ, ନାରୀ ତାର ଅନୁସାରିଣୀ। ମାତ୍ର ପୁରୁଷଠାରୁ ଅଧିକ ତେଜବଳରେ, ଆପଣାକୁ ବଳିଦେବା ସ୍ୱଦେଶସ୍ୱଧର୍ମ ଓ ମାତୃଭୂମିର ମାନରକ୍ଷାନିମନ୍ତେ ଆପଣାର ସର୍ବସ୍ୱ ବିସର୍ଜନ କରିବାରେ ନାରୀର ପରମ ଅଧିକାର। ତେବେ ନାରୀ ପଥପ୍ରଦର୍ଶିକା ହେଲେ ପୁରୁଷ ଜାତିର ଅଭିମାନ ଉପରେ ବଡ଼ ଆଘାତଲାଗେ। ପୁରୁଷ ସର୍ବଦା ସଂସାରକୁ ଅଧିକାରରେ ରଖି ଆପଣା ପାଶବିକ ବଳରେ ସଂସାରରେ ଅଧିପତି ହୋଇ ବସିରହିଅଛି। ନାରୀକୁ ସମାନ ଅଧିକାରଦେବା ବା ସମାନ ମଣିବା ତାକୁ ପ୍ରାଣଘାତକ କ୍ଳେଶହେଉଛି। ପୁରୁଷ ନିଜର ସ୍ୱାର୍ଥର ପ୍ରଭାବ ନାରୀ ଉପରେ ଏପରି ବିସ୍ତାରକରିଛି ଯେ, ନାରୀ ମନେକରୁଚି– ପୁରୁଷ ନାରୀର ପ୍ରଭୁ ଭାବରେ ସୃଷ୍ଟ। ଏହି ଗୋଲାମି ମନୋଭାବ ନାରୀର ସର୍ବନାଶ କରୁଅଛି। ସାମ୍ୟ, ଏକତା, ପରସ୍ପର ମୈତ୍ରୀଭାବ ବଦଳରେ, ପୁରୁଷର ଦାଉତ୍ୱକୁ ପାଳନକରିବା, ନାରୀ ନିଜର କର୍ତ୍ତବ୍ୟ

ବୋଲି ବୁଝଛି। ଏଥିପାଇଁ ନାରୀ ଜାତିକୁ ପୁରୁଷ ଜାତି, ଆଜି ପୃଥିବୀରେ ଏତେ ଅନ୍ୟାୟ, ଅତ୍ୟାଚାର ଓ ଶାସନର କଠୋରତାରେ ପେଷିରଖିଅଛି। ପୁରୁଷ ନାରୀକୁ ଅବଳା କହେ; ହେଉ ସେ ଶାରୀରିକ ଗଠନରେ ଦୁର୍ବଳ, ତେବେ ବଳ କଣ ଖାଲି ଶାରୀରିକ ବଳ? ମନୋବଳଠାରୁ ନାରୀ ପଥର ପରି ସବୁ ସହି ଭୀଷଣ ଅତ୍ୟାଚାରରେ ଆଠବର୍ଷର ଅବୋଧ ବାଳିକା ହୋଇ ଷାଠିଏ ବର୍ଷର ବୁଢ଼ା ସହ ବିବାହ କରୁଚି, ପାଞ୍ଚବର୍ଷର ଅଜ୍ଞାନ ଅବସ୍ଥାରୁ ବ୍ରହ୍ମଚାରିଣୀ ବିଧବା ହେଉଅଛି; ନିଜେ ବଞ୍ଚି ରହି ସତୀ ସାଧ୍ୱୀ ଅବସ୍ଥାରେ ସ୍ୱାମୀକୁ ନବ ବିବାହରେ ଆବଦ୍ଧ ଦେଖି ପ୍ରଫୁଲ୍ଲ ରହିପାରୁଚି; ତାର ଧନ, ସନ୍ତାନ ମନ ଉପରେ ତିଳେ ଅଧିକାର ନ ଥିଲେ ହେଁ ସେ ସହି ରହିଛି– ସେ ଦେଶରେ ପୁରୁଷ ବଳବାନ୍ କେଉଁ ଶକ୍ତିରେ? ଦୁର୍ବଳ ଉପରେ ଅତ୍ୟାଚାର, ନାରୀ ଉପରେ ଜୁଲମ, ଅନ୍ୟାୟ, ଅଧିକାର, ସର୍ବସ୍ୱଦାତା ଉପରେ ଉତ୍ପୀଡ଼ନ କରି ଯେବେ କେହି ବଡ଼ ହୁଏ, ତେବେ ପୁରୁଷ ସମାଜ ନାରୀଠାରୁ ବଡ଼। କାରଣ, ନାରୀ ଅଧିକାର ବସାଇବାକୁ ନ ଚାହିଁ ଆତ୍ମସମର୍ପଣ ଜାଣେ। ଆପଣାର ଅମୂଲ୍ୟ ରୁଧିର ବୁହାଇ ଜାଣେ। ଆପଣାର ସ୍ୱେଦଶୋଣିତ ଏକକରି ପୁରୁଷର ସେବାସୁଖ କରିଜାଣେ। ନାରୀ ଦେବତା, ସର୍ବଂସହା। ଆଜି ମୁଁ ପୁରୁଷ ଜଗତରେ ଗୋଟିଏ ମହାନ୍ ଆଦର୍ଶରେ ପ୍ରାଣବିସର୍ଜନକାରିଣୀ ଲକ୍ଷ ଭାରତୀୟ ଭଉଣୀଙ୍କୁ ଅଭିନନ୍ଦନ କରୁଅଛି।

× × × × ×

ନାରୀର ଏଥିରେ ଗୌରବ, ସେ ପୁରୁଷର ଶତଲାଞ୍ଛନା ଭୋଗି ବନ୍ଦିନୀ ଭାବରେ ରହି ଯେ ଆଜି ସେମାନଙ୍କର ଆତ୍ମହତ୍ୟାକାରୀ ପୁରୁଷକୁ ସାହାଯ୍ୟହେଉଛି, ଏହା ଅପୂର୍ବ ଏବଂ ଅଦ୍ଭୁତ।

ଦେଶର ସ୍ୱାଧୀନତାରେ ନାରୀ ପୁରୁଷ ଉଭୟଙ୍କର ଗରଜ। + + (ଏହା ପରେ ସେ ଦେଶର ସ୍ୱାଧୀନତାପାଇଁ କହିବାକୁ ଯାଇ କିପରି ନାରୀଜାତି ପ୍ରତି ଅତ୍ୟାଚାର କରିବାକୁ ଆମ ଦେଶ ବିଦେଶୀମାନଙ୍କର ହୋଇଛି; ପୁଣି ନାରୀ ପ୍ରତି ଅବମାନନା ଓ ସ୍ୱାଧୀନ କନ୍ୟାର ଅଭାବରୁ ଭାରତ କିପରି ପରାଧୀନ, ଏହି ମହା ଅସହଯୋଗ-ଯୁଦ୍ଧରେ ନାରୀ କିପରି ସର୍ବସ୍ୱ ତ୍ୟାଗ କରିଚି, ଗୋଟିଗୋଟିକରି କହିଛନ୍ତି। ସେ ତାଙ୍କର ବାରବର୍ଷର ଡାକ୍ତରି ପ୍ରାକ୍‌ଟିସ୍‌ରେ ହଜାର ହଜାର ନାରୀର ଶୋଚନୀୟ ଦୁର୍ଦ୍ଦଶା ଯାହା ଦେଖିଛନ୍ତି ତାପରେ କହିଛନ୍ତି– କିପରି ନାରୀଜାତି ଦୀନହୀନ ହୋଇ ଆତ୍ମବିସ୍ମୃତି ଜୀବନ ବହି, ଭୀଷଣ ଅତ୍ୟାଚାରକୁ ନିଜର ସନ୍ତୋଷରେ ଗ୍ରହଣ କରିନେଉଚନ୍ତି, ସେକଥା ଲେଖିଛନ୍ତି। ସମାଜରେ ବିବାହ ଉତ୍ସବରେ ଅଯଥା ଟଙ୍କା ଖର୍ଚ୍ଚ କରାଯାଉଚି, ଅଥଚ ନାରୀଶିକ୍ଷା ପ୍ରତି ଆଦୌ ସ୍ପୃହା ଦେଖାଯାଉନାହିଁ, ତାହା ମଧ୍ୟ ଲେଖିଛନ୍ତି।)

ଶେଷରେ ସେ ନାରୀଜାତିର ପାଞ୍ଚଟି ଅଧିକାର ରକ୍ଷାପାଇଁ କେବଳ ସୁବିସ୍ତୃତ ଆଲୋଚନାକରି ଭାରତର ଏହି ବିପୁଳ ସ୍ୱାଧୀନ ସଂଗ୍ରାମରେ ସତ୍ୟ ଓ ଅହଂସାମନ୍ତରେ ଦୀକ୍ଷିତ ହୋଇ ସାବରମତୀର ମହାସାଧକ[୧] ମହାଯୋଗୀଙ୍କ ପନ୍ଥା ଅବଲମ୍ବନ କରିବାକୁ ନାରୀଜାତିକୁ ଆହ୍ୱାନ କରିଅଛନ୍ତି।



(୧) ମହାତ୍ମାଗାନ୍ଧୀ।

ଦିଲ୍ଲୀରୁ

ଶ୍ରୀଯୁକ୍ତ ଯୁବରାଜ ମହୋଦୟ

ନମସ୍ତେ

ଆପଣଙ୍କର ନବୀନଟି ମୁଁ ସର୍ବଦା ପଢ଼େ। ଦିନକୁଦିନ ସୁନ୍ଦର ଉନ୍ନତି କଲାଣି। ନବୀନର ଛାପା ଓ ଟାଇପ୍ ସୁନ୍ଦର। ନବୀନର ଗୋଟିଏ ବିଶେଷତ୍ୱ ଯେ, ଏହା ନବୀନ ଲେଖକମାନଙ୍କୁ ବଡ଼ ଉତ୍ସାହ ଦେଇ, ଆଦରରେ ତାଙ୍କ ଲେଖା ଗ୍ରହଣ କରୁଥିବାରୁ ଓଡ଼ିଶାରେ ସୁଲେଖକ ସଂଖ୍ୟା କ୍ରମେ ବଢ଼ି ଯିବାର ଆଶା। ଆପଣ ସାପ୍ତାହିକ ସମ୍ବାଦ ସାଙ୍ଗରେ ସାହିତ୍ୟର ସୁନ୍ଦର ସମାବେଶ କରି ପାରିଛନ୍ତି। ଆଶାହୁଏ ଗଞ୍ଜାମ ଯେପରି ଓଡ଼ିଆ ସାହିତ୍ୟକୁ ସହସ୍ର ପ୍ରାଦେଶିକ ବାଧା ସତ୍ତ୍ୱେ ଆଦରରେ ଧରି ରଖିଛି, ସେହି ଭଞ୍ଜଭୂମି ପୁଣି ଶତ ଶତ ନବୀନ ଭଞ୍ଜଙ୍କ ଅଭ୍ୟୁଦୟରେ ଗୌରବାନ୍ୱିତ ହେବ। ଆପଣଙ୍କ ପରି ଜଣେ ରାଜପୁତ୍ର ଭଞ୍ଜଙ୍କ ପଦାଙ୍କ ଅନୁସରଣ କରି ଦେଶ ସାହିତ୍ୟର ସେବାରେ ଲାଗିପଡ଼ିବା ବଡ଼ ଆନନ୍ଦର ବିଷୟ।

ସାଦର ନମସ୍ତେ - ଇତି -

ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ

ନବୀନ, ୯, ଜୁନ୍ ୧୯୩୧ / ସଂପାଦକ ଶ୍ରୀ କୃପାସିନ୍ଧୁ ପଟ୍ଟଦେବଙ୍କ ପାଖକୁ ଲିଖିତ ଏବଂ ନବୀନ ୪, ଅଗଷ୍ଟ ୧୯୩୧ସଂଖ୍ୟାରେ ଶ୍ରୀମତୀ ସାବତଙ୍କ ଏକ ଫଟୋ ମଧ୍ୟ ପ୍ରକାଶିତ।

ଦିଲ୍ଲୀରୁ ଦୁଇଖଣ୍ଡ ଚିଠି

To,

Sj. Sachidananda Raotray

C/O. The Editor, 'Nabeen'

P.O. Berhampur, G.M.

ଦିଲ୍ଲୀ ୨୯.୩.୩୨

ରକ୍ତ କବିତାର କବି,

ତୁମେ କିଏ ମୁଁ ତୁମକୁ ଚିହ୍ନେ ନାହିଁ। ସମ୍ଭବତଃ ଏ ପତ୍ର ଠିକ୍ ଠିକଣା ଅଭାବରେ, ତୁମେ ପାଇ ପାରିବ କି ନାହିଁ। କିନ୍ତୁ ଚିର ସୁନ୍ଦର 'ନବୀନ' ପତ୍ରିକାରେ ତୁମର ସରସ

ପ୍ରାଣସ୍ପର୍ଶୀ ରକ୍ତତତା କବିତାଟି ବାହାରିଥିଲା। ତାରି ଜରିଆରେ ଦିଲ୍ଲୀରୁ ଏକମାତ୍ର ଉତ୍କଳୀୟ ଅନୁଷ୍ଠାନ ଭାରତ ତପୋବନରୁ ତୁମକୁ ମୁଁ ଅଭିନନ୍ଦନ କରୁଛି।

କେଉଁ ଲାଇନ୍ ଛାଡ଼ି କେଉଁ ଲାଇନ୍ ଗାଇବି। ଏପରି ମଧୁର, ଏପରି ସୁନ୍ଦର, ଏପରି ଜୀବନ୍ତ, ଏପରି ସରସ, ଏଠା ହିନ୍ଦୁସ୍ଥାନୀ ସାହିତ୍ୟ ପ୍ରେମିଙ୍କୁ ଦେଖାଇବା ପାଇଁ ସାଇତିରଖିଛି। ଓଡ଼ିଆର ସେ ପୁରୁଣା ଭଙ୍ଗା ବୀଣାରେ ନବୀନ ତରୁଣ ଆଜି ଯେଉଁ ନୂଆଁ ସ୍ୱର ଯୋଖିବାକୁ ବସିଲାଣି, ବାସ୍ତବରେ ଓଡ଼ିଶାରେ ଏ Renaissanceରେ ତା' ଅପୂର୍ବ। ଜାତିଟା ଆଉ ଚିର ଅଭିଶପ୍ତ ହୋଇ ରହିଲାପରି ଦିଶୁ ନାହିଁ। ନବୀନର ରାଜପୁରୋଧାଙ୍କୁ ମୁଁ ଯେ କି ବୋଲି ଅଭିନନ୍ଦନ କରିବି, ତା'ପାଇଁ ଭାଷା ଖୋଜି ପାଉ ନାହିଁ। ଗତ ଦୁଇବର୍ଷ ଭିତରେ ଉତ୍କଳର ନବୀନ ପ୍ରାଣରୁ ଯେଉଁ ରସଧାରା ସେ ଆହରଣ କରି ଅମୃତମୟ ମଧୁବର୍ଷାରେ ଉତ୍କଳର ସାହିତ୍ୟ କ୍ଷେତ୍ରକୁ ସିଞ୍ଚନ କରିଛି, ତା' ଅପୂର୍ବ। ନବୀନ, ପ୍ରକୃତରେ ନବୀନ ସୁନ୍ଦର।

ରକ୍ତ କବିତାର ଉଦ୍ଦେଶ୍ୟ, ପ୍ରତିଛତ୍ର ଯେଉଁ ରକ୍ତଢ଼ଳା ନୈବେଦ୍ୟ ଲାଗି ଉଦ୍ଦିଷ୍ଟ ତାହା ହୃଦୟଙ୍ଗମ କରି ମୁଁ ଥରେ ଯାହା ଲେଖିଥିଲି, ତାହା ହିଁ ଏଠି ଲେଖି ଶେଷ କରିବି।

ଅନ୍ଧର କାରା କୋଣରେ ବନ୍ଦୀ ଦେଖିଥିଲା ଯେଉଁ ସପନ<br>
ସଫଳ ଯଦି ତା' କରବ ଉଠ ହେ ଭାରତ ଯୁବକ ବହନ।

ଶ୍ରୀମତୀ କୁନ୍ତଳା କୁମାରୀ ଦେବୀ।

(ଶ୍ରୀ ରାଉତରାୟଙ୍କ ରକ୍ତ-କବିତା, ତା୩୧.୧୨.୧୯୩୧ ମସିହାରେ ଲିଖିତ ଓ ୧୫.୩.୧୯୩୨ ସାଲ ନବୀନରେ ପ୍ରକାଶିତ)

To,

Sj. Jubraj Sri Krupasindhu Patta Deb<br>
Editor, Nabeen<br>
P.O. Berhampur, Ganjam

ସେଇ*

ଧୂଳି ପଥେ ଯାଏନା<br>
ସେଇ ପଦଚିହ୍ନ<br>
ଜଳପଥେ ଚଳେ ନା<br>
ତରୀଟି ମୋ ଜୀର୍ଣ୍ଣ

'ସେଇ' କବିତା ଭାରି ସୁନ୍ଦର, ତାର ସୁନ୍ଦର ପଦତଳେ ମୋର କବିତାଟି ଗୋଟିଏ କ୍ଷୁଦ୍ର 'ଫୁଲାଞ୍ଜଳି' ଦେଇ 'କବିନ୍ଦ୍ରର' ସମ୍ମାନ କରିଥିବାରୁ ବୋଧହୁଏ କ୍ଷମାର ଅପାତ୍ରୀ ହେବିନାହିଁ। ଉତ୍କଳୀୟ କବିପ୍ରାଣରେ ଯେ 'ନବୀନ' ସାହାନାଇ ବାଜିଉଠିଲାଣି, ନବୀନର ପତ୍ରେ ୨ ଫୁଲେ ୨ ଯେଉଁ ଗୀତଦୋଳି ସେ ଖେଳି ୨ ଢଳି ପଡୁଛି, ସୁନ୍ଦର ଲାଲ କିଲ୍ଲାତଳୁ ସେ ଦୃଶ୍ୟ ମୁଁ ଦେଖି ମୁଗ୍ଧା। ଯୁବରାଜ ! ତୁମର ଏ ନବୀନ ସାଧନାର ମହତ୍ୱରେ ଦିଲ୍ଲୀର ଯମୁନା କୂଳରେ ଉତ୍କଳୀୟ ପ୍ରାଣ କଦମ୍ୱ ରୋମାଞ୍ଚିତ। ଯମୁନାର ନୀଳ ଲହରୀମାଳା ଉତ୍କଳୀୟ ମହାପାତ୍ର ତାନ୍‌ସେନ୍‌ର ମଧୁର ଇମନ୍ ଜ୍ୱାଳାମୟୀ ଦୀପକ ରାଗିଣୀରେ ନାଚି ଉଠିଲା। ଆଜି ଯମୁନାର ଶୁଷ୍କ ପୁଳୀନରେ କୁନ୍ତଳାକୁମାରୀ ଉତ୍କଳପାଇଁ ଝୁରୁଥିଲା ବେଳେ, ନବୀନର ସରସ ସୁନ୍ଦର ଦେଖି ଦେଖି ମୋହିତହୋଇ କବିଭାଷାରେ କହିପାରିଛି –

ସୁନ୍ଦରେ ତୃପ୍ତିର ଅବଦାନ ନାହିଁ
ଯେତେ ଦେଖିଲେ ହେଁ, ନୂଆଁ ଦିଶୁଥାଇ।

ଶ୍ରୀମତୀ କୁନ୍ତଳା କୁମାର ସାବତ

ନଭପଥେ ବାଜେ ସତେ
ତୁମରି ସେ ମୁରଲି
ମରୁପଥେ ଝୁରେ ତରୁ
ସଙ୍ଗୀତେ ତରଳି। (ଫୁଲାଞ୍ଜଳି)

(ନବୀନ / ୫, ଏପ୍ରିଲ୍ ୧୯୩୨)

* ଏହି କବିତା ଶ୍ରୀ ସତ୍ୟବାଦୀ କବୀନ୍ଦ୍ରଙ୍କ ଲେଖା ଓ ନବୀନରେ। ୧୫.୩.୩୨ ସଂଖ୍ୟାରେ ପ୍ରକାଶିତ।

## ବୀର-ମାଟି ଖୋରଧାର ଖଣ୍ଡାୟତ ସେନା

ଡାକ୍ତର କୁନ୍ତଳାକୁମାରୀ ଦେବୀ ଏଲ.ଏମ୍.ପି., ଦିଲ୍ଲୀ

ନୂଆ ଦିଲ୍ଲୀ, ୮-ଜୁଲାଇ ୧୯୩୪

ଭାଇ ସଚି,

ତମ ପତ୍ର ପାଠକରି ପ୍ରିୟ ଜନ୍ମଭୂମି ଖୋରଧାର ସ୍ମରଣରେ ଅତ୍ୟନ୍ତ ଆନନ୍ଦ ଉପଲବ୍ଧ ହେଲା। × × ×

ଭାଇ ସଚି ! ମନେ ପଡ଼େ ମୋର ଖୋରଧାର ସେହି ପ୍ରିୟ ଜନ୍ମମାଟି, ସେହି ବୀରଭୂମି ଖୋରଧା। ଯାହାର ଅଣୁ ପରମାଣୁରେ ବୀରତ୍ୱର ଇତିହାସ ଲେଖା– ଯାହାର ପାଇକ ଖଣ୍ଡାଏତଙ୍କର ଗୌରବମୟ ଇତିହାସ ଆଜିସୁଦ୍ଧା ଅନ୍ଧକାରାଚ୍ଛନ୍ନ। ଉତ୍କଳର ମେବାର ଖୋରଧା, ଯେଉଁଠି ଉତ୍କଳର ଶେଷ ରାଜସୂର୍ଯ୍ୟ ଅସ୍ତମିତ ହୋଇଥିଲା, ତାର ମୂକସାକ୍ଷୀ ସେହି ହାବେଳି ସରୋବର- ଆଉ ଖୋରଧା ଗଡ଼।

ପୁଣି —

''କରୁଣା କଟାକ୍ଷ ବାନା —<br>
କଟକକୁ ଆଉ କେବେ ଯାଆନା ରେ<br>
କରୁଥିଲି ମୁହିଁ ମନା। ମୋ ଧନ ରେ।''

ରାଜା ଦିବ୍ୟସିଂହ ଦେବଙ୍କର ଏ ମାତୃଶୋକ ଖୋରଧାପ୍ରେମୀ ପ୍ରତ୍ୟେକ ଖୋରଧା ସନ୍ତାନ ହୃଦୟରେ ଅଙ୍କିତ। ଦିନେ ବ୍ୟାକୁଳ ହୋଇ ମୁଁ ଏ ଗୀତଟି ଗାଇଥିଲି–

''ଏ ବୀର ମାଟିର କୀରତି କଥାଟି<br>
ପୀରତିରେ ଥରେ ମନେପକାଅଟି !<br>
ସାଗର ଚିଲିକା ବୋଇତରାଣୀ<br>
ପାଇବ ତରୁଣୀ ଲାଖ-ବିନ୍ଧାଣି<br>
ଧନୁକ ଭଙ୍ଗାର ଲୀଳା କାହାଣୀ।<br>
ଓଡ଼ିଆର ଘରେ ଘରେ ଜଣାଅଟି।

ମୁଁ ମନେ ମନେକଳ୍ପନା ନୟନରେ ଦେଖେ ମୋ'ର ପୂର୍ବଜା, ମୋରି ପିତୃପିତାମହୀଙ୍କର ସେ ବୀରନାରୀ ବେଶ – ସେ ବୋଇତ ସଙ୍ଗୋଳା। ସିଦ୍ଧହସ୍ତା ଧନୁର୍ଦ୍ଧାରିଣୀ ଲୀଳାଭ୍ରୂ କୁଟିଳନୟନା ଅଶ୍ୱରାଜାରୋହିଣୀ ସିଂହବାହିନୀ ବିରଜାସମ ତେଜମୂର୍ତ୍ତି ପାଇକ ବାଳା ଓଡ଼ିଆ ତରୁଣୀ – ଯାହାର ବାପପୁଅ ପଥରରେ କବିତା– ଅକ୍ଷରରେ କୋଣାର୍କ ଗଢ଼ି, ଲଢ଼େଇରେ ଲଢ଼ି ଯୁଦ୍ଧରେ ହାଣଖାଇ ସୁଦ୍ଧା ପିଠିଫେରେଇ ନଥିଲେ। ଆଜି ତାଙ୍କର ଇତିହାସ କାହିଁ ?

''ଥିଲା ଆମ ଦେଶ ଝିଅ ଦଣ୍ଡି ମହାରାଣୀ –
ଉତ୍କଳ କୁମାରୀ ସ୍ମର ତ କୀର୍ତ୍ତି କାହାଣୀ
ତୁମରି ଓଡ଼ିଆ ଝିଅ ତରି କାହାକୁ
ଯାଉଥିଲେ ଘୋଡ଼ା ଚଢ଼ି ଯୁଦ୍ଧ ପଡ଼ିଆକୁ।''

ଏକ ଦିଗରେ ରାଜପୁତନା, ଏକ ଦିଗରେ ଓଡ଼ିଶା। ରାଜପୁତ ଜାଠ, ଆଉ ଓଡ଼ିଶାର ଖଣ୍ଡାୟତ ଏକ ବଂଶ, ଏକ ଜାତି, ଏକ କୀର୍ତ୍ତି! ଏକ ଅମର ଇତିହାସ !! ପଠାଣଙ୍କ ହାତରେ ରାଜପୁତନା ଧ୍ୱଂସ, ଆଉ ଇଂରେଜଙ୍କ କଲ୍ୟାଣରେ ଓଡ଼ିଆବୀର ଖଣ୍ଡାଏତ ଆଉ ପାଇକ କୁଳ ସୁଦୂର ପ୍ରାଚ୍ୟ ଦେଶମାନଙ୍କରେ କୁଲି।

ଖୋରଧାର ସବୁ ଯାଇଛି। କପୂର ଉଡ଼ି ଯାଇଛି, କନାଖଣ୍ଡିକ ପଡ଼ିଛି। ହେଲେ ସେଥିରେ ବି ଟିକିଏ ବାସନା ଅଛି – ଆଉ ଅଛି ଓଡ଼ିଆ ଯୁବକର ମୁମୂର୍ଷୁ ପ୍ରାଣରେ ବଞ୍ଚିବାର ଆକାଂକ୍ଷା ନୋହିଲେ ଏତେ ବଢ଼ି, ମରୁଡ଼ି, ବ୍ୟାଧି, ବ୍ୟୁତ୍ପାତରେ ହତଭାଗୀ ଓଡ଼ିଶା କାହିଁକି ବଞ୍ଚିଛି କହିଲ? Survival of the fittest ନିୟମ ଅନୁସାରେ ଓଡ଼ିଶାର ମରିଯିବା ଉଚିତ୍। ଏପରି ଅର୍ଦ୍ଧମୃତ ଜୀବିତ ''ନିତି ମୃତ୍ୟୁ ଗ୍ରାସ'' ଘେନି ବଞ୍ଚିବାଠାରୁ ତ ଏକାବେଳେ ମରିବା ଭଲ। ନାଁ ଭାଇ? ଅଛି ସେ କ୍ଷୀଣ ପ୍ରାଣରେ– ସେହି କ୍ଷୁଦ୍ର ଜ୍ୟୋତିଃ-କଣିକାଟି ଭିତରେ ଆଜି ସୁଦ୍ଧା ଭାରତକୁ ଦେଲାଭଳି ଜିନିଷ ଅଛି। ଆଜି ବି ଖୋରଧା ସୁନାଥାଳରେ ଲକ୍ଷରାଜାର ମଉଡ଼ମଣି ରାଇଜରେ ତାର ଅତୀତର ଉଜ୍ଜ୍ୱଳ ବାର୍ତ୍ତା ଅପୂର୍ବ ପ୍ରେରଣା ଭାରତକୁ ଦେବାଭଳି ପଦାର୍ଥ ରହିଛି। ତା ଦିଅ ଭାଇ! ଖୋରଧାର ଯୁବକ! ଏ ତୁମ୍ଭର କର୍ତ୍ତବ୍ୟ। ଭାରତବର୍ଷର ଶେଷ ସ୍ୱାଧୀନ ହିନ୍ଦୁ ନରପତିର ପ୍ରକୃତ ଇତିହାସ ଓ ଗୌରବର ଅଧିକାରୀ ତୁମ୍ଭେମାନେ। ତୁମ୍ଭେମାନେ ଜଗତକୁ ଜଣାଅ ଯେ ତୁମ୍ଭେମାନେ ହିନ୍ଦୁର ଶେଷ ଗୌରବ-ରବିର ଗରିମାମୟ ଅସ୍ତ। ତୁମରି ଦେଶରେ ଦେଖିବି। ଦିନ ଯାଇଛି ରାତି ଆସିଛି କିନ୍ତୁ ରାତି ଅନ୍ତେ ପୁଣି ଦିନ ଆସିବ। ଦିନେ ତୁମରି ଚିଲିକାବାହୀ ଉତ୍କଳ ତରଣୀ ସୁଦୂର ପ୍ରଶାନ୍ତ ମହାସାଗରୀୟ ଦ୍ୱୀପ-ମାଳାରେ ଉପନିବେଶ ସ୍ଥାପନ ଆଉ ବାଣିଜ୍ୟ ଲାଗି ଯାଉଥିଲା। ତୁମରି ମା'ଭଉଣୀ ସୁନା ଥାଳିରେ ଅର୍ଘ୍ୟ ଦୀପାଳି ଧରି ବୋଇତ ବନ୍ଧାଣର ହୁଳହୁଳି ପକାଉଥିଲେ। ପୁଣି ଦିନ ଆସିଲା, ତୁମରି ''ଲକ୍ଷେ ରାଜାର ମଉଡ଼ ମଣି'' ଗୋଟିଏ ଛୋଟ ବୋଇତରେ କଳାଟାପୁ ଗଲେ, ଆଉ ତୁମ ମହାରାଣୀ ହାବେଲୀ ଗର୍ଭରେ ଚିରଶାନ୍ତି ଲଭିଲେ। ରାଜପୁତ ନାରୀର ଜୋହରାଗ୍ନି ପ୍ରବେଶଠାରୁ ଏହା ଊଣା ମର୍ଯ୍ୟାଦାର କଥା ନୁହେଁ। ପୁଣି ଦିନ ଆସିବ, ତୁମ ଗୌରବ-ଗର୍ବଲକ୍ଷ୍ମୀ ତୁମ ଘରକୁ ଫେରି ଆସିବେ। କିନ୍ତୁ ସେ କେବେ କିଏ ଜାଣେ? ତଥାପି ସେ ବୀର ମାଟିରେ ଯାହାର ଜନ୍ମ-ତାର ଅଣୁ ପରମାଣୁରେ କଣିକାଏ ହେଲେ ସେ ଗୌରବ ଗରିମା ଅବଶିଷ୍ଟ ନିଶ୍ଚେ ରହିଛି।

ସେ ମୋର ବହୁତ ପିଲା ଦିନ କଥା। ଘରର ଚାଷୁଣୀ ଚାକରାଣୀ ଗୋଟିଏ ଗୀତ ଗାଉଥିଲା– ପିଲାଙ୍କୁ ଶୁଆଇବାକୁ। ସେ ଗୀତଟି ଆଜି ସୁଦ୍ଧା ମୋର ମୁଖସ୍ଥ ଅଛି। ଗୀତଟି ଅତି ସାଧାରଣ। ଓଡ଼ିଶାରେ ପ୍ରାୟ ସମସ୍ତେ ଜାଣନ୍ତି କିନ୍ତୁ ସେଥିରେ ଓଡ଼ିଶାର ଇତିହାସ ରହିଛି – ପ୍ରଚ୍ଛନ୍ନ ଭାବେ। ସେ କଣ ?

''ଉଡ଼ିଗଲା ଗେଣ୍ଡାଳିଆ
ଝାଡ଼ିଦେଲା ପର
ତୁ ଛାଡ଼ିବୁ ବାପ ଭାଇ
ମୁଁ ଛାଡ଼ିଲି ଘର।
ଉଡ଼ିଗଲା ଗେଣ୍ଡାଳିଆ
ଝାଡ଼ି ଦେଲା କେଶ
ତୁ ଛାଡ଼ିଲୁ ବାପ ଭାଇ
ମୁଁ ଛାଡ଼ିଲି ଦେଶ।
ଉଡ଼ିଗଲା ଗେଣ୍ଡାଳିଆ
ଝାଡ଼ି ଦେଲା ପକ୍ଷୀ
ମୁଁ ତୋହର ପ୍ରାଣ ସଖା,
ତୁ ମୋ' ପ୍ରାଣସଖୀ।''

କି କରୁଣ ମର୍ମସ୍ପର୍ଶୀ ପଲ୍ଲୀ ସଙ୍ଗୀତ ! ବିଦେଶରେ ଓଡ଼ିଆ ଯୁବକ ନିଜର ଗୃହିଣୀକୁ ସମ୍ବୋଧନ କରି କହୁଛି– ''ତୁ ବାପ ଭାଇ ଛାଡ଼ିଆସିଲୁ। ମୁଁ ଦେଶ ଛାଡ଼ିଆସିଲି। କିନ୍ତୁ ମୁଁ ତୋର ସଖା ଆଉ ତୁ ମୋର ସଖୀ।'' ପୁରାତନ ଗୀତ। ଓଡ଼ିଆ ବିଦେଶକୁ ଯାଉଥିଲେ, ସପରିବାର ଯାଉଥିଲେ। ସୁମାତ୍ରା, ଜାଭା, ମାଳୟ, ବ୍ରହ୍ମ, ଶ୍ୟାମରେ ତାଙ୍କର କୀର୍ତ୍ତିମାଳା ଅଦ୍ୟାପି ବିରାଜିତ। ଆଜି ବି ଓଡ଼ିଆ ବିଦେଶ ଯାଉଛି। ହେଲେ ଯାଉଛି କ'ଣ ପାଇଁ? ଦେଶ କିଛି ଉପନିବେଶ ସ୍ଥାପନ କରିବାପାଇଁ ନୁହେଁ, ଯାଉଛି ମଜୁରିଆ ହୋଇ, କୁଲୀ ହୋଇ।

ମଉଡ଼ ମଣିଟି କୋଟିଏ ରାଜାର
ମୂଲକ ମାଲିକ ଦୂର ଦରିଆର।
ଅରାତି ସଙ୍ଗୀତ ବାରେ ଶୁଣାଅଟି !!
ବିନୟ ସଙ୍ଗୀତ କାରେ ଶୁଣାଅଟି !

ହେଲେ କାହାକୁ ଶୁଣାଇବ ? କିଏ ଶୁଣିବ ? ଅନଶନେ ଅର୍ଦ୍ଧମୃତ ବସନ ବିହୀନଙ୍କୁ ଶୁଣାଇ କି ଲାଭ ? ଲାଭ ଅଛି ଭାଇ। ମଲା ହାଡ଼ରେ ବି କାଳେ ହିମ୍ମତ ଜାଗିଉଠିବ।

ଖୋରଧାର ତରୁଣ ଭାଇ ସବ୍ଭି। ଏ ତମରି କାମ। ତୁମେ ଓଡ଼ିଶାକୁ ନୈରାଶ୍ୟ ଆଉ ମୃତ୍ୟୁରୁ ବଞ୍ଚାଇବାପାଇଁ ନବ ଜାଗରଣରେ– ନୂତନ ପ୍ରଭାତରେ ଶତଦଳ ଭଳି ଜାଗିଉଠ। ଇତି।

ତୁମର

ଆଶୀର୍ବାଦିକା

କୁନ୍ତଳା କୁମାରୀ

(ଏ ଚିଠି ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ରାଉତରାୟଙ୍କ ନିକଟକୁ ଲିଖିତ ଓ ତାଙ୍କରି ସୌଜନ୍ୟରୁ କରଣ ସମାଜର ମୁଖଚକ୍ର ଓ କାଶୀନାଥ ଦାସଙ୍କଦ୍ୱାରା ସଂପାଦିତ 'ନାୟକ' ପତ୍ରିକାର ତୃତୀୟ ବର୍ଷ, ସପ୍ତମଖଣ୍ଡ, ୧୩୪୬ ସାଲ (୧୯୩୯)ରେ ପ୍ରକାଶିତ।



# ଦିଲ୍ଲୀ ଚିଠି(୧)

## (ଉଦ୍‌ବୋଧନ)

ସଂପାଦକ ମହାଶୟ,

ନମସ୍ତେ !

ସୁଦୂର ଦିଲ୍ଲୀରେ ଥାଇ ସହକାରଟିକୁ ବେଳେ ବେଳେ ଦେଖିଲେ ସେହି ପୁରୁଣା ଲକ୍ଷ୍ମୀନାରାୟଣ ସାହୁଙ୍କର ଚଟି ବହି ସହକାରଟି ମନେ ପଡ଼ିଯାଏ, ଯାହାକୁ ଦେଖି ଦିନେ କବିତାଟିଏ ଲେଖିଥିଲି -

ସହକାର !
ସହକାର ତୁ କାହାର ?
କରେ ମୁଁ ମନେ ବିଚାର
କହ କିପାଁ ତୋ' ଶ୍ରୀ ଅଙ୍ଗେ ଏ ଶୋଭାସମ୍ଭାର ?

ସାନ ରସାତଳଗୁଟି ବସନ୍ତ ସମାଗମରେ - ଆଜି ବସନ୍ତ କୋକିଳଙ୍କର ଆରାମ କୁଞ୍ଜ, ବିନୋଦବାଟିକା ! ଦ୍ୱିତୀୟାର ଚାନ୍ଦଟି ପୂର୍ଣ୍ଣଚନ୍ଦ୍ର ହୁଏ, ସାନ କଢ଼ଟି ଫୁଟନ୍ତା ଗୋଲାପ ହୁଏ, ମାତ୍ର ଯେ ବୁଢ଼ା, ପରୁଣା - ଯେ ଯୌବନ-ଦ୍ରୋହୀ, ସେ ମରିବ - ନିଶ୍ଚୟ ମରିବ । ସହକାର ନିତ୍ୟ ନୂତନ ! ନିତ୍ୟ ଅଗ୍ରଗାମୀ ତେଜୋବାନ୍ । ସାନ ଅସ୍ତିତ୍ୱରୁ ନିଜର ମହତ୍ତ୍ୱରେ ଗତ ଦଶବର୍ଷରେ ଏହା ଅସାଧ୍ୟ ସାଧନ କରିଛି । କେତେ କ୍ଷଣିକ ଉଲ୍‌କା ହଠାତ୍ ଉଇଁ ହଠାତ୍ ଲିଭି ଯାଇଛନ୍ତି, ମାତ୍ର ଏ ସାନ ଚନ୍ଦ୍ରମାଟି ବଢ଼ି ବଢ଼ି ଆଜି ପରମସୁନ୍ଦର ପୂର୍ଣ୍ଣଚନ୍ଦ୍ର ।

ଦିନେ ସହକାର କୋ - ଅପରେଟିଭ୍ ସୋସାଇଟିର ମୁଖପତ୍ର ରୂପେ,. ସାନ ଶିଶୁଟି ପରି ଲାଜ ଲାଜ ଲୁଚୁକୁଚୁ ହୋଇ ବାହାରିଥିଲା । ଆଜି ସେ ସାହିତ୍ୟ ପତ୍ରିକାର ଶୀର୍ଷରେ । ଆଜି ସହକାର -

ଉତ୍କଳର ପ୍ରାଣାସନେ
ଅଭିଷେକ ଆଜି ତରୁଣ ରାଜାର,
ପ୍ରେମ ହେବ ଆଭରଣେ ।

ସହକାର ଆଜି ତରୁଣ ଉତ୍କଳର ମୁଖପତ୍ର - ତରୁଣତରୁଣୀଙ୍କର ଆଦରର ଧନ - ତରୁଣ କବିଙ୍କର - ଦେଶ ସେବୀଙ୍କର - ତରୁଣ କର୍ମୀଙ୍କର ଲୀଳାନିକେତନ ! ମୁଁ ପ୍ରାଣର ସହିତ ସହକାରକୁ ସ୍ୱାଗତକରୁଛି । ମୋର ଆନନ୍ଦ ଅଭିନନ୍ଦନ ସୁଦୂର ଦିଲ୍ଲୀର 'ଭାରତୀ

ତପୋବନରୁ' ଜଣାଉଛି; ସହକାର ଉତ୍କଳର ଗର୍ବ ଗୌରବର ସାମଗ୍ରୀ ହେଉ। 'ପ୍ରବାସୀ', 'ବସୁମତୀ', 'ଭାରତବର୍ଷ' ଘେନି ବଙ୍ଗ ଯେପରି ଗର୍ବିତ, 'ଚାନ୍ଦ,', 'ସରସ୍ୱତୀ', 'ମାଧୁରୀ', 'ସୁଧା', 'ହଂସ' ଘେନି ଉତ୍ତର ହିନ୍ଦୁସ୍ଥାନ (ସଂଯୁକ୍ତ ପ୍ରାନ୍ତ) ଯେପରି ଗୌରବାନ୍ୱିତ, ଉତ୍କଳ-ଗଙ୍ଗା ଗୋଦାବରୀ ଅଞ୍ଚଳ-ଚିଲିକା ଲହରୀ ଚଞ୍ଚଳା-ନୀଳ ଜଳଧିନିଚୋଳା-ତାଳତମାଳକୁନ୍ତଳା-କଳିଙ୍ଗ' ସେହିପରି କାନନକାନ୍ତି ସହକାର ଯୋଗୁଁ ଦର୍ପିତ, ଦୀପିତ, ଚିତ୍ରିତ, ପବିତ୍ରିତ ହେଉ।

ଦେଶରେ ମହା ସଂଗ୍ରାମ ଚାଲିଛି। ଦେଶ ଆଜି ଜୀବନ ମରଣର ସନ୍ଧିସ୍ଥଳରେ। ଏପରି ସମୟରେ ଦଳେ ସାହିତ୍ୟ-ବାନାଧାରୀ ଦେଶଦ୍ରୋହୀ ଉତ୍କଳ ସାହିତ୍ୟର ଯେ ଅପବ୍ୟବହାର କରି, ଉତ୍କଳ ଭାଷାର ଚିରନ୍ତନ ଗୌରବ ଖର୍ବକରି, ଜାତିକୁ ହୀନ କରିବାରେ ବଦ୍ଧ ପରିକର, ଅତୀତରେ ସେମାନେ ଆମର ହଜର ଉପକାର କରିଥିଲେ ସୁଦ୍ଧା, ଆମେ ଆଜି ଆଉ ତାହା ମାନିବାକୁ ପ୍ରସ୍ତୁତ ନୋହୁଁ। ଅମୃତ ଟାଟିଆରେ ଟୋପାଟିଏ ବିଷଦେଇ ଟାଟିଆକ ଅମୃତ ପିଆଇ ସୁଦ୍ଧା ଜୀବନ ନେଲାଭଳି, ହୀନ ବଞ୍ଚକ ହାତରୁ ଉତ୍କଳ ଭାରତୀ, ମା ସାରଳେ, ରକ୍ଷାକର! ତାଙ୍କରି ଦାଉରୁ ଦେଶଟି ଧ୍ୱଂସ ହେଲା ସିନା!

ଜାତି ନାମରେ, ସାହିତ୍ୟ ନାମରେ, ଧର୍ମ ନାମରେ, ଦେଶ ସମାଜ ନାମରେ ଏତେ ଅତ୍ୟାଚାର! ଏପରି ସାହିତ୍ୟକୁ ତରୁଣ ଉତ୍କଳର ନିଶ୍ଚୟ ପୋଡ଼ି ଜାଳି 'ହୋଲି' କରିଦେବା ଉଚିତ୍। କାଠଯୋଡ଼ୀର ନଣ୍ଡ ବାଲିରେ ସେପରି ସାହିତ୍ୟର ''ପ୍ରତିଗୁଡ଼ିଏ'' ତାହା କରିଦେବା ନିହାତି ଦରକାର। ଏ ସାହସ ଅଛି କେବଳ ସହକାରର। ହୀନ, କୁତ୍ସିତ ପୁରାତନକୁ ଦଳି ମାଡ଼ି ଉପରକୁ ଉଠିବା କ୍ଷମତାଅଛି ଯୁବକ ସହକାରର।

ନିର୍ଭୀକ ସହକାର! ଉଠ, ବିଜୟ ବଜ୍ରଭେରୀ ବଜାଅ। ଉତ୍କଳ ସାହିତ୍ୟ ତୁମଦ୍ୱାରା ଗୌରବାନ୍ୱିତ ହେଉ। ତରୁଣ ଉତ୍କଳର ଭାଗ୍ୟ ଗଠନ ତୁମେ କର।

ଏ ବର୍ଷ ଉତ୍କଳର କଂଗ୍ରେସ ବର୍ଷ। ଏ କଂଗ୍ରେସ ବର୍ଷରେ ତୁମର ଅନେକ କାମ, ଅକଳନ୍ତା କାମ। ଆଜିଠୁ ଲାଗିପଡ଼। ଉତ୍କଳର କନ୍ଦରା କନ୍ଦରାଂ(୧) ପର୍ଯ୍ୟନ୍ତ ପ୍ରତିଧ୍ୱନିତ କରି ପକାଅ। ତୁମ କଲମ ଟାଣରେ ଉତ୍କଳର ପୁରପଲ୍ଲୀ ହଲାଇଦିଅ। ଘର ଘର ଚମକାଇ ଦିଅ। ଜାଗ୍ରତ କର ଉତ୍କଳ ପ୍ରାଣ, ସ୍ପନ୍ଦିତ କର ଉତ୍କଳ ଧମନୀ - ଉତ୍କଳକୁ ବିଶ୍ୱର ବିରାଟ ଦୁଆରେ - ହିନ୍ଦୁସ୍ଥାନର ମହାଅଭିଯାନରେ ପ୍ରସ୍ତୁତ କର।

''ଉତ୍କଳ ଉତ୍କଳ ବୋଲି କେ ଚିହ୍ନିଛି କାହିଁ
ଅମର ଲେଖନୀ ତବ ଦେଉ ତା ଚିହ୍ନାଇ -
ଅଙ୍ଗ ବଙ୍ଗ ତୈଲଙ୍ଗ ପଞ୍ଜାବ ବମ୍ବେ ଆଗେ
ଉତ୍କଳର ତୂର୍ଯ୍ୟନାଦ ଶୁଣାଅ ସରାଗେ।
ଜନ୍ମମାଟି ଜଗନ୍ନାଥ - କି ଲାଜ କି ଭୟ
ଜଗନ୍ନାଥ ଯାର ସାହା, ସେତ ମୃତ୍ୟୁଞ୍ଜୟ।''

---

(୧) ଗିରିଗହ୍ୱର

ଭାଇ ସହକାର ! ଦିଲ୍ଲୀରେ ବସି ଏ ଦିବାସ୍ୱପ୍ନଟି ଦେଖୁନାହିଁ। ଏ ପାଗଳର ପ୍ରଳାପ ନୁହେଁ। ଏହା ଖାଣ୍ଟି ସତ୍ୟ। ଏଥର ''ଉତ୍କଳରେ କଂଗ୍ରେସ, ହିନ୍ଦୁ ଆତ୍ମାର ସର୍ବସ୍ୱ 'ଜଗନ୍ନାଥଜୀ'ରେ କଂଗ୍ରେସ।'' ବୁଢ଼ୀ ବିଧବା ବ୍ରାହ୍ମଣୀଠୁ, ପାନବାଲା -ଟାଙ୍ଗାବାଲା ଆଦି କରି ଚୁଡ଼ା ଚାଉଳ ବାନ୍ଧିଲେଣି। କଂଗ୍ରେସ୍ ଦେଖିବେ - ପତିତପାବନବାନା ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବେ। ଭାଇ ! ଏହାପାଇଁ ପ୍ରସ୍ତୁତ ଅଛଟି ? ଓଡ଼ିଆର ଲାଜ ରହିବଟି।

ଗୋଟିଏ ନିବେଦନ - ଉତ୍କଳର ଏ ''ଓଡ଼ିଆ'' ନାଆଁଟାକୁ ମାରି ତଡ଼ିଦିଅ। ଆମେ ବିରାଟ କଳିଙ୍ଗର ଅଧିବାସୀ। ଆମେ 'କଳିଙ୍ଗ', ଆମେ ହୀନ ଓଡ଼ିଆ ବୋଲି କାହିଁକି କହୁଚୁ - ଲେଖିବୁ ? ତୁମ କଲମ ଜୋରରେ ହଟାଅ - ମହାନଦୀରେ ଓଡ଼ିଆ ନାଆଁଟା ବୁଡ଼େଇ ଦିଅ, ପୁନରୁଦ୍ଧାର କର କଳିଙ୍ଗକୁ - ବିରାଟ ବିଶ୍ୱବିମୋହନ କଳିଙ୍ଗକୁ। କଳିଙ୍ଗ କାହିଁକି ଅତୀତ ଇତିହାସର ସମ୍ବଳ ହେବ ? ଏଥିର ଜବରଦସ୍ତ ଆନ୍ଦୋଳନ କରି ଦେଶର ନାମକୁ ବଦଳାଅ - ସରକାରୀ କାଗଜ ପତ୍ରରୁ ସୁଦ୍ଧା କାଟ ଓଡ଼ିଶା ନାମ। ଲେଖ - ''କଳିଙ୍ଗ'', କଳିଙ୍ଗ-କେଶରୀ ତରୁଣ ଉତ୍କଳ। ତୁମେ କାହିଁକି ଓଡ଼ିଆ କୁଲି ହେବ ? ତୁମେ ତ ତେଜୋମୟ କଳିଙ୍ଗ ଯୁବକ ! ତୁମେ ତ କଳିଙ୍ଗ– କାନନର - ''ଶେରେ ବବ୍ବର।''

ରାଜପୁତ ମରିଛି - ଇତିହାସ ତ ତାର ମରିନାହିଁ ! କଳିଙ୍ଗ ଏକାବେଳେ ମରିନାହିଁ - ବଳହୀନ ରୁଗ୍ଣ ହୋଇପଡ଼ିଛି ସିନା ! ତାର ଚିକିତ୍ସା କର। ସେ ନବବଳରେ ଉଠି ଠିଆ ହେଉ। ବିଶାଳ କଳିଙ୍ଗର ସ୍ୱପ୍ନ ଦେଖ - ଗଞ୍ଜାମ, ସିଂହଭୂମି, ମେଦିନୀପୁର, କାନ୍ଥି, ଫିଲଝର୍, ଜୟପୁର, ବସ୍ତର - ସବୁ ତ କଳିଙ୍ଗ।

- ବୋର୍ଣ୍ଣିଓ, ବାଲି, ଜାଭା, ଲଙ୍କା,
ବାଜିଥିଲା ତହିଁ ସମର ଡଙ୍କା,
କୀର୍ତ୍ତୀ କଳିଙ୍ଗ ଜଗତ ଶଙ୍କା
ତାମ୍ରଲିପ୍ତ ବୋଇତ-ବାହୀ,
ଚାଲୁଥିଲେ ବୀର ଅନୀକିନୀ।

ଜଗାଅ ସେ ପୁରୁଣା ଦେଶ ପ୍ରେମ, ଦେଶ ଗର୍ବ, ମାତୃଭୂମି ମମତା କଳିଙ୍ଗର କୁଟୀରେ କୁଟୀରେ। ସରକାର ଆମକୁ ଆମାଲ୍‌ଗାମେସନ୍ (ଦେଶମିଶ୍ରଣ) ଦେଉ ନ ଦେଉ - ଆମେ ଆଗେ ମିଶି ଗୋଟାଏ ହୋଇଯିବା। ସରକାର ତେଣିକି ଗାଲରେ ହାତଦେଇ ବସି ଭାବୁଥାଉ। ଦେଶ ମିଶ୍ରଣ ହେବ ? ନା ଦିଲ୍ଲୀକା ଲଡୁ କିଏ କାହାକୁ ଦେଲାଣି ? ପ୍ରାଣର ଆଗ ମିଶ୍ରଣ ହେଉ। ଆସେମ୍ବ୍ଲି ଗୋଲଟେବୁଲ୍ ଭିତରେ ଦେଶ ମିଶ୍ରଣ ଦେବତା କଅଣ ଲୁଚି ବସିଛନ୍ତି ? କଳିଙ୍ଗର ପ୍ରାଣରେ ଅଛି - ଆମର ସେହି ଆରାଧ ଦେବୀ। ଆମର ଶ୍ରୀ ବିରଜା ଉତ୍କଳର ଠାକୁରାଣୀ। କୁଳାଙ୍ଗାରଙ୍କର କୁହୁକରେ ସେ ଭୁଲିକରି ବାହାରିପଡ଼ିବେ ନାହିଁ। ଆମ ଅପୂଜା ଠାକୁରାଣୀ ଚାହୁଁଛନ୍ତି ପ୍ରାଣ– ନୈବେଦ୍ୟ। 'ସତ୍ୟ-ସମାଚାର'[୧] ପରି ଉଣ୍ଡାଚାର ଦ୍ୱାରା - ପଣ୍ଡାପୂଜାଦ୍ୱାରା ଦେବୀଦର୍ଶନ ସମ୍ଭବ ନୁହେଁ। ମଶାଣି ମଡ଼ା ଉପରେ - ଅତଡ଼ା ଖସା ବ୍ରାହ୍ମଣୀ

(୧) ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଦ୍ୱାରା ପ୍ରକାଶିତ ସମ୍ବାଦପତ୍ର, ପ୍ରକାଶକାଳ ୧୯୩୦

ବୈତରଣୀର ସବଗ୍ରାସୀ ପ୍ରଳୟ ବଢ଼ି ଉଛୁଳା କୂଳରେ ଯେଉଁ ନବୀନ ସାଧକ ଯୁବକ କାପାଳିକ ବସି, ସାଧନାକରି ରକ୍ତ ବଳି ଢାଳିବ - ସେହି ଦେଖିବ ଉତ୍କଳର ସିଂହବାହିନୀ ଦେବୀଙ୍କୁ। ତାର ଅଗିତ୍ରାସା - ରକ୍ତଭୂଷା - ରକ୍ଷୋନାଶା ରସନା। ତାର ନେତ୍ରରୁ ପ୍ରଳୟ ଅଗ୍ନି ବାହାରି କୋଟି କଙ୍କାଳମାଳାକୁ ଭସ୍ମ କରିଦେଉଛି। ଉଠ ଭଗୀରଥ ! ଆଣ ଗଙ୍ଗାଜଳ ! ଆସ କଳିଙ୍ଗର ପ୍ରତାପ, ପୁରୁଷୋତ୍ତମ, କପିଳେନ୍ଦ୍ର, ମୁକୁନ୍ଦ, ଖାରବେଳ, ଐର ! ତୁମରି ଅସିଧାରରେ ହୀନ, ଦୁର୍ବଳ, ଆବର୍ଜନାର ସଂସ୍କାରକରି ଚାଲିଯାଅ। ଏତେ ବିଲାତି ଦଳରେ ଆମର ପାଟ ପଲ୍ଙ୍କଗୁଡ଼ାକ ପୋତି ହୋଇ ମେଲେରିଆର ଘର ହେଲାଣି। କଳିଙ୍ଗ କୃଷକ - ଚାଷୁଣୀ, ମାଲୁଣୀ ! ଉଠ, ଏ ତୁମ କାମ - ତୁମେ ସିନା ଏ ଆବର୍ଜନା ସଫା କରିବ ! କଳିଙ୍ଗର ଶକ୍ତିଶାଳିନୀ ରମଣି ! ଏ ବିଲାତି ଦଳକୁ ତୁମେ ଏକସଙ୍ଗେ କାଢ଼ି, ଫିଙ୍ଗି, ଦଳିଦେବ।

ଘର କୋଣରେ ଲୁଚିବସିଛ ? ଘର କୋଣରେ ଲୁଚିବା ସମୟ ନୁହେଁ। ସାରା ଭାରତଟା ତୁମ ଦୁଆରେ ଅତିଥି। ଲକ୍ଷ୍ମୀ ଠାକୁରାଣି, ଉଠ, ରାନ୍ଧ। ତୁମେ ପରଷିଲେ ଭାରତ ଖାଇବ, ଭୋକୀ, ଶୋଷୀ ଭାରତ। ତୁମ ମହାପ୍ରସାଦଲାଗି ତୁମ ଦୁଆରକୁ ଆସୁଛି - ତୁମେ ତାକୁ କଅଣ ଉପାସରେ ଫେରାଇଦେବ ?

ଉତ୍କଳର ଠାକୁର ରାଜା। ଲକ୍ଷେ ରଜାର ମଉଡ଼ମଣି। ତୁମ ରାଜ୍ୟ ଆଜି ନାରଖାର, ଜଗନ୍ନାଥଙ୍କର ପରୀଛା ହୋଇ ତୁମେ ଭିକାରୀ ହେଲ କିପରି ? ତୁମର ବୀର ଶ୍ରୀ ବୀରବର ପ୍ରତାପ କଣ କଥାର କଥା !

ନିମ୍ବକାଠ ଜଗନ୍ନାଥ ! ଜାଣିଲି, ତୁ ନିହାତି କାଠଟାଏ। ଆମେ ଏତେ ଦଶା ହେଲୁଣି, ତୁ କାଠମୂର୍ତ୍ତି ସିଂହାସନରେ ବସି କଣ ଆମ ମରଣ ଦେଖି, ଆମ ସର୍ବନାଶ ଦେଖି, ଆନନ୍ଦରେ ଭୋଗରାଗ ହେଉଛୁ। ନିର୍ମାୟା ମହାପୁରୁଷ, ତୁ ଜଗନ୍ନାଥ ଥାଉ ଭାରତ ଅନାଥ। ତୋ କୃପାସିଂହାସନ ଟଳୁ ନାହିଁ ? ଭାରତ ସେଥିପାଇଁ 'ପା' ଲାଗି ଆସିଛି, ଏଥର ଗୋଡ଼ ଧରି ପଡ଼ିବ। ତୁ କୃପା କର ବା ନ କର। ତୋରି ଗୋଡ଼ତଳେ ଆମରି ଭାଗ୍ୟ ପରୀକ୍ଷା। ଏଥର ହିନ୍ଦୁ ଜାତି ଉଠିବ, ନୋହିଲେ ମହାସିନ୍ଧୁରେ ବୁଡ଼ିବ। ନାମ ରହିଯିବ ଜଗନ୍ନାଥ ଯା କଲେ। ଦାରୁବ୍ରହ୍ମ !

ଶୁଣ ଆମ ଜଣାଣ !
ଅବା ଘେନ ଏ ନର୍ମାଖୀ ପ୍ରାଣ।
ଯାଉ ଜୀବନ ଥାଉ ଆନ -
ଯାଉ ସଂପଦ ଥାଉ ମାନ।
ବୀର ଭଗତ ହେଲା ପ୍ରାଣ -
ରଖି ଗୁମାନ, ବାନ୍ଧି ଟାଣ।

ଆମେ ମରିବୁ, କିନ୍ତୁ ଆମ ହକ୍ ଛାଡ଼ିବୁ ନାହିଁ। ଦୁର୍ବଳ ! ବଳବାନ୍‌କୁ ଭୟ କର ନାହିଁ। ନିର୍ଦ୍ଧନ ! ଧନୀ ଗୋଡ଼ତଳ ଜୁହାରକୁ ଜୀବନର ସର୍ବସ୍ୱ ଭାଳ ନାହିଁ। ମଜୁରିଆ ଭାଇ !

ତୁମ ମାଲିକ ଏଥର ଚେତିଲାଣି। ନିରସ୍ତ, ଆତ୍ମବଳ ତୁମର ମହାନ୍ ଅସ୍ତ୍ର। ନାରୀ, ପୋଥି ପାଞ୍ଜି ପୋଡ଼ - ଆପଣାପାଇଁ ନୂଆ ଆଇନ ଗଢ଼। ତୁମେ ଦେଶର ଶକ୍ତି, ତୁମ ଅତ୍ୟାଚାରୀ ତୁମଠି ଡରିଲେଣି। ତୁମେ ମୃତ୍ୟୁଞ୍ଜୟା ସାବିତ୍ରୀ, ତୁମେ ଦୈତ୍ୟଦଳନା ଦଶଭୁଜା, ତୁମେ ତ ଦେବତା, ତୁମେ ତ ମହା ରଣଚଣ୍ଡୀ ଚାମୁଣ୍ଡୀ, ତୁମେ ତ ଅନ୍ନଦା ଲକ୍ଷ୍ମୀ, ତୁମେ ତ ସେବାର ସୁଭଦ୍ରା। ଉତ୍କଳୀୟେ ! ଜାଗ। ସହକାରର ମଧୁର ପଞ୍ଚମ ତୁମ ପ୍ରାଣରେ ବସନ୍ତର ବୀଣା ବଜାଉ। ତୁମେ ଉଠ, ତୁମେ ଉଠିଲେ ଘର ଉଠିଲା, ଘର ଉଠିଲେ ଗାଁ ଉଠିଲା, ଗାଁ ଉଠିଲେ ଦେଶ ଉଠିଲା। ଶତ ସୁନାମଣି, କୋକିଳା, ସରୋଜିନୀ, ସରଳା, ରମା, ମାଳତୀ,(୧) ତୁମେ ଏ ଦେଶକୁ ଉଦ୍ଧାର କର। ଏ ତୁମର ହାତର କଥା।



## ଦିଲ୍ଲୀ ଚିଠି(୨)

ସଂପାଦକ ମହାଶୟ, ସାଦର ନମସ୍ତେ -

ଆଜିକାଲି ପତ୍ରପତ୍ରିକାମାନଙ୍କରେ ଦେଖୁଛି, ଉତ୍କଳର କେଉଁଠି କଂଗ୍ରେସ ହେବ, ଏ ବିଷୟ ନେଇ ଭାରି - ସମାଲୋଚନା, ନାନା ପ୍ରସ୍ତାବ। ସ୍ଥାନ ଦୁଇଟି ପୁରୀ ବା କଟକ। ସୁବିଧା ଦୃଷ୍ଟିରେ କଟକରେ କଂଗ୍ରେସ ହେଲେ ଭଲହେବ, ଏହା ବୋଧହୁଏ କଟକ ଜିଲ୍ଲାର ପ୍ରଧାନ ପ୍ରଧାନ ନେତା ଓ କର୍ମୀମାନେ କହୁଥିବେ। ମାତ୍ର ସ୍ଥାନର ମହତ୍ତ୍ୱ, ଜାତିର ମହତ୍ତ୍ୱ; ଜାତିର ଗର୍ବ, ଅଭିମାନ, ସାରା ଜଗତ ସାମନାରେ ଗୌରବର ଅବଦାନ ଉତ୍କଳର ବର୍ତ୍ତମାନ କଟକ ନୁହେଁ। ସେହି ନୀଳ ସିନ୍ଧୁବେଳାବର୍ତ୍ତିନୀ ପୁରୀ। ପୁରୀ-ଜଗନ୍ନାଥ ! ଏ ନାଁଆରେ ଯେପରି ଗୋଟାଏ ମାଦକତା ଅଛି। 'କଟକରେ କଂଗ୍ରେସ' - ଏ କଥା ବୋଧହୁଏ ନ ହେବା ପୂର୍ବରୁ ଭାବି ହେଉ ନାହିଁ। ଜଗନ୍ନାଥଜୀର କଂଗ୍ରେସ ପୁରୁଷୋତ୍ତମ ଧାମରେ ଜାତୀୟ ମହାସଭାର ଅଧିବେଶନ। ଶ୍ରୀ କ୍ଷେତ୍ରବାସୀଙ୍କ ପାଦତଳେ ଭାରତର ଭାଗ୍ୟପରୀକ୍ଷା ବୋଧହୁଏ ହିନ୍ଦୁଜଗତ ପ୍ରାଣରେ ଯେ ପ୍ରେରଣା ଆଣିଦେଉଛି, ତା କଟକୀ କଂଗ୍ରେସ ଆଣିଲା ଭଳି ଦିଶୁନାହିଁ। ଜଗନ୍ନାଥଜୀ ଦର୍ଶନ ଲାଗି ତ ଲୋକେ ଚୁଡ଼ା ଚାଉଳ ବାନ୍ଧିଲେଣି, ତାଙ୍କୁ ବାଟ ବହକେଇବା ଲାଗି ଏ ଗୋଟାଏ ଉପାୟ ନୁହେଁ ତ? କାଳେ ଜଗନ୍ନାଥ ନାଁରେ ଲକ୍ଷ ଲକ୍ଷ ଲୋକ ହାଜର ହୋଇଯିବେ ?

ଯାହାହେଉ, ସେଥିରେ ଆମର କଅଣ ? କଂଗ୍ରେସ କଟକରେ ହେଉ, କି ପୁରୀରେ ହେଉ, ଆମେ ବିଦେଶରୁ ଗଲେ ଆମରି ଜନ୍ମଭୂମିରେ ପାଦ ଦେଲାକ୍ଷଣି ଆନନ୍ଦରେ ବିଭୋର ହେବୁ। ମାତ୍ର ଦୁଃଖର କଥା - ବାରବାଟୀ ତ ଭାଂଗି ଚୁନ୍‌ମାର, ଶୁନ୍‌ଶାନ୍ - ଭାରତ ଲୋକେ କ'ଣ 'ବିରିବାଟୀ'(୨) ଦେଖି ଆସିବେ? ପୁରୀରେ କଂଗ୍ରେସ ହୋଇଥିଲେ ଭଲା - କାଳିଆ

(୧) ଏହି ନାରୀମାନେ ସ୍ୱାଧୀନତା ସଂଗ୍ରାମ ଓ ସାମାଜିକ ଆନ୍ଦୋଳନର ନେତ୍ରୀ ଭାବରେ ସୁପରିଚିତା (୨) କଟକ ନିକଟବର୍ତ୍ତୀ ଏକ ବଡ଼ଗାଁ

ଠାକୁରଙ୍କ ଦର୍ଶନଠେଉଁ ପୃଥିବୀର ଏକ ପରମ ସୁନ୍ଦର ଦୃଶ୍ୟ - ପୁରୀର ସେହି ନୀଳ-ଲହରୀ ଉଚ୍ଛ୍ୱାସମୟ ନୀଳମାଧବର ରୂପକାନ୍ତି - ସମୁଦ୍ର, ଯାହାକୁ ଦେଖି କଳିଙ୍ଗ ସନ୍ତାନ ଶ୍ରୀ ଚୈତନ୍ୟ ପାଗଳ ଭଳି ଡେଇଁପଡ଼ି ତାର ନୀଳାମ୍ବୁ କୋଳରେ ଚିରବିଶ୍ରାମ ଲାଭ କରିଥିଲେ, ତାକୁ ହେଲେ ଦେଖି ଆସନ୍ତେ! ଭାରତରେ ଏପରି କିଏ ଅଛି, ପୁରୀର ପୁରାଣ ମହିମା ଯାହାକୁ ମୁଗ୍ଧ କରି ନାହିଁ? ଭାରତ ଜାତୀୟ ମହାସଭାର ସଭାପତି ଯେତେବେଳେ ଅଭିଭାଷଣ ଦେବାକୁ ଛିଡ଼ା ହେବେ, ପୁରୀର ରଂଗମଞ୍ଚରୁ ସିନା କହନ୍ତେ, - ''ଆଜି ହିନ୍ଦୁ-ହୃଦୟର ପ୍ରିୟତମ ପୁରୁଷୋତ୍ତମ ଧାମରେ ଜଗନ୍ନାଥଙ୍କ ପାଦତଳେ ମୁଁ ଠିଆ ହୋଇ ଭାରତର ଭାଗ୍ୟ ନିର୍ଣ୍ଣୟ ଲାଗି ଆପଣାମାନଙ୍କୁ ଆହ୍ୱାନକରୁଛି।'' - ଆହୁରି ସେ କେତେ କଥା - ଆମ ବୀର ଶ୍ରୀ ବୀରବର ଗଜପତିଙ୍କର ଧର୍ମ ପୀଠସ୍ଥଳୀ - ଅଠରନଳା ସେପାରେ, ଯେଉଁଠି ହିନ୍ଦୁର ଯାବତୀୟ ନୃପତିମଣ୍ଡଳୀ ଯାନାସନ ତେଜି ତଳେ ଉଭାହୋଇ ବିଷ୍ଣୁଙ୍କୁ ତଥା ଚଳନ୍ତି ବିଷ୍ଣୁଙ୍କୁ ସମ୍ମାନ ଦିଅନ୍ତି - ଆମ ମହାତ୍ମା ଗାନ୍ଧି - ଆମର ଆଜି ତେତିଶ କୋଟିର ହୃଦୟ ଦେବତା, ଜଗନ୍ନାଥଙ୍କ ସିଂହାସନ ତଳେ ଠିଆହେଲାବେଳକୁ କିପରି ଲାଗନ୍ତା? ସତେ ଯେପରି ମୂର୍ତ୍ତିମନ୍ତ ସ୍ୱରାଜ୍ୟ ସେହି ଜଗତରନାଥଙ୍କର ସାମ୍ୟ, ମୈତ୍ରୀ, ସ୍ୱାଧୀନତାର ମହାଧ୍ୱଜା, କଂଗ୍ରେସର ଜାତୀୟ ପତାକା ଛଳରେ ଉଠୁଛି? ଏ କଣ କବିକଳ୍ପନା? ବାତୁଳର ବାତୁଳତା? ନାଁ ଜ୍ୱରରୋଗୀର ପ୍ରଳାପ?

ଥରେ ଭାବନ୍ତୁ, ଆମର ସ୍ୱାଗତକାରିଣୀ (ରିସେପ୍‌ସନ) ସଭାର ସଭାପତି ଯେତେବେଳେ ପୁରୀର ସେହି ପୁଣ୍ୟମୟ ଚକ୍ରତୀର୍ଥ ବାଲି ଉପରେ ପାଦଦେବାକୁ ଭାରତୀୟଙ୍କୁ ଆହ୍ୱାନକରିବେ, ନୀଳଚକ୍ର ତଳେ ମହାଭାରତୀୟ ଭ୍ରାତୃମଣ୍ଡଳୀ ହାତ ଧରାଧରି ହୋଇ ଯେତେବେଳେ ବସିବେ - ସେତେବେଳେ ଦୁଃଖିନୀ ଭାରତମାତା, ଅତ୍ୟାଚାର-ଅନ୍ୟାଚାର-ପୀଡ଼ିତା-ଶତଲାଞ୍ଛନା-ବେଦନା-ଜର୍ଜ୍ଜରିତା ଭାରତମାତ, ନିଶ୍ଚୟ ତାର କୋଟିକଣ୍ଠରେ, ଅପରିସୀମା ଯନ୍ତ୍ରଣାରେ, ଦାରିଦ୍ର୍ୟ ପୀଡ଼ନରେ ଭାବିବ, ତାର ଦଶା; ତାର ଅତୀତ, ବର୍ତ୍ତମାନ। ସତେ ସେ କେଉଁଠି ଅଛି? ସେ କୋଟିକଙ୍କାଳମାଳିନୀ, ତାର ଲକ୍ଷ ଲକ୍ଷ ଦରିଦ୍ର କୃଷକ ପୁତ୍ରମାନଙ୍କର କରୁଣ ମୁଖମଣ୍ଡଳରେ ଜୀବନ୍ତ ଛବିଗୁଡ଼ିଏ ସତେ ଯେପରି ଜଗନ୍ନାଥଙ୍କ ଦରବାରରେ ହାଜର କରିବ ପରା!

କେବଳ ସୁବିଧା! ସ୍ଥାନର ସୁବିଧା, ପାଣି ଆଲୁଅର ସୁବିଧା - ଯଦି ଜାତିର ଚରମ ଲକ୍ଷ୍ୟ ହୋଇଥାଏ। କଟକରେ କଂଗ୍ରେସ ହେଲେ ଚିନ୍ତା ନାହିଁ। କିନ୍ତୁ ଓଡ଼ିଶା, ଉତ୍କଳ ବା କଳିଙ୍ଗ ପ୍ରତି ଯଦି କାହାରି ଟିକେ ମାୟା ମମତା ଥାଏ, ଯଦି ଜାତିର ଅତୀତ ଓ ଭବିଷ୍ୟତ୍ ପ୍ରତି କାହାରି ଟିକେ ଲକ୍ଷ୍ୟଥାଏ, ଯଦି ସମସ୍ତ ଉତ୍କଳର ମନୋଭାବ - ସମୁଦାୟ ଭାରତର ଆକାଙ୍କ୍ଷା, ବିଶାଳ ଜଗତର ଆଗ୍ରହ ପ୍ରତି କାହାରି ଦୃଷ୍ଟିଥାଏ, ତେବେ ଆମ ମତରେ ପୁରୀରେ କଂଗ୍ରେସ ହେବା ଶତଗୁଣେ ଶ୍ରେୟଃ। ଜିଲ୍ଲାଗତ ଈର୍ଷାଦ୍ୱେଷ ଏଠି ସ୍ଥାନ ନ ପାଉ। ଜାତିର ଭଲମନ୍ଦ ଏଠି ବିଚାର୍ଯ୍ୟ। ଯେଉଁମାନେ ମନପ୍ରାଣ ଢାଳି କଟକୀ କଂଗ୍ରେସ ସଫଳ କରିବାକୁ

ବ୍ୟଗ୍ର - ସେହିମାନେ ମନପ୍ରାଣ ଢାଳି କଣ ଜାତି ଗୋଟାକର ପ୍ରିୟସ୍ଥଳୀ ପୁରୀର କଂଗ୍ରେସକୁ କଣ ତାଙ୍କରି ଏକା ଆଦରର ଧନ ? ସେ ତ ନିଖିଳ ଭାରତର ସଂପତ୍ତି !

ଉତ୍କଳୀୟ ! ତୁମର ପୁରୀ ଜଗନ୍ନାଥ ଦ୍ୱାରା ଯଦି ଜଗତର ସମ୍ମାନ, ତୁମେ ତାକୁ ଆହୁରି ଦୃଢ଼କରି ଧର। ନିଜର ଗାଁକନ୍ୟା ସିଘାଂଣିନାକୀ ଭଳି ଉତ୍କୃଷ୍ଟ ଜିନିଷଟିମାନ ମାଟିରେ ଫିଙ୍ଗି ଗୋଡ଼ରେ ଦଳ ନାହିଁ। ଥରେ ଭାବିଦେଖ, ଆମପାଇଁ କଟକ ଯାହା, ପୁରୀ ତାହା, କିନ୍ତୁ ଜଗତର ଲୋକଙ୍କପାଇଁ ଆନନ୍ଦଧାମ ଜଗଦ୍‌ବରେଣ୍ୟ ଜଗନ୍ନାଥ କ୍ଷେତ୍ର ଯାହା, କଟକ ତା କି ? ଆପଣା ହୃଦୟ ଉପରେ ହାତଥୋଇ; ମନକୁ, ମନ ଭିତରେ ଥିବା ପରମାତ୍ମାକୁ ପଚାରିନିଅ - କଂଗ୍ରେସ କେଉଁଠି ହେବ - ପୁରୀ ନା କଟକ ? ନିଜେ ଉତ୍ତର ପାଇବ। ଜ୍ୟାମିତି, ଆଲେଜେବ୍ରା ଅଙ୍କରେ କାମକରି ବସିଲେ ଚଳିବ ନାହିଁ, ଜାତିର ହୃଦୟ ଅଛି ତ ? ମୋର ଆଶା, ପ୍ରକୃତ ଉତ୍ତର ନେତ୍ର ମିଳନରୁ ମିଳିବଣି।

ଆମ ଜାତି କାହିଁକି ଜଗତରେ ଅପରିଚିତ, ଆମ ଜୟଦେବ, କାଳିଦାସ କୁଆଡ଼େ ଫସରଫାଟି ଗଲେ - ଆମ ତାନସେନ, ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ଜଗନ୍ନାଥଙ୍କର ନାଁ ଗାଁ ଲୁଚିଗଲା। ଆମେ ବିଶ୍ୱଭାବୁକ, ଆମେ ବିଶ୍ୱପ୍ରେମୀ ଦଳେ ଉତ୍କଳର ରକ୍ତସିଞ୍ଚି, ଉତ୍କଳ-ସାହିତ୍ୟପୀଠରେ ବସି - 'ହାୟ ବିଶ୍ୱକବି' ହେଲେ ଭାରି ଶୋଭାପାଏ ପରା ! ଆମେ ଆମର ଅତୀତ, ବର୍ତ୍ତମାନକୁ ପ୍ରକୃତରେ ମାଟିରେ ମିଶେଇବାକୁ ସବୁବେଳେ ପ୍ରସ୍ତୁତ। ଆମ ଭିତରେ ଯେଉଁଟିମାନ ମୁଣ୍ଡ ଟେକୁଛନ୍ତି, ବିଶ୍ୱର ଯେଉଁମାନଙ୍କୁ ସମ୍ମାନ କରିବାର କଥା, ତାଙ୍କୁ ଆମେ କଣ ସମ୍ମାନ ଦେଉଛୁ ?

ମୁଁ ପଚାରେଁ, ମହାତ୍ମା ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କର ଜନ୍ମୋତ୍ସବ ଦିନେ ହେଲେ ସମାରୋହରେ କେବେ କଟକରେ ପାଳିତହୋଇଛି ? କେହି ଥରେ ଭାବିଛି, କାଠି ଖଣ୍ଡକରେ ଯେଉଁ ମହାପୁରୁଷ ଗଗନମଣ୍ଡଳର ଅସଂଖ୍ୟ ଗ୍ରହନକ୍ଷତ୍ରଙ୍କର ଗତିବିଧି ଆଙ୍ଗୁଠି ଅଗରେ ଗଣି ଥୋଇଛନ୍ତି, ସେ କିପରି ଅସାଧାରଣ ବ୍ୟକ୍ତିଟିଏ ? କୋପରନିକସ୍, ଗାଲିଲିଓ, ସର ଆଇଜାକ୍ ନିଉଟନ୍‌ର ସମାନ ଆସନ ଦାବୀକଲା ଲୋକ ଆମ ଦେଶରେ। ଆମେ ପୁଣି ଅନ୍ଧ, ତାଙ୍କୁ ଚିହ୍ନି, ଚିହ୍ନି ନାହୁଁ।

ଆମ ଗୋପବଂଧୁ, କୃପାସିନ୍ଧୁଙ୍କପାଇଁ ଆମେ କଣ କଲୁଣି ? କାହିଁ, ଉତ୍କଳର କେଉଁ ଉତ୍କଳ ସାହିତ୍ୟ ସମାଜ[୧] ତ ଦିନେ ଯାଙ୍କର ଖବର ନିଏ ନାହିଁ ! ମଧୁସୂଦନଙ୍କର ମହାଭାବପୂତ ମହାପବିତ୍ର ବିଶ୍ୱଭାବପୂର୍ଣ୍ଣ କବିତାଗୁଡ଼ିକ - କେହି କେବେ ଭାବିଛି କି ଇଂରାଜୀରେ ଅନୁବାଦ କରି ଦେଶ ବିଦେଶକୁ ପଠାଇବାକୁ ? ଆଜି ଯୁଗର ତାନ୍‌ସେନ୍ ମୋହନ ଗୋସାଇଁଙ୍କୁ[୨] ଭାରତ ଚିହ୍ନେ କି ? ଆଉ ମଣିଷ କିଏ ହେବେ ? ଆମପାଇଁ କିଏ କଣ ସ୍ୱର୍ଗରୁ ଓହ୍ଲାଇବ ? କବି ଭୁବନେଶ୍ୱର ରଥ, ଯେକି ଆଜି ଦିନର କାଳିଦାସ, ତାଙ୍କୁ ଦୁନିଆଁ ଚିହ୍ନେ କି ? ସତ୍ତା ମାଲ

---

(୧) ୧୯୦୩ ମସିହାରେ କଟକରେ ପ୍ରତିଷ୍ଠିତ ସାହିତ୍ୟ ଅନୁଷ୍ଠାନ, (୨) ବିଖ୍ୟାତ ଲୀଳା ନାଟକ ଲେଖକ ଓ ବୈଷ୍ଣବ, ପ୍ରଥମ ଓଡ଼ିଆ ଚଳଚିତ୍ର ସୀତାବିବାହର ପ୍ରଯୋଜକ।

ଆମ ଗନ୍ତାଘରେ ଭରା, ଆମେ ପରର ଅଇଁଠାପତର ସାଉଣ୍ଟିବାରେ ବ୍ୟସ୍ତ। ଆମ ଭିତରେ ସାତ୍ତ୍ୱିକ-ତ୍ୟାଗୀ-କର୍ମୀ ଯେତେ ନେତା, ବୋଧହୁଏ ଜଣେ ଦିଜଣ ବଡ଼ ମୁଣ୍ଡିଆଙ୍କୁ ଛାଡ଼ିଦେଲେ ଆମ ଭାରତରେ ନଥିବେ। ଉପରେ ଖଦଡ଼ ଖଣ୍ଡେ ହଲେଇ, ଦାଣ୍ଡରେ ନେତା - ଘରେ ବିଲାତୀ। ଆମ ସରଳପ୍ରାଣ ଓଡ଼ିଆ ଧର୍ମ ବିଶୁଦ୍ଧ ଭାବନ୍ତି। କିନ୍ତୁ ଜୋର୍ ଯାହାର ମୁଲକ ତାହାର। ଗୁଜୁରାଟ ନାଁ କଲା; କାନ୍ଥି ଖଣ୍ଡକୁ ବଙ୍ଗାଳୀ ଆପଣାର କରିନେଲେ, ଓଡ଼ିଆ ବାପୁଡ଼ା କଳିଙ୍ଗ ନାଁ ବୁଡ଼େଇ ହାଣଖାଇ ମଲା; ଆଉ ନୀଳଗିରି, ବାଲେଶ୍ୱର, ଦଶପଲ୍ଲା, ଖୋରଧା, କନିକା, ବୋଲଗଡ଼ ଓ କେଉଁଝରେ ଅନ୍ଧାରୀ କୋଣରେ ଅଳିଆ ଗଦାରେ ଆବର୍ଜନା ହୋଇ ପଡ଼ିରହିଲେ। ଏ ସବୁ ଭାବିଲେ କାହାର ଦୁଃଖ ନ ଆସୁଛି? କଥାରେ କହନ୍ତି - ଶୋଇଲା ପୁଅର ଭାଗ ନାହିଁ। ଆମେ ଅଳସୁଆ, ଆମେ ଈର୍ଷାକୂଳ, ଆମେ ଆମରି ଭଲ ଜିନିଷମାନଙ୍କୁ ଦେଖି ପାରୁନାହୁଁ। ଆମର ଯତ୍ନ ନାହିଁ, ଆମରି ଶ୍ରେଷ୍ଠ ବ୍ୟକ୍ତିଙ୍କୁ ଦାଣ୍ଡରେ ଚିହ୍ନାଇବାକୁ। ଆଜି ଉତ୍କଳର ଦାବୀକୁ ଜଗତ ସାମନାରେ ପହଞ୍ଚାଇବାକୁ ହେବ। ଜଗତ ଦେଖୁ ନ ଦେଖୁ, ତାଙ୍କୁ ବଳେ ବଳେ ଦେଖାଇବାକୁ ହେବ - ଆମେ କଣ ଥିଲୁ, ଆଉ ଆଜି ମଧ ଆମେ କଣ ଅଛୁ? ଆମେ ନିଜର ଆତ୍ମବିଶ୍ୱାସ ହରାଇଲେ ଆମର ଆଉ ରକ୍ଷା ନାହିଁ। ଆମ କଲେଜପିଲାଏ ବିଜୁଳି ପଂଖାରେ ହାଉଆଖାଇ, ବିଜୁଳୀବତୀ ତଳେ ବସି ଡଂଢ, ଦୀନକୃଷ୍ଣଙ୍କୁ ଗୋଇଠା ମାରି, ନିଜ ଜାତିର ତାନ୍‌ସେନ୍ ଓ କାଳିଦାସଙ୍କୁ ପାସୋରି ଦେଇ, ରବୀନ୍ଦ୍ରଙ୍କ ରୀତିରେ ଭାବର ଆକାଶରେ ବାଦଲ ଧାରାର ସ୍ୱପ୍ନ ଛବି ଆଙ୍କିଲେ ଚଳିବ ନାହିଁ। ମମତାଜ ବେଗମ ପାର୍ଶୀଆଣୀ ପଠୁଣୀକୁ ବଙ୍ଗାଳୀ, ବାଙ୍ଗଲାର ନାରୀ ସୌନ୍ଦର୍ଯ୍ୟର ପରାକାଷ୍ଠା ଭାବିଲା ବେଳକୁ, ଆମେ ଲାଜ ଲୁଚୁକୁଚୁ ଆମ କାଳିଦାସ୍‌ଙ୍କ ଶକୁନ୍ତଳାର ଭୁବନମୋହିନୀ ମୂର୍ତ୍ତିଟି ଯେପରି ନ ଭୁଲିଯାଉ। ଚିତ୍ରବସନା ଚିତ୍ରାଙ୍ଗଦା, କୌରବ କୁଳବଧୂ ଦୁର୍ଯ୍ୟୋଧନଙ୍କର ପଟ୍ଟମହିଷୀ କଳିଙ୍ଗ କନ୍ୟା, ମହାସାମ୍ରାଜ୍ଞୀ ମହାପ୍ରତାପଶାଳିନୀ 'ଦଣ୍ଡୀ', ସିଦ୍ଧାର୍ଥ ସୁନ୍ଦରୀ ଯଶୋଧାରା ଗୋପା - ତେଜୋମୟୀ ଗାର୍ଗୀ, ବୈଧବ୍ୟ ଭୂମଣ୍ଡିତା ବିଦୂଷୀ ଲୀଳାବତୀ, ଆଲୋକସାମାନ୍ୟ ଖନା, ପଦ୍ମଦୃଶା ଜୟଦେବ ଗୃହିଣୀ ପଦ୍ମାବତୀ, ମାଦଳାପାଞ୍ଜି ଲେଖିକା କବି ମାଧବୀ - ଏମାନଙ୍କୁ, ଆମ ଜାତିର ଏ ମହା ମନସ୍ୱିନୀମାନଙ୍କୁ ଆମ ପିଲାଏ କଣ ଜାଣନ୍ତି? ଆମ କାଳିଆ ପଣ୍ଡିତ କାଳିଦାସଠାରୁ ପ୍ରାଚୀ ସମିତିର ଆର୍ତ୍ତବାବୁ ପର୍ଯ୍ୟନ୍ତ, ଆମର କବି ଗୁଣୀ ଭୀମଭୋଇଠୁଁ ସୁନ୍ଦରା ବାବାଜୀ ଯାଏ, ଆମର ଧର୍ମପ୍ରଚାରକ, ସାଧକ, ଭକ୍ତଙ୍କୁ ଆମେ କାହିଁକି ଭୁଲି ଯାଉଛୁ? ଆମ ଓଡ଼ିଆ ପୁଅଙ୍କର ଶିଳ୍ପ, ସାହିତ୍ୟ, ସଂଗୀତ, ରାଜନୀତି ସିନା ଆମରି ସଂପତ୍ତି?

ଅତଏବ, ହେ ଉତ୍କଳର ତରୁଣ, ଉତ୍କଳର ଭାବୀ ଆଶାଭରସାର ଆସ୍ପଦ! ତୁମେ ଅଲଗା ଅଲଗା ବାହାରେ ଛିଡ଼ାହୋଇଛ କାହିଁକି? ତୁମ ଜାତିର ସଂପତ୍ତି ଉତ୍କଳ-ସାହିତ୍ୟ-ସମାଜ-ମନ୍ଦିର ତୁମ ରାଜେନ୍ଦ୍ର ମଉଳି-ମଣ୍ଡନ ରାମଚନ୍ଦ୍ର ଭଞ୍ଜ ଭବନ[1] କଣ ତୁମର ଦଖଲି

(୧) ଉତ୍କଳ ସାହିତ୍ୟ ସମାଜର ସ୍ଥାୟୀ ଗୃହର ନାମ।

ସ୍ୱତ୍ୱରେ ନାହିଁ ? ହେ ତରୁଣ କବି, ତରୁଣ ସାହିତ୍ୟିକ ! ବୁଝିନିଅ ନିଜର ଅଧିକାର । ଓଡ଼ିଆ ଜାତିର ଜାତୀୟ ପୁଅଙ୍କ ଅଭ୍ୟର୍ଥନା ସଂବର୍ଦ୍ଧନା ହେବ । ତୁମେ କଣ ଦୁର୍ବଳ ? ସମଗ୍ର ତରୁଣ ଉତ୍କଳ ତୁମ ପଛରେ ଅଛି । କି ଡ଼ର, କି ଭୟ ! ଆମେ ଆଜି ବଦ୍ଧପରିକର । ଉତ୍କଳର ପ୍ରାଣର ଭାଷାକୁ ଦାଣ୍ଡରେ ଜଣାଇବୁଁ, ଉତ୍କଳର ଯାହା କିଛି ଗୌରବ ଗର୍ବର ସାମଗ୍ରୀ ଅଛି, ଆମ ସାଧନା ବଳରେ ତାକୁ ଦାଣ୍ଡକୁ ଟାଣିଆଣିବୁ - ଏଥିପାଇଁ ଶକ୍ତି ଲୋଡ଼ା । ଏ ଶକ୍ତି କେବଳ କଟକ, ପୁରୀ, ବାଲେଶ୍ୱରର ଶକ୍ତି ନୁହେଁ - ଏ ଶକ୍ତି ସମଗ୍ର ଉତ୍କଳର - ନିଖିଳ କଳିଙ୍ଗର । ଏଥିରେ ମୋଗଲବନ୍ଦୀର ଯେପରି, ଗଡ଼ଜାତର ସେହି ପରି ପୂରା ଅଧିକାର !

ସତ କଥା, ଗଡ଼ଜାତ କଣ ଅନ୍ଧାରୀ ମୂଲକ ? କଳିଙ୍ଗର ସ୍ୱାଧୀନ ରବି ଆଜି ସୁଦ୍ଧା ଯେଉଁଠି ଅସ୍ତ ହୋଇ ନାହାନ୍ତି, ଉତ୍କଳର ଅତୀତର ମହା ଗୌରବମୟ ଅବଦାନ ଯେ ଗଡ଼ଜାତ, ସେ କାହିଁକି ଆଜି ବି ସଉତୁଣୀ କଳି ଭଳି, ମୋଗଲବନ୍ଦୀ ଓ ତା ନିଜ ଭିତରେ ବାଡ଼ଦେଇ ବସିଛି ? ଗଡ଼ଜାତରେ ପ୍ରଜା ଆଉ କେତେଦିନ ହାତଗୁ ଖାଇ ବେଠିଖଟୁଥିବେ, ସଡ଼କରେ କରକଟା(୧) ପକାଇ, ଝାଳ ନାଳ ହୋଇ, ଦି' ପହର ଖରାରେ ବେତମାଡ଼ ଖାଇ, ଏ ଆଖି ଲୁହ ସେ ଆଖିରେ ମାରୁଥିବେ ?

ଗଡ଼ଜାତର ବିଦୁଷୀ କନ୍ୟା 'କାଞ୍ଚନମାଳା' କଥା ଉତ୍କଳରେ କେତେ ଜଣ ଜାଣନ୍ତି ? ଆବାଲ୍ୟ ବୈଧବ୍ୟବ୍ରତାଚାରିଣୀ, ଶତଶାସ୍ତ୍ର-ପଣ୍ଡିତା ଭାରତର ସବୁ ତୀର୍ଥ ବୁଲି ଯେତେବେଳେ ନିଜ ଦେଶକୁ ଫେରି ବ୍ରାହ୍ମଣକୂଳରେ କିଶୋରୀ ବିବାହ ଚଳାଇବାପାଇଁ ପ୍ରାଣପଣ ଉଦ୍ୟମ କରିଥିଲା, ସେ କଥା କେତେ ଖବରକାଗଜରେ ପ୍ରକାଶ ପାଇଥିଲା ? ଆହା, ଗଡ଼ଜାତର କେଉଁ କଣରେ ଭୂଷଣ କବି ବହି ଖଣ୍ଡିଏ ଛାପିଛି ଯେ, ତାର ସୁଦ୍ଧା ସନ୍ଧାନ କେହି ନିଅନ୍ତି ନାହିଁ । ଅନ୍ୟ ଜାତି କିଏ କୋଉଠି କାଶୁଚି, ଛିଙ୍କୁଛି ତ ଖବରକାଗଜରେ ଲମ୍ୱାଲମ୍ୱା ଖବର ଛାପି ହୋଇ ଯାଉଛି । ଆଉ ଆମର 'ଶିଳ ଶିଳପୁଆ ଗଗନେ ଉଡ଼ନ୍ତି' ଆମେ ଜାଣୁନା, ପରଦେଶର ତୁଳା କେରିକର ଖବର ନେଇ ଜାଣୁ । ଡାକାଇ ମଲମଲ ପିଲାଦିନୁ ଶୁଣି ଆସିଲୁ । ଓଡ଼ିଶୀ ମାଣିଆବନ୍ଧର ଫୁଲ ଧଡ଼ି କୌଶଳରେ ସଂଗ୍ରହକରି ଯେ ମାଞ୍ଚେଷ୍ଟର, ଲାଙ୍କାଶାୟାର ଭାରତକୁ ସୁନ୍ଦର ଲୁଗା ପେଡ଼ିରେ ଭରିଦେଲା, ତା' ବେଚରା କେହି ଜାଣନ୍ତି କି ? ଆମ ଦେଶ କଂସା, ପିତଳ, ମାଟି, ରଂଗ, ସୁନାରୂପାର ତାରକସି କାମ, ଶିଙ୍ଘ ହାତୀଦାନ୍ତର ଗଠନ ଚାତୁରୀ ଆମକୁ ମଜୁରିଆ ରଖି ଦିଲ୍ଲୀ ମୁଖାମଲ, ଗୋକୁଲ ଚାନ୍ଦ ବାଣିଆଠାରୁ ପୃଥିବୀର ବିଖ୍ୟାତ ଆଇଭରି(୨) ପାଲେସବାଲା ପର୍ଯ୍ୟନ୍ତ ଆପଣାଇ ନେଲେ । କଲିକତା, ଡାକା, କଥା ତ ଛାଡ଼; ସେମାନେ ତ ଜୟଦେବଙ୍କଠାରୁ କୋଣାର୍କ ବାରବାଟୀ ଯାଏ ଆପଣାର ସାବ୍ୟସ୍ତ କରି ସାରିଲେଣି, ଶହେ ଯୋଜନ ଦୂରରେ ରହି । ଆଉ ଆମ କଳିଙ୍ଗ ପୁଅ କଅଁଳ ନିଦରେ 'ପଉଷ ବାଆର ମଧୁର ଶୀତଳ ପରଶ - ବକୁଳ ଆମାର ଯଉବନ ଜାଗେ ବକ୍ଷେ । ନିଦ୍ରା ଲାଗେ ତକ୍ଷେ'ର ଆରାଧନାରେ ଆନନ୍ଦିତ । ଏ ଅଲାଜୁକ ଆଳସ୍ୟ ଆମକୁ ଆଉ କେତେ କାଳ ସନ୍ତେଇବ, କହନା କରି ହେଉ ନାହିଁ ।

(୧) ମୋରମ୍, ନାଲିମାଟି, ରଗଡ଼ି, (୨) ହାତୀଦାନ୍ତ

ଦିଲ୍ଲୀରେ ବସି ଲାଲକିଲ୍ଲା ଦେଖି ବେଳେବେଳେ ମନ କଣ ହୁଏ ବୋଲି ଏତକ ଲେଖିଲି। ଲାଲକିଲ୍ଲା, ତାଜମହଲ ଓଡ଼ିଆ ଶିଳ୍ପୀର ହାତର ନିଶାଣ,[୧] କିନ୍ତୁ ଜଗତ୍ ଜଅଣ ଜାଣେ ? ଭଙ୍ଗା କୋଣାର୍କର ମୁଣ୍ଡିମରା ଧର୍ମପଦକୁ ଦୁନିଆଁ କଣ ଚିହ୍ନେ ? ଦେଢ଼ଶ ହାତ ଉଚ୍ଚ କୋଣାର୍କରୁ ବାର ବରଷର ପିଲା– ଜାତିର, ସମାଜର ମାନମହତଲାଗି ପ୍ରାଣଦେବାପାଇଁ ଯେତେବେଳେ ଖସି ଅତଳର ପାତାଳଫୁଟାରେ ପଡ଼ିଲା, ସେ ଭୀଷଣ ଦୃଶ୍ୟ - ସେ ଅସୀମ ତ୍ୟାଗ କେବେ ଆମ ଗଣ୍ଠିଧନ ନୟନସଂଖାଳିଟିମାନ ଆଖିଆଗରେ ଆଙ୍କିଛନ୍ତି ? କାହିଁ ଜଳନ୍ତା ନାବର ଫରାସୀ ଟୋକା କାସାବିଏଙ୍କା ପ୍ରାଣ ଦେଇଥିଲା। ତା ଆମେ ଜାଣୁ। ଆମ ଖାରବେଳ, କପିଳେନ୍ଦ୍ର, ପୁରୁଷୋତ୍ତମ, ପ୍ରତାପରୁଦ୍ରଙ୍କୁ ଆମେ କଣ ଚିହ୍ନିବୁ ? ଆମେ ଇଂଲଣ୍ଡର ଆର୍ଥର, ସ୍କଟଲାଣ୍ଡର ରବର୍ଟବ୍ରୁଶ୍, ଆୟାରଲାଣ୍ଡର ମାକ୍‌ସୁଇନ୍‌ଙ୍କୁ ଜାଣୁ; ମାତ୍ର ହାବେଲୀ ପୋଖରୀରେ ସତୀତ୍ୱ ରକ୍ଷା ଲାଗି ବୁଡ଼ି ମରିଥିବା ଓଡ଼ିଶାର ମହାରାଣୀଙ୍କୁ ଜାଣୁ ନାହିଁ। ଚିତୋରର ଚିତାରେ ପଦ୍ମିନୀଙ୍କୁ ଦେଖିବା ସଂଗେ ସଂଗେ, ମୁକୁନ୍ଦଦେବଙ୍କର ମହିଷୀଙ୍କ ଅପୂର୍ବ କୀର୍ତ୍ତିକଳାପ ଆମର ମନେ ପଡ଼େ କି ? କାଠଯୋଡ଼ୀର ପଥର ବନ୍ଧ ଦିନେ ଆମକୁ ପ୍ରେରଣା ଦିଏ ନାହିଁ, ହାଓଡ଼ା ପୋଲ ଆମର ଆଦରଣୀୟ ହୋଇଛି !

ଏ ସବୁ ଭାବିଲେ ମନେ ହୁଏ, ପ୍ରକୃତରେ ଏ ଜାତି ଉଠିବ ! ଏହାର ଉତ୍ତର କିଏ ଦେବ ? ଆମ ଜାତିକୁ ବିଶ୍ୱାସଘାତକଙ୍କ ଦାଉରୁ କିଏ ବଞ୍ଚାଇବ ? ଆମ ଜାତିର ଶିଖି ମନାଇ ଗଜପତିଙ୍କର[୨] ପଛପଟୁ ମୁଣ୍ଡ ହାଣିଥିବା ରାମଚନ୍ଦ୍ର ଛୋଟରାଙ୍କ ଚକ୍ରାନ୍ତରୁ ଆମକୁ କିଏ ଉଦ୍ଧାର କରିବ ? ଖଜଣା ଭାରରେ ଆମେ ଧ୍ୱଂସ ପାଇ ଓଳିଏ ଖାଇ ଓଳିଏ ଓପାସ ରହିଲା ବେଳେ କୁଳାଙ୍ଗାରମାନେ ଛୋଟିଆ ଲଙ୍କାରେ ରାବଣ ହେବାପାଇଁ ସାକ୍ଷ୍ୟଦେଇ କହୁଛନ୍ତି - 'ଖଜଣା ବଢ଼ାଅ', ବାଧିବ ନାହିଁ।' ବାପର ଖାଇ ଚଢାର ଗାଇ, ଯେଉଁ ନିମକହାରାମମାନେ ଭାରତ ଜନନୀଙ୍କର କୋଳକୁ କଳଙ୍କିତକରି ଥୋଇଅଛନ୍ତି, ହେ ଉତ୍କଳର ତରୁଣ ! ତାଙ୍କୁ ଉଚିତ୍ ଶିକ୍ଷାଦିଅ। ଦେଶର ଯୁବକ ଭଗତ୍‌ସିଂହଙ୍କର ଆଦର୍ଶ ତୁମ ସମ୍ମୁଖରେ ଅଛି। ହିଂସାର ବୋମା ଫିଙ୍ଗିବା ତାର ଆଦର୍ଶ ନଥିଲା - ହସି ହସି ଫାଶିଖୁଣ୍ଟରେ ଝୁଲିବା ତା ଜୀବନର ସର୍ବଶ୍ରେଷ୍ଠ ଆଦର୍ଶ। ତୁମ ଭିତରେ କାହାର ଶକ୍ତି ଅଛି, ଏ ଫାଶିଖୁଣ୍ଟ କୁଣ୍ଢେଇବାକୁ ? ଖ୍ରୀଷ୍ଟ (Christ the Cross bearer) 'କ୍ରୁଶ ବାହକ' ବୋଲି ଖ୍ରୀଷ୍ଟୀୟ ସଂପ୍ରଦାୟରେ ଏକ ମହାଧାର୍ମିକ ଗୌରବସୂଚକ ଅଭିବ୍ୟକ୍ତି ରହିଛି।

ସାହସକରି ଉଠ ଉତ୍କଳର ତରୁଣ ! ତୁମର କାମର ବଡ଼ ଭାରୀ ବୋଝ ଦେଖି ବିଚଳିତ ହୁଅ ନାହିଁ। ଘରର ଅଳିଆ ଅରମା ବିଲାତି ଦଳଠୁଁ ଦାଣ୍ଡଧୂଳିର ଆବର୍ଜନା ପର୍ଯ୍ୟନ୍ତ ସବୁ ତୁମ୍ଭକୁ ଝାଡ଼ି, କାଟି, ଚାଛି ସଫାସୁତୁରା କରିବାକୁ ହେବ। ତୁମେ ଅଣ୍ଟାଭିଡ଼ି ଲାଗିପଡ଼। ତୁମ ଓଡ଼ିଆ କୁଟିଳାକ୍ଷରରେ ବୁଦ୍ଧଦେବଙ୍କର ଜନ୍ମଶିଳା-ଲିପିକୁ ଦାଣ୍ଡର ଲୋକମାନେ ବଙ୍ଗାକ୍ଷର, ନେପାଳାକ୍ଷର କରି ଟାଣିଓଟାରି ଛଡ଼ାଇ ନ ନିଅନ୍ତୁ। ତୁମ ତୋଷାଳୀ ଭୁବନେଶ୍ୱରର

(୧) ସଂକେତ, (୨) ଭୋଇ ବଂଶର ରାଜା ମୁକୁନ୍ଦଦେବ, ଉତ୍କଳର ଶେଷ ସ୍ୱାଧୀନ ରାଜା।

କପିଳବାସ୍ତୁର ରାଜକୁମାରଙ୍କୁ ଦେଶ ବୁଦ୍ଧଦେବ ବୋଲି ପୂଜା କରୁଛି। ଏହା ତୁମର ଗର୍ବର କଥା; ମାତ୍ର ତୁମେ ନିଶ୍ଚିନ୍ତ। ତୁମେ ବୁଝୁନା ଯେ, ତୁମ କୋଠସଂପତ୍ତି ପର ଖାଇପିଇ, ଲୁଟି ନେଇ ବଡ଼ ବୋଲାଇ ତୁମ ମୁହଁରେ ଚଟକଣିଟିମାନ ବସାଇଦେବାକୁ କେଉଁ କୁଣ୍ଠିତ ନୁହନ୍ତି। ଆମ ହକ୍‌ଧନ, ଆମ ବାପ ଦାଦିଙ୍କର ଛିଯାଦାଦ ଜମିଦାରୀ ଆମେ କିଆଁ ଛାଡ଼ିବୁ? ଗାନ୍ଧୀ ସ୍ୱରାଜ ଲଢ଼େଇ ତ ଆଉ ମାଞ୍ଚେଷ୍ଟରୀ ଲଙ୍କାଶାୟାରୀ ତନ୍ତୀ କୁଲିଙ୍କ ଉପାସ ଭୋକ ଭାବନାରେ ଛାଡ଼ିପାରିବେ ନାହିଁ?

ଅନ୍ଧବିଶ୍ୱପ୍ରେମୀ ଓଡ଼ିଆ, ବିଶ୍ୱଗ୍ରାସୀ ପରର ପ୍ରବଞ୍ଚନାରୁ ନିଜକୁ ଉଦ୍ଧାର କର; ପ୍ରତିଷ୍ଠା କର ତୁମର ମାନସମ୍ମାନ। ଆତ୍ମଜ୍ଞାନ ବିଜ୍ଞାନର ପରିମାପକ - ତୁମେ ନିଜକୁ ଇଜ୍ଜତଦେଲେ, ଦାଣ୍ଡ ତୁମକୁ ଇଜ୍ଜତଦେବ। ତୁମେ ନିଜକୁ ହୀନ ଭାବୁଥିଲେ, ଦାଣ୍ଡ ତୁମକୁ ବିଧା ଗୋଇଠାଟି ଦେବାକୁ ଭୁଲିବ ନାହିଁ। ମହେନ୍ଦ୍ର ବିହାରୀ କଳିଙ୍ଗ-କେଶରୀ! ତୁମର ଡର କାହାକୁ? ତୁମର ସହସ୍ର ଅତୀତ, ଶତ ବର୍ତ୍ତମାନ ଥାଉ ଥାଉ ତୁମେ ଦବି, ଚପି, ମରି ମୁର୍କୁଟିଂ[1] କାହିଁକି ରହିବ? ଅନ୍ୟ ଜାତିର ଯାହା ଅଛି, ତୁମର ତ ତା ସବୁ ଅଛି; ବରଂ ତାହାଠୁ ବେଶି ଅଛି। ମାତ୍ର ନାହିଁ ତୁମର ଆତ୍ମ ବିଜ୍ଞାପନ କ୍ଷମତା; ତୁମେ ଦାଣ୍ଡ ହାଟରେ ଗାଇ ଜାଣନା। 'କହିପୋଛି ପାରେ ଯେ, ପୁଇ[2] ଚିଙ୍ଗୁଡ଼ି ବିକେ ସେ'। ଏ ଜଗତ କୁହାପୋଛାର ଜଗତ। ଏ ଜଗତରେ ମୁହଁ ଲୁଚାଇ ନୂଆବୋହୂ ହୋଇ କବାଟ କଣ, ହାଣ୍ଡିଶାଳ ଆବୁଡ଼ି[3] ବସିଲେ ତୁମ ରୂପ ଭେକ ସେହି ଧୂଆଁନିଆଁରେ ଶୁଖିବ, ସରିବ। କିଏ ତୁମକୁ ପଚାରି ଯିବ ଯେ? ତୁମ କଳାଶିଳ୍ପ, ବିଜ୍ଞାନ, ସାହିତ୍ୟ, ରାଜନୀତି, ସମାଜନୀତି, ଅତୀତ ବର୍ତ୍ତମାନରେ ଦୁନିଆରେ ଯାଏ କେତେ, ଆସେ କେତେ?

ଅତଏବ ତୁମେ ଆଗୁସାର ହୁଅ। ପକ୍‌କା ବଣିଆଙ୍କ ରାଇଜରେ ରହି ବଣିଆଗିରି, ଦୋକାନଦାରି ନ ଶିଖିଲେ, ତୁମର ଆଉ ମଂଗଳ ନାହିଁ। ଏହା ନିଶ୍ଚୟ, ନିଶ୍ଚୟ ଜାଣ। କେତେ କଥା ଲେଖିବାକୁ ଥିଲା - ତେବେ ଦିଲ୍ଲୀର ଏ ଗରମ ଲୁ (ଗରମ ପବନ ସ୍ରୋତ)ରେ ତପ୍ତ ମସ୍ତିଷ୍କରେ ଆଜି ଏତିକି। ନମସ୍କାର।



## ଦିଲ୍ଲୀଚିଠି (୩)

ସଂପାଦକ ମହାଶୟ, ସାଦର ନମସ୍ତେ,

ମୁଁ ଦିଲ୍ଲୀଚିଠି ସମ୍ବନ୍ଧରେ ଆପଣଙ୍କର ପତ୍ର ପାଇଥିଲି। ଅପରର ନିନ୍ଦାସ୍ତୁତିରେ ସଚ୍ଚା ସମାଲୋଚକ ବିଚଳିତ ହେଲେ ଚଳିବ ନାହିଁ। ରୋଗୀର କାତରତାରେ ବିଚଳିତ ହୋଇ ସର୍ଜନ୍ ଯଦି ଦୁଷ୍ଟବ୍ରଣର ଅପରେସନ୍‌ରେ ପରାଙ୍‌ମୁଖ ହୁଅନ୍ତି, ତା' ହେଲେ ରୋଗୀର ମଂଗଳ ହୁଏ,

(୧) ରୁଗ୍‌ଣ, ଅବିକଶିତ ଅବସ୍ଥା, ଶୃଙ୍ଖଳା (୨) ପଚା, (୩) ଅଧିକାର, ନିଜର କରି।

କି ଜୀବନାଶଙ୍କା ଘଟେ, ଭାବି ଦେଖନ୍ତୁ। ଓଡ଼ିଶାର ଦୁର୍ଦ୍ଦଶା, ସମାଲୋଚନାର ଅଭାବ। ଟଙ୍କାଟି ବଜାଇ ବଜାଇ ପରଖି ନେବାକୁ ହୁଏ। ଚିଲ୍ଲାଚିଠି ସମ୍ବନ୍ଧେ ଯଦି କାହାରି ମତ୍ତାନ୍ତର ଥାଏ, ଖୋଲା ମଇଦାନକୁ ଆସି ମୋର ପତ୍ରର ଉତ୍ତର ଦେଲେ, ମୁଁ ବଡ଼ ଖୁସି ହେବି। କାରଣ ବ୍ୟକ୍ତିଗତ ଆକ୍ରୋଶ ତ ଆମର ନାହିଁ, ଦେଶର ବ୍ୟାଧିକୁ ଦୂରକରିବାର ପ୍ରୟାସ ମାତ୍ର।

ଆମେ ଏଡ଼େ ଲୁଚି ରହିବାକୁ, ପଛାଡ଼େ କହିବାକୁ କାହିଁକି ଭଲପାଉଁ କେଜାଣି! ଏ ''ନୂଆବୋହୂ'' ଢଙ୍ଗ ଓଡ଼ିଶାର ପ୍ରକୃତରେ ଗୋଟିଏ ସାହିତ୍ୟିକ ଶୋଭା। ନୋହିଲେ ଆମର ବିଶାଳ ସାହିତ୍ୟ, ବିରାଟ ଇତିହାସ ଥାଉଁ ଥାଉଁ ଆମେ ଅନ୍ୟ ଜାତିଙ୍କ କତିରେ ଆଉ ଉପହାସାସ୍ପଦ କାହିଁକି ?

ଗତ ମାସ ସଂଖ୍ୟା 'ହଂସ'ରେ (ବିଖ୍ୟାତ ହିନ୍ଦୀଲେଖକ ପ୍ରେମଚାନ୍ଦ ସଂପାଦିତ) ଦେଖିଲି, ମରହଟ୍ଟା ଚିମନା ବାବୁଙ୍କ ଜୀବନୀର କିଛି କିଛି ସମାଲୋଚନା। ସେଥିରେ ସେ କଟକବିଜୟୀ ଓଡ଼ିଆଙ୍କୁ ପରାସ୍ତ କରି ସେନାବାହାଦୂର ଉପାଧି ପେଶବାଙ୍କଠାରୁ ପାଇଥିବାରୁ ବିଶଦ ବିବରଣ ଲିପିବଦ୍ଧ ଅଛି। ମାତ୍ର ଢେଙ୍କାନାଳ ରାଜାଙ୍କ ଶ୍ରୀ କରଦ୍ୱାରା ଯେ କେତେଥର ପରାଜିତ ହୋଇ ସେ ପଳାଇଥିଲେ, ଉତ୍କଳର ସ୍ୱନାମଧନ୍ୟ କବି ବ୍ରଜନାଥ ବଡ଼ଜେନାଙ୍କ କୃତ 'ସମର ତରଙ୍ଗ' ଯାହାର ସାକ୍ଷୀ, କାହିଁ ସେ କଥା ତ ପଦେ ମାତ୍ର ନାହିଁ ? ଗତସଂଖ୍ୟା ସହକାରରେ ଉକ୍ତ ବିଷୟ ଦେଖି ଏବଂ 'ହଂସ'ର ସମାଲୋଚନାକୁ ତାହା ସଂଗେ ତୁଳନା କରି ଓଡ଼ିଆ ପ୍ରାଣ ବହିଥିବାରୁ ଆମ୍ଭାରେ ବଡ଼ ଦୁଃଖହେଲା। ହାୟ, ଆମେ ଅବଶ, ଶିଥିଳ, ଆମ ଇତିହାସ କେହି ନ ଜାଣୁ, ଆମର ଗୋପନ ପେଡ଼ି ଭଣ୍ଡାର କେହି ନ ଖୋଲୁ, ଆମେ ଆମରି ଜାତିଭାଇଙ୍କ ଆଗରେ ଆପଣା କୀର୍ତ୍ତି-କାହାଣୀ ଗାଇ ମନ କୁଣ୍ଢେମୋଟ କରି ବସିଥାଉଁ, ଏ ଆମର ବାହାଦୁରୀ। ପ୍ରକୃତରେ ଆମେ ପ୍ରାଣେ ପ୍ରାଣେ ବୈଷ୍ଣବ, ଜଗନ୍ନାଥଙ୍କ ବାନାଧାରୀ। ଦାରୁମୂର୍ତ୍ତି ହୋଇ ଅଚଳ ବିଷ୍ଣୁ ଭଳି ବସିବା ଆମ ସ୍ୱଭାବଗତ ହେଲାଣି। କେବେ ଏ ଅଳସ ନିଦ ଭାଙ୍ଗିବ କେଜାଣି ?

ଜାତି ଜାଗ୍ରତ ହେବାର ସୂଚନା। କିନ୍ତୁ ଏ କଂଗ୍ରେସ ଆନ୍ଦୋଳନରୁ ଯେ ମିଳିଲାଣି, ଏହା ଦେଖି ଆମେ ଭବିଷ୍ୟତପାଇଁ ବଡ଼ ଆଶାନ୍ୱିତ। କାରଣ ଉତ୍କଳର ବିଖ୍ୟାତ ହାଣ୍ଡିଶାଳର କୋଣମଣ୍ଡିନୀ ସରଳ ସୀମନ୍ତନୀର ଯେଉଁ ଲାଳିତ୍ୟ କାବ୍ୟ କବିତା ଠାରୁ ଆରମ୍ଭକରି ମାଦଳା ପାଞ୍ଜି ଲେଖା ପର୍ଯ୍ୟନ୍ତ ଯୁଦ୍ଧ ପଡ଼ିଆରେ ଦଣ୍ଡୀ, ଶକୁନ୍ତଳା, ଦୁର୍ଗାବତୀଙ୍କର ଯେଉଁ ଅପୂର୍ବ ବୀରତ୍ୱ କୀର୍ତ୍ତିକଳା, ଆଜି ତା' ପୁଣି ଜାଗ୍ରତ ହୋଇଛି। ନୋହିଲେ କି ବ୍ରାହ୍ମଣ ଶାସନର ବୋହୂମାନେ, କରଣ ସାମନ୍ତଙ୍କର କୁଳକନ୍ୟାମାନେ ଆଜି ହାତଯୋଡ଼ି ମଦଅଫିମ ଦୋକାନରେ ପିକେଟିଙ୍ଗ କରି ଅପମାନ ସହନ୍ତେ ! କେହି ଉତ୍କଳର କୃତୀସନ୍ତାନ କହନ୍ତା 'ପିକେଟରଙ୍କୁ ନିସ୍ତୁକ ଛେଚ, ସ୍ୱରାଜ୍ୟ ମିଳିଯିବ।' ଭୟ ନାହିଁ ଭଉଣୀ ! ତୁମରି ହାତରେ ସ୍ୱରାଜ, ତୁମ ଅପମାନ, ତୁମ ନିର୍ଯ୍ୟାତନରେ ସ୍ୱରାଜର ଗମ୍ଭିରୀ ମନ୍ଦିର ଖୋଲିଯିବ। ତୁମେ ପରା ଦେଶର ଲକ୍ଷ୍ମୀ, ତୁମେ ପରା ଶକ୍ତିରେ ଦୁର୍ଗା, ମା ବିରଜାର ପ୍ରତିମୂର୍ତ୍ତି, ତୁମେ ପରା ଉତ୍କଳର ବାଣୀ ବୀଣାପାଣି !

ତୁମେ ଉଠ, ତୁମେ ଏଡ଼େ ଧୀରେ ଧୀରେ କାହିଁକି ଉଠୁଛ ? ଚଞ୍ଚଳ ବେଗଁଉଠ; ଦେଶର ଭାଗ୍ୟ ତୁମେ ହିଁ ନିଶ୍ଚୟକରିବ। ତମ ହାତମୁଠାରେ ଦେଶର ଭାଗ୍ୟଡୋରି।

ଭାରତ ନାରୀର ଶକ୍ତି, ଅଟଳ ପ୍ରତିଜ୍ଞା, ଦୁଃଖ ବରଣର ଦୃଢ଼ତା ପାଇ ନଥିଲେ ମହାତ୍ମା ଗାନ୍ଧି ସୁଦ୍ଧା ଆଜି ଭାରତ ସ୍ୱରାଜର ସ୍ୱପ୍ନ ଏଡ଼େ ପରିଷ୍କାର ଦେଖୁ ନ ଥାନ୍ତେ। ଭାରତର ଭାଗ୍ୟାକାଶ ନିର୍ମଳ। କାରଣ ଭାରତର ନାରୀ ଆଜି ଜାଗ୍ରତ। ସେ ଆଉ ନିଜ ଉପରେ ଅନ୍ୟାୟ ଅବିଚାରକୁ ରାଜତ୍ୱ କରିବାକୁ ଦେବ ନାହିଁ। ତା' ପାଇଁ ଯେଉଁ ଧର୍ମଶାସ୍ତ୍ର, ପାଞ୍ଜି ପୋଥିଟିମାନ ବନେଇଚ, ସେ ଆଉ ତାର ଅନ୍ଧ ଅନୁଶାସନ ମାନିବାକୁ ପ୍ରସ୍ତୁତ ନୁହେଁ। ସେ ତାର ନ୍ୟାଯ୍ୟ ଦାବୀ, ଜଗତରେ ତାର ନ୍ୟାଯ୍ୟ ସ୍ଥାନ, ଜାତିକତିରେ ତାର ପ୍ରକୃତ ଅଧିକାର ହାସଲ କରି ଛାଡ଼ିବ। ଏଥିପାଇଁ କେହି ମରହଟୀ ପୁରାତନପନ୍ଥୀ ନାକ ଫୁଲାଇ, ମୁହଁ ହଲାଇ, ରାଗ, ଦ୍ୱେଷ ନୈରାଶ୍ୟ ପ୍ରକଟକଲେ ସେ ଶୁଣିବ ନାହିଁ। ବର୍ତ୍ତମାନ ସେ ଅମିତ ବିକ୍ରମରେ, ମୋହନ ମନ୍ତ୍ରବଳରେ ଜାଗ୍ରତ ! ଏଥର ତୁମ ପୋଥି ପାଞ୍ଜି ସବୁ ବଦଳିଯିବ। ତୁମ ଆଇନ୍‌କାନୁନ୍ ସବୁ ଓଲଟି ଯିବ, ତୁମ ଏକଚାଟିଆ ଅଧିକାର ଧରା ଉପରେ 'ଜୋର ଯାହାର ରାଜ୍ୟ ତାହାର'ର ସାମ୍ରାଜ୍ୟବାଦ ସବୁ ଚୂର୍ଣ୍ଣ ହୋଇଯିବ। କାରଣ ଏ ଯୁଗ ପ୍ରଜାତନ୍ତ୍ରର ଯୁଗ। ଏ ଯୁଗ ଜଣକର, ଗୋଟାଏ ଦଳର, ଗୋଟାଏ ଅଭ୍ରାନ୍ତ ଶାସ୍ତ୍ରବାଦର ଯୁଗ ନୁହେଁ। ଏ ଯୁଗରେ ସମସ୍ତେ ମନୁଷ୍ୟତ୍ୱର ବିକାଶଲାଗି, ଆତ୍ମୋନ୍ନତି, ଆତ୍ମସମ୍ମାନଲାଗି ସତତ ସଚେଷ୍ଟ। ଏ ଯୁଗରେ କେବଳ (), ଅତଏବ ତୁମ୍ଭମାନଙ୍କୁ ଜାଗ୍ରତ ହେବାକୁ ହେବ। ଜଗତ ସହିତ ସମାନ ଗତିରେ ଦଉଡ଼ିବାକୁ ହେବ। ଅଳସୁଆଙ୍କ ପରି ପଛରେ ପଡ଼ିରହିଲେ ତୁମ ବାଜି ଆଉ କିଏ ମାରିନେବ। ତୁମେ ଜଗତର ପରିବର୍ତ୍ତନ ଆଡ଼କୁ ଲକ୍ଷ୍ୟ ରଖ, ଜଗତ କୁଆଡ଼େ ଯାଉଚି। କେବଳ ନିଜ ଆତ୍ମତୋଟା ଆତୁଆଳରେ ଶାନ୍ତିମୟ କୁଟୀରେ ଦୀର୍ଘ ଦିବାସ୍ୱପନ୍ନ ଦେଖିଲେ ଚଳିବ ନାହିଁ। ସଂସାର ସମୁଦ୍ରର ବାଆବତାସୀ, ପବନପାଣି ସଂଗରେ ଅଣ୍ଟାଭିଡ଼ି ଯୁଝିବାକୁ ହେବ। ତେବେ ତ ତୁମ ନଉକା ପାରରେ ଲାଗିବ ? ବୀର, ସାହସୀ, ନାବିକଜାତି ! ଚାରିହଜାର ବର୍ଷ ପୂର୍ବରେ ତୁମ ଜାତିର ପୁଅମାନେ ଦୂର ମିଶର, ସୋର, ସିଦୋନ, ବାବିଲନ୍, ନିନିଭି ସହିତ ବାଣିଜ୍ୟ କରୁଥିଲେ। ଫିନିସିଆନ୍ ନାବିକମାନଙ୍କର ହିଷ୍ଟ୍ରି (ଇତିହାସ) ପଢ଼। ଦେଖିବ, ତୁମ ଜାତିର ପୁଅମାନେ ହୀରା, ନୀଳା, ପ୍ରବାଳ, ଲାଖ ଓ ହାତୀଦାନ୍ତ ଘେନି କେଉଁ ଦୂର ଦୂର ମୂଲକକୁ ବଣିଜ ବେପାର କରି ଯାଇ ନାହାନ୍ତି ଟି ! ତୁମେ ହିଁ ତ ପ୍ରଥମେ 'ଧ୍ରୁବତାରା' ଚିହ୍ନିଥିଲ, ଦିଗ୍‌ବାରିଣୀ ଯନ୍ତ୍ର ତ ତୁମରି ମୁଣ୍ଡରୁ ବାହାରିଥିଲା, ତାର ପ୍ରମାଣ କୋଣାର୍କର ବିଶାଳ ଚୁମ୍ବକ ସ୍ଥାପନା, ତା'ର ପ୍ରମାଣ ଧ୍ରୁବ ପୁରାଣରେ - ତା'ର ପୁତ୍ର ''ଉତ୍କଳର'' ନାମୋଲ୍ଲେଖ। ତୁମ ଜାତିର ସାଧବଝିଅମାନେ କି ଶରଧାରେ ବୋଇତ ବନ୍ଦାଇବାକୁ ବନ୍ଦାପନା ଥାଳିଧରି ବସି ନ ଥାନ୍ତିଟି ! ଭାରତର ଆଉ ଅନ୍ୟ କେଉଁ ଜାତିର ପ୍ରାଚୀନ ଇତିହାସରେ 'ବୋଇତ ବନ୍ଦାର ମଧୁର ଗୀତ' ଅଛି କୁହ ଭଲା ! ତୁମ ଜାତିର ସୌଦାଗର ଝିଅ 'ବିପୁଳା'ର କି ଲୋକାରର ଇତିହାସ ! ଅତୀତକୁ ଏକାବେଳକେ ଭୁଲିଯାଅ ନା - ଅତୀତ ତୁମକୁ ପ୍ରେରଣା ଦେବ, ଭବିଷ୍ୟତ ପାଇଁ ନବ

ବଳ ଦେବ। ଚାରିହଜାର ବର୍ଷ ପୂର୍ବର କଥା - ସେ ବୀର ସାହସୀ କଳିଙ୍ଗ ନାବିକର ଚିତ୍ର ମନେପଡ଼ିଲେ ରୋମ ଟାଙ୍କରିଉଠେ, ଆଖିରୁ ଆନନ୍ଦାଶ୍ରୁ ଝରିପଡ଼େ। ସେତେବେଳେ ପୃଥିବୀର ଆଧୁନିକ ସଭ୍ୟ-ଧର୍ମ ଭିତରୁ ଗୋଟିକର ସୁଦ୍ଧା ଜନ୍ମ ହୋଇ ନଥିଲା। ଥିଲା କେବଳ ଯୁଗଯୁଗାନ୍ତରର ବୈଦିକ ଧର୍ମ, ଆଉ ଆର୍ଯ୍ୟଜାତିର ସଭ୍ୟତା - ସେହି ସଭ୍ୟ ଆର୍ଯ୍ୟ କଳିଙ୍ଗ ଜାତି ଥିଲେ ଭାରତର ନାବିକଶିରୋମଣି; ଆମେରିକା, ଆଫ୍ରିକା ପର୍ଯ୍ୟନ୍ତ ଯେଉଁମାନଙ୍କର ବାଣିଜ୍ୟର ପ୍ରସାର ଥିଲା। ସତ, ଏ ସବୁ ହିଷ୍ଟ୍ରିରେ ନ ଦେଖିଥିଲେ ସ୍ୱପ୍ନପରି ଲାଗନ୍ତା, ଆମେ ନିଜେ ବି ବିଶ୍ୱାସ କରନ୍ତୁ ନାହିଁ। କିନ୍ତୁ ଦେଖ ଇତିହାସ, ଇହୁଦିଙ୍କର ଇତିହାସ ଦେଖ, ବାବିଲନର ଇତିହାସ ଦେଖ, ପରାକ୍ରାନ୍ତ ନିନିଭି ସମ୍ରାଟଙ୍କର ଜୀବନୀ ପଢ଼, ବୁଝିବ ଉତ୍କଳର ହୀରା, ମୁକ୍ତା, ହାତୀଦାନ୍ତ ତାଙ୍କ ଗୃହର ଶୋଭାଥିଲା। କଳିଙ୍ଗ ଯେ ହାତୀର ଦେଶ, କଳିଙ୍ଗର ରାଜା ଯେ ଗଜପତି, ଦୁର୍ଯ୍ୟୋଧନ ମହିଷୀ କଳିଙ୍ଗ କନ୍ୟା ଚିତ୍ରାଙ୍ଗଦା ଯେ ଦିନେ ଏଇ ଦିଲ୍ଲୀରେ କୌରବ ସାମ୍ରାଜ୍ଞୀରୂପେ ଭାରତର ମହାରାଣୀ ଥିଲେ; ଭାରତ ମସ୍‌ନଦ (ସିଂହାସନ) ଉପରେ ହିନ୍ଦୁ ସାମ୍ରାଜ୍ଞୀରୂପେ କଳିଙ୍ଗ କୁମାରୀର ଆଧିପତ୍ୟ ହୋଇଥିଲା। ଏହା ପରେ ପୁଣି ଯଦି ଭାବ, ଆମର ଇତିହାସ ନାହିଁ; ଆମେ ନିତାନ୍ତ ନିଃସ୍ୱ, ତା' ହେଲେ ଆମଠାରୁ ହୀନ ଅରକ୍ଷିତ ବୋଧ ହୁଏ ଆଉ କେହି ଦୁନିଆରେ ନାହିଁ।

## ବିପ୍ଳବରେ ଅଂଶଗ୍ରହଣ ବଙ୍ଗଭଙ୍ଗ ଆନ୍ଦୋଳନ

ଏତ ଗଲା ଅତୀତ। ଆଧୁନିକ ଆନ୍ଦୋଳନରେ ବୋଧହୁଏ, ଓଡ଼ିଆର ଯେତେ ଭାଗ, ଯେତେ ଦୁଃଖ, ଭୋଗ, ଯେତେ କଷ୍ଟ ନିର୍ଯ୍ୟାତନ ଲାଭ, ଏକ ଗୁଜୁରାଟ (ବମ୍ବେ) ଛଡ଼ା ଆଉ କୋଉଠି ଏପରି ହୋଇନାହିଁ। ବାଲେଶ୍ୱର, ମେଦିନୀପୁର, କାନ୍ଥୀ (ବଙ୍ଗର ବର୍ତ୍ତମାନ କବଳରେ ଥିଲେ ସୁଦ୍ଧା - ତାଙ୍କର ରକ୍ତ ତ ଓଡ଼ିଆ)ର ଭୀଷଣ ରକ୍ତକ୍ଷେତ୍ର ନୀଳଗିରିର ଅତ୍ୟାଚାର କଣ ଭଣା ଭୟାବହ ? ବିପ୍ଳବପନ୍ଥୀରୂପେ ବଙ୍ଗର ନାମ, କିନ୍ତୁ କାମ କଲା ଓଡ଼ିଆ - ମେଦିନୀପୁରର ବିପ୍ଳବବାଦୀ ଉପେନ୍ଦ୍ର ମାଇତି। ଓଡ଼ିଆ ଟୋକା ଆଜି ବଙ୍ଗାଳୀ ବୋଲି ପରିଚିତ ! କାରଣ ଉତ୍କଳ ଛିନ୍ନଭିନ୍ନ, ତାର ଅଙ୍ଗ ଖଣ୍ଡ ଖଣ୍ଡ ଅସ୍ଥିଭଗ୍ନ, କଙ୍କାଳ ଚୂର୍ଣ୍ଣୀଭୂତ। ତଥାପି ନିରାଶ ହେବାର କୌଣସି କାରଣ ନାହିଁ। ଆମେ ତଳେ ପଡ଼ିଛୁ ବୋଲି ଏକାବେଳକେ ମରିହଜି ମାଟିରେ ମିଶିଯିବୁ ନାହିଁ। ଆମେ ନିଶ୍ଚେ ଉଠିବୁ - ନୂଆବଳ, ନୂଆ ପ୍ରେରଣା, ନୂଆ ଦେହ ମନ ସହିତ ଆମର ନବ କଳିଙ୍ଗର ପୁନର୍ଜନ୍ମ ହେବ। ଉତ୍କଳର ଯୁବକ ଶକ୍ତି ଅନ୍ୟାନ୍ୟ ଦେଶର ଯୁବକ ଶକ୍ତିଠାରୁ କଦାପି ହୀନ ନୁହେଁ। ଏହିମାନେ ଅସାଧ ସାଧନ କରିବେ। ଏହିମାନେ ଉତ୍କଳ ବିଜୟବାନା ସ୍ପର୍ଦ୍ଧାରେ ଉଚ୍ଚରେ ଟେକିଧରିବେ। ଏହିମାନେ ଆମ ଜାତିର ଭରସା, ଏହିମାନେ ଆମର ଭଗୀରଥ।

ଅଳ୍ପଦିନ ତଳେ ଦିଲ୍ଲୀରେ ହଠାତ୍ ସାହେବ ବେଶଧାରୀ ଏକ ଖାଣ୍ଟି ଉତ୍କଳୀୟ ଯୁବକ ସହିତ ମୋର ସାକ୍ଷାତ୍ ହେଲା, ଯେ କି କେବଳ ଆତ୍ମନିର୍ଭର ବଳରେ ୟୁରୋପରେ, ହଲାଣ୍ଡ,

ଜର୍ମାନୀ, ବେଲ୍‌ଜିୟମ, ଇଟାଲୀ, ଫ୍ରାନ୍‌ସ, ଇଂଲଣ୍ଡ - ଟର୍କି, ଚେକୋସ୍ଲୋଭିଆ ଓ ଭାରତରେ ପ୍ରାୟ ସମସ୍ତ ଦେଶ ବୁଲି କିଛି କିଛି ଦିନ ରହି ପୁଣି ଆପଣାର ବ୍ରାହ୍ମଣକୂଳ କନ୍ୟା ଅସୂର୍ଯ୍ୟମ୍ପଶ୍ୟା ସହଧର୍ମଣୀଙ୍କ ସହ ଛଅବର୍ଷ ଇରାକରେ ରହି ତାଙ୍କୁ ଓଡ଼ିଆ ବଙ୍ଗଳାଠାରୁ ଆରବିକ୍ ଇଂରାଜୀ ପର୍ଯ୍ୟନ୍ତ ଶିଖାଇ ଗଭର୍ଣ୍ଣମେଣ୍ଟର ବୈଦେଶିକ ବିଭାଗରେ ଉଚ୍ଚପଦରେ ଚାକିରୀ କରି ସୁଦ୍ଧା, ଆପଣା ଦେଶ ଓ ଜାତିର ପ୍ରେମରେ ନିତ୍ୟ ଉଦ୍‌ବୋଧିତ, ଆଉ ଜାତିକୂଳ ନ ଛାଡ଼ି ଆପଣାର ପୁରାତନ ବ୍ରାହ୍ମଣ ଶାସନୀ ଗୃହସ୍ଥାଶ୍ରମରେ ପୂର୍ଣ୍ଣମାତ୍ରାରେ ଅଛନ୍ତି। ମୁଁ ତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି। (ବାଗାନ୍ତରେ ତାଙ୍କର ଓ ତାଙ୍କ ସୁଯୋଗ୍ୟ ସହଧର୍ମଣୀ ଓ ସନ୍ତାନମାନଙ୍କର ଫଟୋ ଆଦି ଦେବାର ବାସନା ରହିଲା)। ପ୍ରକୃତରେ କିଏ ଜାଣୁଚି, କୋଉ ଓଡ଼ିଆ କୋଉଠି ଅଛି। ଦେଶର ଏହିପରି ଗୋଟିଏ ଗୋଟିଏ ବ୍ୟକ୍ତି ସହିତ ସାକ୍ଷାତ ହେଲେ ବିଦେଶୀ ଓଡ଼ିଆର ଯେ କେତେ ଆନନ୍ଦ ହୁଏ, ତା ଦେଶବାସୀ ବୁଝିପାରିବେ ନାହିଁ। ଦେଶ ଆମର, ଜାତି ଆମର, ତାର ପ୍ରତ୍ୟେକ କୃତୀସନ୍ତାନ ଆମ ଗର୍ବ ଗୌରବର ସାମଗ୍ରୀ। ଯେ ଯେଉଁ ବିଭାଗରେ ଉନ୍ନତି କରୁଥଛେ, ଯେ ଯେତେ ବଡ଼ ହେଲା, ସେ ଆମର ସୌଭାଗ୍ୟ। ଆମ ଭିତରେ ହିଂସା, ଦ୍ୱେଷ ଦଳାଦଳି ନ ହେଉ। କଂଗ୍ରେସ ପୁରୀରେ କି କଟକରେ ହେବାର ଯୁଦ୍ଧ ସମାପ୍ତ ହେଲାପରେ, ପୁଣି ପୁରୀବାଲାଙ୍କୁ ମାନମାରି କଟକବାଲା କଂଗ୍ରେସର ଦର୍ଶକ ଟିକିଟ୍ କିଣିବାକୁ ଆଜହୁଁ ରୋଷ ନ ଧରନ୍ତୁ। ବୀରମାଟି ବାରବାଟୀ କଟକ ଆମର ତ, ନୀଳଚକ୍ରଧାରୀ ଜଗନ୍ନାଥ ଆମର। ଆମେ କିଆଁ ତୋର, ମୋର ହେବୁ? ସବୁ ତ ଆମରି। ସତ୍ୟବାଦୀର ଛୁରିଆନାକୁଞ୍ଜର ସାଧନାଠୁ ଇଞ୍ଚୁଡ଼ିର ଲବଣ କ୍ଷେତ୍ରର ସଂଗ୍ରାମ ପର୍ଯ୍ୟନ୍ତ - ମେଦିନପୁରଠୁ ଗଞ୍ଜାମ, ବ୍ରହ୍ମପୁର, ଜୟପୁର, ବସ୍ତରଯାଏ ଆମର, ସବୁ ଆମର, ଏତେ ଟିକେ ଆମେ ଛାଡ଼ିବାକୁ ପ୍ରସ୍ତୁତ ନୋହୁଁ। ଉତ୍କଳର କଂଗ୍ରେସ ଆମ ଜାତୀୟ କଂଗ୍ରେସ - ସେଥିରେ ସେତୁବନ୍ଧ ବାନ୍ଧିଲା ବେଳେ 'ଗୁଣ୍ଡୁଚିମୂଷା'ର ସାହାଯ୍ୟ ପର୍ଯ୍ୟନ୍ତ ଆମର ଲୋଡ଼ା। ଘରକାମରେ କି ଆପ୍‌ସରା,[୧] ମାନମରା। ଓଡ଼ିଆ ଆପଣାର ସମଗ୍ର ଶକ୍ତିଦେଇ କଂଗ୍ରେସକୁ ସଫଳକରି ଭାରତରେ ଆପଣାର ସ୍ଥାନ କରିନେଉ, ଏତିକି ଏକାନ୍ତ କାମନା। ଏ ସୁବର୍ଣ୍ଣ ସୁଯୋଗ ଆଉ ଆସିବ କେବେ, କିଏ ଜାଣେ? ହାତ କତିରେ ଆସିଛି ଯାହା, ତାକୁ ଛାଡ଼ିବାର ନୁହେଁ।

ଏଥିପାଇଁ ମୁଁ ଉତ୍କଳର ନାରୀସମାଜକୁ ବିଶେଷ ନିବେଦନ କରୁଛି। ସେମାନେ ଶହ ଶହ, ହଜାର ହଜାର ବାହାରିପଡ଼ି ଏ ମହା ଆୟୋଜନକୁ ସଫଳକରନ୍ତୁ। ସବୁ ମଂଗଳ କାର୍ଯ୍ୟ ମୂଳରେ ତ ତାଙ୍କରି ଲକ୍ଷ୍ମୀହାତ ଥାଏ। ଦେଖିବ, ସବୁ ଅଭାବ, ଅସୁବିଧା ଦୂର ହେବ। ସବୁ ବଙ୍କାବାଟ ସଳଖ ହୋଇଯିବ, ସବୁ ନୈରାଶ୍ୟ ଆଶାରେ ପରିଣତ ହେବ।

ଆଜିକାଲି ଓଡ଼ିଆ ଖବର କାଗଜ ଫିଟାଇଲା ମାତ୍ରେ କେତେ କେତେ ନାରୀ-କର୍ମୀଙ୍କର ନାମ ଆଖି ଆଗରେ ପଡ଼ି ପ୍ରାଣରେ ଆନନ୍ଦର ସ୍ରୋତ ବହାଇଦିଏ। ଓଡ଼ିଆ ନାରୀ ଆଜି ବିଚ୍ ବଜାରରେ ପିକେଟିଙ୍ଗ କରୁଚି - ଓଡ଼ିଆ ବିଧବାକୁଳର ନିୟମ ଲଙ୍ଘି ପାଞ୍ଚ ପଞ୍ଚରେ

(୧) ଅଭିମାନ

ବସି ଶାସ୍ତ୍ରୀୟ ବିବାହ କରୁଚି; ଓଡ଼ିଆ ଯୁବତୀ ରଣଭୂମିରେ, ସଭାସ୍ଥଳୀରେ ପୁରୁଷ ସମାଜର ଅଧିନାୟିକାତ୍ୱ କରୁଛି। ଘରେ ବାହରେ ଏଥର ସବୁଆଡ଼େ ତାର ଆଧିପତ୍ୟ - ଏଇ ତ ଶୁଭ ଲକ୍ଷଣ, ଜାତି ଜାଗୃତିର ଚିହ୍ନ। ଏଥିପାଇଁ ମୋର ସାଦର ନିବେଦନ, ସମସ୍ତ ଉତ୍କଳୀୟାଙ୍କ ନିକଟରେ ମୋର ଐକାନ୍ତିକ ପ୍ରାର୍ଥନା, ସେମାନେ ଜାତିର ମାନ ରକ୍ଷାକରନ୍ତୁ। ଲକ୍ଷ ଲକ୍ଷ ଓଡ଼ିଆ ଯୁବକ ପରଦେଶରେ କୁଲିଗିରିକରି ଆପଣା ମାନମହତ୍ତ୍ୱ, ଦେଶର ଇଜ୍ଜତ ନ ସାରନ୍ତୁ, ଏଥର ଉତ୍କଳମଣି ବୃହତ୍ତର ଉତ୍କଳ ଗଢ଼ି ଘରପୁଅଙ୍କୁ ଘରେ ଭାତ ଦେଉ। ଅରଟ ସୁନ୍ଦରୀ ଖଦଡ଼ବସନାଙ୍କ ରାଜ୍ୟ ପୁଣି ଫେରିଆସୁ। ଆମ ଦେଶର ପାଟ ପୀତାମ୍ବରୀ ମାଣିଆବନ୍ଧିରେ ଆମ ଗନ୍ତାଘର ପେଡ଼ିଟିମାନ ଭରିଉଠୁ। ଉତ୍କଳ ନାରୀର ଆଜି ମହାକର୍ମ ଦିବସ। ସେ କର୍ମ ଦିବସରେ ଆଳସ୍ୟ ଓ ବିମୁଖତା ଯେପରି ଦେଶର ସର୍ବନାଶ ନ କରୁ, ଅଧିକ ଆଉ କଅଣ ଲେଖିବି ? ଦିଲ୍ଲୀରେ ଭୟଙ୍କର ଗରମ, ଭୀଷଣା ମେଲେରିଆ, ଇନ୍‌ଫ୍ଲୁଏଞ୍ଜାର ପ୍ରକୋପ। ଗୋଟା ଭାରତର ରାଜଧାନୀ ଦିଲ୍ଲୀର ତ ଏ ଦଶା, ଗୋଟା ଭାରତର ଅବସ୍ଥା କହିଲେ ନ ସରେ। ମୁହଁକୁ ଚାହିଲେ ଲୋକର ଶରୀରର ଅବସ୍ଥା ଜଣା ପଡ଼ିଯାଉଚି। ଭାରତ ପୁଣି ସୁନାର ଦେଶ, ଏଠି ହୀରା ଗଛରେ ମୁକ୍ତା ଫଳେ। ହାୟ, ''ସବୁ ଧନରେ ସାର ସ୍ୱାଧୀନତା ମଣି।'' ଭାରତ ପରାଧୀନ, ତାର ସ୍ୱାସ୍ଥ୍ୟଶିରୀ, ଆୟୁ, ବଳବୀର୍ଯ୍ୟ, ଅନ୍ନବସ୍ତ୍ର ସବୁ ପର ହାତମୁଠାରେ। 'ହାୟ ଅନ୍ନ, ହାୟ ରୋଗ,' ଏ ଦୁଶ୍ଚିନ୍ତାରେ ଭାରତର ଅମୂଲ୍ୟ ଯୁବକ ଶକ୍ତି ନଷ୍ଟ, ଏ କଥା କିଏ ବୁଝୁଚି ? ଉତ୍କଳର ତରୁଣ କଣ ଏ ସମୟରେ ଶୋଇ ରହିବ ? ଆପଣା ଦୁଃଖର କାନ୍ଦଣା କଣ ତାର ଛିଣ୍ଡା ମଇଳା ଖେଯପଟି ତିନ୍ତାଉଥିବ ? ନାଁ - ଏ ଅସ୍ଥିପଞ୍ଜର ଭିତରେ ଆଜି ସୁଦ୍ଧା ସିଂହବାହିନୀର ତେଜ ଅଛି। ଆଜି ସୁଦ୍ଧା 'ମା ଭୈ' ରବରେ ସେ କେଶରୀ ବିକ୍ରମରେ ଉଠିବ। ସେତେବେଳେ ତାର ରୁଦ୍ରଶକ୍ତିକୁ କିଏ ରୋଧକରିବ ?

ଭଗବାନ୍ କରନ୍ତୁ- ସେ ଦିନ ଶୀଘ୍ର ଆସୁ। ଉତ୍କଳ ଧନଜନ, ଲକ୍ଷ୍ମୀର ଭଣ୍ଡାର ହେଉ। ନମସ୍ତେ - ରୋଗ ଶଯ୍ୟାରେ ଆଜି ଏତିକି।



## ଦିଲ୍ଲୀ ଚିଠି (୪)

### (ଦିଲ୍ଲୀର ଭ୍ରମଣ କାହାଣୀ, ଦରିଦ୍ର ଓଡ଼ିଆଙ୍କ ଦୁର୍ଦ୍ଦଶା)

ସଂପାଦକ ମହାଶୟ,

ସାଦର ନମସ୍ତେ !

କାହିଁ, ଏ ଥରକ ତ ସହକାର ଦେଖିବାର ସୌଭାଗ୍ୟ ମିଳିଲା ନାହିଁ ! ସହକାର କାହିକିଁ ଦିଲ୍ଲୀ ଆସିବାକୁ ଭୁଲିଗଲା, ମୁଁ ସେଥିପାଇଁ ଭାବିତ। ଦେଶରୁ ଖଣ୍ଡେ ପତ୍ରିକା ଆସେ, ନାନା ପ୍ରକାର ସାହିତ୍ୟିକ ସମ୍ବାଦ ଥାଏ, ସେ ଖଣ୍ଡିକ ଦେଖିବାପାଇଁ ଆମେମାନେ ଉତ୍ସୁକ

ନେତ୍ରରେ ପ୍ରତୀକ୍ଷା କରିଥାଉଁ। ସେ ଖଣ୍ଡିକ ବିଳମ୍ବରେ ଆସିଲେ, ବଡ଼ ବ୍ୟସ୍ତହେବାକୁ ପଡ଼େ। ଏଥିରୁ ବୁଝିପାରିବେ, ସହକାର ପ୍ରତି ଆମର କେତେଦୂର ଅନୁରାଗ ଓ ଶ୍ରଦ୍ଧା।

ଏଠାରେ ମାସିକ ସାହିତ୍ୟିକ ପତ୍ରିକାର ଅଭାବ ନାହିଁ। ହିନ୍ଦୀରେ ଯେପରି ସୁନ୍ଦର ମାସିକ, ସାପ୍ତାହିକ ଓ ଅର୍ଦ୍ଧସାହିତ୍ୟିକ ପତ୍ରିକାମାନ ବାହାରିଲାଣି, ଓଡ଼ିଆରେ ତାର ଅଧିକରୁ ଅଧା ନାହିଁ। ଏ କ୍ଷେତ୍ରରେ ହିନ୍ଦୁସ୍ଥାନ ଅବଶ୍ୟ ବଙ୍ଗଳାକୁ ଅନୁକରଣ କରିଚି, ତଥାପି ତାର ନିଜତ୍ୱ ହରାଇନାହିଁ। ପର ଜିନିଷ ସେ ନେଇ ଜାଣେ; ମାତ୍ର ପରଭିତରେ ଆତ୍ମସତ୍ତା ବୁଡ଼ାଇ କାକ ମୟୁରପୁଚ୍ଛ ଗୁଞ୍ଜିଲା ଭଳି ହାସ୍ୟାସ୍ପଦ ହୁଏ ନାହିଁ। ଓଡ଼ିଆ ମଧ୍ୟ ଅନୁକରଣ କରେ; କିନ୍ତୁ ଦୁଃଖର ବିଷୟ କରିଜାଣେ ନାହିଁ ଏବଂ ସେଥିପାଇଁ ଜଗତରେ ହାସ୍ୟାସ୍ପଦ ହୁଏ।

ଆମ ଓଡ଼ିଶାର ପ୍ରତିବେଶୀ ବଙ୍ଗଦେଶ। ଓଡ଼ିଶା ଯଦି କାହାକୁ ଅନୁକରଣ କରେ, ତେବେ ବଙ୍ଗକୁ। ଶିକ୍ଷିତ ଓଡ଼ିଆର ବଙ୍ଗ ସଭ୍ୟତା ହିଁ ଏକମାତ୍ର ସମ୍ବଳ; କିନ୍ତୁ ସେମାନେ ଥରେ ଯଦି ଦେଶ ବିଦେଶର ସଭ୍ୟତା ଭିତରେ ବିଡ଼ନ୍ତେ, ତା ହେଲେ ତାଙ୍କର ଏ ସଂକୀର୍ଣ୍ଣ ମନୋଭାବ ବୋଧହୁଏ ଅତି ଶୀଘ୍ର ବଦଳି ଯାଆନ୍ତା। ପୂର୍ବରେ ଓଡ଼ିଶାରେ ଥିଲାବେଳେ ମୁଁ ସର୍ବଦା ଭାବୁଥିଲି, ଭାରତୀୟ ସଭ୍ୟତା କଣ ? ଭାରତ ଏହି ମୁଷ୍ଟିମେୟ ଇଂରାଜୀକୁ ଅନୁକରଣ କରି ଆପଣା ବେଶଭୂଷା, ଧରଣଚରଣ ସୁଧୁରାଇବା ପୂର୍ବରୁ ଏକାବେଳେ ଅର୍ଦ୍ଧନଗ୍ନ ଅସଭ୍ୟ ଥିଲା ? ଆମସଭ୍ୟ ( ? ) ସରକାରଙ୍କୁ କୃପାରୁ ଆମେ ହିଷ୍ଟ୍ରିରେ (ଇତିହାସରେ) ଭାରତୀୟଙ୍କର ନିନ୍ଦା ଛଡ଼ା ସୁଖ୍ୟାତି ପ୍ରାୟ ଭଣା ପଡ଼ିଥାଉଁ। ପିଲାଦିନୁ ଆମ ମନରେ ଆମ ପୂର୍ବପୁରୁଷଙ୍କ ବିଷୟରେ କିମ୍ଭୂତ କିମାକାର ଧାରଣା ହୋଇଯାଏ। କିନ୍ତୁ ଥରେ ଏଠାକୁ ଆସିଲେ, ଏଠାରେ ଚଳନ ଧାରଣ ଭଲରୂପେ ପର୍ଯ୍ୟବେକ୍ଷଣ କଲେ, ଠିକ୍ ତାର ବିପରୀତ ଧାରଣା ସ୍ୱତଃ ମନରେ ଜନ୍ମେ। ଅନୁକରଣ କରିଚି କିଏ କାହାକୁ, ପରିଷ୍କାର ଜଣା ପଡ଼ିଯାଏ।

ଦିଲ୍ଲୀ ଏକ ଦିଗରେ ପଞ୍ଜାବ ପ୍ରାନ୍ତ ସହିତ ସମ୍ମିଳିତ ଏବଂ ଏହାର ଅନ୍ୟ ଦ୍ଦିଗରେ ସଂଯୁକ୍ତ ପ୍ରଦେଶ। ଦିଲ୍ଲୀରେ ସଭ୍ୟତା ଏହି ଦୁଇ ଦେଶର ମଧ୍ୟବର୍ତ୍ତୀ। ଏଠାରେ ପୁରୁଷମାନଙ୍କର ପ୍ରଧାନ ପୋଷାକ ଧୋତି ନୁହେଁ - ପାଇଜାମା, ସଲ୍‌ୱାର, କୋଟ, କମିଜ, ଓ୍ୱେଷ୍ଟ କୋଟ, ଟୋପି ଓ ପଗଡ଼ି। ଧୋତି ପିନ୍ଧିବା ଏକ ପ୍ରକାର ଅସଭ୍ୟତାର ପରିଚାୟକ - କେବଳ ମାରଓ୍ୱାଡ଼ିଙ୍କ ଛଡ଼ା, ଯେଉଁମାନେ କି ହିନ୍ଦୁସ୍ଥାନୀ ଧରଣର ଧୋତି ପିନ୍ଧି, ସ୍ଥୂଳ ଶରୀର ଓ ବିଶାଳ ଉଦର ଘେନି ଦୋକାନମାନଙ୍କରେ ବସିଥାନ୍ତି। ଆଶ୍ଚର୍ଯ୍ୟ କଥା, ଏଠାରେ ସ୍ତ୍ରୀମାନେ ଶାଢ଼ୀ ବା ଘାଗରା ସହିତ ଓଢ଼ଣୀ କୋଟ ପିନ୍ଧନ୍ତି, ପୁଣି ସେ କି କାରୁକାର୍ଯ୍ୟ ମଣ୍ଡିତ ! ଏହିମାନଙ୍କର କୋଟ କମିଜ ଘାଗରା ଜମ୍ପରକୁ ଇଂରାଜୀ ଅନୁକରଣ କରି ଆଜି ଆମକୁ ଲୁଗାପିନ୍ଧା ଶିଖାଇବାକୁ ଆସିଚି। ଆମେ ସଭ୍ୟ ସଂପ୍ରଦାୟ ତାଙ୍କ କୋଟ, ପ୍ୟାଣ୍ଟ, ବଡ଼ି- ଜାକେଟକୁ ଅନୁକରଣ କରି ଭାବୁଚୁ, ଇତିପୂର୍ବେ ଆମର ପିନ୍ଧିବାଲାଗି ମୋଟା କନ୍ଥା ଅବା ବଣର ବକଳ ଛଡ଼ା ଆଉ କିଛି ନ ଥିଲା।

ଉତ୍କଳର ନାରୀମାନେ ଆଶ୍ଚର୍ଯ୍ୟ ହେବେ, ଏଠାରେ ହାଡ଼ିଆଣୀ ପର୍ଯ୍ୟନ୍ତ ସିଲାଇ ଓ ଜରିସଲମାର କାମକରି ଜାଣନ୍ତି। ଗୃହଶିଳ୍ପ ଓ ହସ୍ତଶିଳ୍ପ ଘରେ ଘରେ ପ୍ରଚଳିତ। ଜରି, ବୁଟା, ସଲମା, ଫିତା, ଲେଶ୍, କୃଷିକାମ ଓ ନାନାପ୍ରକାର ବସ୍ତ୍ରଭୂଷଣ ତିଆରିକରିବାରେ ଏଠାରେ ନାରୀମାନେ ଗର୍ବ ଅନୁଭବକରନ୍ତି ଏବଂ (ଅଶିକ୍ଷିତ ମାରଓ୍ୱାଡ଼ିଙ୍କୁ ଛାଡ଼ିଦେଲେ) ବେଶଭୂଷାରେ ଏମାନେ ବଡ଼ ସଫାସୁତୁରା ଓ ସୁନ୍ଦର। ପ୍ରାୟ ସମସ୍ତେ ଘରୁ ବାହାର ପର୍ଯ୍ୟନ୍ତ, ଏପରି କି ରନ୍ଧନ ଶାଳାରେ ସୁଦ୍ଧା, ଯୁତା, ଚଟି, ଲପେଟା ଓ ଖଡ଼ମ ବ୍ୟବହାର କରନ୍ତି। ବାଳକୁଣ୍ଡା ଅତି ପରିପାଟି; କୁର୍ତ୍ତା ଓ ଶାଢ଼ୀଗୁଡ଼ିକ ସୁନ୍ଦର ଓ କାରୁକାର୍ଯ୍ୟ ବିଶିଷ୍ଟ, ଆଉ ବାହାର ପିନ୍ଧା ଘାଗରାମାନଙ୍କରେ ସୁନା, ରୂପା, ଜରି ଫିତାଦିର ମନୋହାର ହାତକାମ– ଏ ଦେଶର ନାରୀମାନଙ୍କର ଶତ ଶତ ବର୍ଷ ପୂର୍ବର ବିଶିଷ୍ଟ ସଭ୍ୟତାର ପରିଚାୟକ।

ସଭ୍ୟ ମାରଓ୍ୱାଡ଼ି ସ୍ତ୍ରୀମାନେ ମଧ ହାତ କାମ, ଲୁଗାଛପା ଓ ନାନାପ୍ରକାର ଜରିକାମ କରନ୍ତି। ଏଠାରେ ସ୍ତ୍ରୀମାନେ ଆମ ଦେଶଠାରୁ ଯେ ବେଶି ପାଠ ପଢ଼ିଛନ୍ତି, ତା ନୁହେଁ। ଇଂରାଜୀ ଶତକଡ଼ା ଜଣେ ଜାଣୁଥିବେ କି ନାହିଁ ସନ୍ଦେହ। ହିନ୍ଦୀଶିକ୍ଷା ମଧ ଅତି ପ୍ରାଥମିକ, କିନ୍ତୁ ଏ ବୀରାଙ୍ଗାନମାନଙ୍କର ଯେ ସାହସ, ଯେ ବୁଦ୍ଧି ଓ ନିର୍ଭିକତା, ଉତ୍କଳୀୟ ନାରୀସମାଜରେ ତାହା ଦୁର୍ଲ୍ଲଭ। ମୁଣ୍ଡରେ ଓଢ଼ଣାଟି ପକାଇ ଏକା ଏକା ବଜାରଠାରୁ ନଦୀଘାଟ, ମନ୍ଦିର ଆଦି ଯେ କୌଣସି ସ୍ଥାନକୁ ଚାଲିଯିବା ଏଠାରେ ଏକାନ୍ତ ସ୍ୱାଭବିକ। ଭୟ କଣ, ଏହା ଏମାନେ ଅତି ଭଣା ଉପଲବ୍‌ଧି କରନ୍ତି ପରା! ଲାଜ ଲୁଚୁକୁଚୁପଣ ପଞ୍ଜାବୀ ରମଣୀଠାରେ ପ୍ରାୟ ଦେଖାଯାଏ ନାହିଁ। ଲଜାରେ ମୁଣ୍ଡ ତଳକୁ ପୋତି ଗମ୍ଭୀରତା ଅବଲମ୍ବନ କରିବା ଛଡ଼ା ଆଉ କୌଣସି ପ୍ରକାର ବାହ୍ୟାଡ଼ମ୍ବର ଦେଖାଇବା ଏଠାରେ ନୀତିବିରୁଦ୍ଧ। କବାଟକୋଣ ପଛାତୁ ଆମ ନାରୀମାନେ ଯେ ଲଜାର ଅଭିନୟ କରନ୍ତି, ସେ ଅଭିନୟ ମୁଁ ଏଠାରେ କେଉଁଠି ହେଲେ ଦେଖିନାହିଁ। ଅବଶ୍ୟ ଏଠି ପର୍ଦ୍ଦାପ୍ରଥା ଅଛି; ମାତ୍ର ଆମ ଦେଶ ପର୍ଦ୍ଦାଠାରୁ ଆକଶ ପାତାଳ ପ୍ରଭେଦ। ତାହା ମଧ କ୍ରମେ କ୍ରମେ ଉଠିବା ଉପରେ। ଏଠାକାର ମୁସଲମାନ ସ୍ତ୍ରୀମାନେ ସର୍ବାଙ୍ଗ ବୋର୍କାରେ ଆବୃତ କରି ଯଥେଚ୍ଛା ବିହାରକରନ୍ତି। ନିମ୍ନ ଶ୍ରେଣୀରେ ତ ବୋର୍କାଟି କେବଳ ପିଠିଆଡ଼େ ପଡ଼ିଥାଏ। ଆମ ଉତ୍କଳର ନାରୀମାନେ କେବେ ଯେ ବନ୍ଧନରୁ ମୁକ୍ତହେବେ, ଜଣା ନାହିଁ!

ଦିଲ୍ଲୀ ଆଚାର ବ୍ୟବହାର ପ୍ରାୟ ମୁସଲମାନ ଆଦବ୍ କାଇଦାରେ ପ୍ରଭାବିତ। ଏଠାର ଜନସାଧାରଣଙ୍କ ଭାଷା ଉର୍ଦ୍ଦୁ। ଶୁଦ୍ଧ ହିନ୍ଦୀ ପ୍ରାୟ କେହି କହନ୍ତି ନାହିଁ। ହିନ୍ଦୁ ରମଣୀମାନଙ୍କ ଛଡ଼ା ପୁରୁଷମାନେ ପ୍ରାୟ ହିନ୍ଦୀ ପଢ଼ିଲେଖି ଜାଣନ୍ତି ନାହିଁ। କେବଳ ବ୍ରାହ୍ମଣ ଓ ପଣ୍ଡିତଙ୍କର ଏ ବିଷୟରେ ବ୍ୟତିକ୍ରମ ଦେଖାଯାଏ। 'ହିନ୍ଦୀ'କୁ ଏଠାରେ 'ଭାଷା' ବୋଲି କହନ୍ତି। ଆଜିକାଲି ଏଠି ହିନ୍ଦୀର ପ୍ରଚାର କଂଗ୍ରେସ କଲ୍ୟାଣରୁ ଦ୍ରୁତଗତିରେ ହେଉଚି। ଇଂରାଜୀ ମଧ ଏଠି କେବଳ କିରାନୀ ଓ ଓକିଲ ଇତ୍ୟାଦି ରାଜକର୍ମଚାରୀଙ୍କ ଛଡ଼ା କାହାରି ଆଦରଣୀୟ ନୁହେଁ। ଭଲ ଭଲ ଗ୍ରାଜୁଏଟ୍ ମଧ ଅତି ଅଶୁଦ୍ଧ ଇଂରାଜୀ କହନ୍ତି। ସର୍ବତ୍ର ଉର୍ଦ୍ଦୁ ଭାଷାର ଏକଛତ୍ର ପ୍ରଭାବ ଏବଂ

ଭାରତୀୟ ସଭ୍ୟତାର ଆଦର ଦେଖିଲେ, ଓଡ଼ିଶାର ଦଶା, ବିଶେଷତଃ ବଙ୍ଗର ଦୁର୍ଦ୍ଦଶା କଥା ଭାବି ଦୁଃଖାଭିଭୂତ ହେବାକୁ ହୁଏ। ବଙ୍ଗ ଇଂରାଜଙ୍କୁ ଅନୁକରଣ କରି ଭାରତକୁ ଗୋଲାମିର ଶୃଙ୍ଖଳରେ ବାନ୍ଧି ତାର ଯାହା ଅନିଷ୍ଟ କରିଛି, ତାହା ଶତ ଶତ ବର୍ଷରେ ସୁଦ୍ଧା ଦୂରକରିବା ଏକ ପ୍ରକାର ଅସମ୍ଭବ। ବଙ୍ଗର ଉଚିତ୍ ଇଂରାଜୀ ସଭ୍ୟତାକୁ ବହିଷ୍କାରକରି ଭାରତୀୟ ସଭ୍ୟତାକୁ ଆପଣାଇବା ଏବଂ ସର୍ବାଗ୍ରେ ଓଡ଼ିଶାର ଉଚିତ୍, ବଙ୍ଗାନୁକରଣ ତ୍ୟାଗକରିବା। ଓଡ଼ିଆ ପୁଅଝିଅ ଏ ଦିଗରେ ମନଦେବେ କି? ଆମର ହଜାର ହଜାର ବର୍ଷ ପୂର୍ବର ସଭ୍ୟତାକୁ ଛାଡ଼ି 'କପିବିଦ୍ୟା' ହାସଲ କରିବାଟା କଣ ଆମ ପକ୍ଷରେ ଶୋଭନୀୟ?

ଏଠାରେ ଅଧିବାସୀଙ୍କର ପ୍ରଧାନ ଖାଦ୍ୟ ରୁଟି, ଡାଲି, ଦୁଧ ଓ ଫଳ। ଓଡ଼ିଶା ଦେଶଠାରୁ ଏଠାକାର ଲୋକଙ୍କର ଦେହର ଗଠନ ପୁଷ୍ଟ ଏବଂ ଏମାନେ ପ୍ରାୟଶଃ ଦୀର୍ଘକାୟ। ପ୍ରକୃତରେ ଆମ ଦେଶରେ କି ଭୀଷଣ ଖାଦ୍ୟାଭାବ!

ପଖାଳ ଭାତକୁ ନ ମିଳେ ଲୁଣ
ତପତ ସାଥିକୁ ନାହିଁ ତିଅଣ
ଗୋରୁ ହେଲେ ହଡ଼ା, ଲୋକେ ହେଲେ ମଡ଼ା
ସାର କୁଲିଗିରି, ଚାହାବଗିଚା କାମ।

ସ୍ୱରଚିତ ଗୀତର ଏ ପଦଟି ମନେକରି ମୋର ମନ ବିଷାଦରେ ପୂରିଯାଏ, ଆଖିରୁ ଲୁହ ଝଡ଼ିପଡ଼େ। ଓଳିକୁ ଦାନା ନାହିଁ - ତାଜା ଅଙ୍ଗୁର, ବହଳିଆ ଘନସର ଦୁଧ, ମଖନ, ଘିଅ ତ ସ୍ୱପ୍ନ, ଓଡ଼ିଆ ତରୁଣୀ ଶାଗକେରାକ, ପଖାଳଗଣ୍ଡାକ, ସେଥିକି ପୁଣି ସରକାରୀ ଲୁଣ ଟିପେରେ ଯୌବନ ତନୁର ପୋଷଣକରେ; ଆଉ ଓଡ଼ିଆ ଯୁବକ ସୁଦୂର ଆସାମ, ରେଙ୍ଗୁନ୍, କଲିକତା, ଦିଲ୍ଲୀ, ଲାହୋର, କରାଚି ପର୍ଯ୍ୟନ୍ତ କୁଲିକାମ ସନ୍ଧାନରେ ଆସି ଦେହମନ, ଜାତିକୁଳ ପରଦେଶରେ ନଷ୍ଟକରେ। ଘର ତାର ସ୍ମୃତିପଟରୁ ପୋଛିଯାଏ। ବରଷ ବରଷ ତାର ବୁଢ଼ୀମାଆ, ଯୁବତୀ ଭାର୍ଯ୍ୟା, ଏ ଆଖି ଲୁହ ସେ ଆଖିକରି, ତା ଆସିବା ବାଟକୁ ଚାହିଁରହନ୍ତି। ପହିଲି କେତେ ଦିନ ଡାକବାଲା ଚିଠି ଖଣ୍ଡେ ବା ଟଙ୍କା ଦଶପନ୍ଦରଟି ଘେନି ଆସି ବିରହୀ ପରିବାରର ଦୁଃଖ କିଞ୍ଚିତ୍ ଲାଘବକରେ; ପରେ ମାସ ମାସ ବହିଯାଏ, ଆଉ ଚିଠିପତ୍ର ଆସେ ନାହିଁ, ଟଙ୍କାର ଦେଖାଦର୍ଶନ ହୁଏ ନାହିଁ। ମାଆ ବୁଢ଼ୀ କତରା କୁଣ୍ଢାଇ ଶେଷ ନିଃଶ୍ୱାସ ତ୍ୟାଗକରେ; ଆଉ ସୁକୁମାରୀ ଯୁବତୀ ପତ୍ନୀ ପରଦୁଆରେ ଧାନକୁଟେ, କେବେ ଗାଁକୁ 'ଆଡ଼କାଟି'[୧] ଆସି ଭୁଲାଇ ନିଏ ତ 'ରଙ୍ଗୁରାଇଜ' ବା କଲିକତା ବଜାରରେ ବିକ୍ରି ହୁଏ ତାର ଦେହ ଓ ଭଗ୍ନ ହୃଦୟ। ସେଇ ଓଡ଼ିଆ ସୈନିକ, ବୀର ଓଡ଼ିଆ ଜାତିର ଏ ଭୀଷଣ ଦୁର୍ଦ୍ଦଶା କେତେ କେତେ ବାର ଭାଳି ଏହାର ପ୍ରତିକାରପାଇଁ ମନ କ'ଣ ହୋଇଯାଏ, କେତେ କେତେ ଚିନ୍ତା ମସ୍ତିଷ୍କରେ ବିଦ୍ୟୁତ ଭଳି ଖେଳିଯାଏ; କିନ୍ତୁ ପରେ ସବୁ ବୃଥା! ଉତ୍କଳମଣି ଗୋପବନ୍ଧୁ କାନ୍ଦି କାନ୍ଦି ଏହି କୁଲିଙ୍କପାଇଁ ଖରା, କାକର, ଖାଇ, ପାଣିକାଦୁଅ ଚକଟି, ଶେଷକୁ ଇହଧାମ ତ୍ୟାଗ କଲେ,

(୧) ଟରଣି, ଦେହବ୍ୟବସାୟୀ।

ବହୁତ ଭାବିଲେ; କିନ୍ତୁ କରି ପାରିଲେ କଣ ? ଆଜି ତାଙ୍କର ପବିତ୍ର ଲୁହଟୋପାଟିମାନ ଆମ ମୁଣ୍ଡ ଉପରେ ପଥର ବୋଝଭଳି ଲଦାହୋଇଛି - ଆମେ ତାଙ୍କର ମହାତ୍ୟାଗକୁ କେମିତି କଣ ପରିଶୋଧ କରିବୁ, କିଛି ବୁଝିହେଉ ନାହିଁ। ଜାତି ଯେ ତାଙ୍କ ଶ୍ରଦ୍ଧା ଅତି ସମାରୋହରେ ପାଳେ, ଏହା ଅବଶ୍ୟ ସୁଖର ବିଷୟ। ମହାପୁରୁଷ ପୂଜା ହିଁ ଜୀବନ୍ତ ଜାତିର ଲକ୍ଷଣ।

ଲେଖୁ ଲେଖୁ ଅନେକ ଦୂର ଚାଲିଗଲି। ଦିନେ ବିସ୍ମୟର ସହିତ ଦେଖିଲି, ଆମ ଡାକ୍ତରଖାନାରେ ୪।୫ ଜଣ ଓଡ଼ିଆ ଆସି ବସିଛନ୍ତି। ତିନି ବର୍ଷ ପୂର୍ବେ ଆମେ ଭାବିଥିଲୁ, ବିଶାଳ ଦିଲ୍ଲୀ ସହରର ପାଞ୍ଚଲକ୍ଷ ଅଧିବାସୀଙ୍କ ଭିତରେ ମୁଁ ଓ ଡାକ୍ତର ବ୍ରହ୍ମଚାରୀ କେବଳ ଦୋ'ଟି ଓଡ଼ିଆ। ହଠାତ୍ ଦିନେ ଜଣେ ଓଡ଼ିଆ ଓକିଲଙ୍କ ସଂଗେ ସାକ୍ଷାତ୍ ହେଲା। ଘର ତାଙ୍କର ବାଲେଶ୍ୱରରେ; ତାଙ୍କ ସ୍ତ୍ରୀ ହିନ୍ଦୁସ୍ଥାନୀ ଖ୍ରୀଷ୍ଟିୟାନ - ଉଚ୍ଚଶିକ୍ଷିତା ଏବଂ ଉଭୟଙ୍କର ଓଡ଼ିଆ ପ୍ରୀତି ଯଥେଷ୍ଟ ଅଛି। ଶ୍ରଦ୍ଧାରେ 'ମୀନା ଦେବୀ'ଙ୍କୁ 'ଭାରତୀ ତପୋବନ ସଂଘ'ରେ ଯୁକ୍ତ କଲି। ଦୁଃଖର ବିଷୟ, ସେ ଓଡ଼ିଆ ଜାଣନ୍ତି ନାହିଁ। ତାପରେ ଆଉ ଦିନେ ହିନ୍ଦୁସ୍ଥାନ ଟାଇମ୍ସ ପ୍ରେସ୍‌ରେ କାର୍ଯ୍ୟକାରୀ ଜଣେ ବାଖରାବାଦ (କଟକ)ର ଡୋମିସାଇଲଡ୍ ବଙ୍ଗାଳୀଙ୍କ ସହିତ ଦେଖାହେଲା। ସେ ଜଣେ ଓଡ଼ିଆ। ଯା ପରେ ଆଉ ସେଦିନ ଜାଣିଲୁ, ଏଠାରେ ପଚାଶ ଷାଠିଏ ଜଣ ଓଡ଼ିଆ ଅଛନ୍ତି। କେହି କେହି ୨୨।୨୪ ବର୍ଷ ଏଠି ରହିଲେଣି, କେହି ବା ହାଲିଂ ଆସିଛନ୍ତି। ପ୍ରାୟ ସମସ୍ତେ ପାଣିକଳରେ କାର୍ଯ୍ୟକରନ୍ତି। କେହି କେହି ନିଉ ଦିଲ୍ଲୀ (ରାଇସିନା) ନିର୍ମାଣ ହେଲାବେଳେ ଶିଳ୍ପ ବିଭାଗରେ କାର୍ଯ୍ୟ ମଧ କରିଛନ୍ତି; କିନ୍ତୁ ସମସ୍ତେ କୁଲି; ତାଙ୍କ କାମର ମୂଲ୍ୟ କତିପୟ ରଜତ ମୁଦ୍ରାଛଡ଼ା, ନାମ ତାଙ୍କର କାହିଁରେ ନାହିଁ। ସେମାନେ ପଛେ ଅତି ଉତ୍ତମ ଶିଳ୍ପୀ ହୁଅନ୍ତୁ, ନାମ ହୁଏ ଉପରସ୍ଥ ହାକିମର। ବିଶିଷ୍ଟ ଓଡ଼ିଆ ଭାବେ ଓଡ଼ିଶାର ଅନୁଷ୍ଠାନ ରୂପେ ଏକା "ଭାରତୀ ମେଡ଼ିକାଲ ହଲ" ଛଡ଼ା ଆଉ ଓଡ଼ିଆର ଆପଣାର ବୋଲି ଦାବୀ କରିବାକୁ ଏଠି ଏପର୍ଯ୍ୟନ୍ତ କିଛି ହୋଇନାହିଁ। ସେଥିପାଇଁ 'ଭାରତୀ ତପୋବନ'ର ପ୍ରତିଷ୍ଠା। 'ନଗରେଷୁ ଦିଲ୍ଲୀ'ରେ ଭାରତର ଆବହମାନକାଳର ଚିରପ୍ରତିଷ୍ଠିତ ରାଜଧାନୀରେ ଉତ୍କଳ ନିଜର ପ୍ରତିଷ୍ଠାକରୁ, ଏହାହିଁ ଆମର ଐକାନ୍ତିକ କାମନା। ଓଡ଼ିଶାବାସୀ ଏ ଦିଗରେ ମନୋଯୋଗ ଦେବେ କି? 'ଭାରତୀ ତପୋବନ ସଂଘ'[୨]କୁ ପ୍ରତ୍ୟେକ ଓଡ଼ିଆ ଆପଣାର ବୋଲି ଯେଉଁଦିନ ଦାବୀକରି ଗର୍ବ ଅନୁଭବକରିବେ, ସେ ଦିନ ଆମର ଶ୍ରମ ସାର୍ଥକହେବ।

ଭାରତର ରାଜଧାନୀ ଦିଲ୍ଲୀର ଗୋଟିଏ ବିଶେଷ ବୈଚିତ୍ର୍ୟ- ଏହା ଗୋଟିଏ ନୁହେଁ - ଦିଲ୍ଲୀ ଅର୍ଥ କେତୋଟି ଦିଲ୍ଲୀ। ଗୋଟିଏ ହେଉଛି 'ସାହାଜାହାନ' ଦିଲ୍ଲୀ, ଯେଉଁଠି ସମ୍ରାଟ ସାହାଜାହାନ ନିର୍ମିତ ଲାଲ୍‌କିଲ୍ଲା ଓ ଯୁମା ମସ୍‌ଜିଦ୍ ବିରାଜିତ। ସମସ୍ତ ସହରଟି ସୁଦୃଢ଼ ପଥର ପାଚେରୀଦ୍ୱାରା ଘେରା। ସେହି ସୁନ୍ଦର ପାଚେରୀର ଠାଏ ବ୍ରିଟିଶ୍ ତୋପ ଦିଲ୍ଲୀ ଅଧିକାର

(୧) ଏବେ, ନିକଟ ଅତୀତରେ, (୨) ଏହି ସାଂସ୍କୃତିକ ଅନୁଷ୍ଠାନ ଶ୍ରୀମତୀ କୁନ୍ତଳାକୁମାରୀଙ୍କ ଦ୍ୱାରା ପ୍ରତିଷ୍ଠିତ।

କଲାବେଳେ ଭାଙ୍ଗିଦେଇ ଶ୍ରୀହୀନ କରିଚି। ଆଉ ଗୋଟିଏ ମୋଗଲ ଦିଲ୍ଲୀ, ଯେଉଁଠି କି ମୋଗଲ ସମ୍ରାଟ ବାବରଠାରୁ ଜାହାଙ୍ଗିର ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ। ତାଙ୍କ ପୁରୁଣା କିଲ୍ଲାର ଭଗ୍ନାବିଶେଷ, ହୁମାୟୁନ୍‌ର କବର ଓ ସଫଦରଜଙ୍ଗ ଆଜି ସୁଦ୍ଧା ପୂର୍ବ ବୈଭବର ମୂକସାକ୍ଷୀ। ଯାପରେ ହିନ୍ଦୁ ଦିଲ୍ଲୀ ବା ପାଣ୍ଡବର ଦିଲ୍ଲୀ। ଯା ପରେ ପୃଥ୍ୱୀରାଜ ଦିଲ୍ଲୀ। ତାର ଲଗାଲାଗି ରାଇସିନା (ବା ରାଜା ମହାରାଜା ଅମୀର ଉଇସ୍‌ଙ୍କ ପୂର୍ବକାଳର ବସତି), ଯାହା କି ଆଜିକାଲି ନିଉଦିଲ୍ଲୀ ବା ଇଂରେଜଙ୍କ ଦିଲ୍ଲୀ। ପାଞ୍ଚ ଛଅଟି ଦିଲ୍ଲୀର ସମଷ୍ଟି ଏହି ଦିଲ୍ଲୀରେ କେତେ ଯେ ଆଘାତ ବାଜିଛି, କେତେ ଯେ ନିଷ୍ଠୁର କତ୍‌ଲେଆମ (ଲୁଣ୍ଠନକାରୀ ସୈନିକମାନେ ଗଳି ଗଳି ପଶି ଅସ୍ତ୍ରାଘାତରେ ନିରୀହ ପ୍ରଜାଙ୍କୁ ବଧ କରି ଧନରତ୍ନ ଲୁଟିବା) ଥରକୁ ଥର ଏହା ଭିତରେ ଘଟି ଯାଇଛି, ତାର ସୀମା ନାହିଁ। ପଠାଣଠୁ, ମୋଗଲଠୁଁ, ଇଂରେଜ ପର୍ଯ୍ୟନ୍ତ ସମସ୍ତେ ଏ ପୁରାଣ ବିଭବ ନଗରୀର ଧନରତ୍ନ ଲୁଟି ଆପଣା ଆପଣା କୋଷ ପୂର୍ଣ୍ଣକରି ଚାଲିଯାଇଛନ୍ତି - ରହିଛି କେବଳ ତାଙ୍କଦ୍ୱାରା ଧ୍ୱଂସିତ, ଧର୍ଷିତ, 'ଖଣ୍ଡହର'ମାନ, ଅର୍ଥାତ୍ ଭଗ୍ନାବିଶେଷ ଦୁର୍ଗଗୁଡ଼ିଏ। ଯେଉଁ ଆଡ଼କୁ ଚାହଁ, ରଘୁପୁତ୍ର ଦିଲ୍ଲୀପଙ୍କ କାଳଠାରୁ ଇଂରେଜଙ୍କ ଅମଳ ପର୍ଯ୍ୟନ୍ତର ତୋପ ଗୁଳିଦ୍ୱାରା ନଷ୍ଟୀକୃତ ଏ ଶ୍ମଶାନ ଦୁର୍ଗଗୁଡ଼ିକର କଙ୍କାଳ। ଏହା ଭିତରେ କେତେ ଯେ ରକ୍ତପାତ, ନରହତ୍ୟା, ନାରୀଙ୍କର ସତୀତ୍ୱ ନାଶଘଟିଛି, ତାର ଇୟତ୍ତା କିଏ କରିପାରିବ ? ଦିଲ୍ଲୀର ପ୍ରଧାନ ଦ୍ରଷ୍ଟବ୍ୟ ସ୍ଥାନଗୁଡ଼ିକ ଯଥାକ୍ରମେ -

(୧) ଲାଲ କିଲ୍ଲା (କୁମାର ଶାହାଜାହାନ ନିର୍ମିତ) ଆଜି ସୁଦ୍ଧା ଚାରିଶ ବର୍ଷର ଦୁଃଖ ଦୁର୍ବିପାକକୁ ଉପହାସ କରି ଅକ୍ଷୁଣ୍ଣ ଭାବରେ ରହିଚି। ଆଜି ତାହା ଇଂରେଜ ସୈନ୍ୟାବସ ଓ ପ୍ରଦର୍ଶନୀ, ଭିତର ଦେଖିବାକୁ ଗଲେ ଦୁଇଅଣା ଟିକଟ୍ ପଡ଼େ। ମୋଗଲ ଗୌରବର ଶେଷ ରବିରଶ୍ମି ସେହିଠାରେ ଅସ୍ତ ହୋଇଥିଲା। ସେହି ରଂଗମହଲ, ଦେଓ୍ୱାନିଆମ, ଦେଓ୍ୱାନିଖାସ୍ ଓ ମୋତି ମସ୍‌ଜିଦ୍ ଇତ୍ୟାଦି ପୂର୍ବପରି ରହିଚି, ମାତ୍ର ନାହିଁ କେବଳ ତାର ପୂର୍ବ ବିଭବ ଓ ମଣିମୁକ୍ତାର ଛଟା। ସମସ୍ତ ବହୁମୂଲ୍ୟ ପଦାର୍ଥ ସମୁଦ୍ର ସେପାରିକି ବହି ଯାଇଛି, ଅଛି କେବଳ ଅବୁହା ମୂକ ପଥରଟିମାନଙ୍କର କାରୁଣିକ। କାଳ ସେତିକି ଧ୍ୱଂସ କରିଦେଲେ ଗଲା।

(୨) ଯୁମା ମସଜିଦ୍ - ଏଠାକାର ଛୋଟ ବଡ଼ ପ୍ରାୟ ସବୁ ମସ୍‌ଜିଦ୍‌ଗ ଏକ ପ୍ରକାର ଧରଣରେ ତିଆରି। ଏଠି ଲାଲ ସ୍ଲେଟ୍ ପଥର ଅତି ସୁଲଭ। ତାହା ଚିକ୍‌କଣ ଓ ମସୃଣ। ମୂର୍ତ୍ତିନିଗ୍ରହକାରୀ ମୁସଲମାନ ଜାତି ଏହି ଚିକ୍‌କଣ ପଥର ପଟାରେ ପ୍ରାୟ ତାହାର କୀର୍ତ୍ତିଗୁଡ଼ିକ ତିଆରିକରିଛି। କାରୁକାର୍ଯ୍ୟ ମଧ୍ୟରେ ଫୁଲ ନକ୍‌ସା ଓ କୋରାଣର ଫୁଲଡାକ ଆଙ୍କିଲା ଭଳି ବିଚିତ୍ର ଅକ୍ଷର କୌଶଳ; କିନ୍ତୁ ପଥର କାମଗୁଡ଼ିକ ଏଡ଼େ ସୁନ୍ଦର ଯେ, ଆଜିସୁଦ୍ଧା ପୂର୍ବ ଗୌରବରେ ଛିଡ଼ାହୋଇ ଅଛନ୍ତି।

(୩) ରାଜା ଜୟସିଂହଙ୍କର ସୂର୍ଯ୍ୟଘଟିକା ବା ଯନ୍ତରମନ୍ତର - ପଥର ଦେହରେ ହିନ୍ଦୁ ଜ୍ୟୋତିରେ ଏକ ଅପୂର୍ବ କୀର୍ତ୍ତି। ଦେଖିଲେ ମନ ବିସ୍ମୟ ସାଗରରେ ନିମଗ୍ନ ହୁଏ। ପଥରରେ ଜ୍ୟୋତିଷ ଗଣନା, ବର୍ଷ, ମାସ, ଋତୁ, ଚକ୍ରାଦି ଏପରି କୌଶଳରେ ତିଆରି ଯେ,

କେହି ବୁଝାଇ ନ ଦେଲେ ସହଜରେ ବୁଝି ହୁଏନାହିଁ- ଏ ପଥରର କାଗଁଚ ପିଠିଗୁଡ଼ିକ କଣ ବୋଲି ! !

(୪) କୁତବମିନାର ବା ପୃଥ୍ୱୀରାଜ ସ୍ତମ୍ଭ - ଏହା ପୃଥିବୀର ସପ୍ତ ମହାଶ୍ଚର୍ଯ୍ୟ ମଧ୍ୟରେ ଗୋଟିଏ। 'ତିନିଶ ଅଶି' ପାହାଚଯୁକ୍ତ ଅତି ସୂକ୍ଷ୍ମ କାରୁକାର୍ଯ୍ୟ ବିଶିଷ୍ଟ ଏ ସ୍ତମ୍ଭଟି ଥିଲା ହିନ୍ଦୁରାଜମହିଷୀ ସଂଯୁକ୍ତାଦିଙ୍କର ଯମୁନା ଦର୍ଶନ ଓ ଯୁଦ୍ଧ ଦର୍ଶନର ସ୍ଥଳି; କିନ୍ତୁ ପୃଥ୍ୱୀରାଜଙ୍କର ଦାରୁଣ ପତନ ପରେ, କୁତବ୍‌ଉଦ୍ଦିନ୍ ସ୍ତମ୍ଭ ଦେହରୁ ସମୁଦାୟ ହିନ୍ଦୁ ଦେବ ଦେବୀଙ୍କର ମୂର୍ତ୍ତି ବିନାଶକରି ସଂପୂର୍ଣ୍ଣ କୋରାଣର ଶ୍ଳୋକଗୁଡ଼ିକ ତା ଉପରେ ଲେଖାଇ, ନିଜ ନାମରେ ତାକୁ 'କୁତବ୍‌ମିନାର' ବୋଲି ଜଗତରେ ଘୋଷଣା କରିଦେଲେ। ପ୍ରକୃତରେ ଏହିଟି ହିନ୍ଦୁକୀର୍ତ୍ତି - ଏଇଠି ଏକା ପୃଥ୍ୱୀରାଜଙ୍କର ନିବାସ ଥିଲା। ଦିନେ ସଂଯୁକ୍ତାଙ୍କର ପଦଧୂଳିରେ ଏ ସ୍ଥାନ ପବିତ୍ର ହୋଇଥିଲା। ଆଉ ସେ ହିନ୍ଦୁ ରାଜା ନାହାନ୍ତି, ହିନ୍ଦୁର ଗୌରବ - ସୂର୍ଯ୍ୟ ଅସ୍ତମିତ, ହିନ୍ଦୁକୀର୍ତ୍ତି ଶ୍ରୀଭ୍ରଷ୍ଟ ଏବଂ ଦେବମୂର୍ତ୍ତିଗୁଡ଼ିକ ବିକଳାଙ୍ଗ। ମୁସଲମାନର ନିର୍ମମ ଅସ୍ତ୍ରାଘାତରେ ଶତ ଶତ କାରୁକାର୍ଯ୍ୟ ଆଜି ଭଗ୍ନାବଶେଷରେ ପରିଣତ।

(୫) ପାଣ୍ଡବଙ୍କର କିଲ୍ଲା - ଅର୍ଥାତ୍ ଯେଉଁଠି ଦିନେ ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ ସହଦେବ ଆଜି ରାଜଧାନୀ କରିଥିଲେ। ଏହା ଭିତରେ ଗୋଟିଏ ଶିବାଳୟ ଅଛି। ପୂଜାରୀଟି ଯୁଧିଷ୍ଠିଙ୍କର ସନ୍ଧ୍ୟା ସ୍ଥାନଟି ସଗର୍ବରେ ଚିହ୍ନାଇଦେଇ ଦର୍ଶକଙ୍କଠାରୁ ପଇସା, ଦି ପଇସା ନେବାରେ କଦାପି କୁଣ୍ଠାବୋଧ କରେ ନାହିଁ। ଆଜି ଯେଉଁଠି ଘାସବଣ, ସେଠି ଦିନେ ଥିଲା ମୟ ଦାନବର କାରୁକଳାପୂର୍ଣ୍ଣ ସୁନ୍ଦର ରାଜସଭା।

(୬) ଫିରୋଜସାହା କୋଟଲା - ଏହା ଫିରୋଜସାହ ଟୋଗଲକଙ୍କ ଦୁର୍ଗର ଭଗ୍ନାଂଶ।

(୭) ସଫଦର ଜଙ୍ଗ - ଗୋଟିଏ ବିଶିଷ୍ଟ କବର ସ୍ଥାନ।

(୮) ହୁମାୟୁନ୍‌ର କବର।

(୯) ଖୁରଶିଆ ବାଗ - ରାଜକୁମାରୀ ଖୁରସିଦ ବେଗମର କବର ସ୍ଥାନ।

(୧୦) ରୋସ୍‌ନାରା ବାଗ - ମୋଗଲ ରାଜଦୁହିତା ରୋସ୍‌ନାଗରା କବର ସ୍ଥାନ।

(୧୧) ମସଜିଦ୍ ଫତେହପୁରୀ - ରାଣୀ ଫତେହପୁରୀ ବେଗମ୍‌ଙ୍କର କୀର୍ତ୍ତି।

(୧୨) ମୁନ୍‌ହରୀ ମସ୍‌ଜିଦ୍।

(୧୩) ଇଂଗ୍ରାଜୀର ଆଧୁନିକ ନୂଆଦିଲ୍ଲୀର ଲାଟଭବନ, ସ୍ତମ୍ଭ ଓ ଆସେମ୍ଳିହଲ୍।

ଯେ ରାଜା ହୋଇ ଆସିଲା, ସେ ଗୋଟିଏ ନୂଆ ଦିଲ୍ଲୀ ତିଆରିକଲା। କେହି ପୁରାତନକୁ ଧ୍ୱଂସକରି ଶୂନ୍ୟ ବିଜନ ସ୍ଥାନକରି ଛାଡ଼ିଦେଲା, କେହି ପୁରାତନକୁ ହୀନକରି ପୁଣି ତା କରରେ ନୂଆ ସହରଟିଏ ବାନ୍ଧିଦେଲା। ଦିଲ୍ଲୀ ଏହିପରି ରକ୍ତାଘାତ ସହି ସହି ବୁଢ଼ା ହୋଇଥିଲା। ଏବେ ଇଂଗ୍ରାଜୀର 'ନିଉଦିଲ୍ଲୀ' ନବ ଯୌବନରେ ନୂଆ କଳେବର ଧଇଲାଣି। ଭାରତର ଭାଗ୍ୟ ଯେପରି ବିଚିତ୍ର; କିଏ କହିବ ତା'ର ପରମାୟୁ କେତେ ? ନିଶା ରାତିରେ

କିଲ୍ଲା ପଡ଼ିଆରୁ ଯେଉଁ କରୁଣ ଆର୍ତ୍ତନାଦ ବେଳେ ବେଳେ ଶୁଣାଯାଏ, ମନରେ ହୁଏ, କେଜାଣି କେତେ ନିର୍ଦ୍ଦୋଷ ରକ୍ତରେ ଏ ମାଟି ରଞ୍ଜିତହୋଇଛି। ଏଠା ମାଟି ଖୁଣିମାଟି ଛଡ଼ା ଆଉ କ'ଣ ? ଆଉ ସେ ଖୁଣ କାହାର ? ନିରୀହ ହିନ୍ଦୁର। କ୍ଷୁଦ୍ରାତିକ୍ଷୁଦ୍ର କୀଟାଣୁ ପର୍ଯ୍ୟନ୍ତ ଯେ କ୍ଳେଶ ନେବାକୁ ଅନିଚ୍ଛୁକ, ବିଶ୍ୱପ୍ରେମିକ ସେହି ଉଦାର ହିନ୍ଦୁର ରକ୍ତରେ ଦିଲ୍ଲୀର ଶ୍ମଶାନ ସିକ୍ତ !!

ଏଠାରେ ହିନ୍ଦୁ ଅଧିବାସୀଙ୍କ ମଧ୍ୟରେ ବ୍ରାହ୍ମଣଙ୍କର ଆଧିପତ୍ୟ ବିଶେଷ ନାହିଁ। ଏଠାରେ ବିଶିଷ୍ଟ ଜାତି ହେଉଛନ୍ତି (୧) କ୍ଷତ୍ରିୟ (୨) ବୈଶ୍ୟ। ଏମାନଙ୍କ ମଧ୍ୟରେ ଦୁଇ ପ୍ରଧାନ ବିଭାଗ (କ) ସନାତନୀ ବିଷ୍ଣୁପୂଜକ ବଣିଆଁ ଜାତି (ଖ) ଜୈନ ଶ୍ରାବକସଂପ୍ରଦାୟ। ଏଠାକାର ହିନ୍ଦୁର ଆଚାର ବିଚାର ଅଧିକାଂଶ ଜୈନ ପ୍ରଭାବରେ ପୂର୍ଣ୍ଣ। ନିରାମିଷ ଭୋଜନ ଏଠାର ମୁଖ୍ୟ ଧର୍ମାଚାର। ଯେଉଁମାନେ ଆମିଷ ଭୋଜନକରନ୍ତି, ଜନସାଧାରଣ ପ୍ରାୟ ସେମାନଙ୍କୁ ଅଶ୍ରଦ୍ଧା ଦୃଷ୍ଟିରେ ଦେଖନ୍ତି। ମାଛ, ମାଂସ, ପିଆଜ, ରସୁଣ ଏ ଚାରୋଟି ଖାଦ୍ୟ ପଦାର୍ଥ ଶୂଦ୍ର ବା ମୁସଲମାନୀ ଭୋଜନ ରୂପେ ଘୃଣିତ। ଏଠାର କାୟସ୍ଥ, କାଶ୍ମିରୀ ବ୍ରାହ୍ମଣ ଓ ଶିଖମାନେ ଆମିଷାଶୀ ଏବଂ ଏମାନେ ଉଚ୍ଚବର୍ଣ୍ଣ ଭିତରେ ଗଣିତ। ପାନ ଭୋଜନରେ ଜୈନଙ୍କ ପରି କୃଚ୍ଛ୍ରାବଲମ୍ବନ ବୋଧହୁଏ ପୃଥିବୀର କୌଣସି ଜାତି କରୁଥିବେ କିନା, ସନ୍ଦେହ। ଆମିଷ ତ ଦୂରର କଥା, ଆଳୁ, ସାରୁ, ବାଇଗଣ ପର୍ଯ୍ୟନ୍ତ ଅନେକ ଅଖାଦ୍ୟ ବୋଲି ପରିତ୍ୟାଗ କରିଥାନ୍ତି। ଜଣେ ଜଣେ ଜୀବନଯାକ କେବଳ ଫଳ ଏବଂ ଗୋଟିଏ ଯୋଡ଼ିଏ ଖାଦ୍ୟ ଉପରେ ନିର୍ଭର କରି କଟାଇଅଛନ୍ତି। ରାତିରେ ପାଣି ଟୋପାଏ ପିଇବାକୁ ସୁଦ୍ଧା କେବେ ଜୈନୀ ଦ୍ୱିଧାବୋଧ କରନ୍ତି। ଧନ୍ୟ ଏ ଶରୀର ସଂଯମ, କିନ୍ତୁ ଅପର ପକ୍ଷରେ ଏ ଜାତିର ବଣିଆମାନେ ଭୟଙ୍କର ସୁଧିଲୋଭୀ ଏବଂ ନୈତିକତାଭ୍ରଷ୍ଟ। ''ଧର୍ମ ଧର୍ମ'' ଚିତ୍କାରକରି ଏମାନେ ମାନବମାତ୍ରଙ୍କ ଠାରୁ ଅଲଗା ହେବାକୁ ହିଁ ଆପଣାର ପରମ ଶ୍ରେୟ ମଣିଥାନ୍ତି। ଏଠାରେ ଆର୍ଯ୍ୟ ସମାଜର ମଧ ମହାନ୍ ପ୍ରଭାବ। ଆର୍ଯ୍ୟ ସମାଜ ମଧ ଆମିଷ ଭୋଜନର ପୂର୍ଣ୍ଣ ବିରୋଧୀ। ଅତଏବ ଉତ୍ତର ଭାରତରେ ପ୍ରାୟ ଭୋଜନଗତ ଧର୍ମ ହିଁ ଅଧିକ ଜନପ୍ରିୟ। ଏଠାକାର ସବୁଠାରୁ ନିର୍ଭୀକ ଏବଂ ବଳିଷ୍ଠ ଜାତି ହେଉଛନ୍ତି ପଞ୍ଜାବୀ ଶିଖ ଏବଂ ପେଶଓଆରୀ ପଠାଣ। ଶିଖମାନେ ଉଦାର ଧାର୍ମିକ, ପେଶଓଆରୀମାନେ ଗୁଣ୍ଡାଶ୍ରେଣୀୟ। ନିରାମୀଷଭୋଜୀ ଜୈନୀ ସାଧାରଣତଃ ଯୁଦ୍ଧ ବିମୁଖ ଏବଂ ବ୍ୟବସାୟୀ। ରୂପରେ ଓ ଗୁଣରେ ସର୍ବାଙ୍ଗ ସୁନ୍ଦର ଜାତି ହୋଉଛନ୍ତି କ୍ଷତ୍ରିୟ। କ୍ଷତ୍ରିୟ ଜାତିର ଶାରୀରିକ ସୌନ୍ଦର୍ଯ୍ୟ ଅତୁଳନୀୟ। କିନ୍ତୁ ଆଜି ଏମାନଙ୍କ ଭିତରୁ ଅଧିକାଂଶ ଗରିବ ଓ ବ୍ୟବସାୟୀ ବା ଚାକିରୀଜୀବୀ। ଏହି ଜାତି ଦିନେ ଭାରତର ଗୌରବସ୍ପଦ ଥିଲେ। ପଦ୍ମିନୀ, ସଂଯୁକ୍ତାତୁଲ୍ୟ ସୁନ୍ଦରୀ ରମଣୀମାନେ ଆଜି ସୁଦ୍ଧା ଏମାନଙ୍କର ଗରିବ କୁଟୀରମାନଙ୍କରେ ଚମ୍ପା, ପଦ୍ମଫୁଲ ଭଳି ସୁଶୋଭିତ। ଏଠାର କାୟସ୍ଥ ଜାତି ମଧ୍ୟ ସୁନ୍ଦର, ଚତୁର ଓ ଅଧିକାଂଶ ସରକାରୀ ଚାକିରିଆ। ଏଠାରେ ଆଉ ଏକ ଜାତି ଅଛନ୍ତି, ସେମାନେ ଏକପ୍ରକାର ନିମ୍ନ କ୍ଷତ୍ରିୟ ଏବଂ ଚାଷବାସ କରନ୍ତି। ଏମାନେ ଏ ଦେଶର ଜାଠ; ଆମ ଦେଶର ଖଣ୍ଡାୟତମାନଙ୍କର

ସମ ଶ୍ରେଣୀୟ। ଏମାନେ ସଂପୂର୍ଣ୍ଣ ନିରାମିଶାଷୀ ଓ ଅତି ବଳିଷ୍ଠକାୟ। ଏମାନେ ଏ ଦେଶର ବୀର ପାଇକ ଜାତି। ଏମାନଙ୍କର ଭାଷା ସହିତ ଓଡ଼ିଆ ଭାଷାର ବହୁତ ସାମଞ୍ଜସ୍ୟ ଅଛି। ମୋ ବୋଧରେ ଓଡ଼ିଶାର ଓଡ଼ଜାତି, ମଧ୍ୟ ପ୍ରଦେଶର ପୋଣ୍ଡ ଏବଂ ଏ ଦେଶର ଜାଠ୍ ଏକ ରକ୍ତର। ଆକୃତି ମଧ୍ୟ ପ୍ରାୟ ସମାନ। ଏମାନେ ଅଧିକାଂଶ ଶ୍ୟାମଳ ବର୍ଣ୍ଣ, ବଡ଼ ସତ୍ୟବାଦୀ, ଜିଦିଖୋର ଏବଂ ଧର୍ମପ୍ରିୟ। ମୁଣ୍ଡକଟି ଗଲେ ସୁଦ୍ଧା ଏମାନେ ସତ୍ୟରୁ ବିଚଳିତ ହେବାବାଲା ନୁହନ୍ତି। ଏମାନେ ରାଜପୁତ ଜାତିର ଏକ ବିଶିଷ୍ଟ ଅଂଗ। ଏମାନେ ଅଧିକାଂଶ ଗ୍ରାମର ଅଧିବାସୀ। ବିଲବାଡ଼ୀ କରିବା ଏମାନଙ୍କର କାମ। ଏଠାର ମୂଲିଆ ମଜୁରିଆ ଆମ ଓଡ଼ିଶା ଦେଶଠାରୁ ସ୍ୱଚ୍ଛଳାବସ୍ଥାପନ୍ନ। ପ୍ରାୟ ସମସ୍ତଙ୍କ ନିକଟରେ ଯଥେଷ୍ଟ ଶୀତ ଲୁଗା ଥାଏ। ଉଲ୍ଲଙ୍ଗ ଶରୀର ଏଠି ଦେଖିବାକୁ ମିଳେ ନାହିଁ। ପ୍ରଖର ଗ୍ରୀଷ୍ମରେ କଣ, ଭୟାନକ ଶୀତରେ କଣ, ସର୍ବଦା ଲୁଗା ପିନ୍ଧିବା ଏଠିକାର ରୀତି। ମୋଟ କଥା, ଏ ପ୍ରଦେଶ ଓଡ଼ିଶାଠାରୁ ବହୁ ପରିମାଣରେ ଧନୀ। ଏଠାର ଧନ ବୈଭବ ସହିତ ଉତ୍କଳକୁ ତୁଳନା କରାଯାଇପାରେନା। ତଥାପି ଭାରତର ପୂର୍ବବସ୍ଥା ତୁଳନାରେ ଏ ଦେଶ ମଧ୍ୟ ଦିନକୁ ଦିନ ଗରିବ ହେଲାଣି। ପୂର୍ବରେ ଯେଉଁମାନେ ଅମୀର ଓ ମରାହ ଥିଲେ, ଆଜି ସେମାନେ ଏକ ପ୍ରକାର ଦୀନଦରିଦ୍ର। ମୁସଲମାନମାନଙ୍କର ଦଶା ସବୁଠାରୁ ଅଧିକ ଶୋଚନୀୟ। ବାଦ୍‌ସାହୀ ଗୋଷ୍ଠୀର ଲୋକେ ଦରିଆଗଞ୍ଜର ଦରିଦ୍ର କୁଡ଼ିଆରେ ନିତାନ୍ତ ହୀନ ଜୀବନ ଯାପନକରୁଥିବାର ମୁଁ ସ୍ୱଚକ୍ଷୁରେ ଦେଖିଚି। ଅଧିକାଂଶଙ୍କ ଘରକୁ ଚିକିତ୍ସା କରିବାକୁ ଯାଇ ମୁଁ ସେମାନଙ୍କର ପୂର୍ବ ଇତିହାସ କିଛି କିଛି ସଂଗ୍ରହ କରିପାରିଚି। ଏ ପରିବାରଗୁଡ଼ିକ ଦରିଦ୍ର ହେଲେ ସୁଦ୍ଧା ସେମାନେ ଆଜି ପର୍ଯ୍ୟନ୍ତ ନିଜ ନାମରେ ନବାବ୍, ବେଗ୍, ସୁଲତାନ ବେଗମ, ସୁଲତାନା ଆଦି ସଂଯୋଗ କରିବାକୁ ଛାଡ଼ିନାହାନ୍ତି। ଉଦାହରଣ ସ୍ୱରୂପ ଜଣେ 'ସାହୀ' ପରିବାରର ବର୍ତ୍ତମାନ ହୁଏତ ସାମାନ୍ୟ ଚପରାଶୀ - କିନ୍ତୁ ତାର ନାମ ମୀର୍ଜା ସାହେବ ବେଗ୍, ଆଉ ତାର କନ୍ୟାର ନାମ ନୁରେଜାହାଁ ବେଗମ୍ - ତୈମୁର ଜାହାଁ ବେଗମ୍ - କେହିବା - ରଫିକ୍‌ସୁଲତାନ୍, କେହି ଫରୁକ୍‌ସୁଲତାନ। ଏହି ନାମର ଗୌରବରେ ସେମାନେ ଯେ ରାଜବଂଶୀୟ ଏହା ଚିହ୍ନାପଡ଼େ; କିନ୍ତୁ ମାଟିର ବଦନା (ଲୋଟା), ଛିଣ୍ଡା ସତରଞ୍ଜି, କେତୋଟି ଛେଳି କୁକୁଡ଼ା ହୁଏତ କାହାରି କାହାରି ସର୍ବସ୍ୱ। କାଳ କଣ ନ କରେ। ସେହି ଅତ୍ୟାଚାରୀ ମୋଗଲର ଏମାନେ ବଂଶଧର ଭାବିଲେ ପ୍ରକୃତରେ ହୃଦୟରେ ଆଘାତ ଲାଗେ। କେବେ କେବେ ଏମାନେ ଆପଣାକୁ 'ଆଉରଙ୍ଗଜେବୀ ଅଉଲାଦ' (ସନ୍ତାନ) କହି ଗର୍ବ ମଧ୍ୟ କରିଥାନ୍ତି। ବର୍ତ୍ତମାନ ଏମାନେ ବଡ଼ ନିରୀହ ଏବଂ ଦରିଦ୍ର। ଏମାନଙ୍କ ଭିତରୁ ଅଧିକାଂଶ ସରକାରଠାରୁ ପେନ୍‌ସନ୍ ମଧ୍ୟ ପାଆନ୍ତି। ଏମାନଙ୍କ ଘରେ ଅନେକ ବାଳିକା ଉଚ୍ଚଶିକ୍ଷା ମଧ୍ୟ ପାଇଛନ୍ତି। କେତେ ଡାକ୍ତରାଣୀ, ନର୍ସ ଏବଂ ଗ୍ରାଜୁଏଟ୍, ମାଟ୍ରିକୁଲେଟ ବାଳିକା ମଧ୍ୟ ଏହି ପରିବାରମାନଙ୍କରେ ଅଛନ୍ତି। ଏଠାର ମୁସଲମାନ ରମଣୀମାନେ ଅନେକେ ସୁଶିକ୍ଷିତା ଏବଂ ପୁରୁଷଙ୍କଠାରୁ ଅଧିକ ଉଦାର ଭାବାପନ୍ନା। ବାସ୍ତବରେ ନାରୀର ମୁକ୍ତିହେଲେ ଯାଇ ଦେଶର ଏବଂ ଜାତିର ମୁକ୍ତିହେବ।

ପ୍ରକୃତରେ ଯଦି ହିନ୍ଦୁ ମୁସଲମାନ ଘରର ସ୍ତ୍ରୀ ପୁରୁଷ ସ୍ୱଚ୍ଛନ୍ଦଭାବରେ ମିଳିମିଶି ପାରୁଥାନ୍ତେ, ତା ହେଲେ ମୋ ମତରେ ଜାତିସମାଜଗତ ବୈଷମ୍ୟ ଏତେ ରହନ୍ତା ନାହିଁ, ନାରୀର କୋମଳତା ଓ ଉଦାରତା ଅନେକ ଅନ୍ଧବିଶ୍ୱାସ ଦୂରକରିପାରନ୍ତା। ଉଚ୍ଚକୁଳର ମୁସଲମାନ ଦେହରେ ଆଫଗାନ୍ ଏବଂ ହିନ୍ଦୁର ରକ୍ତ ସଂମିଶ୍ରିତ ଥିବାରୁ, ଏ ଜାତି ମଧ୍ୟ କ୍ଷତ୍ରିୟଙ୍କ ଭଳି ଅତି ସୁନ୍ଦର। ଏମାନଙ୍କର ଶାରୀରିକ ଗଠନସୌଷ୍ଠବ ଏବଂ ବଳବୀର୍ଯ୍ୟର ପରିଚାୟକ। କୁଳୀନ ମୁସ୍ଲିମ୍ କାମିନୀମାନେ ପ୍ରକୃତରେ ରୂପର ଗୋଟିଏ ଗୋଟିଏ କୋହିନୂର। ସେମାନଙ୍କର ଲଳିତ ଲାବଣ୍ୟ ଦେବ ନୟନ ଦୁର୍ଲ୍ଲଭ; କିନ୍ତୁ ସେ ସୌନ୍ଦର୍ଯ୍ୟ ବୋର୍କାର ଅନ୍ତରାଳରେ ଅନ୍ତଃପୁର ମଧ୍ୟରେ ହିଁ ଆବଦ୍ଧ। ଏମାନେ କଠୋର ପର୍ଦ୍ଦା ଅବଲମ୍ବନ କରିଥାନ୍ତି। ତଥାପି ଶିକ୍ଷିତ ମୁସଲମାନମାନଙ୍କ ଭଳି ପର୍ଦ୍ଦା ଉଠିଗଲାଣି। ସ୍ତ୍ରୀମାନେ ମେମ୍‌ମାନଙ୍କ ଭଳି ରହିବାକୁ ଆରମ୍ଭ କଲେଣି। ଏଠାରେ ଖ୍ରୀଷ୍ଟିଆନ୍ ଜାତି ପ୍ରାୟ ନିମ୍ନତମ ଶ୍ରେଣୀରୁ ସଂଗୃହୀତ। ଏମାନଙ୍କଠି ନା ଅଛି ଧନ, ନା ଅଛି ଦେଶ ବା ଜାତିର ପ୍ରେମ। ଏମାନେ ଇଂରାଜୀ ଫେସନ୍‌ର ଦାସ। ଏମାନଙ୍କର ସ୍ତ୍ରୀମାନେ ଅଧିକାଂଶ ସ୍କୁଲଶିକ୍ଷୟତ୍ରୀ ବା ନର୍ସକାର୍ଯ୍ୟ କରନ୍ତି। ଆଚାର ବିଚାର ଏମାନଙ୍କର ଅତି କଦର୍ଯ୍ୟ; କିନ୍ତୁ ପୋଷାକ ଏମାନଙ୍କର ଭାରି ପ୍ରିୟ। ଓଡ଼ିଶା ଭଳି କୌଣସି କୁଳୀନ ଜାତିର ଲୋକେ ପ୍ରାୟ ଏଠା ଖ୍ରୀଷ୍ଟୀୟ ସଂପ୍ରଦାୟରେ ନାହାନ୍ତି। ହାଡ଼ି, ପାଣ, ପଠାଣ, ଚମାର ଏହିମାନେ ହିନ୍ଦୁମାନଙ୍କର ସାମାଜିକ ଅତ୍ୟାଚାର ସହି ନ ପାରି ଖ୍ରୀଷ୍ଟିୟାନ ହୋଇ ପଡ଼ନ୍ତି। ଏମାନଙ୍କର ନିଜସ୍ୱ କିଛି ନାହିଁ। ସମସ୍ତଙ୍କର ଇଂରାଜୀ ନାମ ଏବଂ ଇଂରାଜୀ ଅକ୍ଷରରେ ଏମାନେ ଆପଣା ମାତୃଭାଷା ଉର୍ଦ୍ଦୁ ପଢ଼ନ୍ତି।

ଏ ଦେଶର ଲୋକସାଧାରଣ ଉଦାରମନା। ବଙ୍ଗାଳୀଙ୍କ ଭଳି ସଂକୀର୍ଣ୍ଣ ପ୍ରାଦେଶିକତା ଏ ଦେଶରେ ସ୍ୱପ୍ନପ୍ରାୟ। ମହାଭାରତୀୟ ଭାବ, ହିନ୍ଦୁର ଜାତୀୟ ଭାବ, ଏଠାରେ ପୂର୍ଣ୍ଣମାତ୍ରାରେ ବିରାଜିତ। କେହି ବଙ୍ଗାଳୀ ହେଉ, ମହଟୀ ହେଉ, ଓଡ଼ିଆ ହେଉ କି ପଞ୍ଜାବୀ ହେଉ, ଏଠାଲୋକେ ତାକୁ ହିନ୍ଦୁସ୍ଥାନୀ ବୋଲି ସମ୍ବୋଧନ କରି ଆପଣାଇ ନେବେ। ଓଡ଼ିଶାର ଯୁବକମାନଙ୍କର ଏ ଦେଶକୁ ଆସି ଶିଖିବାର ଅନେକ ପଦାର୍ଥ ରହିଛି। ଏ ଦେଶକୁ ଆସିଲାମାତ୍ରେ ପ୍ରାଦେଶିକତାର ସଂକୀର୍ଣ୍ଣ ଗଣ୍ଡିରୁ ମୁକ୍ତିଲାଭ ହୁଏ। ଏଠି ମହାଭାରତୀୟ ଭାବ ହିଁ ଏକମାତ୍ର ଆଦରର ସାମଗ୍ରୀ। ଅତିଥି ସତ୍କାର ଏଠାର ଏକ ବିଶିଷ୍ଟ ଗୁଣ। ଜାତି ଧର୍ମ ନିର୍ବିଶେଷରେ ଅତିଥି ସତ୍କାର ଏମାନେ ପାଳନ କରିଥାନ୍ତି। ଅତିଥିକୁ ଆକଣ୍ଠ ଭୋଜନ ଦେଲେ ଏମାନେ ପରିତୃପ୍ତ ହୁଅନ୍ତି। ଅନ୍ୟକୁ ଭୋଜନରେ ତୃପ୍ତ କରାଇ ସୁଖୀହେବା ଏ ପ୍ରାନ୍ତର ଏକ ସାଧାରଣ କଥା; ଏପରିକି ଗୋରୁ, କୁକୁର, ମାଙ୍କଡ଼, ଜହ୍ନା, ପିମ୍ପୁଡ଼ିଙ୍କୁ ନିତ୍ୟ ଖାଦ୍ୟଦାନ କରିବା ଅନେକ ଧର୍ମପିପାସୁ ବ୍ୟକ୍ତିଙ୍କର ନିତ୍ୟକର୍ମ। ସକାଳୁ ଦଳେ ଦଳେ ହିନ୍ଦୁ ସ୍ତ୍ରୀ ପୁରୁଷ 'ଯମୁନା ଜୀ' ସ୍ନାନରେ ଏବଂ ଦଳେ ଦଳେ ଜୈନୀ ସ୍ତ୍ରୀ ପୁରୁଷ ଦେବଦର୍ଶନରେ ବାହାରି, ହାତରେ ଖାଦ୍ୟ ଘେନି ବିତରଣ କରି କରି ଯିବା ଏଠାରେ ନିତ୍ୟ ନୈମିତ୍ତିକ ଦୃଶ୍ୟ। ଏଠାରେ

ଧର୍ମମନ୍ଦିର, ଗୋ ବ୍ରାହ୍ମଣ ମଧ୍ୟରେ, ଅର୍ଦ୍ଧ ପଣ୍ଡିତଙ୍କର ସଂଖ୍ୟା କିଛି କମ୍ ନୁହେଁ। ଏଠା ବ୍ରାହ୍ମଣମାନେ ପଣ୍ଡିତ - ପଛେ ସେ ଅକ୍ଷର ବିବର୍ଜିତ ହୋଇଥାଉ। ଗୌଡ଼, ସାରସ୍ୱତ, କାନ୍ୟକୁମ୍ଭଜୀ, ବ୍ରାହ୍ମଣ ଏଠାର ଶ୍ରେଷ୍ଠ ବ୍ରାହ୍ମଣ। ଏଠାର ବ୍ରାହ୍ମଣମାତ୍ରେ ନିରାମିଷାହାରୀ ଓ ଅତି ନିରୀହ ପ୍ରକୃତିର ଏବଂ ଅଧିକାଂଶ ଦରିଦ୍ର ଓ ପ୍ରାୟ ମୂର୍ଖ। ଅଶୁଦ୍ଧ ସଂସ୍କୃତର ଦୁଇ ଚାରୋଟି ଶ୍ଳୋକ, ଦରଦର ପାଠ ହିନ୍ଦୀ ଏମାନଙ୍କ ବିଦ୍ୟାର ଶେଷସୀମା। ଏଠା ଆର୍ଯ୍ୟସମାଜରେ ଅନେକ ବିଶିଷ୍ଟ ଭାରତବିଖ୍ୟାତ ସଂସ୍କୃତ ବିଦ୍ୱାନ ଅଛନ୍ତି। ସନାତନ-ହିନ୍ଦୁ ଏବଂ ଆର୍ଯ୍ୟ ପଣ୍ଡିତଙ୍କର ଶାସ୍ତ୍ରଯୁଦ୍ଧ ଏଠି ଏକ ମଜାର ଜିନିଷ। ଏ ଶାସ୍ତ୍ରାର୍ଥ ବେଳେ ବେଳେ ଭୀଷଣ ଧର୍ମ ଯୁଦ୍ଧରେ ପରିଣତ ହୋଇଯାଏ। ଏଠି ପ୍ରାୟ ସବୁ ସମାଜରେ, ସବୁ ସଂପ୍ରଦାୟରେ ଅନ୍ୟାନ୍ୟ ଧର୍ମାବଲମ୍ବୀଙ୍କ ସହିତ ଶାସ୍ତ୍ରାର୍ଥ ହୁଏ, ଆଉ ପ୍ରତି ଧର୍ମର ବାର୍ଷିକ ମେଳା ଓ ମହୋତ୍ସବମାନ ପ୍ରତିପାଳିତ ହୁଏ। ଏଠାରେ କବିମାନଙ୍କର ସମ୍ମିଳନୀ ମଧ୍ୟ ବିଶେଷ ଦ୍ରଷ୍ଟବ୍ୟ। ଗୁଣର ଆଦର ଏ ଦେଶରେ ଅତ ଅଧିକ। ସ୍ୱଜାତିପ୍ରେମ, ଭାରତଭାବନା ଲୋକଙ୍କର ଅସ୍ଥିମଜ୍ଜାଗତ। ଗତ କଂଗ୍ରେସ ଆନ୍ଦୋଳନ ଦିନୁ ଏଠା ଅଧିବାସୀ ଅଧିକାଂଶ କଂଗ୍ରେସଭକ୍ତ। ଏହି ଦିଲ୍ଲୀରେ ଯେଉଁ ଦିନ 'ଗୋଲ' ଚାଲିଥିଲା, ସେ ଭୟାବହ ଦିନର ଭୀଷଣ ଦୃଶ୍ୟ ଆଜିସୁଦ୍ଧା ସ୍ମୃତି ପଟରେ ଅଙ୍କିତ।

କିନ୍ତୁ ଆଉ ନୁହେ, ଆଉ ଦିନେ। ଚିଠିଟା ବଡ଼ ଲମ୍ବା ହୋଇଗଲା; ପଢ଼ିବାକୁ ବିରକ୍ତ ଲାଗିବ ପରା! ତଥାପି ନଗରେଷୁ ଦିଲ୍ଲୀର କଥା ସରିନାହିଁ। ଏହାର ଶତ ଶତ 'ଖଣ୍ଡହର'ର ଇତିହାସ ଅପୂର୍ବ କାରୁଣ୍ୟମଣ୍ଡିତ। ଉତ୍କଳର କେହି ପ୍ରତ୍ନତତ୍ତ୍ୱୋତ୍ସାହୀ ଯୁବକ ଏ ଦିଗରେ କିଛି କାର୍ଯ୍ୟ କରିବାକୁ ଇଚ୍ଛାକଲେ ଆମେ ତାଙ୍କୁ 'ଭାରତୀ ତପୋବନ' ପକ୍ଷରୁ ସାଦର ନିମନ୍ତ୍ରଣ ଦେଉଛୁ। କେହି ଏ ଦିଗରେ ଚେଷ୍ଟା କରିବେ କି?

ଆଜି ଏତିକି। ନମସ୍କାର।

## ଦିଲ୍ଲୀ ଚିଠି (୪)

ସଂପାଦକ ମହାଶୟ,

ସାଦର ନମସ୍ତେ,

ବହୁଦିନ ହେଲା ଆପଣଙ୍କ ସାକ୍ଷାତ ନାହିଁ। ''ସହକାର'' ବୋଧହୁଏ ଓଡ଼ିଶାର ନିତି ନୂଆ ଝଗଡ଼ାରେ ପଡ଼ି ଆଉ ଦିଲ୍ଲୀ ଆସିବାକୁ ମନେକରୁ ନାହିଁ। ଖବର କାଗଜ ଫିଟାଅ ତ ଦେଖିବ ଖାଲି କଳିର ପସରା! କାହିଁ କଂଗ୍ରେସ ବୈଠକରେ କଳି ତ, କାହିଁ ଉତ୍କଳ-ସାହିତ୍ୟ-ସମାଜ-ମନ୍ଦିରରେ ଝଗଡ଼ାରଗଡ଼ା, କାହିଁ ଦେଶ ମିଶ୍ରଣଲାଗି ଚିତ୍କାର! ଗଲା ପଚିଶ ତିରିଶ ବର୍ଷର କଥା ହେଲାଣିଟି - ପିଲାଗୁଡ଼ିକ ସବୁ ଭେଣ୍ଡା ହେଲେଣି, ଭେଣ୍ଡାଗୁଡ଼ିକ ସବୁ ବୁଢ଼ା ହେଲେଣି; ହେଲେ ଦେଶମିଶ୍ରଣ ନାଟ ଆଜିଯାକେ ସେହି ''ଚିର ଯଉବନୀ'' ହୋଇ ବସିଛି। କେତେ ପୁରୁଷ ବିତିଲେ କେଜାଣି ଓଡ଼ିଆ ଜାତିର ମନର ଆରମାନଟା ମେଣ୍ଟିବ, ତା କାଠ

ମହାପୁରକୁ[୧] ଜଣା ଏକା। ଜାଠପ୍ରଭୁଏ ନିଜେ କାଠ କି ନା, ଦେଶର ଗୁହାରି ଆଡ଼କୁ ସୁଦ୍ଧା କଲିଜା କାଠକରି ବଇଛନ୍ତି। ତାଙ୍କୁ ଭାବନା, ଚିନ୍ତା ନାହିଁ, ବଇରୀଏ ତାଙ୍କର କି ଦଶା କଲେଣି। ତାଙ୍କ ପାଦତଳ ଚାଖଣ୍ଡକ ଭୂଇଁ ଛଡ଼ା ଆଉ ସବୁ ଯେ ବାହାବଳିଆର ମାରିପିଟି ନେଇଗଲେଣି, ଏଟା ତାଙ୍କ ଦେହସୁହା ହେଲାଗୁ ଆଉ ବାଧୁ ନାହିଁ ପରା। ନୋହିଲେ କାହିଁ ହିମାଳୟର ପାଦମୂଳୁ ମହାସମୁଦ୍ର ମହୋଦଧିଯାଏ; ଏଣେ ଗଙ୍ଗା ଗୋଦାବରୀ ସୀମା ପର୍ଯ୍ୟନ୍ତ ମୁଲକଟାର; ତେଣେ ବର୍ମା, ସିଲୋନ, ଜାଭା, ବାଲି, ମାଳୟ, ସୁମାତ୍ରା ଆଦି ରାଇଜର ଏକଛତ୍ର ପ୍ରଭୁ ହୋଇଥିଲେ; ଏବେ କଟକ, ପୁରୀ, ବାଲେଶ୍ୱର - ଏଇ ତିନିଟା ମେଲେରିଆ ମଡ଼ାବଡ଼ି ବୁଡ଼ା, ପଚାସଢ଼ା ରାଇଜର ମାଲିକପଣିଆରୁ ହାଉଲେ ହାଉଲେ ଓହ୍ଲାଇବାକୁ ବସଲେଣି। ତଥାପି କାଠଙ୍କର ଚିନ୍ତା ନାହିଁ; ଆମେ ଚିନ୍ତି ଚିନ୍ତି ଚିତ୍କାରକରି ଡକାବୋବାଳି ଛାଡୁଥିଲେ କଣହେବ, ଯାଙ୍କ କୃପା ତ ମୂଳରୁ ଶୂନ୍, କିଏ ଶୁଣୁଚି କହିଲ? ପାଟିକରି ତୋଟି ବସିଯାଉନା କାହିଁକି, ଖାଲି ପାଟି ଦାଣ୍ଡକୁ ଶୁଭିବା ସାରହେଉଚି– ଯେଝା ଯେ ବଳିଆର ବାବୁ, ତୁମେ ଓଡ଼ିଆ ଗହନ ନିଦରେ କାହିଁକି ଶୋଇଚ କହିଲ? ଏତିକିବେଳୁ, ଏ ବର୍ଷ କଂଗ୍ରେସ ବର୍ଷ, ଦେଶ ମିଶ୍ରଣ ସମସ୍ୟାଟାକୁ ଭଲକରି ଜାବୁଡ଼ିଧର, ତୁମ ହାତ ମୁଠାରୁ ଏ ଶୁଭ ସୁଯୋଗ ନ ଖସୁ। ଦୁନିଆ ଆଗରେ ତୁମ ଦାବୀ ତୁମେ ସାବ୍ୟସ୍ତକରି ଦେଖାଅ ଯେ, ତୁମେ ମଲାଜାତି ନୁହ - ତୁମେ ଜୀଅନ୍ତା। ତୁମ ଶିରାରେ ଶିରାରେ ରକତର ତାତି ଅଛି, ତୁମ ଛାତି ଭିତରେ ଧୁକୁ ଧୁକୁ ହେଉଚି, ତୁମ ଆଖିର ଜ୍ୟୋତି ଲିଭି ନାହିଁ। କଥାରେ କହନ୍ତି, ଶୋଇଲା ପୁଅର ଭାଗ ନାହିଁ। ଓଡ଼ିଆ ପୁଏ, ତୁମେ ଜଗତକୁ ଜଣାଅ, ତୁମେ ଶୋଇ ନାହଁ, ତୁମର ପୂରା ଚେତାଅଛି। ତୁମ ହକ୍ ଧନର ତୁମେ ମାଲିକ, ତୁମ ପୂର୍ବ ଇତିହାସ ଗୋଟି ଗୋଟି ଖୋଜ।

ବସନ୍ତ-କୋକିଳ[୨], ତୁମେ କାହିଁକି ପ୍ରମାଣ କରିବାକୁ ବସିଚ ଯେ ଭୁବନେଶ୍ୱରରେ ବୁଦ୍ଧଦେବଙ୍କର ଜନ୍ମ ବୋଲି? ତୁମେ କଣ ଜାଣୁନାହଁ, ଭୁବନେଶ୍ୱର କିବା ଛାର, ହିମାଳୟ ପାଦମୂଳୁ କଳିଙ୍ଗଟି! ହେଲା, ଏବେ କପିଳବାସ୍ତୁ ନେପାଳରେ, ନେପାଳର ସଭ୍ୟତା ଆଗ, ନା କଳିଙ୍ଗର? ଅଶୋକ ରାଜ୍ୟ ଆଗ, ନା କଳିଙ୍ଗ ରାଜାଙ୍କ ଇତିହାସ ଆଗ? କିଏ ପୁରୁଣା? କିଏ ଭାରତର ପ୍ରଥମ ଚକ୍ରବର୍ତ୍ତୀ ରାଜା? ବିଶ୍ୱବିଜୟୀ ଆଲୋକ୍‌ଜାଣ୍ଡର (ସିକନ୍ଦର)ଙ୍କ ଶିକ୍ଷିତ ଗ୍ରୀକ୍ ସୈନ୍ୟମାନେ ସୁଦ୍ଧା କେଉଁ ରାଜାର ଦନ୍ତାବଳ ହାତୀଙ୍କି ଦେଖି ଭାରତ ଛାଡ଼ି ପଳେଇଥିଲେ (କଳିଙ୍ଗ ଅଭିଯାନପାଇଁ ସାହସ କରି ନଥିଲେ)? ତୁମେ ଏଡ଼େ ପୁରୁଣା, ତୁମେ ଭାରତର ବିଖ୍ୟାତ ସମୁଦ୍ରଗାମୀ ବୀର ନାଉରୀ ଜାତି, ଆଜି ସୁଦ୍ଧା ତୁମ ଜାତିଭାଇ ବର୍ମାରେ, ଜାଭା, ସୁମାତ୍ରା, ବାଲି, ଫିଲିପାଇନ୍ ଇତ୍ୟାଦି ପ୍ରଶାନ୍ତ ମହାସାଗରର ସବୁ ଦ୍ୱୀପରେ ଲକ୍ଷ ଲକ୍ଷ ଭରା। ରଜା, ରଇତ, ସାମନ୍ତ, ବ୍ରାହ୍ମଣ ସବୁ ତୁମରି ଜାତିର। କଳିଙ୍ଗ ଲୋକେ ଆଜି ସୁଦ୍ଧା ନିଜକୁ କୋଉଠି ''କରିନ୍'', କୋଉଠି ''କ୍ଲିଙ୍ଗ'' ବୋଲି ପରିଚୟଦେଇ ରହିଛନ୍ତି। ତୁମେ ତାଙ୍କୁ

(୧) ଜଗନ୍ନାଥ, (୨) ଭଗବାନପତି, କବି ଓ ସମୀକ୍ଷକ

ଖୋଜ, ତୁମର ସେମାନେ ନିଜର। ଆସାମ ଦେଶ ଯାଅ, ଚଟ୍ଟଗ୍ରାମର ଗାଁମାନଙ୍କରେ ସୁଦ୍ଧା ତୁମ ଜାତିର ଲୋକେ ଭରା ଦେଖିବ।

ଏଇ ଅଳ୍ପଦିନ କଥା - ମୋର ଜଣେ ଓଡ଼ିଆ ମିତ୍ର, ଯେ କି କିଛି ଦିନ ପୂର୍ବେ ବର୍ମାରେ ଆମରି ବାପଅଜାଙ୍କର ଲୀଳାଖେଳାରେ ବ୍ରହ୍ମରାଜ୍ୟ, ରଂଗମୂଳକ, ମଣ୍ଡଳ ନଗରୀରେ ଥିଲେ। କହିଲେ, ଦିନକର ତାଙ୍କର ହଠାତ୍ ଅଭିଜ୍ଞତା କଥା। ସେ କାମ କରୁଥିଲେ ବର୍ମା ରେଲଓଯେ ଡିପାର୍ଟମେଣ୍ଟରେ ଜଣେ ସରକାରୀ କମ୍ପାଉଣ୍ଡର ରୂପେ। ଆଉ ଥିଲେ କୋଉଠି ନା ବର୍ମାର ''ଓଡ଼ିଶା'' ପେଗୁରେ। ସରକାରୀ କାଗଜ ପତ୍ରରେ ସୁଦ୍ଧା ପେଗୁର ନାମ ''ଓଡ଼ିଶା''। ତା ପାଖ ଗାଁ ନାଁ ''କାକଟପୁର'', ପୁଣି ''କଟକ''। ତାଙ୍କୁ relieving duty (ରିଲିଭିଂଡିଉଟି)ରେ ଯିବାକୁ ପଡ଼ିଲା ଦଶଦିନ ଲାଗି 'ଇଜି'କୁ (ନିଯୋଗୀ), ଗଣ୍ଡଗ୍ରାମ ଦୂର ଜଙ୍ଗଲ ଭିତରେ ବାସିନ (ବସନ୍ତ) କତିରେ। ବର୍ମାର ଅତି ଅଭ୍ୟନ୍ତର। ଦିନେ ହଠାତ୍ ଜଣେ ଦୀର୍ଘାକାୟ, ଗୌରବର୍ଣ୍ଣ, ଉନ୍ନତନାସା ବର୍ମା ଯୁବକ ଆସି ତାଙ୍କୁ ଏକ ଦୃଷ୍ଟିରେ ଚାହିଁ କଣ ଭାବିଲା କେଜାଣି, କହଲା, ''ନମସ୍କାରୁଲୁ ବାବୁ''! ବାବୁଟି ଚମକି ପଡ଼ିଲେ। ବର୍ମାଭାଷାରେ ପଚାରିଲେ, ''ତୁମେ କି ଜାତି ?'' ଉତ୍ତର ''କରିନ୍''। ସେଠୁ ତା ସହିତ କଥାବାର୍ତ୍ତା ଆରମ୍ଭ ହେଲା– ''ତୁମେ କଣ ହିନ୍ଦୀ ଜାଣ ?'' ଉତ୍ତର ''କରିନ୍''। ''ନା''। ''ତୁମେ ବଙ୍ଗଳା ଜାଣ ?'' ଉତ୍ତର ''ନା''। ''ଆରେ, ତୁମେ କଣ ଓଡ଼ିଆ ଜାଣ ?'' ଓଡ଼ିଆ ନାମ ଶୁଣି ''କରିନ୍'' ଯୁବକ ଆନନ୍ଦ-ଅଧୀର କଣ୍ଠରେ ବର୍ମାଭଙ୍ଗୀରେ କହିଲା ''ଆମେ ଓଡ଼ିଆ, ଆମେ ଓଡ଼ିଆ''। ଓଡ଼ିଆ ବାବୁଟିର କୌତୂହଳ ବୃଦ୍ଧିହେଲା। ତାକୁ ବସିବାକୁ କହି ସବୁ ରୋଗୀଙ୍କୁ ବିଦାୟକଲା ପରେ, ବାବୁଟି ପଚାରିଲେ– ''ତୁମେ ଓଡ଼ିଆ, କେତେ ଦିନ ହେଲା ଏଠି ଅଛ ?'' ସଂପୂର୍ଣ୍ଣ ବର୍ମା ପୋଷାକମଣ୍ଡିତ ଯୁବକ ହସି ହସି କହିଲା ''ଏଚି''! ଏଚି ଆମ୍ଭଘର, ଏଚି ଆମ୍ଭ ବାପଘର, ଅଜାଘର।' ସେଠୁ ତା ସହିତ ସେହି ଭଙ୍ଗା ଭଙ୍ଗା ଓଡ଼ିଆରେ ଅନେକ କଥାହେଲା। ଜଣାଗଲା ସେମାନେ ''କରିନ୍'', ସେମାନେ କଳିଙ୍ଗ ଦେଶରୁ ସାତଶ ଆଠଶ ବର୍ଷ ହେଲାଣି ଆସିଲେଣି। ଏଠି ସେମାନଙ୍କର ବହୁ ପୁରୁଷର ଘରଦ୍ୱାର। ବାବୁଟିକୁ ସେ ବଙ୍ଗାଳୀ ଭାବିଥିଲା, ଓଡ଼ିଆ ଜାଣିପାରି ମହାଖୁସିରେ ତା ପରଦିନ ନିଜ ଘରକୁ ଡାକିନେଲା। ସେ ଦୂର ବଣ ଭିତରେ ବର୍ମା ଘରେ, ବର୍ମା ପୋଷାକରେ ଆମର ଓଡ଼ିଆ ଭାଇ ଦେଖିଆସିଲେ କଳିଙ୍ଗ ('କରିନ୍', 'କଳିଙ୍ଗ'ର ଅପଭ୍ରଂଶ) ପରିବାର, କଳିଙ୍ଗ ନାରନାରୀ, ଛୁଆପିଲା, ବର୍ମା ଭଙ୍ଗୀରେ ଓଡ଼ିଆ କଥା, ବର୍ମା ଅକ୍ଷରରେ ଓଡ଼ିଆ ପୋଥି, ସଂସ୍କୃତ ପୋଥି, ହାତକଟା ସୂତା, ଗଳାରେ ଓଡ଼ିଆ କଣ୍ଠି, ନାକରେ ଓଡ଼ିଆ ଦଣ୍ଡୀ। ପୂର୍ବରେ ତାଙ୍କର ପୁଣି ବୋଇତ ଚାଲୁଥିଲା। ବର୍ମାର ଅଧା ଅଧିବାସୀ ''କରିନ୍''। ମୁଁ ବର୍ମାରେ ଥିଲାବେଳେ ଦେଖିଛି, ଏମାନେ ପ୍ରକୃତ ବର୍ମାଙ୍କଠୁଁ ଭିନ୍ନ। ଯାଙ୍କ ମଧରେ ବର୍ଣ୍ଣଭେଦ ରହିଛି। ବିବାହ ସଂସ୍କାର ଅଛି। ଆଉ ବର୍ମାରେ ଓଡ଼ିଶା ଭଳି ଅଠର ଗଡ଼ଜାତ - ସେଥି ମଧରୁ ଖାସ୍ କରିନ୍ ଷ୍ଟେଟ

ଗୋଟାଏ। କିଏ ଅଛ, ଓଡ଼ିଆ ଭାଇ! ତୁମର ସେହି କଳିଙ୍ଗ ଭାଇଙ୍କୁ ସଂଖୋଳିବାକୁ - ଯେ ଆଜି ସୁଦ୍ଧା କହିପାରେ "ଆମେ ଓଡ଼ିଆ"। ବର୍ମାର ସେ ଦୂର ବଣ ଭିତରେ, ବର୍ମାର ସେ ପାଗୋଡ଼ା ପଥର ମୁଣ୍ଡରେ, ସେହି ଘନଘଞ୍ଚ ପର୍ବତସନ୍ଧିରେ। ତୁମ ଭାଇଭଉଣୀ ପ୍ରକୃତ କଳିଙ୍ଗ ସନ୍ତାନ, ତାଙ୍କ ଜାତୀୟ ମୌଳିକତା ଆଜି ସୁଦ୍ଧା ନ ହରାଇ ରହିଛନ୍ତି? ଏ ଯେ ଆରାବିୟାନ୍ ନାଇଟ୍ ଭଳି ରୋମାଞ୍ଚକର! କଳିଙ୍ଗ ନାଁ ଧରି (ବର୍ମାର ପ୍ରଧାନ ଅସ୍ତ୍ର ନା) ମୁଣ୍ଡରେ ପେଣ୍ଡା ବାଳ ରଖି ପଉଆ (ପାଗ) ବାନ୍ଧି ଦେହରେ ରେଶମ ଲୁଙ୍ଗି (କହଙ୍ଗା) ଓ ଅଇଁଜୀ (ଅଙ୍ଗୀ) ଆଉ ଗୋଡ଼ରେ ଫନା (ଉପାନହ ବା ଯୋତା) ପିନ୍ଧି ଯେତେବେଳେ କରିନ୍ ଯୁବକ ଯୁବତୀ ବାହାରନ୍ତି, କିଏ ଭାବିବ, ଏହିମାନେ ଆମରି, ଆମରି ଜାତି, ନିଜର ରକ୍ତର ଓଡ଼ିଆ? ଆହେ କଳିଙ୍ଗ ସନ୍ତାନ! କିଏ କୋଉଠି ଅଛ, ବାହାରି ପଡ଼, ତୁମ ଜାତିଭାଇଙ୍କୁ ସଂଖୋଳିବାକୁ।

ହେଇଟି ଏବେ ଅଗଷ୍ଟ ସଂଖ୍ୟା ଆର୍ଯ୍ୟ ପତ୍ରିକା "ସାର୍ବଦେଶିକ"ରେ ଆର୍ଯ୍ୟ ଧର୍ମୋପଦେଶକ କହ୍ନୟାଲାଲ ଲେଖିଛନ୍ତି, ତାଙ୍କ "ବାଲିଦ୍ୱୀପରେ ହିନ୍ଦ" ଶୀର୍ଷକ ଲେଖାରେ ଯେ, ସେ ସେଠାରେ ଜଣେ ବ୍ରାହ୍ମଣ ଘରକୁ ଗଲେ। ସେ ରହିଚି ବାଲିର "କୌଳାଙ୍ଗ କାଙ୍ଗ" ନଗରରେ। 'କାଙ୍ଗ' ଚୈନିକ ଭାଷାରେ ନଗର । ଗଞ୍ଜାମର "କଳିଙ୍ଗ କାଙ୍ଗ"ମାନେ କଳିଙ୍ଗ ନଗର। ଗଞ୍ଜାମର "କଳିଙ୍ଗ ପାଟଣା" "କଳିଙ୍ଗ ଘାଟି" "କଳିଙ୍ଗ ଦଣ୍ଡପାଟ" "କଳିଙ୍ଗ ଦାମଡ଼ା", "କଳିଙ୍ଗ କୁମୁଟୀ" "କାଳଞ୍ଜୀ" (ସାର ପରଶୁରାମ ପାତ୍ରଙ୍କ ଜାତି) ଏସବୁ ନାମ ସହିତ ତୁଳନୀୟ। ବାଲିର ପାହାଡ଼ର ନାମ "ଚିନ୍ତାମଣି" (ନାମ ଚିନ୍ତାମଣି, ବିଦ୍‌ଗଧ ଚିନ୍ତାମଣି, ବୈଦ୍ୟ ଚିନ୍ତାମଣି ପ୍ରଭୃତି ଗ୍ରନ୍ଥର ନାମର ସାମଞ୍ଜସ୍ୟ)। ୧୯୦୩ ସାଲ ପର୍ଯ୍ୟନ୍ତ (୧୮୦୩ ରେ ଶହେ ବର୍ଷ ପୂର୍ବେ ଓଡ଼ିଶାର ସ୍ୱାଧୀନତା ଲୁପ୍ତ) ୟୁରୋପିୟାନମାନଙ୍କୁ ବାଲି ଦ୍ୱୀପର ନାଁ, ସାଙ୍କିଆ ଜଣା ନଥିଲା। ଗୋଟାଏ ଓଲନ୍ଦାଜ ଜାହାଜ ଝଡ଼ରେ ଭାସିଯାଇ ଚଡ଼ାରେ ନ ଲାଗେ, ନା ବାଲି ଦ୍ୱୀପରେ ପରା ସେମାନେ ନ ପାଆନ୍ତି। ସେଠୁ ସନ ୧୯୦୬ ରେ ହଠାତ୍ ଚଡ଼ଉ କରି କଳିଙ୍ଗ ରାଜାଙ୍କ ସହିତ୍ ଫିରିଙ୍ଗିମାନେ ଯୁଦ୍ଧକଲେ। ଜଣେ ରାଜା ତ ବିଷ ଖାଇ ମଲେ, ଜଣେ ଯୁଦ୍ଧ ଭୂଇଁରେ ମଲେ, ରାଣୀମାନେ ଆତ୍ମହତ୍ୟାକରି ମଲେ (ବାରବାଟୀ ଦୁର୍ଗ ଓ ଖୋରଧା ଦୁର୍ଗର ରାଣୀମାନଙ୍କ ହାବିଳୀରେ ବୁଡ଼ିମରିବାର ସାମଞ୍ଜସ୍ୟ); ଆଉ ବାଲି ଦ୍ୱୀପର ଦଣ୍ଡମୁଣ୍ଡର କର୍ତ୍ତାହେଲେ ଓଲନ୍ଦାଜ। ସେଠିକାର ସମସ୍ତ ଅଧିବାସୀ ହିନ୍ଦୁ, ବର୍ଣ୍ଣାଶ୍ରମୀ, ମୂର୍ତ୍ତିପୂଜକ। ସେଠିକାର ନାରୀମାନେ ବୀରା, ତେଜସ୍ୱିନୀ।

"କଳିଙ୍ଗାଃ ସାହସିକାଃ" ପ୍ରବାଦର ଚାକ୍ଷୁଷ ପ୍ରମାଣ ଗଞ୍ଜାମରେ, ତଥା ବାଲିରେ।

ଏ ସବୁ ଶୁଣି କାହା ମନରେ ନ ହେବ "ହାୟ, କଣ ଥିଲୁ, କଣ ହେଲୁ?" କୋଣାର୍କ ଗର୍ବରେ ଆକାଶ ଛୁଉଁଥିଲା ବୋଲି କଣ ଆଜି ଭାଙ୍ଗିରୁଜି ମାଟିରେ ସାତମାଟି ହେଲା! ଭାରତର ଆଉ କେଉଁ ଜାତି ଆବିଷ୍କାର କରୁ ଭଲା, କିଏ ଆଉ ତାଙ୍କର କେଉଁଠି ଅଛି? କିନ୍ତୁ ଅନାଅ, ତମାମ୍ ଦରିଆଯାକ ଆମ ମଲକ - ଆମ ମୁଲକ କଣ ଖାଲି କଟକ ପୁରୀ,

ବାଲେଶ୍ୱର? ଆମେ ହତାଶ, ଆମେ ନିରାଶ, ଆମେ ଦୁର୍ବଳ - ଆମେ ଭାବୁଚେ, ଆମେ ନିଃସ୍ୱ।

ନା ଭାଇ, ଭାବ ନାହିଁ।
''ଆଖିରୁ କିପାଁ ବହେ ବାରି?
ତୁମରି ସେ ବୀର ନାଉରୀଙ୍କ କଥା
ଦୁଃଖେ କି କଲିକା ହୁଏ ଘାରି?
ନୋଙ୍ଗରି ମଳିନ କଳିଙ୍ଗ ସଉଜ,
ବିଜୟ ନିଶାଣ ଛାଉଣିର ଚିହ୍ନ,
ବାଲି ବର୍ଣ୍ଣ, ଶ୍ୟାମେ, ମଳୟ ଅନାମେ,
ବ୍ରହ୍ମମୁଣ୍ଡେ ଦଣ୍ଡ ଛତ୍ରଧାରୀ।
ମଣ୍ଡଳ ନଗରେ କୌଳାଙ୍କି କାଙ୍ଗରେ
କରିନ ରାଜ୍ୟରେ ଜାଭା ଘରେ ଘରେ
ଆମରି କଳିଙ୍ଗ ଭାଇ ବସିଛନ୍ତି
ପୂରୁବ ଗୌରବ ଅଧିକାରୀ।
ଟାଣୁଆ ଓଡ଼ିଆ, ଜିଣିଲୁ ଦରିଆ
କଲୁ କାରିଗରି ପଥରରେ ଠିଆ
ତୋର ଚକ୍ରବର୍ତ୍ତୀ ଗଜପତି ପାଦେ
ପୃଥିବୀ ପଣତ ଥିଲା ପାରି,
ମାଞ୍ଚୁରିଆ ଚୀନ୍ ଜାପାନ ନୃପତି
ଆଜରେ କଳିଙ୍ଗ ବୌଦ୍ଧଭିକ୍ଷୁ ଯତି
ରଚିଲେ ମନ୍ଦିର ମଠ ବିଦ୍ୟାପୀଠ
ଅଜ୍ଞାନ ଅଧମ ନରେ ତାରି।''

ଭାଇମାନେ, ଆଜି ଓଡ଼ିଶା ଦେଶମିଶ୍ରଣଲାଗି ପୁଣି ଆମେ ଏତେ ପଦେ ପଦେ ବାଧାପାଉଚୁ। ଓଡ଼ିଆ ସାମଲ, ଓଡ଼ିଆ ମାହାନ୍ତି ପୂର୍ବ ପୁରୁଷର କୃତିତକ ଭୁଲିଯାଇ କହୁଛନ୍ତି, ''ଆମେ ବଙ୍ଗାଳୀ''। ମୁଁ ପଚାରେ– ସେମାନେ ବଙ୍ଗାଳୀ ନା ''ବଙ୍ଗାଲ?' ବାଙ୍ଗାଲ ଯେ ପୂର୍ବବଙ୍ଗୀ, କାହିଁ ତାଙ୍କ ସହିତ ଆମର କିଛି କଳି ନାହିଁ - ଲାଗୁଚି ପୁଣି ଆମରି ଭିତରେ, ଯେ ଆମରି ସୋଦର ଗୋତ୍ର! ଯଦି ଭ୍ରାତୃବିବାଦ ଓଡ଼ିଶାରେ ଲାଗି ନଥାନ୍ତା, କଳାପାହାଡ଼ ଓଡ଼ିଶାରେ ପଶି ନଥାନ୍ତା, ମୁକୁନ୍ଦ ଦେବ ହାଣ ଖାଇ ନଥାନ୍ତେ, ତେବେ ଆଜି ସେହି ହୁଗୁଳୀ କୂଳ ପର୍ଯ୍ୟନ୍ତ ପ୍ରକୃତ ''ଉତ୍କଳ''ର ଲୋକେ ବାଙ୍ଗାଲୀଙ୍କ ସଂଗେ ମିଶି, ବଙ୍ଗାଳୀ ବନି ନ ଥାନ୍ତେ - ଚୁଟିମୁଣ୍ଡିଆ ଓଡ଼ିଆ ବ୍ରାହ୍ମଣ, ଯାଜପୁରିଆ 'ଚଇତା', ମେଦିନୀପୁରିଆ 'ଈଶରା', ଯାଜପୁରିଆ ହୋତା ବ୍ରାହ୍ମଣ 'ଶିବା' (ଶ୍ରୀ ଚୈତନ୍ୟ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର, ପଣ୍ଡିତ

ଶିବନାଥ ଶାସ୍ତ୍ରୀ) ଜନ୍ମି ନ ଥାନ୍ତେ, ବଙ୍ଗ ସାହିତ୍ୟର ଏପରି ଉନ୍ନତି ହୋଇ ନ ଥାନ୍ତା, ବଙ୍ଗଳାରେ ବୈଷ୍ଣବ ଧର୍ମ, ସମାଜ ସଂସ୍କାର ଓ ବ୍ରାହ୍ମ ଧର୍ମର ଢେଉ ଖେଳି ନଥାନ୍ତା। (ପାଠକ ଅବଧାନେ ଥରେ ''ଚୈତନ୍ୟ ଚରିତାମୃତ'' ପଢ଼ନ୍ତୁ, ଥରେ କଲିକତା କଲେଜ ସ୍କୋୟାରଠାରେ ଈଶ୍ୱର ଚନ୍ଦ୍ରଙ୍କ ପ୍ରତିମୂର୍ତ୍ତି ଦେଖିଆସନ୍ତୁ, ଥରେ ଶିବନାଥଙ୍କ ଆତ୍ମ-ଚରିତ ପାଠକରନ୍ତୁ। ଆଖି ଫେଡ଼ି ଦେଖିବାକୁ ତୁମ ପୂର୍ବପୁରୁଷ କିଏ ? ତୁମେ କାହା ପୁଅଝିଅ ? ଦୁର୍ଭାଗ୍ୟ କ୍ରମେ ତୁମର ଲିପିଭେଦ ଘଟିଛି ବୋଲି ଏକାବେଳକେ ଅତୀତଟା ଭୁଲିଯାଅ ନାହିଁ, ଭାଇ ! ଯେତେବେଳେ ସାରା ଭାରତଟା ମୋଗଲ କବଳରେ ପଡ଼ି କଲବଲ, ସେତେବେଳେ ଗଜପତିଙ୍କ ଛତ୍ରଛାୟା ତଳେ କେଡ଼େ ସୁଖରେ ଥିଲ, ସେ କଥା ଥରେ ମନେପକାଅ। ସାରା ପୂର୍ବବଙ୍ଗଟା ପଠାଣ ହେଲା। ତୁମେ ଏପରି କି ବଳୁଆ ଯେ, ପଠାଣ ଦାଉରୁ ବଞ୍ଚିଗଲ ? ସେ ଓଡ଼ପାଇକଙ୍କର ଖଣ୍ଡା ଶରଯୋଗୁଁ, କାକଞ୍ଚୀ ଦଳୁଆଙ୍କ ବର୍ଚ୍ଛା ସାବଳୀଯୋଗୁଁ। ଆଜି ସୁଦ୍ଧା ପୂର୍ବବଙ୍ଗୀ, ପଶ୍ଚିମବଂଗୀ ଦୁଇ ଭିନ୍ନ ଜାତି, ଭିନ୍ନ ଭାଷାଭାଷୀ - ତାଙ୍କ ମଧ୍ୟରେ ବୈବାହିକ ସମ୍ବନ୍ଧ ବ୍ରାହ୍ମସମାଜର ଆଖିଫିଟା କଲ୍ୟାଣ ଛଡ଼ା ଅଧିକ କିଛି ହୋଇନାହିଁ।

ବଙ୍ଗରାଜା ଲକ୍ଷ୍ମଣ ସେନ ପଠାଣ ଦାଉରୁ ପଳାଇ ଆସି କାହିଁ ଆଉ କେଉଁ ରଜାଘରକୁ ଗଲେ ନାହିଁ - ସିଧା ଆସିଲେ ଗଜପତି ଘରକୁ। ଚୈତନ୍ୟଙ୍କୁ ''ସୋନାର ବାଂଲା'ରେ ଧର୍ମପ୍ରଚାରପାଇଁ ଭୂଇଁ ମିଳିଲା ନାହିଁ, ସେ ଚାଲି ଅଇଲେ ଆମ ଚୁଟିମୁଣ୍ଡିଆଙ୍କ ଦେଶ ପୁରୀକି ! ଶେଷରେ ''ସୋନାର ବାଂଲା'' ଦେଶ ଛାଡ଼ି ମହୋଦଧିରେ ଝାସଦେଲେ - ଉତ୍କଳରେ ପିଣ୍ଡପାତ କରିଗଲେ - ନିଜ ଜନ୍ମଭୂମିରେ ମଲେ।

ଅତଏବ ଭାଇ, କଳିଗୋଳ ଛାଡ଼ି ଆପଣା ଜାତି ଜଣ ସ୍ୱୀକାର କରିନିଅ। ତୁମେ, ଆମ ଭିନ୍ନ ନୋହୁ। ଏକାବେଳକେ ଏକା ରକ୍ତ, ଏକ ଗୋଷ୍ଠୀ - ପଠାଣଙ୍କ କଲ୍ୟାଣରେ ତୁମେ ଆମଠୁ ଭାଙ୍ଗିତୁଟି ଯାଇଚ। ଆଉ ତାଙ୍କରି ଦାଉରେ ତୁମର ଦେଶ ଗଲା, ଇତିହାସ ଗଲା, ପୂର୍ବ ସାହିତ୍ୟ ଗଲା।

ଗଲାଣି ତ ଗଲା କଥାରେ ସଙ୍ଗାତ ! ବଡ଼ ଗଛଟା ଭାଂଗିପଡ଼ିଛି। କେତେ ଚଢ଼େଇଙ୍କର ବସା ସେଥିରେ ଥିଲା, କେତେ ଲୋକଙ୍କୁ ସେ ଆହାର ଦେଉଥିଲା, କେତେ ଲୋକ ତା ଛାଇତଳେ ବିଶ୍ରାମ କରୁଥିଲେ। ସେ ବୁଢ଼ା ପୁରୁଣା ଗଛଟା ସିନା ଭାଙ୍ଗିଗଲା, ଗଣ୍ଡିଟା ତ ଅଛି। ନୂଆ ପଲ୍ଲବ କଣ କଅଁଳିବ ନାହିଁ? ନୂଆ ଡାଳ ପତ୍ର କଣ ସେଇଥିରେ ଦେଖାଦେବ ନାହିଁ? ଏଡ଼େବଡ଼ ଜାତି, ତାର ଏଡ଼େ ବଡ଼ ଅତୀତ ! ବର୍ତ୍ତମାନ ଦୁର୍ବଳ ଥିଲେ ସୁଦ୍ଧା ତାର ଭବିଷ୍ୟତ ଉଜ୍ଜ୍ୱଳ। ସେଥିପାଇଁ -

''ହେବୁ କି ବଞ୍ଚିତ ବିଶାଳ ଅତୀତ<br>
କିରଣ କିଞ୍ଚିତ ଦେବତା ବାଞ୍ଛିତ ?<br>
ତୋ ବିପତ୍ତି ରାତି - ପାହାନ୍ତି ହେଲାଣି<br>
ନ୍ୟୂନେ ନ ଚାହୁଁ ତୁ ମୌନମାରି।''

ଦେଶମିଶ୍ରଣ ଆମର ହକ୍ ଦାବୀ। ଆମକୁ ସେଥିରୁ ବଞ୍ଚିତ କରିଥିବା ଯାକେ ଭାରତ ବର୍ଷର ଯେ କଲ୍ୟାଣ ହେବ, ଯା କେବେ ସମ୍ଭବ ନୁହେଁ। ଗୋଟିଏ ଜାତିକୁ ହୀନ, ବଞ୍ଚିତ କରି ରଖିଲେ ତାର ଆଖପାଖ ଅନ୍ୟାନ୍ୟ ଜାତିମାନଙ୍କର ସୁଦ୍ଧା ଅମଙ୍ଗଳ ହୁଏ - ଏ ତ ଐତିହାସିକ ସତ୍ୟ। ଦେହର କାଣି ଆଙ୍ଗୁଠିଟି ବଥେଇଲେ, ସାରା ଦେହକୁ ବାଧିବ ନାହିଁକି ? ଭାରତ ଯଦି ମହାଜାତୀୟତାର ଦାବୀକରେ; ତା ହେଲେ ବଙ୍ଗାଳୀ, ବିହାରୀ, ତେଲେଙ୍ଗୀଙ୍କର ଉତ୍କଳ ସହିତ ବର୍ତ୍ତମାନ ଯେ ବ୍ୟବହାର, ସେହିଟା ଉଚିତ୍ କି ? ପରଧନ ଛଡ଼େଇ ବଡ଼ଲୋକ ହେବାଭଳି ଆଶା କରିବା ଦୁରଶା ମାତ୍ର, ଅଳିକ ସ୍ୱପ୍ନ ମାତ୍ର। ''ପର ଦରବରେ ନହର ପହର - ଛଡ଼େଇ ନେଲେ ଲାଜରେ ମର।'' ଯଦି ଭାରତର ମଙ୍ଗଳ ଚାହଁ, ଏକ ମହାଜାତୀୟତା ସୂତ୍ରରେ ପରସ୍ପର ବାନ୍ଧିହେବାକୁ ଚାହଁ, ତା' ହେଲେ ନିଜ ଭାଇର ହକ୍ ମାଡ଼ିବସି, ଆଖିବୁଜି ତା ତଣ୍ଟି ଚିପ ନାହିଁ। ମୁଁ କହେ, ଯାଦ୍ୱାରା ଭାରତରେ ଜାତୀୟ ସଦ୍ଭାବ ସଂପ୍ରୀତି ବଢ଼ିବାରେ ବଡ଼ ବାଧାପଡ଼ିବ। ବାସ୍ତବରେ ଭାରତରେ ଭାଇ ଉଗାରି ବେଭାରଟା ଏଡ଼େ ପ୍ରବଳ ଯେ, ତା ଆଗରେ ଆଉ କିଛି ତାଙ୍କୁ ଦିଶୁନାହିଁ। ପଛକେ ନିଜର ସର୍ବନାଶ ହେଉ, ଘର ପଛେ ପୋଡୁ, ମୂଷା କେଞ୍ଚେ ପାଉ, ଘଇତା ପଛକେ ମରୁ, ସଉତୁଣୀ ରାଣ୍ଡ ହେଉ, ଏଇ ନୀତିରେ ଭାରତ ଚାଲିତ। କେତେ ଦିନ ଚାଲିବ ତା ବିଧାତାଙ୍କୁ ଜଣା, ନୋହିଲେ ଏଡ଼େ ବଡ଼ ହିନ୍ଦୁଜାତି, ଜଗତରେ ଏତେ ଲୋକହସା ହୁଅନ୍ତା ନାହିଁ।

ଏବେତ ଆମ କରମକୁ କରମଙ୍ଗା ଫଳୁଛି। ଆମେ ଜାତି ହିସାବରେ ଭାରତରେ ହୀନ ହୋଇ ରହିଚୁ। ଆମର ଶିକ୍ଷା, ସଭ୍ୟତା, ସାହିତ୍ୟ ସବୁ ଭାରତର ଅନ୍ୟାନ୍ୟ ଜାତିଙ୍କ ପଛରେ ପଡ଼ିରହିଲା। ଆମେ ଓଡ଼ିଆ ବୋଲି ପରିଚୟ ଦେଲାବେଳକୁ, ଆମ ପାଟି ଖନି ବାଜିଯାଉଛି, ଆମେ ଚୋରିକଲାଲୋକ ଭଳି ଲାଜରେ ପଛଘୁଞ୍ଚା ଦେଉଚୁ, କାହିଁକି ? ଅସଲ ଆମର ହାତଗୋଡ଼ ଭାଂଗିଯାଇଛି। ଆମ ଦେହଯାକ ଖଣ୍ଡିଆ। ଆମେ ଗଣ୍ଡିମୁଣ୍ଡକଟା ମାଦଳ ଭଳି ପଡ଼ିଛୁ। ଆମ ନିଜ ରାଇଜଗୁଡ଼ା ପରମାନେ ଗୋଡ଼ତଳେ ମାଡ଼ିବସି, ଆମ ଦୁଆରେ ଟାପରାକରି ବୁଲୁଛନ୍ତି। ଅତୀତ ଇତିହାସର ପେଡ଼ିଟିଏ ଫିଟେଇ ବସିଲ ଭଲା, ଦେଖିବ, ସେଥିରେ କି ମାଲମାନ ଥୁଆହୋଇଚି ! ଭାଇ ଓଡ଼ିଆ, ତୁମ ପାଟି ତୁଣ୍ଡରେ ଯଦି ସଚ୍ଚା ମନ ଥାନ୍ତା, ତୁମର କଲିଜା ଭିତରେ ଯଦି ଭାଇପ୍ରତି ସୋଦର ମମତାର ଟାଣଥାଆନ୍ତା, ତାହାହେଲେ ଆଜି ଦେଶ ମିଶ୍ରଣ ତୁମ ହାତମୁଠା ଭିତରେ। ତୁମେ ନିଜେ ନ କଲେ କିଏ କରିବ ? କଥାରେ କହନ୍ତି, ''ଆପେ ନ ମଲେ ସ୍ୱର୍ଗ ନ ଯାଏ।'' ବଙ୍ଗାଳୀମାନେ ସ୍ୱଦେଶୀ ଆନ୍ଦୋଳନ କରି ଦିନ କେଇଟା ଭିତରେ କଟାଅଙ୍ଗ ଯୋଡ଼େଇନେଲେ; କିନ୍ତୁ ବଙ୍ଗଭଙ୍ଗ ଯେ ହୋଇଥିଲା, ସେଇଟି ଥିଲା ଏକ ପ୍ରକାର ଠିକ୍। ସତରେ ତ ପୂର୍ବବଙ୍ଗୀ, ପଶ୍ଚିମବଙ୍ଗୀ ଦି'ଟା ଭିନ୍ନ ଜାତି - ଜଣେ ''ବାଙ୍ଗାଲ'' ଦେଶର ପ୍ରକୃତ ବଙ୍ଗାଲ, ଆଉ ଆରଟି ମୁକୁନ୍ଦ ଦେବଙ୍କ ପ୍ରଜାଗୁଡ଼ିକ 'ଓଡ଼ିଆ' ଓ ଓଡ଼ିଆଏ ପାଲିଟିଲେ ''ବଙ୍ଗାଳୀ''। ପୁଣି ସେହିମାନେ କଳି କରୁଛନ୍ତି, ଆମର ଯାହା ବାକିସାକି ଅଛନ୍ତି, ତାଙ୍କୁ କେମିତି ଆମ ସାଂଗରେ ମିଶିବାକୁ ନ ଦେବେ। ଆମ

ମେଦିନପୁର, ଆମ ଧଳଭୂଇଁ, ମାନଭୂଇଁ, ସିଂହଭୂଇଁର ଆମର ନିଜ ରକ୍ତର ସୋଦରଙ୍କୁ ଆମଠୁ କାଟିନେବାକୁ କେଡ଼େ ସାହସ ଦେଖ। ଏଣେ ଆନ୍ଧ୍ର ପଞ୍ଝାଏ ଲାଗିଛନ୍ତି, କଳିଙ୍ଗ କମଳର କେଶର ଗଞ୍ଜାମଟାକୁ ଗିଳି ଦେବାକୁ - ଉତ୍କଳ କପାଳର ଟୀକା; ''ଚିକ୍‌କିଲି'', ଉତ୍କଳମଣ୍ଡନ ''ପାରଳାଖେମୁଣ୍ଡି'', ଉତ୍କଳର ବିଜୟ ଗୌରବ ''ଜୟପୁର'' କୁ ଗ୍ରାସକରିବାକୁ ଆନ୍ଧ୍ର-ମାଉସୀ ଆଁକରି ଧାଇଁଛି। ବିହାରୀ ମଧ୍ୟ ପଡ଼ୋଶୀ ଓଡ଼ିଆଙ୍କ ଦେଶକୁ ଗିଳିନେବାର ଚେଷ୍ଟାରେ ତ୍ରୁଟିକରୁ ନାହିଁ। ନିଟାଣୁଆ ଓଡ଼ିଆ ପୁଅ, ଏଇ ତୋର କ'ଣ କପାଳ ଲେଖନ? ମଖନ ଖଣ୍ଡ ଧରି ଦି' ବିରାଡ଼ି ଛଡ଼ାକାମୁଡ଼ା କଲାଭଳି, ମୋତେ ସମସ୍ତେ ରାମ୍ପି ବିଦାରି ସତ୍ୟାନାଶ କରୁଥିବେ, ତୁ ସୁନାପୁଅଟି ଭଳି ଥିରିକିନି ସବୁ ବିଧା ଗୋଇଠା ସହୁଥିବୁ।!

ମୁଁ ପରା ଏଇଥର ଓଡ଼ିଶା ଯାଇ ଦେଖିଲି - ସାନ ଓଡ଼ିଶାର ପ୍ରଧାନ ତିନୋଟି ଜିଲ୍ଲାର ବଡ଼ ବଡ଼ ତିନୋଟି ସହର- ଧଳା ସମୁଦ୍ର କୂଳରେ ବାଲେଶ୍ୱର; ନୀଳ ସମୁଦ୍ର କୂଳରେ ପୁରୀ; ମହାନଦୀ, କାଠଯୋଡ଼ିର ହୃଦୟପଟଳ କଟକ। ସବୁ ଆଡ଼େ ଦେଖିଲି ମାର୍କାମରା ଦି'ଟା କଥା, ପରସ୍ପର ବିପରୀତ ଦୁଇଟା ଭାବ, ଏକ ଖଦଡ଼ଧାରୀ କଂଗ୍ରେସଙ୍କ ଭିତରେ ଜୀବନର ସ୍ପନ୍ଦନ, ଆଉ ନିସ୍ତେଜ ଜନସାଧାରଣ। ଓଡ଼ିଶାପାଇଁ ଆଶା ଅଛି, ଓଡ଼ିଶାର ଭବିଷ୍ୟତ ଅଛି, ଜଣାଇ ଦେଉଥିଲା ସେ ମୁଷ୍ଟିମେୟ ମୋଟା ଲୁଗାପିନ୍ଧାଙ୍କ ଦରିଦ୍ର- ସଂହତି - ସେହି ଭଙ୍ଗା ଆଶ୍ରମ କୁଡ଼ିଆଟିମାନଙ୍କରେ ଥିବା ଋଷିପ୍ରତିମ ଯୋଗୀ ମୂର୍ତ୍ତିଟିମାନ। ଆଉ ଏ ପାଖରେ ସାଧାରଣ ଓଡ଼ିଆ-ଚାଲିଚି, ତାର ଖିଆଲ ନାହିଁ, ଦେଶର କେଉଁ ପାଣି କୁଆଡ଼ିକି ଯାଉଚି, ଦେଶରେ କି ପବନ ବହୁଚି, ସେ ଚାଲିଚି ତାର ବଟୁଆ କାଖେଇ, ଚୁଟି ସମ୍ଭାଳି, ଗାମୁଛା ଢାଙ୍କି। ତାରି ସେହି କୁଡ଼ିଆ ଭିତରେ ସୁଖଦୁଃଖ, ତାରି ଗାଁଗଣ୍ଡାର ହାଲ ହକିକତ୍, ତାର ପୋଖରୀ ତୁଠ ନଈକୂଳରେ ମାଲିମାମଲା, ତାର ବିଲବାଡ଼ିର ରୁଆ ବେଉଷଣ ନେଇ। ବାହାର ଜଗତ କଥା ସେ କଣ ଜାଣେ, ଜାଣିବାକୁ ତାର ବେଳ ନାହିଁ ବା ଗରଜ ନାହିଁ।

ମୁଁ ପଚାରେ- ଭାଇ ଚଷା, ତୁମେ ନ ହେଲେ ଆମେ ହେବୁଚି? ତୁମେ ନ ଥିଲେ ଆମେ ଥିବୁଚି? ତୁମେ ଆଜି ଆମକୁ ବଡ଼ କଲେ, ଆମେ ବଡ଼ ହେବୁ। ତୁମେ ଅନ୍ନପାଣି ଦେଇ ଦେଶକୁ ପାଳୁଚ, ଝାଳନାଳ ହୋଇ ଲଙ୍ଗଳବହି ଦେଶମାଟି କାଟି ମାଲକ୍ଷ୍ମୀ ଅନ୍ନପୂର୍ଣ୍ଣାର ଉଦ୍ଧାର ନ କଲେ, ଆମେ ତ ପେଟରେ ଓଦାକନା ଦେଇ ବସନ୍ତୁ। ଭାଇ ମୂଲିଆ, ତୁମ ପରିଶ୍ରମରେ ସିନା ଆମେ ଏ କୋଠାଘର, ଏ ବିଜୁଳିବତୀ, ଏ ମୋଟରକାର, ଏ ସାତ ସଉଖିନୀ ଦେଖୁଚୁଁ। ତୁମେ ନ ଥିଲେ ଆମେ କି କଡ଼ାରେ ଗଣ୍ଡାଏ! ଗଣ୍ଡାଏ ପୁଞ୍ଜାଏ ବାବୁ ଭୟାଙ୍କର ଦେଶ? ଦେଶ ତ ତୁମକୁ ନେଇ। ଆମେ ଧୋବାଧାଉଳିଆ ଦେଶର ଗୋରାଚମ ହେଲେ ସୁଦ୍ଧା, ତୁମେ ତ ଅସଲ ପଞ୍ଜରା କାଠି; ତୁମେ ଭାଙ୍ଗିଲେ ଆମେ ଅଖଞ୍ଜ- ଏକଥା ତୁମେ କେଉଁ ଦିନ ବୁଝିବ?

ଦେଶର ଦରିଦ୍ର ପ୍ରଜାକୁଳ! ତୁମେ କେଉଁ ଦିନ ଜାଗିବ, ତୁମେ କେଉଁଦିନ ଜାଣିବ, ଏ ଦେଶ, ଏ ଓଡ଼ିଶାଭୂଇଁ ତୁମର, ତୁମରି ରକ୍ତରେ ତତଲା ଏ ମାଟିର ତୁମେ ହିଁ ଅସଲ ମାଲିକ; କେବଳ ମାଲିକ ନୁହ, ମାଣିକ! ଆରେ ଭାଇମାନେ, ଆମ ଓଡ଼ିଶା ଗଲା। ସେ ଲକ୍ଷେ ରଜାର ମହୁଡ଼ମଣି ରାଇଜ, ସେ ଚକ୍ରନ୍ତି ବିଷ୍ଣୁର ଗାଦୀ, ସେ ସାକ୍ଷାତ୍ ଦିଅଁ ଜଗନ୍ନାଥଙ୍କ ଆସ୍ଥାନ, ସେ ପୁରୁଷୋତ୍ତମ, ଯଯାତିଙ୍କ ଧନୁଖେଳ, ପାରିଧି ଲୀଳାର ଭୂଇଁ ସରିଲା। କବିସୂର୍ଯ୍ୟ ଗାଉଛନ୍ତି - ''ଗଲାଣି ତ ଗଲା କଥା'ରେ ସଂଗାତ, ଗଲାଣି ତ ଗଲା କଥା।'' ଏଇ ଭାବରେ କଣ ତୁମେ ଗଲା କଥା ପାସୋରି ଗଲଣି? ତୁମ କଳିଙ୍ଗଭୂଇଁ, ତୁମ ବୀର କାହାଳୀ ବଜା ନାଚ, ଆରେ ପାଇକପୁଏ, ତୁମେ କଣ ଭୁଲିଗଲ? ତୁମକୁ କି କୁହୁକ ଅନ୍ଧ କରିଚି? ଆପଣା ବଡ଼ବଡ଼ିଆଙ୍କ କଥା ଭାବ ଭଲା! ଭାବ, ଚେତ, ମନରେ ହେଜ, କାହା ବଅଁଶ କଣ ହେଲାଣି। ଆଜି ଦାଣ୍ଡରେ ଭିକ ମୁଠାଏ ପାଇବା ଯୋଗ୍ୟ ରହିଲ ନାହିଁ। ତୁମ ହକ୍ ଅନ୍ୟ ଛଡ଼ାଇ ନେଉଚି। ପାଖାଳ ଗଣ୍ଡାକୁ ଲୁଣଟିକର ଭରସା ରହିଲା ନାହିଁ। ନିତି ରୋଗବ୍ୟାଧିରେ ସଡ଼ିଗଲାଣି। ବଢ଼ିପାଣି ବର୍ଷକୁ ବର୍ଷ ତୁମ ଗାଁଗଣ୍ଡା ଛାରଖାର କଲା, ତୁମେ ଏଡ଼ିକି ନିର୍ବଳ, ଏଡ଼ିକି ହାନକପାଳିଆ ଯେ, ଏ ଆଖିଲୁହ ସେ ଆଖିରେ ପୂରାଇ ଖାଲି ଆକାଶକୁ ଚାହିଁଥିବ!

ଏଥର ଓଡ଼ିଆ ଦେଶମିଶ୍ରଣପାଇଁ ପୁଣି କମିଟି ବସିଲାଣି। କେତେ କମିଟି, କେତେ କମିଶନ ତ ଫସର ଫାଟିଗଲାଣି, ଏ ପୁଣି କଣ କରିବେ ସେହି କାଠଙ୍କୁ(୧) ଜଣା। କେତେ ଡ଼ଫ, ଫିଲପ, କମିଶନ 'ଡେଫ' (କାଲ) ହୋଇଗଲେ - ଶେଷରେ ଡେଫକୁ ବାଘ ଖାଇଲା। କେତେ ସାଇମନ 'ଖାଇମନ' କରି ଦେଶର ଧନ ଦରବରେ ମଉଜ କରିଗଲେ, ଓଡ଼ିଶାର ଛିଡ଼ା ଅଂଗଟା ଦୃଢ଼ ହେବାକୁ ନାହିଁ। ଭାଇଏ! ଏସବୁ ମନ ଭୁଲାଣିଆ କମିଟି ଗିଲିଟିରେ ଭୁଲ ନାହିଁଟି - ନିଜ କରାମତି କଥା ଜଗତକୁ ଦେଖାଅ, ହାତ ଶଂଖାକୁ ଦର୍ପଣ କିଆଁ? ତୁମ ହକ ତୁମେ ନିଜେ ଖୋଜିନିଅ। ତୁମ ବିଛିନ୍ନ ଭାଇଙ୍କ ଭିତରେ ପ୍ରଚାରକର, ଦେଶ ପ୍ରେମ ଜଗାଅ, ଜାତୀୟତା ଉଦ୍‌ବୋଧନ କର, ସେ ମଡ଼ା'(୨)ଙ୍କୁ ତୁମ ଏକତା ଓ ଦୃଢ଼ତାରେ ମୃତସଞ୍ଜୀବନୀ ମନ୍ତ୍ରଦିଅ। ତୁମେ ନିଶ୍ଚେ ଜୟୀ ହେବ। ନ୍ୟାୟଯୁଦ୍ଧରେ ଭଗବାନ୍ ତୁମର ସହାୟ। ଦୁର୍ଯ୍ୟୋଧନ ଯେତେ ମାଡ଼ିବସୁ, ବିନା ଯୁଦ୍ଧରେ ସୂଚ୍ୟଗ୍ର-ପରିମିତ ଭୂଇଁ ନ ଦେଉ; ନ୍ୟାୟବାନ୍ ଯୁଧିଷ୍ଠିରଙ୍କର ଶେଷକୁ ଜୟହେବ, ଏ କଥା ଭାବି ହତାଶହୁଅ ନାହିଁ।

ଆହା, ସେ ଦିନ କେବେ ଆସିବ? ଆମ ବୃହତ୍ତର ଉତ୍କଳର ସ୍ୱପ୍ନ ସଫଳହେବ। ଆମ ବହୁ ଦୂରର ଭାଇକୁଟୁମ୍ବ ଏକାଠି ମିଶିବୁ, ପରଦେଶୀଙ୍କ କବଳରେ ପଡ଼ି ଯେ ନିତି ମଡ଼ାଚକଟା, ଗୋଡ଼ଦଳା ପୁରସ୍କାର ପାଉଛନ୍ତି। ବୀରେନ୍ଦ୍ର ଶାସମଲଙ୍କ ଭଳି ନା ଏ କୂଳ ହେଲେ, ନା ସେ କୂଳ ହେଲେ - ଚିତ୍ତରଂଜନ ଦାସ, ସେନଗୁପ୍ତ, ବଙ୍ଗର ଖାଡ଼ୀଶିରିପା ''ଲିଡ଼ରୀ'' ନେତାଗିରି ମାଗିନେଲେ - ଅନ୍ୟେଇ ରହିଲେ ଜଳକା। ହାୟ, ଅଲାଜୁକ! 'ଚୋର

(୧) ଜଗନ୍ନାଥ, (୨) ଶବ

ମା ଲାଗେ ନ କାନ୍ଦେ, କାନ୍ଦେ ତ କବାଟ କିଳି କାନ୍ଦେ' - ସେ ପୁଣି ଆପଣା ଜାତିଭାଇଙ୍କ ତଣ୍ଟି କାଟିବାକୁ କ୍ଷୁର ଘଷୁଛନ୍ତି।

ଫଳ କଥା - ଓଡ଼ିଆ! ଯେ କି ତୁମ ଭିତରେ ଦେଶପ୍ରେମୀ ଅଛ, ଯା ଦେହରେ କଳିଙ୍ଗ ରକ୍ତର ତାତି ଅଛି, ସେ ଯେଉଁ ପରିସ୍ଥିତିରେ ଥାଉନା କାହିଁକି, କଂଗ୍ରେସୀ ହେଉ, ବେକଂଗ୍ରେସୀ ହେଉ, ଖଦ୍ଦଡ଼ଧାରୀ ହେଉ କି ବିଲାତି ଭକ୍ତ ହେଉ, ସେ ମୂଲିଆ ମଜୁରିଆ ହେଉ କି ବାବୁଭୟା ସରକାରୀ ଚାକିରିଆ ହେଉ, ତାର ଉଚିତ୍ ଦେଶମିଶ୍ରଣ ମହାସମସ୍ୟାରେ ମନେ ପ୍ରାଣେ ଯୋଗ ଦେବା। ଏଇଟା ଆମ ଜୀବନମରଣ ସମସ୍ୟା। ଆମ ମାନଅପମାନ ସବୁ ଏଇଥିଲେ - ଏଇଟା ଆମ ଜାତିର Vital Problem, ଜୀବନ ଗଣ୍ଠି। ଖାଲି ଭାବିଲେ, ଖାଲି ଆଶାକରି ବସିଲେ, କି ଖବରକାଗଜରେ ପଦେଅଧେ ଲେଖିଦେଲେ ଦେଶ ମିଶ୍ରଣ ହେବ ନାହିଁ, ଜାତିର ଜୋର ହେବ ନାହିଁ। ଆମର ମୁହଁଟାଣ, ଦେହଟାଣ, ମନଟାଣ, କଲିଜାଟାଣ, ସବୁ ଟାଣହେବା ଦରକାର। ଟାଣ ଖୁପୁରକି ସଭିଙ୍କର ଡର; ନିଟାଣୁଆକୁ' କିଏ ପଚାରେ ?

ତୁମେ ଉଠ ଓଡ଼ିଶାର ପ୍ରଜାକୁଳ, ତୁମେ ଦରିଦ୍ର ହୁଅ, ମୂର୍ଖ ହୁଅ, ଚିରାକନା ଧଡ଼ି ସମ୍ବଳ ହୁଏ- ତୁମେ ଏକହୋଇ ଏକ ମନପ୍ରାଣରେ ଠିଆହୁଅ। ତୁମର ଏ ପଞ୍ଜରା କାଠିରେ ଭାଗବାନ ନୂଆ ବଳ ଦେବେ, ତୁମେ ପୁଣି ଫେରିପାଇବ ତୁମର ସେହି ସୁନାକିଆରି କଳିଙ୍ଗ ରାଇଜ - ହିମାଳୟର ପାଦମୂଳୁ ଦରିଆ ସେପାରି ପର୍ଯ୍ୟନ୍ତ ତୁମର ସେ ବିରାଟ କଳିଙ୍ଗ ରାଷ୍ଟ୍ର ତୁମକୁ ଘେନି ଧନ୍ୟହେଉ।

''କି ବୋଲି ଡାକିବି ମାଗୋ,
କୋଟି କଙ୍କାଳ-ମାଳିନୀ !
ଦଳିତା, ଲାଞ୍ଛିତା, ଭୀତା, ଜଗତର ଜଞ୍ଜାଳିନୀ।
ଜରେ ଜର ଜର ତନୁ
ଶିରୀ ସରିଛି ବଦନୁ
ସାହସ ହଜିଛି ମନୁ, କଳିଙ୍ଗ ତୁ କାଙ୍ଗାଳିନୀ। (୧)
ବରଷେ ବରଷେ ବଢ଼ି,
ପାଣିରେ ଗଲୁଣି ସଢ଼ି
ଦେହେ ଚିରାକନା ଧଡ଼ି, ପେଟ ଭୋକେ ପାଗଳିନୀ। (୨)
ସନ୍ତାନଯାକ ତୋହରି
ଘରର ଅସଲ ଅରି
ସ୍ୱଭାବେ ଶୃଗାଳ ସରି, ଗୁଣରେ ସେ କୁଣ୍ଡଳିନୀ। (୩)

---

(୧) ଦୁର୍ବଳ।

ଭଙ୍ଗା ତୋର ବାରବାଟୀ
ଚୁନିଛି କୋଣାର୍କ ମାଟି
ରୁକ୍ଷ ବକ୍ଷ ପଡ଼େ ଫାଟି, କାନ୍ତିହୀନା କରାଳିନୀ। (୪)
ଚୋର ବିଦେଶୀ ଗାଲୁଆ
ବହି ନେଲେ ହୀରା ଲୁହା
ଶୂନ୍ୟ ତୋ ସୁନା ଫଗୁଆ, ଭିକ୍ଷାଥାଳୀ-ସମ୍ବଳିନୀ। (୫)
ଘର ଚିଜ ନେଲେ ବହି
ନିଜର ସେ ହେଲେ କହି
ପର ପଦାଘାତ ସହି, ପାଷାଣ ତୁ ରସାଳିନୀ। (୬)

କଳିଙ୍ଗ କାଙ୍ଗାଳ! ଉଠ କମିତ! ଉଠ ଦୁର୍ବଳ! ତୁମର କଙ୍କାଳମାଳିନୀ ମା'ର ଆହ୍ୱାନରେ ତାର ଅମୃତମୟ କୋଳରେ ଏକାଠି ହୁଅ, ମା କୋଳରେ ତୁମର ଅଭାବ କଣ? ଏକାଠି ରହିବା ସୁଖଠୁ ଆଉ କଣ ଅଧିକ କଥା? କିଏ ଚିତ୍କାର କରୁଚି, ଆରେ ବାବୁ, ଏକାଠି ଏକ ଶାସନରେ ରହିଲେ ଟଙ୍କା ଅଣ୍ଟିବ ନାହିଁ। କିଏ କହୁଚି, ଆମ ମେଦିନୀପୁରିଆଙ୍କୁ କଲିକତା ସୁବିଧା। ହାୟ! ହାୟ! ଏ କଣ ସବୁ ବିପଦବେଳେ ବିପରୀତ ବୁଦ୍ଧି ଭଳି ନୁହେଁ? ଏକାଠି ମିଶିଲେ ଜାତିର ଶକ୍ତିଟା କେତେ ବଡ଼ ହେବ, ଜାତିର ଜାଗରଣ କେତେ ମହାନ୍ ହେବ, ତାର ଶ୍ରୀ ସୁଖ ସଂପଦ ସାହିତ୍ୟ ସବୁ ଚେଙ୍କଁଉଠିବ। ଆରେ ମୂର୍ଖ, ସ୍ୱଜାତିର ତଣ୍ଟିକଟା, ବାପ ଅଜାର ନାଁ ବୁଡ଼ାଗୁଡ଼ା, ଥରେ ଭାବ ତୁମ ଭବିଷ୍ୟତ ସନ୍ତାନମାନଙ୍କର, ତୁମ ମୂର୍ଖତାରେ କଣ ଗତି ହେବ। କାକ ମୟୂରପୁଚ୍ଛଧାରୀ ହେଲେ ସୁଦ୍ଧା ମୟୂର ଦଳରେ ତାର ସ୍ଥାନ ନାହିଁ। ବେଳହୁଁ ସାବଧାନ ହୁଅ। ତୁମେ ,କାଠି ବଜ୍ରଗଣ୍ଠିରେ ବନ୍ଧା ହେଲେ କୌଣସି ଅସୁବିଧା - କି ଦେଶଗତ, କି ଶାସନଗତ, କିଛି ରହିବ ନାହିଁ। ତୁମ ଜାତିର ପିଲାଏ ଦୁନିଆ ଦାଣ୍ଡରେ ମୁଣ୍ଡଟେକି ବାଟଚାଲିବେ। ଏ ସୁବର୍ଣ୍ଣଯୋଗ ଛାଡ଼ିଲେ ଚିରଦିନପାଇଁ ପଙ୍ଗୁ ହୋଇ, ନିର୍ବଳ ହୋଇ ପଡ଼ିଥିବ।

ଏଣେ କଂଗ୍ରେସ, ତେଣେ ଦେଶ ମିଶ୍ରଣ! ମହାପ୍ରଭୁ! ଏ ମହାସନ୍ଧି ସମୟରେ ତୁମର କୃପାକଣା ଭଣା ନ ହେଉ। ତୁମେ ଏ କଳିଙ୍ଗ ଜାତିର ମାନମହତର ବାନା ଟେକିଧର। ନୋହିଲେ ଚୂନାକରି ଏକାବେଳେକେ ମହୋଦଧିରେ ବୁଡ଼ାଇଦିଅ କି, ତୁମେ ନ ଥାଅ, କି ଆମେ ବି ନ ରହିବୁ, ସାଗର ଗର୍ଭରେ ସବୁ ଏକାକାର ହେବୁ!

ନୀଳଚକ୍ରଧାରି! ଚକ୍ର ଧରି ଉଦ୍ଧାରକର ବା ନାଶକର - ଦରମରା କରି କଲବଲ ଛଟପଟ ହେବା କ୍ଲେଶ ଆଉ ତୁମ କଳାଡ଼ୋଳାରେ ନ ଦେଖ - ଏତିକି ଶ୍ରୀ ଛାମୁରେ ଗୁହାରି!



# ଦିଲ୍ଲୀ ଚିଠି (୬)

## (ମେଦିନପୁର ମିଶ୍ରଣ)

ସଂପାଦକ ମହାଶୟ, ସାଦର ନମସ୍ତେ -

ବହୁଦିନ ରୋଗ ପରେ ମଧ ଭଗବାନଙ୍କ କୃପାରୁ ଭାରତୀ-ତପୋବନର ଏ ଭଙ୍ଗା ବୀଣାଖଣ୍ଡିକ ପୁଣି ବାଜିଉଠିବାକୁ ବଳପାଇଲା ପରା! ସେଥିପାଇଁ ସଂପାଦକ ଓ ପାଠକ; ସମସ୍ତଙ୍କର ଶୁଭକାମନାକୁ ଧନ୍ୟବାଦ। ବୀଣା ଭଙ୍ଗା, ବେସୁରା, ତଥାପି ସେଥିରେ ଗୋଟିଏ ରାଗିଣୀ ଆଜି ସୁଦ୍ଧା ବାଜୁଛି। ବୋଧହୁଏ ଚିରଦିନ ବାଜୁଥିବ, ସେହିଟା ଦେଶପ୍ରେମର ଦୀପକ! ଏ ଦୀପକ ଦିନେ ଯମୁନା କୂଳରେ, ଦିଲ୍ଲୀ, ଆଗ୍ରାରେ, ମୋଗଲ ରାଜ-ପ୍ରାସାଦରେ "ଦିଲ୍ଲୀଶ୍ୱରେବା ଜଗଦୀଶ୍ୱରେବା"ଙ୍କ ସମ୍ମୁଖରେ, ଓଡ଼ିଆ ମହାପାତ୍ର ସଂଗୀତଜ୍ଞ-ଅମର ତାନସେନେର ଅମିୟ କଣ୍ଠରୁ ଝଙ୍କୃତ ହୋଇଥିଲା - ତା'ପରେ ସେହି ଦୀପକ ତାନସେନ୍‌କୁ ଭସ୍ମ କରିଥିଲା - ଆଉ ତା' ପରେ ନୀରବ, ଓଡ଼ିଆଜାତି ନୀରବ। ଆଜି ପୁଣି ବାଜୁଚି, ଶତ ଶତାବ୍ଦୀ ପରେ ପୁଣି ବାଜୁଚି। ଓଡ଼ିଆ ପ୍ରାଣରେ ଦେଶପ୍ରେମର ରାଗିଣୀ! କଣ ଓଡ଼ିଆ ଜାତିଟା ଚିରଦିନ ତଳେ ପଡ଼ିଥିବ, କଣ ଚିରହୃତସର୍ବସ୍ୱ ପରଗୋଡ଼ର ଦଳାଚକଟା, ଗୋଇଠା ଖାଇ ପଡ଼ିଥିବ? ନା, ନା, ଜାଗରଣର ଟିକେ ଲକ୍ଷଣ ତ ଦେଖାଗଲାଣି, ଓଡ଼ିଆ ଜାଗିଲାଣି, ତା' ଶିରାସ୍ନାୟୁରେ ଟିକେ ବଳ ଆସିଲାଣି। ଭାରତୀୟ ହିନ୍ଦୁ ସମ୍ରାଟର ଜାତି ସେ, ଯଦ୍ୟପି କିଛି କାଳପାଇଁ ତଳେ ପଡ଼ିଥିଲା, ସେ ପୁଣି ଜାଗିଚି।

ଜାଣ ଓଡ଼ିଶାର ଇତିହାସ? ଓଡ଼ିଶାର ଇତିହାସର ଅର୍ଥ, ଭାରତର ଇତିହାସ - ଭାରତର ହିନ୍ଦୁଜାତିର ଇତିହାସ। ପିଲାମାନେ! ତୁମ୍ଭେମାନେ ସ୍କୁଲରେ ଯାହା ପଢ଼, ତା' ଭାରତର ପଠାଣ ରାଜାଙ୍କ ଇତିହାସ, ତା କୁତବୁଦ୍ଦିନଠାରୁ ଆଉରଙ୍ଗଜେବର ଘୃଣାସ୍ପଦ ହିନ୍ଦୁ ଦଳନର ଇତିହାସ - ସେଇଟା ଗୋଲାମର ଇତିହାସ, ସେଥିରେ ଦାସ ହିନ୍ଦୁଜାତିର ଚିତ୍ର ହିଁ ଅଛି, ସେଥିରେ ବି ବିଦ୍ରୋହ ପ୍ରତାପ - ବୀର ଶିବାଜୀ - ଅଗ୍ନିମୟ ଗୁରୁଗୋବିନ୍ଦ ସିଂହ ଅଛନ୍ତି; କିନ୍ତୁ ସେମାନେ କିଏ? ସେମାନେ ପ୍ରବଳ ପ୍ରତିଦ୍ୱନ୍ଦୀ - ହିନ୍ଦୁର ସର୍ବସ୍ୱ ଲୁଣ୍ଠନକାରୀ ଧର୍ମାନ୍ଧ ମୁସଲମାନର ପ୍ରବଳ ପ୍ରତିଦ୍ୱନ୍ଦ୍ୱୀ ମାତ୍ର। ସେମାନେହିଁ କେବଳ ଭାରତର ସମଗ୍ର ହିନ୍ଦୁଜାତିର ପ୍ରତିଭୂ ନୁହନ୍ତି। ସମଗ୍ର ଭାରତ ପରାଧୀନ, ଦାସ, ଗୁଲାମ ବିକ୍ରିତ ଭାବରେ ଯେ କୁତବୁଦ୍ଦିନ ଅମଳରୁ ଚିତ୍ରହୋଇଚି, ସେହିଟା ମିଛ, ଘୋର ମିଛ। ଭାରତ ମହାଦେଶର ସମଗ୍ର ହିନ୍ଦୁଜାତି ସର୍ବଦା ଭୀତ, ଥର ଥର କମ୍ପିତ, ପଠାଣଙ୍କ ଗୋଡ଼ତଳେ ସଲାମ କରୁଥିବାର ଯେ ଚିତ୍ର ସେଇଟା ମିଛ, ସେଇଟା ମୁସଲମାନୀ କାରସାଦୀ, ମୁସଲମାନୀ ଇତିହାସ।

ସାରା ହିନ୍ଦୁଜାତି ବ୍ରିଟିଶ ଆଗମନ ପୂର୍ବରୁ କଦାପି ପରାଧୀନ ହୋଇ ନଥିଲେ। ଉତ୍କଳ ଭାରତରେ ଯେତେବେଳେ ଶାହାଜାହାନ୍, ଆକବର ବାଦ୍‌ଶାହା, ଦକ୍ଷିଣ ଭାରତରେ ସେତେବେଳେ ହିନ୍ଦୁଜାତିର, ଲକ୍ଷେ ହିନ୍ଦୁରାଜାର ମଉଡ଼ମଣି ଗଜପତି ମୁକୁନ୍ଦଦେବ

ରାଜଚକ୍ରବର୍ତ୍ତୀ! କିଏ କହେ ହିନ୍ଦୁର ସ୍ୱତନ୍ତ୍ର ଇତିହାସ ନାହିଁ। ହିନ୍ଦୁର ସାମ୍ରାଜ୍ୟ ଲଙ୍କା (ସିଲୋନ), ଜାଭା, ବର୍ମ୍ମା, ମାଳୟ ପର୍ଯ୍ୟନ୍ତ ଯେ ଥିଲା, ପ୍ରଶାନ୍ତ ସାଗରର ଯେ ଅଧୀଶ୍ୱର, ସେ ହିନ୍ଦୁ ଜାତି, ସେହି ବୀର ଓଡ଼ିଆର ସଂଚା ଇତିହାସ ଆଜି ସୁଦ୍ଧା ପୂରାଭାବେ ସଂଗୃହୀତ ହୋଇନାହିଁ। ଲେଖାହେବା ତ ଦୂରର କଥା, ସେଥିପାଇଁ ଓଡ଼ିଆ ଜାତି ବ୍ରିଟିଶ ଆସିଲା ମାତ୍ରେ, ତା' ମୁଣ୍ଡରେ ଏଡ଼େ ଚଡ଼କ ପଡ଼ିଲା। ପଠାଣ ଥିଲେ ରାଜା, ସେହିଯୋଗୁଁ ସେମାନେ ଆଜି ଭିକମଗା, ଯେଉଁ ମୋଗଲ ବାଦ୍‌ଶାହାର ଲାଲକିଲ୍ଲାର ଅପୂର୍ବ ପଦାର୍ଥ, ଗଠନ ଚାତୁରୀ ''ଯଦି ସ୍ୱର୍ଗ କେଉଁଠି ଥାଏ, ତ ସେ ଏଠାରେ'', ଦେଖିବାକୁ ପୃଥିବୀର ଲୋକେ ଭାଙ୍ଗିପଡୁଛନ୍ତି, ସେହି ବାଦ୍‌ଶାହା ବଂଶଧର, ସାହୀ ଅଉଲାଦ ଆଜି ଦିଲ୍ଲୀ ଦରିଆଗଞ୍ଜରେ ଖଣ୍ଡିଆ ଖପରାସମ୍ବଳ। ସେହିପରି ଯେଉଁ କଳିଙ୍ଗ ଚକ୍ରବର୍ତ୍ତୀର ଭୀମ ଶାସନଦଣ୍ଡ ପ୍ରଶାନ୍ତ ସାଗରର ଲହରୀମାଳାକୁ ପ୍ରକୃତ ପ୍ରଶାନ୍ତ ରଖିଥିଲା, ତାହାର ବଂଶଧର ଓଡ଼ିଆ– ଆଜି ଆମେ ବାପଦାଦିଙ୍କ ଭିଟା ମେଦିନୀପୁର ଖଣ୍ଡିକ, ସିଂହଭୂଆର ସିଂହଭୂମି ଖଣ୍ଡକ ପାଇବାପାଇଁ ବ୍ୟାକୁଳ; ଦେବେ କି ନ ଦେବେ, ସନ୍ଦେହ ଦୋଳାରେ ଦୋଳାୟମାନ - ଆମ ପଛରେ ଲାଗିଛନ୍ତି, ବଙ୍ଗାଳୀ ଓ ବିହାରୀ। ମେଦିନୀପୁର ଝାଡ଼ଗ୍ରାମ ନିବାସୀ ଶ୍ରୀଯୁକ୍ତ ମୃତ୍ୟୁଞ୍ଜୟ ତ୍ରିପାଠୀ ଓଡ଼ିଆ ବ୍ରାହ୍ମଣ। ସେ ଓଡ଼ିଶା ପକ୍ଷରେ ଦେଶ ମିଶ୍ରଣ କମିଟି ଆଗରେ ସାକ୍ଷ୍ୟ ଦେବାକୁ ଯାଇ ବିହିତ ବିପଦଗ୍ରସ୍ତ, ସେଠାର ରାଜ ଏଷ୍ଟେଟ୍‌ର ବଙ୍ଗାଳୀ ମେନେଜର ଦ୍ୱାରା ଲାଞ୍ଛିତ, ଅପମାନିତ।

ତାଙ୍କ ପତ୍ରରୁ ସମସ୍ତେ ଅବଗତ ହେବେ, ସେଠି ଓଡ଼ିଆଙ୍କ ଦଶା ଓ ଆମ ଓଡ଼ିଆଙ୍କର ସହାନୁଭୂତିର କିପରି ଅଭାବ। ଏହିପରି ଦୁର୍ଦ୍ଦଶା ଯଦି ଆମର ଚିରଦିନ ରହେ, ଓଡ଼ିଆପୁଏ କଣ ସତରେ ଉନ୍ନତିକରି ଦେଶର ଅନ୍ୟାନ୍ୟ ଜାତିଙ୍କ ଆଗରେ ମୁଣ୍ଡଟେକି ଛିଡ଼ାହେବେ ? ମୁଁ ଦେଶର ଯୁବକମାନଙ୍କୁ ନିବେଦନ କରୁଚି, ଶତ ସହସ୍ର ସଂଖ୍ୟାରେ ମେଦିନୀପୁର ଓଡ଼ିଆଙ୍କ ସାହାଯ୍ୟପାଇଁ ବଦ୍ଧପରିକର ହୁଅ। ଏହିଟା ପ୍ରକୃତ କର୍ମ୍ମର ସମୟ। ଦୁଃଖ, ପରୀକ୍ଷାର କଷଟିରେ କଷା ହେଲେ ସିନା ସଚା ସୁନା କି ଭେଲ ଜଣାପଡ଼ିବ। ମେଦିନୀପୁର ଓଡ଼ିଶାରୁ ବିଚ୍ଛିନ୍ନହେଲେ ଓଡ଼ିଶା ଇତିହାସ ଅତୀତ କଳିଙ୍ଗ ଗୌରବର ଏକ ପ୍ରଧାନ ଅଙ୍ଗ କଟିଯିବ। ଆଉ ତପସ୍ୟା କଲେ, ଫେରିପାଇବା ନାହିଁ ସେହି ସୁନ୍ଦର ତମଲୁକପୁରୀକୁ -

''ବୋର୍ଣ୍ଣିଓ ବାଲି ଜାଭା ଡକକା
ବାଜିଥିଲା ତହିଁ ସମର ଡଙ୍କା।
ତାମ୍ରଲିପ୍ତ ବୋଇତବାହୀ ଚାଲିଥିଲେ ବୀର ଅନିକିନୀ।''

ଦେଶମିଶ୍ରଣ ନିକଟ - ଭଗବାନ୍ ଜାଣନ୍ତି, ମେଦିନୀପୁର ମିଳୁଚି କି ନାହିଁ। ଚାରିଆଡ଼େ ପ୍ରାୟ ଜନରବ 'ନାଁ' ପକ୍ଷରେ। 'ହଁ' ହେଲେ ତ ମଂଗଳ। 'ନାଁ' ହେଲେ ମଧ ନୈରାଶ୍ୟର କାରଣ ନାହିଁ। ଜୋର ଯାହାର, ମୂଲକ ତାହାର। ଚିରଦିନ ଘିଅ, ଗୁଡ଼, ଚକୁଳି ଖାଇ କେହି ଆଗ ହର୍ତ୍ତାକର୍ତ୍ତା ଦୈବ ବିଧାତା ହୋଇ ବସି ନ ଥିବେ। ଜଗତର ରାଜନୀତି ହେଉଛି, ଏକ ପ୍ରକାର ଜୁଆଖେଳ। ଆଜି ଯା ହାତରେ, କାଲି ତା' ହାତରେ। କିଏ ଜାଣେ,

ଭାରତର ପୂର୍ବ ଆକାଶରେ ଖଣ୍ଡେ କଳା ବଉଦ ଦେଖା ଦେଇପାରେ। ଯେଉଁ ଦେଶ ମାଟିରେ ଜଗନ୍ନାଥଙ୍କ ବସା ଅଛି, ସେଠି କଂଗ୍ରେସ ହବ ହବ, ହଉ ହଉ ମହା ଲଙ୍କାକାଣ୍ଡ ହୋଇଗଲା - ଗଜପତିର ଆସ୍ଥାନ ସେହି ଦଳାମଡ଼ା, ଚକଟା ଦେଶଟା, ଯେକି ହିନ୍ଦୁଜାତିର ଅତୀତ ଗୌରବର ଅସଲ ଖଣି, କିଏ ଜାଣେ କଣ ହୋଇ ଉଠିବ? ଆଜି ଯେ ତଳେ ପଡ଼ିଚି ବୋଲି ତୁମେ ଭାରତର ସବୁ ବଡ଼ବଡ଼ିଆ ତାକୁ ଆଡ଼ ଆଖିରେ ଅନେଇବାକୁ କୃପା କରୁନାହଁ, କିଏ କହିପାରେ, ସେହି ଜାତିଟାହିଁ ପୁଣି ତୁମରି ଭାଗ୍ୟ ବିଧାତା ହେବ। କାଳଚକ୍ର ତ ସର୍ବଦା ଘୂରୁଛି। ତୁମ ହିନ୍ଦୁ ସଭ୍ୟତାର ମୂଳ ପାଣ୍ଠିତ ସେଠି ଗଚ୍ଛାରହିବ।

ହିନ୍ଦୁର ସଭ୍ୟତା, ଦେଶନୀତି, ସମାଜନୀତି, ରାଜନୀତି ଯାହା ଦେଖ; ଓଡ଼ିଶାର ଜୀର୍ଣ୍ଣ କଙ୍କାଳ ଭିତରେ ଯେ ଯେଉଁ ପୂର୍ଣ୍ଣତା ପାଇଥିଲା; ତା' ସାହାନ୍‌ସାହାର ତ୍ୟକ୍ତ ଏ ଦିଲ୍ଲୀମାଟିରେ ନାହିଁ, ଏହା ମୁଁ ନିଜେ ଅନୁଭବ କଲିଣି। ଏଠା ହିନ୍ଦୁ ସଭ୍ୟତା ମୁସଲମାନୀ ସଭ୍ୟତାର ଦାସୀ, ଆଉ ବଙ୍ଗାଳୀଙ୍କର ସଭ୍ୟତା ପଶ୍ଚିମାଙ୍କ ଧାରକରା। ହିନ୍ଦୁର ରାଜରାଣୀ, ପାଟ ମହାଦେଈ ଭଳି ନିଜ ସଭ୍ୟତା ଯଦି କୋଉଠି ଅଛି; ଉତ୍କଳର ସେହି ମଲା ହାଡ଼ ଭିତରେ। କାରଣ ସେହିଟା ଥିଲା ହିନ୍ଦୁ ସମ୍ରାଟ, ସ୍ୱାଧୀନ ସାମ୍ରାଜ୍ୟ। ହିନ୍ଦୁ ବୋଲି ଯଦି ବଞ୍ଚ, ଜଗତରେ ଅନ୍ୟ ଜାତି ଆଗରେ ନିଜର ନିଜତ୍ୱ ବଜାୟ ରଖିବାକୁ ଚାହଁ, ତା' ହେଲେ ପ୍ରତ୍ୟେକ ଭାରତ ସନ୍ତାନକୁ ଓଡ଼ିଶାର ମଲାମାଟିକି ଖୋଳିବାକୁ ହେବ। ଏହା ଧ୍ରୁବ ନିଶ୍ଚୟ।

ଅତଏବ ଓଡ଼ିଆ ପୁଅ! ମେଦିନୀପୁରକୁ ହାତରୁ ଯିବାକୁ ଦିଅ ନାହିଁ। ଏଥର ଦେଶମିଶ୍ରଣ କମିଟି ଯଦି ତୁମକୁ ମେଦିନୀପୁର ନ ଦେବେ, ତଥାପି ଆଶା ହରାଅ ନାହିଁ। ପୁଣି ନବବଳରେ ଜାଗିଉଠ। ତୁମର ପ୍ରଧାନ କର୍ତ୍ତବ୍ୟ ମେଦିନୀପୁରରେ ଓଡ଼ିଆ ପ୍ରଚାର। ଓଡ଼ିଆ ଭାଷା, ଓଡ଼ିଆର ଅତୀତ ଗୌରବ, ଜାତୀୟତାର ପ୍ରଚାର ଯଦି ତୁମେ ମେଦିନୀପୁରରେ ନିଜେ ନ କରିବ, ବଙ୍ଗାଳୀଙ୍କ ପ୍ରଭାବରେ ସେଠି ଓଡ଼ିଆଙ୍କର ଓଡ଼ିଆତ୍ୱ ଲୋପ ପାଇଯିବ।

ଦେଶବାସି! ଶ୍ରୀ ମୃତ୍ୟୁଞ୍ଜୟ ତ୍ରିପାଠୀଙ୍କ ଚିଠି ପ୍ରତି ଧ୍ୟାନ ଦେବେ କି? ଓଡ଼ିଶାର ଗୌରବଗର୍ବିତ ତରୁଣତରୁଣୀ ଏଥିରେ ମନଃ ସଂଯୋଗ କରିବେ କି? ବିଚ୍ଛନ୍ଦ, ଉପେନ୍ଦ୍ର, ଗୋଦାବରୀଶ, ଜଗନ୍ନାଥ, ସଚ୍ଚିଦାନନ୍ଦ, ତଥା ପୌଢ଼ ଗୋଦାବରୀଶ, ଲକ୍ଷ୍ମୀନାରାୟଣ, ଆର୍ତ୍ତବଲ୍ଲଭ, ପଦ୍ମଚରଣ ଆଦି ଯୁବକ, ଏ ଦେଶନେତା ଓ ଦେଶ ପ୍ରେମୀ ଓ କର୍ମୀ ଅଗ୍ରସର ହେବେ କି?

ଦେଖିବ ଓଡ଼ିଆ ରକ୍ତରେ ତାତି କେତେ, ଭାଇର ଭାଇ ପାଇଁ ବଥାଁ[1] କେତେ?

ଓଡ଼ିଆ ଭଉଣି! ରମା, ସରଳା, ଜାହ୍ନବୀ, ରାଧାରାଣୀ, ସୁନାମଣି, ନୋହିଲେ ଏଥିରେ ଆଗୁସାର ହୁଅ। ଦେଶର ଝିଅମାନେ ଅବା ଦୁଃଖ ଅପମାନ ଘୁଞ୍ଚାଇବାକୁ ସମର୍ଥ ହେବେ।



(୧) ଯନ୍ତ୍ରଣା, ଦୁଃଖ

# ଦିଲ୍ଲୀ ଚିଠି (୭)
# (ଅସ୍ପୃଶ୍ୟତା ନିବାରଣ)

ସଂପାଦକ ମହାଶୟ,

ସାଦର ନମସ୍ତେ !

ବହୁତ ଦିନ ପରେ ପୁଣି ଆପଣଙ୍କ ସହିତ ସାକ୍ଷାତ କରି ଦୁଃଖସୁଖ ଦୁଇପଦ ହବାକୁ ମନବଳିଚି। ଦୁନିଆ ତ ସବୁଦିନେ ଏକାଭଳି ଯାଏ ନାହିଁ। ବହୁତ ମଡ଼ାଚକଟା, ଘଣ୍ଟାଗୋଳା ହୋଇ ଏ ଭାଗ୍ୟ ତିଆରି ହୁଏ। ହିନ୍ଦୁ ଜାତିର ଭାଗ୍ୟ ବି ଠିକ୍ ସେହିପରି। କେହି ଗଣକ ଯଦି ତା ଜାତକଟା କଷି ଦେଖନ୍ତା, ବୋଧହୁଏ କହନ୍ତା ଯେ, ତାର ଶନିଦଶା ପଡ଼ିଚି। ନଇଲେ ସମସ୍ତେ ତାଠୁ କାଟିଛାଣ୍ଟି ଅଲଗାହବାକୁ ବସନ୍ତେ ? ଭାରତୀୟ ବୋଇଲେ ଯେଉଁ ପଇଁତିରିଶ କୋଟି ଲୋକଙ୍କୁ ଆମେ ବୁଝୁଁ, ଏକାମାଟିରେ ଜନ୍ମହୋଇ, ଏକାଭୂଇଁରେ ବଢ଼ିକୁଢ଼ି ମଣିଷ ହେଉଁ, ଏକ ଅନ୍ନରେ ପାଳିନାଳି ହେଉଁ, ସେଇ ପଇଁତିରିଶ କୋଟି ଭଲା ଯଦି ପ୍ରକୃତ ମନପ୍ରାଣ ଦେଇ ଏକା ହୋଇଯାନ୍ତେ, ତା' ହେଲେ ଦୁନିଆ ଦାଣ୍ଡରେ ଏତେ ଲୋକହସା, କାଉନ୍‌ସିଲ ଆସେମ୍ବ୍ଲିରେ ଚଉକି ବେଞ୍ଚ ଟଣାଟଣି, ଭିଡ଼ାଭିଡ଼ି ଲାଗି ନଥାନ୍ତା। ଆପଣା ଦେଶର ଯୋଗ୍ୟ ଲୋକେ ପଞ୍ଚ ପଞ୍ଚୁରେ ବସି ନିର୍ବିବାଦରେ ଦେଶର ସବୁ କଥା ବୁଝାସୁଝା କରି, ଯାହା ଦେଶର ସମସ୍ତଙ୍କପାଇଁ ଭଲ ତା କରୁଥାନ୍ତେ; କିନ୍ତୁ ମଝିରେ ବିଖଡ଼[୧] କାଢ଼ି ନାଟ ଦେଖିବା ଲୋକ ବି ତ ଅଛନ୍ତି। ଆମେ ମୂର୍ଖ, ତାଙ୍କ କୂଟ କପଟ ବା କାହୁଁ ବୁଝିବ ? ଆମେ ଯେଝା ହାଣ୍ଡିକୁଣ୍ଡେଇ, ହେଁସମସିଣା, ପେଡ଼ିପେଟରା ଭିନେ ଭିନେ ଠା' ଠା' କରିବାକୁ ବସିଲୁଣି। ପଠାଣ ମିଆଁ ଭାଇଙ୍କର ତ ମୂଳରୁ ''ମେରି ମୁର୍ଗିକା ଏକ ଟାଙ୍ଗ''; ଏବେ ଶିଖ ଭାଇ, ଅଛୁତ[୨] ଭାଇ, ଖ୍ରୀଷ୍ଟିୟାନ ଭାଇ, ସେ ବି ଭାଗ ଭାଗ ହୋଇ ହିନ୍ଦୁଜାତିର ଗଣ୍ଡିଟାକୁ ଗୋଡ଼ ହାତକଟା ଖଣ୍ଡିଆ ଜଗନ୍ନାଥର ପରିଣତ କରିବାକୁ ବସିଲେଣି। ଏକା ଘରେ ଏତେ ବାଡ଼ ହେଲେ ଶେଷକୁ ଦଶାଟା କଣ ହବ, ଏ କଥା ଧର୍ମଧ୍ୱଜାଧାରୀ ଦ୍ୱିଜାତି ପ୍ରବରମାନେ ଟିକେ ଭଲକରି ମନରେପୂରେଇ ବିଚାର କଲେଣିଟି, ନା ଆପଣା ଜାତି ଅଭିମାନରେ ଆକାଶରେ ଅଟ୍ଟାଳିକା ତୋଳି ବସିଛନ୍ତି ?

ସତ କଥା, ସଂପାଦକ ଭାଇ, ଏ ବଡ଼ ଜୁଲମ, ହିନ୍ଦୁପଣିଆ ଉପରେ ଏ ବଡ଼ ଜୁଲମ। ଅଛୁତଗୁଡ଼ା ମୁଣ୍ଡଟେକିବା ହେଉଚି ମହାପାପ। ରାଜା ରାମଚନ୍ଦ୍ର ଯୁଗ ହୋଇଥାନ୍ତା ତ, ଏମାନେ ଦେଖିଥାନ୍ତେ ଶୂଦ୍ରକ ବେଦ ପଢ଼ିଲା ମାତ୍ରେ କେମିତି ମୁଣ୍ଡକାଟ ହୋଇଥିଲା। ଏବେ ପରା ରାମରାଇଜ ନାହିଁ, ନଇଲେ ଯେ ଆମ୍ବେଦକର ଦଳିଆଙ୍କର ଏକାବେଳେ ଘଧା ଚୋଟ୍ ମୁଣ୍ଡକାଟ୍ ହେଇ ତାଙ୍କ ଅପବିତ୍ର ଅସାର ଦେହକୁ ଚିଲ ଶାଗୁଣାଙ୍କର ସୁଭକ୍ଷ୍ୟ କରାଯାଇ ପାରିଥାନ୍ତା। ତାଙ୍କର ଏଡ଼େ ଗର୍ବ, ସେମାନେ ପୁଣି ବର୍ଣ୍ଣଶ୍ରେଷ୍ଠଙ୍କର ସରିସଂଗ[୩] ହବାର ଆଶା କରୁଛନ୍ତି ? ଆରେ ବାବୁ, ଯଦି ଜନ୍ମ ଜନ୍ମାନ୍ତର ପାପକରି ଅଛୁଆଁ ହେଇ, ହାଡ଼ି ପାଣ ହୋଇ ପିଣ୍ଡ ଧାରଣକଲ, ତୁମର ପୁଣି ସରଗଚାନ୍ଦକୁ ହାତ ବଢ଼େଇବାର ସଇତାନି କାହିଁକି ? ଯେତେ

(୧) ସମସ୍ୟା, (୨) ଅସ୍ପୃଶ୍ୟ, (୩) ସମାସ୍ତବ

ହେଲେ ଆମେ ଦ୍ୱିଜାତି, କେତେ ଲକ୍ଷ ଜନ୍ମ ତପସ୍ୟାକରି ''ଜମ୍ବୁଦ୍ୱୀପ ଭାରତବର୍ଷ'' ବର୍ଣ୍ଣଶ୍ରେଷ୍ଠ ବ୍ରାହ୍ମଣ, କ୍ଷତ୍ରିୟଆଦିଙ୍କ ଘରେ ଆମର ଶୁଭଜନ୍ମ ଲାଭହେଇଚି। ପଛେ ଆମେ ପାଠର 'ଅ' ଅକ୍ଷର ନ ଜାଣୁ, କି ଦହୁଡ଼ା କଟୁରି ଖଣ୍ଡେ ଧରିବାର ସାହସ ଆମର ନ ଥାଉ, ଦୁନିଆଯାକ ଆମକୁ ଛି' ଛା' କରୁ, ଟାହୁଲି ଟାପରା[୧] କରୁଥାନ୍ତୁ - ''ନବଗୁଞ୍ଜର, ଆପଣା ମନେ ମୁଁ ଆପେ ସୁନ୍ଦର'' - ଆମେ ବର୍ଣ୍ଣଶ୍ରେଷ୍ଠ ହିନ୍ଦୁ। ଆମରି ପାଇଁ ପରା କବି ଗାଇଛନ୍ତି-

''ସର୍ବ ବର୍ଣ୍ଣେ ଶ୍ରେଷ୍ଠ ପ୍ରତିଷ୍ଠ ଧର୍ମନିଷ୍ଠ ହିନ୍ଦୁ'' - ଆମେ ସବୁ ଧର୍ମର ଦେହଧାରୀ ବିଗ୍ରହ। ଦୁନିଆଯାକର ଧର୍ମ ଆମର ପ୍ରତି ଲୋମକୂପରେ ଗଦାମରା ହୋଇଚି। ଆମେ ଜଗତରେ ଧର୍ମଗୁରୁ। ଆମେ ଖାଇଲେ ଧର୍ମ, ବସିଲେ ଧର୍ମ, ଶୋଇଲେ ଧର୍ମ, ହସିଲେ ଧର୍ମ, କାଶିଲେ ଧର୍ମ, ଧର୍ମର ଆମର କିଛି ସୀମା ଅଛି? ଧର୍ମ ସକାଶେ ଆମେ କଣ ନ କରିପାରୁ? ଧର୍ମ ସକାଶେ ତ ଆମର ଏତେ ଚିତାପଇତା, ଚୁଟିଚୈତନ୍ୟ, ଛାପ, ଜପାମାଳି। ଧର୍ମ ସକାଶେ ତ ଏତେ ବାରବ୍ରତ, ଓଷା ପାର୍ବଣ, ପୋଥି, ପାଞ୍ଜି, ପୁରାଣ। ଧର୍ମ ସକାଶେ ତ ଗଙ୍ଗା ଯମୁନାର ମଇଳା, ମଡ଼ପଚା, ଗୋଳିଆ, ଗନ୍ଧପାଣିରେ ଗାଧୋଇ, ମହାପବିତ୍ର ହେଇ, ସାତଜନ୍ମର ଚୋରି, ବ୍ୟଭିଚାର, ନରହତ୍ୟା, ଭ୍ରୂଣହତ୍ୟା ପାପରୁ ତ୍ରାହିପାଉଛୁ। ଧର୍ମ ସକାଶେ ତ ପାଞ୍ଚବର୍ଷର ଅଜ୍ଞାନ ଶିଶୁ ବାଳିକାଙ୍କୁ ଧୂଳିଖେଳରୁ ଧରିଆଣି ପାଚଲା ବୁଢ଼ା ବରଗଡ଼ାର ହାତରେ ବନ୍ଧ ଗଣ୍ଠି ପକେଇ ଦଉଚୁ[୨]। ଧର୍ମ ସକାଶେ ତ ଆମେ ନବଯୌବନା ସଜ ଗୋଲାପ କଢ଼ିଟିମାନଙ୍କୁ ରାଣ୍ଡ[୩] ଅର୍ଦ୍ଧିତିଆଣୀ[୪] କରି ବଡ଼ଦାଣ୍ଡରେ ବସେଇ ମାତାଜୀ ସଜେଇ ଦେଉଚୁ; ନଇଲେ ଆମର ଦେବତାଙ୍କୁ ବାହା କରେଇ କୁମାରୀକନ୍ୟାଙ୍କୁ ଦେବଦାସୀ ରୂପେ ମଠଧାରୀ ମହନ୍ତ ପୂଜା ସେବକ ସେବେଇତଙ୍କ ଆଗରେ ନଚଉଚୁ। ଏଇ ଧର୍ମସାଧନ ସକାଶେ ତ ଗାଁ ଗାଁ, ସହର ସହର, ଘାଟତୁଠରେ ମାଳେ ମାଳେ ମନ୍ଦିର, ମଠ, ପୀଠ ଗଢ଼ିକରି ରଖିଚୁ। ଆରେ ମ୍ଳେଚ୍ଛାଗୁଡ଼ା[୫]! ଯାହା ଆମର ଜନ୍ମ ଜନ୍ମାନ୍ତର ସୁକର୍ମ-ଅର୍ଜିତ, ଆଜି ଗାନ୍ଧି ଗୋଟିଏ ଉପାସ କଲେ ବୋଲି ''ଆମେ ସର୍ବେ ହୋଇଯିବୁ ଏକକାର, ନ ଥିବା ବେଦର ବିଚାର'' - ତେବେ ଭଲା ଆମର ରବିତଳେ ନା ରାସାତଳେ, ଗଉରବ ଗର୍ବ କରିବାପାଇଁ କି ପଦାର୍ଥ ରହିବ? ଦୁନିଆ ଦାଣ୍ଡରେ ମୁଣ୍ଡଟେକି ବାଟଚାଲିବାପାଇଁ ଅଭିମାନଟା ରହିବ କଉଁ ଲାଜରେ? ଜଗତର ଅନ୍ୟ ଦେଶର ଲୋକେ କିମିତିକା ତାଟକା[୬] ହେଇ ଶୁଣିବେ ଯେ, ବ୍ରାହ୍ମଣଠାରୁ ଏକୋଇଶ ହାତ ଦୂର ଛଡ଼ାରେ ଶୂଦ୍ର ଚାଲୁଚି? ତା ଛାଇଟା ପଡ଼ିଲାକ୍ଷଣି ବ୍ରାହ୍ମଣରୂପୀ ନର ଦେବତାର ଚମ ଅପବିତ୍ର ହେଉ ଯାଉଛି? ଭଲା, ଯେ ବ୍ରାହ୍ମଣ ସେ ଚିରଦିନ ବ୍ରାହ୍ମଣ ''ବ୍ରହ୍ମ ଜାନାତି ବ୍ରାହ୍ମଣ'' ବା ''ରାନ୍ଧି ଜାଣନ୍ତି ବ୍ରାହ୍ମଣ'' - ପୂଜାହାରୀ ଅଥବା ପୂଝାରୀ। ଆମ୍ଭର ଅନ୍ନ ଯୋଗାଣକରିବେ, ନଇଲେ ପେଟର ଅନ୍ନମୁଠାଏ ସିଝେଇଦେବେ। ପାଠ ପଢ଼ି ପଢ଼ି ପଣ୍ଡିତ, ବା ବ୍ରାହ୍ମଣ ପେଟରୁ ପଡ଼ି ପଣ୍ଡିତ। ପଛେ ଟିପଚିହ୍ନଟାଏ ଦବାକୁ ନ ଆସି, ବ୍ରାହ୍ମଣ ଯେ ଚିରଦିନ ବ୍ରାହ୍ମଣ, ତାର ସ୍ଥାପିତ ବ୍ରାହ୍ମଣ୍ୟ ଧର୍ମରେ। ଗାନ୍ଧି ଭଳି ସାତ ଗାନ୍ଧି ଶଏଦିନ ଉପାସକରି

---

(୧), ଠସିଲ, କଟୁ ସମାଲୋଚନା, ପରିହାସ, (୨) ବାଲ୍ୟବିବାହ, (୩) ବିଧବା, (୪) ଯାହାର ନିଜର କେହି ଆତ୍ମୀୟ ନଥାନ୍ତି, (୫) ବିଧର୍ମୀ, (୬) ଆଶ୍ଚର୍ଯ୍ୟ।

ମରି, ମାଟିରେ ମିଶିଗଲେ ସନ୍ଧା କଣିଚାଏ ଭାଙ୍ଗିବ ନାହିଁ କି ଗୁଳିବ ନାହିଁ - ସେ ଯାହା ଆଗରୁ ବିଧି ବ୍ୟବସ୍ଥା ହୋଇଚି ନା! ବ୍ରାହ୍ମଣ, ବ୍ରାହ୍ମଣ-ଶୂଦ୍ର, ଶୂଦ୍ର, ମ୍ଳେଚ୍ଛ - ଛୁଆଁ, ଛୁଆଁ-ଅଛୁଆଁ, ଅଛୁଆଁ। ଅଛୁଆଁଙ୍କୁ ପଙ୍ଗତରେ ପୂରେଇ ମାରାହବା ଭଳି କ୍ଷମତା ଆମର ନାହିଁ - ସେ ଗାନ୍ଧି କହନ୍ତୁ କି ସ୍ୱୟଂ ଭାଗବାନ୍ କହନ୍ତୁ। ଗାନ୍ଧି ଏବେ ମାନିଲେ ଗୋଟାଏ ଅବତାର, ଏଇ ଅଚ୍ଛୁତଙ୍କ ସକାଶେ ଓପାସକରି ମରିଯିବେ। ତା ହେଲେ ତାଙ୍କପାଇଁ ବି ମନ୍ଦିରଟିଏ ଗଢ଼ି, ସେଠି ତାଙ୍କ ମୂର୍ତ୍ତି ଥୋଇ ପୁଣି ଏଇ ଅଚ୍ଛୁତଙ୍କୁ ବାରଣ କରିଦବୁ ସେଠି ନିଘା ପକେଇବାକୁ। ଆମେ କଣ ଜଣା? ଆମେ ଖୁବ୍ ପୂଜାକରି ଜାଣୁ, ଅତଏବ ଗାନ୍ଧିଙ୍କ ଆତ୍ମବଳିଦାନ ବିଫଳ ହେବ ନାହିଁ। ଶ୍ରୀକୃଷ୍ଣ ଏବେ ଜରା ଶବର ମ୍ଳେଚ୍ଛଟା ହାତରେ ମଲେ - ଶବରଗୁଡ଼ା ତାଙ୍କର ଗୋଟିଏ ନିମ୍ବକାଠରେ ଦେବତା ବନେଇ ପୂଜିବାକୁ ଲାଗିଲେ। ଆମ ଦିହ କିଆଁ ସହନ୍ତା? ଆମେ ତାଙ୍କ ତଟିବାଟ ତାଡ଼ି ତାଙ୍କୁ ଘିନି ଆଇଲୁ, ପତିତପାବନ ଜଗନ୍ନାଥ କରି ଥୋଇଦେଲୁ। ଆଉ ଦେଲୁ ମନାକରି ସେଇ ଅଚ୍ଛୁତ ଭାଇଙ୍କି ତାଙ୍କ ମନ୍ଦିରର ପାଖ ମାଡ଼ିବାକୁ। ଜୋର ଯାହାର, ରାଜ୍ୟ ତାର। ହେଲେ ବଡ଼ ଭୟ ହେଲାଣି। ସତରେ ଏ ତ ସାତଜନ୍ମ ଗୋଡ଼ଦଳାଗୁଡ଼ା, ମୁଣ୍ଡ ଟେକିବେ ଆଉ ସାହସକରି ପଚାରିବେ - ତୁମେ କିଏ ସବୁ ଆମକୁ ଏଡ଼େ ହୀନକରି, ବିଲେଇ କୁକୁରଙ୍କଠୁ ବି ଊଣାକରି ରଖିଚ? ଭାଇ ଏତ ତୁମର ମଙ୍ଗଳ ପାଇଁ କରୁଚୁ। ହାତର ସବୁ ଆଙ୍ଗୁଳି କଣ ସମାନ - ନା? ସମସ୍ତେ ଯୋଗୀ ହେଲେ ଭିକ କିଏ ଦବ?

ସଂପାଦକ ଭାଇ, ସତରେ ଭାରି ଭୟହେଲାଣି। ଏ ଅଚ୍ଛୁତଗୁଡ଼ା ଆଉ ମାନିବା ଜନ୍ତୁ ନୁହନ୍ତି। ଏତ ଆଖି ରଙ୍ଗେଇ[1], ମୁଣ୍ଡ ସଳଖେଇ, ଆପଣା ହକ ଦାବୀ କରିବାକୁ ବସିଲେଣି। ଗଲା, ହିନ୍ଦୁ ଧର୍ମଟା ରସାତଳକୁ ଗଲା। ଏ (depressed, untouchable) ଗୁଡ଼ା ପୁଣି ଆମକୁ Press କଲେଣି, ହକ ତାଙ୍କୁ ଛାଡ଼ିଦେବାକୁ। ଭୟ ହଉଚି, ପଛପଟିଆ ଓଡ଼ିଆଙ୍କ ହାତରୁ ମୁକ୍ତିମଣ୍ଡପ ପିଣ୍ଡାରୁ କୋଉ ଦିନ କେଜାଣି ଜଗନ୍ନାଥଙ୍କ ଉପରେ ବି ଆକ୍ରମଣ କରି ତାଙ୍କୁ ଛଡ଼େଇନେବେ, ଆମକୁ ଚୋର ବୋଲି ଦୁନିଆ ଦାଣ୍ଡରେ ଚିହ୍ନେଇଦେବେ। ଭାଇ ଓଡ଼ିଆ! ଆଗରୁ ସାବଧାନ ହୋଇ ତାଙ୍କ ମାଲ ତାଙ୍କୁ ଦେଇଦିଅ ନା, ନଟ[2] ଛିଡ଼ିଯାଉ। ତୁମେ ତ ସତରେ ଭାରତବର୍ଷରେ ଏବେ ସମସ୍ତିଙ୍କର ପଛପଟ ଆଶ୍ରାକରିଚ, ଭଲା ଏଇ କାମରେ ଆଗଭର ହୋଇଯାଅ, ସାରା ଭାରତବର୍ଷରେ ଏଇ ସୁଯୋଗରେ ନାଁଟା କିଣିନିଅ, ଏମିତି ସୁଯୋଗ ଆଉ ଆସିବ ନାଇଁଟି? ତୁମ ଦେଶମିଶ୍ରଣ ହବା ଆଗରୁ ମିଶ୍ରେ ପଞ୍ଚାଙ୍କ! ଅଚ୍ଛୁତା ଗୋଛେଇତ, ଦୀନା ସାମଲ, କଣ୍ଡୁରି ମଲ୍ଲିକଙ୍କୁ କୋଳରେ ଘେନି ମିଶିଯାଅ, ମହାପ୍ରସାଦ ଖୁଆଇ ଜଗନ୍ନାଥଙ୍କ ବାନା ତଳେ ଏକହୋଇ ପ୍ରକୃତ ସାମ୍ୟ, ମୈତ୍ରୀ, ସ୍ୱାଧୀନତାର ପରିଚୟ ଦିଅ ଭଲା! ଏମିତି ସୁଯୋଗ ଆଉ ହାତକୁ ଆସିବ ନାହିଁଟି? ଯାକୁ ହାତରୁ ଛାଡ଼ିଲେ ପରେ ମୁଣ୍ଡ ପିଟିଲେ ମିଳିବ ନାହିଁଟି? ମତେ ଓଡ଼ିଶାର ଜଣେ କିଏ ଭାଇ ଅଚ୍ଛୁତଙ୍କ ଲାଗି ମୁକ୍ତିମଣ୍ଡପର ପଣ୍ଡିତମାନଙ୍କୁ ହାତଯୋଡ଼ି ମନ୍ଦିର ମୁକ୍ତିପାଇଁ ଭିକ୍ଷାମାଗିବାକୁ ନେହୁରାହେଲେ।

(୧) ଲାଲ୍ କରିବା, ରାଗିବା; (୨) ଛଳ, ଧନ୍ଦା।

ଭଲା ଏକଥା କହିବ କିଏ ? ମୁଁ ଟି ? ମୁଁ ଏବେ କୋଉ ଭଲ କି ? ଅଛୁତଗୁଡ଼ାକ (depressed, suppressed, sufocated.) ମୁକ୍ତିମଣ୍ଡପ ଆଗରେ ମୁଣ୍ଡ ଟେକିବୁଁ ? ଆମେ ବି ତ 'ଅସ୍ପୃଶ୍ୟା', ଆମକୁ ବି ଛୁଇଁ ଦେଲେ ଛଅଖଣ୍ଡ - ଏକାବେଳେ ଚୂନା, ଛତୁ - ଆମେ ଯେ ସବୁ ଲହୁଣୀ ପିତୁଳା - ଟିକେ ଖରା ବାଜିଲା ମାତ୍ରେ ଏକାବେଳେ ତରଳିଯିବୁ - ସେଇ ଯୋଗୁଁ ଆମେ ସବୁ ଅନ୍ତଃପୁରକୋଣବାସିନୀ, ପରଦାକୈଦିଆଣୀ, ଓଢ଼ଣାଘୋଡ଼ଣୀ, ଆମ ଗୋଡ଼ଥାଇ ଗୋଡ଼ ନାଇଁ, ହାତ ଥାଇ ହାତ ନାଇଁ, ଆଖି ଥାଇ ଆଖି ନାଇଁ, କାନ ଥାଇ କାନ ନାହିଁ। ଆମେ ଅଜୀବ (ଜୀବହୀନ ବା ଆଶ୍ଚର୍ଯ୍ୟ) ଜାନୁଆର ! ଅଛୁତଗୁଡ଼ା ତ ଖାଲି ସାତକୋଟି। ଆମେ ତ ଏକାବେଳେ ଷୋଳ ସତର କୋଟି। ଆମ ପାଇଁ କେହି ଗାନ୍ଧି କି ଗାନ୍ଧିଆଣୀ ଓପାସ କରୁନାହାନ୍ତି ? ଭଲା ଆମେ ଟିକେ ଚେଇଁଉଠି ଆଖିତରାଟି ଏଇ ଦ୍ୱିଜାତି ମନୁସ୍ମୃତି ରଚକମାନଙ୍କୁ ଚାହିଁଦିଅନ୍ତୁ। ଆମେ ଅନ୍ଧାର କୋଣମଣ୍ଡିନୀ ଚେମିଣୀପଞ୍ଝାକ ଯଦି ଏକାବେଳେକେ ଉଡ଼ି ବାହାରକୁ ଆସନ୍ତୁ, ଦୁନିଆ ଦେଖନ୍ତା ହିନ୍ଦୁଙ୍କ ରଂଗମଞ୍ଚରେ କେମିତି ନୂଆ ଶକୁନ୍ତଳା ନାଟକଟିଏ ହୁଅନ୍ତା।

ହାୟ ହିନ୍ଦୁଧର୍ମ୍ମ ! ସତରେ ଆଜି ତୋର ବଡ଼ ବିପଦ, ତୋର ନିଶ୍ଚେ ଶନିଦଶା; ନଇଲେ ଏତେ ସମସ୍ୟାରେ ତୁ ଘାଣ୍ଟିହୁଅନ୍ତୁ ! ଏଣେ ସ୍ୱରାଜ୍ୟ ସମସ୍ୟାକୁ ସେଣେ ସାଂପ୍ରଦାୟିକ ନିର୍ବାଚନ ସମସ୍ୟା। ତେଣେ ଅଛୁତ ସମସ୍ୟାକୁ ପୁଣି ନାରୀ ସମସ୍ୟା। ଏତ ଖାଲି ସମସ୍ୟାରେ ସମସ୍ୟା, ସମାଧାନର କିଛି ଉପାୟ ଅଛି ନା ? ଆମ ଓଡ଼ିଶା ଦେଶମିଶ୍ରଣ ସମସ୍ୟା ଭଳି ଏ ବି ବର୍ଷକୁ ବର୍ଷ ନବରଂଗରେ, ନବଢ଼ଙ୍ଗରେ ଗଡ଼ି ଗଡ଼ି ଚାଲିଥିବ ! କଥାରେ କହନ୍ତି, ''ନାଉ ଧୁତୁକି ଉତ୍ତର ଦେଉଚି - ''ମୁଁ କି ଜାଣେ ବୁଢ଼ୀ ଫୁଢ଼ୀ, ମୁଁ ଯାଉଚି ଗଡ଼ି ଗଡ଼ି।'' ସେମିତି ଏକ ବୁଢ଼ୀ ଓଡ଼ିଆ ମାଆର କୋଟିକଙ୍କାଳମାଳିନୀ ରୂପଟାର ହାନସ୍ତାକୁ କେହି ସତରେ ଦେଖିଛନ୍ତି - ନା ଆମ ତୁଣ୍ଡମୁଣ୍ଡର ମାଲିକ, ହରତା କରତା ଦୈବ ବିଧାତା, କେହି ଆମ ଜାତିଟାର ଅଭାବ-ଅସୁବିଧା, ମୁଣ୍ଡଗଣ୍ଡିକଟା ମାଦଳର ମାଦଳା ପାଞ୍ଜି ଭଳି ଦୁର୍ଦ୍ଦଶା, ଲୋକହସାର ପରାସଟା ଅନୁଭବ କରିଛନ୍ତି ? ଖାଲି କଥାରେ ବଥା ବଢ଼େଇଦେଇ, ଶୁଖିଲା ସୁଆଗକାଢ଼ି ଆମ ସାହୁ, ମିଶ୍ର, ମହାନ୍ତି, ମହାରାଜାଙ୍କର ମନ ଭୁଲେଇ, ସରଗଚାନ୍ଦ ଦବାର ଆଶା ଆଶ୍ୱାସନା ଦଉଛନ୍ତି - ହେଲେ ଦେଶମିଶ୍ରଣଟା ନାଉ ଧୁତୁକି ଭଳି ଯାଉଚି ଗଡ଼ି ଗଡ଼ି। କବି ଗାଇଛନ୍ତି - ''କେତେ ତୁ ଅନାଇ ବସୁ ଅକାରଣେ ଆଖି, ଏ ତିରିଶି ବର୍ଷ ତୋର ନିଆଶାର ସାକ୍ଷୀ।'' ଗଲା କର୍ଜ୍ଜନଙ୍କଠୁ ଆରମ୍ଭ କରି ଉଇଲିଙ୍ଗଡ଼ନ୍ ଆସି ପାଟଗଦି ମାଡ଼ି ବସିଲେଣି- ହେଲେ ଆମ ନିଆଣ ନିରିମାଖୀର ଭଗବାନ୍ ହିଁ ଭରସା। ଆମ ପ୍ରାର୍ଥନାର ଫଳଟା ହଉଚି କଣ ନା, ଗୋଲଟେବୁଲ୍ ଭଳି ଗୋଲଆଳୁ।

ସତରେ ଏଇ ଗୋଲ୍‌ଟେବୁଲ୍ କରିବାର ସବୁ ଗୋଳେଇ ହେଇ ଯାଉଚି; କିନ୍ତୁ ଚାରିକଣିଆ ଟେବୁଲ୍‌ଟା ବା କେମିତି କରନ୍ତେ ? ପୃଥିବୀଟା ଯେ ଗୋଲ, ଚାନ୍ଦଟା ଯେ ଗୋଲ୍, ସୂର୍ଯ୍ୟଟା ଗୋଲ, ଭଗବାନ୍ ସବୁ ଜିନିଷକ ଗୋଲ ଗଢ଼ିଛନ୍ତି। ଅତଏବ ସବୁକଥା ଗୋଲହେବା

ଭଲ - ସେଇଟା ଜଗତର ସନାତନ ନିୟମ। ଧର୍ମରେ ସେଥିପାଇଁ ସିନା ଏତେ ଗୋଲ ବା ଗୋଳ ! ମୁସଲମାନ କହ - ତାଙ୍କର ସିଆ ସୁନ୍ନି ପାଲା କରି ଇସାଇଙ୍କି ଦେଖ ତ, ତାଙ୍କର କାଥଲିକ୍– ପ୍ରଟେଷ୍ଟାଣ୍ଟ ନାଟ - ଏମିତି ଅବା ହିନ୍ଦୁଙ୍କର ବ୍ରାହ୍ମଣ, ଶୂଦ୍ର ସୁଆଙ୍ଗ ! ଯା ଅନାଦି କାଳରୁ ଚାଲିଚି, ନା ଆଜି ନୂଆ ହେଉଚି ? ଏ ନୂଆ ନବିଲା[୧] ଛୁଆ ଧର୍ମବୁଢ଼ାଙ୍କର ଦୁଧଗାଲି ଭାଙ୍ଗିନାହିଁ, ତାଙ୍କର ତ ଏତେ ଭେଶ[୨] ବଦଳିଲାଣି, ହିନ୍ଦୁଧର୍ମ ତ ବୁଢ଼ା, ପୁରୁଣା। କୁଳବୃଦ୍ଧ ପିତାମହ ! ତା ଚମ ଲୋଥରି[୩] ପଡ଼ିଲାଣି, ଦାନ୍ତ ପଡ଼ିଲାଣି, ଆଖି ବସି ଗଲାଣି, ଲମ୍ବ ଦାଢ଼ୀ ଧଳା ହେଉ ଭୂଇଁରେ ଘୁଷୁରିଲାଣି, ଆଉ କିଛି ଦିନ ପରେ ନାକ ବି ଘୁଷୁରିବ, ତାର ଦୁନିଆକୁ ଦେଖେଇବାକୁ ଆଉ ନୂଆ ଛଇଟା ଭଲା ହବ କିସ ? ତାକୁ ପୁଣି ଲୋକେ କହୁଛନ୍ତି 'ସଂସ୍କାର ହ !' ଆରେ, ସଂସ୍କାର ହବାକୁ ତାର ବାକି ସାକି ଅଛି କଣ ? ତାର ତ ଜନ୍ମରୁ ମଲାଯାକେ ଷୋଳ ସଂସ୍କାର, ତାର ଗୁଣ ଦୁର୍ଗୁଣ ସବୁ ତ ପୂର୍ବଜନ୍ମର ସଂସ୍କାର, ତାର ଭାଷଣଟା ବି ସଂସ୍କୃତ, ସେତ ଏକାବେଳେ ସଂସ୍କାରିତ, ପରିଷ୍କାରିତ, ପରିମାର୍ଜିତ, ପବିତ୍ର। ତାର ତ ଏମିତି ଯାଇଚି କାଳକ, ଆଉ ଅଛି ଫାଳକ। ବୁଦ୍ଧ, ଶଙ୍କରଠୁ ଆରମ୍ଭ କରି କେତେ ରାମାନନ୍ଦ, ଚୈତନ୍ୟ, କବୀର, ନାନକ, ରାମମୋହନ, ଦୟାନନ୍ଦ ତା ଗଣ୍ଡିଟାର ସଂସ୍କାରକରି ଫସର ଫାଟିଗଲେ। ଏବେ ଏ ଗାନ୍ଧି, ମାଲବ୍ୟ, ମୁଞ୍ଜେ, ଶାରଦା ହେରିକା କଣ ଗୋଟାଏ ନୂଆ କରିବାର ଶରଧା କରିଛନ୍ତି କି ?

ସାତ ଶଅ ବରଷ ତ ପଠାଣ ପଞ୍ଝାକ ତଲୁଆର ହଲେଇ ହଲେଇ ପାରିଲେ ନାହିଁ ତାର ଟିକେ ଆଡ଼ବାଙ୍କ[୪] କରିବାକୁ, ଦେଢ଼ଶଅ ବରଷ ତ ବ୍ରିଟିଶ୍ ଶିକ୍ଷା, ସଭ୍ୟତା, ନୂଆ ଆଲୁଅ ବି ତାର ଅନ୍ଧାର ଗମ୍ଭୀର ଉଆସ ଭିତରେ ପଶିପାରିଲା ନାଇଁ, ଆଉ ଆଜି ତେବେ ସବୁ ଡଙ୍ଗ କାଢ଼ିଚ ସଂସ୍କାର କରିବ ବୋଲି ? କି ସଂସ୍କାର କରିବ ତେମେ ଗୋଟାଏ ? ଏ ଅଛୁଆଁଙ୍କୁ ଛୁଆଁ କରିଦେବ - ଆମ ନିଜାନ୍ତି[୫] କୂଅପୋଖରୀ, ମଠ, ତୁଠ, ମନ୍ଦିରଗୁଡ଼ାରେ ସବୁ ତାଙ୍କ ଅପବିତ୍ର ପିଣ୍ଡମାନଙ୍କୁ ମାଡ଼ିଦବ ନେଇ ? ଏ ଓଲଟା[୬] ନିଶାପ କିଆଁ ବାବୁ ? କି ଭୂତ ତୁମ ମୁଣ୍ଡରେ ଚଢ଼ିଚି ଭଲା କହିଲ ? ଛୁଆଁଛୁଇଁ ଧର୍ମଟା ତ ଆମ ହିନ୍ଦୁଙ୍କର ଜନ୍ମଗତ ଅଧିକାର। ମା ପେଟରୁ ଭୂ, ଭୂବ, ସ୍ୱର୍ଗଲୋକ ପର୍ଯ୍ୟନ୍ତ ସେ ଛୁଆଁଛୁଇଁର ସଂସ୍କାର ଘେନି ବୁଲୁଚି। ତା କାଳୀଗାଈର ଭିନେ ଗୋଠ। ଦୁନିଆ ଲୋକେ ତାକୁ ଭାବୁଥାନ୍ତୁ ନା ସେ ଦୁନିଆ ଦାଣ୍ଡରେ ଅସ୍ପୃଶ୍ୟ, ଇତର-ମୂର୍ଖ-ଅନ୍ଧ-ଗୋଲାମ, ବାର ଜାତି ତେର ଗୋଲା - ତାର ସେଥିରେ ଭ୍ରୂକ୍ଷେପ କାହିଁକି ହବ ? ତାର ହଉଚି ହାଣ୍ଡି-ଧର୍ମ ! ଚୁଲ୍ଲୀ ଚଇକା ସଭ୍ୟତା, ବେଦ, ବେଦାନ୍ତ, ଉପନିଷଦ, ରାମାୟଣ, ମହାଭାରତ ସବୁ ତାର ସେଇ ଛୁଆଁଛୁଇଁ ପାଠ ଭିତରେ, ସେହି ତାର ଜୀବନ ମରଣର ଗଣ୍ଠି। ସ୍ୱରାଜ୍ୟ ସମସ୍ୟା, ସାଂପ୍ରଦାୟିକ ନିର୍ବାଚନ, ଏଗୁଡ଼ାର ଭଲା ତା କତିରେ କି ମହତ୍ତ୍ୱ ? ସେ ତାର ସେଇ ଛୁଆଁଛୁଇଁ ଧର୍ମନେଇ ମରିବ ଅବା ବଞ୍ଚିବ। ସାବଧାନ ! ତା ଧର୍ମ ଉପରେ ହାତ ଦିଅ ନାହିଁ। ଅତଏବ ଗାନ୍ଧି ମହାରାଜ ଆଗରୁ ଚେତି ଯାଆନ୍ତୁ - ନଇଲେ ପଛକୁ ଭାରି ପସ୍ତାଇବେ। ସେତେବେଳେ ବିରାଟ ହିନ୍ଦୁଧର୍ମ ନିଜର ଉଦାର

(୧) କଅଁଳ, (୨) ବେଶ, ରୂପ; (୩) ଧୁଡୁକା ହେବା, ଓହଳି ପଡ଼ିବା, (୪) ହଲଚଲ, (୫) ନିଜର, (୬) ବିପରୀତ

ସଂକୀର୍ଣ୍ଣତାରେ ତାଙ୍କୁ କ୍ଷମାକରିପାରିବଟି? ଶୀଘ୍ର ତାଙ୍କର ଏକଥା ଥଣ୍ଡା ମୁଣ୍ଡରେ ଧ୍ୟାନ କରି ଆପଣା ବରତ ଛାଡ଼ିଦେବା ଉଚିତ୍। ଭଲା ସେ ବା ଖାଉଥିଲେ କଅଣ? ଟୋପିଏ ଛେଳି ଦୁଧ, ଦିଟା ଶୁଖିଲା ଖଜୁର, ଗଣ୍ଡିଏ ଅଙ୍ଗୁର; ଖାଉଥିଲ ଯେ, ତା ପୁଣି ଅଛୁଆଁଙ୍କ ଲାଗି କିଆଁ ବାପୁଜୀ!

ଯଦି ପ୍ରକୃତରେ ତାଙ୍କପାଇଁ ସମାନଧିକାର ଚାହୁଁଚ, ତା ହେଲେ ଆମ ତେତିଶ କୋଟି ଦିଅଁ ଦେବତାଙ୍କ ଭିତରୁ ସାତକୋଟି ମୁଣ୍ଡ ଗଣତି ସାତ କୋଟି କାଡ଼ିକୁଡ଼ି ଘିନିଯାଆନ୍ତୁ। ଜଣକୁ ଗୋଟାଏ ଲେଖା ବାଣ୍ଟିଦିଅନ୍ତୁ। ଏ ବୁଢ଼ାଦିହରେ ଭଲା ଉପାସ କରି କଣ ଗୋଟାଏ ପଡ଼ିଚି? ବାଧିକା ହେଇଯିବ। ଅଛୁତଙ୍କୁ ବାଧୁ କି ନବାଧୁ, ତାଙ୍କ ମୋଟ ମହିଷିଆ ଯାଦୁରା ଚମ ବଡ଼ ଟାଣ, ଆମ କଅଁଳ ଚମକୁ ତ ବଡ଼ ବାଧିଯିବ।

ସଂପାଦକ ଭାଇ! ଆଜିକାଲି ଦିଲ୍ଲୀର ଆବ୍‌ହାଉଆ ଯଦିଚ ନୁହଁ କାଲୁଆ, ନୁହଁ ତତଲା- ତଥାପି ଟାଇଫଏଡ୍ ମେଲେରିଆଯୋଗୁଁ ପ୍ରାଣରେ ଆଉ ସେ ଶରତ୍ ନିଶାର ନିଶାଳିଆ ଚାନ୍ଦିନୀ, କୁନ୍ଦଗନ୍ଧଗୋଳା ପବନର ଢେଉ, ସେ ଲଳିତ ରାଗିଣୀ ବଜଉ ନାହିଁ। ଗଙ୍ଗା ମୁହାଣରେ ବାଲିଚଡ଼ା, ପୋଚରା ଦଳମଡ଼ା ପାଟଦେହଠୁ ଆରମ୍ଭ କରି ଚିତ୍ରୋତ୍ପଳାର କଣ୍ଠ ପଦକ କଟକ, ମହୋଦଧିର ମଥାମଣି ପୁରୀ - ଚିଲିକା-ନୀଳୋତ୍ପଳର କେଶର ଗଞ୍ଜାମ ପର୍ଯ୍ୟନ୍ତ ଗ୍ରାସକରି ମେଲେରିଆ ପିତାଶୁଣୀର ପେଟ ପୂରିଲା ନାହିଁ ଯେ, ସେ କଲିକତାରୁ ରାଜଛତି ଦିଲ୍ଲୀକୁ ଉଠିଆସିବା ସାଙ୍ଗେ ସାଙ୍ଗେ ଆପଣା ଆଡ୍‌ଡ଼ା ବି ଏଠି ଆସି ଜମେଇଦେଲା। ତାର ଭାଉତବୁଲା ସ୍ୱଭାବକୁ କିସ ବାହୁନିବା? ତା କବଳରେ କିଏ ଭଲା ଆମ ଓଡ଼ିଆ ରକ୍ତ ମାଉଁସ ଶରୀର ହେଇ ପଡ଼ିନାହିଁ-ନା କୁଇନାଇନ ଗୋଳିର ସୁଆଦ ଚାଟି ନାହିଁ? ଓଡ଼ିଆଙ୍କର ତ ବରଷକ ବାରମାସ -

"ତାପ ସନ୍ନିପାତ ବିକାର ବିଷାଦ
ଜୀବନ ସଂଙ୍ଗାଳି କୁଇନାଇନ।"

ଭଲା ଦିଲ୍ଲୀରେ ଓଡ଼ିଆ ହାଡ଼ଚମପାଇଁ ମେଲେରିଆ ଡାଆଣୀ ତ ରସଚୁଷିବା ମଜା କାହୁଁ ଛାଡ଼ନ୍ତା? ତା 'ହାଇଫ୍ଲେରେଚର' ଦାଉରେ ଆଉ ମଗଜରେ କିଛି ଜ୍ଞାନର କଥା ଅଛି-ବା ଥାଇପାରେ। ସେଇଯୋଗୁଁ ଓଡ଼ିଆଙ୍କର ନିତି ଜ୍ଞାନଘର ହଜିଯାଉଚି ନା! ଆପଣା ଘରର ଆପେ ଉଗାରି ହେଇ ବସୁଛନ୍ତି। ନଇଲେ ଆମାଲ୍‌ଗାମେସନ୍ ରୂପୀ ଅମୃତ ଟିକକ ଏତେ ସିନ୍ଧୁ ମନ୍ଥି ମନ୍ଥି ଶେଷକୁ ସିମଳା ଦଉଡ଼ି ଦଉଡ଼ି ତାଙ୍କୁ ମିଳୁନାହିଁ, ନା ଦେଶ ମିଶ୍ରଣ ଲକ୍ଷ୍ମୀଙ୍କି ପାଇ ନାହାନ୍ତି। ତୁଚ୍ଛାକୁ ଲକ୍ଷ୍ମୀଙ୍କି କହୁଛନ୍ତି ଧର, ଧର, ଧର। ଜ୍ୱର ରୋଗୀର ପ୍ରଳାପ ତ! କଣ ଯେ ବକି ବକି, ଲେଖି ଲେଖି ଗଲିଣି, କଥାଟା ଯେ କୁଆଡ଼େ କୋଉ ସୁଅରେ ଭାସିଗଲାଣି, ନଡ଼ିଆ ଗଛରେ ଚଡ଼କ ପଡ଼ି ଗୁଆଗଛ ଭାଙ୍ଗି ଗଲାଣି, ତା ମୁଁ କିଛି ଠିକ୍ କରିପାରୁ ନାହିଁ। ଅତଏବ ଭୁଲ୍ ଦୋଷ କ୍ଷମା ସାଦରେ ମାଫ୍‌କରିବେ। ଆଉ ଚଉଧୁରୀ ବଜାର ଆମ ଅକ୍ଷୟ ବାବୁଙ୍କ ଡାକ୍ତରଖାନାରୁ ବୋତଲେ ଭିକ୍‌ଟୋରିଆ ଟନିକ୍ ପିଲ୍ ପଠାଇଦେବାରେ ହେଳା କରିବେ ନାହିଁଟି! ନଇଲେ ଆମ କଲିକତି ଓଡ଼ିଆ ଦୋକାନର ଜାରମଲିନ - ଜ୍ୱରର ଯମ ଶିଶିଏ ଅନୁଗ୍ରହ କରିବେ।

ନମସ୍ତେ ଇତି।



# ଦିଲ୍ଲୀ ଚିଠି (୮)

## ବୀରଶ୍ରୀ

(ନବୋତ୍କଳ ଗଠନ ପରେ ମତାମତ-
'ବୀରଶ୍ରୀ' 'ବୀର ଶ୍ରୀମତୀ' ଉପାଧି ଗ୍ରହଣ)

ବୀର ଶ୍ରୀଯୁକ୍ତ ସଂପାଦକ ମହୋଦୟ,

ସାଦର ନମସ୍ତେ !

ଆଜି ବାସ୍ତବରେ ଗୋଟିଏ ମହାନ୍ ଆନନ୍ଦର ଦିନ। ୧୯୩୬ ଅପ୍ରେଲ ପହିଲା ଆସିଗଲା। ନବ ସହକାରର ରସାଳ କୁଞ୍ଜରେ ପିକ ପଞ୍ଚମ ଲହରରେ ନବ ରାସଳ ମଧୁଧାରା ବର୍ଷଣ କରି ଦେଇଗଲା ପରା ! ପକ୍ୱ ରସାଳ ଶ୍ରୀଫଳ ସହିତ ସସୁମିଷ୍ଟ ଦେଶମିଶ୍ରଣ ମଧୁ ମିଶିଗଲା।

ବହୁଦୂରେ ଏ କଳା କାଳିନ୍ଦୀ କୂଳରେ ନବ ପ୍ରଭାତୀତାରାର ପ୍ରଥମ ସ୍ଫୁରଣରେ ନବୀନ ଉଷାର ଲଜ୍ଜାରୁଣ ମୃଦୁ ମଧୁର ସଞ୍ଚରଣ ସହିତ ନିର୍ମଳ-ନଳିନୀ-ସରୋଜିନୀର ହୃତ୍‌କମ୍ପନ; ସୁରମା; ମାଳତୀର, ସୁରଭିତ ନିଃଶ୍ୱାସ; ସରଳା, କୁଞ୍ଜବାଳା, ଗୋଲାପ କଳିକାର ଅଧରାମୃତଶୋଭୀ ମନୋହର ହାସ୍ୟ; ଅନ୍ନପୂର୍ଣ୍ଣା, ଅପର୍ଣ୍ଣା ବୀର ଶ୍ରୀ ବୀରବାରଙ୍ଗନା କଳିଙ୍ଗ ଜନନୀଙ୍କୁ ଆଜି ଉଦ୍‌ବୋଧନ କରି କି ମହାମୋହନ ଲଳିତ ଆଶାବରୀ ଶୁଣାଉଚି। ବହୁଦୂରେ ଏ ନୀଳ ଯମୁନା କୂଳରେ, କୁନ୍ତଳା ଆଜି ତା ଶୁଣିପାରିଚି। ଉତ୍କଳ ବାଳିକା ବୀରଶ୍ରୀ ବୀରବର ଗଜପତି ଗୌଡ଼େଶ୍ୱର ଦେଶର କନ୍ୟା ଆଜି ପ୍ରାଣରେ ଆନନ୍ଦରେ ଆଶାର ଉଲ୍ଲାସରେ ଆତ୍ମହରା - ଆକୁଳ।

ଆଜି ସେ କେବଳ ଭାବୁଚି - ଆଶାର ତାର ସଫଳୀଭୂତ ପ୍ରଥମ ପ୍ରଭାତ ! ଏହି ଆଶା ସ୍ୱପ୍ନ ପ୍ରଥମ ପ୍ରଭାତ ଦେଖିବାକୁ ଯେ ଉତ୍କଳର ପ୍ରାଣ ବର୍ଷ ବର୍ଷ ଧରି କେତେ କଠୋର ସାଧନା କରିଥିଲା, କେତେ ତପସ୍ୟା କରିଥିଲା - ସେହି ସାଧକ ତପସ୍ୱୀଙ୍କ ମଧ୍ୟରୁ ମଧୁସୂଦନ, ବିଶ୍ୱନାଥ, ଉତ୍କଳମଣି ଗୋପବନ୍ଧୁ, କବିକୂଳ-ତିଳକ ମେହେର, କବି-ପ୍ରିୟା ପ୍ରସାଦବାଲା ଆଜି ଆଉ ଆମ ମଧ୍ୟରେ ନାହାନ୍ତ, କିନ୍ତୁ ତାଙ୍କ ଆତ୍ମା ଆମ ସଂଗରେ ଅଛି। ଆମେ ତାଙ୍କ ସାଧନାର ଫଳଲାଭ କରିଚୁ। ସ୍ୱର୍ଗରେ ଥାଇ ସେ ଆମକୁ ଆଶୀର୍ବାଦ କରନ୍ତୁ !

ଆମେ ଆଜି ଆନନ୍ଦ କରୁଚୁ; କିନ୍ତୁ ପ୍ରକୃତରେ କଣ ଆମେ ପୂର୍ଣ୍ଣାନନ୍ଦର ଅଧିକାରୀ ? ଆମେ ଯେ ପାଇ ସୁଦ୍ଧା ପାଇ ନାହୁଁ। ଆଜି ମଧ୍ୟ ଆମ ସିଂହଭୂମି, ଆମ ଖଡ଼୍‌ଗପୁର, ମେଦିନୀପୁର, ଆମ ଜଗଜ୍ଜନମନମୋହିନୀ ମଞ୍ଜୁଳା, ନିର୍ମଳା ତରଳା, ପାରଳାର ଅର୍ଦ୍ଧଭାଗ ଆଦି ଅନେକ ଭୂଭାଗ ଆମର ରସାଳିନୀ କଳିଙ୍ଗର ଲଳିତକାନ୍ତ ତନୁରୁ କଟାହୋଇ ରହିଚି। ବିରାଟ କଳିଙ୍ଗ, ବୃହତ୍ତର ଉତ୍କଳର ସ୍ୱପ୍ନ ଯେ ପୂର୍ଣ୍ଣଭାବର ସଫଳ ହେଲା ନାହିଁ। ପାର୍ବଣଘରେ ପରମାତ୍ମୀୟଙ୍କ ଅନୁପସ୍ଥିତିର ବିଚ୍ଛେଦବେଦନା ଆମ ପ୍ରାଣକୁ ଯେ ଘାରି ରଖିଲା ! ଆମେ ପୂର୍ଣ୍ଣ ଭାବରେ କିପରି ବା ଆନନ୍ଦ କରିବୁ !

ଆଜି ଆନନ୍ଦ ଦିନରେ ଅଶ୍ରୁସିକ୍ତ ଆଖି ଯେ ଅନେଇ ପାରୁନାହିଁ! ମା'ର ପୂଜା ପୂର୍ଣ୍ଣୋପଚାରରେ କିପରି କରିବୁ? କିନ୍ତୁ ଭାଇ, ପାଇଚୁତ! କିଛି ତ ପାଇଚୁ। ଏତେଟା ପାଇଚୁ ଯେତେବେଳେ, ଆଉ ଯେତକ ବାକି ଅଛି, ସେ ସବୁ ଦିନେ ନିଶ୍ଚେ ମିଳିଯିବ ଆମର ହୃଦୟର ଆକର୍ଷଣରେ। ଆମେ ଯେ ପରସ୍ପରର କେତେ ନିକଟ। ଆମ ଓଡ଼ିଆ ଜାତି ଭିତରେ ଗୋଟିଏ ବିରାଟ ରାଷ୍ଟ୍ରୀୟତା, ଗୋଟିଏ ଅଖଣ୍ଡ ଏକତା ଅଛି। ଆମେ ଯେ ବୀର ଶ୍ରୀବୀରବରର ବଂଶଧର। ପ୍ରତ୍ୟେକ ଓଡ଼ିଆ ଭାଇ ଭଉଣୀ ନିଜକୁ ଏହି 'ବୀରଶ୍ରୀ' ଉପାଧିରେ ଭୂଷିତ କରନ୍ତୁ। ଆଉ ଆମେ ଦୁର୍ବଳ ଭୀତ କମ୍ପିତ ଜାତି ନୋହୁ। ଆମର ଅତୀତ ଥିଲା - ଭବିଷ୍ୟତ ଅଛି। ଜାତୀୟ ନବବର୍ଷର ପ୍ରଥମ ଦିନରେ, ଭାରତର, ପ୍ରଥମ ମୁହୂର୍ତ୍ତରେ ଏହି ପବିତ୍ର ନାମ ଆମର ଜାତୀୟତାର, ରାଷ୍ଟ୍ରୀୟତାର ମହାନ୍ ଚିହ୍ନ; ପବିତ୍ର କଳିଙ୍ଗମାତା ଉତ୍କଳଜନନୀର ଚରଣ ପୂଜାକରି ମୁଁ ଗ୍ରହଣ କରିଚି ଏବଂ ପ୍ରତ୍ୟେକ ଉତ୍କଳୀୟ ଭାଇଭଉଣୀଙ୍କୁ ଏହି 'ବୀରଶ୍ରୀ' ଉପାଧି ଗ୍ରହଣ ଲାଗି ଉଦ୍‌ବୋଧିତ କରୁଚି।

ଭାରତୀବର୍ଷୀୟ ଶିଖ ମାତ୍ରେ 'ସିଂହ' ଉପାଧି ଗ୍ରହଣ କରିଛନ୍ତି। ପ୍ରତ୍ୟେକ କ୍ଷତ୍ରିୟ ରାଜପୁତ ସିଂହ ପଦବୀରେ ଭୂଷିତ। ନାମରେ ବି ଗୋଟିଏ ନିଶା - ଚିହ୍ନ ଧାରଣରେ ମଧ ଗୋଟିଏ ପୌରୁଷର ମାଦକତା ଅଛି। ଆମେ ଯେତେଦିନ ନିଜକୁ ଦୁର୍ବଳ, ପତିତ ଭାବୁଥିବୁ, ତେତେ ଦିନ ଅବଜ୍ଞାତ, ହୀନହୋଇ ପଡ଼ିଥିବୁ। ଭାଇଭଉଣି! ସେ ଅତୀତକୁ ଭୁଲ! ତୁମଠି ଏବେ ମଧ ଯେଉଁ ଦୁର୍ବଳତା ଅଛି, ତା ଦୂର କର। ଏ କବିର କଳ୍ପନା ନୁହେଁ। ଏ ବୀରଶ୍ରୀ ଓଡ଼ିଆର ଜନ୍ମଗତ ଉପାଧି। ପ୍ରତ୍ୟେକ ପିଲାର ଜନ୍ମପତ୍ରିକା ଏହି ଉପାଧିରେ ହିଁ ଆରମ୍ଭ ହୁଏ। ଏ ନାମର ଟେକ ସ୍ୱୟଂ ଜଗନ୍ନାଥଙ୍କ ଇଚ୍ଛାରୁ ହୋଇଚି। ନୋହିଲେ ବୀରଶ୍ରୀର ବଂଶଧର ପାରଳାଙ୍କଦ୍ୱାରା ନବ ପ୍ରଦେଶ ଗଠିତ ହୋଇଥାନ୍ତା?

ଏଥର ଉତ୍କଳୀୟ, ତୁମର ଉତ୍‌ଥାନର ସମୟ ଆସିଲା। ଆଉ ଅର୍ଦ୍ଧମୃତ ପ୍ରାଣରେ ବଢ଼ି, ମରୁଡ଼ି, ମହାମାରୀରେ ମରିବ ନାହିଁ। ତୁମେ ବୀର ଜାତି, ''ବୀର'' ଆଖ୍ୟା ଘେନ। ପୁରୁଷମାନେ ''ବୀରଶ୍ରୀ'' ହୁଅନ୍ତୁ। ନାରୀମାନେ ''ବୀର ଶ୍ରୀମତୀ'' ହୁଅନ୍ତୁ। ଗୋଟିଏ ସ୍ୱସ୍ତିକ ଚିହ୍ନ ପଛରେ ଆର୍ଯ୍ୟ ଜର୍ମାନୀ ଆଜି ପାଗଳ। ତୁମର ଏଡ଼େ ବଡ଼ ମହାନ ଗୌରବର ଭୂଷଣ ଥାଉ ଥାଉ ତୁମେ ତାହା ଗ୍ରହଣ କରିବାକୁ କିମ୍ପା କୁଣ୍ଠିତ?

ନାମରେ ଶକ୍ତି ଅଛି। ''ବୀର'' ନାମରେ କେଡ଼େ ମହାନ ଶକ୍ତି, କି ସୁମହାନ୍ ପ୍ରେରଣା! ନିଖିଳ କଳିଙ୍ଗର ଭାଇ ଭଉଣି! ଯା କଣ ତୁମକୁ କହିଦେବାକୁ ହେବ? ଏହି ନାମବଳରେ ତ ମନୁଷ୍ୟ ଅସାଧ ସାଧନକରିପାରେ। ଏହି ବୀର ନାମ ଘେନି ବୀରବ୍ରତରେ ବ୍ରତୀ ହୋଇ ବୀରଶ୍ରୀ ଦେଶର ବୀର ସନ୍ତାନ ରପେ ଯୁଗେ ଯୁଗେ ଜଗତରେ ନିଜ ଜାତୀୟତା ଓ ରାଷ୍ଟ୍ରୀୟତାର ବିଜୟବାନା ଟେକି ଧର, ଦେଶର ମହାମଙ୍ଗଳ-ମିଳନର ପରମ ମୁହୂର୍ତ୍ତରେ ମୋର ଏହି ଶୁଭ କାମନା।

ମୁଁ ତୁମରି ଉତ୍କଳୀ ଭଉଣୀ

ବୀର ଶ୍ରୀମତୀ କୁନ୍ତଳା କୁମାରୀ ଦେବୀ।



